# ଶ୍ରେଷ୍ଠ ଗଳ୍ପ

ସଂପାଦନା :
**ଚନ୍ଦ୍ରଶେଖର ଦାସବର୍ମା**
**ପଙ୍କଜ ପାଲ**




**ଓଡ଼ିଶା ସାହିତ୍ୟ ଏକାଡେମୀ**
ସଂସ୍କୃତି ଭବନ, ଭୁବନେଶ୍ୱର- ୭୫୧୦୧୪

# ଶ୍ରେଷ୍ଠ ଗଳ୍ପ

ସଂପାଦନା : ଚନ୍ଦ୍ରଶେଖର ଦାସବର୍ମା, ପଦ୍ମଜ ପାଳ ■ ପ୍ରକାଶକ : ଓଡ଼ିଶା ସାହିତ୍ୟ ଏକାଡେମୀ, ସଂସ୍କୃତି ଭବନ, ଭୁବନେଶ୍ୱର-୭୫୧୦୧୪ ■ ମୁଦ୍ରଣ : ଟେକ୍ନୋ ଆର୍ଟସ ଅଫ୍‌ସେଟ୍, କଲ୍ୟାଣୀନଗର, କଟକ-୧୩ ■ ମୂଲ୍ୟ : ଟ. ୩୦୦/-

ପ୍ରଥମ ସଂସ୍କରଣ :
ବାହୁଡ଼ା ■ ୨୦୦୫

# SRESTHA GALPA

Edited by : **Chandra Sekhar Dasbarma, Padmaj Pal** ■ Publisher : **Orissa Sahitya Akademi**, Sanskruti Bhawan, Bhubaneswar-751014 ■ Printed at **Techno Arts Offset**, Kalyani Nagar, Cuttack-13 ■ Price : **Rs. 300/-**

First Edition :
**Bahuda ■ 2005**

# ସୂଚନା

ଓଡ଼ିଶା ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ, ଦୀର୍ଘ ଦୁଇ ଦଶନ୍ଧି ତଳେ, ଅର୍ଥାତ୍ ୧୯୮୫ ମସିହାରେ ପ୍ରକାଶ ପାଇଥିଲା 'ଶ୍ରେଷ୍ଠ ଓଡ଼ିଆ ଗଳ୍ପ ସଂକଳନ' । ଆଧୁନିକ ଓଡ଼ିଆ କଥାସାହିତ୍ୟର ଏହି ପ୍ରତିନିଧିସ୍ଥାନୀୟ ସଂକଳନର ସଂପାଦନା ଦାୟିତ୍ୱ ନିର୍ବାହ କରିଥିଲେ ପ୍ରଖ୍ୟାତ କଥାକାର ମହାପାତ୍ର ଶ୍ରୀ ନୀଳମଣି ସାହୁ । ଇତି ମଧ୍ୟରେ ଅତିକ୍ରାନ୍ତ ହୋଇସାରିଛି ଦୁଇ ଘଟନାମୁଖର ଦଶକ ଏବଂ ଆହୁରି ଅଧିକ ସଂପ୍ରସାରିତ ହୋଇସାରିଛି ଗଳ୍ପଚେତନାର ମାନଚିତ୍ର । ଚିତ୍ର ବଦଳିଛି, ସେଥି ସହିତ ଚରିତ୍ର ବି । ଚେତନାର ଚକ୍ରବାଳରେ ଫୁଟି ଉଠିଛି ବହୁ ବର୍ଣ୍ଣାଢ୍ୟ ବର୍ଣ୍ଣମାଳାର ବିଚିତ୍ର ବର୍ଣ୍ଣାଳୀ । ଓଡ଼ିଆ ଗଳ୍ପଜଗତରେ ଦେଖାଦେଇଛି ବିସ୍ମୟକର ବିବର୍ତ୍ତନ ଓ ବହୁବିଧ ପରିବର୍ତ୍ତନ । ଏକାଦିକ୍ରମେ ବହୁ ନକ୍ଷତ୍ରକୁ ନେଇ ଏକ ଅନନ୍ୟ ଆକାଶ ସୃଷ୍ଟି ହୋଇପାରିଛି- ଓଡ଼ିଆ ଗଳ୍ପର ଗତିପଥରେ । ଏହି ଦୃଷ୍ଟିରୁ, ସାଂପ୍ରତିକ ସମୟର ଏକ ଦୀର୍ଘ ଦାବୀନାମା ହେଉଛି ଆଜିର ଏ ସଂକଳିତ ଗଳ୍ପଗ୍ରନ୍ଥ : ଶ୍ରେଷ୍ଠ ଗଳ୍ପ ।

ବ୍ୟକ୍ତିତ୍ୱର ବିଳୟ ଓ ସାମାଜିକ ମୂଲ୍ୟବୋଧର ବିପର୍ଯ୍ୟୟ ମଧ୍ୟରେ ବର୍ତ୍ତମାନ ଯେଉଁ ମୂଲ୍ୟପ୍ରବଣ ମାନସିକତା ମାନବୀୟ ସଂପର୍କରେ ସଂକଟ ଓ ଶୂନ୍ୟଗର୍ଭତା ସୃଷ୍ଟି କରିଛି ଏବଂ ବିଚ୍ଛିନ୍ନତା, ନିଃସଙ୍ଗତା, ଆତ୍ମକୈଂଦ୍ରିକତାର ଅନ୍ଧମୁହାଣି ଆଡ଼କୁ ଆମକୁ ଠେଲିନେଉଛି- ଜୀବନର ସୂକ୍ଷ୍ମ ଓ ସୁକୁମାର ସ୍ୱପ୍ନସବୁକୁ ନିର୍ଦ୍ଦୟ ଭାବରେ କ୍ଷତାକ୍ତ କରିଚାଲିଛି, ଆଜିର ଅଧିକାଂଶ ଗଳ୍ପ ସେଇ ବିଭାଜିତ ବାସ୍ତବତାର ହିଁ ବିଭିନ୍ନ ବର୍ଣ୍ଣବିନ୍ୟାସ ।

ବହୁ ସ୍ୱରଶବ୍ଦରେ ପରିପୂର୍ଣ୍ଣ ଓଡ଼ିଆ ଗଳ୍ପାୟତନରୁ ଆମେ ସଂଯୋଜନା କରିଛୁ କେତୋଟି କାକଳି ମାତ୍ର । ଆହୁରି ଅନେକ କଣ୍ଠସ୍ୱର ଆସନ୍ତାକାଲି ପାଇଁ ଆଜିଠୁ ଶ୍ରୁତିର ପ୍ରତିଶ୍ରୁତି ନିଶ୍ଚୟ । ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ 'ଶ୍ରେଷ୍ଠ ଗଳ୍ପ'ର ସୀମାବଦ୍ଧତା ଦୃଷ୍ଟିରୁ ସମସ୍ତଙ୍କୁ ସଂକଳିତ କରିପାରିବା ସମ୍ଭବପର ହୋଇପାରିନଥିଲେ ହେଁ ପରବର୍ତ୍ତୀ ପର୍ଯ୍ୟାୟରେ ଏ ଦିଗ ପ୍ରତି ଗୁରୁତ୍ୱ ଦେବାରେ ଶତପ୍ରତିଶତ ସମ୍ଭାବନା ରହିଛି– ଏହି ସୂଚନା ସହ ଏ ସଂକଳନସ୍ଥ ଅନିଚ୍ଛାକୃତ ତ୍ରୁଟି (ଯଦି କିଛି ରହିଯାଇଥାଏ) ନିମନ୍ତେ ଆଗୁଆ କ୍ଷମା ମାଗିନେଉଛି ।

(ଚଂଦ୍ରଶେଖର ଦାସବର୍ମା)
ସଂପାଦକ,
ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର

# କିଛି କଥା

ଓଡ଼ିଆ ଗଳ୍ପ-ସାହିତ୍ୟ ଖୁବ୍ ସଂବୃଦ୍ଧ ଓ ପ୍ରଭାବଶାଳୀ । ଏହା କେବଳ ପ୍ରାନ୍ତୀୟ ଗଳ୍ପ-ସାହିତ୍ୟର ସମସ୍ପର୍ଦ୍ଧୀ ନୁହେଁ, ବିଶ୍ୱସାହିତ୍ୟର ସମସ୍କନ୍ଧ ମଧ୍ୟ । ଏହା ଏକ ଅତିଶୟୋକ୍ତି ନୁହେଁ । ଏଥିଲାଗି ନିର୍ଦ୍ଦିଷ୍ଟ କେତୋଟି ପ୍ରମାଣର ଆବଶ୍ୟକତା ଦରକାର ନୁହେଁ । ଶହେ ବର୍ଷର ଗଳ୍ପସାହିତ୍ୟରେ ଏକ ମନନଶୀଳ ଅନୁଶୀଳନ, ନିରପେକ୍ଷ ତଥା ପରିପକ୍ୱ ଦୃଷ୍ଟିଭଙ୍ଗୀ ଏ ଉକ୍ତିର ଯଥାର୍ଥତା ପ୍ରତିପାଦନ କରିବ । ଏ ସଂକଳନରେ ସନ୍ନିବେଶିତ କେତୋଟି ଉଜ୍ଜ୍ୱଳ ଗଳ୍ପ ତାର ବ୍ୟାପ୍ତି, ଦ୍ୟୁତି, ଗଭୀରତା ତଥା ଉଚ୍ଚତାକୁ ନେଇ ଦୃଷ୍ଟାନ୍ତ ସ୍ୱରୂପ ଆକର୍ଷିତ କରିବ ନିଶ୍ଚୟ ।

ଗଳ୍ପସାହିତ୍ୟରେ ୧୯୮୦-୨୦୦୦ ମସିହା ସମୟ ଅବଧି ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଏହି ସମୟରେ ହିଁ ଗଳ୍ପର ରୂପାନ୍ତରିତ ହୋଇଛି । ଏ ରୂପାନ୍ତର ଗଳ୍ପର ଆତ୍ମିକ ଆବେଦନ ତଥା ଆଙ୍ଗିକ ଐଶ୍ୱର୍ଯ୍ୟରେ ପାରମ୍ପରିକ ଗଳ୍ପଠାରୁ ସ୍ପଷ୍ଟ ବାରିହୋଇପଡ଼େ । ଏହାର କାରଣ ବିଶ୍ୱରେ, ସମାଜରେ, ମଣିଷର ଅନୁଭବରେ ଯେଉଁ ସବୁ ପରିବର୍ତ୍ତନ ଲକ୍ଷ୍ୟ କରାଗଲା, ତାକୁ ହିଁ ଆଧାର କରି ଗଳ୍ପକଳା ନିଜକୁ ନୂଆ ଭାବରେ ରୂପାୟିତ କରିଦେଲା ।

ଯେଉଁ ବିଶ୍ୱ ଭ୍ରାତୃତ୍ୱ ନାଗରିକତ୍ୱ ପାଇବା ପାଇଁ ଦିନେ ସେ ସ୍ୱପ୍ନ ଦେଖୁଥିଲା, ଏକ ମହାନ ଆଦର୍ଶ ଭାବେ ଗ୍ରହଣ କରୁଥିଲା, ସେ ସ୍ୱପ୍ନ ତାର ସାକାର ହୋଇଥିଲା । ଏହା ଫଳରେ ଯେଉଁ ସାଂସ୍କୃତିକ ପ୍ରତିସ୍ରୋତ ସବୁ ପ୍ରବାହିତ ହେଲା, ଯାହାକୁ ବ୍ୟକ୍ତିଟି ପ୍ରତିହତ କରିପାରିଲା ନାହିଁ କି ନିଜର ସାଂସ୍କୃତିକ ନ୍ୟାୟ ଭିତରେ ନିଜକୁ ଧାରଣ କରିପାରିଲା ନାହିଁ, ତାର ପରିଣତି ହେଲା ସେ ମାନସିକ ସ୍ତରରେ ଏଭଳି ଏକ ସଂତୁଳନ ଭିତରେ ପହଞ୍ଚିଗଲା, ତାର ବହୁ ବିଜାତୀୟ ମୂଲ୍ୟବୋଧ, ଏଇ ପରିବର୍ତ୍ତନ ଫଳରେ ତାକୁ ଅଧିକ ଗ୍ରହଣୀୟ ମନେହେଲା । ସେ ନିଜର ପାଦ ତଳୁ ନିଜର ପରିଚୟର ଭିତ୍ତିଭୂମିକୁ ହରେଇଲା ଏବଂ ଯେଉଁ ନୂତନ ସାଂସ୍କୃତିକ ଆବେଦନକୁ ସେ ପ୍ରଶଂସା କଲା, ତାକୁ ଧାରଣ କରିପାରିଲା ନାହିଁ । ତ୍ରିଶଙ୍କୁ ଭଳି ଏଇ ବିଚିତ୍ର ସ୍ଥିତି ତାକୁ ବିଷନ୍ନ କରିପକାଇଲା । ସେ ଅସୁରକ୍ଷିତ ମନେକଲା ଏବଂ ଘଟଣା ପ୍ରବାହରେ ଯେଉଁ ପନ୍ଥା ସେ ଆତ୍ମରକ୍ଷା ପାଇଁ ନିଜର କଲା, ସେଇଟା ତା' ପାଇଁ ବାଧ୍ୟବାଧକତା ପାଲଟିଗଲା । ଏଇ ସ୍ଥିତି ହିଁ ତା' ଭିତରେ ଭୟ ଭରିଦେଲା । ସେ ଯାହା କଲା ବା ଚାହିଁଲା କରିବାକୁ, ସେ ସବୁ ଭୟ ଦ୍ୱାରା ନିୟନ୍ତ୍ରିତ ହେଲା । ସେ ଅନୁଭବ କଲା ଧନ ହିଁ ତାକୁ କେବଳ ସୁରକ୍ଷା ଦେବ । ସବୁକିଛି ପାଇପାରିବ ତାରି ମାଧ୍ୟମରେ । ତା' ସାମ୍ନାରେ ଖୋଲା ବଜାରର ଭେଳିକି, ଅର୍ଥନୀତିକ ଉଦାରୀକରଣ ଏବଂ ଜଗତୀକରଣର ପ୍ରସାର ଓ ଉପଯୋଗିତା କଥା କୁହାଗଲା । ସେ ପାଲଟିଗଲା ଧନୀ ହେବାର ମୋହରେ ଗୋଟାଏ କୃମି କୀଟ । କୌଣସି ଉପାୟରେ ଅର୍ଥ । ଅର୍ଥ ହିଁ

ସୁରକ୍ଷା ଦେବ, ବିଳାସ ଦେବ, କ୍ଷମତା ଦେବ- ଏଇ ବାଟରେ ହିଁ ଜୀବନକୁ ଉପଲବ୍ଧି କରିହେବ । ଏ ପନ୍ଥାରେ ତା' ପାଇଁ ପୁରୁଣା ମୂଲ୍ୟବୋଧ ବେକାର ହୋଇଗଲା । ମାନବତା ଦନ୍ତୁରା ଆୟୁଧ ପାଲଟିଗଲା । ସବୁଆଡ଼େ ତା' ପାଇଁ ବାଟ ଖୋଲିଗଲା । ଏଇ ଉନ୍ମୁକ୍ତ ବିଶ୍ୱ ଭିତରେ, ସେ ସଂପର୍କକୁ, ସଂସ୍କୃତିକୁ, ଦର୍ଶନକୁ, କଳାକୁ, ଅର୍ଥନୀତିକୁ, ରାଜନୀତିକୁ ଏପରିକି ବିଜ୍ଞାନକୁ, ପ୍ରଯୁକ୍ତି ବିଦ୍ୟାକୁ, ଅନୁଷ୍ଠାନକୁ ନିଜର ମହତାକାଂକ୍ଷା ପୂରଣ କରିଦେବାରେ ଆୟୁଧ କରିଦେଲା । ସେ କେବଳ ଦେଖିଲା ନିଜକୁ ଏବଂ ନିଜକୁ । ସେ ପଥରେ ଯେକୌଣସି ବାଟ ବି ତା' ପାଇଁ ଆଉ ଅଗମ୍ୟ ହୋଇ ରହିଲା ନାହିଁ କି ଅକରଣୀୟ ହୋଇ ରହିଲା ନାହିଁ । ଏଇ ସମୟର ଓଡ଼ିଆ ଗଳ୍ପ କେବଳ ନୁହେଁ, ପୃଥିବୀର ସବୁ ଭାଷାର ଗଳ୍ପରେ ଏ ଚିନ୍ତାଚେତନା ଛାଇଗଲା । ଓଡ଼ିଆ ଗଳ୍ପରେ ତାର ସ୍ପଷ୍ଟ ଛିଟା ଦେଖାଦେଲା । ଯେହେତୁ ଜୀବନ ଥିଲା ପୂର୍ବରୁ ଅନେକ କରଣୀୟ ଅକରଣୀୟ ନିର୍ଦ୍ଦେଶନାରେ ଅନୁବଂଧିତ, ଏ ନୂତନ ସମୟ ତାର ଚାପରେ ସେ ସବୁକୁ ଅପାଙ୍‌କ୍ତେୟ କରିଦେଲା । ପୁରୁଣା ଇମାରତ ଭଳି, ସଂପର୍କ ଭଳି ଦାୟ-ଭିତ୍ତିକ ଜୀବନର ସମାଜର ଅବସାନ ହୋଇଗଲା । ଗୋଟାଏ ନୂତନ ମିଶ୍ରିତ ଜୀବନାଦର୍ଶକୁ ବ୍ୟକ୍ତିଟିଏ ଅନୁଶୀଳନ କଲା । ପୁରୁଣା ପୁରୁଷାର୍ଥ ତାକୁ ଆକର୍ଷିତ କଲା ନାହିଁ । ଧର୍ମ ବା ମୋକ୍ଷ ଅପ୍ରାସଂଗିକ ହୋଇଗଲା । ସେ ଯେଉଁ ଭାବେ ମୂଲ୍ୟବୋଧକୁ ଗ୍ରହଣ କଲା, ତା' ହେଲା- କାମ, ଅର୍ଥ, କ୍ଷମତା । ଏଇ ଭିତ୍ତିଭୂମି ଉପରେ ୧୯୮୦ରୁ ୨୦୦୦ ମସିହାର ଗଳ୍ପ ଠିଆ ହୋଇଛି ।

## ଏହି ଗଳ୍ପ ସଂକଳନ ବିଷୟରେ ପଦେ

ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ଶ୍ରେଷ୍ଠ ଓଡ଼ିଆ ଗଳ୍ପ ସଂକଳନ ୧୯୮୦ରୁ୨୦୦୦ ମସିହା ପର୍ଯ୍ୟନ୍ତ ପ୍ରସ୍ତୁତ କରିବା ଲାଗି ଅନୁବଂଧିତ ହେବା, ଆମ ପାଇଁ ଏକ ଆନନ୍ଦର ଖବର ଥିଲା । ମାତ୍ର କାର୍ଯ୍ୟ ଆରମ୍ଭ କଲା ବେଳାକୁ ଯେଉଁ ଅନିବାର୍ଯ୍ୟ ତାଡ଼ନା ଓ ସମସ୍ୟାର ସମ୍ମୁଖୀନ ହେଲୁ, ତା' ଥିଲା ବହୁ ଭାଗରେ ବିଭକ୍ତ । ପ୍ରଥମତଃ, ଶ୍ରେଷ୍ଠଗଳ୍ପ ଚୟନ ଏକ କଠିନ ଓ ଦୁରୂହ ବ୍ୟାପାର । ସେଥିପାଇଁ ପ୍ରତିଟି ଗାଳ୍ପିକଙ୍କର ସମସ୍ତ ଗଳ୍ପକୁ ପଢ଼ିବା ଆବଶ୍ୟକ । ଆକଳନ କରିବା ଆବଶ୍ୟକ । ଦ୍ୱିତୀୟତଃ ସୀମିତ ସମୟ ମଧ୍ୟରେ ଏ ଭଳିଆ ଏକ ଗବେଷଣାଧର୍ମୀ କାର୍ଯ୍ୟ ଶେଷ କରିବା ସମ୍ଭବପର ହେଉନଥିଲା । ତେଣୁ ଆମକୁ ନିଷ୍ପତ୍ତି ନେବାକୁ ହେଲା, ଗାଳ୍ପିକମାନଙ୍କ ସହଯୋଗ କାମନା କରାଯିବ । ସେମାନଙ୍କୁ ଅନୁରୋଧ କରାଯିବ ସେମାନଙ୍କ ଦ୍ୱାରା ସୁନିର୍ବାଚିତ ଦୁଇଟି ନିଜର ଗଳ୍ପ ପଠାଇ ସାହାଯ୍ୟ କରିବା ଲାଗି । ଲେଖକ ବଂଧୁମାନଙ୍କ ପାଖରେ ଆମେ କୃତଜ୍ଞତା ପ୍ରକାଶ କରୁଛୁ ଯେ ସେମାନେ ଅକୁଂଠିତ ଚିତ୍ତରେ ଆମକୁ ସାହାଯ୍ୟ କରିଛନ୍ତି । ଯାହା ଫଳରେ 'ଶ୍ରେଷ୍ଠ ଗଳ୍ପ' ସଂକଳନଟି ପ୍ରସ୍ତୁତ କରିବା, ଆମ ପକ୍ଷରେ ସହଜସାଧ୍ୟ ହୋଇଗଲା । ସୁନିର୍ବାଚିତ ଦୁଇଟି ଗଳ୍ପରୁ ଆମେ ଗାଳ୍ପିକଙ୍କ ଗୋଟିଏ ଗଳ୍ପ ସ୍ଥାନିତ କରିବା ଲାଗି ଯତ୍ନବାନ ହୋଇଛୁ ଦୁଇଟି ଦୃଷ୍ଟିକୋଣରୁ । ପ୍ରଥମଟି, ଗାଳ୍ପିକଙ୍କ ସ୍ୱକୀୟତାର ପରିଚୟ

ବହନ । ଦ୍ୱିତୀୟରେ ସଂକଳନଟିର ଶ୍ରୀବୃଦ୍ଧି ସାଧନ । ଏ ଦିଗରେ ଭିନ୍ନ ବିଷୟବସ୍ତୁ ଆଧାରିତ ତଥା ନୂତନ ଶୈଳୀ ପ୍ରତି ଧ୍ୟାନ ଦେଇଛୁ । ଆଶା କରୁଛୁ, ସେଥିରେ ଆମେ ସଫଳ ହୋଇଛୁ ।

ସବୁଠାରୁ ବଡ଼ ସଂକଟର ସାମ୍ନା କରିଥିଲୁ, ଗାଳ୍ପିକମାନଙ୍କୁ ଚୟନ କରିବାରେ । ଏଇ ୧୯୮୦ରୁ ୨୦୦୦ ଅବଧି ମଧ୍ୟରେ ଆହୁରି ଅନେକ ସିନିଅର ଗାଳ୍ପିକ ନିଜର ସୃଷ୍ଟିକ୍ରିୟାରେ ନିଜର ସ୍ଥିତି କେବଳ ଅଧିକ ସୁଦୃଢ଼ କରିନାହାନ୍ତି, ବହୁ ଉଚ୍ଚକୋଟୀର ଗଳ୍ପ ରଚନା କରି ଗଳ୍ପ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି ଏବଂ ନିରବଚ୍ଛିନ୍ନ ଭାବରେ ଏଇ ସମୟରେ କ୍ରିୟାରତ ଅଛନ୍ତି । ସେମାନଙ୍କୁ ସ୍ଥାନିତ କରିଥିଲେ ଏ ସଂକଳନଟିର ମର୍ଯ୍ୟାଦା ଆହୁରି ବଢ଼ିଯାଇଥାନ୍ତା ନିଶ୍ଚୟ ।

ଏ ସମସ୍ୟାକୁ ସାମ୍ନା କରିବାକୁ ଆମକୁ ଏକ ଐତିହାସିକ ନିଷ୍ପତ୍ତି ନେବାକୁ ହେଲା । ଯାହା ଆମକୁ ବି କଷ୍ଟ ଦିଏ । ଯେଉଁମାନେ ଏ ସଂକଳନଟିରେ ପ୍ରଥମେ ସ୍ଥାନିତ ହେବା କଥା, ଆମେ ତାଙ୍କୁ ସ୍ଥାନିତ କରି ପାରିଲୁ ନାହିଁ ।

୧୯୮୫ ମସିହାରେ ସୁ-ଗାଳ୍ପିକ ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁଙ୍କ ଦ୍ୱାରା 'ଶ୍ରେଷ୍ଠ ଓଡ଼ିଆ ଗଳ୍ପ ସଂକଳନ' ଆତ୍ମପ୍ରକାଶ କରିଥିଲା । ଏଇ ସଂକଳନରେ ସ୍ଥାନିତ ହୋଇ ନଥିବା ଗାଳ୍ପିକମାନେ ସେଥିରେ ସ୍ଥାନ ପାଇଛନ୍ତି । ଆମେ ସେମାନଙ୍କୁ ବାଦ ଦେଇ ଓଡ଼ିଆ ଗଳ୍ପଜଗତରେ କ୍ରିୟାରତ ତଥା ନବାଗତ ଗାଳ୍ପିକମାନଙ୍କୁ ସ୍ଥାନିତ କରିବାକୁ ଚାହିଁଲୁ । ଏହା ଫଳରେ ୧୯୮୫ରେ ପ୍ରକାଶିତ ସଂକଳନର ଉତ୍ତରପର୍ବ ରୂପେ ଏ ସଂକଳନଟି ଉତ୍ତରସୂରୀଙ୍କ ସଂକଳନ ଭାବେ ଆତ୍ମପ୍ରକାଶ କଲା । ଓଡ଼ିଆ ଗଳ୍ପ ଲେଖୁଥିବା ପ୍ରତ୍ୟେକ ଗାଳ୍ପିକ ବ୍ୟକ୍ତିତ୍ୱମାନଙ୍କର ଏକ ସ୍ପଷ୍ଟ ଛବି ରହିବ, ଦୁଇଟି ଯାକ ସଂକଳନକୁ ବିଚାରକୁ ନେଲେ । ଏ ନିଷ୍ପତ୍ତି ଫଳରେ ୧୯୮୦ରୁ ୨୦୦୦ର ଶ୍ରେଷ୍ଠ ଓଡ଼ିଆ ଗଳ୍ପ ସଂକଳନଟି ଉପରେ, ଏହାର ସାମଗ୍ରିକତା ଉପରେ, ଶ୍ରେଷ୍ଠତା ଉପରେ ଅବଶ୍ୟ ଏକ ପ୍ରଶ୍ନବାଚୀ ଲାଗିଗଲା । ଟିକିଏ  ବୃହତ୍ତର ଦୃଷ୍ଟିକୋଣରୁ ଆମେ ତା' କରିବାକୁ ବାଧ୍ୟ ହେଲୁ । ଏଥିରୁ ମୁକ୍ତି ଲାଭ ପାଇଁ ଆମ ପାଖରେ କିଛି ଉପାୟ ନଥିଲା –  ସୀମିତ କଳେବର ହିଁ ଆମକୁ ପରିସୀମିତ ହେବାକୁ ବାଧ୍ୟ କରିଛି ।

ତଥାପି... ଅନେକ କିଛି ଅଜଣା ତ୍ରୁଟି ରହିଯାଇଥିବ । କୌଣସି କୌଣସି କୋଟୀସଂପନ୍ନ କଥାକାର ହୁଏତ ଏ ସଂକଳନଟିରେ ସ୍ଥାନିତ ହୋଇ ପାରିନଥିବେ । ଏହା ମାନବୀୟ ତ୍ରୁଟି ମନେକରି କ୍ଷମା କରିଦେବେ । ଏକାଡେମୀର ପରବର୍ତ୍ତୀ ସଂକଳନରେ ସେମାନଙ୍କୁ ସ୍ଥାନିତ କରାଯିବ ।

ଆଶା କରୁଛୁ, ପାଠକ ଆଲୋଚକଙ୍କ ସଶ୍ରଦ୍ଧ ଦୃଷ୍ଟି ସଂକଳନଟି ଆକର୍ଷିତ କରିବ ଏବଂ ଓଡ଼ିଆ ଭାଷାସାହିତ୍ୟର ଅନେକ ଆବଶ୍ୟକତାକୁ ପୂରଣ କରିବ ।

## ଲେଖକମାନଂକ ଜନ୍ମ ଓ ଜାତକର୍ମ

| | | | |
|---|---|---|---|
| ୧ | ଯଦୁନାଥ ଦାଶ ମହାପାତ୍ର- | ୧୯୨୯ | ସୀତାର ଅଭିସାର |
| ୨ | ଗୋପାଳ ଚନ୍ଦ୍ର ପଟ୍ଟନାୟକ- | ୧୯୪୧ | ଦିହୁଡ଼ି, କୁହୁଡ଼ି, ପଞ୍ଜୁରୀ ପକ୍ଷୀ, ସପ୍ତାହାତର ବାସ୍ନା |
| ୩ | ଶୈଳରାଣୀ ମିଶ୍ର- | ୧୯୩୨ | ଯୂଥଭ୍ରଷ୍ଟ, ବିବର୍ତ୍ତିତ ପୃଥିବୀ, ଚକ୍ରବ୍ୟୂହ |
| ୪ | କୃଷ୍ଣଚରଣ ବେହେରା- | ୧୯୩୨ | ଗୋପନ ପତ୍ର, ନାରୀ ଏକ ନଦୀର ନାମ, ଉଭା ଓ ପୋତା, ନାରୀମେଧ, ଐତରେୟ, ଦର୍ପକ ଦର୍ପଣ |
| ୫ | ଉମାଶଙ୍କର ମିଶ୍ର | ୧୯୩୭ | ଉମାଶଙ୍କର ମିଶ୍ରଙ୍କ କାହାଣୀ ସ୍ତବକ, ଶ୍ୱେତ ଅନୃତ, ତ୍ରିଶଙ୍କୁ, ବିଚକ୍ଷଣା, ବୋହୂ ବୋହୂକା |
| ୬ | ବିଜୟ ପ୍ରସାଦ ମହାପାତ୍ର | ୧୯୩୮ | ପ୍ରେମଗଳ୍ପ, ମୃଗତୃଷ୍ଣାର ଗଳ୍ପ |
| ୭ | ଦେବ୍ରାଜ ଲେଙ୍କା | ୧୯୩୯ | ଗୋଟିଏ ବାକ୍ସ ଗପ, ଦେବ୍ରାଜର ଅର୍କେଷ୍ଟ୍ରା, ଗାଆଁ ଗାଆଁ ଆହା ଆହା |
| ୮ | ବରେନ୍ଦ୍ର କୃଷ୍ଣ ଧଳ | ୧୯୪୧ | ପାଣିଗାର, ଅନେଶତ ରନ, କ୍ଳାନ୍ତ ନକ୍ଷତ୍ର, ଅବ୍ୟର୍ଥ ମୃଗୟା |
| ୯ | ସହଦେବ ସାହୁ | ୧୯୪୧ | ଆକାଶ କଇଆଁ, କଣ୍ଟାବାଡ଼, ଏଦିଗ ସେଦିଗ |
| ୧୦ | ଅପୂର୍ବ ରଂଜନ ରାୟ | ୧୯୪୧ | କାହାଣୀ ବିଚିତ୍ର, କଥା ଓ କାହାଣୀ, ଅନ୍ୟ ଏକ ଧର୍ମପଦ |
| ୧୧ | ପ୍ରଭାତ ମହାପାତ୍ର | ୧୯୪୨ | ଚିଠି ନିଜ ଠିକଣାରେ, ଅନେକ ଅକ୍ଷାଂଶ |
| ୧୨ | ରବୀନ୍ଦ୍ର ନାଥ ଦାସ | ୧୯୪୨ | ନିର୍ବାସିତ, ସମ୍ରାଟ, ଅନେକ ଯନ୍ତଣା |
| ୧୩ | ସେକ୍ ମତଲୁବ ଅଲ୍ଲି | ୧୯୪୨ | 'ପଦ୍ମାର ସଂଗୀତ' ଓ 'ମୌସୁମୀ' |
| ୧୪ | ମାନସୀ ଦାସ | ୧୯୪୩ | ତ୍ରିଶଙ୍କୁର ସ୍ୱର୍ଗ, ଏକାକୀ ନରୋତ୍ତମ, ସକାଳର ଅପେକ୍ଷାରେ |
| ୧୫ | ନାରୁ ମହାନ୍ତି | ୧୯୪୩ | ବାଟ ପାଉନଥିବା ଜଣେ ପ୍ରୌଢ଼ର ଦୁର୍ଦ୍ଦଶା, ଶେଷଲୋକର ବିବରଣୀ, ପଙ୍ଗୁର ଆତ୍ମକଥା |
| ୧୬ | ପ୍ରତିଭା ରାୟ | ୧୯୪୪ | ଷଷ୍ଠସତୀ, ସ୍ୱନିର୍ବାଚିତ ଗଳ୍ପ |
| ୧୭ | କନକଲତା ମହାନ୍ତି | ୧୯୪୪ | ଆଲୁଅର ଛାଇ, ଭିନ୍ନ ବୃନ୍ଦାବନ |
| ୧୮ | ବିଜୟିନୀ ଦାସ | ୧୯୪୪ | ଭୋର ଆକାଶ, ଶରାହତ, ଶିଖାପତଙ୍ଗ |
| ୧୯ | ଚନ୍ଦ୍ରଶେଖର ଦାସବର୍ମା | ୧୯୪୫ | ଅନ୍ୟମଣିଷ, ସଂପର୍କ, ଅନ୍ୱେଷଣ, ମେଘୁଆ ଆକାଶ |
| ୨୦ | ବିପିନ ବିହାରୀ ମିଶ୍ର | ୧୯୪୫ | ମନର ମୁକୁର, ଗୋମତୀର ଶ୍ରେଷ୍ଠ ହସ, ଅସଂପୂର୍ଣ୍ଣ ଝଙ୍କାର |

| | | | |
|---|---|---|---|
| ୨୧ | ଅର୍ଚ୍ଚନା ନାୟକ | ୧୯୪୫ | କେତେକ ଦୃଶ୍ୟ, ଅଚିହ୍ନା ଆକାଶ, ଅରଣ୍ୟର ଅଭିଶାପ, ଚିତ୍ରପ୍ରତିମା |
| ୨୨ | ରତ୍ନାକର ଚଇନି | ୧୯୪୫ | ମୁଠାଏ ଶୂନ୍ୟତା, ସୂର୍ଯ୍ୟାସ୍ତର ଉପବନ, କହ ଲଳିତା |
| ୨୩ | ଆନନ୍ଦ ଚନ୍ଦ୍ର ପହି | ୧୯୪୬ | ଧୂଳିଝଡ଼, ଅନେକ ମୋହ, ଅନ୍ୟ ଅରଣ୍ୟ, ଚରିତ୍ରର ଚିତ୍କାର |
| ୨୪ | ଉତ୍ତମ ପ୍ରଧାନ | ୧୯୪୭ | ବୁଢ଼ୀଆଣି ଓ ବୃଦ୍ଧ ପ୍ରଜାପତି, ନଚିକେତାର ହାତ, କଳାହାଣ୍ଡିର କଥାକାର, ବାଲିଘାଟ |
| ୨୫ | ଅଧ୍ୟାପକ ବିଶ୍ୱରଞ୍ଜନ | ୧୯୪୭ | ତଥାପି ଆଲୋକ, ରାତି ପାହିଲେ ପୁରୀ, ବିଶ୍ୱରଞ୍ଜନଙ୍କ ପ୍ରେମକଥା, ମଳୟ ମଞ୍ଜରୀ |
| ୨୬ | ଗୋଲାପ ମଂଜରୀ କର | ୧୯୪୯ | କେବେକେବେ ଈଶ୍ୱର ଏବଂ ଶୂନ୍ୟସେତୁ, ଛାୟାବିଶ୍ୱ, ପଲକେ ସ୍ୱପ୍ନ |
| ୨୭ | ସୁଲୋଚନା ଦାସ | ୧୯୪୯ | ସ୍ୱୟଂବର, ମଧୁକ୍ଷରା, ମାଟିର ମହକ |
| ୨୮ | ଯଜ୍ଞଦତ୍ତ ଆର୍ଯ୍ୟ | ୧୯୪୯ | ଲୋଟଣୀ ପାରାର ଗୀତ, ବାଁଉଶ ଫୁଲ, ଏକଲବ୍ୟର ଶର, ପାପୁଲିର ଜହ୍ନ |
| ୨୯ | ତରୁଣକାନ୍ତି ମିଶ୍ର | ୧୯୫୦ | ଆବର୍ତ୍ତର ଦୁଇଟି ଗ୍ରନ୍ଥ, ନିଃସଙ୍ଗତାର ସ୍ୱର, କୋମଳ ଗାନ୍ଧାର |
| ୩୦ | ରବି ସ୍ୱାଇଁ | ୧୯୫୦ | ସଂବିତ୍, ମୁଁ ଏକ ବଂଦୀଶାଳା, ଦୀର୍ଘଶ୍ୱାସ |
| ୩୧ | ପ୍ରଦୋଷ ମିଶ୍ର | ୧୯୫୨ | ଆକାଶକୁ ରାସ୍ତା, ଶୀତରାଣୀ, ପିଞ୍ଜରାବନ୍ଦ |
| ୩୨ | ପୀତବାସ ରାଉତରାୟ | ୧୯୫୨ | ପ୍ରଜାପତିର ଗୀତ, ପତ୍ନୀକୁ ନେଇ ଗପ ଲେଖିବି ନାହିଁ |
| ୩୩ | ରଜନୀକାନ୍ତ ମହାନ୍ତି | ୧୯୫୨ | ଷଠୀବାର, ଶତାଣ୍ଡିପୁରୁଷ, ମାଟିଆପୁଅ, ଆ ସାକ୍ଷୀ ଦେ |
| ୩୪ | କୃପାସାଗର ସାହୁ | ୧୯୫୨ | ମଠକର ଗୋଳା, ଢେଙ୍କାନାଳ |
| ୩୫ | ପ୍ରଭାକର ସ୍ୱାଇଁ | ୧୯୫୨ | ଯଦାଯଦାହି ଧର୍ମସ୍ୟ, ପୁନଶ୍ଚ ହସ୍ତିନା, କେତେ କଥା |
| ୩୬ | ହୃଷୀକେଶ ପଣ୍ଡା | ୧୯୫୩ | ତିନୋଟି ନିଃଶ୍ୱାସର ପୃଥିବୀ, ଅନ୍ତରଙ୍ଗ ସକାଳ, ପ୍ରତ୍ୟୟର ପ୍ରତିଶ୍ରୁତି |
| ୩୭ | ସୁନୀତି ଦେବୀ | ୧୯୫୩ | ଏରୁଣ୍ଡିରୁ ଆକାଶ ପର୍ଯ୍ୟନ୍ତ, ଶେଷପାଦ, ଭଙ୍ଗାଶୋକ, ପାପୁଲିଏ ମେଘ |
| ୩୮ | ମନୋଜ କୁମାର ପଣ୍ଡା | ୧୯୫୪ | ହାତବଗିଚା, ବର୍ଣ୍ଣବଗିଚା |
| ୩୯ | ବିଜୟଲକ୍ଷ୍ମୀ ବଳୀୟାରସିଂହ | ୧୯୫୪ | ନିଜନିଜ ନିର୍ଜନତା, ତିନୋଟି ମୁହଁର ଆଲ୍‌ବମ୍, ଅସାମାପିକା, ଦିନଦିନ |

୪୦ ହୃଷୀକେଶ ପଣ୍ଡା ୧୯୫୫ ବାହାରେ ଛିଡ଼ାହୋଇଥିବା ଲୋକ, ରେବତୀ, ପ୍ରୌଢ଼ ଭାବନା, ସାହାବ ଦେବତା

୪୧ ଜ୍ୟୋତି ନନ୍ଦ ୧୯୫୫ ପିଙ୍ଗଳ ପଞ୍ଜୁରୀ, ଅନ୍ଧକାରିଗର

୪୨ ତୁଷାରକାନ୍ତି ପଣ୍ଡା ୧୯୫୫ କେତେଦୂର ଜୀବନରୁ ମୃତ୍ୟୁ ଓ ସଂପର୍କର ରଂଗ

୪୩ ପୁଷ୍ପାଞ୍ଜଳି ନାୟକ ୧୯୫୫ ପୂର୍ବରାଗ, ପୁପୁନ ଫେରିନାହିଁ, ଅଶ୍ରୁନଦୀର ସ୍ରୋତ

୪୪ ରଶ୍ମୀ ରାଉଳ ୧୯୫୬ ଗୋଟିଏ ଭଲଦିନ, ଅନନ୍ୟ ଉଚ୍ଚାରଣ, ଚେନାଏ ଆକାଶ ପାଇଁ

୪୫ ସରୋଜିନୀ ସାହୁ ୧୯୫୬ ସୁଖର ମୁହାଁମୁହିଁ, ନିଜର ଗହୀରରେ ନିଜେ, ଅମୃତର ପ୍ରତୀକ୍ଷାରେ

୪୬ ବିଷ୍ଣୁ ସାହୁ ୧୯୫୬ ଚମ୍ପାବଣ, ମୁନା ପାଇଁ ଗୋଟିଏ ପ୍ରାର୍ଥନା, ଅସୁସ୍ଥ ପୃଥିବୀ, ଦୁଃଖର ଚାରିକାନ୍ଥ, ଗୋଟିଏ ଗାଁର ଚିତ୍ରପଟ

୪୭ ଗୌରାଂଗ ଚରଣ ଦାଶ ୧୯୫୬ ମୁଁ ଜମା ମରିବିନି, ନିର୍ମୋକ

୪୮ ସଦାନନ୍ଦ ତ୍ରିପାଠୀ ୧୯୫୬ ଅନ୍ୟଜଣେ ସଦାନନ୍ଦ ତ୍ରିପାଠୀଙ୍କ ମୃତ୍ୟୁ ପରେ, ରଙ୍ଗନାଥ ଘଡ଼େଇ, ନିଜ ନିଜ ନିୟମ

୪୯ କଇଳାଶ ପଟନାୟକ ୧୯୫୭ ଏକଦା ଅନ୍ତରଙ୍ଗ, ଦକ୍ଷିଣାପବନ, ଏକାଠି ଏକାଏକା

୫୦ ପ୍ରକାଶ ମହାପାତ୍ର ୧୯୫୭ ଘୋଡ଼ା ସବାର କଥା

୫୧ ଦେବବ୍ରତ ମଦନରାୟ ୧୯୫୭ ଆଲୁଅର ଛାଇ, ସୂର୍ଯ୍ୟର ଅନେକ ରଙ୍ଗ ସ୍ୱପ୍ନଲୋକ

୫୨ ଗାୟତ୍ରୀ ସରାଫ୍ ୧୯୫୭ ଆଲୋକିତ ଅନ୍ଧାର, ଆଇନାର ଜହ୍ନ, ନିଜସ୍ୱ ବସନ୍ତ

୫୩ ସୁରେନ୍ଦ୍ର ମିଶ୍ର ୧୯୫୮ ଯୁଦ୍ଧ ଓ ଅନ୍ୟାନ୍ୟ ଗଳ୍ପ, ନଦୀରୁ ଆକାଶ ପର୍ଯ୍ୟନ୍ତ, ପଞ୍ଜୁରୀ ଓ ଅନ୍ୟାନ୍ୟ ଗଳ୍ପ

୫୪ ନିବାରଣ ଜେନା ୧୯୫୮ ଅରଣ୍ୟର ଅଜଗର, ନିଜ ଲୋକମାନେ, ମେଘମୋହ

୫୫ ଜ୍ୟୋସ୍ନା ରାଉତରାୟ ୧୯୫୮ ପୋତାଶ୍ରୟ, ଅନ୍ୟନଦୀ, ଅନ୍ୟଦିଗନ୍ତ

୫୬ ଅଜୟ ସ୍ୱାଇଁ ୧୯୫୮ ବୋଉର ଗୀତଖାତା, ନାବାଳକ, ଶାଳଉଖୁଡ଼ା, କାୟାକଳ୍ପ

୫୭ ଭୀମ ପୃଷ୍ଟି ୧୯୫୯ ପ୍ରଥମ ବହି, ଏଇ ମଣିଷମାନେ, ଅଧେ ମଣିଷ

୫୮ ଗୌରହରି ଦାସ ୧୯୫୯ ଆଖେଡ଼ାଘର, ଭାରତବର୍ଷ, ସ୍ୱପ୍ନ ପାଇଁ ରାତି ନାହିଁ

| | | | |
|---|---|---|---|
| ୫୯ | ବିଜୟାନନ୍ଦ ସିଂହ | ୧୯୫୯ | ଅନେକ ଦଂଶନ |
| ୬୦ | ପ୍ରକାଶ କୁମାର ପରିଡା | ୧୯୫୯ | ଶୂନ୍ୟସଂହିତା, କୁଶବିଦ୍ଧ, ମାତୃଭୂମି |
| ୬୧ | ସୁବ୍ରତ କୁମାର ପଟ୍ଟନାୟକ | ୧୯୫୯ | ବିଭିନ୍ନ ଗଳ୍ପ |
| ୬୨ | ପରେଶ କୁମାର ପଟ୍ଟନାୟକ | ୧୯୬୦ | ଛାୟା ପୁରୁଷ |
| ୬୩ | କବିତା ବାରିକ | ୧୯୬୦ | ଭିନ୍ନ ସହର, ଏକୁଟିଆ ଚାଲୁଥିବା ମଣିଷଟିଏ, ଛକ |
| ୬୪ | ଜୟନ୍ତୀ ରଥ | ୧୯୬୦ | ଯାତ୍ରାରମ୍ଭ, ଶବ୍ଦଖେଳ, ଛାୟାପଥ, ରାଗବିରାଗ |
| ୬୫ | ବିଜୟ ନାୟକ | ୧୯୬୦ | ଆଦ୍ୟ ଆଷାଢ଼, ଅନେକଦିନ ପରେ ବର୍ଷା, ଗୋଟିଏ ରୋମାଣ୍ଟିକ୍ ଦୁର୍ଘଟଣା |
| ୬୬ | ଦୀପ୍ତିରଂଜନ ପଟ୍ଟନାୟକ | ୧୯୬୧ | କୋଟିବ୍ରହ୍ମାଣ୍ଡ ସୁନ୍ଦରୀ |
| ୬୭ | ପ୍ରଦୀପ କୁମାର ଦାଶ | ୧୯୬୧ | ଘୁମ୍ ପାହାଡ଼ର ନଈ, ବର୍ବର, ମୀମାଂସା |
| ୬୮ | ଅନୀଲ କୁମାର ଦାସ | ୧୯୬୧ | ଶୂନ୍ୟ କୋଠରିର ଠିକଣା |
| ୬୯ | ଆଭାସ କୁମାର ବରାଳ | ୧୯୬୧ | ନାନୁ |
| ୭୦ | ଗଂଗାଧର ବିଶ୍ୱାଳ | ୧୯୬୨ | ସୁନୀଅପା ଓ ଅନ୍ୟମାନେ |
| ୭୧ | ମାୟାଧର ସାହୁ | ୧୯୬୨ | ମାଟି |
| ୭୨ | ପବିତ୍ର ପାଣିଗ୍ରାହୀ | ୧୯୬୩ | ପ୍ରେମିକର ଦଶାବତାର, ଖରାପପାଗ |
| ୭୩ | ଅରବିନ୍ଦ ରାୟ | ୧୯୬୪ | ଦି'ପାଦ ପୃଥିବୀ, ଅନ୍ତରଙ୍ଗ ମଣିଷ |
| ୭୪ | ଦେବାଶିଷ ପାଣିଗ୍ରାହୀ | ୧୯୬୫ | ଅତୀନ୍ଦ୍ରିୟ, ତଥାକଥିତ |
| ୭୫ | ପାରମିତା ଶତପଥୀ | ୧୯୬୫ | ଭାଷାକ୍ଷରା, ବିରଳରୂପକ, ବିବିଧ ଅସ୍ୱପ୍ନ |
| ୭୬ | କ୍ଷୀରୋଦ ଦାସ | ୧୯୬୫ | ଭୋକ, ଅସୁସ୍ଥ ସମୟ |
| ୭୭ | ଦେବପ୍ରସାଦ ଦାଶ | ୧୯୬୬ | ଇନ୍ଦ୍ରଧନୁର ରଙ୍ଗ, ଗଜପତି, ମୁହଁ |
| ୭୮ | କୃଷ୍ଣ କୁମାର ମହାନ୍ତି | ୧୯୬୬ | ପ୍ରିୟପ୍ରିୟ, ଶ୍ୟାମଳୀ ଦାସ ଓ ଅନ୍ୟାନ୍ୟ ଗଳ୍ପ |
| ୭୯ | ଚିରଶ୍ରୀ ଇନ୍ଦ୍ରସିଂ | ୧୯୬୬ | ବେଙ୍ଗବତୀ କଥା, ସପ୍ତାରଣ୍ୟ |
| ୮୦ | ହିରଣ୍ମୟୀ ମିଶ୍ର | ୧୯୬୮ | ପ୍ରଥମ, ଗୋଟିଏ ବର୍ଷାରତୁର କାହାଣୀ |
| ୮୧ | ଅନୀଲ କୁମାର ପାଢ଼ୀ | ୧୯୬୯ | ଏକ ବିସ୍ଫୋରଣର ଅପେକ୍ଷାରେ ସୋପାନ |
| ୮୨ | ଗନ୍ତାୟତ ଶିବପ୍ରସାଦ | ୧୯୬୯ | ବୟସ ବସନ୍ତର ସକାଳ, ମନ୍ତ୍ରୀ ଦୁହିତାଙ୍କ ସ୍ୱୟମ୍ବର |
| ୮୩ | ଆଦିତେଶ୍ୱର ମିଶ୍ର | ୧୯୭୦ | ଗୋଟିନା, ଆମେ କୁଆଡ଼େ ଯିବା ଶକୁନ୍ତଳା |
| ୮୪ | ମମତାମୟୀ ଚୌଧୁରୀ | ୧୯୭୦ | ନିବିଡ଼ ନିର୍ଜନତା |
| ୮୫ | ଆଶିଷ କୁମାର ଗଡ଼ନାୟକ | ୧୯୭୪ | ଭାତ ଓ ଅନ୍ୟାନ୍ୟ ଗଳ୍ପ |
| ୮୬ | ତପନ କୁମାର ମହାପାତ୍ର | ୧୯୭୪ | ଛବିର ମଣିଷ |



# ଶ୍ରେଷ୍ଠ ଗଳ୍ପ

ସଂପାଦନା :

**ଚନ୍ଦ୍ରଶେଖର ଦାସବର୍ମା**

**ପଦ୍ମଜ ପାଳ**

**ଓଡ଼ିଶା ସାହିତ୍ୟ ଏକାଡେମୀ**

**୨୦୦୫**

## ସୂଚୀପତ୍ର

# ଛେଳି

## ଯଦୁନାଥ ଦାଶ ମହାପାତ୍ର

ସେଇ ପୋଲ ପାଖରେ ପହଂଚିଲେ ତାଙ୍କ ଦେହଟା ଶୀତେଇ ଉଠେ ।

ପବିତ୍ର କୁଶଭଦ୍ରା ନଦୀ । ଅପଭ୍ରଂଶରେ କୁଆଖାଇ । ତା'ରି ପୋଲ ତଳେ ପ୍ରତିଦିନ ଅପରାହ୍ଣରେ ଯୋଉ ଡଜନ ଡଜନ ଛେଳି ବନ୍ଧା ହେଇଥା'ନ୍ତି, ସନ୍ଧ୍ୟା ହେବାବେଳକୁ ସେ ଗୁଡ଼ିକର ସତ୍ତା ଆଉ ନଥାଏ । ରାଜଧାନୀକୁ ଜଳ ଯୋଗାଣ ପାଇଁ ଯେଉଁ ଟନେଲ୍‌ସବୁ ତିଆରି ହେଇଚି, ସେଇ ଟନେଲ୍ ତଳର ବାଲି ପ୍ରତିଦିନ ତାଜା ରକ୍ତରେ ଭିଜେ ଓ ସେଠି ଛ'ଇଞ୍ଚ ବହଳର ନାଲି ରକ୍ତ ଜମାଟ ବାନ୍ଧି ପଥର ପାଲଟିଯାଏ ।

ଜୟକୃଷ୍ଣବାବୁ ପ୍ରତିଦିନ ତିନିଟା ବେଳେ ନିଜ କାର୍‌ରେ ଭୁବନେଶ୍ୱରରୁ କଟକ ଯାଆନ୍ତି । କାର୍ ସେଇ ଜାଗାଟାରେ ପହଂଚିବା ମାତ୍ରେ ସ୍ୱତଃ ତାଙ୍କ ଆଖି ସେ ଆଡ଼କୁ ଟାଣି ହେଇଯାଏ । ଛେଳିଟାକୁ କାଟିବା ସମୟରେ ସେଇ ତା'ର କଲବଲ ଅବସ୍ଥା ଦେଖି ଦେଖି ମାଂସ ଖାଇବା ପାଇଁ ତାଙ୍କ ମନରେ ବିରାଗ ଜନ୍ମି ଯାଇଥିଲା । କେତେବେଳେ ସେ ଦେଖନ୍ତି ଛେଳିଗୁଡ଼ାକ ଭିତରୁ ଗୋଟାଏ ଛେଳିର ଚାରିଟିଯାକ ଗୋଡ଼କୁ ଧରି ଘାତକ ତାକୁ ଶୂନ୍ୟରେ ଟେକିନେଇ ତଳେ ଚିତ୍ କରି ଆଣ୍ଠୁରେ ମାଡ଼ି ବସି ବେକ ତଳେ ଛୁରି ଚଳେଇ ଦେଉଚି– ଆଉ ବା କେତେବେଳେ ଚମଡ଼ା ଛାଲି ଆଣୁଚି ଆଉ ଗରାଖକୁ କହୁଚି– ''ଖାଣ୍ଟି ଖାସି ମାଂସ– ଏମିତିକା ମାଂସ ଜୀବନରେ ଖାଇ ନଥିବ ।''

କୁଆଖାଇର ଉପକଣ୍ଠରେ ଶୈବକ୍ଷେତ୍ର ଭୁବନେଶ୍ୱର । ଦୂରାଗତ ବସ୍‌ଯାତ୍ରୀ ପର୍ଯ୍ୟଟକମାନେ ଏଇ ପୋଲ ପାଖରେ ପହଞ୍ଚିଲେ ''ଜୟ ଶିବ ଶମ୍ଭୁ, ବଂ ବଂ ଭୋଳାନାଥ' ପାଟି କରି ଏଇ ନଦୀ ଗର୍ଭକୁ ପଇସା ଫିଙ୍ଗନ୍ତି ଓ ଏଇଠୁ ପୁଣି ସ୍ୱପ୍ନ ଦେଖନ୍ତି, ଯା' ପରେ ଶ୍ରୀକ୍ଷେତ୍ର –ଜଗନ୍ନାଥ ଦର୍ଶନ ଆଉ ବେଶୀ ଡେରି ନୁହେଁ ।

ଏଇ ବାଟ ଦେଇ କିଏ ନ ଯାଉଛି ? ନୈଷ୍ଠିକ ନିରାମିଷାଶୀ ସାଧୁ ସନ୍ଥ ବୈଷ୍ଣବ, ଉଚ୍ଚ ପଦସ୍ଥ ସରକାରୀ କର୍ମଚାରୀ, ନେତା, କିଏ ନ ଯାଉଛି ? ପ୍ରତିଦିନର ଏଇ ନାରକୀୟ ଦୃଶ୍ୟ କାହାରି ଆଖିରେ କ'ଣ ପଡୁନାହିଁ ?

ଚାରିଟା ପରେ ସେଇଠି କେତେ ସାଇକେଲ୍, ସ୍କୁଟର୍, ମଟର ସାଇକେଲ୍, କାର୍ ଜମା ହୁଏ । ଜାତୀୟ ରାଜପଥ ପାଖରେ ଧାଡ଼ି ଧାଡ଼ି ହେଇ ମାଂସ ଦୋକାନମାନଙ୍କରେ ଚମଡ଼ା ଛେଲି ହେଇଥିବା ମଲା ଛେଳିଗୁଡ଼ାକ ମାଳାମାଳ ହେଇ ଟଙ୍ଗା ହେଇଥା'ନ୍ତି । ବଡ଼ ବଡ଼ ଲୋକେ ହିଁ ନିଜ ପସନ୍ଦ ମୁତାବକ ଭଲ ମାଂସ ଆଣିବେ ବୋଲି ସେଠିକି ଯାଆନ୍ତି ଓ ପରସ୍ପର ମଧ୍ୟରେ ଝଗଡ଼ା ବି ଲାଗନ୍ତି । ପାଞ୍ଚବର୍ଷ ତଳେ ଏଇଠି ପାଞ୍ଚଟା ଦୋକାନ ଥିଲା । ଆଜି ହେଲାଣି ପନ୍ଦରଟା । ଏଠିକି

ଆସୁଥିବା ଗରାଖମାନଙ୍କର ଅନ୍ୟ ଚାହିଦା ମେଣ୍ଟାଇବା ପାଇଁ ବସିଲାଣି ଚାହା, ବିଡ଼ି ସିଗାରେଟ୍, ପାନ, ଜଳଖିଆ ଦୋକାନ । ଏବେ ଦେଖାଯାଉଛି ତା'ରି ପାଖରେ ପଥର ପାଚେରି ଦିଆଯାଇ ସାଇନ୍‌ବୋର୍ଡ ମରା ଯାଇଛି- 'Site for Hotel Lingaraj'

ଜୟକୃଷ୍ଣବାବୁଙ୍କ ଘର ପୁରୁଣା ଭୁବନେଶ୍ୱର ପୋଷ୍ଟାଫିସ୍ ପାଖରେ । ଲିଙ୍ଗରାଜ ମନ୍ଦିରଠାରୁ ବା କେତେ ବାଟ ? ସେ ତାଙ୍କର କର୍ମମୟ ଜୀବନରେ ଯାହା କିଛି କରିଥାନ୍ତୁ ନା କାହିଁକି । ତାଙ୍କର କର୍ମ ପାଇଁ ଲୋକେ ତାଙ୍କୁ ନିନ୍ଦା ପ୍ରଶଂସା ଯାହା କରିଥା'ନ୍ତୁ ନା କାହିଁକି ମାତ୍ର ବର୍ତ୍ତମାନ ସତୁରି ଟପିଥିବା ବୟସରେ ସେ ପୂଜାପାଠ, ଦେବାର୍ଚ୍ଚନାରେ ମନୋନିବେଶ କରିଛନ୍ତି । ପ୍ରତ୍ୟହ ସକାଳେ ସ୍ନାନ ସାରି ମଠାଲୁଗା ପିନ୍ଧି ସେ ମନ୍ଦିର ଯାଆନ୍ତି । ଲିଙ୍ଗରାଜଙ୍କ ଉପରେ ଜଳ ଢାଳନ୍ତି । ବଡ଼ ପାଟିରେ ମନ୍ତ୍ର ଆଉଡାନ୍ତି । ବେଳ ବେଳେ ଏପରି ତନ୍ମୟ ହେଇଯା'ନ୍ତି ଯେ ତାଙ୍କ ସାଙ୍ଗରେ ଆସିଥିବା ଛୋଟ ଛୋଟ ନାତିନାତୁଣୀମାନେ ହାଉଳି ଖାଇଯା'ନ୍ତି । ମନ୍ଦିରର ମୁଖଶାଳାରେ ହାତଯୋଡ଼ି 'ହେ ପ୍ରଭୁ ଲିଙ୍ଗରାଜ, ହେ ପ୍ରଭୁ ଲିଙ୍ଗରାଜ' କହି ଚଟାଣଟା ଉପରେ ଏ ପାଖରୁ ସେ ପାଖ ଗଡ଼ନ୍ତି ଯେ ଦର୍ଶନ କରୁଥିବା ଯାତ୍ରୀମାନେ ଆଡ଼େଇ ହେଇଯାଆନ୍ତି । ସତୁରି ବର୍ଷ ପରେ ମଣିଷର ଭୋଗଲିପ୍‌ସା ଆଉ ବା କ'ଣ ଥାଇପାରେ ? ଡକ୍ଟର ରାଧାକ୍ରିଷ୍ଣନ୍ ଥରେ କୁଆଡ଼େ କହିଥିଲେ : ଷାଠିଏ ବର୍ଷ ପାରିହେଇ ଯିବା ପରେ ମଣିଷ ଜୀବନରେ ପ୍ରତ୍ୟେକ ବର୍ଷଟା ହିଁ ଅନୁକମ୍ପାର ବର୍ଷ । ସେଇମିତି ସତୁରି ପାରି ହେଇ ଯିବା ପରେ ପ୍ରତ୍ୟେକ ମାସ ଓ ଅଶୀ ପାରି ହେଇ ଯିବା ପରେ ପ୍ରତ୍ୟେକ ଦିନ ହିଁ ତା' ପାଇଁ ଅନୁକମ୍ପାର ସମୟ । ଏଇ ସମୟରେ ମଣିଷ ସତ୍‌କର୍ମ କଲେ ଈଶ୍ୱର ତା' ଜୀବନକାଳକୁ ବଢ଼େଇଦେଇ ପାରନ୍ତି । ଆଉ ଯଦି ସତ୍‌କର୍ମ ନକରି ସେ ଦୁଷ୍କର୍ମ କରେ ସେଇ ସମୟଟାକୁ ସେ କାଣ୍ଟଛାଣ୍ଟ କରିଦେଇ ପାରନ୍ତି ।

ଜୟକୃଷ୍ଣ ବାବୁ ଜୀବନର ଏଇସବୁ ଗୂଢ଼ତତ୍ତ୍ୱ ଜାଣିଯିବା ପରେ ମାଛମାଂସ ଖାଇବା ଛାଡ଼ି ଦେଇ ସାତ୍ତ୍ୱିକ ଆହାର, ସାତ୍ତ୍ୱିକ ଚିନ୍ତାରେ ମନୋନିବେଶ କରିଛନ୍ତି । ପ୍ରତ୍ୟେକଟି ସୋମବାର ଅନନ୍ତ ବାସୁଦେବ ମନ୍ଦିରରୁ ପ୍ରସାଦ ଆସେ । ସେଇ ଦିନ ସେ ଏକା ନୁହେଁ ପରିବାରର ସମସ୍ତେ ବାଧ୍ୟ ହେଇ ପ୍ରସାଦ ସେବନ କରନ୍ତି । ପ୍ରତ୍ୟେକ ସୋମବାରରେ ସ୍ତ୍ରୀ ବୋହୂ ଝିଅମାନଙ୍କୁ ନେଇ ପୂଜା ପାଇଁ ମନ୍ଦିରକୁ ଯାଆନ୍ତି ।

ଜୟକୃଷ୍ଣ ବାବୁଙ୍କର କଟକସ୍ଥ ଖପୁରିଆ ଶିଳ୍ପାଞ୍ଚଳରେ ଗୋଟିଏ ଶିଳ୍ପ କାରଖାନା ଅଛି । ଯଦିଓ ବଡ଼ପୁଅ ଏବେ ତା' ଦାୟିତ୍ୱରେ ରହି ସବୁ ବୁଝାସୁଝା କରୁଛି ଓ ସେଠି ଆଜି ଜୟକୃଷ୍ଣ ବାବୁଙ୍କର ଆବଶ୍ୟକତା ନାହିଁ । ତଥାପି ଅଭ୍ୟାସବଶତଃ ପ୍ରତିଦିନ ଦୁଇ ତିନି ଘଣ୍ଟା ପାଇଁ ସେ ସେଠାକୁ ଯାଆନ୍ତି । ତାଙ୍କ ବସିବା ପାଇଁ ଗୋଟାଏ ଶୀତତାପନିୟନ୍ତ୍ରିତ କୋଠରି ସେଠାରେ ଅଛି । ସେଇଠି ସେ ପହଂଚିବା ବେଳକୁ ଆଖପାଖର କିଛି ବନ୍ଧୁ ଆସି ଜୁଟନ୍ତି । ଏଣୁତେଣୁ ଗଳ୍ପ ହୁଏ । ତା'ରି ଭିତରେ ଯଦି ଆବଶ୍ୟକ ମନେ କରନ୍ତି, ବ୍ୟବସାୟ ସଂପର୍କରେ ଦୁଇଚାରି କଥା ବୁଝି ନିଅନ୍ତି । ଛ' ସାଢ଼େ ଛ' ବେଳକୁ ଗାଡ଼ିରେ ବସନ୍ତି ଭୁବନେଶ୍ୱର ପ୍ରତ୍ୟାବର୍ତ୍ତନ ପାଇଁ । ଖରା ବର୍ଷା ଶୀତ ସବୁ ଋତୁରେ ସବୁ ଦିନରେ ସେ ଯାଆନ୍ତି । ଗତ ପାଞ୍ଚବର୍ଷ ହେଲା ଦୈହିକ ଅସୁସ୍ଥତା କାରଣରୁ କୌଣସି ଦିନ ସେ ବନ୍ଦ ହୋଇନାହାନ୍ତି । ଏଇ କଥା ଯେତେବେଳେ କେହି ତାଙ୍କ ଦୃଷ୍ଟିକୁ ଆଣନ୍ତି, ସେ ସଗର୍ବ ଘୋଷଣା କରନ୍ତି ଯେ' ତାଙ୍କ ପିଲାଦିନେ ଖାଲି ଖାଣ୍ଟି ଜିନିଷ ଖାଇବାକୁ ମିଳୁଥିଲା । ତେଣୁ ଏ ବୟସରେ ବି ସେ ନୀରୋଗ । ଏବେ କିଂତୁ ସବୁ ଭେଜାଲ୍ । ସେ ନିଜେ

ନିରାମିଷ ଖାଉଥିଲେ ହେଁ ତାଙ୍କ ଘରକୁ ମାଛ, ଛେଳି, କୁକୁଡ଼ା ମାଂସ ଯାଏ । ତାଙ୍କ ସାନପୁଅ ତ ବିନା ମାଛ ମାଂସରେ ଖାଇ ପାରେନା । ସେଇଥିପାଇଁ ଅଧିକାଂଶ ସୋମବାରରେ ଘରେ ନଖାଇ ସେ ହୋଟେଲ୍‌ରେ ଖାଏ । ଜୟକୃଷ୍ଣ ବାବୁଙ୍କର ଖାଦ୍ୟାଭ୍ୟାସକୁ ପରିବାରର ଯେଉଁମାନେ ସ୍ୱେଚ୍ଛାରେ ଗ୍ରହଣ ନ କରନ୍ତି, ସେଥିପାଇଁ ସେ କାହାରି ଉପରେ ବାଧ୍ୟବାଧକତାର ଚାପ ପକାନ୍ତି ନାହିଁ । ସତ କହିବାକୁ ଗଲେ ତାଙ୍କ ଜୀବନକାଳ ଭିତରେ ସେ' ବି ଅତ୍ୟଧିକ ମାଂସାସୀ ଥିଲେ । ଖୋଲାଖୋଲି ଭାବରେ କହୁଥିଲେ ବିନା ମାଂସରେ କୁଭୋଜନ । କିଂତୁ ଏଇ କେତେବର୍ଷ ହେଲା ସେଇ କୁଆଖାଇ ପୋଲ ପାଖରେ ଛେଳିକଟାର ନିର୍ମମ ଦୃଶ୍ୟ ଦେଖି ଦେଖି ମାଂସ ଖାଇବା ଅଭ୍ୟାସ ଛାଡ଼ି ଦେଲେ । ମାଂସ ଛାଡ଼ିବା ପରେ କିଛିଦିନ ମାଛ ଖାଉଥିଲେ ମାତ୍ର କାଳକ୍ରମେ ସେ ଅଭ୍ୟାସ ବି ପରିତ୍ୟାଗ କଲେ ।

ସେଦିନ କଟକ ଯିବା ବାଟରେ ଆଗରେ ଯାନ ଜାମ୍ ଥିବାରୁ ଠିକ୍ ସେଇ ଜାଗାଟାରେ ତାଙ୍କ କାର୍‌ଟା ଠିଆ ହେଇଗଲା । ସ୍ୱତଃ ସେଇ ଟନେଲ୍ ତଳେ ବନ୍ଧା ହେଇଥିବା ଛେଳିମାନଙ୍କ ଆଡ଼କୁ ତାଙ୍କ ଆଖି ଟାଣି ହେଇଗଲା । ସୁନ୍ଦରୀ ଝିଅଟିଏ ବେକରେ ଦଉଡ଼ି ବନ୍ଧା ହେଇଥିବା ଛେଳିଟାକୁ ଟାଣିଟାଣି ନେଉଚି ଏବଂ ସେଇ ଟନେଲ୍ ତଳେ ଛେଳିକୁ କାଟିବା ପାଇଁ ଲୋକଟା ଛୁରିଟାକୁ ପଥରରେ ଘଷୁଚି । ଜୟକୃଷ୍ଣବାବୁ ସ୍ପଷ୍ଟ ବୁଝି ପାରିଲେ ଛେଳିଟା ଯେମିତି ସେଇ ଜାଗାଟାକୁ ଯିବାକୁ ଏକଦମ୍ ଅମଙ୍ଗ । ସେଇ ଦୂରରୁ ସେ ଛେଳି ଆଖିର ଲୁହକୁ ଅବା ଦେଖି ପାରିଲେ । ଝିଅଟା ତା' ଦେହର କିଛିଟା ଶକ୍ତି ବ୍ୟୟ କରି ତାକୁ ଟାଣି ନେଉଛି । ଛେଳି ମେଁ ମେଁ ଚିତ୍କାର କରୁଚି । ବନ୍ଧା ହେଇଥିବା ଜାଗାରେ ଆଉ ଛେଳିମାନେ ହୁଏତ କିଛି ବୁଝିନପାରି ତାଙ୍କ ପାଖରେ ପଡ଼ିଥିବା ପତ୍ର ଚୋବାଉଛନ୍ତି । କୌଣସି ଏକ ସମୟରେ ସେମାନଙ୍କର ମଧ୍ୟ ଯେ' ଏଇ ଦଶା ଘଟିବ ନିରୀହ ପଶୁମାନେ ତାହା ହୁଏତ ବୁଝିପାରୁ ନାହାନ୍ତି ।

ହଠାତ୍ ଟାଣୁଥିବା ଝିଅଟାର ହାତରୁ ଦଉଡ଼ିଟା ଖସିଗଲା । ଛେଳିଟା ଅତର୍ଛିଆ ହେଇ ଏମୁହାଁ ସେ ମୁହାଁ ଧାଇଁବାକୁ ଲାଗିଲା । ଝିଅଟାର ପାଟି ଶୁଣି ଛୁରି ପକାଉଥିବା ଲୋକଟା ଉଠିପଡ଼ି ଛେଳିଟା ପଛରେ ଗୋଡ଼ାଇଲା । ଜୟକୃଷ୍ଣ ବାବୁ ହଠାତ୍ କାର୍‌ର ଦରଜା ଖୋଲି ତଳକୁ ଓହ୍ଲାଇପଡ଼ି ସେଇ ଆଡ଼କୁ ଧାଇଁଲେ । ତାଙ୍କ ଡ୍ରାଇଭର୍ ତାଙ୍କର ଏ ଅବସ୍ଥା ଦେଖି ତଟସ୍ଥ ହେଇ ସେ ବି ଗାଡ଼ିରୁ ଓହ୍ଲାଇ ବାବୁଙ୍କ ପଛେ ପଛେ ଧାଇଁବାକୁ ଚାହିଁବା ବେଳକୁ ଆଗରେ ସ୍ଥିର ହେଇ ରହିଯାଇଥିବା ଯାନଗୁଡ଼ାକ ଚାଲିବାକୁ ଆରମ୍ଭ କଲା । ନଦୀ ପୋଲ ଆରମ୍ଭ ଜାଗାଟାରେ ଗାଡ଼ିକୁ କ'ଣ କେଉଁଠି ଆଡେଇ କରି ରଖି ହେବ ? ବାବୁ ଏଣେ ଛେଳି ପାଖରେ ଯାଇ ପହଂଚିଲେଣି । ପଛରେ ଜମା ହେଇ ଯାଇଥିବା ଗାଡ଼ିଗୁଡ଼ାକ ପେଁ ପାଁ ହର୍ଣ୍ଣ ମାରି ଆଗଗାଡ଼ି ଯିବା ପାଇଁ ଅସ୍ଥିର ହେଇ ଉଠିଲେଣି । ପୋଲ ପାରକରି ଗାଡ଼ିକୁ ହୁଏତ ରଖିହେବ ବା ପୋଲ ପାର ହେବାପରେ ଗାଡ଼ିକୁ ବୁଲେଇଆଣି ଏ ମୁଣ୍ଡରେ ପୋଲ ବାହାରେ ପୁଣି ରଖାଯାଇ ପାରିବ । ଅଗତ୍ୟା ଗାଡ଼ିକୁ ସେଇ ଜାଗାରେ ରଖିବାର ଭରସା ନ ପାଇ ଷ୍ଟାର୍ଟ କରି ସେ ଆଗେଇଲା । ଆଖି ତା'ର ବାବୁଙ୍କ ଉପରେ । ଛୁରି ହାତରେ ଧରିଥିବା ଲୋକଟା ଓ ବାବୁ ପାଖାପାଖି ହେଇଗଲେଣି । ସପ୍ତରଥୀ ଅଭିମନ୍ୟୁକୁ ଘେରିବା ଭଳି ସଡ଼କ ଉପରୁ ଆଉ କିଛି ଲୋକଯାଇ ଛେଳିକୁ ଓଗାଳିବାକୁ ଚେଷ୍ଟା କରୁଛନ୍ତି । ଡ୍ରାଇଭର୍ ପୋଲ ପାରିହେଇ ଗାଡ଼ିକୁ ପୁଣି ଫେରାଇ ଆଣି ପୋଲର ଏପାଖକୁ ଆସି ଗାଡ଼ିକୁ ପୁଣି ଠିଆ କରେଇଦେଲା । ଫଟାଫଟ୍ ଗାଡ଼ିରୁ ଓହ୍ଲାଇ ପଡ଼ି ସେ ବି ଧାଇଁଲା ସେଇ ଆଡ଼କୁ ଯୋଉଠି ମଣିଷର ଘେର ଭିତରେ ଛେଳିଟା ବିକଳ ହେଇ ଏ ଆଡ଼େ ସେ ଆଡେ ଧାଉଁଥାଏ । ଛେଳିର

ମାଲିକ ଦଉଡ଼ିଟାକୁ ଧରିନେଇ ଛେଳିର ଏଇ ଫାଜିଲାମି ପାଇଁ ତାକୁ ଶାସ୍ତି ଦେବାକୁ ଦଉଡ଼ିଟାକୁ ଉପରକୁ ଟେକିଦେଇ ଛେଳିଟାକୁ ଶୂନ୍ୟକୁ ଉଠେଇ ତଳେ ଧଡାସ୍‌କିନା କଚାଡ଼ିଦେଲା । ଆହା, ଛେଳିର ସେ କି ମେଁ ମେଁ କରୁଣ କାନ୍ଦଣା । ତା'ପରେ ଲୋକଟା ଛେଳିଟାକୁ ଆଉ ଚାଲିବାର ସୁଯୋଗ ନଦେଇ ତାକୁ ଘୋଷାରି ଘୋଷାରି ଟନେଲ୍ ପାଖକୁ ନେଇଗଲା । ଦେଖଣାହାରୀମାନେ ପୁଣି ଜାତୀୟ ରାଜପଥ ଉପରକୁ ଚାଲିଗଲେ । ଜୟକୃଷ୍ଣବାବୁ କିନ୍ତୁ ଗଲେ ନାହିଁ । ସେ ଟନେଲ୍ ପାଖକୁ ଯାଇ ଛେଳିର ବେକ ପାଖକୁ ଛୁରି ନେଉଥିବା ଲୋକଟାକୁ କହିଲେ-

''ଏ ଭାଇ; ଟିକିଏ ରହ ।''

ଲୋକଟାର ହାତ ସ୍ଥିର ହେଇଗଲା । ସେ ଟିକିଏ ବିରକ୍ତ ହେଇ କହିଲା- ''କାହିଁକି ?''

ଜୟକୃଷ୍ଣବାବୁ କହିଲେ- ''କାଲି ଆମ ଘରେ ଗୋଟାଏ ଭୋଜି ଅଛି । ଛେଳିଟାକୁ ମୁଁ ପୂରା କିଣିନେବି । ତୁ ତାକୁ ମାରନା ଜିଅନ୍ତା ମୋତେ ଦେଇ ଦେ ।''

ସେ କହିଲା- ''ତମେ ତା' ଭିତରୁ ଆଉ ଗୋଟେ ବାଛ । ଏଇ ଖାସିର ମାଂସରୁ ପାଞ୍ଚ କେ.ଜି. ନେବେ ବୋଲି ଅନ୍ୟ ଜଣେ ବାବୁ ବାଛିଛନ୍ତି ।''

ଟିକିଏ ଦୂରରେ ଠିଆ ହେଇ ଅନ୍ୟଜଣକ ସହିତ କଥା ହେଉଥିବା ଜଣେ ବାବୁଙ୍କ ଆଡ଼କୁ ହାତ ଦେଖେଇ ସେହି ବାବୁ ନେବେ ବୋଲି ତାଙ୍କୁ ଚିହ୍ନେଇ ଦେଲା ।

ଜୟକୃଷ୍ଣବାବୁ କହିଲେ- ''ରହ, ମୁଁ ସେ ବାବୁଙ୍କୁ କହୁଚି । ମୁଁ ଯେତେବେଳେ ପୂରାଟାକୁ ନବାକୁ ଚାହୁଁଚି, ସେ ବରଂ ଅନ୍ୟ ଛେଳିରୁ ବାଛନ୍ତୁ । ଆଉ ଶୁଣ, ଏ ଛେଳି ପାଇଁ ଅଧିକ ଯାହା ଦାମ୍ ନେବୁ, ମୁଁ ଦେବି । ମୋର ଏଇଟି ଦରକାର ।''

ମାଂସବାଲା କହିଲା- ''ତମେ ଯାଇ ବାବୁ ତାଙ୍କୁ କୁହ । ସେ ଯଦି ରାଜି ହୁଅନ୍ତି...''

ସେ ବାବୁ କିଂତୁ ରାଜି ହେଲେ ନାହିଁ । ଓଲଟି ମାଂସବାଲାକୁ ଯାଇ କହିଲେ- ''ମୋ ସାଙ୍ଗରେ କ'ଣ ଖେଳୁଚୁ ? ତୁ ଦବୁ ନା ନାହିଁ ? ନ ହେଲେ ମୁଁ ଅନ୍ୟ ଦୋକାନରୁ ନେଇଯିବି ।''

ମାଂସବାଲା କହିଲା- ''ଏମ୍‌ତି ଧମକଉଛ କ'ଣ ହେ ବାବୁ ? ଅନ୍ୟ ଦୋକାନରୁ ନବତ ନେଇ ଯାଅ । ତମ ଭଳି ଗରାଖ ମୁଁ ବହୁତ ଦେଖିଚି ।''

ବାବୁ ଜଣକ ରାଗ ତମ୍ ତମ୍‌ରେ ମାଂସବାଲାକୁ ପରେ ଦେଖିନେବେ କହି ଚାଲିଗଲେ ।

ଜୟକୃଷ୍ଣ ବାବୁ ଆଶ୍ୱସ୍ତିର ନିଃଶ୍ୱାସ ମାରି ଛେଳିର ଦାମ୍ ଚୁକ୍ତି କରି ଡ୍ରାଇଭର୍ ସାହାଯ୍ୟରେ ଛେଳିଟାକୁ ଗାଡ଼ି ପାଖକୁ ନେଇଗଲେ । ଆଉ ଇଚ୍ଛା ହେଲା ନାହିଁ କଟକ ଯିବାକୁ । ଯଦିଓ ଏଇ ଛେଳିଟାକୁ ସେ ଉଦ୍ଧାର କଲେ, କିଂତୁ ଏଇ ଗୋଟିକୁ ଉଦ୍ଧାର କରିବା ଦ୍ୱାରା ଅନ୍ୟ ସମସ୍ତେ ଉଦ୍ଧାର ପାଇଗଲେ କି ? ଏ' ଛେଳିଟା କଟା ହୋଇଥିଲେ ଅନ୍ୟ ଗୋଟିଏ ଛେଳିର ଆୟୁଷ ଅଧଘଣ୍ଟାଏ ବଢ଼ିଥା'ନ୍ତା । ମାତ୍ର ସେ ଏଇଟିକୁ ନେଇ ଆସିବା ଫଳରେ ଅନ୍ୟର ଆୟୁଷ ଅଧଘଣ୍ଟାଏ କମିଗଲା । ଏଇ ତ, ମାଂସବାଲା ଆଉ ଗୋଟାଏ ଛେଳିକୁ ଟାଣି ଟାଣି ନେଉଚି । ଜୟକୃଷ୍ଣ ବାବୁ ଯାଇ ସେଟାକୁ ବି ଉଦ୍ଧାର କରି ଆଣିବେ କି ? କିଂତୁ ସବୁ ଛେଳିଙ୍କୁ ସବୁଦିନ ପାଇଁ ସେ କ'ଣ ହାଣ ମୁହଁରୁ ବଂଚେଇ ରଖି ପାରିବେ ନା ମାଂସାସୀମାନଙ୍କର ମାଂସଖିଆ ଅଭ୍ୟାସ ଛଡ଼େଇଦେଇ ପାରିବେ ? ଛେଳିଟାକୁ ଗାଡ଼ି ଭିତରକୁ ଉଠେଇ ନେଇ ସେ ଡ୍ରାଇଭରକୁ କହିଲେ- ''ଘରକୁ ଫେରିଯିବା ।''

ଡ୍ରାଇଭର୍ ପୁଣି ବିପରୀତ ଦିଗକୁ ଗାଡ଼ି ବୁଲେଇ ଚାଲିଲା । ଜୟକୃଷ୍ଣ ବାବୁଙ୍କ ମନରେ ସୁଖ ଆଉ ଦୁଃଖର ମିଶ୍ର ଅନୁଭୂତି । ଘର ପାଖରେ ପହଞ୍ଚି ଡ୍ରାଇଭରକୁ ନିର୍ଦ୍ଦେଶ ଦେଲେ ଛେଳିଟାକୁ

ଗେରେଜ୍‌ପାଖ ଗଛରେ ବାନ୍ଧି ଦେବା ପାଇଁ । ସେ ଘର ଭିତରକୁ ଯାଇ ଦେଖିଲେ ତାଙ୍କର ମଝିଆଁ ପୁଅ ଯେ' ମିଲିଟାରୀରେ ଚାକିରି କରେ ଅପରାହ୍ଣ ଫ୍ଲାଇଟ୍‌ରେ ଆସି ପହଂଚିଛି । ତା' ସହିତ ତା'ର ଚାରିଜଣ ବଂଧୁ ପୁରୀ, କୋଣାର୍କ, ଚିଲିକା ପ୍ରଭୃତି ଦେଖିବା ପାଇଁ ଆସିଛନ୍ତି । ସେମାନଙ୍କୁ ଦେଖି ସେ' ଭାରି ଖୁସିହେଲେ ଓ କିଛିକ୍ଷଣ ପୂର୍ବରୁ ତାଙ୍କ ମନ ଆକାଶରେ ଉଡ଼ିବୁଲୁଥିବା ଦୁଶ୍ଚିନ୍ତାର ମେଘରୁ କ୍ଷଣକ ପାଇଁ ମୁକ୍ତି ପାଇ ସେ ପୁଣି ବାହାରକୁ ଚାଲିଗଲେ । ଏହି ସମୟଟା ସେ' ଘରେ ରହିପାରନ୍ତି ନାହିଁ । କଟକ ଯଦି ଯାଇ ନ ପାରିଲେ ଏଇଠି ରାଜଧାନୀରେ କୋଉ ବଂଧୁଘରକୁ ଯାଇ ଗପ ସପରେ କିଛି ସମୟ କଟେଇ, ସନ୍ଧ୍ୟାରେ ପୁଣି ମନ୍ଦିରରେ ଠାକୁର ଦର୍ଶନ କରି ସେ ଫେରିବେ ।

ରାଧାକୃଷ୍ଣ ବାବୁ ତାଙ୍କର ଅନ୍ତରଙ୍ଗ ବଂଧୁ । ତାଙ୍କରି ଘରକୁ ଯାଇ ସେ ଆଜି ଘଟିଯାଇଥିବା ଘଟଣା ଓ ସେ କିପରି ଗୋଟିଏ ନିରୀହ ଛେଳିକୁ ତା'ର ଜୀବନ ଥିବା ପର୍ଯ୍ୟନ୍ତ ଘାତକ କବଳରୁ ବଂଚେଇ ରଖି ପାରିଲେ ସେହି କଥା ଏମିତି ବିଷଦ ଭାବରେ ବର୍ଣ୍ଣନା କଲେ ଯେ' ରାଧାକୃଷ୍ଣ ବାବୁ ସ୍ୱଚକ୍ଷୁରେ ଇତିହାସ ସୃଷ୍ଟି କରିଥିବା ସେହି ଭାଗ୍ୟବାନ ଛେଳିଟିକୁ ଦେଖିବା ପାଇଁ ବ୍ୟଗ୍ର ହେଇ ଉଠିଲେ ।

ଦୁଇବଂଧୁ ମନ୍ଦିରରେ ଠାକୁର ଦର୍ଶନ କରି ସଂଧ୍ୟା ପ୍ରାୟ ସାଢ଼େ ସାତଟା ବେଳକୁ ଘରକୁ ଫେରିଲେ । ଘରେ ଗାଡ଼ି ପହଂଚିବାକ୍ଷଣି ଜୟକୃଷ୍ଣ ବାବୁ ଓହ୍ଲାଇପଡ଼ି ରାଧାକୃଷ୍ଣ ବାବୁଙ୍କୁ ସାଙ୍ଗରେ ଧରି ଗେରେଜ୍ ପାଖ ଗଛ ନିକଟକୁ ଧାଇଁଲେ, ତାଙ୍କ ବୀରତ୍ୱ କାହାଣୀର ସନ୍ତକଟିକୁ ତାଙ୍କୁ ଦେଖାଇବା ପାଇଁ । ମାତ୍ର ଏ କ'ଣ ? ଛେଳିଟା ନାହିଁ ଯେ...

ଜୟକୃଷ୍ଣବାବୁ ଚାରିଆଡ଼କୁ ଆଖି ପକେଇଲେ । ଆଉ କେଉଁଠି କିଏ ନେଇ ବାନ୍ଧି ଦେଇଥିବ ପରା । ମାତ୍ର କେଉଁଠି ହେଲେ ଛେଳିଟିର ପତ୍ତା ସେ ପାଇଲେ ନାହିଁ । ଗେରେଜ ପାଖ ଗଛ ତଳେ କିଛି ଛେଳି ଲଣ୍ଡି ପଡ଼ିଛି ମାତ୍ର ଛେଳିଟା କାହିଁ ?

ସାନପୁଅ ଘର ଭିତରୁ ବାହାରି ଆସିଲା ।

ପଚାରିଲା- ''କ'ଣ ଖୋଜୁଛ ବାପା ?''

''ଛେଳି । ସେହି ଛେଳିଟା । ଏଇଠି ବନ୍ଧା ହେଇଥିଲା । ଗଲା କୁଆଡ଼େ ?'' ଜୟକୃଷ୍ଣବାବୁ ପଚାରିଲେ ।

ସାନପୁଅ କହିଲା- ''ମଝିଆଁ ଭାଇ ଆଉ ତାଙ୍କ ମିଲିଟାରୀ ସାଙ୍ଗମାନେ ଆସିଥିବାରୁ ନରିଆ ଚାକର ହାତରେ ଛେଳିଟାକୁ କାଟି ଆଣିବା ପାଇଁ ପଠେଇ ଦେଇଛୁ । କଟକ ଫୋନ୍ କରି ବଡ଼ଭାଇଙ୍କି କହିଦେଇଛୁ ପିଲାମାନଙ୍କ ସହିତ ଆସିବା ପାଇଁ ।''

ହଠାତ୍ ଜୟକୃଷ୍ଣବାବୁଙ୍କ ଶିରା ପ୍ରଶିରାରେ ରକ୍ତର ପ୍ରବାହ ବନ୍ଦ ହେଇଗଲା ଯେମିତି । ତାଙ୍କ ମୁହଁଟା ବି ବିଷଣ୍ଣ ହେଇଗଲା । ଠିକ୍ ସେତିକି ବେଳକୁ ନରିଆ ଚାକର ମାଂସଭରା ବାଲ୍‌ତି ନେଇ ରିକ୍‌ସାରେ ପହଂଚିଲା । ଜୟକୃଷ୍ଣବାବୁଙ୍କ ମୁହଁରେ କଥା ନାହିଁ । ଗୋଟାଏ ଥୁଣ୍ଟା ଗଛ ପରି ସେ ନୀରବ, ନିସ୍ପନ୍ଦ । କାହାରିକୁ ଆଉ କିଛି କହିବାର ଆବଶ୍ୟକତା ସେ ଯେମିତି ଅନୁଭବ କରୁନଥିଲେ । ଛେଳିଟାର କରୁଣ ଚେହେରା ବାରବାର ତାଙ୍କ ଆଖି ଆଗରେ ଭାସି ଯାଉଥିଲା ଓ ତାଙ୍କର ମନେ ହେଉଥିଲା ସେ ନିଜେ ଯେମିତି କଟା ହେଇଯାଇଥିବା ସେଇ ନିରୀହ ଛେଳିଟି ।



# ନୂଆ ଶତାବ୍ଦୀର ଫଗୁଣ

## ଗୋପାଳ ଚନ୍ଦ୍ର ପଟ୍ଟନାୟକ

ପ୍ରଥମ ଶବ୍ଦଟି ଉଚ୍ଚାରିତ ହେବା ସବୁଠୁଁ କଷ୍ଟ । କ'ଣ କେମିତି ବୁଝେଇବି ମୁଁ ତାକୁ । କହିବି ସହିବା ଲୋକ ବଡ଼ ଲୋକ । ଓଲଟି ଚୋଟ ହାଣିଲେ ମଣିଷର ଓଜନ, ପାରିବାର ପଣିଆଁ ପ୍ରମାଣିତ ହୁଏ ନାହିଁ । ସବୁ ଅନ୍ୟାୟ ଅନାଚାରକୁ ନିର୍ବିରୋଧରେ ସହିଯା' । ନୀରବରେ ଖାଲି ସମସ୍ତଙ୍କର ଏମିତି କି ସମାଜର ପରମ ଶତ୍ରୁମାନଙ୍କୁ କ୍ଷମା କରିଯା', କରୁଣା କରିଯା' । ଏହା କ'ଣ ପୁରୁଷାକାର ! ସେଦିନ ମୁହଁ ଥମ ଥମ କରି ଗାଲ ଉପରେ ଶୁଖିଲା ଲୁହ ଦାଗକୁ ପଣତ କାନିରେ ପୋଛି ଆଣି ଏଡ଼େ ଏଡ଼େ ଢେଗା ଆଖିରେ ମତେ ପରଖିନେଇ ପଚାରିଲା ବିନ୍ଧ୍ୟା–

: ଏଇ କ'ଣ ଶଚି ଭାଇନା ଆପଣଙ୍କ ଏକବିଂଶ ଶତାବ୍ଦୀର ପ୍ରବେଶ ପଥ ?

ରାତି ସାଢ଼େ ଗୋଟାଏ । ଶୂନ୍‌ଶାନ୍ ଜଙ୍ଗଲ ଭିତର ଦେଇ ଘାଟି ଉହୁଙ୍କୁ ଥିବା ଜାତୀୟ ରାଜପଥ ଉପରେ ଫରେଷ୍ଟ ଚେକ୍‌ଗେଟ୍ ଏପାଖେ ଟ୍ରେକର୍‌ଟା ଅଟକେଇ ଦେଇଛନ୍ତି ପୁଲିସ୍ । ତାଗିଦ୍ କରୁଛନ୍ତି ଆଉ ଆଗକୁ ଯାଅ ନାହିଁ, ଡକାୟତ, ସନ୍ତ୍ରାସବାଦୀ, ନକ୍‌ସଲ୍ ଆତତାୟୀଙ୍କ ସାମ୍ରାଜ୍ୟ ଏଇଠୁଁ ସୁରୁ ହେଇଗଲା । ସଞ୍ଜ ଛଅଟା ପରେ ଯେତେ ବସ୍, ଲରି, ଯାନ ବାହାନ ଏଇଠୁ ପ୍ରାୟ ଛତିଶ କିଲୋମିଟର ରାସ୍ତାରେ ଯାଉଛନ୍ତି ସେଗୁଡ଼ାକୁ ଭାଙ୍ଗି ଜାଳି ଅଙ୍ଗାର କରି ଦଉଚନ୍ତି । ଲୁଟ୍‌ତରାଜ ଚାଲିଚି । ଜୀବନ ରହିବ ବୋଲି କିଛି ଗ୍ୟାରେଣ୍ଟି ନାହିଁ । ବୁଝିଲ । ପୁଲିସ୍‌ର ପହରା ଗାଡ଼ି ଦି' ଚାରିଟା ମଧ୍ୟ ପୋଡ଼ା ସରିଲାଣି । ଏମାନଙ୍କର ଖାସ୍ ମଉଛବ ହେଲା ପୁଲିସ୍‌ଙ୍କ ଉପରେ ଛୁରୀ ଚଳେଇବା । ସିକ୍ୟୁରିଟି ବାଲାଙ୍କୁ ହାଣି ତାଙ୍କୁ ଗୋଡ଼ ଉପରକୁ ଆଉ ମୁଣ୍ଡ ତଳକୁ କରି ଏକାଠି ପନ୍ଦର କୋଡ଼ିଏ ଶବକୁ ବର ଓହଳରେ ତୋରଣ କରି ଝୁଲେଇବା । ବାଟୋଇମାନେ, ସମାଜପତିମାନେ ଦେଖନ୍ତୁ । ସାବାସ୍ କରନ୍ତୁ । ଯା' ହଉ ସକାଳ ନ ହେଲା ପର୍ଯ୍ୟନ୍ତ ଆଉ ଏ ବାଟରେ ଯାନବାହାନ ନଯାଏ । ଡ୍ରାଇଭର କହିଲାଣି ତା' ଆଖି ଲାଗି ଆସୁଚି । ସେ ଆଗ ସିଟ୍‌ରେ ଶୋଇ ପଡ଼ିଲାଣି । ସିନ୍ଦୁରା ଫାଟିଲା ପରେ ଉଠିବ ଆଉ ଦି' କପ ଚା ପିଇ ପୁଣି ଯାତ୍ରା ସୁରୁ ହବ । ବିନ୍ଧ୍ୟା ଅସ୍ଥିର ହଉଚି । ଏ ଯାଏଁ ଆଠଘଣ୍ଟା ମଟର ଯାତ୍ରା ଭିତରେ ତା' ଆଖିରେ ପଲକ ପଡ଼ିନି । କେତେବେଳେ ସୁଁ ସୁଁ କରି କାନ୍ଦୁଚି । କେତେବେଳେ ଉନ୍ମାଦିନୀ ଭଳି ଚାରିଆଡ଼କୁ ତରାଟି ଚାହୁଁଚି । ସିଏ ଅଟକିବାକୁ ପ୍ରସ୍ତୁତ ନୁହେଁ । ଛିଡା ହେଇ ଦମ୍ ମାରିବାକୁ ତା'ର ଫୁରୁସତ କାହିଁ । ତା'ର ପ୍ରାଣପିଣ୍ଡ, ଶୋଣିତର କୈବଲ୍ୟ, ନୟନ ପିତୁଳା ଗିରିଧାରୀ ପାଖରେ ନ ପହଞ୍ଚିଲା ଯାଏଁ ସିଏ ଅଟକି ପାରିବ, ଘାଲେଇ ପଡ଼ିବ କେମିତି ! ଚାରିଘଣ୍ଟା ଭିତରେ ପହଞ୍ଚିବା ଟେଲିଗ୍ରାମ୍ ପହଞ୍ଚିଲା ଚାରିଦିନ ପରେ । ଗୋଟିଏ ବୋଲି ଭାଇ ଯା'କୁ ସେ ପାଠ ପଢ଼େଇ ବାପ ମା' ପରି ହେପାଜତ କରି କମ୍ପ୍ୟୁଟର ଇଞ୍ଜିନିୟର କରି ଏଇ ଦୂର ସହରରେ ଚାକିରି ପାଇଁ ଛାଡ଼ି ଦେଇଥିଲା । ତା'ର କ'ଣ ଭାରି ଦିହ ଖରାପ, ଖୁବ୍ ବିପଦ । କିଏ ସବୁ ତା'ର ପ୍ରାଣ ନେଇଯିବାକୁ ଜଗି ବସିଚନ୍ତି, ଛଞ୍ଚାଣ ପରି ତା' ମୁଣ୍ଡ ଉପରେ ଚକ୍ରି ଦଉଚନ୍ତି । ଅପା ମତେ ଆସି ଶୀଘ୍ର ନେଇ ଯା' ବୋଲି ତା'ର ଆସିଚି । ତା' ନିଜ ଅକ୍ତିଆରରେ ସିଏ ପଳେଇ

ଆସି ପାରୁନି କାହିଁକି ? ସାଥୀ ସହୋଦର ବି କେହି କ'ଣ ଏଡ଼େ ବଡ଼ ସହରରେ ନାହାନ୍ତି । ନିର୍ମାଖି ପିଲାଟା କେଡ଼େ ବିକଳ ହତାଶ ହଉଥିବ !

ପୁଣି ଗାଡ଼ି ଅଟକିଲା ଏଇଠି । ଆହୁରି ଆଠଘଣ୍ଟା' କଟିବ, ସକାଳ ହେବ । ତା'ପରେ ଯାଇଁ ପୁଣି ଗାଡ଼ି ଚାଲିବ । କି ଅନ୍ଧାରୀ ଯୁଗ ଇଏ ! କି ବିବଶ ହା ହୁତାଶର ସାମ୍ରାଜ୍ୟ । ଟେଲିଗ୍ରାମ୍‌ଟା ପାଇ ସାରିଲା ପରେ ବିନ୍ଧ୍ୟା ଛିଟିକି ଆସିଚି ମୋ ପାଖକୁ ଆଉ ମୋ ସାର୍ଟ କଲର୍ ବାହାରକୁ ଟାଣି ଚିମୁଟି କହି ଚାଲିଚି–

: ଚାଲ ଚାଲମ । ମତେ ଟିକିଏ ପହଞ୍ଚେଇ ଦେଇ ଆସ । ଏକୁଟିଆ ସ୍ତ୍ରୀ ଲୋକଟା ମୁଁ, କ'ଣ କରିବି ମତେ କହ ?

ଚୁପ୍ ଚାପ୍ ଗମ୍ଭୀର ପ୍ରକୃତିର ଏ ଯାବତ୍ କୁମାରୀ ରହିଥିବା ପ୍ରଖର ଆତ୍ମପ୍ରତ୍ୟୟୀ ବିନ୍ଧ୍ୟା ଆଜି ଚଞ୍ଚଳ ହଉଚି । ମୁଁ ତା'ର ଶୁଭାନୁଧ୍ୟାୟୀ ବନ୍ଧୁଟିଏ ବୋଲି ଭାବୁଚି । ମୋ ପାଖକୁ ଧାଇଁ ଆସିଚି ଆପଦ ବିପଦରେ ସରକାରୀ କଲେଜର ବେଶ୍ ନାଆଁ କରିଥିବା ଇଂରାଜୀ ଅଧ୍ୟାପିକା ବିନ୍ଧ୍ୟା ଦାସ । ଭାବଗ୍ରାହୀ ରଘୁବୀରଙ୍କ ପରି ଏଇ ମୌକାରେ ମୁଁ ବଢ଼ାଇ ଦେଲି ପୟର । ଆଗଉଚି ଜଗତ ଉଦ୍ଧାର କରିବା ପହିଳରେ ।

ଡାହାଣ ପେଣ୍ଟ ପକେଟ୍‌ରେ ବିନ୍ଧ୍ୟା ପାଖକୁ ଜଳନ୍ଧରରୁ ଆସିଥିବା ଦ୍ୱିତୀୟ ଟେଲିଗ୍ରାମ୍ ମୋଡ଼ା କାଗଜ ଉପରେ ହାତ ବୁଲଉଚି ମୁଁ । ଏଥିରେ ଖବର ସଂକ୍ଷିପ୍ତ ଆଉ ଭୟାନକ– 'ଗିରିଧାରୀ ମରିଯାଇଚି । ତା'ର ଶବ ସତ୍କାରର ବ୍ୟବସ୍ଥା କର ।' ସେଇଟା ବିନ୍ଧ୍ୟାକୁ ଦେଖା ହେଉନି । ଆଉ କେଇଘଣ୍ଟା ଆଶା ଆଉ ବିଶ୍ୱାସର କୁହୁଡ଼ି ପହଁରୁ ସିଏ । ଠକ୍ କରି ମୁର୍ଦ୍ଧାନା ଫାଟିଯିବ କାଇଁକି ? ମରିଯାଇଚି, ସରିଯାଇଚି କହି ରାସ୍ତାଟାକୁ ଦି'ଗଡ଼ କରି କାଟିଦେଲେ କ'ଣ ଜୀବନ ଜିଇ ହୁଏ ! ବିନ୍ଧ୍ୟା ପିଠିରେ ହାତ ଆପୁଡ଼େଇ ମୁଁ ତାକୁ ହିମ୍ମତ ଦଉଚି ଯେ, ସବୁ ରାତିର ପୁଣି ସକାଳ ହୁଏ । ଟିକିଏ ବିଶ୍ରାମ ନେଇ ଯାଅ । ଅରୁଣ ଉଠିଲା ବେଳକୁ ତ ଗାଡ଼ି ଛୁଟେଇ ଦବା । ବିନ୍ଧ୍ୟା ବୁଦ୍ଧିମତୀ ନିଜ ଗୋଡ଼ରେ ନିଜେ ଛିଡ଼ାହୋଇ ପାରିଥିବା କଲିଜାବାଲା ଅଧ୍ୟାପିକା । ଏମିତି ସେମିତି ନୁହେଁ । ତରଳି ଯାଇଥିଲେ ବି ପୁଣି ବଜ୍ରପରି ଚମକି ଉଠିଲାଣି । ଓଠରେ ଛିଟାଏ ଅବଜ୍ଞାର ହସ ଦିଶିଲାଣି । କହୁଚି–

: ଏଇ ନିଷିଦ୍ଧ ଛତିଶି କିଲୋମିଟର ଟପିଗଲେ ତା' ଆର ପାଖେ ସେଇ ଖିରୀପୁରିର ଦିବ୍ୟ ରଙ୍ଗଭୂମି । ନାଁ କ'ଣ ? ଯେଉଁଠି ଏକବିଂଶ ଶତାବ୍ଦୀ ଓହ୍ଲେଇ ସାରିଚି । ଆଉ ଏ ପାଖେ ଖାଲି କମର କଷି ତା'ରି ଭିତରେ ପଶିବା ପାଇଁ ଆମେ ଛଟପଟ ହଉଚୁ ! ଲାଗୁଚି ସାରା ରାସ୍ତାଟାଯାକ ଏକବିଂଶ ଶତାବ୍ଦୀର ଘୋଷଯାତ୍ରାର ପଥ ?

ମୁଁ ଅନ୍ଧାର ଭିତରେ ତା'ର ଚିକିଚିକି ନେଳି ଡୋଳା ଦି'ଟାକୁ ଚାହିଁଲି । ସାପ ଆଖି ପରି ସିଲୁ ବୁଦା ଭିତରୁ ସିଏ ମତେ ସତେକି ଚୋଟ ମାରିବା ପୂର୍ବରୁ ପରଖୁଥିଲା । କଳୁଥିଲା ମୋ ରକ୍ତ ମିଠା ହେଇଥିବ ନା ଆମ୍ଳିଳା ! ମତେ ଭୟ ଲାଗୁଥିଲା ଉତ୍ତର ଦବାକୁ ଯେ: ତମ କଲିଜାର ପୂରା ପୂରାତାକତ୍ ପରଖି ଦେବି ଏଇ ଦି'ଟା ବିସ୍ଫୋରକ ଦୈବବାଣୀରେ ଯଥା–ଗିରିଧାରୀ ଆଉ ନାହିଁ । ପଳେଇ ଗଲା ବିଂଶ ଶତାବ୍ଦୀ ସାଙ୍ଗରେ । ତମେ ଏକୁଟିଆ–ଯୁଝିବ ନୂଆ ଶତାବ୍ଦୀ ସାଙ୍ଗରେ । ମୁଁ ବା କାହିଁକି ଏବେ ଏ କଥା କହନ୍ତି । ସୁଖରେ ହଉ କି ପ୍ରମାଦରେ ହଉ ବିନ୍ଧ୍ୟା ଯେ କିଛି ଦୂର ମୋ ସାଙ୍ଗରେ ମୋ ବାହୁରେ ଝୁଲି ବାଟ ଚାଲୁ ଏୟା ମୁଁ ଯୋଜନା କରିଥିଲି । ଆଜି ତା' ସମ୍ଭବ ।

## ଦୁଇ

ଏମାନଙ୍କ ସାଙ୍ଗରେ ମୋର ପରିଚୟର କାହାଣୀ ଏଇମିତି । ପ୍ରାୟ ସବୁ ସଞ୍ଜରେ ସାତଟା ବାଜିବା ପାଖାପାଖି କ୍ଲବର ଲାଉଞ୍ଜରେ ପହୁଞ୍ଚି ଯାଆନ୍ତି ଜଣେ ପ୍ରୌଢ଼ ଭଦ୍ରବ୍ୟକ୍ତି; ହାତରେ ଦାମୀ କଳା ସିଙ୍ଗ ତିଆରି ମୋଡ଼ ମୋଡ଼ିକିଆ ସଉକି ବାଡ଼ି । ନୂଆ ରୁଚିର ଫେସନ୍‌କୁ ମେଳ ଖାଉଥିବା ଟ୍ରାଉଜର, ଟି'ସାର୍ଟ, ନଇଲେ ଗୁଡ଼ାଏ ପକେଟ ଏଠି ସେଠି ଓ ପୁଳାଏ ବୋତାମ ଥିବା ରଙ୍ଗ ଉତୁରା ଅଣ୍ଟ ଲମ୍ବର ଜାମା ପିନ୍ଧିଥିବେ । ବେଶପଟା କଦବା କୋଉଠି ସିଲେଇ ଫଟା ଉଧାର ମାଗି ଆଣିଲା ପରି ଦିଶୁଥିଲେ ସୁଦ୍ଧା ଲୋକଟାର ଯେ ଏକଦା ଖାନ୍‌ଦାନି କାୟେଦା ଥିଲା ଏବଂ ଏବେ ମଧ୍ୟ ଚଳଣିରେ ଗୋଟେ ନିଚ୍ଛକ ଅଭିଜାତ ଟେଷ୍ଟ ଅଛି, ମାନିବାକୁ ପଡ଼ିବ । ମୁଣ୍ଡବାଳ ସବୁ ଫର ଫର ବଗ ପର ପରି ଧଳା ହେଇଯାଇଥିଲେ ବି ମାଙ୍ଗ ଭାଙ୍ଗି କୁଞ୍ଚି କୁଞ୍ଚିଆ ଲହର ଦେଇ କୁଣ୍ଡା ହେଉଥିବା ମୁହଁ, ଗାଲ, ଓଠ ଚମ ଧୂତୁ ଧୂତୁ ଧୂସର । ହେଲେ ଆଖି ଦିଇଟାରେ ତେଜ ଅଛି । ଲାଜୁଆ ଲାଜୁଆ ମିଠା ହସ ପୁଣି କ୍ଷଣକରେ ଆପଣାର କରିନେଲା ଭଳି ଚାହାଁଣୀ ସିଏ ସମସ୍ତଙ୍କ ଆଡ଼କୁ ବିଞ୍ଚିଦେଇ ପାଦ ପକେଇ ଆସିବ ସଳଖ । ବାଁ' ଆଣ୍ଠୁ କେବେ ଜଖମ ହେଇଥିଲା ବୋଧହୁଏ, ସେଇ ଯୋଗୁଁ ବାଡ଼ିରେ ଭରାଦେଇ ସାମାନ୍ୟ ଛୋଟେଇ ଏକ ନିର୍ଦ୍ଦିଷ୍ଟ ସାଆନ୍ତିଆ ଭଙ୍ଗୀରେ ସିଏ ବାଟ ଚାଲନ୍ତି । ବାର୍‌ର ଶେଷମୁଣ୍ଡ କଣୁଆଁ ଉଚ୍ଚ ଷ୍ଟୁଲ ଉପରେ ତୁନି ହେଇ ବସନ୍ତି ଘଣ୍ଟା ଘଣ୍ଟା ଧରି । କିନ୍ତୁ ଯେମିତି ସିଏ କ୍ଲବ ଆସରରେ ପହଞ୍ଚି ଯାଆନ୍ତି, ସମସ୍ତେ ସେମିତି କିଛିଟା ଅପ୍ରତିଭ ହେଲା ଭଳି କରଛଡ଼ା ଦେଇ ତାଙ୍କଠୁ ଦୂରେଇ ଦୂରେଇ ରହନ୍ତି । ତାଙ୍କ ଆଡ଼କୁ ଚାହିଁ ଠାରଠୁର୍ କଥା ହୁଅନ୍ତି । ତାଙ୍କୁ ଇ ଉଦ୍ଦେଶ୍ୟ କରି ଚାପା ଗଳାରେ ତମାମ୍ ବ୍ୟଙ୍ଗ ପରିହାସ ବି ହୁଏ । ବାର୍‌ମ୍ୟାନ୍, ମତେ ଚିହ୍ନେଇ ଦେଇଥିଲା ଯେ ଇଏ ହଉଚନ୍ତି ବିଷନ୍ ସାହେବ । ଖୁବ୍ ପଇସାବାଲା ବଡ଼ଲୋକ ଥିଲେ । ମଛା ମଛା କମ୍ପାନୀର ଲିଆଜନ୍ କରୁଥିଲେ । ଦିନ ଥିଲା କ୍ଲବ୍ ଗେଟ୍ ମୁହଁରେ ତାଙ୍କ ଗାଡ଼ି ପାର୍କ କଲା ମାତ୍ରେ ମସ୍ତ ମସ୍ତ ହାକିମ ହୁକୁମା, ତାଙ୍କ ସ୍ତ୍ରୀ ପିଲାକବିଲା, ବିଜିନେସ ବାଲା, ଖେଳୁଆଡ଼, ସହରର ନାଉଁଆ ବାରିଷ୍ଟର, ପ୍ରଫେସର୍, ଡାକ୍ତର, ଜଜ୍, କଣ୍ଟ୍ରାକ୍ଟର ଯେତେ କ୍ଲବ୍‌ରେ ଥିବେ ସବୁ ଦଉଡ଼ିବେ ଗେଟ୍ ମୁହଁକୁ ବିଷନ୍ ସାହେବଙ୍କୁ ପାଛୋଟି ଆଣିବା ପାଇଁ । ପ୍ରତିଯୋଗିତା ଜମି ଯାଏ କିଏ ତାଙ୍କ ସାଙ୍ଗରେ ଆଗେ କରମର୍ଦ୍ଦନ କରିବ ବା କଣ୍ଠଲଗ୍ନ ହେବ । ଲୋକଟାର ହୃଦୟ ଆଉ କଲିଜା ଦି'ଟା ଯାକ ଭାରି ଶକ୍ତ ଆଉ ଚଉଡ଼ା । ତା' ଠାଣିରେ କିମିଆଁ ଥିଲା ଏମିତି ଯେ, ଲୋକେ ତା' ପାଖକୁ ଓଟାରି ହେଇ ଆସୁଥିଲେ । ସବୁ ରାତିରେ ନଗଦ ହଜାରେ ଦି'ହଜାର ଖର୍ଚ୍ଚ କରି ଫୁର୍ତ୍ତିରେ ଉଡେଇ ଦବ । ସମସ୍ତଙ୍କୁ ଅଫର, ସମସ୍ତଙ୍କୁ ତୋଫା, ପ୍ରେଜେଣ୍ଟେସନ୍; ସବୁ ବଏ ବିଅରରଙ୍କୁ ବିଶ୍ ପଚିଶ୍ ରୂପେୟା ବକ୍‌ସିସ୍ । ହେଲେ ବୟସ ପଚାଶ ପୁରୁ ନ ପୁରୁଣୁ ସବୁ ଚାଲିଗଲା । ମାଲ୍‌ମତା, ଚାକିରି, କଣ୍ଟ୍ରାକ୍ଟସ୍, ଗାଡ଼ିସବୁ ଉଭେଇଗଲା । ଯୋଉ ମନ୍ତ୍ରୀ, ହାକିମ, ଏମ୍.ପି., ତାଙ୍କ ହାତ ପତରକୁ ଚାହିଁଥିଲେ ସେମାନେ ଏବେ ଚିହ୍ନିପାରୁ ନାହାନ୍ତି । ବାଟ ଫେରେଇ ଖସି ଯାଉଚନ୍ତି । ସହରର ଯୋଗଜନ୍ମା ବିଚିତ୍ରବୀର୍ଯ୍ୟ ବିଷନ୍ ସାହେବ ଆଉ ପହିଲି ନମ୍ବର ଖେଳଓ୍ବାଡ଼୍ ନୁହେଁ । ଘୁଣଖିଆ ରୋବଟ୍ ଟାଏ–ଠୁକ୍ ଠୁକ୍ ଚାଲୁଚି । ଧୀର ଗଳାରେ ପଦେ ଦି'ପଦ କଥା କହୁଚି । ଯେମିତି ଦୃଶ୍ୟନ୍ତରାଳରେ ଥିବା ଆଉ ଗୋଟେ ଯାନ୍ତ୍ରିକ ରିମୋଟ୍ କଣ୍ଟ୍ରୋଲ୍‌ର ଇସାରାରେ ।

ସିଏ ଏବେ ଆସିଗଲେ ପାଖାପାଖି ସମସ୍ତଙ୍କୁ ଡର । କାଳେ ଉଧାର ମାଗି ଦବକି ! ଏମିତି ଓଜରେ କହିବ ଯେ ମନା କଲେ ନିଜ ଇଜ୍ଜତ୍ ଚାଲିଯିବ । ଡ୍ରିଙ୍କ୍ ମାଗି ଦବ, ସିଗ୍ରେଟ୍ ମାଗିବ ।

ଗାଡ଼ିରେ ଲିଫ୍ଟ୍ ମାଗିବ । ଏଗୁଡ଼ା ଯେମିତି ତା'ର ପୁରୁଣା ପୁଞ୍ଜି ଲଗାଣର ଜବରଦସ୍ତ ଡିଭିଡେଣ୍ଡ, ଉଧାର ଅସୁଲ । ଏକ ରକମ ତା' ଯେ ଠିକ୍ ନୁହେଁ ମନା ବା କିଏ କରି ପାରିବ !

ବିଶୁଦ୍ଧ ଇଂରାଜୀରେ ଭାରି ଆଟ୍ ଉଚ୍ଚାରଣରେ ମତେ ସମ୍ବୋଧନ କରୁଚନ୍ତି—

: ଗୋଟାଏ ନୂଆ ମୁହଁ ଦେଖୁଚି । ପାରିବାର ଯୁବକ । ବିଚକ୍ଷଣ । ମୁଁ ତମର ବଂଧୁତ୍ୱ ଚାହେଁ । କ'ଣ କହୁଚନ୍ତି ? ହ୍ୟାଭ୍ ଏ ଡ୍ରିଙ୍କ୍ ।

ସେଦିନୁଁ ମୁଁ ବିଷନ୍ ସିଂ ସାମନ୍ତଙ୍କ ସନ୍ନିକଟ ହେଲି ଆଉ ତାଙ୍କର ଭୂତ ବର୍ତ୍ତମାନକୁ ବିବିକ୍ଷା କରିବାକୁ ତତ୍ପର ହେଲି ।

ବିଷନ୍ ସାହେବଙ୍କର ଦୁଇଟି ଅପତ୍ୟ । ବିନ୍ଧ୍ୟା ଆଉ ଗିରିଧାରୀ । ପତ୍ନୀ ମୃତ ।

ମନ ଊଣା କରି ନିଜକୁ ଭାରି ଛୋଟ ଗୌଣ ବୋଲି ଭାବନା ବିହ୍ୱଳ ହେଇ ଘରୁ ଦାଣ୍ଡ ପିଣ୍ଡା, ଦାଣ୍ଡ ପିଣ୍ଡାରୁ ପାଚେରି ଦାଡ଼ ପୋଖରୀ ହୁଡ଼ା ଏପାଖ ସେପାଖ ବୁଲୁଚି, ଉଠ୍ ବସ୍ ହେଉଚି ବିନ୍ଧ୍ୟା । ବାପାଙ୍କର ଆଉ ଘର ସାଙ୍ଗରେ ସମ୍ପର୍କ ନାହିଁ । ଯେଉଁଦିନୁ ସେ ବେକାର ହେଇଗଲେ, କମ୍ପାନୀ ବାଲାଏ କାମରୁ ଅଲଗା କରିଦେଇ ଲକ୍ଷେ ଟଙ୍କା ଏକତରଫା ମୁଣ୍ଡିମରା ପେନ୍‌ସନ୍ ଦେଇ ଦେଲେ । ଏତକ ପୁଞ୍ଜି ପୁଣି ସେଇ ପୁରୁଣା ଢଙ୍ଗରେ ଖର୍ଚ୍ଚ ଚାଲିଲା ଦି' ହାତିଆ । ଦିନ କେଇଟାରେ ପଇସା ଛୁ ଆଉ ଆଡ଼ମ୍ବର ଆଟୋପ କୁଆପଥର ପରି ମିଳେଇ ଗଲା ଶୁଖିଲା ଭୂଇଁରେ । ବିଷନ୍ ସାହେବ୍ ସକାଳ ସାତରୁ କୁଆଡ଼େ ପଳେଇ ଯାଆନ୍ତି । ଢେର୍ ରାତିରେ ପୁଣି ଟଳି ଟଳି ଘରକୁ ଫେରନ୍ତି । ଆଉ କ'ଣ ଟିକିଏ ପାଟିରେ ପକେଇ_ଲମ୍ବ ହେଇ ଶୋଇ ଯାଆନ୍ତି । କହନ୍ତି ଝିଅ ହଉଚି ମୋର ଆଲ୍ଲାଦିନ୍ ଲ୍ୟାମ୍ପ, ଲକ୍ଷ୍ମୀ ଠାକୁରାଣୀ, ଏ ଘର ମୁରବୀ । ଛାଏଁ ଗୁଜୁରାଣ ମେଣ୍ଟିଯିବ । ସିଏ ଥିଲେ ସଂସାର ଠିକ୍ ଚାଲିବ ଠୁକୁ ଠୁକୁ । ପୁଣି ସିଏ ସାନ ଭାଇଟାକୁ ତ ମେଜିକ୍ ଭଳି ମଣିଷ କରିଦବ । ବିଚକ୍ଷଣା ବିନ୍ଧ୍ୟା । ବିଷନ୍ ସାମନ୍ତର ଗେହ୍ଲା ଝିଅଟି । ଅନାଟନର ଚରମ ଦୁର୍ଦ୍ଦିନରେ ବିନ୍ଧ୍ୟା ମଥାକୁ, ଛାତିକୁ ଟାଣକରି ପଦାକୁ ବାହାରିଲା । ଏଠି ସେଠି ଦିନାକେତେ ଦି' ଚାରିଟା ପାର୍ଟ ଟାଇମ୍ ସାନ ଚାକିରି କଲା । ଭାରି ଭରସି ଶିକ୍ଷାୟତନର ସିଡ଼ି ଚଢ଼ିଲା । ବଡ଼ ବଡ଼ ଡିଗ୍ରୀ ଡକ୍ଟରେଟ୍ ପାଇଲା—ଆଉ ଏଇନା ଅଧ୍ୟାପିକା । ସାନଭାଇ ଚଗଲା ଗିରିଧାରୀ ସାମନ୍ତ ବି ତା'ରି କାନ୍ଧରେ ଲଟକି ବିଜୁଳି ପରି ଉଠିଲା ଉପରକୁ । ଅବିକା କମ୍ପ୍ୟୁଟର ବିଜ୍ଞାନରେ ବେଶ୍ ଆସ୍ଥାବାନ ଯୁବ ଇଂଜିନିୟର୍ । ବାପା ଏ ଦି'ଜଣଙ୍କୁ ଦେଖିଲେ କିଛି କହନ୍ତିନି । ଖାଲି ଟିକିଏ ମୁରୁକି ହସି ଦିଅନ୍ତି । ପିଠି ମଥା ଆପୁଡେଇ ଦିଅନ୍ତି କେବେ କେମିତି । ତାଙ୍କର କାହା ପ୍ରତି କର୍ତ୍ତବ୍ୟ କ'ଣ ଥାଇପାରେ ଆଉ ? ସିଏ ତ ସବୁଦିନର ଉଡ଼ାପକ୍ଷୀ । ଏବେ ଦିବାସ୍ୱପ୍ନକୁ ଉଖାରି ଗଲା ଦିନର ପାଉଁଶ ଅଣ୍ଟାଳୁଛନ୍ତି ।

ସଂସାର ସାଙ୍ଗରେ ମୁହାଁ ମୁହିଁ ମୁକାବିଲା କରିବା ଆଗରୁ ଖୁବ୍ ତାଲିମ ପାଇଚି ସିଏ ପଲ୍ଲବୀଠୁଁ । ବାପାଙ୍କ ସାଙ୍ଗରେ ବେଳେ ବେଳେ ଅଙ୍କଲ୍ ଅଙ୍କଲ୍ କହି ଗେହ୍ଲେଇ ହେଇ ଏଇ ପଲ୍ଲବୀ ଅପା ତାଙ୍କ ଘରକୁ କେତେ ଥର ଆସିଚି । ଭାରି ଆଗଚଲି ଝିଅ । କଥା କହିବ ତ ବାଟୁଳି ବାଜିବନି । ବାପାଙ୍କର କୋଉ କୋଇଲା ବ୍ୟବସାୟୀ ସାଙ୍ଗ ମେହେଟା ବାବୁ ଥିଲେ । ଦଶବର୍ଷ ହେଲା ମଲେଣି । ଏବେ ତାଙ୍କର ବେଉସା ଏଇ ପଲ୍ଲବୀ ମେହେଟା ବୁଝନ୍ତି । ଏଡେ ବଡ଼ ପରିବାର ଆଉ ଚାରିଟା ଷ୍ଟେଟ୍‌ରେ ବିଛାଡ଼ି ହେଇ ପଡ଼ିଥିବା ବିଜିନେସ୍‌ର ଝମେଲା ସବୁ ସେ ମୁଠି ଭିତରେ ସମ୍ଭାଳିଚନ୍ତି । ବାପା ବି ତାଙ୍କର ଲିଆଜନ୍ କାମ କରୁଥିଲେ ଦିନା କେତେ । ବଡ଼ ବଡ଼ିଆ ହାକିମ ହୁକୁମା, ରାଜନୀତି କାରପଟ୍‌ଦାରମାନଙ୍କ ସାଙ୍ଗରେ ପଲ୍ଲବୀ କମ୍ପାନୀର ଯୋଗାଯୋଗ କରିଚନ୍ତି, ଅସୁବିଧାକୁ

ସୁବିଧା କରିଚନ୍ତି । ପିମ୍ପୁଡ଼ି ନ ଗଳି ପାରିବା ରାସ୍ତାରେ ହାତୀ ପାର କରେଇବାର ଟେକ୍‌ନିକ୍ ଶିଖେଇଚନ୍ତି । ସେଇ ଯୋଗେ ବାପାଙ୍କ ପାଇଁ ଝିଅଟାର ଏତେ ହମ୍‌ଦର୍ଦ । ବାପା ଅକାମୀ ହେଇଗଲେ–କେଇଟା ଡିଲ୍‌ରେ ବଦନାମ ହେଇଗଲେ । ତେବେ ପଲ୍ଲବୀ ତାଙ୍କୁ ସାହା ହେଇଚି ନିତାନ୍ତ ଅବେଳରେ, ଦୁର୍ଦ୍ଦିନରେ । କେବେ କେମିତି ଶହେ ଦି'ଶହ ତାଙ୍କ ପକେଟରେ ଗୁଞ୍ଜି ଦେଇଚି ।

କିଛି ମନେ କରନା ଅଙ୍କଲ୍, ମୁଁ ବି ତମର ଝିଅ ବୋଲି ଭାବ । ବାପାଙ୍କ ଗମ୍ଭୀର ପରାସ୍ତ ମୁଖ ଠାଣିରେ ପଲ୍ଲବୀର ଉପସ୍ଥିତି ଯେମିତି ମୁରୁକି ହସାର ସମ୍ଭାବନା ଟିକିଏ ଉକୁଟାଇ ଦିଏ ।

: ହଉ ଝିଅ । ବରାବର ଆସୁଥିବୁ । ବିନ୍ଧ୍ୟାକୁ ଟିକିଏ ହିମ୍ମତ ଦେଉଥିବୁ । ମା' ଛେଉଣ୍ଡ ପିଲାଟା । ଏଡ଼େବଡ଼ ସଂସାର ବୋଝ ତା'ରି ଉପରେ ।

ପଲ୍ଲବୀ ସେଦିନ କୁଆଡୁ ଧଇଁ ସଇଁ ହେଇ ଆସି କହିଲା–

: ବିନ୍ଧ୍ୟା, ଆଇ ଆମ୍ ଡ୍ୟାମ୍ ଟାୟାର୍ଡ । ମତେ ଗ୍ଲାସେ ଲେମ୍ବୁ ପାଣି ଦେ' । ମୁଁ ରେସ୍ ସାଇକେଲ ଚଢ଼ି ଏଗାର କିଲୋମିଟର ଆସିଚି ପୁରା ଦମ୍‌ରେ । ଏକ୍‌ସର୍‌ସାଇଜ୍ କରୁଚି । ଦେଖୁନୁ କେମିତି ଚର୍ବି ସବୁ ତରଳି ସ୍ଲିମ୍ ହେଇଗଲିଣି । ଭାରି ଦରକାର ପଡୁଚି ଫିଗରକୁ ସଲାମତ୍ ରଖିବା ଏ ଯୁଗରେ । ତୁ ମଉନ ମୁହିଁ ନାକ କାନ୍ଦୁରୀ ଫିଲୋସଫର ଏସବୁ ବୁଝିବାକୁ ଡେରି ଲାଗିବ । ଅଣ୍ଡା ଭିଡ଼ି ବାହାରି ପଡ଼ ମୋ ସାଙ୍ଗରେ । ଦେଖିବୁ ଚକଚକିଆ ସହରର ଫାଲିକିଆ ହସ କେମିତି ତୋରି ଅଣ୍ଟିରେ ମୁହଁ ଲୁଚେଇ ନିଆଶ୍ରୀ ବିଧବାର ବାହୁନା କାନ୍ଦ ପାଲଟି ଯାଇଚି । ସମସ୍ତେ ନାଚୁଚନ୍ତି ତୋ ଆଙ୍ଗୁଠି ଇସାରାରେ ।

ଦି' ଗ୍ଲାସ ଲେମ୍ବୁପାଣି ଢକ୍ ଢକ୍ ପିଇଦବା ଭିତରେ ବିନ୍ଧ୍ୟା ପଦୁଟିଏ କଥା କହିଥିଲା ।

: ମୁଁ ମୋ ଯୋଜନା ଆରମ୍ଭ କରିବି ନିଜ ମର୍ଜିରେ, ନିଜ ବୁଦ୍ଧିରେ । ତମ ବୁଦ୍ଧିରେ ଘୋଡ଼ା ଚଢ଼ିବାର ବେଳ ଏଯାଏ ଆସିନି ।

:ଏଡ଼େ ଏଡ଼େ ଆଖି କରି ପଲ୍ଲବୀ ତା' ଆଡ଼େ ଚାହିଁଲା । ପୁଣି କ'ଣ ଭାବି କେଜାଣି ଅସରାଏ ହସରେ ଉଚ୍ଛୁଳି ପଡ଼ିଲା, ବିନ୍ଧ୍ୟାର କାନ୍ଧ ଦିଇଟାକୁ ଜୋର୍‌ରେ ହଲେଇ ଦେଇ କହିଲା–

: ଦେଖ୍ ମୁଁ କିନ୍ତୁ ହର୍ ରୋଜ୍ ଲେମ୍ବୁ ପାଣି ପିଇବାକୁ ଏଇଠିକି ଆସିବି । ତୋର ପସନ୍ଦ ହଉ ନ ହଉ, ମୁଁ ଜାଣିବାକୁ ଚାହେଁ କେମିତି ତୁ ଆଗଉଚୁ । ଏକବାରେ ଶୂନ ସଂଖ୍ୟାରୁ । ଇଣ୍ଟରେଷ୍ଟିଂ, ତୁ ମୋର ଗୋଟେ କେଶ୍ ଷ୍ଟଡି । ଯେତେବେଳେ ଲକ୍ଷ୍ୟ ସ୍ଥଳରେ ପହଞ୍ଚିଯିବୁ, ଟାରଗେଟ୍‌ର ବୁଲ୍‌ସ୍ ଆଇକୁ ହିଟ୍ କରିବୁ, ସେତିକି ବେଳେ ଆମେ ଦିହେଁ ଆପଣା ଆପଣାର ଟ୍ରେଡ୍ ସିକ୍ରେଟ୍ ଖୋଲିବା । ଢେର୍ ଗପିବା, କଥା ହବା, ହିସାବ ଯୋଡ଼ିବା, ବାଲାନ୍‌ସ ସିଟ୍ ତିଆରି କରିବା, ଯୁଝିବାର, ଜିତିବାର, ପରାସ୍ତ ହେବାର–ନାଁ କ'ଣ ।

ବିନ୍ଧ୍ୟାର ଫିକା ହସ ଏପର୍ଯ୍ୟନ୍ତ ଶତକଡ଼ା ଶହେ ଆତ୍ମପ୍ରତ୍ୟୟର ସଙ୍କେତ ଦେଉ ନ ଥିଲା । ତଥାପି କିମ୍ଭୁତ ଅଭିମାନରେ ତା'ର ହାତମୁଠା ଦି'ଟା ଟାଣ ହେଉ ଆସୁଥିଲା; ସେ ପାରିବ । ସବୁ ପାରିବ । କିନ୍ତୁ ପଲ୍ଲବୀ ପରି ସମ୍ପତ୍ତି ବୁନିଆଦ ଅୟସର ଆଲିଙ୍ଗନ ଉର୍ଦ୍ଧ୍ୱରେ ସେ ରହିବାକୁ ବାଧ୍ୟ । ତା'ର ଅଝଟ ହବାକୁ ଚାନ୍‌ସେସ୍ ନବାକୁ ବେଳ କାହିଁ, ମୌକା କାଇଁ । ଆରମ୍ଭରୁ ତ ମାସକର ଘର ଖର୍ଚ୍ଚ, ଭାଇର ପାଠପଢ଼ା ଖର୍ଚ୍ଚ, ବାପାଙ୍କ ଖର୍ଚ୍ଚର ବ୍ୟବସ୍ଥା ହବା ଦରକାର । ତା'ପରେ ଯାଇ ଆତସବାଜିର କଳ୍ପନା କରାଯାଇପାରେ ।

# ତିନି

ଏକଲା ଚାଲିବା ଭାରି କଷ୍ଟ । ତେବେ ବିଷନ୍ ବାବୁର ଝିଅ ବୋଲି ଜଣେ ଦି'ଜଣ କର୍ପୋରେସନ୍ ପରିଚାଳକ ତାକୁ ଚଳିଗଲା ଭଳି ମାସିକିଆ ଦରମାରେ ଏପ୍ରେଣ୍ଟିସ୍ ଭାବେ ଦପ୍ତର କାମରେ ଲଗେଇ ଦେଲେ । ପଢ଼ା ପଢ଼ିରେ ଘାଟା ହେଲାନି । ଅଧ୍ୟାପିକା ହେଲା ପର୍ଯ୍ୟନ୍ତ ବେଦମ୍ ଅଫିସ୍ ଆଉ କଲେଜ ଦୌଡ଼ା, ତା' ସାଙ୍ଗରେ ପୁଣି ଘରକାମ ତାକୁ ଅଣନିଃଶ୍ୱାସୀ କରି ପକଉଥିଲା । ହେଲେ ଭାରି ଚମତ୍କାର ଲାଗୁଥିଲା ଏଇ ସମୁଦ୍ର ମନ୍ଥନ । ପିୟୁଷ ବାହାରିଲା ତ । ହେଲେ ହଠାତ୍ ଅଧ୍ୟାପିକା ବିନ୍ଧ୍ୟା ଦାସ ଆବିଷ୍କାର କଲେ ଯେ ତାଙ୍କ ନୟନ ପିତୁଳା ଅଠର ବର୍ଷର ସାନ ଭାଇ ଅଧେ ଦିନ କଲେଜ ନଯାଇ ଆଉ କୋଉଠି ଡ୍ରଗ୍ସ୍ ଖାଉଚି କି ଫାଜିଲାମି କରୁଚି । ତାଗିଦ୍ କଲାରୁ କହୁଚି–

ଆଉ ନୀତି ବାକ୍ୟ କହି ଲାଭ ନାହିଁ । ଦୁନିଆ କୁଆଡ଼େ ଗଲାଣି ଦେଖୁନ ! ଭବିଷ୍ୟତ ଗଢ଼ିବାକୁ ହେଲେ, ମଣିଷ ପରି ଇଜ୍ଜତ ଅର୍ଜିବାକୁ ହେଲେ କ୍ଲାସ୍‌ରୁମ୍ ପୋଥି ବାଇଗଣ ଛାଡ଼ି ଅସଲ ହଟଚମଟ କିମିଆଁ ଅଧିଗତ କରିବାକୁ ପଡ଼ିବ । ପରୀକ୍ଷାରେ ଭଲ ନମ୍ବର ରଖି ପାଶ୍ କରିବାରେ ଅସୁବିଧା ନାହିଁ । ତା' ପାଇଁ ବ୍ୟବସ୍ଥା ହେଉଚି ଯେମିତି ଖାତାସବୁ ପରୀକ୍ଷା ହଲ୍‌ରୁ ଆସି ବାହାରେ ଲେଖା ହୋଇ ପୁଣି ପରୀକ୍ଷା ହଲକୁ ଫେରିଯିବ । ପରୀକ୍ଷକଙ୍କୁ ଧରା ଧରି କରି ନରମ ଗରମ ବିଦ୍ୟାରେ ଭଲ ନମ୍ବର ପାଇବାର ବ୍ୟବସ୍ଥା ହୋଇ ସାରିଚି । ତମେ ମୁଣ୍ଡ ଖରାପ କରନି ଅପା । ଏସବୁ ତମ ଭଳି ଅର୍ଥୋଡକ୍ସ କୂପମଣ୍ଡୁକ ସଂସ୍କାରୀ ଲୋକ ବୁଝିପାରିବେନି । ଏଇ ଦେଖ ଆମର ଗୋଟେ ପରୋପକାରୀ ଭଲ୍ୟୁଣ୍ଟାରୀ ସଂସ୍ଥା କରା ହେଉଚି । ସହରରେ ଭାରି ପପୁଲାର୍ ଏ ସଂସ୍ଥା । 'ୟଙ୍ଗ୍ ମେନସ୍ ଡ୍ରିମ୍‌ଲ୍ୟାଣ୍ଡ' । ଲୋକମାନଙ୍କର କାମ ଧନ୍ଦା ଏତେ ଯେ ଦରକାର ବେଳକୁ ପ୍ରସେସନ୍ କରିବାକୁ କି ମାଇକ ଧରି ପ୍ଲାକାର୍ଡ ହଲେଇ ଆଖି ଦୃଶିଆ ଡେମନ୍‌ଷ୍ଟ୍ରେସନ୍ କରିବାକୁ ସେମିତିକା ଇଜ୍ଜତ୍‌ଦାର୍ ପୌରୁଷ ଥିବା ନୌଯବାନ୍ ଏ ଯୁଗରେ ମିଳୁ ନାହାନ୍ତି । ଆମ ସଂସ୍ଥାର ପ୍ରାୟ ତିନିଶହ ସଭ୍ୟ ଚବିଶି ଘଣ୍ଟା ପ୍ରସ୍ତୁତ ଅଛନ୍ତି । ମାଲ୍ ପକେଇବ ତ ଜଣ ପିଛା ଘଣ୍ଟାରେ ଦଶ ଟଙ୍କା, ଆମେ ଚାଲିଲୁ ଧାଡ଼ି ବାନ୍ଧି ଥାଟ୍‌ରେ । ରାଜନୀତି ଦଳ ହୁଅନ୍ତୁ, ସରକାରୀ କି ବିରୋଧୀ ଦଳ, ବାବାଜି ହରିବୋଲିଆ, କୀର୍ତ୍ତନ ଭଜନ, ଖୋଳ ତାଳ, ରାଜେଶ୍, ମହେଶ୍, ଯେତେ ଭୋଗୀ ଯୋଗୀ ବିଦେଶୀ କୃଷ୍ଣାବତାର ଆମଦାନୀ ଯାହା ତାହାର ଦରକାର ଶୋଭାଯାତ୍ରାର ଥାଟ୍ ପୁରା କାୟମନୋବାକ୍ୟରେ ତାଙ୍କରି ଆଦର୍ଶ ଆଉ କୁହାଟକୁ ପକ୍‌କା ରିହିୟର୍‌ସାଲ୍ କରି ଏମିତି ପ୍ରସେସନ୍ ଛିଡ଼ା କରି ଦେବୁ ଯେ ଖବର କାଗଜବାଲା, ରେଡ଼ିଓ ଟି.ଭି. ବାଲା ତାଟକା ହୋଇଯିବେ ।

ବିନ୍ଧ୍ୟା ହାତରୁ ପ୍ରାୟ ଦଶ ବାର ଥର ବ୍ରହ୍ମଚାପୁଡ଼ା ଖାଇ ସାରିଲା ପରେ ମଧ୍ୟ ଗଲା ଦି' ବରଷ ଭିତରେ ଗିରିଧାରୀର କୌଣସି ଲକ୍ଷ୍ୟଣୀୟ ପରିବର୍ତ୍ତନ ନାହିଁ । ସିଏ ବି ତା' ବାଟରେ କରିତ୍‌କର୍ମା ହବ । କହିଚି–

ଅପା, ତମେ ବ୍ୟସ୍ତ ହୁଅନି । କିଛି କୁଆଡ଼େ ବିଗିଡ଼ି ଯାଏନି ସଂସାରରେ । ସବୁ ଅକର୍ମକୁ ସୁକର୍ମ ଫଳ ଦବା ପାଇଁ ମାର୍ଗ ତିଆରି ହେଇ ସାରିଚି । ବେକାରମାନେ କେମିତି ସୁସ୍ଥ, ସାମାଜିକ, ନିଷ୍ଠାବାନ, ଉପାର୍ଜନକ୍ଷମ ନାଗରିକ ହେବେ ତା'ର ବାଟ ସିଧା । ଚାକିରିଟିଏ ପାଇବ, ରଣଟିଏ ପାଇବ, ବେଉସା କରିବାକୁ ତ ପହିଲେ କିଛି ମୋଟା ମାଲ୍ ପଇଠ କରିବାକୁ ହେବ । ନଇଲେ ଭକ୍ତି ମାର୍ଗ । ବିଧାୟକ କି ମନ୍ତ୍ରୀ କି ପାର୍ଟି କାର୍‌ପଟ୍‌ଦାରଙ୍କୁ କଳେବଳେ ହାତ କରିବାକୁ ହବ ।

ସୁପାରିଶ୍ ଆଣିବାକୁ ହବ । ସେତିକିରେ ହବନି । ଯୋଉ ହାକିମ ଲୋକ ବାଛିବା ପାଇଁ ଇଣ୍ଟରଭ୍ୟୁ କରିବ କି ପରୀକ୍ଷା କରିବ ତାକୁ ବି ଭଲ କରି ଧମକ୍ ଚମକ୍ କରିବା ଦରକାର । ସାଙ୍ଗକୁ କିଛି ମୋହମତ ହାତ ପଇଠ କରି ପାରିଲେ ଭଲ । ଅସଲ କଥା କଣ୍ଟାକ୍ଟସ୍ ଅପା । ଏକବିଂଶ ଶତାବ୍ଦୀ ଏଇ ପହୁଞ୍ଚି ଗଲା ଧର । ନେତାମାନେ, ମହନ୍ତ ମହାରାଜାମାନେ କହୁଚନ୍ତି ଯେ, ନୂଆ ଶତାବ୍ଦୀରେ ମଣିଷର ଭୋକ, ଭେକ ହାବଭାବ ସବୁ ପାଲଟି ଯିବ । ରେଳଗାଡ଼ି ଠିକ୍ ସମୟରେ ଚାଲିବ । ଡାକ-ତାର ଯୋଗାଯୋଗ ଟିପ ମାଇଲା ମାତ୍ରେ ହେଇଯିବ । ବଡ଼ ଲୋକ, ସାନଲୋକ, ଏତେ ସଲାମ କୁର୍ନିସ, ଚୋରି ଧପ୍ପାବାଜୀ, ଲାଞ୍ଚ ଉତ୍କୋଚ, ଧରାଧରି, ଟାଉଟରୀ, ପର୍‌ସେଣ୍ଟେଜ୍, ପଗଡ଼ି ସବୁ ଉଭେଇଯିବ । ଖବରକାଗଜ ବାଲାଏ ଆଉ କା'କୁ ଫନ୍ଦିରେ ପକେଇ ମାଲ୍ ଖସେଇ ନପାରି ଗୁଡ଼ାଏ ଏଣୁତେଣୁ ବଦ୍‌ନାମ ଖଞ୍ଜିବାର ଖୋରାକ ପାଇବେନି, ଠକ୍ ଠାକ୍ ମରିଯିବେ । ବାର୍, ମଦ ଦୋକାନ, ପଞ୍ଚ ତାରକୀୟ ହୋଟେଲ୍ ସବୁ ଯେହେତୁ ବନ୍ଦ ହେଇ ଯାଇଥିବ, ମାହାଳିଆ ଖାଇବା ପିଇବା ଅୟସ କରିବାକୁ କା' ପାଖରେ ଚୋରାମାଲ୍ ଅଧିକା ଥିବ ଯେ ଦବ ! ପୁଣି ଦରକାର ଅନୁସାରେ ମାସୁଆରୀ ସଉଦା ସମସ୍ତଙ୍କ ଘରେ ସର୍କାରୀ ଗାଡ଼ିରେ ପହୁଞ୍ଚିଯିବ । ଯେତେ ଟୋକା ଏବେ ରାସ୍ତା ଘାଟରେ ସାଲୁବାଲୁ ହଉଚନ୍ତି ତାଙ୍କୁ ବଡ଼ବଡ଼ କାରଖାନା, କଲେଜ, ସ୍କୁଲ୍, ବିଜ୍ଞାନାଗାରରେ ବନ୍ଦ କରି ଦିଆଯିବ । ଆଉ କୁହାଯିବ ଯେ ମୁଫତ୍ ଖାଇବାକୁ ମିଳିବ, ପିନ୍ଧିବାକୁ ମିଳିବ । ଖେଳ କସରତ ବି ହବ । କିନ୍ତୁ ଆଠଘଣ୍ଟା ଦୈନିକ ଅଲବତ୍ କାମ କରିବାକୁ ହବ । ବିଲରେ ହଉ କି ଶିଳ୍ପରେ ହଉ ।

ଆଉ ସବୁଠୁ ମଜା କଥା କ'ଣ ହବ ଜାଣିଚ ଅପା ? ବିଧାନସଭା କି ଲୋକସଭାରେ ଯେତେ ଗର୍ଜନ ତର୍ଜନ ଶୁଭୁଚି, ଟେବୁଲ ଗୋଡ଼, ଚପଲ, ଫଟକା ବୋମା ଦୁଇ ବିରୋଧୀ ଦଳ ଭିତରେ ଫୋପଡ଼ା ଫିଙ୍ଗା ହଉଚି ସେସବୁ ହେଇପାରିବନି । କାଇଁକିନା ବିଧାୟକମାନେ ଏଭଳି ମୋଟା, ପେଟୁଆ, ଚନ୍ଦା, ଗୋଲଗାଲ୍, ତାଜା, ବଳୁଆ ହେଇ ଆଉ ନଥିବେ । ସବୁ କୃଶ ହେଇଯିବେ ଚ୍ୟବନ ଋଷିଙ୍କ ପରି । ଖାଲି ଦେଶ କଥା ସମାଜ କଥା ଭାଳି ଭାଳି । ଏବେ ଯେମିତି ଜଣେ ଖବରକାଗଜ ସମ୍ପାଦକ କେଇ ଜଣ ପାରିବାର ବିଧାୟକଙ୍କୁ ଚୋର ତସ୍କର ବୋଲି କାର୍ଟୁନ୍ କରି ଛାପିବାରୁ ପରାକ୍ରମୀ ବିଧାନସଭା ତାକୁ ଛ'ମାସ ମାମୁଁଘରେ ଭର୍ତ୍ତି କରିଦେଲେ, ସେ ଯାଏଁ କଥା ଯିବନି । ହେଲେ ନୂଆ ଶତାବ୍ଦୀର ମୂଳଦୁଆ ତ ଏଇ ଶତାବ୍ଦୀରେ ପଡ଼ିଚି । ବଦଳିବ କ'ଣ ଛତୁ ।

ବିନ୍ଧ୍ୟା ମନେମନେ ମାନୁଥିଲା ଯେ ଗିରିଧାରୀ ଯା' ପ୍ରଳାପ କରି ଚାଲିଚି ସେଥିରେ ବିବ୍ରତ ହେବାର କିଛି ନାଇଁ । ନିତିଦିନିଆ ଘଟୁଚି । ଏମିତିକି ଏଇ ଅଧ୍ୟାପନା ଚାକିରି ଖଣ୍ଡେ ପାଇବା ପାଇଁ ବିଷନ୍ ସାମନ୍ତର ପୁରୁଣା କରିସ୍ମା ସତ୍ତ୍ୱେ ତାକୁ ଅନେକ ପ୍ରକାର ମୂଲ୍ୟ ଦେବାକୁ ବାଧ କରାଯାଇଥିଲା । ହେଲେ କିଛିଟା ପ୍ରତିଶ୍ରୁତିର ଆଳ ଦେଖେଇ ସେ ଖସିଯାଇଚି । କିନ୍ତୁ ଏପର୍ଯ୍ୟନ୍ତ ପ୍ରମାଦମୁକ୍ତ ନୁହେଁ । ଯା'ହେଉ ପଲ୍ଲବୀ ଅପାର ମସୁଧା ଆଉ ହିମ୍ମତ ତାକୁ ବଞ୍ଚେଇ ଆଣିଚି ଏଯାଏଁ । ତେବେ ସେ ଗୋଟିଏ ଅନୁନୟ କରିଥିଲା ଭାଇ ପାଖରେ—

: ଦେଖ ଧନ, ତୁ ଯାହା ବିଚାରିଚୁ କର । ଯେମିତି ଭବିଷ୍ୟତ ଗଢ଼ିବୁ, ଉପରକୁ ଉଠିବୁ, ଏକବିଂଶ ଶତାବ୍ଦୀରେ ପଶିବୁ ସେଥିରେ ମୋର କିଛି କହିବାର ନାହିଁ । ଖାଲି ଦିଇଟା କଥା । ନିଶା କି ବଟିକା ଛୁଁଅନି । କାହିଁକିନା ସେଥିରେ ଜିଇବାର ତାକତ୍ ନାଇଁ । ଆଉ କଲେଜରେ

ନଇଲେ ନାହିଁ, ଘରେ ହଉ ପାଠଟା ଯେମିତି ହେଲେ ଭଲକରି ପଢ଼ି ଜ୍ଞାନ କମେଇ ଯା । ଅସଲ ଜୀବନ ଗଢ଼ିଲା ବେଳକୁ ଦାନା କମେଇଲା ବେଳକୁ ଦରକାର ପଡ଼ିବ ।

ଗିରିଧାରୀ ସୁନା ପିଲାଟି ପରି ମୁଣ୍ଡ ଲାଡ଼ିଲା । ହଁ ସିଏ ଏଇ ଦି'ଟା କଥା କରିପାରିବ । କିଛି ଅସୁବିଧା ନାହିଁ ଏଥିରେ ତା'ର ମୂଳ ଯୋଜନା ରୂପାନ୍ତରିତ ହେବାରେ । ଚାହୁଁ ଚାହୁଁ ଗିରିଧାରୀ ବି ମଣିଷ ହେଇଗଲା । ଆଉ କଷ୍ଟରେ ହଉ କି ଭାଗ୍ୟରେ ହଉ, ଦୂର ରାଜ୍ୟର ସହରରେ କମ୍ପ୍ୟୁଟର ଇଞ୍ଜିନିୟର ଚାକିରି ପାଇଗଲା । ତେବେ ସେଇ ସହରରେ ବା ରାଜ୍ୟରେ ଅନ୍ୟ ରାଜ୍ୟରୁ ପିଲା ଆସି ଚାକିରି ପାଇଗଲେ ଭାରି ବିରୋଧ । ଯେଉଁ ରାଜ୍ୟର ପିଲା ସେମାନେ, ପହିଲେ ନିଜ ରାଜ୍ୟରେ ନିଯୁକ୍ତି ପାଇବେ । ବାହାର ଲୋକେ 'ହିନ୍ଦୁସ୍ଥାଁ ହମାରା, ଡାକ ଦେଇ ଏ ରାଜ୍ୟର ଭିଟାମାଟିରେ ତମ୍ବୁ ପୋତି ପାରିବେନି । ସ୍ୱରାଜ ଦର୍ଶନରେ ଉଦ୍‌ବୁଦ୍ଧ ଏଇ ନେତାମାନେ ଏମିତି ଉତ୍ପାତ ଆରମ୍ଭ କରିଦେଲେ ଯେ ଏ ରାଜ୍ୟ ପିଲାଙ୍କୁ ସେ ରାଜ୍ୟରେ ନିଯୁକ୍ତି ପରୀକ୍ଷାକୁ ଯିବା ପୂର୍ବରୁ ଛେଚି ଦିଆଗଲା । କିଏ କିଏ ଜୀବନ ବିକଳରେ ପଳେଇ ଆସିଲେ । କେଇ ଜଣ ଯେ ନିଯୁକ୍ତି ପାଇଗଲେ ତାଙ୍କ ବିରୋଧରେ ଶୀତଳ ସଂଗ୍ରାମ ଚାଲିଚି । ହଇରାଣ ହରକତ କରାଯାଉଚି । ବିନ୍ଧ୍ୟା ସେଇଦିନୁ ଡରି ଯାଇଥିଲା ଯେତେବେଳେ ଶୁଣିଲା ଯେ, ଏଇଟା ଗିରିଧାରୀ ପ୍ରମୋଶନ୍ ପାଇଯିବା ବର୍ଷ, ଆଉ ତାକୁ ରୋକିବା ପାଇଁ ଅନ୍ୟ ସ୍ଥାନୀୟ ଇଞ୍ଜିନିୟରଙ୍କ ଭିତରୁ କେଇଜଣ ଟାଣୁଆ ଚକ୍ରାନ୍ତ ଚଳେଇଚନ୍ତି । ବିଶ୍ୱାସ ନାହିଁ– ଜଖମ କରିଦେଇପାରନ୍ତି । ଦେଖୁ ଦେଖୁ ଟେଲିଗ୍ରାମ୍ ଆସିଗଲା । ସିଏ ଆଉ ମୁଁ ନିର୍ଦ୍ଧାରିତ ସହରର ପ୍ରବେଶ ଦ୍ୱାରରେ ଆତଙ୍କରେ ବସିଚୁ ! ସକାଳ କେତେବେଳେ !

## ଚାରି

ସେଦିନ ଭାରି ଜୋର୍ ବର୍ଷା ହଉଥାଏ । ପାଖାପାଖି ଅପରାହ୍ନ ପାଞ୍ଚ ସାଢ଼େ ପାଞ୍ଚ । ଟିଣ ଛାତ ଦି'ପହରିଆ ଗରମ ପରେ ଆସ୍ତେ ଥଣ୍ଡା ହଉଚି । ମୁଁ ଏରୁଣ୍ଡି ବନ୍ଧରେ ଗୋଡ଼ ଦେଇଚି କି ନାହିଁ ପଲ୍ଲବୀ ମେହେଙ୍ଗା ଆସି ମୋ ବସାଘର ବାରଣ୍ଡା ଉପରେ । ଦିହରେ ଫୁଲପକା ନାଇଲନ୍ ବର୍ଷାତି । ହେଲେ ମୁଣ୍ଡଟା ଓଢ଼ଣି ସମେତ ପୁରା ଓଦା ।

: କ'ଣ ଛତା ଭୁଲିଗଲେ ନା ବାଟ ଭୁଲିଗଲେ ? ପଲ୍ଲବୀ ଥଣ୍ଡାରେ ନାକ ସୁଁ ସୁଁ କରି କହୁଚି–

: ଦି'ଟାଯାକ । ଏଇ ଆପଣଙ୍କର ବସାଘର; ଜାଣିଥିଲେ ଆଗରୁ ବି କେବେ ଆସିଥାନ୍ତି । କହୁ କହୁ ଟିକିଏ ଲାଜେଇ ଗଲା ।

ଆମେ ଦିହେଁ ଏକାଠି ଆଇ.ଏ. ପଢ଼ିଚୁ । ତା'ପରେ ମୁଁ ପାଠ ଛାଡ଼ିଲି । ଯାହା ହେଉ ଏବେ ଅବଶ୍ୟ ସହରର ବେଶ୍ ନାମକରା ଔଷଧ ଦୋକାନର ମାଲିକ, ଆଉ ପୈସାବାଲାର ଝିଅ ପଲ୍ଲବୀ ଦିଲ୍ଲୀ ଯାଇ କୋଉ ଗୋଟେ ବଡ଼ କଲେଜରେ ଶିଳ୍ପ ବ୍ୟବସାୟ ମ୍ୟାନେଜମେଣ୍ଟ ପଢ଼ିଲା, ତା' ବାପାଙ୍କ ବେପାର ବାଣିଜ୍ୟ ବୁଝିବ ବୋଲି । ସିଏ ସେତେବେଳେ ମତେ ଓ ମୁଁ ତାକୁ ଭଲ ଲାଗୁଥିଲୁ, କାରଣ ଆମର ଗୁଲି ଗପର ଗୋଟାଏ ସାଧାରଣ ନିର୍ଝର କ୍ରମ ଥିଲା । ମାନେ ପ୍ରଥମେ ଗ୍ରହ ଅନ୍ତରୀକ୍ଷ, ତା'ପରେ ବିଶ୍ୱର ନାମକରା ଦେଶମାନଙ୍କ ଖଣ୍ଡିଉଡ଼ା ରାଜନୀତି ପ୍ରତି ବିଦ୍ରୂପ, ତା'ପରେ ଶିକ୍ଷକ ଅଧ୍ୟାପକମାନଙ୍କ ନକଲ ଏବଂ ପରିଶେଷରେ ସିନେମାରେ ଯେଉଁ ପ୍ରକାରେ ପ୍ରେମ ହେଉଚି ସେ ପ୍ରକାର ପ୍ରେମର ବ୍ୟବସ୍ଥା କାହିଁକି ସଚରାଚର ଦେଖାଯାଉ ନାହିଁ ତା'ର ପ୍ରବଳ

ବୌଦ୍ଧିକ ତର୍ଜମା । ଛାଡ଼ନ୍ତୁ ସେ ସବୁ ବହୁ ବିସ୍ତୃତ ଅଧ୍ୟାୟ । ତାଜା କଥା ହେଲା ଯେ ଯେତେବେଳେ ମୁଁ ଓ ବିନ୍ଧ୍ୟା ଟ୍ରେକର୍ ଚଢ଼ି ଆସିବାକୁ ବାହାରିଲୁ ସେତେବେଳେ ପଲ୍ଲବୀ ବିନ୍ଧ୍ୟାକୁ ବିଦାୟ ଦେଲାବେଳେ ତା' ପିଠି ଥାପୁଡ଼େଇ ଆଉ ମୋ ଆଡ଼େ ଅର୍ଥପୂର୍ଣ୍ଣ ଦୃଷ୍ଟିରେ କଟାକ୍ଷ ହାଣି କହିଲା–

: ସାଧାରଣ ଟେଲିଗ୍ରାମ୍‌ଟାକୁ ଏତେ ଭୟ । ମଣିଷ କେହି କାହାର କିଛି କରିପାରିଲାଣି ନା କରିବ । ସବୁ ହଉଚି ପରିବେଶ ଜଳବାୟୁର କ୍ରିଚର୍ । ଆମେ ପରା ଶତାବ୍ଦୀ ପାରି ହଉଚେ । ସେଥିପାଇଁ କଲିଜା ଦରକାର । ବିନ୍ଧ୍ୟାଟା କ'ଣ ପାରିବ ? ଛାଇକୁ ଡରିବା ଝିଅ । ହେଲେ ଆର ଶତାବ୍ଦୀରେ, ନୂଆ ଭୂଖଣ୍ଡରେ ମୁଁ ତମକୁ ଭେଟୁଚି ନିଶ୍ଚୟ । ପଛ ବାକ୍ୟଟି ସିଏ ମୋ ଆଡ଼କୁ ଆଙ୍ଗୁଠି ଦେଖାଇ କହିଲା ଆଉ ଫିକ୍ କରି ହସିଦେଇ ଚାଲିଗଲା । ଅବଜ୍ଞାରେ ତ !

: ଭାଇନା, ଉଠ, ଉଠ ସକାଳ ହେଇଗଲାଣି– ଡ୍ରାଇଭର ମୁହଁ ଧୋଇଲାଣି, ଗାଡ଼ି ଚାଲୁ ଏଥର । ତାକୁ କହ ।

ଗାଡ଼ି ଚାଲୁଛି ଏଥର ।

ପାହାନ୍ତା ହେଲା ବେଳଠୁଁ ଗାଡ଼ିଟା କେମିତି ବିଜୁଳି ବେଗରେ ଘାଟିରାସ୍ତା ପାର ହୋଇ ପୁରା ଛତିଶ କିଲୋମିଟର ଅତିକ୍ରମ କରିଗଲା ଜଣା ପଡ଼ିଲାନି । କୋଉଠି କିଛି ପ୍ରତିବନ୍ଧକ ପ୍ରମାଦ ଆସିଲା ନାହିଁ । ସର୍ ସର୍ ଚାଲିଚି ଗାଡ଼ି । କୁଆଡ଼େ ଗଲେ ଲୁଚିଲେ ପାମର ଆତତାୟୀମାନେ ଅଥଚ ଆମେ ଦିହେଁ ସୁରୁଖୁରୁରେ ପହଞ୍ଚିଗଲୁ ଠିକଣା ସାମ୍ରାଜ୍ୟରେ । ଏ ସହରରେ ଏବେ ଏକବିଂଶ ଶତାବ୍ଦୀ ଓହ୍ଲେଇଚି । ଲୋକବାକ, ଯାନ ବିମାନ ସବୁ କେମିତି ଗୋଟେ ସୃଷ୍ଟିଛଡ଼ା ଉଲ୍ଲାସରେ ମତଗର୍ବରେ ଉଲ୍ଲସିତ ହଉଚନ୍ତି । ଯିଏ ଯୁଆଡ଼େ ଯିବାକୁ ଚାହୁଁଚି ଯାଉଚି । ଯାହାକୁ ଧରିବ, ଯାହାକୁ ଅଧିଗତ କରିବ ଭାବୁଚି କରୁଚି । ଚୌଦିଗରେ ପ୍ରମତ୍ତ ସ୍ୱେଚ୍ଛାଚାରିତା । ମନ, ସ୍ୱପ୍ନ, ଆବେଗ ସବୁ ସ୍ୱେଚ୍ଛାଚାରୀ । ଅଡୁଆ ହେଲେ ବି ଏଇ ସହରଟି ଭଲ ଲାଗୁଚି । ଉଶ୍ୱାସ ଲାଗୁଚି । ବିନ୍ଧ୍ୟା କହୁଚି–

: ଭାଇନା, ଏଠେଇଁ ପହୁଁଞ୍ଚିଲା ପରେ ଆଉ ମନ କରୁନି, ଫେରିବା ପାଇଁ, ନାଇଁ ?

ମୁଁ ଗୁମର କଥାଟା କହିଦେଲି ଟ୍ରେକରରୁ ଉତୁରି ପାନ୍ଥଶାଳାକୁ ମୁହେଁଇଲାବେଳେ–

: ଯଦି ତୋ ଭାଇ ଗିରିଧାରୀ ଜୀବନରେ ନଥିବ ତା'ହେଲେ କ'ଣ ଏଇ ନୂଆ ଭୂଖଣ୍ଡକୁ ବି ତୁ ଭଲପାଇବୁ ଲୋ ବୋକୀ ଝିଅ ?

ବିନ୍ଧ୍ୟା ମୁହଁ ଭାରୀ କଲାଣି–

: ସେମିତିକା କାଳତୁଣ୍ଡିଆ କଥା କହନି କହୁଚି । ମୋ ପକେଟରେ ଟେଲିଗ୍ରାମ୍ କାଗଜ ଉପରେ ହାତମୁଠା ଟାଣ ହେଇଆସୁଚି । ଅଥଚ ମୁଁ ବୁଡ୍ ବକ୍ ପାଗଳ ପରି ହିଁ ହିଁ ହେଇ ହସୁଚି । ଶୀତତାପ ନିୟନ୍ତ୍ରିତ ଟ୍ରେନ୍‌ରେ ବସି ଆମେ ଯାଉଚୁ ଗିରିଧାରୀର ୱାଇ.ଏମ୍.ସି.ଏ. ହଷ୍ଟେଲକୁ, ତାକୁ ଭେଟିବାକୁ– ହେପାଜତ କରିବାକୁ । ସେଠି ପହୁଞ୍ଚି ଦେଖୁଚୁ ଯେ ଜଣେ ବାବୁରୀ ବାଳ ବିମଣ୍ଡିତ ଗୋରା ଚକଚକ ଯୁଆନ ଗୋଟେ ପ୍ରକାଣ୍ଡ ରଙ୍ଗିନ୍ ଟି.ଭି. ସେଟ୍ ଆଗରେ ସ୍ପ୍ରିଂ କୁଶନ ଆରାମ୍ ଚେୟାର ଉପରେ ଆଉଜି ହାତରେ ୱାଇନ୍ ଗ୍ଲାସ୍ ଧରି ଚିତ୍ର ଦେଖୁଚି । ଟି.ଭି.ରେ ସେତେବେଳକୁ ମୁନ୍‌ମୁନ୍ ସେନ ସମେତ ଆଉ ଦି'ଚାରିଟା ଗୋରା ଗୋରା ସୁନ୍ଦରୀ ଝିଅ କିଲିବିଲି ହସ ଖୁସିରେ ବିଭିନ୍ନ ସାବୁନରେ ଗାଧୋଇ ଲାଗିଚନ୍ତି ଆଉ କହୁଚନ୍ତି ପ୍ରଜ୍ଞାପିତ ସାବୁନ୍‌ଗୁଡ଼ିକୁ ମାଖିହୁଅ । ଜୀବନ ସାବୁନ୍ ସର୍ବସ୍ୱ ପ୍ରମାଣିତ ହେଉ ଇତ୍ୟାଦି ।

ବିନ୍ଧ୍ୟା ଆବେଗରେ ବିସ୍ମୟରେ ଚିତ୍କାର କରି ଉଠିଲା–

:ହଇରେ ଧନମଣି– ଗିରିଧାରୀ । ତୁ ସଇସଲାମତ ଅଛୁଟି ? ମୋ ଭାଇ କେଡ଼େ ସୁନ୍ଦର, କେଡ଼େ ତେଜୀୟାନ୍ ଦିଶୁଚି, ଦେଖ ଭାଇନା । ମତେ ତ ଖଚ ଟେଲିଗ୍ରାମ୍ କରି ଡରେଇ ଦେଲା ପାଜି ଶୟତାନ୍ ! ସବୁବେଳେ ଏମିତି ବ୍ୟସ୍ତ କରି ପକେଇବ ।

ଭାଇଭଉଣୀ ଦିହେଁ କୋଳାକୋଳି ହେଇ ଅପୂର୍ବ ଆନନ୍ଦରେ ମୋ ଆଡ଼କୁ ଚାହିଁଚନ୍ତି ମୃଦୁ ତାତ୍ସଲ୍ୟରେ । ମୁଁ ଭ୍ରୂକୁଞ୍ଚନ କରି ଟେଲିଗ୍ରାମ୍ କାଗଜ ଟୁକୁରାଟା ପେଣ୍ଟ୍ ପକେଟରୁ ବାହାର କରି ଗିରିଧାରୀକୁ ଦେଖାଇଲି ଆଉ କହିଲି–

: ତୁ ଯଦି ମରିନାହୁଁ– ଏଇଟା କି ଫାଜିଲାମି ?

: ମଲା, ମଲା ଏଇଟା ଗୋଟେ କଥା ! ଟେଲିଗ୍ରାମ୍‌ଟା ସତ । ମୁଁ ମରିଥିଲି ଗଲା ବିଂଶ ଶତାବ୍ଦୀର କୌଣସି ପାଞ୍ଚ ତାରିଖରେ । କିନ୍ତୁ ଏକବିଂଶ ଶତାବ୍ଦୀରେ ଆଉ ଶବ ନାହାନ୍ତି ସମସ୍ତଙ୍କର ପୁନଃପ୍ରାଣ ପ୍ରତିଷ୍ଠା ରିସରେକ୍‌ସନ୍ ହେଇଚି । ସିଧା କଥା । ଏଇ ପ୍ରଚଣ୍ଡ ଜୀବନିକାର ସମୟକୁ ଆଘ୍ରାଣ କର ମୂଢ଼ମତିମାନେ । ଏଠି ସବୁ ଅନିର୍ବାଣ– ସବୁ କାଳଜୟୀ ଶାଶ୍ୱତ । ଅପାକୁ ଡକେଇ ଆଣିଚି । ଘୁଣଖିଆ ନଶ୍ୱର ଶତାବ୍ଦୀରୁ ମୁକୁଳି ଆସିବା ପାଇଁ । ଆଗେ କଫି ଖାଅ । ଗାଧୁଆ ପାଧୁଆ ସାର । ତା'ପରେ ଦେଖିବ ମୁଁ ଏଇଠି ତମର ଅଭିନନ୍ଦନ ପାଇଁ କ'ଣ ସମ୍ପାଦି ରଖିଚି ।

ବିନ୍ଧ୍ୟାର ରୂପ ବଦଳିଚି । ଭାରି କମନୀୟ ତନ୍ମୟ ରୂପଶ୍ରୀ ଝଟକୁଚି ତା'ର ଠାଣିରେ, ତ୍ୱକ୍‌ରେ । ମତେ ଚାହିଁ କହୁଚି–

: ଦେଖୁଚ ତ ମୋ ଭାଇର କଥାରେ କାମରେ କେମିତି ଅମୃତ ମାଖି ହେଇଚି । ମୋ ଭାଇଟି ?

ଟି.ଭି. ସ୍କ୍ରିନ୍‌ରେ ଏଇ ସମୟରେ ସମ୍ବାଦ ପରିବେଷଣ ହେଲା । ଏଇ କ୍ରମରେ ।

ମୁଁ ଆଉ ବିନ୍ଧ୍ୟା ଅବାକ୍ ହେଇ ଚାହିଁଚୁ । ସମ୍ବାଦ ପଢୁଚି ଖୋଦ୍ ପଲ୍ଲବୀ । ଏ ରାଜ୍ୟକୁ ତାଙ୍କ ଆଗରୁ କେତେବେଳେ ଆସି ଦୂରଦର୍ଶନ କାର୍ଯ୍ୟାଳୟରେ ମୁତୟନ ହେଇସାରିଛି ଜାଣିବା ମୁସ୍କିଲ୍ । କେତେବେଳେ ଜୁଳୁଜୁଳୁ ଚାହିଁ, କେତେବେଳେ ଆଖିକୁ ଓଠକୁ ନଚାଇ ନିର୍ଭୁଲ୍ ଇଂରାଜୀରେ ଗାଇଯାଉଚି, ଅସଲ ବଛା ବଛା ଜାଣିବା ଖବର । ଏ ରାଜ୍ୟର ଚଳନ୍ତି ଫେସନ ମୁତାବକ ବେଶ ପିନ୍ଧିଚି । ଦେହରେ ଖାକି ପଶମର ଢିଲା ଜାମା, ସେଥିରେ ପୁଣି ସୁନା ପରି ଚିକ୍ ଚିକ୍ କରୁଥିବା ଏଡ଼େ ଏଡ଼େ ପଚିଶିଟା ବୋତାମ । ବୋତାମ ଉପରେ ବିଭିନ୍ନ ସମାଜପତି ଆଉ ନେତାମାନଙ୍କ କଟାମୁଣ୍ଡ ମୋହର ଭଳି ଛପା ହେଇଚି । ଆରମ୍ଭରୁ ସ୍କାଉଟ୍‌ମାନଙ୍କ ପରି ଗୋଟେ ତିନି ଆଙ୍ଗୁଳିଆ ସଲାମ ଦେଇ କହିଲା ଯେ–

ଆଜି ରାଷ୍ଟ୍ରମୁଖ୍ୟ ଏକବିଂଶ ଶତାବ୍ଦୀ ପାଇଁ ଲୋକ ପ୍ରତିନିଧି ତଥା ଜନନାୟକ ନିର୍ବାଚନର ନୂତନ ପନ୍ଥା ଘୋଷଣା କଲେ । ଏତଦ୍ୱାରା ଗଣତାନ୍ତ୍ରିକ ପଦ୍ଧତିରେ ଯେତେ ଅଡୁଆ ଧରୁଥିଲା, ଗୋଳମାଳିଆ ପରମ୍ପରା ସୃଷ୍ଟି ହେଇଥିଲା ସେସବୁ ଅପସୃତ ହେଇ ଲୋକ ଶାସନ ଦୋରସ୍ତ ହେବ । ରାଷ୍ଟ୍ରମୁଖ୍ୟ, ନ୍ୟାୟାଳୟ ମୁଖ୍ୟ ତଥା ବିଭାଗୀୟ ମନ୍ତ୍ରୀମାନେ ଏଣିକି ପୁରୁଷାନୁକ୍ରମେ ସ୍ୱୀକୃତି ପାଇବେ । ଅର୍ଥାତ୍ ସ୍ୱାଧୀନତା ସଂଗ୍ରାମୀ ତୁଙ୍ଗନେତାମାନଙ୍କ ପୁତ୍ର, କନ୍ୟା, ପୌତ୍ରାଦି କେବଳ କାଳକ୍ରମେ ଉକ୍ତ ପଦବୀମାନଙ୍କ ପାଇଁ ପ୍ରାର୍ଥୀ ହୋଇପାରିବେ ଓ ନିର୍ବାଚିତ ହେବେ । ଏହାର ବିକଳ୍ପ ଘଟିଲେ ଅନୁଶାସନ ପର୍ବ ଓରଫ ଇମର୍‌ଜେନ୍‌ସି ଘୋଷିତ ହେବ ।

ଦେଶର ବଛା ବଛା ନାଟୁଆ ପିଲା, ଗୋଟିପୁଅ, ସିନେମା ଷ୍ଟାର୍‌ମାନେ, ଯେଉଁମାନେ ବିଭିନ୍ନ ସମୟରେ ହରେକ ପ୍ରକାର ବେଶ ପାଗ ପିନ୍ଧି ପାରନ୍ତି, କେତେ କିସମର ହୀରୋ, ମହାପୁରୁଷ,

ମହନ୍ତ, ଗୁଣ୍ଡା, ପାଜି, ଶୟତାନ, ବିଦୂଷକ, କମେଡ଼ିଆନ୍ ଭୂମିକାରେ ନାଚି ପାରନ୍ତି ସେମାନଙ୍କୁ ମଧ୍ୟ ଜନନେତା, ନେତା ଆଉ ସମାଜପତି ନିର୍ବାଚନରେ ପ୍ରାଧିକାର ଦିଆଯିବ । ଯେହେତୁ ଏଇ ସୁଆଙ୍ଗ ବାଲାଏ ବିଷଣ୍ଣ ହତାଶ ଜନତାଙ୍କୁ ରଙ୍ଗମଞ୍ଚରେ କି ସିନେମା ପରଦାରେ କେତେ ଭେଳିକି ଦେଖାଇ ଆନନ୍ଦ ଉତ୍ତାପ ଦେଇଥାନ୍ତି, ସେଇମାନେ ହିଁ ସଭା ସମିତିରେ ଫୁଲମାଳ ପିନ୍ଧି ଠିକ୍ ଭାବରେ ଜଗତ ଉଦ୍ଧାର କଣ୍ଠେ ଅଭିନୟ କରିପାରିବେ । ପୁନଶ୍ଚ ରାଷ୍ଟ୍ରନାୟକମାନେ ଏଣିକି ମଟର କାର୍ ବଦଳରେ ଅତ୍ୟାଧୁନିକ ଇଞ୍ଜିନ୍ ଚାଳିତ ଶୀତତାପ ନିୟନ୍ତ୍ରିତ ଗୋଟିଏ ଗୋଟିଏ ପୌରାଣିକ ବିମାନ ଚଢ଼ି ବୁଲାଚଲା କଲେ ଦେଶବାସୀ ଆନନ୍ଦ ପାଇବେ । ଏଇ ରଥମାନଙ୍କ ନାମ ଚୈତନ୍ୟ ରଥ, କୌଟିଲ୍ୟ ରଥ, ପୁଷ୍ପକ, ଦାନବ ଦଳନ ଇତ୍ୟାଦି ହେଇପାରେ ।

ଯା' ପର ଖବର । ସ୍ୱାଧୀନତା ସଂଗ୍ରାମୀଙ୍କ ପାଇଁ ଉଦ୍ଦିଷ୍ଟ ମାସୁଆରୀ ଭତ୍ତା ପାଇବା ପାଇଁ ଉଚ୍ଚ ଶକ୍ତିସମ୍ପନ୍ନ କମିଟିଙ୍କ ସୁପାରିଶ ଅନୁସାରେ ଯେଉଁ ଯୋଗ୍ୟ ବ୍ୟକ୍ତିମାନଙ୍କ ତାଲିକା ପ୍ରସ୍ତୁତ ହୋଇଥିଲା ସେଥିରେ କେବଳ ଷୋଳ ବର୍ଷରୁ ବାଇଶି ବର୍ଷ ପର୍ଯ୍ୟନ୍ତ ଯୁବକ ଯୁବତୀଙ୍କ ନାମ ଥିବାରୁ କେହି ଜଣେ ଚପଳମତି ଗୌଣ ଲୋକ ଏହାର ସମାଲୋଚନା କରି ସର୍ବୋଚ୍ଚ ନ୍ୟାୟାଳୟ ଯାଏଁ ମାମଲା ଉଠେଇଲେ । ଉକ୍ତ ନ୍ୟାୟାଳୟ ତାଙ୍କର ନଗଦ ବିସ୍ଫୋରକ ନିଷ୍ପତ୍ତି ଆଦେଶନାମାରେ କହିଚନ୍ତି ଯେ, ତାଲିକା ଠିକ୍ ଅଛି । କାରଣ ଏଇ ତାଜା ଯୁବକ ଯୁବତୀମାନେ ସ୍ୱାଧୀନତା ସଂଗ୍ରାମ ବେଳେ ଜନ୍ମ ହୋଇ ନଥିଲେ ମଧ୍ୟ, ଲଜ୍‌ପତ୍ ରାୟ, ବାଲ୍ ଗଙ୍ଗାଧର ତିଲକଙ୍କଠୁଁ ଗାନ୍ଧୀ ମହାତ୍ମା ପର୍ଯ୍ୟନ୍ତ ଲୋକଙ୍କ ନାଁ ନ ଶୁଣିଥିଲେ ମଧ୍ୟ ଯାହା ତାଙ୍କ ଗତିବିଧିରୁ ଜଣାପଡୁଚି ସେମାନେ କ'ଣ ହେଲେ ଗୋଟେ ସଂଗ୍ରାମ ସିନେମା ବା ଡିସ୍କୋ ଡାଞ୍ଚାରେ କରିବେ ବୋଲି ଚବିଶ ଘଣ୍ଟା ଉତ୍ପାତ ହେଉଚନ୍ତି । ତାଙ୍କ ରକ୍ତ କୋଷରେ ସଂଗ୍ରାମର ସ୍ଫୁଲିଙ୍ଗ ଅଛି । ସେମାନେ ହେଲେ ଏକ ବିପ୍ଳବ ଉନ୍ମୁଖ ସଂସ୍କୃତିର ଦାୟାଦ । ପୁଣି ସରକାରୀ ଓକିଲଙ୍କ ବଳିଷ୍ଠ ପୌରାଣିକ ଯୁକ୍ତି ଯେ, ପତି ପତ୍ନୀର ଗର୍ଭରେ ସନ୍ତାନ ହୋଇ ଜନ୍ମ ହୁଏ । ଏହା ହିନ୍ଦୁ ଧର୍ମର ବିଶ୍ୱାସ । ସେ ଯୋଗୁଁ ପତ୍ନୀଙ୍କୁ ଜାୟା କୁହାଯାଏ । ଏଣୁ ତାଲିକାଭୁକ୍ତ ଯୁବ ସ୍ୱାଧୀନତା ସଂଗ୍ରାମୀମାନେ କୌଣସି ନା କୌଣସି ପୂର୍ବସୁରି ଅସଲ ସ୍ୱାଧୀନତା ସଂଗ୍ରାମୀମାନଙ୍କ ପୁତ୍ର ପୌତ୍ର ରୂପରେ ଯେ ନବକଳେବର ଧାରଣ ନ କରିଚନ୍ତି ତା' କହିହେବ ନାହିଁ । ଏଣୁ ସମକାଳୀନ ନେତୃବର୍ଗ ଯା'କୁ ଇଚ୍ଛା ତାକୁ ସ୍ୱାଧୀନତା ସଂଗ୍ରାମୀ ହିସାବରେ ଚିହ୍ନଟ କରିବାରେ ବାଧା ନାହିଁ ।

ପଲ୍ଲବୀ ଏବେ ଟିକିଏ ଆଖି ମିଟିକା ମାରି, ସ୍ୱରରେ ହସ ଚହଟେଇ ଆଉ ଗୋଟେ ଚମକପ୍ରଦ ଖବର ପାଠ କଲେ । ଯେହେତୁ ନୂତନ ଶିଳ୍ପାୟନ ନୀତି'ଅନୁସାରେ ନିଜକୁ ଦରିଦ୍ର ବେକାର ଅଥଚ କର୍ମଠ ସମର୍ଥ ପ୍ରାର୍ଥୀ ବୋଲାଇ ବହୁ ଉଚ୍ଚ ସରକାରୀ କର୍ମଚାରୀ ତଥା ପୁଞ୍ଜିପତିଙ୍କ ଅଯୋଗ୍ୟ ସନ୍ତାନମାନେ କୋଟି କୋଟି ଟଙ୍କା ସରକାରୀ ମୁନାଫା ସହ ବ୍ୟାଙ୍କରୁ ଉଠାଇଚନ୍ତି ଏବଂ ସେମାନଙ୍କର ଦୀର୍ଘ ତାଲିକାଭୁକ୍ତ ନୂଆ ଶିଳ୍ପ ପ୍ରକଳ୍ପଗୁଡ଼ିକ ପୂରା ଅକାମୀ ହୋଇପଡ଼ିଚି । ସରକାର ଋଣ ଆଦାୟ ନ କରିପାରି ପର୍ଯ୍ୟାପ୍ତ କ୍ଷତି ସହୁଚନ୍ତି, ଏପରି ଅଘଟଣକୁ ବ୍ୟବସ୍ଥିତ କରିବା ପାଇଁ ଆଉ ଏକ ଚତୁର ପଦ୍ଧତି ଘୋଷଣା କରାଗଲା । ବିରୋଧୀ ଦଳର ସଭ୍ୟମାନେ ଯଦି ଏହି ରୁଗ୍ଣ ଶିଳ୍ପଗୁଡ଼ିକୁ ଅଳ୍ପ ମୂଲ୍ୟରେ ନିଲାମ୍ ନେବାକୁ ଚାହାନ୍ତି ତା'ହେଲେ ସେମାନଙ୍କୁ ତାହା ଅଗ୍ରାଧିକାର ଭିତ୍ତିରେ ଦେଇଦିଆଯିବ । କିନ୍ତୁ ଗୋଟାଏ ସର୍ତ୍ତରେ ଯେ, ସେମାନେ ସବୁକାଳେ ସଂଖ୍ୟାଲଘୁ ରହିବେ ବୋଲି ଏକ ଚୁକ୍ତିନାମା ସ୍ୱାକ୍ଷର କରିବେ ।

ଟି.ଭି. ସ୍କ୍ରିନ୍‌ରେ ସମ୍ବାଦ ପଢ଼ିବାକୁ ବସିଥିବା ଆଉ ଜଣକ ଉପରେ ଏବେ ଆଲୁଅ ପଡ଼ିଲା । ଅସମ୍ଭବ କଥା । ଇଏତ ବିଷନ୍ ସାମନ୍ତ । ଇଏ ବି କ'ଣ ରାଜ୍ୟପାଉ ହେଇ ପଳେଇ ଆସିଚନ୍ତି ପଲ୍ଲବୀ ସାଙ୍ଗରେ ଆଉ ତାଙ୍କ ପାଇଁ ଏଠେଇଁ ଖବର ପଢ଼ିବା ଚାକିରି ଥୁଆ ହେଇଥିଲା । ଯା'ହଉ ବିଷନ୍ ସାହେବ ପ୍ରଫୁଲ୍ଲ ଦିଶୁଚନ୍ତି । ନୁଖୁରା ଝୋଟ ପରି ବାବୁରୀ ବାଳକୁ ରଙ୍ଗ ମାରି କଳା କରିଚନ୍ତି । ତାଙ୍କ ଖାକି ପଶମ କୋଟ୍ ବୋତାମରେ ଆଉ ଟାଇପିନ୍ ଉପରେ ମଧ୍ୟ ମୋହର ପରି ନେତାମାନଙ୍କ ମୁଣ୍ଡଛାପ । ସାହେବୀ ଢାଞ୍ଚାରେ ଓଠ ଚିପି ଚିପି ଗମ୍ଭୀର ଭାବରେ ତାଙ୍କର ଖବର ପଢ଼ା ସୁରୁ ହେଲା ।

ଏ ରାଜ୍ୟର ନୂଆ ଶ୍ରମନୀତି ଅନୁସାରେ ଯେତେ ଟ୍ରେଡ୍ ୟୁନିଅନ୍ ଆଉ ଶ୍ରମିକ କାର୍ପଟଦାର ସଂସ୍ଥା ଅଛି ସେମାନଙ୍କ କର୍ମଧାରୟ ଓ ମୁଖ୍ୟ ପୁରୋଧାମାନଙ୍କୁ ସରକାର ନିଜ ଖର୍ଚ୍ଚରେ ବାସଭବନ, ମଟରଗାଡ଼ି ଓ ପଞ୍ଚତାରକୀୟ ଅୟସର ବ୍ୟବସ୍ଥା କରିବେ । ଶ୍ରମିକମାନଙ୍କଠୁଁ ବିପୁଳ ଚାନ୍ଦା ଉଠାଇ ମାଲିକ ଓ ସରକାରଙ୍କ ସହିତ ମଧ୍ୟସ୍ଥି ବା ଦଲାଲୀ କରି ଶ୍ରମିକ ନେତାମାନେ ଏବେ ତୈଳାକ୍ତ ମାଲିକ, ମନ୍ତ୍ରୀ, ହାକିମଙ୍କଠୁଁ ଆଉରି ବର୍ତ୍ତୁଳ ଓ ଚିକ୍‌କଣ ଦିଶିଲେଣି । ତଥାପି ବିଭିନ୍ନ ଶ୍ରମ ଅନୁଷ୍ଠାନ ଭିତରେ ଯେଉଁ ହାଣକାଟ କଳି ତକରାଳ ଚାଲିଚି ତାହା ମୁଖ୍ୟତଃ ଭିନ୍ନ ଭିନ୍ନ ଟ୍ରେଡ୍ ୟୁନିୟନ୍ ନେତାମାନଙ୍କ ଖୋରାକି ଫାଇଦା ଆଉ 'ଷ୍ଟାଟସ୍'ର ପାର୍ଥକ୍ୟ ଯୋଗୁଁ ଘଟିଥିବାରୁ ସରକାର ଏମାନଙ୍କୁ ସମାନ ଭାବରେ କ୍ୟାବିନେଟ୍ ପାହ୍ୟା ଦେଇ ସମସ୍ୟାର ସମାଧାନ କରିସାରିଚନ୍ତି । ତତ୍ ସଂଗେ ସଂଗେ ଯେହେତୁ ପ୍ରାୟ ସମସ୍ତ ସରକାରୀ ଉଦ୍ୟୋଗରେ ଚାକିରିଆ ଶ୍ରମିକ ମିଛ ସତରେ ପ୍ରାୟ ପଚାଶ ଭାଗ ଓଭର ଟାଇମ୍ ଆଉ ପଚିଶି ଭାଗ ମୋଟେ କାମକୁ ନ ଆସି ଦରମା ପାଇଆସୁଚନ୍ତି ତାହା ଏଯାବତ୍ ଚାକିରି ସର୍ତ୍ତାବଳୀର ଅଙ୍ଗୀଭୂତ ହେଇସାରିଚି ବୋଲି ଧରାଯିବ । ଏହାର କୁପରିଣାମକୁ ନିୟନ୍ତ୍ରିତ କରିବା ପାଇଁ ନିଷ୍ପତ୍ତି କରାଯାଇଚି ଯେ, ସବୁ ଚାକିରିଆ ମଜୁରିଆଙ୍କୁ ସମାନ ଭାବରେ ଏଣିକି ଶତକଡ଼ା ଅଶି ଭାଗ ଓଭର ଟାଇମ୍ ଦିଆଯିବ । କାମ କରନ୍ତୁ ବା ନ କରନ୍ତୁ । ମୃତ ବା ଜୀବିତ ।

ବିଭିନ୍ନ ସମ୍ବାଦପତ୍ରର କୃତୀ ସମ୍ପାଦକମାନଙ୍କର କେତେକ ସମସ୍ୟା ସରକାରଙ୍କ ଦୃଷ୍ଟିକୁ ଆସିଚି । କେତେକ ସ୍ୱେଚ୍ଛାଚାରୀ ମହଲରୁ ସମାଲୋଚନା କରାଯାଉଚି ଯେ, ଯଦିଓ ଗୋଟିଏ ଦିଓଟି ସମ୍ବାଦପତ୍ର ସେମାନଙ୍କ ସମ୍ପାଦକ ଓ ତାଙ୍କ ବାପ, ମା', ପୁଅ, ଝିଅ, ଜୋଇଁ ଓ ବୋହୂଙ୍କ ଚିତ୍ର ପ୍ରାୟ ପ୍ରତିଦିନ ଭାଷ୍ୟ ଓ ଟୀକା ସହିତ ଛାପୁଚନ୍ତି, ଅନ୍ୟ ସମ୍ବାଦପତ୍ରମାନଙ୍କ ପରିଚାଳନା କର୍ତ୍ତୃପକ୍ଷ ସେମାନଙ୍କ ସମ୍ପାଦକ କିମ୍ବା ତାଙ୍କ ବିରାଦରିଙ୍କୁ ଅନୁରୂପ ସୁଯୋଗ ଦେଉନାହାନ୍ତି । ଏଣୁ ସେମାନଙ୍କର ପ୍ରତିଭା ଓ ଗୁଣାବଳୀ ଠିକ୍ ଭାବରେ ପ୍ରଜ୍ଞାପିତ ହୋଇପାରୁ ନାହିଁ । ଉଚ୍ଚ ନେତୃବର୍ଗଙ୍କ ପରି ସମ୍ପାଦନା କ୍ଷେତ୍ରରେ ମଧ୍ୟ ସମସ୍ତ ସମ୍ବାଦପତ୍ରରେ ଉତ୍ତରାଧିକାର ଓ କୁଳରକ୍ଷା ହେଉ ନାହିଁ । ଦେଶ ଓ ଜାତିର ଯେତେଗୁଡ଼ିଏ ସମାଜସେବୀ ସାହିତ୍ୟ ସଂସ୍କୃତି ଅନୁଷ୍ଠାନ ଅଛି ସେମାନଙ୍କ ସଭା ସମିତିର ଫଟୋ ଓ ବିବରଣୀ ପ୍ରକାଶରେ ପାତର ଅନ୍ତର ଘଟୁଚି; କାରଣ ଏସବୁରେ ପୌରୋହିତ୍ୟ କରିବା ପାଇଁ ଯଥେଷ୍ଟ ସଂଖ୍ୟକ ସମ୍ପାଦକ ବା ସେମାନଙ୍କର ପୁଅ, ଝିଅ, ଜ୍ୱାଇଁ ଇତ୍ୟାଦି ନାହାନ୍ତି । ଏହି ବୈଷମ୍ୟ ଦୂର କରିବା ପାଇଁ ସରକାର ନିର୍ଦ୍ଧାରଣ କରିଛନ୍ତି ଯେ, "ସମ୍ବାଦପତ୍ରମାନେ ସମ୍ପାଦକ ବା ତାଙ୍କର ଜ୍ଞାତି କୁଟୁମ୍ବଙ୍କ ଚିତ୍ର ଓ ପ୍ରବଚନ ଅନ୍ୟୁନ ଦୈନିକ ସଂସ୍କରଣରେ ଯଥାକ୍ରମେ ଦୁଇଥର ଓ ଦୁଇ କଲମ ଛାପିବେ । ଯଦି କୌଣସି ସଭାସମିତିକୁ ଅଳଙ୍କୃତ କରିବାକୁ ସମ୍ପାଦକ ଅଭାବ

ପଡ଼ନ୍ତି ତା'ହେଲେ ସେଇ ସଭାର ବିବରଣୀ ପ୍ରକାଶ କରି ତା' ସହିତ ପ୍ରତ୍ୟାଶିତ ଅଥଚ ଯୋଗଦେଇ ନପାରୁଥିବା ଜଣେ ସମ୍ପାଦକଙ୍କ ଫଟୋ ମଧ ଛାପା ହେବାକୁ ବାଧ ।

ବିଧାନ ସଂସଦମାନଙ୍କରେ ଆଲୋଚନାର ମର୍ଯ୍ୟାଦା ଆଉ ସଭ୍ୟମାନଙ୍କର ଆଚାର ବ୍ୟବହାରରେ ଶାଳୀନତା ରକ୍ଷା କରିବା ଲାଗି କେତେକ ଦୃଢ଼ ନୀତିଗତ ନିଷ୍ପତ୍ତି ନିଆଯାଇଛି । ପ୍ରଜାକୁଳର ଉତ୍ପୀଡ଼ନର ନିରାକରଣ ନିମିତ୍ତ ଦେଶଭକ୍ତିରେ ଉତ୍କ୍ଷିପ୍ତ ହେଇ ଉଭୟ ବିରୋଧୀ ଦଳ ଓ ସରକାରୀ ଦଳର ସଭ୍ୟମାନେ କେତେକ ବିଧାନସଭାରେ ଜୋତା, ଚପଲ, ଅଣ୍ଡା, ଚଉକି, ଷ୍ଟୁଲ୍ ପରସ୍ପର ଦିଗରେ ଫୋପଡ଼ା ଫିଙ୍ଗା କରିବାର ବହୁ ନଜିର୍ ସଂସଦ ବିବରଣୀ ବହିର୍ଭୂତ ହେଲେ ସୁଦ୍ଧା ଦେହସୁହା ଆଚରଣରେ ପରିଣତ ହୋଇଚି ।

ଏହାଛଡ଼ା ବ୍ୟକ୍ତିଗତ ଭାବରେ ବିଭିନ୍ନ ସଭ୍ୟ ବିଶେଷ କରି ମନ୍ତ୍ରୀ ଓ ନାଉଁଆ ନେତାମାନଙ୍କ କୁତ୍ସା ପ୍ରଚାର ପାଇଁ କେତେକ ନୂତନ ପଦ୍ଧତି ଆବିଷ୍କୃତ ହେଇଚି । କିଛି ନ ମିଳିଲେ ଯୌନ ସମ୍ପର୍କିତ କଳ୍ପିତ ସ୍ଖଳନର ସାମାନ୍ୟ ସୂଚନା ଟିକିଏ ଦେଇଦେଲେ ଯେ ଡିବେଟ୍ ସରଗରମ ହୋଇ ଉଠିବ, ଯୌନ ତୃଷାର୍ତ୍ତ ମେଡ଼ିଆ ଆଉ ରାଜ୍ୟବାସୀ ଯାବତ୍ ଗୁଜବକୁ ଶୋଷିନେଇ ମାତି ଉଠିବେ; ସାମାଜିକ, ଅର୍ଥନୈତିକ ସବୁ ସମସ୍ୟା ବିଚାର ଆଲୋଚନାକୁ ବିସର୍ଜନ ଦେଇ କିଞ୍ଚିତ୍ ଉତ୍ତାପ ଓ କାଳ୍ପନିକ ଲୋମହର୍ଷଣକାରିତାରେ ବିବଶ ହେବେ । ନିଜ ଭିଟା ଭୂଇଁ ସଂସ୍କୃତିର ଅହମିକା ସ୍ୱାଭିମାନକୁ ଗୋଇଠାମାରି ଅନ୍ୟ ରାଜ୍ୟର ଅନ୍ୟ ଦେଶର ବଙ୍କା ହସ ତାଚ୍ଛଲ୍ୟ ଅବଜ୍ଞାକୁ ନିର୍ଲଜ୍ଜ ଭାବରେ ଅଙ୍ଗୀଭୂତ କରିନେବା ଅବଶ୍ୟ ଆମର ଚଉଡ଼ା ହୃଦୟର ପ୍ରମାଣ ଦଉଚି । ବାଃରେ ଏଇ ହତଭାଗ୍ୟ ସାମାଜିକ ଜଳବାୟୁର ବ୍ୟାଧି । ଯାକୁ ସଜାଡ଼ିବାକୁ ରାଷ୍ଟ୍ରମୁଖ୍ୟ ଏକବିଂଶ ଶତାବ୍ଦୀରେ ନୂଆ ନିୟମ ଲାଗୁ କରିଚନ୍ତି । ଯଥା : ନିହାତି ଅଣ-ଅକ୍ତିଆର ଉତ୍ତ୍ୟକ୍ତ ଅବସ୍ଥାରେ ସଂସଦ ସଭାଗୃହରେ ଜଣେ ଗୋଟିଏ ସେସନ୍‌ର ବୈଠକମାନଙ୍କ ମଧରେ କେବଳ ଦୁଇହଳ ଜୋତା କିମ୍ବା ଚପଲ ଅପର ଦିଗକୁ ନିକ୍ଷେପ କରିପାରନ୍ତି । ତା'ଠାରୁ ଅଧିକ ନୁହେଁ । ଯଦି ଅବୈଧାନିକ ଏବଂ ଅଶ୍ଳୀଳ ଭାଷା କାହାକୁ କେବେ ଗାଳି ଦବା ଆବଶ୍ୟକ ମନେହୁଏ ତା'ହେଲେ କି କି ଭାଷା ବା ଶବ୍ଦ ପ୍ରୟୋଗ କରି ସେ ଗୁଲଜ କରିବାକୁ ଚାହାନ୍ତି ତା'ର ଏକ ଲିଖିତ ନୋଟିସ୍ ଚବିଶି ଘଣ୍ଟା ପୂର୍ବରୁ ବାଚସ୍ପତି ଓ ଉଦ୍ଦିଷ୍ଟ ସଭ୍ୟଙ୍କୁ ଦେବେ । ଏତଦ୍ୱାରା ପ୍ରତିପକ୍ଷ ସମୁଚିତ ଓଲଟ ଗାଳିମନ୍ଦର ବ୍ୟବସ୍ଥା କରିପାରିବେ । ପ୍ରତି ବୈଠକରେ ନିର୍ଦ୍ଧାରିତ ଏକଘଣ୍ଟା କେବଳ ପରସ୍ପର ପ୍ରତି ଉଦ୍ଦିଷ୍ଟ ଗାଳିମନ୍ଦ ପାଇଁ ନିରୂପିତ ହେବ ଏବଂ ତାହା ବିବରଣୀଭୁକ୍ତ ହେବ ନାହିଁ । ଖବରକାଗଜମାନେ କିନ୍ତୁ ତାହା ଛାପି ପାରିବେ । ନଚେତ୍ ସଂପୃକ୍ତ ବିଧାୟକମାନଙ୍କର ଆୟାସ ଓ ପ୍ରସ୍ତୁତି ପଣ୍ଡ ହେବ । ଯେହେତୁ ବିଧାୟକ ପରିବେଶ ଏକ ସମ୍ମାନନୀୟ ବୈଧାନିକ ସଂସ୍ଥା, ଏ ଭିତରେ ଯେତେ ଯାହା ବର୍ବରତା ବିଭତ୍ସତା ଘଟିବ ସେ ସବୁର ମଧ ନିଛକ୍ ଆଭିଜାତ୍ୟ ଅଛି । କିନ୍ତୁ ପଦାଲୋକ ସାଧାରଣ ଗୌଣ ମଣିଷ ଯଦି କେବେ କେଉଁ ଗୋଟେ ବିଧାନସଭା ବ୍ୟାପାରକୁ ନାପସନ୍ଦ କଲା କି ନାକ ଟେକିଲା ତା'ହେଲେ ତାକୁ ସ୍ୱାଧିକାର ଭଙ୍ଗ ପାଇଁ ଛଅମାସ ଜିଅଲରେ ଠୁଙ୍କି ଦେବାରେ କୌଣସି ବାଧା ନାହିଁ ।

ଖବର ଶେଷ ଅଂଶଟି ପଢ଼ି ଶୁଣାଇବା ପୂର୍ବରୁ ବିଷନ୍ ସାହେବ ଚଷମା ଖୋଲି ରୁମାଲରେ ରଗଡ଼ି ପୋଛିଲେ ଆଉ ଦର୍ଶକମାନଙ୍କ ଆଡ଼କୁ ଦରହସା ଆଖିରେ ଚାହିଁ ଭାରି ଗୋଟାଏ ମଉଜିଆ ଭିଡ଼ିଓ ଚିତ୍ର ଜରିଆରେ ନୂଆ ଶତାବ୍ଦୀରେ କେମିତି ପ୍ରବୀଣ ବିଚାରପତି ଫଟାଫଟ୍ ନ୍ୟାୟ ବିଚାର ଦେଇପାରନ୍ତି ତା'ର ନମୁନା ଦେଖେଇଲେ । ଆମେ ଚାହିଁଚୁ । ରାଜା ମହାରାଜାଙ୍କ ଦରବାର

ହଲ୍ ପରି ଗୋଟେ କୋର୍ଟ ରୁମ୍ । ସେଠି ମଧ୍ୟଯୁଗୀୟ କି ସାମନ୍ତବାଦୀ ଠାଣିରେ ଏଡ଼େ ଏଡ଼େ ସୁନା ରୂପା ଜରୀର କମକୂଟ ଖୁମ୍ବ, ସ୍ୟାଣ୍ଡେଲିୟର୍ ଅତିକାୟ କ୍ୟାଣ୍ଡେଲ୍ ଷ୍ଟାଣ୍ଡ୍ ଇତ୍ୟାଦି ଖଞ୍ଜା ହେଇଚି । ସେ ରାଜ୍ୟର ରାଜା ଯିଏକି ଖୋଦ୍ ହାଇକୋର୍ଟ ସିଏ ଆସୁଚନ୍ତି । ମୁଣ୍ଡରେ ପାଟ ଠେକା, ତା' ଉପରେ ମୁକୁଟ । ଡାହାଣ ହାତରେ ରୂପା କଲେଇ କରା ହାତୀ ଦାନ୍ତର ଶାସନ ଦଣ୍ଡ । ବାଁ କାଖରେ ଫୁଟେ ଲମ୍ବ ଥାକୁଲୁ ଥାକୁଲୁ ଲମ୍ବା ଧଳା ଲୋମ ପରିବୃତ୍ତ ବିଦେଶୀ କୁକୁର ଛୁଆଟିଏ ଜକା ହେଇଚି । ଦି' ପାଖରେ ଦି'ଜଣ କୋର୍ଟ ପିଆଦା ଆଲଟ ଚାମର ଧରିଚନ୍ତି । ପଛରେ ଆଉ ଦି'ଜଣ ପିଆଦା ଗୋଟାଏ ଲମ୍ବ ନାଗ ସାପ ପରି ନଳି ଲାଗିଥିବା ମସ୍ତ ରୂପାର ଗମ୍ବୁଜ ପରି ସୁନା କଳସଟିଏ ବୋହୁଚନ୍ତି । ନ୍ୟାୟାଧୀଶ ଆଠଫୁଟ ଉଚ୍ଚା କୋର୍ଟ ଡାୟସ୍ ଉପରେ ବଙ୍କେଇ ହେଇ ସମ୍ରାଟ ଠାଣିରେ ବସିଲେ । ମଝିରେ ମଝିରେ ଗୁଡୁ ଗୁଡୁ ଶବ୍ଦ କରି ହୁକା ପିଆ ହେଲା । କୁକର ପିଲାଟା ଭୋ ଭୋ କରି ଦି' ଚାରିଥର ଭୁକିବାରୁ ତାକୁ 'ନୋ ନୋ ପିଙ୍କି, ଇଟ୍ ଇଜ୍ ନଟ୍ ଡନ୍' କହି ତାଗିଦ୍ କରାଗଲା । ନ୍ୟାୟାଧୀଶଙ୍କ ଇସାରାରେ ଏବେ କୋର୍ଟ ସୁରୁ ହେଲା । ଦି'ପକ୍ଷର ଓକିଲ ମହକିଲ ଯୋଉମାନେ ଯୋଡ଼ହସ୍ତ ହେଇ ଠିଆ ହୋଇଥିଲେ ସେମାନେ ଅଣ୍ଟାଭାଙ୍ଗି ନଇଁକରି ରହିଲେ କୋର୍ଟ ଉଠିବା ପର୍ଯ୍ୟନ୍ତ । ପୁତ୍ତୁଳି ନାଚ ସଖୀ କଣ୍ଢେଇଙ୍କ ପରି ହାତ ଗୋଡ଼ ଲଡ଼ଲଡ଼ କରୁଥିବା ଜଣେ ଠାକୁଆ ପେସ୍କାର ଛାମୁଙ୍କ କାନରେ ଦି'ପଦ କ'ଣ ଫୁସ୍ ଫୁସ୍ କହିଲା, ଯା'ର ମର୍ମ ହେଲା ଯେ– ଏପାଖ ପକ୍ଷ ନକ୍‌ସଲ୍ ବାଲା ହାଣକାଟ କରିଚି । ଆଉ ସେପାଖ ଲୋକ ବେଆଇନ୍ ନିଶା ଜିନିଷ ବିକୁଚି । ଦି'ଜଣଙ୍କର କଜିଆ ହେଇଚି ଯେ କିଏ ସରପଞ୍ଚ ହବ । ଦିହେଁ ସମାନ ଭୋଟ୍ ପାଇଚନ୍ତି । କୋର୍ଟ ଆଉ ଦମେ ଜୋର୍‌ରେ ହୁକ୍‌କା ଶୋଷାଡ଼ି ରାୟ ଦେଇଦେଲେ ଯେ– ଇଏ ହେଉଚି ପ୍ରତିଯୋଗିତାର ଯୁଗ । ଜଣକେ ପାଞ୍ଚ ପାଞ୍ଚ ଓଭର୍ ବୋଲିଂ କରିବେ ଆଉ ଜଣକୁ । ଯା'ର ଅଧିକ ରନ୍ ହେବ ସେ ହେବ ସରପଞ୍ଚ । ଅସଲ ଜଜ୍ ଅଫ୍ ଏକ୍‌ସନ୍‌ର ଶୁଣାଣି ଫୁଣାଣି ଆଉ ଦରକାର ନାହିଁ । ଏହି ବୈପ୍ଳବିକ ନ୍ୟାୟ ବିଚାର ଶୁଣି ସମବେତ ଜନତା ଦି' ହାତରେ କରତାଳି ଦେଇ ନ୍ୟାୟାଧୀଶଙ୍କର ଜୟ ହେଉ ବୋଲି କହ୍ମେଇ ଦେଲେ ।

ସମ୍ବାଦର ମର୍ମ ବୁଝେଇ ବିଷନ୍ ସାହେବ କହିଲେ–

: ନିରୋଳା କମନ୍‌ସେନ୍‌ସ ବା ଉଚିତ ଉପସ୍ଥିତ ବୁଦ୍ଧି ହଉଚି ଅସଲ ନ୍ୟାୟ ବିଚାରର ଉତ୍ସ ।

ତିନି ଆଙ୍ଗୁଠିଆ ସଲାମ ସମେତ ଟିକିଏ ଟିକିଏ ଦାନ୍ତ ନିକୁଟି ବିଷନ୍ ସାମନ୍ତ ସମ୍ବାଦ ପରିବେଷଣ ଶେଷ କଲେ ।

ବିନ୍ଧ୍ୟା ମୋ' ଆଡ଼କୁ ଚାହୁଁଚି ଆଉ ମୁଁ ତା'ଆଡ଼େ । ଏକବିଂଶ ଶତାବ୍ଦୀ ଆମ ଦି'ଜଣଙ୍କୁ କ୍ରମେ ଶ୍ୱାସରୁଦ୍ଧ କରିଆଣୁଚି । ଆମେ ଦି'ଜଣ ତ ଗାଡ଼ି ଚଢ଼ି ଏ ରାଜ୍ୟରେ ପଶିଲୁ । କିନ୍ତୁ ଆମ ଆଗରୁ ବିଷନ୍ ଆଉ ପଲ୍ଲବୀଙ୍କ କାୟା ପଲଟ୍ ରୂପ ଏ ଭୂଇଁରେ ଉତୁରିଲା କେମିତି । ସବୁ ରକମ ସମାନ ଝାବଡ଼ା ଚରିତ୍ର ସବୁ ଯୁଗରେ ବିଚରଣ କରିବାକୁ ବାଧ କି ?

## ପାଞ୍ଚ

ରାତି ସାରା ଅନିଦ୍ରା । ପୁଣି ଯାତ୍ରାର ଶ୍ରମ । ଆମେ ଦି'ଜଣ ଦିନ ଗୋଟେରୁ ଶୋଇଯାଇଚୁ ଯେ ନିଦ ଭାଂଗିଲା ବେଳକୁ ରାତି ଦି'ଘଡ଼ି । କିଏ କବାଟରେ ଆୱାଜ ଦଉଚି । ପାଖ କମ୍‌ରାରୁ

ବିନ୍ଧ୍ୟା ଆଖି ମଳି ମଳି ଉଠିଲା । ଗୋଟାଏ ଚକଚକିଆ ଡ୍ରେସିଂ ଗାଉନ୍ ପିନ୍ଧି ଗିରିଧାରୀ ମୋ ଆଗରେ ଠିଆ । ବାହାକୁ ହଲେଇ କହିଲା–

: ଉଠ ଶଚି ଭାଇନା । ଆମେ ତିନିହେଁ ନଗର ପରିକ୍ରମା କରିବା । ତମକୁ ଏବଠୁ ସବୁ ଖୋଲି ନ କହିଦେଲେ, ସବୁକଥା ସମଝେଇ ନଦେଲେ ଏ ରାଜ୍ୟର ଚଳଣି କାୟେଦା ତମ ଦି'ଜଣଙ୍କୁ ଅନ୍ଧ କରିଦେବ । ତାବ୍‌ଜା କରିଦେବ ।

ପଚାରିଲି ରାତିଟାରେ କୁଆଡ଼େ ଯିବା ?

: କି ରାତି ? ଏ ରାଜ୍ୟରେ ତ ରାତିରେ ଇ ଲୋକେ ଆତଯାତ ହୁଅନ୍ତି । ଅସଲ କାମର ଶ୍ରମର ସମୟ ହେଲା ରାତି । ଦିନଯାକ ମସଗୁଲ୍ ନିଦ ଓ ଆରାମ୍ ।

ବିନ୍ଧ୍ୟା କହୁଚି–

: ହଉ ଚାଲ, ଉଠ । ରାସ୍ତାଯାକ ତ ଉଜ୍ଜ୍ୱଳ ଆଲୁଅ । ଲୋକବାକ ଭରପୂର । ମଟର, ଟ୍ରାମ୍, ସିନେମା, ବଜାର ସବୁ ଉଛୁଳୁଚି । ମତେ କେମିତି କେମିତି ଲାଗୁଚି । ଚାଲ ଘେରାଏ ବୁଲି ଆସିବା ।

ତିନିହେଁ ବାହାରି ପଡ଼ିଲୁ । ଗିରିଧାରୀର ନୂଆ ମଡେଲ ମଟର ଗାଡ଼ିରେ ବସିଲୁ । କହିଲି ଯେ–

: ବଜାର ହଇଗୋଳ ଛାଡ଼ି ଗୋଟାଏ ଏମିତି ଜାଗାକୁ ନେଇଯା ଯୋଉଠି ଗୋଟେ ବଡ଼ ପୋଖରୀ କି ୱାଟର ଫ୍ରଣ୍ଟ୍ ଥିବ, ସୁଲୁସୁଲୁ ପବନ ବୋହୁଥିବ, ସେଇଠି ବସି ଗପ କରିବା । ଏ ରାଜ୍ୟରେ ପରା ସବୁ ଋତୁ ଫଗୁଣ ।

ମଟର ଚାଲିଚି । କୈଫିୟତ୍ ଦଉଚି ଗିରିଧାରୀ–

: ଅପା, ତୁ ଭାବୁଥିବୁ ମୁଁ ମିଛୁଆଟେ ବୋଲି । ସତରେ ମୁଁ ଆସି ଏଠି ଚାକିରି ପାଇଗଲା ପରେ ଏଠା ପିଲାଏ ମତେ ଧମକ ଦେଲେ ଯେ ବାହାରର ଅନାର୍ଯ୍ୟ ଅପାଂକ୍ତେୟ ଲୋକେ ତାଙ୍କ ରାଜ୍ୟରେ ତମ୍ବୁ ପକେଇ ପାରିବେନି । ମୁଁ ବି ଟିକେ ଦାଦାଗିରି ଦେଖେଇଲି । ପୁଲିସ୍ ମାଜିଷ୍ଟ୍ରେଟ୍‌ଙ୍କୁ କହିବି ବୋଲି କହିଲି । ସେମାନେ କାହିଁକି ପରୱା କରନ୍ତେ । ପୁଲିସ୍ ହାକିମ ମତେ କହିଲେ ଯେ, ଏଠି ଏତଲା ଦିଆହୁଏ ନାହିଁ । କିଏ କାହା ବିରୋଧରେ ଅଭିଯୋଗ କରେ ନାହିଁ । ଯା'ର ଅଧିକ ବଳ, ଅଧିକ ବୁଦ୍ଧି, ଯିଏ ଅଧିକ ପାରିବାର ସେଇ ତ ଶେଷରେ ରାଜୁତି କରିବ । ଚିରନ୍ତନ 'ନ୍ୟାଚୁରାଲ୍ ଜଷ୍ଟିସ୍' , 'ଲ ଅଫ୍ ନେଚର', 'ସର୍ଭାଇଭାଲ୍ ଅଫ୍ ଦି ଫିଟେଷ୍ଟ' । ଆଦିମ କାଳରୁ ଏଯାବତ୍ ଏଥିରେ କ'ଣ ବ୍ୟତିକ୍ରମ ହେଲାଣି ନା ହବ । ଏଇ ଐଶ୍ୱର୍ଯ୍ୟମୟୀ ଫାଲ୍‌ଗୁନୀ ନଗରରେ ପୁଲିସ ପଲଟଣ କାହା ମର୍ଜିରେ କି କାମରେ ହସ୍ତକ୍ଷେପ କରିବା ମନା । ତମେ ଯଦି ସ୍ୱୟଂ ଅପାରଗ ମରିଯାଅ, ମ୍ୟୁନିସିପାଲିଟି ଡେଥ୍ ରେଜିଷ୍ଟର୍‌ରେ ନାଁ ଚଢ଼େଇ ଦିଅ, କାମ ଫତେ । ସେଇଠୁଁ ଅପା ମୁଁ ଯା'ର ସମାଧାନର ସୁରାକ୍ ପାଇଗଲି । ପୁଲିସ୍ ବାବୁଙ୍କୁ ସଲାମ କରି ସିଧା ଗଲି ମ୍ୟୁନିସିପାଲ୍‌ଟି ଅଫିସକୁ । ତାଙ୍କ ଇନ୍‌ସ୍‌ପେକ୍ଟରଙ୍କୁ ପଚାଶ ଟଙ୍କା ହାତଗୁଞ୍ଜା ଦେଲି ଆଉ କହିଲି ମୁଁ ମରିଯାଇଚି । ସିଏ ତାଙ୍କ ଚମଡ଼ାବନ୍ଧା ମୋଟା ରେଜିଷ୍ଟରରେ ଲେଖିଦେଲେ ଯେ, ଆର ରାଜ୍ୟରୁ ଆସିଥିବା ଗିରିଧାରୀ ସାମନ୍ତ ମରିଗଲେ । ଆଉ ମୁଁ ଏବେ ଜନ୍ମେଜୟ ଭାସିନ୍ । ଏଇ ଦେଶର ଲୋକ ଜାହାଜରେ ପଳେଇଥିଲି ବିଦେଶ । ଏବେ ଫେରି ଆସିଚି । ତା'ପରେ କମ୍ପ୍ୟୁଟର ଡାଇରେକ୍ଟରଙ୍କୁ ଟେବୁଲ ତଳେ ପନ୍ଦର ହଜାର ଟଙ୍କା ବଢ଼େଇ ମୃତ ଗିରିଧାରୀ ସାମନ୍ତ ଜାଗାରେ ମତେ ଚାକିରି କରେଇ ଦେବାକୁ କହିଲି । ସିଏ ମୋ ଆଡ଼କୁ ଚାହିଁ ମୁରୁକି ହସିଲେ । କହିଲେ

ଗିରିଧାରୀ ଭାରି ଦକ୍ଷ ଇଞ୍ଜିନିୟର ଥିଲା । ତମେ ତା' ଭଳିଆ ପାରିବାର ହବାକୁ ଚେଷ୍ଟା କର । ଚାକିରି ହେଇଗଲା । ମୋ ସାଙ୍ଗରେ ସେଇଦିନୁ ଆଉ କେହି ଗଣ୍ଡଗୋଳ କରୁନାହାନ୍ତି । କ'ଣ ବୁଝିଲୁ ଅପା ?

ସେଇ ପୁରୁଣା ଲୋକ ଅଳନ୍ଧୁ ଅନ୍ଧକାର ସମେତ ନାଁ ବଦଳେଇ ଦେଲେ । ଭେକ ବଦଳେଇ ଦେଲେ ଠିକଣା ବଦଳିଗଲା । ଆତ୍ମାପୁରୁଷ ବଦଳିଗଲା । ଶତାବ୍ଦୀ ବଦଳିଗଲା । ସାବାସ୍ ।

ରାଗରେ ବିନ୍ଧ୍ୟା ମୁହଁରେ ରକ୍ତ ଉକୁଟିଚି । ଓଠରେ ଅବଜ୍ଞା–

: ଗୋଟେ ନବରଙ୍ଗ ଲାଗିଚି ଏଠି । ନାଇଁ ? ଖାଲି ତାମ୍‌ସା କରୁଚ । ଅଭିନୟ କରୁଚ !

ଗିରିଧାରୀ ଚୁପ୍ ହେଇଯାଇଚି । ଥୟ ଧର ଥୟ ଧର ବୋଲି କହି ମୁଁ ବିନ୍ଧ୍ୟାର ପିଠି ଆଉଁସିଲି । ସିଏ ମୋ ଛାତିକୁ ଆଉଜି ଆସି ସୁଁ ସୁଁ ହେଇ କାନ୍ଦି ଲାଗିଚି । ତା'ର ଜାଗତିକ ସଂସ୍କାର ଆଉ ନୈତିକତାର ପ୍ରତ୍ୟୟ ଆଜି ଏଇ ନୂଆ ଭୂଖଣ୍ଡରେ ବିପନ୍ନ । ଏଠି ସମସ୍ତେ ଅଭିନୟ ସର୍ବସ୍ୱ ! ଆତ୍ମାରେ ତଲ୍ଲୀନତା କାହିଁ !

ଫଗୁଣ ରାତି । ଆକାଶରେ ଛିଣ୍ଡା ମେଘ । ସତକୁ ସତ ନୀଳାମ୍ବୁ ଚିଲିକା ପରି କେଡ଼େ ସୁନ୍ଦର ଆଉ ବିରାଟ ହ୍ରଦଟିଏ । ଜହ୍ନ ଆଲୁଅ ସୋରି ସୋରି ହେଇ ପଡ଼ିଚି ପାଣିରେ । ଢେଉ ସବୁ ନୂଆ ଭୁଆସୁଣୀ ପହିଲି ପାଲି ବୋହୂ ପରି ଚିକି ଚିକି ହସ କାନ୍ଦରେ ଓଲଟ ପାଲଟ ହଉଚନ୍ତି । ଆମେ ତିନିହେଁ ତା'ରି କୂଳରେ ପ୍ରାମାଣାଖ୍ୟ ମହାବଟ ମୂଳରେ ବସି ପଡ଼ିଲୁ । ହୃଦୟ ଉଶ୍ୱାସ ହଉଚି । କିନ୍ତୁ ମନ ଭିତରେ ଅସୁମାରି ଅସମାହିତ କନ୍ଦଳ । ହ୍ରଦର ଆର କୂଳରେ ଦୁଇଟି ଛାଇ ଉଠି ଆସୁଚନ୍ତି ଆଉ ଏ ଆଡ଼କୁ ଆଗଉଛନ୍ତି । ପାଖ ହେଇଗଲାରୁ ମୁଁ ଚିହ୍ନିଲି । ଇଏ ତ ପଲ୍ଲବୀ ! ରୂପ ଗରବିଣୀ ସଂସାରକୁ କାବୁ କଲା ଭଳି ବିରାଟ ଶିଳ୍ପସଂସ୍ଥାର ଅଭିଜାତ ମେନେଜିଂ ଡିରେକ୍ଟର । ତା' ପଛକୁ ବିଚକ୍ଷଣ ପାରିବାର ହଟଚମଟ ବିଦ୍ୟାର ପାରଙ୍ଗମ ପରାସ୍ତ ପୁଞ୍ଜିପତି ଦଲାଲ୍ ବିନ୍ଧ୍ୟାର ବାପା ବିଷନ୍ ସାମନ୍ତରାୟ । ଦି'ଜଣଯାକ କାକୁସ୍ଥ ଭଙ୍ଗୀରେ ଆମ ଆଗରେ ଠିଆ । ଜହ୍ନ ଆଲୁଅରେ ଠିକ୍ ମୁଁ ବାରି ପାରୁଚି ସେମାନଙ୍କ ଖାକି ପଶମ ପୋଷାକ ରଙ୍ଗ ଉତୁରା ଘୁଣଖିଆ ଚିରା ଫୁଟା ଅକାଳ ଦାରିଦ୍ର୍ୟ ପରି ଛିଣ୍ଡି କର୍ଦ୍ଦମାକ୍ତ ହେଇ ଓହଳିଚି । ହାତଗୋଡ଼ ଶୀର୍ଣ୍ଣ, ଦେହରେ, ମୁହଁରେ ଅସ୍ଥି କଙ୍କାଳ ଛଡ଼ା ଆଉ କିଛି ନାହିଁ । ଟି.ଭି. ସମ୍ବାଦ ପ୍ରଜ୍ଞାପକଙ୍କ ନୂଆ ରାଜ୍ୟର ଓଜସ୍ୱିନୀ ପହିଜ କୁଆଡ଼େ ଉଭେଇ ଯାଉଚି ।

ବିଷନ୍ ସାଆନ୍ତ ଶୁଖିଲା ହସ ହସି ଆମକୁ ସଂକେତ କରି କହୁଚନ୍ତି–

: ପିଲାମାନେ ଭୁଲ୍ ବୁଝିବନି । ଇଏ ଆଉ ଏକରକମ ରଙ୍ଗଭୂମିର ଅଭିନୟ । ଅପରିଗ୍ରହ ଦାରିଦ୍ର୍ୟ କେମିତି ଦେହକୁ, ଆତ୍ମାକୁ ଓହ୍ଲେଇ ଆସେ ସେଇଆ ମୁଁ ବୁଝଉଥିଲି ମୋରି ଏଇ ଅଲିଅଳି ସଖୀ କଣ୍ଢେଇ ପଲ୍ଲବୀକୁ । ଯୋଉ ଯୁଗ, ମନ୍ୱନ୍ତର, କି ଶତାବ୍ଦୀ ହେଉ, ବିଂଶ ହଉ, ଆତ୍ମାମାନେ ଖାଲି ଖୋଳପା ବଦଳେଇ ଅଭିନୟ କରିଚାଲିବେ । କିଏ ସେଇ ନବଜିଆ ଯୁଗ ପୁରୁଷ କହିଥିଲା ଯେ, ପୃଥିବୀ ଏକ ରଙ୍ଗମଞ୍ଚ, ଆଉ ଆମେ ସବୁ ଖାଲି ଖାଲି କତିପୟ ସାମୟିକ ଅଭିନେତା ଅଭିନେତ୍ରୀ । ଯାତ୍ରା ଚାଲିଚି । ସୁଆଙ୍ଗ ଚାଲିଚି । ମୁଁ ଏବେ ଅଧ୍ୟାତ୍ମ ବିଦ୍ୟାରେ ରତ । ସାଂଖ୍ୟ ଓ ପାତଞ୍ଜଳି ଶାସ୍ତ୍ରରେ କୁଶଳୀ ସୌନକ ନାମକ ବ୍ରାହ୍ମଣର କାୟା ପ୍ରବେଶ କରିଚି । ନାଁ ଠିକଣା ବଦଳେଇ ଦେଇଚି । ଆମର ମହାତ୍ମା ଜନକଙ୍କ ଆତ୍ମା ସୌର୍ଯ୍ୟ ଗାଥା ଗାୟନ ପରି ଦ୍ୱିବିଧ ଦୁଃଖ । ଗୋଟିଏ ହେଲା ମନ ଆଉ ଦେହ ସମୁଦ୍ଭବ । ଆଉ ଗୋଟିଏ ଆଧ୍ୟାତ୍ମିକ ଓ ଆଧିଭୌତିକ । ବିଷୟ ଚିନ୍ତା ଓ ବିଷୟାନୁରାଗର ଭିତ୍ତିଭୂମି ସ୍ନେହ । ଏଣୁରେ ମୂଢ଼ମତି ଆତ୍ମାମାନେ ନିର୍ବୈର ଓ

ବିସ୍ୱାଧୀନ ହୋଇ ରହ । କାଷ୍ଠ ଯେପରି ସ୍ୱକୀୟ ଅବୟବରୁ ଜାତ ହୁତାଶନ ଦ୍ୱାରା ବିନଷ୍ଟ ହୁଏ, ସେପରି ଅକୃତାତ୍ମା ଚଞ୍ଚଳ ମତି ପୁରୁଷମାନେ ସ୍ୱୀୟ ଦେହଜାତ ଲୋଭ ଦ୍ୱାରା ବିନାଶପ୍ରାପ୍ତ ହୁଅନ୍ତି । ଏଇ ଯୋଗୁଁ ନୂଆ ଭୂଖଣ୍ଡ ହେଉ ବା ପରବର୍ତ୍ତୀ ଶତାବ୍ଦୀ ହେଉ ଆମେ ସବୁ ଆତ୍ମାର ସେଇ ନିଗୂଢ଼ ଚମକପ୍ରଦ ସଞ୍ଜୀବନୀ ଅପରିଗ୍ରହ ଜପମନ୍ତ୍ରଟି ଗାଇ ଚାଲିବୁ । ମୁଁ ଓ ଅଧୁନାତନୀ ସବୁ ବିଦ୍ୟାରେ ପାରଙ୍ଗମା ପଲ୍ଲବୀ ଦିହେଁ ଯୋଗୀ ଯୋଗିନୀ ସାଧିବାକୁ ତିଆର । ମାର୍ ଗୋଲି ଏଇ ଏକବିଂଶ ଦ୍ୱାବିଂଶ ତ୍ରୟୋବିଂଶ ଶତାବ୍ଦୀମାନଙ୍କର ଆକସ୍ମିକ ଉତ୍ତରଣକୁ । ଅଭିନୟ ଶେଷ ହେଉ । ଯାତ୍ରା ସୁଆଙ୍ଗରେ ଯବନିକା ପଡ଼ିଯାଉ । ତମମାନଙ୍କୁ ଆମେ ଦିହେଁ ବର୍ଜନ କଲୁ । ଉଭେଇ ଯାଉଚୁ ଏବେ ।

ଏତିକିବେଳେ ଗିରିଧାରୀ ହିଁ ହିଁ ହେଇ ବିକଟାଳ ହସ ହସିଲା । କହୁଚି–

: ନୂଆ ଶତାବ୍ଦୀରେ ବିବାକ୍ ସବୁଲୋକ ଯେ ଏମିତି ପାଗଳ ଉନ୍ମାଦ ନ ହେବେ କିଏ କହିପାରିବ !

କେଜାଣି କାହିଁକି ବିନ୍ଧ୍ୟାର ଜଡ଼ସଡ଼ ତନୁଯଷ୍ଟି ଏକ ବିଭସ୍ତ ବେପଥୁରେ ଥରିବାକୁ ଲାଗିଲା । ଡୋଳା ଓଲଟେଇ ଓଷ୍ଠାଧାର ଆଉ ନାସାଗ୍ରକୁ ପ୍ରକମ୍ପିତ କରି କହୁଚି ସିଏ–

: ଭାଇନା ପଳେଇବା । ଏ ରାଜ୍ୟ ଛାଡ଼ି ଝଅଟ ଆମ ଘରକୁ ପଳେଇଯିବା । ସମୟର ଓଲଟା ଦିଗରେ । ମୁଁ ଏକବିଂଶ ଶତାବ୍ଦୀ ପାଇଁ ନିତାନ୍ତ ଅପ୍ରସ୍ତୁତ ।



# ସାପକାତି

## ଶୈଳରାଣୀ ମିଶ୍ର

ହଠାତ୍ ରୂଢ଼ ଆଘାତ ପାଇ ସେ ଆଜି ବହୁଦିନ ପରେ ନିଜକୁ ଖୋଜି ପାଇଛନ୍ତି ଯେଉଁ ଜୀବନ ସେ ଆଜି ପର୍ଯ୍ୟନ୍ତ ଯାପନ କରି ଆସିଥିଲେ, ସେଥିରୁ ନିଜକୁ ବିଚ୍ଛିନ୍ନ କରିନେବାକୁ ଦୃଢ଼ ପରିକର ହୋଇ ନିଜ ଅନ୍ତର ମଧ୍ୟରେ ଏକ ପ୍ରକାର ଅଦ୍ଭୁତ ପ୍ରତିକ୍ରିୟା ହେଉଥିଲା ତାଙ୍କର । ଅଶୁଭ ଛାୟାମାନଙ୍କ ମଧ୍ୟରେ ବ୍ୟର୍ଥତାର ଏକ କରୁଣ ପ୍ରତିମୂର୍ତ୍ତି ଯେପରି... ଦୁଃଖର କ'ଣ ଶେଷ ଅଛି ? ଅଛି ତା'ର ଗୋଟାଏ ସୀମାରେଖା ? ଯେତେ ଥର ନୟନା ଭାବିଛନ୍ତି ଏଇ ବୋଧହୁଏ ସେ ସୀମାନ୍ତ ପାରି ହୋଇଗଲେ ! କଣ୍ଟକିତ କଠିନ ଲୁହା ତାରବାଡ଼ଟିକୁ ଅତିକ୍ରମୀ ଯିବା ପାଇଁ ତାଙ୍କୁ କଠୋର ପରିଶ୍ରମ ପଡ଼ିଥିଲା– ବର୍ତ୍ତମାନ ମିଳିବ କିଛି ସୁଖର ଆଲୋକ– କିଛି ସ୍ୱାଦୁ– କାଇଁ ସେ ବିସ୍ତୀର୍ଣ୍ଣ ପ୍ରାନ୍ତର ? ପ୍ରତିଥର ଗୋଟାଏ ଉତ୍ତାଳ ତରଙ୍ଗର ଢେଉ କାଟି ଉପରକୁ ଉଠିବାକୁ ଚେଷ୍ଟା କଲା ସମୟରେ ଆସିଯାଇଛି ଆହୁରି ଏକ ନଭଶ୍ଚୁମ୍ବୀ ଢେଉର ପାହାଡ଼ । ଏଇ ସମସ୍ତିଙ୍କୁ ଗୋଟି ଗୋଟି କରି ଅକ୍ଳେଶରେ କାଟି ଦେଇ ଜୀବନ ତରୀଟିକୁ ବାହି ନେବା କେତେ ଦୁଃସହ, କେତେ ଦୁର୍ବହ ! ଭୁକ୍ତଭୋଗୀ ଭିନ୍ନ ଅନ୍ୟ କେହି ବୋଧହୁଏ ଉପଲବ୍ଧ କରିପାରିବେନି ।

ଶିଶୁ ବୟସରୁ ମାତୃହୀନା ନୟନା ଘରର ବଡ଼ଝିଅ ବୋଲି ଅଝଟ ଅଲିଅଳ ହେବା ପରିବର୍ତ୍ତେ ମୁଣ୍ଡାଇ ବସିଛି ସଂସାରର ଜଞ୍ଜାଳ । ସେଇ ଜଞ୍ଜାଳ ଓହ୍ଲାଇ ପାରିବା ସମ୍ଭବ ନୁହେଁ । ତା'ରି ଭିତରେ ତିଳ ତିଳ କରି ନିଜକୁ ଜଳାଇ ଅନ୍ୟମାନଙ୍କ ମଧ୍ୟରେ ପ୍ରାଣ ସଂଚାର କରିଛି । ନଅବର୍ଷର ନୟନା ଖେଳିବା ବୁଲିବା- ମଉଜ କରିବାଟିକୁ ସ୍ୱପ୍ନ ମନେକରି ସାଧନାର ବ୍ରତ ଧରି ନେଇଛି ! ସେଥିରେ ସାର୍ଥକତା ମିଳିଯିବ ଅବା ! ପ୍ରତିଟି କଥାରେ ନଜର, ଚାରିଆଡ଼କୁ ଦୃଷ୍ଟି ଦେଇ କର୍ତ୍ତବ୍ୟ କରୁ କରୁ ଗର୍ଜି ଉଠିବେ ମାଇଁ ।

– ବାସନ ଖଣ୍ଡେ ମାଜି ଆଣିଲେ କ'ଣ ମାନହାନୀ ହୋଇଯାଉଛି ? କୋଉ ନବାବ ଘରେ ବାପ ଦେଇଦେବ ଯେ ଝିଅକୁ ମହାରାଣୀ ଭଳି ଗଢ଼ି ତୋଳିଛନ୍ତି । ଯା- ଯା– ବାସନ ମାଜିଲେ ମାମୁଙ୍କୁ ଭାତ ବାଢ଼ିବି ।

ଆଖିରେ ଜମାଟବନ୍ଧା ଲୁହକୁ ତଳକୁ ଗଡ଼ାଇ ନ ଦେଇ କଠୋର ହୋଇ ନୟନା ଧାଇଁ ଯାଏ ବାସନ ମଜା ନଳ ପାଖକୁ । ଖସଡ଼ାରେ ପଡ଼ିଯିବା ଭୟ ମନରେ ନଥାଏ । ସମସ୍ତଙ୍କୁ ସନ୍ତୁଷ୍ଟ କରିବ– ମାଇଁ ବୁଲିଯିବା ସମୟକୁ ଚପଲ ସଫା କରି ସଜାଡ଼ି ରଖିଥିବ– ଅଜାଙ୍କ ଚା' ନେଇ ଠିକ୍ ସମୟରେ ପହଞ୍ଚାଇବ– ମୁହୂର୍ତ୍ତେ ଗଡ଼ିଗଲେ ବ୍ଲଡ୍‌ପ୍ରେସର ରୋଗୀ ବିରକ୍ତ ହୋଇଉଠିବେ– ପ୍ରେସର୍ ବଢ଼ିଯିବ । ଆଇଙ୍କର ଗୋଡ଼ଘଷାଠାରୁ ଆରମ୍ଭ କରି ଭାତଥାଳି ଧରି ଅପେକ୍ଷା କରିବା ମଧ୍ୟ ତା'ରି ଦାୟିତ୍ୱରେ । କୌଣସି କାରଣରୁ ଘରେ ମତାନ୍ତର ମନାନ୍ତର ଘଟିଗଲେ ସବୁ ଦୋଷ, ସବୁ ରାଗ, ବିରକ୍ତି, ଅଭିଶାପ ପଡ଼େ ଯାଇ ମାତୃହୀନା ନଅ ଦଶବର୍ଷର ଦୁର୍ବଳ ପାତଳ କଳା କୁଚ୍‌କୁଚ୍ ଝିଅଟି ଉପରେ ।

ବୟସ ବଢ଼ିଛି । ସମୟ ପରିବର୍ତ୍ତନ ହୋଇଛି । ସଂସାରର ସମସ୍ତ ଜଞ୍ଜାଳ ଧରି ମୁଣ୍ଡ ଭାରାକ୍ରାନ୍ତ ହୋଇଛି । ତଥାପି ନୀରବରେ ଜାଗ୍ରତ ହୋଇଛି ଗୋଟାଏ ଅନାଗତ କ୍ଷୀଣ ଆଶା– ଛୋଟ ହେଲେ ମଧ୍ୟ ତୁଚ୍ଛ ନୁହେଁ । ସୁନେଲି ଭବିଷ୍ୟତ । ଦିନେ ଏଇ ସବୁରୁ ମୁକ୍ତି ମିଳିବ ତାଙ୍କୁ । ସେ ଶୋଭା ପାଇବେ ଅନ୍ୟ ଗୃହରେ ବଧୂ ରୂପେ । କେବଳ ତାଙ୍କରି ନିମନ୍ତେ ଉତ୍‌କଣ୍ଠିତ ହୋଇ ଘୃତଦୀପ ଜାଳି ବନ୍ଦାପନା କରିବାକୁ ଅନେକ ଅନାଇ ବସିଥିବେ । ସବୁ ଦୁଃଖ ଭୁଲିଯିବେ ସେ ସେଇ ଆନନ୍ଦ କୋଳାହଳ ମଧ୍ୟରେ । ଅଯାଚିତ ପ୍ରେମ ଦେଇ ସାଧନା ଦେଇ ସେ କରିବ ସାର୍ଥକ ତାଙ୍କ ସ୍ୱପ୍ନକୁ ।

ଅପେକ୍ଷମାଣ ସେଇ ଶୁଭଦିନ ଆସି ପହଞ୍ଚିଛି । ସୁଯୋଗ ମିଳିଛି । ଏଣିକି ସେ କାହା ହୃଦୟରେ ରାଣୀ ରୂପେ ବିରାଜମାନ କରିବେ । ସେଇଠି ଜାହିର୍ କରିବେ ନିଜର କର୍ତ୍ତୃତ୍ୱ । ନୂଆକରି ସଂସାରଟାକୁ ଦେଖିବେ । ଅତୀତର ସମସ୍ତ ଅବମାନନା-ଅପମାନକୁ ହାତମୁଠାରେ ରଖି ସେ ହୋଇଯିବେ ଆତ୍ମହରା । କିନ୍ତୁ କାହିଁ ସେ ଅଳିକ ଆଶା ? ଆନନ୍ଦର ଅନୁଭୂତି ? କାହାର ମିଠା ମିଠା କଥା... କଳ୍ପନାରେ ଫୁଟି ଉଠିଥିବା ଅସଂଖ୍ୟ ଶବ୍ଦକୁ ଏକତ୍ର କରି ଉଷ୍ମ ବୁକୁ ଭିତରେ ହଜିଯିବାର ଅମୃତ ଆକାଂକ୍ଷା ?

ନୂତନତ୍ୱର ଆଭାସ ନାହିଁ... ଅଛି କେବଳ ସତ ମିଛ.... ତୋହର ମୋଅର– ବଡ଼ସାନ ଇତ୍ୟାଦିର ଗୋଟାଏ ବିରାଟ ମୋଟା ଚାଦରକୁ ବେଢ଼ି । କେହି ସେ ଚାଦରକୁ ଫିଙ୍ଗି ଦେଇ ବାହାରି ଆସିବାର ସ୍ପୃହା ନାହିଁ । ଚେଷ୍ଟା ନାହିଁ । ବେଶୀ ରୋଜଗାରିଆ ପୁଅକୁ ବୋହୂକୁ ଭୟ ଆଦର, ଯତ୍ନ, ପ୍ରଶଂସା । ଆଉ ଯିଏ ନୂଆଣିଆ, ତା'ରି ମୁଣ୍ଡରେ ସବୁରି ଲାଠି ପ୍ରହାର । ସେଇ ଭୋର ପାଞ୍ଚଟାରୁ ଉଠିବ । ଚାକର ବାକର ଥାଇ ମଧ୍ୟ କାର୍ଯ୍ୟ କରିଯିବ । କାରଣ କରି ଆସିଛି ସେ ପୂର୍ବରୁ– ତେଣୁ କରିବାକୁ ବାଧ୍ୟ । କଲେ ସ୍ୱାମୀ ଖୁସି ହେବେ, ଶାଶୁ, ଶ୍ୱଶୁର, ଯାଆ, ନଣନ୍ଦ ସମସ୍ତଙ୍କୁ ଖୁସି କଲେ ଯାଇଁ ସ୍ୱାମୀଙ୍କ ପାଖରୁ ମିଳିବ ଦୁଇପଦ ହସ ହସ କଥା, ନହେଲେ ଅଖ ବନ୍ଦ, ଚକ ବନ୍ଦ । ଆଉରି କିଛି କହିବେ ଯାହା ଶୁଣିବାକୁ ଅପେକ୍ଷା କରାଯାଇ ପାରେନା ।

କୁଆଡ଼େ ଲୁଚିଗଲା ସେ କଳ୍ପନା ସବୁ ମନରୁ ? ସଞ୍ଜ ହେଲେ ନଈକୂଳକୁ ବୁଲିଯିବା– ସିନେମା ଥିଏଟର ଦେଖିବା, କିଛି ନହେଲେ ବଜାରରେ ଥରେ ଅଧେ ସ୍ୱାମୀଙ୍କ ସହିତ ରିକ୍‌ସାରେ ଯାଇ ବୁଲିଆସିବା । ଯେତେ ଜଞ୍ଜାଳ ସବୁ ସାରିଦେଇ, ରାତିର ରୋଷେଇ ସାରିଦେଇ ଯଦି ଥରେ ଅଧେ କେବେ ସିନେମା ଯିବାର ପ୍ରାର୍ଥନା କରିବ, ହୁକୁମ ହେବ :

– ସିନେମା ଗୋଟେ କ'ଣ ଦେଖିବ ? ସିନେମା ଦେଖିଲେ ଲୋକଙ୍କର ଚରିତ୍ର ନଷ୍ଟ ହୋଇଯାଏ ।

ଚରିତ୍ର ନଷ୍ଟ ହେବାକୁ ନ ଦେଇ, ସାରାଦିନର ପରିଶ୍ରମ ପରେ ଅନାଇ ବସିଥିବ ସ୍ୱାମୀଙ୍କ ଫେରନ୍ତା ପଥକୁ । ତେବେ ମଧ୍ୟ ସହଜରେ ଦେଖା ମିଳେନି । ବିବାହ ସିନା କରିଛନ୍ତି– ବଣ୍ଡ୍ ସାଇନ୍ ତ କରିନାହାନ୍ତି ! ପ୍ରତିଦିନ ଠିକ୍ ଏହି ସମୟରେ ସ୍ତ୍ରୀ ନିକଟରେ ଆସି ହାଜିରା ପକେଇବେ । ସାଙ୍ଗସାଥୀ ଅଛନ୍ତି– ବନ୍ଧୁବାନ୍ଧବ ଅଛନ୍ତି– ସମସ୍ତିଙ୍କୁ ପୁଣି ଦେଖିବାକୁ ପଡ଼ିବ । ଘରେ ପହଞ୍ଚୁ ପହଞ୍ଚୁ ଯେ ସ୍ତ୍ରୀଙ୍କ ମୁହଁକୁ ଅନାଇ ବସିବେ କିମ୍ବା ଅନାଇଦେଲେ ସ୍ୱର୍ଗଶାନ୍ତି ମିଳିଯିବ ତା' ତ ନୁହେଁ ! ଦାଣ୍ଡ ଦୁଆରେ ବାପାଙ୍କ ସହିତ ସହର ବଜାର କଥା, ମଝି ଅଗଣାରେ ମାଆଙ୍କ ସହିତ ଟଙ୍କା ପଇସାର ହିସାବ, ବାଟ ଘରେ ଭାଉଜ ସଙ୍ଗେ ଟାହିଟାପରା, ତା'ପରେ ପୁଣି ଆଉ ଯିଏ ଥିବେ ସମସ୍ତିଙ୍କର ପାଉଣା ଦେଇସାରି ଖାଇପିଇ ଖଟକୁ ଆସିବେ ବିଶ୍ରାମ ନେବାକୁ । ଅଭିମାନୀ

ନୟନା ଆଖିରେ ଜମାଟ ବନ୍ଧା ଲୁହ– ଏଇ ମରିଚିପଡ଼ା କବାଟକୁ ଭାଂଗି ଖଣ୍ଡ ଖଣ୍ଡ କରିଦେବା ପାଇଁ ଅନ୍ତରରେ ଅନେକ ଆବେଗ । ତଥାପି ସେଇ ଲୁହକୁ ଲୁଚାଇ ସେ ପୋଛି ନିଅନ୍ତି । ପୁଣି ସେଇ କାମନା... ଯାଉ ଏଇଭଳି କେତେଟା ବର୍ଷ... ପିଲାଛୁଆ ତ ପୁଣି ହେବେ ! ସେତେବେଳେ ଆପେ ଆପେ ସବୁ ବୁଝିପାରିବେ ନିଶ୍ଚୟ ।

ବୁଝିବାକୁ କେହି କେବେ ଚେଷ୍ଟା କରିନାହାନ୍ତି । କାହିଁକି ବୁଝିବେ ଅବା ? ଅନ୍ୟକୁ ବୁଝିବାକୁ ଗଲେ ନିଜକୁ କିଛି ସ୍ୱାର୍ଥତ୍ୟାଗ କରିବାକୁ ପଡ଼ିବ । ସ୍ୱାର୍ଥପର ଦୁନିଆରେ ନିଜକୁ ନ ଦେଖି କିଏ ପର ପାଇଁ ଝୁରି ମରିବାକୁ ଯିବ ! ନୟନା ଆକାଶକୁ ଚାହେଁ... କେତେ ପ୍ରଶସ୍ତ... କେତେ ଉଦାର... ନିଝୁମ୍ ରାତିରେ ତାରାଗୁଡ଼ିକ ମିଟ୍‌ମିଟ୍ କରୁଥିବାବେଳେ ତା' ଆଖି ଉଜ୍ଜ୍ୱଳ ହୋଇଉଠେ । ମୁହଁରେ ଖୁସିର ଆଭା ବିଚ୍ଛୁରିତ ହୁଏ । ନିଜକୁ ଖୁବ୍ ହାଲ୍‌କା ଲାଗେ... ସତେଜ ମନେହୁଏ– ଆଘାତର କଥା ସେ ଭୁଲିଯାଏ– ବନ୍ଧୁର ପର୍ବତ ଦେଶରେ କଳକଳ ତଟିନୀଟିଏ ହୋଇ ଝରିଯିବା ପାଇଁ ତା'ର ଇଚ୍ଛା ହୁଏ ।

କିନ୍ତୁ ମଣିଷ ଚିନ୍ତା କଲେ ତ ସବୁକିଛି ସୁବିଧାରେ ଘଟି ଯାଏ ନାହିଁ । ଅତଏବ ପ୍ରତିବନ୍ଧକ ଆସେ ପ୍ରତି ପଦକ୍ଷେପରେ । ବିବାହର ଷୋହଳ ବର୍ଷ ପରେ ମଧ୍ୟ ନୟନାଙ୍କ ଆଖିରୁ ଆଜି ଝରୁଛି ଲୁହ ଝରଝର ହୋଇ । ଏ ଲୁହ କାହା ପାଇଁ ? ଅପମାନ କେଉଁ ଅସମ୍ମାନରୁ ? ସେଦିନ ଯଦି ସ୍ୱାମୀଙ୍କ କଥା ରକ୍ଷାକରି ନଥାନ୍ତେ ତେବେ ଏଇ ପଥର ଆଖିରୁ ପାଣି ଝରାଇବା ହୁଏତ ସହଜ ହୋଇନଥାନ୍ତା । ସେଦିନ ପୁଣି ଜନ୍ମନେଲା ଏକ ନୂତନ ଦିଗନ୍ତ । ଅନ୍ଧକାରାଚ୍ଛନ୍ନ ସେଇ ଦିଗନ୍ତ ପୁଣି ଆଲୋକିତ ହୋଇଉଠିବ । ସେଠି ଜାଜ୍ୱଲ୍ୟମାନ ହୋଇ ଜଳିଉଠିବ ପ୍ରଜ୍ଞାର ଶିଖା ଜ୍ଞାନର ଦିହୁଡ଼ି ।

ସ୍ୱାମୀଙ୍କର ସେ କଣ୍ଠସ୍ୱର ଏତେ କୋମଳ ଯେ ମନେ ହେଉଥିଲା ଅନ୍ୟ କେଉଁ ପୁରୁଷ ଯେପରି !

– ସମସ୍ତେ ଆଜିକାଲି ପଢ଼ିଲେଣି– ତମେ ପଢ଼ିପାରିନ ବୋଲି ମନଦୁଃଖ କରୁଥିଲ ପରା ! ମୁଁ ତମକୁ ପଢ଼େଇ ଦେବି । ତମେ ମ୍ୟାଟ୍ରିକ୍, ଆଇ.ଏ. ବି.ଏ., ଏମ୍.ଏ. ସବୁ ପଢ଼ିବ । ଇଚ୍ଛା କଲେ ଚାକିରି ବି କରିପାରିବ । ଆଜିକାଲି ଯୁଗ ଯାହା ହେଲାଣି– କେତେବେଳେ ମୋର କ'ଣ ହୋଇଯିବ– ତୁମେ ସିନା ହଇରାଣ ହେବ ? ବିଦ୍ୟାଟା ଥିଲେ ଦିନେ ନା ଦିନେ କାମରେ ଆସିବ । ଅନ୍ତତଃ ପିଲାଗୁଡ଼ାଙ୍କୁ ଦି'ଓଳି ଦିଢ଼ୋକ ଦେଇପାରିବ ତ ! ଥରେ ମୁଁ ଆଖି ବୁଜିଲେ..."

ପାଟିରେ ହାତ ଦେଇ ଆଉ କୁହାଇ ଦେଇନଥିଲା ନୟନା । ସେ ଏପର୍ଯ୍ୟନ୍ତ ମାନି ନେଇଛନ୍ତି ସବୁରି ଉପଦେଶ । ଆଜି କାହିଁକି ଓହରି ଯିବେ ? କଷ୍ଟ ଦେବେ ସ୍ୱାମୀଙ୍କ ମନରେ ! ଯେତେ ଅସୁବିଧା ହେଉ– କଷ୍ଟ ପଡୁ– ସବୁ ସହିବାର ଶକ୍ତି ତ ତାଙ୍କର ଅଛି ।

ସହିଯିବେ କହିଲେ ତ ସହ୍ୟ କରି ହୁଏ ନାହିଁ ! ଗୃହର କର୍ତ୍ତ୍ରୀ ହିସାବରେ ଅନ୍ୟକୁ ଆକଟି କହିବା, ବୋଲ ବତାଇବା ଅଧିକାର ତାଙ୍କର ରହିଛି । ଏଇ ବିଗତ ବୟସରେ କଲେଜ ଯାଇ କାହାରିଠୁ ଆଦେଶ ଉପଦେଶ, ଗାଳି ଗଞ୍ଜଣା ସହ୍ୟ କରିବାର ମାନସିକ ପ୍ରସ୍ତୁତି ସେ ହୁଏତ ହରାଇ ବସିଛନ୍ତି । ପ୍ରତି ମୁହୂର୍ତ୍ତରେ ସଂକୁଚିତ ହୋଇ ଚଳିବା କ'ଣ ସମ୍ଭବ ? ବୟସରେ ଛୋଟ ହେଲେ ମଧ୍ୟ ଗୁରୁ ବୋଲି ପ୍ରତି ମୁହୂର୍ତ୍ତରେ ଉପଦେଶ ଗ୍ରହଣ କରି ହଁ ଭରିବାକୁ ହେଲେ କେତେ ଯେ ସଂଯମ ଦର୍କାର ପଡ଼େ ! ଯୋଗୀ ଋଷିଙ୍କର ମଧ୍ୟ ମତିଭ୍ରମ ହୁଏ । ହୁଏ ମାନସିକ ବିକାର । ନୟନା ତ ସାଧାରଣ ମଣିଷଟିଏ । ସବୁଦିନ ସମାନ ଯାଏ ନାହିଁ । ନୟନା ଭୁଲ୍ କରିବସେ ।

କେଉଁ ଏକ ସାଧାରଣ ସମସ୍ୟାର ସମାଧାନ ନିମନ୍ତେ କରିବସନ୍ତି ଅଧ୍ୟାପିକାଙ୍କ ସହିତ ଯୁକ୍ତି । ଯଦିଓ ସେ ଯୁକ୍ତିର କୌଣସି ବିଶେଷ ବିଷ ନାଇଁ, ତଥାପି ସଞ୍ଚରିଗଲା ସାରା ଶରୀରର ରକ୍ତ କଣିକାକୁ । ଅଧ୍ୟାପିକା ତାଙ୍କର ସମସ୍ତ ଶୃଙ୍ଖଳା, ପାଣ୍ଡିତ୍ୟ, ଧୈର୍ଯ୍ୟ ସବୁକୁ ପଛକୁ ଠେଲିଦେଇ ଉଦ୍‌ଗୀରଣ କଲେ ଆଗ୍ନେୟଗିରିର ଲାଭା । ସେ ଲାଭାରେ ଭରିରହିଥିଲା ଜାଗ୍ରତ ବିସ୍ଫୋରକ । ଯେଉଁ ବିସ୍ଫୋରକ ନୟନାଙ୍କ ହୃଦୟରେ ବିସ୍ଫୋରଣ ସୃଷ୍ଟି କଲା । ଏକ ପ୍ରବହମାନ କମ୍ପନରେ ଥରି ଉଠିଲେ ସେ– ଝରିଗଲା ଅଶ୍ରୁ ଗଙ୍ଗା ଯମୁନା ହୋଇ । ସେଇ ଅଶ୍ରୁରେ ହଜିଗଲା ସମସ୍ତ ଦୁଃଖକୁ ଏଡ଼ାଇ କଣ୍ଟାବାଡ଼ ଘେରା ପାଚେରୀକୁ ଡେଇଁ ଚାଲିଯିବାର ସଂକଳ୍ପ । ବନ୍ଦ ହୋଇଗଲା ସୁଖ ଅନ୍ୱେଷଣର ପଥ । ଖାଲି କୁହରି କୁହରି କାନ୍ଦୁଥିଲେ ସେ । ଗର୍ବ, ଅହଙ୍କାର, ଅହମିକାକୁ ପଛରେ ପକାଇ– ଅନ୍ତର ଥରାଇ ଉଠୁଥିଲା ଦୀର୍ଘଶ୍ୱାସ । ସେ କାନ୍ଦୁଥିଲେ– ଖାଲି କାନ୍ଦୁଥିଲେ– ଏ ପାଚେରୀ ଟପିଯିବା ଆଉ ତାଙ୍କ ପକ୍ଷେ ସମ୍ଭବ ନୁହେଁ– ଅନେକ ଅସମ୍ଭବକୁ ନଅବର୍ଷ ଦିନୁ ସମ୍ଭବ କରିବାକୁ ଚେଷ୍ଟା କରି ସେ ପାରି ଉଠିଛନ୍ତି । କିନ୍ତୁ ଜଣେ ନାରୀ ହିସାବରେ ଆଉ ଜଣେ ନାରୀଙ୍କୁ କ୍ଷମା ସେ କରିପାରି ନାହାନ୍ତି... ପାରିବେ ନାହିଁ... କାରଣ ସେ ମଧ୍ୟ ଜଣେ ନାରୀ !

କିନ୍ତୁ କୃତଜ୍ଞତାରେ ତାଙ୍କ ପାଇଁ କାହାରି କଣ୍ଠସ୍ୱର ଭାରୀ ହୋଇଗଲା ନାହିଁ । ଅଭାବଗ୍ରସ୍ତ ପରିସ୍ଥିତିରେ (ଅଳ୍ପ ବୟସର ପ୍ରାୟ ନିଜ ପୁଅ ଝିଅଙ୍କ ସହିତ ସମାନ କହିଲେ ଅତ୍ୟୁକ୍ତି ହେବନି) ଅନ୍ୟମାନେ ମୁହଁ ଲୁଚାଇ କେବଳ ମୁରୁକି ହସା ଦେଉଥିଲେ । ମନେ ମନେ ଚିନ୍ତା କରୁଥିଲେ ଏଇ ଠିକ୍ । ନିଜକୁ ଛୋଟ କରିଦେଇ– ଦର୍ପଣ ଆଗରେ ନ ଦେଖି– ଏ ଯେଉଁ ଅପରାଧ ଲାଳସା– ଏଥିରେ ଅପମାନ ହିଁ ଶ୍ରେୟ ! ଆକାଶରେ ଆଲୋକ ନାହିଁ । ତାଙ୍କ ହୃଦୟର ବ୍ୟଥା ଶତଗୁଣେ ବ୍ୟଥିତ ହେଉଥିଲା । ସେ ଆଖି ବନ୍ଦ କଲେ । ବୋବା ଅନ୍ଧାର ମଧ୍ୟରେ ଅନୁଭବ କଲେ ସେ ଏକବାରେ ଏକା... ତାଙ୍କର କେହି ନାହିଁ... ।



# ମିଠା କଡ଼ା

## କୃଷ୍ଣଚରଣ ବେହେରା

ଗାଆଁ ଗୋଟାକରେ ଏତେ ଝିଅ ବୋହୂ ଅଛନ୍ତି, କିନ୍ତୁ ଲଖୀର ଫଟା କପାଳ ଭଳି କପାଳ ଆଉ କାହାର ଅଛି ?

ସଭିଏଁ ଲଖୀ କଥା ଜାଣନ୍ତି– ବୁଢ଼ାବୁଢ଼ୀଙ୍କଠାରୁ ଟୋକାଟୋକୀଙ୍କ ପର୍ଯ୍ୟନ୍ତ । ଦି'ବରଷ ହେଲା ସେ ଏ ଗାଆଁକୁ ବୋହୂ ହେଇ ଆସିଲାଣି, ଆଖି ଲୁହ ପୋଛୁ ପୋଛୁ ତାହାର ଦିନ ସରୁନାହିଁ । ଚକରା ଭଳି ଗୋଟାଏ କାମିକା ଭେଣ୍ଡିଆ ଟୋକା ହାତରେ ବାପ-ମାଆ ତାକୁ ସଁପି ଦେଇଥିଲେ ଯେ, ମାଡ଼ ଗାଳି ଖାଇ ଖାଇ ତାହାର ଜୀବନ କଟିଲା– ସୁଖ ବୋଲି କ'ଣ ଥରେ ଜାଣିଲା ନାହିଁ ! ତା' କଥା ପଡ଼ିଲା କ୍ଷଣି ସଭିଏଁ ଆହା- ଚୁ ଚୁ କରିଥାଆନ୍ତି ।

ଲଖୀର ପିଲାଦିନ କିନ୍ତୁ ହସଖେଳରେ କଟିଯାଇଥିଲା । ଦୁଇ ଭାଇରେ ଗୋଟିଏ ଭଉଣୀ । ବାପ-ମାଆ ବଡ଼ ସେରନ୍ତା ପଣରେ ତାକୁ ବଢ଼େଇଥିଲେ । ଗାଆଁ ସ୍କୁଲରେ ଲଖୀ ଦି' ଅକ୍ଷର ପାଠ ବି ପଢ଼ିଥିଲା । ସଞ୍ଜବେଳେ ବାପ ପାଖରେ ବସି ଡିବିରି ଆଲୁଅରେ ରାମାୟଣ, ଭାଗବତ ପଢ଼ି ଶୁଣାଉଥିଲା । ଖୁଦୁରୁକୁଣୀ ଓଷା, ଗୁରୁବାର ଓଷାରେ ବହି ବୋଲିବା କାର୍ଯ୍ୟଟି ଥିଲା ତାହାର ଏକଚାଟିଆ । ତା' କଣ୍ଠର ମିଠା ସୁର ଶୁଣିବା ପାଇଁ ସଭିଏଁ ସୁଖ ପାଉଥିଲେ । ରନ୍ଧାବଢ଼ାରେ ବି ଲଖୀ ଥିଲା ଖୁବ୍ ସରସା । ଗୁଡ଼ିଆ ଘରର ଝିଅ– ମାଆ ପାଖରୁ ବରା ଗୁଲୁଗୁଲା ଛାଣିବା, ଫେଣି ଜିଲାପୀ ଗଜା ଆଜି ତିଆରି କରିବା ସେ ଭଲ କରି ଶିଖି ନେଇଥିଲା ।

ଦେହର ରଙ୍ଗ ଟିକିଏ କଳା ହେଲେ ବି ଲଖୀର ଗଢ଼ଣଟି ଥିଲା ବେଶ୍ ସୁନ୍ଦର । ସରୁ ନାକ, ଢଳ ଢଳ ଭସାଣିଆ ଆଖି, ମଥାରେ କୁଞ୍ଚୁକୁଞ୍ଚିଆ ଲମ୍ବା ବହଳିଆ ଚୁଳ । ବାପ କହୁଥିଲା– ମୋ ଝିଅ କାଳି ହେଲେ ବି ଅସୁନ୍ଦରୀ ନୁହଁ । ଦେବୀ ପାର୍ବତୀ ଥିଲେ କାଳି, ଦ୍ରୌପଦୀ ଥିଲେ କାଳି । କ'ଣ ଭାସିଗଲା ତାଙ୍କର ? ସେମାନଙ୍କ ପାଇଁ ସତ୍‌ପାତ୍ର ଅଭାବ୍ ହେଇନଥିଲେ, କି ମୋ ଲଖୀ ପାଇଁ ଅଭାବ ହେବ ନାହିଁ । ମୋ ଲଖୀଟି ସାକ୍ଷାତ ଲକ୍ଷ୍ମୀ !

ବାପ-ମାଆଙ୍କ ଜାଣିବାରେ—ଲଖୀ ପାଇଁ ଚକରା ଥିଲା ସତ୍ ପାତ୍ର । ବାପ ଛେଉଣ୍ଡ ହେଲେ ବି ଚକରା ଏକଲି ଏକା ଗତର ଖଟେଇ ବେଶ୍ ଦି'ପଇସା କମଉଛି । ରଘୁ ସାହୁ ମଲାବେଳକୁ ଅଉଲ୍ ନମ୍ବରୀ ଜମି ଦଶଗୁଣ୍ଠ କରି ଯାଇଥିଲା । ଚକରା ସେଇ ଜମି ଚଷି ସୁନା ଫଳଉଛି । ଦୋ ଫସଲୀ ଜମି, ତହିଁରୁ ଯାହା ମିଳେ, ତିନି ଚାରି ପରାଣୀ କୁଟୁମ୍ବଙ୍କ ପାଇଁ ବରଷକ ଆହାର ଯାଇ ଆହୁରି କିଛି ବଳିପଡ଼େ । ଚକରାର ସକାଳ ଓଳିଟା ଯାଏ ସେଇ ଚାଷ ଜମିରେ । ଉପର ଓଳିଠୁଁ ରାତି ପହରକ ଯାଏଁ ସେ କଟାଏ ଗାଆଁ ମୁଣ୍ଡ ବଜାରରେ । ସେଠି ସେ ଛୋଟ କାଟର ଚା-ଜଳଖିଆ ଦୋକାନଟିଏ କରିଛି । ସଞ୍ଜ ପହରେ ଗରାଖଙ୍କ ଭିଡ଼ ଜମେ । ଚକରା-ମାଆ ପିଆଜୀ, ପକୁଡ଼ୀ, ବରା, ଗୁଲୁଗୁଲା ଘରେ ତିଆରି କରି ବିକ୍ରୀ ପାଇଁ ଦୋକାନକୁ ପଠାଏ– ଯୋଡ଼ା ଯୋଡ଼ା ଦୁଧିଆଳୀ ଗାଇ ଦୁହିଁ କ୍ଷୀର ଘେନିଯାଏ ଚା ତିଆରି ପାଇଁ– ବେଳେବେଳେ

ଚକରା ନ ଥିଲେ ଦୋକାନରେ ବସି ବିକ୍ରୀବଟା ବି କରେ । ଦୋକାନଟିରୁ ବେଶ୍ ଦି'ପଇସା ଲାଭ ହୁଏ ।

ବାପ ମଲାପରେ ଚକରା ନିଜ ଗୋଡ଼ରେ ଠିଆ ହୋଇଛି । ବଡ଼ କରି ଦି'ପରସ୍ତ ନୂଆ ଘର କରିଛି । ସାନଭାଇ ମକରାକୁ ସ୍କୁଲ୍‌ରେ ପାଠ ପଢ଼ାଉଛି । ଏପରି ସତ୍‌ପାତ୍ରକୁ ହାତଛଡ଼ା କରେ କିଏ ? ଲଖୀ, ଚକରା ସାଙ୍ଗରେ ସୁଖରେ ଘର ସଂସାର କରିବ ବୋଲି ବାପ-ମାଆ ଯୋଗାଡ଼ଯନ୍ତ୍ର କରି ତାକୁ ଚକରା ହାତରେ ଛନ୍ଦି ଦେଇଥିଲେ ।

ବାପଘର ଗାଆଁକୁ ଶାଶୁଘର ଗାଆଁ ଲାଗିଛି; ଡାଳଭଙ୍ଗା କୋଶେ ବାଟ ବି ହେବ ନାହିଁ । ଏ ଗାଆଁରୁ ବାପ-ମାଆ 'ଲଖୀ' ବୋଲି ଡାକିଲେ, ସେ ଗାଆଁରୁ ଲଖୀ 'ଓ' ବୋଲି ଯବାବ ଦେବ । ଗେହ୍ଲା ଝିଅଟି ସଭିଙ୍କ ଆଖି ଆଗରେ ରହିବ—ଯାନିଯାତ୍ରା, ବାରବରତରେ ଝିଅଠାକୁ ପଠାପଣା, ଭାର ବା ବୋଝ ପଠେଇ ହେବ—ଭଲ ମନ୍ଦରେ ସହଜେ ଖବର ଦିଆନିଆ ହେଇପାରିବ । ସବୁଆଡ଼ିକି ଚାହିଁ ଲଖୀର ବାପ—ମାଆ ସେଇଠି ବନ୍ଧୁ ବାନ୍ଧିଥିଲେ ।

ବନ୍ଧୁ ମର୍ଯ୍ୟାଦାରେ କିଛି ହାନି ବା ଊଣା ହେଇ ନାହିଁ । ରଘୁ ସାହୁ ସିନା ମରିଛି, ତାହାର ପାଚିଲା ଭାରିଯା' ଅଛି । ଦିନେ ଏ ଅଞ୍ଚଳରେ 'ପାତି ଗୁଡ଼ିଆଣୀ' ବୋଲି ତାହାର ଖୁବ୍ ନାମ୍ ଡାକ ଥିଲା । ପସରା ମୁଣ୍ଡେଇ ଗାଁ ଗାଁ ବୁଲି ଉଖୁଡ଼ା, ମୁଆଁ, ନବାତ, ଫେଣି, ଗଜା, ଗୁଲୁଗୁଲା ବିକ୍ରୀ କରୁଥିଲା ବେଳେ ସେ ସଭିଙ୍କଠାରେ ଜଣାଶୁଣା ହେଇଯାଇଥିଲା । ହାଟୁଆ ଘରର ବହୂ, ଓଢ଼ଣା ଟାଣି କୋଣ-ଭୁଆସୁଣୀ ହେଇ ରହିଲେ ସଂସାର ଚଳିବ କିପରି ? ନିଜ ବେଉସା ସାଙ୍ଗକୁ ସେ ଗାଁଗହଳର ଝିଅବହୂମାନଙ୍କ ଭଲମନ୍ଦ ସବୁ ବୁଝୁଥିଲା– କେହି କିଛି ପରାମର୍ଶ ଲୋଡ଼ିଲେ, ବୁଝି ବିଚାରି ବାଟ ବତାଇ ଦେଉଥିଲା । ଆପଣା ପର—ଉପକାରୀ ଗୁଣରେ ସେ ସଭିଙ୍କ ମନ କିଣି ନେଇପାରିଥିଲା । ସମୁଦୀ-ସମୁଦୁଣୀଙ୍କୁ ଠିକ୍ ଠିକ୍ ଚରଚା କରି ଜିଣି ନେବା ତା' ପକ୍ଷରେ କଠିନ ହେଇ ନଥିଲା ।

ପାତି ଗୁଡ଼ିଆଣୀର ବକଟେ ବକଟେ ଯୋଡ଼ିଏ ବୋଲି ପୁଅ; ବିଧାତା, କୋଳରେ ତାହାର ଝିଅଟିଏ ଦେଇ ନଥିଲା । ବହୂକୁ ସେ ଆପଣା ଝିଅ ଲାଖି କୋଳକୁ ଟାଣି ନେଇଥିଲା । ଶାଶୁର ଆଦର ସୋହାଗ ଭିତରେ ଲଖୀ ବି ନିଜ ମାଆକୁ ପାସୋରି ଦେଇଥିଲା ।

ଘର ଭିତରେ ଏହିପରି ସବୁ ଥିଲା ଭଲ– ସବୁ କଥା ଠିକ୍‌ଠାକ୍ ଚାଲିଥିଲା । କିନ୍ତୁ ଘର ବାହାରେ କଥାଟା ଥିଲା ନିଆରା– ସାଇ ପଡ଼ିଶାରେ ଲଖୀ-ଚକରା ସୁଆଙ୍ଗ ଭିନେ ରୂପ ନେଇଥିଲା ।

ବାହାଘରର ପୂରା ମାସଟାଏ ଯାଇନାହିଁ, ଦିନେ ରାତି ଅଧରେ ଚକରାର ଶୋଇବା-ଘରୁ ଲଖୀର କାନ୍ଦଣା ଶୁଣାଗଲା, ତା' ସାଙ୍ଗକୁ ଦୁମ୍‌ଦାମ୍ ଶବ୍ଦ । ଆର ଘରେ ପାତି ଗୁଡ଼ିଆଣୀ ମକରାକୁ ଘେନି ଶୋଇଥାଏ, ତାହାର ନିଦ ଭାଂଗିଗଲା । ସେ ଉଠିଯାଇ ଚକରା ଶୋଇବା ଘର ଦୁଆରେ କବାଟ ବାଡ଼େଇ ଡାକିଲା– କିରେ ଚକରା, ବହୂ କାନ୍ଦୁଚି କାହିଁକି ? ତୁ ତାକୁ ମାରୁଚୁ ନା କ'ଣ ?

ଘର ଭିତରେ କାନ୍ଦଣା ଓ ଦୁମ୍‌ଦାମ୍ ଶବ୍ଦ ବନ୍ଦ ହୋଇଗଲା । କବାଟ ନ ଫିଟାଇ ଚକରା ଘର ଭିତରୁ କହିଲା– ନା, ନା, କିଛି ହେଇ ନାହିଁ । ତୁ ଶୋଇବୁ ଯା' !

ଦୁଆର ପାଖରେ ଚକରା-ମାଆ କିଛି ସମୟ ଟକେଇଲା । ଘର ଭିତରୁ ଆଉ କିଛି ସ୍ୱର ଶବଦ ନ ଶୁଭିବାରୁ ସେ ନିଜ ଘରକୁ ଫେରିଯାଇ ଶୋଇଲା । ତହିଁ ଆରଦିନ ସେ ଦେଖିଲା– ସବୁ ଠିକ୍ ଠାକ୍ ଚାଲିଛି, ଲଖୀର ଚାଲିଚଳଣିରେ କୌଣସି ଆଳାଗିଲା କଥା ସେ ବାରିପାରିଲା

ନାହିଁ । ଶେଷରେ ଲଖୀକି ପଚାରିଦେଲା– କାଲି ରାତିରେ ତୁ କାନ୍ଦୁଥିଲୁ କାହିଁକି ମା' ? ଚକରା ତୋତେ କିଛି ...

ଲଖୀ କିଛି ଉତ୍ତର ଦେଲା ନାହିଁ; ଖାଲି ଟିକିଏ ମୁରୁକି ହସିଲା । କାଲଠାର କାଲ ମାଆ ଜାଣେ । ପାତି ଗୁଡ଼ିଆଣୀ ଗୋଟାଏ ଫୁଟ୍‌କିରେ କଥାଟାକୁ ଉଡ଼ାଇ ଦେଇ କହିଲା– ଘଇତା ଗାଳି- ଦେହର ମଳି, ଘଇତା ମାଡ଼- କୋଇଲି ପାଡ଼ !

କିନ୍ତୁ ଏ ଘଟଣା ସେଇଠି ସେତିକିରେ ଅଟକି ରହିଲା ନାହିଁ । ଲଖୀ ଉପରେ ଚକରାର ଗାଳି-ମାଡ଼ ଦିନକୁ ଦିନ ବଢ଼ିବାରେ ଲାଗିଲା । ଦିନ ନାହିଁ, ରାତି ନାହିଁ ଭଲମନ୍ଦ ବେଳକାଳ ନାହିଁ, ଟିକିଏ ଟିକିଏ କଥାରେ– ପାନରୁ ଚୂନ ଖସିଗଲେ ଚକରା ମଥାକୁ ପିତ୍ତ ଚଢ଼ିଯାଏ । ତାହା ପରେ ବିଚାରୀ ଲଖୀ ଉପରେ ବରଷେ ଖାଙ୍କର ଗାଳି– ଚାଲେ ନିସ୍ତୁକ ମାଡ଼ । ଆପଣା ମାଆ, ବନ୍ଧୁବାନ୍ଧବ, ସାଇପଡ଼ିଶା– କାହାରି କଥା ଚକରା ଶୁଣେ ନାହିଁ, କାହାରି ମନା ମାନେ ନାହିଁ ।

ଦିନେ ଦାଣ୍ଡ ପୋଖରୀକୁ ଗାଧୋଇବାକୁ ଯାଇଥିଲା ବେଳେ ଲଖୀ ନିଜ ବାପଘର ଗାଆଁର ଦି'ଜଣ ଚିହ୍ନା ଲୋକଙ୍କ ସାଙ୍ଗରେ କ'ଣ କଥାବାର୍ତ୍ତା କରୁଥିଲା । ଚକରା ଆଖିରେ ଯେମିତି ଘଟଣାଟା ପଡ଼ିଯାଇଛି, ତାକୁ ଆଉ ସମ୍ଭାଳେ କିଏ ? ଲଖୀ ଆସି ଘର ଦୁଆରେ ପାଦ ଦେବାକ୍ଷଣି ଚକରା ଗରଜି ଉଠିଲା– ଅଲାକୁକୀ, ଆମର ମାନ ମହତ ସବୁ ପଦାରେ ପକାଇଲୁ । ତୋତେ ଟିକିଏ ଲାଜ ସରମ ନାହିଁ– ଦିନ ଦି'ପହରେ ଦାଣ୍ଡ ମଝିଟାରେ ଠିଆହେଇ ଟୋକାଙ୍କ ସାଙ୍ଗରେ ରାସଲୀଳା କରୁଛୁ ?

ଲଖୀ କହିଲା– ଛି, ଛି କି ପାପ କଥା ତୁଣ୍ଡରେ ଧରୁଛ ! ସେମାନେ ମୋର ମଉସା, ଆଉ ମଉସା-ପୁଅ ଭାଇ । ବଳଦ କିଣିବା ପାଇଁ ବଡ଼ ହାଟକୁ ଯାଉଥିଲେ । ଦେଖା ହେଇଯିବାରୁ ସେମାନଙ୍କୁ ଘରକଥା- ବାପମାଆଙ୍କ କଥା ପଚାରୁଥିଲି । ସେଇଥିରେ ମୋର ଏଡ଼େ ଅପରାଧ ହେଇଗଲା ?

ନିଆଁରେ ଘିଅ ଢାଳିଲା ଭଳି ଚକରା ତେଜି ଉଠିଲା– ଚୁପ୍ କର । ଚୋରି, ତା' ଉପରେ ପୁଣି ହେମାଜୋରି ! ସଂଗେ ସଂଗେ ଲଖୀର ଦୁଇ ଗାଲରେ କଷିକରି ଦୁଇ ଚାପୁଡ଼ା ବସାଇ ଦେଇ ସେ କହିଲା– ଗାଁ ଲୋକେ ମୁହଁରେ ଲୁଗା ଦେଇ ହସୁଛନ୍ତି, ତୋର ସେ ବେହମତ ପଣ ଏଠି ଚଳିବ ନାହିଁ ।

ଲଖୀ କାନ୍ଦି ଉଠିଲା । ବାଡ଼ିରେ ଚକରା-ମାଆ କଖାରୁ ଲଟା ମଡ଼ାଉଥିଲା, ଧାଇଁଆସି ପୁଅ-ବୋହୂଙ୍କୁ ଅଲଗା କରିଦେଲା । ସାଙ୍ଗେ ସାଙ୍ଗେ ପଡ଼ିଶା ଘର ଲୋକେ ଆସି ତାମସା ଦେଖିବା ପାଇଁ ଦାଣ୍ଡ ଦୁଆରେ ରୁଣ୍ଡ ହେଇଗଲେ ।

ଆଉ ଦିନେ ଦୋକାନରୁ ଫେରି ରାତିରେ ଚକରା ଭାତ ଖାଇ ବସିଛି, ପାଖରେ ବସି ଲଖୀ ତାକୁ ପଙ୍ଖା କରୁଛି । ଡାଲିପାଣି ଟିକିଏ ତୁଣ୍ଡରେ ଦେଇ ଚକରା ଥୁ-ଥୁ କରି ଓକାଳି ପକାଇଲା । ବିରକ୍ତ ହେଇ କହିଲା– ଏ ଡାଲି, ନା ତମ ଗାଆଁର ସେ ପଚା ଗଡ଼ିଆ-ପାଣି ? ଏଥିରେ ନା ପଡ଼ିଛି ଲୁଣ, ନା ପଡ଼ିଛି ଟିକିଏ ମସଲା ! ମଣିଷ ସାରାଦିନ ଖଟି ଖଟି ଆସିବ, ଘରେ ଭଲରେ ଗଣ୍ଡିଏ ଖାଇବାକୁ ପାଇବ ନାହିଁ !

ଲଖୀ କହିଲା– ନିଆଁ ପାଣିର କାମ । ବରାବର ତ ଡାଲି ଭଲ ହେଇଥାଏ ! ଆଜି ହୁଏତ ଟିକିଏ ଅଲଣା ଲାଗୁଥିବ । ଲୁଣ ପକେଇ ଖାଇ ଦିଅ !

ଚକରା ରାଗରେ କହିଲା– ମାଛ ଝୋଳଟା ସେମିତି ଅସନା ଲାଗୁଛି । ଆଲୋ, ତୋର ଯଦି ରନ୍ଧାବଢ଼ାରେ ମନ ଅଛି ତ, କର୍ ! ନୋହିଲେ ଏଠୁ ପଳା !

ଏ କଥାରେ ଲଖୀ ଚଟିଗଲା, କହିଲା– ଆଣୁନ ଆଉ ଗୋଟାଏ ମାଇକିନା, ଯେ ତମକୁ ବଢ଼ିଆ କରି ରାନ୍ଧିବାଢ଼ି ଦେବ !

ବାସ୍, କଥା ଏତିକି ! ରାଗରେ ଏକାବେଳେ ଖପ୍‌ପା ହେଇ ଚକରା ଡାଲିବାଟିକୁ ଲଖୀ ଉପରକୁ ଫିଙ୍ଗିଦେଲା । "ନେ, ତୁ' ଏ ଡାଲି-ତରକାରୀ ଗିଳ୍ ।" – ବୋଲି କହି ସେ ଭାତଥାଳି ପାଖରୁ ଉଠିଗଲା । ଆରଘରୁ ଚକରା-ମାଆ ଆସି ଦେଖିଲା– ଡାଲି ପାଣିରେ ଲଖୀର ପିନ୍ଧାଲୁଗାଟା ଗୋଟାପଣେ ଭିଜିଯାଉଛି । ଡାଲି-ବାଟିର ଧାରୁଆ ଫନ୍ଦ ବାଜି ଲଖୀ ଆଣ୍ଠୁରୁ ଧାର ଧାର ଲହୁ ଝରୁଛି ।

ଶାଶୁ କଥା ମାନି ଲଖୀ ସେଦିନ ଆଉଥରେ ଡାଲି-ତରକାରୀ ରାନ୍ଧିଲା । କିନ୍ତୁ ରାଗ-ଅଭିମାନରେ ଚକରାକୁ ଖାଇବା ପାଇଁ ଦେବାକୁ ଗଲା ନାହିଁ । ମାଆ ପରଷା ଭାତ ଖାଇସାରି ଚକରା ଶୋଇବା ପାଇଁ ଗଲାରୁ ପାତି ଗୁଡ଼ିଆଣୀ ବହୂକୁ ଡାକି ସାଙ୍ଗରେ ବସାଇ ଖୁଆଇଲା; ବହୁତ ବୁଝାସୁଝା କରି ଲଖୀକି ପଚାରିଲା ତମେ ଦି'ଜଣ କାହିଁକି ବରାବର ଏମିତି ଖିଟ୍‌ଖାଟ୍ ଲଗେଇଛ, କହିଲୁ ମା' ?

ଲଖୀ କିଛି ଉତ୍ତର ଦେଲା ନାହିଁ, ହାତରେ ଭାତଗୁଣ୍ଡା ଧରି ନୀରବରେ ବସି ଖାଲି କାନ୍ଦିବାରେ ଲାଗିଲା । ଭାତଥାଳି ଉପରେ ବୁନ୍ଦା ବୁନ୍ଦା ହେଇ ତାହାର ତତଲା ଲୁହ ଝରିପଡ଼ିଲା । ପାତି ଗୁଡ଼ିଆଣୀ ତାକୁ ବୋଧଶୋଧ ଦେଇ କହିଲା– ଛି, କାନ୍ଦନା ମାଆ ! ତୁ' ମୋର ଖାଲି ବୋହୂ ନୁହେଁ, ଝିଅ ବି । ମାଆ ଆଗରେ ମନକଥା ଫେଡ଼ି କହିଲେ ସିନା, ସେ ତୋ ଦୁଃଖ ବୁଝିବ ?

ଶାଶୁ ବହୁତ ପାକଳା ପାକଳି କଲାପରେ ଲଖୀ କହିଲା– ମୋର କିଛି ଦୋଷ ନାହିଁ ମା' ! ସେ ବରାବର ଗଞ୍ଜେଇ-ନିଶା ଖାଉଛନ୍ତି, ମଥା ତାଙ୍କର ଠିକ୍ ରହୁ ନାହିଁ । ମୁଁ ଯେତେ କହିଲେ ଶୁଣୁ ନାହାନ୍ତି । ସବୁବେଳେ ମୋ ଉପରେ ରାଗ ଗରଗର– କଣ୍ଟାବାଡ଼ରେ ଲୁଗା ପକାଇ ମୋ ସାଙ୍ଗରେ କଳିକଜିଆ ଲଗାଉଛନ୍ତି, ତୁଚ୍ଛାଟାରେ ମୋତେ ମାରିପିଟ୍ କରୁଛନ୍ତି ।

ଚକରା-ମାଆ ଡିମା ଡିମା ଆଖି କାଢ଼ି କହିଲା– ଏଁ... ଚକରା ଗଞ୍ଜେଇ-ନିଶା ଧଇଲାଣି ! ତା' ଭଳି ସୁଧାର ପିଲାଟିର ଏ ଦଶା ! ମୋତେ ମରଣ କାହିଁକି ହେଉ ନାହିଁ ଲୋ ମା' ! ଆଜି ନିଶା ଖାଉଚି, କାଲି ଖାନକୀ ଘରେ ପଶିବ । ଟଙ୍କା ପଇସା କମେଇଲାରୁ କ'ଣ ସେ ଉତ୍‌ପାତ ହେଉଛି ! ତା' ବାପା ବଂଚିଥିଲେ, ଏ ଅବିଗୁଣ ସହନ୍ତା ? ମୁଁ ରାଣ୍ଡ ମାଇକିନାଟା ବୋଲି...

ଆଖି ତାହାର ଲୁହ ଛଳଛଳ ହେଇଉଠିଲା । ପଣତ କାନିରେ ଲୁହ ପୋଛି ସେ କିଛିକ୍ଷଣ ପରେ କହିଲା– ତୁ' ଥୟ ଧର୍ ମା' ! ମୁଁ ଚକରାକୁ ଠିକ୍ ବାଟକୁ ଆଣୁଛି । ତୁ' ଆଜି ଏ ଘରେ ମୋ ପାଖରେ ଶୋଇଯା' ! ସେଠିକି ଯାଆନା, ନିଶା ଜୋର୍‌ରେ ତୋତେ ସେ ବେଶି ମାରପିଟ୍ କରିବ ।

କିଛି ସମୟ କ'ଣ ଭାବିଚିନ୍ତି ଲଖୀ କହିଲା– ନା ମା', ଏଠି ନୁହେଁ, ମୁଁ ସେଇଠି ଶୋଇଲେ ଭଲ ହେବ ।

କଥାଟା ଆଉ ଲୁଚାଛପା ହୋଇ ରହିଲା ନାହିଁ । ତୁଣ୍ଡବାଇଦ ଶହେ କୋଶ । ଲଖୀର ହିନିମାନିଆ ଅବସ୍ଥା କଥା ଡାକ ପୁକାର୍‌ରେ ଚାରିଆଡ଼େ ଖେଳିଗଲା । ପୋଖରୀ ତୁଠରେ ଗାଆଁ ମାଇପିଙ୍କ ମେଳରେ ଲଖୀ-ଚକରା ସୁଆଙ୍ଗ ବଡ଼ ସୁଆଦିଆ ଆଲୋଚନାର ବିଷୟ ହେଇଗଲା ।

ଆଖଡ଼ା ଘରେ ଟୋକାଙ୍କ ମେଳରେ ଏ ବିଷୟରେ ମୁଖରୋଚକ କଥାବାର୍ତ୍ତା ଚାଲିଲା– ଗ୍ରାମ ପଞ୍ଚାୟତ ଅଫିସ୍‌ରେ ଗୁପତ ଆଲୋଚନା ହେବାରେ ଲାଗିଲା ।

ଲଖୀର ବାପ-ମାଆଙ୍କ କାନରେ ଏ କଥାଟା ଯେମିତି ପଡ଼ିଛି, ସେମାନେ ଦୁଃଖରେ ଭାଂଗିପଡ଼ିଲେ । ବାଛି ବାଛି ସତ୍‌ପାତ୍ରରେ ଝିଅଟିକି ଟେକି ଦେଇଥିଲେ ଯେ– ତା' ଭାଗ୍ୟରେ ଏଇୟା ଥିଲା ! କରିବେ ଆଉ କ'ଣ ? କହିବେ ବା ଆଉ କାହାକୁ ? ଝିଅ ଦେଇଥିବ ଯାହାକୁ, ନଇଁ ପଡ଼ିଥିବ ତାହକୁ । ଲଖୀର ଦୁଇଭାଇ କିନ୍ତୁ କଥାଟା ଶୁଣି ରାଗ ଓ ବିରକ୍ତିରେ ଜଳି ଉଠିଲେ । ବଡ଼ଭାଇ ଜଣେ ଟାଣୁଆ ପଞ୍ଚାୟତ ମେମ୍ବର୍ । ସେ କହିଲା– ଶଳା ଚକରା ସାହୁ କୁଜୀ ଅସରପାକୁ କାଣୀ ବିରାଡ଼ି ପାଳଟିଛି । ଏଭଳି ନାରୀ-ନିର୍ଯ୍ୟାତନାର ପ୍ରତିକାର କରିବାକୁ ହେବ । ତାକୁ ଭଲ କରି ପଟେ ନ ଚଢ଼େଇଲେ, ମୋର ଶାନ୍ତି ନାହିଁ ।

ସେଦିନ ସଞ୍ଜବେଳେ ବଡ଼ଭାଇ ଯାଇ ଲଖୀ ଘରେ ହାଜର । ଚକରା ଦୋକାନକୁ ଚାଲି ଯାଇଥିଲା । ଲଖୀକୁ ଏକାନ୍ତରେ ବଡ଼ଭାଇ ସବୁକଥା ପଚାରିଲା । କିନ୍ତୁ ଲଖୀ ଉଁ କି ଚୁଁ କିଛି କହିଲା ନାହିଁ– ଭାଇ କଥାର କୌଣସି ଉତ୍ତର ନ ଦେଇ ତୁନି ରହିଲା । ଶେଷରେ ବଡ଼ଭାଇ ବିରକ୍ତ ହୋଇ କହିଲା– ତତେ ଯଦି ମାଡ଼ଗାଳି ଖାଇବାକୁ ଭଲ ଲାଗୁଛି, ଖାଉଥା' ! ମୁଁ ଯାଉଛି, ଭଲରେ ମନ୍ଦରେ ଆଉ ଆମକୁ ଖୋଜିବୁ ନାହିଁ ।

ଲଖୀ ବହୁ କଷ୍ଟରେ କେବଳ ଏତିକି କହିଲା– ମୁଁ ଏଠି ବେଶ୍ ଭଲରେ ଅଛି ଭାଇ, ତମେ ମୋ ପାଇଁ ବ୍ୟସ୍ତ ହୁଅନା !

ବିରକ୍ତ ହୋଇ ବଡ଼ଭାଇ ଘରୁ ବାହାରିଗଲା ବେଳକୁ ଦାଣ୍ଡ ଦୁଆରେ ଚକରା-ମାଆ ତାକୁ କହିଲା– ଚାଲିଯାଉଚ କି ବାବା ? ଯାଅ, ବଜାର ଉପରେ ଚକରା ସାଙ୍ଗରେ ଦେଖା କରିଯିବ । ଆଉ ସମୁଦୀ / ସମୁଦୁଣୀଙ୍କୁ ଶୁଭ ଖବରଟିଏ ଜଣେଇ ଦେବ । ବହୂର ମାସ ଗଡ଼ି ଗଲାଣି, ଏଇନେ ପାଞ୍ଚମାସ ଚାଲିଛି ।

ସେଦିନ ରାତିରେ ଘରେ ପୁଣି ହୁଲୁସ୍ଥୁଲ୍ କାଣ୍ଡ । ଶୋଇଲାବେଳେ ଲଖୀ କେବଳ ଏତିକି କହିଛି– 'ବଡ଼ଭାଇ ଆସିଥିଲା, ତମକୁ କାହିଁକି ଖୋଜୁଥିଲା', ଚକରା ତହୁଁ ଉଗ୍ର ମୂରତି ଧରି ଚିତ୍କାର କଲା– ତୋ ଭାଇ ଶଳାଟା ଏଠି ଭଦ୍ରଲୋକ ଦେଖେଇବାକୁ ଆସୁଛି ? ଭଉଣୀକି ଆଗେ ସଣ୍ଟଣା ଶିଖଉ, ତା' ପରେ ଭଉଣୀ ସୁଆଗ କାଢ଼ିବ । ସେ ଶଳାଟାକୁ ଏଠିକି ଆସିବାକୁ କହିଲା କିଏ ? ତୁ କାହା ସାଙ୍ଗରେ କ'ଣ ଫୁସୁଲା ଫୁସୁଲି ହେଉଥିଲୁ, କହ ?

ହଠାତ୍ ଘର ଚାଳରେ ଖୋଷା ହୋଇଥିବା ପାଞ୍ଚଣ ବାଡ଼ିଟା ଟାଣିଆଣି ଚକରା ପ୍ରଚଣ୍ଡ ରାଗରେ ଲଖୀକି ପିଟିବାରେ ଲାଗିଲା । 'ମରିଗଲି- ମରିଗଲି, ମୋତେ ମାରନା, ମାରନା' ବୋଲି ଲଖୀ ବିକଳ ହୋଇ ବୋବାଳି ଛାଡ଼ିଲା । ପାଟିଗୋଳ ଶୁଣି ଆରଘରୁ ପାତି ଗୁଡ଼ିଆଣୀ, ମକରା ଧାଇଁ ଆସିଲେ । ରାତି ଅଧରେ କ'ଣ ଅଘଟଣ ଘଟିଲା ବୋଲି ପାଖ ପଡ଼ିଶାରୁ କେଇଜଣ ବି ଆସି ପହଞ୍ଚିଗଲେ ।

ଦୁଆର ମୁହଁରେ ସଭିଏଁ ପାଟିତୁଣ୍ଡ କରିବାରୁ ଚକରା କବାଟ ଖୋଲିଦେଲା । ପାତି ଗୁଡ଼ିଆଣୀ ଚକରାକୁ ବହୁତ ବେଜାର ହେଇ କହିଲା– ତୁ ମଣିଷ, ନା ରାକ୍ଷସଟାଏ ! ଗର୍ଭିଣୀ ଟିରିଲାଟାକୁ ଏମିତି ବାଡ଼ଉଚୁ କହିଁକି ? ତୋତେ କ'ଣ ଧରମ ଛାଡ଼ିଲାଣି କିରେ !

ସଭିଙ୍କ ଗାଳି ଝିଙ୍ଗାସରେ ଚକରା ଦବିଗଲା । ସେଦିନ ରାତିରେ ଆଉ କେହି ଶୋଇ ନାହାନ୍ତି । ଲଖୀ ଓ ଚକରା-ମାଆ ଧରାଧରି ହୋଇ କାନ୍ଦୁଛନ୍ତି ତ, ଚକରା ବସି ଦୁଃଖ ଓ ଲାଜରେ ସୁଁ ସୁଁ ହୋଇ ସକେଇବାରେ ଲାଗିଛି ।

ତହିଁ ଆରଦିନ ଦିପହରେ ଖାଇସାରିଲା ପରେ ଚକରା ଶୋଇବା ଘରେ ବସି ଲଖୀର ହାତ, ଗୋଡ଼ ଓ ପିଠିରେ ପାଞ୍ଚଣମାଡ଼ରେ ନୋଳାଫଟା ଜାଗାମାନଙ୍କରେ ବଟା ହଳଦୀ ଲଗେଇ ଦେଉଛି, ଦାଣ୍ଡ ଦୁଆରେ ପଞ୍ଚାୟତ ପିଅନ ଆସି ଡାକ ଛାଡ଼ିଲା । ଚକରା ଯାଇ ବୁଝିଲା– ସେଦିନ ସଞ୍ଜବେଳେ ପଞ୍ଚାୟତ ଅଫିସ୍‌କୁ ତାକୁ ତଲବ କରାହୋଇଛି । ଆପଣା ସ୍ତ୍ରୀକୁ ବରାବର ମାରଧର କରୁଥିବାରୁ ତା' ନାଆଁରେ ଅଭିଯୋଗ ହୋଇଛି, ବିଚାର ହେବ ।

ଚକରା ମୁହଁ ହାଣ୍ଡି କରି ଘର ଭିତରକୁ ଆସିଲା ଏବଂ ଲଖୀକୁ ପଞ୍ଚାୟତ ସଭା କଥା କହିଲା । ସଞ୍ଜବେଳେ ସେ ଯାଇ ପଞ୍ଚାୟତ ଅଫିସରେ ହାଜର ହେଲା । ଲଖୀ ବି ଶାଶୁକୁ ସାଙ୍ଗରେ ଘେନି ପଞ୍ଚାୟତ ନିଶାପ ଦେଖିବା ପାଇଁ ଗଲା । ପଞ୍ଚାୟତ ଅଫିସ୍‌ରେ ସରପଞ୍ଚ ଓ ମେମ୍ବରଙ୍କ ସମେତ ଗାଁର ବହୁ ଲୋକ ଜମିଥାଆନ୍ତି । ପର-ଚରଚା ଶୁଣିବା ପାଇଁ—ପର ଗୁମର ଜାଣିବା ପାଇଁ କାହାର ମନ ନଥାଏ ?

ସରପଞ୍ଚ ଚକରାକୁ କହିଲେ– ତମ ନାଆଁରେ ଅଭିଯୋଗ ହେଇଚି ସାହୁପୁଅ, ବିଭାହେଲା ପରଠୁଁ ନିଜ ସ୍ତ୍ରୀକୁ ତମେ ଗାଳିଗୁଲଜ, ମାରପିଟ୍ କରୁଛ । ଦି'ବରଷ ହେଲା ତମର ସ୍ତ୍ରୀ ବିଚାରୀ ବଡ଼ କଷ୍ଟରେ ଅଛି– ଆଖିବୁଜି ସବୁ ସହିଚି । ଏହା ବଡ଼ ଗର୍ହିତ କଥା ! ସରକାର ଏବେ ସବୁ ପ୍ରକାର ନାରୀ-ନିର୍ଯ୍ୟାତନାକୁ ଦୃଷ୍ଟି ରଖିଛନ୍ତି । ତମର ଏ ବିଷୟରେ କ'ଣ କହିବାର ଅଛି କୁହ ?

ସଭାଥାନ ନୀରବ । ଚକରା ତଳକୁ ମୁହଁ ପୋତି ତୁନି ହେଇ ବସିଥାଏ । କେବଳ ସେଠି ଜଳୁଥିବା ପେଟ୍ରୋମାକ୍ସ ଲାଇଟ୍ ସାଁ ସାଁ ଗର୍ଜନ କରି ଯେପରି ନାରୀ ନିର୍ଯ୍ୟାତନା ବିରୋଧରେ ପଞ୍ଚାୟତର ରାଗରୋଷ ପ୍ରକାଶ କରୁଥାଏ !

ସରପଞ୍ଚ ପୁଣି ଚକରାକୁ ପଚାରିଲେ– ସାହୁପୁଅ, ତୁନି ହେଲ କାହିଁକି ? ତମ ବିରୋଧରେ ହୋଇଥିବା ଅଭିଯୋଗର ଉତ୍ତର ତମକୁ ଦେବାକୁ ହେବ ।

ସଭାରେ ଥିବା କେହି କେହି ପୁରୁଖା ଲୋକ ମଧ୍ୟ ସରପଞ୍ଚଙ୍କ କଥାର ପାଳି ଧରିଲେ । ଆଉ କେହି କେହି ନିଜ ନିଜ ଭିତରେ ଚକରା କଥା ଘେନି ଫୁସୁରଫାସର୍ କଥାବାର୍ତ୍ତା ଚଳାଇଲେ । ଚକରା କିନ୍ତୁ ସେହିପରି ତୁନି ହୋଇ ବସିଥାଏ ।

ହଠାତ୍ ସଭାଥଳରେ ଘଡ଼ଘଡ଼ି ମାରିଲା ଭଳି ଲଖୀ ପାଟି କରି ଉଠିଲା– ଅଭିଯୋଗ କରିଚି କିଏ ? ଯାହାକୁ ମାଡ଼ଗାଳି ହେଇଥିବାର ବୋଲାଯାଉଚି, ସେଇ ଲୋକ ତ ମୁଁ ନିଜେ ! ମୁଁ ତ କେବେ କାହାରି ପାଖରେ କିଛି ଅଭିଯୋଗ କରି ନାହିଁ ! ତାହାହେଲେ ମୁଁ ପଚାରୁଚି– ଏ ଅଭିଯୋଗ କଲା କିଏ ? ତୁଚ୍ଛାଟାରେ ଏ କଥା ଘେନି ପଞ୍ଚାୟତର ମୁଣ୍ଡ ବଥାଉଛି କାହିଁକି ?

ସଭାରେ ହୁଲସ୍ଥୁଲ ପଡ଼ିଗଲା । ପଛରେ ବସିଥିବା ପଞ୍ଚାଏ ଟୋକା ହୋ-ହୋ କରି ହସିବାରେ ଲାଗିଲେ । ସରପଞ୍ଚ ଓ ପଞ୍ଚାୟତ ମେମ୍ବରଙ୍କ ମଧ୍ୟରେ କ'ଣ କଥା କଟାକଟି ଚାଲିଲା, କିଛି ପରିଷ୍କାର ଶୁଣାଗଲା ନାହିଁ । ସେହି ଗୋଳମାଳ ଭିତରେ ଲଖୀ ନିଜ ଶାଶୁକୁ କହିଲା– ତମ ପୁଅକୁ ଡାକ ମାଆ, ଆମେ ଘରକୁ ଯିବା !



# ତ୍ରିଶଙ୍କୁ

## ଉମାଶଙ୍କର ମିଶ୍ର

କାହିଁକି ସବୁ ରସରଙ୍ଗ ଦିନେ ଫିକା ପଡ଼ିଆସିବାକୁ ବାଧ୍ୟ ? କାହିଁକି ଘର ଭାଂଗି ଘର ପୁଣି ତିଆରି କରିବାର ସାହସ ଆଉ ଧୈର୍ଯ୍ୟ ଆଦୌ କା'ର ନାହିଁ କହିଲେ ଚଳେ । କାହିଁକି ସ୍ମୃତି, ନିର୍ଯ୍ୟାତିତ କାମନା ସକଳ ଆଉ ଅତୀତର ବୋଝ ଅଧୁନା ଆଉ ଆଗନ୍ତୁକ ଦିନମାନଙ୍କର ସପତ୍ନୀ ଭଳି ଆମ ଅଣ୍ଟାକୁ ଟାଣି ଧରେ ପଛରୁ । କାହିଁକି ଅନେକ ନିଶ୍ଚିତ ଘଟିବା କଥା ଜମାରୁ ଘଟେ ନାହିଁ । ଯେମିତିକି ସର୍ବେଶ୍ୱର ଏଇନା ମରିବାକୁ ବଦ୍ଧପରିକର– ତା'ର ମରିଯିବା ଭାରି ଦରକାର ଆଉ ଉଚିତ୍ । ତା'ର ଆଗ ନାହିଁ ଭବିତବ୍ୟ ନାହିଁ । ହାତଗୋଡ଼ ବପୁ ସବୁ ଅଥର୍ବ ହେଇ ମାଦଳପରି ସେ ଘୁଷୁରୁଚି । ମୁହଁଟା କିନ୍ତୁ କଥା କହୁଚି; ଆହାର ଗ୍ରହଣ କରୁଚି । ମଥା ଭିତରେ ଚିନ୍ତା କରିବାର ମେସିନ୍ ଶତକଡ଼ା ଶହେଗୁଣ ସଜାଗ । ସେ ଭାବୁଚି ମରିଯିବା ଏକଇ ନିସ୍ତାରର ପନ୍ଥା । କିନ୍ତୁ ହାତ ଚଳିଲେ ବା ଗୋଡ଼ ଚଳିଲେ ତ ନିଜକୁ ନିଜେ ମାରିପାରିବ । ମନ ଚିରହରିତ୍ ଅଥଚ ଦେହ ସମ୍ପୂର୍ଣ୍ଣ ପକ୍ଷାଘାତଗ୍ରସ୍ତ, ଅଥବା ଯା' ସେ ଚାହୁଚି ଓ ଦବା ଉଚିତ ଘଟିପାରୁନି । କାଇଁକି ଏମିତି ହେଲା ବା ହଉଚି କିଏ ଉତ୍ତର ଦେବ ? ପଚାର ପଚାର ସେଇ ଦିନରାତି କରୁଥିବା ଲୋକକୁ । ତାକୁ ବି କୌପୁନି ପିନ୍ଧେଇ ଦେଇ କମଣ୍ଡଳୁ ଧରେଇ ଶୂନ୍ୟମାର୍ଗରେ ରଥରେ ଚଢ଼େଇ ଅନ୍ତରୀକ୍ଷର ସୀମା ପାର୍ କରେଇ ଦେଇଚନ୍ତି ଏଇ ସର୍ବେଶ୍ୱରମାନେ । ସଂସାରେ କ'ଣ ସବୁ ଘଟିଯାଉଚି ଘଟୁ । କେହି ବୁଝାସୁଝା କରିବା ଲୋକ ଥାଉ ଥାଉ ବା ନ ଥାଉ । ସିଏ ଏମିତି ବସିଥିବ ଦାରୁଭୂତ ଠାଣୀରେ ।

ଝଡ଼ବତାସର ଏମିତି ଭୟଙ୍କର ରାତି ଯେ ବସ୍ତି ରାସ୍ତାଘାଟ, ଦୋକାନ ବଜାର ଦିଶୁଚି ଶ୍ମଶାନ ଭଳି । ଅଥଚ ଏତାଦୃଶ ମଶାଣିରୁ ସତ ମଶାଣିକୁ ମୂର୍ଦାର-ବୁହା ଠେଲା ଗାଡ଼ିଟିରେ ଡାକ୍ତରଖାନା ମେହେନ୍ତର ବୋହି ଆଣିଲେ ସ୍ତ୍ରୀ ଲୋକଟିର ଶବଟିଏ । ପାଖେ ପାଖେ ସେଇ ଶବାଧାରର ସୁକୁ ସୁକୁ କାନ୍ଦୁଚନ୍ତି ତା'ର ଗେରସ୍ତ ଆଉ ବାପ । ମେହେନ୍ତର ମାଗିଲା– ଶବକୁ ଡାକ୍ତରଖାନାରୁ ଏଠାଯାକେ ବୋହି ଆଣିବା ଖର୍ଚ୍ଚ ଚାରିଟଙ୍କା ଆଉ ତା ବାଦେ ବକ୍‌ସିସ୍ । ନହେଲେ ମଡାଭୂଇଁକୁ ଉତାରିବନି । କ'ଣ କରିବ ବିଚାରା ନିପଟ ମଫସଲି ଆଉ ଦରିଦ୍ର ଶୋକାକୁଳ ସ୍ୱାମୀ, ଆଉ ତଦ୍ରୂପ କନ୍ୟାପିତା ।

'ହଉ ଭାଇ । ଓଳିଟାଏ ଅପେକ୍ଷା କର । ମୁଁ ଯାଇ ପଇସା ମାଗି ଆଣୁଚି ଗାଁରୁ ।' ଏତକ କହି ଦିଇଜଣଯାକ ଶ୍ୱଶୁର, ଜ୍ୱାଇଁ ଗାଁକୁ ଗଲେ । ତାର ଆରଦିନ ସକାଳୁ ଆସି ପହଞ୍ଚିଲେ ସେଇଠି ଆଉ ଦେଖିଲେ ଠେଲା ଗାଡ଼ି ନାହିଁ କି ତାର କନିଆଁର ଶବ ବି ଉଭାନ୍ । ସେଇଠି ତଳେ ପଡ଼ିଚି ଖାଲି ତା'ର ପିନ୍ଧାଶାଢ଼ୀ ଆଉ ହାଡ଼ରୁ ଛେଲା ହେଇଥିବା ଚମ ମାଉଁସ ପୁଳାଏ । ହାତଗୋଡ଼ ଚଳୁ ନଥିବା ଯୋଗୀ ପରି ବସିଥିବା ଲୋକଟିକୁ ଦେଖି ପଚାରିଲେ 'କୁଆଡ଼େ ଗଲା ଭାଇ ମୋ ସ୍ତ୍ରୀର ମଡ଼ା ?' ସର୍ବେଶ୍ୱର ମୁରୁକି ହସିଲେ । 'ଚିନ୍ତା କରନା ଧନମଣି । ତା'ର ସଂସ୍କାର ସରିଚି । ତୁ ଗଲାପରେ ମେହେନ୍ତର ମଡ଼ାର ଚମ ମାଉଁସତକ ଉତାରି ହାଡ଼ତକ ଡାକ୍ତରୀ ପାଠପଢ଼ା

ଗବେଷଣାଗାରକୁ ବିକ୍ରୀ କରିଦେଇଚି । ଭଲ ପଇସା ବି ପାଇଥିବ । ସିଏ ବି ତ ଗରିବ ଲୋକ– ଉଦ୍ଧାର ହେଇଗଲା । ନା' କଣ ? ମନ କଷ୍ଟ କରନା । ମୁଁ ବା କ'ଣ କରିଥାନ୍ତି ? ହାତ ଗୋଡ଼ରେ ତ ଗତି ନାଇଁ ।'

ଦିଇଟା ଲୋକ ମୁଣ୍ଡପୋତି ଗାଁ ମୁହଁରେ ଆଗେଇଲା ବେଳେ ଲାଗୁଥିଲା ଯେମିତି ତାଙ୍କର ଗୋଡ଼ସବୁ ବାଉଁଶ ପାତିଆରେ କଣ୍ଯୋମରା କଣ୍ଢେଇ ଭଳି ତିଆରି । ସିଏ ଚାଲୁନାହାନ୍ତି ଆପେ । ତାଙ୍କୁ କିଏ ମଞ୍ଚାନ୍ତରାଳରୁ ସୂତା ଡୋରରେ ଟାଣି ଟାଣି ନଉଚି ।

କାଇଁକି ସର୍ବେଶ୍ୱର ଏମିତି ଅଣଅକ୍ତିଆର ଅବସ୍ଥାକୁ ଆସିଲା । ବୁଝାଯାଉ । ଦିନେ ସଞ୍ଜବେଳେ କିଛି ଲୋକ ଦେଖିଲେ ରାଜଧାନୀର ପ୍ରଖ୍ୟାତ ଫେସନୀ କପଡ଼ା ଦୋକାନ ଆଗରେ ଏକ ଅଜବ୍ ଦୃଶ୍ୟ । ବେଶ୍ ଡେଙ୍ଗା ଯୁବକଟିଏ । ହାତଗୋଡ଼ ଯେମିତି ଲୁହା ଦଉଡ଼ିବଳା ହେଇ ତିଆରି ହେଇଚି । ମୁହଁରେ ନିଶଦାଢ଼ୀ ଖଇରିଆ ତମ୍ବା ତାର ପରି ପ୍ରକ୍ଷିପ୍ତ ଆଉ ଭୟାନକ । ବଡ଼ ବଡ଼ ଆଖି । କିନ୍ତୁ ସେଥିରେ ଖୁଉବ୍ କରୁଣ ଅବିଶ୍ୱାସର ଚାହାଣୀ । ଫଟେଇ ଆଉ ଜିନ୍‌ପିନ୍ଧା ଏଇ ଲୋକଟି ପାର୍ଟି ଅଫିସ୍‌କୁ ଯୁବନେତା ପଶିଲାଭଳି ଖୁବ୍ ଥାଟ୍‌ରେ ପଶିଲା ଦୋକାନ ସୋ'ରୁମ୍‌ର ସଦର ଦରଜା ଦେଇ; ଆଉ ମୁଖ୍ୟ ସେଲ୍‌ସ୍ କାଉଣ୍ଟରର ପରିଚାଳକଙ୍କୁ ପଚାରିଲା– 'ମୁଁ ଯୋଉ ଶାଢ଼ୀଟା କିଣିଥିଲି ଦି'ଦିନ ତଳେ– ତମର ସେଇ କାଚଘରର 'ମାନେକ୍ୱିନ୍' କଣ୍ଢେଇଟା ତାକୁଇ ପିନ୍ଧିଚି କାହିଁକି ?'

'ଆଜ୍ଞା, ସେମିତିକା ଶାଢ଼ୀ ତ ମୋଟେ ଦି'ଖଣ୍ଡ ଥିଲା । ଖଣ୍ଡେ ତ ସେଇ ବିଜ୍ଞାପିକା ତରୁଣୀ କଣ୍ଢେଇ ପିନ୍ଧିଚି, ସବୁଠୁଁ ଆଖିଦୃଶିଆ ଡିଜାଇନ୍‌ର ନମୁନା ବୋଲି । ତାକୁଇ ଦେଖିତ ଆପଣ ସେମିତି ଖଣ୍ଡେ ନେଲେ ।'

'ନାଁ, ସେ ଶାଢ଼ୀ ଆଉ କେହି ପିନ୍ଧିପାରିବେନି– ଏ କଣ୍ଢେଇ ବି ନୁହେଁ ।' ଦୋକାନ ପରିଚାଳକ ଆଶ୍ଚର୍ଯ୍ୟ ହେଲେ ।

'କ'ଣ ଆପଣଙ୍କ ହୁକୁମ୍ ! ନା ତାଗିଦ୍ ?'

ଲୋକଟା କିଛି ଉତ୍ତର ନ ଦେଇ ସେଲ୍‌ସ୍‌ମ୍ୟାନ୍ ଆଉ ଦି'ଜଣ ଦରୁଆନ୍‌ଙ୍କୁ ସିନେମା ଢାଞ୍ଚାରେ ଦି' ଚାରିଟା ଘୁଷା ମାରି ପଶିଲା କାଚଘର ସୋ'ରୁମ୍‌ର ପଛ ଦରଜାରେ । ଗୋଟାଏ ମୁଖିରେ ଛିନ୍ନଛତ୍ର ହେଇ କାଚ କବାଟ ଗଳି ପଡ଼ିଲା । ତା ପେଣ୍ଟ୍‌ର ଉପର ସିଆଁ ଲମ୍ବା ପକେଟ୍‌ରୁ ଏବେ ସେ ଛୁରୀଟାଏ ବାହାର କଲା ଆଉ ଫଡ୍‌ଫଡା କରି ଚିରି ପକାଇଲା ସେ କଣ୍ଢେଇର ପିନ୍ଧା ଶାଢ଼ୀଟାକୁ । ଯାପର ମୋଟେ ଓଠ ନ ଫିଟାଇ କଳିଜା ଭିତରୁ କଥା କହିଲା ପରି ଗମ୍ଭୀର ସ୍ୱରରେ ପଚାରିଲା,

"ଏ ମ୍ୟାନେ– କ୍ୱିନ୍'ର ଦାମ୍ କେତେ ? ମୁଁ କିଣିବି ।"

"ଏ ବାବୁ, ମୁଣ୍ଡ ଖରାପ ନା କ'ଣ ? ଏଇଟା ବିକ୍ରି ପାଇଁ ନୁହେଁ ।'

'ତାହେଲେ ତ ଏକୁ ମରିବାକୁ ହବ ।' ଏତକ କହିଦେଇ ଝକ୍ କରି ବୋତାମ ଟିପି ସ୍ପ୍ରିଂ ଚାକୁର ଦି' ଧାରୁଆ ଲମ୍ବ ମୁନ ବାହାର କରିଦେଲା ଆଉ କଣ୍ଢେଇଟାକୁ ଆକ୍ରମଣ କରି ତା ଦେହର ଆଠ ଦଶ ଜାଗାରେ ଛୁକ୍ ଛୁକ୍ ଛୁରି ଭୁଷିଦେଲା । ମ୍ୟାନେ-କ୍ୱିନ୍‌ଟା ତଳେ ତିନି ଖଣ୍ଡ ହୋଇ ଗଡୁଥିବା ଅବସ୍ଥାରେ ସେ ଲୋକ ଦୋକାନ ଭିତରୁ ଦଉଡ଼ି ପଳାଇବାର ଦୃଶ୍ୟ ଲୋକେ ଦେଖିଲେ ଓ ସ୍ତମ୍ଭୀଭୂତ ହେଲେ ।

ଏଇ ଲୋକ ହେଲା ସର୍ବେଶ୍ୱର ।

ଏଇ ଘଟଣାର କିଛିଦିନ ପୂର୍ବର କଥା କୁହାଯାଏ । ସର୍ବେଶ୍ୱର ବିନା ନୋଟିସ୍‌ରେ ତା'ର ଜୀବନ ବୀମା ଅଫିସର ଜଣେ ସହକର୍ମୀ ବିନ୍ଧ୍ୟା ଦେବୀଙ୍କ ପ୍ରେମରେ ପଡ଼ିଲା । ତଡ଼ିତ୍ ବେଗରେ ମାତ୍ର ତିନିଦିନର ଆଳାପ ଏବଂ ଆଙ୍ଗୁଠି ଛନ୍ଦି ଦେବା ପର୍ଯ୍ୟନ୍ତ ପ୍ରାଥମିକ ଗୌଣ ନାତିଶୀତୋଷ୍ଣ ଆତ୍ମ-ନିବେଦନ ସୁରୁ ହେଉ ନ ହେଉଣୁ ବାହାହେଇ ପଡ଼ିଲା । ବିବାହର ବର୍ଷ ପୂରାଣିଦିନ ଭବିଷ୍ୟନିଧିରୁ ଆଗୁଆ ଉଠାଣରେ ଟଙ୍କା ଡ୍ର କରି ପତ୍ନୀଙ୍କ ସଙ୍ଗରେ ଏଇ ଲୁଗା ଦୋକାନର ମ୍ୟାନେକ୍ୱିନ୍ ପିନ୍ଧିଥିବା ଶାଢ଼ୀ ଭଳି ତାଜା ଫେସନ୍‌ର ଶାଢ଼ୀଟିଏ ତାର ପତ୍ନୀଙ୍କ ପସନ୍ଦରେ କେଢ଼େ ସରାଗରେ କିଣି ପକାଇଲା । ବିନ୍ଧ୍ୟା ଦେବୀ ଏଇ ଶାଢ଼ୀଟି ଦିନାକେତେ ସଞ୍ଜବେଳେ ପିନ୍ଧି ଦର୍ପଣ ଆଗରେ ଏ ପାଖ ସେପାଖ ହଲିଲେ ଓ ସମସ୍ତେ ଶାଢ଼ୀଟିକୁ ଭୁରି ଭୁରି ପ୍ରଶଂସା କରୁଛନ୍ତି ବୋଲି କହି ସର୍ବେଶ୍ୱରଙ୍କୁ ଚୁମ୍ବନ କଲେ । ଏସବୁ କଥା ଏ ପର୍ଯ୍ୟନ୍ତ ଯେମିତି ଘଟିବା ଉଚିତ ଥିଲା ସେମିତି ଘଟିଲା । ଅବଶ୍ୟ ତାଜ୍ ମହଲଟିଏ ଗଢ଼ି ଦେବା ଅଥବା ପ୍ରତିଦିନ ଭଳିକି ଭଳି ବିନ୍ଧ୍ୟା ପିନ୍ଧୁଥିବା ଶାଢ଼ୀ ରଙ୍ଗକୁ ମ୍ୟାଚ୍ କରି ନୂଆ ନୂଆ ମଟରଗାଡ଼ି ପରିବର୍ତ୍ତନ କରିବାର ସାଧ– କାହାର ବା ଅଛି ଯେ– ତାଙ୍କର ନଥିଲା । ସମସ୍ତେ ଜାଣନ୍ତି ଯେ ସର୍ବେଶ୍ୱର ତା'ର ପତ୍ନୀଙ୍କୁ ଅତି ଭଲପାଏ ।

ଏଇ କାଲି ରାତିର କଥା । ସର୍ବେଶ୍ୱର ବଜାର ସଉଦା ସାରି ଫ୍ଲାଟ୍‌ରେ ପହଞ୍ଚି ଦେଖେ ଯେ ବିନ୍ଧ୍ୟା ସେଇ ଶାଢ଼ୀଟି ପିନ୍ଧି ଖିଲ୍ ଖିଲ୍ ହସୁଚନ୍ତି ଆଉ ତାଙ୍କ ଦେହର ଉପର ଅର୍ଦ୍ଧାଂଶରୁ ଅପସାରିତ କାନି ଫାଳେ କେହି ଜଣେ ଅର୍ବାଚୀନର ମୁହଁକୁ ଉହାଡ଼ କରିଚି । ଝାପ୍‌ସା ଝାପ୍‌ସା ଆଲିଙ୍ଗନର ସତ୍ୟ ନା କଳ୍ପ-ରୂପ ? ଏଇ ଦୃଶ୍ୟଟି ଦେଖିସାରି ତା'ର ଜିନ୍‌ପେଣ୍ଟ୍ ପଛ ପକେଟ୍‌ର ଛୁରୀଟା ବାହାରି ଆସିଥିଲା । କିନ୍ତୁ କ'ଣ ହେଲା କେଜାଣି ସିଏ ଆଉ ଘର ଭିତରେ ନ ପଶି ସିଧା ଫେରିଥିଲା ସେଇ ଶାଢ଼ୀ କିଣିଥିବା କପଡ଼ା ଦୋକାନକୁ ।

ଫେସନ୍ ପ୍ରଜ୍ଞାପିକା କଣ୍ଢେଇକୁ ହତ୍ୟା କରିବା ପରେ ଗାଁକୁ ପଳେଇ ଆସିଲା ସିଧା ସର୍ବେଶ୍ୱର । ସେଠଇ ବି ସ୍ୱାଭାବିକ କଥା ସବୁ ଘଟିଲା । ଦଦେଇ ପୁଅ ଭାଇମାନେ ତାର ପୈତୃକ ସମ୍ପତ୍ତିକୁ ନିଜ ନାମରେ ରେକର୍ଡ କରାଇ ନେଇଥିଲେ, ତା'ରଗଲା ଦଶବର୍ଷର ଅନୁପସ୍ଥିତିରେ ଓ ସ୍ୱକୁଟୁମ୍ବ ରକ୍ତ ସମ୍ପର୍କର ଅତୁଟ ପ୍ରତ୍ୟୟଜନିତ ଭଣ୍ଡାମିର ସୁଯୋଗରେ । ଭାତ ହାଣ୍ଡିର ହକ୍‌ରୁ ବଂଚିତ ହେଲା ସର୍ବେଶ୍ୱର ଉତ୍ତ୍ୟକ୍ତ ହେଲା । ପିଟାପିଟି ଗାଳିଗୁଲଜ୍ ଆରମ୍ଭ କଲା ଦି'ଟା ଭାଇ ଆଉଜଣେ ଦଦେଇଙ୍କ ଶଳାକୁ ଛୁରୀରେ ଜଖମ୍ କରି ତିନିବର୍ଷ ଜଲେ୍ ଭୋଗିଲା । ଜେଲ୍ ଭିତରେ କ'ଣ ହେଲା କେଜାଣି– ତା'ର ବିଚିତ୍ର ରୋଗ ସବୁ ଆରମ୍ଭ ହେଲା– ପ୍ରଥମେ ଦି' ପାଦରେ ସ୍ପର୍ଶ-ଚେତନା ଉଭେଇ ଗଲା । କ୍ରମେ ପକ୍ଷାଘାତ ଉଠିଲା ପାଦଠୁଁ ଉପରକୁ ବେକ ପର୍ଯ୍ୟନ୍ତ । ଦି' ହାତ ଦି' ଗୋଡ଼ ପୂରା ଶରୀର ହୋଇଗଲା ନିଶ୍ଚଳ, ଜଡ଼ ସମ୍ପୂର୍ଣ୍ଣ ଗତିରହିତ । ଖାଲି ମୁଣ୍ଡଟା ରହିଲା ଆଗ ପରି । କାନ, ନାକ, ଆଖି, ମସ୍ତିଷ୍କ ସବୁ ଠିକ୍ କାମ କରି ଚାଲିଲେ । ସବୁ ଶୁଣିଲା, ସବୁ ଦେଖିଲା, ସବୁ ଜାଣିଲା, ସବୁ ଚିହ୍ନିଲା, ଘ୍ରାଣ କଲା, କାମନା କଲା, ଚିନ୍ତା କଲା, ସମାଧୀସ୍ଥ ପର୍ଯ୍ୟନ୍ତ ହେଲା, କିନ୍ତୁ ଆଉ କୌଣସି ଅଙ୍ଗ ଚଳିଲାନି । ଜେଲ୍‌ରୁ ମୁକୁଳିବା ଦିନ ତାକୁ ଜଗୁଆଳୀମାନେ ମାଦଳ ପରି ଟେକି ଆଣି ବାହାରେ ଗଡ଼େଇ ଦେଇ ଚାଲିଗଲେ । ବିନ୍ଧ୍ୟା ଆସିଥିଲା ତାକୁ ପାଛୋଟି ନେବା ପାଇଁ । ଯେତେବେଳେ ଦେଖିଲା ଯେ ଏ ଲୋକର କୌଣସି ଅଙ୍ଗରେ ତଡ଼ିତ୍ ନାହିଁ, ଗତି ନାହିଁ, ସଙ୍କୋଚନ ପ୍ରସାରଣ କିଛି ବି ନାଇଁ, ସିଏ ତାକୁ ରିକ୍‌ସାରେ ବୋହି ନେଇ ଏଇ କାଳିଆବୋଦା ବାବାଜିମାନଙ୍କ ସାମ୍ରାଜ୍ୟ ଜଙ୍ଗଲ ଦାଢ଼ରେ ତଳକୁ ଖସେଇ

ଦେଇ ଚାଲିଗଲା । ବିନ୍ଧ୍ୟା ଏପରି ଏକ ନିଷ୍ପ୍ରାଣ ଲଣ୍ଡା ପାହାଡ଼ ଶ୍ରେଣୀର ନାମକୁ ବୁଝାଏ ବୋଲି ପ୍ରମାଣିତ ହେଲା ।

ଭଲ ମଶାଣିଟିଏ । ଏଇଠି ପାଖକୁ ଲାଗି ଛୋଟିଆ କାଠ-କୁପ୍ ଭଳି ନଡ଼ା ଛପର ତଳେ ସୁରକ୍ଷିତ କାଠ ଗଦା । ସେଇ ପାଖରେ ମଝିଆଁ ଆକାରର ପୋଖରୀଟିଏ– ନେଳି ନେଳି ଦଲୁଆ ଗୋଳି ପାଣି । ପଦ୍ମପତ୍ର କଇଁନାଡ ବି ଭାସୁଚି ଅସୁମାରୀ । ବଗ ମାଛରଙ୍କାମାନଙ୍କ ଆକ୍ରମଣ ଦିନସାରା ଚାଲିଥାଏ । ରାତିରେ ନିଆଁ ଜଳେ ମଡ଼ା ପୋଡ଼ା ହେଲାବେଳେ ଶହେରେ ନବେଦିନ । ଫୁର୍‌କୁଟିଆ ଧୂଆଗନ୍ଧ ତାକୁ ଏଣିକି ଭଲ ଲାଗିଲାଣି । ମଡାଚଣ୍ଡିଆ ଜଣେ ଥରେ ତାକୁ କମଳ ଖଣ୍ଡେ ଦେଇଥିଲେ । ସେଇଟା ମଡ଼ା ଦେହରୁ ଓଟାରି ଆଣିଥିଲେ ଶୀତ ରାତିରେ ସର୍ବେଶ୍ୱର ଘୋଡ଼ି ହେବ ବୋଲି । କାଠବିକାଳି ତା ଛପର ତଳୁ ଚାରିହାତ ଜାଗା ଛାଡ଼ି ଦେଇଥିଲା ସର୍ବେଶ୍ୱର ଆଶ୍ରା ପାଇବେ ବୋଲି । ବେଳେ ବେଳେ ବାବାଜି ଜଣେ ଜଣେ ମଠର ବ୍ୟବହାର ଉଦ୍‌ବୃତ୍ତ କିଛି କିଛି ଖାଦ୍ୟ ତା ଆଗରେ ପକେଇ ଦେଇଯାଆନ୍ତି । ସେଇ କଣା ଚାଳର ଓଳିତଳେ ଝାଟିମାଟିର ଚାରିଫୁଟ ଚତ୍ୱରର ଅଧୀଶ୍ୱର ସର୍ବେଶ୍ୱର ରାୟ ବସି ରହିଚି । ବିଧାତାଠୁ ମାଗି ଆଣିଥିବା ଉଧାର ସମୟକୁ ଭିଡ଼ି କରି ଓଢ଼ି ହେଇଚି– ଆଉ ବେଶ୍ ଭଲ କରି ଜୀଇଚି ଗଲା ଅଠର ବର୍ଷର ନିଶ୍ଚଳ ଶରୀରକୁ ଆଶ୍ରା କରି । କେବେ ତ କହିନି 'ମୃତ୍ୟୁ ମତେ ବାଟ ଛାଡ଼ିଦିଅ' ବୋଲି ! ସବୁ ଦେଖୁଚି । ଏଡ଼େ ଏଡ଼େ ଜଳନ୍ତା କୋଇଲାର ଗୋଲ୍ ଆଖିରେ କିଛି ଏଡ଼ାଇ ଯାଇନି । ସବୁ ଶୁଣୁଚି । କାନ ଦିଇଟା କ୍ରମେ ଶିକାରୀ କୁକୁରର ସମର୍ଥ କାନ ପରି ଉଠ୍‌ପଡ୍ ବି ହେଲାଣି । ମୁଣ୍ଡକୁ ଆଗପଥ ବାଁ ଡାହାଣ ତଳ ଉପରକୁ ହଲାଇ ସେ ସବୁ ଦେଖେ, ଶୁଣେ, ଘ୍ରାଣ କରେ; କିନ୍ତୁ କିଛି କରିପାରିବାର ଶକ୍ତି ନାଇଁ । ବାକିଟା ପୂରା ଅବୟବ ଅଥର୍ବ । ସେ ଅବଶ୍ୟ ଚିରାଚରିତ ମନସ୍ତତ୍ତ୍ୱସମର୍ଥିତ ହା-ହୁତାଶରେ ମରିଯିବା ଶ୍ରେୟସ୍କର ଭାବି ମରିଯିବାକୁ ସ୍ଥିର କରିଥିଲା ଅନେକ ଥର, ଯେତେବେଳେ ଥିଲା ପ୍ରଥମେ ପ୍ରଥମେ ଏଇ ଉତ୍କଟ ଦୟନୀୟ ପଙ୍ଗୁ ଅବସ୍ଥା ଅତି ଅସହ୍ୟ; କିନ୍ତୁ ନିଜକୁ ମାରିବାକୁ ତ କମ୍‌ସେ କମ୍ ଗୋଟାଏ ହାତ ଚଳିବା ଦରକାର କିମ୍ବା ପୋଖରୀ ପାଣିରେ ବୁଡ଼ି ମରିବାକୁ ସେଯାଏ ପହଞ୍ଚିବାକୁ ଚାଲୁ ଅବସ୍ଥାରେ ଗୋଡ଼ ଦି'ଟା ତ ଦରକାର ! ସମ୍ପୂର୍ଣ୍ଣ ଅପାରଗ ପଙ୍ଗୁ ଇଚ୍ଛା କରି ମଧ ମରିପାରିବ ନାହିଁ, ମଣିଷର ଅସହାୟତାର ଏମିତି ସମ୍ପୂର୍ଣ୍ଣ ଉଲଙ୍ଗ, ଉଗ୍ର, ବୀଭତ୍ସ, କରୁଣ, ଅକିଞ୍ଚନ ରୂପ ତାକୁ ନିସ୍ପୃହ କରି ଚାଲିଲା ଧୀରେ ଧୀରେ ଏଇ ମରଣର ପ୍ରମତ୍ତ ସ୍ୱଗତିକ ଇଚ୍ଛାବିଳାସରୁ । ଏଥର ଦେଖାଯାଉ ସେ କେମିତି ବଂଚୁଛି । ରାତି ଗଭୀର ହେଲେ ସେ ଡାକିଚି, 'ଯେତେ ପିଶାଚ ଡାଆଣୀ ଚିରଗୁଣୀ ଅଛ ଆସି ମତେ ଖାଅ !' କେହି ଆସିଲେନି । ବିଚରଣ କରୁଥିବା ବାଘ, ଭାଲୁ, ଗଧିଆ, ସାପ, ଝିଙ୍କ ସବୁଙ୍କୁ ଡାକିଚି ପାଟିକରି 'ମତେ ମାରିଦିଅ, ଖାଇଦିଅ !' ସବୁ ନିରର୍ଥକ । କଦବା କେମିତି ଜନ୍ତୁଜନ୍ତା ଦି'ଟା ଆସି ତା କୁଡ଼ିଆରେ ପଶିଚନ୍ତି, ତା ମୁହଁରେ ଘଷି ହେଇ ଶୁଙ୍ଘିଚନ୍ତି, ଆଞ୍ଜୁଡ଼ିଚନ୍ତି, କିନ୍ତୁ କ'ଣ ଭାବି ଫେରିଯାଇଚନ୍ତି ନିଜ ବାଟରେ । ତାର ପ୍ରାର୍ଥନା କିଏ ହେଲେ ଶୁଣି ନାହାନ୍ତି । ସିଏ କିନ୍ତୁ ଶୁଣିଚାଲିଚି– ମଲା ଲୋକର କୁଟୁମ୍ବ ପରିବାର ମଡ଼ା ପୋଡ଼ିସାରିବା ପରେ ପୃଥିବୀ ଆଉ ମଣିଷ ଜୀବନର ଅଳୀକତା ଅସାରତା ଉପରେ ଅଜାଡୁ ଥିବା ଢେର୍ ବାଚନିକ ଶ୍ମଶାନବୈରାଗ୍ୟ । ତା'ପରେ ଦେଖିଛି ସଧବା ମଡାରହାତ, ବେକ, ନାକ, କାନରୁ ଅଳଙ୍କାର ଓଟାରି ନେଇ ମୁଣିରେ ପୁରେଇବାର ନିର୍ଲ୍ଲଜ ଲୋମହର୍ଷଣକାରୀ ଦୃଶ୍ୟ । ଘ୍ରାଣରେ ପାଇଚି ସେ ଜଙ୍ଗଲୀ ଫୁଲପତ୍ରର ଓଦା ଶିଉଳି ପରି ମହୁଲି ବାସ୍ନା; ତା ସାଙ୍ଗକୁ ସବୁ ରାତିରେ ମଣିଷର ମାଉଁସ-ଚମ ପୋଡୁଥିବା ସର୍ବଭକ୍ଷ ଚିତାଗ୍ନିର

ଫୁରୁକୁଟିଆ ଗନ୍ଧ । ବେଦମ ଖରାରେ ସିଝିଚି, ବେଦମ୍ ବର୍ଷାରେ ଭିଜିଚି । ନିର୍ଘାତ ଶୀତରେ ଥରିଚି । ବସି ବସି ସେଇ ଗୋଟାଏ ଭଙ୍ଗୀରେ ଶୋଇଚି, ସେଇ ଭଙ୍ଗୀରେ ପୁଣି ଉଠିଚି, ସକାଳ ଦେଖିଚି, ମଧ୍ୟାହ୍ନ ଦେଖିଚି, ସୂର୍ଯ୍ୟାସ୍ତ ଦେଖିଚି– ଦେଖିଚି ଦୁଲୁକୁଥିବା ଗଭୀର ରାତିରେ ଝିଙ୍କାରୀ ଆଉ ବେଙ୍ଗ ରଡ଼ି ସାଙ୍ଗକୁ ସଂସାରର ମହାକାଳରୂପୀ ଏଇ ନିଃସଙ୍ଗନିକାଞ୍ଚନତା ଆଉ ଝଡ଼ରାତ୍ରିର କେତେ ଭେଳିକିର ଭୀମକାନ୍ତ ପଟୁଆର । ତାକୁ କିନ୍ତୁ ଏମିତି ଅବସ୍ଥାରେ ଅଠର ବର୍ଷ କାଳ କଟେଇବାକୁ ପଡ଼ିବ ତାର ସମ୍ପୂର୍ଣ୍ଣ ଅନିଚ୍ଛା, ଅବଜ୍ଞା ଆଉ ଅରଣ୍ୟ-ଚିତ୍କାର ସତ୍ତ୍ୱେ– ସେ କ'ଣ ଜାଣିଥିଲା !

ଯା'ହଉ, ଏମିତି କାଳରାତ୍ରି ପରି ରାତ୍ରିରେ ସମ୍ପୂର୍ଣ୍ଣ ଅତନ୍ଦ୍ର ଲାଲ୍ ଟହଟହ ଇସ୍ପାତ୍ ଚେତନାର ନେପଥ୍ୟରେ ବଉଳ ଗଛର ପେଚ୍ଛି ପେଚ୍ଛି ରୂପାଫୁଲର ଗଭାକୁ ଘଷିମାଜି କିଛି କିଛି କହରିଆ ଝାପ୍‌ସା ସ୍ମୃତିର ଅନ୍ୱୟ କରୁଥିଲେ ସେ ।

କୁଆଡ଼େ ଏମିତି ଚନ୍ଦ୍ରସମ୍ଭବା ଗୈରିକ ରାତ୍ରିର କଳ୍ପନା ବିଳାସରେ ହଠାତ୍ ଦିବ୍ୟଜ୍ଞାନର ଉପୋଦ୍‌ଘାତରେ ଉଦ୍ଦାଳକ କହିଥିବେ "ତତ୍ତ୍ୱମସି ଶ୍ୱେତକେତୋ" । ସର୍ବେଶ୍ୱର ଯେ କ'ଣ କହିବ କହିବ ବୋଲି ହଉଚି ଶୁଣାଯାଉ ।

ବିନ୍ଧ୍ୟା ସଂଗେ ବାହାଘରର ଅଳ୍ପଦିନ ପରେ ସୁଖର ଅନ୍ୱେଷରେ ବିଚକ୍ଷଣ ଘଟଣାଟିଏ ଘଟଇଲା । ସେଇଥିରୁ ତା'ର ଜ୍ଞାନ ପ୍ରସାରିତ ହେଲା ଓ ସତ୍ୟ ଉଦ୍‌ଘାଟିତ ହୋଇଗଲା ପରି ଲାଗିଲା । ଦୈହିକ ସୁଖ ଖୋଜି ଖୋଜି ନୟାନ୍ତ ହୋଇ ସେ ଏକଦା ମନସ୍ଥ କଲା ଯେ ଏମିତି ଏକ ମୃତ୍ୟୁର କଟିତଟକୁ ଆଲିଙ୍ଗନ କରିବ, ଯାହାକି ଋଷି ଓ ମନିଷୀମାନଙ୍କ ନିର୍ବାଣ ଲାଭ ପରି ପରମ ରସାନୁଭୂତିକୁ ଟପିଯିବ । ଜୀବନଯାପନର ଆନନ୍ଦ ଓ ସମ୍ପୂର୍ଣ୍ଣ ଉତ୍ସର୍ଗ ଓ ତ୍ୟାଗର ମୃତ୍ୟୁ କେତେ ପାଖାପାଖି ତା ପରଖିବାକୁ ଯେତିକି ମାନସିକ ପ୍ରସ୍ତୁତି ଆଉ ହିମ୍ମତ୍ ଦରକାର, ତାହା ତାଠି ଥିଲା ଅଲବତ୍ । କେତେ ଅହଙ୍କାର ସୌକୁମାର୍ଯ୍ୟ ଲାବଣ୍ୟ ଆଉ ବୀର୍ଯ୍ୟ ଭରପୂର ଥିଲା ତା'ର ଦେହରେ । ପ୍ରେମ, ପ୍ରଣୟ, ସମର୍ପଣ ଯେକୌଣସି ଉଚ୍ଛୃଙ୍ଖଳତାର ପରମାୟୁ ଯେ ବିଳମ୍ବିତ ନୁହେ, ଏହା ଜାଣିଥିବା ସତ୍ତ୍ୱେ ବି ସେ ଧରି ନେଇଥିଲା ଜିତାପଟ ତା'ର ଇ ହେବ ।

ମନ-ମୁକୁରର ଗୋଟାଏ କଦାକାର ଶ୍ୱାନର ଛାଇ । ଲାଗୁଚି ଯେମତି ସେ ନିଜକୁ ପ୍ରଥମ କରି ଚିହ୍ନୁଚି । କାମନାର ପ୍ରଥମ ବସନ୍ତର ପୁଷ୍ପ ଏଇ ବିନ୍ଧ୍ୟା । ତାପର ମନେ ପଡୁଚି ସାଥୀ ସହୋଦର, ବନ୍ଧୁ ସୋଦର ସମସ୍ତେ କ୍ରମେ କ୍ରମେ ଦୂରେଇ ଯିବାର ଦୁଃକାନ୍ତ ଚଳଚ୍ଚିତ୍ରର ସିନେରିଓ । ସ୍ୱପ୍ନ ପରି ଲାଗୁଥିଲେ ବି ଏଇ ଘଟଣାଟି ଯେ ଗୋଟିପଣ ସତ୍ୟ; ଅଥଚ ସିଏ ଯାହାକୁ କହିଛନ୍ତି ସିଏ ହସିଚି । ଶୁଣନ୍ତୁ । କଥାଟା ଏମିତି ହେଲା ଏତେ ବଡ଼ ଡଙ୍ଗାଟାଏ କେବେହେଲେ ସେ ଦେଖି ନଥିଲେ । ଡଙ୍ଗା ଉପରେ ହାତୀଦାନ୍ତର କମକୂଟ ଆଉ କଇଁଆ ପାଣିରେ ମଜା ପିତଳର ଜକଜକିଆ ଛାତ । ତା ଉପରେ ବସିଚନ୍ତି ମୌନ ହୋଇ ସାତୋଟି କଣ୍ଢେଇ । ସେମାନେ ମୁହଁ ତଳକୁ କରିଛନ୍ତି । ଡଙ୍ଗା ଘର ଚକଟା ଉପରେ ପଡ଼ିଛି ବାଘମନ୍ଦାରି ପାଲି, ଆଗ୍ରହ ନଥିଲା ଭଳି କଣ୍ଢେଇ ଦି'ଟା ବାଘ-ଗୋଟାଳି ଆଉ ଛେଳି-ଗୋଟାଳିକୁ ଏପାଖ ସେପାଖ ବିଶି ଆଙ୍ଗୁଠିରେ ଠେଲୁଛନ୍ତି, ଡଙ୍ଗା ଉପରେ ଚାନ୍ଦୁଆ ତଳକୁ କେଡ଼େ ସୁନ୍ଦର ଘର ବଖୁରାଟିଏ । ସେ ଭିତରକୁ ସର୍ବେଶ୍ୱର ପଶିବ ପଶିବ ବୋଲି ହେଲା । ଦେଖିଲ କେହି ତାକୁ ଅନେଇ ନାହାନ୍ତି । ଖୋଦ୍ ଡଙ୍ଗା ଯେ ଚାହିଁଚି ଅନ୍ୟମନସ୍କ ହୋଇ କୁଳହୁଡ଼ା ଉପର ବର ଓହଳକୁ । ଓହଳରେ ଝୁଲୁଛନ୍ତି ନାଉରୀମାନେ । ଏଇମାନେ ଡଙ୍ଗା ଚଳେଇ ବିଦେଶୀ ପର୍ଯ୍ୟଟକମାନଙ୍କୁ ଆଣି ନଈପାରି କରାଉଥିଲେ । ଅଷ୍ଟାରେ

ବରଓହଳ ବନ୍ଧା ହେଇ ଝୁଲୁଥିବା ଏଇ ନାଉରୀମାନଙ୍କର ରୋଗିଣା ଫପ୍‌ସା ମୁହଁସବୁ କଣ୍ଢେଇମାନଙ୍କୁ ଆଖି ମିଟିକା ମାରି ଜିଭ ହଲେଇ ଖତେଇ ହଉଚନ୍ତି । ସର୍ବେଶ୍ୱର ଝଅଟ ଡଙ୍ଗା ଘର ଭିତରେ ପଶି ଦୁଆର କିଳିଦେଲେ । ଭିତରେ ଚାରିଆଡ଼େ ଆଖି ପକେଇ ଦେଖନ୍ତି ଯେ ଶହେ ପାଖାପାଖି ବିଭିନ୍ନ ରକମର ଘଣ୍ଟା ଝୁଲୁଚି କାନ୍ଥରେ । ଲଟକିଚି କବାଟ ଝରକାର ହୁଗୁଳା ପେଚରେ, ତରଳି ବୋହି ପଡୁଚି ଟେବୁଲ୍ ଧାରରେ ଓ ଚଉକିର ହାତ ଦାଢ଼ରେ ଇତ୍ୟାଦି । କେଇଟା ଘଣ୍ଟାର ପେଣ୍ଡୁଲମ୍ ଦୋହଲୁଚି । ବହୁପ୍ରକାର ଶବ୍ଦର ସ୍ୱରସଞ୍ଚାର ହେଉଚି; ଏକାବେଳେକେ ଶହେଟା ଘଣ୍ଟାର ଟିକ୍ ଟିକ୍ ରୁଣୁଝୁଣୁ । ଟୁକ୍‌ଟାକ୍‌ର ଅସଂହତ ସ୍ୱର ତରଙ୍ଗ, ବିଚିତ୍ର ଏ ଜ୍ୟାକ୍‌ଫୋନି । କେଡ଼େ ସୁନ୍ଦର ସୁନ୍ଦର ଡିଜାଇନ୍ କାରିଗରୀ କୁଶଳତାର ନମୁନା ଏଇ ଅସୁମାରୀ ମଧ୍ୟଯୁଗୀୟ ଘଣ୍ଟାଗୁଡ଼ିକ ଆହା !

ମୁଣ୍ଡ ଉପରେ କାଚର ଚନ୍ଦ୍ରାତପ । ତା ଉପରେ ଘାଗୁଡ଼ିଲଗା ଲହୁଣି ପରି ପାହୁଲଗୁଡ଼ିଏ ଝମ୍ ଝମ୍ କରି ପଡ଼ିଲା । ହେଇ ଦେଖୁନା, ତା ଉପରେ କଣ୍ଢେଇମାନେ ଛିଡ଼ା ହେଇ ନାଚିଲେଣି । ଢାଏଁ ଢାଏଁ କରି ପ୍ରକାଣ୍ଡତମ ଜେଜେବାପାଙ୍କ ଅମଳର ସ୍ମାରକୀ ପେଣ୍ଡୁଲମ୍ ଘଣ୍ଟାରେ ବାରଟା ବାଜିଲା । ପରେଡ୍ କମାଣ୍ଡାଣ୍ଟ୍‌ଙ୍କ ଆଦେଶ ତାଲିମ୍ କଲାଭଳି ବାକି ସବୁ ଘଣ୍ଟା ଝାଏଁ ଝାଏଁ କରି ବୋବାଳି ଛାଡ଼ିଲେ ଓ ସମଗ୍ର ପରିସରକୁ ଜଣାଇ ଦେଲେ ଯେ ପୃଥିବୀର ଅଣ୍ଟଶର ଘାଗୁଡ଼ି ମାଳରେ ଥରୁଟିଏ 'ଯା ବୁଲିଯା'– ଅହ୍ନିକ ଗତି ସମାପ୍ତ ହେଲା । ଏତିକିବେଳେ ସର୍ବେଶ୍ୱର ଆଡ଼କୁ ସବୁଗୁଡ଼ିକ ଘଣ୍ଟା ଚାରିପଟୁ ପରେଡ୍ କରି ଘେରିଆସି ତାର ଅବୟବକୁ ଚାପି ଧରିଲେଣି । ଯେତେବେଳକୁ ସିଏ ପୁରା ଅଣନିଃଶ୍ୱାସୀ ହେବା ଉପରେ– ସେଇ ସମୟରେ ଡଙ୍ଗାର ଡୋର ଫିଟିଗଲା ବରଗଛ ଗଣ୍ଡିରୁ । ଚାହୁଁ ଚାହୁଁ ଡଙ୍ଗା ଧାଇଁଚି ପାଣି କାଟି ବଙ୍କେଇ ବଙ୍କେଇ ସର୍ ସର୍ ସାପ ପରି ।

ଝରକାବାଟେ ପାହାନ୍ତି ପବନ ଢୁକୁଚି । ଗୁଡ଼ାଏ ଯୁଗ ହାଲୁକା ନିଆଁରେ ସିଝି ସିଝି ଖୁଆପିଣ୍ଡ ପରି ମିଠା ଅନ୍ଧାରର ମନ୍ୱନ୍ତର ପାଲଟିଚନ୍ତି ଆଉ ତାରି ଭିତରୁ ବହୁଦିନରୁ ଅନାଘ୍ରାତ କାଶତଣ୍ଡୀର ମୁକୁଳା ବାସ୍ନାକୁ ଉଦ୍ଧାର କରି ଖୁବ୍ ଆଟ୍‌ରେ ସିଏ ଏକ କ୍ଷେପା ମାଇଲେ ନଈକୂଳକୁ । ଯେଉଁ ଦି'ଜଣ ସେଠି ବାଲି ଉପରେ ଜାକିଜୁକି ହେଇ ବସିଥିଲେ ଓ ମୁହଁରେ ମୁହଁ ଲଦି ଲାଜରକ୍ତ ଆବେଗରେ ସାରା ବିଶ୍ୱକୁ ଆତଙ୍କିତ କରିଥିଲେ, ତାଙ୍କରି ଆଗରେ ଠିଆହେଇ ସର୍ବେଶ୍ୱର ସେଇ ଆଦିମ ଅସୁବିଧା ପ୍ରଶ୍ନଟି ପଚାରିଦେଲେ, 'ମୋ ସ୍ତ୍ରୀ ଏଠି କ'ଣ କରୁଚି ?'

ସମୁଦ୍ର ଗର୍ଭରେ ବୁଡ଼ିଯାଉଥିବା ଡଙ୍ଗାକୁ କାତର ଚାହାଣୀରେ ଚାହୁଁ ଚାହୁଁ ସେ ଝପ୍‌ଟି ଆସିଲେ ଏଇ ଦି'ଜଣଙ୍କ ଦିଗରେ ଆଉ କୁଣ୍ଡେଇ ଧରିଲେ ଦିଓଟି ଛାଇଙ୍କୁ ଦି' ବାହୁରେ । ଗୋଟିଏ ତ ଅଲବତ୍ ବିନ୍ଧ୍ୟା, ଅନ୍ୟଟି କିଏ ! ଶୁଆ ନା ଶାରୀ ନା କୁଆ ନା କୋଇଲି, ନା ପ୍ରେତ ନା ପିଶାଚ, ନା ଦାରୁ ନା ଦେବତା ! କିମ୍ଭୂତ ଏ ଖଣ୍ଡଇତ ଓ ଭୟାର୍ତ୍ତ ବିଶ୍ୱରୂପ ।

ଯେହେତୁ ଡଙ୍ଗାଟି ସମୁଦ୍ର ଭିତରେ ବୁଡୁଚି ଓ ସେ ନିଜେ ଡଙ୍ଗା ଭିତରେ ନାହାନ୍ତି ଓ ଡଙ୍ଗା ବୁଡ଼ିବାର ଆତଙ୍କ ସ୍ୱତନ୍ତ୍ର ପଠା ଉପରେ ଉପବିଷ୍ଟ ଲୋକଙ୍କୁ ଛୁଇଁବାର କୌଣସି ଯୁକ୍ତି ବା ସମ୍ଭାବନା ନାହିଁ ଓ ତାଙ୍କର ଭବପାରାବାରରେ ଅନୁଗାମିନୀ ଅଲିଅଳୀ ପତ୍ନୀ ଯାହା ସାଙ୍ଗରେ ବସି ସନ୍ଦେହଜନକ ଭାବେ ଟୁପୁରୁ ଟାପୁରୁ ହେଉଚନ୍ତି ସିଏଏକ ଅବିଶ୍ୱାସ୍ୟ ଅଣାକାର । ଅର୍ବାଚୀନ 'ସମ୍ଭବତ୍ତି'– ଏଇ କଥା ତାଙ୍କ ମନରେ ପ୍ରକଟିତ ହୁଅନ୍ତେ ସେ ବୋକାଙ୍କ ଭଳି ହିଃ ହିଃ ହିଃ ହିଃ ହସି ଉଠିଲେ । କେହି କିନ୍ତୁ ଏମିତି କଥାକୁ ସତ ବୋଲି ଭାବିବେ ନାହିଁ । ନ ଭାବନ୍ତୁ ।

ବଢ଼ିପାଣି ଘରଦ୍ୱାର ହିଡ଼ ଜମି ହାଣ୍ଡିକୁଣ୍ଡେଇ ସବୁକୁ ଆବୋରି ଭସେଇ ନେଇଚି ନଈଗର୍ଭକୁ । ତାଙ୍କ କମଳ ତଳେ ସୁଅପାଣି ଚାଲିଯାଇଛି । ସିଏ କିନ୍ତୁ ଭାସିଯାଇ ନାହାନ୍ତି । ସଂସାରର ଲୀଳା ଖେଳା ସରିଲା ପରେ ଆତ୍ମାମାନେ ଭୂତ ହେଇ ବୋଧେ ତାଙ୍କ ପରି ମନସର୍ବସ୍ୱ । କାମନା ଆଉ ଦର୍ଶନସର୍ବସ୍ୱ ହୁଅନ୍ତି ।

ଅଠର ବର୍ଷ ଏଇ ଗୋଟାଏ ଠାଣିରେ ଉପବିଷ୍ଟ ସର୍ବେଶ୍ୱର । ଢେର୍ ରାତିରେ ଦିନେ ପୋଖରୀ କୂଳରୁ ଶୁଖିଲା ପତ୍ର ଖସ୍ ଖସ୍ ଶବ୍ଦ ଆସିଲା, ଆଉ ସେଇଆଡୁ ଧାଇଁ ଧାଇଁ ଆସିଲେ ଚୋର ତିନିଟା । ଜଣେ ନିଶୁଆ ବାଙ୍ଗରା ଚୋର ତାକୁ ତାଗିଦ୍ କରି କହିଲା, "ଦେଖ୍ ସାବଧାନ, କାହାକୁ କହିବୁନି । ଏଇ କମଳ ତଳେ ଟଙ୍କା ଆଉ ଗହଣା ରହିଲା । ପୁଲିସ୍ ଖୋଜୁଚି । କୁକୁର ଲଗେଇଚି । ଆମେ ଆସି ଚାରି ଛଅ ଦିନ ପରେ ନେଇଯିବୁ । ଯଦି କାହାକୁ କହିବୁ ମୁଣ୍ଡ ଫଟେଇ ଦେବି ।" ଘଣ୍ଟାକ ପରେ ପୁଲିସ୍ ଆସି ପଚାରିଲା– "ଦେଖିଚୁରେ ତିନିଟା ଲୋକ ଏଇବାଟେ ଗଲେ, କ'ଣ ଧରିଥିଲେ ?" ମୁଣ୍ଡ ଟୁଙ୍ଗାରି ସର୍ବେଶ୍ୱର କହିଲେ– ସେ କିଛି ଜାଣନ୍ତିନି, କିଛି ଦେଖିନାହାନ୍ତି । ପୁଲିସ ଗଲା । କିଛିଦିନ ପରେ ଚୋରମାନେ ଆସି ତାଙ୍କ ମସିଆ କମଳ ତଳୁ ଟଙ୍କା ସୁନା ନେଇକରି ଗଲେ । ଗଲାବେଳେ ତା' ପାଟିରେ ମୁଠେ କୋରା ଖଇ ଭର୍ତ୍ତି କରିଦେଇଗଲେ ତାଙ୍କର ବାଧ ସଙ୍କୋଚପଣିଆର ପରଖ ପାଇଁ ।

ମଠର ଟୋକା ବାଆଜି ଦି'ଜଣ ଓ ଆଉ ଜଣେ ଘୋଡ଼ାସବାର ଲୋକ ଦିନେ ରାତିରେ ଗୋଟିଏ ଅଳ୍ପ ବୟସ୍କ ମାଇପିକୁ ବାନ୍ଧିଆଣି ତା'ରି ଆଗରେ ଉଲଗ୍ନ କଲେ । ତା'ର କନ୍ଦାକଟା ସତ୍ତ୍ୱେ ତାକୁ ଧର୍ଷଣ କରିବାରେ ଲାଗିଲେ । ତା'ରି କୁଡ଼ିଆ ଖୁଣ୍ଟରେ ବନ୍ଧାହୋଇଥିବା ଘୋଡ଼ା ଏଇ ଦୃଶ୍ୟ ଦେଖି ଓ ସ୍ତ୍ରୀଲୋକଟିର ବିକଳ ଚିତ୍କାର ଶୁଣି, ଦାନ୍ତୁରୀ ହସିବା ଓ କାନ୍ଦିବା ସମାନ୍ ପ୍ରମାଣ କରି, ଖୁବ୍ ହ୍ରେଷା ରାବ କଲା ଓ ଚମ ଦଉଡ଼ିକୁ ଓଟାରି ତା' କୁଡ଼ିଆଟିକୁ ଦୋହଲାଇ ଦେଲା । ସେମାନେ ପଳେଇଗଲା ପରେ ମାଇପିଟି ସେମିତି ତଳେ ପଡ଼ିରହି କିଛି ସମୟ ଛଟପଟ ହେଲା । ସକାଳ ହେଲାରୁ ସର୍ବେଶ୍ୱର ଦେଖିଲେ ଯେ ସେ ମାଇପିଟି ପୋଖରୀରୁ ଗାଧୋଇ ପାଧୋଇ ଓଦା ଲୁଗା ପିନ୍ଧି ଆସିଲା ତା' ପାଖକୁ, ଆଉ କହିଲା– "ହଇରେ ଅଲପେଇସା, କୋଢ଼ି, ଯା' ଦେଖିଲୁ କା'କୁ କିଛି କହିବୁନି । ନଇଲେ ଦେଖିଚୁଟି ଏଇ ଖଡ୍ଗ, ତାଲୁ କଣା କରିଦେବି ।"

ସର୍ବେଶ୍ୱର ଏକୁ ଚିହ୍ନିଲା ଚିହ୍ନିଲା ପରି ହେଲେ । ପାଖ ଗାଁର ସବୁଠୁଁ ପଇସାବାଲା ଖାଉନ୍ଦର ବୋହୂ । ତା'ର ଗେରସ୍ତ ଆଗ ସ୍ତ୍ରୀର ପୁଅକୁ ସବୁ ଜମି ଲେଖିଦବ କହିଲାରୁ ଏଇ ମାଇକିନା ତାକୁ ବିଷ ଦେଇ ମାରିଦେଲା ବୋଲି ଲୋକେ କୁହାକୁହି ହୁଅନ୍ତି । ହେଲେ, ସବୁ ଜନ୍ତାଳ ଭୋଜି ଦିନି ସିଏ ମୁଠାଏ ଖେଚୁଡ଼ି ତା' ବେକରେ ବନ୍ଧା ହେଇଥିବା ଥଳିରେ ଥୋଇ ଦେଇଯାଏ, ଆଉ କହେ– 'ନେରେ ଅଲପେଇସା– ଖା– ମର୍ । କ'ଣ ଏମିତି ଚୁଲୀରଡ଼ ପରି ଅନଉଚୁ ।'

ଆଉରି ବି ଦେଖିଚି କେତେଥର ରାତିରେ ଲୋକ ଧସ୍ତାଧସ୍ତି ହେଇ ତା'ରି ଆଗରେ ଗଡ଼ିଆତଡ଼ିଆ ହେଇଛନ୍ତି । ଛୁରୀ ମାଡ଼ ଠେଙ୍ଗାମାଡ଼ରେ ଜଖମ ହୋଇ ମରିଛନ୍ତି । ମଡ଼ାକୁ ଫିଙ୍ଗି ଦେଇଛନ୍ତି ଅଣ୍ଟାରେ ଦଉଡ଼ି ବାନ୍ଧି ଏଇ ପୋଖରୀ ଭିତରେ । ତା'ପର ପୋଲିସ୍ ହାକିମ, କେତେ କେତେ ବାବୁ ସାଇବ ଆସି ପଚାରିଛନ୍ତି– 'କ'ଣ ଦେଖିଚୁ, ଠିକ୍ ଠିକ୍ କହ ।'

"କିଛି ମୁଁ ଦେଖିନି । କିଛି ମୁଁ ଶୁଣିନି । କିଛି ମୋ' ସ୍ମୃତିରେ ନାହିଁ । ବାହାରର ଏ ବିଶ୍ୱ ମତେ ଦିଶେନି। ଯା' ଦିଶେ ସେସବୁ ଭେଳିକି । ମୋର ଦୃଷ୍ଟି ପୂରାପୂରି ଅନ୍ତର୍ମୁଖୀ ।" ସମସ୍ତଙ୍କୁ ସେଇ ଏକା ଉତ୍ତର ।

ଯେ ବି ଏକ ଦୃଶ୍ୟ । କେତେ ନା କେତେ ଫୁଲମାଳ ମଣ୍ଡିହେଇ ଚକଚକିଆ ଖୋଲା ଗାଡ଼ିରେ ଶବଟିଏ ଆସିଲା ସଂସ୍କାର ହେବାକୁ । ଆଉ ତା' ପଛେ ପଛେ ଅସୁମାରି ଲୋକ । ସୁଦ୍ଧୁ ଚନ୍ଦନ କାଠରେ ଏଇ ସମାଜପତିଙ୍କ ଶବ ପୋଡ଼ା ହେଲା, ଆଉ ଗାଡ଼ିଏ ଫୁଲ ପଡ଼ିଲା । ଫଟୋ ଉଠିଲା । ସମବେତ ନେତାମାନଙ୍କର ଦୁଃଖଶୋକ ମନ୍ତବ୍ୟ ସବୁ ପ୍ରେସ୍‌ବାଲା ଟିପିଲେ । ସମସ୍ତେ ଯାଇସାରିଲା ପରେ ଦି'ଜଣ ବେଶ୍ ହୃଷ୍ଟପୁଷ୍ଟ ଚିକ୍‌କଣ ବାବୁ– ଚାଳିପିଣ୍ଡା ତଳକୁ ଆସି ଫୁସୁର୍‌ଫାସର୍ ହେଲେ ।

"ଜୀବନଟା ସତରେ କ'ଅଣ ?"

"କିଛି ନାଇଁ– ସବୁ ଖାଲି ମାୟା । କୋଉ କଥା ଆରମ୍ଭ ହୁଏ ନାଇଁ କି ଶେଷ ହୁଏ ନାଇଁ । କାଇଁକି ଲାଗିଛି ମଣିଷ– ପିଲାପିଚିକା ଘରଦ୍ୱାର ସମ୍ମାନ ସମ୍ପତ୍ତି ଅର୍ଜିବାକୁ, ଛ୍ୟାଃ ।"

"ସତରେ ଏଡ଼େ ବଡ଼ ଲୋକଟା ଚାଲିଗଲା ?"

"ତା' ଦସ୍ତଖତ ଥିବା ଷ୍ଟାମ୍ପ୍ କାଗଜ ଜାଗତିଆର୍‌ରେ ରଖିଛଟି ? ଦରକାର୍ ହେବ ।"

"ଆମ ଲୋକ ତ ଏବେ ମନ୍ତ୍ରୀ ହୋଇଯିବା କଥା । କିନ୍ତୁ ପୁରୁଣା କାଗଜ ପୋଡ଼ିବାକୁ ହେବ । ପ୍ରମାଣ କରିବାକୁ ହବ ଯେ ଏଇ ମହାତ୍ମା ତାକୁଇ ଦାୟାଦ ବୋଲି ଗ୍ରହଣ କରିଥିଲେ ଓ କହିଥିଲେ ରାଜ୍ୟଭାର ତା'ରି ହାତରେ ହିଁ ପ୍ରମାଦମୁକ୍ତ ରହିବ ।"

"କିନ୍ତୁ ଯୋଗାଡ଼ କର । ସେ ଆର ଲୋକଟାକୁ ଯା ଆଗରୁ ନିପାତ କରିବାକୁ ହେବ ।"

"ତା ତ ହବ । ଯା ହଉ ଆମ ହାତରେ ଏଗାର ଶହ ଟନ୍ ଗହମ ରହିଯାଇଚି । ଯୋଗକୁ ମଲା ଲୋକର ପାଟି ଫିଟେନି ।"

ଚାପା ଗଳାରେ ହାଲ୍‌କା ହାଲ୍‌କା ହସି ଏଇ ଦି'ଜଣ ବ୍ୟକ୍ତି କ୍ରମେ ଅପସୃତ ହେଲେ । ଗଲାବେଳେ ସର୍ବେଶ୍ୱର ଆଡ଼କୁ ଚାହିଁଦେଇ ବାଙ୍ଗରା ଲୋକଟି କହିଲା, "ଘୁଙ୍ଗାଟା । ପରବାଏ ନାଇଁ ।" ତା' କମଳ ଉପରେ ସିଉକିଟିଏ ପଡ଼ିଲା । ସେଇଟିକୁ ଉଠେଇ ଥଳିରେ ଭର୍ତ୍ତି କରିବାକୁ ହାତରେ ପ୍ରାଣ କାଇଁ !

ମୃତ୍ୟୁକୁ କି କେମିତି ଆଉ ଥରେ ମରାଯାଇ ପାରେ ! ଅସୁମାରୀ ଦୃଶ୍ୟ, ସ୍ୱର ଶବ୍ଦ, ଅସୁମାରୀ ଅନୁଭୂତି । ଦେହରେ ଅବୟବରେ ସିନା କାହାକୁ ସ୍ପର୍ଶ କରିପାରିନି, କିନ୍ତୁ 'ବେଲାଲସେନ' ପରି ସେ ସବୁ ଦୃଶ୍ୟପଟ ସବୁ ଅନୁଭୂତିର ରୋମାଞ୍ଚକୁ, ସମଗ୍ର କୁରୁକ୍ଷେତ୍ର ଅଙ୍ଗନର ଜୀବନ-ଯୁଦ୍ଧକୁ ଅଙ୍ଗୀକାର କରିଛି । ଅଙ୍ଗେ ଲିଭାଇବା ପାଇଁ ଖାଲି ଆଖି କାନ ଆଉ ମନଶ୍ଚକ୍ଷୁଟିଏ କ'ଣ ଯଥେଷ୍ଟ ନୁହେଁ ?

ଶେଷ କଥାଟି ହଉଚି ସବୁଠୁଁ ତାଜ୍ଜୁବ୍ କଥା । ଇଏ ବି ଗୋଟିଏ ରାତି । ଝାପ୍‌ସା ଝାପ୍‌ସା ଚନ୍ଦ୍ରର ଦ୍ୟୁକ୍ । ଖାଲି ସିଲ୍‌ହଟ୍‌ରୁ ବାରି ହେଲାଭଳି କ୍ଷୀଣ ଚନ୍ଦ୍ରିକାର ଆଡ଼ରୁଷା- ପ୍ରଲେପ ଭୂଇଁ ଆକାଶ ଗଛ ବୃଛ ପାଣି ପବନ ସବୁରି ଦ୍ୟୁକ୍‌ରେ । ଅସରାଏ ବର୍ଷା ହେଇ ଛାଡ଼ିଯାଇଚି । ଓଦା ମାଟିର ବାସ୍ନା ଝାଳୁଆ ଲୋମଶ ଦେହର ଗନ୍ଧ ପରି ମଟାଳ ଆଉ ମତୁଆଲ । ହେଲେ ଟୋପା ଟୋପା ପାଣି ତରାଫୁଲଗଛ ଡାହିରେ ପତ୍ରରେ, ଫୁଲରେ, ପଥର, ମାଟି, ଗୋଡ଼ି, ସବୁଥିରେ ଝୁଲୁଚନ୍ତି । ଜଙ୍ଗଲର ଅଙ୍କାବଙ୍କା ସରୁ ଚଲା ରାସ୍ତାଟିଏ ଆସି ଲାଗିଚି ଏଇ ଅରାଏ ଖୋଲା ଭୂଇଁକୁ, ଯେଉଁଠି ମରଣୋତ୍ତର ମଣିଷର ମଡ଼ା ପୋଡ଼ା ହୁଏ । ସେଇ ରାସ୍ତାରେସାଇକେଲ୍ ଚଢ଼ି ଧାଞ୍ଚୋଟି ଛାଇ ତାରି ଆଡ଼କୁ ଆସୁଛନ୍ତି । ସେମାନେ ପହଞ୍ଚିବା ମାତ୍ରେ ସାଇକେଲ୍‌ଗୁଡ଼ା ଧଡ଼୍‌ଧାଡ୍ ଫୋପାଡ଼ି ଦେଲେ, ଆଉ ବେଙ୍ଗ ଡେଇଁଲା ପରି କ୍ଷେପିବାକୁ ଲାଗିଲେ ମଶାଣି ଭୂଇଁରେ । ତାପର

ସେମାନଙ୍କ ମୁଣିରୁ କଣ ସବୁ ଲମ୍ବ ଲମ୍ବ ତେଲେଙ୍ଗୀ ପିଙ୍କା ପରି ଜିନିଷ ବାହାର କରି ସେଥିରେ ନିଆଁ ଧରେଇ ଶୋଷିବାରେ ଲାଗିଲେ । କେତେ ରକମ୍ ଇଂରାଜୀ, ହିନ୍ଦୀ, ଓଡ଼ିଆ ଗୀତ ସବୁ ବେସୁରା ଲହରୀରେ ଗାଇଲେ । ତା' ସାଙ୍ଗକୁ ଦୂରବାଟରୁ ବିଲୁଆ କୋକିଶିଆଳିଙ୍କ ରଡ଼ି ଓ ବେଙ୍ଗ କୁମ୍ଭାଟୁଆଙ୍କର ଚିତ୍କାର ଏକ ନୂଆ ବାଚାଳ ବାଙ୍ମୟତାରେ ଭରପୂର କରିଦେଲା ଏଇ ମଶାଣିଟିର ଅନ୍ୟଥା ବିବର୍ଣ୍ଣ କାନ୍ଦୁରା ପରିବେଶକୁ । ପୁଣି ବାହାରିଲା ସେମାନଙ୍କ ମୁଣିରୁ କେତେ ରକମର ବାଜା– ଲମ୍ବା କାହାଳୀ, ଯୋଡ଼ିନାଗରା, ମସ୍ତବଡ଼ ଏକ ତାର-ଯନ୍ତ୍ର ଓ ସୂତାରେ ଓହଳିଥିବା ଝାଞ୍ଜ ପରି ବାଜା ଇତ୍ୟାଦି । ସେସବୁ ବି ଉଚ୍ଛୃଙ୍ଖଳ ଭାବେ ବାଜିଲେ ଆଉ ଏଇ ପାଞ୍ଚୋଟି ଛାଇ ଗୋଡ଼ହାତ ଛାଟି ବେଦମ୍ ନାଚିବାରେ ଲାଗିଲେ । ନିଠେଇ ଦେଖିବାରେ ଜଣାପଡ଼ିଲା ଯେ ଏଥିରୁ ଦି'ଜଣ ଝିଅପିଲା ଆଉ ତିନିଜଣ ପୁଅ । ପ୍ରାୟ ଘଣ୍ଟାଏ ହଟ୍ଟଗୋଳ ପରେ ଚକାଭଉଁରୀ ଖେଳରେ ମୁଣ୍ଡ ଘୂରିଲା ପରି ସମସ୍ତେ ଏପାଖ ସେପାଖ ବୁଲି ବୁଲି ଭୂଇଁରେ ଚୌକାତ୍ ଶୋଇଗଲେ । ଏତିକିବେଳେ ପୁଣି ଖଣ୍ଡେ ଭସାମେଘ ଅସରାଏ ବର୍ଷି ଦେଲା । ପାଞ୍ଚଜଣଯାକ ଚିହିଁକି ଠିଆ ହେଲେ ଆଉ ଚାରିଦମ୍ ପିକା ଟାଣିଲେ ଓ ପୁଣି ଖିଲ୍ ଖିଲ୍ ହସିଲେ । ଯାପରେ ଜଣକ ପଛେ ଜଣେ ଗୋଡ଼ିଆ ଗୋଡ଼ି ଲାଗିଲେ ଗଛଲତା ସନ୍ଧିରେ । ପୁଣି ଦେଖିଲାବେଳକୁ ଦିଇଟା ପୁଅ ଝିଅ ଅଦ୍ଭୁତ ଲଙ୍ଗଳା ହୋଇ କୁଜି ଆମ୍ବଗଛ ଡାହିରେ ଚଢ଼ିଚନ୍ତି ଆଉ ବାକି ତିନିଜଣ ମଶାଣି ପାଉଁଶ ଦାଢ଼ରେ ପଡ଼ିଥିବା ଖଣ୍ଡିଆ ଛାଞ୍ଚୁଣି, କୁଲା, ହାଣ୍ଡି ଖପରା, ଦରପୋଡ଼ା ହାଡ଼ଖଣ୍ଡ ଫୋପାଡୁଛନ୍ତି ତାଙ୍କରି ଉପରକୁ । କେଡ଼େ ନିର୍ମାୟା ଆନନ୍ଦରେ ହସି ହସି ଗଡ଼ି ଯାଉଚନ୍ତି ସମସ୍ତେ !

ଦିନରାତି ଭିତରେ ଏଇ ପ୍ରହରରେ ଘଣ୍ଟାଏ ଖଣ୍ଡେ ଆଖିବୁଜି ବସନ୍ତି ସର୍ବେଶ୍ୱର । ସେତିକି ତାଙ୍କର ଶୟନ ବା ବିଶ୍ରାମ । ବଡ଼ ବେଖାପ୍ ଲାଗୁଚି ତାଙ୍କୁ ସବୁ । ଅଜବ ଦୃଶ୍ୟପଟ୍ଟର ନୀରବ ଦର୍ଶକ ଭାବେ ସେ ମଞ୍ଚରେ ଆତଯାତ ଅଭିନେତା ଆଉ ଦର୍ଶକ ସମାନ ଭାବରେ ନାଟକ ହଲ୍ଲୀଷକରେ ନିବଦ୍ଧ ହେଲା ପରି ମଜ୍ଜି ଯାଇଥିଲେ । ଏଥର କିନ୍ତୁ ସେ ହତବାକ୍ । ଜ୍ଞାନ-ଲିପ୍ସୁ ଓ ଜ୍ଞେୟର ଗୋଟିଏ ବୋଲି ମିଶାମିଶି ତଟସ୍ଥ ରୂପ । କ'ଣ ଖୋଜୁଚନ୍ତି ଏ ପିଲାମାନେ ? କ'ଣ ନ ପାଇ ଏ ମଶାଣି ପଦାକୁ ଧାଇଁ ଆସିଛନ୍ତି !

ତାଙ୍କର ଅଠର ବର୍ଷର ସ୍ଥାଣୁ ଅବରୋହୀ ସମୟର କରୁଣତମ ମୁହୂର୍ତ୍ତ ଆସିଗଲା ।

"ହଇରେ ପିଲାଏ– କାଇଁକି ଏମିତି ଉତ୍ପାତ ହଉଚ ?"

ତାଙ୍କ ସ୍ୱର ଶୁଣି ପାଞ୍ଚଟିଯାକ ପିଲାଚମକି ପଡ଼ିଲେ ଆଉ ଲାଗିଆସିଲେ ପାଖକୁ । ସମସ୍ତେ ଦିଗମ୍ବର ଅଥଚ ପୂରା ଯୁଆନ; ସମ୍ଭାବତଃ ଗଞ୍ଜେଇ କିମ୍ବା ତତ୍‌ତୁଲ୍ୟ କିଛି ପ୍ରଗାଢ଼ ନିଶାର ମାଦକତାରେ ଚୁର୍‌ର୍ ଓ ଟଳମଟଳ ।

"କିଓ ମଉସା । ତମେ କେତେବେଳୁଁ ?"

"ମୁଁ ଏଠି ବସିଚିରେ ବାପ ଅଠର ବର୍ଷ ।"

"ବସିଚ– ଆମ ସମସ୍ତଙ୍କୁ ବି ଅଠର ବର୍ଷ । କିନ୍ତୁ ଖାଲି ବସି ବସି ତମେ ଘୁମୋଉଚ କିଆଁ ? ନାଚୁନ ଆମ ସଂଗେ ?"

"ଆରେ ଗୋଡ଼ହାତ ସିନା ଚଳୁନି, ମୁଁ କିନ୍ତୁ ତମେ ନାଚିଲାବେଳେ ନାଚିଚି, ତମେ ହସିଲାବେଳେ ହସିଚି, ତମେ ନଙ୍ଗଳା ହେଲାବେଳେ ନଙ୍ଗଳା ହେଇଚି । ତମରି ସଂଗେ ଗୀତ ଗାଇଚି, ଶୋଇ କିନ୍ତୁ ପାରୁନି ।"

"ଆମେ ବି ଶୋଇପାରୁନୁ ମଉସା । ନିଦ ହଉନି ।"

"ଯଦି ନ ହଉଚି, ପଳେଇ ଆସିଲ ମଶାଣିକି ଶୋଇବାକୁ ?"

"ଦେଖ ଅସଲ କଥାଟା ବୁଝ । କଲେଜରେ ମନ ଲାଗିଲାନି । ସିନେମା ଗଲୁ । ସିନେମାରେ ମନ ଲାଗିଲାନି । ଘରୁ ପଳେଇଗଲୁ ପୁରୀ । ସେଠି ବି ମନ ଲାଗିଲାନି, ପଳେଇ ଆସିଲୁ ହୋଟେଲ୍‌କୁ– ମଦ ପିଇଲୁ– ଡିସ୍‌କୋ ଶୁଣିଲୁ ଓ ନାଚିଲୁ । ସେଠି ବି 'ବୋର୍' ସେଠୁଁ ପଳେଇଗଲୁ ହିପ୍ପୀ ଜଏଣ୍ଟ୍‌କୁ । ବଟିକା ଆଣିଲୁ, ଗ୍ରାସ୍ ଆଣିଲୁ ଗଞ୍ଜେଇ ଆଣିଲୁ । ଖୁବ୍ ଟାଣିଲୁ । ହେଲେ ନାଚ ଘରଗୁଡ଼ା କେମିତି କାନ ଅତଡ଼ା ପଡ଼ିଲା ପରି ଆଉ ରୁନ୍ଧି ହେଲା ପରି ଲାଗିଲା । ସବୁଠୁଁ ପଳେଇ ଆସିଲୁ । ସବୁଠୁଁ ଖସି ଆସିଲୁ । ବାପାଙ୍କ ପକେଟ୍ ମାରିବାକୁ ଗଲୁ, ପଇସା ନାଇଁ । ବୋଉର ହାତବାକ୍ସ ଅଣ୍ଡାଳିଲୁ– ଅଳଙ୍କାର ସବୁ ବନ୍ଧାପଡ଼ିଚି । ନିରୂପାୟ ହୋଇ ପାର୍ଟି ଅଫିସ୍‌କୁ ଗଲୁ । ନିର୍ବାଚନ ପ୍ରସ୍ତୁତି ଓ ପ୍ରଚାର ପାଇଁ ବା କାହାର ସଭାରେ ଷଣ୍ଢ ପୁରାଇବା ପାଇଁ ଆଗତୁରା ପଇସା ମିଳିଗଲା । ମାଲ୍ କିଣିଲୁ । ଘର ଛାଡ଼ିଲୁ, ହୋଟେଲ୍ ଗଲୁ । ହୋଟେଲ୍ ଛାଡ଼ିଲୁ, ନଈକୂଳ ଗଲୁ । ନଈକୂଳ ଛାଡ଼ିଲୁ, ନନ୍ଦନକାନନ ଗଲୁ । ନନ୍ଦନକାନନ ଛାଡ଼ିଲୁ, ମଶାଣିକୁ ଆସିଲୁ । ସବୁଠୁଁ ପୋଖତ 'ଏ' କ୍ଲାସ୍ ମସ୍‌ଗୁଲ୍ ଜାଗା ଇଏ । କ'ଣ ବୁଝିଲ ! ହେଲେ ନିଦ କାଇଁ !"

ଖୁବ୍ ପ୍ରବଳ ଉତ୍ତରଳ ଉଦ୍ଦାମ ଜୀବନୀ ଶକ୍ତିର ନିଦ କାଇଁ ।

"ନିଦ ଖୋଜି ଖୋଜି ଘର ଛାଡ଼ିଲ; ଭାଡ଼ି ଶୁଆ ପାଇଁ ଆସିଗଲ, ହେଇ ଦେଖ, ମୁଁ ଅଠର ବର୍ଷ ଶୋଇଛି । ସମ୍ପୂର୍ଣ୍ଣ ଜାଗ୍ରତ ଆଉ ଆତ୍ମସ୍ଥ । ସତରେ କିନ୍ତୁ ମୁଁ ଶୋଇଚି ପୂରା ନିଦରେ, ପୂରା ଶୋଇ ବି ଶତକଡ଼ା ଶହେ ଜୀବନ୍ତ ଆଉ ପ୍ରାଣବନ୍ତ । ମୃତ୍ୟୁ ମୋ ପାଇଁ ଆଦୌ ଏକ ଅନ୍ୟ ଜଗତ ନୁହେଁ । ମରନ୍ତି କାହିଁକି ନିର୍ବୋଧମାନେ ! ମୃତ ବ୍ୟକ୍ତିମାନେ ପୁଣି ମରିବା କ'ଣ ଦରକାର୍ ? କୁମ୍ଭକର୍ଣ୍ଣ ନିଦରେ ଟଳୁଥିବା ଲୋକ ପୁଣି ନିଦ କାହିଁକି ଖୋଜେରେ ପିଲାଏ ?"

ପୁଣି ସେ ତାଙ୍କୁ କହିବ କହିବ ବୋଲି ହଉଚି, ତମ ପରି ମୋର ବି ଏବେ ସାଂସାରିକ ସବୁ ଭୋଗ ବିଳାସରେ ହାହୁତାଶରେ ସମାନ ଭାଗ, ସବୁ ସୁନ୍ଦର ତୃପ୍ତିର ଆଖି ଝଲସା ରୂପ, ସବୁ ମନମତାଣିଆ ବାସ୍ନାର ଘ୍ରାଣ, ସବୁ ଲେହ୍ୟ, ପେୟ ଚେର୍ବ୍ୟ, ଚୋଷ୍ୟର ସ୍ୱାଦ, ସବୁ ପାଶବିକ କ୍ଷୁଧାର ପ୍ରଶମନ ଏଇ ଚିନ୍ତନସର୍ବସ୍ୱ ମନ-ମୁକୁରରେ ବିମ୍ବିତ, ପ୍ରଖର ବେଗବାନ୍ ଅବୟବ-ବିମୁକ୍ତ ମନ ଚାରି ଦିଗରେ ଏବେ ମଧ୍ୟ ବ୍ୟାପିପାରୁଛି । ତେବେ ଚିରନ୍ତନ ଚେତନାର ଜୀବନ ଆଉ ଚିରନ୍ତନ ଦେହାତୀତ' କାମନା-ସଂବୃତ୍ତ ମୃତ୍ୟୁ ଭିତରେ ତଫାତ୍ କ'ଣ !

ପିଲାମାନେ ତଥାପି ତଟସ୍ଥ ହେଇ ଠିଆ ହୋଇଥିଲେ । ତାଙ୍କ ଭିତରେ ବିସ୍ମୟରେ ଚୁହାଁଚୁହାଁ ଠରାଠରି ହେଲେ । ଝିଅଟିଏ ପଚାରିଲା ଚାପୁଡ଼ା ମାରିଲା ଭଳି, "ସତରେ ତମେ ଅଠର ବର୍ଷ ଏମିତି ଦାରୁଭୂତ ମୁରାରି ପରି ବସିଚ ?"

"ହଁ ଲୋ ଝିଅ ।"

"ତମେ ବଂଚିନ କି ମରିନ ?"

"ହଁ ଲୋ ଝିଅ ।"

"ତମେ ଶୋଇନ କି ଜାଗିନ ?"

"ଠିକ୍ କଥା ।"

"ତମକୁ ଉଠାଇ ପାଣିରେ ବୁଡ଼ାଇ ଦେଲେ କ'ଣ ହବ ?"

"ଏଇ ମଶାଣିର ଅଙ୍ଗନରେ ବିଦେହୀ ନିଶାଚର, ପ୍ରେତ ପିଶାଚଙ୍କ ଭଳି ମୁଁ ବି ସବୁଦିନ ଉନ୍ନିଦ୍ର ରହିବି ଆଉ ଖୋଜୁଥିବି–"

"ନିଦ– ଏଇଆ ନା ?" ଝିଅଟି ତାଙ୍କ ମୁହଁରୁ କଥା ଛଡ଼େଇ ନେଇ ହୋ ହୋ ହୋଇ ହସିବାରେ ଲାଗିଲା, ଆଉ ସମସ୍ତେ ନଇବନ୍ଧ ଅତଡ଼ା ଖସିଲା ଭଳି ହସ ଲହଡ଼ିରେ ଲୋଟିଗଲେ ।

ଏଇ କାବ୍ୟିକ ମୁହୂର୍ତ୍ତଟିରେ କିନ୍ତୁ ସର୍ବେଶ୍ୱରଙ୍କ ଆଖି ପ୍ରଥମ ଥର ପାଇଁ ଜକେଇ ଆସିଲା, ଆଉ ଲୁହ ଦି'ବୁନ୍ଦା ଝରିପଡ଼ିଲା ତାଙ୍କ ତୁଣ୍ଡିବନ୍ଧା ହୋଇଥିବା ଖାଦ୍ୟପାତ୍ରରେ ।

"ହେଲା ପିଲାଏ, ଏତିକି ହେଲେ ଧର୍ମ କର । ମୋତେ ପୋଖରୀ ଭିତରକୁ ଫୋପାଡ଼ି ଦିଅ । ଥରେ ମୁଁ ବିଶ୍ୱର ଆରପାଖଟା ହେଲେ ଦେଖେ ।"

ପିଲାଏ କେହି କିଛି ନ ଶୁଣି ସେତେବେଳକୁ କଳରୋଳ କରି ସାଇକେଲ୍ ଚଢ଼ି ଖୁବ୍ ବେଗରେ ଉଭାନ୍ ହେଇ ସାରିଥିଲେ ।

(ମୁଖ୍ୟ ଚରିତ୍ରଟିର ସ୍କେଲିଟନ୍ ମୁଁ ମୋର ବନ୍ଧୁ ରାଜକିଶୋର ମିଶ୍ରଙ୍କ ବାସ୍ତବ ଅନୁଭୂତିସମ୍ଭୂତ ଏକ ରେଖାଚିତ୍ରରୁ ସଂଗ୍ରହ କରିଛି । ମୁଁ ତାଙ୍କ ନିକଟରେ ଋଣୀ । – ଲେଖକ)



# ଖଇଙ୍ଗାମାଛ

## ବିଜୟ ପ୍ରସାଦ ମହାପାତ୍ର

ପୁଷୁମାସିଆ ଖରା ଉଠିଛି । ଏ ଚାଳରୁ ଡେଉଁଛି ସେ ଚାଳ । ପାଖୁଡ଼ା ପାଖୁଡ଼ା ହୋଇ ଲମ୍ବିଆସିଛି ଧାର ଧାର ଖରା ପିଣ୍ଡା ଆଉ ପନ୍ଦାଡ଼ ତଳକୁ । ଉଷୁମ ଆଉ କଅଁଳ । ବିଲେଇ ପରି ସଲସଲିଆ ଜିଭରେ ଚାଟି ଦେଇଯାଉଛି । ବୁଢ଼ୀ ସକାଳୁ ମାଟି କୁଣ୍ଢେଇଟିଏ ପରି ଗୋଡ଼ ଦୁଇଟି ଲମ୍ବାଇ ଖରା ପୁଉଁଛି । ନଳିଗୋଡ଼କୁ ଆଉଁସୁଛି । ସେ ଗୋଡ଼ ଚିରା ଚିରା ଫଡ଼ାଫଡ଼ା ନୁହେଁ । ସେ ଗୋଡ଼ ପାଣିକନ୍ଦା ଖାଇ ଶେତା ପଡ଼ିଯାଇନି । ଆଙ୍ଗୁଠି ସନ୍ଧି ସଫା ଆଉ ରେଖିଲା ପରି ଗୋଇଠି । ସିଏ କ'ଣ ତାଷୁଣୀ ନା ଧୋବଣୀ, ପାଣିତିଆଣୀ ହୋଇଛି ? ମଝିଆଣୀ ଖଟୁଆଣୀ ସେ । ତିନିଭାଇରେ ମଝିବାଡ଼ ଘର । ତା' ଘର ବଡ଼ମାଛ ଶୁଖୁଆର ଘର । ବସଲଗା ଖଇଙ୍ଗା ମାଛ ଆଉ ପେଟଫଡ଼ା ପାଚିଲା ଇଲିସି ଶୁଖୁଆର ତେଲରେ ଜୁଡୁସୁଡୁ । ତା' ହାତଗୋଡ଼ ଚିକ୍‌କଣ-ମାଛର ଚିକ୍‌କଣ । ବୁଢ଼ୀ ଟିକିଏ ଚାହିଁଲା- ସେ ଯୁଗ ଚାଲିଗଲାଣି । ଆଗେ ଖଟୁଆଙ୍କର ମାଛ ଭାର ବାହୁଙ୍ଗି ଲାଗୁଥିଲା ତା' ଦାଣ୍ଡ ଦୁଆରେ । ବାରଣ୍ଡା କଡ଼ରେ ମାଛ ଟୋକେଇ, ଡାଲା, ଚିଡେଇ ଗଡ଼ଗଡ଼ାଉ ଥିଲା । ଶିକାରେ ଶୁଖୁଆ ମୁଣ୍ଡ ପୁଞ୍ଜାଏ କି ତାମ୍ପତା ଦି'ଟା ଝୁଲୁଥିଲା । ଚୁଲି ଉପରେ ଆଟିକାରେ ମାଛପାଣି ଟିକିଏ ହେଲେ ରହୁଥିଲା କି ପୁଇଁଆ ମାଛ ଖରଡ଼ାରୁ ଅଣକେ ।

ଯୁଗେ ହୋଇଗଲାଣି- ଏ ଘରେ ଆଉ ମାଛ ଶୁଖୁଆ ନାହିଁ । କୁମୁଟି ଘର ପରି ଅଲକ୍ଷଣା । ଖଟୁଆଏ ଆଉ ଆସୁନାହାନ୍ତି ବୋଝ ବୋଝ ଖଇଙ୍ଗା ଡାହାଙ୍ଗିରୀ ଲଦି ହୋଇ ପୋଷ ପୋଷ ଝାଳରେ ଗାଧୋଇ । ଉଦୁଉଦିଆ ଖରାବେଳେ, ମୁହଁ ସଞ୍ଜ ବୁଡ଼େ କି କୁଆଁ ତାରା ଉଠିଲା ବେଳକୁ । କୁଆଡ଼େ ଗଲେ ସେ ମାଛ ? କୋଉ ପୋଡ଼ପାଡ଼ଙ୍କ ପେଟରେ ପଶୁଛନ୍ତି ସେ ? କିଏ ଖାଉଛି ତାଙ୍କୁ ? ସ୍ୱପ୍ନ ହୋଇଗଲେ । କେବେ କେମିତି ସାନନାତୁଣୀଟି ଆରସାହିରୁ ତାଟିଆଟିରେ କୋକଲି ମାଛ ଦି'ଟା କି ଖଣ୍ଡବାଳିଆ ଖଣ୍ଡେ ଆଣି ଦେଇଯାଏ- ଆଇ, ଖାଇବୁ ଲୋ-ଅପା ରାନ୍ଧିଛି ।' ଛିଆ-ଥୁ, ସେ ସେଗୁଡ଼ାକ ଖାଏନିମ । ତୁଚ୍ଛା ସମୁଦ୍ର ମାଛଗୁଡ଼ାକ । ଏଇ ଅଜାତି ନୋଳିଆଗୁଡ଼ାକ ତ ବୋହି ଆଣୁଛନ୍ତି । ସମୁଦ୍ର ମଝିରୁ ଗେଣ୍ଡା କଙ୍କଡ଼ା କରି । ସମସ୍ତେ ସେଇଗୁଡ଼ାକ ଖାଇଲେଣି । ଖଟୁଆ ପିଲାମାନେ ତ ଖାଇଲେଣି । ତା' ନିଜ ପେଟର ହେଇ ଗଉରୀ ତ ଖାଇଲାଣି । ହେଲେ ଧୂଳିଆଟି ସେଗୁଡ଼ାକ ଖାଇ ପାରେ ନାହିଁ । ଯେତେହେଲେ ତା' ବାପ ଖଟୁଆ, ତା' ମା' ଖଟୁଆଣୀ, ସିଏ ଖଟୁଆ ପିଲା । ଅସଲ ଖଟୁଆ ପିଲା । କାନ୍ଧରେ ଚିଲିକା ଖାଡ଼ିର ଲୁଣିମାଛ ଭାର । ପାଦରେ ପଙ୍କ କାଦୁଅ ନାହିଁ ମାର୍କଣ୍ଡେଶ୍ୱର ସାହି କେଉଟଗୁଡ଼ାଙ୍କ ପରି । ନାଳ, ଗାଡ଼ିଆ, ପୋଖରୀ ଚଷି ଭଡଭଡ ପଙ୍କ ଭିତରୁ ମୀନ, କେରାଣ୍ଡି ଚିପୁ ନାହାନ୍ତି କି ପିଠିରେ ଗାଣ୍ଡିରେ ଲୁଣ ବୋଳ ନାହିଁ ନୋଳିଆଙ୍କ ପରି । ରୋହରଦ୍ର ଖରାରେ ସମୁଦ୍ର ପନ୍ତାରେ ଜାଲରୁ ସିପ ଶାମୁକା ଛାଣୁଛନ୍ତି । ଛିଆ-ସେଗୁଡ଼ାକ ଛୋଟ ଜାତି ଅଜାତି ପେଷା । ହଁ, ଲୋକେ କ'ଣ ଖାଉନାହାନ୍ତି କି ସମୁଦ୍ର ମାଛ ? ସାଇବ ଖାଉଛନ୍ତି । ସୁଆଁ ସିଆଁ ଏ ଶଗଡ଼ିଆଗୁଡ଼ାକ କୁଟା ସଙ୍ଗାରେ ପୁଟୁଳା ପୁଟୁଳା କରି ବାହୁଡାଣି ବୋହି ଗାଁ ନେଉଛନ୍ତି- ଶସ୍ତା ସମୁଦ୍ର ମାଛ । ଖାଲି ଡାକ ପଡୁଛି-ଆସେ, କୋକଲି

ଚାଉଳି ପଥରମୁଣ୍ଡି । ଆସରେ ପିଲେ ଆସ । ସମୁଦ୍ର ମାଛ ଲୁଟି ହେଉଛିରେ ପିଲେ । ଦିଅଣାକୁ ଯାହାକୁ ଯେତେ । ଆସେ ପତ୍ରମୁଣ୍ଡି ପଥରମୁଣ୍ଡି । ନୋଳିଆଣୀଏ ବାଣ୍ଟିଦେଇ ଯାଉଛନ୍ତି । ବାବୁଭୟାଏ ବି ଖାଉଥିବେ ମଧୁର ମାଛ । ହୋଟେଲ, ଡାକ୍ତରଖାନାରେ ଦେଉଥିବେ । ରୋଗୀ ପଥୀ କରୁଥିବେ । ଯେତେହେଲେ ମଧୁର ମାଛ । ଗାଲି ଟେକିଦେଲେ ଫୁଲ ତଳେ ପରସ୍ତ ପଙ୍କ ଆଉ ଜୋବରା ଗୋବର । ସେଗୁଡ଼ାକ ନେଇ ସେ ସାଆନ୍ତମାନଙ୍କ ଦୁଆରକୁ ଉଠିବ ? ଯିଏ ଲୁଣିମାଛ ତେଲରେ ମଣିଷ ହୋଇଛନ୍ତି ଏ ଗୁଡ଼ାକ ସେ ତୁଣ୍ଡରେ ଦେବେ ? ହଁ, ଖାଉନାହାନ୍ତି କି ? ଖାଇବେ ! ଅକାଳେ ସକାଳେ, ଅଦିନରେ ରୋଗ ବଇରାଗରେ, ମେଳା ମଉଛବରେ । ଖାଆନ୍ତୁ । କିଣି-କରି ଖାଆନ୍ତୁ । ନାଗୁଆ ଖାଇବେନି । ନାଗୁଆ ମଝିଆଣୀଠୁ ଖାଇବେ ଖଇଙ୍ଗା । ଖଇଙ୍ଗା—ସେ ବି ସେଇ ଲୁଣିପାଣିର ମାଛ । ହେଲେ ସେ ପାଣିରେ ଅଥଳା ସମୁଦ୍ରର ଢେଉ ଭାଙ୍ଗେନି । କୁଢ଼େଇ ହୋଇ ପଡ଼େନି ପାହାଡ଼ ପାହାଡ଼ ବାଲି, ମଲାସିପ ଆଉ କଙ୍କଡାଙ୍କ ଖୋଳ । ଚିଲିକାର ଚହଲା ଛାପଛାପକା ଲୁଣିପାଣିରେ ମୁଣ୍ଡବୁଡ଼ା ହୋଇ ଉଠେ ପଟାଳି ପଟାଳି ପାଣିଘାସ, ଚେର, ମୂଳ, ଦଳ, ଶିଉଳିଯାକ ଜୋକ ଆଉ କେତେ କ'ଣ । ସେଇ ଚିଲିକା ଭିତରେ ଅରଣା ମଇଁଷି ପରି ବୁଲେ ଖଇଙ୍ଗା । ଚାରାର ଅଭାବ ନାହିଁ । ଦିନ ରାତି ଚରେ । ସାଙ୍ଗ ହୁଏ, ଯୋଡ଼ି ହୁଏ, ମାତେ । ପେଟ କଡ଼ରେ ଲେସି ହୋଇଯାଏ ପରସ୍ତ ପରସ୍ତ ବସ—ନହେଲେ ଖୁନ୍ଦି ହୋଇଯାଏ ସୋରା ସୋରା ମଞ୍ଜି । ଅଥଚ ସମୁଦ୍ର ମଝିରେ ଧେଡେଙ୍ଗା, ଭୋକ-ବିକଳିଆ, ଗୋଜିଆ ମୁହାଁ ଅଖାଦ୍ୟ ପୋକ ଥିର ପାଣିରେ ମାଛ ହୁଏ । ନା ସେ ଏ କୂଳର ନା ସେ କୂଳର । ନା ସେ ସମୁଦ୍ରର, ନା ସେ ନଦୀର । ସେ ହୁଏ ମଣିଷର ଖାଦ୍ୟ ।

ବୁଢ଼ୀ ପୁଣି ଟିକିଏ ଝିମେଇ ପଡ଼ିଲା । ଭାରୁଆ ଆସି ଭାର ଲଗେଇ ଦେଲେଣି । ଭରା ଭାରା । ଆହୁରି ସୁମାରି ଚାଲିଛି । ମଝିଆଣୀ ଝାମ୍ପ ମାରିଲା ପରି ମଝି ଆଙ୍ଗୁଠି ଦୁଇଟା ଗାଲି ଭିତରେ ପୂରାଇ ଭାର ଭିତରୁ ଖଇଙ୍ଗାଟାଏ ଉଠାଇ ଆଣିଲା । 'ହେ ହେ, ମାଛ କୁଆଡ଼େ ନଉଛୁ ଖଟୁଆଣୀ ? ସୁମାରି ସରିନି ପରା !'—ଖଟୁଆ ଡାକ ପକାଉଥାଏ । ମଝିଆଣୀ ପିଣ୍ଡା ତଳକୁ ଓହ୍ଲାଇ ପଡ଼ିଲାଣି । ରହ ମ' ସଞ୍ଜ ବୁଡ଼ିଯାଉଛି । କାଲି ଗୁରୁବାର ହୋଇଯିବ । ନେତ ସାଆନ୍ତାଣୀ ଆଇଁଷ ଖାଇବନି । ଯାଏ, ଏ ଖଣ୍ଡକ ଦେଇ ଆସେ । ମଝିଆଣୀ ମୁହଁସଞ୍ଜ ଝାପ୍‌ସା ଅନ୍ଧାରରେ ଗଳି ଭିତରକୁ ପଶିଲା । ମଝିଆଣୀ ମାଛଟାକୁ ବେକମୁଣ୍ଡାରୁ ଧରି ଡଗଡଗ ହୋଇ ପଳାଇ ଯାଉଛି । ପିଣ୍ଡା ଉପରୁ ମହନ ଦାସ ଡାକିଲାଣି— 'ଆଲୋ ଏ ମଝିଆଣୀ—ଦେଇ ଯା', ଦେଇ ଯା' ।'

'ଆହେ ନାଇଁ ସାଆନ୍ତେ—କାଲି ଖାଇବ'—କହି ମଝିଆଣୀ ପୁଣି ଦି'ଘର ଡେଇଁଗଲାଣି ।

ମଝିଆଣୀ ଚାହିଁଦେଲା—ବାଡ଼ିପଡ଼ା ଜାମୁନନ୍ଦ ବୁଢ଼ା ତ ଆସି ବାଟଓଗାଳି ଠିଆହେଲାଣି— 'ଆଣେ ଆଣେ । ଆଲୋ, ତେଣେ କ'ଣ ପଳଉଚୁ ? ଆମେ ମାଛ ଖାଇବୁନି ? ଖାଲି ସେଇ ବାବୁଘରମାନେ ଖାଇବେ ? ଧର୍‌, ଯାହା ନବୁ । ବଡ଼ା ମାଛ ।'

ମଝିଆଣୀ ବି ଛାଡ଼ିବା ଖଟୁଆଣୀ ନୁହେଁ । ମାଛଟା ଧରି ବିନ୍ଧଣା ଗାଈ ପରି ଆଡ଼େଇ ହୋଇ ଠିଆହେଲା । 'ଛାଡ଼ମ ସାଆନ୍ତେ, ଛାଡ଼ । ପୋଚାମାଛଟା କାହିଁକି ଖାଇବ ? ସକାଳେ ଭାର ଲାଗିଲେ ମୁଁ ସଜମାଛ ଆଣି ଦେବିନି କି ?'

ଜାମୁ ନନ୍ଦ ଛାଡ଼ିବା ଲୋକ ନୁହେଁ । 'କାହିଁ ଦେଖି— କେମିତି ବସିଯାଇଚି ଦେଖି ?' ଜାମୁ ନନ୍ଦ ବୁଢ଼ା ହାତ ବଢ଼ାଇଲା । ଲୁହା କୋଚଟକୁ କମାର କୋଚଟ । ମାଛଟା ପଛେଇ ଧରି

ମଝିଆଣୀ ବାଟ କାଟିଲାଣି । 'ହଉ ରହ ଶଳା – ତୁ କେମିତି ପଳେଇ ଯାଉଛୁ ରହ । ସକାଳେ ଯଦି ତୋ ବାଉଁଶିଆ ଲୋଟି ନ ହୋଇଛି ମୋ ନାଁ ଜାମୁ ନନ୍ଦ ନୁହଁ ।'

ମଝିଆଣୀ ମନକୁ ମନ ହସିଲା । କେତେ ଜାମୁ ନନ୍ଦ, ଧଡ଼ି ବେହେରା, ହାଲୁ ସୁଆରଙ୍କୁ ସେ ଦେଖିଛି । କେବେ କାହାଠୁ ଗୋଇଠେ ଚାପୁଡ଼େ ଖାଇଛି । ଗାଳିମନ୍ଦ ଶୁଣିଛି । ସିଏ ବି ତାଙ୍କର ଛତାନି ପତାନି ଉଡ଼ାଇଛି । ହାଟ ମଝିରେ, ଦାଣ୍ଡ ଦୁଆରେ ଭାଷା ଅଭାଷା ଗାଳି ଖାଇଛି, ଗାଳି ଦେଇଛି । କେତେ ଢଗ, କେତେ ଛଟା, କେତେ ଛିଗୁଲିଆ ଗାଳି । ତଥାପି ମଝିଆଣୀ ବୁଝେ । ଖାଦ୍ୟ ଜିନିଷ– ଲୋଭ ଜିନିଷ । ପାଇଲା ଲୋକ ଖୁସି, ନ ପାଇଲା ଲୋକ ରାଗ । ଯାହାର ପଇସା ଅଛି ସିଏ ଖାଇବ, ଯାହାର ପଇସା ନାହିଁ ସିଏ ବି ଖାଇବ । ଧନଟା ତ ବଡ଼ କଥା ନୁହେଁ ! ଯିଏ ଯାହା ଖାଇଛି, ଯିଏ ଯାହା ସାରିଛି, ତା'ର ହକ୍ ଅଛି । ଆଜି ପଇସା ନାହିଁ– ନଥାଉ । କାଲି ପଇସା ହେଲେ ସେ ଦେଇଦେବ । ପଇସା ଆସିଲେ ଖାଇବ ବୋଲି ସେ କ'ଣ ଚାହିଁ ବସିଥିବ ? ହଁ, ସେମିତି କ'ଣ ନାହାନ୍ତି କି କେତେ– ପଇସା ଥାଇ ଯାହା ନଥାଇ ବି ସେୟା । ସେମାନେ ଖାଇଲାବାଲା ନୁହଁନ୍ତି । ପଢ଼ିଆରୀ ଘର ବଡ଼ବୋହୂ– ଟୋକେଇ ସୁଦ୍ଧା ଚୁଙ୍ଗୁଡ଼ି ମୂଳେଇ ନେବ, ତିନିକୋଡ଼ି, ଚାରିକୋଡ଼ି ବିଛାବାଳିଆ, ସଙ୍ଗାଡ଼ି ସଙ୍ଗାଡ଼ି ମଞ୍ଜି, ଗୋଟା ଗୋଟା ପାଚିଲା ଶୁଖୁଆଟାମାନ । 'ଆଲୋ ମଝିଆଣୀ, ଦି'ଦିନ ଛାଡ଼ି ଆସିବୁ– ପଇସା ନେଇଯିବୁ ।'

ଦି'ଦିନ କେବେ ଦି' ପକ୍ଷ ହୁଏ; କିନ୍ତୁ ସେ ନାଗୁଆ ପଇସା ବୁଡ଼େନି । ମଝିଆଣୀ ଜାଣେ– ସେ ଖାଇଲାବାଲା ଘର ପଇସା । ଗରିବ ହେଲେ କ'ଣ ହେଲା– ଯିଏ ଖାଇଛି ସିଏ ଖାଇବ, ସେଠି ତା' ପଇସା ବୁଡ଼ିବନି ।

'ସାଆନ୍ତାଣୀ' ବୋଲି ଡାକ ମାରିଦେଇ ମଝିଆଣୀ ଆସି ନେତ ସାଆନ୍ତାଣୀଙ୍କ ଅଗଣାରେ ଠିଆହେଲାଣି । ଭିତରଆଡୁ ନେତ ସାଆନ୍ତାଣୀ ଗାଲ ଉପରକୁ ଓଢ଼ଣା ଟିକେ ଟାଣି ଦେଇ ପାଣିକୁଣ୍ଡ ଦାଢ଼ରେ ଆସି ଠିଆ ହେଲେ । ସାମ୍ନାରେ ମଝିଆଣୀ । ମାଛଟି ରହିଲା ତ୍ରିଭୁଜର ଶୀର୍ଷବିନ୍ଦୁ ହୋଇ । ସାଆନ୍ତାଣୀ ମନ୍ତ୍ରମୁଗ୍ଧ ଗୋଖର ସାପ ପରି ଠିଆ ହେଲେ ଅସଂଲଗ୍ନ, ଅଚଞ୍ଚଳ ।

'ଭଲ ବେଳରେ ଆସିଛୁ ଲୋ !' ଆଖି ଦୁଇଟି ମାଛ ଉପରେ କେନ୍ଦ୍ର ହୋଇଛି । 'ସେଇଠି ଥୁଅ ।'

ମଝିଆଣୀ ଖଇଙ୍ଗାଟାକୁ ଗଡ଼କରି ତଳେ ଶୁଆଇ ଦେଇ ଠୁଙ୍କ ହୋଇ ବସିଲା ପାଖରେ ।

ନେତ ସାଆନ୍ତାଣୀ ଓଢ଼ଣାଟି ଧରି ସେମିତି ଠିଆ ହୋଇଥାନ୍ତି– 'ଦି' ଦିନର ପୋଚା ମାଛଟେ ତ ଆଣିଥିବୁ !'

'ଆହେ, କି କଥା କହୁଚ ସାଆନ୍ତାଣୀ ? ଏଇନେ ପରା ଭାର ଲାଗିଲା । କାଲି ଗୁରୁବାର ହୋଇଯିବ ବୋଲି...' ସାଆନ୍ତାଣୀ କଥା ଛଡ଼ାଇ ନେଲେ– 'କ'ଣ ସିଏ ?'

'ପୂରା ମଞ୍ଜି ।' ମଝିଆଣୀ ଦି'ଟିପରେ ମାଛଟାର ତଳିପେଟଟି ଚିପିଲା । ସୁରସୁର ହୋଇ ହଳଦିଆ ମଞ୍ଜି ଧାରଟିଏ ଚୁପୁଡ଼ି ହୋଇ ଆସିଲା ମାଛ ପେଟରୁ ।

'ସାରା ଦାଣ୍ଡଟାଯାକ ତ ବୁଲାଇ ବୁଲାଇ ଆଣିଥିବୁ ।'

'ନାଇଁମ ସାଆନ୍ତାଣୀ– ଆଖି ଛୁଉଁଚି । ମୁଁ ପରା କାନି ଘୋଡ଼େଇ ଘୋଡ଼େଇ ଆଣୁଛି । ମୁଁ କ'ଣ ଜାଣିନି ଲୋକଙ୍କ କଥା ।'

'ରହ ରହ ଟିକିଏ । ଚାହିଁଥା ଟିକିଏ– ବିଲେଇ ମାରିଦେବ ।' ନେତ ସାଆନ୍ତାଣୀ ତରବର ହୋଇ ତଳଆଡ଼କୁ ଚାଲିଗଲେ । ଫେରିଲେ ଡହକା ନିଆଁଖୁଣ୍ଟା ହାତରେ । ଚ୍ୟାଉଁ କରି ମାଡ଼ି

ଦେଲେ ଖଇଙ୍ଗା ମାଛ ପିଠି ଉପରେ କରି । କିଏ ଜାଣେ, କେତେ ଲୋକଙ୍କର କେତେ ପ୍ରକାର ଆଖି !

ମଝିଆଣୀ ଗେଲେଇ କରି କହିଲା– 'କାଲି ସକାଳେ ଆସିବି ମା ।'

'ଆଲୋ, କାଲି କେମିତି ଆସିବୁ ଗୁରୁବାରଟାରେ ? ଗୁରୁବାରଟାରେ ତତେ ମୁଁ ପଇସା ଦେବି ?' ମଝିଆଣୀ ଗୋଡ଼ କାଢ଼ିଲା ।

ସାଆନ୍ତାଣୀ ପଛରୁ ପଚାରିଲେ– 'କହି ଯା କେତେ ହେଲା !'

ମଝିଆଣୀ ଗେଲେଇ ହୋଇ ପିଣ୍ଡା ଉପରୁ ପୂରା ପଂଝା ଖୋଲି ଦେଖାଇଲା– 'ଗୋଟେ ଚାପୁଡ଼ା ।'

ସାଆନ୍ତାଣୀ ଗରଗର ହେଲେ– 'ହଁ, ପାଞ୍ଚଟଙ୍କା ନା ପଚାଶ ଟଙ୍କା ମ ? ଗୋଟେ ସୁନାମୁଣ୍ଡା ମାଗିଲୁନି ?'

ମଝିଆଣୀ ଓହ୍ଲାଇଗଲାଣି ।

କୁଆଡ଼େ ଗଲା ସେଦିନ ? କୁଆଡ଼େ ଗଲେ ସେ ଲୋକ ? କୁଆଡ଼େ ଗଲା ସେ ଅମୂଲ୍ୟ ଦରବ ? ବୁଢ଼ୀ ପୁଣି ଟିକେ ଝିମେଇ ପଡ଼ିଲା ।

ଧୂଳିଆ ଖାଲି ଲଗାଇଚି କଲିକତା ଚାଲ, କଲିକତା ଚାଲ । ଆହା, ଧୂଳିଆଟି କେତେ ଦୂରରେ ରହିଲା ? କାହିଁ ଯାଇ କଲିକତା । ପୋଷ୍ଟ ଅଫିସରେ ବାବୁ ହେଲାଣି । ଏଇ ପେଟ ଖଣ୍ଡକ ପାଇଁ କେତେ ନାଟ । କାଲି ପରି ଲାଗୁଛି– କଉପୁନି ମାରି ପିଲାଙ୍କ ସାଙ୍ଗରେ କଉଡ଼ି ଖେଳୁଥିଲା । ମୁଆଁ ନ କିଣି ଦେଲେ ମାଟିରେ ଗଡ଼ିଯାଉଥିଲା । ଧୂଳିଆ ବଡ଼ ଚାକିରି କଲାଣି । ବୁଢ଼ୀ ଛେପ ଢୋକିଲା । କହନ୍ତି ପରା ମା' ଡାହାଣୀ ! ଧୂଳିଆଟିକୁ ଜଗନ୍ନାଥେ ଶଙ୍ଖେ ପୂରାଇ ଚକ୍ରେ ଆଢୁଆଳ କରି ରଖନ୍ତୁ ।

ଖରା କାଟିଲାଣି । ବୁଢ଼ୀ ଭିତରକୁ ଗଲା । ହଁ, ସେ ଯିବ କଲିକତା । ବୋହୂ ପରଷା ଟିକିଏ ଖାଇବ । ଧୂଳିଆ ପୁଅର ଗୁଡୁରୁ ଗୁଡୁରୁ ଟିକିଏ ଶୁଣିବ । ହଳଦି ମାଲେପା ଟିକିଏ ଘଷିବ । ଗେଲ ହେବ, ଗେଲ କରିବ । ଟିକିଏ ଟିକିଏରେ ତ ସେ ଟୋକା ଖାଲି ଧୂଳିରେ ଗଡ଼ି ଯାଉଥିବ । ତା' ବାପଟା ତ ସେମିତି ଗଡ଼ିଯାଉଥିଲା ।

ପୁଷ ମାସ ଗଲା, ଚଇତ ଗଲା, ବଇଶାଖ ଗଲା । ଜ୍ୟେଷ୍ଠ ମାସରେ ବୁଢ଼ୀ କଲିକତା ବାହାରିଲା ପୁଅ ସାଙ୍ଗରେ । ବୁଢ଼ୀ ଜାନକାଦେଇପୁର ଡେଇଁ ନଥିଲା– ସେ ପୁଣି କଲିକତା ଯାଉଛି ! ଓହୋ, କେଡ଼େ କେଡ଼େ ଘରମାନ ତୋଳିପକାଇଛନ୍ତି ଚାରିଆଡ଼ । କେଡ଼େ କେଡ଼େ ପୋଲ । କେତେ ରାସ୍ତା, କେତେ ଦୋକାନ ବଜାର, କେତେ ଗାଡ଼ି ମଟର । ଖାଲି ମଣିଷ, ମଣିଷ– ସାଲୁ ସାଲୁ ହେଉଛନ୍ତି । କୁଦି ପକାଉଛନ୍ତି, ଚକଟି ପକାଉଛନ୍ତି । ଠେଲି ପକାଉଛନ୍ତି– ଧାଇଁଯାଉଛନ୍ତି । ଖାଲି ବାବୁଗୁଡ଼ାକ, ସାହେବଗୁଡ଼ାକ, ମହାଜନଗୁଡ଼ାକ, ବାବୁଆଣୀଗୁଡ଼ାକ । ଖାଲି ତ ପୋକମାଛି ପରି ହେଉଚନ୍ତି । ବୁଢ଼ୀର ନଜର ପଡ଼ିଲା ଅଧମହଣିକିଆ ଭେକିଟି ମାଛ ଭାର ଉପରେ । ବୋଝ ବୋଝ ମୁଣ୍ଡେଇ ସଁ ସଁ ହୋଇ ପଳାଇ ଯାଉଛନ୍ତି ଭାରୁଆ । ବୁଢ଼ି ପଚାରିଲା– 'ଧୂଳିଆ, ଏ ମାଛ କୁଆଡ଼େ ଯାଉଛିରେ ?'

ଧୂଳିବାବୁ ଟିକିଏ ହସିଲେ– 'ଆସୁ ଆସୁ ମାଛ ଉପରେ ଆଖି ପକାଇଲୁଣିଟି ତୁ ? ଦେଖିନୁଲୋ ବୋଉ– ରହ ଏଇନେ ଦେଖିବୁ କେତେ ମାଛ । ନାଲି ନାଲି ରୋହିମାଛ । କଳା କଳା ଭାକୁର ମାଛ, ଧଳା ଧଳା ଇଲିସି ମାଛ, ଗୋଲ ଗୋଲ ଘି-ଚାନ୍ଦି ମାଛ, ସାପୁଆ ସାପୁଆ

ଚୁଙ୍ଗୁଡ଼ି ମାଛ, ନିଶୁଆ ନିଶୁଆ ଆଡ଼ି, ମାଗୁର ମାଛ, ବିଲାତି ମାଛ, ଜାପାନୀ ମାଛ, ହଳଦିଆ ମାଛ, ଗୋଳିଆ ମାଛ, ଚଉଖୁଣ୍ଟିଆ ମାଛ, ଅକାଟି ମାଛ, ଆଧା ସାପ-ଅଧା ବେଙ୍ଗ ମାଛ, ଅଦା ନେଳି ଅଧା ହଳଦିଆ ମାଛ, ଖରାଦିନରେ ଶୀତଦିନିଆ ମାଛ, ବର୍ଷା ଦିନରେ ଖରାଦିନିଆ ମାଛ । ଖାଲି ଦେଖିଯା' ।'

'ହଇରେ, ଏଗୁଡ଼ାକ ସବୁ ଲୋକେ ଖାଉଚନ୍ତି ଧୂଳିଆ ?'

'ଖାଉଚନ୍ତି ? କାତି ମିଳୁନିନା, ପଚାରୁଛି ଖାଉଚନ୍ତି ?'

ବୁଢ଼ୀ ଚୁପ୍ ହୋଇ ବସିଲା ।

ଚାରିଦିନ ହେଇଗଲାଣି କଲିକତାରେ । ବୁଢ଼ୀ କାଠ ହେଇସାରିଲାଣି । କେତେ ବୁଦ୍ଧି ଏ ନିଆଁଲଗା ମଣିଷଗୁଡ଼ାଙ୍କର ମ ? ଧୂଳିଆ ପରିବା ଆଣୁଛି– ଦେଖିଲେ ପେଟ ପୂରିଯିବ । ଶାଗ ଆଣୁଛି ଯେ କଞ୍ଚାରେ ଖାଇଯିବାକୁ ମନ କରୁଛି । କଲମ, ପୋଇ, ଭେଣ୍ଡି, କଲରା, ବାଇଗଣ, ଶଙ୍ଖସାରୁ, ବରଗୁଡ଼ି, ବୋଇତି କଖାରୁ, ଲେମ୍ବୁ, ତାଳସଜିଆ ଚୁଙ୍ଗୁଡ଼ି, ମହୁରାଳି ମାଛ, କଣ୍ଟିଆ ମାଛ, ଜରାଡ଼ି– କେତେ କ'ଣ ! ଦିଶୁଛନ୍ତି କୁମ୍ଭାର ଚକରେ ପଡ଼ି ଯେମିତି ସବୁ ଗଢ଼ା ହୋଇଛନ୍ତି । ସେଇ ଏକା ଛାଞ୍ଚ, ସେଇ ଏକା ମାପ, ଏକା ବାସ୍ନା । ପୋକଟିଏ ନାହିଁ, ଜୋକଟିଏ ନାହିଁ । ପୋଚା ନାହିଁ, ଦାଗୀ ନାହିଁ । ଖଣ୍ଡିଆ ନାହିଁ, ବେଢ଼ଙ୍ଗ ନାହିଁ– ସବୁ ସମାନ । ଦେଖିଲେ ପେଟ ପୂରି ଯାଉଛି । ସେ ବୋହୂଟା କ'ଣ କରି ରାନ୍ଧୁଛି କେଜାଣି କାହିଁ ସୁଆଦ ଲାଗୁନି ତ ? ଖାଲି ଦେଖା ସୁନ୍ଦର କଖାରୁ ବଡ଼ିଗୁଡ଼ିଏ । ରଙ୍ଗ ଅଛି, କେଡ଼େ ଠିକଣା– ହେଲେ ଚିକ୍‌କଣ ନାହିଁ । ଗନ୍ଧ ନାହିଁ କି ବାସ୍ନା ନାହିଁ । ପାଟିକୁ ରୁଚି ଲାଗୁନି । ଦେଖି ଦେଲେ ଖାଲି ପାଟିରୁ ଲାଳ ବୋହିପଡୁଛି । ଖାଇଲାବେଳକୁ ବାଇଗଣ ଲାଗୁଛି ଭେଣ୍ଡି ପରି, ଭେଣ୍ଡି ଲାଗୁଛି କାକୁଡ଼ି ପରି । କାକୁଡ଼ି ଲାଗୁଛି ଜହ୍ନି ପରି । ଖାଲି ତ ସାର ଦେଇ ରବର କୁଣ୍ଢେଇ ଚାଷ କରି ପକାଇଛନ୍ତି । ମଣିଷଗୁଡ଼ାକ ନିକୁଚ୍ଛ୍ୟା ହୋଇଗଲେ ପରା । ଆମ ଆଡ଼ର ମୁରୁଗୁଡ଼ିଆ, ଖରାଟିଆ ଶାଗପତର ଦି'ଟା ତ କେଡ଼େ ସୁଆଦ, କେଡ଼େ ମହକ । ଧୂଳିଆ ତ ସେୟା କହୁଛି– ଆଲୋ ବୋଉ, ଇଏ କ'ଣ ଆମ ଆଡ଼ ଶୁଖିଲା, ପୋକଡ଼ା ପରିବା । ଏ ପରା ସାରଦିଆ, ଓଷଦଦିଆ ଚାଷ ପରିବା । ଚାଲ୍, ହାଟ ଆଡ଼େ ଟିକେ ଯିବୁ । କେତେ ବସିବୁ ଘରେ ? ଦେଖ୍ ଟିକିଏ କଲିକତା କାଇଦା କଟକଣା ।' ଧୂଳିବାବୁ ବଜାର ଥଳୀଟି ଧରି ବୁଢ଼ୀ ପାଖରେ ଠିଆହେଲେ । ବୁଢ଼ୀ ମୁଣ୍ଡ ହଲାଇଲା– 'ଆରେ ମୁଁ ସେ ବଜାର ବୁଲି ପାରିବିନିରେ ଧୂଳି । ମୁଁ କ'ଣ ଚାଲିପାରିବି ଏତେ ବାଟ ଏ ଲୋକ ଗହଳିରେ ?'

ଧୂଳିବାବୁ ଟିକିଏ ହସିଲେ । 'ଆଲୋ କାହିଁକି ଚାଲିପାରିବୁନି ? ଏଇ ଗଳିଟା ଡେଇଁଲେ ପରା ହାଟ । ଆଜି ରବିବାରିଆ ହାଟ ଯେ, ଦେଖିବୁ କେତେ କଥା ମିଳୁଥିବ ।'

ବୋହୂ ବି ଆସି ଠିଆହେଲା– 'ଯାଉନ ବୋଉ– ଏଇ ଚାରିଘର ଛାଡ଼ି ପରା ହାଟ । ଏଠି ପରା ସବୁ ରାସ୍ତାରେ ହାଟ । କେତେ ବାଟ ଚାଲିବ କି ?'

'ହଇରେ ଧୂଳି ଯିବି ?' – ବୁଢ଼ୀ ଟିକିଏ ପୁଅ ମୁହଁକୁ ଚାହିଁଲା ।

'ହଁ ମ, ଯିବୁନି କାହିଁକି ? ତୁ ତ କଲିକତା ଆସିଲୁ ଯେ କିଛି ଦେଖିଲୁନି ! ଘରଟି ଭିତରେ ତ ଠୁଙ୍କ ହୋଇ ବସିଛୁ । ଚାଲ୍ ଚାଲ୍ ।'

ପୁଅ ମା' ଦୁହେଁ ହାଟକୁ ବାହାରିଲେ ।

କେତେ ସଉଦା, କେତେ କିଣାବିକା, କେତେ ଦରଦାମ୍, କେତେ ଦରବ । ବୁଢ଼ୀ ଖାଲି ଆବାକାବା ହୋଇଗଲାଣି । ଧୂଳିବାବୁ ମାଛ ବଜାରରେ ପଶିଲେ । ବୁଢ଼ୀ ଚାହିଁଲା । ମଣିଷଗୁଡ଼ାକ

ଖାଲି ବିଲେଇ ପରି ହେଉଛନ୍ତି । ଏଠୁ ଉଠେଇ ନେଉଛନ୍ତି, ସେଠୁ ଉଠେଇ ନେଉଛନ୍ତି । ଏପଟେ ସରିଗଲା ବେଳକୁ ସେପଟୁ ବରଫଗଦା ଭିତରୁ କୁଢ଼ କୁଢ଼ ମାଛ ଚୁଙ୍ଗୁଡ଼ି ଆସି ଗଦା ହୋଇଯାଉଛି । ପସରା ସରୁନି କି ଗରାଖ ସରୁନାହାନ୍ତି । ବୁଢ଼ୀ ଆଖି ପଡ଼ିଲା ଚୁଙ୍ଗୁଡ଼ି ଉପରେ– 'ହଇରେ ଧୂଳି, ଏ ତ ବିଛାବାଲିଆ ଚୁଙ୍ଗୁଡ଼ିରେ ? କୋଡ଼ିକ କେତେ ?'

ଧୂଳିବାବୁ ଟିକିଏ ହସିଲେ– 'କୋଡ଼ି ନାହିଁ– କିଲୋ ଷାଠିଏ ଟଙ୍କା ।'

'ଆରେ ଆମଆଡ଼େ ତ ସପନ ହୋଇଗଲାଣିରେ । ସେ ପରା ଖାଲି ଅଣ୍ଡାଘର କଳ ବସେଇ ବିଲାତ ପଠେଇ ଦଉଛନ୍ତି ଗୋରା ଖାଇବେ ବୋଲି । ଆଗେ ମୁଣ୍ଡ ଖୋଳଗୁଡ଼ାକ ହେଲେ ମିଳୁଥିଲା– ସିଏ ବି ଆଉ ମିଳୁନି । ଖୋଳଗୁଡ଼ାକ ଗୁଣ୍ଡକରି କୁକୁଡ଼ାଙ୍କୁ ଖୁଆଉଛନ୍ତି ଅଣ୍ଡା ଦେବେ ବୋଲି ।'

ଧୂଳିବାବୁ ପୁଣି ଟିକିଏ ହସିଲେ– ତୁ ତ ସବୁ ଜାଣିଚୁ । କହିଲୁ ସେ ଅଣ୍ଡାଗୁଡ଼ାକ କ'ଣ ହେଉଛି ?'

ବୁଢ଼ୀ ଟିକିଏ ବଲବଲ କରି ଚାହିଁଲା ପୁଅ ମୁହଁକୁ– 'ଅଣ୍ଡାଗୁଡ଼ାକ କୁକୁଡ଼ା ହେଉଥିବେ ।'

ଧୂଳିବାବୁ ଠୋ ଠୋ ହୋଇ ହସିଲେ– 'ନାହିଁଲୋ ବୋଉ– ଆଉ କ'ଣ ଅଛି କି ଅଣ୍ଡାରୁ କୁକୁଡ଼ା ନା କୁକୁଡ଼ାରୁ ଅଣ୍ଡା ? ଏ ଯୁଗରେ ଅଣ୍ଡା ଅଣ୍ଡା– କୁକୁଡ଼ା କୁକୁଡ଼ା । ମଞ୍ଜିରୁ ଗଛ ନୁହେଁ କି ଗଛରୁ ମଞ୍ଜି ନୁହେଁ । ଗଛରୁ ଗଛ– ମଞ୍ଜିରୁ ମଞ୍ଜି ।'

ବୁଢ଼ୀ ବୁଝିଲାନି । କ'ଣ କହୁଛି ଏ ଧୂଳିଆଟାମ ? ମା' ନଥାଇ ପିଲା, ପିଲା ନଥାଇ ମା' ? କି କଥା ମ ?

ବୁଢ଼ୀର ଦୃଷ୍ଟି ପଡ଼ିଲା ଖଇଙ୍ଗା ମାଛ ଉପରେ– 'ଆରେ ଧୂଳିଆ, ଏ ତ ଖଇଙ୍ଗା ମାଛ ପରି ଦିଶୁଛିରେ ! ଆମର ସେଆଡ଼େ ମିଳୁନି । ଏଠି ତ କ'ଣ ଖଇଙ୍ଗା ମାଛ ଗଦା ! କିଣୁନୁରେ ଖଣ୍ଡେ– ପିଲେ ଖାଇବେନି ?'

ଧୂଳିବାବୁ ମୁରୁକି ହସିଲେ– 'ଖାଇବୁ ଖଇଙ୍ଗା ମାଛ ? ସେଗୁଡ଼ାକ ଖଇଙ୍ଗା ମାଛ ନୁହେଁଲୋ ବୋଉ । ସେଗୁଡ଼ାକ ଖଇଙ୍ଗା ଶାଗ– ସମୁଦ୍ରର ଶାଗ ।'

ବୁଢ଼ୀ ପୁଣି ବୁଝିପାରିଲାନି । କ'ଣ କହୁଛି ମ ଏ ଧୂଳିଆଟ ? ସେ କ'ଣ ତା' ନିଜ ଖାଇବା ପାଇଁ କହୁଥିଲା ? ସେ କ'ଣ ସଧ କରି ମାଛ ଖାଏ ? ସେଇ ମାଛ ଆଖି ଆଉ ଗାଣ୍ଡୁ ଦୁଇଟିଟି ତା'ର ଲୋଭ । ତାକୁଇ ସେ ଖାଏ ତେଲରେ ଟିକିଏ ଖରଡ଼ି ଦେଇ । ଏ ଧୂଳିଆଟା ପେଟରେ ଥିଲାବେଳେ କେଜାଣି ସିଏ ଶହେଆଠ ଖଇଙ୍ଗା ଗାଣ୍ଡୁ ଖାଇଥିବ । ଗୋଟିଏ ଖଇଙ୍ଗାର ଗୋଟିଏ ଗାଣ୍ଡୁ, ଦୁଇଟି ଆଖି । ସେଇଠି ତା'ର ଲୋଭ । ଧୂଳିଆ ବାପଟା ତା' ମନ ବୁଝି ତା'କୁ ଆଣିଦେଉଥିଲା । କେଉଟ ପରା ଧରେ ମାଛ ଖାଏ କଙ୍କଡ଼ା ।

ଧୂଳିବାବୁ ତିନିପାୟା କରି ଖଇଙ୍ଗା ମାଛ ଖଣ୍ଡିଏ କିଣିଲେ । 'ମାଛଟା ଏଇଠୁ କେନେଇ ନେବା, କ'ଣ କହୁଛୁ ବୋଉ ?'

ବୁଢ଼ୀ ଖେଙ୍କି ଆସିଲା– 'ହାଟ ମଝିରେ ମାଛଟା କାହିଁକି କାଟିବୁ ମ ? ଅବର୍ଜ୍ୟା କରି କାଟି ପକାଇବେ । ପଚାଶ ଲୋକଙ୍କ ଦୃଷ୍ଟି ପଡ଼ିଯିବ । ଚାଲ, ଚାଲ, ଘରକୁ ଚାଲ । ମୁଁ କାଟି ଦେବିନି କି ଏଇନେ ?'

ଧୂଳିବାବୁ ପୁଣି ଟିକିଏ ହସିଲେ– 'ହଉ, ସେ ଅନ୍ତଲା ପନିକିଟା ମୋ ହାତରେ ଧାର କରେଇବୁ ଏଇନେ । ମୁଁ ତ ଏଇଠୁ କଟେଇ ନେଇଥାନ୍ତି ।'

ବୁଢ଼ୀ ସେମିତି ଗରଗର ହେଉଥାଏ– 'ନାଇଁ ନାଇଁ, ଦାଣ୍ଡଟାରେ ମାଛ କଟାହେବନି । ଘରକୁ ଚାଲ । ମୁଁ ଏଇନେ କାଟିଦେବି ।' ମା' ପୁଅ ମାଛ ଧରି ଫେରିଲେ ।

ବୋହୂ ପନିକି ଆଣି ଥୋଇଲା– 'ତମେ ଯାଅମ ବୋଉ– ମୁଁ କାଟି ଦେଉଛି ।'

ମଝିଆଣୀ ବସିଲାଣି– 'ନାଇଁମ, ତୁ କାହିଁକି ଆଇଁଷ ହାତ ହେବୁ ? ତୁ ଯା' । ମତେ ଖାଲି ଚିଡ଼େଇଟା ଦେଇଯା ।'

ଧୂଳିବାବୁ ଆଉ ବୋହୂ ଦୁହେଁ ଟିକିଏ ମୁହଁ ଚହାଁଚହିଁ ହୋଇ ହସିଲେ । ଧୂଳିବାବୁ କହିଲେ– 'ଆଲୋ ଚିଡ଼େଇ କୋଉଠୁ ଆସିବ ଏଠି ? ସେଇ ଥାଳିରେ ରଖେ ।'

ମଝିଆଣୀ ପନିକି ପଟାଟା ମାଡ଼ିବସି ଧରିଲା ଖଇଙ୍ଗାଟାକୁ । କାତି ଛଡ଼ାଇଲା । ବେକଠୁ ଧରି ଖଇଙ୍ଗାର ମୁଣ୍ଡ ଗଣ୍ଡି ଦି'ଗଡ଼ କରିଦେଲାଣି । ରକ୍ତ କେଇବୁନ୍ଦା ପଡ଼ିଲା ତଳେ । ବୁଢ଼ୀ ମାପିଚୁପି ଚକାଚକା କରି କାଟିଲା ଖଇଙ୍ଗାର ଦେହ । କାହିଁ ବସ ନାହିଁ କି ଦୁଧ୍ ନାହିଁ ତ ? ମଧୁର ମାଛ ପରି ଖୋଳଟା ଖାଲି । କିଛି ନାହିଁ ପେଟରେ । ବୁଢ଼ୀ ଧୂଳିବାବୁଙ୍କୁ ଚାହିଁଲା– 'ୟା ଭିତରେ କିଛି ନାହିଁରେ ଧୂଳି– ଖାଲି ଖୋଳଟେ । ଆମ ଆଡ ମାଛ ହୋଇଥିଲେ ତ ଚିକ୍‌କଣରେ ଧରି ହେଉନଥାନ୍ତା ।'

ଧୂଳିବାବୁ ଟିକିଏ ହସିଲେ– 'ଆଲୋ ତୁ ଜାଣିଛୁ ଖଇଙ୍ଗା ମାଛ କୋଉଠୁ ଆସେ ? ଆସେ କାହିଁ ନାହିଁ କାହିଁ ସମୁଦ୍ର ଭିତରୁ । ଲକ୍ଷ ଲକ୍ଷ ମାଛର ସୁଅ । ମାଇଲ ମାଇଲ ଲମ୍ବା ଆଉ ମାଇଲ ମାଇଲ ଚଉଡ଼ା । ଖାଲି ଭୋକ ବିକଳିଆ ଖଇଙ୍ଗା ପିଲାଙ୍କ ଗୋଠ । ଭୋକ ବିକଳରେ କେତେ ପଶିଯାନ୍ତି ଏ ନଈରେ, ଏ ନଈରେ ଖାଡ଼ିରେ, ସେ ଖାଡ଼ିରେ । ମୁହାଣ ବାଟଦେଇ ହଜାର ହଜାର ମାଛ ପଶିଯାନ୍ତି ଏ ଦେଶକୁ ନହେଲେ ସେ ଦେଶକୁ । ସେ ମାଛର ସୁଅ ଅଟକେନି । ପାଗଲା ରେଳଗାଡ଼ି ପରି ଦୌଡ଼େ । ଯିଏ ଯୋଉଠି ଓହ୍ଲେଇଗଲା ସିଏ ସେଇଠି ରହିଗଲା । ବାକି ଚାଲିଲେ ଆଗକୁ– ପାଗଲା ମାଛର ସୁଅ । କେଉଟଙ୍କର ଆଉ ବେଳ ନାହିଁ । ଚାରିଆଡ଼େ ଖାଲି ହାଁ ହାଁ ଭୋକ । କୂଳରେ ହଜାର ହଜାର ଲୋକ ଲାଇନ୍ ଦେଇ ଠିଆ ହୋଇଛନ୍ତି– ଖାଇବାକୁ ଆଣ, ଖାଇବାକୁ ଆଣ । ଯାହା ନେବ ନିଅ । ପାଣିଜାହାଜ, ବୁଡ଼ାଜାହାଜ, ଉଡ଼ାଜାହାଜ ନିଅ । ଜାଲ ନିଅ, ତେଣ୍ଟା, ବର୍ଛା, ଭାଲା ନିଅ । ମାଛ ମାର, ମାଛ ମାର । ମାର ମାର ।

କେଉଟମାନେ ଠିଆ ହୁଅନ୍ତି– 'ସାଆନ୍ତେ, କେମିତି ମାରିବୁ ଏଗୁଡ଼ାଙ୍କୁ ? ଏଗୁଡ଼ାକ ମାଛ ନୁହଁନ୍ତି ସାଆନ୍ତେ, ପୋକଗୁଡ଼ାକ । ଅଧର୍ମ ହେବ ।' ଅଧର୍ମ ? କୂଳରେ ଲୋକେ ନିଆଁ ଲଗାଇ ଦେଲେଣି । ପୋକ ? ହୁଅନ୍ତୁ ପୋକ । ସେ ଖଇଙ୍ଗା ପୋକର ସୁଅଟାକୁ ଛାଣି ଆଣ । ସମୁଦ୍ର ମଝିରୁ ଛାଣି ଆଣ । ତେଣ୍ଟାରେ ଗୁନ୍ଥି ପକାଅ । ବର୍ଛାରେ ଭୁଷି ପକାଅ । ଧ' ପଇସା । ଗରାଖଙ୍କ ଭିତରେ ମାରପିଟ ଲାଗିଗଲାଣି । ସେ ପୋକର ସୁଅ ଆଉ କେନା କେନା ହୋଇ ମୁହାଣ ବାଟେ ପଶି ପାରୁ ନାହାନ୍ତି । ସମୁଦ୍ର ମଝିରୁ ଛଣାହୋଇଯାଉଛନ୍ତି । ମାଇଲ ମାଇଲ ଲମ୍ବ ଚଉଡ଼ା ଖଇଙ୍ଗା ପୋକର ସୁଅ ଓଟରା ହୋଇଆସୁଛନ୍ତି ହଜାର ହଜାର ଲକ୍ଷ ଲକ୍ଷ ହୋଇ । ସେଗୁଡ଼ାକ କ'ଣ ମାଛ ହେଲେଣି ? ଲୋକେ ମାଡ଼ ପିଟାପିଟି ହୋଇ ଖାଇ ଯାଉଛନ୍ତି ସେଗୁଡ଼ାଙ୍କୁ । ସେଥିରେ ଚିକ୍‌କଣ ଆସିବ କୋଉଠୁ ? ଭୋକକୁ ଭୋକ ଖାଇଯାଉଛି । ଭୋକିଲା ଖଇଙ୍ଗାକୁ ଖାଉଛି ଆହୁରି ଭୋକିଲା ମଣିଷ । ହାଡ଼ମାଳକୁ ଖାଉଛି ହାଡ଼ମାଳ । ଚିକ୍‌କଣ କୋଉଠୁ ଆସିବ ସେଥିରେ ?

ବୋହୂ ସୋରିଷ ଫୁଟାଇଲାଣି । ହଳଦି ଲୁଣ ଗୋଳିଆ ଖଇଙ୍ଗା ମାଛ ପକାଇଲାଣି କରେଇରେ । ମଝିଆଣୀ ବସିଲା । ନାକ କୁଞ୍ଚିଲା । କାଇଁ ବାସୁନି ତ ? ଖଇଙ୍ଗା ମାଛ ଆଟିକାରେ

ପକାଇ ଦେଲେ ଆଇଁଷ ଗନ୍ଧରେ ତିନି ଘର ଫାଟି ପଡୁଥାନ୍ତା । କାଇଁ ସେ ମହକ ? ଧୂଳି ଯାହା କହୁଥିଲା ସତ । ଏଗୁଡ଼ାକ ଖଇଙ୍ଗା ମାଛ ନୁହନ୍ତି । ଧୂଳିଆ ସତ କହୁଥିଲା– ଏଗୁଡ଼ାକ ସମୁଦ୍ରର ଶାଗ । ଖାଲି ଶାଗଗୁଡ଼ାକ । ତେବେ ବି ତ ଖଇଙ୍ଗା ରକ୍ତ ତା' ଦେହରେ ଅଛି । ଯେତେହେଲେ ବି ତ ଖଇଙ୍ଗା ପିଲା । କେତେ ବର୍ଷରେ ସେ ଆଜି ଖଇଙ୍ଗା ମାଛ ଖାଉଛି ।

ଭାତ ବଢ଼ା ହେଲା । ଧୂଳିବାବୁ ଆଉ ବୁଢ଼ୀ ସାଙ୍ଗ ହୋଇ ବସିଲେ ଖାଇବାକୁ । କୁନିପୁଅଟି ଗୁରୁଣ୍ଡି ଗୁରୁଣ୍ଡି ବାପ ଥାଳି ପାଖକୁ ଆସୁଛି । ବୋହୂ ତାଟିଆରେ ମାଛ ଖଣ୍ଡିଏ ଆଉ ପାଣି ଟିକିଏ କରି ଆଣି ଥୋଇଲା ବୁଢ଼ୀ ପାଖରେ । ବୁଢ଼ୀ ଟିକିଏ ଚୁପ୍ ହୋଇ ବସିଲା ।

– ମାଛଗୁଡ଼ାକ ଦେଲୁ ? ମାଛ ସିନା ପୁଅ ବୋହୂ ଖାଇଥାନ୍ତ । ସାନଟୋକାଟିକୁ ଟିକିଏ ଖୁଆଇଥାନ୍ତ । ମତେ ତ ଗଣ୍ଡୁପାଣି ଟିକିଏ ରୁଚି । ମାଗିବାକୁ ମନ ହେଲା । ମଝିଆଣୀ ଲାଜରେ ମାଗି ପାରିଲା ନାହିଁ । କେମିତି ମାଗିବ ବୋହୂଟାକୁ ପୁଅ ସାମ୍ନାଟାରେ ? କହିଲା– 'ଖାଲି ଟିକିଏ ମାଛ ପାଣି ଦେ । ମାଛଗୁଡ଼ାକ ମୁଁ ଖାଇପାରେନି ଲୋ ମା' । 'ଖାଉନ ବୋଉ, ମାଛ ଖଣ୍ଡେ ଖାଅ ।' – ବୋହୂ ଚୁଲି ମୁଣ୍ଡରୁ କହିଲା । 'କେତେ ଶରଧାରେ ଖଇଙ୍ଗା ମାଛ କିଣିକରି ଆଣିଛନ୍ତି ତମେ ଖାଇବ ବୋଲି । ଖାଇବନି ?'

ମଝିଆଣୀ ଭାତ ଗୁଣ୍ଡାଏ ପାଟିରେ ପୂରାଇଲା । ଖଇଙ୍ଗା ମାଛ ପାଣିରୁ ହାପୁଡ଼େ ନେଇ ଭାବିଲା କପାଳରେ ଲଗେଇବ ନା ତୁଣ୍ଡରେ ଲଗେଇବ ? ମାଛ ପାଣି ଥୋପା ଥୋପା ହୋଇ ଆଙ୍ଗୁଠି ସନ୍ଧିରେ ଗଳି ଭାତରେ ପଡ଼ିଲା– ଖଇଙ୍ଗା ମାଛର ପାଣି । ବୁଢ଼ୀର ଆଖି ଲୁହରେ ଥନଥନ ହେଲା । ବୁଢ଼ୀ ଗୁଣ୍ଡା ଗିଳିଲା ।



# ସତ୍ୟ ମୋ ବଚନ, ସତ୍ୟ ମୋର ପିତାମାତା, ସତ୍ୟ ଭଗବାନ

## ଦେବ୍ରାଜ ଲେଙ୍କା

ସିନ୍ଦୁକରେ ଧୂପ ଦେଲାବେଳକୁ ନାକୁଟା ପୋଡ଼ି ଉଠିଲା । ହେଇରେ, ଅଳପେଇଷା... ! ଏଇଟା କେତେ ଦାମ୍ କିରେ ? କ'ଣ ତ ବାସେନାରେ ନାକ ଫଟେଇ ଦଉଛି । ହେଇବେ ଘୋଡ଼ାମୁହାଁ..., ତୋର ତ ମଝି ହାଣ୍ଡିରେ ଚାଉଳ ଫୁଟୁଛି, ତୁ ଏତୁଟାଏ ଆସି ହେଲୁଣି, ତୁ କ'ଣ ଆଜିଯାଏ ଜାଣିନୁ, କେତେ ମିହନ୍ତରେ ପଇସା ଆଇଚି ! ଏ ଧୂପକାଠି ଦାମ୍ ତ ଦଶ ଟଙ୍କାରୁ କମି ନଥିବ । ଟଙ୍କାଏ, ଦେଢ଼ ଟଙ୍କାରେ ତ କାମ ଚଳିଥାନ୍ତା ! ଓଃ..., ମୁଁ ପଇସା ପାଇଁ କେତେ ନାରଖାର ହଉଚି, ଏଗୁଡ଼ା ଶଳା ହେଲେ ବୁଝନ୍ତେ !

ଆଉ ଲକ୍ଷ୍ମୀ ଠାକୁରାଣୀଙ୍କ ଫଟୁକୁ କି ସିନ୍ଦୁକକୁ ଓଳିଗି ହବାକୁ ମନୁଟା କିଆଁ ବିସିକି ଗଲା । ମନୁକୁ ଯେତେ ସଜାଡୁଛି, ମନ ସେତେ ଅମାନିଆ ହେଇଯାଉଚି । ହେଇଟି ବାବୁ... ଆମେ ଗରିବି ନୋକ । ସେମିତିଆ ରଜା ମାହାରାଜା ନୁହଁ ଯେ, ସଉକିନିଆ ପଣରେ ଟଙ୍କା ଗୁଡ଼ା ଧୂଆଁରେ ଉଡ଼େଇ ଦବୁ !

ଓଦା ଲୁଗା ପିନ୍ଧିଚି, ଓଦା ପାଣି ଗାମୁଛାଟା ଏଣେ ବେକେରେ ପକେଇଚି, ଲକ୍ଷ୍ମୀ ଠାକୁରାଣୀଙ୍କ ଫଟୁକୁ ଆଉ ସିନ୍ଦୁକକୁ ମୁଣ୍ଡିଆ ମାରିଲା ବେଳକୁ ଏ ଶଳା... ସଖାଲୁ ସଖାଲୁ ଏଇଟା କୁଆଡ଼େ ଆଇଲାଣି ? ମୁଁ ଜାଣେ, ମୋ ଦୁଆରକୁ ଆସିବନି । ହେଲେ, ତୁମକୁ କ'ଣ କାମ ମିଳୁନି କିରେ, କୋଢ଼ିଆ ଦଳ ? ସକାଳଟାରୁ ପର ଦୁଆରେ ଆସି ଥାଳ ପତେଇଲଣି ?

ଏ କେନ୍ଦେରା, ଏ ନବଜକୁ ମୁଁ ମୂଳରୁ ସହି ପାରେନା । ପାଞ୍ଚ ହାତିଆ ମର୍ଦ୍ଦ ହେଇଥିବ, ସଳଖ ସୁନ୍ଦର ଭେଣ୍ଡିଆଟିଏ, ହାତ ଗୋଡ଼ ନାହିଁ ଖଣ୍ଡିଆଟିଏ, ଏଣେ ଥାଳ ଧରି ଭିକ୍ଷା ମାଗୁଥିବ । ବାଡ଼ିରେ ଦେବି ପାହାରେ ଯେ, ତମ ଭିକ ମଗା ଛଡ଼େଇ ଦେବି ! ସଖାଲୁ ସଖାଲୁ ଏ କି ଘୀତ ? ଶଳା... ପଞ୍ଚମେରେ ବୋଲୁଚି :

"ଭୁଲା ମନ, ଭୁଲୁ କାହିଁକି ?<br>
ଉଡୁଛି କାଳ ଛଞ୍ଚାଣ ମନେ ନାହିଁକି ?<br>
ଅଇରି ତୋ କଳପଣା, ଛେଦି ପକା ବେନି ଡେଣା<br>
ଶୂନ୍ୟରେ ବାଜୁଛି ବୀଣା ଶୁଣୁ ନାହିଁ କି ?"

ହେଇବେ ଚୋର..., ମତେ ଡରଉଛୁ ? କାଳ ଛଞ୍ଚାଣ କ'ଣ ବେ ? ପାରା ଛୁଆକୁ ଧରିବା ନେଖା, ଏ କାଳ ଛଞ୍ଚାଣ ଶୂନ୍ୟେ ଶୂନ୍ୟେ ଆସି ବେକକୁ ମାଡ଼ି ବସିବ ? ବସିବ ତ ବସିବ ? ଏତେ ଡରାଣ କିଆଁ ବେ... ? ତୁ ମରିବୁ । ମୁଁ ମରିବି । ଯିଏ ଏ ଘୀତ ବାଂଧିଛି, ସିଏ ବି ମରିବ । ମରିବ ବୋଲି ଏତେ ତନାଘନା କିଆଁ ? କ'ଣ ତମରି ନେଖା ଥାଳ ଧରି ଭିକ ମାଗିବ ? ଶଳା... ଯୋଗୀ, ଭିକାରୀ, ଯିଏ ଆସିବ, ବାଡ଼େଇବି ।

ସଖାଲୁ ନଈରୁ ଗାଧେଇକି କେଡ଼େ ମନରେ ଉଠି ଆଉଚି, ପଞ୍ଚାଏ ଚୋକା ମତେ ଧଇଲେଣି । କ'ଣ ବେ... ? କୁଆଡ଼େ ଆଇଚନ୍ତି ?

ମହାଜନେ..., ଶହେଟା ଟଙ୍କା ତୁମ ଉପରେ ।

ଶହେ ଟଙ୍କା ? କି ଶହେ ଟଙ୍କା ? ଶଳା..., ମୋ ମହାଜନ ଭଳିଆ କ'ଣ ତାଗିଦା କରୁଚନ୍ତି ?

କାହିଁକି ବେ ତାକୁ ମାଗୁଚୁ ? ଏ ବୁଢ଼ା ଗେଧ ମୁହଁକୁ ସକାଳୁ ଦେଖିଲେ ଗଣ୍ଡାଏ ଖାଇବାକୁ ମିଳିବନି ।

ଦିହରେ ନିଆଁଖୁଣ୍ଟା ମାଡ଼ି ହେଇଗଲା । ଏବେ କିଛି ବର୍ଷ ହେଲା କିଏ ଗୋଟାଏ ଉଠେଇଚି ଯେ, ମୋ ମୁହଁ ଦେଖିଲେ ଖାଇବାକୁ ମିଳିବନି । ନ ମିଳୁ ହେ ! ସେଥିରେ ମୋର କୋଉ ଚୋ' ହେଇଗଲା ? ପଛରେ ସିନା ନୋକ କହନ୍ତି ! ଏ ଶଳା ଟୋକା ମାଧିଆର ବହପ କେତେ ଦେଖ... ! ମୁହଁ ଉପରେ କହୁଚି ଆଉ ନ ଜାଣିଲାର ହେଇ ଏଣେ ତେଣେ ଉଣ୍ଡୁଚି ! କିଛି କହିଲିନି । ନ ଶୁଣିଲାର ହେଇ ରହିଗଲି ।

ମାହାଜନେ, ଶହେ ଟଙ୍କା ଦବାକୁ ପଡ଼ିବ ।

ହାଁ... ହାଁ..., ଏତେ ବେସ୍ତ କିଆଁ ? କ'ଣ ହୋଇଚି ଯେ; ମୋ ଉପରେ ଏତେ ଶୁଭ ଦୃଷ୍ଟି ?

କ୍ରିକେଟ୍ ମ୍ୟାଚ୍ ହବ । ସେଥିପାଇଁ ଶହେ ଟଙ୍କା ଚାନ୍ଦା !

କି ମିଆଚ ?

କ୍ରିକେଟ୍ ମ୍ୟାଚ୍, ବହୁତ ଆଡୁ ପିଲାମାନେ ଖେଳିବାକୁ ଆସିବେ । ପୁରା ଟୁର୍ଣ୍ଣାମେଣ୍ଟ ।

କ'ଣ କହୁଚୁରେ ଧନ, ମୁଁ ତ କିଛି ସମଝି ପାରୁନି ।

ଖେଳ ହବ ପରା !

ହଉ... ଦେଖିବା ।

ଶହେ ଟଙ୍କା ଦେଇ ଦେଖିବେ ନା !

ହଉ... ଦେଖିବା ।

ଆଉ ଚାରି ଦିନ ଗଲେ ଖେଳ ଆରମ୍ଭ ହବ !

ହଉ..., ଦେଖିବା ।

କ'ଣ ଖାଲି ଦେଖିବା– ଦେଖିବା ହଉଛ ? କିଛି ତ କହୁ ନାହଁ ?

ଇଏ ତ ଧନମାଳି, ଧରମ କରମ ନୁହଁ !

ଇଏ ଖେଳ ।

ଇଏ ତ ଅଷ୍ଟପ୍ରହରୀ ନୁହଁ !

ଇଏ ପରା କ୍ରିକେଟ୍ ମ୍ୟାଚ୍ !

ଇଏ ତ ହୋମ-ଯଜ୍ଞ ନୁହଁ !

ଇଏ ପରା ଟୁର୍ଣ୍ଣାମେଣ୍ଟ୍ । ଦଶଟା କ୍ଲବ୍ ଜଏନ୍ କରିଛନ୍ତି ।

ହେଇଟି..., ଧନମାଳି, ତେମେ ସବୁ ପାଠ ପଢୁନ କିଆଁ ?

ପଢୁଚୁ ।

କଲେଜ ପାଠ । ଆମ ବେଳେ ଗାଡ଼ି ମଟର ନଥେଲା ଯେ,ଚାଲି ଚାଲି ମୁଣ୍ଡେରେ ଚୁଡ଼ା ଚାଉଳ, ବହି ବସ୍ତାନୀ ବାନ୍ଧି ନିଙ୍ଗିରାଜ ନେଙ୍କା, କଟକରେ ରହି ଦଶ ଖଣ୍ଡ ଗାଁରେ ଏକା ପାଠ ପଢ଼ିଲା ଯେ, କାହିଁ କୋଉ ମୁଲକ ପାଟନାରୁ ଓକିଲ ହେଲା । ଆଉ ତମେ ? ତମର ତ ସାଇକଲ

ଅଛି, ଫାଉଣ୍ଟେନ୍ ଅଛି, ଜୋତା, ଚପଲ ଅଛି, ଭଗବାନଙ୍କ ଦୟାରୁ ପେଟ ପୂରେଇ ଇସି ତିସି ଖାଉଚ, ଦିନରାତି ପାଠ ନ ପଢ଼ି ଏ ଖେଳୁଟା ପାଇଁ କିଆଁ ଏତେ ଆଘ୍ରାଣ ବଳିଚି ବାପ ଧନ... ? ଯାଅ..., ସକାଳୁ ସକାଳୁ କିଆଁ ଖେଳ ଚିନ୍ତା ? ଯାଅ... ପାଠ ପଢ଼ିବ, ଯାଅ... !

କ'ଣ ଏମିତି ଭୁଲେଇ ଦଉଛ ମହାଜନେ ?

ଧରମ କରମକୁ ଆମେ ଟଙ୍କା ଦଉ ।

ତମେ ଧର୍ମ କର୍ମରେ ଟଙ୍କା ଦିଅନି, ଆମେ ଏ କଥା ଜାଣୁ ।

କେମନ୍ତ !

ଅଷ୍ଟପ୍ରହରୀ ହେଇଥିଲା ଯେ, ପଚାଶ ଜାଗାରେ ପାଞ୍ଚ ଦେଇଥିଲ ।

ଜାଣିଚ ତ ମାଗୁଚ କିଆଁ ?

ଆମେ କଲେଜ ପିଲା । ଆମେ ଯାହା କହୁ, ସେଇଆ ହୁଏ । ସେଇଆ ବି କରୁ । ଏତେ ଟଙ୍କା ନେଇ କରିବ କ'ଣ ? ମାହାଜନୀ କରି ଲକ୍ଷ ଲକ୍ଷ ଟଙ୍କା ତ ସାଇତିଛ । ଶହେ ଟଙ୍କା ଦେଲେ ପାଣିରେ କିଛି ପଡ଼ିଯାଉନି ।

କେମନ୍ତ !

ଶହେ ଟଙ୍କା କ'ଣ ବେଶୀ ହେଇଗଲା ? ତୁମର ପାଁଶହ ଟଙ୍କା ଦେବା କଥା ।

କେମନ୍ତ !

ବନ୍ଧା ଛନ୍ଦା, କରଜ ଲଗାଣରେ ତୁମେ ଟଙ୍କାରେ ଭାସୁଛ, ଏମିତି କାଠଉଛ କାହିଁକି ?

ହଉ... ହଉ, ନଈ ତୁଠକୁ କ'ଣ ଟଙ୍କା ନେଇ ଆସିଛି ? ପାଞ୍ଚ ଟଙ୍କା ଦେବି । ଘରକୁ ଆସିବନି । ମୋର ବି ଆଜି ବହୁତ କାମ । ମୁଁ ନିଜେ ଯାଇ ତମକୁ ଦେବି ।

ପାଞ୍ଚ ଟଙ୍କା ?

ପାଞ୍ଚ ଟଙ୍କାଠୁ ଅଧିକ କହିଲେ, ତମରି ନାଁରେ ଦଉଡ଼ି ନଗେଇ ଦେବି । ନହେଲେ ବିଷ ଖାଇଦେବି । ଆଉ ଥେବି ଯେ, ତମେ ସବୁ ଆସି ମୋଠୁ ଟଙ୍କା ନବ ? ଛାଡ଼..., ମୁଁ ଯାଏ ! ଓଦା ନୁଗାରେ ମୋ ଦିହ ଥରିଗଲାଣି ।

ଏ ଶଳା କଲେଜ କିଆଁ ହେଲା ? କିଆଁ ଏ ଅକର୍ମାଗୁଡ଼ା ପାଠ ପଢୁଚନ୍ତି ? ପାଠ ପଢୁଚନ୍ତି ନା ଖାଲି ଖେଳ, ଡ୍ରାମା, ଥେଟର କରୁଛନ୍ତି ? ମୁଁ ପାଠ ପଢ଼ିନି । ପାଠ ପଢ଼ିଚି ଚାଟଶାଳୀ ପାଠ । ବର୍ଣ୍ଣବୋଧ । ସେଇଥିରେ ନାଖେ ନାଖେ ଟଙ୍କାର ମାଲିକ । ଆଉ ଏ ଶଳା ବାବୁ ହେଇ, ଦରକାର ପଡ଼ିଲେ, ମୋରି ପାଖକୁ ଆସିବେ । ମୁଁ ଉପର ହସ୍ତରେ ଟଙ୍କା ଦେବି, ଆଉ ସେ ତଳ ହସ୍ତରେ ଟଙ୍କା ନେବେ । ସେଥିରେ ପୁଣି ଏତେ ଉଲୁକୁମତା ! ମନା କରୁଥିଲି ପୁଅକୁ ପାଠ ପଢ଼େଇବିନି ବୋଲି । ଅବ୍ୟାଜରେ ଟଙ୍କାଗୁଡ଼ା ପାଣିରେ ପଡ଼ିବ । ଆଜି ଇସ୍କୁଲ ଦରମା ତ କାଲି ଖାତା, ବହି କିଣା । ତେହିଁକି ତା' ମା'କୁ... ଫି ମାସେରେ ଦି' ତିନି ଟଙ୍କା ଜୋରିମାନା । ହେଇରେ ଶଶୁର..., ଏତେ ଜୋରିମାନା କିଆଁବେ ? ଶଳା..., ତୁ ଇସ୍କୁଲରେ ହେଞ୍ଜେଡା ହବୁ, ମୁଁ ଜୋରିମାନା ଦେବି ? ନାଃ, ଆଉ ପାଠ ପଢ଼େଇବିନି । ଆମ ଅନ୍ତାନୀ, ସନ୍ତାନୀ କେହି କେବେ ପାଠ ପଢ଼ିନାହାନ୍ତି । କିଆଁ ପାଠ ପଢ଼ିବ ସେଇଟା ? ତା ମା'ର ଏକା ରେଣ୍ଟି, ପୁଅ ତା'ର ବାବୁ ହବ । ଖୁଣ୍ଟିଖାଇଙ୍କ ପୁଅମାନେ ଦୋପଟୀ, ମାର୍କିଷ୍ଟର ହେଲେଣି, ଆଉ ଏ ଶଳା ମାହାଜନ କିଣା ସାହୁର ଏକଇର ବଳା, ସରଗ ଚାନ୍ଦ, ପାଠ ପଢ଼ିବନି ? ଅଲବତ୍ ପାଠ ପଢ଼ିବ । ମୋର ନାହିଁ ନାହିଁକୁ ତା ମା'ର ହଁ ହଁ । ରୁଷା ରୁଷି, କଳିକଜିଆ । ପୁଅ ମା'ଙ୍କର ଜିତାପଟ । ମୋର ହାରକ । ହଉ

ହେଲା, ପାଠ ପଢ଼ିଲୁ ତ ପଢ଼ିଲୁ । ଏଥରକ ଭଲା ପା'ଶେ କର । ନାହିଁ, ପା'ଶେ ହେଲା ନାହିଁ । ମାଟ୍ରିକିରେ ପୁଅ ଘୁଷୁରୁ ଥା'... ! ମୁଁ କୁଆଡୁ ଟଙ୍କା ଆଣିବି ଯେ, ପାଠ ପଢ଼ିବାକୁ ତାକୁ ଦେବି ? କ'ଣ ନା, ଟିଉସନ । କି ଟିଉସନ ? ଟେସନ ସିନା ଜାଣିଚି । ଏ ଟିଉସନ ଫିଉସନ ମୋ ବୋପା ମତେ ଶିଖେଇନି । ମୋ ବୋପା ହାଡ଼େ ହାଡ଼େ ଟଙ୍କା ଦିଏ, ହାଡ଼େ ହାଡ଼େ ଟଙ୍କା ନିଏ । ମୁଁ ତା'ରି ପୁଅ । ମୋ ବୋପା ଗୋଟିଏ ମେଣ୍ଢାରୁ ଶହେ ମେଣ୍ଢା କରି ଦେଇଥେଲା । ସେହି ଟଙ୍କାରେ ମାହାଜନୀ କରି ସମ୍ପତ୍ତି ବାଡ଼ି କରି ପକେଇଲା । ମୁଁ ତା'ରି ପୁଅ । ମୁଁ ଗୋଟାଏ ଟଙ୍କା, କେମେତେ ଦଶ ଟଙ୍କା ହେଇ ଖେଳି ଖେଳି ଘରୁକୁ ଆସେ, ଭଲ ଭାବେ ଜାଣେ । ଦଶ ଟଙ୍କା କେମେତେ ଗୋଟାଏ ଟଙ୍କା ହେଇ ପାଣିରେ ପଡ଼େ, ସେ କଥା ଜାଣିନି । ହେଲେ ଏ ମା' ପୁଅ ମୋର ସି.ଆଇ.ଡି. । ଏ ଦିହିଁଙ୍କ ପାଇଁ ମୁଁ ନିଶ୍ଚେ କୋଉଦିନ ଏଣ୍ଡ୍ରେକ୍ସ ପିଇବି । ମୂଷା ଓଷଦ ଖାଇ ଜୀବନ ଖର୍ଚ୍ଚି ଦେବି । ଟଙ୍କାକୁ ମାଡ଼ି ବଇଚି ବୋଲି ଟଙ୍କା ଅଛି । ନହେଲେ ପର ନଗେଇ ଟଙ୍କାକୁ ଉଡ଼େଇ ଦିଅନ୍ତେଣି । ତେହିଁକି ଦି' ଜୁଆଇଁଙ୍କର କମ୍ ଅଦଉତି ନୁହଁ । ତେମେ କ'ଣ ଜାଣିନ, କୁତା କୁତା, ଶଶୁର ଘରେ ଜୁଆଇଁ କୁତା ? ପୂରା ସାଇକୋଲ ଭିଡ଼ି ପିଲାଛୁଆଙ୍କୁ ଆଗେରେ, ପଛେରେ ବସେଇ ଧପଡ଼ି ଆଉଚ ? ଉଁଃ... ! ବୁଢ଼ୀର ଜୁଆଇଁ, ନାତି-ନାତୁଣୀ ସଅକ ଦେଖ... ! ଆଉ ତ ଗୋଡ଼ ତଳେ ପଡ଼ିବନି ! ଚାଲିଲା ମାଛ କଟା, ବେସର ବଟା, ଘିଅ ପଚପଚ ଆରିସା ପିଠା ! ହେଇବେ..., ଝୁଅ ଦେଲି ବାହା ହେଲ । ଏଥରକ ତେମେ ତମର ସଂସାର କରିବ ! ଘର କରିବ ! ଶଶୁର ଘରେ ଏତେ ନୁଙ୍ଗୁପୁଙ୍ଗୁ ବେହିଆପଣ କିଆଁବେ ? ଏ ବୁଢ଼ୀ ବି ଏତେ ପଇସା ବା ଆଣୁଛି କୋଉଠୁ ? ମୋ ନଥେଲା ବେଳେ ଧାନ ଚାଉଳ, ବିରି-ମୁଗ ବିକ୍ରୀ କରୁଛି ନିଶ୍ଚେ । ନହେଲେ ଏତେ ତୁ'ଣ, ଏତେ ପିଠାପଣା ? ଜୁଆଇଁକୁ ନିଶ୍ଚେ ପକିଟ୍ ଖରଚ ଦଉଥିବ । ନାତି ନାତୁଣୀଙ୍କୁ ମିଠେଇ ଖିଆ ଖରଚ ଦଉଥିବ । ନ ହେଲେ ଏଠି ଏତେ ସୁଆଙ୍ଗ ନାଗିଛି କିଆଁ ?

ଶଳା..., ସକାଳୁ ଡରଉଛି :

"ହାଟରେ ପାଞ୍ଚ ପାଇକ
ଦେଉଛନ୍ତି ଡାକ ହାକ,
ହାଟ ସରିଲେ ବଣିକ ଆଉ ଥାଇ କି ?
ଉଡୁଛି କାଳ ଛଞ୍ଚାଣ ମନେ ନାହିଁକି ?"

ହାଟ ସରୁ କି ନ ସରୁ ତୋ ବୋପାର କ'ଣ ଗଲା ବେ ? ମରିବ ମରିବ ବୋଲି କ'ଣ ହେଁସ, କତରା ଧରି ଆଗେ ମଶାଣିରେ ହାଜର୍ ହବ ? କହିବ : ମୁଁ ଆଇଲି ଭାଇ ଆଗତୁରା, ଏତେ ଦହଗଞ୍ଜ କିଆଁ ? ମତେ ଏଥର ପୋଡ଼ି ପକା ? ଏଇଟାକୁ ଏଠୁ ନ ତଡ଼ିଲେ ରକ୍ଷା ନାହିଁ । କେନ୍ଦେରା ବଜେଇ ହାଁ ... ହାଁ... ହେଇ ରଡ଼ି ଛାଡ଼ିଚି । ତା' ମା' ଯେମେତିଆ ନୋକ ନା, ବାଡ଼ିପଟେ ନୁଚିକି ଆସି ଡିବାଏ ଚାଉଳ ଥାଳେରେ ଓଜାଡ଼ି ଦବ । ସିଏ କ'ଣ ଜାଣିଚି, କେତେ ଦୁଃଖେରେ ଘରୁକୁ ଧାନ ଆଉଚି ?

ବୁଢ଼ୀ ଘର ଭିତୁରୁକୁ ଆଇଲାଣି । ହାତେରେ ତା'ର ଜଳିଖିଆ । କି ଜଳିଖିଆ ? ଚୁଡ଼ା, ଗୁଡ଼ ଜଳିଖିଆ । ଆଉ କୋଉ ଜଳିଖିଆ ? ବିଲେରେ ଆଖୁ ହେଇଥେଲା । ଗୁଡ଼ ରନ୍ଧା ହେଇଥେଲା । ଗୁଡ଼ ଥାଉ ଥାଉ ଚିନି କିଣି ଖାଇବି ? କେମନ୍ତ ! ଚିନି ଘରେ ବନ୍ଦ ହେଇଚି । ପୁଅ କହୁଚି ଗୁଡ଼ ଖାଇବନି । ଚିନି ଖାଇବ । ନ ଖାଉ । ତୋ ବୋପା ଯେତେବେଳେ ଗୁଡ଼ ଖାଇବ, ତୁ ଯିବୁ କୁଆଡ଼େ ବାଚା ? ଆଉ ଚୁଡ଼ାରେ ଦହି, ଓଖର ? ହେଇଚି ବାପା..., ମୋ

ବୋପାର ମେଣ୍ଢା ଚରେଇ ବଣ, କାନ୍ତାର ବାଟ ସରୁ ନଥେଲା । ଭୋକରେ ଆଉଟୁ ପାଉଟୁ ହେଇ ମୁଣ୍ଡିଆ ଝର ପାଣି, ବିଲ ଚବକା ପାଣି ପିଉଥେଲା । ସେଥେରୁ ହେଲା ସେ ମାହାଜନ । ମୁଁ ବୋପାର ପିଲା । ଅଣବାବୁଆ, ବାଉଁଶବୁଦା ପିଲା ନୁହଁ । ମୁଁ ଫେଣି, ଦହି, ଓଖର ଖାଇବି ? ଦହି, ଓଖର ମୋ ଦିହେରେ ଯିବନି । ପୋଖରୀ ହବ । ବୁଢ଼ୀ, ତା' ପିଲାଏ ଚଦିକା ଖାଇବେ, ଖା'ନ୍ତୁ । ମୁଁ ଖାଇବିନି ଲୋ ବୋପା... ! ମୋ ଭାଗୁଟା ବିକିଦେଇ ମତେ ପଇସା ଦିଅ । ସେ ପଇସା ମୋର ସବୁ । ମୁଁ ପଇସା ପିଆରା । ମୋର ଆଉ କିଛି ନାହିଁ । ପଇସା ନଥେଲେ ଏ ପିଲାଛୁଆ, ଏ ସଂସାର ଖାରା ଖାରା ।

ବୁଢ଼ୀ ଜଳଖିଆ ବେଲାଟା ମୋ ପାଖେରେ ଥୋଇ କହିଲା : ସେଇ ଯୋଉ ବାଆଜୀ ଆଉଚି, ଆଜି ଆସିବ ?

କୋଉ ବାଆଜୀ... ?

ମଲା..., ଆଜିକୁ ଛଅ ସାତ ଦିନ ହବ, ଦିନେ ଛଡ଼ା ଦି'ଦିନ ଛଡ଼ା ତମ ପାହାକୁ ଆଉଚି, ଆଉ ତେମେ ଜାଣି ସିଆଣିଆ ହେଇ କହୁଚ, କୋଉ ବାଆଜୀ... ?

ଆଖି ତରାଟି ବୁଢ଼ୀ ମୁହଁକୁ ଚାହିଁଲି । ଯାହା କହିଚି, ସତ କହିଚି : ଏଇଟା ମୋର ସି.ଆଇ.ଡି. । ମୁଁ ଡାଳେ ଡାଳେ ଗଲେ, ଇଏ କ'ଣ ପତ୍ରେ ପତ୍ରେ ଯାଉଚି ?

ବାଆଜୀଟା ଠକୁଟାଏ ।

ମୋ ଦିହେରେ କିଏ ନିଆଁ ଖୁଣ୍ଟା ମାଡ଼ିଦେଲା । କିଛି ନ ଜାଣି ଏଇଟା କହୁଚି : ବାଆଜୀଟା ଠକୁଟାଏ । ମନ କଥା ମନେରେ ରଖି ପଚାରିଲି : ତୁ କେମିତି ଜାଣିଲୁ ?

ଫି ବେଳେ ଚଙ୍ଗ ଚଙ୍ଗ ହଉଚି । ଘର ଭିତୁରୁକୁ ଆମୁକୁ ଦେଖିବ ବୋଲି ହଉଚି । ଖାଲି ଭିତୁରୁକୁ ଡୁଙ୍ଗୁଚି ।

ଖେକେଡ଼ି ବୁଢ଼ୀକୁ ରସିବ ବୋଲି ଡୁଙ୍ଗୁଚି !

ମଲା ମୋର, ଏତେ ରାଗୁଚ କିଆଁ ମ ?

ରଗିବିନି ? କିଏ ମୋ ପାହାକୁ ଆଇଲା, କିଏ ଗଲା, ସେ ସବୁକୁ ତୋର ଏତେ ନଜର କିଆଁ ? ବାଆଜୀ ଠକ ହେଲେ କି ଠକ ନହେଲେ ସେଥିରେ ମୋର କି ଯାଏ ଆସେ ? ମୋଠୁ ସିଏ ଟଙ୍କା ନେଇଚି, ଆଇଚି ସୁଝିବାକୁ ।

ବାଆଜୀ ହେଇ କଣ୍ଠି, କଉପିନି ପିନ୍ଧି ଏ କି ବେଭାର ଲୋ ମା'... ! ସତିକା ତମଠି ନିଘା ନାଇଁ, ନିଘା ଯେତକ ଆମଠି । ଠାଉକା ସତିକା, ଓର ପାଇଲେ, ଘରୁ ବେଲାଟାଏ କି ତାଟିଆଟାଏ ଉଠେଇ ଦବ ।

ଚୁପ୍‌ବେ... ! କାହାକୁ କୋଉ କଥା କହୁଚୁ ? କହିଲି ପରା, ସିଏ ଟଙ୍କା ନେଇଚି ଯେ, ସୁଝିବାକୁ ଆଇଚି ।

ତେମେ ମତେ ଭଣ୍ଡଉଚ । ହଇହେ..., ତା' ଘର କୋଉଠି ? ଆଗୁରୁ ତ ତା'ର ଜମା ଦେଖା, ଦରଶନ ନଥେଲା । ଏଇ ଦଶ ପନ୍ଦର ଦିନ ହେଲା ତମ ପାହାକୁ କେବେ ଆସି ଟଙ୍କା ନେଲା, ଫେର୍ ସୁଝିଲା ?

ତୋର ସେଥିରେ ଯାଏ, ଆସେ କେତେ ? ତା'ଠାରୁ ଦୀକ୍ଷା ନେବି ବୋଲି ଭାବିଚି ।

କ'ଣ ? ଦୀକ୍ଷା ? ହଇହୋ..., ତମେ ତ ଯୋଗୀ, ଭିକାରୀ, ବାଆଜୀଙ୍କୁ ଦେଖିଲେ, ମାରି ଗୋଡ଼ାଅ । ଏଇ ବାଆଜୀଠୁ କି ରସ ବୋହୁଚି ଯେ, ତା' ସାଥିରେ ଖାଲି ଟୁପୁଟୁପୁ... ଫୁସୁଫୁସୁ... ?

କ'ଣ କହିଲୁ ଟୁପୁଟୁପୁ... ଫୁସୁଫୁସୁ... ? ମୁଁ ଟୁପୁଟୁପୁ... ଫୁସୁଫୁସୁ ହଉଚି ? ଦେବି ଗୋଟାଏ ଡିହ ଯେ, ତୋ କଥା ନବରଙ୍ଗ ଛଡ଼େଇ ଦେବି । ଆରେ... ଏଇଟାର କେତେ ଆଡ଼େ ଆଖି । କେତେ କଥା ! ମୋ ପାହାକୁ କିଏ ଆଇଲା, କିଏ ନ ଆଇଲା, ଏ ସବୁର କଇଫତ ମୁଁ ଏ ମାଇକିନାକୁ ଦେବି ! ଗଲୁ ! ଯା'... ! ମୋ ସାଥିରେ ତୁଚ୍ଛାଟାରେ ଭଟ ଭଟ ହ' ନାଇଁ ।

ପଇସା ଦିଅ... ।

ପଇସା କି ପଇସା ?

ପୁଅ ହାଟୁକୁ ଯିବ ।

ଯିବା ଦରକାର ନାଇଁ ।

ସେ ତ ନଗେଇଚି ତା'ର ଗୋଟାଏ ରୁମା ତଉଲିଆ ଦରକାର ।

ରୁମା ତଉଲିଆ କ'ଣ ?

ମେଣ୍ଢାବାଳ ରୁମୁ ରୁମିକା । ଦେଖିନାହଁ ?

ଚୁପ୍ ବେ... ! ତା'ର ପରା ଗାମୁଛା ଅଛି ?

ପିଲାନୋକ । ତା'ର ତ ସଅକ ଅଛି ?

ଦେବି ଯେ ପାହାରେ, ତୋ ପୁଅ ସୁଆଗ ଏକା ଥରେ ଛଡ଼େଇ ଦେବି । ଶଳା... ମୁଁ ବଂଚିଚି କିଆଁ ବେ ? କିଆଁ ଏତେ କଲବଲ ହଉଚି ? କିଆଁ ମତେ ମରଣ ହଉନି ? ଏମାନେ ମତେ ଖପତି କରି ଦେବେରେ... ! ମୁଁ କାଙ୍ଗାଳ ହେଇଯିବିରେ... ! ଏମାନଙ୍କ ବିସିନୀପଣକୁ ମୋର ଆଉ ଟଙ୍କା ନାହିଁରେ... ! ହେ ଯମ..., ତୁ କୁଆଡ଼େ ଅଛୁରେ... ! ମତେ ନେଇଯା'ରେ । କୁଆଡ଼େ ଗଲା ଏଣ୍ଡ୍ରେକ୍ସ ? ଆଉ ଜୀବନ ରଖିବିନି । ମରିଯିବି । ଜୀବନ ଆଜି ଏ ମା' ପୁଅଙ୍କ ଦାଉରୁ ଏକାବେଳେ ମୂର୍ଚ୍ଛି ଦେବି । ଖର୍ଚ୍ଚି ଦେବି ।

ଯୋଉ ପାଣି ଗାମୁଛାଟା ଖଟ ବାଡ଼ରେ ଝୁଲୁଥେଲା, ତମ ତମ ହେଇ ଭିଡ଼ି ଆଣିଲି । ବେକେରେ ଗୁଡ଼େଇ ଦି' କାନିକୁ କଷିକି ହାତେରେ ଭିଡ଼ିଲି । ଭିଡ଼ିଲି । ଗଁ... ଗଁ... ! ଗଁ... ଗଁ... ! ଜୀବନ ମୂର୍ଚ୍ଛି ଦେବି । ଗଁ... ଗଁ... ! ଜିଭ ବାହାର କରି ଗଁ... ଗଁ... ! ମଲି ଲୋ ବୋପା ଗଁ.... ଗଁ... !

ବୁଢ଼ୀ ଆଉ ଠିଆ ହବ କ'ଣ, ଭେଟେଣା ହେଇ ଦଉଡ଼ିକି ପଳେଇଲା ।

ମୁଁ ଯେମିତି ଦେଖିଲି, ଆଉ ବୁଢ଼ୀ ନାହିଁ, ଗାମୁଛା ଛାଡ଼ି ସାଷ୍ଟାମ ହେଇ ବସିଲି । ଶଳା, ଗୋଟାଏ ଫାର୍ଶ ନଗେଇଚନ୍ତି । ଏମିତି ନ କଲେ, ଏମାନଙ୍କ କବଳରୁ ଏ ଟଙ୍କା, ଏ ଧନ ସମ୍ପତ୍ତି ରଖି ହବନି । ମୋର ବି ଇଏ ଗୋଟାଏ ମାହାଓଷଦ । ଯେତେବେଳେ ଏଗୁଡ଼ାଙ୍କୁ ପାରିବିନି, ସେତେବେଳେ ଗାମୁଛାକୁ ବେକେରେ ଗୁଡ଼େଇ ନିଜ ହାତେରେ ନିଜେ ଫାଶି ଦେଇ ଗଁ... ଗଁ... ହେଇ ଜିଭ କାମୁଡ଼ି ଦେବି, ଆଖି ତରାଟି ଦେବି । ମାଟିରେ ପଡ଼ିଯିବି । ଏଥିରେ ଯିଏ ମନେ ସିଏ ଭେଟେଣା ହେଇ ଥାନ ଛାଡ଼ି ପଳେଇବ ଆଉ ମୋର ଜିତାପଟ ହବ ।

ସକାଳୁ ଏକ୍‌ରେ, କଲେଜ ପିଲା ଚାନ୍ଦା ମାଗିଲେଣି, ଦୁଇରେ, ବାସେନା ଧୂପକାଠି ପୁଅ ଆଣିଚି; ତିନିରେ ଯୋଗୀଟାଏ କୁଆଡୁ ଆସି କାଳ ଛଞ୍ଚାଣ କାଳ ଛଞ୍ଚାଣ ହେଇ ଡରେଇବା ପାଇଁ ଘୀତ ବୋଲୁଚି; ଚାରିରେ ବୁଢ଼ୀ ଆସି ବାଆଜୀ କଥା କହୁଚି; ପାଞ୍ଚରେ, ରାଣ୍ଡି ପୁଅ ଅ'ନ୍ତାର ରୁମା ତଉଲିଆ ସଅକ, ସବୁତକ ଏକାଠି ମିଶି ମୋ ମୁଣ୍ଡ ପିଉକୁ ଏମିତି ଚହଲେଇ ଦେଇଚନ୍ତି ଯେ,

ବେକେରେ ଗାମୁଛା ପକେଇ ନିଜ ଜୀବୁକୁ ନ ଖର୍ଚ୍ଚିଲେ ଆଉ ଅନ୍ୟ ବାଟ କିଛି ନାହିଁ । ଏ ଶଳା ପାଞ୍ଚ ପାଇକ ମେତେ ପାଞ୍ଚ ଆଡୁ ଭିଡୁଚନ୍ତି ।

ଏ ଖାନିକୀଟା ମୋର ପୂରା ସି.ଆଇ.ଡି. । ନହେଲେ କି ଛଅାଣ ଆଖି ତା'ର ଦେଖୁନ, ବାଆଜୀଟାକୁ ଗୋଡୁଠୁ ମୁଣ୍ଡଯାଏ ନିଘା ରଖିଚି କୋଉ ଦିନଠୁ । ମୁଁ ଯାହା ନଖ୍ୟ ରଖିନି, ଏ ବୁଢ଼ୀ ସବୁ ନଖ୍ୟ ରଖିଚି । ହେଇ ଲୋ..., ଆଗୁଆ କହି ଡବଡବୀ... ସିଏ କିଆଁ ଚଙ୍ଗ ଚଙ୍ଗ ହବ ? ସେ କିଆଁ ଠାଉକା ହବ ? ସଜ ମାଛେରେ ପୋକ ପକେଇ ଦବା ସୋଭାବ ତୋର ଲୋ ଛୋପରୀ । ଆଉ ଚଦିକା ବାଆଜୀ କଥା ଥରେ କହିବୁ, ସତ କହୁଚି ତୋର ସବୁ ଦିନେକୁ ମୋର ଦିନେ ।

ବାଆଜୀ ଆଇଲା । ସଞ୍ଜ୍ୟା ବେଳ । ବାଆଜୀ ଆଇଲା । କେହି ନାହାଁନ୍ତି । ବାଆଜୀ ଆଇଲା । ଏକୁଟିଆ ମୁଁ । ବଇଚି ଦାଣ୍ଡଘର ଖଟୁଟା ଉପେରେ । ବାଆଜୀ ଆଇଲା । ବୋଇଲା :

ଜେ ସୀୟାରାମ... ! କ୍ୟା ବେଟା..., ବୈଠେ ହୋ... ?

ଏ ଶଳା..., ଏଇଟା କ'ଣ ବାଙ୍କା ଭାଷା ହିନ୍ଦସ୍ତାନୀରେ କଥା କହୁଚି ?

ମୁଁ ବଡ଼ ପାଟିଟାଏ କରିଦେଲି । କହିଲି, ଖାନା ଫାନା କିଛୁ ମିଲ୍‌ବ ନୈହିଁ । ଭାଗି ଯା'... ଭାଗି ଯା'...

ଖାନେ କେ ଲିୟେ ହମ୍ ଆୟେ ନୈହିଁ ବେଟା । ହମ୍ ପରମ୍‌ହଂସ୍ ହାଏଁ । ତିର୍‌କାଲଦର୍ଶୀ । ଏକ୍‌ଶୋ ଆଠ୍ ଶୀରୀ ଶୀର୍‌ମତ୍ ସ୍ୱାମୀ...

ହାମ୍ କିଛୁ ଶୁନିବ ନେହିଁ । ଭାଗିଯା' ଭାଗିଯା'... !

ହାଁ... ହାଁ... ବେଟା..., ଇତ୍‌ନା ରୁଠ୍ ଯାତା ହେ କ୍ୟୁଁ ? ହମ୍ ହିମାଲୟସେ ଆୟା ହୁଁ । ହମେ ସ୍ୱପ୍ନାଦେଶ୍ ହୁଆ କି... ଇସ୍ ଗାଓଁମେ ତୁମ୍ ଅକେଲା ରାଜା ହୋ... । ତୁମ୍ ହାମାରା ମଦତ୍ କର୍ ସକେଗା ।

କିଆ କହତା ? କିଆ କହତା ?

ତୁମ୍ ରାଜା ହୋ ବେଟା... !

ହାମେ ନାହିଁ ରାଜା । ନାହିଁ ରାଜା । ବୋରାବୋରି ଗରିବ୍ ମାନିଷ୍ ଅଛୁଁ ହାମେ । ହାମ୍‌କୁ ଭାତ୍ ନାହିଁ ମିଲିତା ।

ହାଃ... ହାଃ... ବେଟା, କ୍ୟା ବାତ୍ ହେ । ଅମୀର ଆପ୍‌କୋ ଆପ୍ ବୋଲତ୍ୱା ହେ ଫକୀର୍ ! ହମ୍ ଦିବ୍ୟଜ୍ଞାନ ସେ ବୋଲ୍‌ତା ହେଁ ବେଟା, ଘରୱାଲୀ କୀ ସାଥ୍ ତୁମ୍‌ହାରା ବନ୍‌ତା ନୈହିଁ ।

ଘରୱାଲୀ କିଆ ?

ଇସ୍ତ୍ରୀ... ଇସ୍ତ୍ରୀ !

ହାମ୍‌ରା ଇସ୍ତ୍ରୀକୁ କିଆ ନେଏଙ୍ଗା ? ଇସ୍ତ୍ରୀକୁ କିଣ୍‌କେ ହାମେ ବେଟାକୁ ନାହିଁ ଦିଆ । ଇସ୍ତ୍ରୀ କିଆ ହବ୍ ହାମାରା ? ହାମେ ଗରିବ୍ ମାନିଷ୍ ଅଛୁଁ ହେ ।

ଓଃ... ! ଇସ୍ତ୍ରୀ କୋ ସମଝ୍‌ତା ନୈହିଁ ?

ସମ୍‌ଝତା ! ସମ୍‌ଝତା ।

ବେଟା..., ଇସ୍ତ୍ରୀ ତୁମ୍‌ହାରା ପତ୍ନୀ ହେ । ଓହ୍ ତୁମ୍‌କୋ କାଙ୍‌ଗାଲ୍ କର୍ ଦେଗୀ । ଓହ୍ ଯୋ ବେଟା ହେ ତୁମ୍‌ହାରା, ଓହ୍ ତୁମ୍‌କୋ ସତ୍ୟାନାଶ୍ କର୍ ଦେଗା !

କିଆ କହତା ?

ପରନ୍ତୁ ତୁମ୍ ଦୟାଲୁ ହୋ । ଧାର୍ମିକ ହୋ । ଇସ୍‌ଲିୟେ ଲଛମୀ ମାଈ ତୁମ୍‌କୋ ସଦା ସର୍‌ବଦା କ୍ରିପା କର୍‌ତୀ ହୈ । ଜେ ସୀୟାରାମ... !

ଏ ଶଳା କ'ଣ ତ ସତ କହୁଚି ! ମାଇପ ମୋତେ କାଙ୍ଗାଳ କରି ଦବ ! ପୁଅ ସତ୍ୟ ନାଶ କରି ଦବ । ସତେ ତ ! ଛାତିରେ ମୋର ଅତଡ଼ା ଖସିଗଲା ।

ବୋଲୋ ବେଟା... ୟହ୍ ସଚ୍ ହାଏ ୟା ଝୁଟ୍ ? ତୁମ୍ ବଚପନ୍‌ମେ ବଗୁଲା କା ସାଥ୍ ଖେଲା ରହା ଥା । ଏକ୍‌ବାର୍ ତୁମ୍ ବଗୁଲାକୋ ଦୁଧ୍ ପିଲା ରହା ଥା । ଔର୍ ବଗୁଲାକୋ ଗୁମ୍‌ସୁମ୍ ନିହାର୍ ରହ ଥା । ତବ୍ ତୁମ୍‌ହାରେ ଆଁଖ୍‌କା ଜ୍ୟୋତ୍ କୋ ଖ୍ୟଲ୍‌ତୀ ହୁଇ ମଛଲୀ କୀ ଆଁଖ ଶୋଚ୍ କେ ଓହ୍ ଚୋଞ୍ଚ୍ ମାର୍ ଦିଆ । ବେଟା ତବ୍ ସେ ତୁମ୍ କାଣା ହୋ । ଏକ ଆଁଖ୍ ସେ ଗୟେ ହୋ ।

ଏ ଭଉଣିଆ... ଏଇଟା ସତ କହୁଚି ତ ! ପିଲାବେଳେ ମୁଁ ବଗୁକୁ ଓଖର ପିଆଉ ଥେଲି । ବଗ ମୋ ଆଖିକୁ ଖୁମ୍ପି ଦେଲା ଯେ, ମୁଁ ସେଇଦିନଠୁ କଣା ହେଇଗଲି । ମୋର ଗୋଟାଏ ଆଖି ଗଲା । କି ହୀନସ୍ତା ନ ହେଇଚି ! ବାଆଜୀ ଏକଥା ଜାଇଁଲା କେମେତେ ?

ଆଉ ରକ୍ଷା ନାହିଁ । ଦିହ ମୋର ଥରିଗଲା । ନମ୍ର ଦଣ୍ଡା ହେଇ ବାଆଜୀ ଗୋଡ଼ ତଳେ ପଡ଼ିଗଲି ।

ହାଁ... ହାଁ... ବେଟା । ତୁମ୍ ଚିରଞ୍ଜୀବ୍ ବନେଗା । ଶୌ ସାଲ୍ ବଚେଗା । ବୋଲ୍ ବେଟା..., ପ୍ରେମ୍‌ସେ ବୋଲ୍..., ଜେ' ସୀୟାରାମ... !

ଜେ' ସୀୟାରାମ.. !

ହାଃ... ହାଃ... ହାଃ... !

ଦାନ୍ତ ନିକୁଟି ବାଆଜୀ ସାଥିରେ ହସିଲି : ହାଁଃ... ହାଁଃ... ହାଁଃ... !

ହାତ୍ ଦେଖାଓ ତୋ ବେଟା ! ସିଏ ମୋ ହାତୁକୁ ଟାଣି ନେଲେ । ବାଆଜୀ ମାହାପ୍ରୁଙ୍କ ହାତେରେ ମୋ ହାତ । ବାଆଜୀ ମୋ ହାତୁକୁ ବୁଲେଇ ବାଲେଇ ଦେଖୁଥା'ନ୍ତି । ମୁଁ ଗୋଟାଏ ଆଖିରେ ତାଙ୍କୁ ଅନେଇ ଥାଏ ।

ହାଃ... ହାଃ... ବେଟା । ଐସା ହାତ୍ ହମ୍ ଜୀବନ୍‌ମେ ଦେଖେ ନୈହିଁ । ୟହ୍ ତୋ ରାଜ୍ ଚକର୍‌ବର୍‌ତ୍ତୀ କା ହାତ୍ ହୈ । ଦେଖୋ... ଦେଖୋ ବେଟା..., ୟହ୍ ତୁମ୍‌ହାରା ଭାଗ୍ୟ ରେଖା ହୈ । ୟହ୍ ଆୟୁ ରେଖା । ବାଃ... ବାଃ... ! ୟହ୍ ଦେଖୋ... ଶଙ୍ଖ ହୈ, ୟହ୍ ଚକର୍ ହୈ, ୟହ୍ ଗଦା... ପଦ୍ମ... ! ଲେକିନ୍ ହମ୍ ଶୋଚତେ ହେଁ, ତୁମ୍ ରାଜା ନ ବନ୍‌କର୍ କ୍ୟୁଁ ଇସ୍ ପରିବାର୍ ମେ ଜନମ୍ ଲିୟା ? ବେଟା... ତୁମ୍ ପିଛ୍‌ଲେ ଜନମ୍ ମେ ରାଜା ଥା । ତୁମ୍ ଗଲ୍‌ତୀ ସେ ଏକ୍ ଗୋ ବଧ୍ କିୟା । ଇସ୍‌ଲିୟେ–

ଗୋ ବଧ ? ବୋପାଲୋ... ! କି ପାପୁଟାଏ ନ କଲି ମୁଁ !

ଛୋଡ଼ୋ ବେଟା... ଜୋ ହୋନେକା ଥା', ଓହ୍ ହୋ ଗୟା ! ବେଟା..., ତୁମ୍‌ହାରେ ଦୋ ଲଡ଼୍‌କିୟାଁ ହୈ । ଦୋନୋ ହି ଦୋନା ବଦ୍‌ମାସ୍ ହୈ । ଉନ୍ହୋନେ ହମେସା ପିହର୍ ମେ ଆକର୍ କୁଛ୍ ନା କୁଛ୍ ପାନେ କୀ ଲାଲଚ୍ ମେ ତୁହ୍ମେ ତଙ୍ଗ୍ କର୍‌ତେ ରହତେ ହୈ ।

କିଆ କରତେ ହାଇ ?

ତଙ୍ଗ୍ କର୍‌ତେ ହୈ । ଔର୍ ତୁହ୍ମାରେ ବୁଢ଼ୀଆ...

ବୁଢ଼ୀ ? ବୁଢ଼ୀ ?

ହାଁ ବୁଢ଼ୀଆ ପୋତା ପୋତିଓଁକେ ଲିୟେ ସବ୍ କୁଛ୍ ଖୁଲେ ହାତ୍ ମେ ଲୁଟା ଦେତୀ ହୈଁ ।
ଶଳା... ପୋତା, ପୋତିଓଁ କ'ଣ ? ବୁଝିପାରିଲି ନାହିଁ। କହିଲି– ନାହିଁ ବୁଝା ପାତା । ନାହିଁ ବୁଝା ପାତା ।
ସେ ଏମିତି ହାତ ହଲେଇଲେ ଯେ, ଏଥର ଜାଣପାରିଲି ନାତି ନାତୁଣୀଙ୍କ କଥା କହୁଚନ୍ତି ।
ବେଟା... ହମ୍, ତୁମ୍‌କୋ ରାଜା ସେ ମହାରାଜା ବନା ଦେଗା ।
କଣା ଆଖି ମୋର ବଡ଼ ହେଇଗଲା : ମାହାର୍ଜା ?
ହାଁ ବେଟା ! ମହାରାଜା । ଜେ' ସୀୟାରାମ୍... !
ଜେ' ସୀୟାରାମ୍... !
ହାଃ.... ହାଃ... ହାଃ... ।
ହାଁ... ହାଁ... ହାଁ... ।
ଆଜ୍ ନୈହିଁ ବେଟା । ଫିର୍ ହମ୍ ଆଏଙ୍ଗେ । ଆନେ ସେ ହମ୍ ତୁମ୍‌କୋ ବତା ଦେଙ୍ଗେ ।
ବାଆଜୀ ଉଠି ପଡ଼ଲେ । ମୁଁ ତାଙ୍କ ହାତୁକୁ ଧରି ପକେଇଲି, କହିଲି : ବାବା... ହାମୁକୋ ମାହାର୍ଜା ବନା ଦେ ବାବା... ହାମେ ବହୁତ ଗରିବ୍ ମାନିଷ୍ ଅଛୁଁ ହାଏ ।
ଠିକ୍ ହୈ... ଠିକ୍ ହୈ । ଦୋ' ଘଡ଼ିଓଁମେ କ୍ୟା ମହାରାଜା ବନୋଗେ ? ହମ୍ ଫିର୍ ଆଏଙ୍ଗେ । ମହାରାଜା କୈସେ ବନୋଗେ, ବତା ଦେଙ୍ଗେ । ଜେ' ସୀୟାରାମ... !
ବାଆଜୀ ଚାଲିଗଲେ । ମୋ ମୁଣ୍ଡେରେ ଗୋଟାଏ ଭୂତ ପୂରେଇ ଚାଲିଗଲେ । ମାହାର୍ଜା କେମେତେ ହେବି ? ମୁଁ କିଣା ସାହୁ ମାହାଜନ, ମୋର ସାତ ନଖ୍ୟ ଟଙ୍କାର ମାହାଜନୀ, ମୋ ବୋପା ମଲାବେଳୁକୁ ପଚାଶ ହଜାର ଟଙ୍କାର ମାହାଜନୀ ମୋ ହାତରେ ଛାଡ଼ି ଦେଇଥେଲା ଯେ, କଷ୍ଟେ ମଷ୍ଟେ ନ ଖାଇ ନ ପିଇ ଆଜି ଯାଏ ସାତ ନଖ୍ୟ ଟଙ୍କା କରିଛି । ସାତକୁ କରିବି ସତୁରୀ । ବୋପା କହିଥେଲା ପୁଅରେ..., ହାତ ଉଧାରି କାହାକୁ ଦବୁନି । କାଗଜପତ୍ର କାହାର କରିବୁନି । ଯାହାକୁ ଟଙ୍କା ଦବୁ, ଦରବ ରଖି ଦବୁ । ହଣ୍ଡା-ହାଣ୍ଡି, ହାର-ମାଳ, କଂସା-ତାଟିଆ, ବନ୍ଧକ ରଖି ଦବୁ । ସେଇଥିରେ ଯାହା ବଢ଼ିବ, ସେଇଆ ଆମୁକୁ ପ୍ରାପତ । ଜମି ଜମା ବନ୍ଧା ରଖିବୁନି । ଜମିଜମା ବନ୍ଧା ରଖିଲେ ଶତ୍ରୁ ବାହାରିବେ । ସମିତିଙ୍କ ଦୃଷ୍ଟି ପଡ଼ିବ, କହିବେ : ବଡ଼ ନୋକ ହେଇଗଲାଣି । ଚୋର ପଶିବେ । ଯାହା ଯେତିକି, ସେତିକି । ଅଳପ ଅଳପ ଯେତିକି ଟଙ୍କା ଆସିବ, ସେତିକିରେ ଖୁସି ହେବୁ । ମୁଁ ତା'ରି କଥା ମାନିଛି । ମାନିବିନି ? ମାନିଚି । ଯୋଉଠି ଟଙ୍କା ବୁଡ଼ିଚି, ବୁଡୁ, କିଛି ପରୁଆ ନାଇଁ, ତା' ଦରବ-ରକମ ଘରେ ମୋର ମହଜୁଦୁ ଅଛି । ପାଞ୍ଚ ଟଙ୍କା ବି କାହାକୁ ବିନା ରକମେରେ ଦେବିନି । ରକମ ଥୋ'... ଟଙ୍କା ନେ'... ! ଘରେ ଚାରି ନଖ୍ୟ ଟଙ୍କାର ବନ୍ଧକ ଆୟ-ଅଳଙ୍କାର, ଗରା, ହାଣ୍ଡି, ହଣ୍ଡା, ବେଲା-ତାଟିଆ । ଏବର୍ଷ ଦଶରାକୁ ଖାତାପୂଜା କଲାବେଳୁକୁ ସାତ ନଖ୍ୟ ଟଙ୍କା ବାହାରେ ସୁଧୁକୁ ନାଗିଚି । ଗାଏ ମୋଟ ଏଗାର ନକ୍ଷ ଟଙ୍କା । ସବୁ ଚଦିକା ସତୁରୀ ନଖ୍ୟ ହେଇଯା'ନ୍ତା, ସତୁରୀ କୋଟି ହେଇଯା'ନ୍ତା !
କେମେତେ ହବ ?
କେମେତେ ଆଶା ପୂରଣ ହବ ?
ଏ ଶଳା ସରକାର ଏମେତେ କଲା ଯେ, ଗାଁ ଗାଁ କେ ବେଏଙ୍କ ବସେଇ ଦେଲା । କହିଲା : ଗାଁ ମାହାଜନଠୁ ଟଙ୍କା ନିଅନି । ମାହାଜନ ଘର ସୁଧ ବେଶି, ବେଏଙ୍କ ସୁଧ କମ୍ । ହଉ ହେଲା । ନିଅନି । ଆମ ଟଙ୍କା କ'ଣ ପୋଚରା ହେଇଯାଉଚି ? ରାତି ଅଧେରେ ବେଏଙ୍କ ଟଙ୍କା

ଦବଟି ? ବେଏଙ୍କ ବାବୁ ତମୁକୁ ଚିହ୍ନିବଟି ? ମଉଳା-ମଉସା, କକା-ବଡ଼ାପା କହି ଦୁଃଖ-ସୁଖ ହବଟି ? ଟଙ୍କାଏ-ମଣାଏ ଛାଡ୍ ଛୁଡ୍ କରିବଟି... ? ନାଇଁ ନାଇଁରେ ଧନ ! ତମ ପାଇଁ ରାତି ଅଧେରେ ଦୁଆର ଖୋଲି ମୁଁ ବଇଚି । ରାତିରେ ମୋ ଛଡ଼ା ତମର ଗରଜ ମେଣ୍ଟେଇବ କିଏ ?

ଆଖି ଆଗେ ଫି' ବେଳେ ଟଙ୍କା ଝଲମଲ ହଉଚି । ମନ ଭିତେରେ ଟଙ୍କା ଝଣ ଝଣ ହଉଚି । ବିଡ଼ା ବିଡ଼ା ନୋଟ୍ । ଗାଞ୍ଜିଆ ଭରତି ଟଙ୍କା । ଟଙ୍କାର ଗରମ ବହୁତ । ପିଣ୍ଡା ଉପେରେ ଚକା ପକେଇ ବଇଥେବି । ଏଣେ ବେକେରେ ତୁଳୁସା ମାଳି ଦି' ସରିଆ ହେଇ ପଡ଼ିଥିବ । ସଖାଳୁ ସଖାଳୁ ନିରିମାଲ୍ୟ ସେବା ହେଇଥିବ । ତାଳୁରେ ଚନ୍ଦନ ଟିପା ଶୋଭାବନ୍ତିଆ ଦୁଉଥବ । ବସିକି ପାନ ଚୋବଉ ଥେବି । ପାନ ଛିପ ପକଉ ଥେବି । କିଏ ଆଇଲା, କିଏ ନ ଆଇଲା ନିଘା କରିଥେବି । ଫେଏଣି ସୁଧ-କଳନ୍ତର ହିସାବ କରୁଥେବି । ଖାତାରେ ସୁଧ ଚଢ଼ଉ ଥେବି । ବୋପା ମୋର ଖଡ଼ି ଗୋଟାଳି ଧରି ହିସାବ କରୁଥିଲା ଭୂଇଁରେ । ମନେ ପଡୁଚି । ସେ ପାଠ । ଏଇନା ସିନା ସବୁ ହଜି ଗଲାଣି । ହେଲେ ହେଜ ପଡୁଚି : ଦୁଇକେ ଦି'କଡ଼ା, ଦି'ଗଣ୍ଡା, ଦି'ବୋଡ଼ି, ଦି'ପଣ, ଦି'ପଦିକା, ଦି' କାହାଣ ।

ବୋଇଲାକି :
କଡ଼ା ଗଣ୍ଡା ବୋଡ଼ି ପଣ ପଦିକା କାହାଣ
ପାହି ଅଣା ସିଉକା ଯେ ଟଙ୍କା ଧାନ ଜାଣ
ରତି ଚିନା ମାଢ଼ କାଣି ବିଶ୍ୱା ଗୁଣ୍ଠ ହୋଇ
ମାଣ ବାଟି ପାଆ ସେର ନଉତି ବୋଲାଇ
ପଉଟି ଭରଣ ଯେ କରିସ ପଳ ବିଶା,
ଛଟାଙ୍କି ଯେ ପାଆ ସେର କୁଞ୍ଚା ତହିଁ ମିଶା ।
ମହଣ ଶତ ହଜାର ହୋଇଚି ଭିଆଣ
କହେ ବଳରାମ ଦାସ ଶୋଧିର ପର୍ମାଣ ।

ପିଲାବେଳେ ଏସବୁ ପଢ଼ି ଥେଲି । ପଢ଼ି ଥେଏଏଲି ! ପାସୋର ଯାଇନି କିଛି । କୁଣ୍ଡା ଦେଇ ପୁଅ ପାଠ ପଢ଼ି ନଥେଲି । ଚାଉଳ ଦେଇ, ପଇସା ଦେଇ, ଅବଧାନଙ୍କ ଗୋଡ଼ ଘଷି, ଗାମୁଛା ଧୋଇ ପାଠ ପଢ଼ିଥେଲି । ସେଇ ପାଠ ପଢ଼ିଚି ବୋଲି ଏଇନା ନିଜେ ନିଜେ ସବୁ ହିସାବ କରିଦେବି । ସୁଧ ମୂଳ କଷି ଚକର୍ ବୃର୍ଦ୍ଧି କରିଦେବି । ବୋପା କୋଚିଲା ଖଡ଼ି ବାଟୁଳି ଅଣ୍ଟାରେ ଖୋଷୁଥେଲା । ସେଇ ଖଡ଼ିରେ କାନ୍ଥ, ବାଡ଼, ପିଣ୍ଡା ଛିଡ଼େଇ ଦଉଥେଲା । ମୁଁ ଖଡ଼ି, ସିଲଟ୍‌ରେ ହିସାବ କରେ । ଖାତାରେ ଚଢ଼ାଏ । ସୁଧ ଟଙ୍କାକେ ପାଞ୍ଚ ପଇସା ନିଏ ।

ଦି' ତିନି ଦିନ ହେଲା ରାତିରେ ଆଉ ଶୋଉନି । ଖାଲି ତ ଟଙ୍କା ଗଣୁଚି । ସହଜେ ତ ରାତିରେ ଭଲ ନିଦ ହୁଏନା । କେତେ ଆଡୁ କେତେ ଚିନ୍ତା ମୁଣ୍ଡେରେ ପଶେ । ଖାଲି ଟଙ୍କା ଆଉ ଟଙ୍କା । ଦିନବେଳା ଯାହା ଟଙ୍କା ଗଣିଥାଏ, ରାତିରେ ଟଙ୍କାଗୁଡ଼ା ଅବିକଳ ଦୁଶେ । ହେ ଭାଇ..., ଟଙ୍କାର ପର୍କୁତେରେ ଗୋଟାଏ ଉଷୁମୁ ଅଛି । ସେ ଉଷୁମୁକୁ ସହି ନ ପାରି ଗୁଡ଼ାଏ ନୋକ କଦିଳ ପତ୍ର ନେଖା ଫରଫର ହଅନ୍ତି । ମଦୁଆ ନେଖା ବାନ୍ତି ଉଛାଳ ହଅନ୍ତି । ହେଲେ..., ମୁଁ କଂସାରୀ ଘର ପାରା । ଅଫିମିଆଙ୍କ ନେଖା ଗଉଁ ପାତି ବଇଚି । ଆଣ୍ଠୁ ଅନୁଚା କରିଆ ସାଥିକୁ, ଖଣ୍ଡିଏ ଦି'ହାତି ଗାମୁଛା କାନ୍ଧେରେ ପକେଇ ଯେତେବେଳେ ଦାଣ୍ଡେରେ ବୁଲୁଥେବି, କିଏ କହିବ ମତେ ନାଖ୍‌ପତି ବୋଲି ? ଉପୁରୁକୁ ଫକଡ଼ିଆ ଚେହେରା । ଭିତୁରୁକୁ କୁସୁମ ଗଣ୍ଠି । ଆଖପାଖ ଦଶ

ଖଣ୍ଡି ମଉଜାରେ ମୋଠୁ କିଏ ଯେ ଟଙ୍କା ନ ନେଇଚି, ଏମିତିଆ କଥା ନାଇଁ । ରାତିରେ ଟଙ୍କା ଗଣୁଚି । ପାଞ୍ଚ, ଦଶ, ଶହେ, ହଜାରେ । ସବୁ ଦିନ ଟଙ୍କା ଟଙ୍କା ମୋର ଜୀବନ । ଟଙ୍କା ମୋର ସପନ । ହୁସିଆରେ..., ଟଙ୍କାର ପର ଅଛି । ସାଇତିକି ଧରି ରଖିଥା' ଧନ । ଚଦିକା ପଞ୍ଜୁରୀ ଖୋଲି ଦବୁ, ଚଢ଼େଇ ପରିବା ଟଙ୍କା ଫୁର୍ କିନା କାହିଁ କୁଆଡ଼େ ଉଡ଼ିଯିବ ।

ଇଚ୍ଛା ହଏ... !

କ'ଣ ଇଚ୍ଛା ହଏ ?

ଇଚ୍ଛା ହଏ... ନାଃ ଇଚ୍ଛା ହଏନା..., ସପନ ହଏ... କୁଢ଼ କୁଢ଼ ଟଙ୍କା, ସୁନା, ରୂପା ମଝିରେ ମୁଁ ବଇଚି । ମାଠିଆ ମାଠିଆ ଅସରପି ! ଆହା... ଅସରପି... ! ଆହା ଅସରପି... ! ତା'ରି ଭିତରେ ମୁଁ ଧନପତି କୁବେର ! ମୁଁ ଚାଲିଲେ ଟଙ୍କା, ମୁଁ ବସିଲେ ଟଙ୍କା, ମୁଁ ଉଠିଲେ ଟଙ୍କା, ମୁଁ ଶୋଇଲେ ଟଙ୍କା । ମୋ ବାଁ, ଡାହାଣ, ଆଗପଛ ସବୁ ଆଡ଼େ ଟଙ୍କା । ମତେ ଭୋକ ଶୋଷ ନାଇଁ । ଖାଲି ଟଙ୍କା । ମୁଁ ଟଙ୍କା ଗଣି ଗଣି ହାଲିଆ ହେଇଯାଉଛି, ଆଉ ସିନ୍ଦୁକେରେ ଭରି ଦଉଚି ।

ଛୋଟିଆ ରାଇଜ ଅଣ୍ଟୁନି ବୋଲି ରଜା, ମାହାର୍ଜାମାନେ ଯୁଦ୍ଧ କରି ଅନ୍ୟ ରାଇଜକୁ କେତେ ମଣିଷ ମାରି ନିଜ ରାଇଜରେ ଜୟ କରି ମିଶାନ୍ତି । କେତେ ରଜା ଫେଏଣି ଏ ସାରା ଧରାମଣ୍ଡଳ ଜୟ କରିବାକୁ ବାହାରିଚନ୍ତି ।

କିଆଁ... ? କିଆଁ ଏମେତେ କରନ୍ତି ?

ନାଇଁରେ ବାବା..., ଇଏ ଗୋଟାଏ ନିଶା ।

କ'ଣ ବା ଅଭଲ କଥା ? ବଡ଼ ରଜା ହେବେ । ବଡ଼ ସଇନ, ସାମନ୍ତ, କଟୁଆଳ ରହିବେ । ବହୁତ ଧନ, ରତ୍ନ ବୋହି ଆଣିବେ । ଭଲ କଥା ।

ସେମାନେ ଚଦିକା ବଡ଼ ହେବା ପାଇଁ, ଏତେ ପାଇକ, ଏତେ ହାତୀ, ଘୋଡ଼ା ମାଇଲେ, ମୁଁ ବଡ଼ ମାହାଜନ ହେବା ପାଇଁ ଦିନରାତି ଚଦିକା ସପନ ଦେଖିଲି, ଭୁଲ୍ ହେଇଗଲା କ'ଣ ?

ଏ ଶଳା ପୁଅ, ଏ ବୁଢ଼ୀ ହାରାମ୍‌ଜାଦୀ, ତାଙ୍କର କିଆଁ ଏସବୁ ଚିନ୍ତା ? ସିଏ ଖାଲି, ନ' ତୁ'ଣ– ଛ' ଭଜା, ଭଲ ପେଏଣ୍ଟ୍, କମିଜ, ନୁଗା କପ୍ତାକୁ ହମ ହମ । ତେହିଁକି ଫେଏଣି କୁଣିଆ, ମଇତ୍ର, ବନ୍ଧୁ-ବାନ୍ଧବ । ଏମାନଙ୍କ ଯୋଗୁଁ କ'ଣ କିଛି କରି ହବ ? ମୁଁ ଚଦିକା ଆଗୁକୁ ଯିବି, ଏମାନେ ମୋ ଗୋଡ଼ ଧରି ପଛୁକୁ ଘୋଷାଡୁଚନ୍ତି । ଶଳା... ସମେତେ ମୋର ଦୁଶ୍ମନ୍ ।

ପଅରିଦିନ ରାତିରେ ଡିବି ଜାଳି ଟଙ୍କା ଗଣୁଥେଲି । ଅଧରାତି । କବାଟ କିଳି ଦେଇଚି । ଖିଡ଼ିକି, ଜଳା କବାଟି ସବୁ ବନ୍ଦ । ଡିବି ଧୂଆଁରେ ଘରଟା କିରାସିନୀ ଧୂଆଁରେ ଭରି ଯାଇଚି ବୋଲି ମୁଁ ଜାଣିନି । କିରାସିନୀ କଥା ଭାବୁଚି କିଏ ? ଏଣେ ଟଙ୍କା ତ ଗଣା ଚାଲିଚି ।

ମୁଁ ଓଲମା ଖିଡ଼ିକି କିଳିଣିଟା ଭଲକି ଦେଇନି । ତା' ମା'କୁ..., ମୋ ସି.ଆଇ.ଡି. ଝରକା ଖୋଲିଦେଲା, କହିଲା– ବୋପାଲୋ... କିରାସିନୀ !

କିଏ ବେ ! ବାହାଞ୍ଛୁ... ! ଚମକି ପଇଲି ।

ଏଁ ? ଏମେତେ ଭୂତ ଦେଖିଲା ନେଖା ଉଠି ପଡୁଚ କିଆଁ ମ ?

ଚୁପ୍‌ବେ.. ! ଡିଘି ଗଲି । ରାତି ଅଧେରେ ଏଠି ଆସି କ'ଣ କରୁଚୁ ?

ତମ ଟଙ୍କା ଗଣାକୁ ଦେଖୁଚି । ହଇହୋ... ବେଳ ଯାକ ଅଣ୍ଟିଲା ନାଇଁ ଯେ, ଅଧ ରାତିରେ କବାଟ କିଳି, ଖିଡ଼ିକି କିଳି ଟଙ୍କା ଗଣୁଚ ? କିରାସିନୀ ଧୂଆଁରେ କେମେତେ ତେମେ ଘରୁଟା

ଭିତେରେ ପଇଚ ? କ'ଣ ତ ! ଏ ପାଖେ ଟଙ୍କା, ସେ ପାଖେ ଟଙ୍କା, ବିଡ଼ା ବିଡ଼ା ଟଙ୍କା ? ଏଣେ କହୁଚ, ମୋ ପାଖେ ଟଙ୍କା ନାହିଁ- ନାହିଁ !

ମାରିବି ଏ ବାଡ଼ିରେ ଗୋଟାଏ ଫୋପଡ଼ ଯେ, ଖାନିକୀର ଦି'ଟା ଦାନ୍ତ ଝଡ଼େଇ ଦିଅନ୍ତି । କିଛି କହିଲି ନାଇଁ । କହିଲି : ଏତେ ରାତିରେ କ'ଣ ଦେଖୁଚୁ, ଯା' ଶୋଇବୁ ।

ଏତେ ଟଙ୍କା ? ଏତେ ଟଙ୍କା ରଖିଚ ବୋଲି, କାହିଁ କେବେ ତ କହିନ ?

ଟଙ୍କାଗୁଡ଼ା ଟାଉ ଟାଉ ହେଇ ସିନ୍ଦୁକେରେ ପୂରେଇ ଦେଲି । ସଇଲା... ମୋ କଥା ସଇଲା... ! କାଲି ନଇ ତୁଠେରେ, କୂଅ ମୂଳେ ଏ ବୁଢ଼ୀ ଟୁପୁଟୁପୁ ହେଇ କେତେ କାନ କରିବ ! ପୁଅକୁ କହିବ । ଝୁଅକୁ କହିବ । ତା' ପଛୁକୁ ଚାଲିବ ଛଡ଼ଯନ୍ତ୍ର । ଝୁଅ-ଜୁଆଁଇ ଆସି କହିବେ କେତେ ଭିଆଣ । ଓଃ... ! ଏଇଟା କୁଆଡ଼େ ଆସି ପହଞ୍ଚିଲା ?

ଆଉ କୋଉ ବେଳ ହେଇଥିଲେ ତାନୁଟାଏ ହେଇ ଯାଇଥା'ନ୍ତି । ଏଇନା ତାନ, ମାନର ବେଳ ନୁହଁ । ମୋ ଜୀବନ ନାଟିକା ଦେଖି ସାଇଲାଣି ବୁଢ଼ୀ । ଏଇନା ଚଦିକା ପାଟିଟାଏ କରିଦେବି, ସିଏ ବା କୋଉ ଛାଡ଼ିବା ଜନ୍ତୁ ! ଦାନ୍ତୁକୁ ଦାନ୍ତ ନଗେଇ ମୋ ଆଡୁକୁ ମାଡ଼ି ଆସିବ । ବଘାରି ଦବ ମତେ । ପୁଅଟା ଉଠି ପଡ଼ିବ । ପଡ଼ିଶା ସବୁ ଉଠି ପଡ଼ିବେ । କଥାଟା ଅଁରେଷ୍ଟ ହେଇଯିବ । ସମେତେ ମୋ ଟଙ୍କା କଥା ଜାଣି ପକେଇବେ ।

ଝିଡ଼ିକି କିଳିଣି ନ ଦେଇ ଯାହା ତ ଭୁଲ୍ କରିଚି, କରିଚି, ଫେଏଣି ଆଉ ଭୁଲ୍ କରିବିନି । ସମ୍ଭାଳି ଯାଇ କହିଲି : ତୁ ଗଲୁ ଯା' । ଶୋଇବୁ ଯା'... ।

ବୁଢ଼ୀ କେମେତିଆ ଗୋଟାଏ ମୁହଁ କରି ପଳେଇଲା ଶୋଇବାକୁ । ନାଃ... ଆଉ ଶଳା..., ଟଙ୍କା ଗଣି ହବନି । ଟଙ୍କା ଗଣିଲା ବେଲୁକୁ ମୋ ଦୁଶ୍ମନ ଆସି ହାଜର । ଆଉ ଟଙ୍କା ଗଣି ହବନି । ଚୁପ୍ ଚାପେ ଖଟୁଟା ଉପରେ ଶୋଇ ପଇଲି ।

ଛାତିଟା ଦାଉଁ ଦାଉଁ ହଉଚି । କିଆଁ ଛାତିଟା ଦାଉଁ ଦାଉଁ ହଉଚି ? ଦାଉଁ ଦାଉଁ ତ ହଉଚି, ମୁଁ କ'ଣ କରିବି ? କିଆଁ ଗୋଟାଏ ଅତର୍ଛାନିଆ ନାଗୁଚି । ଦିହରେ ଝାଳ ବାହାରିଯାଉଚି । ଶଳା, ଏ ବୁଢ଼ୀ ଆଉ ତା' ପୁଅ ଯଦି ଟାଙ୍ଗିଆ ଆଣି ମୋ ବେକେରେ ଦିଅନ୍ତି ପାହାରେ ? ନାଃ..., ମୁଁ ତାଙ୍କ ଗେରସ୍ତ, ବୋପା । ଏ କର୍ମ ସେମାନେ କରିବେନି । ଚଦିକା କରିବେ ? କରିବାକୁ କିଏ ମନା କରିବ ? ବୋଇଲା କି : ଟଙ୍କା, ମୁହଁ କରିଦିଏ ବଙ୍କା । ଫେଏଣି ପାଞ୍ଚ ମନ, ପଚିଶ ପର୍କୁତି । କୋଉ ବୋପା କାହାର ? କୋଉ ପୁଅ କାହାର ? କୋଉ ଗେରସ୍ତ କାହାର ? ଟଙ୍କା ଆଗେରେ କେତେ ବୋପା, ପୁଅ ଗାଧେଇ ଗଲେଣି । ଏଗୁଡ଼ା ବି କୋଉ ମେତେ ଦେଖିପାରନ୍ତି ? ତାଙ୍କର ତ ଟଙ୍କାରେ ପିଆରା । ମୋଠି କି ପିଆରା ? ନଇଲେ ସଦାବେଳେ ମୋ ସାଥିରେ ଠିକି ଠିକି । ଝିକି ଝିକି ।

ହେଇଟି..., ମେତେ କାହିଁକି ବେଲୁକୁ ବେଳ କେମେତେ ଗୋଟାଏ ବିକୁର୍ତିଆ ନାଗୁଚି । ମେତେ କେମେତେ ଗୋଟାଏ କାଳ ତୁଣ୍ଡିଆ କଥା ଜଣା ପଡୁଚି । ବୁଢ଼ୀ ମୋ ବେକୁକୁ ଦେଇଚି ଗୋଟାଏ ଚୋଟ । ମୋ ମୁଣ୍ଡ ଗଣ୍ଡି ଅଲଗା ହେଇପଡ଼ିଚି । ନହୁରେ ମା' ପୁଅ ବିବାକେ ଗାଧେଇ ପଡ଼ିଚନ୍ତି । ମା' ପୁଅ ସିନ୍ଦୁକ କୋଲପୁକୁ ଭାଂଗି ଟଙ୍କା, ପଇସା ନେଇ ପଳେଇ ଯାଉଛନ୍ତି ।

ହେ ଭାଇ..., କ'ଣଟାଏ କିରେ ? କ'ଣ ଧାଡୁକିନା ଶୁଘିଲା ? କବାଟୁଟାକୁ କିଏ ବାଡ଼େଇଲା କିରେ ? ଦିହ ମୋର ଚାଉଁକିନା ହେଇଗଲା । ଘିଡ଼ି ଘାଡ଼େ ହେଇ ଉଠିପଇଲି । କ'ଣ ମା' ପୁଅ କବାଟ ବାଡ଼ଉଚନ୍ତି ?

କାନ ପାତିଲି । ମା' ପୁଅ ?

ମୋ ଦିହରୁ ଗମ ଝାଳ ବାହାରି ଯାଉଚି ।

କାହିଁ, କିଏ କୋଉ ଆଡ଼େ ? ନିଶିବଦ ରାତି । ଝିଁ ଝିଁ ଯାହା ହଉଚି । ଘଡ଼ିଏ ଗଲାରୁ ମୁଁ ଥିର ପଡ଼ିଗଲି । ଝାଳ ପୋଛି ହେଲି । ଶୋଇବି ? ନାଃ... । ଆଉ କିଏ ଦେଲା ନିଦ ? ଶୋଉଚି । ବଉଚି । ଉଠପଡ଼ ହଉଚି । ଆଖି କଷା ପଡୁନି । କେତେ ଆଡୁ କେତେ ଚିନ୍ତା । ଯୋଉ କଥା ଅଛି, ଯାହାର ବେଶି ଟଙ୍କା ଥାଏ, ତା'ର ରାତିରେ ନିଦ ନଥାଏ । ଏଇଟା ବିବାକେ ସତ । ନହେଲେ ଦେଖୁନ, ରାତି ପାହି ସଖାଳ ହେଲାଣି ଆସି, ମୁଁ ଘରୁଟା ଭିତେରେ ଛଟପଟ ହଉଚି !

ଟଙ୍କା ଗଣିଥେଲି ବତିଶ ହଜାରେ ସାତ ଶହ । ପଚାଶ ହଜାରେକୁ କେତେ ବାକୀ ? ସତର ହଜାରେ ତିନିଶହ । ସତର ହଜାରେ କୋଉଠୁ ଆଣିବି ? କୋଉଠୁ ଆଣିବି ? ହାଡୁ ବାବୁ କାନ୍‌ତରାଟି ମୋ ପାଖୁରୁ ଏକାଥରେକେ ସୁନା ବନ୍ଧା ଥୋଇ ତିରିଶି ହଜାର ନେଇଥେଲା । ଗଲି, କାଲେ କିଛି ମିଳିଯିବ । ସିଏ ଶଳା ମୋ କଥା କିଆଁ କାନୁକୁ ନବ ? କହିଲା : ନାଇଁ ହବନି । ବିଇଲି ମିଳିନି । ଦୋକାନ କରିବାକୁ ରାହାସିଆ ପନ୍ଦର ହଜାର ନେଇଥେଲା । କାକୁତି ମିନତି ହେଲି, କହିଲି : ହେ ପୁଅ ରାହାସ, ମୋର ଟଙ୍କା ଦେ' । ସିଏ ବି ଶଳା ମନା କଲା । ତିନି ଚାରି ଜେଗା ବୁଲି ଫେରି ଆଇଲି । ନାଇଁ..., ଏଇନେ କାହାଠୁ ଟଙ୍କା ମିଳିବନି । ଗୋଟାଏ ବଡ଼ ବଣାରେ ଗୋଟିକିଆ ରୂପା ଟଙ୍କା, ସିଏ କେତେ ହବ କେଜାଣି, ମୋ ଶୋଇବା ଘର ମାଟି ତଳେ କେବେଠୁ ପୋତିଛି, କେହି ଜାଣି ନାହାନ୍ତି । ମାଟି ତଳ ? ମାଟି ନୁହଁ କ'ଣ ଆଉ ସିମିଟି ? କୋଠା ? ହେଇଟି ବାପ..., ସେ କୋଠା- କୋଠା ହ'ନା' । କୋଠା ମୋ ଦିହେକେ ହବନି । ମୁଁ ଟଙ୍କା ଗୋଡ଼ି ମାଟି, ସିମିଟିରେ ପକେଇ ବିନିର୍ବ୍ୟ କରି ପାରିବିନି କି ମୋ ଦିହେରେ ଏସବୁ ଯିବନି । ମୋର ଯୋଉ ଚାଲକୁ, ସେଇ ଚାଲ । ଯୋଉ ମାଟିକୁ ସେଇ ମାଟି । ମୁଁ ହାଡ଼େ ହାଡ଼େ ଟଙ୍କା କମେଇଚି ଖରାରେ ତରାରେ ବୁଲିକି । ବିଲ-ବାଡ଼ି ବୁଲିକି । ଏ ଘର ସେ ଘର ବୁଲିକି । ମାଟି ଘରେ ରହିକି ମୁଁ ନାଖପତି ମାହାଜନ । କୋଠାଘରେ ରହିକି ଫକଡ଼୍‌ରାମ୍ ଗିରିଧାରୀ ହେଇପାରିବିନି । ଶଳା..., ସେଇ ଟଙ୍କା ମାଟିତଲୁ ଖୋଳିକି ବାହାର କରିବି ? ନାଇଁ, ବାହାର କରି ହବନି । ଯୋଉ ଦିନ ମା' ପୁଅ, ଝିଅ ଘରୁକୁ ଯାଇଥେଲେ, ସେଇଦିନ ମାଟି ଖୋଳି ଟଙ୍କାତକ ପୋତି ଦେଇଥେଲି । ଏଇନା ଆଉ ବାହାର କରିହବନି । ଏ ଦି'ଟା କୁଆଡ଼େ ଯିବେ ଯେ, ମୁଁ ନୁଚିକି ମାଟିରୁ ଟଙ୍କା ବାହାର କରିବି ? ଆଉ ହବନି । କ'ଣ କରିବି ? ପଚାଶ ହଜାରେ କୋଉଠୁ ଭିଆଇବି ?

କାନିରେ ଦଶ ବାର ଭରି ସୁନା ବାନ୍ଧିଲି । କୋଉ ମୋ ସୁନା ହେଇଚି ? ପର ସୁନା । ଯୋଉ ସୁନା ମୋ ପାଖେରେ ବନ୍ଧା ପଡ଼ିଚି, ସେଇ ସୁନା । ସେଇ ସୁନାକୁ ଧରି ଛଉଆ ମାରୁଆଡ଼ି ଘରେ ମୁଁ ଠିଆ । ଛଉଆ ମୋ କଥା ଶୁଣି ହସିଲା, କହିଲା : ବୁଆ ବୁଆରେ..., ଆଜି ଖୋଦ୍ ଧନୀ ସଉଦାଗର ମୋ ଦୁଆରେ ହାଜର । ହେଇଟି କଣା..., ତୋ ଦୁଆରେ ଥରେ ମୁଁ ଠିଆ ହେଇଥେଲି ଟଙ୍କା ପେଇଁ । ମନେଅଛି ? ତୁ ମତେ ମନା କରିଦେଲୁ ।

କଣା ମତେ କହିଲାରୁ ମୋ ମୁଣ୍ଡ ଚକରି ଖାଇଗଲା । ଶଳା... ମୋ ମୁହେଁ ମୁହେଁ ମତେ କଣା କହୁଚି ?

ତୁ ମତେ ମନା କରି ଦେଇଥେଲୁ ଟଙ୍କା ନାଇଁ ବୋଲି । ହେଲେ..., ମୁଁ ହେଲି ମାରୁଆଡ଼ି ପିଲା । ଟଙ୍କା ନଗେଇବା ମୋ କାମ । ନେ' ଯେତେ ଟଙ୍କା ତୋର ଦରକାର ନେ' । ହେଇଟି ଭାଇ..., ମୋ ଟଙ୍କାରେ ସୁଧ ଶହେକୁ ଦଶ । ତୁ ବଡ଼ ଲୋକ ! ଦଶ ଟଙ୍କା ସୁଧ ଦେଲେ ତତେ କିଛି ବାଧିବନି ।

ବାର ଭରି ସୁନା ବନ୍ଧା ଦେଇ କୋଡ଼ିଏ ହଜାର ଟଙ୍କା ଆଣିଲି । ଏଥରକ ପଚାଶ ହଜାର ହୋଇଗଲା । ଷାଠିଏ ହଜାର ଟଙ୍କା ମୋର ଦରକାର । କିନ୍ତୁ ପଚାଶ ହଜାରେ ଟଙ୍କାରେ କାମ ଚଳେଇ ଦେବି । କହିବି ଆଉ ଟଙ୍କା ଯୋଗାଡ଼ କରି ପାରିଲିନି । ସେଇ ପଚାଶ ହଜାର ଟଙ୍କାରେ ମୋ ଦରବ ମତେ ଦେଇଦେ' ।

ସୁନା... ! ସୁନା.... !

ସବୁ ସୁନାର ମାଲିକ ମୁଁ । ସୁନା ଖଣିର ମାଲିକ ମୁଁ । ଏ ପୃଥିବୀଟା ମୋ ପାଇଁ ସୁବର୍ଣ୍ଣମୟ । ମୋ ଜୀବନ ଧନ୍ୟ ହେଇଯିବ । ମୋ ବଂଶଟା ଧନ୍ୟ ହେଇଯିବ । କାହାକୁ ସିନା ସୁନା ଅପ୍ରାପତ, ହେଲେ ମୋ ପାଇଁ ସୁନା ଗୋଡ଼ି ମାଟି । ଏ ଖଣ୍ଡ ମଣ୍ଡଳରେ ଆଉ ମୋଠୁ କେହି ବଡ଼ ହେଇ ନାହାନ୍ତି । ମୁଁ ଅମୀର । ମୁଁ ସେଠ । ମୁଁ କଣା କିଣା ସାହୁ ନୁହଁ । ମୁଁ କିଣାରାମ । କୁବେର । ଧନପତି କୁବେର ।

ମାହାରାଣୀ ଭିକିଟୋରିଆ ଟଙ୍କା ହଜାରେ ଟଙ୍କା ପାଇଗଲା । କେମନ୍ତ ! କେଡ଼େ ଭାଗ୍ୟ ବନ୍ତିଆ କଥାଟା କିରେ ! ଶଳା..., ମୁଁ ଏଡ଼େ ବଡ଼ ମାହାଜନ ହେଇକି ଜମାରୁ ଦି'ଶହ ରଖିଚି, ହଜାରେ ଟଙ୍କା ରଖିନି । ବାଆଜୀ ପାଖେରେ ହଜାରେ ଟଙ୍କା ? ବୋପାଲୋ... ! ଗୋଟାଏ ଟଙ୍କା ତଳେ ପକେଇଲେ ଢାଏଁ ଢାଏଁ ଘଣ୍ଟା ବାଡ଼େଇଲା ନେଖା ଶୁଭିବ । ଆଉ ତା' ଆଗେରେ ଆଜିକା ଟଙ୍କା ? ଟିଣ ଖପରା । ପକେଇ ଦେଲେ ତଳେ, ସତିକା ଜୀବ ନାଇଁ । ପତରୁଟାଏ ପଡୁଚି । ରୂପା ଭରି ସତାନବେ ଟଙ୍କା । ଛାଡ଼ ହେ, ନବେ ହଉ । ହଜାରେ ଗୁଣା ନବେ କେତେ ହେଲା ? ଶଳା..., ମୁଁ ମରିଯିବି ! ସବୁ ଟଙ୍କାର ମାଲିକ ହେବି ମୁଁ । ହଜାରେ ଟଙ୍କା ହାତେରେ ବଜେଇ ଗଣିନେବି । ହୋଃ... ହୋଃ... ପୋତି ଦେବି... ହୋଃ... ହୋଃ... ! ମୁଁ ଯକ୍ଷ ହେଇଯିବି । ମୁଁ ବାଇଆ ହେଇଯିବି । ମାହାରାଣୀ ଭିକିଟୋରିଆ। ଭିକିଟୋରିଆ । ମୋ ଧନ କିଲୋ... ! ରାଣୀ... ରାଣୀ... ହେ ରାଣୀ... !

ବାଆଜୀ ଆଇଥେଲେ । କାନେରେ, ବଡ଼ ପାଟିରେ ନୁହଁ, ଚୁଉପ୍ କି ତାଙ୍କ ଭାଷାରେ କହିଲେ : ପୁଅ କାହାକୁ କହିବୁନି । ତିର୍‌ବାରେ ସତ୍ୟ କର । ତୁ ଭଲ ନୋକ ବୋଲି କହିଲି । ଏଇଟା ଦେଖ୍... । କ'ଣ ଦେଖିଲୁ ? ମାହାରାଣୀ ଟଙ୍କା । ପାଞ୍ଚୁଟା ଚକ ଚକ ଟଙ୍କା ମୋ ଆଗେ ଦେଖେଇ ଦେଲେ । ମୋ' କଣା ଆଖି ଚାଇଁକିନା ଜଳିଗଲା । ବାଆଜୀ କହିଲେ : ଏ ଟଙ୍କା ମୋର କ'ଣ ହବ ? କାହାକୁ ଦେବି ? ନେ' ତୁ ନେ'... । ମତେ ପାଞ୍ଚଟା ଟଙ୍କା ଦେ... ।

ଏ ବାଆଜୀଟା କ'ଣ କହୁଚି ? କାନ ମୋର ନାଲି ପଡ଼ିଗଲା । ହେଇରେ..., ମାହାରାଣୀ ଟଙ୍କା ବଦଳେରେ ଆଜିକା ଖପରା ଟଙ୍କା ? ହେଇରେ..., ଏ ବାଆଜୀଟା କ'ଣ ଧିଆନ, ଧରମ କରି ସାରୁ ସୁନା ଏକା କରିଦେଲା ? କହିଲା, ମାହାରାଣୀ ଗୋଟାଏ ଟଙ୍କାକୁ ଆଜିକା ଟଙ୍କା ଗୋଟାଏ ! ଗୋଟାଏ ଟଙ୍କା ନବେ ଟଙ୍କା ହେଲେ, ପାଞ୍ଚୁଟାକୁ ଚାରିଶହ ପଚାଶ ଟଙ୍କା । ଇଏ କହୁଚି ପାଞ୍ଚ ଟଙ୍କା ମତେ ଦବୁ ?

ହୋ ବାଆଜୀ... ତେମେ ଆପଣେ ଧାର୍ମିକ ନୋକ ହୋ... ! କେତେ ସରଳ, ନିକପଟ । ବାଆଜୀଙ୍କ ମୁହଁକୁ ଚାହିଁଲି । ଛଇ ଛାଉଡିଆ ଟୋକା ବାଆଜୀ । ମୁହଁଯାକ ଦାଢ଼ି ସାଲୁବାଲୁ । ମୁଣ୍ଡେରେ ମେଞ୍ଚାଏ ଚୁଟି । ଦିହଯାକ ବିଭୂତି । ବେକେରେ ଘାଗେଡ଼ା ତୁଳସୀ ମାଳି । ଖାଲି ମୁରୁକେଇ ହସୁଚନ୍ତି । ବଡ଼ ଶ୍ୟାନ୍ତି ! ମୁହଁକୁ ସତିକା ଆଲୁଅ ଦାଉ ଦାଉ ଜଳୁଚି । ମେତେ ପରୀକ୍ଷା କରିବାକୁ କ'ଣ ଆଇଚନ୍ତି ? ଅବତାର ପୁରୁଷ ହେଇ ମେତେ ବିଡୁଚନ୍ତି ?

କ'ଣ ସତ କହିଦେବି ? ହେ ବାଆଜୀ ମାହାପ୍ରୁ... ତେମେ ଆପଣେ ସାଧୁ ସନ୍ୟାସୀ ନୋକ । ଏ ଟଙ୍କାର ଗୁମର ତେମେ ଜାଣିନ । ଏ ଟଙ୍କା ନୁହଁ । ଇଏ ଖୋଦ୍ ନଖ୍ମୀ ଠାକୁରାଣୀ । ଟଙ୍କା ଗୋଟାକ ନବେ ଟଙ୍କା । ତମର ପାଞ୍ଚ ଟଙ୍କା ପ୍ରାପତ ନୁହଁ । ତମର ଚାରିଶହ ପଚାଶ ଟଙ୍କା ପ୍ରାପତ । ତମେ ମୋଠୁ ଉଚିତ ଟଙ୍କା ନିଅ ।

କିଣା ରାମ୍..., ହେଇବେ, ଧରମୁକୁ ଆଖି ମାଟିକା କରିବା ନୋକ ତୁ ! ଆଜି ବାଆଜୀକୁ ଦେଖି ଡରି ଯାଉଚୁ ? ବାଆଜୀ ମୁହଁରୁ ଶ୍ୟାନ୍ତି ଝରି ପଡୁଚି ? ଆଲୁଅ ଝରି ପଡୁଚି ? କୋଉ ଶ୍ୟାନ୍ତି ବେ ? କୋଉ ଆଲୁଅ ବେ ? ଏଇଟା ତୋର ମନର ଗୋଟାଏ କାଉଲିଆ ପଣ । ମନ ତୋର ବାଆଜୀକୁ ଦେଖି ଛୋଟ ହେଇଯାଉଚି । ତୁ ଡରି ଯାଉଚୁ । ହେଇବେ..., ସତ କହିଦେଲେ ନବେ ହଜାରେ ଟଙ୍କା ତୁ ହାରିଦବୁ ! ହଜାରେ ଟଙ୍କାରେ ନବେ ହଜାରେ । ବୁଝି ଖବରଦାର୍ । ଇଏ ମାହାଜନୀ ବେପାର କଥା । ଧରମ କଲେ କିଏ କେବେ ଧନୀ ହୋଇଯାଏନା । ରଜା, ମାହାର୍ଜା, ବଡ଼ ହେବା ପାଇଁ କେତେ ନୋକ ମାରିଚନ୍ତି ତୁ ପରା ନିଜେ ଜାଣିଚୁ । ଏଇନା କିଆଁ ନିଜେ ଥକି ପଡୁଚୁ ? ବାଆଜୀକୁ ଏଥର ଠକେଇ ଦେ'... । ଠକେଇ ଦେ'... !

ହାତ ବାକ୍ସରୁ ପାଞ୍ଚଟା ଟଙ୍କା ବାହାର କରି ବାଆଜୀ ହାତକୁ ବଢ଼େଇ ଦେଲି । ପାଞ୍ଚୁଟା ଚକ ଚକ ରୂପା ଟଙ୍କା ଆଗେରେ ମଇଳା ନୋଟ୍ କାଗଜ ଖଣ୍ଡେ । କ'ଣ ନା ପାଞ୍ଚ ଟଙ୍କା ! ବୁଆ... ବୁଆରେ ସରକାର ପୁଅ... ! ବୁଆ...ବୁଆ... ତୋ ବୁଦ୍ଧି !

ଏ ଶଳା..., ଏ ବାଆଜୀ କ'ଣ ଟଙ୍କା ଧରୁ ଧରୁ ଛୁ' । ହାଁ... ହାଁ..., କୁଆଡ଼େ ଯାଉଚ, ରହ ... ରହ... ! ହେ ଭଗବାନେ..., ଏଇଟା କ'ଣ ପବନ ହେଇ ପଳେଇଲା ? ଆରେ..., କୋଉଠି ରହିଚି, କ'ଣ କରୁଚି, କିଛି ପଚାରି ପାରିଲିନି । ପଳେଇଲା ? ଓଃ... କେଡ଼େ କଥାଟାଏ ମୁଁ ନ କଲି ! ହଜାରେ ମାହାରାଣୀଙ୍କ ଟଙ୍କା ରଖିଚି । ପାଇବି କେମେତେ ? ତା' ମନ ଖୁସି କରିବା ପାଇଁ, ଭଗତି ଭାବ ଦେଖେଇବା ପାଇଁ ମୁଁ ତାକୁ ହେଲେ ଜଳଖିଆ ଯାଚିଥା'ନ୍ତି ! ସରବତ ଗିଲାସେ ଦେଇଥା'ନ୍ତି ! କିଛି କରିପାରିଲିନି ! ବାଆଜୀଟା ସତେରେ କେତେ ଭଲ ନୋକ ! ଗଲାବେଳେ ଯୋଉ ସୀୟାରାମ ଡାକ ଡାକିଚି, ମୋ କାନେରେ ଖାଲି ଚହଟି ଯାଉଚି । ସୀୟାରାମେ... ସୀୟାରାମେ... ! ହେଇବେ ଶଳା..., କୋଉ ସୀୟାରାମେ ? କାହିଁ କୁଆଡ଼େ ସୀୟାରାମେ ?

ସୀୟାରାମେ ବଦଳରେ ମୁଁ କାଣାରାମେ ପାଞ୍ଚଟା ଟଙ୍କା ଧରି କୁକୁଡ଼ା ଉଷୁମୁରେ ବଇଚି ! ମୋ ହାତ ଗରମ ! ମୋ ପେଟ ଗରମ । ମୋ ଛାତି ଗରମ । ମୋ ପେଟ ତଳେ ପାଞ୍ଚ ଟଙ୍କା । ମୋ ପେଟ ତଳେ ହଜାରେ ଟଙ୍କା । ହଜାରେ ଟଙ୍କାକୁ ଦକ୍ଷମୋଇ ମୁଁ ନବେ ହଜାରେ କରିଦେବି । ନବେ ହଜାରେରେ ପର ନାଗିବ । ସେମାନେ ଦୂତ ଧୂ ହେଇ ଉଡ଼ିଲା ବେଳକୁ ମୁଁ ତାଙ୍କୁ ଖାଳେଇରେ ପୂରେଇ ଦେଇ ମାଡ଼ି ବସିବି !

ବାଆଜୀ ଆଉ ଆଇଲାନି ।

ମୋର ବି ଭୋକ ଶୋଷ ଉଭେଇଗଲା । ଆଖିରେ ଆଉ ନିଦ ନାହିଁ । ମୁଁ ଖାଲି ଛଟପଟ ହଉଚି । ସତ କହୁଚି, ବାଆଜୀ ପେର୍ମେରେ ମୁଁ ପଡ଼ିଯାଇଚି । ଉଠୁଣୁ ବାଆଜୀ, ବସୁଣୁ ବାଆଜୀ । ହେ ବାଆଜୀ... ! କାହିଁ ତୁ ବାଆଜୀ... ? କୁଆଡ଼େ ମତେ ଭଣ୍ଡେଇ ଦେଇ ତୁ ଚାଲିଗଲୁ ରେ... ! ଆଉ ତ ଆଇଲୁନିରେ ? ତୋ ପାଞ୍ଚ ଟଙ୍କା ବାକ୍ସରେ ପଡ଼ିଚି । ମୁଁ ତାକୁ ସଦାବେଳେ ଦେଖୁଚି । ମାହାରାଣୀର କେତେ ସୁନ୍ଦର ମୁଖ କିରେ ? କେତେ ଦୀପିତି । କେଡ଼େ ଖଣ୍ଡାଧାର ନାକ ତାଙ୍କର । କେଡ଼େ ପୁଚୁକା ଗାଲ । ତେହିଁକି ମୁଣ୍ଡ ଉପେରେ ରାଜମୁକୁଟ ? ମାହାରାଣୀ ନୁହଁ, ସତିକା ଖୋଦ୍ ନଖ୍ମୀ ଠାକୁରାଣୀ । ନହେଲେ ମୁଣ୍ଡେରେ ମୁକୁଟ ଭିଡ଼ିଥା'ନ୍ତେ ? ନିଜ ନାଁରେ ଟଙ୍କା ଚଳେଇଥା'ନ୍ତେ ? ଟଙ୍କାକୁ ମୁଣ୍ଡିଆ ମାଇଲି । ହଜାରେ ଟଙ୍କା କ'ଣ ମତେ ପ୍ରାପତ ହବନି ପ୍ରଭୁ... ! ସତେ ତେମେ କ'ଣ ମୋ ସାଥିରେ ହଟ ନଗେଇଲ ?

ହାତର ପାଇବା ଦରବ, ମୁଁ ହାତରୁ ଛାଡ଼ିଦେଲି । କି ଅଭାଗ୍ୟ କଥା ! ଅଜାଗା ଘା' କାହାକୁ ଦେଖେଇ ହଏନା । ଇଏ ଫେଏଣି ଏମେତେ କଥା ଯେ, କାହାକୁ କହି ହବନି । ବୁଢ଼ୀକୁ ହେଲେ କହନ୍ତି ! ହେଲେ ପାଠ କହିଚି; ରଜା ଆଗେରେ ପଛେ ସତ କହିବ, ମାଇପ ଆଗେରେ ମିଛ କହିବ । ବୁଢ଼ୀ ତ ବୁଢ଼ୀ..., ଶାଲୀ ମୋର ପହିଲା ନମ୍ବର ଦୁଶ୍ମନ । ଏଇ ବାଙ୍କା ହିନ୍ଦସ୍ତାନୀ ଭାଷା ମତେ କଲା ଅଡୁଆ । ମୁଁ କହିଲି ପର୍କାରେ । ବାଆଜୀ ସମଝିଲା ପର୍କାରେ । ବାଆଜୀ କହିଲା ପର୍କାରେ, ମୁଁ ସମଝିଲି ପର୍କାରେ । ସିଏ ଯାହା ମେତେ କହୁଥେଲା, ହେଲେ ମୁଁ ତାକୁ କିଛି କହି ପାରିଲିନି । କିଛି ପଚାରି ପାରିଲିନି । ହିନ୍ଦସ୍ତାନୀ ମତେ କଲା ବଡ଼ ହଟହଟା । ନହେଲେ ମୁଁ ଉଡ଼ିଲା ଚଢ଼େଇର ପର ଗଣିଦେଲା ନୋକ । ମୁଁ କ'ଣ ତାକୁ ପଚାରି ପାରି ନଥାନ୍ତି, ତେମେ କେବଣ ମଠରେ ରହ ହେ ଗୋସେଇଁ ? ହଜାରେ ଟଙ୍କା କୋଉଠୁ ପାଇଲ ? କିଏ ଦେଲା ? ରହ... ରହ..., ଚଦିକା ଯାଉଚ, କହି ଦେଇଯାଅ..., କେବେ ଆସିବ ? କିଛି କହିପାରିଲି ନାହିଁ । ମୋ ପାଟି ତାକୁ ଦେଖୁ ଦେଖୁ ବନ୍ଦ ହେଇଯାଉଚି, ଆଉ ଦେଖ..., ସିଏ କୋଉ କିମିଆ ଜାଣିଚି, ମୁଁ ତା' ମୁହଁକୁ ଅନେଇଲେ ଥ' ମାରି ଯାଉଚି । ମୋର ଆଉ କିଛି ଚାରା ନାହିଁ । ସତିକା ମୁଁ ତା' ପାଲେରେ ପଡ଼ିଯାଇଚି । ନାଗ ସାପ ଯେତେ ଟାଣୁଆ ହେଲେ ବି, କେଳା ପାଲେରେ ପଡ଼ି ଗାତୁରୁ ବାହାରି ଆସେ । ମୁଁ ବାକି ଛାର ? ବାଆଜୀ ତ ମତେ ଗଦ ଶୁଂଘେଇଚି । ମୁଁ ଆଉ ତାକୁ ଭୁଲୁଚି କେତେକେ ?

ବୁଢ଼ୀ ମୋଠୁ ଆହୁରି ସିଆଣିଆ । ମେତେ କଟମଟ ହେଇ ମୋ ଗୋଡ଼ୁକୁ ମୁଣ୍ଡକୁ ଅନଉଚି । ବାଆଜୀ ସାଥିରେ କି କଥା ଭାଷା ହଉଚି, ଶୁଣିବା ପାଇଁ କାନ ଡେରୁଚି । ହେଇଲୋ ହେ'..., ତୁ ମାଇପି ନୋକ । ଚୁଲି ଫୁଙ୍କିବା ତୋ କାମ । ଏତେ ଗହନୁକୁ ତୋ ମୁଣ୍ଡ ବଥା କିଆଁ ? ସବୁ ବିଷମ ସନ୍ଧି ତୁ ଚଦିକା ଜାଣିବୁ, ମୁଁ ତାହା ହେଲେ ଚକାମାଲି ପକେଇ ନୋଟ୍ ଗଣୁଚି କିଆଁ ?

ମୁଁ ଦାଣ୍ଡ ଦୁଆର ମୁହଁକୁ ଖାଲି କନ କନ ହେଇ ଅନଉଚି । ଫଁ କିନା ନିଃଶ୍ୱାସ ଛାଡୁଚି । ବାଆଜୀ ଆଉ ଆସିବ ନାହିଁ କି ମୋ ଭାଗ୍ୟ ବଦଳିବ ନାହିଁ ।

ଆରେ..., ଏ ପୁର୍ଥୀଟା କ'ଣ ଗୋଟାଏ ଶକତ କିମିଆଁ । ମନର ଆଶା ଗୋଟାଏ କ'ଣ ବଡ଼ କିମିଆଁ ? କିମିଆଁ ସତିକା ଡାଆଣୀ ଆଲୁଅ । ଖାଲି ଆଲୁଅଠୁ ଡାଆଣୀ ଆଲୁଅର ବେଶୀ ରଙ୍ଗ । ମୁଁ ସେଇ କିମିଆଁ ଘୋଡ଼ା ଉପେରେ ବସି ଚଉଦ ବ୍ରହ୍ମାଣ୍ଡ ବୁଲୁଚି । ବୁଲୁଚି ତ, ହେଲେ ଆଶା ମେଣ୍ଟୁନି ।

ବାଆଜୀ ଆଇଲା, ଲୋ... ବୋପା ।

ଘିଡ଼ିଘାଡ଼େ ହେଇ ଖଟୁଟା ଉପୁରୁ ଉଠି ପଇଲି । ନମ୍ବଦଣ୍ଡା ହେଇ ତା' ପା' ତଳେ ପଡ଼ିଗଲି । ମୋ ଦିହ ଥରୁଥେଲା । ତଣ୍ଟି ଅଠା ଅଠା ହେଇ ଯାଉଥେଲା ।

ବୋଲ୍ ସୀୟାରାମ୍... !

ସୀୟାରାମ୍ । ସୀୟାରାମ୍... !

ହେ ବାଆଜୀ ! ମୁଁ ନେହୁରା ହେଇ ତେତେ କହୁଚି, ତୁ ତୋ ବାଙ୍କା ଭାଷା ମୋ ଆଗେରେ କହନାରେ... ! ମୁଁ କିଛି ସମଝି ପାରୁନି କି ତେତେ କିଛି କହିପାରୁନି । ବାଆଜୀ ମତେ ଫେଏଣି ପାଞ୍ଚୁଟା ମାହାରାଣୀ ଦେଲା । କହିଲା : ନେ ଏ ପାଞ୍ଚଟା, ମତେ ପାଞ୍ଚଟା ଆଜିକା ଟଙ୍କା ଦେ' ।

କ'ଣ ଆଉ କରିବି ? ବାଆଜୀ ହାତ ଦି'ଟାକୁ ଜାବୁଡ଼ି ପକେଇ କହିଲି : ବାଆଜୀ ମହାପୁରୁ, ମେତେ ମରଣ ହଉନି କିଆଁ ? ଆଉଚ, ପଳେଇ ଯାଉଚ ବିଞ୍ଚଣୀ ନେଖା, ଟିକେ ପାଣି ମନ୍ଦାଏ ବି ମୋ ଘରେ ପାଟିରେ ନଉନ । ମତେ ବଡ଼ ଦ୍ରୋହାରେ ପକେଇଲ ହେ ଗୋସେଇଁ । ତମ ମଠ କୋଉଠି ? ତମ ନାଁ କ'ଣ ? କୋଉ ଦେଶୁରୁ ତେମେ ଆଇଲ ? କୁଆଡ଼େ ଯାଇଥେଲ ଯେ, ମୁଁ ଅନେଇ ଅନେଇ ବଇଚି, ଆଜି ସରିକି ଦରଶନ ଦଉଚ ? ବାଆଜୀ କହିଲା : ପରେ କହିବା । ପରେ କହିବା । ସଦାବେଳେ ଗିରହସ୍ତା ଘରୁକୁ ଆସିବା ଉଚିତ ନୁହଁଇ । ଏଠିକୁ ଆଉଚି ବୋଲି ନୋକ ମୋ ପଛେରେ ନାଗିଲେଣି । ଦେ' ବାବା; ଦେ'... । ଆଉ ବିଳମ୍ବ କରୁଚୁ କିଆଁ ? ପାଞ୍ଚୁଟା ଟଙ୍କା ଦେ' । ତେଣେ ମୋ ଗୁରୁ ରାଗିକି ଏମେତେ ଚୁମୁଟା ଫୋପାଡ଼ିବେ ଯେ, ମୋର ଗାଣ୍ଡିରୁ ମାଉଁସ ଖସି ପଡ଼ିବ ।

ଗୁରୁ,

ହଁ, ଗୁରୁ ମାହାରାଜ । ଗଞ୍ଜେଇ ଖାଇବେ । ବିଳମ୍ବ କରନା ବାବା... ! ଟଙ୍କା ଦେ'... !

ଦଶଟା ଟଙ୍କା ବଢ଼େଇ ଦେଲି ।

ଦଶ ଟଙ୍କା କ'ଣ ? ପାଞ୍ଚ ଟଙ୍କାକୁ ତ ପାଞ୍ଚ ଟଙ୍କା ।

ହଁ... ପାଞ୍ଚ ଟଙ୍କା ପାଞ୍ଚ ଟଙ୍କା । ଆଉ ପାଞ୍ଚ ଟଙ୍କା ଗୁରୁଙ୍କୁ ମୋର ଭଗତି ।

ଜେ' ସୀୟାରାମ !

ବାବା ଆଜ୍ଞା... । ସେଇ ହଜାରେ ଟଙ୍କା ?

ଆରେ..., ଆଣିବାକୁ ଭୁଲିଗଲି । ତୁ ତ ସେ ଟଙ୍କା ନେବୁ । ଏତେ ତରବର କିଆଁ ? କାଲିକୁ ଥଇତା ହେଇ ବଇଥା'... । କାଲି ଟଙ୍କା ନେଇ ଆସିବି ।

କାଲି କେତେବେଳେ ଆସିବ ?

କାଲି ରାତି ଦଶଟା ବେଳୁକୁ ଆସିବି ।

ଏତେ ରାତିରେ ?

ହଁ । ରାତି ବେଶୀ ହେଲେ ଭଲ । ଦିନେରେ ଆସିଲେ ମୋ ଦାଢ଼ି, ମୁଛ ଦେଖି ନୋକ ମୋ ପଛେରେ ଗୋଡ଼େଇଚନ୍ତି । ମୋଠୁ ଶାହାସ୍ତ୍ର ଶୁଣିବା ପାଇଁ, ଦୀକ୍ଷା ନବା ପାଇଁ, ମଠୁକୁ ଯିବା ପାଇଁ ନଗେଇଚନ୍ତି ।

ହରିବୋଲ ! ତେବେ ମୋ କଥା ତ ସଇଲା । ଚଦିକା ଆଉ କିଏ ଏ ଉଲୁ ବାଆଜୀକୁ କୁଶିକ୍ଷା ଦେଇ ହାତ ପଇଠ ଟଙ୍କାତକ କରିଦିଏ, ତେବେ ସବୁ ଅକାରଣ ହୋଇଲା । ମୁଁ କହିଲି : ବାବା ଆଜ୍ଞା..., ମୁଁ ତମର ଅଜ୍ଞାନ, ବାଇଆ- ବାତୁଳା ଧରମ ପୁଅ । ସେ ଟଙ୍କା ମତେ ଦବଟି ?

ଆରେ ଅଚଳ ଟଙ୍କାଗୁଡ଼ା ନେଇ କିଏ ତୋ ଛଡ଼ା ହଜାରେ ଟଙ୍କା ଗଣିଦବ ? ଧାର୍ମିକିଆ ନୋକଟା ବୋଲି ସିନା ସାଧୁସେବା କରୁଚୁ । କାଲି, କାଲି ସବୁ ଫଇସିଲା ହେଇଯିବ । ଥଇଥା । ଭଲ ହେଇ ବଇଥା... !

ବାଆଜୀକୁ ମୁଁ ଫାଶେରେ ପକେଇ ଦେଇଚି । ମୁଁ ଯେମେତେ ତାଙ୍କୁ ପାଲେରେ ପକେଇ ଦେଇଚି, ସିଏ ବି ମତେ ସେମେତେ ପାଲେରେ ପକେଇ ଦେଇଚି । ଶଳା..., ଦିହିଁକା ଦିହିଁ ଟଣାଟଣି ହଉଚେ, ଦେଖିବା କିଏ ପାରିବ ? ମୁଁ ତ ପାରିବି । ସିଏ ମେତେ କ'ଣ ପାରିବ ? ମୁଁ ଶଳା ଚଲାକଙ୍କ ସରଦାର ।

ବାଆଜୀ ସେଦିନ ଠିକ୍ ରାତି ଦଶଟା ବେଲ୍ଲୁକୁ ଆଇଲା । ସହଜେ ତ ଆମର ଗାଁ ଜେଗା । ସଞ୍ଜ୍ୟା ପହରୁ ତାଟି କବାଟ ପଡ଼ିଯାଏ । ଗଣ୍ଡାଏ କ'ଣ ଖାଇ ଦେଇ ଆଶ୍‌କତିଆ ନାଗିଲାରୁ ହେଁସ ଧରୁ ଧରୁ ଆଖିରେ ନିଦ । ମୁଁ ଚିଆଇଁକି ବଇଚି । ବାଆଜୀ ପର୍‌କୁତେରେ ଆଇଲା । ପଚାରିଲା : ବୁଢ଼ୀ ଶୋଇଚି ? ସେ ତ ବାଙ୍କା ଭାଷାରେ କହୁଥେଲା ।

ମୁଁ କହିଲି : କେତେବେଲ୍ଲୁ । ଟଙ୍କା ଆଣିଚ ?

ରହ ବାବା, ଏତେ ବେସ୍ତ କିଆଁ ହଉଚୁ ? ଯାହା ଆଣିଚି, ଦେଖିଲେ ପାଗଲା ହେଇଯିବୁ । ପାଗଲା ହେଇକି ଖାଲି ପାଟି କରିବୁ । ହ୍ୱାଃ... ହ୍ୱାଃ... ହବୁ ।

କେମନ୍ତ ! କି ଦରବ ? କି ଦରବ ?

ସବ୍‌ରାତ୍ କର ବାବା । ଆଗେ କବାଟ ଦେଇଦେ' । ଘର ଭିତର କବାଟ ବି ଦେଇ ଦେ' । ବୁଢ଼ୀ ଚଦିକା ଦେଖିନବ, ସବୁ ଭଣ୍ଡୁର ହେଇଯିବ । କଥାଟା ବାର କାନ ହେଇଯିବ ।

ଦାଣ୍ଡ କବାଟ, ଭିତର କବାଟ ସବୁ ଦେଇ ଦେଲି । ସବୁ ଚୁପୁଚାପେ । ସବୁ ଚୁପୁଚାପେ । ସବୁ ଚୁପୁଚାପେ ।

ବାଆଜୀ କହିଲା : ପୁଅ..., ଆମେ ବାଆଜୀ ନୋକ । ଧନ ଦଉଲତ କ'ଣ ହବ ?

ନାଃ... ! କ'ଣ ହବ ?

ଆମେ ସଂସାର ତିଆଗ କରିଚୁ, ସୁନା-ରୂପା କ'ଣ ହବ ?

ନାଃ... ! କ'ଣ ହବ ?

ହମ୍..., ତୁମ୍‌କୋ ସବ୍ ଦେ' ଦେଏଙ୍ଗେ ।

ବୋପାଲୋ... !

ତୁମ୍ ହାମାରେ ବେଟା ହୋ' । ତୁମ୍‌କୋ ହମ୍ ଆଶୀରବାଦ୍ କରେଙ୍ଗେ ।

ଆଶ୍ରିପାଦ ! ବୋପାଲୋ... ! ବାଆଜୀ ଗୋଡୁକୁ ଧରି କୁଣ୍ଢେଇ ପକେଇଲି । ବାଆଜୀ କହିଲା– ଉଠ୍... ! ଉଠ୍... ! ଏତେ ଅତରଛାନିଆ ହଉଚୁ କିଆଁ ? ମୁଁ ତ ତୋରି ପାଇଁ ଆଣିଚି ।

ଟଙ୍କା ?

ନାଇଁ ।

ତେବେ କି ଦରବ ? କି ଦରବ ?

ତିର୍‌ବାର ସତ୍ୟ କର ବେଟା... । ମୁଁ ବାଆଜୀ ନୋକ । ସତ୍ୟ ମୋର ବଚନ । ସତ୍ୟ ମୋର ପଥ । ସତ୍ୟ ମୋର ପିତା-ମାତା । ସତ୍ୟ ମୋର ଭଗବାନ ।

ସତ୍ୟ କରୁଚି । ତିର୍‌ବାର ସତ୍ୟ କରୁଚି । ସତ୍ୟ ନଂଘିଲେ ଧରମ ଦୋର୍ହା ହେବି ।

ମୁର୍ଦ୍ଦଣା ପାତ ହବ । ଅହିନରକେରେ ପଡ଼ିବୁ ।

ହଁ..., ପଢ଼ିବି ।
ଚନ୍ଦ୍ର ସୂର୍ଯ୍ୟ ସାକ୍ଷୀ ?
ହଁ... ସାକ୍ଷୀ !
ସୀୟାରାମ ସାକ୍ଷୀ ?
ହଁ ସାକ୍ଷୀ !
ଚଣ୍ଡୀ, ଚାମୁଣ୍ଡା ସାକ୍ଷୀ ?
ହଁ... ସାକ୍ଷୀ !
ତତେ ଖାଇଯିବେ !
ହଁ, ଖାଇଯିବେ ।
ତୋ ତଣ୍ଟି କଣା କରି ନହୁ ପିଇଯିବେ ।
ହଁ... ପିଇଯିବେ ।
ତତେ ଗିଳିଦେବେ ।
ହଁ... ଗିଳିଦେବେ ।

ତେବେ ଦେଖିରେ ବାବା... ଜୈ' ସୀୟାରାମ... ! ଦେଖ୍... । ଏଇ ହେଲା ତୋର... !

ବୋପାଲୋ... ! ମୋ କଣା ଆଖି ସତିକା କଅଁଳିଗଲା !

ବାଆଜୀ ତା' ମୁଣାରୁ ବାହାର କରି ଯାହା ଦେଖେଇ ଦେଲା, ମୋ ମୁଣ୍ଡ ପାଗଲା ହେଇଗଲା । ହେ ବାଆଜୀ..., ତୁ କି ରହସ୍ୟ ଜାଣିଚୁରେ..., କେତେ କଥା ତୋଠି ଅଛି, ଦେଖେଇ ଦେଲୁରେ..., ମୋ ଜୀବେନେରେ ଏକାବେଳେ ମୁଁ ଏତେ କଥା ଦେଖି ନଥେଲି । ତୋ ଗୋଡ଼ ତଳେ ପଡ଼ିଯିବିରେ..., ତୋ ଗୋଡ଼ ତଳେ ପଡ଼ିଯିବି !

ଭୁଷ୍‌କିନା ବାଆଜୀ ଗୋଡ଼ ତଳେ ପଡ଼ିଗଲି । ମତେ ଦେ'... ମତେ ଦେ'.. ! ହାତ ଯୋଡ଼ି ବାଆଜୀ ଗୋଡ଼ ତଳେ ବସି ପଇଲି । ଆଖିରୁ ମୋର ଧାର ଧାର ପାଣି ବୋହିଗଲା ।

ବାଆଜୀ ମତେ ଟେକିକି ଖଟ ଉପେରେ ବସେଇ କହିଲା– ଇଏ ତୋରି ଜିନିଷ । ସୀୟାରାମଙ୍କ ଉଦ୍ଦେଶ୍ୟ ଯେ, ତୋ ଛଡ଼ା ଏହାର ମାଲିକ କେହି ହେଇପାରିବେନି ।

ଏସବୁ ତେମେ କୋଉଠୁ ପାଇଲ ?

ହାଃ.... ହାଃ... ! ପାଇଲି ? କୋଉଠୁ ପାଇଲି ? ସିଏ ସୀୟାରାମଙ୍କ ମହିମା ବାବା... ! ଭଗବାନ ଯାହାକୁ ଦିଅନ୍ତି, ଛପର୍ ଫାଡ଼ିକି ଦିଅନ୍ତି ।

ହଁ..., ଭଗବାନଙ୍କ ଆଶ୍ରିପାଦ ନ ହେଲେ, କିଛି ହବନି ।

ବେଟା..., ଆମେ ବାଆଜୀ ନୋକ । ଧନ ଦଉଲତ ଆମର କ'ଣ ହବ ? ଏ କଥା ତ ମୁଁ ତତେ ଆଗୁରୁ କହିଛି । ଏଇ ତମରି ଗାଁ ବଣେରେ, ଯୋଉଠି ପାହାଡ଼ ଗୁମ୍ଫା ଅଛି, ସେଠି ଗୋଟାଏ ଓସ୍ତଗଛ ଅଛି । ଗୁରୁ କହିଲେ, ଏଇଠି ଧୂନୀ କରିବା ବେଟା । ମାଟି ଖୋଳ । ମାଟି ଖୋଳୁଚି ଗୁରୁ ଆଜ୍ଞାରେ । ସାରୁ ଖୋଳୁ ଖୋଳୁ, ଦେଖ ମଜା, ବାହାରି ପଡ଼ିଲେ ଖୋଦ୍ ମାହାଦେବ । ଏ ମାହାଦେବ ଆମୁକୁ ବଡ଼ ହଟହଟାରେ ପକେଇଲେଣି । ଚଞ୍ଚଳ ବିଦା ନକଲେ ଆମୁକୁ ଆଉ ରକ୍ଷା ନାଇଁ । ହେଲେ ବେଟା ଆମର ତ ମଠ ଆଶ୍ରମ ଅଛି । ମଠ ଆଶ୍ରମ ଚାଲିବ କେମେତେ ? ଆଯୋଧ୍ୟାରେ ଆମର ମଠ ଆଶ୍ରମ । ବିନା ଟଙ୍କାରେ କିଛି କାମ କରି ହଉନି । ଏମିତିକି ଦେବା ଦେବୀ ପୂଜା କରିହଉନି । ଚନ୍ଦନ କାଠ କିଲୋ, ଝୁଣା କିଲୋ, ଗୁଆ ଘିଅ କିଲୋର ଦାମ୍ କ'ଣ

ତତେ ଅଛପା ଅଛି ? କିଛି ଟଙ୍କା ଦେ ବାବା..., ମଠୁକୁ ପଠାଇ ଦେବା । ତେଣେ ସୀୟାରାମ୍ ଅପୂଜା ଯିବେଣି ।

କେତେ ଟଙ୍କା ?

କ'ଣ କହିବି ତତେ ? ତୁ ତ ସବୁ ଜାଣୁ । ଇଏ ବୋଧହୁଏ କୋଉ ରଜା, ମାହାରାଜାଙ୍କ ମାଲ୍ । ଦେଖୁନୁ, ନିଜ ହାତେରେ ତ ଧରିଚୁ । ପର୍ଥମେ ତେତେ ଏକଥା କହି ନଥେଲି । ତୋ ସାଥିରେ ହାବ ନାଭ ନଥେଲା । ଏଡ଼େ ବଡ଼ କଥାଟାଏ କହିବି କେମେତେ ? ଏଥିପାଇଁ ଟଙ୍କା ଦେଖେଇ ଥେଲି । ଅସଲ ମାଲ୍ ହଉଚି ଏଇ ।

କେତେ ଟଙ୍କା ।

ନାଖେ ଟଙ୍କା ବେଟା ?

ନାଖେ ଟଙ୍କା ?

ହାଁ.... ହାଁ.... ଏମିତି ଚମକୁଚୁ କିଆଁ ? ନାଖେ କ'ଣ ବେଶୀ ହେଇଗଲା । ଟଙ୍କାତକ ନବୁ, ଏ ଜିନିଷ ବି ନବୁ । ଏ ଜିନିଷର ଦାମ୍ ତ ଆଗେ ପାଞ୍ଚ ଉପୁରୁକୁ ଟପିଯିବ । ଖାଲି ତୁ ମୋର ଧରମ ପୁଅ ବୋଲି କମେଇକି କହୁଚି । ତା' ଛଡ଼ା ଆମେ ବାଆଜୀ ନୋକ । ଟଙ୍କା ପଇସାରେ ଆମର ନୋଭ ନାଇଁ । ବେଶି ଟଙ୍କା ଦେଲେ ବି ଅଙ୍ଗାକୁ ଭାର ବଳିଯିବ । ଏ ଶଳା ମାହାଦେବ ତ ଆମୁକୁ ଅଡୁଆ । ଫେଏଣି ତୁ ଚଦିକା ପାଞ୍ଚ କି ଛଅ ଦଉ, ଆମୁକୁ ରାତିରେ ନିଦ ହବନି । ବାଆଜୀ ପାଖେରେ ଏତେ ଟଙ୍କା ? ବାଟ ମାରେଣା ହେଇଯିବ ।

ମନୁଟା ମୋର ଛକା ଖାଇଲା । ପଚାରିଲି : ଇଏ ଅସଲୀ କି ନକଲୀ ?

ବେଟା..., ବିଶ୍ୱାସରେ ଅବିଶ୍ୱାସ କଲୁ । ଆହା... ! ତୁ ଗୋଟାଏ ପାପୀ !

ନାଇଁ... ନାଇଁ ମୁଁ ପାପୀ ନୁହଁ । ଏମନ୍ତ କିଆଁ କହିଲ ହେ... ମାହାପୁରୁ ଗୋସେଇଁ ? ମୁଁ ଧାର୍ମିକିଆ ନୋକ । ସବୁଦିନ ସକାଳେ ସଞ୍ଜେ ଧୂପ ଦିଏ ।

ଆରେ ମୂର୍ଖ ! ନକଲି ଜିନିଷକୁ କିଏ କ'ଣ କେବେ ମାଟି ତଳେ ପୋତି ଥାଏ ?

ଗୁରୁ ଜିନିଷ ଦେଖି କହିଲେ : କିଛି ଦିନ ଯାଇଥେଲେ, ଏସବୁ ମନୁକୁ ମନ ଯଖ ପାଲଟି ଯାଇଥା'ନ୍ତା । ରାତିରେ ମାଟିତଳୁ ଯଖ ମାଉଁସ ପିଣ୍ଡୁଳା ହେଇ ବାହାରିଥା'ନ୍ତା । ସେଥିରୁ ମଟର ଆଲୁଅ ନେଖା ଆଲୁଅ ବାହାରୁଥା'ନ୍ତା । ଏଣେ ମାଉଁସ ପିଣ୍ଡୁଳା ପେଣ୍ଡୁ ଗଡ଼ି ଗଡ଼ି ନୋକଙ୍କ ଗୋଡ଼ ତଳେ ପଶିଯା'ନ୍ତା । ନୋକ ସାଙ୍ଗେ ସାଙ୍ଗେ ଯମ ଘର ଦେଖନ୍ତା । ମାଉଁସ ପିଣ୍ଡୁଳା ଉପେରେ ଚଦିକା ଗୋବର ପାଣି ପକେଇ ଦବ, ତେବେ ଯାଇ ଯଖ ତା' ଅସଲ ରୂପ ଫେରିପାଇବ । ତେବେ ପୁଅ..., ମୁଁ ତ କହିପାରିବିନି ଇଏ ଅସଲୀ କି ନକଲୀ । ମୁଁ କ'ଣ କୋଉଠି ପରଖ କରିଚି ? ତୋ କଥା ବି ସତ ହେଇପାରିଥାଏ । ତେବେ ଗୋଟାଏ କାମ କର ବାବା... କିଛି ମୁଁ ତତେ କାଟିକି ଦଉଚି । ତୁ ପରଖ କରି କାଲି ମତେ କହିବୁ । କହି ରଖୁଚି, ମତେ ତୁ ନାଖେ ଟଙ୍କା ଦବୁ ।

ସୋରିଷ ନେଖା ଦରବ କାଟିକି ମତେ ଗୁଡ଼େଇକି ଦେଲା ।

ମୁଁ ତ ମାହା ପରମା ନୋକ ! ଦରକାର ପଡ଼ିଲେ ଗୁରୁଙ୍କ ଗାଣ୍ଡିରେ ଚୂନ ନଗେଇ ଦେବି । ନାହି ଶୁଖେଇ କହିଲି : କୋଡ଼ିଏ ହଜାର ।

ବାଆଜୀ ହସିଲା, କହିଲା କୋଡ଼ିଏ ହଜାର ନୁହଁ ବାବା । ଆଚ୍ଛା ନବେ ହଜାର । ମୁଁ କହିଲି- ନାଇଁ ନାଇଁ ଏତେ ଟଙ୍କା ମୋ ପାଖେରେ ନାଇଁ । ତିରିଶି ହଜାର ।

ତିରିଶ ହଜାର କମ୍ ହେଇଗଲା, ଅଶି ହଜାର ।

ଅଶି ହଜାର ବେଶୀ ହେଇଗଲା, ଚାଳିଶ ହଜାର ।

ତୁ ନେଇ ପାରିବୁନି ପୁଅ... । ତୁ ଏକ ନମ୍ବର ମଖୀଚୁସ୍ ଅଛୁ ।

ମଖୀଚୁସ୍ କ'ଣ ବେ ? ସମଝି ପାଇଲିନି । ପଚାରିଲି : ବାବା ଆଜ୍ଞା, ମଖୀଚୁସ୍ କ'ଣ ?

କଞ୍ଜୁସ୍... !

କ'ଣ ମୁଁ କଞ୍ଜୋଷି ? ଏଇ କଞ୍ଜୋଷି କଥା ମତେ ଯିଏ କହେ ମୁଁ ନିଆଁ ହେଇଯାଏ । ଏ ବାଆଜୀ କହିଲା ଶେଷରେ ମତେ କଞ୍ଜୋଷି ? ହଉ ପଚାଶ ହଜାର ।

ପଚାଶ ହଜାର ନୁହଁ ବାବା, ଷାଠିଏ ଦବୁ ତ ଦେ' । ନହେଲେ ଉଠିଲି ।

ବାଆଜୀ ଉଠି ପଡ଼ିଲା । ମୁଁ ଜାଣିଚି ଖାଲି ଟଙ୍କା ଦାମ୍ ନବେ ହଜାରେ । ଆଉ ଏ ଦରବ କଥା ଛାଡ଼ । ତା' କଥାରେ ହଁ ମାରିଦେଲି । ଯେତେ ଯାହା ହେଲେ ବି ଯୁଆଡ଼େ ଅନେଇବ, ସିଆଡ଼େ ନଫା । ନଫା ଛଡ଼ା ନୋକସାନୀ କିଛି ନାହିଁ ।

ବାଆଜୀ କହିଲା : ତିନି ଦିନ ସମୟ ଦେଲି । ଟଙ୍କା ଯୋଗାଡ଼ କରି ରଖିଥା'... ! ମୁଁ ସୋମବାର ଦିନ ଠିକ୍ ରାତି ଏଗାର ବେଳକୁ ଆସିବି । ସବୁ କାମ ବଢ଼ିଯିବ ।

ବାଆଜୀ ଚାଲିଗଲା ।

ଦରବୁକୁ ନେଇ ପରଖ କଲି । ଏକ୍‌ଦମ୍ ଅସଲି । ନକଲି କ'ଣ ହବ ? ବାଆଜୀ ଅବତାର ପୁରୁଷ । ଅଷ୍ଟାଙ୍ଗ ଯୋଗ ସାଧିଚି । ସିଏ କ'ଣ ବେବସାୟୀ ହେଇଚି ଯେ ମିଛ କହିବ ? କହିଥିଲା : ସତ୍ୟ ମୋ ବଚନ । ସତ୍ୟ ମୋ ପିତା-ମାତା । ସତ୍ୟ ଭଗବାନ । ମତେ ତିର୍‌ବାର୍ ସତ୍ୟ କୁହାଇ କହିଥିଲା : କାହାକୁ କହିବୁନି । ମୁଁ ବି କାହାକୁ କହିନି । ସତ୍ୟ ନଂଘିନି । ସତ୍ୟ ଜଗିଚି ବୋଲି, କିଏ ବୁଝୁ କି- ନ ବୁଝୁ, ଦରବର ନାଁ ବି କହୁନି । ମେତେ ରାଣ ଅଛି, ନାଁ ଧରିବୁନି । ମୁଁ ବି ନାଁ ଧରିନି ।

ଯାହା କହିବ, ନାଗ ସାପ ହଳଦୀ ଗଣ୍ଠି । କାଲି ଜିକି ଜିକି । ସରି ସରି ହେଇ ନଅ ସରି । ରାତିରେ ଧଇଲେ ବି ତାରା ଚହଟି ଯାଉଚି । ରଜାଘର ଦରବ । ପୋତା ହେଇଚି । କୋଉ ରଜା ପୋତିଥେଲା କେଜାଣି ? ଯେମେତେ ବାଆଜୀ ହାତେରେ ଧରିକି ବାହାର କରିଦେଲା, ଘରୁଟା ହାଲୋଳମୟ ହେଇଗଲା । ମୋ କଣା ଆଖିରେ ମାଳ ମାଳ ତାରା । ମୁଁ ସେଇ ସରଗ ତରାକୁ ବାମନ ହେଇ ହାତ ବଢ଼େଇ ଧରିବାକୁ ଚାହୁଁଚି ।

ମାହାରାଣୀ ଟଙ୍କାର ରୂପା କୁଲେଇରେ ଓସ୍ତ ଗଛ ତଳ ଧୂଳି ମାଟି ପାଛୋଡ଼ିଲା ବେଳକୁ ଦେଖ... ଦେଖ..., ଆଉ ଧୂଳି ମାଟି ନୁହଁ, ମାଳ ମାଳ ସରଗ ତରା ରୂପା କୁଲେଇରେ ଖେଳି ବୁଲୁଚନ୍ତି ।

ମୋ ଆଖିରେ କିମିଆଁ । ମୋ ଆଖିରେ ସପନ । ମୋ ମତିସ୍କରେ କୁହୁକ । ମୁଁ ସତିକା ଦୋଳି ପହଁରୁଚି । ସତିକା ଦୋଳି ପହଁରି ଏ ପୁର୍ଥୀକୁ ଭୁଲି ଯାଇଚି । ମୁଁ ମୋ ନିଜୁକୁ ଭୁଲି ଯାଇଚି । ଖାଲି ସେଇ ହଳଦୀ ଗଣ୍ଠି ରଙ୍ଗ ଚହ ଚହ ଦରବ । ତା' ତେଜେରେ ମୁଁ ନିଜେ ହଳଦିଆ ପଡ଼ି ଯାଉଚି ।

ବାଆଜୀ କହିଥେଲା ଷାଠିଏ ହଜାର । କ'ଣ ସିଏ ଯାହା କହିବ, ତା'ରି କଥାଟା ରହିବ ? କଦାଶ୍ଚନ ନୁହଁ ! ମୁଁ ଗୁରୁଙ୍କ ଗାଣ୍ଡିରେ ଚୂନ ଦାଗ ମାରିଦେବା ନୋକ । ଠିକ୍ ବଖତ ବେଳେ ପଚାଶ ହଜାରେ ଦେବି । ଯଦି ଅମଙ୍ଗ ହବ, କହିବି ଭାଗି ଯା' ଭାଗି ଯା'... ।

ଆଜି ସୋମବାରେ । ଆଜି ବାଆଜୀ ଆସିବ । ମନୁଟା ଖାଲି ଚଙ୍ଗ ଚଙ୍ଗ ହଉଚି । ଏକାଠି କରି ହଉନି । ଏତେ ଦିନ ହେଲା ଟଙ୍କା ଗଣିଚି, ଟଙ୍କା ଦେଇଚି, ଟଙ୍କା ନେଇଚି, ହେଲେ ଏମେତେ ବିଷମ ସନ୍ଧିରେ କେବେ ପଡ଼ିନି । ଆଜି ମୋର ପରୀକ୍ଷା । ଆଜି ମୋର ଜୀବନର ଶେଷ କର୍ମୁଟା ସମାପତ ହବ ।

ସଞ୍ଜ୍ୟା ପହରୁ ଖାଲି ଭଗବାନଙ୍କୁ ଡାକୁଚି । ହେ ଭଗବାନେ..., ଏ ବାଆଜୀ କଣ୍ଠେରେ ତେମେ ବିଜେ ହେଇଯାଅ ହେ ଦୀନବନ୍ଧୁ..., ଏ ଗରିବ ଗୁହାରି ଶୁଣ । ତୁମ ନାଁରେ ସୁନା କୁକୁଡ଼ା ଉଡ଼ିବ ହେ ଦଇବ... ! ଚଦିକା ଆଜି ମୋ ଦରବ ମେତେ ମିଳିଯିବ, ମୁଁ ନିଶ୍ଚେ ତମ ଦେଉଳେରେ ବାନା ପୋତିବି । ହେ ମାହାପୁରୁ..., ତମକୁ ପାଟ ଶାଢ଼ି ପିନ୍ଧେଇବି ।

ଫି ଦିନ ମୁଁ ସଞ୍ଜ୍ୟା ଝୁଣା ଧୂପ ଦେଇ ସାରିଲା ପରେ ଖାଇଦିଏ । ଆଠକାଳି ବାରମାସୀ ଆମ ଘରେ ରାତିରେ ପଖାଳ । ହାଡ଼ଭଙ୍ଗା ଜାଡ଼େରେ ବି ପଖାଳ । ଉପରଓଳା ଭାତ ରାନ୍ଧିଲେ, କାଠ ଖରଚ । ଡାଲି ଖରଚ । ତୁଣ ପାଇଁ ପରିବା ଖରଚ । ଫେଏଣି ମସଲା-ମସଲି ଖରଚ । ଫେଏଣି ହାଣ୍ଡିଶାଳେରେ ନୁଣ୍ଡୁରୁ ସୁଣ୍ଡୁରୁ । ଏଥିରୁ ଖଲାସ ହବା ପାଇଁ, ମୁଁ ମନା କରି ଦେଇଚି, ରାତିରେ ତବତ ବନ୍ଦ । ଯିଏ ମୋ କଥା ନ ମାନିବ, ସିଏ ଶଳା ପଛେ ଖାଲି ପେଟେରେ ଶୋଉ। ହେଲେ ପଖାଳ ଖିଆ ବନ୍ଦ ହବନି । ତବତ ରନ୍ଧା ଚଳିବନି । ଇଏ ମୋର ଅରଡ୍ ।

ବୁଢ଼ୀ ପଖାଳ କଂସା, ଆଳୁ ପୋଡ଼ା ବାଢ଼ିକି ଥୋଇଚି ।

ମୁଁ ହାତ ଧୋଇ କଂସା ପାଖେରେ ବସି ଦି'ଗୁଣ୍ଡା ନେଲା ବେଲୁକୁ ଦିହଟା ଉପୁଚେଇ ଉଠିଲା । ଅଇ ନାଗିଲା ।

ବୁଢ଼ୀ ତା' କଟାସ ଆଖିରେ ମତେ ଅନେଇଲା । ତା' ମନେରେ ତ ମୋ ପାଇଁ ହଜାରେ କଳପଣା । କହିଲା : ମଲା ମୋର ! ଦି' ଗୁଣ୍ଡା ଖାଇଲା ବେଲୁକୁ ପୋଖତୀ ମାଇକିନାଙ୍କ ନେଖା କ'ଣ ଅଃ... ଅଃ... ହଉଚ ?

ଏ ଶଳା ବୁଢ଼ୀ ସତୀକା ମୋର ନାଟ ସାହାବ ! ପଚାରୁଚି ଫେଏଣି ଦେଖ... କିଆଁ ଅଃ... ଅଃ... ହଉଚ ? ଆରେ ଚଦିକା ସତ କହିବି ତେତେ ଝୋଲା ମାରିଯିବ । ତୁ ଚେତା ଚଇତନ ହାରିଦେବୁ । ମୋର ତ ଆଜି ମାହାପରୀକ୍ଷା । ମତେ କି ଭୋକ ଶୋଷ ହଉଚି ?

ଖାଇଲିନି ଉଠି ଆଇଲି ?

ବୁଢ଼ୀ ପଚାରିଲା; କ'ଣ ଗୋଟାଏ ନୁଚେଇକି କରୁଚ ଯେ, ସଦାବେଳେ ମୁହଁ ହାଣ୍ଡି କରି ଗୁମ୍ ହେଇ ବଉଚ । ଖାଉନ, ପିଉନ । କୁଆଡ଼େ ଯାଉଚ ଯେ ଆଇଲେ କବାଟ କିଳିକି ବଉଚ ! କବାଟ କିଳି ଟଙ୍କା ଗଣୁଚ ? ଏତେ ଟଙ୍କା କିଆଁ ଗଣୁଚ ? ସେ ବାଆଜୀ କିଆଁ ଆଉଚି ? ସେ ବାଆଜୀ ଚଦିକା ଆଉ ଏ ଘରେ ପାଦ ଦବ, ସତ କହୁଚି;-ଘରେ ନିଆଁ ନଗେଇ ଦେବି । ମୋ ବୋପା ଘରୁକୁ ପଳେଇବି ।

କେମନ୍ତ ? ବୋପା ଘରୁକୁ ପଳେଇବୁ ? ବୋପା ଘରେ ତୋର କିଏ ଅଛି ଲୋ ଦାରିଆଣୀ ? ବୋପା ଘରେ ତୋ ଭାଇ-ଭାଉଜ ତେତେ ପାଣି ଟୋପାଏ ପିଇବାକୁ ଦିଅନ୍ତି ?

ହେଇରେ ଖେଣ୍ଟିଆ କଣା ବୁଢ଼ା, ମେତେ ତୁ ଦାରିଆଣୀ କହିଲୁ ?

ଆଉ କ'ଣ ବ୍ରାହ୍ମଣୀ କହିବି ?

ବାଡ଼ିପଡ଼ା !

ଚୁପ୍ !

ଯୋଗିଣୀଖିଆ !

ଚୁପ୍ ! ଦେଖିବୁ !

ଗାତପଶା, ମତେ ତୁଚ୍ଛାଟାରେ କହୁଚି ଦାରିଆଣୀ ? କୋଉଠୁ ଗୋଟାଏ ବାଆଜୀ ଆସି କ'ଣ ମନ୍ତର ପଢ଼ଉଚି ଯେ, ସଦାବେଳେ ଦି'ଜଣ ଯାକ ଟୁପୁଟୁପୁ, ଫୁସୁଫୁସୁ ହଉଚନ୍ତି, ସେଥିରେ ମେତେ କହୁଚି ଦାରିଆଣୀ । ବୁଢ଼ୀ ଏମେତେ ମୁହଁ ମୋଡ଼ି ଉଠି ପଇଲା ଯେ, ମୋ ଛାତିରେ କିଏ ଚାକୁ ଚଲେଇ ଦେଲା । ମୋ ଘର, ମୋ ଦୁଆର । ମୋ ଘରୁକୁ ବାଆଜୀ ଆଇଲା କି ମାତାଜୀ ଆଇଲା, ସେଥିରେ ବୁଢ଼ୀର କ'ଣ ଗଲା ? ଧାଇଁଯାଇ ବୁଢ଼ୀର ବେକୁଟାକୁ ଧରି ପକେଇ ଦି' ବିଧା ତା' ପିଠିରେ ଦୁହାରି ଦେଲି ।

ମୋ ମନୁଟା ଶ୍ୟାନ୍ତି ହେଇଗଲା ।

ମୁଁ ତମତମ । ବୁଢ଼ୀ ତମତମ । ମୁଁ ମୋ ଘରେ ସଁ ସଁ ହେଇ ବଇଚି । ବୁଢ଼ୀ ତା' ଘରେ କବାଟ କିଳିକି ଶୋଇଚି । ପୁଅ ନାଇଁ । ପୁଅ ଯାତରା ପାଇଁ ତା' ଭଉଣୀ ଘରୁକୁ ଯାଇଚି । ଭଲ ହେଇଚି । ବୁଢ଼ୀବି କବାଟ ଦେଇ ଶୋଇଚି । ଭଲ ହେଇଚି । ବାହାରୁ ଶିକୁଳି ନଗେଇ ଦେବି ? କାଳେ ବାଆଜୀ ଆଇଲା ବେଳୁକୁ ଉଠିପଡ଼ିବ, ଶିକୁଳି ନଗେଇ ଦେବି ?

ଆରେ..., ମୁଁ ଏସବୁ କିଆଁ କରୁଚି ? ଆରେ, ସବୁ ତମରି ପାଇଁ କରୁଚିରେ... ! ତେମେ ବୁଝି ପାରୁନ । ମୋର ଯାହା ଯେତେ ଟଙ୍କା କଉଡ଼ି, ସବୁ ତମର ।

ଭାରିଯା, ପୁଅ, ଝୁଅ, କୁଆଇଁ କହିଲେ : ଆମର ?

ହଁ..., ତମର । ତମର

ଆମର ତ ପଖାଳ ଭାତ, ବାଇଗଣ ପୋଡ଼ା । ଆମର ତ ଛିଣ୍ଡା ଦରବା ଲୁଗା । ସେଇ ଆମର ଖଞ୍ଜା ।

ମୁଁ କ'ଣ ପଖାଳ ଭାତ ଖାଉନି ? ମୁଁ କ'ଣ ଛିଣ୍ଡା ପିନ୍ଧୁନି ?

କେଜାଣି ତେମେ କିଆଁ ପିନ୍ଧୁଚ, ଆମେ ଜାଣିନୁ । କିଆଁ ଖାଉଚ, ଆମେ କିଛି ଜାଣିନୁ । କୁଢ଼ କୁଢ଼ ଟଙ୍କା ପଇସା, ସୁନା ରୂପା ଥାଇ ଆମେ ଯେତେବେଳେ ଦୁଃଖୀ, ରଙ୍କୀ ହେଇ ଚଳୁଚୁ, ସେ ଟଙ୍କା ପଇସା ଆମର କେମେତେ ହେଲା ? ସେସବୁ ଆମେ ଭୋଗ କରିପାରିବୁନି କି ତେମେ ଭୋଗ କରିପାରିବନି । ମହୁମାଛି ହେଇ ଟଙ୍କା ସାଇତିବା ତମର ଗୋଟେ ନିଶା ।

ନିଶା... ?

ହଁ ନିଶା । ସେଇ ନିଶା ଛଡ଼ା ତମର ଭଲ ମନ୍ଦ ଆଉ କିଛି ନାଇଁ । ସେଇ ନିଶାରେ ଘାରି ହେଇ ତେମେ ଖାଲି ଟଙ୍କା ସାଇତିଚ । ଆଉ ସେଇ ଟଙ୍କା ପାଇଁ ଘରେ ଖାଲି ଶ୍ୟାନ୍ତି ନାଁରେ ଅଶ୍ୟାନ୍ତି ଭିଆଇଚ । ନିଜେ ବି ଅଶ୍ୟାନ୍ତିରେ ସଢ଼ୁଚ ।

ଶଳା.... ଶ୍ୟାନ୍ତି କ'ଣ ବେ ? ସିନ୍ଧୁକକୁ ଖୋଲିଦେଲେ ତ ମୋ ଶ୍ୟାନ୍ତି ଆଗେରେ ବଇଚି ! ସେଇଠି ମୋ ଜୀବନ । ସେଇଠି ମୋ ଭଗବାନ । ସେଇ ମୋ ଶ୍ୟାନ୍ତି । ଆଉ ଶ୍ୟାନ୍ତି କ'ଣ ବେ ? ମୁଁ କାହା କଥା ଶୁଣିବିନି । ମୁଁ ଜାଣିନି ମୋ ଟଙ୍କା କ'ଣ ହବ । ମୁଁ ଜାଣିନି ଏ ଟଙ୍କାକୁ ନେଇ ମୁଁ ମଶାଣିକୁ ଯିବି କି ନାଇଁ । ମୁଁ ଜାଣିନି ମୋ ପରେ କିଏ ଏ ଟଙ୍କା ଭୋଗ କରିବ । ମୁଁ ଖାଲି ଏତିକି ଜାଣେ, ଟଙ୍କା ପାଇଁ ମୁଁ ଜନମ ହେଇଚି, ଟଙ୍କା ପାଇଁ ମରିବି ।

ମରିବି ? କିଆଁ ମରିବି ? କେତେ ବଅସ ହେଲା ଯେ ମୂର୍ତ୍ତୁ ଚିନ୍ତା ?

ପହରିକିଆ ବିଲୁଆ ହୁକେ... ହୋ' ରଡ଼ି ଛାଡ଼ିଲେଣି । ରାତି କେତେ ହବ ? ନଅଟା ବାଜିବ । ଘଣ୍ଟାରେ କେତେ ? ଘରେ କ'ଣ ଘଣ୍ଟା ଅଛି । ପୁଅ ଝୁଙ୍କି ଛଡ଼େଇଲା ଯେ, ଗୋଟାଏ ହାତଘଣ୍ଟା ବହୁ କଷ୍ଟରେ କିଣିକି ଦେଇଚି । ଫେଏଣି କାନ୍ଥ ଘଣ୍ଟା ପାଇଁ ଜିଦି । କାନ୍ଥଘଣ୍ଟା କ'ଣ ହବ ? ସେଇ ହାତ ଘଣ୍ଟାରେ କ'ଣ କାମ ଚଳିବନି ?

ଆଉ ଦି'ଘଣ୍ଟା ଗଲେ ବାଆଜୀ ଆସିବ । ତା' ହାତେରେ ଘଣ୍ଟା । ଟୋକା ବାଆଜୀ । ଦେଶ ବୁଲୁଚି । ନଗଉ-ନଗଉ । ଆମେ କୋଉ ଦେଶ ଭର୍ମଣ କରୁଚୁ ଯେ, ହାତେରେ ଘଣ୍ଟା ନଗେଇ ନାଖିରାଜିଆ ବିସିନୀ ସାଜିବୁ ?

ରାତି ଘନେଇ ଆଉଚି । ଟେଁ ଶବଦ କୋଉଠି ନାଇଁ । ବେଳେବେଳେ ରାତିଟା କେମେତେ ଅଜଣା, ଅଚିହ୍ନା ନାଗେ । ରାତିଟା ମନେରେ ଭୀତି ଆଣେ । ଏ ରାତିର ଗୁମର ବେଶୀ । ଦିନବେଳ ଯେତେ ହାଉଯାଉ, ରାତିକୁ ଦେଖଲା ବେଳୁକୁ କିଛି ନାଇଁ, ସବୁ ଯେମେତେ ଏ ରାତିରେ ଠୁଳ ହେଇ ମିଞ୍ଜି ଯାଇଚି । ସବୁ ହାଉଯାଉ, ସବୁ ଶବଦ, ସବୁ ପାଟିତୁଣ୍ଡ ରାତି ଭିତେରେ ହଜିଯାଇ ତୁ'ନୀ ପଡ଼ିଯାଇଚି, ଆଉ ସେଇ ତୁନୀତା'ନେଟା ମନେରେ ଆଣୁଚି ଶଙ୍କା । ରାତିରେ ଭୂତ ପେ୍ରତ ବାହାରନ୍ତି । ସାପସୁପା ବାହାରନ୍ତି । ଚୋର ଟସ୍କର ବାହାରନ୍ତି । ଅନ୍ଧାର ଭିତେରେ କାହାର ତଣ୍ଟି ମୋଡ଼ନ୍ତି । କାହାକୁ ଡଂଶନ୍ତି । କାହାର ସର୍ବନାଶ କରନ୍ତି ।

ସେଇ ଅନ୍ଧାର ଭିତେରେ ବାଆଜୀ ଆସିବ । ସତ୍ୟ ତା' ବଚନ । ସତ୍ୟ ତା' ଧରମ ପଥ । ସତ୍ୟ ତା' ପିତାମାତା । ସତ୍ୟ ଭଗବାନ । କେତ୍ଡେ କଥାଟାଏ ସେ ନ କହିଲାରେ....! ସେଇ ଧରମ ପଥେରେ ଅନ୍ଧାର ଭିତେରେ ବାଆଜୀ ଆସିବ । ଚୋର ନୁହଁ, ଟସ୍କର ନୁହଁ । ସାପ ନୁହଁ କି ଭୂତ ନୁହଁ । ଶହେ ଆଠ ଶୀରୀ ଶୀରିମତ ସ୍ୱାମୀ ପରମହଂସ ମହାରାଜ । ଯିଏ ସତ୍ୟକୁ କାନ୍ଧେରେ ବସେଇ ବୁଲୁଚି । କେତେ ଶୋଳକ ଜାଣିଚି, ମୁଁ ମୂର୍ଖଟା, ମୋର କିଛି ମନେ ପଡୁନି, ସବୁ ଗଳ ଗଳ ହେଇ ଗାଳି ପକଉଚି । ସେଇ ଅନ୍ଧାର ଭିତେରେ ବିଜେ ହବ । ମେତେ ହାଲୋଳମୟ କରିଦେବ ।

ଦାଣ୍ଡ କବାଟ ଦର ଆଉଜା କରି ରଖିଚି । କବାଟ ଦେଲେ, ଚଦିକା ବାଆଜୀ ଖଟ ଖଟ କରିବ, ତେବେ ବୁଢ଼ୀ ଉଠି ପଡ଼ିବ । ସବୁ ଭଣ୍ଡୁର ହେଇଯିବ । ଦରଆଉଜା କବାଟ ବାଟେ ମୁଁ ବାଆଜୀ ଆସିବା ବାଟୁକୁ ଚାହିଁ ରହିଚି । ଏ ବେଳ ଆଜି ଜମା ସରୁନି । ଏ ବେଳ ସତିକା ଅତି ଓଜନିଆ ହେଇ ମୋ ମୁଣ୍ଡ ଉପେରେ ଓଜାଡ଼ି ହେଇ ପଡୁଚି ? ମେତେ ଚାରିଆଡୁ ପେଷି ଦଉଚି । ମୁଁ ବେଳୁକୁ ବେଳ ଅଥିର, କାତର ହେଇ ପଡୁଚି । କାହିଁ କୋଉ ବାଆଜୀ ? ଏଗାର କ'ଣ ବାଜିନି ? ନା ଆଜି ବାଆଜୀ ଆସିବନି । ଟିକେ କ'ଣ ଖୁଡ଼୍କି ଶବଦ ହେଲେ ମୁଁ ଉଠି ପଡୁଚି, ହେଇ, ବାଆଜୀ ଆଇଲା । କାହିଁ ବାଆଜୀ ?

ଜୀବେନେରେ ଏମିତି କାହା ରାହାକୁ ଚାହିଁ ମୁଁ ଏତେ ପରାଭାବ ପାଇ ନ ଥେଲି । ପରାଭାବ ନୁହଁ ତ ଆଉ କ'ଣ ? ହେଇ ଆଇଲା... ହେଇ ଆଇଲା..., ହେଇକି ମୋ ଜୀବନ ଗଲାଣି, କାହିଁ କୁଆଡ଼େ ବାଆଜୀ ଗଲା ? ବାଆଜୀ ଯେମେତେ ମୋ ଆଶା, ମୋ ହାଇଁପାଇଁ, ଆତୁରିଆ, ବିକଳିଆ ପଣ । କିନ୍ତୁ ବାଆଜୀ ଯୋଉଟାକୁ ସେଇଟା, ସେଇ ଅନ୍ଧାର । ସେଇ କଳା କିଟି କିଟି । ସେଇ ନିଶବଦ, ଚେତାବୁଡ଼ା ରାତି । କେହି ନାହିଁ । କିଛି ନାହିଁ । ଖାଲି ରାତି ଆଉ ରାତି । ସାପ ଖିଆ, ବାଘ ଘୋଷଡ଼ା, ଯମ ନିଆ ରାତି ଡରଉଚି, ଥରଉଚି, କଲବଲ ମାରୁଚି । ମୁଁ ଛପଟ ହଉଚି ।

ନାନ୍‌ଟିଣିଟା ମିଞ୍ଜି ମିଞ୍ଜି ହେଇ ଜଳୁଚି । ମିଞ୍ଜି ମିଞ୍ଜି ଆଲୁଅରେ ମୋ ଛାଇଟା ମେତେ ଆଜି କେମେତେ ଡରଉଚି । ଏମେତେ ଡର ଭାବ କିଆଁ କିରେ ? ଏତେ ତ ଡରୁ ନ ଥିଲି କେବେ ? ଆଜି କିଆଁ ଛାତିରେ ଏତେ ଦାଉଁ ଦାଉଁ ? ମୁଁ କ'ଣ ଚୋରି କରୁଚି ? କିଛି ପାପ କରୁଚି ? ପୁଅ ମାଇପଙ୍କୁ କିଛି ନ ଜଣେଇ ଅକଥା କଥା କରୁଚି ? ବାଆଜୀ କହିଚି : ସତ୍ୟ ମୋ ବଚନ । ସତ୍ୟ ଭଗବାନ । ସେଇ ସତ୍ୟ ଭଗବାନଙ୍କୁ ମୁଁ ଆଜି ଠକେଇ ଦଉଚି ? ଡହ ଡହ ନିଆଁକୁ ଗିଳୁଚି ? ଆହା... ! ବାଆଜୀର କି ରୂପ ! କି ଠାଣି ! ମୁହଁରୁ କି ଶ୍ୟାନ୍ତି ଝରି ପଡୁଛି ! କି ସୁନ୍ଦର ମୁରୁକା ହସ ସେ ହସୁଚି ! କେତେ ଅମୃତିଆ ଧୀର କଥା ! ବିଚେରା କିଛି ଜାଣିନି ! ଧିଆନ-ଧାରଣା, ଜପ ତପ ସଦା ଦିନ କରି, ଦୁନିଆର ହାଲ୍ ହଇକତ କିଛି ଜାଣିନି । ତା'ର ଭଗବାନ ବଡ଼ । ତା'ର ସତ୍ୟ ବଡ଼ । ମୋର ଟଙ୍କା ବଡ଼ ! ମୋର ଅସତ୍ୟ ବଡ଼ । ସିଏ କହୁଚି : ଏ ଦୁନିଆ ସତ୍ୟରେ ଚାଲୁଚି । ମୁଁ କହୁଚି : ଏ ଦୁନିଆ ଅସତ୍ୟରେ ଚାଲିଚି ।

ବାଆଜୀ ସତ୍ୟ ଯୁଗର ପଥିକ ।

ମୁଁ କଳି ଯୁଗର ପଥିକ । ଏ ଯୁଗେରେ ଯିଏ, ଯେତେ, ଯାହାକୁ ଠକେଇଲା ସିଏ ସେତେ ଜିତିଲା । ତା'ର ସେତେ ଜେ' ଜେ' କାର ବାନା ଉଡ଼ିଲା । ମୁଁ ବାଆଜୀକୁ ଆଜି ନୁଟି ନେବି । ବାଆଜୀକୁ କାବାଡ଼ି କରି ଛାଡ଼ିଦେବି । ବାଆଜୀ ବନଚାରୀ ନୋକ । ଜଟାଧାରୀ । ବନେରେ ବାବେନା ହେଇକି ବୁଲିବ । ତା'ର ଟଙ୍କା କଉଡ଼ି କ'ଣ ହବ ? ମୁଁ ଗିର୍ହସ୍ତା ସଂସାରୀ । ମୋର ଟଙ୍କା କଉଡ଼ି ଆବିଶିକ । ସେ ନୋଭ ଛାଡ଼ିଚି । ମୋର ନୋଭ ବଢୁଚି । ମୁଁ ଆଜି ବାଆଜୀକୁ ଦାଢ଼ି-ମୁଛ ଖିଅର କରି, ମୁଣ୍ଡ ନଣ୍ଡା କରି ଛାଡ଼ି ଦେବି ।

ଦି' ପହରିଆ ବିଲୁଆ ବୋବେଇଲାଣି ।

କବାଟ ଖୋଲିଗଲା ।

କିଏ ?

ବାଆଜୀ ? ହଁ... ବାଆଜୀ । ଛାତିଟା ମୋର ଦୁଲୁକି ଅତଡ଼ା ଖାଇଗଲା । ଛାତିରୁ ଫାଏଁକିନା ପବନ ବାହାରିଗଲା ।

ଜେ' ସୀୟାରାମ ।

ମୁଁ ଉଠିପଡ଼ି କବାଟ କିଳି ଦେଇ ବାଆଜୀ ଗୋଡ଼ ତଳେ ପଡ଼ିଗଲି । ଜେ' ସୀୟାରାମ ।

ବାଆଜୀ ଫୁସୁଫୁସୁ ହେଇ ପଚାରିଲା : ରେଡୀ... ?

ହଁ ରେଡୀ !

ଟଙ୍କା ଠିକ୍ କଲୁ ?

ହଁ ।

କେତେ ଟଙ୍କା ?

ଷାଠିଏ ହଜାର ଟଙ୍କା ।

ସାବାସ୍... ! ଆସିଲା ବେଳୁକୁ କୁକୁର ଯାହା ଦେଖି ନାହାନ୍ତି ! ତୋ ଘର ବି ଏକେଣା । ଭଲ ହେଇଚି । ମୋର ବି ଏ କୁକୁରଙ୍କୁ ଡର । ରାତିରେ ଆଇଲେ କିଏ ସନ୍ଦେହ କରିବ, କାଳିଆ ଚାଦୁରୁଟାଏ ଦିହରେ ପକେଇ ଆଇଚି । ତୋର କ'ଣ କୁକୁର ନାହାନ୍ତି ?

କୁକୁର ଥେଲା ଯେ, ତମରି ଯୋଗୁଁ ବୁଢ଼ୀକି ନୁଚେଇ ବିଷ ଦେଇ ମାରିଦେଇଚି ।

ମୋରି ଯୋଗୁଁ ?

ହଁ... ତେମେ ରାତିରେ ଆଇଲେ, ଏ ବାହାଞ୍ଚୁ ଭୁ'... ଭୁ' ହେବ ।
ବୁଆ... ! ବୁଆ... !
କୁକୁର କିବା କଥା ? ଟଙ୍କା ପାଇଁ ବି ମଣିଷ ମାରିଦେବି ।
ଜେ' ସୀୟାରାମ !
ହିଁ ହିଁ... ଜୈ' ସୀୟାରାମ ।
ମୋର ଆଉ ବେଶୀ ଗପିବାକୁ ବେଳ ନାଇଁ । ତେଣେ ଗୁରୁ ମାହାରାଜ ଅପେକ୍ଷା କରିଚନ୍ତି । ଏଠି ଯେତେ ଟାଇମି ରହିବି, ସେତେ ବିପଦ । ଏଥରକ ବାହାର କର ।
ତେମେ ବାହାର କର ଆଗେ ।
ବାଆଜୀ ମୁଣାରୁ ବାହାର କରି ଦରବୁଟାକୁ ମତେ ଦେଖେଇ ଦେଲା । ବୋପାଲୋ... ବିଜୁଳି ! ବୋପାଲୋ..., ତାରା ! ସରି ସରି ନଅ ସରି । ଜକ ଜକ ଜଳୁଚି ।
ମୁଁ ମୋ ମୁଣ୍ଡରୁ ଟଙ୍କା ବିଡ଼ା ବାହାର କରି ଦେଖେଇ ଦେଲି ।
ଏଠି ଏ କାମ ପଇଟିବ ନାଇଁ ।
ଆଉ ?
ଏଠି ଏତେ ଟଙ୍କା ଗଣି ହବନି । ଗଣୁ ଗଣୁ ଦି' ଘଣ୍ଟା । ଚାଲ୍...
ଡରିକି ପଚାରିଲି: କୁଆଡ଼େ ?
ଗାଁ ମୁଣ୍ଡେରେ ତମର ଯୋଉ ଶିବ ମନ୍ଦିର ଅଛି, ତା' ପାଚେରୀ ପଛ କଡ଼େ ଯୋଉ ଛୋଟ ଜଙ୍ଗଲ ଅଛି, ବେଲ ଗଛ-ବେଲ ଗଛ, ସେଇ ବେଲ ଗଛ ମୂଳେରେ ଗୁରୁ ବଇଚନ୍ତି, ସେଇଠି ତୋ ମାଲ ତୁ ନବୁ, ସେଇଠି ଗଣିକି ମୋ ମାଲ ମୁଁ ନେବି ।
ରାତିରେ ଏ ଅଚିହ୍ନା ବାଆଜୀ ସାଥିରେ ଯିବି ? କିଏ ଜାଣେ କୋଉ କଥା ? ଏ ବାଆଜୀଟା ଭେଶ ପକେଇଚି, ଚୋର ନା ଡକେଇତ ? ଚଦିକା ବାଟେରେ ମୋ ପେଟେରେ ଛୁରୀ ଭୂଷିଦିଏ ?
କ'ଣ ଡରୁଚୁ ?
ନାଇଁ..., ଡରିବି କିଆଁ... ?
ଡରିଲେ ମାଲ୍ ପାଇବୁନି ପୁଅ । ଜାଣିନୁ ବୀରମାନେ ବସୁନ୍ଧରା ଭୋଗ କରନ୍ତି । ଡରିଲେ ଶୂନ୍... ନ ଡରିଲେ କୋଟିପତି । କ'ଣ କହୁଚୁ ?
ମାହାରାଣୀ ଟଙ୍କା ଆଣିଚି ?
ଆଣିଚି-ଆଣିଚି । ଯାହା ଜବାବ୍ କରିଚି, ସେ ଜବାବ ମୁଁ ହାରିନି । ଏଇ ଦେଖ୍... ଏଇ ମୁଣାରେ ସେ ଟଙ୍କା ଗୁଡ଼ା ।
ମୁଣା ଉପର ମୁହଁ ବନ୍ଧା ହେଇ ଥେଲା । ବାଆଜୀ ତଳେ କଚି ଦେଲା । ଝଣ ଝଣ ହେଇ ଶୁଘିଲା । ମୋ କାନେରେ ନଦିଆ କୀର୍ତ୍ତନ ବାଜି ଉଠିଲା ।
କ'ଣ ତୁ ଯିବୁ ନା ମୁଁ ଯିବି ?
ନା... ନା..., ତେମେ ଯିବ କିଆଁ ? ତେମେ କ'ଣ ଭାବିଚ ମୁଁ ଛେରୁଆ ? ଚାଲ... । ମୁଁ ନାନ୍‌ଟିଣିଟା ଧଇଲା ବେଳୁକୁ ବାଆଜୀ କହିଲା : ହେଇରେ ବୋକଡ୍..., ଆଲୁଅ ନେଇ କୁଆଡ଼େ ବାହାରିଚୁ ? ସେଇ ଅନ୍ଧାର, ସେଇ ଅନ୍ଧାର ଆମୁକୁ ଭଲ । ଆଲୁଅରେ କ'ଣ ଦେଖେଇ ହଉଚୁ ନିଜୁକୁ ?
କ'ଣ ଅନ୍ଧାରେରେ ଯିବା ?

ହଁ ବେ..., ଏ ସବୁ ଅନ୍ଧାରିଆ କାମ । ଆଲୁଅରେ ନୋକ ଦେଖିବେ ବେ... ।

ମୁଁ ପଦାକୁ ବାହାରି ଆଇଲି । ବାଆଜୀ ମୋ ପଛେ ପଛେ ଆଇଲା । ବୁଢ଼ୀକୁ କବାଟ କିଳିଣି ଦବାକୁ ଡାକିଲିନି । ବାହାରୁ ଶିକୁଳୀ ଦେଇ କୋଲପ ପକେଇ ଦେଲି ।

ବାଆଜୀ ଆଗେ ଆଗେ ଚାଲିଚି ।

ମୁଁ ତା' ପଛେ ପଛେ ଚାଲିଚି ।

ସେମେତେ ନିଶା ଗରଜନ ରାତି ! ଚେଁ ନାଇଁ କି ସେଁ ନାଇଁ । ଖାଲି ନିଶବଦ, ନିକାଞ୍ଚନ, ନିହାଲ ରାତି । ଏଇ ଅନ୍ଧାର ରାତିକୁ ଭେଦ କରି ଆମେ ଦି'ଟା କୁଆଡ଼େ ଚାଲିଚୁ ? ଆମେ କ'ଣ ଦି'ଟା ଚୋର, ଟସ୍କର, ସତ୍ୟ ପୁରୁଷର ସତ୍ୟ ଧନୁକୁ ସିନ୍ଧି କରିବାକୁ ଛଡ଼ଯନ୍ତ୍ର ଚଳେଇଚୁ ? ଅନ୍ଧାର କାଟି ଗଲା ବେଲୁକୁ ଆମେ ଦି'ଟା ମଣିଷ ନୁହଁ, ଦି'ଟା ଭୂତ, ବାଆଜୀ ତା' କାଳିଆ ଚାଦର ଘୋଡ଼ି ହେଇଚି ଆଉ ମୁଁ ପୁଅର କାଳିଆ ନୁଙ୍ଗୀଟା ଘୋଡେଇଚି । ଆମେ କେହି କାହାକୁ ଦେଖି ପାରୁନାହୁଁ । ଶଳା..., ଆଜି କେତେ ଅନ୍ଧାର କିରେ ? ମୁଁ ଜମା ଚାଲି ପାରୁନି । ଏକରେ ବୁଢ଼ା ନୋକ । ଦୁଇରେ ତେହିଁକି ଫେଏଣି କଣା । ମତେ କ'ଣ କିଛି ଦୁଉଚି ? ମୁଁ କିନ୍ତୁ ଛାଡ଼ିବା ନୋକ ନୁହଁ । ବାଆଜୀକୁ ଆଜି ପଟାଏ ଆଚ୍ଛା କରି ଦେବି । ଉପୁରୁକୁ ପର୍କାରେ, ଭିତୁରୁକୁ ଆଉ ପର୍କାରେ । ଶଳା..., ଦି'ଟା ରୂପ । ବୋଇଲା କି: ପିଠା ଯାକେରେ ମଣ୍ଡା ବିଟୋଳ, ଜନ୍ତୁ ଯାକେରେ ପଣ୍ଡା ବିଟୋଳ, ମଣିଷ ଯାକେରେ କଣା ବିଟୋଳ, । ଦେଖ..., ଉପୁରୁକୁ ମୁଁ ଷାଠିଏ ହଜାର । ଭିତେରେ କିନ୍ତୁ ପଚାଶ ହଜାର । ଦେବି..., ଦେବି..., ଆଜି ବାଆଜୀକୁ ପଟି ଚଢ଼େଇ ଦେବି । ବାଆଜୀ ଯେମେତେ ସାତ ଜନମରେ ମେତେ ଭୁଲିବନି ।

ନୁଚି ନୁଚି ଆଗ ପଛ ହେଇ ଦାଣ୍ଡେରେ ନୁହଁ, ଗାଆଁ କିଆ ଗୋହିରୀ ଦଣ୍ଡା ବାଟେ ସାପୁକୁ ନ ଡରି, ବିଲୁଆ- କେନ୍ଦୁଆକୁ ନଡ଼ରି ବୁଲି ବୁଲି ସେଇ ଅନ୍ଧାରେରେ ଆମେ ଚାଲିଚୁ ମାହାଦେବଙ୍କ ପାହାକୁ । ମାହାଦେବ ହାବେଲୀ ପଛ କଡ଼େ ଯୋଉ ବୁଦା ଜଙ୍ଗଲ ଅଛି, ତା'ରି ଭିତେରେ ତା'ଗୁରୁ ମାହାର୍ଜା ବଇଚି । ତା'ରି ଆଗେରେ ଟଙ୍କା ଗଣା ହବ । ସେ ନବ । ମୁଁ ବି ମୋର ଦରବ ନେବି ।

ଜେ'ସୀୟାରାମ । କ୍ୟା ଆ ଗୟା ବେଟା ?

ଜୀ, ମାହାରାଜ୍ ।

ଅନ୍ଧାର ଭିତେରେ ନେମ୍ପୁଟାଏ ଜଳି ଉଠିଲା ।

ଇଏ ଶଳା... କିଏ କିରେ ? ଯାହା ଭାବିଥେଲି ଗୁରୁ ମାହାର୍ଜା ଓଳିଆ ନେଖା ଚେହେରା ହେଇଥିବ, ଏଇଟା କ'ଣ ଗୋଟାଏ ନଅଙ୍କିଆ, ଧେଡ ନେଖା ଦୁଉଚି ? କାପାଳିକୁଟା କିରେ ? କ'ଣ କାପାଳିକ ନେଖା କଳା ଚାଦର ପିନ୍ଧିକି ଅନ୍ଧାରେରେ ବଇଚି ? ଯୋଗିଣୀ ସାଧନା କରୁଚି ? ମତେ ମାରିଦେବ ?

ରୂପିୟା ଲାୟା... ?

ଜୀ, ମାହାରାଜ ।

ଯାଃ... ଶଳା ସେଇ ବାଙ୍କା ଭାଷା ହିନ୍ଦସ୍ତାନୀ ! ଭଉଣିଆ ଓଡ଼ିଆ କହନ୍ତାନି ?

ଦେ' ଦୋ' ବେଟା ! ଔର ଦେର୍ କ୍ୟୁଁ କରତେ ହୋ' ? ହାମାରେ ରକମ୍‌କୋ ଭି ଲେ ଯାଓ ! ବେଟା, ମତ୍ ଘବ୍‌ରାଓ । ହାମାରା ବଚନ ସତ ହୈ । ହାମାରା ପଥ ଭି ସତ୍ ହୈ ।

ହମାରା ପିତା ମାତା ଭି ସତ୍ ହେ । ଔର୍ ହାମାରା ଭଗବାନ୍ ବି ସତ୍ ହେ । ଯହ ଭୋଲେ ବାବା ଶିବ୍ ଶମ୍ଭୁଜୀକା ଧରମ୍ ଦୁଆର ହେ । ଶିବ୍ ଶମ୍ଭୁ ମାହାରାଜ୍‌ଜୀକା ସାମ୍‌ନେ ସବ୍ ଲେନା ଦେନା ହୋଗା । ବୋଲ୍ ଭାଇ... ବଂ ବଂ ଭୋଲା...

ମୁଁ ବାଇଆଙ୍କ ନେଖା କହିଲି-ବଂବଂ ଭୋଲା...

ଦାଲ୍ ହୀ ଦାଲ୍ ହେ

ନା କହୀଁ କାଲା

ମୁଁ ପାଳି ଧଇଲି: ନା କହୀଁ କାଲା

ବୋଲ୍ ବେଟା: ନା କୋଇ ଗୀଲା

ନହିଁ ହେ ଗୀଲା ।

ଯହାଁ ସବ୍ ହେ ଧୌଲା

ବିନ୍ ରଙ୍ଗୈଲା ।

ବୋଲ୍ ବେଟା ବଂ ବଂ ଭୋଲା...

ବଂ ବଂ ଭୋଲା ।

ରାତ୍‌କୀ ଅନ୍ଧେରୀ ନେହିଁ ହେ ବେ...

ଏ ରାତ୍ ନୈହୀଁ,

ଦିନ୍ ହେ ଦିନ୍, ପୂରା ଉଜାଲା ।

ବଂ ବଂ, ବଂ ବଂ ଭୋଲା ।

ବୋପାଲୋ ! ଏ ଶଳା ମତେ ଖାଇଗଲାରେ । ଏ ଶଳା କ'ଣ ହିନ୍ଦସ୍ତାନୀ ମୂଳା ଖାଇଚି କିବେ ? ଖାଲି ତ ହିନ୍ଦସ୍ତାନୀ ମୂଳା ରଡମଡ କରି ଚୋବଉଚି ? ଶଳା... ଏ କାଲ ଆଗେରେ କିଆଁ ଏତେ ହିନ୍ଦସ୍ତାନୀ ବେ ?

ରୂପିୟା ନିକାଲୋ ବେଟା ।

ନିକାଲ୍ କରତା ହାଏଁ । ହାମାର୍ ଦରବ କାହାଁ ଯାଏଛୋ ?

ହେ ବେଟା... । ଗୁରୁ କ'ଣ କଲା ନା, ମୁଣାରୁ ଦରବଟା ବାହାର କି ମୋ କଣା ଆଖି ଆଗେରେ ହଲେଇ ଦେଲା । ମୋ କଣା ଆଖି ଆଗେରେ ନାଗସାପ ସତିକା ଦୋହଲୁଚି । ନେମ୍ଭୁ ଆଲୁଅରେ ସରଗ ତାରା ଉଲୁକୁମତା ହେଇ ଯେମେତେ ମୋ ଆଖି ସାରା ନହଡ଼ି ଭାଙ୍ଗୁଚନ୍ତି ।

ମୋ ହାତୁକୁ ନାଗ ସାପୁଟାକୁ ବଢ଼େଇ ଦେଲା । ମୁଁ ଦି' ହାତେରେ ମୋ ରଙ୍କ ରତନୁକୁ ଧରି ପକେଇଲି । କି ଓଜନ କିରେ ? ଦି' କିଲେ ହବ ? ଉଁଃ... କି ନିଦା !

ମୁଁ ଟଙ୍କା ବିଡ଼ା ତକ ବାଆଜୀ ଗୋଡ଼ ତଳେ ଥୋଇ ଦେଲି । ନଅଙ୍କିଆର ଆଖିର ତେଜ ଦେଖ, ରାତିରେ ବଣଭୁଆ ଆଖି ସତିକା ଦାଉଁକିନା ଜଳି ଉଠୁଚି । ତା' ପାଚିଲା ଦାଢ଼ିକୁ ଆଉଁଷି କହିଲା: କିତ୍‌ନା ରୂପିୟା ।

ଷାଠିଏ ହଜାର ।

ନାଃ... । ଠିକ୍ ହି । ଇତନା ରୂପିୟାଁ ଗିନ୍‌ନେ କୋ ଅଭି ଟାଇମ୍ ନହାଁ ହେ । ଷାଠ ହାଜାର୍ ଏକଦମ ଠିକ୍ ତୋ ?

ଏକଦମ୍ ଠିଇକି କହତା ହେଁ ଅଛୁଁ । ମିଛ ନାହିଁ କହିବା- ନାହିଁ କହିବା ।

ମୁଣାରୁ ଶହେ ଟଙ୍କିଆ ବିଡ଼ା, ପଚାଶ ଟଙ୍କିଆ ବିଡ଼ା, କୋଡ଼ିଏ ଟଙ୍କିଆ, ଦଶ ଟଙ୍କିଆ, ପାଞ୍ଚ ଟଙ୍କିଆ ବିଡ଼ା ଗଳ ଗଳ ହେଇ ଗଳି ପଡୁଚି ! ଟୋକା ବାଆଜୀ ସାଉଁଟି ପକଉଚି । ସାଉଁଟି ପକେଇ ଗୋଟାଏ ବଡ଼ ମୁଣାରେ ଥୋଉଚି । ତାଆସ ଖୋଲିଲା ନେଖା ଖାଲି ଖୋଲୁଚି ।

ବୁଢ଼ା ବାଆଜୀ କହିଲା- ୟହ ଶିବ୍ ଶମ୍ଭୁଜୀ କା ଧରମ୍ ଦରବାର୍ ହୈ । ଷାଠ୍ ହଜାର ଏକ୍ ଦୋ ତିନ୍ କର୍ ହମ୍ ଗିନେଙ୍ଗେ ନୈହିଁ । ହାମାରେ ତୁମ୍ ପର୍ ଅଟଲ୍ ବିଶ୍ୱାସ ହୈ । ଦେଖୋ, ୟହ ଦରବାର ମେ ହମ୍ ତୁମ୍‌କୋ ଯୋ ରକମ୍ ଦିଏ ହେଁ, ଇସିଲିୟେ ତୁମ୍ ହମ୍‌କୋ ଜିନ୍ଦଗୀ ଭର୍ ସ୍ମରନ୍ କରେଙ୍ଗେ ।

ହାଁ... ହାଁ..., ଇସିମରଣ କରେଗା ।

ପ୍ରେମ୍ ସେ ବୋଲ୍ ବେଟା : ଜେ' ସୀୟାରାମ ।

ଜେ' ସୀୟାରାମ୍ ।

ଯାଓ ବେଟା..., ଆଶୀର୍ବାଦ କରତା ହୁଁ ତୁମ୍ ରାଜା ସେ ମାହାରାଜ୍ ବନ୍‌ଯାଓ !

ଦି'· ବାଆଜିଙ୍କ ଗୋଡ଼ ତଳେ ପଡ଼ିଗଲି । ମୁଁ କାଠୁଟାଏ, କେଜାଣି କିଆଁ ମୋର ଆଖିରେ ଦି' ବୁନ୍ଦା ନୁହ ଜକେଇ ଆଇଲା । ଆଜି କି ଶୁଭ ରାତି ମୋର କେଜାଣି, ଏମାନଙ୍କ ପାଇଁ ମୋର ଭାଗ୍ୟ ପରିବର୍ତ୍ତନ ହେଇଗଲା । ଗୁରୁଙ୍କ ପା' ତଳେ ପଇଲା ବେଲୁକୁ ଗୁରୁ ମୋ ମୁଣ୍ଡକୁ ଆଉଁଷି କହିଲେ : ଚିରଞ୍ଜୀବ୍ ବନୋ ବେଟା । ଯାଓ... ଯାଓ... ରାତ୍‌ମେ ବାହାର୍ ରହନା ଆଛା ନୈହିଁ ।

ସାନ ବାଆଜୀ ହଜାରେ ମାହାରାଣୀ ଟଙ୍କା ମୁଣାକୁ ମୋ ହାତେରେ ଧରେଇ ଦେଲା, କହିଲା- ଗିନ୍ ଲୋ ବେଟା ।

ଶଳା... କେତେ ରୋଜନ ହେଇଚି ! ମୋ ହାତ ନାଟିକାକୁ ଛିଡେଇ ଦଉଚି । ଟଙ୍କା ଗଣିବି ?

ମୁଣାର ଚୁଟି ଏମେତେ ପିଲାଷ୍ଟିକି ସୂତାରେ ପିଇକି ବନ୍ଧା ହେଇଚି ଯେ ମୁଣା ଗଣ୍ଠି ସହଜେ ଖୋଲିବନି । ତା' ଛଡ଼ା ଏତେ ବଡ଼ ଅବିଶ୍ୱାସୀ କାମୁଟାଏ ମୁଁ କିଆଁ କରିବି ! ଭଲ ହବନି । ସିଏ ତ ମୋ ଟଙ୍କା ଗଣିଲେନି । ଦଶ ହଜାରେ ପଛେ ମୁଁ କମି କରି ଦେଇଚି । ସିଏ ମତେ ବିଶ୍ୱାସରେ ଆଦରି ନେଲେ । ମୁଁ କିଆଁ ତାଙ୍କୁ ଅବିଶ୍ୱାସ କରିବି ?

ଯାଓ ବେଟା ଯାଓ... , ମହାରାଜା ବନ୍‌କେ ହମ୍‌କୋ ସ୍ମରନ୍ କରେଙ୍ଗେ । ଯାଓ...

ମୁଣ୍ଡିଆ ମାରି ଉଠି ପଇଲି ।

ଜେ' ସୀୟାରାମ !

ଜେ' ସୀୟାରାମ !

ଏକୁଟିଆ ଘରୁକୁ ନୋଉଟି ଆଇଲି । ମନୁଟା ହୁଲାସ ହେଇ ଖାଲି ପକ୍ଷୀ ନଗେଇ ଦୋଳି ଖାଉଚି । ମୁଁ ଏଥର ରଜା । ବାଁ ହାତେରେ ମୋର ନାଗସାପ ଗଣ୍ଠି ହଳିଦିଆ ଦରବ । ଡାହାଣ ହାତେରେ ମାହାରାଣୀ ଟଙ୍କା ହଜାରେ । ଥିଇରିକି କୋଲପ ଖୋଲି ଘର ଭିତୁରୁକୁ ପଶିଗଲି । ମିଞ୍ଜି ମିଞ୍ଜି ହେଇ ନାନ୍‌ଟିଣି ଜଳୁଚି ।

ତେଜି ଦେଲି ।

ନାଗ ସାପୁଟାକୁ ଆଗେ ବାହାର କରି ଖଟୁଟା ଉପେରେ ଥୋଇ ଦେଲି । ବୋପାଲୋ..., କି କଥା କିରେ ? ସରଗର ତରା ସତିକା ଫୁଟିକି ବାହାରି ପଡୁଚନ୍ତି ଚିକି ଚିକି । ଜିକି ଜିକି । ମୋ ଧନ କିଲୋ. . ! ମୋ' ବୋପା କିଲୋ... ! କେଡ଼େ ଭାଗ୍ୟ ବଲୁଆ ନୋକଟାଏ ମୁଁ

କିରେ ? ନାଃ ଆଉ ପଦାରେ ଏଡ଼େ ବଡ଼ ଦରବୁଟାକୁ ରଖି ହବନି । ସିନ୍ଦୁକେରେ ଯାଇଚି ପୂରେଇକି ନୂଚେଇ ଦେବି ! ସିନ୍ଦୁକେରେ ଦରବୁଟାକୁ ଥୋଇ ଦେଲି ।

ଏଡ଼େ ବଡ଼ କାମୁଟାଏ ଚାଲିଚି, ଯାହା ହଉ କେହି ଜାଣି ପାରୁନାହାନ୍ତି । ଖାଲି ଯାହା ମୁଁ ଜାଣେ, ଏ ସିନ୍ଦୁକ ଜାଣେ, ଏ ନାନ୍‌ଟିଣି ଜାଣେ, ଏ ଘର, ଓରା, ଶେଣି, ଚାଳ ଜାଣେ । ନ ହେଲେ ନାଇଁ, କେହି ନାଇଁ ।

ଟଙ୍କା ମୁଣାଟା ଉଠେଇଲି । ଝଣ... ଝଣ... ! ଟଙ୍କା ମୁଣାଟାକୁ ଥୋଇଲି । ଝଣ ଝଣ । ଟଙ୍କା ମୁଣାକୁ କଡ଼େଇ ଦେଲି । ଖାଲି ଝଣ ଝଣ । ସତିକା ଘୁଙ୍ଗୁର ପିନ୍ଧି ମାହାରାଣୀ ମୁଣା ଭିତେରେ ଖୋଦ୍ ନାଚୁଚି । ଏ ସରୁ ସୂତାରେ ଶଶୁର କେଡ଼େ ଜୋର୍‌ରେ ଗଣ୍ଠି ପକେଇଚି କିରେ ? ତା' ମା'କୁ... ! ଜମା ଖୋଲୁନି । ମୁଁ ଯେତିକି ଉଚ୍ଚାଟ, ଛଟପଟ, ଏ ଗଣ୍ଠିର ସେତିକି ନଟକୁଟ । ଗୁଆକାତିଟାଏ ଆଣିକି ଗଣ୍ଠିଟା କାଟି ଦେଲି ।

ଜକ ଜକ ମାହାରାଣୀ ଟଙ୍କା । ହାଃ... ହାଃ... ହାଃ... !

ଏ ଶଳା... ! କଅଣ... ? କଅଣ... ? କଅଣ... ?

ହାଁ... ହାଁ...ରେ ଶଶୁର... ! ଇଏ କଅଣ... ?

ମୋ ଛାତି ଫାଟିଗଲା ।

ଆରେ, ମୋ ଆଖିରେ ଇଏ କଅଣ ଦେଖୁଚିରେ... ?

ମତେ ଅନ୍ଧାର ଘୋଟିଗଲା ।

ହେଇବେ..., ଇଏ କଅଣ ? ଟଙ୍କା ନେଖା ଗୁଡ଼ାଏ ଗୋଲିଆ ଗୋଲିଆ ସୀସା ଖଟୁଟା ଉପେରେ ଗଦା ହେଇ ପଡ଼ିଚି !

ହେଇବେ... ମାଦରଚୋତିଆ... ସତ୍ୟାନାଶିଆ ! କେଡ଼େ ବଡ଼ କଥାଟାଏ କହିଥେଲୁରେ..., ସତ୍ୟ ମୋ ବଚନ । ସତ୍ୟ ଭଗବାନ । ଶଳା... ସତ୍ୟ ନଂଘିଲୁରେ ! ଡକେଇତ ହେଇ ବାଆଜୀ ସାଜି ମୋ ବଅଁଶ ବୁଡ଼େଇଲୁରେ... ! ମତେ ଅଧା ନଈରେ ପେଲି ଦେଲୁରେ... !

ଆଉ ସିନ୍ଦୁକ ଭିତେରେ ଯୋଉଟା ରଖିଚି ? ସେଇଟା କ'ଣ ବେ... ?

ସୁନା... ?

ନା

ପିତଳ... ?

ମୋର ଅଣଚାଶେ ଉଠିଲାଣି । ମୋର ଧଅକ ବାହାରି ପଇଲାଣି । ଶଳା..., ସୁନା ନା ପିତଳ ବେ... ?

ସିନ୍ଦୁକ ଖୋଲିଦେଲି ଭୁଷ୍‌କିନା । ଶଳା..., ସିନ୍ଦୁକ ଭିତେରେ ନାଗ ସାପୁଟା ଶୋଇଚି । ମତେ ଅନେଇ ଫଁ... ଫଁ... ହଉଚି । ହେଇବେ..., ଏଇଟା ସୁନା ନା ପିତଳ ? ନାଗ ସାପୁଟାକୁ ବାହାର କରି ଆଣି ଖଟୁଟା ଉପେରେ ଫୋପାଡ଼ି ଦେଲି । ନଅ ସରିଆ ବଡ଼ ପଦକ ଥବା ସୁନା ହାର ।

ଆରେ..., ନାଇଁରେ ଭାଇ..., ଏଇଟା ସୁନା ନୁହଁ । ଏଇଟା ପିତଳୁଟାଏରେ... । ନିଶ୍ଚେ ପିତଳୁଟାଏ ! ଟଙ୍କାଗୁଡ଼ା ଚଦିକା ସୀସା ହେଲା, ଏଇଟା କ'ଣ ମୋ ପାଇଁ ସୁନା ହେଇଥବ !

ମୋ ଆଖି ଆଗେରେ ସେଇ ଦି'ଟାଯାକ କାପାଳିକ ଦୁଶା ପଡ଼ି ଯାଉଚନ୍ତି । ଦି'ଟା ଯାକ

ଭୂତ ହେଇ ଠୋ'... ଠୋ'... ହସୁଚନ୍ତି । ଗୋଟାଏ ଅତରଛାନିଆ କାଲୁଅ ଜାଡ ମୋ ମଞ୍ଜ ହାଡୁକୁ ଥରେଇ ଦେଲା ।

ଆରେ..., ସେ ଦି'ଟା ଠକ !

କବାଟ ଖୋଲି ସେଇ ଠକ ଦି'ଟାଙ୍କ ପଛେରେ ଧଉଡ଼ିବି ?

ଧଉଡୁଚି ! ଧଉଡୁଚି ! ସେଇ ଅନ୍ଧାର ଭିତେରେ ମୁଁ ବାବେନା ହେଇ ଧଉଡୁଚି ! ମୋ ଟଙ୍କା... ! ମୋ ଟଙ୍କା... ! ଗୋଟାଏ ନୁହଁ, ଦି'ଟା ନୁହଁ । ବିଡ଼ା ବିଡ଼ା ଟଙ୍କା । ସେଇ ବିଡ଼ା ବିଡ଼ା ଟଙ୍କା, ଯାହା ଗଳ ଗଳ ହେଇ ଆଣ୍ଠୁଯାଏ ଗଦା ହେଇ ଯାଇଥେଲା, ସେସବୁ ଶେଷେରେ କ'ଣ ହେଲା, କ'ଣ ହେଲା, କ'ଣ ହେଲା, କ'ଣ ହେଲା ?

ହା'ରେ ଦଇବ... !

ବେଲ ଗଛ ମୂଳେ କେହି ନାହାନ୍ତି । ନୋକ ନାଇଁ । କେହି ନାଇଁ । ନେମ୍ଭୁ ନାଇଁ । କେହି ନାଇଁ । ସତ୍ୟ ବଚନ ନାଇଁ । କେହି ନାଇଁ । ଖାଲି ଅନ୍ଧାର ଅଛି । ବେଲଗଛ ଅଛି । ବେଲ ଗଛ ମୂଳେ ବୁଦା ବୁଦାରେ ଖାଲି ମିଛ ନେସି ହେଇ ରହିଚି । ମିଛ । ମିଛ ।

ଜୀବନଯାକ କେବେ ସତ ପଦେ କହିନି । ସଦାବେଳେ ମିଛ । ଯେତିକି ମୋ ଦିହର ରୁମ, ସେତିକି ମୋ ମିଛ । ସତ ମିଛର ତଫାତେଟା ମୁଁ କ'ଣ ଜାଣିନି । ଆଜି ମୁଁ ନିଜେ ଜାଣି ଅଜଣା ହେଇ ମିଛ ହାବୁଡ଼େରେ ମୋ ବେକୁଟାକୁ ଦେଖେଇ ଦେଲି ? ମିଛଟାକୁ ମିଛ ପଟି ମାରି ଦେଲା ?

କ'ଣ କରିବି ? କାନ୍ଦିବି ? ବୋବେଇବି ? ଏଇ ବେଲ ଗଛଟା ମୂଳେ ପଥରେରେ ମୁଣ୍ଡ ବାଡ଼େଇବି ? ଦେଉଳ ଦୁଆର ପଥର ପାହାଚରେ ମୁଣ୍ଡ ବାଡ଼େଇ ରଡ଼ି ଛାଡ଼ିବି: ମୋର ସବୁ ନୂଟି ନେଲୁରେ ଦଇବ.... !

ଧଉଡ଼ିଲି ।

ଅନ୍ଧାର ଭିତେରେ ଆଗେ ଆଗେ ସଡ଼କ । ଧଉଡ଼ିଲି ।

ଶଳା...., ମୁଁ ବୁଢ଼ାଟା... । ଧଉଡ଼ିବାକୁ ଛାତିରେ ବହପ କାହିଁ ? ଧଉଡ଼ିଲି ।

କାହିଁ ନେମ୍ଭୁ ?

ଭାଇରେ... ! ମୁଁ ଧଉଡ଼ି ପାରୁନିରେ... !

ମୋ ଟଙ୍କା... ?

ମୋ ବୁନ୍ଦା ବୁନ୍ଦା ରକତ ?

ଅନ୍ଧାର ସତିକା ଆଗୁରୁ ଆସି ମତେ ଠେଲି ପକଉଚି । ଅଣଚାଶ ସତିକା ମୋ ଛାତିରୁ ବାହାରି ମୋ ନାକୁକୁ ଚୁଣ୍ଟା ନଗେଇ ଦଉଚି । ମୁଁ କଲବଲ ହେଇ ଧଉଡ଼ି ପାରୁନିରେ... !

ହେଇଟି ଛକ ପଇଲାଣି । ବାଁ ପାଖେ ସଡ଼କ, ଡାହାଣ ପାଖେ ସଡ଼କ । ଆଗ ଛମା ସଡ଼କ । ଏ ତିନି ସଡ଼କରେ ସେ ଠକ ଦି'ଟା କୋଉ ବାଟେ ଯାଇଥେବେ ?

ଏଁ ?

କୋଉ ବାଟେ ଯାଇଥେବେ ?

ମୁଁ କାହାକୁ ପଚାରୁଚି ଏ କଥା ?

ଯାଉଚି ବସି ପଡ଼ିବି ! ଆରେ..., ମୁଁ ବସିଲି କିଆଁ ? ବସିଲି କିଆଁ ? ବଳ ପାଉନି ? ପାଇବ । ପାଇବ । ଧଉଡ଼ିଲି । ଧଉଡ଼ିଲି ।

ନାଃ... କେହି ନାହିଁ । ଥକା ହେଇ ଠିଆ ହେଇ ପଡ଼ିଲି ।

ଭାରି କାନ୍ଦ ମାଡ଼ିଲା ।

ନାଃ... କାନ୍ଦିବାର ବେଳ ଇଏ ନୁହଁ । ପଛକୁ ଫେରି ଫେଏଣି ବାଁ ପାଖ ସଡ଼କେରେ ଧଉଡ଼ରେ... ! ସେମାନେ ଏଇବାଟେ ଯାଇଥେବେ । ଚେରେଷ୍ଟା କରରେ...

ଫେଏଣି ଧଉଡ଼ିଲି ।

ହାଃ... ମୋ ଟଙ୍କା... ! ହାଃ... ମୋ ଟଙ୍କା... !

ମୋ ମୁଣ୍ଡ ଧମ ଧମ ହଉଚି । ଦିହଯାକ ସରସର ଝାଳ । ପାଟିରେ ବେଙ୍କାଏ ରୋଟା ନିଃଶ୍ୱାସ । ମୋ ଆଖିରୁ ଜୁଲୁଜୁଲିଆ ବାହାରି ପଡୁଚି । ମୋ ତଣ୍ଟି ଅଠା ଅଠା ହେଇ ଯାଉଚି । ହେ ବୁଢ଼ୀ... ! ହେ ମୋ ପୁଅ କୁଷ୍ଟଁଚନ୍ଦର । ଆରେ... ତୋ ସାଙ୍ଗମାନେ ତତେ ଶରଧାରେ, କେଡ଼େ ମନେରେ କେ.ସି. ଡାକନ୍ତିରେ ! ତୁ ତ ଯାତେରା ଦେଖି ଯାଇଚୁରେ... । ତୋ ମା' ମାଡ଼ ଖାଇ ଗୁଷିକି ଶୋଇଚି ! ଆଉ ଏ ବୁଢ଼ାଟା କି କଲବଲ ହେଇ ରାତିରେ ଧଉଡ଼ୁଚି ନିଜ ଭୁଲ୍ ଯୋଗୁଁ । ଆରେ... ଧାଇଁ ଆସରେ..., ଆମର ସବୁ ନେଇ ଗଲାରେ... ! ଆମ ବଅଁଶ ନାଶ ହେଇଗଲାରେ... !

ମୁଁ ଦିନୁଟାଏ ତମୁକୁ କାହାକୁ ଭଲ ଗଣ୍ଡାଏ ଖାଇବାକୁ ଦେଇନି । ଭଲ ଖଣ୍ଡିଏ ପିନ୍ଧିବାକୁ ଦେଇନି । ହାତୁକୁ ଟଙ୍କାଏ, ମଶାଏ ଖରଚ କରିବାକୁ ଦେଇନି । ଖାଲି ଖିଟି ଖିଟି, ପରାଭବ ଏଇ ଟଙ୍କା ଯୋଗୁଁ ଭୋଗେଇଚି । ହେଲେ, ସେଇ ଟଙ୍କା ତକ ମୋ ଆଖିରେ ପର ନଗେଇ ସିଏ ନେଇ ଗଲେରେ ।

ହେ ଭାଇଏ..., ଆହେ ଧଉଡ଼ି ଆସହେ ! ମେତେ ଭଲା ଟିକେ ସାହାର୍ଯ୍ୟ କର ହେ... ! ମୁଁ ନେହୁରା ହଉଚି । ମୋ ଦିହେରେ ଆଉ ବଳ ନାହିଁ । ମୁଁ ଧଉଡ଼ି ପାରୁନି ।

ତେମେ ଆପଣଙ୍କୁ ମୁଁ ସଦାବେଳେ ଅବିଶ୍ୱାସ କରିଚି । ମୋ ଟଙ୍କା କାଳେ ତେମେ ଚୋର ହେଇ ନେଇଯିବ ବୋଲି, ଖାଆସେ ଅବିଶ୍ୱାସ କରିଚି । ଘରେ ତମୁକୁ ପୂରେଇ ଦେଇନି । ଟୋପାଏ ପାଣି ବି ଦେଇନି । ତମ ଭଲ ମନ୍ଦ ବିଚାର କରିନି । ତମୁକୁ ଖାଲି ସୁଧ ନଗେଇ ଟଙ୍କା ଦେଇ ଦି'ଗୁଣା କରି ଟଙ୍କା ଭିଡ଼ିଚି । ତେମେ ସବୁ ଆଉ ମୋ କଥା ଧରନା । ଖଙ୍ଗସ ପାଅନା । ମୋ ଟଙ୍କା ଆଣିକି ମତେ ଦିଅ ହେ... ! ମୋ ଅଣ୍ଟିରେ ଓଜାଡ଼ି ଦିଅ !

ନଇଲେ ମୁଁ ମରିଯିବି !

ତେମେ ମତେ ବାରମ୍ବାର କହିଚ । ମୁଁ ଶୁଣିନି ।

ମୁଁ ଶୁଣିନି ସେ ବଚନ । ମନେ ପଡୁଚି ।

ମନେ ପଡୁଚି ! ଆହା... ! କିଆଁ ଏ ବେଳେରେ ମନେ ପଡୁଚି ?

''ଦୁଃଖେ ସଞ୍ଚିତ ଯେତେ ଧନ, ସେ ନୁହେଁ ସୁଖେ ପ୍ରୟୋଜନ ।

କର୍ମୁ ଅଧିକ ଯହୁଁ ଫଳେ, ଦଇବ ହରି ନିଏ ବଳେ ।''

ହାଃ... ! ହାଃ... ! ଇଏ କ'ଣ ସତ୍ୟ ବଚନ ?

ତେମେ ସବୁ ମୋ ପାହାକୁ ଆସ ଯେତେବେଳେ ମୁଁ ତମ ମୁହଁକୁ ଜମା ଚାହେଁନି । ତେମେ କେତେ ନେହୁରା ହଅ ମୋ ପାଖେରେ । କଂସା, ଡାଳ ଆଣି ମୋ ପାଖେରେ ଟଙ୍କା ପାଇଁ ଠିଆ ହଅ । ମୁଁ ଜମା ଶୁଣିନି ତମ କଥା । ହାତ ଖୋଲି କେବେ ଟଙ୍କା ଦେଇନି । ତମଠୁ ହାତେରେ ବାଡେଇ ଟଙ୍କା କଷିଚି । ତେମେ ମୋ ପାହାଚ ପଥରେରେ ମୁଣ୍ଡ ବାଡ଼େଇଚ । ନୁହ

ଗଡ଼େଇଚ । ନିଃଶ୍ୱାସ ଛାଡ଼ିଚ । ମୁଁ ଜମା ଶୁଣିନି ତମ କଥା । ଆଜି ମୁଁ ନିଜେ ମୁଣ୍ଡ ବାଡ଼ଉଚି ଏ ସଡ଼କେରେ । ମୋ ଟଙ୍କା ଆଣି ମତେ ଦିଅରେ... !

ସମେତେ ମୋ ପୁଅ..., ମୋ ଭାରିଯା..., ମୋ ଭାଇ ବନ୍ଧୁ କିଏ ଅଛରେ ଦେଖ..., ମୁଁ ଏଇ ସଡ଼କେରେ, ଏଇ ଅନ୍ଧାର ଭିତେରେ କି କଲବଲ ହଉଚି !

ମୁଁ ଘୁଷୁରୁଚି ।
ହାଁ... ହାଁ... ହେଇ ।
ମୁଁ ମଣିଷୁଟାଏ ନୁହଁ ।
ଛାତିରେ ଭରା ଦେଇ ଘୁଷୁରୁଚି ।
ସାପ ନୁହଁ । ବେଗେ ହେଲେ ଧଉଡ଼ନ୍ତି !
ଗୋଟାଏ କାଳିଆ, ଧୁମୁଷା ଗୋଧି ମୁଁ ।
ଗୋଧି ମୁଁ,
ଚାରି ଗୋଡ଼େରେ ଭରା ଦେଇ
ମୁଁ ମୋ ଟଙ୍କା ପାଇଁ ମୋ ପୋଡ଼ି ଯାଉଥିବା ହଂସାର ଶ୍ୟାନ୍ତି ପାଇଁ
ଏଇ ଧରମ, ସତ୍ୟ ପଥରେ
ଘୁଷୁରି ହଉଚି,
ମୁଁ ଗୋଧି !



# ସୁବର୍ଣ୍ଣ ଜୟନ୍ତୀ

## ବରେନ୍ଦ୍ର କୃଷ୍ଣ ଧଳ

ରାଜଧାନୀର ସନ୍ଧ୍ୟା, ଭୁବନେଶ୍ୱରର ଆକାଶ ମେଘାକ୍ରାନ୍ତ, ରାସ୍ତାରେ ଗାଡ଼ି ଚାଲିଛି । ମେଘ ଢଙ୍କା ଆକାଶକୁ ଦେଖି ତ୍ରସ୍ତ ପଦରେ ପଥଚାରୀମାନେ ଦ୍ରୁତ ପଥ ପରିକ୍ରମା କରୁଛନ୍ତି ।

ବର୍ଷା ପରେ ରାଜଧାନୀ ବେଶ୍ ଛିମ୍‌ଛାମ୍ ପରିଚ୍ଛନ୍ନ ଦେଖାଯାଏ । ବର୍ଷାଜଳ ସବୁ ମଇଳା ଧୋଇନେଇ ରାସ୍ତାଘାଟ ପରିଷ୍କାର କରି ଗଛବୃକ୍ଷ ସତେଜ କରିଦିଏ ।

ସନ୍ଧ୍ୟାର ଏଇ ପାତଳ ଅନ୍ଧକାରରେ ରଘୁନାଥ ବଳିୟାରସିଂହ ଧୀରେ ଧୀରେ ରାସ୍ତା ପାର ହୋଇଥିଲେ । ଅନ୍ୟମାନଙ୍କ ଭଳି ବର୍ଷା ଭୟରେ ଦ୍ରୁତ ପଦଚାଳନା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇ ବ୍ରହ୍ମପୁର ଜେଲ୍‌ରେ ଥିଲାବେଳେ ଥରେ ସେମାନେ ଜାନୁଆରୀ ଛବିଶ ତାରିଖ ଦିନ ଜେଲ୍ ପରିସରରେ ତ୍ରିରଙ୍ଗା ଝଣ୍ଡା ଉତ୍ତୋଳନ କରିଥିଲେ । ସେମାନଙ୍କୁ ସେଥିରେ ବାଧା ଦେବା ପାଇଁ ପୋଲିସ୍ ଅନ୍ଧାଧୁନିଆ ଲାଠିଚାଳନା କରିଥିଲା । ପିତ୍ତଳ ଗୋବ ଥିବା ଗୋଟାଏ ଲାଠିର ଶକ୍ତ ପ୍ରହାର ଲାଗିଥିଲା ତାଙ୍କ ବାମ ଆଣ୍ଠୁରେ । ଆଣ୍ଠୁ ଭାଂଗିଯାଇଥିଲା । ସେ ମାଟିରେ ଲୋଟି ପଡ଼ିଥିଲେ । କିନ୍ତୁ ତ୍ରିରଙ୍ଗା ଝଣ୍ଡାକୁ ତଳେ ପକାଇବାକୁ ଦେଇ ନଥିଲେ । ଡାହାଣ ହାତରେ ଟେକି ଧରିଥିଲେ ପତାକା । ଗର୍ଜି ଉଠିଥିଲେ– ବନ୍ଦେ ମାତରଂ ।

ଦ୍ୱିତୀୟ ମହାଯୁଦ୍ଧ ଶେଷ ହେବା ପରେ ଚାରିବର୍ଷ ଜେଲ୍‌ଦଣ୍ଡ ଭୋଗି ସେ ମୁକ୍ତ ହେଲେ । କିନ୍ତୁ ଆଣ୍ଠୁ ଆଉ ସମ୍ପୂର୍ଣ୍ଣ ଯୋଡ଼ି ହେଲା ନାହିଁ । ଅସ୍ତ୍ରୋପଚାର ପରେ ସେ ଚାଲିପାରିଲେ ସତ, ହେଲେ ଟିକିଏ ଅଖଂଜରେ ପାଦ ପଡ଼ିଗଲେ ସେ ଯୋଡ଼ା ହୋଇଥିବା ବାମ ଆଣ୍ଠୁ ହଠାତ୍ ରକ୍‌କିନି ହୋଇଯାଏ । ସେ ଦ୍ରୁତ ବେଗରେ ସେଇଦିନୁ ଚାଲିପାରନ୍ତି ନାହିଁ । ସ୍ୱାଧୀନତା ସଂଗ୍ରାମର ଯନ୍ତ୍ରଣା ଆଣ୍ଠୁ ସନ୍ଧିରେ ସଂଚିତ ହୋଇଥାଏ । ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ରାଜଧାନୀରେ ପାଳିତ ହେଉଥିବା ଖବର ପାଇ ସେ ଗ୍ରାମରୁ ଏ ରାଜଧାନୀ ସହରକୁ ଆସିଛନ୍ତି ।

ଆଜିକାଲି ଓଡ଼ିଶା ପରିବହନ ବିଭାଗ ବସ୍‌ରେ ଯାହା ଅବସ୍ଥା, ଅଙ୍ଗେ ଲିଭେଇଲେ ସ୍ୱାଧୀନତା ସଂଗ୍ରାମୀ ବଳିୟାରସିଂହ । ବାଟରେ ଦୁଇଥର ଗାଡ଼ି ଚକା ଫାଟିଗଲା । ରାଜଧାନୀରେ ବସ୍ ପହଞ୍ଚିଲା ଚାରିଘଣ୍ଟା ବିଳମ୍ବରେ । ସଂଧ୍ୟା ହୋଇଗଲା ।

ରଘୁନାଥ ଯିବେ କୁଆଡ଼େ ? ଏ ରାଜଧାନୀ ସହରରେ କେହି ତାଙ୍କର ଆତ୍ମୀୟ ସ୍ୱଜନ ନାହାନ୍ତି । ତାଙ୍କ ସହିତ ସ୍ୱାଧୀନତା ଲଢ଼େଇରେ ଭାଗ ନେଇ ଯେଉଁମାନେ ଲାଠିମାଡ଼ ଖାଇଥିଲେ, ଜେଲ୍ ଯାଇଥିଲେ, ସେମାନଙ୍କ କଥା ମନେ ପଡ଼ିଗଲା ରଘୁନାଥଙ୍କର । ସେଇମାନେ ତ ତାଙ୍କର ପରମାତ୍ମୀୟ ।

ପୁରୁଣା ବସ୍‌ଷ୍ଟାଣ୍ଡରୁ ଓହ୍ଲାଇ ଘୁଷୁରି ଘୁଷୁରି ଏ.ଜି. ପାଖରେ ପହଞ୍ଚି ସେ ଚାରିଆଡ଼କୁ ଅନେଇଲେ । ସାମ୍ନାରେ ଏକ ବିରାଟ ମୂର୍ତ୍ତି । ଆଖିକୁ ତାଙ୍କର ଆଜିକାଲି ଭଲ ଦେଖାଯାଉନାହିଁ ।

କିନ୍ତୁ ସେ ଅନୁମାନ କରିପାରିଲେ– ଏ ନିଶ୍ଚୟ ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ମୂର୍ତ୍ତି ହୋଇଥିବ– ଯାହାଙ୍କ ଡାକରାରେ ସେ ଦିନେ ସ୍କୁଲ୍‌ରେ ପାଠପଢ଼ା ଛାଡ଼ିଦେଇ ବୟାଳିଶ ଅଗଷ୍ଟ ବିପ୍ଳବରେ ଝାମ୍ପ ଦେଇଥିଲେ ।

କିନ୍ତୁ ମୂର୍ତ୍ତି ପାଖକୁ ଯାଇ ତାଙ୍କର ମୋହ ଭଙ୍ଗ ହେଲା । ଆରେ ଏ ଗାନ୍ଧୀ ମହାରାଜ ନୁହନ୍ତି– ରାଜଧାନୀର ହୃତ୍‌ପିଣ୍ଡ ଉପରେ ସ୍ପର୍ଦ୍ଧିତ ଭଙ୍ଗୀରେ ଠିଆ ହୋଇଛନ୍ତି ବାବା ସାହେବ ଆମ୍ବେଦକର !

ଆମ୍ବେଦକର ଦରିଦ୍ର, ଉପେକ୍ଷିତ, ଦଳିତମାନଙ୍କର ସାହା ଭରସା । ସେ ତାଙ୍କ ମୂର୍ତ୍ତି ପାଖରେ ମୁଣ୍ଡିଆଟାଏ ମାରିଦେଇ ଲଥିକିନା ତାଙ୍କ ମଣ୍ଡପ ଉପରେ ବସି ପଡ଼ିଲେ ।

ହଠାତ୍ ଶୁଣାଗଲା ବାବା ସାହେବଙ୍କ କଣ୍ଠସ୍ୱର,

– ତୁମେ କିଏ ?

– ମୁଁ ସ୍ୱାଧୀନତା ସଂଗ୍ରାମୀ ରଘୁନାଥ ବଳିୟାରସିଂହ । ଆଜି ରାତିଟା ଆପଣଙ୍କ ପାଦ ତଳେ ବସି କଟାଇଦେବାକୁ ଆସିଛି ।

ହଠାତ୍ ବାବା ସାହେବ ଖିଙ୍କାରି ହୋଇଉଠିଲେ । କହିଲେ– ତମ ମୁଖ୍ୟମନ୍ତ୍ରୀ ଏଠାରେ ରାଜୀବ ଗାନ୍ଧୀଙ୍କୁ ବସାଇବେ ବୋଲି ଠିକ୍ କରିଥିଲେ । ଆମ ହରିଜନ ଭାଇମାନେ ମୁଖ୍ୟମନ୍ତ୍ରୀଙ୍କୁ ହଲାପଟା କରି ନଥିଲେ ଏଠି ଇମର୍ଜେନ୍ସି ମହାରାଣୀଙ୍କ ପୁଅ ବସି ଥାଆନ୍ତେ । ତମେ ସବୁ ଟୋପି ଟେକି ଜୁହାର କରୁଥାଆନ୍ତ । ମୋ କଥା କେଉଁଠି ମନେ ପଡ଼ିଥାଆନ୍ତା ।

ତା'ପରେ ସେ ହସି ଦେଇ କହିଲେ– ମୋ ଜାତିଭାଇମାନେ ଆଜିସୁଦ୍ଧା ଗୃହହୀନ ହୋଇ ଅନ୍ଧକାରରେ ଦିନ କାଟୁଛନ୍ତି । ଆଜି ମୋର ପଥର ମୂର୍ତ୍ତିକୁ ବସାଇ ଦିଆଯାଇଛି ଏଇ ଆଲୋକ ଉଜ୍ଜ୍ୱଳ ଛକ ଉପରେ । ଏହାକୁ ହିଁ କୁହାଯାଏ ପଲିଟିକ୍ସ !

ବାବା ସାହେବ ସବୁଦିନେ ଏମିତି । ସବର୍ଣ୍ଣ ହିନ୍ଦୁମାନଙ୍କ ଅପମାନ କଥା ସେ କୌଣସି ଦିନ ଭୁଲିପାରନ୍ତି ନାହିଁ– ବୌଦ୍ଧ ଧର୍ମ ଗ୍ରହଣ କଲାପରେ ମଧ୍ୟ ।

ରଘୁନାଥ ଧୀରେ ଧୀରେ ଏ.ଜି. ଛକ ଛାଡ଼ି ଗୋଟିଏ ପାର୍କ ମଧ୍ୟରେ ପଶିଗଲେ । ଆରେ ଏଠାରେ ଆହୁରି ପ୍ରଶସ୍ତ ମାର୍ବଲ ପିଣ୍ଡି, ମାର୍ବଲ ପାହାଚ, ପାହାଚ ମଝିରେ ବିରାଟ ମୂର୍ତ୍ତି– ବାଜପେୟୀ ବର୍ଣ୍ଣିତ ମାଆ ଦୁର୍ଗା– ଶ୍ରୀମତୀ ଇନ୍ଦିରା ଗାନ୍ଧୀ ।

ରଘୁନାଥ ରାତ୍ରିଟା ଏଇ ମାର୍ବଲ ଚଉତରାରେ ଶୋଇ କଟାଇ ଦେବେ ବୋଲି ଲଥିକିନା ବସିପଡ଼ିଲେ ।

ହଠାତ୍ ମୂର୍ତ୍ତି ମୁହଁରୁ ଏକ କର୍କଶ କଣ୍ଠସ୍ୱର ବାହାରି ଆସିଲା– ତମେ କିଏ ? ସାଷ୍ଟାଙ୍ଗ ପ୍ରଣିପାତ କରି ଯୋଡ଼ ହସ୍ତରେ ଠିଆ ହେଲେ ରଘୁନାଥ ।

କହିଲେ– ମୁଁ ଜଣେ ପୂର୍ବତନ ସ୍ୱାଧୀନତା ସଂଗ୍ରାମୀ । ଦେଶର ସ୍ୱାଧୀନତା ପାଇଁ ଜେଲ୍ ଯାଇଛି । ରାଜଦ୍ରୋହ ଅପରାଧରେ ମୋର ଜମିବାଡ଼ି କୋରଖ୍ ହୋଇଯାଇଛି । ଦେଶ ସ୍ୱାଧୀନ ହେଲାପରେ ଚୋରଚଣ୍ଡାଳମାନେ ଏମ୍.ଏଲ୍.ଏ., ଏମ୍.ପି. ମନ୍ତ୍ରୀ ହୋଇ ସୁଖରେ କାଳ କାଟୁଛନ୍ତି,

ମୋର ମୁଣ୍ଡ ଗୁଞ୍ଜିବାକୁ ଜାଗା ନାହିଁ । ଆଜି ରାତିଟା ଭାବୁଛି ଆପଣଙ୍କ ପାଦତଳେ ଏଇଠାରେ କଟାଇ ଦେବି ।

ତାଙ୍କ କଥା ଶୁଣି ଇନ୍ଦିରାଗାନ୍ଧୀ ରାଗି ଅଥୟ ।

– ତମେ ସ୍ୱାଧୀନତା ଆଣିବା ପାଇଁ ଜେଲ୍ ଯାଇ କିଛି ଲାଭ ଉଠାଇ ପାରି ନାହଁ ବୋଲି ଦୁଃଖ କରୁଛ । କିନ୍ତୁ ମୁଁ ଦେଶ ପାଇଁ ଏତେ ତ୍ୟାଗ କରି କ'ଣ ପାଇଲି ? ଆତତାୟୀର ଗୁଳି । ଏଇଠି ଲୋକେ ଟେକାମାରି ମୋ ନାକଦଣ୍ଡା ଫଟାଇ ଦେଇ ନଥିଲେ ? ତମେ ତ ବଂଚି ରହିଛ– ମତେ ତ ବଂଚି ରହିବାକୁ ବି ଦେଲେ ନାହିଁ । ଉଠ– ଉଠ– ରଘୁନାଥ ! ଏ ଜାଗା ତମ ପାଇଁ ନୁହଁ– ତମେ ନ ଉଠିଲେ ରାତି ଦଶଟା ପରେ ପାର୍କର ଗାର୍ଡମାନେ ତଣ୍ଟିଆ ମାରି ବିଦା କରିଦେବେ । ଏତେ ରାତିରେ ଯିବ କୁଆଡ଼େ ? ତା' ଆଗରୁ ଏଠାରୁ ପଳାଅ– ପଳାଅ ।

ରଘୁନାଥ ପଳାଇଛନ୍ତି ଯେ ପଳାଇଛନ୍ତି, ଆଉ ପଛକୁ ଫେରି ଚାହିଁନାହାନ୍ତି । ସେ ଦୌଡ଼ି ଦୌଡ଼ି କେତେବେଳେ ଆସି ବିଧାନ ସୌଧ ପାଖରେ ପହଞ୍ଚି ଯାଇଛନ୍ତି, ତାଙ୍କର ଖିଆଲ ନାହିଁ । ସେଇ ବିଧାନ ସୌଧ ବାଡ଼ ଭିତରେ ଛକକୁ ମୁହଁ କରି ଜଣେ କେହି ଟ୍ରାଫିକ୍ ପୋଲିସ୍ ଭଳି ହାତ ଉପରକୁ ଟେକି ଠିଆ ହୋଇଛନ୍ତି । ରଘୁନାଥ ସେ ମୂର୍ତ୍ତିକୁ ନିରୀକ୍ଷଣ କରି ଦେଖିବା ମାତ୍ରେ ଚମକି ଉଠିଲେ । ଆରେ ରେ ଏ ତ ମହତାବବାବୁ, ଓଡ଼ିଶାରେ କଂଗ୍ରେସ ଆନ୍ଦୋଳନର ପ୍ରମୁଖ ପୁରୁଷ ।

ସେଇଠି ସେ ବାଡ଼ ବାହାର ପଟେ ମହତାବଙ୍କ ପାଦ ତଳେ ବସି ପଡ଼ିଲେ । ଦଉଡ଼ି ଦଉଡ଼ି କ୍ଲାନ୍ତ ହୋଇପଡ଼ିଥିବାରୁ ତାଙ୍କର ଦୁଇ ଆଖିପତା ଯୋଡ଼ି ହୋଇଗଲା । କିନ୍ତୁ ହଠାତ୍ ଡାକ ଶୁଭିଲା– ରଘୁନାଥ ! କେମିତି ଅଛ ?

ଏ' ତ ମହତାବ ବାବୁଙ୍କ କଣ୍ଠସ୍ୱର ? ଏ ସ୍ୱର ସହିତ ସେ ଦୀର୍ଘ ଦିନରୁ ପରିଚିତ । କିନ୍ତୁ କେବଳ କଣ୍ଠସ୍ୱର ଶୁଣାଯାଉଛି, ମୁହଁ ଦେଖାଯାଉନି । ସେ ବିଚଳିତ କଣ୍ଠରେ କହିଲେ– ମତେ ଆପଣ ଚିହ୍ନିପାରିଲେ– ଏଇ ତ ମୋର ପରମ ସୌଭାଗ୍ୟ ଭାଇ ! ଇଚ୍ଛା ଥିଲା ଆଜି ରାତିଟା ଆପଣଙ୍କ ପାଦତଳେ ଶୋଇ ଥାଆନ୍ତି । କିନ୍ତୁ ଆପଣଙ୍କ ପାଦ ତଳେ ତ ଜାଗା ନାହିଁ ।

ତାପରେ ଗୋଟାଏ ଦୀର୍ଘଶ୍ୱାସର ଶବ୍ଦ ଶୁଣାଗଲା । କଣ୍ଠସ୍ୱର ଭାସିଆସିଲା– ଏଇ ତ ମୋର ଅବସ୍ଥା । ମୁଁ ଏ ରାଜଧାନୀ ସହର ପ୍ରତିଷ୍ଠା କଲି, ହେଲେ ମୋ ପାଦତଳେ ଟିକିଏ ଜମି ନାହିଁ । ଅଥଚ ମୋ ପାଖରୁ ରାଜନୀତିର ଅ-ଆ-କ-ଖ ଶିଖିଥିବା ଲୋକେ ଶାସନ ଗାଦି ମାଡ଼ିବସି ସାରା ଓଡ଼ିଶାଟାକୁ ଚଳୁ କରି ଖାଇସାରିଲେଣି, ଅଚଳାଚଳ ସମ୍ପତ୍ତିର ମାଲିକ ହେଲେଣି । ଛାଡ଼ ସେ କଥା– ତମେ କୁଆଡ଼େ ଆସିଛ ?

ରଘୁନାଥ ବିଷଣ୍ଣ କଣ୍ଠରେ କହିଲେ– ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପାଳିତ ହେଉଛି । ସେଇ ଅବସରରେ ଆସିଥିଲି ଜାତିର ପିତା ମହାତ୍ମା ଗାନ୍ଧୀଙ୍କୁ ଗୋଟାଏ ମୁଣ୍ଡିଆ ମାରିଯିବି ବୋଲି । କିନ୍ତୁ ଏ ରାଜଧାନୀରେ ତାଙ୍କୁ ତ କେଉଁଠି ଦେଖୁନାହିଁ।

ମହତାବଙ୍କ ଅଶରୀରୀ ବାଣୀ ଭାସିଆସିଲା :

– ଏଇ ବିଧାନସଭା ପାଚେରୀ ଭିତରେ ଯେଉଁ ପାର୍କ ଅଛି, ଗାନ୍ଧିଜୀ ସେଇଠାରେ ଅଛନ୍ତି । ତାଙ୍କ ପାଖରେ ଗୋପବନ୍ଧୁ, ମଧୁସୂଦନ ମଧ ବସିଛନ୍ତି, ତମେ ଯାଅ–

ରଘୁନାଥ ଆଉ ଥରେ ପଚାରିଲେ– ଯିବି ?

– ହଁ, ଯାଅ । ବନମାଳୀ ପଟ୍ଟନାୟକ, ସୁରେନ୍ଦ୍ର ପଟ୍ଟନାୟକ ମୋ ସହିତ ଏହି ସମୟରେ ଦେଖା କରିବାକୁ ଆସନ୍ତି, ତମେ ଥିଲେ– ଅସୁବିଧା ହେବ ।

ମହତାବ ବାବୁ ବୁଦ୍ଧିମାନ୍ ଲୋକ, ବିଚକ୍ଷଣ ରାଜନୀତିଜ୍ଞ । ନାଲି କଲମ, ନେଳି କଲମର ରାଜନୀତି ପାଇଁ ସେ ଦିନେ ଖୁବ୍ ପ୍ରସିଦ୍ଧ ଥିଲେ । କାହାକୁ କ'ଣ କହି ପାଖରୁ ବିଦା କରିବାକୁ ପଡ଼େ, କାହାକୁ କି କଥା କହି ପାଖକୁ ଟାଣି ଆଣିବାକୁ ହୁଏ, ତାହା ତାଙ୍କୁ ଭଲ ଭାବରେ ଜଣା ।

ରଘୁନାଥ ବିଧାନସଭା ଫାଟକ ଦେଇ ପାର୍କ ଭିତରେ ପ୍ରବେଶ କଲେ । ଗାନ୍ଧିଜୀଙ୍କ ପାଦ ତଳେ ଗୋଟିଏ ମୁଣ୍ଡିଆ ମାରି ମୁଣ୍ଡ ଉଠେଇଲାବେଳକୁ ଦେଖିଲେ ଗାନ୍ଧିଜୀଙ୍କ ପଥର ଆଖିରୁ ଦୁଇଧାର ଲୁହ ବହି ଆସୁଛି ।

ମହାତ୍ମାଙ୍କ ପଥର ଆଖିରୁ ଲୁହ ଝରି ଯାଉଥିବା ଦେଖି ରଘୁନାଥଙ୍କୁ ମଧ୍ୟ କାନ୍ଦ ମାଡ଼ିଲା । ସେ ପାଖରେ ବସିଥିବା ଗୋପବନ୍ଧୁଙ୍କ କାନ୍ଦଣା ସ୍ୱର ମଧ୍ୟ ଶୁଣି ପାରିଲେ । ଗୋପବନ୍ଧୁ କୋହ କମ୍ପିତ କଣ୍ଠରେ କହୁଥିଲେ– ଆମେ କ'ଣ ଏଇ ସ୍ୱାର୍ଥପର ରାଜନୀତିଜ୍ଞ, ଦୁର୍ନୀତିଗ୍ରସ୍ତ ସରକାରୀ ଅଫିସର, ଅସାଧୁ ବ୍ୟବସାୟୀଙ୍କ ସ୍ୱାର୍ଥସାଧନ ପାଇଁ ଏତେ ଦୁଃଖ କଷ୍ଟ ସହି ଦେଶର ସ୍ୱାଧୀନତା ଆଣିଥିଲୁ ? କି ଥିଲା ଏ ରାଜ୍ୟ, କି ହୋଇଛି ଆଜ !

ଗୋପବନ୍ଧୁଙ୍କ କଣ୍ଠସ୍ୱରକୁ ସ୍ତବ୍ଧ କରିଦେଇ ହଠାତ୍ ପୋଲିସ୍‌ର ହୁଇସିଲ୍ ବାଜିଉଠିଲା । ଆରପଟୁ ମୁଧୁସୂଦନଙ୍କ କଣ୍ଠସ୍ୱର ଶୁଣାଗଲା– ପଳାଅ ରଘୁନାଥ ! ତା ନହେଲେ ମୂର୍ତ୍ତି ଚୋରି ଅଭିଯୋଗରେ ପୋଲିସ୍ ତମକୁ ଧରିନେଇ ଜେଲ୍‌ରେ ପୂରାଇଦେବ ।

ରଘୁନାଥ ତାଙ୍କୁ ପ୍ରଣାମ ଜଣାଇ କହିଲେ–

– ଆପଣଙ୍କ ମୁହଁରେ କ'ଣ ଏଭଳି କଥା ଶୋଭାପାଏ ସାର୍ ? ଆପଣ ବାରିଷ୍ଟରୀ ପାସ୍ ନ କରି ସୁଦ୍ଧା ମଧୁ ବାରିଷ୍ଟର ବୋଲି ଖ୍ୟାତି ଅର୍ଜିଥିଲେ । ପୋଲିସ୍ ମତେ ଧରିନେଲେ ଆପଣ କୋର୍ଟରେ ଲଢ଼ି ମତେ ଛଡ଼ାଇ ଆଣିପାରିବେ ନାହିଁ ?

ମଧୁବାବୁଙ୍କ ପଗଡ଼ି ଟିକିଏ ହଲିଗଲା ଭଳି ସେ ଅସ୍ପଷ୍ଟ ଛାଇଆଲୁଅରେ ଦେଖିପାରିଲେ ସ୍ୱାଧୀନତା ସଂଗ୍ରାମୀ ରଘୁନାଥ ବଳିୟାରସିଂହ ।

ମଧୁବାବୁଙ୍କ ବିଷାଦଗ୍ରସ୍ତ କଣ୍ଠରୁ ଶୁଣାଗଲା–

– ଇଏ ତ ବ୍ରିଟିଶ୍ ଅମଳର କୋର୍ଟ କଚେରି ନୁହଁ, ସ୍ୱାଧୀନ ଦେଶର ବିଚରାଳୟ । ଏଠାରେ ନ୍ୟାୟ ସ୍ୱତଃ ମିଳେ ନାହିଁ, ନ୍ୟାୟ ଏଠାରେ କିଣାଯାଏ । ଆଉ ମୁଁ ତ ମଣିଷ ନୁହଁ– ମୂର୍ତ୍ତି !

ଲାଠି ଉଞ୍ଚାଇ ଠିକ୍ ସେତିକିବେଳେ ଦୁଇଜଣ ଚୋର ଚୋର ବୋଲି ଚିତ୍କାର କରି ତାଙ୍କ ଆଡ଼କୁ ମାଡ଼ି ଆସିଲେ । ବ୍ରହ୍ମପୁର ଜେଲ୍‌ରେ ସେଇ ଲାଠିମାଡ଼ କଥା ରଘୁନାଥଙ୍କର ସ୍ମରଣ ହୋଇଗଲା । ସେ ଦୁଇହାତ ଟେକି ପ୍ରତିବାଦ କଲେ– ମୁଁ ଚୋର ନୁହେଁ, ସ୍ୱାଧୀନତା ସଂଗ୍ରାମୀ ।

କିନ୍ତୁ କିଏ ଶୁଣୁଛି ତାଙ୍କ କଥା । ପ୍ରଥମ ପୋଲିସ୍ କନେଷ୍ଟବଳର ଲାଠିର ଆଘାତ ସେଇ ମରାମତ ହୋଇଥିବା ଆଣ୍ଠୁରେ ବାଜିଲା, ଜେଲ୍ ଭିତରେ ତ୍ରିରଙ୍ଗା ଝଣ୍ଡା ଉଡ଼ାଇବାକୁ ଯାଇ ବ୍ରିଟିଶ

ପୋଲିସ୍ ଲାଠିମାଡ଼ ଯେଉଁ ଆଣ୍ଠୁରେ ସେ ପାଇଥିଲେ ! ପୁରୁଣା କ୍ଷତ ପୁଣି ଥରେ ଉଖୁରେଇ ହୋଇ ରକ୍ତାକ୍ତ ହୋଇଗଲା । ସେ ମାଟି ଉପରେ ଆଣ୍ଠେଇ ପଡ଼ିବା ବେଳେ ଆର ପୋଲିସ୍ ଜଣକ ହାତକଡ଼ି ବାହାର କରି ତାଙ୍କୁ ଗିରଫ କରିବାକୁ ଆଗେଇ ଆସିଲା ।

ମହାତ୍ମାଗାନ୍ଧୀଙ୍କ ପ୍ରତିମୂର୍ତ୍ତି ଆଡ଼କୁ ଅନେଇ ରଘୁନାଥ ବଳିୟାରସିଂହ ଶେଷ ଅନୁରୋଧ କଲେ– ମତେ ବାନ୍ଧି ନିଅ ନାହିଁ । ଦେଶକୁ ସ୍ୱାଧୀନ କରିବା ପାଇଁ ମୁଁ ଜେଲ୍ ଯାଇଛି, ଲାଠି ଖାଇଛି । ଏଇ ମହାତ୍ମା ତା'ର ସାକ୍ଷୀ ଅଛନ୍ତି ।

ଲାଠିଧାରୀ ପୋଲିସ ଜଣକ ଖିଙ୍କାରି ହୋଇ କହିଲା– ଦେଶକୁ ସ୍ୱାଧୀନ କରିବା ପାଇଁ ଏ ତୋ ମାଆ ରାଣ ପକାଇଥିଲା ? ୟାଁ ? ବ୍ରିଟିଶ ଶାସନ ଖୁବ୍ ଭଲ ଥିଲା– ସ୍ୱାଧୀନତା ଆଣି ଦେଶର ସର୍ବନାଶ କରୁଛ– ଚାଲ୍ ଶଳା ଜେଲ୍ ଚାଲ୍ ।

ପଛପଟୁ ତଣ୍ଡିଆ ମାରି ସେ କନେଷ୍ଟବଳ ରଘୁନାଥଙ୍କୁ ତଳେ ପକାଇଦେଲା । ସ୍ୱାଧୀନତା ସଂଗ୍ରାମୀ ବଳିୟାରସିଂହ ସେ ଆଘାତ ସହି ପାରିଲେ ନାହିଁ । ତାଙ୍କ ଆଖିରୁ ଶହ ଶହ ଜୁଳୁଜୁଳିଆ ପୋକ ବାହାରି ଯାଇ ରାତ୍ରିର ରାଜଧାନୀକୁ ଆଲୋକିତ କରିଦେଲା । ତାଙ୍କୁ ଦିଶିଗଲା ସ୍ୱାଧୀନତା ସୁବର୍ଣ୍ଣ ଜୟନ୍ତୀର ବୀଭତ୍ସ ରୂପ । ଭୟରେ ସେ ଆଖି ବୁଜି ଦେଲେ ।



# ତାଜା ଖବର

## ସହଦେବ ସାହୁ

ଚିଠିଟି ଖୋଲି ପଢୁ ପଢୁ ସବୁ ଘଟଣା ଆଖି ଆଗରେ ଭାସି ଉଠିଲା । ପ୍ରଥମ ଥର କେଡ଼େ ସହଜରେ ମୁଁ ଦୁଆର ଖୋଲିଦେଲି ।

ସାମନାରେ ଦୁଇଜଣଙ୍କ କଳା କଳା ମୁଛ ଓ ଡିମା ଡିମା ଆଖି । ଜଣଙ୍କର ନିଶ ଅଗ୍ର ଦି କଡ଼ରେ ବଙ୍କି ଯାଇଛି ଗାଲ ଉପରକୁ । ଯେପରି ଫିଲ୍ମରେ ଭିଲେନ୍‌ମାନେ ଅଠା ଦେଇ ଠିଆ ଠିଆ ମୁଛ ତିଆରି କରିଥାନ୍ତି । ଦୁହିଁଙ୍କ ଭିତରୁ ଜଣେ ଖାଲି ପାଟି ଚାକୁଳି ଥାଏ । ତା'ର ମୁଛ ଦୁଇଟା ଉପର ତଳ ହେଉଥିବାରୁ ଚାକୁଳିବା ଜଣାପଡୁଥାଏ । ଅନ୍ୟ ଜଣଟି ଦି ପକେଟ୍‌ରେ ହାତ ପୁରାଇ ମୁରୁକୁଥାଏ । ଟେରିକଟ୍ ଟ୍ରାଉଜର ଓ ନୀଳ ସାର୍ଟ ହାତ ଚାପରେ ଜାକି ହୋଇଯାଉଥାଏ ।

ଜଣା ପଡୁନଥିଲା ଯେ ସେମାନଙ୍କର କିଛି ଅଭାବ ଅଛି । ଅଥଚ ସେମାନଙ୍କ ଦୃଷ୍ଟିରେ ଥିଲା ମାଗିବାର ଝଲକ । ମାଗିବା କହିଲେ ଠିକ୍ ହେବନାହିଁ, ଦାବି ଜାହିର କରିବାର ଝଲକ ।

ଦୁହେଁ ଏକାସ୍ୱରରେ କହିଉଠିଲେ, ଆମେ ଯୁବ ପ୍ରଗତି ଗୋଷ୍ଠୀ ଗଣେଶପୂଜା କମିଟି ତରଫରୁ ଆସିଛୁ ।

ମୁଁ ଜାଣିଥିଲି, ପ୍ରଗତି ଦଳ ବର୍ତ୍ତମାନ ଶାସକ ଦଳ । ଯେ କୌଣସି ପୂଜା ଆସିଲେ ଚାନ୍ଦା ସମୟ ଆସିଯାଏ । ଏମାନେ ଭାବନ୍ତି, କମ୍ପାନୀ କର୍ମଚାରୀମାନେ ବେଶ୍ କମାଉଛନ୍ତି, ସେମାନଙ୍କଠୁ ଚାନ୍ଦା ଭେଦା ନ ଉଠାଇବା ତ ଉଠାଇବା କାହାଠୁ ? ସତେ ଯେପରି ମୋ ଭାବନା ସେ ଦୁହେଁ ପଢ଼ିପାରିଲେ । କହିଲେ, କେବଳ ଆପଣଙ୍କଠୁ ନୁହେଁ ଏ ଏ ୟୁନିଟର ସମସ୍ତଙ୍କଠୁ ଚାନ୍ଦା ନେଉଛୁ ।

ମୁଁ କହିଲି, କିଛି ଦେଇ ହେବନାହିଁ ।

କବାଟ ବନ୍ଦ କରିଦେଲି । ସେମାନେ ଚାଲିଗଲେ ।

ତା'ପରଦିନ ସକାଳେ ଦୁଇଜଣ ଆସିଲେ । ସେମାନେ ନୁହଁନ୍ତି, ସେମାନଙ୍କ ଭଳି ଦିଶୁଥିବା ଆଉ ଦୁଇଜଣ । ସେମାନେ କହିଲେ, ନ ନମ୍ବର ୟୁନିଟର ଗଣେଶ ପୂଜା କମିଟି ପାଇଁ ଚାନ୍ଦା ନେବାକୁ ଆସିଛୁ । ଆପଣ ଏ ୟୁନିଟର ବାସିନ୍ଦା । ଚାନ୍ଦା ଦେବା ଆପଣଙ୍କ କର୍ତ୍ତବ୍ୟ ।

ମୁଁ କହିଲି, ଆଗରୁ ତ ତୁମେମାନେ ଚାନ୍ଦା ନେଉ ନଥିଲ । ନୂଆ ନୂଆ ସଂଗଠନ କରି ଚାନ୍ଦା ମାଗିଲେ ଏତେ ପଇସା କେଉଁଠୁ ଆଣିବୁ ? ଗୋଟିଏ ଗୋଟିଏ ୟୁନିଟ୍‌ରେ ଆଠ ଦଶଟା ପୂଜା ହେବ, ଆଉ ଆମେ ଆଠ ଦଶ ଥର ଚାନ୍ଦା ଦେଉଥିବୁ ?

ଯାହା ଦେଇପାରିବେ ଦିଅନ୍ତୁ, ସେମାନେ ଦାବି କଲାପରି କହିଲେ ।

ମୁଁ ଭାବିଲି, ନିଜେ କବାଟ ଖୋଲି ଭୁଲ୍ କରିଛି ।

ନିଶ ଉପରେ ହାତ ବୁଲାଉଥିବା ଟୋକାଟି ତାଚ୍ଛଲ୍ୟ କଲା, "ଦେଇପାରିବେ ନାହିଁ କ'ଣ କହୁଛନ୍ତି ?"

ମୁଁ କହିଲି ଆମର ରୋଜଗାର ତ ନିଜକୁ ନିଅଣ୍ଟ । ନୂଆ ନୂଆ କମିଟି ଗଢ଼ି ଆପଣମାନେ ପଇସା ମାଗୁଥିବେ, ସବୁ ଅନୁଷ୍ଠାନକୁ ଟଙ୍କା ଦେଇହେବ କି ? ପୂଜା କରିବ ତ ନିଜ ପଇସାରେ କରୁନା ? ପର ପଇସାରେ ଠାକୁରଙ୍କୁ ପୂଜା କରିବ ? ଛି, ଛି !

ସେମାନେ ସେଦିନ ବି ଚାଲିଗଲେ ।

ତିନିଦିନ ପରେ ଚିଠି ବାକ୍ସରେ ଚିଠି କାଢ଼ିବାକୁ ମୁଁ ହାତ ପୂରାଇ ଦେଲାକ୍ଷଣି ବିଷ୍ଠାରେ ହାତ ବୁଡ଼ିଗଲା ।

ଏ କାମ କିଏ କରିଥିବ ଜାଣିଗଲି । ଆଗରୁ ଶୁଣିଥିଲି, ମୋର ଜଣେ ସହକର୍ମୀ ଗତବର୍ଷ ଚାନ୍ଦା ଦେଇନଥିଲେ ବୋଲି ତାଙ୍କର ଦଶଟି ଫୁଲକୁଣ୍ଡ କୁଆଡ଼େ ଉଭେଇଗଲା । ତଥାପି ମୁଁ ଦମ୍ଭ ଧରିଥିଲି, ଏ ପିଲାଙ୍କୁ କିଛି ଦେବି ନାହିଁ ।

ପୋଲିସକୁ ଖବର ବି ଦେଲି ନାହିଁ । ଚୁପ୍ ରହିଗଲି । ପୋଲିସ୍‌ର ସାମର୍ଥ୍ୟ କେତେ ଜଣା ।

ଏଣିକି ଗେଟ୍‌ରେ ଚାବି ପକାଇ ରଖିବାକୁ ସମସ୍ତଙ୍କୁ କହିଦେଲି । ବାଡ଼ି ଭିତରକୁ ପଶିଲେ ସିନା ପାଟିତୁଣ୍ଡ ହେବ ।

କିଛିଦିନ ଯାଏ କେହି ଆସି ନଥିଲେ । ଚିଠି ବାକ୍ସରେ ବିଷ୍ଠା ପଡ଼ିଥିବା କଥା ବି ଆମେ ଭୁଲିଗଲୁ । ପରେ ପରେ, ଗେଟ୍‌ରେ ତାଲାଦେବା କଥା ଭୁଲିଗଲୁ ।

ଦିନେ, ହଠାତ୍ ପୁଣି ଦୁଇଟା ଟୋକା ଆସିଲେ । ପୂର୍ବରୁ ଆସିଥିବା ଟୋକାଙ୍କ ବୟସର । ଜଣଙ୍କର ଗାଲରେ କଟା ଦାଗ । କୋଉଠି ବୋଧହୁଏ ନିଆଁ ଚିଙ୍କା ବା ଖଣ୍ଡା କି ଛୁରୀ ଚୋଟ ଲାଗିଯାଇଛି ।

ସେମାନେ କବାଟ ଠକ୍ ଠକ୍ କଲାକ୍ଷଣି ମୋ ପୁତୁରା କବାଟ ଖୋଲିଦେଇଥିଲା । ତା' ପଛେ ପଛେ ମୋ ସ୍ତ୍ରୀ ବି ଆସିଯାଇଥିଲା । ଟୋକା ଦୁଇଟାଙ୍କ ରୂପର ସାଦୃଶ୍ୟ ଦେଖି ସେ ଡରିଗଲା । କବାଟ ଦୁଇଟାକୁ ବନ୍ଦ କରିବାକୁ ଗଲାକ୍ଷଣି ଗୋଟିଏ ଟୋକା ଚଟ୍‌କିନି କବାଟ ଦୁଇଫାଳ ସନ୍ଧିରେ ପାଦ ରଖିଦେଲା । କବାଟ ବନ୍ଦ ହୋଇପାରିଲା ନାହିଁ ।

ପାଟି କରି ଟୋକାଟା କହିଲା, ଆମେ ପ୍ରଗତି ଦଳର ଯୁବଗୋଷ୍ଠୀ ନଅ ନମ୍ବର ୟୁନିଟ୍ ଶାଖାରୁ ଆସିଛୁ । ଆପଣଙ୍କ ଉପରେ ଗଣେଶ ପୂଜା ଦେୟ ବାକି ଅଛି । ଦେବାକୁ ପଡ଼ିବ ।

ମୋ ସ୍ତ୍ରୀ କହିଲା, କ'ଣ ଜବରଦସ୍ତ ଦେବାକୁ ପଡ଼ିବ ? ଗୋଟିଏ ହେଲେ ପଇସା ଦେବୁ ନାହିଁ । ଆଉ ଏଠିକି ଆସ ନାହିଁ । ଏ ଜୋର ସେ ମୋଠାରୁ ଶିଖିଥିଲା ।

ଇତିମଧ୍ୟରେ ମୁଁ ଦ୍ୱାର ପାଖକୁ ଆସିଯାଇଥିଲି ।

ଗୋଡ଼ରେ ଠେଲି ଧରି କବାଟକୁ ଖୋଲା ରଖିଥିବା ଟୋକାଟା ଠୋ ଠୋ ହସିଦେଲା । ଗୋଡ଼ଟା କାଢ଼ିନେଲା । ସମ୍ଭବତଃ ମୋତେ ଦେଖି ସେମାନେ ଅଧିକ କିଛି ନ କହି ଚାଲିଗଲେ ।

ଦୁଇଦିନ ବି ଯାଇନାହିଁ ଦିନେ ସକାଳେ ବାପା ବାଡ଼ିରେ ବୁଲୁଛନ୍ତି, ଦେଖିଲେ ମଲା କୁକୁରଟିଏ ଗେଟ୍ ପାଖରେ ପଡ଼ିଛି ।

ସେ ଚିହିଁକି ଉଠିଲେ । ତାଙ୍କ ପାଟି ଶୁଣି ମୋ ସ୍ତ୍ରୀ ବାହାରିଆସିଲା । ମୁଁ ବି ।

ବାପା ପୋଖତ ଲୋକ । ପୋଲିସର ଧୂରନ୍ଧରପଣିଆ ଆଜିକାଲିର ନେତାମାନଙ୍କ ପଣତ ତଳେ, ସେ କହିଲେ । ସେ ଠିକ୍ କରିନେଲେ ଏମ୍.ଏଲ୍.ଏଙ୍କୁ ଦେଖାକରିବେ ।

ଏମ୍.ଏଲ୍.ଏ. ତାଙ୍କୁ ଭଲ ଭାବରେ ଜାଣନ୍ତି । ଗତ ନିର୍ବାଚନରେ ସେ ବାପାଙ୍କ ସାହାଯ୍ୟ ନେଇଥିଲେ । ଫେରିଆସି ବାପା କହିଲେ ଯାହା କହିବାର କଥା କହିଛି । ଅବଶ୍ୟ ଏମ୍.ଏଲ୍.ଏ. ବାବୁ ବୁଝାଇଥିଲେ, "ମୁଁ ଭାବୁନାହିଁ ଯେ ମୋ ଦଳର ପିଲାମାନେ ପଇସା ମାଗିବାକୁ ଯାଇଥିବେ ।

ଏଗୁଡ଼ାକ ବିରୋଧୀ ଦଳର କାମ । ଆମକୁ ବଦନାମ୍ କରିବା ପାଇଁ ମଝିରେ ମଝିରେ ଏଭଳି କରନ୍ତି ।"

ସେ ବାପାଙ୍କୁ ପରାମର୍ଶ ଦେଲେ, ଟିକିଏ ଧୈର୍ଯ୍ୟ ଧରନ୍ତୁ, ଆସ୍ତେ ଆସ୍ତେ ଶୃଙ୍ଖଳା ଫେରିଆସିବ । ଏବେ ତ ଆମେ ଜିତିଛୁ । ଏପର୍ଯ୍ୟନ୍ତ ତ ଏହି ବିରୋଧୀ ଦଳମାନେ ଶାସନରେ ଥିଲେ । ଟୋକାଗୁଡ଼ାକୁ ସେମାନେ ବଡ଼ ଉପ୍ରୋଧ ଦେଇଛନ୍ତି, ନହେଲେ କ'ଣ ସେମାନେ ଏପରି ବଦମାସୀ କି ଦାଦାଗିରି ଦେଖାନ୍ତେ ?

ଏମ୍.ଏଲ୍.ଏଙ୍କ ଭାଷାକୁ ଯଥାଯଥ ଉଦ୍ଧାର କରି ବାପା କହିଥିଲେ । ସେ ଏମ୍.ଏଲ୍.ଏ.ଙ୍କୁ ବୁଝାଇଥିଲେ, କିପରି ଏମ୍.ଏଲ୍.ଏ. ତାଙ୍କ ବଦମାସ ସମର୍ଥକମାନଙ୍କ ପାଇଁ ପରାସ୍ତ ହୋଇଛନ୍ତି । ମୋତେ ବାପା ବୁଝାଇଦେଲେ, ଏ ନୂଆ ଏମ୍.ଏଲ୍.ଏ. ଭଲ ଲୋକ । ମୁଁ ଭାବୁଛି, ମୋ କଥା ତା' କାନରେ ଭେଦିବ ।

ବେଶିଦିନ ଯାଇନାହିଁ । ଦିନେ ଫୋନ୍ ଆସିଲା ।

କଡ଼ା ଶବ୍ଦ । ଆମେ ପ୍ରଗତି ଦଳର ନ ନମ୍ବର ୟୁନିଟ୍ ଅଫିସ୍‌ରୁ କହୁଛୁ । ଆଜି ସଂଜବେଳେ ଆମ ଦଳର ଦୁଇଜଣ ପିଲା ତୁମ ଘରକୁ ଯିବେ । ଯାହା ପାରୁଛ ଦେଇଦିଅ । ନଚେତ୍ ଭଲକଥା ହେବନି ।

ମୁଁ ଓ ମୋ ପରିବାର ହଠାତ୍ ଯେପରି ଗୋଟିଏ ମଙ୍ଗୋଲ ଆକ୍ରମଣ ଆଶଙ୍କାରେ ରହିଗଲୁ । ଘରର କବାଟ ସବୁ ବନ୍ଦ କରି ରଖିଲୁ । ଗେଟ୍ ବି ତାଲା ପକାଇଦେଲୁ । କଲିଂ ବେଲ୍‌ର ତା'ର ଖୋଲିଦେଲୁ ।

ସେଦିନ ଦିନସାରା କେହି ଆସିଲେ ନାହିଁ ।

ମନେହେଲା ଯେମିତି ଆମ ଘରଟା କାଚରେ ତିଆରି । ଏତେ ମୋଟା ମୋଟା କାନ୍ଥ ଭିତର ଦେଇ ସବୁ ଯେପରି ଜଳଜଳ ଦିଶୁଥାଏ । ଆଶଙ୍କା ହେଉଥାଏ, କାନ୍ଥଟାକୁ ଠେଲିଦେଲେ ଭାଂଗିଯିବ । ଦୁଆର ଝରକାର କାଠରେ ସହଜରେ ନିଆଁ ଲାଗିଯିବ । ଏ ଲୁହା ଗ୍ରିଲ୍ ବା ରେଲିଂ ତୁଚ୍ଛ ମନେହେଲା । କେଉଁ ବାଟ ଦେଖି ସେମାନେ ହାତ ବୋମାଟିଏ ପକାଇଦେଲେ ସବୁ ଭୁଷୁଡ଼ି ପଡ଼ିବ । ନଚେତ୍ ଗାଡ଼ିର ଜାକ୍ ଆଣି ରେଲିଂକୁ ମେଲା କରିଦେବେ ।

ମନେହେଲା ଖାଲିସ୍ତାନୀ ଓ କାଶ୍ମୀରୀ ସନ୍ତ୍ରାସବାଦୀମାନେ ଯେପରି ଏକେ ୪୭ ରାଇଫଲ୍ ରଖୁଛନ୍ତି ସେମିତି ଆମେ ଗୋଟିଏ ଗୋଟିଏ ଧରି ବସିବୁ । ଘର ଭିତରେ ଗାତ ଖୋଳି ବଙ୍କର୍ କରିବୁ । ତା' ଭିତରେ ଲୁଚି ରହିବୁ ।

ବାପାଙ୍କର ପେନ୍‌ସନ୍ ଓ ମୋର ଦରମା ପୂରା ମିଶାଇଲେ ବି ତ ଗୋଟିଏ ସାଦା ବନ୍ଧୁକ ବି କିଣିପାରିବୁ ନାହିଁ । ବାପାଙ୍କ ପାଖରେ ନିଜର ଆଶଙ୍କା ପ୍ରକାଶ କଲି । ଦୁହେଁ ଗୋଟିଏ ପ୍ରଶ୍ନରେ ରାଜି ହେଲୁ : ଏ ଦୁନିଆରେ ସାଧୁ ହୋଇ ଲାଭ କ'ଣ ?

ଜୋର ଜବରଦସ୍ତ ଚାନ୍ଦା ଆଦାୟ ଓ ଧମକ ବାରମ୍ବାର ଖବରକାଗଜମାନଙ୍କରେ ବାହାରିବାରୁ ବିଭିନ୍ନ ପୂଜା କମିଟି ତରଫରୁ, ପ୍ରଗତି ଦଳ ତରଫରୁ ଘରେ ଘରେ ପ୍ରଚାରପତ୍ର ବଣ୍ଟାଗଲା ଯେ ସେମାନଙ୍କର କେହି ପ୍ରତିନିଧି ନାହିଁ । ପ୍ରତିନିଧି ବୋଲି କହୁଥିବା ଲୋକଙ୍କୁ ବିଶ୍ୱାସ କରନ୍ତୁ ନାହିଁ ବା ପଇସାଟିଏ ବି ଦିଅନ୍ତୁ ନାହିଁ । ପ୍ରଚାରପତ୍ରରେ ନଥିଲା– ଯଦି ଆମ ଚିଠି ବାକ୍ସରେ ବିଷ୍ଠା ପଡ଼େ ବା ବାଡ଼ିରେ ମଲା କୁକୁର ଫୋପଡ଼ାଯାଏ ଆମେ କ'ଣ କରିବୁ ?

ବାପା ଘର ପାଇଁ ବଜାର କରନ୍ତି । ଏଣିକି ବାପା ବଜାର କରି ଗଲାବେଳେ ମୁଁ ସାଙ୍ଗରେ ଗଲି । ହାତରେ ଧରିଲି ଛୋଟ ଠେଙ୍ଗା । ଠେଙ୍ଗାଟିକୁ ମୁଁ ସାର୍ଟ ଭିତରେ ଲୁଚାଇ ରଖୁଥିଲି । ଅଫିସ୍ ଗଲାବେଳେ ମୁଁ ସାଙ୍ଗମାନଙ୍କ ଗାଡ଼ିରେ ଗଲି । ଏକୁଟିଆ ଯିବା ପ୍ରାୟ ବନ୍ଦ ହୋଇଗଲା ।

ଅଫିସ୍ କାମ କରୁ କରୁ ଘରକୁ ଘଣ୍ଟାକୁ ଘଣ୍ଟା ଫୋନ୍ କରେ, ସବୁ ଠିକ୍ ଅଛି ତ ?

କେଉଁଠି ଗୋଟିଏ ଟୋକା ମୋ ଆଖି ଆଗରେ ପଡ଼ିଗଲେ ମୋର ମନେହୁଏ ସତେ ଯେପରି ସେ ମୋ ଆଡ଼କୁ ମାଡ଼ିଆସୁଛି । ଚାରିଆଡ଼େ ମୋତେ ଖାଲି ଦିଶିଲା ବଡ଼ ବଡ଼ ମୁଛ ରଖିଥିବା ପିଲାଗୁଡ଼ାଏ ବୁଲୁଛନ୍ତି । ଟେରିକଟ୍ ଟ୍ରାଉଜର୍ ଆଉ ନୀଳ ସାର୍ଟ । ନିଶ ସବୁ ଗାଲ ଉପରକୁ ମୋଡ଼ି ହୋଇଛି ।

ଏଭଳି ଡରି ମରି କେତେଦିନ ରହିହେବ ? ମନେହେଉଥିଲା ଘରକୁ ଫେରୁ ଫେରୁ କେଉଁଦିନ ଘରେ ନିଆଁ ଲାଗିଯାଇଥିବ ? କାଳେ କିଏ ଅପହରଣ କରିନେବ ବୋଲି ପୁତୁରାକୁ ଗାଆଁକୁ ଫେରାଇ ଦେଇଥିଲି । ସ୍ତ୍ରୀ ମଧ୍ୟ ଗାଁକୁ ଚାଲିଗଲା । ଆମେ ରହିଗଲୁ– ଦୁଇଜଣ : ବାପା ଓ ମୁଁ । ଅବଶ୍ୟ ଗୋଟିଏ ରୋଷେଇଆ ଥାଏ ।

ଦିନେ ଦୁଇଟା ଟୋକା ଆସି ମୋ କଲିଂ ବେଲ୍ ଦବାଇଲେ । ବାପାଙ୍କୁ ଡର ଲାଗିଲା ସେମାନେ ପୁଣି ଫେରିନାହାନ୍ତି ତ ?

ସେମାନେ ଯେତେବେଳେ କହିଲେ ଆମେ ଗୋଟିଏ ସାବୁନ୍ କମ୍ପାନୀ ତରଫରୁ ମାର୍କେଟ୍ ସର୍ଭେ କରିବାକୁ ଆସିଛୁ, ବାପା ଟିକିଏ ଆଶ୍ୱସ୍ତ ହେଲେ । ବାପା କହିଲେ ବର୍ତ୍ତମାନ ସମୟ ନାହିଁ, ପୁଅ ଆସିଲେ ପଚାରିନେବ ।

ତା'ପରେ ସେମାନେ ଚାଲିଗଲେ । ସେଦିନ ସଞ୍ଜବେଳେ ଖଣ୍ଡିଏ କାଗଜ ଆମ କବାଟ ପାଖରେ ପଡ଼ିଥିଲା । ସେଥିରେ ଲେଖାଥିଲା, କାଲି ଆସବୁ । ଏଥରକ ମାର୍କେଟ୍ ସର୍ଭେ ନ ହୋଇ ତୁମ ଘର ସର୍ଭେ ହେବ । ଆମେ ଆପେ ଆପେ ଚାନ୍ଦା ବାହାର କରିବୁ ।

ବହୁତ ହୋଇଗଲା । ବାପା ଓ ମୁଁ କାଗଜ ଖଣ୍ଡିକ ଧରି ସିଧାସଳଖ ଥାନାକୁ ଗଲୁ । ଦାନ୍ତ ଘଷି ନଥାଉ । ଥାନାବାବୁ ଓ ଅନ୍ୟମାନେ ନିଜର ଆଚମନରେ ବ୍ୟସ୍ତ । ଜଣେ କନେଷ୍ଟବଳ କହିଲା, ବସନ୍ତୁ, ଥାନାବାବୁ ଆସିଲେ ଆପଣଙ୍କ ଅଭିଯୋଗ ଶୁଣାଯିବ । ଦୁଇଘଣ୍ଟା ବିତିଗଲା ।

ଥାନାର ଇନ୍‌ସପେକ୍ଟର ଭଲ ମଣିଷ । ମୋ କାହାଣୀ ଶୁଣି ବହୁତ ସମବେଦନା ଜଣାଇଲେ ।

ମୁଁ ପଚାରିଲି, ଅନ୍ୟମାନେ ଏଭଳି ଅଭିଯୋଗ କରୁଛନ୍ତି କି ?

ସେ ମୋ ଆଡ଼େ ବହୁତ ସମୟ ଚାହିଁ ଚାହିଁ ଉତ୍ତର ଦେଲେ, ନା ।

ମୋ ବାପାଙ୍କ ମୁହଁକୁ ଚାହିଁ ଇନ୍‌ସେପ୍ଟର କହିଲେ, ଆଜିଠୁ ଆପଣଙ୍କ ଘରକୁ ଦୁଇଜଣ ପୋଲିସ୍ ଜଗିବାକୁ ପଠାଉଛି । ଆଉ ଏହାଠୁ ଅଧିକ ମୁଁ କ'ଣ କରିପାରିବି ?

ଆମେ ଘରକୁ ଫେରିଲୁ । ଆମ କାନ୍ଥ ଘଡ଼ିଟିର ଟିକ୍ ଟିକ୍ ବାଜୁଥିବା ଶବ୍ଦ ଢଂ ଢଂ ବାଜିବା ଭଳି ଶୁଭୁଥାଏ । ଚାରିଆଡ଼େ ନୀରବତାର ସୂଚକ ।

ଆମ ଘରକୁ ଯେଉଁ ଦୁଇଟି କନେଷ୍ଟବଳ ଆସିଲେ ସେମାନଙ୍କ ଚେହେରା ପିଲାଦୁହିଁଙ୍କ ଚେହେରାଠୁ କୌଣସି ଗୁଣରେ କମ୍ ନୁହେଁ। ଝାମ୍ପୁରା ଝାମ୍ପୁରା ବାଳ, ଲାଲ୍ ଲାଲ୍ ଆଖି, ଗାଲ ଉପରେ ବଙ୍କି ଯାଇଥିବା ମୁଛ । ପ୍ରଭେଦ ଏତିକି ସେମାନେ ମୋଟା ନଥିଲେ କି ପତଳା ନଥିଲେ । ତା'ଛଡ଼ା ସେମାନଙ୍କ ପାଟିରୁ ପାନ ବଳେଇ ପଡୁଥିଲା । ଦାନ୍ତଗୁଡ଼ାକ କଳା ମାର୍ବଲ ଚିପ୍‌ସ ଭଳି ।

ଚାରିପାଞ୍ଚଦିନ ଆମ ପାଖରେ ରହିବା ଭିତରେ ସେମାନେ ଆମ ପରିବାରର କୁଟୁମ୍ବ ହୋଇଗଲେ । ଦରକାରବେଳେ ଆମେ ଚାହା ଦେଲୁ, ଶୋଇବା ପାଇଁ ଅସୁବିଧା ହେଲା ତ ଜାଗା ଦେଲୁ । କିଛିଦିନ ପରେ ଆମର ପାଇଖାନା ଓ ବାଥ୍‌ରୁମ୍ ବି ସେମାନେ ବ୍ୟବହାର କଲେ । ଯିଏ ଆମର ଜୀବନ ରକ୍ଷକ ତାକୁ ଏତକ ସୁବିଧା ଦେବା ନାହିଁ ତ କାହାକୁ ଦେବା ?

ପଡ଼ୋଶୀମାନେ ମଝିରେ ମଝିରେ ବଡ଼ କୌତୁହଳ ସହିତ ଆମ ଘରଆଡ଼େ ଚାହାନ୍ତି । ଆମ ସଂସାରଟା ଯେପରି ଟେଲିଭିଜନ ପରଦାରେ ଦିଶୁଛି । ଅସରନ୍ତି ସିରିଆଲ୍‌ର ବେନମ୍ବରୀ ଏପିସୋଡ୍ । ନାଟକର ଶେଷ ନାହିଁ ।

ସେମାନେ କନେଷ୍ଟବଳ ଦୁଇଟାକୁ ଯେତେ ନ ଦେଖନ୍ତି, ଶୋଇଥିବା ଅବସ୍ଥାରେ ସେମାନଙ୍କ କାନ୍ଧ ଉପରେ ପଡ଼ି ରହିଥିବା ପୁରୁଣା ବନ୍ଧୁକ ଦୁଇଟାକୁ ବେଶି ଦେଖନ୍ତି । ପଡ଼ିଶା ଓ ଦେଖଣାହାରୀଙ୍କ ପ୍ରଶ୍ନରୁ ଏତକ ମନେହେଉଥିଲା ।

ସଞ୍ଜର କେତେ ମିନିଟ୍ ଜଗି ରହନ୍ତି । ତା'ପରେ ସେମାନଙ୍କୁ ବେଶ୍ ନିଦ ମାଡ଼ିଆସେ । ନିଦ ଆସିବାର ଆଭାସ ଆମକୁ ମିଳେ, ଯେତେବେଳେ ସେମାନଙ୍କ ଭିତରେ ଫୁସ୍‌ଫାସ୍ କଥାବାର୍ତ୍ତା ହୁଏ, ଆଉ କେହି ଆସିବେ ନାହିଁ ମ, ଶୋଇପଡ଼ ।

ତା'ପରେ ଆମ ମୁଣ୍ଡ ଉପରେ ଟିକ୍ ଟିକ୍ କରୁଥିବା କାନ୍ଥଘଡ଼ିଟି ବେଶି ଜୋର୍‌ରେ ଟିକ୍ ଟିକ୍ କରେ ।

ମଝିରେ ଦିନେ ସଞ୍ଜବେଳେ ଦୁହେଁ ଗୋଟିଏ ବୋତଲ ଖୋଲିଲେ । ମୋ ଆଡ଼କୁ ଚାହିଁ ପଚାରିଲେ ବରଫ ଆଉ ସୋଡ଼ା ପାଣି ଅଛି କି ?

ମୁଁ ବା କ'ଣ କହନ୍ତି । ଅଛି ବୋଲି କହିବି କ'ଣ, ଖୋଦ୍ ଆଣିଦେଲି ।

ତା'ପରେ ମଦ ପିଇବା ଦୈନନ୍ଦିନ କାରବାର ହୋଇଗଲା ।

ଦିନେ ସେମାନେ ଚାହିଁଲେ, ମୋ ଟେଲିଭିଜନ ଦେଖିବେ । ତୁମେ କାହିଁକି ଟେଲିଭିଜନ ଦେଖୁନାହଁ ? – ଦୁହେଁ ଏକା ସ୍ୱରରେ ପ୍ରଶ୍ନ କରିଥିଲେ ।

ଏତେଦିନ ରହିଗଲା ପରେ ସେମାନେ ଆଉ ଆପଣ ନ କହି ତୁମେ କହିବା ଆରମ୍ଭ କରିଦେଇଥିଲେ ।

ମୁଁ ବା ଆଉ କ'ଣ କରନ୍ତି ? ଡରରେ ତ ଟେଲିଭିଜନ ଅନ୍ କରୁନଥିଲୁ, ସେଦିନ ପ୍ରଥମ ଥର ପାଇଁ ଅନ୍ କଲୁ । ହିନ୍ଦୀ ସିନେମା ଚାଲିଥାଏ । ଗୁଡ଼ିଏ ସ୍ତ୍ରୀଲୋକଙ୍କ ଅର୍ଦ୍ଧଲଗ୍ନ ନାଚଗୀତର ଦୃଶ୍ୟ । କନେଷ୍ଟବଳ ଦୁଇଜଣଙ୍କୁ ବେଶ୍ ପସନ୍ଦ ହେଲା । ବାରଣ୍ଡାରେ ଆସି ଝରକାବାଟେ ଘର ଭିତରର ଟେଲିଭିଜନକୁ ଚାହିଁ ଢୋକ ପରେ ଢୋକ ପିଉଥାଆନ୍ତି ।

ବାପା ଆଉ ମୁଁ ଖୁବ୍ ଡରିଯାଇଥିଲୁ । ପିଇବାକୁ ସୀମିତ କରିବା ବା ସେମାନଙ୍କୁ ବନ୍ଦ କରିବାର କୌଣସି ଉପାୟ ପାଇଲୁ ନାହିଁ । କୋଠରୀଟି ସାରା ଚାରିଆଡ଼େ ଖାଲି ଡର ଥିଲା । ତାଙ୍କ ମୁହଁରୁ ଯେଉଁ ଗନ୍ଧ ଆସେ ତହିଁରେ ବି ଥାଏ ଡର ।

ଏମିତି ଦୁଇ ତିନିଦିନ ଯାଇଛି କି ନାହିଁ, ଦିନେ ରାତି ଦଶଟା ପରେ ବି ସେମାନେ ଚେଇଁ ରହିଥିଲେ । ଆମକୁ ଜବରଦସ୍ତ କଲେ ଟେଲିଭିଜନ ଖୋଲା ରଖିବାକୁ । ସେମାନେ ଯେଭଳି ଟେଲିଭିଜନ ଦେଖିପାରିବେ, ସେଥିଲାଗି ଝରକା ଖୋଲି ଦେଇଥିଲୁ । ଅନ୍ୟ ଝରକା ସବୁ ବନ୍ଦ । ଆଖିପତା ପଡ଼ିଆସିଛି କି ନାହିଁ ଧଡ଼ ଧଡ଼ ଶବ୍ଦ ଶୁଭିଲା । ସତେ ଯେପରି ଚୌକି-ବେଞ୍ଚ ଏକା ସାଙ୍ଗରେ ପଡ଼ିଗଲା ।

ବାପାଙ୍କର ଜନ୍ମ ସ୍ୱାଧୀନତା ପାଇବାର ପଚିଶ ତିରିଶ ବର୍ଷ ଆଗରୁ । ବିଦେଶୀ ସରକାର ଅମଳରେ ଏତେ ହିଂସା ଓ ଆଶଙ୍କା ସେ ଦେଖି ନଥିଲେ । ସମାଜ ଏତେ ବିଶୃଙ୍ଖଳା ନଥିଲା । ମୋର ଜନ୍ମ ସ୍ୱାଧୀନତା ପରେ । ସ୍ୱାଧୀନ ମାନେ ମନଇଚ୍ଛା କାମ କରିବା, ଆଇନ ଶୃଙ୍ଖଳା ନ ମାନିବା, ଜୋର ଜବରଦସ୍ତ ପଇସା ଆଦାୟ କରିବା : ଏକଥା ମୁଁ ଦେଖୁଛି । ବାପା ସାକ୍ଷୀ ।

କବାଟ ବନ୍ଦ କରି ଭିତରେ ରୁହ, ମୁଁ ଦେଖିଆସୁଛି କହି ବାପାଙ୍କଠାରୁ ବିଦାୟ ନେଲି ।

କବାଟ ଖୋଲିଛି କି ନାହିଁ ମୁଁ ଧକ୍କା ଖାଇଲି ଜଣେ କନେଷ୍ଟବଳ ଦେହରେ । ପିଇକି ମାତାଲ ।

'ଏଆଡ଼େ ଆ' । ସତେ ଯେପରି ସେ ରିକ୍ସାବାଲାକୁ କହୁଛି ବା ଗିରଫ କରିଥିବା ଚୋର ଡକାୟତକୁ କହୁଛି ।

ସେ ଡାଇନିଙ୍ଗ୍ ଟେବୁଲ୍ ପାଖରେ ବସିପଡ଼ିଲା । ମୁଁ ଆଉ ଗୋଟିଏ ଚେୟାରରେ ବସିଲି । ଦ୍ୱିତୀୟ କନେଷ୍ଟବଳଟି ସେତେ ପିଇ ନଥାଏ । ସେ ମୋ ପାଖରେ ଠିଆହେଲା ।

ପିଇଥିବା ପ୍ରଥମ କନେଷ୍ଟବଳର ଲାଲ୍ ଆଖି ଦୁଇଟି ମୋ ଆଡ଼କୁ ବୁଲିଆସିଲା । ତା'ପରେ ସେ ଯେଉଁସବୁ ଶବ୍ଦ ମୋ ପ୍ରତି ପ୍ରୟୋଗ କଲା, ତାକୁ ଲେଖିହେବ ନାହିଁ । କଥାର ମର୍ମ ହେଲା, ତୁ କ'ଣ ଭାବୁଛୁ ଆମେ ସବୁ ମୂର୍ଖ ?

ନିଶାରେ ସେ ଆପଣ, ତୁମେ ଓ ତୁ ମଧ୍ୟରେ ପ୍ରଭେଦ ଜାଣିପାରୁ ନଥାଏ ।

ମୁଁ କାହିଁକି ସେପରି ଭାବିବି ? ମୁଁ ତାକୁ ଆପଣ କହିବା ଆରମ୍ଭ କଲି ।

ତୁ କ'ଣ ଭାବୁଛୁ ତୁ ଯାହା କହିବୁ ଆମେ ତା' କରିବୁ ? ସେ ଆହୁରି ଜୋର୍‌ରେ ପାଟିକରି କହିଲା । ଅନ୍ୟ କନେଷ୍ଟବଳଟି ମୋ ପଛଆଡୁ ଖିଲିଖିଲି ହୋଇ ହସୁଥିଲା ।

ପ୍ରଥମ କନେଷ୍ଟବଲ୍‌ଟି ତା' ମନଇଚ୍ଛା ଗାଇଗଲା । ମୋତେ ସେ କେଉଁ ଆଖିରେ ଦେଖୁଥିଲା ତା' ମୁହଁରୁ ବାହାରିପଡ଼ିଲା । ଭୀରୁ, କାପୁରୁଷ, କୃପଣ, ଶୋଷକ, ସମାଜର ପୋକ ।

ହିନ୍ଦୀ ସିନେମାର ଭିଲେନ୍‌କୁ ହିରୋ ଯେପରି କହେ । ତା'ର ଶେଷକଥା ହେଲା, ମୁଁ ନିରୀହ ଗରାଖମାନଙ୍କ ରକ୍ତ ଶୋଷୁଥିବା ଗୋଟିଏ ଜୋକ । ମୋ କମ୍ପାନୀର ଜିନିଷଗୁଡ଼ାକ ଖରାପ, ଅଥଚ ମୋ କମ୍ପାନୀ ବିକୁଛି ଖୁବ୍ ଚଢ଼ା ଦରରେ ।

ଲୋକଟି ନୀରବ ହୋଇଗଲା । ତା' ମୁହଁଟା ଅସୀମ ଦୁଃଖର ଗୋଟିଏ ଛବି ହୋଇଗଲା । ପାଣ୍ଡୁର ମୁହଁଟି କହୁଥିଲା, ଲୋକଟା ସବୁକିଛି ଆଶା ଛାଡ଼ିଦେଇଛି । ଆଖି କହୁଥିଲା, ସେ ଏ ଦୁନିଆରେ କାହିଁକି ବଂଚିଛି ସେ ବିଷୟରେ ସେ ସନ୍ଦିଗ୍ଧ । ସେ ପୁଣି ଆସିଛି ମୋତେ ଓ ମୋର ପରିବାରକୁ ସୁରକ୍ଷା ଦେବ । ଆସିଲାବେଳେ ସୁରକ୍ଷା ଦେବାରେ ତା'ର ଇଚ୍ଛା ପ୍ରବଳ ଥିଲା । କିନ୍ତୁ ଏବେ ତା'ର ବନ୍ଧୁକ ନଳୀ ଭିତରୁ ନିରାଶ ଓ ନପୁଂସକତାର ବାଷ୍ପ ବାହାରୁଛି ।

ଅନ୍ୟ କନେଷ୍ଟବଲ୍‌ଟିକୁ ମୁଁ ଚାହିଁଲି । ସେ ମୋତେ ଥରେ ଚାହୁଁଥାଏ ତ ପ୍ରଥମ କନେଷ୍ଟବଲ୍‌କୁ ଥରେ ଚାହୁଁଥାଏ । ମଝିରେ ମଝିରେ ହସିଦେଉଥାଏ । ମୋ ମୁହଁରେ ତା' ମୁହଁ ପଡ଼ିଗଲେ ତା' ହସଟି ବାହାରିଆସୁଥାଏ ଠିକ୍ ଦୁଷ୍ଟ ଛୁଆଟିଏ ଯେଭଳି କରେ । ହଠାତ୍ ସେ ଓଠରେ ଅଙ୍ଗୁଳି ଚାପି ଇସାରା ଦେଲା, ଚୁପ୍ ରୁହ । ମୁଁ ତ ଚୁପ୍ ଥିଲି, ଟିକେ ଗମ୍ଭୀର ହୋଇଗଲି ।

ସତେ ଯେପରି ମୃତ୍ୟୁର ସ୍ୱପ୍ନରୁ ଉଠିପଡ଼ିଲା ପ୍ରଥମ କନେଷ୍ଟବଲ୍‌ଟି । ଢାଏଁ କରି ବିଧା ମାରିଲା ଡାଇନିଙ୍ଗ୍ ଟେବୁଲ୍ ଉପରେ । ଜୋର୍ ପାଟି କରି ମୋତେ ପଚାରିଲା, ତୁ ଜାଣିଛୁ ମୁଁ କିଏ ?

ମୁଁ କିଛି କହିବା ପୂର୍ବରୁ ସେ ବକିଗଲା । ମୁଁ କନେଷ୍ଟବଲ୍ ନମ୍ବର ୭୮୬ । ଏ ନମ୍ବରଟା ଜାଣିଛୁ । ଏହାର ଅର୍ଥ ବିସ୍‌ମିଲ୍ଲା ହିର୍‌ରହମ୍ମା ନିର୍‌ରହିମ୍ । ଆମ ଧର୍ମରେ ସବୁଠାରୁ ଶୁଭସୂଚକ । ତୁ ଜାଣିନାହୁଁ ?

ମୁଁ ଚୁପ୍ ରହିଲି । ଅନ୍ୟ କନେଷ୍ଟବଲ୍‌ଟି ଖିଲିଖିଲି ହୋଇ ହସିଦେଲା ।

ମୋ କାନ୍ଧକୁ ଜୋର୍‌ରେ ହଲାଇ ଦେଇ ପ୍ରଥମ କନେଷ୍ଟବଲ୍‌ଟି କହିଲା, ମୁଁ ତତେ କହୁଛି, ଶୁଭୁ ନାହିଁ କି ? ତା' ମୁହଁରୁ ଆଲକୋହଲ୍‌ର ହାଓ୍ୱା ଆଉ ବିଡ଼ି ତଥା ପାନର ପଚା ଗନ୍ଧର ବାଦଲ ବାହାରି ମୋ ମୁହଁକୁ ଘୋଡ଼ାଇ ପକାଇଲା । ମୁଁ ହଁ କରିବା ଛଡ଼ା ଚାରା ନଥିଲା ।

ମୋ ଆଖିରେ ତା' ଆଖି ମିଳାଇ ଥିବା ଅବସ୍ଥାରେ ସେ ନଥ୍ କରି ବସିପଡ଼ିଲା । ଆଖିର ପତା ଲାଲ୍ ଲାଲ୍ ଦିଶୁଥିବା ଡୋଳା ଦୁଇଟାକୁ ବନ୍ଦ କରିଦେଲା । କିଛି ସମୟ ସବୁ ଚୁପ୍‌ଚାପ୍ ।

ହଠାତ୍ ପୁଣି ଉଠିପଡ଼ି କହିଲା, ତୁ ଏ ଘରେ କେତେଦିନ ହେଲା ରହିଲୁଣି ?

ମୁଁ କିଛି ଉତ୍ତର ଦେବା ପୂର୍ବରୁ ସେ ପୁଣି କହିଲା, ଆସିଲୁ ମୋତେ ପୂରା ଘରଟା ଦେଖାଇଲୁ । ଭିତରେ କ'ଣ ରଖିଛୁ ଦେଖେଁ ।

ମୁଁ କହିଲି, ଦେଖାଇବି, ଭୋର ହେଉ । ବର୍ତ୍ତମାନ ତ ନିଘୋଡ଼ ରାତି । ସେ ଜୋର୍‌ରେ ପାଟିକରି କହିଲା, ବର୍ତ୍ତମାନ ଦେଖା । ତୁ କ'ଣ କମିଶନର ସାହେବ କି ? ବଡ଼ ବଡ଼ ମନ୍ତ୍ରୀଙ୍କ ଘର ରାତି ଅଧରେ ମୁଁ ତଲାସି ବୁଲିଛି ।

ଏ ଲୋକ ସାଂଗେ ଯୁକ୍ତି କରି ଲାଭ ନାହିଁ ବରଂ ତା'ର ପ୍ରଶଂସା ବା ତାରିଫ୍ କରିବା ଉଚିତ୍ । ମୁଁ ଭାବି ଭାବି ଠିକ୍ କଲି । କହିଲି, ମନ୍ତ୍ରୀମାନେ ତ ତୁମଯୋଗୁ ଆସନରେ ଅଛନ୍ତି । ତୁମେ ନଥିଲେ କୋଉ ମନ୍ତ୍ରୀଟା ଥାଆନ୍ତା କି ?

ମୋର ଏତକ କଥା ସତେ ଯେପରି କନେଷ୍ଟବଲ୍‌ର ଜୀବନୀ ସ୍ୱିଚ୍‌ଟା ଟିପିଦେଲା । ଗଳଗଳ କରି ତା' ପାଟିରୁ ମହାଭାରତ ବାହାରିଲା ।

ମନ୍ତ୍ରୀଙ୍କ ନାମ ଧରି ସେ କହିଗଲା କେଉଁ ମନ୍ତ୍ରୀ, ଏମ୍.ଏଲ୍.ଏ. ହେବା ପୂର୍ବରୁ କେତେଥର କେଉଁ କେଉଁ ଅପରାଧରେ ବୁକ୍ ହୋଇଛନ୍ତି । ଏବେ ବି କିପରି ମନ୍ତ୍ରୀ ଥାଇ ମଧ୍ୟ ସେମାନେ ଅପରାଧ କରୁଛନ୍ତି । ଚାକିରି ପାଇଁ ଆସୁଥିବା ଝିଅ, ବୋହୂଙ୍କ ସହିତ କିପରି ଅନୈତିକ କାମ କରିବାରେ ଲାଗିଛନ୍ତି । ଜଣେ ଦିଜଣଙ୍କ ନାମ ବି କହିଗଲା । ସେ ନିଜେ କିପରି ଜଣଙ୍କ ମୃତ୍ୟୁର କାରଣ ହୋଇଛି । ଇତ୍ୟାଦି... ଇତ୍ୟାଦି...

କନେଷ୍ଟବଲ୍‌ର ଆସ୍ୱାଳନର ନିଆଁରେ ମୁଁ କିଛି କିଛି ଅମ୍ଳଜାନ ଯୋଗାଉଥିଲି । ସେ ଆହୁରି ଚଢ଼େଇ ବଢ଼େଇ କରି କହିଲା । ମୋ ଜାଣତରେ ଭଲ ମନ୍ତ୍ରୀଙ୍କୁ ମଧ୍ୟ ବଦନାମ କଲା । ଜନୈକ ମନ୍ତ୍ରୀଙ୍କର ଶୟନକକ୍ଷର ଦ୍ୱାରରେ ଡିଉଟି କରୁଥିବା କଥା କହୁ କହୁ ହଠାତ୍ ସେ ମୋତେ ପଚାରିଲା, ତୁ କେଉଁଠି ଶୋଉଛୁ । ତୋ ବେଡ୍‌ରୁମ୍ ମୋତେ ଦେଖା ।

ମୁଁ ଜୋର୍ କରି ମନାକଲି । ବାପା ଶୋଇଛନ୍ତି, ବୁଢ଼ା ଲୋକ, ହଠାତ୍ ନିଦ ଭାଂଗିବା ଭଲ ନୁହେଁ ।

ଏତକ ଶୁଣି କନେଷ୍ଟବଲ୍ ମୋର ଚଉଦ ପୁରୁଷ ଶୋଧିଗଲା । କହିଲା, ଶଳା, ମୁଁ ଚେଇଁ ଚେଇଁ ତୋ ଘର ଜଗିବି, ଆଉ ଶଳାର ବାପ ବେଶ୍ ଆରାମରେ ଶୋଇଥିବ ? ଏତକ କହୁ କହୁ ସେ କବାଟରେ ଦୁଇ ତିନିଥର ବନ୍ଧୁକ କୁନ୍ଦା ବାଡ଼େଇଲା । ମୋ ଡର ହେଲା କବାଟଟା ଭାଂଗିଯିବ ।

ଏ ଶବ୍ଦରେ ବାପା ଉଠିପଡ଼ିଲେ । କ'ଣ ହେଲା, କ'ଣ ହେଲା, ପାଟିକଲେ ।

ମୁଁ ଆଉ ସମ୍ଭାଳି ପାରିଲି ନାହିଁ । ହୋସ୍‌ରେ ନଥିବା ଭଳି ଏକାଥରକେ ତା' ହାତରୁ ବନ୍ଧୁକଟି ଛଡ଼ାଇ ନେଲି । ସେ ତ ମଦ ଆସକ୍ତିରେ ଦୁର୍ବଳ ଥିଲା । ତଳେ ପଡ଼ିଗଲା । ଦ୍ୱିତୀୟ କନେଷ୍ଟବଲ୍‌ଟି ଏକଥା ଜାଣିବା ପୂର୍ବରୁ ମୁଁ କାନ୍ଥ କଣରେ ଡେରା ହୋଇଥିବା ତା ବନ୍ଧୁକଟି ବି ନେଇଆସିଲି ।

କନେଷ୍ଟବଲ୍ ଆଡ଼କୁ ବନ୍ଧୁକ ଦେଖାଇ କହିଲି, ଗେଟ୍ ଆଉଟ୍ । ନହେଲେ ଫାୟାର୍ କରିବି ।

ମୋ ପାଟି ଶୁଣି ଦ୍ୱିତୀୟ କନେଷ୍ଟବଲ୍‌ଟି ଡରିଗଲା । ଆଉ ତୁ ତା ବାହାରିଲା ନାହିଁ । ଦୁହିଁଙ୍କର ବି ଚେତା ପଶିଲା । ଦୁହେଁ କହିଲେ, ସାର୍, ବନ୍ଧୁକ ଆମକୁ ଦେଇଦିଅନ୍ତୁ, ନହେଲେ ଆମର ଚାକିରି ରହିବ ନାହିଁ ।

ବର୍ତ୍ତମାନ ଘରୁ ବାହାରିଯାଅ । ନହେଲେ, ଫାୟାର୍ କରିବି । ମୋ ପାଟିରେ ସେମାନେ ମୂଷାଭଳି ଧୀରେ ଧୀରେ ଘର ଛାଡ଼ି ପଦାକୁ ଚାଲିଗଲେ ।

ସେମାନେ ତ ଚାଲିଗଲେ । ମୁଁ କବାଟ ବନ୍ଦ କରି ଯେମିତି ବୁଲିପଡ଼ିଛି, ୱାସ୍‌ବେସିନ୍ ଉପର ଆରିସିରେ ଆଖି ପଡ଼ିଗଲା । ଇସ୍, ମୁଁ କି ବିଭତ୍ସ ଦିଶୁଛି । ଗୋଟିଏ ଅପରାଧୀ ମୁହଁ ଭଳି ।

ତା' ପରଦିନ ସକାଳୁ ମୁଁ ଗିରଫ ହେଲି, ସାତଦିନ ଧରି ଥାନା ହାଜତରେ ରହିଲି । କୋର୍ଟକୁ ଚାଲାଣ ହେଲି । ତା'ପରେ । ଦେହ, ଗୋଡ଼, ହାତ ଦରଜ କହିଲେ ନସରେ । ଅଷ୍ଟମ ଦିନ ବେଲ୍ ମିଳିଲା । କମ୍ପାନୀ ଘର ଛାଡ଼ିଦେଲି । ଗାଁରୁ ଯିବା ଆସିବା କଲି ।

ସେ ଘର ଆଉ ଜଣେ କର୍ମଚାରୀ ନେଲେ । ସେ ମୋଠାରୁ ସମସ୍ତ ଘଟଣା ଶୁଣିଥିଲେ ।

ଏବେ ମୁଁ ଗୋଟିଏ ଚିଠି ପାଇଛି । ନୂଆ ଭଡ଼ାଟିଆଙ୍କଠାରୁ । ଦୁଇଜଣ ଟୋକା ଆସି ବାରମ୍ବାର ଚାନ୍ଦା ମାଗୁଛନ୍ତି । ଠିକ୍ ସେଇଭଳି ଚେହେରା । ଯେଉଁଭଳି ମୁଁ ବର୍ଣ୍ଣନା କରି ତାକୁ କହିଥିଲି । ଗଳୁରା ନିଶକୁ ଦୁଇଗାଲ ଉପରକୁ ଉଠାଇଛନ୍ତି । ସେହିଭଳି ଟାଣ ସ୍ୱରରେ ସେମାନେ କହୁଛନ୍ତି, ତୁମେ ଯାହା ପାରୁଛ ଦିଅ । ନଚେତ୍ ଆଗ ଭଡ଼ାଟିଆ ଭଳି ଏ ଘର ଛାଡ଼ିବ ।



# ଅନ୍ୟ ଏକ ଧର୍ମପଦ

## ଅପୂର୍ବ ରଂଜନ ରାୟ

ଶିବେଇ ସାଆନ୍ତେ ବିଷଣ୍ଣ ବଦନରେ କ୍ଳାନ୍ତ ହୋଇ ବସିଥିବାର ଦେଖି ବିଶୁ ମହାରଣା ବିବ୍ରତ ହୋଇପଡ଼ିଲା । ସାଆନ୍ତେ କାହିଁକି ଏମିତି ବିଷାଦ ବିମର୍ଷ ହୋଇ ବସିଛନ୍ତି; ସେ କିଛି କଳ୍ପନା କରିପାରିଲା ନାହିଁ ।

ସାଆନ୍ତାଣୀଙ୍କ ମନରେ ବି ଆଜି ସୁଖ ନାହିଁ । ଘରେ ନିସ୍ତବ୍ଧତା ଘୋଟିଯାଇଛି । ସବୁ ଶୂନ୍‌ଶାନ୍ । ବିଶୁ ମହାରଣା ଏଥିପାଇଁ କାରଣ ଜାଣି ନ ପାରି, କିଛି ମୁହୂର୍ତ୍ତ ନୀରବ ରହିଲା ।

"ସାଆନ୍ତେ ଏମିତି ମନ ଦୁଃଖରେ ବସିଛନ୍ତି କାହିଁକି ମା' ?"

"ସେକଥା ଆଉ କହିବି କ'ଣ ବିଶୁ ! ଲକ୍ଷ ଲକ୍ଷ ଟଙ୍କାର କାମ ମାଟି ହୋଇଯାଇଛି । ସମ୍ମାନ ଆଉ ନାହିଁ ତୋ ବାବୁଙ୍କର !"

ଚମକି ପଡ଼ିଲା ବିଶୁ ମହାରଣା । ମଥାରେ ତା'ର ବଜ୍ର ପଡ଼ିଲା ପରି ସେ ମନେ କଲା । ଆଶ୍ଚର୍ଯ୍ୟ ହୋଇ ପଚାରିଲା- "କ'ଣ କହୁଛନ୍ତି ସାଆନ୍ତାଣୀ ! କି କଥା ଇଏ ! ସାଆଁନ୍ତଙ୍କର ସମ୍ମାନ ଚାଲିଯିବ ! ଏକଥା ବିଶୁ ମହାରଣା କେବେ ଦେଖିବନି ଆଖିରେ ମାଆ ।"

"ହଁରେ ବିଶୁ ! ଲକ୍ଷ ଲକ୍ଷ ଟଙ୍କା କେବଳ ସାମାନ୍ୟ ଗୋଟିଏ କାର୍ଯ୍ୟ ପାଇଁ ଚାଲିଯାଉଛି । ଏମତି ସମ୍ମାନ କେବେ ତମ ବାବୁଙ୍କର ହାନି ହୋଇନଥିଲା । ଯେଉଁ ବଡ଼ ପୋଲଟି କନ୍ଦଳ ନଈ ଉପରେ ନିର୍ମିତ ହୋଇଥିଲା, ତାହା ଶେଷ ହୋଇପାରୁନି । ରାଜାଙ୍କର ନିର୍ଦ୍ଦେଶ- "ଯଦି ଏହା ଆସନ୍ତା ୧ ତାରିଖ ସୁଦ୍ଧା ଶେଷ ନ ହେଉଛି, ତେବେ ତାଙ୍କୁ ଏ ବାବଦରେ ଗୋଟାଏ ଟଙ୍କା ବି ମିଳିବ ନହିଁ । ଅମାନତ ଟଙ୍କା ମଧ୍ୟ ସବୁ ଉଡ଼ିଯିବ ।"

"ସାଆନ୍ତେ, କହନ୍ତୁ କ'ଣ ଏସବୁ ସାଆନ୍ତାଣୀ କହିଯାଉଛନ୍ତି ! ମୁଁ ତ କିଛି ବୁଝିପାରୁନି !"

କହିବି କ'ଣ ଆଉ ? ପୋଲଟି ଯଦି ଆସନ୍ତା ୧ ତାରିଖ ସଂଧ୍ୟା ସୁଦ୍ଧା ଶେଷ ନ ହେଉଛି, ତେବେ ମୋର ସମ୍ମାନ ରହିବ ନାହିଁ । ୨ ତାରିଖ ସକାଳେ ପୂର୍ତ୍ତ ବିଭାଗ ମନ୍ତ୍ରୀ ତାହା ଉଦ୍‌ଘାଟନ କରିବେ । ସେଥିପାଇଁ ରାଜାଙ୍କର ନିର୍ଦ୍ଦେଶ, ଏହା ଉଦ୍‌ଘାଟନ ଉତ୍ସବ ପୂର୍ବରୁ ଶେଷ ହେବା ଆବଶ୍ୟକ । ଏହା ବା ସମ୍ଭବ ହେଉଛି କିପରି ? ବର୍ତ୍ତମାନ ଧାରା ଶ୍ରାବଣ । ନଈରେ ଅକାତ କାତ ସ୍ରୋତ ଚାଲିଛି ! କେତେ କ'ଣ ଏହି ସ୍ରୋତରେ ଭାସିଯାଉଛି । କିଏ ବା ସାହସ କରିବ ପୋଲର ମଝି ଖୁଣ୍ଟିଟି ସମ୍ପୂର୍ଣ୍ଣ କରିବା ପାଇଁ ! ସବୁ କାର୍ଯ୍ୟ ସରିଯାଇଛି । କେବଳ ମାତ୍ର ମଝି ଖୁଣ୍ଟିଟି ବାକି ପଡ଼ିଛି । ବର୍ଷାଦିନ ପରେ ତାହା ଶେଷ ହୋଇଥାଆନ୍ତା । ଏବେ କ'ଣ ତାହା ସମ୍ଭବ ?

ସବୁ ମୂଲିଆ କ'ଣ ମନା କରିଦେଲେ ସାଆନ୍ତେ ?

ମନା କରିବେ ନାହିଁ ! ଏହା କ'ଣ ସମ୍ଭବ ? ଏ କଥା ସିନା ରାଜା ବୁଝୁନାହାନ୍ତି । ହେଲେ କିନ୍ତୁ ଆମର ବା ଉପାୟ କ'ଣ ?

ବିଶୁ ମହାରଣା ଏ କଥା ଶୁଣିଲା ପରେ ନୀରବ ହୋଇ ରହିପାରିଲା ନାହିଁ । ବିଚଳିତ ହୋଇ କହିଉଠିଲା- "ଆଜ୍ଞା ଉପାୟ ଅଛି । ବ୍ୟସ୍ତ ହୁଅନ୍ତୁ ନାହିଁ । ଧୈର୍ଯ୍ୟ ଧରନ୍ତୁ, ସବୁ ହେବ ।"

"ପାରିବୁ ବିଶୁ ! ଏ କାମରେ ତୁ ମୁଣ୍ଡ ଲଗାଇ ପାରିବୁ ?"

ବିଶୁ ମହାରଣା ମନେ ମନେ ଭାବିଲା– "ଯାହାର ନିମକ ଖାଇ ଏତେଦିନ ବଂଚିଛି, ନିଶ୍ଚୟ ତା'ର ଉପକାର କରିବୁ । ଏବେଳରେ ଆମେ କ'ଣ ଦୂରେଇ ଯିବୁ !"

ରାତି ପାହିଲା । ଶିବେଇ ସାଆନ୍ତେ ସେମିତି ମାନସିକ ଅଶାନ୍ତି ଭିତରେ ଥାଆନ୍ତି । ବିଷଣ୍ଣ ମାନସିକତା ଦୂର ହେଉନାହିଁ । କିପରି ସମ୍ମାନ ରଖିହେବ, ସେଥିପାଇଁ ସେ ଚିନ୍ତାକୁଳ । ସମଗ୍ର ପରିବାରରେ ବିଷାଦ କାଳିମା ମାଡ଼ି ବସିଥାଏ । ଏତିକିବେଳେ ବିଶୁ ମହାରଣାର ଏକମାତ୍ର ପୁତ୍ର ଜୟବିନୋଦ ପହଞ୍ଚିଗଲା । ଧୀରେ ଧୀରେ କହିଲା– "ବାବୁ, ସବୁକଥା ଜାଣିଛି । ଆଉ ବିଳମ୍ବ କରନ୍ତୁ ନାହିଁ । ମୋତେ ଛାଡ଼ିଦିଅନ୍ତୁ । ମୁଁ ମଝି ଖୁଣ୍ଟିଟି ପୂର୍ଣ୍ଣାଙ୍ଗ କରିଦେବି ।"

"ଶିବେଇ ସାଆନ୍ତେ ଆଶ୍ୱସ୍ତ ହୋଇ କହିପକାଇଲେ- ସତରେ ବାବା, ତୁ ଏତେ ବଡ଼ ଦାୟିତ୍ୱ ତୁଲାଇ ପାରିବୁ ?"

"ପାରିବି ଆଜ୍ଞା । ଯାହା ପାଖରେ ନିଜକୁ ସମର୍ପଣ କରିଦେଇଛୁ, ଯାହା ଘରର ଅନ୍ନରେ ଆମେ ପ୍ରତିପାଳିତ, ତାହା ପାଇଁ ଆମର କ'ଣ କର୍ତ୍ତବ୍ୟ ନାହିଁ ! ଜାଣିଛି, ସବୁ ଶୁଣିଛି । କାଲି ସଂଧ୍ୟାରେ ପ୍ରାୟ ୧୦୦ ଜଣ କୁଲି ମଜୁରିଆ ସମସ୍ତେ ମନାକରିଯାଇଛନ୍ତି । କେହି ବର୍ତ୍ତମାନ ଏଇ ବର୍ଷାଦିନରେ ପୋଲର ମଝିଖୁଣ୍ଟ କରିପାରିବେନି । ଖୁଣ୍ଟ ପାଖରେ ଅତଳକାତ ସ୍ରୋତ । କିଏ ସେଠି ଖୁଣ୍ଟିର ମୁଣ୍ଡି ମାରିବ ! ଏଥିପାଇଁ କେହି ରାଜି ହୋଇନାହାନ୍ତି । ଆପଣ ଯଥେଷ୍ଟ ଅଧିକ ଟଙ୍କା ମଜୁରୀ ଦେବା ପାଇଁ ପ୍ରସ୍ତୁତ, ଏକଥା ବି ଶୁଣିଛି; ମାତ୍ର କେହି ସାହସୀ ହେଉ ନାହାନ୍ତି । ଏଇ କଥା ତ ! ଆଜି ହେଉଛି ମାସର ଶେଷ ତାରିଖ । ସମୟ ମାତ୍ର ଦିନଟିଏ । ଆସନ୍ତାକାଲି ୧ ତାରିଖ । ଆସନ୍ତାକାଲି ସୂର୍ଯ୍ୟାସ୍ତ ପୂର୍ବରୁ ଏହି କାର୍ଯ୍ୟ ସାରିବା ଲାଗି ବିଭାଗୀୟ ଉଚ୍ଚ କର୍ତ୍ତୃପକ୍ଷଙ୍କର ନିର୍ଦ୍ଦେଶ ।

ପାରିବି ସାଆନ୍ତେ । "ଏଇଥିପାଇଁ ଏତେ ବ୍ୟସ୍ତ !"

"ମୋତେ ତୁ ବଂଚାଇ ଦେବୁରେ ଜୟ, ଚେଷ୍ଟାକର । ଭଗବାନ ଭରସା ।"

"ଦିଅନ୍ତୁ ସାଆନ୍ତ, ମୋର କେତୋଟି କୁଲି ମଜୁରିଆ ଆବଶ୍ୟକ । ସେମାନେ ସବୁ କୂଳରେ ରହି ମୋତେ ଆବଶ୍ୟକୀ ସାହାଯ୍ୟ କରନ୍ତୁ । ମୁଁ ମଝି ଖୁଣ୍ଟିଟି ସମ୍ପୂର୍ଣ୍ଣ କରିଦେବି ।"

କୁଲି ମଜୁରିଆ ନେଇ ଯେତେବେଳେ ତା' ପରଦିନ ଜୟବିନୋଦ ପୋଲ ଅଭିମୁଖେ ଯାତ୍ରା କଲା, ସେତେବେଳେ ଶିବେଇ ସାଆନ୍ତଙ୍କର ମନ ସାମାନ୍ୟ ଆନନ୍ଦିତ ହେଲା । ଆଶ୍ୱାସନା ପାଇଲା ପରି ସେ ମନେକଲେ ।

ଆଜି ୧ ତାରିଖ ।

ମୁନୀବର ସମ୍ମାନ ରକ୍ଷା କରାଯିବ । ସେଥିପାଇଁ ବହୁ ଆଗ୍ରହ ଓ ଉତ୍‌କଣ୍ଠାର ସହ ଜୟବିନୋଦ କାର୍ଯ୍ୟରେ ଲାଗିଗଲା । ଅନ୍ୟ ସମସ୍ତ କୁଲି ମଜୁରିଆମାନେ ଚାହିଁଥାଆନ୍ତି । ଯେଉଁ କାର୍ଯ୍ୟକୁ ଏତେ ମୂଲିଆ କରିବା ଲାଗି ସାହସ କରିନାହାନ୍ତି, ସେ କିପରି ସାହସ କରୁଛି ! ଏତେ ବଡ଼ ନଈ ! ଜଳର ସ୍ରୋତ ଚାଲିଛି । ଅଥଚ ଭୟ ନ କରି ପିତାର ଏକମାତ୍ର ପୁତ୍ର ଜୟବିନୋଦ ମଝି ଖୁଣ୍ଟର କାର୍ଯ୍ୟ କରିଚାଲିଛି ।

ଅପରାହ୍ନ ୩ ଘଟିକା ହେଲା । ମୂଲିଆମାନେ କ୍ଳାନ୍ତ ହୋଇପଡ଼ିଲେ । ଘରକୁ ଫେରିବା ଲାଗି ବ୍ୟସ୍ତ ହେବା ଦେଖି, ନଈର ଭିତରୁ ମଝିଖୁଣ୍ଟ ଉପରୁ ଜୟବିନୋଦ କହିଲା- "ଭାଇମାନେ, ତୁମେ ସବୁ ଚାଲିଯାଅ, ମୁଁ ଏକୁଟିଆ ଏ କାମ ସାରି ଆଜି ଯିବି ।"

୨ ତାରିଖ । ପୋଲ ଉଦ୍‌ଘାଟିତ ହେବ । କେତେ ବଡ଼ ବଡ଼ ଅଫିସରମାନେ ଆସି ପୋଲ ପାଖରେ ପହଞ୍ଚିଗଲେଣି । ଲୋକଗହଳିରେ ନଈକୂଳ ମୁଖରି ଉଠିଛି । ବିଭାଗୀୟ କର୍ତ୍ତୃପକ୍ଷ ସମସ୍ତେ ଶିବେଇ ସାଆନ୍ତଙ୍କୁ ଧନ୍ୟବାଦ ଜଣାଇଲେ । ଏହି ବର୍ଷାଦିନରେ ନ ହେବା କାର୍ଯ୍ୟ ସଂପାଦନ କରିଥିବା ହେତୁ, ସେ ବହୁ ଧନ୍ୟବାଦର ପାତ୍ର ବୋଲି ବିଭାଗୀୟ ମୁଖ୍ୟ ମତ ଦେଲେ । ଶତ ପ୍ରଶଂସାରେ ଭରିଉଠିଲା ଶିବେଇ ସାଆନ୍ତଙ୍କ ହୃଦୟ । ସେ ଗର୍ବ ଅନୁଭବ କରୁଥାଆନ୍ତି ।

'ବହୁ ପରିଶ୍ରମ, ବହୁ ଯୋଜନା ପରେ ଏ ସେତୁ ସଂପୂର୍ଣ୍ଣ ହୋଇପାରିଛି । ଏଥିପାଇଁ କେତେ ବୁଦ୍ଧି, କେତେ ଟଙ୍କା ମୋର ଖର୍ଚ୍ଚ ହୋଇଛି, ତା'ର ସୀମା ନାହିଁ ।" ଏମିତି କେତେ କ'ଣ ଶିବେଇ ସାଆନ୍ତେ କହିଚାଲିଥାଆନ୍ତି ।

ବିଭାଗୀୟ କର୍ତ୍ତୃପକ୍ଷ ଜଣେ ଶିବେଇ ସାଆଁନ୍ତଙ୍କ କାନ ପାଖରେ କହିଦେଲେ- "ବୁଝିଲେ, କାଲି କିମ୍ୱା ପହରିଦିନ ଯାଇ ଆପଣଙ୍କ ବିଲ୍‌ଟି ଅଫିସ୍‌ରୁ ନେଇଆସିବେ । ମୋର ଯାହା ଅନୁମାନ ୨ ଲକ୍ଷ ୧୦ ହଜାର ପର୍ଯ୍ୟନ୍ତ ଆପଣଙ୍କ ବିଲ୍ ହୋଇପାରେ ।"

କିଛିଦିନ ପରେ ବିଶୁ ମହାରଣା ସେହି ପୋଲ ଉପରେ ଯାଉଥାଏ । ଆଖି ପଡ଼ିଲା ଗୋଟିଏ ମାର୍ବଲ ପଥର ଉପରେ । ସେହି ପଥରରେ ଲେଖାହୋଇଛି- "ଏହି ସେତୁ ପୂର୍ତ୍ତବିଭାଗ ମନ୍ତ୍ରୀ ଘନଶ୍ୟାମ ବହିଦାରଙ୍କ ଦ୍ୱାରା ଉଦ୍‌ଘାଟିତ । ଏହାର ଦାୟିତ୍ୱ ନେଇଥିଲେ ଶିବେଇ ସାଆନ୍ତ ।"

ଆଖିରୁ ତା'ର ଦୁଇଧାର ଲୁହ ବୋହିପଡ଼ିଲା ।

ଏକୋଇର ବୋଲା ବିଶିକେଶନ ଜୟବିନୋଦ ତା'ର ଏଇ ପୋଲ ପାଇଁ ଜୀବନ ହରାଇଛି । କାର୍ଯ୍ୟ ଶେଷ କରିଦେଇ ଆନନ୍ଦରେ ଉଲ୍ଲସିତ ହୋଇ କୂଳକୁ ଫେରୁଥିବା ସମୟରେ ଗୋଡ଼ ତା'ର ଖସିଗଲା ଯେ, ଆଉ ବିଚରା ଏଇ ଦୁନିଆରେ ରହିଲା ନାହିଁ ।

ରହିଛି ସେଇ ସେତୁ । ମାର୍ବଲ ପଥରରେ ତା'ର ନାମ ନଥାଉ ପଛେ, ଜଣେ ମଣିଷର ନାମ ରହିଛି ତ ! ଏମିତି ମଣିଷ କ'ଣ ଏ ଦୁନିଆରେ ଅଭାବ ? ଜୟବିନୋଦ ଭଳି କୋଟିକରେ ଗୋଟିଏ ମଣିଷ ସିନା ମିଳିବା ଅସମ୍ଭବ !!



# ବୋଉ

## ପ୍ରଭାତ ମହାପାତ୍ର

ବୋଉ ଆସିଚି ।

ବୋଉ ଆସିଚି । ବଡ଼ି, ବରକୋଳି ଓ ମାଛ ଆଣିଚି । ହାତରେ ପାରିଥିବା ବଡ଼ି, ବାରିରେ ଫଳିଥିବା କୋଳି ଓ ପୋଖରିରୁ ଧରା ହୋଇଥିବା ମାଛ ଆଣିଚି ।

କାଲି ଆସିଚି । ସଞ୍ଜରେ ପହଞ୍ଚି ଘରସାରା ହଉଚି । ସୁମିତ୍ରାଙ୍କ ପଛେ ପଛେ ଯାଉଚି । ମୁନ୍ନାମୁନ୍ନିଙ୍କି କେତେକଥା କହୁଚି । ଭଙ୍ଗା ଦେହରେ ସେ ପଡ଼ିଉଠି ଆସିଚି । ନୂଆ ଫଳିଥିବା ବାତାପିଟି ଆଣିଚି ।

ନୂଆ ଗଛରେ ପହିଲି ଫଳିଥିବା ଫଳ । ପାଚି ଆସୁଥିଲା । ଆଉ ରହିବାର ନଥିଲା । ତେଣୁ ଆସିବାକୁ ହେଲା–

ସଜନା ଗଛରେ ଛୁଇଁ ହେଇଥିଲା । ଡାଳ ଛୁଇଁରେ ନଇଁ ଯାଉଥିଲା । ଫେର୍ ଯାଇ କେବେ ହବାର ଥିଲା । ତେଣୁ ଆସିବାକୁ ହେଲା–

ପୋଖରୀରେ ପାଣି କମି ଆସୁଥିଲା । ଏବର୍ଷ ପୋଖରୀରେ ବେଶି ମାଛ ନଥିଲା । ବଡ଼ ମାଛ ଦୁଇଟା ଜାଲରେ ପଡ଼ିଥିଲା । ତେଣୁ ଆସିବାକୁ ହେଲା–

ଗାତ ମାଙ୍କଡ଼ ହେଇଚନ୍ତି । କଷିବେଲୁ ଛିଣ୍ଡେଇ ଖାଇ ଯାଉଚନ୍ତି । ତୁଳି ଉପରେ ଘୋଡ଼ା ହୋଇ ଏଇ ଗୋଟିକ ଥିଲା । ତେଣୁ ଆସିବାକୁ ହେଲା–

ତଳବାରିକି ମାତ୍ରା ପଡ଼ିଥିଲା । ଦି' ବର୍ଷରେ ଏବେ ଖୋଳା ହୋଇଥିଲା । ଖମ୍ଭ ଆଳୁଟି ବଡ଼ ହେଇଥିଲା । ତେଣୁ ଆସିବାକୁ ହେଲା–

ଆଉଟା ସୁନାଖରାରେ ଆକାଶ ଭର୍ତ୍ତି ହେଇଥାଏ । ସଜନାଗଛର କଅଁଳ ପତ୍ରରେ ସୁନାରଙ୍ଗର ଖରା ପଡ଼ିଥାଏ । ହଳଦୀ ବସନ୍ତ ଡାଳରେ ବସିଥାଏ । ସକାଳ ପହରୁ ଲୋଟଣୀ ପାରାପରି ବୋଉ କାମରେ ଲାଗିଥାଏ–

କୌତୁକିଆ କଅଁଳା ବାଛୁରୀ କୌତୁକରେ ଡିଆଁ ମାରୁଥାଏ । ଡାମରାକାଉ ପିଢ଼ା ଉପରେ ରା ରା କରୁଥାଏ । ନୂଆ କାଉର ଥଣ୍ଟ ଭିତର ଧଳା ଖରାରେ ନାଲି ଦିଶୁଥାଏ । ବୋଉ ଚୁଲି ଲିପୁଥାଏ-

ଦାଣ୍ଡ ଦୁଆରେ ଗୀତ ଶୁଭୁଥାଏ । ରକତ ଟଳମଳ, ଖଇର ପାଞ୍ଚପଳ, ତୋ ଲାଗି ଲୋ ସାଧବାଣୀ ହେଲି ମୁଁ ଯୋଗୀବେଶ । ଯୋଗୀ ବୋଲୁଥାଏ । କେନ୍ଦରା ତା'ର କୁଁ କୁଁ କାନ୍ଦି ଲାଗିଥାଏ । ଅଗଣା କୂଅରୁ ବୋଉ ଟାଉଟାଉ ପାଣି କାଢୁଥାଏ ।

ରଞ୍ଜା ଉପରେ ଶିମ୍ବ ମାଡୁଥାଏ । ମର୍ତ୍ତରେ ମୂଳ, ଡାଳ ସ୍ୱର୍ଗକୁ ପାଉଥାଏ । ସକାଳର ଖରା ଟାଣ ହେଉଥାଏ । ଆଣ ବାଟିସାରି, ଶାଗ କାଟିସାରି ବୋଉ ହେଁସରେ ଧାନ ଘାଣ୍ଟୁଥାଏ ।

ଟେଁ ଟେୟାଁ ବଣି ବସିଥାଏ । ହିଡ ମୁଣ୍ଡକୁ ଲାଞ୍ଜ ଦେଇ ପାଣି ପିଉଥାଏ । ଟୁବି ଗଡ଼ିଆରେ ଟୁବ୍‌କିନା ବୁଡ଼ି ପଡୁଥାଏ । ବୋଉ ତରତର ହୋଇ ନଇତୁଠରୁ ଗାଧୋଇ ଫେରୁଥାଏ–

ଭାନୁମତୀ ରାଣୀ ଧନିତିରି ଓଷା କରିଥାଏ । ଲକ୍ଷେ ଭାର ପଦ୍ମ ଦବୁରେ କହ୍ନେଇ କଂସ ବୋଲିଥାଏ । ପାଖୁଡ଼ା ଗୋଟାଏ ନ ଥିବ ଗୋବିନ୍ଦ ହରେ କି କେଳା ବୋଲୁଥାଏ । ବୋଉ ଭାତ ଗାଳୁଥାଏ–

ମା ମଙ୍ଗଳାଙ୍କ ରୋଷ ଲାଗିଥାଏ । ନୟନର ନାଥ ବିରୂପା ଦେଶରେ ବନ୍ଧା ପଡ଼ିଥାଏ । ଖୁଲଣାସୁନ୍ଦରୀ ମଥା କୋଡୁଥାଏ । ବଡ଼ଉଁଶଯାକର ଶୁଭ ମନାସି ବୋଉ ଓପାସରେ ଓଷା କରିଥାଏ–

ରତରତ ବେଳା ଡାଆଣିଆ ଖରା ଡେଇଁ ପଡୁଥାଏ । ଗୋଧନବାହୁଡ଼ା ଗାଈଆଳ ଟୋକା ଡାକ ଛାଡୁଥାଏ । ଜହ୍ନି ଗଛରେ ଠୋ ଠୋ ଫୁଲ ଫୁଟୁଥାଏ । ଆଚାର ହାଣ୍ଡିକି ଶିକାରେ ଥୋଇ ବୋଉ ବାରଣ୍ଡାରେ ସଞ୍ଜ ବଳୁଥାଏ–

ସାତ ଭାଇଙ୍କର ସାତୋଟି ବୋଇତ ଫେରି ଆସିଥାଏ । ବୋଇତ ବନ୍ଦାଣ ଶେଷ ପାଇଥାଏ । ସାଧବ ବୋହୁଙ୍କ ବଧୁଲି ଓଠରେ ହସ ଫୁଟୁଥାଏ । ଡିବି ଆଲୁଅରେ ରହି ରହିକା ବୋଉ ବୋଇତର ଚିତା ଲେଖୁଥାଏ–

ତୋଟାଭିତରୁ ପେଚା ରାବୁଥାଏ । ଗାଁ ଗହୀରରୁ ହୁକେ ହୁକେ ହୋ ଶୁଭୁଥାଏ । ଠଣା ଦାଢ଼ରୁ ଦୀପ ଆଲୁଅର ଛାଇ ଲମ୍ବିଥାଏ । ରୋଗୀଣା ପୁଅର ଶେଯ ଦାଢ଼ରେ ସାରାରାତି ବୋଉ ଜଗି ବସିଥାଏ–

ଓଢ଼ଣାକୁ ଟାଣି ସବାରୀ ଭିତରେ ବୋହୂ ବସିଥାଏ । ନଈ ବନ୍ଧରେ ହାକୁମ୍ବ ଧାବୁଲୁ ଗୀତ ଶୁଭୁଥାଏ । ଧ୍ରୁବ ପ୍ରହଲ୍ଲାଦ ଗପ ମଝିରେ ଧୋ ବାୟା ଶୋଇ ପଡୁଥାଏ । ଶିଶୁ ଦୁଇଙ୍କର ସପନ ମନ ଭାସିଭାସିକା, କାହିଁ କେଉଁଆଡ଼େ ଲମ୍ବି ଯାଉଥାଏ–

କାଳି ପାହାନ୍ତାରୁ ଦିନ ଦିପହର, ଦିନ ଦିପହରରୁ ଅଧରାତିଯାଏ ବୋଉ ପଡ଼ିଉଠି ଲାଗି ରହିଥାଏ–

ବୋଉ ଆସିଚି । ସପନ ରାଇଜରୁ ଆସିଚି । ଯେଉଁଠି ଖଣ୍ଡୁଆ ସିନ୍ଦୁରରେ ପୂର୍ବ ଆକାଶରେ ସିନ୍ଦୂରା ଫାଟେ । ସଞ୍ଜ ହେଲେ ରୂପା ଥାଳି ପରି ତୋଟା ମଥାନରେ ଜହ୍ନ ଉଠେ, ରାତିସାରା ଥୋପାଥୋପା କାକର କଦଳୀ ପତ୍ରରେ ପଡୁଥାଏ, ବରଷା ବତୁରା ପିଢ଼ା ଉପରେ ସକାଳ ଖରାରେ ନେଳି ସରସର କଖାରୁ ଡଙ୍କ ମାଡୁଥାଏ । ଯେଉଁଠି ବାଇଗୁବା ଡେମ୍ପରେ କୁକୁଜୁକୁ ସୁନାପୋକଟି ଲାଗିଥାଏ । ଉଡ଼ି ଯାଇଥିବା ପକ୍ଷୀର ଇନ୍ଦ୍ରନୀଳ ପରଟାଏ ବାଟକଡ଼କୁ ଖସି ପଡ଼ିଥାଏ । ସବୁଜ ଧାନ କ୍ଷେତର ମୁଣ୍ଡରେ ଠେକା ଭିଡ଼ି ଚଷାଭାଇ ନଇଁଥାଏ । ଚିରିଚିରା ପାଣି ଧାରରେ ଚେଙ୍ଗ ମାଛଟାଏ ଲାଞ୍ଜ ଚମକାଇ ଦେଇଥାଏ । ଯେଉଁଠି କୁହୁଡ଼ିର ପେଟକୁ ମଝି ନଈରେ ସକାଳର ଡଙ୍ଗାଟାଏ ପଶିଯାଏ, ଦଣ୍ଡା ଭିତରେ ଲମ୍ବିଥିବା ଗୁଳାରେ ଧିକିଧିକି କରି ଏକୁଟିଆ ଶଗଡ଼ଟି ଚାଲିଥାଏ । ଯେଉଁଠି ପୋଖରୀ ମଝିର କାଚକେନ୍ଦୁ ପାଣିରେ ନୀଳକଇଁଟିଏ ଫୁଟିଥାଏ । ରାଜାଝିଅର ବାରହାତୀ କେଶ ଭାସିଆସିବ । ନଈତୁଠକୁ କରି ଲାଗିଥାଏ–

ଯେଉଁଠି ମିଞ୍ଜି ମିଞ୍ଜି ଜୁଳୁଜୁଳିଆମାନେ ଅନ୍ଧାର ରାତିରେ ନଡ଼ିଆ ପତ୍ରରେ ହସୁଥାନ୍ତି ।

ଯେଉଁଠି ଫୁଟ୍‌ଫୁଟ୍ ତାରାମାନେ ଅଧରାତିରେ ନିଜ ଭିତରେ ସବୁ କଥା ହ'ନ୍ତି ।

ଯେଉଁଠି, ଯେଉଁଠି...

ବୋଉ ଆସିଚି । ଅମୁକ ରାଇଜରୁ ଆସିଚି । ଶାଗ ଆଣିଚି । ମାଛ ଆଣିଚି । ବାଡ଼ି ବରକୋଳି, ବିରି ଆଣିଚି । ସକାଳର ଆକାଶକୁ କାନିରେ ବାନ୍ଧିଚି । ଗଣ୍ଠିକରି ସାଙ୍ଗରେ ଆଣିଚି । କେତେକଥା କହୁଚି–

ଆଉ ସେ ଗାଁ ନାଇଁରେ । ଭଲରେ ମନ୍ଦରେ ଗୋଟାଏ ହୋଇ ଆଉ ନାଇଁ । କେତେ ସୁନ୍ଦର ଗାଁ ଥିଲା । ଏବେ ଫାଟିଫୁଟି ବାରେ ଫାଙ୍କେ ହୋଇଗଲାଣି ।

ଖାଲି ତୁଚ୍ଛାଟାରେ କନ୍ଦଳ । ଭାଇ ଭାଇ ଭିତରେ ବେଣ୍ଟରା ବିବାଦ । ତୋର ମନେଥିବ, ସୁନ୍ଦରାପାଳ ତୋଟାରେ କେଉଁ କାଳର ଯେଉଁ ବରଗଛ ଥିଲା, ଇସ୍‌କୁଲ୍ ବାଟରେ ଛୁଆସବୁ ତମେ ଡାଳିମାଙ୍କୁଡ଼ି ଖେଳୁଥିଲ, ଗଲା ବତାସରେ ଉପୁଡ଼ି ପଡ଼ିଲା । କେଉଁ ଯୁଗର ଗଛ ସେ ଥିଲା -

ଉଦ ଘରର ଡିହ ଉପରେ ଇଟା ପକାଇଚନ୍ତି । ଦାଣ୍ଡ ଡିହକୁ ଏସନକୁ ଘର ତୋଳିବେ । ପୁରୁଣାଘର ତାଙ୍କର ତ ଭାଙ୍ଗି ଯାଇଥିଲା, ଭଲ ହେଲା-

ତୁ ଜାଣିଚୁ ଚେମବୁଢ଼ା ମରିବାର ? ହାତଗୋଡ଼ ଫୁଲି ଯାଇଥିଲା । ବଡ଼ପୁଅ ରତନି ତାର ପାଇ ଘରକୁ ଆସିଥିଲା । ଅଶୋକାଷ୍ଟମୀ ଦିନ ବୁଢ଼ା ଚାଲିଗଲା ।

ସାଧୁ ଘର ସୁମୀର ଘର କୁଆଁଇଆ କଲେ । ପିଲାଟିର ଘରେ ଆଉ କେହି ନଥିଲେ । ଗୋଡ଼ ଟିକିଏ ଛୋଟା, ହେଲେ ମାଟ୍ରିକ୍‌ଯାଏ ପଢ଼ିଚି-

ସୁମିତ୍ରା ଆସି କହିଲେ, ବୋଉ ତୁମେ ଗାଧୋଇ ଆସ । ବୋଉ ସୁମିତ୍ରାଙ୍କ ପଛେ ପଛେ ଯାଉଚି । ଦିନ ସାରା ଲାଗି କେତେକଥା କହୁଚି ।

ହେମି ବୋଉଟା ବୋହୂ ସଙ୍ଗରେ ଚଳି ପାରୁନାଇଁ । କୋଉ ନଅଟା ଛଅଟା ତୋର ଆଉ ଅଛନ୍ତି ନା ବାଙ୍କନିଧି ଘରେ ବସିଚନ୍ତି । କଥାକୁ ନଧରି ଚଳେଇ ନେଲେ କ'ଣ ହଅନ୍ତା ନି ।

ପାରଟା ଭାରି ଭଲ ମଣିଷଟା । କାହାରି ଭଲମନ୍ଦରେ ନଥାଏ । ଖାଲି ଆମରି ଘରକୁ ଯାହା ଯାଆଆସ । ତାଙ୍କର ଆମର ତର୍କାରୀ ଦିଆନିଆ ।

ପୁନିବୋଉ କ'ଣ ଏବକୁ ଆଉ ଘରେ ରହୁଚି କି । ଆଜି ଏ ପୁଅ ପାଖରେ ଭୋବନେଶ୍ୱରରେ ତ କାଲି ସେ ପୁଅ ପାଖରେ ସମ୍ବଲପୁରେ । ବୋହୂବେଳେ ବିଚାରୀ କେତେ ଅନିଭୋଗ କରିଥିଲା । ଠାକୁରେ କରିଚନ୍ତି । ଏବକୁ ଭୋଗ କରୁଚି-

ଧନ୍ୟ କହିବ ସେ ବାଇଙ୍କୁ । ଆମ ଟନିକା ବୋହୂ ବା ଟନିଆଟା ତ ଆଉ ମଣିଷ ହେଲା ନାଇଁ । ଚାରିଚାରିଟା ଛୁଆଙ୍କୁ ଧରି ଚାରିଆଡ଼ୁ ଖୁଣ୍ଟି ଖାଣ୍ଟି ସବୁ ଆଡ଼କୁ ଜଗି ଯୋଉ ହିସାବରେ ସେ ଘର ଚଳଉଚି-

ମୁନ୍ନା ମୁନ୍ନି ଲାଗି କହିଲେ, ଜେଜି ମା', ଆମକୁ ଗପ କୁହ । ସଞ୍ଜବେଳୁ ବୋଉ ମୁନ୍ନା ମୁନ୍ନିଙ୍କି ଆବୋରି ଗୋଡ଼ ଲମ୍ବେଇ ବସିଚି । ତା' ଗପପେଡ଼ି ଖୋଲି ଦେଇଚି-

ସେଉଟୁ କ'ଣ ହେଲାନା, ସାଧବ ଝୁଅ ଧୂଳିଘର ଖେଳୁଥାଏ ଓ ମନକୁ ମନ ଗୀତ ବୋଲୁଥାଏ ।

କଡ଼ାକେ ମାରି କଡ଼ାକେ ତାରି,
କଡ଼ାକରେ ଘର ଦୁଆର କରି ।

ରଜାପୁଅ ସେବାଟେ ଘୋଡ଼ାରେ ଯାଉଥିଲା । ଘୋଡ଼ାରୁ ଓହ୍ଲାଇ ପଚାରିଲା, କଡ଼ାକରେ କେମିତି ଏତେ ଜିନିଷ କରିବ ? ସାଧବ ଝୁଅ କହିଲା, ବୁଦ୍ଧିଥିଲେ କାହିଁକି ନ ହବ । ରଜାପୁଅ ସେଉଠୁ ନେଉଟିଲା । ଗମ୍ଭୀର ଘର ଭିତିରେ ଓଦା ମାଟି ଭଣଭଣ ବିଲେଇ ଘୁଅ ସଣସଣ, କବାଟ କିଳି ତା'ରି ଭିତରେ ଶୋଇଲା-

ସେଉଟୁ କ'ଣ ହେଲା ନା, ନେଉଳ ଭାଇ ସଞ୍ଜବେଳେ ଧୋବଣୀ ଝିଅକୁ ବାରିକି ହଗେଇ ନେଲା । ତାକୁ କହିଲା, ତୁ ହଗିବୁ ଯଦି ମୁତିବୁ ନାଇଁ, ମୁତିବୁ ଯଦି ହଗିବୁ ନାଇଁ । ଧୋବଣୀଝୁଅ କାନ୍ଦିଲାରୁ କହିଲା, ତୋ ବୋଉ ଟଙ୍କା ସୁନାସବୁ କୋଉଠି ଲୁଚାଇ ରଖିଚି ଯଦି କହିବୁ, ତେବେ ଯାଇ ତତେ ମୁତିବାକୁ ହଗିବାକୁ ଛାଡ଼ିଦେବି । ଧୋବଣୀ ଝୁଅ କହିଲା, ଆମର ଯେଉଁ କଣା ଗଧ, ବୋଉ ତାକୁ ସବୁ ଖୁଆଇଚି । ତା'ରି ପେଟ ଭିତରେ ଅଛି-

ସେଉଟୁ କ'ଣ ହେଲା ନା, ସାତ ଭଉଣୀ ତ ଜହ୍ନ କୋଉଠୁ ଉଠୁଛି, ଦେଖିବାକୁ ବାହାରିଥାନ୍ତି । ବାଟରେ ବୁଢ଼ୀ ଅସୁରୁଣୀ ବସିଥାଏ । ଗୋଟାଏ ଗୋଡ଼କୁ ଚୁଲି ଭିତରେ ଜୋଗାଡ଼ି ଚୁଲି ଜାଳୁଥାଏ । ସାତ ଭଉଣୀଙ୍କି ଦେଖି ମନେ ମନେ ଭାବିଲା ଆହା ମୋର ସାତ ଭେଣ୍ଡାପୁଅ ଯଦି ଓଇଛା ଥା'ନ୍ତେ, ତେବେ କଅଁଳ କାକୁଡ଼ି ପରି ଏ ସାତ ଜଣଙ୍କୁ ରାସୁରାସୁ କରି ଚୋବାଇ ଖାଇଥାନ୍ତେ । ସେଉଟୁ ସେ ତାଙ୍କ କାନିରେ ସାତମୁଠା ସୋରିଷ ପଡ଼ିପଡ଼ି ଯାଉଥାଏ । ଶୋରିଷ ଗଛ ହୋଇ ଯାଉଥାଏ-

ସେଉଟୁ କ'ଣ ହେଲାନା, ରଜାପୁଅ ତ ମାଲୁଣୀ ଘରେ ଥାଏ । ଦିନକର ଅତି ଯତନରେ ସେ ଚମ୍ପାଫୁଲର ହାରଟିଏ କଲା । ହାରଟିକି ମାଲୁଣୀକୁ ଦେଇ କହିଲା, ମାଉସୀ ଆକୁ ରାଜା ଝୁଅକୁ ଦବୁ । ପଚାରିଲେ କହିବୁ, ଗୋଟିଏ ବିଦେଶୀ ଯୁବାକୁ ମୁଁ ପୁଅ କରିଚି । ସେଇ ଏ ମାଳା ଗୁନ୍ଥିଚି–

ସେଉଟୁ କ'ଣ ହେଲାନା, ଅଗଣା ଜୁଇଗଛ ଡାଳରେ ସଞ୍ଜବେଳକୁ ଫୁଲ ଭର୍ତ୍ତି ହୋଇ ଯାଉଥାଏ । ବଡ଼ ଛ'ଭାଉଜ ଯେତେବେଳେ ଫୁଲ ତୋଳିବାକୁ ହାତ ବଢ଼ାନ୍ତି, ସାଙ୍ଗେ ସାଙ୍ଗେ ଡାଳ ସ୍ୱର୍ଗକୁ ଲାଗିଯାଉଥାଏ । ଆଉ ଗୀତ ବୋଲୁଥାଏ–ସବା ସାନଭାଉଜ ହାତ ବଢ଼ାଇଲା ବେଳେ ତା' ଆଡ଼କୁ ନଇଁ ଆସୁଥାଏ ଆଉ ବୋଲୁଥାଏ–

ସଞ୍ଜବେଳକୁ ବୋଉ ବଇଚି । ମୁନ୍ନା ମୁନ୍ନିଙ୍କି ଆଦରରେ କୋଳରେ ଜାକି ଗୋଟିଏ ପରେ ଗୋଟିଏ କେତେ ଗପ କହିଚାଲିଛି–

ସୀତାନାଥବାବୁ ଆସିଲେ ଓ କହିଲେ, ବୋଉ, ଚେଙ୍ଗ ମାଛ ପୋଡ଼ି ସେରିଷ ତେଲ ପିଆଜ ଲଙ୍କା ପକାଇ କାଲି ସକାଳେ ତୁ ଭର୍ତ୍ତା କରିଦବୁ, ଯେମିତି କରୁ । ମୁଁ ସକାଳେ ପଖାଳ ଖାଇବି । ଆଉ ପୋଇ ପତରରେ ବେସର ଦେଇ ପତରପୋଡ଼ା କରିବୁ, ମୁଁ ଗରମ ଭାତ ସାଙ୍ଗରେ ଲଗାଇ ଦିନରେ ଖାଇବି–

ଦିନ ଦୁଇଟି ଏପରି ବହିଗଲା ।

ତିନିଦିନକୁ ବୋଉ ଯିବାକଥା କହିଲା ।

ଚତୁର୍ଥ ଦିନରେ ବୋଉ ଯିବାକୁ ବାହାରିଲା ।

ପଞ୍ଚମଦିନ ବୋଉ ସତକୁ ବାହାରି ଚାଲିଗଲା ।

ତେଣେ ଅମୁକ ହେଉଥବ, ସମୁକ ହେଉଥବ, ସମୁକ ନାଇଁ ସମୁକ ହଉଥବ, ତେଣୁ ବାହାରି ଚାଲିଗଲା–

ତେଲ ଘଡ଼ିରେ ପାଣି ପଶୁଥିବ, ହଳଦୀକାଠୁଆ ଫିମ୍ପି ମାରୁଥିବ, ଆରିଷା ପିଠାରେ ଉଇ ଲାଗୁଥିବ, ବେଦୀରେ ବର ଯେ ବୁଢ଼ା ହେଉଥିବ, ତେଣୁ ବାହାରି ଚାଲିଗଲା–

ବୋଉ ତୁ ରହିଯା–

ସିଆଡ଼େ ହରିଆଟା ଏକା ସକାଳୁ ଗୋରୁପିଆ, ହଳଜୋଚା । ସାନଟା ରୋଗିଣୀ । ଏକୁଟିଆ ଧନ୍ଦି ହେଇ ଯାଉଥିବ–

ସବୁ ଆଡ଼େ ସବୁ ପଡ଼ିଥିଲା । ଧାନଉଁଷା ବାକିଥିଲା । ମୁଁ ଗଲେ ଉଁଷା ହବ–

ମାଣବସା । ଘରନିପା ହୋଇନାହିଁ । ଗଲେ ନିପା ହବ–

ଆଜିକାଲି ତେଲ ଯେଉଁ ଦର । ଦି'ଟା ନଡ଼ିଆ ପାତି କରି ମାରିଦେଲେ, ଛ'ମାସ ତେଲ ଯିବ–

ମନ୍ଦାରେ ଦୋ'ଟି ନାଉଗଛ ଉଠିଥିଲା । ନିତି ସେଠି ହାଣ୍ଡିଧୁଆ ପାଣି ଦବା କଥା । ମୁଁ ଗଲେ ଦିଆ ହବ–

ଖାତରେ ଗୋବର ପୂରିଲାଣି । ଘଷି ହବ–

ବୋଉ ତୁ ରହିଯା, ରହିଯା । ଏଠି ଖଟ, ଶେଯ, ବିଜୁଳି, ଗାଡ଼ି । ମଟରଗାଡ଼ି । ରହିଯା, ରହିଯା–

ଗଜଦନ୍ତ, ପଲଙ୍କ–

ହଂସୁଲୀ ଶେଯ ସୁପାତି-

ଇନ୍ଦ୍ରଭବନ ଆଲୁଅ–

ଆରାମ ମଟରଗାଡ଼ି–

ରହିଯା । ରହିଯା ।

ମୁଁ ଆସୁଥେବିରେ । ଆମ୍ବ ପାଚିଲେ, କଇଁଥ ପାଚିଲେ ନୂଆଗଛର ପହିଲି ଫଳଟିକି ଧରି ମୁଁ ଆସୁଥେବିରେ– ମୋ ଧନମାଳିକି ଦେଖି ଯାଉଥେବିରେ–

ନେତ୍ରରୁ ବହିଯାଉଥାଏ ଲୁହ । କେମିତି କରୁଣ ଦିଶୁଥାଏ ମୁହଁ ।

ପଛକୁ ଫେରି ଫେରି ଚାହୁଁଥାଏ । ଏକା ଏକା ବାହୁଡ଼ି ଯାଉଥାଏ–

ଚିରକାଳ ଜନନୀଟି ସେରନ୍ତା ପୁଅ ପାଖକୁ ଅସରଣ ପୁଅ ପାଖକୁ ବାହୁଡ଼ି ଯାଉଥାଏ । ପାରନ୍ତା ପୁଅ ପାଖକୁ ବାହୁଡ଼ି ଯାଉଥାଏ । ପାରନ୍ତା ପୁଅ ପାଖରୁ ନ ପାରିଲା ପୁଅ ପାଖକୁ ନେଉଟି ଯାଉଥାଏ । ଲୁହଭରା ଆଖିରେ ପଛକୁ ଫେରି ଫେରି ଚାହୁଁଥାଏ । ଛଳ ଛଳ ଆଖିରେ ଚାହିଁ ଚାହିଁ ନେଉଟି ଯାଉଥାଏ–

ଚରାଚର ।

ଚିରକାଳ ।

ସବୁ ଥିବା ଭିତରେ ଏକା ହୋଇ ସକାଳୁ ସୀତାନାଥ ବସିଥିଲେ । ଶୂନ୍ୟ ଦୃଷ୍ଟିରେ ଶୂନ୍ୟ ଆକାଶକୁ ଚାହିଁ ଥିଲେ–

ସୀତାନାଥ କହିଲେ, ନା–



# ମଦନ ମୋହନଙ୍କ କୋପ

## ରବୀନ୍ଦ୍ର ନାଥ ଦାସ

ପେଚାଟା ଫଡଫଡ ହୋଇ ଉଡିଗଲା । ସତେ ଯେମିତି ବାଉଁଶବୁଦାଟା ତା' ଉପରେ ଅଜାଡି ହୋଇପଡିବ- ଦପକିନା ପବନରେ ଦୀପଗୁଡିକ ଲିଭିଗଲାପରି ଆକାଶର ସବୁ ତରା ଗୁଡିକୁ କିଏ ଯେମିତି ପୋଛି ନେଇଗଲା । ମେଘ ପଣତରେ ଲାଜକୁଳୀ ଜହ୍ନଟା ମୁହଁ ଲୁଚାଉଛି । ଝିଙ୍କାରୀଟା କେଉଁଠି ବିକଟ ରଡି ଛାଡି କିଟିକିଟିଆ ଅନ୍ଧାରକୁ ଥରାଇ ଦେଉଛି । ହେଲେ ସେ ଡରିଗଲା ନାହିଁ- ଦବି ଯିବାର ପାତ୍ର ସେ ନୁହେଁ । ଜୀବନରେ ଯାହା ସେ କରିବ ନାହିଁ ବୋଲି ଥରେ ନୁହେଁ- ଦୁଇଥର ନୁହେଁ- ଅନେକ ଥର ଶପଥ ନେଇଛି, ପୁଣି ତା'ର ପୁନରାବୃତ୍ତି ହେବାକୁ ଯାଉଛି । ହେଲେ ଆଜିକାର କର୍ମପଦ୍ଧତି ସମ୍ପୂର୍ଣ୍ଣ ଭିନ୍ନ ଧରଣର - ରାତି ଯେ ଖୁବ ବେଶି ହେଲାଣି- ତା' ନୁହେଁ- କେତେ କଥା ମହନିର ଆଖି ଆଗରେ ନାଚି ଉଠିଲା- ବୀର ଦର୍ପରେ ତା' ଛାତି ଫୁଲି ଉଠିଲା । ସେ କ'ଣ କରିବ, କେମିତି କରିବ- ସବୁକଥା ସେ ଆଗରୁ ଟିକିନିଖି ଭାବେ ଠିକ୍ କରି ରଖି- ଏମିତିକା କାର୍ଯ୍ୟ କଲା ବେଳେ ତା' ଛାତି ଧଡ୍‌ପଡ୍ ହୁଏନା- ତା' ହାତ ଥରେନା- ସେ ବେଶ ସୁରୁଖୁରୁରେ ଏ କାମ କରି ନିଏ । ସେତେବେଳେ ଯଦି କାହାର ଆଖିର ଲୁହରେ କାହାର କଜଳ ଗାର ଯଦି ଧୋଇ ହୋଇ ଆସୁଥାଏ କିମ୍ବା କାହାର କରୁଣ ମିନତି ଗୋଡତଳେ ପଡୁଛି- ଛାଡିଦିଅ ଏସବୁ କଥା ଇତ୍ୟାଦି, ପଥରରେ ବାଜି ପ୍ରତିଧ୍ୱନି ଫେରିଲା ପରି ତାକୁ ସ୍ପର୍ଶ କରେନା । ମହନି କଂସେଇ ପରି ନିର୍ବିକାର ମନରେ ତା'ର କର୍ତ୍ତବ୍ୟ କରି ନିଏ ।

ଏହି କାମ ସେ କରିବ ନାହିଁ ବୋଲି କେତେ ଥର ଶପଥ ନେଇଛି- ହସ ମାଡିଲା, କେତେ ରାଣ ନିୟମ ପକେଇ ନେହୁରା ହୋଇ ସୁନ୍ଦରୀ ତାକୁ ଏହି କଥା କହି ଥିଲା- "ମୋ ରାଣେ, ତୁମେ ମୋ ମୁଣ୍ଡ ଛୁଅଁ- ଆଉ ଦିନେ ଏ କାମ କରିବନି- ଆମେ ଦୁଇଟା ଲୋକ ମୂଲ ଲାଗିଲେ- ପେଟ ଆମର ଅପୋଷା ରହିବନି । ଏହି ନିଉଛୁଣା କାମ କରନା । କେଜାଣି କାହିଁକି ଏମିତି ଏକ ବିଶେଷ ମୁହୂର୍ତ୍ତରେ ସୁନ୍ଦରୀର କଥା ମନେ ପଡି ମହନିର ଛାତିରୁ କେମିତି ଏକ ଦୀର୍ଘଶ୍ୱାସ ବାହାରି ଆସିଲା । ସେହି ଅନ୍ଧାରରେ ତା' ମୁହଁର ରଙ୍ଗ ବଦଳି ଯାଇ ଲୁହ ଛଳ ଛଳ ହୋଇଗଲା । ଯେଉଁ ନାଁଟାକୁ ସେ ଛେପ ପକାଇଲା ପରି ଫୋପାଡି ଦେଇଥିଲା, ସେଇ ନାଁଟା ପୁଣି ଖଣ୍ଡିଆଭୂତ ପରି ତାକୁ ମାଡି ବସିଲା କାହିଁକି ? ରାଧା ହୁଏତ ଜ୍ୱରରେ କମ୍ପରେ ଥରୁ ଥିବ । ଆଃ, ରାଧାର କଥା ତା'ର ଟିକେ ମନେ ପଡୁନି । ଆଜି ଯଦି ସୁନ୍ଦରୀ ଥାଆନ୍ତା ? ସୁନ୍ଦରୀ, ସୁନ୍ଦରୀ- ଧେତ୍‌ରୀ ସୁନ୍ଦରୀ- ମହନୀର ମନେ ହେଲା, ବର୍ତ୍ତମାନ ସେ ଯଦି ସୁନ୍ଦରୀକୁ ଦେଖନ୍ତା- କହନ୍ତା, "ଥାଉ, ତୋ ପତି ସୋହାଗ ପଣିଆ ସେତିକି ଥାଉରେ ।"

ସୁନ୍ଦରୀ ନାହିଁ । ସୁନ୍ଦରୀର ସ୍ମୃତିର ଲିପିକୁ ସେ କାଗଜରେ କାଳି ଢାଳି ବିକୃତ କରି ଦେଇଛି । ରାଧା ହୁଏତ ଜ୍ୱରରେ ବିଲିବିଲଉ ଥିବ । ସୁନ୍ଦରୀ ଚାଲିଯିବା ଆଜକୁ ପାଞ୍ଚ ବର୍ଷ ହେଲାଣି । ଏହି ପାଞ୍ଚବର୍ଷ ଭିତରେ ସୁନ୍ଦରୀ ମରିଛି କି ବଞ୍ଚିଛି, ସେ ଖବର ମହନି ପାଖରେ ନାହିଁ । ଦିନେ ସେ ହୁଏତ ଭାବୁଥିଲା; ସବୁଦିନ ପରି ସୁନ୍ଦରୀ ପୁଣି ଫେରି ଆସିବ ଆଉ ତା' ଗୋଡ ଦୁଇଟାକୁ ଜାବୁଡି

ଧରି କାନ୍ଦି କହିବ, "ମୋ ରାଣ, ଏ ନିଉଛୁଣା କାମ ଆଉ କରନା । ଠାକୁର ଆମକୁ ବଳ ଦେଇଛନ୍ତି- ଖଟି ଖାଇଲେ"– ଆଉ ଏକ ବେପରୁଆ ହସ ହସି ମହନି କଥାଟାକୁ ଉଡେଇ ନେବ । "ତୁ କହ, କିଏ ଏ କାମ କରୁନି, ଏ ଦୁନିଆରେ ଚୋରୀ କରୁନି କିଏ- ସେମାନେ ଆମ ପରି ମଣିଷ- ତାଙ୍କର ଏତେ ବଡ କୋଠା, ଧନ ସମ୍ପତ୍ତି, ଗାଡ଼ି, ଏସବୁ ଆସିଲା କେମିତି ଆଉ ଆମକୁ ଦି'ଓଳି ମୁଠାଏ ଖାଇବାକୁ ମିଳୁନି" କେଜାଣି କାହିଁକି ଏ ସୁନ୍ଦରୀର ମନ ବୁଝେନା- ମହନି ଯାହା କରୁଛି, ଭଲ କାମ କରୁନି । ସେ ଚୋରି କରୁଛି- ତା' ଗିରେସ୍ତ ଜଣେ ଚୋର- ଦଶ ଜଣଙ୍କ ଆଗରେ ସେ ଛାତି ଫୁଲେଇ କଥା ପଦେ କହି ପାରେନା ।

ମହନି ଏମିତି ଥରକୁ ଥର ଚୋରି କରେ । ମାଡ ଖାଏ- ନିର୍ଦ୍ଧୂମ ଛେଚା ହୁଏ- ଜେଲ ଯାଏ- ସେଠି ଚକି ପେଷେ- ଘଣା ପେଲେ- ପୁଣି ଫେରେ – ଥାନା ବାବୁଙ୍କୁ ଦେଖିଲେ, "ବଡବାବୁ, ନମସ୍କାର ଜୁହାର ପକାଏ ।

ମହନିର ଏ ସମ୍ପର୍କରେ ନିଜର ଏକ ଜୀବନ ଦର୍ଶନ ଅଛି ଯେ, ଏ କାମରେ ସେ ବେଶ୍ ପାରିଦର୍ଶିତା ଲାଭ କରିଛି ତେଣୁ ସେ ଅଳ୍ପରେ ସନ୍ତୁଷ୍ଟ ହୁଏ । ସେତେବେଳେ ତା' ମନରେ ଟିକେ ଦୟା ବା ଅନୁକମ୍ପା ଆସେନା । କାହାର ଆଖିର ଚାହାଣୀ ବା ଛାତିର କୋହରେ ସେ ନରମି ଯାଏନା । ସେ ବେଶ୍ ସୁନା ପିଲାପରି ତା'ର କାମରେ ଆଗେଇ ଚାଲେ- ସେ ଭଦ୍ର ଭାବରେ କହେ- "ଦୟାକରି ବେକରୁ ସୁନାହାର ଆଉ ହାତରୁ ସୁନାଚୁଡି, କାଚ କାଢ଼ି ଦିଅନ୍ତୁ- ଆପଣ ନିଜେ ଦୟାକରି -ଆଲମୀରା ଖୋଲି ମୋତେ ଟଙ୍କା ଦଶ ହଜାର ଦିଅନ୍ତୁ ।" ଅତି ଭଦ୍ର ଭାବରେ ସେ ନିର୍ବିକାର ହୋଇ ତା'ର କାମ କରେ । ତା'ର କୋଠା କରିବାକୁ ଆଶା ନାହିଁ- ମହନି ଚୋର, କାର ଚଢ଼ି ରାସ୍ତାରେ ଯିବାକୁ ଚାହେଁନା ।

ଆଜି ସୁନ୍ଦରୀ ନାହିଁ । ରାଧା ଜ୍ୱରରେ ସଢୁଛି- ମଝିରେ ମଝିରେ ବୋଉ ବୋଉ ବୋଲି ବିଳିବିଳେଇ ଉଠୁଛି । ରାଧାର ସେଇ ରୋଗରେ ବାଉଳି ହେବା କଦାପି ସୁନ୍ଦରୀ କାନରେ ପହଞ୍ଚି ପାରିବନି । ଗାଁ କବିରାଜଙ୍କ ଟୁଟୁକା ଟୁଟୁକୀରେ ତା'ର ଜର ଭଲ ହେଉନି, ଯେମିତି ବେଶି ହେଉଛି । ସେ ଗାଁ କବିରାଜ ଆସିଥିଲେ- ସେ ଦିନ କହିଲେ, "ମହନି, ଝିଅକୁ ବଡ ଡାକ୍ତରଖାନାକୁ ନେଇଯା' । ରୋଗଟା କେମିତି ଅବାଗିଆ ଧରିଲାଣି- ତୋର ତ କିଛି ଅଭାବ ନାହିଁ- 'ରାତିଏ ଗଲେ ହାତୀଏ ଆସେ ।'

ମହନି ମନେ ମନେ ଭାବୁଥିଲା- ସେ ଏକୁଟିଆ ଥିଲେ ସୁଖରେ ଥାଆନ୍ତା । ଦୁଃଖ, କଷ୍ଟ, ଝଞ୍ଜାଳ କିଛି ନାହିଁ, ଜେଲରେ ବଗଡା ଭାତ ହେଲେ ବି ଗଣ୍ଡାଏ ଖାଇବାକୁ ମିଳିବ । ଜେଲର୍ ବାବୁ ହସି ହସି କହିବେ, "କ'ଣ ମହନି ଆସିଗଲ ।" ସେତେବେଳେ ମହନି ଓଠରେ ହସଟା ଉକୁଟି ଉଠେ । ସେ ମନ ଦୁଃଖ କରେ ନାହିଁ । ଏଠି ସାଙ୍ଗ ସାଥୀ ମିଳନ୍ତି । ସେମାନେ ତାକୁ ମାନନ୍ତି- ଲିଡର ବୋଲି ବେଶ୍ ଖାତିରି କରନ୍ତି । ତେଣୁ ସମ୍ମାନ ବି ମିଳେ । ହେଲେ ମଝିରେ ମଝିରେ ଜଣେ- ଜଣେ କିଏ ବାଟବଣା ହୋଇ ଆସି ଯାଆନ୍ତି । ସେମାନଙ୍କୁ ଏ ଜାଗାଟା ଅବାଗିଆ ଲାଗେ । ମୁହଁକୁ ଭୁରୁଙ୍ଗା କରି ବସନ୍ତ । ସେମାନେ ଏ ବାଟରେ ନୂଆ- ସେମାନେ ପାଠ ପଢୁଥାଆନ୍ତି- ଭୁଲରେ ଏ ଲାଇନକୁ ଆସିଛନ୍ତି । ସବୁବେଳେ ମନମାରି ବସନ୍ତି । କିନ୍ତୁ ମହନି କଥା ଅଲଗା- ବଢ଼ିଲା ଝିଅଟାକୁ ଏକୁଟିଆ ଘରେ ଛାଡି ସେ କୁଆଡେ ଯାଇ ପାରୁନି । କେଜାଣି କାହିଁକି ରାଧା କଥା ମନେ ପକାଇ ମହନିର ଆଖିରେ ଲୁହ ଜକେଇଲା । ରାଧା ଦେଖିବାକୁ ସୁନ୍ଦର ନୁହେଁ- ଚେହେରାଟି ବେଶ୍ ହୃଷ୍ଟପୁଷ୍ଟ- ହେଲେ ଭଗବାନ ତାକୁ ଶିରୀ ଦେବାକୁ ଭାରି କାର୍ପଣ୍ୟ କରିଛନ୍ତି ।

ମୁହଁ ଯାକ ବସନ୍ତ ଦାଗ ଖୁନ୍ଦି ହୋଇଛି । ଦାନ୍ତ କେଇଟା ଆଗକୁ ବାହାରି ପଡିଛି । କେତେ ବଡ ବଡ ଘରେ ସେ ଚୋରି କରିଛି । କେତେ ସୁନ୍ଦର ଝିଅଙ୍କୁ ଦେଖିଲାବେଳେ ମହନି ମନଟା ଦୁଃଖରେ ଭାଙ୍ଗି ପଡେ । ଭଗବାନଙ୍କ ବିଚାର ସବୁବେଳେ ଏମିତି ଗୋଟାଏ ଆଡକୁ । ଯାହାକୁ ଦେବେ ସବୁ ଜୋଡି ଦେବେ ।

ହେଲେ ସୁନ୍ଦରୀ କାହାର ଝିଅ- ସେ କେଉଁଠି ଥିଲେ । ସେ କଥା ମହନି ଥରକ ପାଇଁ ଭାବିନି । ସୁନ୍ଦରୀ ସତରେ ସୁନ୍ଦରୀ । ଆଉ ମହନିକୁ ସେ ନୂଆ ଦୁନିଆର ଖବର ପହଞ୍ଚାଇ ଦେଇଥିଲା । ତା' ପାଇଁ ପଖାଳ ଭାତରେ ଶୁଖୁଆ ଭାଜି ରଖୁଥିଲା- ରାତିରେ ତା' ଗୋଡରେ ତେଲ ମାଲିସ୍ କରି ଦେଉଥିଲା ଓ ତା' ଘରକୁ ଏହି ରାଧାକୁ ଆଣିଥିଲା । ସତରେ ଘର ହସିଲା- ହେଲେ ପୁଣି ଯେତେବେଳେ ମହନି ଜେଲରୁ ଫେରିଲା- ଦେଖିଲା ସୁନ୍ଦରୀ ତାକୁ ଛାଡି ଚାଲି ଯାଇଛି । ହଁ କେତେ ଦିନ ସେ ଅପେକ୍ଷା କରନ୍ତା । ମହନି ଥରକୁ ଥର ସେହି କଥା କଲା । ରାଧାକୁ ଛାଡି ଚାଲରଲାବେଳେ ଥରକ ପାଇଁ ପଛକଥା ସେ ଭାବିଲା ନାହିଁ । କେଜାଣି କାହିଁକି ମହନିକୁ କିଛି ଭଲ ଲାଗିଲା ନାହିଁ । ଦିନ କେଇଟା ଚୁପ୍‌ଚାପ୍ ହୋଇ ବସିଲା- କାହାକୁ କଥା କହିଲାନି- ସତେ ଯେମିତି ଘୁଙ୍ଗା ପାଲଟି ଗଲା । ତା'ପରେ ସୁନାପିଲା ପରି ବିଲବାଡି କାମରେ ମନ ଦେଲା । ସେତେବେଳେ ମହନିର ମନେ ହେଲା, ତା' ଛାତିରେ କିଏ ଯେମିତି ମୁଦ୍‌ଗର ପିଟୁଛି । ଛିଃ, ଟଙ୍କା କେତେଟା ପାଇଁ ଏତେ ପରିଶ୍ରମ- ଅଥଚ ଯେଉଁମାନେ ଏତେ ଆନନ୍ଦରେ ଅଛନ୍ତି ଏତେ କୋଠା, ଧନ ସମ୍ପତ୍ତି ସେମାନଙ୍କ ପାଇଁ କିଛି ନାହିଁ- ଛି- ଛି- ସିଏ କୁଆଡେ ଚୋର- ଆଉ ସେମାନେ - ସେମାନଙ୍କ ଉପରେ ତା'ର ଘୃଣା ହେଲା । କାମ କରୁ କରୁ ହାତ ଅଟକି ଯାଏ- ମାଲିକ ପାଟି କରେ, "କିରେ ମାଗଣା ଖଟୁଛୁ କିରେ- ବସିଲୁ କ'ଣ ? ଟଙ୍କା କ'ଣ ଖାଲି ଗୋଡି ମାଟି ହୋଇଛି ।"

ରାଧା ବିଚରା ଘରେ ଏକୁଟିଆ ଅଛି । ମହନି ଘରକୁ ସେମିତି କେହି ଆସନ୍ତି ନାହିଁ । ସାଇପଡିଶା ମଧ୍ୟ ତାକୁ ଘୃଣା କରନ୍ତି । ଯେ ଚୋରି କରେ ସେ ଭଦ୍ରମଣିଷ ନୁହେ ସମାଜରେ ତାର ସ୍ଥାନ ନାହିଁ । ମହନି ମନରେ ଦୁଃଖ ହୁଏ ଦୁନିଆରେ କେହି ତା କଥା ବୁଝି ପାରନ୍ତି ନାହିଁ ।

ମଦନ ମୋହନ ହସୁଛନ୍ତି । ଗାଁ ଶେଷ ମୁଣ୍ଡରେ ମଦନମୋହନଙ୍କ ମନ୍ଦିର । ବୃନ୍ଦାବନରୁ ଜଣେ କିଏ ବାବଜୀ ଆସି ଏହି ମନ୍ଦିର ପ୍ରତିଷ୍ଠା କରିଥିଲେ । ସେ କେଉଁ କାଳର କଥା- ସେହି ବାବଜୀଙ୍କର ସମାଧି ଅଛି । କାଳକ୍ରମେ ମନ୍ଦିରର ସବୁକଥା ଲୋପ ପାଇଲାଣି- ଆଗପରି ଆଡମ୍ବରରେ ମଦନ ମୋହନଙ୍କର ଝୁଲଣ ଯାତ୍ରା ହେଉନି । ଗାଁର ଲୋକେ ଭେଦା କରି ଠାକୁରଙ୍କ ଭୋଗରାଗ ଦଦରା ନାବ ପରି ଚଳେଇ ନେଉଛନ୍ତି । ବବାଜି ମାଧବଙ୍କ ପାଇଁ ଦଶ ଏକର ଜମି ଖଞ୍ଜି ଦେଇଥିଲେ । ଏବେ କେହି ଭାଗ ଦେଉନାହାନ୍ତି । ଦିନେ ଦିନେ ଠାକୁରଙ୍କ ପାଖରେ ଯାତ୍ରା ହୁଏ- ପିଲାଏ ରଙ୍ଗସଭା ନାଟକ କରନ୍ତି ।

ମଦନ ମୋହନଙ୍କ ପାଖରେ ନିତି ଗୁହାରି କରେ ସୁନ୍ଦରୀ । ଛଳ ଛଳ ଆଖିରେ ସେ କ'ଣ କୁହେ, ସେ କଥା ସିଏ ଜାଣେ ଆଉ ମଦନମୋହନ ଯାହା ବୁଝନ୍ତି । ସାହି ମାଇପେ ଟାପରା କରନ୍ତି, 'ହଁ ଲୋ ଠାକୁରଙ୍କ ପାଖରେ ଗୁହାରି କରୁଥା ଘଇତା ତେଣେ ଚୋରି କରି ସମ୍ପତ୍ତି ସାଇତୁ," ଏବେ ଠାକୁରଙ୍କ ପାଖରେ ରାଧା ଗୁହାରି କରେ । କ'ଣ କହେ, ସେ କଥା ସିଏ ଜାଣେ । ଏ ଗାଁର ଦୁଃଖ ସୁଖ ହାନି ଲାଭର ସାହା ଭରସା ମଦନ ମୋହନ । ସେ ସେମାନଙ୍କ ଭିତରୁ ଜଣେ । ସମସ୍ତଙ୍କ ଜୀବନର ଆଡୁଆଳରେ ରହି ସେ ସୂତ୍ରଧର ସାଜିଛନ୍ତି । ସେ ଏ ଗାଁର

ଲୋକଙ୍କୁ ନେଇ କଣ୍ଢେଇ ନାଚ ଖେଳନ୍ତି । ମଦନ ମୋହନଙ୍କ ଉପରେ ଭାରି ରାଗ ହେଲା ମହନିର । ମଦନ ମୋହନ ଭାରି ନଟଖଟିଆ ସେ ଭାରି ହୁନ୍ଦର ଜାଣେ କାହାକୁ ଖିରି ପୁରି ଅଳାଲା ଦେଉଛି ତ କାହାକୁ ଆଉ ଆଖିରେ ଟିକେ ଚାହୁଁନି । ମଦନ ମୋହନ ତା' ପରି ଦୁଃଖ ନ ଭୋଗିଲେ ଦୁଃଖୀର ଦୁଃଖ ବୁଝିପାରିବ ନାହିଁ । ଠାକୁର ସବୁ ଜିନିଷକୁ ସେ ସବୁଦିନ ପାଇଁ ଲୁଟି ନେଇଯିବ । ମଦନ ମୋହନ କାଙ୍ଗାଳ ହୋଇଯିବେ । ଭିକ ମାଗିବେ ପେଟ ବିକଳରେ ଚୋରି କରିବେ । ଆଉ ଶେଷକୁ ତା'ରି ପରି ଜେଲରେ ଘଣା ପେଲିବେ । କଥାଟା ମନେ ମନେ ଭାବି ମହନିକୁ ଭାରି ହସ ମାଡିଲା । ଠାକୁର ଆଉ ମଣିଷର ଭାଗ୍ୟ - ସତେ ଯେମିତି ଗୋଟିଏ ସୂତାରେ ଗୁନ୍ଥା । ବରଂ ଠାକୁର ବେଶି ଅସହାୟ, ପାଟି ଫିଟୁନି- କଥା କହିପାରୁନି- ଯାହା ଦି'ଟା ଦେଉଛ ସବୁ ଖାଇ ହଜମ କରି ଦେଉଛି । ଲାଜ ସରମ ବୋଲି କିଛି ନାହିଁ ।

ମହନି ତା'ର ଅଭ୍ୟସ୍ତ ହାତରେ ମଦନ ମୋହନଙ୍କ ମନ୍ଦିରର ତାଲାକୁ ଗୋଟିଏ ପରେ ଗୋଟିଏ ଚାବିରେ ପରୀକ୍ଷା କରି ଖୋଲିବାରେ ଲାଗିଲା । ହଠାତ୍ କେଁ କିଁ ଶବ୍ଦ କରି ଲୁହାର କବାଟଟା ଖୋଲିଗଲା । କେତେଟା ଚେମେଣିଆ ଫଡ୍ ଫଡ୍ କରି ଉଡ଼ିଗଲେ । ଗଛ ଡାଳରେ ଆଉ ଥରେ ପେଚାଟା ରଡି ଛାଡିଲା । ଗୋଟିଏ ତାରା ଆକାଶରୁ ଖସି ପଡିଲା । ଆଉ ମଦନ ମୋହନ ଅନ୍ଧାରରେ ହସିଲା ପରି ମନେ ହେଲା ।

ସେ ବେଶ ଭଲ ଭାବରେ କବାଟ ଖୋଲିଲା ଆଉ ମନ୍ଦିର ଭିତରକୁ ଗଲା । ମନ ଭିତରେ ଟିକିଏ ଦୁଃଖ ବା ସଙ୍କୋଚ ନାହିଁ । କେଉଁ ପୁରୁଣା ଦିନର ମନ୍ଦିର । ପଥରରୁ ଚୂନ ଖସି ଗଲାଣି । ଆଉ କିଛିଦିନ ଗଲେ ଭୂଷୁଡି ପଡିବ । ସତେ ଯେମିତି କେଉଁ ଜମିଦାରଙ୍କର ଜୀର୍ଣ୍ଣ ଉଆସ ଅତୀତର ମୂକ ସାକ୍ଷୀପରି ପଡି ରହିଛି । ମହନି କହିଲା, "ମଦନ ମୋହନ, ମୁଁ ମହନି, ମୁଁ ଚୋରି କରିବାକୁ ଆସିଛି । ମୋର ଟଙ୍କା ଦରକାର - ମୋ ଝିଅ ରାଧାକୁ ଜ୍ୱର- ତାତିରେ ଖଇ ଫୁଟୁଛି, ତୁମେ ତ ଠାକୁର, ତୁମର କ'ଣ ଧନ ଦଉଲତ ଅଭାବ ଅଛି, ମୋ ଦୋଷ କ୍ଷମା ଦେବ । ସେ ଆର୍ତ୍ତନାଦ କଲା, ମଦନ ମୋହନ ସିଂହାସନରେ ନାହାନ୍ତି । ସେ ସେହି ଅନ୍ଧାର ଭିତରେ ଏପାଖ ସେପାଖ ଟହଲୁଛନ୍ତି । ସତେ ଯେମିତି ସେ ବ୍ୟସ୍ତ ହେଇ କାହାକୁ ଅପେକ୍ଷା କରିଛନ୍ତି । ଘଟଣାଟା କିଛି ମହନି ବୁଝି ପାରିଲା ନାହିଁ । ଛାତିରେ ଟିକେ ତା'ର ଛନକା ପଶିଲା । ମଦନ ମୋହନଙ୍କ ରଙ୍ଗ ଅଧରରେ ହସ ଉକୁଟି ଉଠିଲା- ସେ କହିଲେ, "ତୁମେ ଆସିଲ, ଭଲ କଲ ।" ମଦନମୋହନଙ୍କ ଓଠରେ ସେହି ହସଟା ଆକାଶରେ ପଞ୍ଚମୀ ଚାନ୍ଦ ଓହଳିଲା ପରି ବେଶ୍ ସୁନ୍ଦର ମାନିଲା । ଠାକୁର କହିଲେ- 'ଆଃ । କେତେ ଦିନ ପରେ ଏତେ ସୁନ୍ଦର ବଢିଆ ପବନ ଏ ଅମୁହାଁ ଦେଉଳକୁ ଆସିଲା । ସତକୁ ସତ ଦମକାଏ ଥଣ୍ଡା ପବନ ଭିତରଟା ଦରାଣ୍ଡି ପକାଇଲା । ମହନିର ସାହସ ହେଲା- ସେ କହିଲା, "ମଦନ ମୋହନ, ତୁମକୁ ସେମାନେ ତାଲାପକାଇ ଏ ଘରେ ବନ୍ଦ କରିଥିଲେ । ତୁମେ ଜେଲ୍ କୟଦୀ ପରି ଏ ଘରେ ସଢୁଥିଲ । ମୁଁ ତୁମର ବଡ ଉପକାର କଲି । ହେଲେ ପାଖରେ ଯାହା ଅଛି, ସବୁ ମୋତେ ଦେଇଦିଅ । ମୁଁ ବିଚରା ଭାରି ଦୁଃଖୀ ଲୋକ । ତୁମେ ତ ଠାକୁର- ରାଜା, ମହାରଜାଙ୍କ ଉପରେ- ତୁମକୁ କେଉଁ ଜିନିଷ ଅପୂରୁବ ହେବ- ଯାହା ଚାହିଁବ, ସବୁ ତୁମ ଗୋଡ ପାଖରେ ମିଳିଯିବ । ମଦନ ମୋହନ ହସିଲେ- "ନାଇଁରେ ମହନି, ଏ କେତେ ଦିନ ହେଲା ମୁଁ ମନବୋଧ କରି ଖାଇନି- ଭୋକରେ ମୋ ପେଟ ଅଣ୍ଟାଳି ହେଉଛି ।" ମହନି ହସିଲା- "କହିଲା ହଉ ଚାଲ ଠାକୁରେ, ଯାହା ମୋ ଘରେ ଥିବ ସବୁ ଦେବି- କ'ଣ ବା ଆଉ ଦେବି- ତୁମେ ତ ଜାଣ- ଝିଅକୁ ପାଞ୍ଚ ଛ ଦିନ ହେବ ଜର- ଦେହରେ

ଖଇ ଫୁଟୁଛି- ମୋତେ ଭଲ ଲାଗୁନି । ଚାରି ପାଞ୍ଚ ଦିନ ତଳେ ଯାହା ଫୁଟାଇଥିବ, ସେଥିରୁ ଯାହା ପଡିଥିବ । ହଉ ଆସ ।" ମଦନ ମୋହନ ହସିଲେ, "କହିଲେ, ମହନି, ଏ ସୁନାରୂପା ଯାହା ସାଇତି ଥିଲି, ତୁ ଏହାକୁ ସବୁ ଧର- ନଇଲେ କିଏ ପୁଣି ନେଇଯିବ ।" ହଁ ମୋତେ ଧର- ମୁଁ ପୁଣି ଯିବି କେମିତି ? ମୁଁ କ'ଣ ତୋ ପରି ମଣିଷ ହୋଇଛି ଯେ, ଡଗ ଡଗ ହୋଇ ଚାଲିଯିବି ।" ହସିଲା ମହନି, "ତୁ କେତେ ରଙ୍ଗରେ କଥା କହି ଜାଣୁ ଠାକୁର- ତୁ ପରା ମଣିଷ ନଚାଉଛୁ,- ! ତୁ ମୋ ସାଙ୍ଗେ ଖେଳୁଛୁ- ନାଇଁ, ହଉ ଚାଲେ ।" ତା' ପରେ ସେ ମଦନ ମୋହନଙ୍କୁ କାନ୍ଧରେ ରଖିଲା ଓ ଗୋଟିଏ ହାତରେ ଠାକୁରଙ୍କ ଲୁଗାପଟା, ସୁନା ରୂପା ଅଳଙ୍କାର ଯାହାଥିଲା ଗଣ୍ଠୁଲି ବାନ୍ଧି ଚାଲିଲା । କେଜାଣି କାହିଁକି, ମହନିକୁ ଭାରି ହସ ମାଡିଲା । ସତେ ଯେମିତି ମେଘ ଅନ୍ଧାର ରାତିରେ ସେ ଏକାକୀ କୃଷ୍ଣକୁ ଧରି ଯମୁନା ନଦୀ ପାର ହୋଇଯାଉଛି । ଘରେ ପହଞ୍ଚିବାକୁ ତାକୁ ବେଶି ସମୟ ଲାଗିଲା ନାହିଁ । ମହନି ଘରେ ପହଞ୍ଚି ଖୁସିରେ ରଡି ଉଠିଲା, "ଉଠ୍‌ଲୋ ରାଧା, ଦେଖିଲୁ ଆମ ଘରକୁ କିଏ ଆସିଛନ୍ତି ।'' ବାପାର ଡାକ ଶୁଣି ରାଧା ବିଛଣାରୁ ଉଠିବାକୁ ଚେଷ୍ଟା କଲା- ହେଲେ ବଳ ପାଇଲା ନାହିଁ । ଠାକୁରଙ୍କୁ ଦାଣ୍ଡଘରେ ଖଟ ଉପରେ ଥୋଇ ସେ ଶୋଇବା ଘରକୁ ଗଲା । କହିଲା,"ରାଧା, କହିଲୁ, ଖାଇବା ଜିନିଷ କେଉଁଠି ରଖିଛୁ, ମଦନ ମୋହନ ବିଚରା ଦୁଇ ତିନି ଦିନ ହେଲା କିଛି ଖାଇନି । ଖାଇବାକୁ ଗଣ୍ଡାଏ ନଦେଲେ କ'ଣ ଭାବିବ ? ବାପା କ'ଣ କହୁଛି ରାଧା କିଛି ବୁଝି ପାରିଲା ନାହିଁ- ବକ୍ ବକ୍ କରି ବାପା ମୁହଁକୁ ଚାହିଲା । ମହନି କହିଲା, "କିଲୋ, ବୋକିଙ୍କ ପରି ଚାହୁଁଛୁ କ'ଣ- ଠାକୁର ପରା ଆମ ଘରକୁ ଆସିଛନ୍ତି"- ତା'ପରେ ସେ ଭୁଜା ଗଣ୍ଡାଏ ପାଇଲା ଓ ତାକୁ ନେଇ ମଦନ ମୋହନଙ୍କୁ ଦେଲା । ମଦନ ମୋହନ ତାକୁ ହରଶରେ ପାଟିରେ ପକାଇଲେ । ମହନିର ମନେ ହେଲା- ମଦନ ମୋହନ ଯେମିତି କହୁଛନ୍ତି, "ନେ, ଆଉ ଚାହିଁଛୁ କ'ଣ- ନେ, ସେ ଅଳଙ୍କାରଗୁଡାକ ମୋ ରାଧାକୁ ପିନ୍ଧାଇ ଦେ- ମୁଁ ପରା ମାଧବ- ରାଧାର ଦେହ ଭଲ ନାହିଁ ଖବର ଶୁଣି ଦେଖିବାକୁ ଆସିଛି । ଏଥର ତା ଦେହ ଭଲ ହୋଇଯିବ । ମହନି ସବୁକଥା ମନଖୁସିରେ ରାଧାକୁ କହିଲା- ରାଧା କିଛି ସମୟ ବାପା ମୁହଁକୁ ଚାହିଁଲା ଓ ଭାବିଲା ବାପାର ମୁଣ୍ଡ ବୋଧେ ଠିକ୍ ନାହିଁ । ଠାକୁର ତାକୁ ଦେଖିବାକୁ ଆସିଛନ୍ତି - ତା' ଦେହ ଭଲ ହୋଇଯିବ । ମହନି କହୁଥିଲା- "ଠାକୁର କହିଲେ, ହଉଚାଲ, କବିରାଜ ଆସୁନାହାନ୍ତି- ମୁଁ ଭଲ କରିଦେବି । ମୁଁ ପରା ରାଧାର ଡାହାଣୀ ଝଡାଇଛି । ମହନି କହିଲା, ତୁ ଶୀଘ୍ର ଏଗୁଡାକ ପିନ୍ଧିପକା- ନଇଲେ ମଦନ ମୋହନ ମନ ଦୁଃଖ କରିବ- କେତେ ସରାଗରେ ତୋ ପାଇଁ ଏସବୁ ଜିନିଷ ଆଣିଛି । ଠାକୁର କହୁଛନ୍ତି- ଏ ଗାଁରେ ସେ ଆଉ ରହିବେନି । ଆମେ ସଭିଏଁ ଏ ଗାଁ ଛାଡି ଚାଲିଯିବା- ସେତିକିବେଳେ ମହନିର ଆଖିରୁ ଦୁଇଟୋପା ଲୁହ ଖସି ପଡିଲା- ସୁନ୍ଦରୀ ଥିଲେ ଆଜି ନିଜ ହାତରେ ରାଧାକୁ ବେଶ କରାଇଥାନ୍ତା- ସତକୁ ସତ ରାଧା ସେ ଅଳଙ୍କାର ପିନ୍ଧିଲା ଓ ତାକୁ ଭାରି ଭଲ ମାନିଲା । ମହନିର ମନେ ହେଲା ତା' ଝିଅ ସତରେ ରାଧା- ସେ ନାଚରେ ରାଧା ଲୀଳା ଦେଖୁଛି । ଠିକ ସେମିତି ରାଧା ଝଲକୁଛି ।

ପାହାନ୍ତିଆ ହୋଇ ଆସିଲାଣି- କୁଆଁତାରା ଦପ୍ ଦପ୍ ଜଳୁଛି । ମହନି କହିଲା, "ଚାଲ, ଠାକୁର ଯିବା । ମଦନ ମୋହନ ହସିଲେ- "ନାଁ, ମୋତେ ଏ ଘରେ ଭାରି ଭଲ ଲାଗୁଛି-ସେ ଅମୁହାଁ ଦେଉଳରେ ମୁଁ ଅଣନିଶ୍ୱାସୀ ହୋଇଯାଉଥିଲି । ମହନି କହିଲା-"ଠାକୁର, ତୁମେ କିଛି ବୁଝିପାରୁନା- ସେମାନେ ମୋତେ ଦୋଷ ଦେବେ ମୋତେ ହଇରାଣ କରିବେ ।" ମଦନ ମୋହନଙ୍କ ଓଠରେ ହସ ଉକୁଟି ଉଠିଲା- ସେ କହିଲେ, "ସେ କଥା ମୁଁ ବୁଝିବି, ସେମାନଙ୍କୁ ମୁଁ

ସବୁକଥା ବୁଝେଇ ଦେବି- କିଛି କ୍ଷତି ହେବନି- ଗାଁ ଲୋକେ ପଚାରିଲେ କହିବୁ- ଠାକୁର ନିଜ ଇଚ୍ଛାରେ କାଲି ଚାଲି ଆସିଛନ୍ତି ।"

ସକାଳ ହେଲା- ମହନି ଏଣେ ଠାକୁରଙ୍କ କାମରେ ବ୍ୟସ୍ତ । ତା' ଘରେ ମଦନ ମୋହନ ବିଜେ କରିଛନ୍ତି । ତେଣେ ବଡ ପଣ୍ଡା ଯେତେବେଳେ ମନ୍ଦିର ଖୋଲିଲା- ସେ ଦେଖିଲା ସିଂହାସନରେ ଠାକୁର ନାହାନ୍ତି, ତା'ଛଡା ସିନ୍ଧୁକ ଖୋଲା ପଡ଼ୁଛି- ଗହଣା ଅଳଙ୍କାର କିଛି ନାହିଁ । ଏଣେ ମହନି ଘରେ ଲୋକ ଜମି ଗଲେଣି । ମହନି ସବୁ କଥା କହିଲା- ରାଧାକୁ ଦେଖିବାକୁ କାଲି ରାତିରେ ମଦନ ମୋହନ ମନ୍ଦିର ଛାଡି ଚାଲି ଆସିଛନ୍ତି । ସେ ପୁଣି କେମିତି ଉପାସ ଥିଲେ, ସବୁକଥା ଜଣେଇଲା । ଏହା ଭିତରେ ଗାଁରେ ତୁମୂଳକାଣ୍ଡ ଆରମ୍ଭ ହୋଇଗଲାଣି । କେତେଜଣ ଯାଇ ଥାନାରେ ଏତାଲା ଦେଲେ- ଠାକୁର ସହ ସୁନା ଅଳଙ୍କାର ସବୁ ମନ୍ଦିରରୁ ଚୋରି କରି ଆଣିଛି । ତା'ପରେ ଥାନାରୁ ବଡବାବୁ ଦୁଇଜଣ କନେଷ୍ଟବଳ ଧରି ପହଞ୍ଚିଲେ- ମହନି ନିଶ୍ଚୟ ଏ ମୂର୍ତ୍ତିକୁ ବାହାରକୁ ଚୋରା ଚାଲାଣ କରିଥାଆନ୍ତା । ଯେତେବେଳେ ତା' ହାତ ଆଉ ପାଦରେ ଲୁହା ଶିକୁଳୀ ବାନ୍ଧି ତାକୁ ଘୋଷାରି ନେଲେ ସେତେବେଳେ ମହନି କିଛି ବୁଝିପାରିଲା ନାହିଁ । ଯେତେବେଳେ ବଡବାବୁ ତାକୁ ଗୋଟାଏ ଘୁଷି ପକାଇ ଶେଷକୁ ହିନ୍ଦୁ ହୋଇ ଠାକୁର ଚୋରୀ କରିବାକୁ ବାହାରିଲୁ, କହିଲେ, ମହନି ଆବାକାବା ହୋଇ ଅନେଇଲା । ରାଧା ବି କିଛି ବୁଝିପାରୁନି- ମହନି କହିଲା, "ବଡବାବୁ, ମଦନ ମୋହନ ରାଧାକୁ ଦେଖିବାକୁ କାଲି ରାତିରେ ଆସିଥିଲେ- ସେ ଦୁଇଦିନ ହେଲା, ଉପାସ ଥିଲେ ।" "ହଁ ଠାକୁର ତୋତେ ଖାଇବା ମାଗୁ ଥିଲେ"- ସେମାନେ ମହନିକୁ ବାନ୍ଧି ପକେଇ ଘୋଷାରି ନେଲେ । ମହନି ବିକଳରେ ମଦନ ମୋହନ ଆଉ ରାଧାକୁ ଚାହିଁଲା, ଶେଷକୁ ଥର ଥର କଣ୍ଠରେ କହିଲା, "ମଦନ ମୋହନ, ଶେଷକୁ ତୁ ମୋ ସାଙ୍ଗରେ ଖେଳିଲୁ, ହଉ ତୋ ଇଚ୍ଛା- ରାଧା ତୋତେ ଲାଗିଲା । ସେ ଟିକେ ରାଧାକୁ କ'ଣ କହିବାରୁ ଜଣେ କିଏ ତାକୁ ଗୋଟିଏ ଗୋଇଠା ପକାଇ କହିଲା- ଭକତ ଶିରୋମଣି- ଠାକୁର ଯା' ଘରକୁ ଆସୁଥିଲେ ।

ସେଦିନ ଖୁବ୍ ଜାକ ଜମକରେ ଆଉ ଥରେ ମଦନ ମୋହନଙ୍କ ବିଗ୍ରହ ପ୍ରତିଷ୍ଠା ହେଉଥିଲାବେଳେ ଜଣେ କିଏ ବିଛଣାରେ ପଡି ରହି, "ମୋ ବାପା ଠାକୁର ଚୋରି କରିନି, ତାକୁ ଛାଡି ଦିଅ," ବୋଲି ଜ୍ୱରରେ ବିଳବିଳଉ ଥିଲା । ଆଉ ମଦନ ମୋହନ ବୋଧହୁଏ ପଥର ପାଲଟି ଯାଉଥିଲେ ।



# ତାମ୍ରଫଳକ

## ସେକ୍ ମତଲୁବ୍ ଅଲ୍ଲି

ତୁମେ ଆସିଛ ବିଶ୍ୱାସ ରାୟ ?

ପୁରୁଣା ବନ୍ଧୁମାନଙ୍କୁ ଭେଟିବାର ଲୋଭ ଏଡ଼ାଇ ପାରିଲି ନାହିଁ–ଚାଲି ଆସିଲି ଭାଇ । ଏକ ମ୍ଳାନ, ମୁଖର ଉଦାସ ଭରା ଏଇ କେଇପଦ କଥା !!

ଠିକ୍ କହିଛ–ଏଇ ମୋହ ଅଧିକାଂଶଙ୍କୁ ଦିଲ୍ଲୀ ଟାଣି ଆଣିଛି । ତା ନ ହେଲେ ଜେଲ ଖଟିବାର ସାର୍ଟିଫିକେଟ୍ ନେବାକୁ କିଏ ଆସନ୍ତା ?

ସଂବର୍ଦ୍ଧନା ସଭା ଆରମ୍ଭ ହେବା ଉପରେ–

ରାଜଧାନୀ ଦିଲ୍ଲୀ ମହାନଗରୀର ଆଧୁନିକ ବିରାଟ ହଲଟି କ୍ରମେ କ୍ରମେ ଭରପୁର ହୋଇ ଉଠୁଛି ସ୍ୱାଧୀନତା ସଂଗ୍ରାମ ଅମର ସଂଗ୍ରାମୀ ଓ ବିପ୍ଳବୀମାନଙ୍କର ସମାବେଶରେ... ଏହି ସମାବେଶ ଯେପରି ବିସ୍ମୟଭରା ସେହିପରି ମଧ୍ୟ ମର୍ମସ୍ପର୍ଶୀ... ପୁଣି ଅସ୍ତରାଗର ବିଷର୍ଣ୍ଣତାରେ ପରିପୂର୍ଣ୍ଣ– ଏକାନ୍ତ କରୁଣ ।

ଉପସ୍ଥିତ ଅନେକ ବିପ୍ଳବୀ ପ୍ରାୟ ଜୀବନର ସାୟାହ୍ନରେ–ଚାଲିବା ପାଇଁ ହାତରେ ଲାଠିର ସାହାଯ୍ୟ । ଗତକାଲିର ବିପ୍ଳବୀ, ନୂତନ ଇତିହାସର ସ୍ରଷ୍ଟା–କିନ୍ତୁ ସମସ୍ତେ ଆଜି ଏକ ଅବ୍ୟକ୍ତ ବ୍ୟଥାରେ ପୀଡ଼ିତ ଅବା ପରାଜିତ ସୈନିକ ।

ଆପଣ ? –ବିସ୍ମୟର ସହିତ ସାମନାରେ ଠିଆ ହୋଇଥିବା ଜନୈକେ ବୃଦ୍ଧ ବିଶ୍ୱାସ ରାୟଙ୍କୁ ପଚାରିଲେ ।

ମୁଁ–ରାଧାମୋହନ ବିଶ୍ୱାସ ରାୟ !

ଅକଳ୍ପିତ ଉଚ୍ଛ୍ୱାସରେ ଉତ୍ଫୁଲ୍ଲିତ ହୋଇ ବୃଦ୍ଧ ଜଣକ ପୁଣି ପାଟିକରି ଉଠିଲେ–''ବରହମପୁର ଜେଲର ବିଶ୍ୱାସ ରାୟ ଭାଇ ?''

''ବରହମପୁର ଜେଲ'' କଥା ଶୁଣିବା ମାତ୍ରକେ ଇତିହାସର ଏକ ବିସ୍ମୃତ ଗର୍ବିତ ଅଧ୍ୟାୟ ବିଶ୍ୱାସ ରାୟଙ୍କ ସ୍ମୃତିରେ ସଂଜୀବିତ ହୋଇ ଉଠିଲା–ସମଗ୍ର ସ୍ନାୟୁ ତନ୍ତ୍ରୀରେ ତାଙ୍କର ଅନ୍ତରରେ ପୁଲକର ଜୁଆର ଖେଳି ଗଲା–କ୍ଳାନ୍ତ, ପୀଡ଼ିତ ମୁଖମଣ୍ଡଳରେ ତୃପ୍ତିର ହସ ପ୍ରକଟିତ ହେଲା– ''ହଁ, ମୁଁ ବରହମପୁର ଜେଲର ବିଶ୍ୱାସ ରାୟ ! କିନ୍ତୁ ଆପଣ ?

–ତୁମର ସୂର୍ଯ୍ୟ ନାରାୟଣ !!

ଶୀର୍ଣ୍ଣ, କ୍ଳାନ୍ତ ବୃଦ୍ଧ, ଏକ ଉଦ୍ଦାମ ଶକ୍ତିରେ ଗଭୀର ଭାବରେ ଆଲିଙ୍ଗନ କରି ସଭାଗୃହ, ତାର ପରିବେଶ ସବୁକୁ ଭୁଲି ଚିତ୍କାର କରି ଉଠିଲେ–''ତୁମେ ସେଇ ସୂର୍ଯ୍ୟ ନାରାୟଣ ? ନିର୍ଭୟରେ ସେଦିନ ତୁମେ ସଇତାନ ବ୍ୟାଟନ ସାହେବକୁ ଗୁଳି କରି–ସମସ୍ତ ବିପ୍ଳବୀଙ୍କୁ ଉନ୍ମତ୍ତ କରି ଦେଲ ? ନୂଆ ଇତିହାସ ସୃଷ୍ଟି କରିଦେଲ...''

''–ଜନ୍ମଭୂମିର ମୁକ୍ତି ପାଇଁ ବହୁ ବିପ୍ଳବୀ ଆହୁରି ଅସାଧ୍ୟ ସାଧନ କରିଛନ୍ତି, ସେ ସବୁ ତୁଳନାରେ ଏତ ତୁଚ୍ଛ ।''

''ନା, ନା,–ସେଦିନ ଦୁର୍ଦ୍ଦାନ୍ତ ବ୍ୟାଟନ ସାହେବକୁ ଗୁଳିକରି ତୁମେ ସମସ୍ତ ବିପ୍ଳବୀ ସଂଗ୍ରାମୀଙ୍କର ଅଭିନନ୍ଦନୀୟ ହୋଇଥିଲ । ନୂଆ ଇତିହାସ ସେଦିନ ତୁମେ ସୃଷ୍ଟି କରିଥିଲ–କିଏ ଏକଥାକୁ ଅସ୍ୱୀକାର କରିବ ସୂର୍ଯ୍ୟ ?''

ଛାଡ଼ନ୍ତୁ, ଆଜିବି ଆପଣ ଠିକ୍ ସେହି ଭଳି ଇମୋସନାଲ !! ଆଚ୍ଛା ଅନ୍ୟମାନଙ୍କର ଖବର କଣ ?

''–ମୋ ପାଖରେ କୌଣସି ଖବର ନାହିଁ ।''

ସୂର୍ଯ୍ୟନାରାୟଣ ବିସ୍ମିତ ଭାବରେ ପଚାରିଲେ–''ମାନେ ? ଆପଣଙ୍କର ପରିବାର ତଥା ବ୍ରହ୍ମୋତ୍ରୀ ଦେବୀଙ୍କର ଖବର ?''

ମୁଁ କିଛି ଜାଣି ନାହିଁ–ବରହମପୁର ଜେଲରୁ ମୁଁ ହଜାରିବାଗ ଜେଲକୁ ଗଲା ପରଠାରୁ ମୋ ପାଖରେ ପ୍ରାୟ କୌଣସି ଖବର ନାହିଁ । ବିଶ୍ୱାସ ରାୟଙ୍କ ମୁଖ ମଣ୍ଡଳରେ ଏକ ଅବ୍ୟକ୍ତ ବେଦନାର ଆଭାସ ।

''ଆପଣ ବ୍ରହ୍ମୋତ୍ରୀକୁ ବିବାହ କରି ନାହାଁନ୍ତି ??''

ଆଜିବି ମୁଁ ଅବିବାହିତ.... ଏକ ଦୀର୍ଘଶ୍ୱାସ ସହିତ ଏ ଉତ୍ତରଟି ଦେଲେ ।

ଉଭୟ ନୀରବ.... !!!

.... ଏତେବେଳେ ବିପ୍ଳବୀମାନଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରିବା ଉପଲକ୍ଷେ ଜନୈକ କେନ୍ଦ୍ରମନ୍ତ୍ରୀ ଅତ୍ୟନ୍ତ ଓଜସ୍ୱିନୀ ଭାଷାରେ ବକ୍ତୃତା ଦେଉଛନ୍ତି–ମାଇକରେ ତାଙ୍କର ସମସ୍ତ ବକ୍ତବ୍ୟ ବିରାଟ ହଲ ଭିତରେ ବିଚ୍ଛୁରିତ ହୋଇ ଯାଉଛି । ହେଲେ ବିଶ୍ୱାସ ରାୟଙ୍କ କାନରେ ସେ ସବୁକିଛି ବାଜୁ ନାହିଁ ।

ସ୍ୱାଧୀନତା ସଂଗ୍ରାମୀ ଓ ବିପ୍ଳବୀମାନଙ୍କର ସମ୍ବର୍ଦ୍ଧନା ପାଇଁ ଆଜି ଦିଲ୍ଲୀରେ ପ୍ରଥମ ସଭା– ଆସନ୍ତା କାଲି ଲାଲ କିଲ୍ଲାରେ ଭାରତର ରାଷ୍ଟ୍ରପତି ଜାତୀୟ ଆନ୍ଦୋଳନର ମହାନ ବିପ୍ଳବୀମାନଙ୍କୁ ତାମ୍ରପତ୍ର ପ୍ରଦାନ କରିବେ–ତା ପୂର୍ବରୁ ଏବଂ ପରେ ବହୁ ସମ୍ବର୍ଦ୍ଧନା ସଭା, ଭୋଜି ସଭାର ବ୍ୟବସ୍ଥା ମଧ୍ୟ ହୋଇଛି । ରାଜଘାଟ ଠାରେ ଗାନ୍ଧୀ ସମାଧି ପୀଠରେ ସମୂହ ପ୍ରାର୍ଥନା, ପୁଷ୍ପମାଲ୍ୟ ପ୍ରଦାନର ବ୍ୟବସ୍ଥା ମଧ ରହିଛି... ଏ ସମସ୍ତ କଥା ବିଶ୍ୱାସ ରାୟଙ୍କର ଯେମିତି ବିସ୍ମୃତ ହୋଇଯାଇଛି । ସମ୍ବର୍ଦ୍ଧନା ସଭାରେ ସେ ଉପସ୍ଥିତ- ତାହାବି ତାଙ୍କର ସ୍ମୃତିରେ ନାହିଁ । ପ୍ରିୟ ଅତୀତର ବିସ୍ମୃତ ଅନ୍ଧାର ଭିତରେ ସେ କିଛି ଖୋଜିବାରେ ବ୍ୟସ୍ତ–ତାଙ୍କର ସ୍ମୃତିରେ କ୍ଷୀଣ ଧ୍ୱନି କିଏ ଯେପରି ତୋଳୁଛି--

''–ମାର ଡାକ ଶୁଣି ତୁମେ ଆସିଛ ? ଏଇ ଶୁଣ–ତଟିନୀର କଳନାଦ, ବନାନୀର ମର୍ମର– ଆକାଶର ନୀରବତା, ସବୁଥିରେ ମା'ର ସ୍ୱର–''ମତେ ମୁକ୍ତକର–ସ୍ୱାଧୀନ କର !!'' କ'ଣ କହୁଛ– ତୁମେ ପାରିବ– ଏ ସଂଗ୍ରାମରେ ସାଥୀ ହୋଇ ପାରିବ ??''

ମନ୍ତ୍ର ମୁଗ୍ଧ ଭଳି ବିଶ୍ୱାସ ରାୟ ଚାହିଁ ରହିଥିଲେ ଶକ୍ତିପଦ ଚୌଧୁରୀଙ୍କର ବଜ୍ର କଠିନ ମୁହଁକୁ...

ଶକ୍ତିପଦ ଚୌଧୁରୀ !! ଛାତ୍ର ଓ ଯୁବପ୍ରାଣର ଶକ୍ତି–ଜାତିପ୍ରେମ ବହ୍ନିର ପ୍ରତୀକ, ସମସ୍ତଙ୍କର ଶ୍ରଦ୍ଧା ଓ ସ୍ନେହର ଶକ୍ତିପଦ । ଯେଉଁ ଦିନ ତାଙ୍କରି ଆମନ୍ତ୍ରଣ ବିଶ୍ୱାସ ରାୟ ପାଇଲେ–ପୁଣି ଶକ୍ତିପଦଙ୍କର ସଂଗ୍ରାମର ସହକର୍ମୀ, ଏକମାତ୍ର ସାନ ଭଉଣୀ ବ୍ରହ୍ମୋତ୍ରୀ ଚୌଧୁରୀଙ୍କ ଠାରୁ... ଏବଂ ବ୍ରହ୍ମୋତ୍ରୀ ଚୌଧୁରୀଙ୍କ ସହିତ ପାହାଡ଼ ତଳର ସେହି ଛୋଟ ଆଶ୍ରମ, ବକୁଳ ଛୁରିଆନାର କୁଞ୍ଜ, ଅଳ୍ପ ଦୂରକୁ ଛୋଟ ନଦୀର ସ୍ୱଚ୍ଛ ଜଳଧାରା ଶକ୍ତିପଦ ଚୌଧୁରୀଙ୍କର ସାଧନାର ପୀଠ–ସଂଗ୍ରାମର ଗବେଷଣା ଗାରରେ ଯାଇ ପହଞ୍ଚିଲେ–ତାଙ୍କ ସାମନାରେ ଠିଆ ହୋଇଛନ୍ତି ଯୁବଛାତ୍ର ପ୍ରାଣର ଜାତୀୟତାର ଉତ୍ସ ଶକ୍ତିପଦ ଚୌଧୁରୀ–ତାଙ୍କର ଦୁଇଚକ୍ଷୁ ଜାତି ପ୍ରେମ ବହ୍ନିରେ ଦୀପ୍ତିମାନ, ବଜ୍ର କଠିନ ମୁଖର ଆହ୍ୱାନ–"ତୁମେ ପାରିବ ? ଏ ସଂଗ୍ରାମରେ ସାଥୀ ହୋଇ ପାରିବ... ?"

".... ପାରିବି–ହଁ ପାରିବି,"–ସେ ଦିନର ଶିଶିରସିକ୍ତ ଆଦ୍ୟପ୍ରଭାତର ନୂତନ ସୂର୍ଯ୍ୟକୁ ଚାହିଁ ସଂକଳ୍ପ ନେଇ ଥିଲେ ବିଶ୍ୱାସ ରାୟ.... !!

ଶକ୍ତିପଦ ବାବୁ ଗଭୀର ଭାବରେ ଆଲିଙ୍ଗନ କରି କହିଥିଲେ– "ଏ ଯୌବନର ଉକ୍ତି ନୁହେଁ–ଜାତୀୟ ଯୁବପ୍ରାଣର ଅଭିବ୍ୟକ୍ତି ଏବଂ ବ୍ରହ୍ମୋତ୍ରୀକୁ ଚାହିଁ ଉଲ୍ଲେଖ କରିଥିଲେ ଗୁଣ ଚିହ୍ନିବାରେ, ମଣିଷ ବାଛିବାରେ ତୋର କେବେ ଭୁଲ ହୁଏ ନାହିଁ ।"

–ତାପରେ କେତେବର୍ଷ; ଝଡ଼ପରେ ଝଡ଼–ତା'ରି ଭିତରେ ବିତିଗଲା । ଦେଶର ବହୁନେତା, ସଂଗ୍ରାମର କାଣ୍ଡାରୀ କାରାଗାର ଭିତରେ–କିନ୍ତୁ ଦେଶସାରା ଅଗ୍ନିର ପ୍ଲାବନ । ମହାନ ଅଗଷ୍ଟ ବିପ୍ଳବ । ଓଡ଼ିଶାର ପୁର ପଲ୍ଲୀରେ ତାର ପ୍ରତିଧ୍ୱନି । ସଂଗ୍ରାମ ପରେ ସଂଗ୍ରାମ । ଇରମ, କାଇପଡ଼ା, ପୁଣି ମାଟିଲର ଘଟଣା- ଯାହା ସବୁ ଆଜି ଇତିହାସର କଥା-ଆଖି ଆଗରେ ଜୀବନ୍ତରୁ ଆହୁରି ଜୀବନ୍ତ ହୋଇ ଉଠେ ବିଶ୍ୱାସ ରାୟଙ୍କର । ଅଗ୍ନିଯୁଗର ତରୁଣ ବିପ୍ଳବୀ-କେତେ ବନ୍ଧୁକ, ବୁଲେଟ୍- ଫାଶିଖୁଣ୍ଟ–ବିପ୍ଳବୀର ତାଜା ରକ୍ତ–ରାଶି ରାଶି ସ୍ମୃତି–କାଳର ବିସ୍ମୃତ ଇତିହାସର ଐଶ୍ୱର୍ଯ୍ୟ... ସବୁ ତାଙ୍କର ସ୍ମୃତିରେ ନାଚି ଯାଉଛି ।

ଠିକ୍ ସେହି ସମୟ । ବିପ୍ଳବର ଦମନ ପାଇଁ, ସଂଗ୍ରାମୀଙ୍କ ନିହତ ପାଇଁ ଗୋରା ସାହେବମାନେ ଗୁଳି ଚାଳନା ଆରମ୍ଭ କରି ଦେଇଥା'ନ୍ତି । ବ୍ରହ୍ମୋତ୍ରୀ ସେଦିନ ଅଗ୍ନିଶର୍ମା ହୋଇ ଉଠିଥାଏ, ବଡ଼ ଭାଇର ଅନୁମତି ଅପେକ୍ଷାରେ ଥାଏ; ବେଶି ନୁହେଁ–ଥରକ ପାଇଁ ଅନୁମତି–ସେ ଗୁଳି ଚଳାଇବ– ସାହେବଙ୍କୁ ଦେଖାଇ ଦେବ–ଏ ଭାରତ ମାଟିର ଝିଅର ଲକ୍ଷ୍ୟ କିପରି ଅବ୍ୟର୍ଥ ହୋଇପାରେ..... ।

କିନ୍ତୁ ଶକ୍ତିପଦ ଚୌଧୁରୀ ଅନୁମତି ଦେଇ ନ ଥିଲେ–ଭବିଷ୍ୟତର ସୂଚନା ଦେଇ ଥିଲେ– "ବ୍ରହ୍ମୋତ୍ରୀ ଏ ଆଶ୍ରମର ଭବିଷ୍ୟତ ନିର୍ଭର କରୁଛି ତୋ ଉପରେ... ।"

–ତାପରେ ବିଶ୍ୱାସ ରାୟ ନିଷ୍ପତ୍ତି ନେଇଥିଲେ–ସଂଗ୍ରାମୀମାନଙ୍କ ଭିତରେ ଆତଙ୍କ ସୃଷ୍ଟି ପାଇଁ ଇଂରେଜ ଯେଉଁ ଚକ୍ରାନ୍ତ ଚଳାଇଛି-ତାକୁ ପଣ୍ଡ କରିବାକୁ ହେବ । ନିର୍ଭୀକ ଭଳି ସେ ଆଗେଇ ଥିଲେ–କୋର୍ଟକୁ ଆସିବା ସମୟରେ ଠିକ୍ ଛକରେ ଗୁଳି କରିଥିଲେ ସଇତାନ ପୋଲିସ୍ ସାହେବଙ୍କୁ । ଆଶ୍ରମକୁ ନ ଫେରି ଫେରାର ହୋଇଥିଲେ... ତାପରେ ବରହମପୁର ଜେଲ... ସେଠୁ ରାଜମହେନ୍ଦ୍ରିର କେନ୍ଦ୍ରୀୟ ଜେଲ... ।

ଦୀର୍ଘ ତିରିଶ ବର୍ଷ ତଳର କଥା- ତଥାପି ବିସ୍ମୃତିର ଭଗ୍ନ ଦୁର୍ଗ ଆଜି ମୁଖର ହୋଇ ଉଠିଛି- ଇତିହାସ କଥା କହୁଛି-ବିଶ୍ୱାସ ରାୟଙ୍କର ସ୍ମୃତିର ତରଙ୍ଗ କଲ୍ଲୋଳିତ ହେଉଛି–

''—ବକୁଳ ଛୁରିଆନାର କୁଞ୍ଜ ।
ତଟିନୀର ତଟ ।
ଶକ୍ତିପଦ ଚୌଧୁରୀଙ୍କର ବଜ୍ର ଗମ୍ଭୀର ସ୍ୱର ।''
ଆଦ୍ୟ ପ୍ରଭାତ ଏବଂ ବ୍ରହ୍ମୋତ୍ରୀ—ଏଇ ଯେମିତି ମୋ ଆଖି ଆଗରେ ସବୁ ଘଟୁଛି... କାଇପଡା ଇରମ, ମାତିଲ ଗୁଳିକାଣ୍ଡ—ଅଗ୍ନିଯୁଗର ବିପ୍ଳବୀ ଶହୀଦ୍‌ବୃନ୍ଦ... । ଆଉ ମୁଁ ବିଶ୍ୱାସ ରାୟ, ବୃଦ୍ଧ-ଦୁର୍ବଳ-ବୟାଳିଶ ଆନ୍ଦୋଳନର ଗୁଳିରେ ଆଜି ମୁଁ ଆଂଶିକ ପଙ୍ଗୁ—ନିଜର ବୋଲି କେହି ନାହାଁନ୍ତି—ଅନ୍ୟପାଖରେ ଆଶ୍ରିତ.... ।'' ଆଖିରେ ଲୁହ ।
—ସମ୍ବର୍ଦ୍ଧନା ସଭା ଶେଷ ହେଲା ।
ମନ୍ତ୍ରୀ ମହାଶୟଙ୍କ ପାଖରେ କିଛି ଲୋକର ଭିଡ଼ ।
ପରିଚିତ ପୁରୁଣା ବନ୍ଧୁ—ଏବଂ ଐତିହାସିକ ବିପ୍ଳବୀମାନଙ୍କୁ ପାଖରେ ପାଇ ଅନେକ ଆନନ୍ଦରେ ଅଧୀର ।
ହଠାତ୍ ସୂର୍ଯ୍ୟ ନାରାୟଣ ବିଶ୍ୱାସ ରାୟଙ୍କୁ ଡାକିଲେ— ''ଆପଣ ଯିବେ ନାହିଁ ?''
ସେ ଡାକରେ ବିଶ୍ୱାସ ରାୟ ଆତ୍ମସ୍ଥ ହୋଇ ପଡ଼ିଲେ- ''ହଁ ଯିବା ।''
''ଆପଣଙ୍କ ଆଖିରେ ଲୁହ ?''
''ନାଁ—ସେ କିଛି ନୁହେଁ— !! କେଉଁ ଆଡ଼େ ଯିବା ସୂର୍ଯ୍ୟ ?''
''ହୋମ ମିନିଷ୍ଟରଙ୍କ ଭୋଜିକୁ ।''
''ନୀରବ ରହିଲେ ବିଶ୍ୱାସ ରାୟ ?''
''କ'ଣ ହେଲା—ଠିଆ ହୋଇ ରହିଲେ ଯେ ?''
ଉତ୍କଳ ଏକ୍‌ପ୍ରେସକୁ ଯିବାକୁ ହେବ—ଫେରିଯିବା ପାଇଁ ।
ମାନେ—ଲାଲକିଲା ଉତ୍ସବରେ ଯୋଗଦେବ ନାହିଁ ?
ଆଦୌ ଇଚ୍ଛା ନାହିଁ—ଦେହଟାବି ଭଲ ଲାଗୁନାହିଁ—ସୂର୍ଯ୍ୟ ।
ଏତିକିବେଳେ ସୂର୍ଯ୍ୟ ନାରାୟଣ ସେହିବାଟ ଦେଇ ଚାଲିଯାଉଥିବା ଜନୈକା ଭଦ୍ର ମହିଳାଙ୍କୁ ଅଟକାଇ ନମସ୍କାର କଲେ—ମୋ ଆଡ଼କୁ ଚାହିଁ ପଚାରିଲେ—''ଆପଣ ଏହାଙ୍କୁ ଚିହ୍ନି ପାରୁଛନ୍ତି ।
ବିଶ୍ୱାସରାୟ ତାଙ୍କର ମୋଟା କାଚ ଚଷମାରେ ବହୁ ଚେଷ୍ଟା ସତ୍ତ୍ୱେ ଠିକ୍ ଚିହ୍ନି ପାରିଲେ ନାହିଁ ଭଦ୍ରମହିଳାଙ୍କୁ । ଭଦ୍ରମହିଳା ଇଷତ୍ ହସି କହିଲେ— ବହୁବର୍ଷ ପରେ ସାକ୍ଷାତ, ଚିହ୍ନିବା କଷ୍ଟ ।
ବୟସ ଅଧିକ ହେଲେ ମଧ ଭଦ୍ରମହିଳାଙ୍କର ଦେହରେ ସୌନ୍ଦର୍ଯ୍ୟର ଯଥେଷ୍ଟ ଆଭାସ ଅଛି—ପାଶ୍ଚାତ୍ୟ ଢଙ୍ଗରେ ନିଜକୁ ବେଶ ସଜ୍ଜିତ ମଧ୍ୟ କରିଛନ୍ତି ।
ବିଶ୍ୱସରାୟଙ୍କର ମନର ସଂଶୟକୁ ଦୂର କରି ସୂର୍ଯ୍ୟନାରାୟଣ କହିଲେ ''ବ୍ରହ୍ମୋତ୍ରୀ ନାନୀଙ୍କୁ ଚିହ୍ନିପାରୁନା ? ଅଳ୍ପ କେତେ ସମୟ ପୂର୍ବରୁ ମୁଁ ଆପଣଙ୍କୁ ତାଙ୍କ କଥା ପଚାରୁଥିଲି ?'' ଏକ ଅସ୍ପଷ୍ଟ ସ୍ୱରରେ ବିଶ୍ୱାସ ରାୟ କହିଲେ ''ବ୍ରହ୍ମୋତ୍ରୀ ?''—ହଁ ମୁଁ ବ୍ରହ୍ମୋତ୍ରୀ ଚୌଧୁରୀ ଓରଫ ବ୍ରହ୍ମୋତ୍ରୀ ମାଥ୍ୟୁସ୍ ।''
''ମାନେ ତୁମେ.... ?''

"ମିଷ୍ଟର ମାଥ୍ୟୁସଙ୍କ ସହିତ ବହୁ ବର୍ଷ ଧରି ମୁଁ ଭାରତ ବାହାରେ ଥିଲି... ସେ କିଛିଦିନ ଆମ୍ଭାସାଡର ଥିଲେ—ଏବେ ବିଲାତରେ ଅଛନ୍ତି ।

ସୂର୍ଯ୍ୟନାରାୟଣ ଏକଥା ମଝିରେ ପଚାରିଲେ—ତାମ୍ରପତ୍ର ଆପଣ ପାଉଛନ୍ତି ନା ବ୍ରହ୍ମୋତ୍ରୀ ଦେବୀ ?"

"ଦ୍ୟାଟସ୍ ରାଇଟ୍-ସେଇଥି ପାଇଁତ ବିଲାତରୁ ଆସିଛି ।"

ସବୁ ଶୁଣୁଥିଲେ ଏବଂ ଚାହିଁଥିଲେ ବାହାରର ଅନ୍ଧାରକୁ ଗ୍ରାସ କରୁଥିବା ନିୟନ ଆଲୁଅକୁ ବିଶ୍ୱାସ ରାୟ ।

—ତା' ଆରଦିନ ଐତିହାସିକ ଦିଲ୍ଲୀର ଲାଲକିଲାରେ ଭାରତର ରାଷ୍ଟ୍ରପତିଙ୍କ ହାତରୁ ସମସ୍ତେ ତାମ୍ରଫଳକ ନେଲେ... କରତାଳି ହର୍ଷଧ୍ୱନୀରେ ଲାଲକିଲାର ବକ୍ଷ ମୁଖର ହୋଇ ଉଠିଲା... ।

—କିନ୍ତୁ ବାରବାର ନାମ ଘୋଷଣା । ସତ୍ତ୍ୱେ ଆସିଲେନି ବିଶ୍ୱାସ ରାୟ... ।

ଲାଲ କିଲାର ଶିଳାର ପ୍ରାଚୀରରେ ପୁରାତର୍ନ ଦିଲ୍ଲୀ ଇତିହାସର କବରେ କେବଳ କେତୋଟି ପ୍ରତିଧ୍ୱନି ?

ଯମୁନାର ତରଙ୍ଗରେ ଅସଂଖ୍ୟ ବେଦନାର ଉଜାଣି ।।।



# ଶତଧାରା

## ମାନସୀ ଦାସ

ସୁନିବୋଉ ଚମକି ଉଠିଲେ । ମୁଦିହୋଇ ଆସୁଥିବା ଆଖିପତା ଦୁଇଟା ଚଟ୍ କରି ମେଲା ହୋଇଗଲା । କେଉଁ ଅତୀତ ଭିତରେ ବୁଡ଼ି ଯାଉଯାଉ ସେ ବର୍ତ୍ତମାନକୁ ଫେରିଆସିଲେ, ପାଣି ଭିତରୁ ଉପରକୁ ଭାସି ଉଠିବା ଭଳି । ଏଇ ଟିକକ ଆଗରୁ ତାଙ୍କର ମାଳିଜପା ସରିଛି । ନାତିନାତୁଣୀମାନେ ଆଣ୍ଠୁମାଡ଼ି ପ୍ରାର୍ଥନା କରୁଥିଲେ : ସତ୍ୟ ପଥେ ଧର୍ମ ପଥେ ଘେନି ଯାଅ ମୋତେ... ଏଇ ପିଣ୍ଡାରେ, ସିଡ଼ିତଳର ଠାକୁର ଘର ସାମ୍ନାରେ । ସେ ଗୋଟିଏ ଗୋଟିଏ ତୁଳସୀ ମାଳି ସହିତ ନାମ ଜପ କରୁଥିଲେ– ରାଧାକୃଷ୍ଣ, ରାଧାକୃଷ୍ଣ । ବନ୍ଦ ଆଖି ଭିତରେ ରାଧାକୃଷ୍ଣଙ୍କ ଯୁଗଳମୂର୍ତ୍ତି, ଜଗନ୍ନାଥଙ୍କ ଚକାଡ଼ୋଳା, ବାରିପଟ ଗଛରେ ଝୁଲୁଥିବା ପାଚିଲା ପପେୟା, ବତୁରା ହୋଇଥିବା ବିରିଚାଉଳ... ପେଟଚିରା ହୋଇ ଡାକ୍ତରଖାନାରେ ପଡ଼ିଥିବା ବଡ଼ଝିଅର ମୁହଁ ଭାସି ଉଠୁଥିଲା । ଏଇଠି ସେ ବସି ରାତି ରନ୍ଧାର ବରାଦ କରିଛନ୍ତି । ଦୁଇ ପ୍ରକାର ତରକାରୀ ଭଜା; ସବୁ ପରିବା ସେ କାଟିଛନ୍ତି । ତା'ପରେ ଗୋଡ଼ଦୁଇଟି ଲମ୍ବାଇ ପଛକାନ୍ଥକୁ ଆଉଜି ବସିଯାଇଥିଲେ । ବସୁବସୁ ହିଁ ତ ନିଦ ହୋଇଯାଇଛି– ଏଇ ସନ୍ଧ୍ୟାବେଳଟାରେ । କେବଳ ସେତିକି ନୁହେଁ, ସେ ନିଦରେ ଅନାବନା ସ୍ୱପ୍ନ କିଛି ଦେଖିଛନ୍ତି । ତା' ମଧ୍ୟରେ ଦେଖିଛନ୍ତି ତାଙ୍କର ଗହଣା ବାକ୍ସଟିକୁ ।

ଏବେ ଟିକେ ଟିକେରେ ତାଙ୍କ ଆଖି ଝାଇଁମାରି କ୍ଳାନ୍ତ ହୋଇପଡ଼େ । ତିନି ପୁରୁଷର ଚଳନ୍ତି ଗତିକୁ ଦେଖୁ ଦେଖୁ ତାଙ୍କର ଦୃଷ୍ଟିଶକ୍ତି ଯେମିତି କ୍ରମଶଃ ନିଃଶେଷ ହୋଇଯାଉଛି । ଚାଳିଶା ଚଷମା ପିନ୍ଧି ସେ ଠିକ୍ ଭାବରେ ପୋଥି ପୁରାଣ ପଢ଼ିପାରୁ ନାହାନ୍ତି । ଦୂରରୁ ମଣିଷ ଚିହ୍ନିବାରେ ଭୁଲ୍ କରି ବସୁଛନ୍ତି । ଟେଲିଭିଜନର ଛବି ଜାଲ୍‌ଜାଲୁଆ ଦେଖାଯାଉଛି । ତଥାପି ସେ ସକାଳସାରା ପୋଥିଖୋଲି ବସନ୍ତି । ସନ୍ଧ୍ୟା ହେଲେ ହିଁ ତାଙ୍କ ପାଇଁ ଟେଲିଭିଜନ ଖୋଲା ହୁଏ । ସେହି ଝାପ୍‌ସା ପ୍ରତିବିମ୍ବ ମଧ୍ୟରେ ସୁନିବୋଉ ସତେ ଯେପରି ତାଙ୍କ ଜୀବନର ଅଭିବୃଦ୍ଧି ଓ ସାଫଲ୍ୟକୁ ପୂର୍ଣ୍ଣ ଅନୁଭବ କରନ୍ତି । ଏହି ନିଃଶେଷ ହୋଇଯିବାରେ ହିଁ ହୁଏତ ତାଙ୍କର ଚରମ ପୂର୍ଣ୍ଣତା; ନାରୀ ଜୀବନର ସାର୍ଥକତା ।

ସୁନିବୋଉ ବର୍ଷେ ହେଲା ଗାଁ ଛାଡ଼ିଲେଣି । ଗାଁକୁ ଗଲେ ସକାଳୁ ଯାଇ ସଞ୍ଜକୁ ଫେରିଆସିବା ପାଇଁ ହୁଏ । ସାଙ୍ଗରେ ପାନ-ବଟା ଓ ଗାମୁଛାଟା ବ୍ୟତୀତ ଅନ୍ୟ କିଛି ନେବାକୁ ପଡ଼େ ନାହିଁ । ଲୁଗାଖଣ୍ଡେ ବ୍ୟାଗ୍‌ରେ ଗେଞ୍ଜିଦେଲେ ନାତୁଣୀ ଚଟ୍‌କରି କାଢ଼ି ପକାଏ, କାଳେ ସେ ଗାଁରେ ରହିଯିବାକୁ ମନ କରିବେ ।

ଗାଁକୁ ସେ ଏକା ଯାଆନ୍ତି ନାହିଁ । ପହରାଦାର୍ ଭଳି ଗାଡ଼ିଭର୍ତ୍ତି ନାତିନାତୁଣୀମାନେ ଯାଆନ୍ତି, ବଗିଚା ବୁଲନ୍ତି, ଗଛରୁ ଫଳ ଛିଣ୍ଡେଇ ଖାଆନ୍ତି, ପୋଖରୀକୁ ଢେଲା ମାରନ୍ତି । ତାଙ୍କର ଅନୁପସ୍ଥିତିରେ ଗାଁରେ କିଛି ଅଟକି ଯାଇନାହିଁ । ସବୁ କାମ ପାଇଁ ଲୋକ ଖଞ୍ଜା ଯାଇଛି । ରଇତମାନେ ଏବେ ମଧ୍ୟ ମାଟିକାମୁଡ଼ି ଯେଝା ଯେଝା ଦଦରା କୁଡ଼ିଆକୁ ଆବୋରି ପଡ଼ିରହିଛନ୍ତି ବୁଢ଼ା ଜମିଦାରଙ୍କ ହୁକୁମ ହେଜି । ତଥାପି ସୁନିବୋଉଙ୍କ ମନ ବୁଝେ ନାହିଁ । ସେ ଯିବା ଦିନରୁ ଘର ଦ୍ୱାର ସେତେ

ସଫା ରହୁନି । କାନ୍ଥର ଝୋଟି ଝଟକି ଉଠୁନାହିଁ । ଆଚାର ସେତେ ସୁଆଦିଆ ହେଉନାହିଁ । ବଡ଼ି ଭଲ ଫୁଲୁ ନାହିଁ, ଉଖୁଡ଼ା ଫିକା ଲାଗୁଛି । କ୍ଷୀଣ ଦୃଷ୍ଟିଶକ୍ତି ସତ୍ତ୍ୱେ ସେ ଦେଖିପାରନ୍ତି ଯେ ସଜନା ଗଛସାରା ସଁବାଳୁଆଗୁଡ଼ାକ ସୂତାରେ ଝୁଲୁଛନ୍ତି । ପତ୍ର ଖାଇ ଖାଇ ଗଛ ନିର୍ଜୀବ ହୋଇଯାଇଛି । ସେଆଡ଼କୁ କାହାରି ନିଘା ନାହିଁ ।

ପଖାଳ ସାଙ୍ଗକୁ ତାଙ୍କ ହାତର ସଜନାଶାଗ ଖରଡ଼ା ଖାଇବା ପାଇଁ ଯିଏ ଭଲ ପାଉଥିଲା, ସେ ପୁଅ ଆଉ ନାହିଁ । ବାଁ ହାତରେ ଧୂଳି ଝାଡ଼ିଦେଇ ପିଣ୍ଡାରେ ବସିପଡୁଥିଲା, ଆସନଟିଏ ପକା ହେବା ପୂର୍ବରୁ । ଖାଉ ଖାଉ ବାଇଗଣ ଦି'ଟା ଭାଜିଦିଅ, ବଡ଼ି ଚୂରିଦିଅ ବୋଲି କହୁଥିଲା । ଏତେ ଲୋକ ଆତଯାତ ହେଉଥାଆନ୍ତି ଅଥଚ କାହାରିକୁ ସେ ଡାକେ ନାହିଁ । କେବଳ ସେହି ବୋଉକୁ ଡାକ । ରୋଷେଇ ଘର ଖଞ୍ଜାରୁ ଖାଇବା ପିଣ୍ଡା ଯାଏଁ ସେ ଦଶଥର ଧାଁ ଦଉଡ଼ କରୁଥିବେ । ମଝିରେ ମଝିରେ ଡାକ ଦେଉଥିବ– ବୋଉ, ସେଆଡ଼େ କ'ଣ କରୁଛ ? ମୋ ପାଖରେ ଆସି ବସ । ମୋ' ହାତରେ ଟାଇମ୍ ନାହିଁ ।

ସରକାରୀ ବଡ଼ ଅଫିସର୍ ସେ । ତା' ହାତରେ କେତେବେଳେ ହେଲେ ଟାଇମ୍ ନଥାଏ । ଯିବା ଆସିବା ବାଟରେ ଝଡ଼ ଭଳିଆ ସେ ଅଚାନକ ପଶି ଆସେ । ସାଙ୍ଗରେ ପଞ୍ଚାଏ ଲୋକ ଥାଆନ୍ତି । ସେମାନେ ଦାଣ୍ଡ ଘରେ ଚା' ପିଉଥିବା ବେଳେ 'ବୋଉ' 'ବୋଉ' ଡାକଦେଇ ସେ ଭିତରକୁ ପଶିଆସେ । ପଖାଳ ଖାଇବା ସମୟ ମଧ୍ୟରେ ଯାହାକିଛି ସୁଖ ଦୁଃଖ, ହାନି ଲାଭର କଥାବାର୍ତ୍ତା । ଭାତ ସରି ଆସୁଥିବା କଂସାକୁ ଚାହିଁଦେଇ ସେ କଥା ଅଧାରୁ ରୋଷେଇ ଘରକୁ ଉଠିଯାଆନ୍ତି । ଭାତ ଧରି ଆସିବା ବେଳକୁ ସେ ରୁମାଲ୍‌ରେ ମୁହଁ ପୋଛୁ ପୋଛୁ 'ବୋଉ ଯାଉଛି' କହି ଦାଣ୍ଡଘରକୁ ମୁହାଁଉଥାଏ ।

ମୃତ୍ୟୁ ତା' ପାଇଁ ଅଚାନକ ହିଁ ଆସିଥିଲା, ଚାକିରିକାଳ ସରିବା ପରେ ପରେ । ଦାଣ୍ଡଦୁଆରେ ପଲଙ୍କ ପକାଇ ତାହାର ନିର୍ଜୀବ ଦେହକୁ ଶୁଆଇ ଦେଇଥିଲେ । ଶହ ଶହ ଲୋକଙ୍କ ଗହଳି । କେତେ ମୁଣ୍ଡିଆ, ଫୁଲମାଳ, ହରିବୋଲ, ଫଟଉଠା । ସବୁ ବନ୍ଧୁବାନ୍ଧବ ଖବର ପାଇ ଧାଇଁ ଆସିଥିଲେ । ଚାରିପଟେ ଘେରି ଲୁହ ପୋଛୁଥିଲେ । ଅଥଚ ସେ ନିଜେ- ସୁନିବୋଉ ? ଦୋ'ମହଲା ଛାତ ଉପରେ ଏକୁଟିଆ ବସି ରହିଥିଲେ । ବିବଶ ପାଦରେ ସିଡ଼ିଦେଇ ତଳକୁ ଓହ୍ଲାଇ ଆସିବା ପାଇଁ ଭରସା ହେଉ ନଥିଲା । ମନେ ହେଉଥିଲା ଯେଉଁଠି ପାଦ ଥାପିବେ, ସେଠାରୁ ମାଟି ଧସିଯିବ । ମେଦିନୀ କମ୍ପି ଉଠିବ । ତାଙ୍କ ସାହାରା ହୋଇ ଯେ ଏତେବର୍ଷ ଧରି ଘରର ମଝିଖୁଣ୍ଟ ଭଳି ଠିଆ ହୋଇଥିଲା, ତାକୁ ଭଗବାନ ନିର୍ଦ୍ଦୟ ଭଳି ଛଡ଼ାଇ ନେଇଛନ୍ତି । ଏ ଦୁଃଖ ତାଙ୍କର କେହି ବୁଝିପାରିଲେ ନାହିଁ; ଜଣେ ହେଲେ କେହି ଉପରକୁ ଉଠିଆସି ତାଙ୍କ ହାତଧରି ତଳକୁ ଓହ୍ଲାଇ ନେଲେ ନାହିଁ । ଶବ ଉଠିଗଲା । ଅଥଚ ସେ ତାଙ୍କର ବଡ଼ପୁଅ । ସାତଜଣ ପିଲାଙ୍କ ମଧ୍ୟରେ ସବୁଠାରୁ ବେଶି ପ୍ରିୟ ।

କିନ୍ତୁ ସେ ହିଁ ଦିନେ ତାଙ୍କ ପାଇଁ ସବୁଠାରୁ ଅପ୍ରିୟ ମଣିଷ ଥିଲା । ତା' ନାଆଁ ଶୁଣିଲେ ସେ ବିରକ୍ତିରେ ମୁହଁ କୁହୁଳାଇ ଦେଉଥିଲେ । ଫୁଲଝରି ବାଣ ଭଳି କଥା ଛିଞ୍ଚାଡ଼ି ଦେଉଥିଲେ ।

ସମସ୍ତେ ଗୋଟି ଗୋଟି ହୋଇ ତାଙ୍କୁ ଗ୍ରହଣ କରିନେବା ପାଇଁ ଚେଷ୍ଟା କରୁଥିଲେ । ଚେଷ୍ଟାକରି ସଫଳ ହେଉଥିଲେ । ସମୟର ବିରୋଧ ନ କରି ତାକୁ ଗ୍ରହଣ କରିନେବା ଉଚିତ ବୋଲି ହୁଏତ ସେମାନେ ସମସ୍ତେ ଏକସଂଗରେ ଅନୁଭବ କରୁଥିଲେ ।

ସାନମାନଙ୍କଠାରୁ ହିଁ ଆରମ୍ଭ ହୋଇଥିଲା । ବଡ଼ମାନଙ୍କ ନିର୍ଦ୍ଦେଶରେ ସେମାନେ ତାଙ୍କ ନିକଟକୁ ଆସିଥିଲେ । ସଙ୍କୁଚିତ ସ୍ୱରରେ ବୋଉ ଡାକ– ମୁଁ କନି, କନକ । ସେ ଶୀରୁ- ଭଲ ନାଆଁ ଶ୍ରୀନାଥ । ଆମ ଭିତରେ ସବୁଠୁଁ ସାନ ।

ସେହି ଚେଷ୍ଟା ସର୍ବବ୍ୟାପୀ ଥିଲା । ଚାକର-ପୋଇଲୀଙ୍କଠାରୁ ଗୁମାସ୍ତା ହଳିଆଙ୍କ ଯାଏଁ ଗୋଟି ଗୋଟି କରି ସାଆନ୍ତାଣି ଡାକିବାକୁ ଆରମ୍ଭ କରିଥିଲେ, ହେଉ ପଛେ କୁଣ୍ଠିତ କଣ୍ଠରେ । କରଛଡ଼ା ଦେଇ ଦେଇ ଅବଶେଷରେ ବଡ଼ମାନେ 'ବୋଉ' ଡାକିଥିଲେ, ବାପାଙ୍କ ହୁକୁମରେ; ଯେମିତି ହୁକୁମ ମାନି ବାହା ହୋଇଯାଇଥିବା ଝିଅ ଦୁଇଜଣ ଶାଶୁଘରୁ ଆସିଥିଲେ, ବାପା ବାହାଘର ଉତ୍ସବରେ ଯୋଗ ଦେବା ପାଇଁ । ଦେଖିଥିଲେ ବୋଉର ବର୍ଷକିଆ ଯାଉ-ନଯାଉଣୁ ବାପା କେମିତି ଦୋଳମୁକୁଟ ପିନ୍ଧି, ପାଲିଙ୍କିରେ ବସି ପଟୁଆର ଗହଣରେ ବାହା ହେବା ପାଇଁ ଯାଇଥିଲେ । ନୂଆବୋଉ ଧରି କେମିତି ଗଡ଼ଜିତା ଗର୍ବରେ ଘରକୁ ଫେରିଥିଲେ– ପୃଥ୍ୱୀରାଜ ଅବା ପୁରୁଷୋତ୍ତମର ଅହଂଭାବରେ ସ୍ଫୀତ ହୋଇ ।

ପୋଇଲୀ ଯେମି ଆଣି ପିଲାଟିଏ କୋଳରେ ବସେଇଥିଲା– ଇଏ ତମର ବଡ଼ ନାତି, ତପନ କୁମାର । ସୁନିଦେଈଙ୍କ ପୁଅ ।

ଓଢ଼ଣା ତଳୁ ସେ ସବୁକିଛି ଶୁଣି ପାରୁଥିଲେ, ବୁଝିପାରୁଥିଲେ- ଉପସ୍ଥିତ ମହିଳାମାନଙ୍କର ମୁହଁରେ ଲୁଗାଦିଆ ଚାପା ହସ, ମୁହଁମୋଡ଼ା ଏବଂ ତପୁର ଖନେଇ ଖନେଇ ଡାକ- ଆ...ଈ... ।

ସବୁ ଯେମିତି ଏକ ହାଲୁକା ହାସ୍ୟାସ୍ପଦ ବ୍ୟାପାରରେ ପରିଣତ ହୋଇଯାଉଥିଲା, ତାଙ୍କର ଉପସ୍ଥିତି ସମେତ ।

ସତାଚାଳିଶ ବର୍ଷ ବୟସରେ ଅଜା କେତେ ଜାକଜମକରେ ବାହା ହେବା ପାଇଁ ଯାଇଥିଲେ, ଅଥଚ ସତେଇଶ ବର୍ଷର ନାତି ବାହା ହେବା ବେଳେ ଅଡ଼ି ବସିଲା, ବାଣ ଫୁଟିବ ନାହିଁ । ବାଜା ବାଜିବ ନାହିଁ । ରାସ୍ତାରେ ପ୍ରସେସନ୍ ହେବ ନାହିଁ ।

ଅତୀତର ନିର୍ଲଜ ପ୍ରତାରଣା ଓ ବର୍ତ୍ତମାନର ସ୍ଥିତିହୀନ ଆଦର୍ଶବୋଧକୁ ତୁଳନା କରି ଏକ ଆନ୍ଦୋଳିତ ହସ ହସିଲେ ସୁନିବୋଉ ।

ବିବାହ ସୁନିବୋଉଙ୍କ ପାଇଁ ବ୍ୟବସାୟଭିତ୍ତିକ ହିଁ ଥିଲା ।

ପରଘରେ ଧାନକୁଟି ପରିବାର ଚଳାଉଥିବା ବିଧବା ଶ୍ୱାସରୋଗୀ ବୋଉ, ତିନୋଟି ଛୋଟ ଛୋଟ ଭାଇଭଉଣୀ ଏବଂ ଅଠର ପୂରି ଉଣେଇଶ ବର୍ଷରେ ପାଦ ଦେଉଥିଲେ ସେ ନିଜେ, ହାରାମଣି... । ସମସ୍ତଙ୍କର ସ୍ୱଚ୍ଛଳ ଜୀବନ-ଯାତ୍ରା ପାଇଁ ତାକୁ ଯୂପକାଠରେ ବେକ ରଖିବା ପାଇଁ ହେବ, ସ୍ୱଇଚ୍ଛାରେ । ବିନା ପ୍ରତିବାଦରେ ।

ଚନ୍ଦ୍ରପୁରର ଖୋଦ୍ ଜମିଦାରଙ୍କ ସହିତ ଆସିଥିବା ବିବାହ ପ୍ରସ୍ତାବ ବିଷୟରେ ବୋଉ ପିଠି ଆଉଁଷି କହୁଥିବା ସମୟରେ ଚେଷ୍ଟା କଲେ ମଧ କଣ୍ଠର ପ୍ରସନ୍ନଭାବକୁ ସେ ଲୁଚାଇ ପାରୁ ନଥିଲେ ଏବଂ ହାରାମଣି ନିଜକୁ ସେତେବେଳେ ଚାଳ ଉପରକୁ ଉଠିବା ପାଇଁ ଆଶ୍ରା ଖୋଜୁଥିବା କଖାରୁ ଡଙ୍କ ଛଡ଼ା ଅନ୍ୟ କିଛି ନୁହେଁ ବୋଲି ମନେକରିଥିଲା । ସାହାରାଟିଏ ନହେଲେ ଉଠି ହେବ ନାହିଁ । ବଂଚି ହେବ ନାହିଁ ।

ଆହା ! ରୂପ, ଯୌବନ ଥାଇ ମଧ ଏମିତି କାକୁସ୍ଥ ଜୀବନ ଥିଲା ଯେ ମନେ ହେଉଥିଲା ଅନ୍ୟର ଫୁଙ୍କା ପବନ ଟିକେ ନ ହେଲେ ସତେ ଯେମିତି ଶ୍ୱାସ ମଧ ନେଇ ହେବ ନାହିଁ ।

ବାହାଘରକୁ ସମସ୍ତେ ଆସିଥିଲେ, ଏକା ନୀରୋଦକୁ ଛାଡ଼ି । ବାପା ଲୋକ ପଠାଇବା ପରେ ମଧ୍ୟ ନୁହେଁ । ନୀରୋଦ ବୋର୍ଡିଂରେ ରହି କଲିକତା କଲେଜରେ ପାଠ ପଢୁଥିବା ବଡ଼ପୁଅ ।

ବାପର ଜିଦ୍‌କୁ ପୁଅର ଜିଦ୍ । ବାପ ବାଣ-ରୋଷଣୀ ପଟୁଆରରେ ବାହାହେବାକୁ ଯିବା ପୁଅ ଦେଖିଲା ନାହିଁ । ନୂଆ ମା'କୁ ଦାଣ୍ଡରୁ ପାଛୋଟି ଆଣିବା ପାଇଁ ପୁଅ ଠିଆ ହେଲା ନାହିଁ । କଲେଜ ବନ୍ଦ ହୋଇ ଛୁଟି ହେଲା, ନୀରୋଦ ଗାଁକୁ ଆସିଲା ନାହିଁ ।

ବାପାଙ୍କ ପାଟିରେ ତିନିଖଣ୍ଡା ଦୁଲୁକି ଉଠିଲା । ହୁକୁମ ଦେଲେ, ସେ ଆଉ ଗାଁ ଦୁଆର ମାଡ଼ିବନି । ପୁଅ ପାଖରେ ସେ ହୁକୁମ ପହଞ୍ଚିଲା କି ନାହିଁ କେଜାଣି !

ଅଲଗା ପିଲାଙ୍କ ବୋଉ ଡାକ ନୀରୋଦ ପ୍ରତି ଉଦ୍‌ଜାତ ଅସୂୟାକୁ ବଢ଼େଇ ଚାଲିଥିଲା । ତାଙ୍କୁ ହିଁ ତ ମାଧ୍ୟମ କରି ପୁଅ-ବାପଙ୍କ ମଧ୍ୟରେ ଭିଡ଼ା-ଓଟାରା ଚାଲିଛି । ତେଣୁ ଅପମାନର ଠିଆ ଚଟକଣା ସିଧାସଳଖ ଆସି ତାଙ୍କରି ଗାଲରେ ବସିବା ଭଳି ମନେ ହେଉଥିଲା । ଅନ୍ୟମାନଙ୍କର ଆପଣାର ଭାବରେ ଯେ ସେ ଉଲ୍ଲସିତ ହେଉଥିଲେ, ତା' ନୁହେଁ, କାରଣ ସେ ବି ତ ସବୁକୁ ଆପଣାର କରିନେବା ପାଇଁ ଯୁଝି ଚାଲିଥିଲେ- ମନ, ବିବେକର ହତିଆର ଧରି, ସ୍ୱାମୀଙ୍କ ଆଦରର 'ସୁନିବୋଉ' ଡାକ ଶୁଣିବା ସତ୍ତ୍ୱେ ।

ନୀରୋଦ ଚିଠି ଦେଇଥିଲା କନି ପାଖକୁ । ଶୀରୁ ପାଖକୁ ଚାରିପୃଷ୍ଠାର ଏଡ଼େ ଲମ୍ବା ଚିଠି । କଲେଜ କଥା । ପଢ଼ା କଥା । କେତେ ଉପଦେଶ- ଦେହପା'ର ଯତ୍ନ ନେଉଥିବ । ମନଦେଇ ପାଠ ପଢୁଥିବ । ଅନ୍ଧାରରେ ବାଡ଼ିପଟକୁ ଯିବ ନାହିଁ । ବଡ଼ମାନଙ୍କ କଥା ମାନୁଥିବ ଏବଂ ସବାଶେଷକୁ ଲେଖିଥିଲା- ବୋଉର ସମାଧି ନିକଟରେ ଦୁଇଓଳି ମୁଣ୍ଡିଆ ମାରୁଥିବ । ସନ୍ଧ୍ୟାଦୀପ ଦେଉଥିବ ।.... ସେହି ବୋଉର ସ୍ମୃତି ନିକଟରେ ହିଁ ନୀରୋଦ ଅଟକି ଯାଇଥିଲା । ତା'ପରେ ଖାଲି ବୋଉ କଥା । ସତେ ଯେପରି ସେ ମରିନାହିଁ, ବଂଚିରହି ଘରେ ଆତଯାତ ହେଉଛି । ଅଥଚ ତାଙ୍କ ବିଷୟରେ ଧାଡ଼ିଟିଏ ମଧ୍ୟ ଲେଖା ନଥିଲା– ନୂଆବୋଉ କେମିତି ମଣିଷ... ତାଙ୍କୁ ପ୍ରଣାମ ଦବୁ... । ପୋଇଲୀ ପରିବାରୀଙ୍କ ବିଷୟରେ ପଦେ ପଦେ ଲେଖାଥିଲା, କିନ୍ତୁ ସେ ନିଜେ ? ଜୀଅନ୍ତା ମଣିଷଟାର ସଚଳ ଉପସ୍ଥିତି ମଲାମଣିଷଟାର ସ୍ମୃତି ତଳେ ଟୋକେଇଏ ପଥରଗଦା ତଳ ଭଳି ପୋତିହୋଇ ପଡ଼ିଥିଲା । ଘୃଣା, ରାଗ, ବିଦ୍ୱେଷରେ ହାରାମଣିଙ୍କ ନାକ ଫୁଲି ଫୁଲି ଉଠିଥିଲା ।

X X X X X X X

ପଟାସ୍-ପଟାସ୍- ସାଇଁ ସାଇଁ... ଇଏ କି ଶବ୍ଦ ? ଦାଣ୍ଡରେ କ'ଣ ହେଉଛି ?.... ବୋଉଲୋ ମରିଗଲି- ମରିଗଲି... ମାଫ୍ କର ହ-ଜୁ-ର୍ । ସତେ ଯେମିତି ମଣିଷ ନୁହେଁ, ବୋଦାଟାଏ କି ମଇଁଷି ପଟେ ରଡ଼ିଛାଡୁଛି । ଘର ଭିତରେ ସମସ୍ତଙ୍କର ଉଚ୍ଛୁଳି ଉଠୁଥିବା କଣ୍ଠସ୍ୱର, ପାଦର ଚଞ୍ଚଳ ଗତି ଘଡ଼ିକେ ଥମିଗଲା । ଇଏ କ'ଣ ? – ଜାଣ ନାହିଁ ? ଏ ପରା ଚାବୁକ୍‌ର ଶବ୍ଦ । କଚେରୀ ଘର ସାମ୍ନାରେ ବଡ଼ ପଣସ ଗଛ ? ତା'ର ଚାରିପଟେ ଗୋଲିଆ ଚଉତରା- ଦେଖିନା ? ସେଥିରେ ଦୋଷ କରିଥିବା ପ୍ରଜାଙ୍କୁ ବାନ୍ଧି ମାଡ଼ ଦିଆଯାଏ ପରା ।

ଭୟ-ତ୍ରସ୍ତ ଅସହଣୀ ଆତଙ୍କକୁ ଛାତି ଭିତରେ ଚାପିରଖି ଉପରର ହାଲୁକା ଭାବକୁ ପ୍ରକାଶ କରିବାର ଆକୁଳ ପ୍ରଚେଷ୍ଟା-ଚାକରଙ୍କଠାରୁ ଆରମ୍ଭ କରି ସାନପୁଅ ଶୀରୁ ପର୍ଯ୍ୟନ୍ତ ।

ଇଏ ମଧ୍ୟ ସାମନ୍ତ ସ୍ୱାମୀଙ୍କର ଅଖଣ୍ଡ ପ୍ରତିପତ୍ତିର ଅନ୍ୟ ଏକ ନମୂନା ।

ମା' ହାର ଲୋ, ସହି ସମ୍ଭାଳି କଥା କହୁଥିବୁ, କାମ କରୁଥିବୁ ଯେମିତି ଜ୍ୱାଇଁ ବାବୁଙ୍କର ରୋଷ ନ ହୁଏ ।

ବୋଉଙ୍କର ଜନନୀ-ସମୁଚିତ ଉପଦେଶ ଶୁଣି ସେହି ମୁହୂର୍ତ୍ତ ବା ପରବର୍ତ୍ତୀ ସମୟରେ ହାରାମଣିଙ୍କର କୌଣସି ବିଶେଷ ପର୍ଯ୍ୟାୟର ମାନସିକ ପ୍ରତିକ୍ରିୟା ହୋଇ ନଥିଲା । ପ୍ରୌଢ଼ ବୟସରେ ପଦାର୍ପଣ କରି ମଧ୍ୟ ଜମିଦାରଙ୍କର ଯୌବନୋଦ୍ଦୀପକ ଚଞ୍ଚଳତା ଭରି ରହିଥିବାର ପରିକଳ୍ପିତ ଛବି ଆଖି ଆଗରେ ଝଲସି ଉଠି ନଥିଲା । ତାଙ୍କୁ ରୋମାଞ୍ଚିତ ନୁହେଁ, ସତର୍କ ରହିବା ପାଇଁ ପଡ଼ିବ, ଏହା ହିଁ ବୋଉ ଚେତେଇ ଦେଇଥିଲା । କାରଣ ତାଙ୍କ ପାଇଁ ସ୍ୱାମୀଙ୍କର ପ୍ରେମ ନୁହେଁ, ଅନୁକମ୍ପା ହିଁ ଆବଶ୍ୟକ ।

କେତେବର୍ଷ ଆଗରୁ ବାହା ହୋଇ ଘରସଂସାର କରିସାରିଥିବା ଓ ପିଲାଛୁଆ ଧରି ବାପ ଘରକୁ ବୁଲି ଆସୁଥିବା ସାଙ୍ଗ ଝିଅମାନଙ୍କ ସହିତ ପୁରୁଣା ନିବିଡ଼ତା କ୍ରମେ ଶିଥିଳ ହୋଇଆସୁଥିଲା । ତାଙ୍କ ପରିବାର ସମଗ୍ର ଗାଁରେ ଏକ ଦୟାର ପାତ୍ର ହୋଇ ରହିଥିଲେ । ଏତେ ରୂପ-ଯୌବନ ଖୁନ୍ଦି ହୋଇଥିବା ଝିଅଟି ବାହା ହୋଇପାରୁନାହିଁ, ଏହା ଯେମିତି ତାଙ୍କ ପରିବାରର ସବୁଠାରୁ ବଡ଼ ଦୁର୍ବଳତା ଥିଲା-ଦୁଇଦିନରେ ଓଲିଏ ଚୁଲି ଜଳିବା ଅପେକ୍ଷା ମଧ୍ୟ ।

ଗାଁର ମକଦ୍ଦମଙ୍କ ଘର ଭିତରେ ଖଞ୍ଜାରେ ରାମାୟଣ ପଢ଼ା ହୁଏ । ପାଳିକରି ଝିଅମାନେ ପଢ଼ନ୍ତି । ହାରାମଣିର ସୁଲଳିତ କଣ୍ଠ-ଛନ୍ଦ ଧରି ପଢ଼ିପାରେ । ତା'ର ଚାହିଦା ବେଶି ।

ଚାରିପଟେ ବୁଢ଼ୀମାନେ ଘେରି ବସିଥାଆନ୍ତି । ଆହା ଚୁ-ଚୁରେ ବାତାବରଣ ଶୋକାକୁଳ ହୋଇଉଠେ । ହେ ଲତାଗିରି, ହେ ବନଗିରି, ମୋ କାନ୍ତ ଗଲେ ମୃଗମାରି... । ହାରାମଣି କ୍ଷଣକ ପାଇଁ ବିଦଗ୍ଧ ପଠନରୁ ସଚେତନ ହୋଇଉଠେ । ଚାରିପଟେ ଅନେକ ଶୋକାକୁଳ ଆଖି ତାକୁ ହିଁ ଚାହିଁ ବସିଛନ୍ତି । ସେଥିରୁ ଦୟା ଝରୁଛି । ସମବେଦନା ଝରୁଛି । ସେ ସେଥିରେ ଅଣନିଃଶ୍ୱାସୀ ହୋଇ ପୋତି ହୋଇଯାଉଛି । ଚାରିପଟରେ ତା'ର ଅସୁରୁଣୀମାନେ ଘେରି ବସିଛନ୍ତି । ସେହି ଘେରରୁ ଉଦ୍ଧାର ପାଇବାର ଉପାୟ ନାହିଁ । ସେ ଅଶୋକବନର ବନ୍ଦିନୀ ସୀତା—ଗାଁର ଅଠର ବର୍ଷର ଦରବୁଢ଼ୀ ବାଡୁଅ ଝିଅ ହାରାମଣି ।

ତୁମ ଭିତରୁ କେହି ଚନ୍ଦ୍ରପୁର ଦାଣ୍ଡ ମାଡ଼ିବ ନାହିଁ । ଝିଅକୁ ଦେଖିବାକୁ ମନ କଲେ ଝିଅ ତୁମ ପାଖକୁ ଆସିବ ପଛକେ— ଟଙ୍କା ଚାଉଳ, ଲୁଗାପଟା ସବୁ ଦରକାର ମୁତାବକ ପଠାହେବ । ଜରୁରୀ ଦରକାର ହେଲେ ଲୋକ ପଠେଇବ । ବାତିନି ପଠେଇବ । ନିଜେ ଯିବ ନାହିଁ- ଖବର୍‌ଦାର ।

ଓଢ଼ଣା ତଳୁ ବୋଉଙ୍କର ଶିଠୁଆ ମୁହଁ ଶେତା ହୋଇଯାଉଥିଲା । ଶଙ୍କି ଯାଉଥିବା ସାନଭାଇ ଦୁଇଟା ତାଙ୍କ ପଣତ କାନିକୁ ନିଜ ଅଜାଣତରେ ଜାବୋଡ଼ି ଧରି ପକାଇଥିଲେ । ଓଳିତଳ ପିଣ୍ଡାରେ ଶଙ୍କି ବିରାଡ଼ିର ଦେହ ଚଟା, ଚାଳ ଉପରେ କା- କା ରଡୁଥିବା କୁଆର ରାବ, ନଈକୂଳରୁ ଲହରେଇ ଭାସିଆସୁଥିବା ଶୀତଳ ପବନ.... ଆମ୍ବ ପତ୍ରର ଖଡ଼ଖଡ଼ ଶବ୍ଦ କ୍ଷଣକରେ ଥମିଯାଇଥିଲା ।

ଡାହାଣ ହାତର ବିଶି ଆଙ୍ଗୁଠି ଉଁଚେଇ ଯେ ଖବରଦାର୍ କରୁଥିଲେ ସେ ଜମିଦାର ନୁହଁନ୍ତି, ତାଙ୍କ ସିରେସ୍ତାଦାର । ଲେଖାଯୋଖାରେ ମାମୁ ହେଲେ ମଧ୍ୟ ନମକଖିଆ ଗୋଲାମ । ହାରାମଣି ଯେମିତି ବାହା ହୋଇ ସ୍ୱାମୀ ଘରକୁ ଯାଇ ନାହିଁ, ଦୈତ୍ୟେଟାଏ ତାକୁ ଝିଙ୍କି ନେଇ ରଥରେ ବସେଇ ଅପହରଣ କରିଛି । ସିରେସ୍ତାଦାରଙ୍କ ତରୁଆଲୀ ନିଶ ସେହି ଦାନବୀୟ ଉପସ୍ଥିତିକୁ ଆହୁରି ଭୟଙ୍କର କରୁଥିଲା ।

ବୋଉ ଉଦ୍‌ଗତ ଅଶ୍ରୁକୁ ପଣତ କାନିରେ ପୋଛି ପକାଇ ପାଟି ଭିତରେ ବିଣ୍ଡା ମାଡ଼ି ଦେଇଥିଲେ, କା'ଳେ କୋହଗୁଡ଼ା ଶବ୍ଦ ହୋଇ ପେଟ ଭିତରୁ ପଦାକୁ ନିଗିଡ଼ି ପଡ଼ିବ ।

ସେହି ଦମ୍ଭ, ପରାକ୍ରମ ହାରାମଣିଙ୍କ ଦେଖାନ୍ତରେ କେତେଦିନ ତିଷ୍ଠି ରହିଥିଲା ଅବା ! ଏଡ଼େ ପରାକ୍ରମୀ ମଣିଷଟା କେତେ ଅସହାୟ ହୋଇ ପଡ଼ିରହିଥିଲା । ଦିନରାତି ସେହି ଏକା ବିଛଣାରେ । ଦଶଖଣ୍ଡ ଗାଁକୁ କମ୍ପେଇ ଦେଉଥିବା ସିଂହ ଗର୍ଜନ, ଠେଙ୍ଗାଉଁଚା ହୁକୁମ ଏକ କ୍ଷୀଣ ଅସ୍ପଷ୍ଟ ଶବ୍ଦରେ ପରିଣତ ହୋଇଯାଇଥିଲା ! ଥରିଲା ଓଠରେ ଖନେଇ କଥା କିଛି ବୁଝିହେଉ ନଥିଲା । ହାତ ଗୋଡ଼ ଧୀରେ ଧୀରେ ଅଚଳ ହୋଇଆସୁଥିଲା । ପାଟିରୁ ପଇଡ଼ ପାଣି ତଣ୍ଟି ଭିତରକୁ ନ ଯାଇ ନିଗିଡ଼ି ପଡୁଥିଲା । ହାରାମଣି ଗୋଡ଼ ପାଖରେ ବସି ରହିଥିଲେ ଅଖିଆ, ଅପିଆ । ସମସ୍ତ ଆଶା-ଭରସା ଗୋଟାଏ ଗୋଟାଏ ଦୀର୍ଘ ନିଶ୍ୱାସର ଧକ୍‌କାରେ ଶୁଖିଲା ପତ୍ର ଭଳି ଝଡ଼ି ପଡୁଥିଲେ, ନିଃଶବ୍ଦରେ ।

ହାରାମଣି ଝରକା ବାଟେ ଚାହିଁ ଦେଖିଲେ, ଦୂରରୁ କେହି ଜଣେ ଆସୁଛି । ବାଙ୍କ ରାସ୍ତାରେ ସେ କ୍ଷଣକ ପାଇଁ ଲୁଚିଗଲା, ତା'ପରେ ପୁଣି ଦେଖାଗଲା । ହାରାମଣି ଚାହିଁ ରହିଲେ । ସେ ଫାଟକ ଭିତରେ ପଶିଲା । ଦୀର୍ଘ, ସୌମ୍ୟ ରୂପ । ସ୍ଥିର, ଗଭୀର ପଦକ୍ଷେପର ଚାଲି । ଚାହିଁଦେଲେ ହିଁ ଆଖି ଲାଖି ରହିଯିବ ।.... ହାରାମଣିଙ୍କ ଦୃଷ୍ଟି ନିଷ୍ପଲକ । ଦେହରେ ସୂଚୀବିଦ୍ଧ କମ୍ପନ । କିଏ ଏ ? ନୀରୋଦ ? ଜମିଦାରଙ୍କ ବଡ଼ପୁଅ ?.... ସ୍ୱାମୀଙ୍କର ଅବିକଳ ଯୁବକୀୟ ପ୍ରତିରୂପ ।.... ହାରାମଣି ସ୍ତବଧ ହୋଇ ଚାହିଁ ରହିଥିଲେ । ହୃଦୟରେ ଉଦ୍‌ଗାରିତ କ୍ଷୋଭ–ଚାହିଁଥିଲେ ସ୍ୱାମୀ ନିଜ ସ୍ଥାନରେ ନୀରୋଦକୁ ଠିଆ କରାଇ ପାରିଥାଆନ୍ତେ । ସେତେବେଳେ ଏହି କଥା ଭାବିଥିଲେ ହାରାମଣି, ସ୍ୱାମୀଙ୍କ ମୃତ୍ୟୁଶଯ୍ୟା ସମେତ ଅତୀତକୁ ପଛ କରି ଛିଡ଼ାହୋଇ–ସେହି ବିଦଗ୍ଧ ହାହାକାରମୟ ସମୟ ମଧ୍ୟରେ ଏବଂ ନିଜ ଭାବନାରେ ନିଜେ ହିଁ ଚମ୍‌କି ଉଠିଥିଲେ, ଜଳନ୍ତା ନିଆଁମୁଣ୍ଡାଟାଏ ପାଦତଳେ ଅକସ୍ମାତ୍ ମାଡ଼ି ଦେବା ଭଳି ।

ନୀରୋଦ ଆସି ପହଞ୍ଚିବା ପରେ ହିଁ ଜମିଦାର ଶେଷ ନିଃଶ୍ୱାସ ଛାଡ଼ିଥିଲେ, ସନ୍ଧ୍ୟା ହେବାର ଅବ୍ୟବହିତ ପୂର୍ବରୁ ଏବଂ ଅବଶେଷ ଆଶା ମଉଳି ଯିବା ପରେ ହାରାମଣି ନିଜର ସ୍ଥୂଳ ଚେତନା ହରାଇ ବସିଥିଲେ–ପୁଞ୍ଜୀଭୂତ ହତାଶାର ନିର୍ମମ ଉତ୍ପୀଡ଼ନରେ ।

ସେହି ଶୋକୋଚ୍ଛ୍ୱାସ କ୍ଷଣରେ ଦିନେ ସୁନି ତାଙ୍କୁ ଉପର ମହଲାକୁ ଡାକି ନେଇଥିଲା, ବନ୍ଧୁବାନ୍ଧବମାନେ ଶୁଦ୍ଧିଘର ପାଇଁ ଆସି ଜମା ହେବା ପୂର୍ବରୁ ।

ହାରାମଣିଙ୍କ ଅଣ୍ଟାରୁ କଞ୍ଚିଗୋଛା କାଢ଼ି ନେଇ ସୁନି ତାଲା ଖୋଲିଥିଲା । ପ୍ରଥମେ ଘର, ତା'ପରେ ଲୁହା ସିନ୍ଦୁକ । ସିନ୍ଦୁକ ଭିତରେ ବାକ୍ସ । ହାତିଦାନ୍ତର କମକରା ବାକ୍ସ-କଦମ ତୋଳା ଘୋଡ଼ା, ପାଟିମେଲା କୁମ୍ଭୀର, ନର୍ତ୍ତକୀ, ଗଛଲତା, ଫୁଲପତ୍ର... ।

ସୁନି ବାକ୍ସଟିକୁ ଟେକିଆଣି ଖଟ ଉପରେ ରଖିଲା । ତାହାକୁ ଖୋଲି ଦେଖିଲା ଏବଂ ସାରା ମୁହଁରେ ବିଛେଇ ହୋଇ ପ୍ରସନ୍ନ ଭାବଟିଏ ଏମିତି ଆକସ୍ମିକ ଭାବରେ ପ୍ରକଟିତ ହେଲା ଯେ ସେ ତାକୁ ଆବୃତ ରଖିପାରିଲା ନାହିଁ । ଝାଉଁଳି ଯାଇଥିବା ଫୁଲଟା ପୁଣି ସତେଜ ହୋଇ ସତେ କି ପାଖୁଡ଼ା ମେଲେଇ ଧରିଲା ।

ଏତେଦିନ ଧରି ସୁନି ଖାଲି କାନ୍ଦୁଥିଲା, ବାପା ବେମାରୀ ହେବାର ସମ୍ବାଦ ପାଇ ଆସି ପହଞ୍ଚିବା ପରଠାରୁ । ଶବ ଉଠୁଥିବା ବେଳେ କାନ୍ଥରେ ମୁଣ୍ଡପିଟି ଦେଇଥିଲା । ପାଟିକୁ ଦାନା ନେଉ ନଥିଲା, ଦୁଇଦିନ ବିତିଯିବା ପରେ ମଧ୍ୟ ।

ଏମିତି ଦିନେ ହାରାମଣିଙ୍କୁ ଆଉ ଜଣେ ତିନିମହଲା ଉପରକୁ ଡାକି ଆଣିଥିଲେ । ତାଙ୍କ ସହିତ ଗତି ମିଳାଇବା ପାଇଁ ତାଙ୍କୁ ଲସର ପସର ହୋଇ ଧାଇଁବାକୁ ପଡ଼ିଥିଲା । ତୀଖ ସିଢ଼ିର ଉପର ପାହାଚରେ ଥାଇ ଡାକ ଦେଇଥିଲେ– ମୁଣ୍ଡର ଓଢ଼ଣା ଖସେଇ ଦିଅ, ପାଦରେ ଶାଢ଼ି ଛନ୍ଦି ହୋଇ ପଡ଼ିବ ।

ହାତୀଦାନ୍ତର କମକରା ବାକ୍ସଟିକୁ ହାରାମଣିଙ୍କ ହାତରେ ଟେକିଦେଇ କହିଥିଲେ– ଦେଖ, ୟା ଭିତରେ କ'ଣ ଅଛି ।

ହାରାମଣି ସେହି ଓଜନିଆ ବାକ୍ସଟିକୁ ଟେକି ଧରିବା ସହିତ ସ୍ୱାମୀଙ୍କ ସ୍ନେହ, ଅନୁରାଗକୁ ମଧ୍ୟ ସେଦିନ ତଉଲିବା ପାଇଁ ପ୍ରଥମ ପ୍ରୟାସ କରୁଥିଲେ । ଅନ୍ଧକାରରେ ଅଜଗରୀ ଦାବି, ଅସହାୟ ଆତ୍ମ ସମର୍ପଣ ଏବଂ ତଜ୍ଜନିତ ଜମି ଆସୁଥିବା ଅପରିସୀମ ଆକ୍ରୋଶ କିଞ୍ଚିତ ବିଗଳିତ ହେବା ପାଇଁ ଆରମ୍ଭ କରୁଥିଲେ ।

ବାକ୍ସର ଢାଙ୍କୁଣୀ ଖୋଲି ଦେବା କ୍ଷଣି ଝଟକି ଉଠିଥିଲା ସଇସୁନା ଓ ଜଡ଼ଉର ଗହଣା– ଅଳକା, ଚନ୍ଦ୍ରହାର, ଅନନ୍ତ, ବାହୁଟୀ, ସୀତାହାର, କର୍ଣ୍ଣଫୁଲ, ମୋହରମାଳ... ।

– ନିଅ । ପିନ୍ଧ । ଏସବୁ ତମର । ଦର୍ପଣରେ ଦେଖ, ତମକୁ କେମିତି ମାନୁଛି ।

ସ୍ୱାମୀଙ୍କର ଅନାହୂତ ଅନୁରାଗ ସାରା ଦେହକୁ ମଣ୍ଡି ରହିବା ଭଳି ସିନ୍ଦୁକର ଚାବି ଲେନ୍ଥାଟି ମଧ୍ୟ ସେହିଦିନରୁ ହାରାମଣିଙ୍କ ଅଣ୍ଟାରେ ଝୁଲି ରହିଥିଲା ।

ସୁନି କହିଥିଲା– ଏସବୁ ମୋ ପାଖରେ ଥାଉ । ତମେ ପିଲା ମଣିଷ । କାନ୍ଦୁଛ, ବାଉଳି ହେଉଚ । ତମକୁ ଭୁଲେଇ କିଏ କୁଆଡ଼େ ନେଇଯିବ । ପରେ ତମକୁ ଫେରେଇ ଦେବି ।

ଫେରାଇବା ସମୟ ଆଉ ଆସି ନାହିଁ । ସେହିଦିନଠାରୁ ହାରାମଣି ଆଉ ସେହି ଅଳଙ୍କାର ବାକ୍ସଟିକୁ ଦେଖି ନାହାନ୍ତି ।

ତଳଖଞ୍ଜାର କଣିକିଆ କୋଠରୀଟିରେ ତାଙ୍କୁ ରଖା ହୋଇଥିଲା । ତାହାର ଝରକା ସବୁବେଳେ ଆଉଜା ରହୁଥିଲା । ତାଙ୍କ ମୁହଁ ଦେଖିଲେ ଅଶୁଭ ହେବ, ସଧବା ନାରୀର ହାତରୁ ଚୂଡ଼ି ଖସିଯିବ, ସିନ୍ଦୂର ଲିଭିଯିବ ବୋଲି । ହାରାମଣି ସେହି ଅର୍ଦ୍ଧ ଆଲୋକିତ କୋଠରି ମଧ୍ୟରେ ରହି ବେଳୁବେଳ ଦୁର୍ବିସହ ସ୍ଥାଣୁତ୍ୱରେ ଏମିତି ବୁଡ଼ି ଯାଉଥିଲେ ଯେ ନିଜର ଦୀର୍ଘଶ୍ୱାସର ଶବ୍ଦରେ ମଧ୍ୟ ସେ କେବେକେବେ ଚମକି ଉଠୁଥିଲେ । ନିଜର ଓ ନିଜ ପରିବାରର ଅନ୍ଧକାରମୟ ଭବିଷ୍ୟତ କଥା ନେଇ ସେ ଏଡ଼େ ଆଚ୍ଛନ୍ନ ହୋଇପଡ଼ିଥିଲେ ଯେ ସ୍ୱାମୀଙ୍କ ମୃତ୍ୟୁଜନିତ ଶୋକ, ଦୁଃଖ, ବିରହ କିଛି ଆଉ ମନକୁ ସ୍ପର୍ଶ କରୁନଥିଲା । ପୁନଶ୍ଚ ସେହି ଅଭାବ, ଅନାହାରର ଅନନ୍ତ ସଂଘର୍ଷ । ପର ପାଖରେ ହାତ ପାତିବାର ଲଜ୍ଜାମୟ ମୁହୂର୍ତ୍ତ ।

କେବେ କେବେ ଅପରିପକ୍ୱ ଅନ୍ତର ବିଳପି ଉଠୁଥିଲା–ବେଳ ଉଣ୍ଡି କହିଥିଲେ ଜମିଦାର କ'ଣ ତାଙ୍କ ନାଆଁରେ ପାଞ୍ଚମାଣ ଜମି ଲେଖିଦେଇ ନଥାନ୍ତେ ?

ଦରଜା ବାହାରେ ମଣିଷ ସ୍ୱର ଶୁଣିଲେ ହାରାମଣି ଚମକି ପଡୁଥିଲେ । ପୁରୁଷ କଣ୍ଠସ୍ୱର ଶୁଣି ଥରି ଉଠୁଥିଲେ । ସବୁଠାରୁ ଭୟ ଥିଲା ନୀରୋଦକୁ । ଜମିଦାରଙ୍କ ଉତ୍ତରାଧିକାରୀ । ସାରା ଗାଁ ଓ ସମ୍ପତ୍ତିର ଏବଂବିଧ ମାଲିକ । ଏହିମାତ୍ର ଦ୍ୱାର ଖୋଲି ଦେଇ ସେ ପଶି ଆସିବ । ହାତଧରି ଘୋଷାଡ଼ି ନେବ । ଅଚଳ ମୂର୍ତ୍ତିକୁ ଧକ୍‌କା ଦେଇ କହିବ–ଯା, ଏଥର ବାହାରିଯା' । ପଥ ସୁମରି ପିତା ଘର ଯିବୁ ।.... ଆହା ପଦ କହିବା ପାଇଁ କେହି ନାହିଁ । ପ୍ରତିବାଦ କରିବା ତ ଦୂରର କଥା ।

ସତକୁ ସତ ନୀରୋଦ ଦିନେ ସେହି ଅନ୍ଧାରିଆ କୋଠରୀର ଯାଉଁଳି କବାଟକୁ ଠିଆ ମୁକୁଳା କରି ବନ୍ଧ ପାଖରେ ଆସି ଠିଆ ହେଲା । ମେଞ୍ଚାଏ ଆଲୁଅର ଆକସ୍ମିକ ଝଲକରେ ହାରାମଣିଙ୍କ ଆଖି ମୁଦି ହୋଇ ଆସୁଥିଲା । ଛାତି ଭିତରର ଦ୍ରୁତ କମ୍ପନ ମନେ ହେଉଥିଲା ଏହିକ୍ଷଣି ବନ୍ଦ ହୋଇଯିବ, ସବୁଦିନ ପାଇଁ । ନୀରୋଦ କ'ଣ କହୁଛି, ସେ କିଛି ଶୁଣିପାରୁ ନଥିଲେ ।

ଏବଂ ସତକୁ ସତ ନୀରୋଦ ଲଜ୍ଜା-ସଂକୋଚରେ ଜଡ଼ସଡ଼ ହୋଇ ପଣତକାନି ତଳେ ଏତେଦିନ ଯାଏ ଲୁଚି ରହିଥିବା ଲଙ୍ଗଳା ଫୁଙ୍ଗଳା ହାତଟାକୁ ଧରି ତାଙ୍କୁ ନେଇଗଲା ଏକାବେଳକେ ମଝି ଦୁଆରକୁ । ସମସ୍ତଙ୍କର ଆବାକାବା ଚାହାଣୀର ଭାଷା ସେ ବୁଝିପାରୁ ନଥିଲେ । ସାରା ଦେହରୁ ସବୁତକ ରକ୍ତ ନିଗିଡ଼ି ନିଗିଡ଼ି ପାଦତଳର ହିମ ଚଟାଣ ଉପରେ ଜମାଟ ବାନ୍ଧୁଥିଲେ । ହାରାମଣି ପଥର ପାଲଟି ଯାଇଥିଲେ ।

– ବାପାଙ୍କ ଅନ୍ତେ ସବୁ ଦାୟିତ୍ୱ ତମର । ଏ ଘର ଦ୍ୱାର, ପିଲାମାନଙ୍କୁ ତୁମେ ନ ଦେଖିଲେ ଆଉ କିଏ ଦେଖିବ ?

ତମକୁ ଗ୍ରହଣ କରିନେଲି । ଆଜିଠାରୁ । ଏଇ ମୁହୂର୍ତ୍ତରୁ । ତୁମକୁ ଏ ପରିବାରଭୁକ୍ତ କରିଦେଲି– ଆମ ଭିତରୁ ଜଣେ କରି ଠିଆ କରିଦେଲି । ଆସ । ହାତ ଦେଖାଅ । ତୋଳିନିଅ ଆମ ସଂସାରର ଗୁରୁଦାୟିତ୍ୱ ।

ଅଦ୍ଭୁତ ବିଭୋରତାରେ ହାରାମଣି ସମାଚ୍ଛନ୍ନ ହୋଇଉଠିଲେ । ଏତେଦିନ ଧରି ସେ କେବଳ ନିଜ ଭିତରେ ଯୁଝୁଥିଲେ– ବାହାହୋଇ ଆସିବା ପରଠାରୁ । କେତେବେଳେ ଜିତୁଥିଲେ, କେତେବେଳେ ଲହୁଲୁହାଣ ହୋଇ ତଳେ ହାମୁଡ଼େଇ ପଡୁଥିଲେ । ମନେ ହେଉଥିଲା ଆଉ ପାରିବେ ନାହିଁ, ହାରିଯିବେ । ଅଥଚ ଏଇ ମୁହୂର୍ତ୍ତରେ ଯେମିତି ତାଙ୍କର ଶେଷ ସଂଘର୍ଷ ସରିଯାଇଛି । କାରଣ ତାଙ୍କୁ ଗୁଡ଼େଇ ତୁଡ଼େଇ ଏମିତି ବନ୍ଧନରେ ବାନ୍ଧି ଦିଆଯାଇଛି, ଯାହାକୁ କେହି ଖୋଲି ପାରିବେ ନାହିଁ । ସେ ନିଜେ ମଧ ନୁହେଁ ।... ଏହା ସ୍ୱପ୍ନ ନା ସତ ?

ଦୁଆର କଡ଼ର ଚିନିଚମ୍ପା ପାଖୁଡ଼ା ମେଲେଇ କହିଲା– ହଁ ସତ । ଛାତ ଉପରର ଘୁମୁରା ପାରାମାନେ ମୁଣ୍ଡ ଟୁଙ୍ଗାରି କହିଲେ– ଏ ସତ । ଏ ସତ ।

ହାରାମଣି ମୁଣ୍ଡର ନୁଖୁରା କେଶ ସଜାଡ଼ି ଦେଲେ । ଖସି ପଡ଼ିଥିବା ଓଢ଼ଣା ଟାଣିଦେଲେ । ପତାତୋଳି ନୀରୋଦକୁ ସିଧା ଆଖିରେ ଚାହିଁଲେ । କଠୋରତାର ମିଛ ଖୋଳପା ଭିତରୁ ସତ ମଣିଷଟା ବାହାରି ଆସୁଥିଲା । ସେ ଘରେ ପାଦ ଦେବା ଦିନରୁ ନୀରୋଦ ଗାଁକୁ ଆସୁନାହିଁ, ଏହି ବିବର୍ଦ୍ଧିତ ଅସୂୟା କ୍ରମେ ଲୀନ ହୋଇଯାଉଥିଲା । ସେ ଅପେକ୍ଷା କରି ରହିଥିଲେ, କେତେବେଳେ ନୀରୋଦ ତାଙ୍କୁ ବୋଉ ବୋଲି ଡାକିବ ।

ନୀରୋଦ ଭିନ୍ନ ଥିଲା, ତା'ର ଆଗମନ ଭିନ୍ନ ଥିଲା । ଘଡ଼ଘଡ଼ି, ବିଜୁଳି, ମେଘ-ଦୁନ୍ଦୁଭିମୟ ଚତୁର୍ମାସ୍ୟା ପରେ ସ୍ନିଗ୍ଧ ଶୀତଳ ଶୀତର ଆଗମନ ।

ଦିନେ କୁରାଢ଼ି ଚୋଟର ଠକ୍ ଠକ୍ ଶବ୍ଦରେ ଚାରିଆଡ଼ ମୁଖରିତ ହୋଇଗଲା । ଆକାଶ-ପାତାଳ ଥରାଇ ଦ୍ରୁମଟାଏ ଭୂତଳଶାୟୀ ହେଲା... ଏ କ'ଣ ହେଉଛି ? କି ଶବ୍ଦ ଏ ?

– ଗଛ କଟା ହେଉଛି ।

– କାହିଁକି ? କି ଗଛ ?

– ଦାଣ୍ଡପଟର ପଣସ ଗଛ ।

– ଫଳନ୍ତି ଗଛଟା...

– ଯେଉଁ ଗଛରେ ବନ୍ଧାଯାଇ ପ୍ରଜାଙ୍କୁ ଚାବୁକ ମାଡ଼ ହେଉଥିଲା ।

ଏହାପରେ ଆହୁରି ଏକ ଅଭାବିତ ଘଟଣା ଘଟିଲା ।

ଧାଉଁଥିବା ବ୍ଳଦ ବେକର ଘଣ୍ଟି ଓ ଶଗଡ଼ ଚକର ଘଡ଼-ଘଡ଼ ଶଦ୍ଦ ଦିନେ ଉଆସ ଦାଣ୍ଡରେ ଅଟକି ଗଲା । ତହିଁରୁ ଓହ୍ଲାଇ ପଡ଼ିଲେ ସାନଭାଇ-ଭଉଣୀମାନେ, ବୋଉ, ଅକ୍ଷିଦାଦା... । ଆନନ୍ଦ-ଆତଙ୍କର ଉତ୍‌ଚକିତ ଭାବରେ ହାରାମଣିଙ୍କ ଆଖିରୁ ଲୁହଧାର ନିଗିଡ଼ି ପଡ଼ିଲା । ଖୁସିରେ ବିହ୍ବଳ ହୋଇ ଧାଇଁ ଯାଉଥିବା ପାଦ ଧପ୍ କରି ଥମିଗଲା- କେମିତି ଏମାନେ ଆସିଲେ ? କାହିଁକି ଆସିଲେ ?

ବିଧବା ଝିଅର ନିରାଭରଣା ରୂପକୁ ଦେଖି ଉଚ୍ଚ ସ୍ୱରରେ ବାହୁନି ଉଠୁଥିବା ବୋଉ ଲୁହପୋଛି ଉତ୍ତର ଦେଲେ– ଆମେ ମନକୁ ଆସିନାହୁଁ ଲୋ । ନୂଆ ଜମିଦାର ବାରିକ ହାତରେ ବେଭାର ଦେଇଥିଲେ । ଶଂଖୁଳାଭାର ଯାଇଥିଲା । ଭାର ମୁଁ ରଖିଲି ନାହିଁ । ମା' ମନ କ'ଣ ଏଡ଼େ କାଠ ହୋଇପାରିବ ?

ହାରାମଣି ହୃଦୟଙ୍ଗମ କଲେ– ଖଣ୍ଡାଧାର ଗଛ ପାଇଁ ଉଦ୍ଦିଷ୍ଟ ଥିଲା । ତା'ର ଡାଳ କାଟୁ କାଟୁ ସେଥିରେ ବସା ବାନ୍ଧିଥିବା ପକ୍ଷୀର ଡେଣାରେ ଚୋଟ ବାଜିଥିଲା ଯାହା ।

ନୀରୋଦ ବାହାଘର ପାଇଁ କନ୍ୟା ଖୋଜା ଓ କନ୍ୟା ଠିକଣା କାମ ସରିଥିଲେ ମଧ୍ୟ ବାପାଙ୍କର ବର୍ଷକିଆ ପର୍ଯ୍ୟନ୍ତ ଅପେକ୍ଷା କରିବା ପାଇଁ ପଡ଼ିଲା । କେତେଆଡ଼ୁ କେତେ ପ୍ରସ୍ତାବ କୁଢ଼େଇ ପଡୁଥିଲା । ନୂତନ ସଙ୍କୁଚିତ ନିରାଲମ୍ବ ମାତୃତ୍ୱରେ ସମୃଦ୍ଧ ହାରାମଣି ଅସୀମ ଉତ୍ସାହରେ ଝିଅ ଦେଖି ବାହାରୁଥିଲେ । ନୀରୋଦ ସାଙ୍ଗକୁ ଯୋଡ଼ ଖାଇବା ଝିଅ ସେ କେଉଁଠାରେ ଦେଖିଲେ ନାହିଁ । ଅବଶେଷରେ ସେ ଠିକଣା କରିଥିବା ଝିଅକୁ ବଂଶଗତ ସମ୍ଭ୍ରାନ୍ତି ନାହିଁ ବୋଲି ସୁନି, ଅନି ପସନ୍ଦ କଲେ ନାହିଁ । ସେମାନେ ପସନ୍ଦ କରିଥିବା ଝିଅକୁ ହାରାମଣି ପୂର୍ବରୁ ନାକଚ କରିଦେଇଥିଲେ । ବାହାଘର ସେହିଠାରେ ହିଁ ହେଲା ।

ମାସେ ଗୋଟାଏରେ ବନ୍ଧୁବାନ୍ଧବ, କୁଣିଆ ମଇତ୍ର ଯେ ଯୁଆଡ଼େ ବିଦା ହୋଇଗଲେ । ଏହାପରେ ତାଙ୍କର ଶାଶୁପଣିଆ କରିବାର ପାଳି । ଗୁରୁଜନଙ୍କର ଗୋଡ଼ଧୂଆ ପାଣି ପିଆଇବା, ଦିଅଁପୂଜା, ସଣ୍ଣା, ମାନ୍ୟତା, ପିଠାପଣା, ରନ୍ଧାବଢ଼ା, ସବୁଥିରେ ବୋହୂକୁ ତିଆରିବା ତାଙ୍କରି କାମ । ତାଙ୍କ ପାଖରେ ଅନ୍ତତଃ ଦି' ଚାରିବର୍ଷ ରହିଥିଲେ ବୋହୂ ସବୁ ଶିଖିପାରିଥା'ନ୍ତା । ସେ ଗାଁ ଛାଡ଼ି ଯିବାର ପ୍ରସ୍ତାବ ମଧ୍ୟ ଉଠି ନଥିଲା । କିନ୍ତୁ କେଇଟା ମାସରେ ହିଁ ନୀରୋଦ ଆସି ବୋହୂକୁ ତା'ର ଚାକିରି ଜାଗାକୁ ନେଇ ଚାଲିଗଲା । ଅଚାନକ ।

ସେ ଦିନର ନିଜର ଅପରିପକ୍ୱତାକୁ ମନେ ପକାଇ ସୁନିବୋଉ ସଙ୍କୁଚିତ ହୋଇଉଠନ୍ତି– ଦାବି ବୋଲି କ'ଣ ତାଙ୍କର ଥିଲା ଯେ, ତାହାକୁ ଜାହିର କରିବା ପାଇଁ ସେ ଏଡ଼େ ତତ୍ପର ହୋଇ ଉଠୁଥିଲେ ? ହୁଣ୍ଡିଟା !

ସେତେବେଳ ଯାଏଁ ସେ ବୁଝିପାରି ନଥିଲେ ଯେ ଲଢ଼ିବାର ଶେଷ ନାହିଁ । ଜୀବନସାରା ହିଁ ସଂଘର୍ଷ । ସାରା ଜୀବନ ହିଁ ନିଜକୁ ନିଜେ ବିଦୀର୍ଣ୍ଣ କରିବା ପାଇଁ ପଡ଼େ । ଧାନକୁଟୁଣୀ ଝିଅ ହାରାମଣିଠାରୁ ଜମିଦାରିଆଣୀ ସୁନିବୋଉ ଯାଏଁ । ବନ୍ଦୀଶାଳରେ ଶିକୁଳି ବନ୍ଧା ଦେବକୀର ଛଟପଟଠାରୁ ପୁଅର ଆଁ ମେଲା ମାଟି ଭିତରେ ବିଶ୍ୱବ୍ରହ୍ମାଣ୍ଡ ଦେଖି ମୋହ ଯାଉଥିବା ଯଶୋଦା ଯାଏଁ । ସେହି ଶିଆଳି ଲଟାରେ ଛନ୍ଦା ବନ୍ଧନ ଭିତରେ କ'ଣ ମରିବା ଯାଏଁ ମୁକ୍ତି ଅଛି–ଅନ୍ତଫାଡ଼ି ଜନ୍ମ ନ ଦଲେ ମଧ୍ୟ ? ଆଉ ମରିଯିବା ପରେ କ'ଣ ଏସବୁଥିରୁ ମୁକ୍ତି ମିଳିଯାଏ ମା'ଟିଏକୁ ? କେଜାଣି !

ତା' ନ ହୋଇଥିଲେ କ'ଣ ସେ ଅନିର ଦୁଃଖ ବୁଝି ପାରିଥାଆନ୍ତେ ? ତା'ର ଝରଝର ହୋଇ ଝରିପଡୁଥିବା ଲୁହ ତଳର ଦାହିକା ବେଦନା ଛାତି ଭିତରେ ଜ୍ୱଳନର ସ୍ପର୍ଶ ଦେଇଥାଆନ୍ତା ? ସେ ମଧ୍ୟ କହିଥାଆନ୍ତେ, ଅନିର ଦୁଃଖ କ'ଣ ? ତିନିଟା ଦୋ'ମହଲା କୋଠା, ରୋଜଗାରିଆ ପୁଅମାନେ, ଶାଶୁଘରକୁ ବିଦା ହୋଇ ଯାଇଥିବା ଝିଅ... ହରନାଥ ମଲା ଆଗରୁ ସବୁ କାମ ଛିଣ୍ଡାଇ ଦେଇ ଯାଇଛନ୍ତି । ଅନିର ଚିନ୍ତା କିଛି ନାହିଁ ।

କନି ବିଦା ହୋଇ ଶାଶୁଘରକୁ ଯିବାବେଳେ ସେ ବ୍ୟାକୁଳ ହୋଇ ତାକୁ ଯାବୁଡ଼ି ଧରୁଥିବା ଭଳି ଅନିକୁ ସେ ତାଙ୍କରି କୋଳକୁ ଟୋଳି ନେଇଥିଲେ । ସୁନିବୋଉଙ୍କର ଛାତି ଫାଟିଯିବା ଭଳି ମନେ ହେଉଥିଲା । ଦେହରେ ବୋଝେ ଗହଣା, ମଥାରେ ଚନ୍ଦ୍ରଉଦିଆ ଟୋପା, ସିନ୍ଥିରେ ଗୋଲା ସିନ୍ଦୂରର ବହଳିଆ ଗାର କୋଳରେ ଆଠମାସର ପୁଅକୁ କାଖେଇ ଅନି ତାଙ୍କୁ ପ୍ରଥମ ସ୍ୱାଗତ କରିଥିଲା । ତା'ର ସେହି ଦାଉ ଦାଉ ଜଳୁଥିବା ରୂପ କ'ଣ କେବେ ଭୁଲିହେବ ? ବୟସ କ୍ରମରେ ତା'ର ନାଲି, ହଳଦୀ ପାଟର ବେଢ଼ଣ କମିଥିଲା ସିନା, ଗହଣା ଓ ସିନ୍ଦୂର ଲଗାର ପର୍ଯ୍ୟାପ୍ତି ତ କମି ନଥିଲା !

ଅନି ଗାଁରେ ଥିଲା ଯାଏଁ ଜାଣିହୁଏ ଯେ, ଅନି ଏଇ ତକିଆରେ ମୁଣ୍ଡ ଦେଇ ଶୋଇଥିଲା । ଏଇ କାନ୍ଥରେ ଠାକୁରଙ୍କୁ ମୁଣ୍ଡିଆ ମାରୁଥିଲା । ଏଇ ଗାମୁଛାରେ ମୁହଁ ପୋଛି ଥିଲା ଏବଂ ତା'ର ଫେରିଯିବାର କିଛିଦିନ ଯାଏଁ ମଧ୍ୟ ନାଲି ନାଲି ଦାଗମାନ ଅନିର ଅନୁପସ୍ଥିତି ଅନୁଭବ କରିବା ପାଇଁ ଦିଅନ୍ତି ନାହିଁ ।

ସହସା ସେହି ଗହଣା, ସିନ୍ଦୂରକୁ ଉତାରି ଦେଇ ନିରାଭରଣା ହେବାର ଦୁଃଖ ସୁନିବୋଉଙ୍କଠାରୁ ଆଉ ଅଧିକ କିଏ ବୁଝିପାରିବ ? କିଏ ବୁଝିପାରିବ ବିଧବା ହେବାର ଜୀର୍ଣ୍ଣ ଅନୁଭବ, ଯନ୍ତ୍ରଣା ଓ ନିଜର ସୌଭାଗ୍ୟକୁ ହାତ ମୁଠାରେ ଓଟାରି ରଖିବା ପାଇଁ ସେହି ଗୋଲା ସିନ୍ଦୂରର ବହଳ ଗାରଟିକକୁ, ଚୁଡ଼ିର ରୁଣୁଝୁଣୁ ଗୁଞ୍ଜନର ଶବ୍ଦକୁ ଆଶ୍ରୟ କରି କିଭଳି ଜୀବନମୂର୍ଚ୍ଛା ଉଦ୍ୟମ କରାଯାଏ ?

କେହି କାହାର ଦୁଃଖ ବୁଝନ୍ତି ନାହିଁ । ମନ କଥା ବୁଝନ୍ତି ନାହିଁ । ବର୍ଷ ବର୍ଷ ଧରି ଏକାଠି ଜୀବନ ବିତାଇଥିଲେ ମଧ୍ୟ ମଝିରେ ଥିବା ଅଦୃଶ୍ୟ ପାଚେରୀକୁ ଭେଦ କରି କେହି କାହା ନିକଟକୁ ଆସିପାରନ୍ତି ନାହିଁ— ଶେଷଦିନ ପର୍ଯ୍ୟନ୍ତ ।

ସେହି ସମ୍ବନ୍ଧ ତାଙ୍କର ଓ ବଡ଼ବୋହୂ ମଧ୍ୟରେ ।

ସୁନିବୋଉ ଗାଡ଼ିରୁ ଓହ୍ଲାଇ ନଇଁ ନଇଁ ଆସି ଡାକ୍ତରଖାନାର ଲମ୍ବା ବାରଣ୍ଡାରେ ପାଦ ଦେଲେ । ତା'ପରେ ଦୋ'ମହଲାର ପାହାଚ ଚଢ଼ା । ଗୋଟିଏ ହାତରେ ବାଁ ଆଣ୍ଠୁକୁ ଚିପି ଧରୁଥିଲେ, ଆର ହାତରେ ଶିବୁର ହାତଟିକୁ । କେତେବର୍ଷ ହେବ ଅଣ୍ଟା ନଇଁ ଗଲାଣି । ତା' ସାଙ୍ଗକୁ ଆଣ୍ଠୁ କଷ୍ଟ ବାହାରିଛି । ପାଦ ପକାଇଲେ କାଟୁଛି । କେତେବେଳେ ଏ ଆଣ୍ଠୁ, କେତେବେଳେ ଆରଟା । କେବେ କେବେ ଦୁଇଟାଯାକର ଯନ୍ତ୍ରଣା ତାଙ୍କୁ ବିଛଣା ଧରାଇ ଦେଉଛି । ପାହାଚ ଚଢ଼ିବା ସେ କେଉଁକାଳୁ ଛାଡ଼ିଲେଣି । ଡାକ୍ତରଖାନାର ପାହାଚ ଚଢ଼ିପାରିବେ ବୋଲି କାହାର ବିଶ୍ୱାସ ନଥିଲା । ସୁନିବୋଉଙ୍କର ମଧ୍ୟ ନୁହେଁ ।

ଶୀରୁ ଉପର ପାହାଚରୁ ବିରକ୍ତ କଣ୍ଠରେ କହୁଥିଲା— ଏତେ କରି ମନା କଲି, ତଥାପି ଆସିଲ ବୋଉ ?

ଜୀବନରେ କେତେ ପାହାଚ ଚଢ଼ି ଚଢ଼ି ସେ ସେମାନଙ୍କ ନିକଟକୁ ଆସିଛନ୍ତି, ଏକଥା ଶୀରୁ କାହୁଁ ବୁଝିବ ?

ସୁନି ଦେହରେ କେବେଠାରୁ ଏ ରୋଗ ପ୍ରବେଶ କରିଥିଲା କେହି ଜାଣିପାରି ନଥିଲେ । ବୟସର ଦ୍ୱାହି ଦେଇ ରୋଗକୁ ଗୁରୁତ୍ୱ ଦିଆଯାଇ ନଥିଲା । ସତୁରୀ ଛୁଇଁଥିବ । ସୁନି ତଳ ଭାଇ-ଭଉଣୀ ଦୁଇଜଣଙ୍କଠାରୁ ବୟସରେ ସାନ ଦିଶୁଥିଲା । ହଠାତ୍ ସେ କାହିଁକି ବିବର୍ଣ୍ଣ ଦିଶୁଛି, ଦୁର୍ବଳ ହୋଇଯାଉଛି ବୋଲି ସେ କେବେଠାରୁ ବ୍ୟସ୍ତ ହେଉଥିଲେ । ତୁରନ୍ତ ଡାକ୍ତର ଦେଖାଇବା ପାଇଁ ଉପଦେଶ ଦେଉଥିଲେ ।

ଅନ୍ୟମାନେ ଏ ରୋଗ ବିଷୟରେ କେବେ ଜାଣିଲେ, ସେ କଥା ସୁନିବୋଉ ଜାଣନ୍ତି ନାହିଁ । ସୁନିଙ୍କୁ କିନ୍ତୁ ରୋଗର ନାଁ କୁହାଯାଇ ନଥିଲା । ସୁନିବୋଉଙ୍କୁ ମଧ୍ୟ ନୁହେଁ ।

କାଳେ ସେ ଚାରିଆଡ଼େ ପ୍ରଘଟ କରିଦେବେ, କହୁ କହୁ ସୁନିକୁ କହି ପକାଇବେ, ଏହି ଅନର୍ଥ ସମ୍ଭାବନାକୁ ଏଡ଼ାଇ ଯିବା ପାଇଁ । ତେଣୁ ତାଙ୍କ ପ୍ରଶ୍ନର କିଏ କେତେ ପ୍ରକାର ଉତ୍ତର ଦେଇଥିଲେ । "ତୁମର ଏଥିରେ ମୁଣ୍ଡ ଖେଳାଇବା ଦରକାର ନାହିଁ"–ବୋଲି କେବେ କେବେ ନିର୍ଦ୍ଦେଶଟିଏ ଛିଟିକି ପଡୁଥିଲା । କିନ୍ତୁ ସେ ବ୍ୟାକୁଳ ନହେବେ କେମିତି ?

ତେଣୁ ଇଜି ଚେୟାରର ଗଦି ଉପରେ ଅବଶ ପାଦ ଦୁଇଟି ସମେତ ଥକ୍କା ହୋଇ ବସିଯିବା ଓ ଶୀଘ୍ର ସ୍ତ୍ରୀକୁ ପାଣି ଗିଲାସେ ମାଗିବା ପୂର୍ବରୁ ପଣତ କାନି ଫିଟାଇ ମଙ୍ଗଳାଙ୍କର ପୂଜାଫୁଲ ସୁନିର ଦେହ-ମୁଣ୍ଡରେ ଛୁଆଇଁ ସେ ତା'ର ତକିଆ ତଳେ ରଖିଦେଇ ଆଶୀର୍ବାଦ କରିଥିଲେ ।

ଉପରକୁ ଯେତେ ଦମ୍ଭିଲା ଦେଖାଯାଉଥିଲେ ମଧ୍ୟ ସୁନି ନିଜ ଭିତରେ ଝାଉଁଳି ପଡୁଥିଲା । ଅନ୍ୟମାନଙ୍କର ବେମାରୀ ବେଳର ସାହସ ତା'ର ନିଜ ବେଳକୁ ମରି ମରି ଆସୁଥିଲା । ସେ ବେଳୁବେଳ ଶେତା ପଡ଼ିଯାଉଥିଲା । ଅପରେସନ୍ ହେବା ପାଇଁ ସୁନିକୁ ନେଇଯିବା ପୂର୍ବରୁ ସୁନିବୋଉ ତାକୁ ଆଶ୍ୱାସନା ଦେବା ପାଇଁ ଚାହୁଁଥିଲେ । ସେ ମୁଣ୍ଡିଆ ପକାଇବାବେଳେ ଠାକୁରାଣୀଙ୍କ ମଥା ଉପରୁ ରକ୍ତ ମନ୍ଦାରଟା ଆପେ ଖସିପଡ଼ିଥିଲା । ତେଣୁ ଅପରେସନ୍ ଭଲରେ ହେବ, ତୋର କିଛି ଖରାପ ହେବ ନାହିଁ, ଏହି କଥା କହି ଦେବା ପାଇଁ ମନ ଉଚ୍ଚାଟ ହେଉଥିଲା । କିନ୍ତୁ ସମଗ୍ର କୋଠରୀ ଭିତରେ ଖେଳି ଯାଉଥିବା ଥମ୍ ଥମ୍ ଭାବ ନିକଟରେ ତାଙ୍କ ବିଶ୍ୱାସ ଓ କଥାର କିଛି ହେଲେ ଗୁରୁତ୍ୱ ରହିବ ନାହିଁ । ତାହା ହାଲୁକା ଶିମିଳି ତୁଳା ଭଳି ପବନରେ ଉଡ଼ି ପଳେଇବ, ଏହା ଭାବି ସୁନିବୋଉ ଚୁପ୍ ହୋଇ ବସିରହିଲେ ।

କଷି ଡାକ୍ତରାଣୀ ଝିଅଟା ଭୂରୁ କୁଂଚେଇ କହୁଛି– ଇଏ ରୋଗୀଙ୍କ ମା' ? ସେତେବେଳେ ଭେଜାଲ୍ ଖାଦ୍ୟ, ଦୂଷିତ ଜଳବାୟୁ ନଥିଲା ବୋଲି ଆଇମା' କେଡ଼େ ମଜଭୂତ୍ ଅଛନ୍ତି ।

ନର୍ସ ପଚାରୁଛି ଆଇମା'ଙ୍କର ବୟସର ହିସାବ । ତା' କଥାର ସେ କି ଉତ୍ତର ଦେବେ ? ମଣିଷ ଜୀବନ କ'ଣ ଲମ୍ୱ ଦଉଡ଼ି ଖଣ୍ଡେ ଯେ ତାକୁ ହାତ ଲମ୍ବେଇ ମାପି ଦେଇ ହେବ, ନା ସିଧାସଳଖ ରାସ୍ତାଟିଏ ଯେ ଖୁଣ୍ଟ ପୋତି ଗଣିଦେଇ ହେବ ? ବିଭିନ୍ନ ମଣିଷ ପାଇଁ ଷଡ଼ଋତୁର ରଙ୍ଗରୂପ ଭିନ୍ନ, ଋତୁର ସ୍ପର୍ଶ ବି ଭିନ୍ନ । କେତେବେଳେ ଜୀବନ ଚକ୍ରାକାର ଭଉଁରୀ ତ କେତେବେଳେ ଉଠାପକା ଲହରୀର ନିରବଧି ସମାହାର । ତାହା ତ କେବଳ ମଣିଷର ବଂଚି ରହିବା ମଧ୍ୟରେ ସୀମିତ ନୁହେଁ । ତେଣୁ ବୟସର ସ୍ଥୂଳ ପରିମାପ କାହିଁ ? ତା'ର ଚାରିପଟରେ ଘେରି ରହିଥିବା ସଂସାରକୁ ନେଇ, ଅନୁଭବର ବ୍ୟାପ୍ତିକୁ ଆଧାର କରି ହିଁ ବୟସକୁ ମାପି ହେବ ଯାହା ! ଏକଥା ତୁ ପିଲା ମଣିଷ କାହୁଁ ବୁଝିବୁ ?

ନର୍ସ କଥାର ଉତ୍ତର କେହି ଦେଲେ ନାହିଁ । କେହି କେହି ଛୋଟ ହସଟିଏରେ ଫେରାଇ ଦେଲେ । ବଡ଼ବୋହୂ କହିଥାଆନ୍ତା, ରୋଗୀଙ୍କଠାରୁ ଢେର୍ ସାନ । ସେ ଆମର କନିଆ ଶାଶୁ । ବଡ଼ବୋହୂ ନଥିଲା ।

ନୀରୋଦ ବଂଚିଥିବାବେଳେ ବଡ଼ବୋହୂର ଆକ୍ରୋଶପଣିଆ ଚାପି ହୋଇଥିଲା । ସେ ଚାଲିଯିବା ପରେ ବିଭିନ୍ନ ରୂପରେ ପ୍ରକାଶିଲା । ଏହା ହୁଏତ ସତ ହୋଇ ନପାରେ । କିନ୍ତୁ ସୁନିବୋଉ ତାହା ହିଁ ବିଶ୍ୱାସ କରନ୍ତି । .... କାହିଁକି ? କାହିଁକି ସେ ଏତେ ଦେଖେଇ ଶୁଣେଇ କଥା କହେ ? ତାଙ୍କର ଅସୁସ୍ଥତା ତା' ନିକଟରେ କାହିଁକି ଅତିରଞ୍ଜନର ରୂପ ନିଏ ? ତାଙ୍କର ନିଷ୍ଠାମୟ ବ୍ରତ ଉପବାସକୁ ସେ କଥା-ଚାତୁରୀରେ ତୁଚ୍ଛ କରିଦିଏ– ସବୁ ପିଲାଙ୍କ ସମ୍ମୁଖରେ । ହୃଦୟର ସ୍ରୋତକୁ ପଥର ଖଣ୍ଡେ ଲେଖାଏଁ ଦେଇ ଅଟକାଇବା ପାଇଁ ସେ କାହିଁକି ଚେଷ୍ଟା କରେ ? କାହିଁକି ସେ ତାଙ୍କର ଏତେ ବର୍ଷର ଦୀର୍ଘ ସାଧନାକୁ ବ୍ୟର୍ଥ କରିଦେବାର ପ୍ରୟାସ କରୁଛି ? ... ଘର ଦ୍ୱାର ଛାଡ଼ି ଦେଇ ଥରକୁ ଥର ବମ୍ବେ ଦଉଡ଼ି ଯିବା, ଝିଅ-ଜ୍ୱାଇଁଙ୍କ ପାଖରେ ମାସ ମାସ ଧରି ରହିବା, ମୁଠା ମୁଠା ଟଙ୍କା ଖର୍ଚ୍ଚ କରି ପୁଅ-ପୁତୁରାଙ୍କୁ ଦୂର କଲେଜରେ ପାଠ ପଢ଼େଇବା... ସେ ଯେମିତି ଦେଖେଇ ଦେବାକୁ ଚାହେଁ ଯେ, ସେ ପୁଅ-ଝିଅର ମାଆ ହୋଇଛି । ଫୁଲ-ଫଳଭରା ବୃକ୍ଷ ପାଲଟିଛି । ତମେ କେବଳ ଶୂନ୍ୟକୁ ହାତ ମୁଠାରେ ମୁଠେଇ ଧରିଛ । ତଳେ ଚେର ନାହିଁ, ଉପରେ ଫଳପତ୍ର ନାହିଁ, ନିଛକ ଥୁଣ୍ଟା ଡାଳ ମେଲେଇ ତମେ ଶୂନ୍ୟରେ ଝୁଲୁଛ ।

ବଡ଼ବୋହୂ ବୁଝୁ ନାହିଁ । ବୁଝିବା ପାଇଁ ଚେଷ୍ଟା କରୁ ନାହିଁ ଯେ, ଫଳନ୍ତି ଗଛ ନହେଲେ ମଧ୍ୟ ଶୁଖିଲା ଡାଳ ମେଲେଇ ଦିନେ ସେ ବଢ଼ନ୍ତି ଗଛଟିଏକୁ ଆଶ୍ରା ଦେଇଥିଲେ । ନଇଁ ପଡ଼ିବା ପୂର୍ବରୁ ଅଟକାଇଥିଲେ । ସେହି ଗଛ ସଙ୍ଗରେ ବାନ୍ଧି ହୋଇ ସେ ତା' ସହ ଏକୀଭୂତ ହୋଇଯାଇଛନ୍ତି । ନିଜର ନିଷ୍ଫଳ ସତ୍ତା ହରାଇ ବସିଛନ୍ତି ।

ସୁନିବୋଉ ଚମ୍‌କି ପଡ଼ନ୍ତି–ବୋହୂ କ'ଣ ଜାଣିପାରିଛି, ତାଙ୍କର ସେହି ଦୁର୍ବଳ ମୁହୂର୍ତ୍ତଟାକୁ ? ଛାତି ଭିତରଟାକୁ ଉଖାରି ଉଖାରି ସେହି ନରମ ଜାଗାଟାକୁ ଠାବ କରି ପକାଇଛି ।? ବୁଝିପାରି ନାହିଁ ତା'ର ନବ ରୂପାନ୍ତର ?... ବଡ଼ ହେଉଥିବା ପୁଅକୁ ମା' ମା' ଲୋଭିଲା ଆଖିରେ ଚାହାନ୍ତି । ନିଜ ହାତରେ ରୋପିଥିବା ଚାରାର ବିଚିତ୍ରବର୍ଣ୍ଣ ରୂପକୁ ଦେଖନ୍ତି । ପୁଅର ବଢ଼ନ୍ତା ରୂପ, ଗଜୁରି ଆସୁଥିବା କହରା ନିଶକୁ ଦେଖି ଭିତରେ ମଧ୍ୟ ଶିହରଣ ଉଠେ । ସେହି ଶିହରଣ ମୋ ପାଖରେ ଗୋଳିଆ ହୋଇଯାଇଥିଲା, ମାତ୍ର କେତେଟା ମୁହୂର୍ତ୍ତ ପାଇଁ । ସେ ପାପକୁ ମୁଁ ସ୍ୱୀକାର କରୁଛି । କଞ୍ଚା ବୟସର ସେ ଭୁଲ୍‌କୁ ମୁଁ ମାନୁଛି । ମୋତେ କ୍ଷମା ଦେ । ମୁଁ ତୋ'ର ନିଜ ଇଲାକା ଭିତରକୁ ପଶିବା ପାଇଁ ଚାହିଁ ନାହିଁ । ସଭିଏଁ ମୋର ଆପଣାର । ମୋତେ ଟାଣି ଓଟାରି ବଢ଼ିବା ପାଇଁ ହୋଇଛି । ଚାହେଁ ନ ଚାହେଁ, ପରିବ୍ୟାପ୍ତ ହେବା ପାଇଁ ପଡ଼ିଛି । ମୁଁ ମାଆ ହୋଇନାହିଁ । କୋଉ କାଳେ ମୋ ଭିତରୁ ଟିକି ଝିଅଟାଏ ଜନ୍ମ ନେଇଥିଲା । ସୁକୁମାରୀ ବୋଲି ନାଆଁ ଦିଆଯାଇଥିଲା । କାନ୍ଥଧରି ପାଦ ପକାଇବା ପାଇଁ ଆରମ୍ଭ କରୁଥିବା ବେଳେ ହିଁ କାଳ ତାକୁ ନିଜ କୋଳକୁ ଟାଣି ନେଇଥିଲା, ଏକଥା କେହି ମନେ ରଖିନାହିଁ । ସତ ବୋଲି ଦେଖାଇବା ପାଇଁ ତା'ର ଛବି ଖଣ୍ଡିଏ ମଧ୍ୟ ମୋ ପାଖରେ ନାହିଁ । ମୁଁ ସେ ଦୁଃଖକୁ ଭୁଲି ଯାଇଛି, କାରଣ ସାତଟା ପିଲାର ବୋଉ ଡାକରେ ମୋତେ 'ଓ' କରିବା ପାଇଁ ହୋଇଛି ।

ସୁନିବୋଉ କ୍ଷୀଣ ଶବ୍ଦ ମଧ୍ୟରେ ନିଦଭଙ୍ଗା ହାଇଟିଏ ମାରିଲେ । ସେ ସ୍ୱପ୍ନରେ ଦେଖିଥିଲେ ଯେ ସୁନି ଆସି ପାଖରେ ଠିଆ ହୋଇଛି । ହାତୀଦାନ୍ତର ଚାକୁଟିକୁ ତାଙ୍କ ହାତକୁ ଟେକିଦେଇ

କହୁଛି– ବୋଉ, ତମ ବାକ୍ସ ନିଅ । ସେ ବାକ୍ସର ଢାଙ୍କୁଣୀ ଖୋଲି ଦେଉଛନ୍ତି । ଗହଣାଗୁଡ଼ା ଝଲମଲ କରି ଉଠୁଛି ।

ସୁନିବୋଉ ନିଷ୍ପ୍ରାଣ ହସଟିଏ ହସିଲେ । କାରଣ, ସେ ଜାଣି ନଥିଲେ ଯେ ସେହି ହାତୀଦାନ୍ତର କୁଟିକମ ଅଳଙ୍କାର ବାକ୍ସଟା ଏବେ ଯାଏଁ ତାଙ୍କ ଛାତି ଭିତରର ଗୋଟିଏ କୋଣରେ ଲୁଚିଛପି ସାଇତା ହୋଇ ରହିଛି, ପଞ୍ଜରା ହାଡ଼ ମୁଠାକ ତଳେ । ଥିଲେ ଥାଉ, ଆଉ ତାଙ୍କର ତା'ପ୍ରତି ଅବଶିଷ୍ଟ ଆସକ୍ତି ନାହିଁ । ବାକ୍ସର କାରୁକମଠାରୁ ତାହାର ଭାରି ଓଜନ ଯାଏଁ, ଭରପୂର ଗହଣା ବା ତା'ର ଆଖି ଝଲସା ଚକମକ ଯାଏଁ–ସବୁ ତାଙ୍କ ପାଇଁ ଅର୍ଥହୀନ, ମୂଲ୍ୟହୀନ । ଯେମିତି କି ସେ ନିଜେ । ତାଙ୍କର ବଞ୍ଚିବାକୁ କାହାର ସ୍ୱାଗତ ନାହିଁ । ମୃତ୍ୟୁକୁ କାହାର ଅପେକ୍ଷା ନାହିଁ । କାରଣ ସେ ଅଛନ୍ତି, ପୁଣି ନାହାନ୍ତି । ନାହାନ୍ତି, ପୁଣି ଅଛନ୍ତି ।

ନିଜର ଅଜାଣତରେ ହିଁ ସୁନିବୋଉଙ୍କର ଆଖି ଲୁହ ଛଳଛଳ ହୋଇ ଉଠିଲା । ସେ 'ହରି ହେ' କହି ଦୀର୍ଘଶ୍ୱାସ ମଧ୍ୟରେ ଠାକୁରଙ୍କୁ ମୁଣ୍ଡିଆଟିଏ ପକାଇଲେ । ଏତିକିବେଳେ ସବା ସାନ ନାତିଟା ପଢ଼ାଘରୁ ଚିଲ ଭଳିଆ ଧାଇଁ ଆସିଲା ।

ହାତଗୋଡ଼ କଥା କହେ ଏ ଟୋକାଟାର । ଅତି ଚଞ୍ଚଳ । ଚଗଲାମି ପାଇଁ ବଡ଼ ଭାଇ-ଭଉଣୀଙ୍କ ପାଖରୁ ଗାଳି ଶୁଣେ । କାନମୋଡ଼ା ଖାଏ । ସମସ୍ତଙ୍କର ଧମକ ସହେ । ବାପଠାରୁ ମାଡ଼ ଖାଏ । ତଥାପି ବଦଳେ ନାହିଁ । କେମିତି ବା ବଦଳିବ, ମାତ୍ର ଆଠବର୍ଷ ବୟସରୁ ?

– ଜେଜେମା, ଦେଖ ।

–ମାଷ୍ଟ୍ରେଙ୍କୁ ବସେଇ ତୁ ଉଠି ଆସିଲୁ ? ବାପା ଦେଖିଲେ ପିଟି ପକାଇବ ରେ, ଯା–ଯା ।

ସୁନିବୋଉଙ୍କର ଇଚ୍ଛା ହେଲା, ସମସ୍ତଙ୍କର ଶାସନ ଉହାଡ଼ରୁ ନିଜ ପଣତକାନିରେ ଟୋକାଟାକୁ ଢାଙ୍କି ଦେଇ ପାରନ୍ତେ କି !

କିରି କିରି ହୋଇ ହସିଲା ନାତି–ତମେ ପାଟି ମେଲା କରି ଏଇଠି ବସୁ ବସୁ କେତେ ସମୟ ହେଲା ଶୋଇ ପଡ଼ିଛ ଜାଣ ? ମୁଁ ତମ ନିଦ ଭାଙ୍ଗିବାକୁ ଅନେଇଚି ଗଲା । ଦେଖ ଜେଜେମା'-ଏ ବାଡ଼ିକୁ । ମୁଁ ତମ ପାଇଁ ତିଆରି କରିଛି । ତମ ହାତକୁ କାଟିବନି ବୋଲି ଏଠି ନରମ ବ୍ୟାଣ୍ଡେଜ ଗୁଡ଼େଇଛି । ଭିତରେ ତୁଳା ଦେଇଛି । ହାତ ମାରିଲ, ନରମ ଲାଗୁନି ? ଚାଲୁ ଚାଲୁ ଚଟାଣରେ ବାଡ଼ି ଖସିଯିବ ବୋଲି ଡରୁଥିଲ ପରା ? ଦେଖ, ତଳେ କେମିତି ମୋଟା ରବର ଦେଇଛି । ଜାଣ, ଏ ମୋ ସାଇକଲ ଟିଉବ୍‌ର ରବର । ଧରି ଚାଲିଲ ଜେଜେ ମା'–ଦେଖିବ, ଜମାରୁ ଖସିବ ନାହିଁ ।

ନାତିର ହାତ ଧରି ଉଠିଲେ ସୁନିବୋଉ । ତା'ର କାନ୍ଧକୁ ଆଶ୍ରୟ କରି ଠିଆ ହେଲେ । ନାତି ତାଙ୍କ ହାତରେ ବାଡ଼ିଟି ଧରେଇ ଦେଲା । ସେ ଅନୁଭବ କଲେ ଯେ ଆଉ ଅଣ୍ଟା ନଇଁ ଯାଉ ନାହିଁ । ସେ ସଳଖ ହୋଇ ପାଦ ପକାଇ ପାରୁଛନ୍ତି ।



# ହେ, ଟିକେ ରହିଯାଅନା କବି !

## ନାରୁ ମହାନ୍ତି

ହେ- ହେ, ହେ- ହେ !

ଆରେ ଟିକେ ରହିଯା, କୁଆଡ଼େ ଯାଉଚ ମ ଏତେ ଜୋର୍‌ରେ ? ହେ ଭାଇ, ଟିକେ ଗୁହମ ! ମଲା, ଓଃ– ଏମିତି କ'ଣ ମାଡ଼ି ଯାଉଚ ଯେ ? ଆସୁଚ ଢୁ ଢୁ, ଯାଉଚ ଢୋ ଢୋ– ଏ ଗଗନ ମଣ୍ଡଳ କମ୍ପମାନ, ଛିନ୍‌ଛତ୍ର କରି ଉଡ଼ିଯାଉଚ ଯେ ଯାଉଛ– ପତ୍ତାଇ ମିଳୁନି ତମର, କଥା କ'ଣ ?

ନାଃ, ରାଜୁ ମିଶ୍ର ହେଇଥିଲେ ଏମିତି କହିଥାନ୍ତା । ଅଣ୍ଟାକୁ ମୋଡ଼ି ମୋଡ଼ି, ତା' କହରା ମୁନିଆଁ ନିଶ ଅଗକୁ ରଗଡ଼ି ରଗଡ଼ି ଟିଟିଲାଗଡ଼ ହାଟରେ ପରିବା ବିକାଳୀ ଅର୍ଦ୍ଧନାରୀଙ୍କ ଭଳି ସେ କହିଥାନ୍ତା । ନହେଲେ ମଦ ଗ୍ଲାସ୍‌କୁ ମୁଠେଇ, ବତିଶରୁ ବାଇଶଟା କୁନି ସାଇଜ୍ ସଫେଦ୍ ଦାନ୍ତକୁ ଓକାଳି ଦେଇ ରବି ମହାନ୍ତି ତୁହାକୁ ତୁହା ହାକୁଡ଼ି ମିଶା ସ୍ୱରରେ ଲହଡ଼େଇଥାନ୍ତା ଏମିତି ।

ହେଲେ ମୁଁ କାହିଁକି କହିବି ? ଡାକ ଛାଡ଼ିଲି ହେ ହେ କରି । କିଛି ଶୁଣିଲାନି କବି । ଆରେ ସେ କୁଆଡ଼େ ଯାଉଚି– ଛଅ ନମ୍ବର, ତିନି ନମ୍ବର, କଞ୍ଚନା ଏରିଆ ନା ଆଚାର୍ଯ୍ୟ ବିହାର– ଯାଉଚି କୁଆଡ଼େ ମାଡ଼ି ?

ଆରେ ଶୁଣ– ତମେ ବୁଲେଟ୍ ଚଢ଼ା କବି ତ ମୁଁ ସାଇକେଲ୍ ଠେଲା ଗାଳ୍ପିକ । ମୁଁ କ'ଣ ଡରିଚି ନା କ'ଣ ? ମାନୁଚି– ଏଇ ସାଇକେଲ୍‌ଟା ମୋର ଗୋଟିଏ ବୁଲେଟ୍ ମାଡ଼ରେ ଅଷ୍ଟବକ୍ର ହୋଇଯାଇଥିଲା ଚାରିବର୍ଷ ତଳେ । ଅଠାବନ ଟଙ୍କାରେ ତା'ର ଗୋଟାଏ ମଝିହାଡ଼ ବଦଳିଚି, କେତେ ଗଣ୍ଡିରେ ମାଡ଼ ଖାଇ ସେ ସଜାଡ଼ିଚି ଯେ ଗଡୁଚି ଠେଲାଗାଡ଼ି ପରି– ସେଥିରେ କ'ଣ ଅଛି ? ଆରେ ମୋ' ସାଇକେଲ୍‌କୁ ମାଡ଼ ମାରିବା ଯାନ ତମ ବୁଲେଟ୍ ନୁହଁ ମ, ତମର ତାକତ୍ କାହିଁ ମୋ ଶୂନ୍‌ଗାଡ଼ିକୁ ଢିଅ ମାରି ବର୍ତ୍ତିଯିବ– ତମେ ତ ଚଢୁଥିଲ ରିକ୍‌ସା, ତା'ପରେ ପ୍ରିୟା ସ୍କୁଟର୍, ଏବେ ଚଢୁଚ ବୁଲେଟ୍– ତା'ପରେ ଚଢ଼ିବ କାର୍– ତା'ପରେ ? ସେଇଠୁ ପୁଅ ଆଉ କୋଉଥିରେ ବସି ମାଡ଼ିଯିବ କୋଉଠିକି ?

ଆରେ ଯାଆ– ଯୁଆଡ଼େ ଇଚ୍ଛା, ଯୋଉଥିରେ ଇଚ୍ଛା ଚଢ଼ି ମାଡ଼ିଯା– ହେଲେ କଥା ଶୁଣୁନ କିଆଁ ?

ହେଇଟି କିଛି ମାଗିବନି ମ ! ତମେ ଦେଇପାର ଅନେକ– ମାଗିଲେ ଟଙ୍କା, ଚାହିଁଲେ ତମ ବୁଲେଟ୍‌ର ପଛ ସିଟ୍, ତମ ରୁମରୁମିଆଁ ସ୍ୱେଟର୍, ଦି' ଗ୍ଲାସ୍ ରସ, କେତେ ପ୍ରଶଂସା ତମ କଲମ ମୁନରେ– ଆରେ ଏ ଅଧମ ପାଇଁ ତମ ଭଣ୍ଡାର ଖୋଲା ଅଛି ସବୁବେଳେ, ମାଲୁମ୍ ଅଛି ମୋତେ । କ'ଣ ମନେ ନାହିଁ ମୋର ଛିଣ୍ଡା ଚପଲଟାକୁ ଦେଖି ତମର ଆଖି ଏମିତି କୁଞ୍ଚେଇ ଯାଇଥିଲା ଥରେ, ମତେ ତ ଖାଲି ପୋଖରୀପାଣି ଲାଗିଲା । ସତରେ ତମକୁ ଦେଖିଲେ ମୋର ପିଳେହି ପାଣି ହୋଇଯାଏ ଛାଆଁକୁ ଛାଆଁ– ମୋର ହାଡୁଆ ହାତ ଦିଇଟା ଗୋଟାଏ ଚେପା ରସ ତାଟିଆ ଧରି ଲମ୍ବିଯାଏ ତମ ଦୟାର୍ଦ୍ର କରକମଳ ପର୍ଯ୍ୟନ୍ତ– ପଡ଼ିଯାଉ କିଛି ଏ ଥାଳରେ, ପୋଡ଼ି

ଯାଉଚି ପେଟ, ମୁହଁର ଲାଜ ଆଉ ବୋଲ ମାନୁନି– ତଥାପି ମୁହଁ ଖୋଲି ପାରିଲେ ତ ! ତମ ବୁଲେଟର ଢୋ ଢୋ ଆୱାଜ୍ କାନରେ ପଡ଼ିବା ମାତ୍ରେ ମୋ ଛାତି କମ୍ପି ଉଠେ ଶୁଖିଲା ତାଳପତ୍ର ପରି, ଯେମିତି ଦୁଲ୍‌କି ଦୁଲ୍‌କି ଛିଣ୍ଡି ପଡ଼ିବ ଭୂଇଁ ଉପରକୁ– ସତ କହୁଚି, ତମେ ବୁଲେଟ କିଣିବା ଦିନୁ ମୋର ନିଦ ହଉନି ଭଲ, ରାତି ଅଧରେ ମୁଁ ଚିରଚିରେଇ ଉଠୁଚି, ଲୁଗାରେ ପରିସ୍ରା ପଡ଼ିଯାଉଚି ଅବା, ଲାଗୁଚି ବୁଲେଟ୍‌ର ଆଗ ଚକାଟା ମୋ ଛାତି ଉପରେ ଚଢ଼ିଯାଇ ବନ୍ଦ ହେଇ ଯାଇଚି ଗାଡ଼ିଟା, ଆଉ ପଛ ଚକାଟା ଚଢ଼ିବ ଚଢ଼ିବ ହଉଚି, ପଛ ଚକାଟା ଚଢ଼ିଲେ ମୋର ଯମାଳୟ ଗମନ ସୁନିଶ୍ଚିତ– ନାଃ, ତମେ ସେ କଥାଟା ଚାହଁନା, ତମେ ଚାହଁ ମୁଁ ଏମିତି ଅଧାମରା ହେଇ ବଂଚି ରହେ, ବଂଚିଚି ମୁଁ– ଆଉ କ'ଣ, ହେଇଚି ଲାଗ୍ ଲାଗ୍ ତିନିଥର ପରିସ୍ରା କରି ଆସି ବସିଚି ବିଛଣା ଉପରେ । ଚତୁର୍ଥ ଥର ଡାକରାକୁ ଯଥା ସମ୍ଭବ ପ୍ରତିରୋଧ କରି ।

କିଏ କହିଲା ମୁଁ ତମକୁ ଭଲ ପାଏନା ? ବେଶ୍ ଭଲ ପାଏ । ଆରେ ଏଇଟା ପା ମୋର ଦସ୍ତୁର । ଭଲପାଇବା ଲୋକକୁ ଖେଣ୍ଡା ମାରିବି, ତା' ମଗଜ ଚହଲେଇବି, ତା' ପଛରେ ବତୀ ଖଂଜିବି, ଯେମିତି ହଉ ପଛେ ଚୁଟିଆ ମୂଷା ପରି ତା'ର ସମସ୍ତ ଗୁପ୍ତମାଲ୍, ଦାମିକା ପୋଷାକ, ସାର୍ଟକୁ କାଟି ଟିକ୍‌ଟିକ୍ କରିଦେବି ତା'ର ଜ୍ଞାତରେ, ଆଉ ମଧ୍ୟ ଅଜ୍ଞାତରେ । ହେଲେ କାହିଁ ତମର ରୁମଟିଏ ମାତ୍ର ଏପାଖ ସେପାଖ ହେଲାନି ତ । ତମର ଭାରି ଭେଲିକି– କହିବ ଗୋଟାଏ, କରିବ ଅନ୍ୟଟା– ଖରାପ ଅର୍ଥରେ କହୁନି ମ– କହିବ ମୋ ମୁହଁରେ ମୋ' ଗପ ଖରାପ, ଆଉ ବାହାରେ କହିବ ଭାରି ବଢ଼ିଆ । ମୁହଁରେ କହିବ– ଶଳାକୁ ଶେଷ କରିଦେବି, ଆଉ କଲମ ମୁନରେ ଏମିତି ତାରିଫ୍ କରିବ ନା ମୋ' ଚଉଦ ପୁରୁଷରେ ଏମିତି ପ୍ରଶଂସା କେହି ଶୁଣି ନଥବେ ! ନା ସେମିତି କିଛି କହିନା କି ଲେଖିନା– ତମ ଜୀବଦ୍ଦଶାରେ ନ କରିବା ପାଇଁ ସଂକଳ୍ପବଦ୍ଧ ? କିନ୍ତୁ ତମର ମୋ ବିରୋଧରେ ଗୋଟାଏ ମୌଖିକ ଅଭିଯୋଗ ସବୁବେଳେ– କୁଆଡ଼େ ମୋ' ହାତରେ ତୁମେ ପେଙ୍ଗେଇ ଯାଉଛ, କେମିତି ଗୋଟାଏ ହୋଇ ବାହାରୁଛ ଯୋଉଟା ତମେ ନୁହଁ । ତମେ କୁଆଡ଼େ ମତେ ଖୁବ୍ ଭଲପାଅ, ଅଥଚ ମୋର ଖାଲି ତମକୁ ସେଣ୍ଟ୍ ପର୍‌ସେଣ୍ଟ୍ ଘୃଣା, ଯେତେକ ଗୋହିତଡ଼ା କାମ ମୋର, ଖାଇ ନିନ୍ଦା ପତରହଗା ସ୍ୱଭାବ– ଏଇ ସକାଶେ ତମେ ମୋ' ଉପରେ ଖୁବ୍ ବିଗିଡ଼ିଯା, ଏମିତିକି ବେଳେବେଳେ ମୁହେଁ ମୁହେଁ ଶୁଣେଇ ଦିଅ– ଖାଲି କ'ଣ ଏକା, ପାଞ୍ଚ ପଚିଶି ଆଗରେ, ପଛରେ, ଯେମିତିକି ପୂରା ମୋ ହାଡ଼ରେ ଲାଗିବ, ଆଉ ମୁଁ ଖାଲି ଜଳିବି । ମୁଁ ଜଳେ, ଚୋସ୍ତ ଜଳେ । ଜାଣ ତ ମୋର ଚିଡ଼ା ପ୍ରକୃତି, ଭଲରେ ହେଲା ତ ହେଲା, ନହେଲେ ଢୋ କରିଦବା ଗୁଣ– ମୁଁ ସିଧାସିଧା ଶୁଣାଏ– ତମ ହାଡ଼ ଗଣ୍ଠି ପବ, ପୂରା ମଗଜରେ ବାଜି ମଞ୍ଜ ଥରେଇବା ପର୍ଯ୍ୟନ୍ତ ମୋ ବାଣ– ତା'ପରେ ଯୋଉ କଥାକୁ ସେଇ କଥା– ତମେ ଆଉ ମୁଁ ଯେମିତି, ସେମିତି । ମସ୍‌ଗୁଲ୍ ହଉ, ଟାହି ଟାପରା ହଉ, ତମେ ଏକା କିକ୍‌ରେ ତମ ବୁଲେଟ୍‌କୁ ଗର୍ଜେଇ ଦିଅ, ମୋ ଛାତି କମ୍ପା ଆରମ୍ଭ ହୁଏ, ମୁଁ ପାଲଟି ଯାଏ ମେଣ୍ଢା, ବସେ ତମ ପଛରେ, ସତେ ଅବା ତମକୁ ଗୋଟାପଣ କୁଣ୍ଢେଇ ପକେଇବି ଭୟରେ, କିନ୍ତୁ କୁଣ୍ଢାଏନା– ଜାଣେ– କାହା ଆଗରେ ତମେ ପୁଣି କହିଦେବ ଯେ ଏ ବିଷ୍ଣୁ ମଳିକ ତମକୁ କୁଣ୍ଢେଇଲା, ଶଳାର ଦସ୍ତୁର ଖରାପ, ଲୋକ ନ ଚିହ୍ନି କୁଣ୍ଢୋଉଚି । ବାସ୍, ସେମିତି ଭୟରେ ଥରି ଥରି ମୋର ପିତୃଦତ୍ତ ପ୍ରାଣକୁ ତମ ପଛରେ ଲାଙ୍ଗୁଡ଼ ବନେଇ ଲଟକି ରହେ– ତଣ୍ଟି ଶୁଖେ, ଓଠ ଫାଟେ– ତମେ ଠିକ୍ ବୁଝିପାର, ବେଳକାଳ ଦେଖି ନିଗାଡ଼ିଦିଅ କିଛି ଦହଡ଼ ପାଣି ମୋ ପାଟିରେ, ମୋ ପ୍ରାଣ ରହେ, ତାରିଫ୍ କରେ ତମର– ତମ ଜମିଦାରୀ ଥାଟ, ସାହେବୀ କାଇଦା, ବାଟୁଳି ମରା ଇଙ୍ଗ୍‌ଲିଶ୍– ଯାହା କୁହ–

ଏମିତି ଗୋଟା କିଏ ପୁଅ ଏ ଖଣ୍ଡମଣ୍ଡଳରେ ଅଛି ତମ ମୁହଁରେ କଥା କହି ବର୍ତ୍ତିଯିବ– ତମ ଜାଲ ବିସ୍ତରିଚି ଏ କୋଣରୁ ସେ କୋଣ, ଯୁଆଡ଼େ ଚାହିଁବ ତମ ସତୀର୍ଥମାନେ, ଡେର ପଶିଚି ଯେ ଭିତରକୁ ଓପାଡ଼ିବାକୁ ବୀର ଭୀମସେନ୍‌ର ତାକତ, ଶକୁନିର ବୁଦ୍ଧି, ଅର୍ଜୁନର ଗାଣ୍ଡିବ ଏବଂ ଦ୍ରୋଣ ପରିକା ଗୁରୁ ଆବଶ୍ୟକ– ଏତେ ଗୁଣରେ ଏକ ହେଲେ ଯାଇଁ ତମ ଡେରରେ ହାତ ମାରିବ, ନହେଲେ ଓଲଟା ଛିଟ୍‌କିଣି ମାଡ଼ରେ ସେ ଲେପ୍‌ଟେଇ ପଡ଼ିବ, ଯେମିତି ବାଜିଚି ଗୋଟା ଦି'ଟାଙ୍କ ଛାତିରେ, ହ୍ୟାପ ମାସ ମାସ ଧରି 'ବୋପାଲୋ', 'ମାଆଲୋ' ହଉଚନ୍ତି ।

ତମେ ବୁଲେଟ୍‌ରେ ବସିବା ମାତ୍ରେ କଣ୍ଟା ଯାଇ ଲାଗେ ସତୁରୀ ଟପି ଅଶୀ କି ପଞ୍ଚାଅଶୀରେ । ମୁଁ ହାଉଳି ଖାଇଯାଏ ସେଇ ସକାଶେ । ମୋ' କାନମୁଣ୍ଡା ଝାଇଁଝାଇଁ ହୋଇଯାଏ, କେତେ ନେହୁରା କରେ ତମକୁ– ହେ ଭାଇ, ଟିକେ ସ୍ପିଡ୍ କମା ! ହଁ, ସାଙ୍ଗେ ସାଙ୍ଗେ ତମେ ଟିକେ କମେଇଦିଅ, କିନ୍ତୁ ସତୁରି ତଳକୁ ଖସେନା କଣ୍ଟା, ତେବେ ଅଶୀ ଟପେନା । ପୁଣି ଆଉଟିକକୁ ଯୋଉ କଥାକୁ ସେଇ କଥା– କଣ୍ଟା ଆସି ଅଶୀ । ସେ ପାଖରେ ପୁଣି ନଡ଼ବଡ଼ ହୁଏ । ଆଉ ଏ ସ୍ପିଡ୍ କମିବନି, ଏ କଥା ମୁଁ ବେଶ୍ ଜାଣେ । କେବେ ଚଢୁଥିଲ ସାଇକେଲ୍ ପିଲାଦିନେ, ତା'ପରେ ରିକ୍‌ସା, ରିକ୍‌ସାରୁ ସ୍କୁଟର, ଏବେ ବୁଲେଟ୍, ବୁଲେଟ୍ ଛାଡ଼ି ଧରିବ କାର୍, ଆଉ କ'ଣ ବସ୍ ନା ଟ୍ରକ୍ ଚଳେଇବ– ଏଡ଼େ ବଡ଼ କଥା ମୁଁ କହିବି, ଜିଭରେ ହାଡ଼ ହେଲାଣି କି ମୋର ! କିନ୍ତୁ ତମ କବିତା ଲେଖାଟା କମି ଯାଉଚି କାହିଁକି ? କିହୋ, କ'ଣ ପାଞ୍ଚ ସାତ ବର୍ଷରେ ବୁଢ଼ା ନା ମସଲା ଖତମ ?

ବୁଲେଟ ପରିକା ଗତି ଓ କଥା ଠେଲା ଗାଡ଼ି ପରି ତୁମ କବିତା ! ସେଇ ସକାଶେ ଦିନେ ନ କହି ନ କହି ମାଇଲି ଛାଟେ ତମକୁ, କହିଲି– ହଁ, ସିଂହ ଜାତୀୟ ପ୍ରାଣୀ ତମେ, ପ୍ରସବିବା ଧନ୍ଦା ତମର କମ୍, କିନ୍ତୁ ଯାହାକୁ ଛାଡ଼ିବ ସିଏ ହବ ସିଂହ ଛୁଆ । ଆଉ ମୁଁ ? ମୁଁ ତ ହେଲି ଘୁଷୁରି– ସଡ଼ସଡ଼ କରି ଖାଇବି, ଜନ୍ମ କରିବି ବହୁତ, ସେମିତିଆ ମୋର ଗପ ।

ଆହା, ତୁମେ ଏକଥା ଶୁଣି ଏମିତି ଲାଜେଇଗଲ କ'ଣ ମ ! କ'ଣ ତମେ ଆଉ ସିଂହ ଛୁଆ ନୁହଁ କି ? ନା ମୁଁ ଘୁଷୁରି ନୁହେଁ, ବାଘ କି ଭାଲୁ ?

ଯାହା ହେଉ ପଛେ, ଏଇଠାରୁ ତମେ ମୋ ପାଇଁ ତୃତୀୟ ପୁରୁଷ ବହୁବଚନ ପାଲଟି ଯାଅ । ବହୁତ ଟେକାଟେକି, ଚୁମୁଟା ଚୁମୁଟି କଲିଣି ତମକୁ– କେତେବେଳେ ତମ ଲାଙ୍ଗୁଡ଼ ମୋଟୋଉଚି ତ କେତେବେଳେ ଶୁକୁଟି ଯାଇ ଚଡ଼ି ତଳେ ଲୁଚି ଯାଉଚି । ଆରେ ତମ ବୁଲେଟ ହେଲା ମୋ ଆଗରେ ଗତି ଓ ପ୍ରବୃତ୍ତିର ଏକ ପ୍ରତୀକ, ଆଉ ମୋ ସାଇକେଲ୍ ଏସବୁର ଅନ୍ତରାୟ– ନା, ମୁଁ ବି ଆଗୋଉଚି । କିନ୍ତୁ ସେଥିରେ ବାୟୁମଣ୍ଡଳ ଥରି ଉଠୁନାହିଁ, ଗହଳି ରାସ୍ତାର ଭିଡ଼ ଆଡ଼େଇ ହେଇଯାଉନି, ମୋର ଟିଙ୍ଗ୍ ଟିଙ୍ଗ୍ ଘଣ୍ଟି ଶବ୍ଦ ମୃତ୍ୟୁମୁଖୀ କଙ୍କାଳର ଅନ୍ତିମ ବ୍ୟାକୁଳତା ଯେଉଁଥିରେ ସ୍ପନ୍ଦନ ନାହିଁ, ଦମ୍ଭ ନାହିଁ, ବିଦ୍ରୋହ ନାହିଁ, ଷଡ଼ଯନ୍ତ୍ର ନାହିଁ– ଯାହାକୁ ସହଜରେ ଏଡ଼େଇ ଦିଆଯାଇପାରେ । କିନ୍ତୁ ଦଶ ହଜାର ମୂଷାଙ୍କ ବିଦ୍ରୋହ 'ବିଶପ୍ ହାଟୋ' ପାଇଁ ଯଥେଷ୍ଟ– ତା' ଅନ୍ତିମ ମୁହୂର୍ତ୍ତର ଭୟାବହ ରୂପ ତା' ନିଜ ପାଇଁ ଏବଂ ଅନ୍ୟ ପାଇଁ ଶିକ୍ଷଣୀୟ, କିନ୍ତୁ ଶିଖୁଚି କିଏ ? ନିଜ ପାଇଁ ଏମିତି– ମୁଁ ଏକ ନିଷ୍ଫଳ ପ୍ରତିବାଦ– ମୋର ହୁଙ୍କାର ବା ଚିତ୍କାର ଏକ ଅବକ୍ଷୟର ନମୁନା ମାତ୍ର– ମୋର ମୃତ୍ୟୁରେ ଆକାଶ ଛିଣ୍ଡି ପଡ଼ିବ ନାହିଁ, ସମୁଦ୍ର ଫାଟି ଦୁଇଫାଳ ହେଇଯିବ ନାହିଁ, ଯୋଜନ ଯୋଜନ ବ୍ୟାପ୍ତିରେ ମୁଁ ଆଗୋଉଥିବି ସେଇ ସମୁଦ୍ରର ଗଭୀର ଫୁଟ୍‌ପାଥରେ, ମୋର ଦୁଇ ପାର୍ଶ୍ୱେ ଉଚ୍ଚାଙ୍ଗ ପ୍ରାଚୀର ସଦୃଶ ଜଳ-ଦୁର୍ଗ ଉହୁଙ୍କି ଆସି ଅଟକିଲା ପାଦରେ

ଅଟକି ରହିଥିବ, ମୁଁ ମାଡ଼ି ଯାଉଥିବି କେଉଁ ଅଲକ୍ଷ୍ୟର ସଂଧାନରେ– ବ୍ୟାକୁଳ, ବିବ୍ରତ, ତଥାପି ଗତି ଉଗ୍ର, ଶେଷରେ ଯାଉ ଯାଉ ସମୟର କେଉଁ ଅନ୍ତିମ ସୀମାରେ ଲୀନ ହେଇଯିବା ବିଧିନିର୍ଦ୍ଦିଷ୍ଟ– ନା– ଏମିତି ଯିବାକୁ ହୁଏ, ଯାଇ ଲେଉଟି ହୁଏନା– ସବୁ ଗର୍ବ ଅହଙ୍କାର ପୁତ୍ର ମିତ୍ର ପରିବାର ସମାଜ ଗୋଟାଏ ଲେଖା କା' ରୂପୀ ଦୂର ଦିଗ୍‌ବଳୟର ଲାଲ ସୂର୍ଯ୍ୟ, ତାକୁ କାଖ ତଳେ ଜାକି, ନଚେତ୍ ରଡ଼ ରଡ଼ କରି ଚୋବେଇ ପକେଇଲେ ମଣିଷଟା ମଣିଷ ହେଇ ରହିବ ନାହିଁ– ଏଇ ତ ମାନବରୂପୀ ଦାନବର ପରିଚୟ !

ଆଃ, ମୋର କଳ୍ପନାର ଉଦ୍‌ଗ୍ରୀବ ଅଶ୍ୱ ବନ୍ଧ ବାଡ଼ ପ୍ରତିବନ୍ଧକ ସ୍ୱୀକାର କରେନା, ସେଥିପାଇଁ ମୋର ଅବଲମ୍ବନ ଯାନ ଦଦରା ଆଟ୍‌ଲାସ୍ ତମର ପ୍ରବଳ ପରାକ୍ରମୀ ଦାନବ ଶକ୍ତିଧାରୀ ବୁଲେଟ୍‌ର ସାମ୍‌ନା କରି ମଧ୍ୟ ବର୍ତ୍ତି ଯାଇଚି– ଏଇତ ମୋର ଗଳ୍ପ– ତା' ଭିତରକୁ ଆସେ କିଏ, ସେଥିରୁ ବାହାରିଯାଏ କିଏ, ସର୍ବତ୍ର ସେଇ ମୁଁ ଦ୍ୱ ବିଦ୍ୟମାନ– ସେ ପଙ୍ଗୁ ଅଥର୍ବ, ସେ ଅବହେଳିତ ଦଂଶିତ, ସବୁ ପ୍ରତିଯୋଗିତାରେ ସେ ଶେଷତମ ପ୍ରାର୍ଥୀ ଯାହାର ଉତ୍ତର ଶୁଣିବାକୁ ଧୈର୍ଯ୍ୟ ନଥାଏ କାହାର– ସବୁ ବିଫଳତା ପଛକୁ ପଛ ଲାଇନ୍ ଲଗେଇଚନ୍ତି ତା' ଭିତରକୁ ପ୍ରବେଶ କରିବା ପାଇଁ, ତେଣୁ ସେ ସେଇମାନଙ୍କ କଥା କହେ, ସବୁ କଥାକୁ ନିଜର କରି କହେ, ସେ ମୁହାଁମୁହିଁ ହେଇପଡ଼େ ତା'ର ପ୍ରତିପକ୍ଷର, ଛାତିକୁ ଛାତି ଲଗାଇ ଦିଏ, ପ୍ରତିପକ୍ଷର ହୁଙ୍କାରର ଜବାବ ଦିଏ ଶବ୍ଦର ବର୍ଚ୍ଛା ମାଡ଼ରେ, ପ୍ରତିପକ୍ଷ ଷଡ଼ଯନ୍ତ୍ର କରେ, ଉହୁଙ୍କି ଆସେ ତା'ର ମୁଣ୍ଡଟାକୁ ଝିଙ୍କି ଛିଣ୍ଡେଇ ନେବାକୁ, ଅଥଚ ଜଣା ନାହିଁ, ସେ ପଛେଇ ଯାଏ କିପରି ।

ଆଉ ତମେ– ତମେ ତ ଶବ୍ଦରେ ଉଚ୍ଚାଟ– ଦମ୍ ଦମ୍, ଦୁମ୍ ଦୁମ୍ ହେଇ ଲାଗ ଏଠି, ଲାଗ ସେଠି । ଆଚ୍ଛା କହିପାରିବ ବୁଲେଟ୍ ବନ୍ଧୁ– ସ୍ୱର୍ଗକୁ କି ରାସ୍ତା ଅଛି ବୁଲେଟ୍‌ରେ ଯାଇ ହେବ ସେଠାକୁ ? ତମ ଚାରିପାଖର ପରିବେଶ ଏକ ଆଟୋପର କାଚଘର, ସେଥିରେ ଟେକାଟିଏ ବାଜିଲେ ଦୁଲ୍ ଦୁଲ୍ ହେଇ ଖସି ପଡ଼ିବ କାଚଖଣ୍ଡ ସବୁ, ଅଥଚ କେହି ଏପର୍ଯ୍ୟନ୍ତ ଗୋଡ଼ିଟିଏ ଫିଙ୍ଗି ନାହାନ୍ତି ତା' ଦେହକୁ । ତଥାପି ତମେ ଏତେ ଆତଙ୍କିତ, ସତର୍କ, ସଜ୍ଞାତ, ବୁଦ୍ଧିମାନ, ବିଚାରଶୀଳ ! ସ୍ୱର୍ଗରେ ଆଟର୍ଣ୍ଣି ଜେନେରାଲ ପୋଷ୍ଟଟା ଖାଲି ପଡ଼ିଚି, ଦରଖାସ୍ତଟା ଛାଟି ଦିଅନା ଥରେ, ଟେକି ନେବ ଆସି ତୁମକୁ ଦେବଦୂତଟିଏ– ତା'ପରେ ଚେଷ୍ଟା କରିବ କେମିତି ନିର୍ଧୁମ ଖରାବେଳରେ ପରିସ୍ରା ପୋଡା ରୋଗୀଟିକୁ ନିମୋନିଆଁ ହୋଇଚି କହି ମୋଟା କମ୍ବଳ ଘୋଡ଼େଇ ଦିଆଯାଏ, ନଚେତ୍ ଖୁବ ଶୋଷିଲା ଲୋକଟି ଆଗରେ ଫିସ ଆକ୍ୱାରିଅମ ରଖି ତା'ର ଶୋଷକୁ ଉପଭୋଗ କରାଯାଇ ପାରେ- ଆଃ, ଏମିତି କ'ଣ ଗୁଡ଼ାଏ ବେକାର କଥା ମୋ' ମୁଣ୍ଡ ଭିତରକୁ ଧସେଇ ପଶୁଚି–ଏସବୁ ବାଜେ କଥା–ତମ କବିତାରେ ମୁଁ ସେଇ ଅନାବଶ୍ୟକ ଅଲୋଡ଼ା ଲୋକଟି ଯିଏ କି ତମକୁ ନପାଇ ଅନେକ ଥର ଫେରି ଆସିଚି ଏବଂ ତମର ସେଇ ଗୁଲଗୁଲିଆ ଚୁପ ସଇତାନ ଚାକର ଟୋକା କହି ଦେଇଚି ତମକୁ, ତମର ସେଇ ନବାବୀ ଢାଂଚା ପ୍ରଶ୍ନର ଉତ୍ତରରେ– 'ଆସିଥିଲେ ସାଇକେଲ ଚଢ଼ା ବାବୁ ।'' ଏତେ ପଚାରିବା ଦରକାର ନଥାଏ– ''ସେଇ ଯୋଉ କଳାଭୁଆଁ କଙ୍କାଳଟା, ଆସିଥିଲା କି ସେ ?'' ବାଳକ ଉତ୍ତର ଦିଏ, ''ହଁ ଆଜ୍ଞା, ଆସିଥିଲେ ।'' ବାସ୍, ସେତିକିରେ ମୋର ଅନାବଶ୍ୟକତା ଜାହିର ହୋଇଯାଏ, ମୋର ସ୍ଥିତି ପୁଣି କେତେ ପାଦ ତଳକୁ ଖସି ଆସେ–ତୈଳାକ୍ତ ଖୁମ୍ବରେ ବାରମ୍ବାର ତଳକୁ ଖସି ପଡୁଥିବା ପୋକଟି–ତାକୁ ଦୟା କରିବ କିଏ, ଆଉ କାହିଁକି ?

ଚୁପ କ୍ର ବେଟା, ମୁଁ ତୋର ଦୟା ଚାହେଁନା—ଚାହେଁ ଘୃଣା, ତିକ୍ତତା, ବିଦ୍ରୂପ, ଅଟ୍ଟହାସ୍ୟ, ଯଷ୍ଟି ପ୍ରହାର— ଚାହେଁ ଲଗେଇ ଦେ ମୋଠେଇଁ ତୋର ଦ୍ୱାର ବନ୍ଧର ସେଇ ଦୁର୍ଦ୍ଦାନ୍ତ ଆଲ୍‌ସେସିଆନଟାକୁ, ସେ ମୋତେ ଝୁଣି ରାମ୍ପି ଖିନ୍‌ଭିନ୍ କରିଦଉ ଏବଂ ଶେଷରେ କିଛି ସମୟ ପାଇଁ ପଡ଼ି ରହୁ ମୋର ରକ୍ତାକ୍ତ କଙ୍କାଳଟା ତୋର ବଙ୍ଗଲୋର ଗେଟ୍ ଆରପାଖ ବିଚ୍ ରାସ୍ତା ଉପରେ ଏ ସହରର ବୁଭୁକ୍ଷୁ ହାଡ଼ଚଟା କୁକୁରଗୁଡ଼ାକ ପାଇଁ । କିନ୍ତୁ ମନେରଖ, ମୋର ସେଇ କଙ୍କାଳର ପଞ୍ଜରା ଫାଙ୍କ ଭିତରେ ଘୂରି ବୁଲୁଥିବା ପବନ ଏକ ପ୍ରଳୟଙ୍କରୀ ବାତ୍ୟାର ଆଦ୍ୟ ସୂଚକ— ଯେତେବେଳେ ଏଇ ସୁଲସୁଲିଆ ପବନ ଭୟଙ୍କର ବାତ୍ୟା ରୂପ ନେଇ ମାଡ଼ି ଆସିବ ଅଚାନକ, ସେତେବେଳେ ତୁ ନା ଆଉ କିଏ— କେହି ରକ୍ଷା ପାଇବେ ନାହିଁ— ଏକ ଅତୃପ୍ତ ଆତ୍ମା କି ଲୋମହର୍ଷଣ ପ୍ରତିକ୍ରିୟା ସୃଷ୍ଟି କରିପାରେ, ସେଥିରେ ଟିକ୍ ଟିକ୍ ହେଇ ମିଳେଇ ଯିବ ତୋର ଅହଂକାର, ଗର୍ବ, ଖାନଦାନୀ, ବୁନିଆଦି, ସବୁ ଗୋଟି ଗୋଟି କରି ମିଳେଇ ଯିବରେ, ସେତିକି ପାଇଁ ସବୁର କର !

ହେ, ଡରି ଯାଉଚ କି ପ୍ରିୟବନ୍ଧୁ ? ଆରେ ମୁଁ ଛାର କିଏ ତମକୁ ଚମକେଇବି, ଡରେଇବି ? ମୁଁ ବରଂ ନିଜେ ଡରି ଯାଉଚି, ଶଙ୍କି ଯାଉଚି ତମ ବୁଲେଟ୍‌ର ସ୍ପିଡ ଦେଖି । ତମେ ଗୋଟାଏ କ'ଣ ଏତେ ଜୋର୍‌ରେ ଗାଡ଼ି ଚଲୋଉଚ ଯେ ରାସ୍ତାଘାଟ କମ୍ପି ଉଠୁଚି, ପବନ ପିଟି ହେଇଯାଉଚି— ଆଃ, କାଳେ କ'ଣ ଘଟିଯିବ ଯଦି ! ମୁଁ ହେଇତ ମାସେ ତଳେ ଦେଖି ଆସିଚି ତମ ଘରେ ତମର ସେଇ ଦେଢ ବର୍ଷିଆ ଛୋଟ ପୁଅକୁ, ଏପର୍ଯ୍ୟନ୍ତ ଠିକ୍ ଚାଲି ଶିଖିନି ସେ, ଶୁଖିଲାରେ ଝୁଣ୍ଟି ପଡୁଚି ଥରକୁ ଥର, ଆଣ୍ଠେଇ ପଡୁଚି, ତମ ମୁହଁକୁ ଚାହୁଁଚି କୁଳୁକୁଳୁ କରି । ଆଉ ତମର ପତ୍ନୀ—ତାଙ୍କୁ ମୁଁ କେବେ ଦେଖିନାହିଁ, ଚାରିବର୍ଷ ହେଲାଣି ତମର ବାହାଘର, ତଥାପି ଦେଖିବାର ସୁଯୋଗ ମିଳିନି ମତେ—ସେଥିପାଇଁ ମୋର ଆପତ୍ତି ନାହିଁ କି ଇଚ୍ଛା ନାହିଁ । ତେବେ ତାଙ୍କର ସୁନା ଚୁଡ଼ି ଏବଂ ସେଇ କୁନିପୁଅର ହସ ପାଇଁ ତମେ ସ୍ପିଡ୍ ଟିକେ କମେଇ ଦେଲେ କ'ଣ ଚଳନ୍ତାନି ? ମୋ ଡାକ ତମକୁ ଶୁଭୁ ବା ନଶୁଭୁ—ଅନ୍ତତଃ ସେମାନଙ୍କ ପାଇଁ ଟିକେ ?



# ମୋକ୍ଷ

## ପ୍ରତିଭା ରାୟ

ଗୋଟିଏ ଘରେ ପୁରୁଷଟିଏ ନାରୀଟିଏ ପାଇଁ ଚାଳିଶ ବର୍ଷ ଧରି ସୁଖ-ଦୁଃଖ ଶୋକ ଦୈନ୍ୟର ଭାଗୀଦାର ହୋଇ ଚଳିଲେ; ହେଲେ, ମୁହଁ ଚାହାଁଚାହିଁ ହୋଇନାହାନ୍ତି, କଥାଭାଷା ହୋଇନାହାନ୍ତି ଛୁଆଁ ଛୁଇଁ ତ ଦୂରର କଥା ।

ନୁରିଦାସ 'ଶୋଷୀ'ର ମୁହଁକୁ ସିଧାସଳଖ ଚାହିଁଲେ, ସେ ନୁରି ଦାସ ଘରକୁ ଆସିବାର ପଇଁଚାଳିଶ ବର୍ଷ ପରେ, ଶ୍ମଶାନରେ ଜୁଇ ଉପରେ, ନୁରି ଦାସଙ୍କ ଏକମାତ୍ର କୁଳକଳଙ୍କ ପୁଅ 'ସତିଆ' (ଯିଏ 'ମିଛୁଆ' ବୋଲି ଖ୍ୟାତ) 'ଶୋଷୀ'ର ମଲା ମୁହଁରେ ନିଆଁ ଦେଲାବେଳେ ।

ନୁରି ଦାସଙ୍କୁ ଶୋଷୀର ମୁହଁଟା ଝାପ୍‌ସା ଦିଶୁଥିଲା । କାରଣ ସେତେବେଳକୁ ତାଙ୍କ ଆଖିର ପରଳରେ ପର୍ଦ୍ଦାଟିଏ ପଡ଼ିସାରିଥିଲା । ବୟସ ହେଲାଣି ଅଣଷଠି । ଶୋଷୀର ଅଠାବନ ବର୍ଷ ମୁହଁର ମଲା ଚମଡ଼ାରେ ସୋରାଏ ଦି'ପହର ଖରା, ଧଳା ବଉଦ କାଟି ପଡ଼ିଥାଏ, ଯେମିତି ସତିଆ ତା' ମୁହଁରେ ନିଆଁ ଦେବା ଆଗରୁ ଆକାଶ ଆଡୁଆଳରୁ ଆଉ ଜଣେ କିଏ ନିଆଁ ଧାରଟିଏ ବଢ଼େଇ ଦେଉଥିଲା । ତା' ସତ୍ତ୍ୱେ ଶୋଷୀର ମୁହଁଟା ପ୍ରକୃତରେ କେମିତି, ସେ କଥା ନୁରି ଦାସ ଠଉରେଇ ପାରିଲେ ନାହିଁ । ଜାଲଜାଲୁଆ ମୁହଁର ଛାପଟିଏ । ବାସ୍, ସେତିକିରୁ କ'ଣ ବା ଠଉରେଇ ହବ, ପଇଁଚାଳିଶ ବର୍ଷ ତଳେ ସେ ମୁହଁଟା କେମିତି ଥିବ ! ଭଲ ହେଲା । ପ୍ରଥା ଅନୁସାରେ ଶୋଷୀର ମଲା ମୁହଁଟାକୁ ମଧ୍ୟ ନୁରି ଦାସ ଦେଖିବା ନିଷେଧ ।

ଶବଦାହ ସାରି ଘରକୁ ଫେରିବା ପରେ ଘରଟା ନୁରି ଦାସଙ୍କୁ ବଡ଼ ଏକାଟିଆ ଲାଗିଲା । ପୃଥିବୀଟା ଖାଁ ଖାଁ ଖାଇ ଗୋଡ଼େଇଲା । ସେ ଘର-ଅଗଣାକୁ ପଶି ପାରିଲେ ନାହିଁ, ଯେଉଁଠି ପଇଁଚାଳିଶ ବର୍ଷ ଧରି ସେ ଶୋଷୀର ପାଦ ଦୁଇଟାକୁ ଚଳପ୍ରଚଳ ହେଉଥିବାର ଦେଖିଥିଲେ ।

ଯେଉଁଠି ଶୋଷୀର ହାତ ଦୁଇଟା ତାଙ୍କୁ ଦି'ଓଳି ଭାତ ତିଅଣ ବାଢ଼ି ଦେଉଥିଲା, ସେ ବାରେଣ୍ଡାରେ ବି ସେ ବସି ପାରିଲେ ନାହିଁ । ସେ ଦାଣ୍ଡପଟ ବଗିଚାର ବୁଢ଼ା କଲମୀ ଆମ୍ବ ଗଛମୂଳେ ଯାଇ ବସିଲେ ଲଥ ହୋଇ । ଭାବିଲେ ଶୋଷୀ ସଙ୍ଗେ ତାଙ୍କର କି ସମ୍ପର୍କ ଯେ ସେ ମଲା ବୋଲି ତାଙ୍କୁ ଘରଦ୍ୱାର ଖାଇ ଗୋଡ଼ଉଛି ?

ଶୋଷୀର ପାଦ ଦୁଇଟାକୁ ଦେଖିଲେ ନୁରି ଦାସ ଆଡ଼େଇ ହୋଇ ଯାଉଥିଲେ, ଭାତକଂସା ଧରା ହାତ ଦୁଇଟି ଲମ୍ବି ଆସିଲେ ସେ ସାଙ୍କୁଡ଼ି ଯାଉଥିଲେ । ନୁରି ଦାସ କାନ୍ଥକୁ-ବାଡ଼କୁ ଦେଖେଇ କଥା କହିଲେ ଶୋଷୀ କାମ କାର୍ଯ୍ୟରେ ଜବାବ ଦେଉଥିଲା । ନୁରି ଦାସଙ୍କର କେତେବେଳେ କେଉଁଟା ଦରକାର ଶୋଷୀ ଜାଣିଥିଲା । ତେଣୁ ଡାକିହାକି କହିବା ବି ଦରକାର ପଡୁ ନଥିଲା । ଶୋଷୀ ସବୁ ଜିନିଷ ସମୟ ମୁତାବକ ତାଙ୍କ ଆଗରେ ରଖିଦେଉଥିଲା । ସକାଳ ଖରା ପଡ଼ିଲେ ଗୁଡ଼ଦିଆ ନାଲି ଚାହା, ଚାଉଳଭଜା, ତା' ପରକୁ ପାନ ଚାରିଖଣ୍ଡ । ନୁରି ଦାସ ସେତକ ସାରି ବଗିଚା ଆଡ଼େ ବାହାରିଲେ, ଶୋଷୀ କୋଡ଼ି, ଫାଉଡା, ଖଣତି, ଗାଣ୍ଡୁଆ, ବାଲ୍‌ଟି ଯାହା ଯୋଉ

ଦିନ ଲୋଡ଼ା, ଜାଣିଲାମିତି ବଗିଚାରେ ରଖିଦେଇ ଆସୁଥିଲା । ନୁରି ଦାସ ବଗିଚା କାମ କରୁ କରୁ ଶୋଷୀର ତୁଉଣ ଛୁଙ୍କ ଚେତାଇ ଦେଉଥିଲା ଯେ ସୂର୍ଯ୍ୟ ମୁଣ୍ଡ ଉପରୁ ଢଳିଲେଣି—ଏଥର ଗାଧୁଆବେଳ । ନୁରି ଦାସ ବଗିଚା ଛାଡ଼ି ଘରେ ନ ପଶୁଣୁ ଦାଣ୍ଡ ବାରଣ୍ଡା ଉପରେ ତେଲ ଶିଶି ଥୁଆ ହୋଇଥିବ । ତେଲ ମାଖି ବଗିଚା ଭିତରେ ଛୋଟ ଗାଡ଼ିଆରେ ବୁଡ଼ ପକେଇ ଆସିବା ବେଳକୁ ପୂଜାପାଠ ପାଇଁ ଆସନ, କୋଥଳି ଦୁଆରପଟ ବାରଣ୍ଡାରେ ରଖାଯାଇଥିବ । ନୁରି ଦାସ ପଦ୍ମାସନରେ ବସି ବାହୁରେ ତିଳକ ଗାର କାଟିବେ । କପାଳରୁ ନାକ ଅଗ ପର୍ଯ୍ୟନ୍ତ ଚିତା କାଟିବେ । କପାଳର ଦି'ଗାର ଲମ୍ବଚିତା ଭିତରେ ସୁଉକି ଆକାରର ତିଳକ ଠୋପା ଦେବେ । ଛାତିରେ କାଟିବେ ତିଳକ ଗାର । ତା'ପରେ ପୂଜାପାଠ । ଜପ, ତପ, ପ୍ରଣାମ । ପ୍ରଣାମ ସାରି ମୁଣ୍ଡ ଉଠାଇଲା ବେଳକୁ ଭାତ ତୁଉଣ ବଢ଼ା ସରିଥିବ । ଖାଇ ବସିବେ ସୁନାପୁଅ ପରି । ଲୁଣିଆ ଅଲଣା କିଛି ପାଟି ଫିଟେଇବେନି । ରାଗ ଅରାଗ ବାରିବେନି । ସୁଆଦ ଅସୁଆଦ ବାଛିବେନି । ଶୋଷୀ ବି ପଚାରିପାରିବନି କେମିତି ହୋଇଛି–ଭଲ ନା ମନ୍ଦ । ତେବେ ଶୋଷୀ ସେ କଥା ଜାଣିପାରିବ ନୁରି ଦାସଙ୍କର ପଛରେ ଭାତ ଘିନିବା ନ ଘିନିବାରୁ ।

ଶୋଷୀ ବଡ଼ ହୁସିଆର ହୋଇ ବଡ଼ ଯତନରେ ରାନ୍ଧୁଥିଲା ନୁରିଦାସଙ୍କ ପାଇଁ । ବିଚରା କିଛି ସିନା କହିପାରୁ ନାହାନ୍ତି ଅକାଳରେ ପଡ଼ି, ନ ହେଲେ ଭୋକ ଲାଗୁଥିବ, ରାଗ ହେଉଥିବ, ମୁଣ୍ଡକୁ ପିତ୍ତ ଉଠୁଥିବ ତ ନିଶ୍ଚେ, ପୁରୁଷ ପୁଅ ହୋଇ କେଡ଼େ ସଂଯତରେ ଚଳୁଥା'ନ୍ତି ନୁରି ଦାସ, ସେ କଥା ଶୋଷୀ ଛଡ଼ା ଆଉ କିଏ ଜାଣେ ?

ନୁରି ଦାସ ସିନା ଶୋଷୀର ଦେହ ମୁହଁକୁ ଦେଖିପାରନ୍ତି ନାହିଁ; ଶୋଷୀ କିନ୍ତୁ ଓଢଣା ତଳୁ ତାଙ୍କୁ ଦେଖିଥିବ ! ଯୁବାକାଳରୁ ସେ ଯେମିତି ଥିଲେ, ସେମିତି ଅଛନ୍ତି । ମୋଟା ହୋଇ ନାହାନ୍ତି କି ଝଡ଼ି ଯାଇ ନାହାନ୍ତି । ଖାଲି ଯାହା ଟୋକାରୁ ବୁଢ଼ା ହୋଇଛନ୍ତି, ସିଧାରୁ ବାଙ୍କି ଯାଇଛନ୍ତି ଅଳପ । ହେଲେ ସୁନ୍ଦରରୁ ଅସୁନ୍ଦର ହୋଇନାହାନ୍ତି । ଯୁବାକାଳେ ଯୁବାପଣିଆରେ–ବୁଢ଼ାକାଳେ ବୁଢ଼ାପଣିଆରେ ବି ଗୋଟାଏ ସୁନ୍ଦରତା ଥାଏ– ଗୋଟାଏ ପୁରୁଷପଣିଆ ଥାଏ । ସେଥିରେ ନୁରି ଦାସଙ୍କର ସୂତାଏ ବି ଉଣା ହୋଇନି । ଆଣ୍ଠୁ ଉପରକୁ ଧୋବ ଫରଫର ଧୋତି–ଘରେ ଥିଲେ ଖାଲି ଦେହ, ହାଟବଜାରକୁ ବାହାରିଲେ ଧଳା କନାର ଫତେଇ । ବାସ୍, ଏତିକି ପୋଷାକ । ନାଲି ଗାମୁଛା ଖଣ୍ଡେ କାନ୍ଧରେ ପଡ଼ିଥାଏ ଘରେ-ବାହାରେ । ତଣ୍ଟିବନ୍ଧା ଦି'ସରି ତୁଳସୀମାଳି । ସର୍ବଦା କପାଳ, ନାକ ଓ ବାହୁରେ ଚିତା ଚଇତନ, ଏମିତିକି କାନ ଫଳିରେ ବି ଟିପେ ଲେଖାଁ ଚନ୍ଦନ । ଗାଉଁଲି ହିସାବରେ ଡେଙ୍ଗା ପାଞ୍ଚହାତିଆ ମର୍ଦ୍ଦ । ସାବନା ରଙ୍ଗ ହେଲେ ବି ବଡ଼ ସୌମ୍ୟ ଚେହେରା । ସିଧା ନାକ, ଓସାରିଆ କପାଳ, ସାନ ସାନ ହେଲେ ବି ତୀକ୍ଷ୍ଣ ଆଖି, କବାଟ ପଟା ଭଳି ଚଉଡ଼ା ଛାତି, ଜୁଆଳି ଭଳି ସିଧା ଦୀର୍ଘ କାନ୍ଧ, ଯେମିତି ପର୍ବତ ବୋହିନେବ । ହେଲେ ପେଟ ପଶି ଯାଉଥିବ, ଯେତେ ଖାଅ କି ନଖାଅ । କାମିକା ପରିଶ୍ରମୀ ହାତଗୋଡ଼– ଟିପ ନ ମାରି ବି କହିହେବ ଯେ ବଡ଼ ଶକ୍ତ । ମୋଟା ମୋଟି ମନେହେବ ସୁପୁରୁଷ–ହୁଅନ୍ତୁ ପଛକେ ଗରିବ ।

ଜମିବାଡ଼ି ନାହିଁ । କିଣିଖିଆ । ସମ୍ପତ୍ତି ବୋଇଲେ ଖଣ୍ଡେ ବାରି । ତା'ରି ଭିତରେ ଫଂସଲ । ଆମ୍ବ ଦି' ତିନିଗଛ, ସଜନା ଛୁଇଁ, କଦଳୀ, ପଣସକୁ ଛାଡ଼ିଦେଲେ ଋତୁବାରି ପନିପରିବା ଉପୁଜାଇ ହାଟରେ ବିକିଲେ ଘର ଚଳେ । ତେବେ ଆମ୍ବ ମାସରେ ରୋଜଗାର ଭଲ । କେଜାଣି କେଉଁଠୁ ଆସିଥିଲା ସେ ଚାରା । ତା'ର ମୂଳ ଇତିହାସ ନୁରି ଦାସ କହିପାରିବେନି । ବଡ଼ ଜାତିଆ କଲମୀ

ଆମ୍ବ । ଠ ଭଳି ଗୋଲ । ମାଉଁସିଆ–ଟିପରେ ଚିପି ହେଲାଭଳି ନାକ, ଆଗ ଆଡ଼କୁ । ବଡ଼ ପତଳା ଚୋପା । ଭିତରେ ଘି'କୁଆରୀ ଭଳି ଥଲଥଲ ଚିକ୍‌କଣ ମାଉଁସିଆ ଆମ୍ବ–ଜମାରୁ ଚେର ନାହିଁ । କାଟି ଖାଇବାକୁ ଭଲ । ବାସ୍‌ନାରେ ପେଟଠୁ ତାଳୁଯାଏ ଶିର୍ ଶିର ମହକିଯିବ । ହାଟରେ ବଡ଼ କାଟ୍‌ତି । ଆମ୍ବ ସରିଆସିବା ବେଳକୁ ଦାମ୍ ଚଢ଼ା । ନୁରି ଦାସ ଆମ୍ବର ଆକାର ଦେଖି ଦାମ୍ କଷନ୍ତି ।

ସେଇ ବଗିଚା ଖଣ୍ଡିକ ତିନିପ୍ରାଣୀ କୁଟୁମ୍ବର ଭାତଥାଳି । ବାରି ଭିତରେ ସାନ ଗଡ଼ିଆଟିଏ । ସେଇଥିରେ ଗାଧୁଆ ପାଧୁଆ । ବଗିଚା ପାଇଁ ବର୍ଷକ ବାରମାସ ତେଣ୍ଡା ବନ୍ଧା ହୋଇଥାଏ । ଖରାଦିନେ ଗଡ଼ିଆରେ ପାଣି ଶୁଖିଗଲେ ଚୂଆ ଖୋଳି କାମ ଚଳାଇବାକୁ ହୁଏ । ଆକାଶରେ ଯେମିତି ମନକୁ ତାରା ଫୁଟେ, ନୁରି ଦାସଙ୍କ ଗଡ଼ିଆରେ ସେମିତି ଛାଆଁକୁ ମୀନ ଖେଳନ୍ତି । ଗଡ଼ିଶା, କେରାଣ୍ଡି, ଦଣ୍ଡିକିରି, ମାଗୁର, କଉ, ଶେଉଳ, ତୋଡ଼ି, ଏମିତି କେତେ କେତେ ନାଆଁ ମାଛମାନଙ୍କର । ହେଲେ ନୁରି ଦାସଙ୍କ ପାଇଁ କୋଉ କାମର ନୁହେଁ । ନୁରି ଦାସ ଜାତିରେ ବଇଷମ । ସଂପୂର୍ଣ୍ଣ ପରିବାଭୋଜୀ । ମାଛ ମାଂସ ଘରେ ପଶିବା ମନା । ଗାଡ଼ିଆର ମାଛଗୁଡ଼ା ପାଣିକୁ ଆଇଁଷ କରନ୍ତି ବୋଲି ପଡ଼ିଶାଙ୍କୁ ଡାକି ମାଛ ଧରିନେବାକୁ ଅନୁମତି ଦିଅନ୍ତି । ହେଲେ ବାଡ଼ିର ଲଙ୍କାମରିଚରେ ହାତ ମରାଇ ଦିଅନ୍ତିନି ।

ଖରାଦିନଟି ବଡ଼ ନିଛାଟିଆ । ବାଇଗଣଗୁଡ଼ା ଗଛରେ ମୁଣ୍ଡି ପାଲଟିବ । ଲଙ୍କାମରିଚ ସେମିଟି ଯିବ, ଶାଗ ମଞ୍ଜିଆ ପାଲଟିବ । ଜହ୍ନି, କୁକୁଡ଼ି, ମକା, ଛଚିନ୍ଦ୍ରା, ଲାଉ କଖାରୁ ତ ଖରାଦିନରେ ସପନ । ଆଉ କାହା ଘରେ ତୁଉଣ ଶାଗ କଷ୍ଟ ହେଉଥିବ, ହେଲେ ନୁରି ଦାସଙ୍କ ଘରେ ଖରାଦିନଟା ଭାତ କଷ୍ଟ ବି । ପରିବା ବିକି ସେ ଚାଉଳ କିଣନ୍ତି । ଖରାଦିନେ କରିବେ କ'ଣ ?

ନୁରି ଦାସଙ୍କର ଆଉ ଗୋଟିଏ ରୋଜଗାର ପନ୍ଥା ଅଛି । ସେଇଟା ଆଗରୁ ଥିଲା ସଉକ । ତିନି ତିନିଟା ପେଟର ଦାଉ ସମ୍ଭାଳିବା ପାଇଁ ନୁରି ଦାସଙ୍କ ସଉକି ପରିଣତ ହେଲା ଖୋରାକିରେ । ରୋଜଗାର ମନ୍ଦ ହୁଏନି । ଅଷ୍ଟପ୍ରହରୀ, ଶ୍ରାଦ୍ଧ, ଶୁଦ୍ଧି, ମହୋତ୍ସବରେ ମୃଦଙ୍ଗ ବଜାଇ କୀର୍ତ୍ତନ କରି ନୁରି ଦାସ ଖରା ଚାରିମାସ ଚଳାଇ ଦିଅନ୍ତି । କୀର୍ତ୍ତନରୁ ଆଣନ୍ତି ଅରୁଆ ଚାଉଳ, ପାଚିଲା କଦଳୀ, ନଡ଼ିଆ, ଉଖୁଡ଼ା, ଚୁଡ଼ା, ହୁଡୁମ, ମିଷ୍ଟାନ୍ନ, ପଇସା, ଲୁଗା, ଗାମୁଛା । ନୁରିଦାସଙ୍କୁ କୀର୍ତ୍ତନ କରିବାକୁ ବଡ଼ ଭଲ ଲାଗେ । କେଜାଣି କେତେକାଳର ଅଭ୍ୟାସ । ସଞ୍ଜବୁଡ଼ଠୁଁ ନୁରି ଦାସ ଦାଣ୍ଡବାରଣ୍ଡାରେ ଅନ୍ଧାରଟାରେ ବସି ଆଖି ବୁଜି ମୃଦଙ୍ଗ ଟୁଙ୍ଗୁ ଟୁଙ୍ଗୁ କରୁଥିବେ । ତୁଉଣ ଛୁଙ୍କ ହବାଯାଏ । ଦିନେ ଦିନେ ନୁରି ଦାସଙ୍କ ଘରଆଡୁ ଅଧରାତି ଯାଏ ମୃଦଙ୍ଗ ଟୁଙ୍ଗୁ ଟୁଙ୍ଗୁ ଶୁଭୁଥାଏ । ନୁରିଦାସ ସଞ୍ଜପହରିଆ ମୃଦଙ୍ଗ ବଜାନ୍ତି ହାଉଲେ ହାଉଲେ, ଟୁଙ୍ଗ୍ ଟୁଙ୍ଗ୍ । ଅଧରାତିଆ ଭୋକିଲା ପେଟରେ ମୃଦଙ୍ଗ ବଜାନ୍ତି ଜୋର୍ ଜୋର୍ ଟଙ୍ଗ-ଟଙ୍ଗ ।

ସଂସାରରେ କେତେ ଜାତିର ଭୋକ ଅଛି–ମିଠା, ଖଟା, ରାଗ, ଲୁଣିଆ, ପିତା, କଷା ଭଳିକି ଭଳି ସୁଆଦ ପରିକା । ଭିନ୍ନେ ଭିନ୍ନେ ଭୋକର ଅନୁଭବ ବି ଅଲଗା ଅଲଗା । ଦେହର ଭୋକ- ପେଟର ଭୋକ- ମନର ଭୋକ, ଆତ୍ମାର ଭୋକ ଏଇ ଚାରିଟି ହଉଛି ମୂଳଭୋକ । ତା' ଦେହରୁ ଆଉରି କେତେ କେତେ ଭୋକର ଶାଖାପ୍ରଶାଖା ବାହାରି ଜୀବକୁ କାବୁ କରେ, ବୁଢ଼ିଆଣୀ ଜାଲ ଭଳି ଛନ୍ଦି ପକାଏ । ମାୟାଜୀବଟି ବିଚରା ''ଆରେ ଶୁଖା ଖଡ୍ ଖଡ୍–ମିଛମାୟାରେ

ପଡ଼ି ହେଉ ଲଡ୍ ବଡ୍-ଲଡ୍‌ବଡ୍-ଲଡ୍ ବଡ୍-'' ନୁରି ଦାସଙ୍କ ମୃଦଙ୍ଗ ତାଳ ଛିଡେ ଏଇଠି । ନୁରି ଦାସ ଦିଇଟି ଭୋକକୁ ମାନନ୍ତି । ପେଟର ଭୋକକୁ ଭୋଜନ, ଆତ୍ମାର ଭୋକକୁ କୀର୍ତ୍ତନ । ବାକି ଯେତେ ଭୋକ ତାକୁ ଟାଳିଦେବା ନୁରି ଦାସଙ୍କ ପକ୍ଷେ କିଛି କଷ୍ଟକର କଥା ନୁହେଁ । ପେଟର ଭୋକକୁ କୀର୍ତ୍ତନ ଟାଳି ପାରେନା; ହେଲେ ଦେହର ଭୋକ, ମନର ଭୋକକୁ ମୃଦଙ୍ଗ ମାଡ଼ରେ ଠେଲିପେଲି ଆତ୍ମାର ଭୋକ ସହ ମିଶେଇ ଦିଅନ୍ତି ନୁରି ଦାସ । ତାଙ୍କ ପାଖରେ ଦିଇଟା ଭୋକ ସତ୍ୟ ହୋଇ ରହିଯାଏ । ସେ ଭୋକ ମରେ ଭୋଜନ ଓ ଭଜନରେ... ହରେ କୃଷ୍ଣ ହରେ କୃଷ୍ଣ, କୃଷ୍ଣ କୃଷ୍ଣ ହରେ ହରେ... ହରେ ରାମ ହରେ ରାମ, ରାମ ରାମ ହରେ ହରେ...

ଶୋଷୀ ପେଟରେ କିଛି ଭୋକ ଥାଏ କି ନା ଜାଣିହୁଏନି । ଓଢ଼ଣା ତଳେ ସବୁ ଭୋକ ଅଦୃଶ୍ୟ ରହିଯାଏ । ନୁରି ଦାସଙ୍କୁ ଖାଲି ଦୃଶ୍ୟ ହୁଏ ଶୋଷୀର ଦୁଇଟା ଚାଲିଲା ପାଦ, କାମିକା ହାତ । ସକାଳ ସଞ୍ଜ ଶୋଷୀ ଚାଲୁଥାଏ, ଖଟୁଥାଏ । ତା' ହାତ ଦୁଇଟା ଗୁହାଳ-ଗୋବର କରେ, ଘଷି ପାରେ, ଘର ଦୁଆର ଲିପେ, ଘରବାରି ଓଳାଏ, ଜାଳେଣି କାଠିକୁଟା ଡାଙ୍ଗଡୁଙ୍ଗା ଗୋଟାଏ, ଭାତ ତୁଉଣ ରାନ୍ଧେ-ବାସନକୁସନ ମାଜେ... ସବୁ ଖାଲି ପେଟର ଭୋକ ପାଇଁ ନୁହେଁ, ଦେହର ଭୋକ, ମନର ଭୋକ ତା' ପାଦ ତଳେ ଗୋବର ସଙ୍ଗେ ଦଳିଚକଟି ହୋଇଯାଏ– ଲିପାପୋଛା ମାଟି ଗୋବର କନାରେ ମାଟିରେ ମିଶିଯାଏ– ଡାଙ୍ଗ ଡୁଙ୍ଗି ସଙ୍ଗରେ ଚୁଲିରେ ଜଳି ପାଉଁଶ ହୁଏ । ତା'ର ଆତ୍ମାର ଭୋକ ନୁରି ଦାସଙ୍କ କୀର୍ତ୍ତନ ସାଥିରେ ମୃଦଙ୍ଗ ତାଳରେ ବୋଧ ହେଉଥିବ କି ନା କିଏ ଜାଣେ ?

ଯୁବାକାଳେ ଶୋଷୀର ପାଦ ଦୁଇଟା ଧୋବଲା ଏଣ୍ଡୁରିପିଠା ଭଳି ଥିଲା ପତଳା–ବୟସ ବଢ଼ିବାରୁ ବାତଜ୍ୱରରେ ଚିତଉପିଠା ପରି ଫୁଲ୍‌କି ଉଠିଲା ମଝିରୁ । ପାଦ ଉପରେ କଳାମନ୍ଦାଏ– ଚିତାକୁଟାଫୁଲ । ଶୋଷୀର ହାତ ଦୁଇଟା ବଡ଼ ଛଚିନ୍ଦ୍ରାର ମଝି ଅଂଶ ପରି ନିଟୋଳ, ସରୁ କୋମଳ । ହାତ ପାପୁଲି ଦିଓଟି ଛୁଆଁପତର ଭଳି ପତଳା ନକନକ । ଯା'ବାଦେ ଶୋଷୀର ଚେହେରା ନୁରି ଦାସଙ୍କୁ ଅଗୋଚର—ବେଳେବେଳେ ଭାତ ବାଢ଼ିଦେଲା ବେଳେ ଶୋଷିର ମୁକୁଳା ବାହୁ ଦିଶିଯାଏ । ଖାଲି ଚିତାକୁଟା କୋଟିକମ-କଳା ନୀଳଚିତ୍ର । ଓଢ଼ଣା ତଳୁ ଦିଶେ ଓଲଟ କନିଅର ପାଖୁଡ଼ା ପରି ଫାଳେ ନାକ । ଚିପି ହୋଇ ସୁନାର ନୋଲିଟିଏ ଜଳଜଳ ଦିଶେ–ନାକ ଦିଶେ ନାହିଁ–ଏତେ କାଳ ଚଳାପ୍ରଚଳ ଭିତରେ ନୁରି ଦାସ ଘରେ ଥିବାବେଳେ ଶୋଷୀର ଦିହରୁ ମୁଣ୍ଡରୁ ଲୁଗା ଖସିଯିବାର କେହି ଦେଖିନି–ଯଦିବା ଖସିଛି, ନୁରି ଦାସଙ୍କ ଦୃଷ୍ଟି ଖସଡ଼ିଯିବାର କେହି ଦେଖିନି । ଦୁହେଁ ଏକୁ ଆରେକ ବଳି ସଂଯତ, ସଂଭ୍ରାନ୍ତ– ସମାଜର ନୀତିନିୟମ, ମୂଲ୍ୟବୋଧକୁ ଜାବୁଡ଼ି ଧରିବା ଯେମିତି ଗୋଟାଏ ରୀତିମତ ତପସ୍ୟା ।

ଶୋଷୀଠୁଁ ଦି'ବରଷ ସାନ ତା' ଭଉଣୀ ଶଶୀ ଯଦି ପୁଅ ଜନ୍ମକରି ତା' ଶାଶୁଘରେ ପ୍ରସୂତି ଯନ୍ତ୍ରଣାରେ ଆଖି ବୁଜିଥା'ନ୍ତା, ତେବେ ଶୋଷୀକୁ ସାରା ଜୀବନ ଓଢ଼ଣା ଉହାଡ଼ରେ ମୁହଁଛପା ଦେଇ ରୁନ୍ଧିଲା ଜୀବନ କାଟିବାକୁ ପଡ଼ି ନ ଥା'ନ୍ତା । ମାତ୍ର ଶଶୀ ପୋଖତୀ ହେଲା ନିଜ ବାପଘରେ । କାରଣ ଶଶୀର ଶାଶୁଘର ନାହିଁ । ଶଶୀର ସ୍ୱାମୀ ନୁରି ଦାସ ପହିଲେ ପାଞ୍ଚ ଭାଇଙ୍କ ଭିତରୁ ପୁଅ ହୋଇ ଆସିଥିଲେ ନିଃସନ୍ତାନ ମାମୁଁଘରକୁ । ପୁଅ ହୋଇ ଆସିବା ପରେ ମାଇଁ ଲାଗ୍ ଲାଗ୍ ତିନିପୁଅର ମା' ହେଲେ । ନୁରି ଦାସ ହେଲେ ପୋଷାପୁଅ, ଗୁଞ୍ଜା ଗୁଅ– 'ଏଇଟା କୁଆଡ଼େ ଯାଆନ୍ତା କି'ର ହତାଦର ଭାବ । ହେଲେ ନୁରି ଦାସ ଯିବେ କୁଆଡ଼େ ? ତାଙ୍କ ନିଜର ପୈତୃକ

ସମ୍ପତ୍ତି ସେମିତି କିଛି ନାହିଁ ବୋଲି ମାମୁଁଘରକୁ ପୁଅ କରି ପଠେଇଦେଲେ, ମାମୁଁଙ୍କ ସମ୍ପତ୍ତି ପାଇବେ ବୋଲି । ତାଙ୍କ ଚାରିଭାଇ ବାପାଙ୍କ ଅନ୍ତେ ସମ୍ପତ୍ତି ଚାରି ଭାଗ କରି ଯାହି ତାହି ଚଳୁଛନ୍ତି । ନୁରି ଦାସ ଯୁବକ ହେଲେଣି । କୋଉ୍ ମୁହଁରେ ଲେଉଟି ଯାଇ ଭାଇମାନଙ୍କ ଭାତରେ ଭାଗ ବସାଇବେ ? ତାଙ୍କର କ'ଣ ମାନ ଅଭିମାନ ବୋଲି କିଛି ନାହିଁ ?

ସେତିକିବେଳେ ଶୋଷୀର ବାପା ଶଶୀ ପାଇଁ ଘରଜ୍ୱାଇଁ ଖୋଜୁଥିଲେ । ଶୋଷୀ ସେତେବେଳକୁ ବାଳୁତ ବିଧବା ହୋଇ ଘରେ ଥିଲା । କୁଳରକ୍ଷା କରିବାକୁ ଭାଇ ବକଟେ ନାହିଁ । ଶୋଷୀ ତ ତିନିପାଞ୍ଚିରୁ ଯାଇଥିଲା । ଶଶୀର ଅଣ୍ଡିରିପୁଅ ବକଟେ ହେଲେ ଅଜା ପିଣ୍ଡରେ ପାଣି ଦେବ । ନୁରି ଦାସ ମାମୁଁଘର ଛାଡ଼ି ଶ୍ୱଶୁରଘରକୁ ଆସିଲେ ଘରଜ୍ୱାଇଁ ହୋଇ । ମାମୁଁ ଏମିତି ସୁଯୋଗଟିଏ ଖୋଜୁଥିଲେ । ନଇଲେ ତାଙ୍କ ପୁଅମାନଙ୍କ ସଙ୍ଗେ ସମ୍ପତ୍ତିରେ ଭାଗ ବସାଇଥା'ନ୍ତା ।

ସବୁ ଠିକ୍ ଚାଲିଥିଲା, ଶଶୀ ପହିଲି ପ୍ରସବ କରି ମଲା ଯାଏ । ନାତି ମୁହଁ ଦେଖି ଶୋଷୀର ବାପା ବି ଆଖି ବୁଜିଲେ । ଫୁଲନାଡ଼ କରି ସତିଆକୁ କୋଳକୁ ଟେକିନେଇଥିଲା ରାଣ୍ଡ ମାଉସୀ ଶୋଷୀ । ଘରେ ରହିଲେ ଅଣତିରିଶ ବର୍ଷର ଯୁବକ ନୁରି ଦାସ, ମା' ଛେଉଣ୍ଡ ପୁଅ ସତିଆ । ଆଉ ଅଠରବର୍ଷର ବାଳୁତ ବିଧବା ଶୋଷୀ ।

ନୁରି ଦାସ ଆଉଥରେ ବିବାହ କରି ଯାଇଥା'ନ୍ତେ, ଯଦି ଶ୍ୱଶୁର ଘରେ ଘରଜ୍ୱାଇଁ ହୋଇ ପଶି ନ ଥା'ନ୍ତେ କି ଶୋଷୀ ଯଦି ତାଙ୍କ ଦେଢ଼ଶାଶୁ ନ ହୋଇ ଶାଳୀ ହୋଇଥା'ନ୍ତା । ଶଶୀଠୁ ଶୋଷୀ ମାତ୍ର ଦି' ବରଷ ବଡ଼, ନୁରି ଦାସଙ୍କଠୁ ଏଗାର ବର୍ଷ ସାନ । ସେ ନୁରି ଦାସଙ୍କର ଶାଳୀ ବି ହୋଇ ପାରିଥା'ନ୍ତା, ମାତ୍ର ହୋଇନି, ସେ ହୋଇଛି ନୁରି ଦାସଙ୍କ ଦେଢ଼ଶାଶୁ ।

ଦେଢ଼ଶାଶୁ-ଭଉଣୀଜ୍ୱାଇଁର ସମ୍ପର୍କ ଗଙ୍ଗାଜଳ ଭଳି ପବିତ୍ର । ଛୁଆଁ ଛୁଇଁ, ଚାହାଁ ଚାହିଁ କଡ଼ା ନିଷେଧ । ଥଟ୍ଟା ତାମ୍‌ସାର ପ୍ରଶ୍ନ ନାହିଁ– ଭାବ ବଢ଼େଇବାର ସୁଯୋଗ ଥିଲେ ବି ନିୟମ ନାହିଁ । ନର୍କ ଭୋଗ ।

ସାନଭଉଣୀ ଶଶୀର ମରଣ ପରେ ଶୋଷୀ ପଡୋଶୀ ଖୁଡୀଙ୍କ ମାଧ୍ୟମରେ ଭଉଣୀ ଜ୍ୱାଇଁଙ୍କୁ ଜଣାଇ ଦେଇଥିଲା ଯେ, ଜୋଇଁଙ୍କର ଯଦି ଇଛା, ସେ ନିଜ ଘରକୁ ଫେରିଯାଇ ବାହାସାହା ହୁଅନ୍ତୁ, ଘର ସଂସାର କରନ୍ତୁ । ତାଙ୍କ ବଅସର ପୁରୁଷପୁଅ ସ୍ତ୍ରୀ ମଲା ବୋଲି ଏକଲା ରହିବା ସମାଜର ନିୟମ ନୁହେଁ, ତେବେ ସତିଆ ରହିବ ଏଇଠି, ତା' ମାଉସୀ ପାଖରେ । ଏଇ କୂଳରେ ସେ ପିଣ୍ଡପାଣି ଦବ । ସାବତ ମା'ର ଛାଇ ତା'ଠି ପଡ଼ିବନି । ନୁରି ଦାସଙ୍କର ଇଚ୍ଛା ହେଲେ ସେ ଯୋଉଦିନ ମନ ହେବ ପୁଅକୁ ଦେଖିଯିବେ, ମାତ୍ର ପୁଅକୁ ଏଠୁ ନେଇଯିବା କଥା ମୁହଁରେ ଧରିବେନି ।

ଶଶୀର ସ୍ମୃତିକୁ ଗଳାମାଳି କରି ଅବଶିଷ୍ଟ ଜୀବନ ବ୍ରହ୍ମଚର୍ଯ୍ୟ ପାଳନ କରିବା ନୁରି ଦାସଙ୍କର ଆଦୌ ଉଦ୍ଦେଶ୍ୟ ନଥିଲା । ମାତ୍ର ପରିସ୍ଥିତି ଏପରି ଯେ, ସେ ନା ଏ କୂଳର ନା ସେ କୂଳର । ମାମୁଁ ଘରକୁ ଫେରିଯାଇ ମାମୁଁ-ପୁଅ ଭାଇମାନଙ୍କ ସମ୍ପତ୍ତିରୁ ଭାଗ ମାଗିବେ ? ମାଗିଲେ ବା ଦଉଛି କିଏ ? ତା' ଛଡ଼ା ତାଙ୍କର କ'ଣ ମାନସମ୍ମାନ ବୋଲି କିଛି ନାହିଁ । ଏମିତି ବାରଦ୍ୱାର ହେଉଥିବେ ? ତା'ଛଡ଼ା ଶୋଷୀ ମାନ୍ୟରେ ଦେଢ଼ଶାଶୁ ହେଲେ ବି ବୟସରେ ଦଶବରଷ ସାନ ଅସହାୟା ବାଲ୍ୟ-ବିଧବା; ସତିଆ ବାଳୁତ ପିଲା– ଆଉରି ଅସହାୟ । ତେଣୁ ଆଉଥରେ ଘର

ସଂସାର ବାନ୍ଧିବା ଆଶାରେ ସେ ଦୁଇଟା ଅସହାୟ ଜୀବଙ୍କୁ ଛାଡ଼ିଦେଇ ଚାଲିଯିବାଟା ମଣିଷପଣିଆ ନୁହେଁ ।

ନୁରି ଦାସ ଜବାବ ଦେଇଥିଲେ, 'ଶ୍ୱଶୁରଘର ସମ୍ପତ୍ତିରେ ମୋର ଲୋଭ ନାହିଁ, 'ପୁଅ'ରେ ଲୋଭ । ଦ୍ୱିତୀୟ ବିବାହର କଥା ଆଉ ଏ ଘରେ ଯେମିତି ନ ଉଠେ, ବୁଝି ଖବରଦାର...'' ।

ସେଇଦିନ ସଞ୍ଜବେଳକୁ ନୁରି ଦାସ ତାଙ୍କର ମୃଦଙ୍ଗଟିକୁ କାନ୍ଥକଣ୍ଟାରୁ କାଢ଼ିଲେ । ଶ୍ୱଶୁରଘରକୁ ଆସିଲାବେଳେ ସେ ଏଇ ମୃଦଙ୍ଗ ଖଣ୍ଡିକ ଧରି ଆସିଥିଲେ । ମାମୁଁଘରେ ଥିଲାବେଳେ ମାମୁଁଙ୍କ ସଙ୍ଗେ ମିଶି ମଠରେ ନଦୀୟା କୀର୍ତ୍ତନ କରୁଥିଲେ । ଶ୍ୱଶୁରଘରେ ବହୁଦିନ ଧରି ମୃଦଙ୍ଗରେ ହାତ ବାଜିନି । ମୃଦଙ୍ଗ ହିଁ ଆଜି ତାଙ୍କର ଏକମାତ୍ର ନିଜସ୍ୱ ସମ୍ପତ୍ତି-ଅନ୍ତରଙ୍ଗ ସହଚର । ସେଦିନ ସେ ନିର୍ଦ୍ଧୁମ ମୃଦଙ୍ଗ ପିଟିଥିଲେ ରାତି ଅଧଯାଏ । ତା'ପରଠୁ ପ୍ରତି ସଞ୍ଜରେ ଘଣ୍ଟାଏ ଦି'ଘଣ୍ଟା ମୃଦଙ୍ଗ ପିଟି ନାମ କୀର୍ତ୍ତନ କରନ୍ତି । ବହୁକାଳର ଅଭ୍ୟାସ । ଶଶୀର ସ୍ୱାମୀ ହୋଇ ଦି'ବରଷ ହେବ ଏ ଘରକୁ ଆସିବା ପରଠୁଁ କେମିତି ଭୁଲିଯାଇଥିଲେ କେଜାଣି ?

''ବାଘ ନ ଦେଖିଲେ ବିଲେଇ ଦେଖ, ମା' ନ ଦେଖିଲେ ମାଉସୀ ଦେଖ !'' ସତିଆ ବାଘ ଦେଖିନି, ବିଲେଇ ଦେଖିଛି; ମା'କୁ ଦେଖିନି ମାଉସୀକୁ ଦେଖୁଛି । ସତିଆ ଅବିକା ମନକଲେ ବାଘ ଦେଖିପାରିବ, ଜଙ୍ଗଲରେ ନଇଲେ ସର୍କସରେ । ମାତ୍ର ମା'କୁ ଆଉ ସେ ଦେଖିପାରିବନି । କାରଣ ମା' ସେପାରିରେ । ସତିଆ ବାଘର ଛବି ଦେଖିଛି–ହେଲେ ନିଜ ମା'ର ଛବି ବି ଦେଖିନି । ସଭିଏଁ କହନ୍ତି, ସତିଆର ମାଉସୀ ତାକୁ ମା'ଠୁ ବଳି ଗଣ୍ଡିଧନ କରିଛି । ହେଲେ ସତିଆ ଯେତେବେଳେ ମା'ର ସ୍ନେହ ଦେଖିନି କି ଜାଣିନି, ସେ କେମିତି ତୁଳନା କରି କହିବ ଯେ ତା' ମାଉସୀର ସ୍ନେହ ମା'ଠୁ ବେଶି ? ସତିଆ କେଜାଣି କାହିଁକି, ହେତୁ ହେବା ଦିନଠୁଁ ଅବାଗିଆ ଆଣ୍ଡୁଆ-ବଗୁଲିଆ-କଞ୍ଚା ମିଛୁଆ ।

ସତିଆର ତା' ବାପା ଉପରେ ଭାରି ରାଗ । କାରଣ ତା' ବାପା ତାକୁ ରାଗରେ 'ମା'ଖିଆ' ଡାକିଲା ପଛକେ, କିନ୍ତୁ ଗେହ୍ଲାରେ ବି ଡାକେ 'ମା' ଖିଆ' । ସତିଆ ରାଗିଗଲେ ତା' ବାପାକୁ କହେ, ତୁ ମାଇପଖିଆ । ଏଇଟା ସତିଆର ନିଜର ନୁହେଁ । ସାଇପଡ଼ିଶାରେ ନୁରି ଦାସଙ୍କୁ କହନ୍ତି ମାଇପଖିଆ । ନଚେତ୍ ତେର ଚଉଦ ବରଷର ଝିଅ ଯୋଉଠି ପୋଖତୀ ହେଉଛନ୍ତି, ଷୋଳ ବରଷର ଶଶୀ କିଆଁ ପ୍ରସବ ବେଦନାରେ ମରିଥାନ୍ତା ? ନୁରି ଦାସଙ୍କ ଜାତକରେ ସ୍ତ୍ରୀ ଘରେ ରିଷ୍ଟ ! ଏକଥା ବହୁ ଜ୍ୟୋତିଷ ସତିଆ ମା' ଶଶୀ ମରିବା ପରେ ନୁରି ଦାସଙ୍କ ଜାତକ ସାଧି କହିଛନ୍ତି ।

ଶୋଷୀ ବାପଘର—ନୁରି ଦାସଙ୍କର ଶଶୁରଘର । ହେଲେ କେହି କହେ ନାହିଁ ଶୋଷୀର ଘର । ସଭିଏଁ କହନ୍ତି ନୁରି ଦାସଙ୍କ ଘର । ନୁରି ଦାସଙ୍କ ଘରଟା ଇଂରେଜ ଅମଳରେ ପ୍ରତିଷ୍ଠିତ ଏକ ସୁଖ୍ୟାତ ଗ୍ରାମ ହାଇସ୍କୁଲର କାନ୍ଥକୁ ଲାଗିଛି କହିଲେ ଚଳେ । ଘରେ ଶାଗ ପଖାଳ ଖାଇ ଇସ୍କୁଲ ପଢ଼ିଆରେ କୁଳି ପକାଇବା କଥା । ନୁରି ଦାସ ଭାବିଥିଲେ ମା'ଖିଆ ସତିଆ ହାଇସ୍କୁଲରୁ ମାଟ୍ରିକ୍ ପାଶ କରି ଶିକ୍ଷିତରେ ଗଣା ହେବ । ସର୍କାରୀ ଚାକିରି ଖଣ୍ଡେ କରି ପେଟ ପୋଷିବ । ତାଙ୍କ ଭଳି ଗଛର ଆମ୍ବ, ଅଷ୍ଟପ୍ରହରୀ ଉଖୁଡ଼ା ଉପରେ ନିର୍ଭର କରି ଗଣ୍ଡେ ଖାଇ ଦଣ୍ଡେ ଜୀଇବନି ।

ମାତ୍ର ସତିଆ କେଜାଣି କାହିଁକି ହେଲା ପାଠଚୋର । ଇସ୍କୁଲ ନାଁ' ଧରିଲେ ଛେଳିକି ପାଣି... । ଖାଲି ସେତିକି ନୁହେଁ, ବାପର ଯେଉଁଟା 'ହଁ' ସତିଆର ସେଇଟା 'ନା' । ତେଣୁ

ବାପ-ପୁଅର ନିରନ୍ତର ତେରିମେରି । ସତିଆ ଦିନ ଦିନ ଧରି ଇସ୍କୁଲ ନ ଯାଇ ଏଣେତେଣେ ବୁଲେ । ଦିନେ ଦିନେ ମାଷ୍ଟରଙ୍କଠୁଁ ଶୁଣି ସତିଆକୁ ଘର ଭିତରେ ବାନ୍ଧି ପକାଇବେ ନୁରି ଦାସ । ବାହାରୁ କବାଟ ଦେଇ ତାଲା ଠୁକିବେ, କହିବେ 'ଯେ ପର୍ଯ୍ୟନ୍ତ ଇସ୍କୁଲ ନିୟମିତ ଯିବ ବୋଲି ନ କହିଛି, ସେ ପର୍ଯ୍ୟନ୍ତ ଯିଏ ତାକୁ ଖାଇବାକୁ ଦେଇଥିବ ତା'ର ଦିନେ କି ମୋର ଦିନେ ।' ଶେଷ କଥାଟା ଶୋଷୀକୁ ଲକ୍ଷ୍ୟ କରି ହିଁ କହିଥା'ନ୍ତି । ଶୋଷୀକୁ ଛାଡ଼ିଦେଲେ ଏ ଘରେ କିଏ ଅଛି ଯେ ସତିଆର ଲୁହ ପୋଛି ଖୋଇଦେବ ?

ଶୋଷୀ ଜବାବ ଦିଏନି । ବାପ ଆକଟ କରୁଛି ପୁଅର ଭଲ ପାଇଁ । ବାପା ତା'ର କର୍ତ୍ତବ୍ୟ କରୁଛି । ମାଉସୀ ହୋଇ ଶୋଷୀ ମଧ୍ୟ ତା'ର କର୍ତ୍ତବ୍ୟ କରିବ । କର୍ତ୍ତବ୍ୟରେ ବାଧା ଦବ, ଏମିତି ଅଣ୍ଡିରି ପୁଅ କିଏ ଅଛି ଆସୁ ତ ଦେଖି ସାମ୍ନାକୁ ? ନୁରି ଦାସ ବଜାରକୁ ଯିବା ମାତ୍ରେ ଶୋଷୀ ତା' ପାଖରେ ଥିବା ଚାବିରେ ତାଲା ଖୋଲି ସତିଆକୁ ବୁଝେଇ ସୁଝେଇ ଭାତ ଖୋଇବ । ଖଟ ଗୋଡ଼ରୁ ଖୋଲିଦବ ସତିଆକୁ । ନୁରି ଦାସ ହାଟବଜାରରୁ ଲେଉଟିଲାସରିକି ସତିଆ ସୁନାପୁଅ ହୋଇ ବହି ଧରି ବସିଥିବ । ନୁରି ଦାସ ତାକୁ ଦେଖିବେ, କିଛି କହିବେନି । ସତେ କି ଆଗରୁ ଜାଣିଥିଲେ ସତିଆ ଭାତ ଖାଇଥିବ, ଲୁହ ପୋଛିଥିବ, ବନ୍ଧନରୁ ମୁକୁଳିଥିବ, ବହି ଧରି ବସିଥିବ— ତେଣିକି ପାଠ ପଢୁ କି ନପଢୁ ।

ମାସକେ ଦଶଥର ଏଇ ପାଲା । ପ୍ରତି କ୍ଲାସରେ ଦି'ବର୍ଷ ତିନି ବର୍ଷ । ଶୋଷୀ ପାଇଁ ଏସବୁ ଚିନ୍ତାର ବିଷୟ ନୁହେଁ । ପିଲାଟା ପରୀକ୍ଷା ଦେଲା । ଯଦି ପାସ୍ ନକଲା, ମାଷ୍ଟରର ଦୋଷ, ପିଲାର ଦୋଷ ନୁହେଁ । ମାଷ୍ଟର ପାଖରେ ପାଠପଢ଼ି ଯଦି ଭଲ ପିଲା ପାଶ୍ କରିବ ଆଉ ବଗୁଲିଆ ପିଲା, ଫେଲ୍ ହେବେ, ସେଥିରେ ମାଷ୍ଟରର ବାହାଦୁରିଟା କ'ଣ । ଯଦି ବଗୁଲିଆ ପିଲା ମାଷ୍ଟର ହାତରେ ନ ସୁଧୁରିଲା, ତେ୍ବେ ସେ କି ମାଷ୍ଟର !

ନୁରି ଦାସ ସତିଆକୁ ଦୋଷ ଦିଅନ୍ତି, ଶୋଷୀ ମାଷ୍ଟରକୁ ଦୋଷ ଦିଏ, ସତିଆ ବାପକୁ ଦୋଷ ଦିଏ । ତା' ବାପା ତା' ବୋଉକୁ ଖାଇଲା ବୋଲି ସତିଆର ନୁରି ଦାସଙ୍କ ଉପରେ ଯୋଉ ରାଗ, ସେ ତାକୁ ଏଇ ବାଟେ ଶୁଝୁଛି । ସେ ପାଠ ପଢ଼ିଲେ ଅବଶ୍ୟ ପାସ୍ କରନ୍ତା । କିନ୍ତୁ ତା' ଦ୍ୱାରା ତା' ବାପା ଖୁସି ହୁଅନ୍ତା । ବାପାକୁ ଦୁଃଖ ଦେବା ସତିଆର ଲକ୍ଷ୍ୟ । ତେଣୁ ସେ ଫେଲ୍ ହେଉଛି । ସତିଆକୁ ନେଇ ନୁରି ଦାସ ଆଉ ଶୋଷୀ ମାଉସୀର ଉତ୍ତାଳିଆ ଦିନଗୁଡ଼ାକ ହଲାପଟା ଚିନ୍ତା ଦକରେ କୋଉ ଖଞ୍ଜରେ ବହିଗଲା କେହି ଜାଣିପାରିଲେ ନାହିଁ ।

ଦିନେ ଅଠର ବର୍ଷର ସତିଆ ଘର ଛାଡ଼ି ସହରକୁ ଗଲା ଆଉ ଭାଗ୍ୟବଶତଃ ଛୋଟକାଟିଆ ଚାକିରିଟିଏ ଯୋଗାଡ଼ କରିଦେଲା । ଘରେ ରହିଲେ ଦି' ପ୍ରାଣୀ । ନୁରି ଦାସ ଆଉ ଶୋଷୀ । ସତିଆ ଚିନ୍ତା ଆଉ ନାହିଁ । କେବଳ ନିଜ ଚିନ୍ତା । ଶୋଷୀ ତେବେ ବି କୁନ୍ଦିଲା କାନ୍ଦିଲା ମାଇପିଟିଏ । ନୁରି ଦାସ ତେବେ ବି ଟାଣୁଆ ମର୍ଦ୍ଦ । ରୋଗ-ବଇରାଗ ନାହିଁ । ଖାଲି ପେଟ ଚିନ୍ତା । ବାସ୍—ଆଉ କିଛି ଚିନ୍ତା ନାହିଁ । ଥିବ ଯଦି, ଥିବ ମନ ଭିତରେ- ବାହାରକୁ ଦିଶେନି, ଶୁଭେନି । ନୁରି ଦାସଙ୍କ ମୃଦଙ୍ଗ ମାଡ଼ରେ ସବୁ ଅଶୁଣା । ଶୋଷୀର ଓଢଣା ତଳେ ସବୁ ଅଦୃଶ୍ୟ ।

ସେଇଠି, ତାଙ୍କରି ବଇଷମ ସାହିରେ—ତା' ପାଖ ଗଉଡ଼ ସାହି, ଧୋବା ସାହି ମାହାନ୍ତି ସାହି ସବୁଠି କିଛି ନା କିଛି କାନ ନ ଶୁଣିବା କଥା ଶୁଭେ—ଆଖି ନ ଦେଖିବା କଥା ଦିଶେ । ଦିଅର-ଭାଉଜ, ଭାଇ-ବୋହୂ-ଦେଢ଼ଶୁର, ଶାଳୀ-ଭିଣୋଇ, ଧରମଭାଇ-ଧରମ ଭଉଣୀ, ଏମିତିକି

ବାଲ୍ୟବିଧବା ଖୁଡ଼ୀ ଆଉ କୁଟୁମ୍ବ ଭିତରେ ପୁତୁରା... ଛିଃ ଛିଃ ରାମ୍ ରାମ୍ । ପୁଣି ସା'ନ୍ତ ଘର ଦେଈ-କୋଠିଆ ଚାକର ଆଉ ମହାନ୍ତି ଘର ବୋହୂ ଘରର ହଳିଆ—ସତ୍ୟାନାଶ ହୋଇଗଲା ଦେଶ... ! ମଣିଷ ସମାଜ !!

ଗାଆଁ ଜୀବନର କଠୋର ଜୀବନ ସଂଗ୍ରାମ ଭିତରେ ଏତିକି ଚାଞ୍ଚଲ୍ୟ–ନିତି ଲୋଡ଼ା । ସହରୀ ଲୋକ ନାଚ, ତାମସା, ସିନେମା-ଥେଟରରୁ ଚାଞ୍ଚଲ୍ୟ ପାଆନ୍ତି, ରୋମାଞ୍ଚ ପାଆନ୍ତି । ମଫସଲ ଜୀବନରେ ସେ ସବୁ କାହିଁ ? ପୋଖରୀ ତୁଠ, ଧୋବା ତୁଠ, ଦାଣ୍ଡ ବାରଣ୍ଡା, ପଞ୍ଚାୟତ ଘରମାନଙ୍କରେ ଏଇ ପ୍ରକାର ରୋମାଞ୍ଚ ଆଉ ଚାଞ୍ଚଲ୍ୟକର କାହାଣୀ ତିଳରୁ ତାଳ ହୁଏ । ତାଳରୁ ହୁଏ ବେତାଳ । ଜୋରିମାନା, ନିଆଁ ପାଣି ବାସନ୍ଦ, ଗାଁ'ରୁ ନିର୍ବାସନ ପୁଣି ବି ଏ ସବୁର ସମାଧାନ ହୁଏ ମାଡ଼ ଫଉଦାରୀ, ଗୁଣି ଗାରେଡ଼ି, ହତ୍ୟା, ଆତ୍ମହତ୍ୟାରେ ।

ମାତ୍ର ନୁରି ଦାସଙ୍କ ଘରଟି ଏ ସବୁଥିରୁ ବାଦ୍ ପଡ଼ିଯାଏ । ସତିଆ ଗାଁ'ରେ ଥିବାବେଳେ ନୁରି ଦାସ ଘରକୁ ନେଇ ଗୋଟାଏ କୌତୁହଳ ଥିଲା । ନିତିଦିନ ସତିଆକୁ ନେଇ ମାଡ଼ ଫଉଦାରି, ସତିଆ ନାଆଁରେ ଚୋରି-ନାରୀ; ମାତ୍ର ସତିଆ ଯେଉଁଦିନଠୁ ଗାଆଁ ଛାଡ଼ିଛି, ବାହାସାହା ହୋଇ ସହରରେ ରହିଛି, ସେହି ଦିନଠୁ ନୁରି ଦାସଙ୍କ ଘରଟା ଅମୁହାଁ ଦେଉଳ ଭଳି ନିଶବ୍ଦ-ନିଶୁନ । ଗଲା ଆଇଲା କାହାରି ଆଖିରେ ତିଳ ପ୍ରମାଣ କିଛି ପଡ଼େ ନାହିଁ । 'ତିଳ' ନଥାଇ 'ତାଳ' କରିବାକୁ କାହାର ବେଳ ଅଛି ? ଗାଁ'ରେ କ'ଣ ରୋମାଞ୍ଚ, ଚାଞ୍ଚଲ୍ୟର ଅଭାବ ଅଛି ? ତେବେ ନୁରି ଦାସ ବା ଶୋଷୀଙ୍କୁ ଏଥିପାଇଁ ଗାଁ'ବାଲା ମେଡାଲ ଦିଅନ୍ତିନି । ଧର ସମ୍ପର୍କଟା ଯଦି ଦେଢ଼ଶାଶୁ-ଭଉଣୀ ଜୋଇଁ ନ ହୋଇ, ଶାଳୀ-ଭିଣୋଇ ହୋଇଥା'ନ୍ତା, ତେବେ ଦେଖାଯାଇଥା'ନ୍ତା ନୁରି ଦାସ କେତେଦୂର ସଂଯମୀ ଆଉ ଶୋଷୀ କେଡ଼େ ବଡ଼ ସତୀ ! ଯଦି ସେମାନେ ନିଜ ଟାଣରେ ଅଟଳ ତେବେ ଦେଢ଼ଶାଶୁ-ଭଉଣୀ ଜୋଇଁ ସମ୍ପର୍କଟାକୁ ବାହାବା ଦବାର କଥା ।

ସଂସାରରେ ଅନେକ କଥା ଶୁଣାଅଛି–ଏପରିକି ଶଶୁର ବୋହୂ–ଛି-ଛି... କିନ୍ତୁ ଦେଢ଼ଶାଶୁ-ଭଉଣୀଜୋଇଁ ? ହେ ଭଗବାନ୍, ସେତିକି ଟିକେ ପୁଣ୍ୟ ହେଲେ ସଂସାରରେ ଥାଉ ? ନହେଲେ ପୃଥ୍ୱୀ ରସାତଳକୁ ଯିବ ଯେ !

ପୃଥ୍ୱୀକୁ ମୁଣ୍ଡେଇ ବସି ଧୀରେ ଧୀରେ ନୁରି ଦାସ ବୁଢ଼ା ହେଲେ, ଶୋଷୀ ବୁଢ଼ୀ ହୋଇଗଲା ।

ନୁରି ଦାସଙ୍କର କୀର୍ତ୍ତନ ଗାଇ ଗାଇ ଧଇଁରୋଗ ବାହାରି ପଡ଼ିଲାଣି । ଶୋଷୀର ବାତଜର ବଢ଼ିବଢ଼ି ଗୋଡ଼ ଗୋଦର ।

ହେଲେ କେହି କାହା ଦିହରେ ମୁଣ୍ଡରେ ହାତ ବୁଲାଇବାକୁ କିମ୍ବା ସେବା ଶୁଶ୍ରୁଷା କରିବାର ବିଧାନ ନାହିଁ । ନୁରି ଦାସ ଧଇଁ ପେଲାରେ ଉଠପଡ଼ ହେଲେ ଶୋଷୀ ଓଢ଼ଣା ତଳେ 'ଆହା ଚୁ ଚୁ ହୁଏ, ଶୋଷୀ ବାତଜରରେ ମଲାଗଲା ହୋଇ ପଡ଼ିଲେ ନୁରି ଦାସ ଦାଣ୍ଡପିଣ୍ଡାରେ ପବନମୁହାଁ ବସି ମୃଦଙ୍ଗ ଟୁଙ୍ଗୁ ଟୁଙ୍ଗୁ କରନ୍ତି । ଉପାୟ କ'ଣ ? ବେଳେ ବେଳେ ମନ ଭିତରେ ମୃଦଙ୍ଗ ବାଜେ ଟଙ୍ଗ୍ଙ୍ଗ୍... । ସ୍ତ୍ରୀ-ପୁରୁଷ ଭିତରେ ଏମିତି ସମ୍ପର୍କ କିଏ ବିଧାନ କଲା ଯେ ଜଣକର ମଲା ମୁହଁରେ ଆଉ ଜଣେ ପାଣି ଦେଲେ ପାପ ଲାଗିବ ! ଶାଳୀକୁ ପାପଗର୍ଭ କରେଇ କ୍ଷମା ଅଛି, ଶାଳୀ ବୟସର ଦେଢ଼ଶାଶୁର ବାତଜରୁଆ ପାଦରେ ହାତ ବୁଲେଇ ସେବା ଆଶ୍ୱାସନା ଦେଲେ କ୍ଷମା ନାହିଁ ! ଧନ୍ୟ-ଧନ୍ୟ-ମୃଦଙ୍ଗରେ ଦୁମ୍‌ଦୁମ୍ ତାଳ ଛିଡାନ୍ତି ନୁରି ଦାସ ।

ଯହୁଁ ଯହୁଁ ଦୁହେଁ ବୁଢ଼ା ବୁଢ଼ୀ ହେଉଥା'ନ୍ତି, ବଅସ ଖସୁଥାଏ, ରୂପରଙ୍ଗ ଫିକା ପଡୁଥାଏ, ତହୁଁ ତହୁଁ ଦିହିଁଙ୍କର ଦିହିଁଙ୍କ ପାଇଁ ପାଣି ଗଲୁ ନ ଥାଏ । ଜଣଙ୍କର ଦୁଃଖ କଷ୍ଟ ଯନ୍ତ୍ରଣାରେ ଆଉ ଜଣଙ୍କର ପ୍ରାଣ ବିଗଳିତ ହୋଇଯାଏ । ସାମ୍ନାସାମ୍ନି ଡକାହକା ନ ହେଲେ ବି ଯା ତା' ଆଗରେ ଦିହେଁ ଦିହିଁଙ୍କୁ ଏଣିକି 'ବୁଢ଼ା' 'ବୁଢ଼ୀ' ବୋଲି ଡାକିଲେଣି । ମାଇପୀ ମହଲରେ ଶୋଷୀ କହେ– 'ବୁଢ଼ାଟା ଧଇଁ ରୋଗରେ ବଡ଼ ଦିକ୍‌ଦାର ହଉଛି । ପାଦରେ ଟିକେ ସୋରିଷ ତେଲ ଘଷିଦେବାକୁ ବି ଘରେ ବିଲେଇ ଛୁଆଟିଏ ନାହିଁ । ପୁଅକୁ ଲୋଭ କରି ଶଶୁର ଘରେ ପଡ଼ିରହିଲା ଭେଣ୍ଡା ବଅସରୁ । ଶେଷକୁ ପୁଅ-ବୋହୂ ତାଙ୍କ ସୁଖରେ ରହିଲେ । ମୁଁ ଥିବାଯାଏ ଘୁଷୁରି ଘୁଷୁରି ମୁଠାଏ ଫୁଟେଇଦେବି । ତା'ପରଠୁଁ ? ବୁଢ଼ା କ'ଣ କରିବ ଏକା ଏକା ? ବୁଢ଼ାଟାର କ'ଣ କମ୍ ଗଉଁ କି ? ପୁଅକୁ ସିନା ଚିଠି ଖଣ୍ଡେ ନେଖି 'ଆ' ବୋଲି କହୁନି, ହେଲେ ବଡ଼ ଝୁରିହେଉଛି । ଯେତେହେଲେ ଆପଣା ରକ୍ତ ତ ! ସେ ନ କହିଲେ ବି ମୁଁ କ'ଣ ତା' ମନବ୍ୟଥାକୁ ବୁଝିପାରୁନି ?

ମିଣିପି ମେଳରେ ନୁରି ଦାସ କହୁଥିବେ ! –'ବାତଜର ବୁଢ଼ୀଟାକୁ ବଡ଼ ଆକ୍ରାନ୍ତ କଲାଣି । ଫି' ମାସରେ ଜରରେ ମଲାଗଲା ହୋଇ ପଡୁଛି ଚାରି ଛ'ଦିନ । ସାଷ୍ଟାମ କରି ପାଟିରେ ପାଣି ଦବାକୁ ବି ଘରେ କେହି ନାହିଁ । ବିଚାରୀ ମା'ଠୁ ବଳି କରିଥିଲା ପୁତୁରାକୁ । କୁଳାଙ୍ଗାରଟା ଦିନେ ମାଉସୀ ଛଡ଼ା 'ମା' ବୋଲି ଭାବିଲାନି । ଶେଷକୁ ମୁହଁରେ ନିଆଁ ଦବାକୁ ଆସୁଛି କି ନା କିଏ ଜାଣେ ? ବୁଢ଼ୀର ସେତିକି ହଉଛି ଶେଷ ଇଚ୍ଛା । ସେ ନକହିଲେ ବି ମୁଁ କ'ଣ ଜାଣେନି ?'

ଶୋଷୀ ନ କହିବା କଥା ନୁରି ଦାସ କେମିତି ଜାଣିଲେ ? ନୁରି ଦାସ ନ କହିବା କଥା ଶୋଷୀ କେମିତି ଜାଣିପାରେ ? ଏ ପ୍ରଶ୍ନ କେହି ପଚାରନ୍ତି ନାହିଁ । ମଣିଷ ମଣିଷ ଭିତରେ କେତେ ସମ୍ପର୍କ ଅକୁହା ରହିଯାଏ । ହେଲେ, ଅଜଣା ରହେନି । ଯିଏ ଭାବେ ଯେ ପାଟି ଖାଲି କଥା କହେ, ସେ ମୁର୍ଖ । ମଣିଷର ହାତ ଗୋଡ଼ ବି କଥା କହିପାରେ । ତମ ଚାଲିରୁ ଜାଣିହବ ତମେ ଭଲ ପାଉଛ କି ମନ୍ଦ ପାଉଛ । ତମ ଭାତ ବଢ଼ାରୁ ଜାଣିହେବ ତମେ ଯତ୍ନରେ ବାଢୁଛ କି ଅଯତ୍ନରେ ବାଢୁଛ, ତମ ମୃଦଙ୍ଗ ତାଳରୁ ଜାଣିହେବ, ତମେ ହସୁଛ କି କାନ୍ଦୁଛ । ଡେଣ୍ଡାରୁ ପାଣି ବୋହିବା ଢଙ୍ଗରୁ ଜାଣି ହବ ତମ ମନଟା ଶୁଖିଲା ଠାଉ ଠାଉ କି ଭାବ-ଜରଜର । ପଇଁଆଳିଶ ବର୍ଷର ସୁଖ, ଦୁଃଖ, ଭୋକ, ଅଭାବ, ଅନାଟନ, ଚିନ୍ତା, ଉଦ୍‌ବେଗ, ରାଗ, କ୍ଷୋଭ, ବୁଢ଼ାମଣା, ଅବୁଝା ଦୋଷାରୋପ ଫେଣ୍ଟି ହୋଇଯାଇଛି । ଦୁଇଟା ଅଲଗା ଦୂରଛଡ଼ା ମୁହଁରେ ତୁଣ୍ଡିବନ୍ଧା ମଣିଷ । ଡାକି ବଜେଇ କେହି କାହାକୁ କହିନି, ମୋ ସୁଖରୁ ଭାଗ ନେ–ମୋ ଦୁଃଖରେ ଭାଗୀ ହଅ ।

ପବନରେ ଫୁଲର ବାସନା ମିଶିଗଲା ପରି, ଫଟା ଭୂଇଁରେ ବର୍ଷା ଝର ଭେଦିଯିବା ପରି, ଜହ୍ନରେ ମୃଦଙ୍ଗର ଶବ୍ଦ ବୋଲି ହୋଇଯିବା ପରି ମଣିଷ ମଣିଷ ଭିତରେ ଭାବ-ଅଭାବ ଆପେ ଆପେ ଭେଦିଯାଏ ।

ସେଇଥିପାଇଁ ଶୋଷୀ ବାଧକା ପଡ଼ିବା ମାତ୍ରେ ନୁରି ଦାସ ନିଜ ଅଣ୍ଟା, ଗଉଁ, ମୁହଁ ଟାଣକୁ ପଛକୁ ପକେଇ ସତିଆକୁ ଖଣ୍ଡେ ଚିଠି ଲେଖିଲେ– 'ଆୟୁଷ୍ମାନ୍ ବାପ ସତ୍ୟାନନ୍ଦ ! ତମ ମାଉସୀ ମଲାଶେଯରେ । ମୁହଁ ଖୋଲି ନ କହିଲେ ବି ତମକୁ ଥରେ ଦେଖି ପ୍ରାଣ ଛାଡ଼ିବେ ବୋଲି ସେ ଭାବୁଛନ୍ତି...

ଯା' ପରେ ଆଉ ନ ଆସିଲେ ନଆସ, ମାତ୍ର ଏ ଚିଠିକୁ ତା'ର ମନେ କରି ମାଉସୀ ପାଇଁ ବସିଲାଠୁ ଉଠି ଆସିବାକୁ ଶେଷ ଅନୁରୋଧ ।

॥ ଇତି ॥

ତମର ଚିର ଶୁଭାକାଂକ୍ଷୀ

ନୁରି ଦାସ

ସତିଆ ଶୁଣିଲା ନୁରି ଦାସ ତାଙ୍କର ଗଉଁ ବଜାୟ ରଖି ମାଉସୀ ପାଇଁ କେବଳ ଚିଠିଟି ଲେଖିଛନ୍ତି । ସେଇଥିପାଇଁ 'ଇତି ବାପା' ବୋଲି ଲେଖିନାହାନ୍ତି । ତଥାପି ସତିଆ ତା' ପିଲାଛୁଆଙ୍କୁ ଧରି ବସିଲାଠୁଁ ଉଠି ଆସିଲା । ବାପାର ଅନୁରୋଧରେ ନୁହେଁ, ମାଉସୀର ମୋକ୍ଷ ପାଇଁ । ଆଣିଥିଲା ବିସ୍କୁଟ, ଫଳ, ମିଠା । ମାତ୍ର ସତିଆ ପହଞ୍ଚିଲା ବେଳକୁ ଶୋଷୀର ପାଟି ପଡ଼ିଗଲାଣି । ଆଖି ଦରମେଲା । ଭାଗ୍ୟ ! ନିଃଶ୍ୱାସ ପ୍ରଶ୍ୱାସ ଯା'ଆସ କରୁଛି । କେଜାଣି ସତିଆ ବସିଲାଠୁଁ ଉଠିଆସିଛି ବୋଲି ଶୋଷୀ ଜାଣିଲା କି ନା–ସତିଆ କିନ୍ତୁ ଜାଣିଲା ମାଉସୀର ପ୍ରାଣପକ୍ଷୀ ସତିଆକୁ ଚକେଇ ରହିଥିଲା; କାରଣ ତା' ପରଦିନ ରାତି ପାହା ପାହା ବେଳକୁ ଶୋଷୀର ଶେଷ ନିଃଶ୍ୱାସ ଉଡ଼ିଗଲା ।

ସେଦିନ ଦାହ ପରେ ଶ୍ମଶାନରୁ ଲେଉଟି ଦାଣ୍ଡପିଣ୍ଡାର ଅନ୍ଧାରରେ ନୁରି ଦାସ ଆଖିବୁଜି ଅତି କୋମଳ-ମଧୁରିଆ-ମୃଦଙ୍ଗ ଟୁଙ୍ଗ୍‌ଟୁଙ୍ଗ୍ ଭିତରେ ଉଦାସିଆ ସୁର୍ ଛାଡ଼ି ନାମ କୀର୍ତ୍ତନ କରୁଥିଲେ ''ହରେ କୃଷ୍ଣ ହରେ କୃଷ୍ଣ, କୃଷ୍ଣ କୃଷ୍ଣ ହରେ ହରେ– ହରେ ରାମ ହରେ ରାମ, ରାମ ରାମ ହରେ ହରେ...''

ଘର ଭିତରୁ ବୋହୂର ବାହୁନା ଶୁଭୁଥିଲା– ''ହାଁ ମାଉସୀ ଆମକୁ ଛାଡ଼ି କୁଆଡ଼େ ଗଲ ଲୋ...'' ଏଇଟା ପ୍ରଥା, ପ୍ରେତାତ୍ମାର ତୁଷ୍ଟି ପାଇଁ...

ସତିଆ ନିଭିଲା ଚୁଲି ପାଖରେ ବସି ପିଲାଙ୍କମିତି 'ମାଉସୀ ମାଉସୀ' ଡକାପାରି ଲୁହ ଗାଳୁଥିଲା ଗଳଗଳ... ଏଇଟା ସତ । କେଜାଣି ବୁଢ଼ୀଟା ଏତିକିରେ ମାଉସୀ ଜନ୍ମରୁ ମୋକ୍ଷ ହୋଇଯିବକି କ'ଣ !

ଦେଢ଼ଶାଶୁର ଦେହାନ୍ତରେ ମୃଦଙ୍ଗଟି ଶୋକ ମନେଇ ରାତିସାରା ବାହୁନୁଥିଲା ଟଙ୍ଗ୍ ଟଙ୍ଗ୍ ଟଙ୍ଗ୍ ଟଙ୍ଗ୍... ନୁରି ଦାସଙ୍କ ଟିପ ଫାଟି ରକ୍ତ ମିଶୁଥିଲା ମୋକ୍ଷର ତାଳରେ ।



# ଦଉଡ଼

## କନକଲତା ମହାନ୍ତି

ଖସ୍ ଖସ୍ ଶବ୍ଦ ହଉଥାଏ ହାତମୁଠାକୁ ଟିକିଏ ଚାପିଦେଲେ ।

ଗୋଟାଏ ଅପୂର୍ବ ବାସ୍ନା ବାସିଲା ପରି ବି ଲାଗୁଥାଏ ସେଇ ଅନ୍ଧାରୁଆ ଉଷୁମୁଳିଆ ଗନ୍ଧିଆ ଝୁମ୍ପୁଡ଼ି ଭିତରେ । ଭୋକିଲା ପେଟ ଅବା ପୂରି ଉଠୁଥାଏ ସେଇ ବାସ୍ନାରେ, ସେ ଶବ୍ଦରେ, ସେ ସ୍ପର୍ଶରେ ।

ଟକ୍ ଟକ୍ ଅରଖ ନୂଆ ନୋଟ୍ ଦଶ ଖଣ୍ଡ । ଶହେ ଟଙ୍କିଆ ନୋଟ୍ କିଛି, ଅର୍ଥାତ୍ ପାର୍ବତୀ ଅବିକା ହାତ ମୁଠାରେ ଧରିଛି ନଗଦ ହଜାରେ ଟଙ୍କା ।

ନିଜ ଶୁଖିଲା ଶୋଷିଲା ଓଠ ଉପରେ ଜିଭ ବୁଲେଇ ଆଣିଲା ପାର୍ବତୀ । ମନେ ମନେ ଆଉ ଥରେ ଗୀତର ଅତି ପ୍ରିୟ ଘୋଷା ପରି ଉଚ୍ଚାରଣ କଲା, ହଜାରେ ଟଙ୍କା, ହଜାରେ ଟଙ୍କା... ।

ପାର୍ବତୀର ବାହାଘର ହେଲାଣି ବଜରା ଦଶବର୍ଷ । ସତର ବର୍ଷରୁ ସତେଇଶ ବର୍ଷ ହେଲାଣି ପାର୍ବତୀକୁ । ଏତେ ବର୍ଷ ଜୀବନ କାଳ ଭିତରେ ଏକାବେଳକେ ସେ ହଜାରେ ଟଙ୍କା ଦେଖି ନଥିଲା, ଧରିବା ଦୂରେ ଥାଉ ।

ତା' ବାପ, ତା' ଗେରସ୍ତ, କେହି ତାକୁ ଏକାବେଳେକେ ଟଙ୍କା ପାଞ୍ଚଶ' ମଧ୍ୟ ଦେଇନଥିଲେ । ତା' ନିଜର ଅର୍ଜନ ମାନେ ତା' ମାସିକ ଦରମା ଅବା କେତେ ! ଧିକ୍‌ଚିକ୍‌ରେ ମୋଟେ ଅଶୀ ଟଙ୍କା, ଶହେକୁ କୋଡ଼ିଏ ଟଙ୍କା କମ୍ । ହଜାରେ ଟଙ୍କାର ସ୍ୱପ୍ନ ତା' ପକ୍ଷେ ଆକାଶ କଇଁଆ ଚିଲିକା ମାଛ ପରି ।

ତା' ଗେରସ୍ତ ପଞ୍ଚାନନ ଏଠି ଥିଲାବେଳେ, ରୋଜଗାର କରୁଥିଲାବେଳ, କେତେଥର ଭାବିଛି ପାର୍ବତୀ କିଛି ଟଙ୍କା ରଖିବ । ରଖି ରଖି ହଜାର ଟଙ୍କା କରିବ । ତା'ର ଯୋଡ଼ିଏ ଝିଅ ହେଲେଣି, ତା'ର ଲମ୍ବା ଭବିଷ୍ୟତ୍ ପଡ଼ିଛି । ଭାବନା କିନ୍ତୁ ଭାବନାରେ ରହି ଯାଇଛି । ଦଶ ବର୍ଷ କାଳ ସେଇ ଗୋଟାଏ ଶରୀର ଭୋଗରେ, ସେଇ ଗୋଟାଏ ସ୍ପର୍ଶ, ଗୋଟିଏ ଅନୁଭୂତି, ଗୋଟାଏ ମୁହଁ ଦେଖାରେ, ହୁଏତ ଅତିଷ୍ଠ ହେଇଛି ପଞ୍ଚାନନ । ଆଜିକି ଠିକ୍ ଦଶମାସ ତଳେ ସେ ଘର ଛାଡ଼ି ଯାଇଛି ରାଉରକେଲା ଯାଉଛି କହି । କହିଯାଇଛି, ଚିଠି ଦେବି, ଟଙ୍କା ପଠେଇବି । ହାତରେ ପାଇସା ହେଲେ ଚାଲି ଆସିବି, ଚିନ୍ତା କରିବୁ ନାହଁ ।

ଦଶମାସ ବିତିଗଲାଣି ! ଟଙ୍କାର ଦେଖାନାହିଁ, ଚିଠି ଦେଖାନାହିଁ କି ମଣିଷର ବି ଦେଖାନାହିଁ ।

ଏଇ ବସ୍ତି ଲୋକ କହୁଛନ୍ତି ପଞ୍ଚାନନ ଓଲଡ୍ ଟାଉନ୍ ଆଡ଼େ ଆଉ କୋଉ ବସ୍ତିରେ ଅଛି । ଗଙ୍ଗା ବୋଲି ସୁନ୍ଦରୀ ମାଇପିଟିଏକୁ ମୁଣ୍ଡରେ ମୁଣ୍ଡେଇ ରଖିଛି । ଏ ସଂସାର ସେ ତେଜ୍ୟା କରି ଦେଇଛି । ପୁରୁଷ ଲୋକଟି, ସ୍ତ୍ରୀ ଲୋକଟିକୁ ତ୍ୟାଜ୍ୟ କରିଦେବା କେଡ଼େ ସହଜ ସତେ ପାଦର ହଳେ ଛିଣ୍ଡା ଚଟି ପରି । ଅଣ୍ଟାର ଚିରାଫଟା ଗାମୁଛା ପରି । ଦେହର ମଳି ପରି ।

ଝିଅ ଦୁହିଁଙ୍କ ମୁହଁ ବି ମନେ ପଡ଼ିଲା ନାହିଁ ! ତିନିଟା ପେଟ କେମିତି ପୂରେ ? ପାର୍ବତୀ କେମିତି ଚଳେ ଶୂନ୍ୟ ହାତରେ ? ବିନା ପଇସାରେ ଆଜିକାଲି ବିଷ ଟିକିଏ ମିଳିବା କଷ୍ଟ, ଭାତ କଥା ତେଣିକି ଥାଉ । ପଇସା ଥିଲେ ପାଦ ଅଟଳ, ସ୍ଥିର ଅଛି । ହାତମୁଠା ଟାଣ୍ ଅଛି ।

ପାର୍ବତୀ ହାତମୁଠା ଖୋଲିଲା ଆଉ ବନ୍ଦ କଲା । ତାକୁ ତା' ହାତ ବେଶ୍ ଭାରି ଭାରି ଲାଗିଲା । ସତେକି ସେ ଶତ ସିଂହର ବିକ୍ରମରେ ପର୍ବତ ଟେକି ଧରିଛି, ସସାଗରା ପୃଥ୍ୱୀ ଧରିଛି ।

ଓହୋଃ, ହଜାରେ ଟଙ୍କା କ'ଣ ଏଇଠି କୋଉଠି ପଡିଛି ? ହଠାତ୍ ପାର୍ବତୀର ଛାତିଟା ଓଦା ଓଦା ଲାଗିଲା... ଶିର୍ ଶିର୍ ଲାଗିଲା । ପାର୍ବତୀ ଯୋଉ କଥାଟାକୁ ଏଯାଏ ଚାପି ଦବାକୁ ଚେଷ୍ଟା କରୁଥିଲା ଆଉ ଭିତରେ ଭିତରେ କାନ ଭିତରେ ପିମ୍ପୁଡି ପରି ଯୋଉ କଥାଟା ରଟ୍ ରଟ୍ କାମୁଡୁଥିଲା, ସେଇ କଥାଟା ଉପରକୁ ଉଠି ଆସିଲା ।

ପାର୍ବତୀର ଛାତିରୁ କ୍ଷୀର ବୋହି ଯାଉଛି... । ଛାତି ଟଣକେଇ ଶିର୍ ଶିର୍ ହଉଛି । ପାର୍ବତୀ ଆଖିରେ କଅଁଳା ଛୁଆର ମୁହଁ ଛାୟାଛବି ପରି ଦିଶି ଯାଉଛି । ପାର୍ବତୀ କ'ଣ ପାପ କରିଛି ? ଜାଣି ଶୁଣି, ବୁଝି ସୁଝି ଅନ୍ୟାୟ କରିଛି ?

ପାର୍ବତୀ ହାତର ଓଜନ ସମଗ୍ର ଶରୀରକୁ ଗ୍ରାସ କଲା । ଟେକି ଧରିଥିବା ପର୍ବତ କି ପୃଥ୍ୱୀ ଧୀରେ ଧୀରେ ତା'ରି ଉପରେ ଚାପି ହେଇ ଆସିଲା । ଧୀରେ ଧୀରେ ଅବା ତା' ଆଖିରୁ ଆଲୁଅ ଲିଭିଗଲା, ତା' ନିଶ୍ୱାସ ରୁନ୍ଧି ହେଇ ଆସିଲା, ତା' ନିଜ ଭିତରୁ ସ୍ୱରଟିଏ ତାକୁ ଚେତେଇ ଦେଲା କି ଖତେଇ ହେଲା କେଜାଣି, ତୁ ପାପ କରିଚୁ ! ପାପ କରିଚୁ !

ପାପ ଧନ ପ୍ରାୟଶ୍ଚିତରେ ଯାଏ । ସାନ ଝିଅଟା ଛିଣ୍ଡା କନ୍ଥା ଉପରୁ ଚମକି ପଡି କାନ୍ଦି ଉଠିଲା । ବଡଝିଅ କଡ ଲେଉଟାଇଲା, ଡିବି ଆଲୁଅ ଧାସରେ କଳା କଳା ଛାଇ ନାଚିଗଲା ଅବା । ମୂଷା, ଚୁଚୁନ୍ଦ୍ରା କି ଅସରପା ଖୁଡ୍ ଖାଡ୍ କଲେ । ସବୁଦିନ ଏ ପରିଚିତ ଶବ୍ଦକୁ ଶୁଣେ ପାର୍ବତୀ, କେବେ ତ ଚମକି ନଥିଲା । ଆଜି ଚମକିଲା । ଚମକି ପଡି ସାନ ଝିଅ ଦେହରେ ହାତ ପକେଇଲା, ଦେହସାରା ତା'ର ସିଁ ହେଲା ପରି ମଶା ବସିଥିଲେ । ଗୁଣୁଗୁଣୁ ହେଇ ଉଡି ବୁଲିଲେ । ଦେହଟା ତାତିଲା ଲାଗୁଛି କି ? ଜର ହେଲା କି ଆଉ ଝିଅଟାକୁ ? ବଡ ଝିଅ ବି ସଞ୍ଜ ପହରେ କାଶୁଥିଲା । ଦିଇଟାଯାକ ପିଲାଙ୍କୁ ରତନୀ ମାଉସୀ ଜିମା ଦେଇ ହସ୍‌ପିଟାଲ୍ ଯାଇଥିଲା ପାର୍ବତୀ । ଡାକ୍ତରାଣୀ କହିଲେ ତା' ଦେହରେ ରକ୍ତ ନାହିଁ । ଶକ୍ତି ନାହିଁ । ହସ୍‌ପିଟାଲରେ ରହିବାକୁ ହବ !

ରତନୀ ମାଉସୀ ଅବଶ୍ୟ ତା'ପାରୁ ପର୍ଯ୍ୟନ୍ତ କରିଛି । ନିଜ ହାତରୁ ଖୁଆଇଛି । ରାତିରେ ଜଗି ଶୋଇଛି । ଆଜି ବି ଅଧବେଳାଏ ତବତ ଭାତ ଆଣି ଦେଇଗଲା । ରାତିସାରା ଡିବି ଜାଳିବାକୁ ଡିବିଏ କିରୋସିନୀ ତେଲ ଦେଇଗଲା । କହିଲା, ଆଜି ଦିନଟା ଘର ଅନ୍ଧାର କରିବୁ ନାହିଁ । ଆଉ କେତେ ଦିଅନ୍ତା ସେ ?

ସେ କିନ୍ତୁ ଜାଣି ନାହିଁ, କେହି ବି ଜାଣି ନାହାନ୍ତି ପାର୍ବତୀ ପାଖରେ ହଜାରେ ଟଙ୍କା ଅଛି ବୋଲି । ପାର୍ବତୀ ଅଣ୍ଟିରେ ପାପ ଅଛି ବୋଲି । ସେଇ ପାପ ନିଶେ ଗ୍ରାସିଲାଣି ଝିଅଟାକୁ ଜର ହେଇ ।

ସକାଳ ହେଲାକ୍ଷଣି ଟଙ୍କା ବୋହି ଯିବ, ପାଣି ବୋହିଗଲା ପରି ଓଷଦରେ, ପଥିରେ, ଡାକ୍ତର ବଇଦରେ । ହେ ଭଗବାନ୍, ନଅମାସ କାଳ ପଞ୍ଚାନନ ଘର ଛାଡି ଅନ୍ତର ହେଲା ଦିନୁ ପାର୍ବତୀ କେତେ ଦୁଃଖ କଷ୍ଟରେ, କେତେ ଅଭାବ ଅସୁବିଧାରେ ଏ ପିଲାଙ୍କୁ ଚଳେଇଥିଲା, କିନ୍ତୁ ପାପ କରି ନଥିଲା, ଅନ୍ୟାୟ କରି ନଥିଲା । ତା' ପାଦ ସିଧା ପଡୁଥିଲା, ମୁଣ୍ଡ ସଳଖ ଥିଲା । ତା' ଆଖିରେ ତେଜ ଥିଲା, କଥାରେ ଜୋର୍ ଥିଲା । ତା'ର କି ତା' ପିଲାଙ୍କ ପାଦରେ କଣ୍ଟା ଫୁଟିବ ନାହିଁ ବୋଲି ଗୋଟାଏ ଦୃଢ ବିଶ୍ୱାସ ଥିଲା । ବାପ ଛାଡି ଦେଇ ଗଲେ ବି ସେ ସେମାନଙ୍କୁ ମଣିଷ କରିବ ବୋଲି ଗୋଟାଏ ଆଣ୍ଟ ଥିଲା, ମୁହୂର୍ତ୍ତକେ ଯେ କ'ଣ ହେଇଗଲା ?

ତାକୁ ଆଜି ସାଇ ପଡିଶା, ଚିହ୍ନା ଜଣା, ରତନୀ ମାଉସୀ ଏପରିକି ତା'ର ଏ ଅବୋଧ ପିଲା ଯୋଡିକ ସେଇ ଗୋଟିଏ ପ୍ରଶ୍ନ ପଚାରିଲେ, "ପିଲା କ'ଣ ମରିଗଲା ?" ସିଏ ସେମାନଙ୍କୁ ଧାର ଧାର ଲୁହରେ ଜଳ ଜଳ କରି ଅନେଇଲା, ବୋକାଙ୍କ ପରି ଅନେଇଲା । ଦୋଷ କଲା ପରି ଅନେଇଲା । ସମସ୍ତେ ଧରିନେଲେ ପିଲା ମରି ଯାଇଛି ।

ରତନୀ ମାଉସୀ ସାନ୍ତ୍ୱନା ଦେଲା, "ଯା ଯା ଗାଧୋଇ ପଡ । ତୁଳସୀ ପାଣି ପାଇ ଦେ । ପାଣି ହାଣ୍ଡି ଛୁଆଁକୁ କି ଅଶୌଚ ? ଆସିଲା, ଗଲା । ତୋ ଦେହରେ ଖାଲି ଯାହା ପରାସ ଦେଲା । ସବୁ କଷ୍ଟଯାକ ତୋର ଅକାରଣ ଗଲା ।"

ସେ ତ କହି ପାରିଲା ନାହିଁ, କେଡେ କାଳ କଥା କହୁଚ ? ମରିବ କାହିଁକି ମୋ ପିଲା ! ଦିବ୍ୟ ସୁନ୍ଦର ରଜାଘର କୁମର ପରି ପୁଅ ମୋର । ରଜାଘରେ ବଢୁଛି, ଗୋପରେ ବଢୁଛି । ତାକୁ ଅଡୁଆ ହେଲା ତା'ର ପାପ, ଅଡୁଆ ହେଲା ଏଇ ହଜାରେ ଟଙ୍କା । ଏଇ ହଜାରେ ଟଙ୍କା ପାଇଁ ଜୀଅନ୍ତା ପିଲାଟା ତା'ର ମଲା ପିଲା ହେଇଗଲା । ଓହୋଃ ! ହେ ମା' ବୁଢୀ ମଙ୍ଗଳା, ପିଲାକୁ ମୋର ଘଣ୍ଟ ଘୋଡେଇ ରଖ । ତା'ର ସବୁଯାକ ରିଷ୍ଟ ଅନିଷ୍ଟ ମୋରି ମୁଣ୍ଡରେ ପଡୁ । ତା'ର ସବୁ ଗ୍ରହଦଶା ମତେ ଭୋଗ ହଉ । ଛିଡିପଡୁ ମୋର ଏଇ ଗୋଡ ହାତ । ଯୋଉ ହାତରେ ମୁଁ ମୋ ପୁଅକୁ ମୋ ଦୁଃଖୀ ସଂଖାଳିକି ବିକି ଟଙ୍କା ଧରିଛି ।

ପାର୍ବତୀ ଆଣ୍ଠୁ ଉପରେ ମୁଣ୍ଡ ଥୋଇ ଚାପା ସ୍ୱରରେ ବାହୁନିଲା । ଏଇ ଘରେ ନୁହେଁ ଝିଅ ଦିହିଁଙ୍କ ପାଖରେ ନୁହେଁ କି ଏ ବସ୍ତି ଭିତରେ ନୁହେଁ ତାକୁ ଗୋଟାଏ ନିର୍ଜନ ବଣରେ ଥୁଣ୍ଟା ଶାଖାପତ୍ର ବିହୀନ ଗଛ ତଳେ ଏକୁଟିଆ ବସିଲା ପରି ଲାଗିଲା । ହାତରେ ଟଙ୍କା ନୁହେଁ ମୁଠାଏ ନିଆଁ ଧରିଲା ପରି ଲାଗିଲା, ହାତର ଚମ ନୁହେଁ ତା'ର ହୃଦୟ ପୋଡିଗଲା । ସେ ହାତ ମୁଠା ଖୋଲିଦେଲା ।. ଖସ୍ ଖସ୍ ଦଶଟା ନୋଟ ତଳେ ପଡିଗଲା ମାୟାବୀ ଅସୁରର ଦଶ ମୁଣ୍ଡ ପରି ।

କେମିତି ଭଲା ସେ ଏ ଟଙ୍କା କଥା କହିଥାଆନ୍ତା ରତନୀ ମାଉସୀକି ? ଆଉ ସମସ୍ତଙ୍କୁ ? ସମସ୍ତେ ତାକୁ ମାଛ କେନେଇଲା ପରି କେନେଇ ଖାଇ ଯାଇନଥାନ୍ତେ ? ଛି ଛାକର କରି ନଥାନ୍ତେ ? ଛେପ ପକେଇ ନଥାନ୍ତେ। ତା' ମୁହଁକୁ ? ମା' ହେଇ ସେ ପିଲାକୁ ବିକିଛି ? ତା' କୋଳ ପୂର୍ଣ୍ଣ ହେଇ ଥାଆନ୍ତା, ଶୂନ୍ୟ ପଡିଛି । ତା' କ୍ଷୀର ପିଲା ଖାଉଥାନ୍ତା, କୁନି କୁନି ହାତରେ ଛାତି ଅଣ୍ଡାଳୁ ଥାଆନ୍ତା, ସେ କ୍ଷୀର ଝରି ଯାଉଛି । ପାର୍ବତୀ ଗରିବ । ପାର୍ବତୀ ହାଡୁଆ ଓ ସରୁଆ, କିନ୍ତୁ ପାର୍ବତୀର ଏତେ କ୍ଷୀର ହୁଏ ଯେ ଛୁଆ ଖାଇ ଖାଇ ସରେ ନାହିଁ । ଅଢେଇ ତିନି ବର୍ଷ ଯାଏ ଛୁଆ ପାଇଁ ବାହାର ଖାଇବା ଲୋଡା ପଡେ ନାହିଁ । ପଞ୍ଚାନନ ଥଟ୍ଟାରେ କହେ, "ତୁ ଆମର କପିଳା ଗାଈ କାମଧେନୁ ।"

ପଞ୍ଚାନନ ଥିଲେ କ'ଣ ପାର୍ବତୀ ଏଡେ ବଡ ପାପ କରିଥାଆନ୍ତା ? ଏତେ ବେଶି ଦୁଃସାହସ କରିଥାଆନ୍ତା ? ଏଇ ବସ୍ତିର ପଞ୍ଚେଇ ତା' ପାଞ୍ଚବର୍ଷର ପୁଅକୁ ବିକିଛି ବୋଲି ଥରେ ହଲ୍ଲା ଉଠିଲା । ପୁଲିସ୍ ଆସିଲା । କେତେ ଧର୍ ପଗଡ ହେଲା । ଯେ ଖାଲି ଭିତରର ପାପ ନୁହେଁ । ଆଇନ୍ ଅଦାଲତରେ ଅପରାଧ ବୋଲି ପଞ୍ଚାନନ କହିଲା । ଜେଲ୍ ଜୋରିମାନା ଯାଏ କଥା ଯାଏ ବୋଲି ଗପିଲା । ପାର୍ବତୀ କହିଲା, "ଛି, ନ ଖାଇ ଜୀବନ ଛାଡିଗଲେ ଯିବ । ପେଟର ପିଲାକୁ ବିକି ଖାଇବ ? ମଣିଷ ନା ରାକ୍ଷସ ?"

କୁଆଡେ ଛପିଗଲା ସେ ପାର୍ବତୀ ? ଏ ପାର୍ବତୀ ଆଉ ଜଣେ କିଏ ?

ଚିନ୍ତାରେ, ଭୋକରେ, ଲୋଭରେ ଲୁଡୁବୁଡୁ, ନିଉଁଛଣା ଜୀବନ ବଞ୍ଚେଇବାକୁ ଆତୁର କାତର ଆଉ ଗୋଟିଏ ପାର୍ବତୀ । ପାର୍ବତୀ ପୁଣି ଏକୁଟିଆ ନୁହେଁ ତା' ବେକରେ ଆଉରି ଯୋଡ଼ିଏ ପିଲା ଓହଳିଛନ୍ତି । ରାତି ପାହିଲେ କହିବେ ଭୋକ । ଗାଧୁଆବେଳ ଗଡ଼ିଲେ ମାଗିବେ ଭାତ । ସଞ୍ଜ ହେଲେ ରଡ଼ିବେ, "ଦେ ଖାଇବାକୁ ଦେ ।"

ଖାଲି ଖାଇବା ନୁହେଁ ! ପିନ୍ଧିବାର ବି ସମସ୍ୟା ଅଛି । ଝିଅପିଲା ଦିଇଟା ଗଜାଗଛ ପରି ବଢ଼ି ଯାଉଛନ୍ତି । ମୁଣ୍ଡ ଗୁଞ୍ଜିବାକୁ ଝୁମ୍ପୁଡ଼ି ଖଣ୍ଡକ ଲୋଡ଼ା । ଏ ଝୁମ୍ପୁଡ଼ିର ଭଡ଼ା ପୁଣି ମାସକୁ ପନ୍ଦର ଟଙ୍କା । ପାର୍ବତୀ ଆଉ ପାଞ୍ଚ ଟଙ୍କା ବଢ଼ାଉ ନାହିଁ ବୋଲି ମାଲିକ୍ ମରାମତିର ନାଁ ଧରୁନାହିଁ । ଚାଳ ଉଲୁରି ଗଲାଣି । କେରପାଲ ଛିଣ୍ଡି ଗଲାଣି । କାନ୍ଥ ବତୁରି ଗଲାଣି, କବାଟ ଉଇ ଧଇଲାଣି ।

ପାର୍ବତୀ କରେ କ'ଣ ?

ନଅମାସ ହେଲା ସେ ଧାରଉଧାର ବାକି ବୁକରରେ ଚଳୁଛି । ଡାଲି ଚାଉଳ ଦୋକାନରେ ବାକି, ପରିବା ଦୋକାନରେ ବାକି, ସାହି ପଡ଼ିଶାରେ ଧାର ଉଧାର । ବସ୍ତି ହେଲେ ବି ଯାହାଙ୍କ ଘରେ ପାଞ୍ଚଜଣ ପାଞ୍ଚ ପ୍ରକାରେ ପଇସା କମାନ୍ତି, ବେଶ୍ ଭଲରେ ଚଳନ୍ତି ସେମାନେ । ଝୁମ୍ପୁଡ଼ିରେ ଟି.ଭି., ରେଡ଼ିଓ, କଂସା ବାସନ, ଟ୍ରଙ୍କ୍, ସୁଟ୍‌କେଶ୍, ଗହଣାଗାଣ୍ଠି । ତାଙ୍କ କଥାରୁ, ତାଙ୍କ ଚାଲିରୁ, ତାଙ୍କ ଢଙ୍ଗ ରଙ୍ଗରୁ ତାଙ୍କ ଗମାତ୍ ଜଣାପଡ଼େ ।

ପାର୍ବତୀ ଦିନେ ସେଇଭଳି ଥିଲା । ପଞ୍ଚାନନର ସାଇକେଲ ମରାମତି ଦୋକାନ । ବେଶ୍ ଭଲ ହାତ । ଭଲ ରୋଜଗାର । ପଞ୍ଚାନନ ମେଟ୍ରିକ୍ ଫେଲ୍ । ବସ୍ତିର ଶିକ୍ଷିତ ଗୋଷ୍ଠିରେ ଗଣା । ପାର୍ବତୀ ଘରଣୀ ହେଇ, ନିଜ ଝୁମ୍ପୁଡ଼ିରେ ରାଣୀ ହେଇ ଦିନ କାଟୁଥିଲା । ବର୍ତ୍ତମାନ ଭଳି ପରଘରେ ବାସନମଜା ଚାକରାଣୀ ନଥିଲା । ଅଶି ଟଙ୍କା ଦରମାରେ ଦିନେ ଖାଇ ଦି'ଦିନ ଉପାସ ରହୁନଥିଲା । ପଞ୍ଚାନନ ସାଙ୍ଗରେ ସିନେମା ଯାଉଥିଲା, ବଜାର ଯାଉଥିଲା । ଗପ ବହି, ଶୁଆସାରି କାହାଣୀ, ମାର୍କଣ୍ଡ ପୁରାଣ ପଢୁଥିଲା । ବଡ଼ଝିଅକୁ ସ୍କୁଲ୍‌କୁ ପଠାଉଥିଲା ।

ପଞ୍ଚାନନ ଆଦରି କରି କହୁଥିଲା, ତୋ ଭଳିଆ ମୋ ଝିଅ ପଞ୍ଚମ ଶ୍ରେଣୀରୁ ପଢ଼ା ଛାଡ଼ି ରହିବ ନାହିଁ, ପୂରା ପଢ଼ିବ ।

ହଠାତ୍ କିଏ ସବୁ ବା କୋଉ ଦଳ 'ଓଡ଼ିଶା ବନ୍ଦ' ଡାକରା ଦେଲେ । ପଞ୍ଚାନନ ଘରେ ଥିଲା । ଖୁସିରେ ପାର୍ବତୀ ବେଶ୍ ରନ୍ଧାବଢ଼ା କରୁଥିଲା । ଆଜି ବେଳାବେଳି ଖାଇ, ମଙ୍ଗଳା ଉଭା ଜାଗାକୁ ଯିବେ । ମଙ୍ଗଳାଙ୍କ କାଳିସୀଙ୍କୁ ପଚାରିବେ- ଦି ଝିଅ ତଳେ ପୁଅ ହବ ନା ନାହିଁ ?

ବସ୍ତି ମୁଣ୍ଡରେ ହଠାତ୍ କିଏ କହିଲା, "ବଜାରରେ ନିଆଁ ଲାଗିଛି । ବଜାର ଜଳିଗଲା, ପଞ୍ଚାନନର ଦୋକାନ ଜଳିଗଲା । ପାର୍ବତୀର ସୁଖ ସୌଭାଗ୍ୟ ଜଳିଗଲା ।"

ଆଉ ଯେତେ ଯାହା କଲେ ବି ପଞ୍ଚାନନର ଅବସ୍ଥା ବଦଳିଲା ନାହିଁ । ପଞ୍ଚାନନକୁ ଲକ୍ଷ୍ମୀ ପ୍ରସନ୍ନ ହେଲେ ନାହିଁ । ଘରେ ଯାହା ଥିଲା ବିକି ଭାଙ୍ଗି ପଞ୍ଚାନନ ମଦ ଧଇଲା । ବେଳେ ବେଳେ ଜୁଆ ଖେଳିଲା । ଦୁଇଟା ଝିଅର ମା' ବୋଲି ପାର୍ବତୀକି ଖୁଣ୍ଟା ଦେଲା । ହାତ ଉଠେଇ ମାଡ଼ ବି ମାରିଲା, ଶେଷକୁ ଦିନେ ଘର ଛାଡ଼ି ପଳେଇଲା । ବସ୍ତିରେ କ'ଣ ନ ହୁଏ ? ଦେହ ବେଉସା ବି ତ ହୁଏ । ପାର୍ବତୀ ପାଖଯାଏ ବି କଥାଟା ଉଡ଼ି ଆସିଥିଲା, ପେଟ ପୋଷ ନାହିଁ ଦୋଷ । ଅନ୍ଧାରରେ ସମସ୍ତେ ଅସତୀ, ଆଲୁଅରେ ସମସ୍ତେ ସତୀ । ସତ୍ ଅସତ୍‌ରେ କୋଉଠି ଲକ୍ଷ୍ମଣରେଖା ପଡ଼ିଛି ? କିଏ ତାକୁ ଦେଖୁଛି ? କେତେ କେତେ ଘରର ଝିଅ-ବୋହୂ ତ କୁଆଡ଼େ କ'ଣ କରୁଛନ୍ତି । ଆମେ କି ଛାର୍ । ପୁଣ୍ୟ କ'ଣ, ପାପ କ'ଣ ? ଏଇ ପାର୍ବତୀ ହାତଯୋଡ଼ି କହିଲା, ସତ୍ୟ ଅଛି,

ଧର୍ମ ଅଛି । ସୂର୍ଯ୍ୟ ଉଦୟ ହଉଛି । ପବନ ବହୁଛି । ପୃଥ୍ୱୀ ରହିଛି । ପାପ ପୂଣ୍ୟର ଫଳ ବି ଅଛି । ପାପ ମୁଁ କରି ପାରିବି ନାହିଁ । ମୋ ବିଶ୍ୱାସ ମୁଁ ହାରି ପାରିବି ନାହିଁ । ସେ ଜାଣି ନପାରି ଚାଲିଗଲା ସିନା, ତା' ପିଲା ମୋ ପେଟରେ ଖେଳୁଛି । ମୁଁ ପଛେ ବାସନ ମାଜି ଭାତ ଖାଇବି । ସତ୍‌ରେ ରହିବି । ଏଇ କଥା କେଇ ପଦ ପାର୍ବତୀର ସମ୍ମାନ ବଢେଇ ଦେଇଥିଲା । ତାକୁ ବାକି ଦବାକୁ, ଉଧାର ଦବାକୁ ଲୋକଙ୍କର ବିଶ୍ୱାସ ହେଇଥିଲା ।

ପାର୍ବତୀ ତେବେ ଏଡେ ବଡ ପାପ କଲା କାହିଁକି ? ଆଉ କାହା ପାଖରେ ନହଉ, ନିଜ ଅନ୍ତରାତ୍ମା ପାଖରେ ନିଜର ବିଶ୍ୱାସ ହାରିଲା କାହିଁକି ? ମା' ପଣିଆର ସତ୍ୟକୁ, ମା' ପଣିଆର ଧର୍ମକୁ ଛାଡିଲା କାହିଁକି ? ସୂର୍ଯ୍ୟ ଯଦି ଉଦୟ ହଉଛି, ପବନ ବହୁଛି, ପୃଥ୍ୱୀ ରହିଛି ପାର୍ବତୀ ଟଳିଗଲା କାହିଁକି ?

କାଲି ଯଦି ଏ ବଢନ୍ତା ଝିଅଙ୍କୁ କିଏ କିଣି ନବାକୁ ଚାହେଁ, ପାର୍ବତୀର ବଢନ୍ତା ଦୁର୍ବାର ସର୍ବନାଶୀ ଲୋକ ବିକି ନ ଦବ ବୋଲି କୋଉ ବିଶ୍ୱାସ ? ଥରେ ଚୂଳରୁ ତଳକୁ ପଡିଲେ ପାତାଳକୁ, ରସାତଳକୁ ନପଡିବ ବୋଲି ଆଉ କୋଉ ଭରସା ?

ନିଜ ଦେହ ବିକିବା, ନିଜ ପିଲା ବିକିବା କ'ଣ ସମାନ ନୁହେଁ ? ପାର୍ବତୀ ରକ୍ତରୁ ରକ୍ତ, ମାଂସରୁ ମାଂସ, ହାଡରୁ ହାଡ, ରୂପରୁ ରୂପ ନେଇ କ'ଣ ସେ ପୁଅ ଗଢା ହେଇ ନାହିଁ ?

ପାର୍ବତୀ ଅବଶ୍ୟ ନିଜ ଅଭାବ ଅନାଟନ କଥା ଗଭୀର ଭାବରେ ଚିନ୍ତା କରୁଥିଲା । ନିଜେ ଖାଇଲେ ସିନା, ଛୁଆଟା ପାଇଁ କ୍ଷୀର ହବ । ନିଜର ବଳ ପାଇଲେ ସିନା ଆଉ ଦି'ଘର ଅଧିକା କାମ ଧରିବ । ଆଉ କିଛି ଟଙ୍କା କମେଇବ । ବାକିବାଲାଙ୍କୁ, ଧାର୍ ଉଧାର୍ ବାଲାଙ୍କୁ କିଛି ଦେଲେ ସିନା ଆଉ କିଛି ଆଣିବ ।

ହସ୍‌ପିଟାଲ୍‌ରେ ଖୁବ୍ ବେଶୀରେ ସାତଦିନରୁ ବେଶୀ ରଖିବେ ନାହିଁ । ସେ ଘରକୁ ଆସିଲା କ୍ଷଣି ରତନୀ ମାଉସୀ ବି ତା'ର ଝିଅ ଦୁହିଁଙ୍କ ଖବର ବୁଝିବ ନାହିଁ । ପାର୍ବତୀକି ଚାରିଆଡ ଅନ୍ଧାର ଦିଶୁଥିଲା, ଶୂନ୍ୟ ଦିଶୁଥିଲା, ଅଭାବରେ ପଡି ତା'ର ଏ ସ୍ୱଭାବ ନଷ୍ଟ ହେଲା ।

ନ'ମାସ ତଳର ଟାଣପଣ, ନ' ମାସ ପରେ ରହିଲା ନାହିଁ । ମଣିଷର ଟାଣପଣ ରହିବା ଭାରି କଷ୍ଟ । ଧର୍ମକୁ ଆଶ୍ରା କରିବା ଭାରି କଠିନ । ସତ୍ୟର ଖଣ୍ଡାଧାରରେ ଚାଲିବା ଖୁବ୍ ଦୁଃସାଧ୍ୟ । ତଥାପି ଏମିତି ସଂସାରୀ ମଣିଷ, ଅଭାବୀ ମଣିଷ, ଆଖିକି ସାଧାରଣ ଦିଶୁଥିବା ମଣିଷ ସତ୍ୟ ଧର୍ମ ରଖନ୍ତି । ଧର୍ମ ବି ସେମାନଙ୍କୁ ରଖେ ।

ପାର୍ବତୀର ବାପା ମଲାବେଳେ ସେଇ କଥା କହି ମଲା । ଧର୍ମକୁ ଛାଡିବୁ ନାହିଁ, ଝିଅ । ବାପାକୁ ମଦ ଦୋକାନି ଦରବୁଢା ମଦନ ମହାପାତ୍ର ମାଗିଲା ପାର୍ବତୀର ହାତ । ଦବାକୁ ଚାହିଁଲା କନ୍ୟା ସୁନା ପନ୍ଦର ଶହ ଟଙ୍କା । ବାପା ହସିଲା । କହିଲା, "ମୋର ଏ ପଥର ଭଙ୍ଗା ମିସ୍ତ୍ରୀ ହାତ ଶେଷ ବେଳକୁ ଧର୍ମ ଭାଙ୍ଗିବ, ଭାବିଚ ? ଝିଅ ବିକିବ ? ଆରେ ମହାରାଜା ହରିଶ୍ଚନ୍ଦ୍ର ପୁଅ ଭାରିଜା ବିକିଥିଲେ ଦାନ ପାଇଁ, ଧର୍ମ ପାଇଁ । ରାମଚନ୍ଦ୍ର ନହେଲି ନାହିଁ, ରାମା ବାରିକ ହେଇ ବଞ୍ଚିଥାଏ ।"

ସେଇ ବାପର ଝିଅ ପାର୍ବତୀ ଆଜି କଲା କ'ଣ ? ନ ଖାଇ ମରିଯାଇଥାନ୍ତା, ଝିଅ ଦିଇଟାକୁ କୋଉ ଅନାଥାଶ୍ରମରେ ଛାଡି ଦେଇ ଯାଇଥାନ୍ତା । ମଲା ବେଳେ କହିଯାଇଥାନ୍ତା ହାଡିକି, ମୋ ହାଡକଙ୍କାଳ ବିକି ତମ ବାକି ପଇସା ନବ ।

ଶାନ୍ତିରେ ତ ମରି ଥାଆନ୍ତା । ପାର୍ବତୀ ହାତ ବଢେଇ ଡିବିରୁ ଗୁଳା ଝାଡିଦେଲା, ହଜାରେ ଟଙ୍କାର ନୋଟକୁ ଡିବିନିଆଁରେ ଜାଳିଦେବ ବୋଲି ଗୋଟେଇ ହାତରେ ଧରିଲା । ତା'ର ଅଭାବ ପଛକେ ଥାଉ । ଦୁଃଖ, କଷ୍ଟ, ଭୋକ ଥାଉ, କିନ୍ତୁ ଏ ପାପ ଯାଉ, ଏ ଲୋଭ ଯାଉ । ହଠାତ୍ ତାକୁ ଚାଉଁ କରି ଲାଗିଲା, ପାପ ବାହାରୁ ଗଲେ ଭିତରୁ ଯିବ କି ? ଏଇ ଟଙ୍କା କେଇଟା ଜଳିଗଲେ ତା'ର ଲୋଭ ଜଳିଯିବ କି ? ତା'ର ପୁଅକୁ ଦିନେ ଖୁଣ୍ଟା ଦେଇ କହିବେ ନାହିଁ ତ ତୋ ମା' ତତେ ବିକି ଦେଇଛି ? ମାଟିହେଲେ ଫାଟି ଯାଆନ୍ତା, ସେଥିରେ ପଶିଯାଆନ୍ତା ପାର୍ବତୀ । ବିଲେଇ କୁକୁର ଛୁଆ କଲେ, ଚଢେଇ ଅଣ୍ଡା ଦେଲେ କିଏ ପାଖ ପଶି ପାରିବ ? ଗାଈ ବାଛୁରୀ ପକେଇଲେ କିଏ ସାମ୍ନାକୁ ଯିବ ?

ମଣିଷ ପଶୁପକ୍ଷୀଠାରୁ ହୀନ । ମଣିଷ ହିଁ ଧର୍ମର ରକ୍ଷକ ପୁଣି ଭକ୍ଷକ ।

ପୁଅକୁ ସେମାନେ ଠିକ୍ ଠିକ୍ ପାଳୁଥିବେ ତ ? ରକ୍ତକୁ ରକ୍ତ ଖୋଜୁ ନଥିବ ? ସ୍ୱର୍ଣ୍ଣକୁ ସ୍ୱର୍ଣ୍ଣ ବାରୁ ନଥିବ ? ସମସ୍ତେ କ'ଣ ଯଶୋଦା ? ସବୁ ନଈ କ'ଣ ଯମୁନା ନଈ ? ବାଲି ବନ୍ଧରେ ବାଟଦିଏ ? ସବୁ ଛତ୍ର କ'ଣ ଅନନ୍ତ ନାଗଛତ୍ର ? ବର୍ଷାରୁ ଘୋଡେଇ ରଖେ ? କାହିଁକି ଭଲା ଦେଖାହେଲା ଜୀବନର ଶନିଗ୍ରହ ସେଇ ରଘୁଭାଇ ସାଙ୍ଗରେ ! ରଘୁଭାଇ ଉପରେ ପଡ଼ି ଭଲମନ୍ଦ ବୁଝିଲା । ଔଷଧ ପତ୍ର ବ୍ୟବସ୍ଥା କଲା, ଡାକ୍ତରାଣୀଙ୍କୁ ଉଢାଳକୁ ଡାକି କ'ଣ ସବୁ କଥାଭାଷା ହେଲା । ତୁରନ୍ତ ପାର୍ବତୀକି ଖଟିଆଟାଏ ମିଳିଗଲା । କେତେ ରୋଗୀ ତଳେ ପଡିଛନ୍ତି । ବାରଣ୍ଡାରେ ଗଡୁଛନ୍ତି । କେହି ତାଙ୍କୁ ଆଡ ଆଖିରେ ଅନାଉ ନାହିଁ । ଏଠି ଆଗ ପଇସା, ପଛେ କଥା । ରଘୁଭାଇ ସେଇ ହସ୍‌ପିଟାଲରେ ଚାକିରି କରି ସୁଦ୍ଧା ପାର୍ବତୀ ପାଇଁ ପଇସା ଖର୍ଚ୍ଚ କରୁଥିଲା ।

କେତେ ନରମି ଯାଇଥିଲା ପାର୍ବତୀ, ଦେବଦୂତ ଭାବିଥିଲା ରଘୁଭାଇକି । ରଘୁଭାଇ ନଥିଲେ ତାକୁ କିଏ ପଚାରନ୍ତା ଏଠି । କିଛି ନେଲେ କିଛି ଯେ ଦବାକୁ ହୁଏ । ଏ ସଂସାରରେ ଯେତେ ସମ୍ପର୍କ ଉଣା ଅଧିକେ ସବୁ ଯେ ଦବା ନବାର ସମ୍ପର୍କ, ଏକଥା ଭଲା କେମିତି ପାସୋରି ଯାଇଥିଲା ସେ । ବିଶ୍ୱାସ କରିଥିଲା ସେଇ ଯେ ପଢାବେଳର ଚିହ୍ନା ଜଣାକୁ ଆଧାର କରି, ଦୁଃଖୀ ବୋଲି ଦୟା କରି ରଘୁଭାଇ ତାକୁ ସାହାଯ୍ୟ କରୁଛନ୍ତି । ପାର୍ବତୀ ଚତୁର୍ଥ କି ପଞ୍ଚମ ଶ୍ରେଣୀରେ ପଢିଲାବେଳେ ଏଇ ରଘୁଭାଇ ନବମ ଶ୍ରେଣୀରେ ପଢୁଥିଲେ । ଭଲ ଖେଳୁଥିଲେ । ସମସ୍ତଙ୍କ ସାଙ୍ଗରେ ନିଃସଙ୍କୋଚରେ ମିଶୁଥିଲେ । ଝିଅପିଲାଙ୍କ ସଙ୍ଗେ ବେଶୀ ମିଶୁଥିଲେ । ପାର୍ବତୀ ପଛେ ପଛେ ସେତେବେଳେ ବି ସାଇକେଲ୍ ଛୁଟାଇ ଦେଉଥିଲେ ।

ପାର୍ବତୀ ପାଠପଢା ଛାଡି ଘରେ ରହିଲା ପରେ ସାଇକେଲ ହ୍ୟାଣ୍ଡଲ୍ ଧରି ବାଡ ପାଖରେ ମୁହଁ ଦେଖାଉଥିଲେ । ଗପିବାକୁ ସୁଯୋଗ ଉଣ୍ଡୁଥିଲେ । ବାପା ତାଗିଦ୍ କରୁଥିଲା ପଢା ଛାଡିଲା ପରେ ଆଉ କି ସାଙ୍ଗ ? ଆଉ କି ସମ୍ପର୍କ ?

ପାର୍ବତୀ ବାହା ହେଇ ଆସିଲା । ମଝିରେ ବହିଗଲା ଏଇ ଦଶ ବର୍ଷ । ଦଶ ବର୍ଷ ପରେ ତାକୁ ଦେଖୁ ଦେଖୁ ଚିହ୍ନିଲେ ରଘୁଭାଇ ।

ଶିକାରୀ ଆଖି ଶିକାର ଠଉରେଇ ପାରେ । ଶାଗୁଣା ଆଖି ମଢ ଠାବ କରିପାରେ ।

ଗତକାଲି ରାତି ସାଢେ ନଅଟା କି ଦଶଟା ହବ, ସେ ତା'ର ତିନି ଦିନର ଉତାଣି ଛୁଆକୁ କୋଳରେ ଧରି ମଶା କାମୁଡିଛନ୍ତି କି ନାହିଁ ତଦାରଖ କରୁଥିଲା, ଆଖି ପୁରେଇ ଦେଖୁଥିଲା ବି । ପୁଅର ମୁହଁ ଅବିକଳ ତା' ବାପ ପରି । ଏଇ ପୁଅ ହେଇଛି ଶୁଣିଲେ ସେ ଆଉ ଫେରି ଆସିବ କି ? ରଙ୍ଗଟା କିନ୍ତୁ ତା' ନିଜ ପରି ଗୋରା । ବଳିଲା ବଳିଲା ହାତଗୋଡ । ଟୁମୁକା ପେଟ ।

କଳେ କ୍ଷୀର ଖାଇଦେଲେ ସେ ପେଟ ପୂରି ଯାଉଛି । ଛୁଟ୍ କିନା ଶୋଇ ପଡୁଛି । ଆଖି ନାକ ଓଠ କିଛି ବାରିବାକୁ ନାହିଁ । ଏଇ ପୁଅ ବଡ ହେଲେ ପାର୍ବତୀର ଦୁଃଖ ଯିବ । ପଞ୍ଚାନନ ନ ଆସୁ । ସୁଖ ଖୋଜି ଯାଇଛି, ସୁଖରେ ଥାଉ । ପାର୍ବତୀ ଆଉ କାହାର ସ୍ତ୍ରୀ ନୁହେଁ । କେବଳ ତା' ପୁଅର ମା' ହୋଇ ବଞ୍ଚିବ ।

ରଘୁଭାଇ ଆସି ଟୁଲ୍ ଟାଣି ଆଣି ଗୋଡ ଝୁଲେଇ ବସିଲେ । କିଛି ଭୂମିକା ନକରି ସିଧା କହିଲେ, "ମୋ ଭଉଣୀର ମଲାପୁଅଟାଏ ଜନ୍ମହେଲା ଆଜି କି ତିନିଦିନ ତଳେ । ଯେଉଁ ଦିନ ତୋର ଏ ପୁଅ ହେଲା । ସେ ବି ଏଇ ନର୍ସିଂହୋମ୍‌ରେ ଅଛି । ମାନେ ଆର ପାଖ ଦୋତାଲାରେ ଏଇ ହସ୍‌ପିଟାଲ୍‌ରେ ।"

ପାର୍ବତୀ ଏ ଦୁଃଖ ଘଟଣାର କ'ଣ ଉତ୍ତର ଦେବ ? ରଘୁଭାଇଙ୍କ ଭଉଣୀକି ସେ ଚିହ୍ନି ନାହିଁ କି ଦେଖି ନାହିଁ । ତଥାପି ସ୍ତ୍ରୀ ଲୋକଟିଏ, ମା'ଟିଏ । କେତେ ଆଶା କରିଥିଲା । ବିଧାତା ତା' ଖାଇବା ପତ୍ରରେ ଧୂଳି ଅଜାଡିଲା । ସବୁ ଭାଗ୍ୟ, ସେ କେବଳ ସହାନଭୂତିଭରା ଆଖିରେ ଅନେଇଲା । ରଘୁଭାଇ କଥାର ଖିଅ ଜୋଡି ରଖିଲେ...

"ତତେ ମୁଁ ତୋର ଏ ପୁଅଟିକି ତା' ପାଇଁ ହାତ ପତେଇ ମାଗୁଛି, ପାର୍ବତୀ । ତୁ ମତେ ନାହିଁ କରନା । ତୁ ଗରିବ ବୋଲି ପାଳି ପୋଷି ବଡ କରି ପାରିବୁ ନାହିଁ ବୋଲି ମାଗୁନାହିଁ । ତୁ ମୋର ପଢା ବେଳର ସାଙ୍ଗଟା ବୋଲି ମାଗୁଛି ।"

ପାର୍ବତୀ ଚିତ୍କାର କଲା ପରି କହିଲା, "ଯେ କି କଥା କହୁଚ, ମୋର ଏଇ ଗୋଟିକ ପୁଅ ।"

"ତୋର ତ ଆଉ ଯୋଡିଏ ଝିଅ ଅଛନ୍ତି । ମୋ ଭଉଣୀର ଗୋଟିଏ ବି ନାହିଁ । ଦୁଇ ଦୁଇ ଥର ଗର୍ଭ ନଷ୍ଟ ହେଇଗଲା । ଏଥରକ ମଲାପିଲା ଜନ୍ମ ହେଲା । ଭଉଣୀ ବି ମରୁ ମରୁ ବଞ୍ଚିଲା । ତା'ର ହାର୍ଟ ଦୁର୍ବଳ । ଆଉ ସେ ମା' ନହବାକୁ ଡାକ୍ତର ତାଗିଦ୍ କରିଛି । ସେ ଏବେ ସୁଦ୍ଧା ଜାଣିନାହିଁ ତା' ପିଲା ମରିଛି । ତା'କୁ କୁହାଯାଇଛି ତା' ପିଲାକୁ ଅଲଗା ରଖା ହେଇଛି ।" ପାର୍ବତୀ ନିଜ ପୁଅ ଉପରେ ନିଜ ଲୁଗାକାନି ଘୋଡେଇ ଦେଲା । ଧମକ୍ ଦେଲା ପରି ପଚାରିଲା, "କାହିଁକି ଏ କଥା କହିଲ ? ମିଛ କହିଲ ?"

ସତକଥା ଶୁଣିଥିଲେ ସେ ହାର୍ଟଫେଲ୍ କରିଥାଆନ୍ତା । ତା' ଶାଶୁଘର ଧମକ୍ ଦେଇଛନ୍ତି,"ଏଥର ଯଦି ତୋ ପିଲା ନ ବଞ୍ଚେ, ତୁ ବି ତା' ସାଙ୍ଗରେ ମରିବୁ ନଚେତ୍ ସିଆଡେ ରହିବୁ ।"

ଆମ ଇଂଞ୍ଜିନିୟର ପୁଅକୁ ଆମେ ଆଉ ଥରେ ବାହା କରିବୁ । ମୋ ଭଉଣୀ ମେଟ୍ରିକ୍ ଖଣ୍ଡକ ଯଥାତଥା ପାଶ୍ କରି ବାହା ହେଇ ଯାଇଛି । ଗାଁର ଜମିବାଡି ବିକି ମୁଁ ଭଲ ବର ଘରରେ ଦେଇଛି । ସ୍ୱାମୀ ସ୍ତ୍ରୀ ଦୁହିଁଙ୍କର ଅମେଳ ନାହିଁ । ତା' ବୋଲି ପିଲାଛୁଆ ନଥିବା ସ୍ତ୍ରୀଟାକୁ କୋଉ ପୁରୁଷ ସବୁଦିନେ ମୁଣ୍ଡେଇ ରଖିବ ? ମଣିଷର ପାଞ୍ଚମନ, ପଚିଶ ପ୍ରକୃତି ।"

"ଭଉଣୀଟିକି ନିଜ ଘରେ ରଖ । ଏତେ ଯଦି ଶରଧା", ଖୁବ୍ ବେଜାର୍ ହେଇ କହିଲା ପାର୍ବତୀ । ଟିକେ ସାହାଯ୍ୟ କରିଛନ୍ତି ବୋଲି କି ମୁଣ୍ଡ କିଣିଛନ୍ତି, ଉଠିଗଲେ ଯାଆନ୍ତୁ ।

ଆଶ୍ଚର୍ଯ୍ୟ ରଘୁଭାଇ ଉଠିଗଲେ ନାହିଁ କି ରାଗିଗଲେ ନାହିଁ । କଅଁଳ କଥାର ଛୁରୀରେ ତାକୁ ଇ କାଟିବାକୁ ଲାଗିଲେ ।

"ମୋର ବଳ କାହିଁଲୋ ପୋଷିବାକୁ ? ଏଇ କ୍ଲର୍କ ଚାକିରିକି ତିନିଟା ଛୁଆ ।"

"ନିଜ ଛୁଆରୁ ଗୋଟାଏ ଦଉନ ।"

"ତା' ଯଦି ହୁଅନ୍ତା ତତେ ନେହୁରା ହୁଅନ୍ତି କାହିଁକି ? ସେମାନେ ଜାଣିଶୁଣି ପୋଷା ପୁଅ ନେବେ ନାହିଁ । ଏ କଥାଟି ହେବ ସମ୍ପୂର୍ଣ୍ଣ ଅଜାଣତରେ । କେବଳ ତୁ ଜାଣିବୁ ଆଉ ମୁଁ ଜାଣିବି । ହସ୍‌ପିଟାଲ୍‌ର କେତେଜଣ ବିଶ୍ୱସ୍ତ ଷ୍ଟାଫ୍ ଜାଣିବେ । ସେମାନେ ସମସ୍ତେ କିନ୍ତୁ ଜାଣିବେ ତୁ ନିଜ ଇଚ୍ଛାରେ ତୋ ପୁଅକୁ ପୁଅ କରି ଦେଉଛୁ ବୋଲି ।"

"ମୁଁ କାହିଁକି ମୋ ପୁଅକୁ ଦେବି ।" ପାର୍ବତୀ ତଥାପି ଦମ୍ଭ ରଖିଲା, ତେଜ ଦେଖେଇଲା ।

ଖୁବ୍ କରୁଣ କାତର ସ୍ୱରରେ ରଘୁଭାଇ ଉତ୍ତର ଦେଲେ, "ତୋ ପୁଅ ଖବ୍ ଭଲରେ ରହିବ ପାର୍ବତୀ । ବହୁତ ପାଠ ପଢ଼ି ଖୁବ୍ ବଡ ମଣିଷ ହବ । ତା'ପାଇଁ ଘର ଦ୍ୱାର, ଟଙ୍କା ପଇସା, ପ୍ରତିଷ୍ଠା ପ୍ରତିପତ୍ତି ସବୁ କିଛି ରହିବ । ସେ ସୁଖରେ, ଶାନ୍ତିରେ ରହିବ । ମା'ହୋଇ ତୁ କ'ଣ ତୋ ପୁଅର ସୁଖଶାନ୍ତି ଚାହୁଁନା ? ମା' ହେଇ ତୁ କ'ଣ ତା' ଉନ୍ନତି ପଥର କଣ୍ଟା ହବୁ । ଶତ୍ରୁ ହବୁ ? ତୁ ନିଜେ ବୁଝୁଥିବୁ ଗରିବ ହବାଠାରୁ ବଳି ଅଭିଶାପ ନାହିଁ । ସେଇ ଅଭିଶାପ କ'ଣ ତୁ ତୋ ପୁଅ ଉପରକୁ ଡାକି ଆଣିବୁ ?"

ରଘୁଭାଇଙ୍କ କଥାରେ କି କୁହୁକ ଥିଲା, କି ତନ୍ତ୍ରମନ୍ତ୍ର ଥିଲା, ପାର୍ବତୀ ଆଉ ପାଟି ଫିଟେଇ ପାରିଲା ନାହିଁ । ତା' ପୁଅର ଉଜ୍ଜ୍ୱଳ ସୁଖମୟ ଭବିଷ୍ୟତ ତା' ଆଖିରେ ବର୍ତ୍ତମାନର ଘଟଣା ପରି ଜଳ ଜଳ ଦେଖାଗଲା ।

ଜୋତା ମୋଜା ସାର୍ଟ ପ୍ୟାଣ୍ଟ୍ ପିନ୍ଧି ବହି ବ୍ୟାଗ୍ ଧରି ସ୍କୁଲ୍ ବସ୍‌କୁ ଗୋରା ପତଳା ପିଲାଟିଏ ଉଠିଗଲା । ପବନ ଗତିରେ ସ୍କୁଟର ଚଳେଇ ନୂଆ ନିଶ ଉଠା ଟୋକାଟିଏ ଭିଡ କାଟି ଉଡିଗଲା ।

କାହାଣୀର ରାଜାଝିଅ ପରି ବୋହୁ ଧରି ଫୁଲସଜା କାର୍‌ରୁ ବରବେଶରେ ପୁଅ ତା'ର ଓହ୍ଲେଇଲା । ବଡ ଆଲୁଅ ଝଲମଲ କୋଠାଘରକୁ ବନକନ୍ୟାକୁ ବନ୍ଦେଇ ନେଲେ କେଜାଣି କେତେ ଲୋକ । ଏକ ଅନିର୍ବଚନୀୟ ଅନୁଭୂତିରେ ଆଖି ବୁଜିଦେଲା ପାର୍ବତୀ । ତା'ର ଏ ପୁଅ ତାକୁ ନ ପୋଷୁ, ନ ଜାଣୁ, ନ ଚିହ୍ନୁ ପଛକେ, ନିଜେ ସୁଖରେ ରହୁ । ଯା ପାଇଁ ସତରେ କ'ଣ ବା କରି ପାରିବ ପାର୍ବତୀ ? ପକା ତୋଳା ହେଇ ପେଜ ତୋରାଣିରେ ବଢ଼ିବ । ଦଶ ଏଗାର ବର୍ଷର ହେଲେ କାହାଘରେ ଚାକର ରହିବ ! କୋଉ ଚାହା ଦୋକାନରେ କପ୍ ପ୍ଲେଟ୍ ଧୋଇବ । ବସ୍ତିର ଛତରା ପିଲାଙ୍କ ସାଙ୍ଗରେ ମିଶି କାହା ପକେଟ କାଟିବ ! ସିନେମା ଟିକେଟ ବ୍ଲାକ୍ କରିବ ! ବାପ ଭଳିଆ ମଦ ଖାଇବ ! ରଖୁଣୀ ରଖିବ ! ଉଚ୍ଛନ୍ନ ହେଇଯିବ । ନୋହିଲା ରିକ୍ସା ଖଣ୍ଡେ ଚଳେଇବ । ରିକ୍ସାବାଲା ଟିକିଏ ଆଡବାଙ୍କ ହେଲେ ଗାଡି ମଟର ମାଡିଯାଏ, ମଣିଷ ନୁହେଁ ଭଙ୍ଗା ରିକ୍ସା ମଝିରେ ରକ୍ତର ପୋଖରିରେ ମାଉଁସ ମେଞ୍ଚାଏ ପଡି ରହେ ।

କିଏ ଚାହେଁ କିଏ ନ ଚାହେଁ ।

"ରିକ୍ସାବାଲାକୁ ଧକ୍କା ଲାଗିଛି । ଶଳା ଢୋଲେ ମଦ ପିଇଥିବ । ଆରୋହୀ ଠିକ୍ ଅଛି ତ ?"

ପାର୍ବତୀ ଚମକ୍ ଲାଗିଲା ପରି କହିଲା, "ତମେ ଯଦି କହୁଚ ଏ ପୁଅକୁ ନିଅ, ରଘୁଭାଇ ! ମଣିଷ କେହି ସାକ୍ଷୀ ରହିଲେ ରହୁ, ନୋହିଲେ ନାହିଁ । ଠାକୁରେ ସାକ୍ଷୀ ରହିଲେ । ତମେ ଏଣିକି ମାରିଲେ ମାରିବ, ତାରିଲେ ତାରିବ । ମୁଁ ତମରି ହାତକୁ ଟେକି ଦେଲି ।"

ନିଜ ମନସ୍କାମନା ପୂର୍ଣ୍ଣ କରି ପକ୍କା ବ୍ୟବସାୟୀ ଢଙ୍ଗରେ ହସିଲେ ରଘୁଭାଇ । ରୂପାଦାନ୍ତ ଖୁଣ୍ଟାରେ ଦାନ୍ତ ଖୁଣ୍ଟିଲେ । ବସେଇ ବସେଇ କହିଲେ, "ମୁଁ ତୋ ପିଲାକୁ ସେମିତି ନଉନାହିଁ

ପାର୍ବତୀ, ତୋର ଅଭାବର ସଂସାର । ଏ ପୁଅ ତତେ ଦିନେ ପୁଣି ସାହା ଭରସା ହୋଇଥାନ୍ତା । ଜୀବନ୍ତେ ଅନ୍ନ ମରନ୍ତେ ପିଣ୍ଡଦାନ ଦେଇଥାନ୍ତା । ମୋ ଯୋଗୁ ତୋର ସବୁ ବୁଡିଲା । ତତେ ବା ମୁଁ କ'ଣ ଦେଇ ପାରିବି ? କେତେ ଦେଇ ପାରିବି ? ହଜାରେ ଟଙ୍କା, ବସ୍ତ୍ର ଅଭାବେ ସୂତ୍ର ଦାନ । ସମୁଦ୍ରକୁ ଶଂଖେ ପାଣି । ତୁ ଖାଲି ସାଧା କାଗଜରେ ଦସ୍ତଖତଟାଏ କରିଦବୁ । ଭବିଷ୍ୟତକୁ ଅଡୁଆ ତୁଟି ଯିବ ।"

ହଜାରେ ଟଙ୍କା ଶୁଣି କାହିଁକି ପାର୍ବତୀର ଆଖି ମୁହଁ ଉଜ୍ଜ୍ୱଳ ହେଇ ଉଠିଲା । କାହିଁକି ସେ ଭାବିଲା ଘରପୋଡିରୁ କୁଟାଖିଏ ହେଲେ ବି ଲାଭ ।

ଛି ଛି ଯୋଉ ଛୋଟିଆ ନିଉଁଛଣା ପ୍ରକୃତି ହଜାରେ ଟଙ୍କା ବଦଳରେ ପୁଅକୁ ଟେକିଦେଲା, ସେଇ ପ୍ରକୃତି କ'ଣ ତା' ପରେ ପରେ ଛୁଆ ଛାଡି ବିଲେଇ ପରି ବାହୁନୁ ଥିଲା ?

ରଘୁଭାଇ ସେଇକ୍ଷଣି ପୁଅକୁ ନେଇ ବିଜୁଳି ଛଟକେ କୁଆଡେ ଉଭେଇ ଗଲେ । ଏଇ ଦଶ ଖଣ୍ଡ ନୋଟ୍ ଅଣ୍ଟାରେ ଖୋଷିଦେଇ ପାର୍ବତୀ ଅଲାଜୁକ ପଣରେ ବାରଣ୍ଡା ଯାଏ ଗଲା । କୋଣ ଭାଙ୍ଗି ଅନେଇଲା । କିଏ କାହିଁ ? ଠପ୍ ଠପ୍ ହେଇ ରାତି ଡିଉଟିର ନର୍ସ ଦିଦି ଦି'ଜଣ ଆସୁଥିଲେ । ତାକୁ ଦେଖି କହିଲେ, "ରଘୁବାବୁ ତୋ ପୁଅକୁ ନେଲେ । ଦେଲୁ ଭଲ କଲୁ, କିନ୍ତୁ କେତେ ନେଲୁ ?" ପାର୍ବତୀ କିଛି କହିଲା ନାହିଁ । ତାକୁ ଖୁବ୍ ଖରାପ ଲାଗିଲା । ଅନ୍ୟ ଆଖିର ଆରିଶିରେ ନିଜ ମୁହଁ ଦେଖି ବଡ ବିଭତ୍ସ ମନେ ହେଲା । ସେ ତଳକୁ ମୁହଁ ପୋତି ଦେଲା ।

ଦି'ଜଣଯାକ ନର୍ସ ଉପହାସରେ ହସି ଉଠିଲେ– ଛୁଆ ଜନ୍ମ କର କାହିଁକି ? ଛୁଆ ବିକ କାହିଁକି ? ସେମାନେ ଚାଲିଗଲେ । ପାର୍ବତୀ ପଳାଇ ଆସି ଶୂନ୍ୟ ଖଟିଆରେ ବସି ଜୋର୍ ଜୋର୍ ନିଶ୍ୱାସ ନେଲା । ତା' ପୁଅର କନା, ଅଏଲକ୍ଲଥ୍ ପଡିଛି । ମୁତି ଥିଲା, କନାଟା ଓଦା ଅଛି । ପାର୍ବତୀ ସେ ଓଦା କନା ବଦଳେଇ ଦେଲା । ଶୁଖିଲା କନା ପାରିଦେଲା ଯତ୍ନକରି, ଯଦିଓ ଜାଣୁଥିଲା ଏଗୁଡା ନିରର୍ଥକ ।

ସେ ଘରେ ଚାରୋଟି ଖଟିଆ । ଚାରୋଟି ଦୋଳି । ତିନୋଟି ଦୋଳିରେ ଏବେ ବି ଛୁଆ ଶୋଇଛନ୍ତି । ଗୋଟିଏ ପିଲା କାନ୍ଦିଲା । ତା' ମା'ର ନିଦ ଭାଙ୍ଗୁ ନାହିଁ । ପାର୍ବତୀ ଉଠି ଯାଇ ଦୋଳି ଝୁଲେଇଲା । ଅଳ୍ପ ସମୟରେ ଛୁଆଟି ଶୋଇ ପଡିଲା ।

ଆଉ ଟିକିଏ କାନ୍ଦନ୍ତା ନାହିଁ ।

ପାର୍ବତୀ ଫେରି ଆସି ନିଜ ଖଟିଆରେ ଶୋଇବାକୁ ଚେଷ୍ଟା କଲା । ନିଦ ସଉତୁଣୀ ବାଦ ସାଧିଲା । ଦେହ ହାତ ବିନ୍ଧିଲା, ଛାତି ବିନ୍ଧିଲା, ଆଖି ପୋଡିଲା । ତା' ପୁଅର ମୁହଁ ତାକୁ ସବୁଆଡେ ଦେଖାଗଲା ।

ରଘୁଭାଇର ଭଉଣୀ ଯଦି କୁମ୍ଭକର୍ଣ୍ଣ ନିଦରେ ଶୋଇଥିବ, ଛୁଆଟା କାନ୍ଦି କାନ୍ଦି ତଣ୍ଟି ଶୁଖି ଯିବ । ନେଳି ପଡିଯିବ । ନିଜକୁ ନିଜେ କହିଲା ପାର୍ବତୀ ।

ଖଟରୁ ଉଠି ସେ ପୁଣି ଘରଯାକ ବୁଲିଲା । ସକାଳ ହେଲା କ୍ଷଣି ଚିହ୍ନା ନର୍ସଟି ଆସି କହିଲା, "ଆଜି ତମେ ତମ ଘରକୁ ଯାଅ । କାଲିଠାରୁ ତମର କାଗଜ ହେଇଯାଇଛି । ମୋଠାରୁ ଏ ବଟିକା ନିଅ, ଖାଇଲେ କ୍ଷୀର ଶୁଖିଯିବ, ଦେହ ଶୁଖିଯିବ । ତମ ରଘୁଭାଇ ତମ ପାଇଁ ରିକ୍ସାଭଡା ଦଶଟଙ୍କା, ତମ ପିଲାଙ୍କୁ ମିଠେଇ ଖିଆ ଅଧିକ ପଚାଶ ଟଙ୍କା ଦେଇଛନ୍ତି । ପଚାଶ ଟଙ୍କାଟା ମୁଁ ରଖୁଛି । ପୁଅ ତମର ବଡଘର ପୁଅ ହେଇଗଲା । ଆମେ ସବୁ ଜାଣି ଚୁପ୍ ହେଇ ରହିଲୁ । କ'ଣ

ମାଗଣାରେ ?" ପାର୍ବତୀ ଉତ୍ତର ଦେଲା, "ଟଙ୍କା ତମେ ରଖ ଦିଦି ! ମତେ ଖାଲି ମୋ ପୁଅକୁ ଟିକେ ଦେଖେଇ ଦିଅ । ଆଉ ଟିକେ ଦେଖିଥାଏ ।"

ଅବୁଝା ଭାଷାର ଅଚିହ୍ନା ଶବ୍ଦ ଶୁଣିଲା ପରି ନର୍ସ ଆଖି ଟେକି ଅନେଇଲା । କହିଲା, "ପୁଅ କ'ଣ ମୋ କାଖରେ ଅଛି ନା ପାଖରେ ଅଛି ? ଯା ଯା, ଆଉ ଡେରି କଲେ ସମସ୍ତେ ଘେରି ଯାଇ ପଇସା ମାଗିବେ ।"

ତଥାପି ଅନେକ ସମୟ ବସି ରହିଲା ପାର୍ବତୀ । ଗାଧୁଆବେଳ ଗଡ଼ିଲାରୁ ଛଅ ମାସର ମଲୁପରି ଆସି ରିକ୍ସାରେ ବସିଲା । ରିକ୍ସାରେ ବସୁ ବସୁ ଲୁହରେ, କୋହରେ ଫାଟି ଫାଟି ପଡ଼ିଲା । ଗୁଣ୍ଣୁ ଗୁଣ୍ଣୁ ହୋଇ ବାହୁନିବାକୁ ଲାଗିଲା ।

ଆକାଶ, ବତାସ ମାଟି ଗୋଡ଼ି ମଣିଷ ସବୁ ତାକୁ ଅଚିହ୍ନା ମନେ ହେଲା, ସହସ୍ର କୋଶ ଦୂରର ମନେ ହେଲେ । ଚଳନ୍ତା ଛାଇ ପରି ମନେ ହେଲେ ।

ଦେଖୁ ଦେଖୁ ସେ ରତନୀ ମାଉସୀକି କୁଣ୍ଢେଇ କାନ୍ଦିଲା, ସମସ୍ତେ କଥାଟା ଅନୁମାନ କରିନେଲେ । ନିଜ ପ୍ରଶ୍ନର ଉତ୍ତର ପାଇଗଲେ ।

ପାର୍ବତୀ କେବଳ ନିଜ ପ୍ରଶ୍ନର ଉତ୍ତର ପାଉନାହିଁ । ଏ ଟଙ୍କା ସେ କ'ଣ କରିବ ? ଏଥିରେ ନିଜ ପେଟକୁ ଦାନା ଯୋଗାଡ଼ କରିବ ? ଛୁଆଙ୍କୁ ଦାନା ଦବ ! ଯେ ତ ନିଜ ପିଲାର ମାଂସ ଖାଇଲା ପରି ହେବ ? ପାପର ସୀମା ବହକି ପଡ଼ିବ । ନରକରେ ବି ଠାବ ହବ ନାହିଁ ପାର୍ବତୀକି ?

ପାର୍ବତୀ ଟଳି ଟଳି ଠିଆ ହେଲା, ବାହାରକୁ ଯାଇ ମୁହଁ ଧୋଇଲା । ହାତ ଆଞ୍ଜୁଳିରେ ପାଣି ପିଇଲା । ଦଶଖଣ୍ଡ ଶହେ ଟଙ୍କିଆ ନୋଟ୍ ଭଲ କରି ଅଣ୍ଟାରେ ଖୋସିଲା, ବଡ଼ ଝିଅକୁ ହଲେଇ ହଲେଇ ଉଠେଇଲା ।

"ଗଲୁ ମା' ଖଣ୍ଡେ ରିକ୍ସା ଡାକି ଆଣିବୁ । ମୁଁ ଟିକେ ହସ୍‌ପିଟାଲ୍ ଯିବି ।" ଝିଅଟା ଉଠୁ ଉଠୁ କହିଲା, "ଭୋକ ! ପେଟ ଆଉଣ୍ଠି ପକାଉଛି ! ଆଗ କ'ଣ ଖାଇବାକୁ ଦେ ।"

ଟିକେ ହସିଦେଲା ପାର୍ବତୀ । କାଲିଠାରୁ ଆଜି ଭିତରେ ଏଇ ପ୍ରଥମ କରି ହସିଲା । ଅଣ୍ଟିଏ ବହଳ ପଙ୍କରୁ ରସ ଟାଣି, ପଙ୍କ ଉପରେ ଫୁଟିଥିବା ଧଳା କଇଁ ଫୁଲ ଯେମିତି ହସେ ।

"ଗୋଟାଏ ରାତି ଉପାସ ତତେ ବାଧୁଛି ? ଆମର ତ ଉପାସିଆ କପାଳ ଲୋ ମା' । ଟିକିଏ ଥୟ ଧର ! ମୁଁ ହସ୍‌ପିଟାଲରୁ ଫେରି ଆସିବି ଏଇ ଗୋଡ଼େ ଗୋଡ଼େ । ଆସିଲେ କୋଉଠୁ ଧାର୍ ଉଧାର ଆଣିବି ! କିଛି ହେଲେ ବାଟ କରିବି ।"

ଝିଅ ଆଉ ପାଟି ନଫିଟାଇ ଚାଲିଗଲା ।

ପାର୍ବତୀ ଫେର୍ ପଶିଲା ତା' ଝୁମ୍ପୁଡ଼ି ଭିତରକୁ । କୋଉ କାଳର ମଶିଆ ପୁରୁଣା ଜଗନ୍ନାଥ ଫଟ ଖଣ୍ଡେ ଟଙ୍ଗା ହେଇଛି ଅଣଆଡ଼ିଆ ହେଇ । ଗେରସ୍ତ ଗଲାଦିନୁ ଅଭିମାନରେ ପାର୍ବତୀ ଚକା ଆଖିରେ ଆଖି ମିଶେଇ ନଥିଲା । ଏବେ ବି ଆଖି ମିଶେଇ ପାରିଲା ନାହିଁ । ଲୁହ କୋହରେ କିଛି ଦିଶିଲା ନାହିଁ ତାକୁ । ହାତ ଦିଓଟି ଯୋଡ଼ି ଦେଇ କପାଳରେ ଲଗାଇ ମନେ ମନେ ଖାଲି ଏତିକି କହିଲା, "ରଖିଲେ ରଖିବ ! ଏଣିକି ଯାହା ତମ ଖୁସି ।"

ଯୋଗକୁ ଆସି ଯାଇଥିଲେ ରଘୁଭାଇ । କେହି ଆଉ ଲୋକବାକ ନଥିଲେ ତାଙ୍କ ପାଖରେ । ଟେବୁଲରେ ମୁଣ୍ଡ ମାଡ଼ି କ'ଣ କାଗଜପତ୍ର ଦେଖି ଚାଲିଥିଲେ । ପାର୍ବତୀ ନିର୍ଭୟରେ ଭିତରକୁ ପଶିଗଲା ।

କାନିରୁ ନୂଆନୋଟ୍ ଦଶଖଣ୍ଡ ଫିଟାଇ, ଥୋଇଦେଲା ସଶବ୍ଦେ ଟେବୁଲ କୋଣକୁ । ରଘୁଭାଇ ମୁଣ୍ଡ ଉଠେଇ ତାକୁ ଚାହିଁଲେ । ଆଶ୍ଚର୍ଯ୍ୟ ହେଇ ପଚାରିଲେ, "ଯେ କ'ଣ ?"

ପାର୍ବତୀ ପାଟିରୁ କଥା ସ୍ଫୁରୁ ନାହିଁ । ଖାଲି ଓଠ ଥରୁଛି । ଅଥଚ ତା'ର ପ୍ରତ୍ୟେକ ଲୋମକୂପ କଥା କହୁଛି । ଚିତ୍କାର କରି କହୁଛି, "ଦିଅ ! ମୋ ପୁଅକୁ ଫେରେଇ ଦିଅ । ଯାହା ତା' ଭାଗ୍ୟରେ ଲେଖା ହେଇଛି ସେ ସେଇଆ ଭୋଗିବ । ଭଲ ହେଲେ ଭଲ ହେବ । ଖରାପ ହେଲେ ଖରାପ ହବ । ବଡଲୋକ ନହେଇ ଗରିବ ହବ, କିନ୍ତୁ ସେ ମୋର ହେଇ ରହିବ । ମୋ ପୁଅ ସେ ! ମୋ ପୁଅ ।"

ରଘୁଭାଇ ଖାତା ପତ୍ର ଗୋଟେଇ ରଖିଲେ । ପାନ ଖଣ୍ଡେ ପାଟିରେ ପୁରେଇ କହିଲେ "ତମେ ସବୁ ପର ବୁଦ୍ଧିଆ ବୋଲି ହିଁ ମର । କିଏ ତତେ କ'ଣ ଶିଖେଇଲା ବସ୍ତିରେ ? ସମସ୍ତେ ଗଛକୁ ଚଢେଇ ଦେବେ ! କେହି ଓହ୍ଲେଇବେ ନାହିଁ ! ପିଠିରେ ପଡିବେ ନାହିଁ । ହଉ କହ, ଆଉ କେତେ ଟଙ୍କା ନବୁ ?"

ପାର୍ବତୀର ଆଖି ଆଉରି ଥରେ ଓଦା ହେଇଗଲା, ସେ ଥରିଲା ଥରିଲା ଭିଜା ଭିଜା ସ୍ୱରରେ ଉତ୍ତର ଦେଲା, "ମୁଁ ଜମା ଟଙ୍କା ନେବି ନାହିଁ । ତମ ଟଙ୍କା ତମେ ରଖ ।" ରଘୁଭାଇଙ୍କ ସ୍ୱର ଗ୍ରାମ ଏଥର ଯଥେଷ୍ଟ ତୀକ୍ଷ୍ଣ, ଯଥେଷ୍ଟ ବ୍ୟଙ୍ଗମୟ, କିଞ୍ଚିତ୍ ଉଚ୍ଚ ଶୁଭିଲା, "ତାମସା କରି ପାଇଛୁ କି ? ହାତ କାଟି କାଗଜ କରିଦେଇଛୁ ? ତୋର ଡାକ୍ତର ଫିସ୍, ତୋର ଓଷଦ ଠାରୁ ସବୁଖର୍ଚ୍ଚ ମୁଁ ତୁଲେଇଛି ? ବୁଝିଲୁ, ଏଠି ହସ୍‌ପିଟାଲ୍‌ରେ ବହୁ କଥା ହୁଏ । ଜୀଅନ୍ତା ପିଲା ମଲା ପିଲା ହେଇଯାଏ । ମଲାପିଲା ଜୀଅନ୍ତା ପାଲଟି ଯାଏ । ପରିଚୟ ବଦଳି ଯାଏ । ତତେ ମୁଁ ମୁହଁ ମୁଲଚ୍ଚା କରିବାରୁ ତୁ ମୋ ମୁଣ୍ଡରେ ପାଦ ଥୋଉଚୁ ! ନେ, ଟଙ୍କା ଉଠା । ଆଉ ଦୁଇଶହ ଦଉଛି ।"

ଏତିକି ବେଳେ ହିଁ ଘଟିଲା ଏକ ଅଭାବିତ କାଣ୍ଡ । ପାର୍ବତୀର ଭାଗ୍ୟବିଧାତା ପାର୍ବତୀ ସାଙ୍ଗରେ ଆଉରି ଗୋଟାଏ ଚାଲ୍ ଖେଳିଲେ ।

ଭାଇ ଭାଇ ବୋଲି ଡାକି ଭିତରକୁ ପଶି ଆସିଲା ରୋଗୀ ପାତଳୀ ନୂତନ ପ୍ରସୂତି ସ୍ତ୍ରୀ ଲୋକଟିଏ । ତା' ମୁହଁ ଉଜ୍ଜ୍ୱଳ । ଆଖିରେ କିନ୍ତୁ କିଛି ଆଶଙ୍କାର ଛାୟା...

ସଫା ଟାଓ୍ୱେଲ୍‌ରେ ଯାକିଯୁକି ଧରିଛି ପାର୍ବତୀର ପୁଅକୁ, "ଭାଇ ଟିକେ ଚାଲିଲ ଡାକ୍ତରଙ୍କ ପାଖକୁ । ସକାଳ ପହରୁ ପୁଅ ଛିଙ୍କୁଛି ।"

"ତତେ କିଏ କହିଲା ଆସିବାକୁ । ତୋ ଦେହ ଭଲ ନାହିଁ । ପିଲାଏ ସେମିତି ଛିଙ୍କନ୍ତି ।"

"ନାଇଁ ନାଇଁ, ଥଣ୍ଡା ହେଲେ ଅସୁବିଧା । ମୁଁ ଏକା ଆସି ନାହିଁ ମ । ସାଙ୍ଗରେ ଭାଉଜ ଆସିଛନ୍ତି । ମୋ ପୁଅ ଦେହ ଠିକ୍ ରହିଲେ, ମୋର କିଛି ହବ ନାହିଁ ।"

ତରୁଣୀଟି ପିଲାଟିକୁ ଆଉରି ନିବିଡ କରି ଛାତିରେ ଯାକି ଧରିଲା ।

"ଆଉରି ଟିକେ ପଚାରିବ, ଯେ ଜମା ଉଠୁ ନାହିଁ ଶୋଉଛି ଯେ ଶୋଉଛି ଏକାବେଳେକେ ନିଜ ମାମୁଁ ଓଳି ଆଣିଛି । ତମେ ତ ଶଗଡ ଚାଲିଗଲେ ବି ଉଠ ନାହିଁ ।"

"ହଉ, ତୁ ଆଗରେ ତୋ ଭାଉଜଙ୍କ ସାଙ୍ଗରେ ଓ୍ୱାର୍ଡକୁ ଯା । ମୁଁ ଟିକେ ଛାଡି ଯାଉଛି ।"

"ଆହା, ତମ କାମ ଆଗ ନା ମୋ ପୁଅ ଆଗ ? ଆସ, ଚଞ୍ଚଳ ଆସ ।"

ତରୁଣୀଟି ପୁଅର କପାଳରେ ନିଜ ଓଠ ଛୁଆଁଇ ନେଲା । ତା'ପରେ ଯେମିତି ଆସିଥିଲା ସେମିତି ବାହାରିଗଲା ।

ପାର୍ବତୀ ପଥର, ନିଶ୍ଚଳ । ତରୁଣୀଟି ଭିତରେ ସେ ଯେମିତି ନିଜର ପ୍ରତିବିମ୍ବ ଦେଖୁଛି । ସ୍ୱରରେ ଶୁଣୁଛି ନିଜ ସ୍ୱର । କେଡେ ଖୁସି ଅଛି, କେଡେ ପରିପୂର୍ଣ୍ଣ ଉଜ୍ଜ୍ୱଳ ଅଛି ବିଚାରୀ । ଏଠି ତ ଯେତେ ଆଲୁଅ ଜଳୁଛି ସବୁ ପବନ ମୁହଁରେ ଥରୁଛି । ସବୁ ଥପ୍ କରି ଲିଭି ଯାଉଛି । ତଥାପି ଜଳନ୍ତା ଆଲୁଅକୁ କିଏ ଫୁଙ୍କି ଦବାକୁ ମନ କରିବ ? ଏଠିତ ଯେତେ ଫୁଲ ଫୁଟୁଛି ସବୁ ଝଡ଼ି ଯାଉଛି, ତଥାପି ଫୁଟିଲା ଫୁଲକୁ କିଏ ଛିଣ୍ଡେଇ ମକଚି ଦବ ?

ପାର୍ବତୀ ଦୁଃଖ କ'ଣ ଜାଣିଛି । ବିଚ୍ଛେଦ କ'ଣ ଚାଖିଛି । ପଞ୍ଚାନନ ତାକୁ ଛାଡ଼ି ଯାଇଛି, ନହେଲା ଦୁଃଖର ମାତ୍ରା ଆଉ ଟିକେ ଅଧିକା ଆସିଲା ।

"ଆଲୋ ଟଙ୍କା ନେ । କହିଲି ପରା ଆଉ ଦୁଇଶହ ଦେବି ।" ପଛରୁ ଡାକିଲେ ରଘୁଭାଇ । ପାର୍ବତୀ ପଛକୁ ବୁଲି ପଡ଼ି ହାତ ଯୋଡ଼ିଲା ।

"ତମକୁ ନେହୁରା ହଉଛି ରଘୁଭାଇ, ମତେ ଲୋଭ ଦେଖାଅ ନାହିଁ । ମତେ ଏଡ଼େ ବଡ଼ ମହାପାପ କରିବାକୁ କହ ନାହିଁ । ମା' ହେଇ ନିଜ ଛୁଆକୁ ବିକି ଟଙ୍କା ଖାଇବା, ନିଜ ଦେହର ମାଉଁସ କାଟି ଖାଇବା ଏକା କଥା । ମୁଁ ଗରୀବ, ମୁଁ ଦୁଃଖୀ । ମୋ କୁଡ଼ିଆ ଚାରିକୋଣ ଓଲେଇ ଆଣିଲେ ଖୁଦ ପୋଷେ ନାହିଁ ଖୁଦ କାଂଜି କରିବାକୁ । ମୋର ଆଉ ଦିଇଟା ଛୁଆଙ୍କ ତୁଣ୍ଡରେ ଆହାର ଦବାକୁ । ମୋର ଲୋଭ ହେଇଯିବା କୋଉ ଅସମ୍ଭବ କଥା ? ତମର ଏ ପଇସାକୁ ହାତ ପତେଇଦବା କୋଉ ବିଚିତ୍ର କଥା ?

ଅଭାବେ ସ୍ୱଭାବ ନଷ୍ଟ । ଜଣେ ଟଳଟଳ ହେଇ ଟଳୁଛି ବୋଲି ଆଉଜଣେ ତାକୁ ଠେଲି ତଳେ ପକେଇଦବା କୋଉ ମହତ ପଣିଆ ? ଯିଏ ଠେଲି ଦିଏ, ସିଏ ଧର୍ମକୁ ଜବାବ୍ ଦିଏ । ନିଜକୁ ନିଜେ ଜବାବ୍ ଦିଏ । ତମ ଟଙ୍କା ରହିଲା । ମୋ ପୁଅ ବି ରହିଲା । ଆଉ ଦିନେ ଆସିବି ନାହିଁ, ଆଉ ଦିନେ ତୁଣ୍ଡରେ ଧରିବି ନାହିଁ ସେ ମୋ ପୁଅ ବୋଲି ।"

ଏଥର ରଘୁବାବୁ ସତକୁ ସତ ଧରି ପକେଇଲେ ପାର୍ବତୀର ହାତ । ତାଙ୍କ ନାହି ସୁଦ୍ଧା କମ୍ପିଗଲା ଏ କଥାରେ । କର୍ଣ୍ଣଙ୍କ କବଚ କୁଣ୍ଡଳ ଦାନରେ ଇନ୍ଦ୍ରଙ୍କ ରଥ ଅଚଳ ହେଲା ପରି ପାର୍ବତୀ ଆଗରେ କ୍ଷଣେ ସେ ନିଶ୍ଚଳ ହେଇଗଲେ ।

ଖୁବ୍ ନରମ ସ୍ୱରରେ କୃପା ଭିକ୍ଷା କଲା ପରି କହିଲେ,"ଆମେ ମଣିଷ ପାର୍ବତୀ । କିଛି ଦିଅଁ ଦେବତା ନୋହୁ । ପବନ ଆହାରି ନୋହୁ । ଆମର ଶୃଙ୍ଖଳା ଆଦର୍ଶରେ ପେଟ ପୂରେ ନାହିଁ । ଆଦର୍ଶ ସାଙ୍ଗରେ ବାସ୍ତବତା ଲୋଡ଼ା । ଭାବ ପ୍ରେମ ସହିତ ଭାତ ବି ଲୋଡ଼ା । ଆମ ଏ ହସ୍‌ପିଟାଲରେ ବେହେରାଣୀ ପୋଷ୍ଟଟିଏ ଖାଲି ପଡ଼ିଛି । ତୁ ଯଦି ହଁ କରିବୁ ତ ମୁଁ କଥାବାର୍ତ୍ତା କରିବି । କାଲି ଆସି ତୁ ସେ ଚାକିରିରେ ଜଏନ୍ କରିଯିବୁ ! ନିଜ ପରିଶ୍ରମରେ ନିଜେ ବଞ୍ଚିବୁ । ତୋ'ର ସମ୍ମାନ, ତୋର ସତ୍ୟ, ତୋର ଆଦର୍ଶ ଅଟଳ ରହିବ । ତୋ ପାଦତଳେ ମାଟି ବି ରହିବ, କହ କ'ଣ କହୁଚୁ ?"

ମନେ ମନେ ସେ ପ୍ରାର୍ଥନା କରୁଥିଲେ ପାର୍ବତୀ ହଁ କହିଦେଉ ବୋଲି ।



# ରୁଟ୍

## ବିଜୟିନୀ ଦାସ

ଗଛଟିଏ ଶାଖାପ୍ରଶାଖା ମେଲି ମାଟି ଉପରେ ଠିଆ ହୋଇଥାଏ । କିନ୍ତୁ ଆକାଶ ଆଡକୁ ତା'ର ଗତି, ଊର୍ଦ୍ଧ୍ୱମୁଖ । ବାହୁପ୍ରସାରି ଚାରିକଡକୁ ଆବୋରି ନେଇ ତା'ର ଛାୟାଘନ ଶୀତଳ ବେହରଣ ଘେରାଇ ଆଣିଥାଏ ଟାଙ୍ଗର ମାଟିର ଚାରିକଡେ । ତା' ଅଭୟଦ ଗଣ୍ଡିକୁ ଦଣ୍ଡେ ଆଉଜି ପଡି ଥକ୍କାମରା ବାଟୋଇ ନିଜର କ୍ଳାନ୍ତି ଭୁଲେ । ଆଗକୁ ଚାଲିବାର ଶକ୍ତି ଠୁଳ କରିନିଏ ।

ପରିଚିତ ସେଇ ମାଟିଖଣ୍ଡକ ଉପରେ କେବଳ ଗଛଟି ତା'ର ବସା ବାନ୍ଧି ନଥାଏ । ତା' ସାମ୍ରାଜ୍ୟ ବିସ୍ତାରୀ ଯାଏ କେତେ ଅଜଣା ଅଦେଖା ଗାଁକୁ, ସହରକୁ, ଦେଶକୁ ଅଥବା ଦେଶର ସରହଦ ଡେଇଁ ବିଦେଶକୁ । ଖାଲି ଡାଳ ଖଣ୍ଡିଏ ନେଇ ପୋତିଦେଲେ କି- ତା' ମୂଳକୁ ଘେରି ରହିଥିବା ଚାରାଟିଏ ନେଇ ଅନ୍ୟ କେଉଁ ମାଟିରେ ଥାପିଦେଲେ ଅବିକଳ ସେଇମତି ଗଛଟିଏ ବଢି ଉଠେ ।

ସେଇ ଛୋଟ କଲମି ଚାରାଟି କଅଁଳ ପତର ମେଲି ବଢି ଉଠିଲାବେଳେ ସେ କ'ଣ ଜାଣିଥାଏ ନା ଜାଣିବାର ଆକୁଳତା ଥାଏ ତା'ର ରୁଟ୍ ଆଉ ଗୋଟାଏ ଜାଗାରେ ନିଜର ଦୃଢ ଆସନ ବିଛେଇ ବସିଚି ବୋଲି । ଯୋଉ ପାଣି-ପବନ ଓ ମାଟି-ଆକାଶ ସହ ଏଇନା ତା'ର ଭାବ ଦିଆନିଆ, ଜୀବନ ସହ ଜୀବନର ଦୋସରପଣ, ସେଇତ ତା'ର ପରିଚୟର ପ୍ରଥମ ପାହାଚ । କେଉଁଠି ଯେ ତା ପାଇଁ ଚେରଟିଏ, ମୂଳଟିଏ କେବେ ଆନମନା ହେଉଥିବ, ଛାତି ଭିତରର ଶୂନ୍ୟତାକୁ ଦୀର୍ଘଶ୍ୱାସରେ ପୂର୍ଣ୍ଣକରି ଦେଉଥିବ, ସେକଥା ସଂସାର ବୁଝେନାହିଁ । ମୂଳଟି କ'ଣ ଠିକ୍‌ରେ ବୁଝିପାରିଥାଏ ଏ ଆକୁଳପଣକୁ ଆହୁରି ଅନେକ ଶାଖାପ୍ରଶାଖାର ସବୁଜ ସାମ୍ରାଜ୍ୟକୁ ନେଇ ଅହଂକାରରେ ଫାଟି ପଡୁଥିବା ବେଳେ ?

ଏ କୁନି ଚାରାଟି ବା ବୁଝିବ କେମିତି ? କେବଳ ଅର୍ଥ ନ ବୁଝି ନର୍ସରୀ ରାଇମ୍ ଶୁଣି ଶୁଣି ମନେ ରଖିବା ଭଳି ଏକଥା ମଧ୍ୟ ଶୁଣି ଶୁଣି ମନେ ରହିଯାଇଚି ଯେ ସେ ଏ ଦେଶର ଚାରା ନୁହେଁ ତା' ରୁଟ୍ ଅଛି ଭାରତ ମାଟିରେ- ଏଠାରୁ ଅନେକ ଦୂରରେ, ଓଡିଶାର କେଉଁ ନିପଟ ମଫସଲ ଗାଁରେ ।

ଶ୍ୱେତା ହେମ୍ୟାନ୍ ଯେତେବେଳେ ତା'ର ଅନ୍ୟ ଭାଇଭଉଣୀ ଦୁଇଜଣଙ୍କ ସହ ଏକାଭଳି ପୋଷାକ ପିନ୍ଧି ପାର୍କକୁ ଖେଳିବାକୁ ଯାଉଥିଲା, ତା'ରି ବୟସର ଅନ୍ୟ ପିଲାମାନେ ସେତେବେଳେ ତା'ସହ ନଖେଳି ତା' ଭାଇଭଉଣୀଙ୍କ ସହ ଖେଳିବାକୁ ଅଧିକ ପସନ୍ଦ କରୁଥିଲେ, ସେ ତା' ସିଷ୍ଟର ସ୍କର୍ଟ୍ ଟାଣି ଧରି କହୁଥିଲା- ଚାଲ୍ ଆମେ ଘରକୁ ପଳେଇବା ।

ତା'ଠାରୁ ତିନିବର୍ଷ ବଡ ସିଷ୍ଟର କରିନ୍ ତାକୁ କୋଳେଇ ନେଇ କହୁଥିଲା- ଠିକ୍ ଅଛି, ତତେ ଯଦି ଭଲ ନଲାଗୁଚି ଆମେ ଘରକୁ ଯାଇ ମା' ସହ ଖେଳିବା । ଏତିକି କହି ଗୋଟିଏ ହାତରେ ସାନଭାଇ ତାହାକୁ ଓ ଅନ୍ୟ ହାତକୁ ଶ୍ୱେତାର ହାତ ଧରି କରିନ୍ ସାଙ୍ଗେ ସାଙ୍ଗେ ପାର୍କରୁ ବାହାରି ଆସୁଥିଲା ।

ଘରକୁ ଫେରି ମା'କୋଳରେ ଲୋଟିପଡି ଶ୍ୱେତା କାନ୍ଦି କାନ୍ଦି ଅଭିଯୋଗର ପସରା ମେଲିଦିଏ ଯେ ପାର୍କରେ ଖେଳୁଥିବା ସବୁପିଲା ଦୁଷ୍ଟପିଲା । ସେ କାହାକୁ ପସନ୍ଦ କରେନାହିଁ । ସେ କେବଳ ତା' ମମ୍‌କୁ, ଡାଡ୍‌କୁ, ସିସ୍‌କୁ ଓ ଷ୍ଟିଫେନ୍‌କୁ ଭଲ ପାଏ, ପସନ୍ଦ କରେ ।

ମା' ତାକୁ କୋଳରେ ନିବିଡ ଭାବେ ଜଡାଇ ଧରି କହେ- ଆମ ଶ୍ୱେତା ପୃଥିବୀର ସବୁ ପିଲାଙ୍କଠାରୁ ଭଲ । ଆମେ ତାକୁ ବହୁତ ଭଲ ପାଉ, ମାମାର ସବୁଠୁଁ ଗେହ୍ଲା ଝିଅ ଶ୍ୱେତା ।

ବୟସ ବଢିବା ସହ ମାମାର ସବୁଠୁଁ ଗେହ୍ଲାଝିଅ ଶ୍ୱେତା ଅନୁଭବ କରିଥିଲା ଯେ ମମ୍ ଓ ଡାଡ୍‌ଙ୍କ ସ୍ନେହ ଆଦର ଓ ଗେହ୍ଲାପଣରେ ଟିକିଏ ବି ଫରକ୍ ନଥିଲେ ବି ସେ ଓ ତା' ଅନ୍ୟ ଭାଇ ଭଉଣୀ ଦିଜଣଙ୍କ ଭିତରେ ଅନେକ ବେଶୀ ଫରକ୍ : ଚେହେରାରେ, ଚଳଣିରେ ।

ସିସ୍ ଓ ଷ୍ଟିଫେନ୍‌ଙ୍କର ଆଖି ନୀଳ ହେଇଥିବା ବେଳେ ତା'ଆଖିର ଡୋଳା ଗାଢ କଳା । ସେମାନଙ୍କ ଚେହେରାର ରଙ୍ଗ ଗୋଲାପର ରଂଗ ଭଳି, ଓଠ ଲାଲ ଟୁକ୍ ଟୁକ୍, କହରା କହରା ବାଳ, ତୀଖ ନାକ, ମାତ୍ର ତା' ଦେହର ରଂଗ ମଇଳା, ବାଳ ଘଞ୍ଚ କଳା, ନାକ ଚେପେଟା ଓ ମୋଟା, ଧୂସର ଓଠ । ମାମା ତାକୁ ଏମିତି ଅଲଗା କରି କାହିଁକି ଗଢିଲା ? ସେଥି ପାଇଁ କ'ଣ ପାର୍କର ସାଙ୍ଗମାନେ ତାକୁ ଉପେକ୍ଷା କରନ୍ତି ?

ଦିନେ ମାମା କୋଳରେ ଲୋଟିପଡି ଶ୍ୱେତା ଅଭିମାନରେ ଫାଟିପଡି ଲୁହ ଛଳ ଛଳ ଆଖିରେ ପ୍ରଶ୍ନ କରିଥିଲା- ମମ୍, ସିସ୍ ଓ ଷ୍ଟିଫେନ୍ ପରି ମତେ କାହିଁକି ଗଢିଲ ନାହିଁ ? ଏମିତି ଅଲଗା କରି ତିଆରି କଲ ଯେ ? ମୁଁ କ'ଣ ତମର ଏଇ ଟମିରୁ ବାହାରି ନାହିଁ ? ତମ ଶରୀରର ଅଂଶ ନୁହେଁ ? ଶ୍ୱେତା ମା'ର ପେଟ ଉପରେ ବାଁ ଗାଲକୁ ଥାପି ଦେଇଥିଲା ।

ମମ୍ ଆନ୍ନା ହେମ୍ୟାନ୍ ତା' ସାରା ଶରୀରକୁ ବୋକ ଦେଇ ମା'ପଣରେ ଉତୁରି ପଡିଥିଲା । ଛାତି ଉପରେ ଜଡାଇ ଧରି କହିଥିଲା- କିଏ କହିଲା ତୁ ମୋ'ର ଅଂଶ ନୋହୁ ? ଏଇ ଦେଖ ଏଇ ଛାତି ତଳେ, ଏଇ ଦେହ ଭିତରେ ଏଇଠି ଟମି ଅଛି, ତା' ଉପରକୁ ହୃଦୟ ଅଛି । ତୋ ଭାଇ ଭଉଣୀ ମୋ ଟମିରୁ ବାହାରିଛନ୍ତି । ତୁ ବାହାରିଚୁ ହୃଦୟରୁ । ତୋରି ପାଇଁ ସ୍ପନ୍ଦିତ ହେଉଥିବା ହୃତ୍‌ପିଣ୍ଡରୁ... କହି କହି ମାମା କାନ୍ଦି ପକାଇ ଥିଲା ଓ ଆହୁରି ନିବିଡ ଭାବେ ଶ୍ୱେତାକୁ ଚାପି ଧରିଥିଲା । ତା' ଲୁହରେ ଧୋଇ ହେଇ ଯାଇଥିଲା ଶ୍ୱେତାର ସବୁ ଅଭିମାନ, ସବୁ ପ୍ରଶ୍ନ ଓ ସବୁ ଦ୍ୱନ୍ଦ୍ୱ । ମାମା ଦେଖାଉଥିବା ଛାତି ତଳର ସେଇ ଅଦେଖା ହୃତ୍‌ପିଣ୍ଡ ଉପରେ ମୁହଁ ଚାପି ସେ ଅନୁଭବ କରିଥିଲା ଯେ ତା'ର ପ୍ରତିଟି ସ୍ପନ୍ଦନରେ ହିଁ ଶ୍ୱେତା ଇ ଶ୍ୱେତା- ଗୁଂଜରିତ ହେଉଚି ।

ମାମା ତାକୁ ବୁଝାଇ ଥିଲା- ହଁ, ଏକଥା ଠିକ୍ ଯେ ଶ୍ୱେତା ତାଙ୍କର ଆଡପ୍ଟେଡ୍ ଡଟର । ଇଣ୍ଡିଆର ଏକ ଅନାଥାଳୟରୁ ଶ୍ୱେତାକୁ ଆଡପ୍ଟ କରି ଆଣିଥିଲେ ଚାରିବର୍ଷ ତଳେ । ସେତେବେଳେ ସେ ଥିଲା ମାତ୍ର ଦେଢବର୍ଷର, ଏକ କୁମାରୀ ମା'ର ପରିତ୍ୟକ୍ତ ସନ୍ତାନ । କିନ୍ତୁ ସେଇ ବାଞ୍ଛିତ କନ୍ୟା ଆସିବାର ବର୍ଷକ ପରେ ଷ୍ଟିଫେନ୍‌ର ଜନ୍ମ । କରିନ୍‌ର ଏକାକୀତ୍ୱର ଉଦାସପଣ ଦୂର କରିବାକୁ ସେ ଓ ଆଲେକଜ୍ୟାଣ୍ଡର ଇଣ୍ଡିଆରୁ ତାକୁ କୋଳେଇ ଆଣିଥିଲେ ।

ଏ ଘରେ ଶ୍ୱେତାର ପଦପାତ ସେମାନଙ୍କ ଜୀବନରେ ଶୁଭ ସୂଚନା ଆଣି ଆସିଥିଲା । ସେଥିପାଇଁ ଡାକ୍ତରଙ୍କ ଘୋଷଣାକୁ ମିଥ୍ୟା ପ୍ରମାଣିତ କରି ଷ୍ଟିଫେନ୍ ଜନ୍ମ ନେଇଥିଲା । ଶ୍ୱେତାର ଆଦର ଆହୁରି ବଢି ଯାଇଥିଲା, ଲକି ଚାଇଲ୍‌ଡ୍ ଭାବରେ ତା'ର ଖାତିର ବି ।

ମାମ୍ ଡାଡ୍‌ଙ୍କ ଅମାପ ସ୍ନେହ, କରିନ୍ ଓ ଷ୍ଟିଫେନ୍‌ଙ୍କ ନିବିଡ ବଂଧୁତା ଭିତରେ ଅଣନିଶ୍ୱାସୀ ଶ୍ୱେତା କେବେ ବି ଅନୁଭବ କରିବାକୁ ସୁଯୋଗ ପାଇ ନଥିଲା ଯେ ସେ ଇଣ୍ଡିଆନ୍... ଏ ଦେଶର

ନୁହେଁ । ପରସ୍ପରକୁ ଭଲ ପାଇବା, ଖେଳକୁଦ, ପାଠପଢ଼ା ଓ ନିଜ ଗୋଡରେ ଠିଆ ହେବାର ସ୍ୱପ୍ନ ସମ୍ଭାବନା ଭିତରେ ବିତି ଯାଇଥିଲା ତା'ର ଶୈଶବ ଓ କୈଶୋର ।

ଯୌବନର ସନ୍ଧିକ୍ଷଣରେ ପାଦ ଥାପୁ ଥାପୁ ଶ୍ୱେତାର ମନ ମୁହୂର୍ତ୍ତକ ପାଇଁ ସେଦିନ ଚହଲି ଉଠିଥିଲା, ଯେଉଁଦିନ ତା' ବୟଫ୍ରେଣ୍ଡ୍ ଜୋହନ୍‌ସ୍ ତାକୁ ପ୍ରେମ ନିବେଦନ ତ ନୁହେଁ, ଆହୁରି ଅନେକ କିଛି ମାଗି ଥିଲା । ପ୍ରଥମ ଥର ପାଇଁ ତା' କିଶୋରୀ ଓଠରେ ନିଜର କମ୍ପିତ ଉତ୍ତପ୍ତ ଓଠ ରଖିଥିଲା ।

ସକ୍ ପାଇବା ଭଳି ଶ୍ୱେତା ତାକୁ ଠେଲି ଦେଇ ରୁକ୍ଷ ଶାଣିତ କଣ୍ଠରେ କହିଥିଲା- ପ୍ରଥମେ ତୁ ବ୍ୟବହାର କରି ଶିଖ୍, ତା'ପରେ ମୋ'ସହ ବଂଧୁତା କରିବାକୁ ଯୋଗ୍ୟ ହେବୁ । ମନେରଖ, ମୁଁ ଶ୍ୱେତା ହେମ୍ୟାନ୍ ଡଟର ଅଫ୍ ଆଲେକ୍‌ଜ୍ୟାଣ୍ଡର ଆଣ୍ଡ୍ ଆନ୍ନା ହେମ୍ୟାନ୍ । ସେଇ ମୁହୂର୍ତ୍ତରେ ଅପମାନରେ ଓ ଆକ୍ରୋଶରେ ଜୋହନ୍‌ସ୍ ଆହୁରି ହିଂସ୍ର ଓ କୁତ୍ସିତ ଦେଖାଯାଇଥିଲା । ଅଧିକ ଶାଣିତ କଣ୍ଠରେ ସେ ପ୍ରତ୍ୟୁତ୍ତର ଦେଇଥିଲା କ'ଣ ପାଇଁ ତୋର ଏ ଅହଂକାର ? ଇଣ୍ଡିଆନ୍ ବୋଲି ? ଇଣ୍ଡିଆନ୍ ରୁଟ୍ ବୋଲି ? ୟୁ ମୋଷ୍ଟ ଅନ୍‌କଲଚର୍‌ଡ, ସାଭେଜ ଗାର୍ଲ, ତୁ ସୁଧୁରିବୁ ନାହିଁ । ଆମ ଦେଶର କଲଚରରେ ଯୁଗ ଯୁଗ ଧରି ବଢ଼ିଲେ ବି ସେଇ ନାଷ୍ଟି ଇଣ୍ଡିଆନ୍ କମ୍ପ୍ଲେକ୍ସରୁ ମୁକୁଳି ପାରିବୁ ନାହିଁ । କୁଟିଳ ଓ ଅବଜ୍ଞାର ହସ ଓଠ ଉପରେ ଫୁଟାଇ ଜୋହନ୍‌ସ୍ ଚାଲିଯାଇଥିଲା । ଗୋଟିଏ ଗରମ ହାଓ୍ୱା ଶ୍ୱେତାର ସମଗ୍ର ଶରୀରକୁ ଥରାଇ ଦେଇଥିଲା । ଜିରୋ ଡିଗ୍ରୀ ସେଣ୍ଟିଗ୍ରେଡରେ ବି ତା' କପାଳ ଓ ବେକତଳ ଝାଳରେ ଭିଜି ଯାଇଥିଲା । କାନମୂଳ ଗରମ ଓ ହାତ ପାପୁଲି ଥଣ୍ଡା ଲାଗୁଥିଲା । ନିଜ ଭିତରେ ଗୁମୁରି ଉଠୁଥିବା ଆଉ ଏକ ପରିଚୟ ତା' ତଣ୍ଟିପାଖେ ଅଟକି ଯାଇଥିଲା- 'ମୁଁ ଇଣ୍ଡିୟାନ୍ ।' ପ୍ରଥମ କରି ତା' ଭିତରେ ଏକ ଦ୍ରବୀ ଅନୁଭବ ଆକୁଳ ଭାବରେ ଘୂରି ବୁଲିଥିଲା । ହଁ, ତା'ର ରୁଟ୍ ଇଣ୍ଡିଆନ୍ । ସେ ଇଣ୍ଡିଆନ୍ । ଯେତେ 'ସାଭେଜ୍' 'ନାଷ୍ଟି' ବୋଲି ଇଣ୍ଡିଆର କଲଚ୍‌ରକୁ ଜୋହନ୍‌ସ୍ ଭଳି ତଥାକଥିତ କଲଚ୍‌ରଡ୍ ଯୁବକମାନେ କୁହନ୍ତୁ ପଛେ-ସମୃଦ୍ଧ ସଂସ୍କୃତିର ଦେଶ ଭାରତ ତା'ର ରୁଟ୍ । ସେଇ ରୁଟ୍‌ର ରକ୍ତ ତା'ର ଶିରାପ୍ରଶିରରାରେ ପ୍ରବାହିତ, ଶ୍ୱାସପ୍ରଶ୍ୱାସରେ ସୁଗନ୍ଧିତ । ଯେଉଁ ଭାରତକୁ ସେ କେବଳ ଚିହ୍ନିଚି, ଜାଣିଚି ଇଣ୍ଟରନେଟ୍‌ରୁ, କେବେ କେମିତି ମା' ଓଠରୁ । କିନ୍ତୁ... କିନ୍ତୁ ସେଇ ଭାରତ ମାଟି ତାକୁ କାହିଁକି ପରିତ୍ୟକ୍ତ ବର୍ଜ୍ୟ ବସ୍ତୁଭଳି ଫିଙ୍ଗିଦେଲା ସ୍ୱୀଡେନ୍‌କୁ ?

ଅନେକ ଦିନ ଧରି ଶ୍ୱେତା ଏଇ ଭାବତରଙ୍ଗ ଭିତରେ ଆନ୍ଦୋଳିତ ହେଲା, ଉଚ୍ଛାରିତ ହେଲା ଓ କି ଏକ ଅଜଣା ଅନୁଭୂତ ଅନୁଭୂତିରେ ସ୍ପନ୍ଦିତ ହେଲା । ଅଭିମାନରେ ସନ୍ତୁଳିତ ହେଲା ।

ସେଦିନ ତା'ର ଅନ୍ୟମନସ୍କତାକୁ ଲକ୍ଷ୍ୟକରି ମା' ପଚାରିଥିଲା, 'ଆମ ଗେହ୍ଲାଝିଅର କ'ଣ ହେଇଚି କି ? କିଛି ଶୁଭ ଖବର ? ବୟ ଫ୍ରେଣ୍ଡ ? ମା' ଏକ ପରିପୂର୍ଣ୍ଣ ହସ ହସି ଶ୍ୱେତାର ପାପୁଲି ଉପରେ ଏକ ମୃଦୁ ଚୁମ୍ବନର ସ୍ପର୍ଶ ଦେଇଥିଲା ।

କଂପିତ କଣ୍ଠରେ ଶ୍ୱେତା କହିଥିଲା, 'ମମ୍... ଜୋହନ୍‌ସ୍... । ତା' ବାକ୍ୟ ସରିବା ଆଗରୁ ମା' ତାକୁ କୋଳେଇ ନେଇ ଆଦର କରି କହିଥିଲା- ଥ୍ୟାଙ୍କସ୍ ଶ୍ୱେତା । ତତେ ବଧାଇ ଜଣଉଚି । ତା' ହେଲେ ଜୋହନ୍‌ସକୁ ତୋ' ପାର୍ଟନର ଭାବେ ପସନ୍ଦ କରିଚୁ !! ଓହ ! ମୋ ଚିନ୍ତା ଗଲା । ନାଇଁତ ପିଲାଦିନୁ ତୋର ଯେଉଁ ଲାଜକୁଳା ଢଙ୍ଗ, ମୁଁ ତ କେତେ କଥା ଭାବି ଯାଉଥିଲି... ।

ମା' ଆଖିରେ ଆଖି ମିଶାଇ ଏଥର ସ୍ପଷ୍ଟ କଣ୍ଠରେ ଶ୍ୱେତା କହିଥିଲା- 'ମମ୍, ତମେ ଏବେବି କେତେ ଆଗକୁ କଥା ଭାବି ଯାଉଚ । ତମେ ଯାହା ଭାବୁଚ ପ୍ରକୃତରେ ତାହା ନୁହେଁ । ଜୋହନ୍‌ସ୍ ମୋର ଅପମାନ କରିଚି, ମୋ ଜନ୍ମଭୂମି ଇଣ୍ଡିଆକୁ ମଧ୍ୟ ଅସମ୍ମାନ କରିଚି ।'

ମୋ' ସହ ସେକୁଆଲ ରିଲେସନ୍ ରଖିବାକୁ ପ୍ରପୋଜ କରିଚି । ଆଇ ହେଟ୍ ହିମ୍, ସେ ନିଆତି ଅଭଦ୍ର । ଅନ୍‌କଲଚରଡ୍ ବୟ । ଆଇ ଡୋଣ୍ଟ ଲାଇକ୍ ହିମ୍ ।

'ରିଲାକ୍ସ... ରିଲାକ୍ସ ବେବୀ'... ମା' ତା'ର ପିଠି ଆପୁଡି ଆଦର କରି କହିଥିଲା... 'ଜୋହନ୍‌ସକୁ ତୁ ଯଦି ପସନ୍ଦ ନକରୁଛୁ ତୋ ଇଚ୍ଛା ବିରୋଧରେ କିଛି ବି ହେବ ନାହିଁ : ନା ବଂଧୁତା ନା ଅଧିକ କିଛି । କିନ୍ତୁ ତା' ପ୍ରପୋଜାଲରେ ତୁ ଏତେ ଉତ୍‌କ୍ଷିପ୍ତ ହେବାର କ'ଣ ଅଛି ? ଆମର ଏ ୟୁରୋପିଆନ କଣ୍ଟ୍ରିମାନଙ୍କରେ ଏ ତ ସାଧାରଣ କଥା, ଆମ ଚଳଣିର ଅଂଶବିଶେଷ ।

ଶ୍ୱେତା ନିଜ ଭିତରେ ଅନେକ ସାହସ ଠୁଳ କରି ମା' ମୁହଁକୁ ସିଧା ଚାହିଁଥିଲା । ସ୍ପଷ୍ଟ କଣ୍ଠରେ କହିଥିଲା- ମା', ଏବେ ତମେ କହୁଥିଲ ନା ବ୍ୟକ୍ତିଗତ ଇଚ୍ଛା ଅନିଚ୍ଛା ଓ ପସନ୍ଦ ଅପସନ୍ଦ ଉପରେ ବଂଧୁତା ବା ଅନ୍ୟ ଅଧିକ କିଛି ନିର୍ଭର କରେ ? ମୁଁ ସେଭଳି ନାଷ୍ଟି ବଂଧୁତା ଚାହେଁ ନାହିଁ, ଆଦୌ ପସନ୍ଦ କରେନାହିଁ । ବିବାହ ପୂର୍ବରୁ ମୁଁ ଯଦି ମା' ହୋଇଯାଏ ? ମୋ ସନ୍ତାନକୁ ମୁଁ କେଉଁ ଦେଶକୁ ଫିଙ୍ଗିଦେବି ମା' ? ମୋତେ ଜନ୍ମ ଦେଇଥିବା ମା' ଭଳି ମୁଁ ଏତେ ନିଷ୍ଠୁର ତ ହୋଇ ପାରିବିନି... ! କହି କହି ଶ୍ୱେତା ଦୁଇ ହାତରେ ମୁହଁ ଢାଙ୍କି କାନ୍ଦି ଉଠିଥିଲା ।

ଅଠର ବର୍ଷର ଦ୍ୱନ୍ଦ୍ୱ, ମାନସିକ ସଂଘାତ, ଜଟିଳ ଜୀବନ ଜିଜ୍ଞାସା ଓ ଅବୋଧ ଅବବୋଧ ଶ୍ୱେତାର ଯେମିତି ଏଇ ଲୁହ ସହ ହାବୁକାମାରି ଉଛୁଳି ଉଠୁଥିଲା ।

ମା' ଆନ୍ନା ହେମ୍ୟାନ୍ ଶ୍ୱେତାକୁ କୋଳେଇ ନେଇ ନିରବରେ ପିଠି ଥାପୁଡି ଥାପୁଡି ସାନ୍ତ୍ୱନା ଦେଲେ । କାହା ଓଠରେ ଭାଷା ନଥିଲା, କିନ୍ତୁ ଦୁହେଁ ଦୁହିଁଙ୍କୁ ବୁଝିବାକୁ ଦୁଇଟି ହୃଦୟର ସ୍ପନ୍ଦନ କେବଳ ପରସ୍ପରକୁ ଛୁଉଁଥିଲା ।

ଅନେକ ସମୟର ନିରବତା ପରେ ଆନ୍ନା ହେମ୍ୟାନ୍ ଓଠ ଖୋଲିଲେ । ଶ୍ୱେତାର ମୁହଁଟିକୁ ଦୁଇ ପାପୁଲିରେ ଟେକି ଧରି ଆଦର କରି କହିଲେ- ଦେଖ୍ ମା', ଆମ ଦେଶରେ କୁମାରୀ ମାତୃତ୍ୱ ଅପରାଧ ନୁହେଁ । ବିବାହ ପୂର୍ବରୁ ଓ ବିବାହ ପରେ ଜନ୍ମିଥିବା ସନ୍ତାନ ଭିତରେ କୌଣସି ଫରକ ଆମ ଦେଶ କି ସମାଜ ଦେଖେ ନାହିଁ । ବରଂ ଏକାକୀ ମା'ର ଜନ୍ମିତ ଛୁଆର ସବୁ ପ୍ରକାର ଦାୟିତ୍ୱ ସରକାର ବହନ କରିଥାଏ । କୁମାରୀ ମା' ଯେତେବେଳେ ଉପାର୍ଜନକ୍ଷମ ହୁଏ ସେ ତା' ପିଲାର ଦାୟିତ୍ୱ ନିଏ । କିନ୍ତୁ ପିଲା ତା' ପାଖରେ ମୂଳରୁ ରହିଥାଏ । ପରିତ୍ୟାଗ କରିବାର ପ୍ରଶ୍ନ ହିଁ ଉଠେ ନାହିଁ । ଏଇ ମତେ ଦେଖ୍ । ମୁଁ ବି ଜଣେ କୁମାରୀ ମା' । ତୋ ସିସ୍‌ର ଜନ୍ମ ବାହାଘର ପୂର୍ବରୁ । ମୋ ବୟଫ୍ରେଣ୍ଡ ମତେ ପ୍ରତାରଣା କରି ଅନ୍ୟ ଝିଅକୁ ବିବାହ କଲା । ମୁଁ ତୋ ସିସ୍‌କୁ ନେଇ ଏକା ଏକା ବଂଚୁଥିବାବେଳେ ଆଲେକ୍ସ ସହ ସାକ୍ଷାତ । ସବୁ ଜାଣିଶୁଣି ସେ ମତେ ବିବାହ କଲେ । କରିନ୍‌କୁ ବାପର ସମସ୍ତ ସ୍ନେହମମତା ଓ ଯତ୍ନ ଦେଇ ସେ ବଢାଇଲେ । ହି ଲଭସ୍ କରିନ୍, ଲଭସ୍ ମି ଭେରି ମଚ୍...

କେଉଁ ପରୀ ରାଇଜର କାହାଣୀ ଭଳି ଶ୍ୱେତା ମା' ମୁହଁରୁ ଏ କାହାଣୀ ନୁହେଁ, ଜୀବନାନୁଭୂତିର ନିଛକ ବର୍ଣ୍ଣନା ସ୍ତବ୍ଧ ହୋଇ ଶୁଣୁଥିଲା । ସିସ୍ କରିନ୍‌କୁ ଯଦି ମମ୍ ଏତେ ଭଲପାଏ, ଡାଡ୍ ଏତେ ଆଦର କରନ୍ତି ତାକୁ । ଜନ୍ମ ଦେଇଥିବା ମା' କାହିଁକି ତା'ପ୍ରତି ଏଭଳି ନିଷ୍ଠୁର ଆଚରଣ କଲା ? ଯଦି ଏବେ ଯାଇ ସେ ତା'ର ପରିଚୟ ଦିଅନ୍ତା... ମା' ତାକୁ କ'ଣ ଆଦରରେ କୋଳେଇ ନେବ ନା ଅପରିଚିତ ଭାବି ମୁହଁ ଫେରାଇ ନେବ ? ଆଉ ମା'ର ସ୍ୱାମୀ ? କେମିତି ଭାବେ ସେ ଗ୍ରହଣ କରିବେ ଶ୍ୱେତାକୁ ?

ଯଦି ଦେଖା ହୁଅନ୍ତା, ସେ ମା'କୁ ପଚାରନ୍ତା- ମା' ଜନ୍ମଦେଇ ମତେ ପରିତ୍ୟାଗ କଲାବେଳେ ତୋ ହୃଦୟ କ'ଣ ଟିକିଏ ବି ବ୍ୟାକୁଳିତ ହେଲା ନାହିଁ ? ଏବେ ଏଇ ଅଠର ବର୍ଷ ଭିତରେ

କେବେ କ'ଣ କୌଣସି ନିରୋଳା ମୁହୂର୍ତ୍ତରେ ମୋ'ସ୍ମୃତି ତତ୍ତ୍ୱ ଅଥୟ କରେ ନାହିଁ ? ମୁଁ କେମିତି ଅଛି, କେଉଁଠି ଅଛି, କେମିତି ଦେଖାଯାଉଚି, ସେକଥା ଜାଣିବାକୁ କ'ଣ କେବେ ବି ତୋ'ଭିତରେ ଇଚ୍ଛାଟିଏ ଜାଗେ ନାହିଁ ?

ମା' ଦେଖିବାକୁ କେମିତି ହେଇଥିବ ? ଭାରତୀୟ ପୋଷାକରେ ତା'ରି ଅବିକଳ ପ୍ରତିବିମ୍ବଟିଏ ନା ଅଲଗା ଚେହେରାର ? ଏତେବର୍ଷ ପରେ ମା'କୁ ଥରେ ଦେଖିବାର ବ୍ୟାକୁଳ ଇଚ୍ଛା ତା' ଭିତରେ ଛଟପଟ ହେଉଥିଲା ।

ବିସ୍ମୃତ ଅତୀତ ଓ ବିମୁଗ୍ଧ ଅତୀତ ଭିତରୁ ଦୁଇ ପାଦ କାଢି ବର୍ତ୍ତମାନ ଉପରେ ରଖି ଆନ୍ନା ହେମ୍ୟାନ୍ ଝିଅ ଶ୍ୱେତାକୁ ଚାହିଁଲେ । ଆର୍ତ୍ତନାଦ କରିବା ଢଙ୍ଗରେ ତାକୁ ହଲାଇ ଦେଇ ଡାକିଲେ- ଶ୍ୱେତା, ତୁ ଠିକ୍ ଅଛୁ ତ ମା' ? ଶ୍ୱେତା, ମୋ କଥାଶୁଣି ପାରୁଛୁ ?

ସ୍ୱପ୍ନରୁ ଉଠିବାଭଳି ଶ୍ୱେତା ମମ୍‌କୁ ଚାହିଁଲା । ଫାଙ୍କା ଦୃଷ୍ଟି । ସତରେ ସେ କ'ଣ ମମ୍ କଥାରେ ଶେଷାଂଶ ଶୁଣି ପାରିଥିଲା ?

ଆନ୍ନା ହେମ୍ୟାନ୍ କେବେ କ'ଣ ଆଶଂକା କରିଥିଲେ ତାଙ୍କର ଅତି ଆଦରରେ ପାଳିତା କନ୍ୟା ଏଇ ପ୍ରଶ୍ନ ଦିନେ କରିବ ବୋଲି ? ଏଭଳି ଅଦ୍ଭୁତ ଜିଦ୍‌କୁ ଅଟଳ ଭାବେ ଘୋଷଣା କରିବ ବୋଲି ? ସେ ପୁଣି ଅଚାନକ ଭାବେ ?

ଶ୍ୱେତା କିନ୍ତୁ ନିଷ୍ପତ୍ତି ଶୁଣାଇବା ଢଙ୍ଗରେ କହିଥିଲା- ମମ୍, ମୁଁ ଇଣ୍ଡିଆ ଯିବି, ଥରେ ମୋ ମା'କୁ ଦେଖି ଆସିବି । ମୋ' ରୁଟ୍‌କୁ ନିଜ ଭିତରେ ଅତି ନିକଟରୁ ଅନୁଭବ କରିବି ।

ହତବାକ୍ ଆନ୍ନା ଝିଅକୁ ସେଦିନ ବାଧାଦେବା ଦୂରେ ଥାଉ କାହିଁକିର ପ୍ରଶ୍ନଟିଏ ମଧ୍ୟ ଉଚ୍ଚାରି ପାରିନଥିଲେ । ଶ୍ୱେତା ମନର ଏ ଝଡ ଆଗରେ ସବୁ ପ୍ରଶ୍ନ ଓ ସବୁ ବାଧା କାହିଁ କୁଆଡେ ସତ୍ତା ହଜେଇ ଦେବ, ଏକଥା ସେ ଭଲ ଭାବେ ହୃଦୟଙ୍ଗମ କରି ପାରିଥିଲେ । ସ୍ୱାମୀଙ୍କୁ ରାଜି ମଧ୍ୟ କରାଇଥିଲେ ।

ଆଲେକ୍‌ଜ୍ୟାଣ୍ଡର ଓ ଆନ୍ନା ଶ୍ୱେତାର ଇଣ୍ଡିଆ ଯିବାର ସମସ୍ତ ବନ୍ଦୋବସ୍ତରେ ଲାଗି ପଡିଥିଲେ । ଶ୍ୱେତାକୁ ଯେଉଁ ଅନାଥାଳୟରୁ ଆଣିଥିଲେ ତା'ର କର୍ତ୍ତୃପକ୍ଷଙ୍କ ସହ ଯୋଗାଯୋଗ କରି ଶ୍ୱେତାର ଯେମିତି କିଛି ଅସୁବିଧା ନହୁଏ, ସେପାଇଁ ଅନୁରୋଧ କରିଥିଲେ । କରିନ୍ କହିଥିଲା- ମମ୍, ମୁଁ ବି ଶ୍ୱେତା ସହ ଇଣ୍ଡିଆ ଯିବି । ପ୍ରଥମେ ଆଲେକଜ୍ୟାଣ୍ଡର ମୃଦୁ ଆପତ୍ତି ଜଣାଇଥିଲେ । କରିନ୍ ଯେତେବେଳେ କହିଥିଲା ଯେ ଇଣ୍ଡିଆରେ ସଂସ୍କୃତି ସହ ସ୍ୱୀଡେନ୍ ସଂସ୍କୃତିର ଏକ ତୁଳନାତ୍ମକ ରିସର୍ଚ୍ଚ ପ୍ରୋଜେକ୍ଟ ସେ ୟୁନିଭରସିଟ୍‌ରୁ ସ୍ୱୀକୃତ କରାଇ ଆଣିଛି ଏବଂ ଇଣ୍ଡିଆ ଯିବା ଆସିବା ଓ ରହିବାର ସମସ୍ତ ଖର୍ଚ୍ଚ ସ୍ୱୀଡେନ୍ ସରକାର ବହନ କରିବେ, ଆଲେକ୍‌ଜ୍ୟାଣ୍ଡରଙ୍କର ଆପତ୍ତି କରିବାର କିଛି ବାଟ ନଥିଲା । ରିସର୍ଚ୍ଚ ଏକ ବାହାନା, ଶ୍ୱେତା ସହ ଆସି ତା'ଭଳି ଏକ ହୃଦୟବତୀ କନ୍ୟାକୁ ସୃଷ୍ଟି କରିଥିବା ପବିତ୍ର ଦେଶକୁ ଅତି ନିକଟରୁ ଦେଖିବା, ଅନୁଭବ କରିବା ହିଁ ତା'ର ଉଦ୍ଦେଶ୍ୟ ।

ନିଜ ମାଟିରେ, ନିଜ ପାଣି ପବନରେ, ନିଜ ଦେଶର ଆକାଶ ତଳେ ଠିଆ ହେଇ ନିଃଶ୍ୱାସ ନେବାରେ ଯେଉଁ ଅଫୁରନ୍ତ ଆନନ୍ଦ ଭରି ରହିଥାଏ, ଭାରତ ଭୂଇଁରେ ପାଦ ଦେଇ ଶ୍ୱେତା ସେଦିନ ପ୍ରଥମ କରି ତାହା ଅନୁଭବ କରିଥିଲା । ମମ୍ କହୁଥିଲା, ଭାରତ ଯେବେ ସେ ଛାଡିଥିଲା ତାକୁ ମାତ୍ର ଦେଢବର୍ଷ ହୋଇଥିଲା । ଷୋଳ ବର୍ଷ ପରେ ଆଜି ତା'ର ମନେ ହେଉଚି ଯେମିତି ଏ ଦେଶର ସୀମା ଡେଇଁ କେବେ ବି ସେ ଯାଇ ନଥିଲା ! ସବୁ ନାରୀଙ୍କ ମୁହଁରେ ସେ ଦେଖୁଚି ତା' ମା'ର ପ୍ରତିଛବି, ସବୁ ପୁରୁଷଙ୍କ ଚେହେରାରେ ତା' ପଳାତକ ପିତାର ପ୍ରତିବିମ୍ବ । ଲମ୍ୱି ଯାଇଥବା ସମସ୍ତ ରାସ୍ତା ମନେ ହେଉଛନ୍ତି ତା'ରି ଏନ୍ତୁଡିଶାଳକୁ ଧାଇଁଛନ୍ତି ।

ଫୁଲ ଫଳରେ ଲୋଟି ପଡୁଥିବା ଗଛମାନେ... କାଚକେନ୍ଦୁ ପାଣି ଭର୍ତ୍ତି ପଦ୍ମ ପୋଖରୀ, ଗାଁ ଗୋହିରୀ ଧାନ କିଆରୀର ସବୁଜ ପଣତ ସମସ୍ତେ ତାକୁ ହାତ ପ୍ରସାରୀ କୋଳେଇ ନେବାକୁ ଯେମିତି ବ୍ୟାକୁଳ ହୋଇ ପଡିଛନ୍ତି । ଆବେଗରେ ସେ କରିନ୍‌ର ହାତକୁ ମଝିରେ ମଝିରେ ଚାପି ଧରୁଚି । ପ୍ରଶ୍ନ କରୁଚି- କହତ ସିସ୍, ମା' ମତେ ଏତେ ଦିନ ପରେ ଦେଖି କ'ଣ କହିବ ?

କରିନ୍ ତା' ଗୋଲାପି ପତଳା ଓଠ ଦି'ଫାଳ ଅଳ୍ପ ପ୍ରସାରି ହସି ଦେଉଚି । ତା' ଆଖିରେ ଆନନ୍ଦ ଓ ବିସ୍ମୟ- ଦୁଇଟି ଭାବର ଲୁଚକାଳି । ସତେବା ଶ୍ୱେତା ସହ ସେ କେଉଁ ଅନାବିଷ୍କୃତ ଦେଶରେ ପାଦ ଦେଇଚି !! ବିମାନ ବନ୍ଦରରେ ଅନାଥାଳୟର କର୍ମଚାରୀ 'ସ୍ୱାଗତ ଶ୍ୱେତା' ପ୍ଲାକାର୍ଡ ଧରି ଅପେକ୍ଷା କରିଥିଲେ । ସ୍ୱାଗତରେ ପୁଣି ଏତେ ଉଷ୍ମତା ଥାଏ, ଆତିଥ୍ୟ ଯେ ଏତେ ଅନ୍ତରଂଗତାର ରଂଗରେ ଝଲମଲ୍ କରେ- ଶ୍ୱେତା ଓ କରିନ୍ ଏଇ ପ୍ରଥମ କରି ଅନୁଭବ କଲେ । ଘର ବାହୁଡା ବିଦେଶାଗତ ପିଲାଟି ପାଇଁ ରୀତିମତ ଉତ୍ସବରେ ମୁଖରିତ ହାପି ହୋମ୍ ।

ଶ୍ୱେତା ଯେ ତା'ର ରୁଟ୍‌ର ଅନ୍ୱେଷଣରେ ଆସିଚି ଆଉ କରିନ୍ ଆସିଚି ଭାରତୀୟ ସଂସ୍କୃତି ଉପରେ ଅଧିକ ଜାଣିବା ପାଇଁ- ଏକଥା ଜାଣି ହାପି ହୋମ୍‌ର ଅଧକ୍ଷା ଖୁବ୍ ଖୁସି ହେଲେ । ଷୋଳ ବର୍ଷ ତଳର ଶ୍ୱେତାର ଫାଇଲ ତନ୍ନ ତନ୍ନ କରି ଖୋଜି ଆବଶ୍ୟକ ତଥ୍ୟ ଯୋଗାଇ ଦେଲେ ।

ସେତେବେଳକୁ ସଂଧ୍ୟା ନଇଁ ଆସିଥିଲା । କଥା ହେଲା କାଲି ସକାଳେ ଅନୁଷ୍ଠାନର କର୍ମଚାରୀ ଶ୍ୱେତା ଓ କରିନ୍‌କୁ ଶ୍ୱେତା ମା'ର ଗାଁରେ ପହଞ୍ଚାଇ ଦେବେ ।

ଅଧକ୍ଷାଙ୍କୁ ଶ୍ୱେତା ସବିନୟ ପ୍ରଶ୍ନ ତ ନୁହେଁ, ରୀତିମତ କାକୁସ୍ଥ ମାଗୁଣିଟିଏ କରିଥିଲା- ମ୍ୟାଡାମ୍, ମୋ' ମା' ମତେ କ'ଣ ପାଇଁ ଆପଣଙ୍କ ପାଖେ ଛାଡିଥିଲେ ଆଉ ଆପଣ ଭାରତର କୌଣସି ଦମ୍ପତ୍ତିଙ୍କୁ ପାଳିବା ପାଇଁ ମତେ ନ ଦେଇ ସ୍ୱୀଡେନ ଦମ୍ପତ୍ତିଙ୍କୁ କାହିଁକି ଦେଲେ, ଦୟାକରି ମତେ କହିବେକି ?

ଅଧକ୍ଷାଙ୍କ ଗମ୍ଭୀର ମୁହଁରେ ସ୍ମିତ ହସ ଖିଏ ଚହଲି ଉଠିଲା । ସ୍ନେହସିକ୍ତ କଣ୍ଠରେ ସେ ଶ୍ୱେତାକୁ ବୁଝାଇଲେ- ମଣିଷକୁ ପରିସ୍ଥିତି ବାଧ କରେ ଝିଅ- ନହେଲେ କେଉଁ ମା' ତା' କଳିଜାର ଟୁକୁଡାକୁ ପରିତ୍ୟାଗ କରିଦେବ ? ତମ ମା' ଅବସ୍ଥା ଚକ୍ରରେ କୁମାରୀ ମା' ହୋଇ ସମାଜ ଓ ଲୋକଲଜ୍ୟାର ଆଢୁଆଳରେ ତମକୁ ଜନ୍ମ ଦେଇ ଏଇ ଆଶ୍ରମରେ ଛାଡି ପୁଣି ପିତୃକୁଳକୁ ଫେରିଗଲା । ତମକୁ ଘରକୁ ନେବାର ସାହସ ନା ମା'ର ଥିଲା, ନା ତାକୁ ସ୍ୱୀକାର କରିବାର ସତ୍‌ସାହସ ସମାଜର ଥିଲା ? ଭାରତୀୟ ପରିବାରରୁ ତମକୁ ପାଳିବା ପାଇଁ କେହି ଆଗେଇ ଆସିଲେ ନାହିଁ । ସ୍ୱୀଡେନର ହେମ୍ୟାନ୍ ଦମ୍ପତ୍ତି ଭାରତ ସରକାରଙ୍କ ଜରିଆରେ ସେତେବେଳେ ତମକୁ ନେବାକୁ ଆଗ୍ରହ ପ୍ରକାଶ କଲେ, ନିୟମାନୁସାରେ ତମର ପରିବାର ଓ ପରିଚୟ ଦେବା ଆମର କର୍ତ୍ତବ୍ୟ, ସେ ଦେଶ ହେଉ କି ବିଦେଶ ହେଉ ।

ଭାରତର ସଂସ୍କୃତି ସଂପର୍କରେ କରିନ୍ ଅନେକ କିଛି ପ୍ରଶ୍ନ କରିଥିଲା । ମାତ୍ର ଶ୍ୱେତା ମନରେ ଅସୁମାରୀ ଜୀଜ୍ଞାସା ସତ୍ତ୍ୱେ ସେ ଚୁପ୍‌ଚାପ୍ ବସି ମା'ର ରୂପଟିଏ ତା' କଳ୍ପନାରେ ଆଙ୍କୁଥିଲା । ରାତି ହୋଇଯାଇଥିଲା । ଅଧକ୍ଷା ଶୁଭରାତ୍ରି ଜଣାଇ ଅତିଥିଶାଳାରେ ଯେମିତି କରିନ୍ ଓ ଶ୍ୱେତାଙ୍କର କିଛି ଅସୁବିଧା ନହୁଏ ତାଗିଦା କରି ବିଦାୟ ନେଲେ ।

ରାତିର ପ୍ରତିଟି ମୁହୂର୍ତ୍ତ ଉଦ୍‌ବେଗରେ ଭାରୀ ହେଇ ଯାଉଚି । ଶ୍ୱେତାର ଆଖି ନିଷ୍ପଲକ । ସତେବା ଶ୍ୱେତାର ପଛେ ପଛେ ଆସୁ ଆସୁ ନିଦ କେଉଁଠି ବାଟ ଭୁଲି ଅଟକି ଯାଇଚି ! କେମିତି ଏ ରାତି ଭୋର ହେବ... ଶ୍ୱେତା ତା' ମା'ର ଗାଁକୁ ଯାଇ ମା'କୁ ଭେଟିବ !

ସକାଳ ତା'ର ସୁନେଲି ରଂଗ ଯେତିକି ବିଛେଇ ବିଛେଇ ଚାଲିଚି ଶ୍ୱେତାର ମନ ସେତିକି ରଂଗୀନ୍ ହେଇ ଚାଲିଚି । ନାଲିଗୋଡି ରାସ୍ତା ଛାଡି ଗାଡି ଗାଁ ଗୋହିରୀ ରାସ୍ତାରେ ଧୂଳି ଉଡାଇ ଚାଲୁ ଚାଲୁ ମଝିରେ ଅଟକି ଯାଉଚି । ଗାଡି ଭିତରୁ ମୁହଁ ଗଳାଇ ହାପି ହୋମ୍‌ର କର୍ମଚାରୀ ମିଃ ପଟ୍ଟନାୟକ ପଥଚାରୀମାନଙ୍କଠାରୁ ଠିକଣା ବୁଝୁଛନ୍ତି । କୌତୂହଳୀ ଆଖିମାନେ ଗାଡି ଭିତରେ ଆରୋହୀଙ୍କ ନିକଟରେ ବନ୍ଦି ହେଇ ଯାଉଛନ୍ତି । ସଂଳାପର କିଛି କିଛି ଭଗ୍ନାଂଶ ଛିଟିକି ପଡୁଚି- ଆରେ ଗୋରୀ ସାଇବାଣୀ, କାଳୀ ସାଇବାଣୀ ଦିଜଣ କୁଆଡେ ଆସିଛନ୍ତି କିରେ... ?

ଗାଡି ଯାଇ ଗୋଟେ ନୁଆଁଣିଆ ଚାଳଘର ଆଗରେ ଠିଆ ହେଲା । ହାପି ହୋମ୍‌ର କର୍ମଚାରୀ ଓହ୍ଲାଇଲାବେଳେ କହିଲେ- ଆପଣ ଦି'ଜଣ ଅପେକ୍ଷା କରିଥାନ୍ତୁ ମୁଁ ଆସୁଚି ।

ଶ୍ୱେତାର ହୃତ୍‌ପିଣ୍ଡର ସ୍ପନ୍ଦନ ବଢି ଚାଲିଚି । ଏଇତ... ଏଇକ୍ଷଣି ଏ ନୁଆଁଣିଆ ଚାଳ ତଳୁ ବାହାରି ଆସିବ ତା' ମା'- ମାତୃତ୍ୱର ବିଶାଳତାରେ ଭରା, ମଥା ତା'ର ନଇଁ ଆସିବ ଶ୍ୱେତାର କପାଳ ଉପରକୁ । ବୋକ ପରେ ବୋକ ଦେଇ କୋଳେଇ ନେଇ ପ୍ରଶ୍ନ କରିବ- ଏତେଦିନ ତୁ କେଉଁଠି ଥିଲୁ ମୋ' ଧନ, ଏତେ ଦିନେ ଏ ଅଭାଗିନୀ ମା' ତୋ'ର ମନେ ପଡିଲା ?

କିନ୍ତୁ ଏ କ'ଣ ? ଘର ଭିତରୁ ହାପି ହୋମ୍‌ର ମିଃ ପଟ୍ଟନାୟକଙ୍କ ପଛେ ପଛେ ଯିଏ ବାହାରି ଆସୁଛନ୍ତି ସେ ତ ମଧ୍ୟବୟସ୍କ ପୁରୁଷ ଜଣେ । ଆଣ୍ଠୁ ଉପରକୁ ମଇଳା ଧୋତିର ଧଡି, ତା' ଉପରକୁ ଅଣ୍ଟାରେ ଆଣ୍ଟକରି ବନ୍ଧା ହେଇଚି ନାଲି ଗାମୁଛା ଖଣ୍ଡେ । ଚାରିକୋଣିଆ ରୁଢିଆ ମୁହଁ, ବେକ ତଳକୁ ଗଛର ଚେର ଭଳି ଦୁଇ କଡେ ଦିଖଣ୍ଡ ହାଡ ବାରି ହୋଇ ପଡୁଚି । କଳା ମିଟିମିଟି ଝାଳ ସରସର ଖୋଲା ଦେହ । ... ଫୁଙ୍ଗୁଳା ଧୂଳିଆ ପାଦ । ମା' କାଇଁ ?

ମିଃ ପଟ୍ଟନାୟକ ଓ ମଧ୍ୟବୟସ୍କ ବ୍ୟକ୍ତିଙ୍କ ଭିତରେ ଚାପା କଣ୍ଠରେ କ'ଣ କଥାବାର୍ତ୍ତା ଚାଲିଚି । ଶ୍ୱେତା ଓ କରିନ୍ କିଛି ବୁଝିପାରୁ ନଥିଲେ ବି ଏତିକି ବୁଝୁଛନ୍ତି ଯେ କିଛି ଗୋଟିଏ ଗୁରୁତର ଆଲୋଚନା ଚାଲିଚି । ଭଦ୍ରଲୋକ ଗାଡିରେ ବସିଲେ । ଗାଡି ଆସି ଗାଁ ବାହାରର ଏକ ତୋଟାରେ ଠିଆ ହେଲା । ଗଛ ମୂଳେ କିଛି ସମୟ ଭଦ୍ରଲୋକଙ୍କ ସହ କଥାବାର୍ତ୍ତା କରି ମିଃ ପଟ୍ଟନାୟକ ଆସି ଜଣାଇଲେ ଯେ- ବହୁ କଷ୍ଟରେ ତମ ମା' ସୁଜାତାର ଠିକଣା ତମ ଅଜାଙ୍କଠାରୁ ଆଣିଲି । କିନ୍ତୁ ଦେଖାକରି ତ ହେବ ନାହିଁ ।

ଆକାଶରୁ ଖସି ପଡିବା ଭଳି ଶ୍ୱେତା ପ୍ରଶ୍ନ କରିଥିଲା... ମାନେ ? ଦେଖା ହେଇ ପାରିବ ନାହିଁ କାହିଁକି ?

-ତମ ମା' ଅନ୍ୟତ୍ର ବିବାହ କରିଯାଇଛି । ସ୍ୱାମୀ ସନ୍ତାନ ନେଇ ଖୁସିରେ ଅଛି । ତୁମକୁ ସେ କାହିଁକି ଦେଖା କରିବ ? ତା' ହସଖୁସିର ସଂସାରରେ ଝଡ ସୃଷ୍ଟି କରିବାକୁ ? ତା' ହେଇ ପାରିବନି । ଏଇଠୁ ଫେରିଚାଲ । ତମର ସ୍ଥାନ ସେ ପରିବାର କି ମା' ହୃଦୟରେ କେଉଠି ବି ନାହିଁ ।

ଶ୍ୱେତାର ଅବୁଝା ମନ ବୁଝିପାରୁ ନଥିଲା ଯେ ମମ୍ ଡାଡ୍‌ଙ୍କ ହସଖୁସିର ସଂସାରରେ କରିନ୍ ଯଦି ସେ ହସଖୁସିକୁ ବହୁଗୁଣିତ କରିପାରୁଚି ତା' ମା'ର ସଂସାରରେ ଶ୍ୱେତାର ସ୍ଥାନ କାହିଁକି ଉପେକ୍ଷିତ ?

କରିନ୍ କାନ୍ଧରେ ତା'ର କ୍ଲାନ୍ତ ହତାଶ ଶରୀରର ଭାରା ଲୋଟାଇ ଦେଇ କୋହରେ ଭାଙ୍ଗି ପଡିଲା ଶ୍ୱେତା ।

କରିନ୍ ତାକୁ ବୁଝାଇଲା- ଏତେ ବ୍ୟସ୍ତ ହନା । ଇଚ୍ଛା ଥିଲେ ଉପାୟ ଆପେ ଆପେ ଧରାଦେବ । ସାତ ସମୁଦ୍ର ତେର ନଈ ଡେଇଁ ତୋର ରୁଟ୍ ଖୋଜିବାକୁ ଯେତେବେଳେ ଆସିଚୁ ତାକୁ ତୁ ପାଇବୁ ନିଶ୍ଚୟ । ଭରସା ରଖ ।

ମି. ପଟ୍ଟନାୟକ ବୁଝାଇଲେ ଆପଣଙ୍କ ଦେଶ କଥା ଅଲଗା- ଏ ଦେଶ କଥା ଅଲଗା । ପଚାଶ କି ଶହେ ଜଣକୁ ମର୍ଡର କରିଥିବା ଡକାୟତ କି ହତ୍ୟାକାରୀ ଯଦି ସମାଜକୁ ଫେରି ଆସେ ସମାଜ ତାକୁ କୋଲେଇ ନେବ, କିନ୍ତୁ ଜଣେ କୁମାରୀ ମା'ର ଏ ସମାଜରେ ସ୍ଥାନ ନାହିଁ । କାହିଁକି ପଚାର ନାହିଁ । ଏ ଭାରତଟି ! ବିଲାତ, ଆମେରିକା କି ସ୍ୱୀଡେନ ନୁହେଁ । ଚାଲ ଏଇଠୁ ଆଶ୍ରମ ଫେରିଯିବା ।

ବୁଦ୍ଧିମତୀ କରିନ୍ ଅନୁନୟ କଣ୍ଠରେ କହିଲା- ମିଃ ପଟ୍ଟନାୟକ । ମୁଁ ରିସର୍ଚ୍ଚ କରିବାକୁ ଆସିଚି । ସେଇ ଖିଅ ଧରି ଚାଲନ୍ତୁ ନା, ମିସେସ୍ ସୁଜାତାଙ୍କ ସହ ଦେଖା ତ ଅନ୍ତତଃ ହେଇଯିବ । ଶ୍ୱେତା ଏତେ ବାଟ ଆସିଛି କେବଳ ତା' ମା'କୁ ଦେଖିବ ବୋଲି । ଦୟାକରି ଚାଲନ୍ତୁ । ଆମେ ନିଜର ପରିଚୟ ଦେବୁ ନାହିଁ ।

ମି. ପଟ୍ଟନାୟକ ମଧ୍ୟବୟସ୍କ ଲୋକଟି ଉଦ୍ଦେଶ୍ୟରେ କହିଲେ- ମଉସା, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଏମାନେ ଯାହା କହନ୍ତୁ... ସେମାନେ ତ ବୁଝିବେ ନାହିଁ । ମୁଁ ନେଇ ଖାଲି ଦେଖେଇ ଦେଇ ଆସିବି । କହିବି ଯେ କ'ଣ ରିସର୍ଚ୍ଚ ପାଠ ପାଇଁ ଏମାନେ ଭାରତର ଗାଁ ଗଣ୍ଡା ବୁଲୁଛନ୍ତି । ବାସ୍ ।

ଅଣ୍ଟାରୁ ଗାମୁଛା ଖୋଲି ଶିରାଳ ହାତରେ ଆଖି ପୋଛୁ ପୋଛୁ ଲୋକଟି ବିକଳ କଣ୍ଠରେ କହିଲା- ପୁଅ, କେତେ କଷ୍ଟରେ ସେ ଝିଅକୁ ଯଶିପୁର ଗାଁରେ ବାହା ଦେଲି । ତା'ର ବି ପୁଅ, ଝିଅଟିଏ । ଖୁସିରେ ଅଛି ସେ । ଲୋକେ ଯଦି ଜାଣିବେ ଏ କାଳୀ ସାଇବାଣୀ ତା' ଝିଅ ବୋଲି ଜୋଇଁ ମୋ'ଝିଅକୁ ଘରୁ ବାହାର କରିଦବ ନିଶ୍ଚେ । ନାଁ ପକେଇ ଝିଅକୁ ମୁଁ ଘରେ ଜାଗା ଦେଲେ ମତେ ସମାଜ ନିଆଁ ପାଣି ବାସନ୍ଦ କରିବ । ତମକୁ ନେହୁରା ହଉଚି ପୁଅ ଏକଥା ଯେମିତି କେହି ଜାଣିବେନି । ଏକଥାକୁ ଛାତିତଳେ ଲୁଚେଇ ରଖିଚି ଅଠର ବର୍ଷ ଧରି ।

ମି. ପଟ୍ଟନାୟକ ବୋଧ ଦେଇ ଗାଡିରେ ବସିଲେ । ଡ୍ରାଇଭରକୁ କହିଲେ ଯଶିପୁର ରାସ୍ତାରେ ଗାଡି ଚଳାଇବାକୁ ।

ହଠାତ୍ ଗାଡିର ବାଁ ଦୁଆର ଖୋଲି ଶ୍ୱେତା ଓହ୍ଲାଇ ପଡିଲା । ସେଇ ମ୍ଳେଚ୍ଛ ଅପରିଷ୍କାର ଅଧାନଙ୍ଗଳା ମଣିଷଟାକୁ ଜାବୋଡି ଧରି ଇଉରେକା ଇଉରେକା ଢଙ୍ଗରେ ଚିତ୍କାର କଲା- ହିଅର ଇଜ୍ ମାଇଁ ରୁଟ୍, ହିଅର ଇଜ୍ ମାଇଁ ରୁଟ୍ । ମୋ ଚେର ତ ଏଇ, ମୂଳ ବି ଏଇ !!

ଆତଙ୍କିତ ଶଙ୍କିତ ଲୋକଟା ଗୋଟାପଣେ ଥରୁଥିଲା । ଶ୍ୱେତାର ଉତ୍ତାଳ ଉଚ୍ଚାରଣ ଇଂରାଜୀ ଥିଲେ ବି ଭଲ ଭାବେ ଓଡିଆ ବୁଝିପାରୁ ନଥିବା ଅଶିକ୍ଷିତ ଆଦିବାସୀ ଲୋକଟା ଠିକ୍ ଅନୁଭବ କରୁଥିଲା ଶ୍ୱେତା କହୁଚି 'ମୁଁ ମା'ର ସଂସାର ଉଜାଡିବାକୁ ଆସିନାହିଁ ଅଜା, ମୋ ଉଜୁଡା ମନଟାକୁ ସଜାଡିବା ପାଇଁ ମୋ' ଦେଶକୁ ଆସିଚି । ଏଇ ମାଟିରେ ମୋର ଚେର, ହେଲେ ମୁଁ ଅନ୍ୟ ପାଣି-ପବନରେ ବଢିଥିବା କଲମି ଗଛଟାଏ । ଚେରକୁ ନଷ୍ଟକରି ଦେବାର ତାକତ ମୋର ବା କାହିଁ ? ମୋ ଦେଶକୁ ଦେଖିଲି, ତମକୁ ଦେଖିଲି । ସେଇ ଢେର୍, ମା' ସୁଖରେ ଥାଉ । ତାକୁ ଦେଖିବା ଆଉ ମୋର ପ୍ରୟୋଜନ ନାହିଁ ।

ହତଭମ୍ବ ଲୋକଟାର ଆଖି ସାମ୍ନାରେ ଶ୍ୱେତା ପାଗଳୀ ଭଳି ମୁଠା ମୁଠା ମାଟି ଆଣି ଦେହସାରା ବୋଳି ଚାଲିଗଲା ।



# ଝଡ଼

## ଚନ୍ଦ୍ରଶେଖର ଦାସବର୍ମା

ବେଳେବେଳେ ସ୍ମୃତିର ଝରକା ସବୁ ଧଡ଼ଧଡ଼ କରି ଖୋଲିଯାଆନ୍ତି । ଗଭୀର ବର୍ଷା ରାତିରେ ଶୀତର ସକାଳରେ ରୌଦ୍ରର ଦ୍ୱିପ୍ରହରରେ ଏକୁଟିଆ ଥିଲାବେଳେ ମହେଶ, ମମତାର ମନ ଭିତରକୁ ଧସେଇ ପଶିଆସେ । କିଛି ମୁହୂର୍ତ୍ତ ପର୍ଯ୍ୟନ୍ତ ମମତା ଚହଲିଯାଏ । ତା'ପରେ ନିଜର ସମ୍ବିତ୍ ଫେରିପାଏ । ମହେଶ ଘରୁ ଯିବାର ଅନେକ ବର୍ଷ ହୋଇଗଲାଣି । ପୁରୁଣା ସ୍ମୃତିମାନେ ତାକୁ ବିଚଳିତ କରନ୍ତି, କଲବଲ କରନ୍ତି । କେବଳ ପିଲାମାନଙ୍କ ମୁହଁକୁ ଚାହିଁ ଅତୀତକୁ ଭୁଲିବାକୁ ଚେଷ୍ଟା କରିଛି । ସେମାନେ ହିଁ ତା'ର ସାହା ଭରସା । ତଥାପି ରାତିରେ ଏକୁଟିଆ ଶୋଇଲାବେଳେ ମମତାର ମନେପଡ଼ିଯାଏ ସେଇ କାଳ ରାତିର କଥା ।

ସେତେବେଳେ ମମତାର ବାହାଘର ମାତ୍ର ପାଞ୍ଚ ବର୍ଷ ହୋଇଥାଏ । ବୈବାହିକ ଜୀବନରେ ମହେଶ ତାକୁ ଅଶେଷ ତୃପ୍ତି ଏବଂ ଆନନ୍ଦ ଦେଇଥିଲା । ପୁରସ୍କାର ସ୍ୱରୂପ ଭେଟି ଦେଇଥିଲେ ଦୁଇଟି ଅମୂଲ୍ୟ ରତ୍ନ; ଅଂଶୁମାନ ଏବଂ ଅନାମିକା । ପିଲା ଦୁଇଟା ଦେଖିବାକୁ ଅବିକଳ ବାପାଙ୍କ ପରି । ଖୁସିରେ ଆନନ୍ଦରେ ଘର ଉଛୁଳି ପଡୁଥିବାବେଳେ ଶ୍ୟାମଳୀ ଆସି ପହଞ୍ଚିଯାଏ ଦୁଇଜଣଙ୍କ ମଝିରେ । ଶ୍ୟାମଳୀ ଅଫିସ୍‌ରେ ମହେଶର ସହକର୍ମୀ । ମାତ୍ର ଦୁଇବର୍ଷର ସମ୍ପର୍କ ସେମାନଙ୍କର । କିନ୍ତୁ ଶ୍ୟାମଳୀର ରୂପ ଚାକଚକ୍ୟରେ ବିମୋହିତ ହୋଇ ମହେଶ ଭୁଲିଯାଏ ନିଜକୁ, ନିଜ ପରିସରକୁ, ନିଜ ରୂପବତୀ ପତ୍ନୀ ମମତାକୁ । ଏ ବିଷୟରେ ବେଶ୍ କିଛିଦିନ ଶୁଣିଲା ପରେ ଦିନେ ରାତିରେ ମମତା ପଚାରିଦେଲା ମହେଶକୁ...

"କ'ଣ ମୁଁ ଯାହା ଶୁଣୁଛି ତା' କ'ଣ ସତ ?"

"କ'ଣ ତୁ ଶ୍ୟାମଳୀ କଥା କହୁଛୁ ତ.... ହଁ ଶ୍ୟାମଳୀ ସାଥିରେ ମୋର ସମ୍ପର୍କ ଅତି ନିବିଡ଼ ।"

"କ'ଣ ସ୍ୱାମୀ ସ୍ତ୍ରୀଠାରୁ ମଧ୍ୟ ବଡ଼... ?" ମମତା ପଚାରିଲା ।

"ହୁଁ, ମୁଁ ତାକୁ କଥା ଦେଇଛି, ଆମେ ଦୁହେଁ ରେଜିଷ୍ଟ୍ରୀ ମ୍ୟାରେଜ୍ କରିବୁ । କିନ୍ତୁ ତୁ ଛାଡ଼ପତ୍ର କାଗଜ ଦସ୍ତଖତ କରିବା ପରେ ।"

ହଠାତ୍ ଘର ଭିତରଟାରେ ଅଚାନକ ବିସ୍ଫୋରଣ । ମମତା କଳ୍ପନା କରି ନଥିଲା ଏଭଳିଆ କଥାଟାଏ ଶୁଣିବ ବୋଲି ।

"ଏଥିରେ ତମର ସ୍ତ୍ରୀ, ପିଲାଙ୍କ ଜୀବନ ଜଡ଼ିତ । ଟିକେ ଭାବି ଚିନ୍ତି କଥାବାର୍ତ୍ତା କର । ସମାଜ ପ୍ରତି ତମର କ'ଣ କିଛି ଡର ଭୟ ନାହିଁ ।"

"କି ସମାଜ ଭୟ ମତେ ଦେଖାଉଛୁ । କ'ଣ ବେଦୀରେ ହାତ ଥୋଇ ବିଭା ହୋଇଗଲୁ ବୋଲି ? ମନର ବନ୍ଧନ ନ ହେଲେ ସେ ବିବାହର କୌଣସି ମୂଲ୍ୟ ରହେନା ।"

"ମୁଁ କସ୍ମିନ୍‌କାଳେ ସେ କାଗଜରେ ଦସ୍ତଖତ କରିବି ନାହିଁ ତମେ ଯାହା ଇଚ୍ଛା କରିପାର" – ମମତାର କଣ୍ଠରେ ଦୃଢ଼ତା ।

"ତୁ ବାହାରିଯା' ଏ ଘରୁ ଏଇ ମୁହୂର୍ତ୍ତରେ ।"

"ସେ ଭୁଲ୍ ମଧ୍ୟ ମୁଁ କରିବି ନାହିଁ କାରଣ ଏଠି ତମର ଯେତିକି ଅଧିକାର ମୋର ମଧ୍ୟ ସେତିକି ଅଧିକାର ।"

"ତେବେ ତୁ ମର ଏଇଠି । ମୁଁ ଯାଉଛି" – ସେଇ ରାତି ଅଧରେ ମହେଶ ତାର କିଛି ଜିନିଷପତ୍ର ଧରି ବାହାରି ଯାଇଥିଲା– ଆଉ ଆସି ନାହିଁ ।

"ଲୋକଟା ବୋଧେ ସେ ନାଗୁଣୀ ଜାଲରେ ଫଶି ଯାଇଛି ।'

ସେ ଚାଲିଗଲା ପରେ ହଠାତ୍ ସେ ଅନୁଭବ କଲା ନିଃସଙ୍ଗତା– ଘର ଭିତରଟାର ମଣିଷଟା ଘରୁ ବାହାରି ଚାଲିଗଲା । କ'ଣ ତା'ର ଅପରାଧ ? ଦିନରାତି ଧରି ତାକୁ ଅପେକ୍ଷା କରି ରହିବା କ'ଣ ତା'ର ଅପରାଧ ? ଦେହ ମୁଣ୍ଡ ଖରାପ ହେଲେ ରାତି ରାତି ଜଗି ବସି ସେବା କରିବା କ'ଣ ଅପରାଧ ? ଭଲରେ ମନ୍ଦରେ ପିଲାଙ୍କ ପାଇଁ କ'ଣ ଅଳି କରିବା ଅପରାଧ ? କ'ଣ ତା'ର ଭୁଲ୍ ନିଜେ ବି ବୁଝିପାରିଲାନି ମମତା ।

ବେଶ୍ କିଛିଦିନ ଲାଗିଥିଲା ମମତାକୁ ପରିସ୍ଥିତିକୁ ସାମ୍ନା କରିବାକୁ– ବୟସ ତା'ର କିଛି ହୋଇ ନଥିଲା– ତିରିଶ ବର୍ଷର ଯୁବତୀ– ଦୁଇ ଦୁଇଟା କୁନି ଛୁଆ– ଏଡ଼େ ବଡ଼ ଦୁନିଆ– ଏତେ ଲୋକ, ଏତେ ଗହଳି, ଏତେ ସମସ୍ୟା । ଏପରି ଅବସ୍ଥାରେ କେମିତି ସେ ହତାଶାକୁ ସାମ୍ନା କରିବ ।

ଅରକ୍ଷିତକୁ ଦଇବା ସାହା ଭଳି ନିରଞ୍ଜନ ବାବୁ ଦିନେ ଆସିଥିଲେ ମମତା ଘରକୁ । ନିରଞ୍ଜନ ବାବୁ ତାଙ୍କ ସ୍ୱାମୀ ମହେଶର ଉପରିସ୍ଥ ଅଫିସର । ସେ ଘଟଣା ନିମନ୍ତେ ଦୁଃଖ ପ୍ରକାଶ କଲେ ଏବଂ ମମତାକୁ ସବୁ ପ୍ରକାର ସାହାଯ୍ୟ ଯୋଗାଇ ଦେବାର ପ୍ରତିଶ୍ରୁତି ଦେଲେ । କହିଲେ ଜୀବନରେ ବଂଚିବାକୁ ହେଲେ ସଂଗ୍ରାମ ଦରକାର । ଅସୀମ ଧୈର୍ଯ୍ୟ ଓ ସାହସ ରଖନ୍ତୁ । ପିଲା ଦୁଇଟା ଯଦି ମଣିଷ ହୋଇଯିବେ ତେବେ ଆପଣଙ୍କ ଦୁଃଖ ଦୂର ହୋଇଯିବ । ଆଉ ଏଥିପାଇଁ ଯାହା ସାହାଯ୍ୟ ଦରକାର ମୁଁ ଏବଂ ମୋର ଅଫିସ୍ ଯୋଗାଇ ଦେବ ।

ଅଥଳ ସାଗରରେ ବୁଡ଼ି ଗଲାବେଳେ କୂଳରେ ଲାଗିଗଲା ପରି ଲାଗିଲା ମମତାକୁ । ନିଜ ବାପା ମା'ଙ୍କ ପାଖରେ ଥିଲାବେଳେ ସିଲାଇ ମେସିନ୍‌ଟିଏ କିଣି ଦେଇଥିଲେ । ବାପା ଏବଂ ମା ତାକୁ ସିଲାଇ ଶିଖାଇ ଦେଇଥିଲେ । ବିଭିନ୍ନ ପ୍ରକାର ବୁଣାକୁଶଳର କାମ ମଧ୍ୟ ଶିଖିଥିଲା ସିଏ । ଏହି ଅଭିଜ୍ଞତାକୁ କାର୍ଯ୍ୟରେ ଲଗାଇବାକୁ ଚେଷ୍ଟା କଲା । ଘରେ ସିଲାଇ ମେସିନ୍‌ଟା ପକାଇଲା ଏବଂ ପାଖ ପଡ଼ୋଶୀଙ୍କର ଘରକୁ ଯାଇ କାମ ଆଣିଲା । ଘରେ ଦୂଇ ଦୁଇଟା ଛୋଟ ଛୁଆ । ଏଣୁ ଘରୁ ବାହାରକୁ ନ ଯାଇ ଘର ଭିତରେ ହିଁ ଦୋକାନଟିଏ କଲା । ପ୍ରଥମ କିଛିଦିନ କାମ କଲାପରେ ଆଉ ଜଣେ ସହକାରୀ ରଖିଲା । ଧୀରେ ଧୀରେ କାମ ବଢ଼ିଲା । ତା' ସଂଗେ ସଂଗେ ଦାୟିତ୍ୱ ମଧ୍ୟ । ପିଲା ଦୁଇଟା ବଡ଼ ହେଲେ । ସ୍କୁଲ୍ ଗଲେ । ମମତାର ବ୍ୟବସାୟ ମଧ୍ୟ ବଢ଼ିଲା । ନିରଞ୍ଜନ ବାବୁଙ୍କ ସହାୟତାରେ ଜିଲ୍ଲା ଶିଳ୍ପ କେନ୍ଦ୍ରକୁ ଯାଇ କିଛି ଲୋନ୍ ଆଣିଲା ଆଉ ଚାରୋଟି ମେସିନ୍ ପକାଇଲା, ସେଇ ଅନୁସାରେ ଲୋକ ମଧ୍ୟ ରଖିଲା । ବର୍ତ୍ତମାନ ତା'ର ଅନୁଷ୍ଠାନ ଏକ ଅଗ୍ରଣୀ ଅନୁଷ୍ଠାନ ରୂପେ ପରିଗଣିତ ହେଲାଣି ।

ନିରଞ୍ଜନ ବାବୁ ବେଳେବେଳେ ଆସନ୍ତି ସାହାଯ୍ୟ ସହାନୁଭୂତି ଦେଖାନ୍ତି । କୁହନ୍ତି ଆଗକୁ ଚାଲ ପଛକୁ ଅନାଇଲେ କଷ୍ଟ ପାଇବ । ମମତା କୁହେ, 'ସାର୍ ଆପଣଙ୍କ ସାହାଯ୍ୟ ଭୁଲିବାର ନୁହେଁ, ମୁଁ କେମିତି ଏ ଋଣ ଶୁଝିବି ଜାଣି ପାରୁନାହିଁ ।' ନିରଞ୍ଜନ ବାବୁ କୁହନ୍ତି, "ଆମେ ସବୁ

ମାୟାରେ ବନ୍ଧା । ପରସ୍ପର ପରସ୍ପରକୁ ସାହାଯ୍ୟ ନ କଲେ କେମିତି ହେବ । ହଁ, ତମକୁ କହିବାକୁ ଆସିଥିଲି ମହେଶ ଆଉ ଏଠି ନାହିଁ । ସେ ଝିଅଟାକୁ ନେଇ କଲିକତା ପଳାଇଛି ।" ମମତା ଶୁଣିଲା, କିଛି ଉତ୍ତର ଦେଲା ନାହିଁ ।

ସମୟ ତା'ର ସ୍ୱାଭାବିକ ଗତିରେ ଗଡ଼ି ଚାଲିଛି । ବୟସ ବଢ଼ିବା ସଂଗେ ସଂଗେ ମମତାର ଦାୟିତ୍ୱବୋଧ ମଧ୍ୟ ବଢ଼ିଛି । ପୁଅ ଅଂଶୁମାନ ବର୍ତ୍ତମାନ ଇଂଜିନିୟରିଂ କଲେଜ, ଝିଅ ଅନାମିକା ବି.ଏସ୍.ସି. ପଢୁଛି । ଅଂଶୁମାନ କଲେଜରେ ବୃତ୍ତି ମଧ୍ୟ ପାଇଛି । ମମତା ସବୁ କିଛି ସେଇ ନାରାୟଣଙ୍କ ଉପରେ ଛାଡ଼ି ଦେଇଛି । ଅନାମିକା ବେଳେବେଳେ ସମୟ ପାଇଲେ ସିଲେଇରେ ମଧ୍ୟ ସାହାଯ୍ୟ କରୁଛି । ଏବେ ନିକଟରେ ସିଲାଇ ସାଙ୍ଗକୁ ମମତା ସିଲାଇ ଶିକ୍ଷାକେନ୍ଦ୍ରଟିଏ ମଧ୍ୟ ଖୋଲିଛି । ସେଥିପାଇଁ ଆଉ ଗୋଟିଏ ଘର ମଧ୍ୟ ତିଆରି କରିଛି । କିଛି ଝିଅ ସିଲାଇ ଟ୍ରେନିଂ ନେବା ପାଇଁ ଆସୁଛନ୍ତି । ଦିନ ଥିଲା ଘରେ ଦୁଇ ଓଳି ସେମାନେ ଖାଇବାକୁ ପାଉ ନଥିଲେ । ପରିସ୍ଥିତି ବଦଳି ଯାଇଛି । ପୁଅ ଝିଅଙ୍କୁ ସେ ବାପାମା'ଙ୍କ ସ୍ନେହ ଦେଇ ପାରିଛି । ବେଳେବେଳେ ପୁଅ ଅଂଶୁମାନ ପଚାରିଦିଏ– "ମାମା ତମର ତ କିଛି ଦୋଷ ନାହିଁ, ବାପା ଛାଡ଼ି ଚାଲିଗଲେ କାହିଁକି ?" ମମତା ଉତ୍ତର ଦିଏ – "ସେସବୁ ସମୟ ହିଁ କହିବ । ତୁ ବର୍ତ୍ତମାନ କେମିତି ପାଶ୍ କରି ଚାକିରି କରିବୁ ସେଇୟା ହିଁ ମୋର ଚିନ୍ତା ।" ଅଂଶୁମାନ ଉତ୍ତର ଦିଏ ନାହିଁ କାରଣ ସିଏ ଜାଣେ ଏ ବିଷୟରେ ବେଶୀ କଥା ହେଲେ ମାମା ତା'ର ଦୁଃଖ ପାଇବ ।

ବେଳେବେଳେ କାମରେ ଥକି ଗଲା ପରେ ମନ ଦେହ ଉଭୟ ବିଶ୍ରାମ ଚାହାନ୍ତି । କେତେବେଳେ ମମତାର ସେଇ ପୂର୍ବଦିନର ସ୍ମୃତିମାନ ସାମ୍ନାକୁ ଆସନ୍ତି । ବିବାହର ପ୍ରଥମ କିଛିବର୍ଷ ଥିଲା ଅନେକ ଆଶାର ବର୍ଷ । ମହେଶ ତାଙ୍କ କଥା କୁହନ୍ତି, ତାଙ୍କ କମ୍ପାନୀ କଥା କୁହନ୍ତି ଆଉ କୁହନ୍ତି ତାଙ୍କର ଚାକିରି କଥା । ସେଲ୍ସ୍ ଏକ୍‌ଜିକ୍ୟୁଟିଭ୍ ହୋଇଥିବାରୁ ତାଙ୍କୁ ଅନେକ ସମୟରେ ବାହାରକୁ ଯିବାକୁ ପଡୁ ଥିବାରୁ ସେଇ ସମୟରେ ମମତା ଏକୁଟିଆ ହେଉଥିବାରୁ ମନ ଦୁଃଖ କରନ୍ତି ଆଉ କୁହନ୍ତି– "ମୋର ପ୍ରମୋଶନ ହୋଇଗଲେ ମତେ ଆଉ ବାହାରକୁ ଯିବାକୁ ହେବନି, ଖାଲି ତମରି ପାଖରେ ରହିବି ଅଫିସ୍ ଯିବା ସମୟ ଛଡ଼ା ।" ମମତା ହସି ଦିଏ... "ହଉ ଭଗବାନଙ୍କୁ ଡାକ ଜଲ୍‌ଦି ତମର ପ୍ରମୋସନ ହୋଇଯାଉ ।" ଓଃ କୁଆଡ଼େ ଗଲା ସେ ଦିନଗୁଡ଼ାକ । ମମତା ହଠାତ୍ ତରତର ହୋଇଉଠେ... ଅନାମିକା କଲେଜରୁ ଆସିବ ତା' ପାଇଁ ଜଳଖିଆ ତିଆରି କରିବ । ସବୁ ଭାବନାର ଅନ୍ତ ହୋଇଯାଏ ।

ସବୁକିଛି ସୁରୁଖୁରୁରେ ଚାଲିଥିଲାବେଳେ ଦିନେ ହଠାତ୍ ସକାଳୁ ସକାଳୁ ନିରଞ୍ଜନ ବାବୁ ଆସି ମମତାର ଘରେ ପହଞ୍ଚିଲେ । ମମତା ସେତେବେଳକୁ ଗାଧୋଇ ସାରି ମନ୍ଦିର ବାହାରିଥାଏ । ଘର ଭିତରେ 'ଅନାମିକା' ଖାଲି ଏପଟ ସେପଟ ହେଉଥାଏ । ନିରଞ୍ଜନ ବାବୁ ୟା ଭିତରେ ମମତାର ଜଣେ ଶୁଭଚିନ୍ତକ ପାଲଟି ଯାଇଥାନ୍ତି । ଏଣୁ ମମତାଙ୍କ ଘରେ ତାଙ୍କର ପ୍ରବେଶ ପାଇଁ ଦ୍ୱାର ସବୁବେଳେ ଉନ୍ମୁକ୍ତ ଥାଏ । ମମତା ହଠାତ୍ ଦେଖି ପକାଇ– "ସାର୍ ! ଆପଣ ସକାଳୁ ସକାଳୁ.... । ସାର୍ ଟିକିଏ ବସନ୍ତୁ, ମୁଁ ଟିକିଏ ପୂଜାଟା ସାରିଦେଇ ଆସେ ।" ନିରଞ୍ଜନ ବାବୁ କହିଲେ ଆଜି ଗୋଟାଏ ଶୁଭବେଳା କାରଣ ମୁଁ ତମ ଘରକୁ ଆସିଛି ଆଉ ତମେ ମନ୍ଦିର ବାହାରିଛ । ଏହା କହି ପକେଟ୍‌ରୁ ଦୁଇ ତିନୋଟି ଫଟୋ ଦେଖାଇଲେ । ସାର ଏସବୁ.. ? ମୁଁ କିଛି ହଠାତ୍ ବୁଝିପାରିଲିନି । ନିରଞ୍ଜନ ବାବୁ ହସି କହିଲେ– "ଅନାମିକାର ବୟସ କେତେ ହେଲାଣି ?" – "ସାର୍ ଏଇ ତ କୋଡ଼ିଏ ଚାଲିଲା । ଆଉ ତମେ କେତେ ବର୍ଷରେ ବାହା ହୋଇଥିଲ ? "ସାର୍...

ଅଠର ।" ମମତା ନ ଭାବି ଉତ୍ତରାଟାଏ ଦେଇଦେଲା । ହଉ, ଏ ହେଲା ଫଟୋ ଏବଂ ଏ ହେଲା ପୁଅର ବାୟୋଡାଟା । ତମେ ଦେଖ ଚିନ୍ତାକର ମତେ କହିବ– ମୁଁ ଚାଲିଲି । ଖାଲି ଏତକ କହିଲି– ଝିଅ ବର୍ତ୍ତମାନ ବିବାହଯୋଗ୍ୟା ହେଲାଣି– ଏଣୁ ଠିକ୍ ସମୟରେ ଠିକ୍ କାମ କରିବାକୁ ପଡ଼ିବ । ନିରଞ୍ଜନ ବାବୁ ଚାଲିଗଲେ ।

ହଠାତ୍ ମମତା କିଛି ସମୟ ପାଇଁ ଚୁପ୍ ହୋଇ ରହିଗଲା । ତା'ପରେ ନିଜକୁ ଭାବନା ରାଜ୍ୟରୁ ବାହାର କରିଆଣି ମନ୍ଦିର ଗଲା ଏବଂ ମନ୍ଦିରରୁ ଫେରି ସେ ଫଟୋ ଏବଂ ବାୟୋଡାଟାଗୁଡ଼ାକ ଏପଟ ସେପଟ କରି ବସି ଦେଖିଲା । ପ୍ରସ୍ତାବଗୁଡ଼ାକ ବେଶ୍ ଉତ୍ସାହଜନକ ଥିଲା । କିଏ ଇଞ୍ଜିନିୟର ତ କିଏ ଡାକ୍ତର । ଘଟଣାଟା କିଛି ମମତାକୁ ଖୁବ୍ ହରଡ଼ଘଣାରେ ପକାଇଦେଲା । 'ଅନାମିକା' ବଗିଚାରେ ପିଲାମାନଙ୍କ ସାଙ୍ଗରେ ଖେଳୁଥିଲା– ଏବେ ମଧ୍ୟ ଅନାମିକା ତା' ସାଙ୍ଗରେ ପିଲାଙ୍କ ପରି ବ୍ୟବହାର କରେ– ମାମି ମାମି ବୋଲି ଡାକି ପଛରେ ଗୋଡ଼ାଏ । କଲେଜରୁ ଫେରି ମାମାର କାନି ଛାଡ଼େନି । ସିଏ ପୁଣି ବାହାହେବ... ଅବଶ୍ୟ ସେମିତି ଦେଖିଲେ ବୟସ ବଢ଼ିବା ସଂଗେ ସଂଗେ ଝିଅମାନଙ୍କର ସୌନ୍ଦର୍ଯ୍ୟ ଉପରେ ପ୍ରଭାବ ପଡ଼େ– ହୁଏତ ଆଉ ଦୁଇ ତିନିବର୍ଷ ପରେ ଅନାମିକାର ଚେହେରାରେ କିଛି ପରିବର୍ତ୍ତନ ଘଟିପାରେ ।

ମମତା ନିଜ ବାହାଘର କଥା ମନେପକାଇଲା– ମହେଶ ତାକୁ ପ୍ରଥମ ଦେଖାରେ ହିଁ ପସନ୍ଦ କରିଥିଲେ । 'କମ୍ପାନୀ ଏକ୍‌ଜିକ୍ୟୁଟିଭ୍' ଏଣୁ ମୋ ମା'ଙ୍କର ନା କରିବାର ପ୍ରଶ୍ନ ନଥିଲା– ସେତେବେଳେ ମମତା ବି.ଏ.ର ଛାତ୍ରୀ । ହଠାତ୍ ପଢ଼ାରେ ଡୋରି ବନ୍ଧା ହୋଇଯାଇଥିଲା । କିଏ ଜାଣେ ତା ଭାଗ୍ୟରେ କ'ଣ ଲେଖା ଅଛି ? ନିରଞ୍ଜନବାବୁ କୁହନ୍ତି ଏସବୁ ଯୋଗ ବିଯୋଗ– ସମୟ ଆସିଲେ ବେଳେବେଳେ ତମେ ଯାହା ଭାବୁ ନଥିବ ତାହା ଘଟିଯିବ– ତେଣୁ କିଏ କହିବ ଅନାମିକାର ବାହାଘର ହଠାତ୍ ନହେବ ବୋଲି । ସତରେ ଅନାମିକାର ବାହାଘର କଥା ତ ଭାବିଲା ମାତ୍ରେ ମମତାର ଆଖିରେ ଲୁହ ଆସିଗଲା । ତେବେ ଏ ବିଷୟରେ ସମୟ ଦେଖି ସେ ଚିନ୍ତା କରିବ ।

ସେଦିନ ଦିନସାରା ମମତା ଚିନ୍ତାମଗ୍ନ ରହିଲା । ଛୁଟିଦିନ ଥିବାରୁ ବିଶେଷ କାମ ନଥାଏ । ଅନାମିକା ତା'ର ମନର ଅବସ୍ଥାକୁ ଲକ୍ଷ୍ୟକରି ପଚାରିଲା, "ମାମା, ତମର ଆଜି କ'ଣ ହୋଇଛି କି ?" ମମତା କହିଲା- "କାହିଁ ନା ତ ?"

କିନ୍ତୁ ତମର ମନ ଯେ ଭାରାକ୍ରାନ୍ତ ଏକଥା ଯେ କେହି ତମକୁ ଦେଖିଲେ ଜାଣିଯିବ– ମୁଁ ଦେଖୁଛି ଆଜି ତମେ କେମିତି କ୍ଲାନ୍ତ ଜଣାପଡୁଛ– ଖୁବ୍ ଶୀଘ୍ର ଥକି ଗଲାପରି ଜଣାପଡୁଛ– ସତେ ଯେମିତି ତମ ମୁଣ୍ଡ ଉପରେ ଶହେ କିଲୋ ପଥର କିଏ ନଦି ଦେଇଛି । କ'ଣ ହୋଇଛି ତମର ?

ନାହିଁ ଲୋ ମା... ମୁଁ ଏଇ ଘର କଥା ଚିନ୍ତା କରୁଥିଲି ।

"କାହିଁ ଘରର ତ କିଛି ଅସୁବିଧା ମୁଁ ଦେଖୁନାହିଁ ।"

"ନାଇଁ ଯେ, ଏଇ ଦୁଇବର୍ଷ ପରେ ଅଂଶୁର ପାଠ ସରିଯିବ... ସେ ଚାକିରି କରିବ...ପୁଣି ତା' ପାଇଁ ବୋହୂ ଖୋଜା ହେବ– ଏ ଘରକୁ ଝିଅଟିଏ ଆସିବ...ଏଡ଼େ ଛୋଟ ଘର ?"

ଓଃ ଭାଇ ତ ଚାକିରି କରିବ ଆଉ ସେଇ ପଇସାରେ ଆମେ ଉପରେ ଆଉ ଗୋଟେ ଘର କରିବାନି ?

"ତାପରେ ପୁଣି ତୋ ବାହାଘର ।"

"ଓ କଥାଟା ତା'ହେଲେ ଏଇଠି... ହଁ ମୁଁ କହିଦେଉଛି ମାମା ଏମ୍.ଏ. ପାଶ୍ କଲା ପୂର୍ବରୁ ମୋ ବାହାଘର କଥା ଉଠେଇବନି... ।"

ସେ କଥାଟା ସତ ଯେ ଆଗରୁ ବନ୍ଦୋବସ୍ତ ନ କଲେ... ।

ଅନାମିକା ବିରକ୍ତ ହୋଇ ମମତାଙ୍କ ପାଖ ଛାଡ଼ି ପଳାଇଲା ।

ମମତା ମନକୁ ମନ କହିଲା ପାଗଳୀଟା ।

ମମତା ଅନାମିକାର ବାହାଘର ଭାବିଲା ମାତ୍ରେ ମହେଶର ସ୍ମୃତି ମନକୁ ମନ ହୃଦୟ ଭିତରକୁ ଧସେଇ ପଶିଆସେ ଅଦିନ ଝଡ଼ ଭଳି । ଯେଉଁମାନେ ପ୍ରସ୍ତାବ ନେଇ ଆସିବେ ସେମାନେ ପ୍ରଥମେ ପିତୃ ପରିଚୟ ଖୋଜିବେ- ଭଲ ଘର ନଥିଲେ ଭଲ ବର ମିଳିବ ନାହିଁ... କ'ଣ ବା ଉତ୍ତର ଦେବ ସିଏ... ସାମାନ୍ୟ କିଛି ଦୋଷ ନଥାଇ ମଧ୍ୟ ସେ ଆଜି ଦୋଷୀ... । ଅନେକ ଟିପ୍ପଣୀ ସେ ଶୁଣିଛି ଅତୀତରେ । ସେସବୁ ସମୟର ସାଙ୍ଗରେ ଲୁଚିଛପି ଗଲାଣି । ନିରଞ୍ଜନବାବୁ ଆଶ୍ୱାସନା ଦେଇଛନ୍ତି... କହିଛନ୍ତି ସେ ସବୁ ବିଷୟରେ ତା'ର ମୁଣ୍ଡ ଖେଳାଇବା ଦରକାର ନାହିଁ- ପୁଅ ବାଲାଙ୍କର ସୁନ୍ଦର ପାଠୁଆ ଝିଅ ଦରକାର ଆଉ କିଛି ନାହିଁ । ଏପରିକି ଯୌତୁକ ପକ୍ଷରେ ମଧ୍ୟ ସେମାନେ ନାହାନ୍ତି । ଯୌତୁକ କଥା ଉଠିଲେ ହିଁ ମମତା ମନରେ ଶଙ୍କା ଜାଗେ । ସେ ଜାଣିଛି ଏହି ଯୌତୁକ ନେଇ ନାରୀଟିଏ ଯାବତ ପ୍ରକାର ଯନ୍ତ୍ରଣାର ସମ୍ମୁଖୀନ ହୁଏ– ଶାଶୂଘରେ ନାନା କଥା- ନାନା ନିର୍ଯାତନାର ଶିକାର ହୁଏ ଏବଂ ଫଳରେ ବୋହୂଟି ଆତ୍ମହତ୍ୟା କିମ୍ବା ଅନ୍ୟ କିଛି ଦୁର୍ଘଟଣାର ସମ୍ମୁଖୀନ ହେବାର ଅନେକ ନଜିର ଅଛି ।

ନିରଞ୍ଜନ ବାବୁ ଖବର ଦେଇଛନ୍ତି– ଆଉ ତିନିଦିନ ପରେ ସେମାନେ ଆସିବେ- ପୁଅର ବାପା ଜଣେ ବଡ଼ ଅଫିସର । ପୁଅ ଇଞ୍ଜିନିୟର । ଟାଟା କମ୍ପାନୀରେ ଚାକିରି କରିଛି । ଆସନ୍ତା ବର୍ଷ ବିଦେଶ ଯିବ । ଏଣୁ ତା'ର ବାପା ମାଆ ଠିକ୍ କରିଛନ୍ତି ଏବର୍ଷ ବାହାଘର କରିଦେଲେ ସେମାନେ ଉଭୟ ସ୍ୱାମୀ-ସ୍ତ୍ରୀ ଆସନ୍ତା ବର୍ଷ ବିଦେଶ ଯିବେ । ପ୍ରସ୍ତାବଟା ମନ୍ଦ ନୁହେଁ– ହେଲେ ତାଙ୍କର ଝିଅ ସେମାନଙ୍କୁ ପସନ୍ଦ ହେଲେ ତ ? ଅବଶ୍ୟ ଅନାମିକାର ଫଟୋ ଦେଖି ସେମାନେ ପସନ୍ଦ କରିଛନ୍ତି କିନ୍ତୁ ଫଟୋ ଦେଖିଲେ ସବୁ କିଛି ଜାଣି ହେବ ନାହିଁ । ସେମାନଙ୍କର ପସନ୍ଦ ହେଲେ ସେମାନେ ପୁଅକୁ ଖବର ଦେବେ– ପୁଅ ଦେଖିଲା ପରେ ଯାହା କିଛି ନିଷ୍ପତ୍ତି । ମମତା ଭାବିଲା ଝିଅଟିଏ ଥିଲେ ପ୍ରସ୍ତାବ ଆସିବ– କିନ୍ତୁ ହଠାତ୍ କରି ଝିଅ ବାହାଘର କଥା ଭାବିଲା ମାତ୍ରେ ତା'ର ମୁଣ୍ଡ ଝିମ୍‌ଝିମ୍ ହୋଇଗଲା ।

ଅନେକ ଦିନ ପରେ ମମତା ଅସଜଡ଼ା ଘରଟାକୁ ସଜାଡ଼ି ଦେବାରେ ଲାଗି ପଡ଼ିଛି । ଘରେ ନୂଆ ନୂଆ ପର୍ଦ୍ଦା ସବୁ କିଣା ହୋଇଛି । ଡ୍ରଇଂ ରୁମ୍‌ରେ ପଡ଼ିଥିବା ସୋଫାସେଟ୍‌କୁ ମଧ୍ୟ ବଦଳାଇ ଦିଆଯାଇଛି । ଟି ପୟ ଉପରେ ଫୁଲଦାନୀକୁ ଫୁଲରେ ସଜା ଯାଇଛି । କାନ୍ଥରେ କିଛି ୱାଲ୍ ପେଣ୍ଟିଙ୍ଗ୍ ମଧ୍ୟ କିଣା ଯାଇ ଲଗା ଯାଇଛି- ଯେତେହେଲେ ଭାବି ସମୁଦି ଜଣେ ଅଫିସର- ପୁଅ ମଧ୍ୟ ଇଞ୍ଜିନିୟର- ପ୍ରଥମରୁ ସେମାନେ ଘର ଦେଖିଲେ ଅନ୍ତତଃ ତା'ର ରୁଚି ସଂପର୍କରେ କିଛି ଧାରଣା କରିପାରିବେ । ଗୋଟିଏ ବୋଲି ଝିଅ ତାର । କୌଣସି ଦିନ ତାକୁ ଅଭାବ ଅସୁବିଧାର ସମ୍ମୁଖୀନ ହେବାକୁ ଦେଇନାହିଁ ସେ– ବାପା ମାଆ ଉଭୟଙ୍କ ସ୍ନେହ ପାଇ ଅନାମକା ନିଜକୁ ଖୁବ୍ ଭାଗ୍ୟବାନ ମନେ କରିଛି ।

ଏତେ ସବୁ ଖୁସିର ଆୟୋଜନ ଭିତରେ ମମତା ଲକ୍ଷ୍ୟ କଲା ଯେପରି ଅନାମିକା ମନରେ ଖୁସିର ସାମାନ୍ୟ ସ୍ପର୍ଶ ମଧ୍ୟ ନାହିଁ । ଆଉ ମାତ୍ର ଅଠଚାଳିଶ ଘଣ୍ଟା ରହିଲା । ମଝିରେ ଦୁଇଟା

ରାତି । ତୃତୀୟ ଦିନ ସନ୍ଧ୍ୟାବେଳେ ସେମାନେ ଆସିବେ । ଝିଅଟା ତାର ହସ ଖୁସିରେ ରହିବା କଥା– କିନ୍ତୁ ମମତା ଦେଖିଲା ଅନାମିକାର ମନଟା ଏସବୁ କୌଣସି କାମରେ ଲାଗୁ ନାହିଁ । ସେ ଖାଲି କହୁଛି –"ଏତେ ତରତର କାହିଁକି ମାମା, ତମ ଝିଅ କ'ଣ ତମକୁ ଗନ୍ଧାଉଛି ?"

ମମତା ଉତ୍ତର ଦେଲା– "ତୁ କ'ଣ ଭାବୁଛୁ ଏକାଥରକେ ସବୁ ଫାଇନାଲ୍ ହୋଇଯିବ- ତୋତେ ସେମାନେ ଦେଖିବେ- ପସନ୍ଦ କରିବେ- ତା'ପରେ ପୁଅ ଆସିବ ତତେ ଦେଖିବ, ତୁ ତାକୁ ଦେଖିବୁ- ତମ ଦି ଜଣକ ମତ ନ ନେଲେ ମୁଁ କ'ଣ ଏ ବାହାଘରରେ ରାଜି ହେବି ? ତା'ପରେ ବାହାଘର ଯୋଗାଯୋଗର କଥା- ଅନେକ ବାହାଘର ନିଷ୍ପତ୍ତି ହୋଇ ମଧ୍ୟ ଶେଷ ମୁହୂର୍ତ୍ତରେ ଭାଂଗିଯାଉଛି- ବେଦୀରୁ ବର ମଧ୍ୟ ଲେଉଟି ଯାଉଛି । ଏ ତ ଆରମ୍ଭ ମାତ୍ର... ତୁ କାହିଁକି ବ୍ୟସ୍ତ ହେଉଛୁ– ଆହୁରି କେତେ କେତେ ଲୋଭନୀୟ ପ୍ରସ୍ତାବମାନ ଆସିବ ।"

ମମତା ଆଉ ଅନାମିକା କଥାରେ ଗୁରୁତ୍ୱ ଦେଲା ନାହିଁ । ସାଧାରଣ ତ ଝିଅମାନେ ପ୍ରଥମେ ପ୍ରଥମେ ମନା କରନ୍ତି ତା'ପରେ ପୁଣି ବାହାହୋଇ ଖୁସିରେ ଘର ସଂସାର କରନ୍ତି । ଅନାମିକା ତାର ଝିଅ- ତା'ରି ରକ୍ତରେ ଗଢ଼ା । ତା' କଥାରୁ ବାହାରି ଯିବନି ।

ରାତିରେ ଅନାମିକା ଭଲ ଭାବେ ଖାଇଲା ନାହିଁ- ପଢ଼ାର ଆଳ ଦେଖାଇ ନିଜ ରୁମ୍‌କୁ ଚାଲିଗଲା । ମମତାକୁ ମଧ୍ୟ ସେଦିନ ରାତିରେ ଭଲ ନିଦ ହେଲା ନାହିଁ । ପରଦିନ ସକାଳୁ ଅନେକ ଡେରିରେ ଉଠିଲା ଅନାମିକା । ଜଳଖିଆ ଖାଇବା ସମୟ ହୋଇଯିବାରୁ ମମତା ଡାକ ପକାଇଲା ।

"ଆରେ ଏ କ'ଣ ତୋର ଆଖି ଯେ ଫୁଲିଲା ଫୁଲିଲା ପରି ଦେଖାଯାଉଛି । ରାତିସାରା କ'ଣ ପଢୁଥିଲୁ ନା କ'ଣ ?"

"ନାଇଁ ମାମା, ରାତିରେ ପୋକଟାଏ ପଡ଼ିଗଲାନା କ'ଣ, ମୁଁ ଟିକିଏ ଆଖିଟାକୁ ଦଳି ଦେଇଛି । ସେଇଥିପାଇଁ ଫୁଲିଯାଇଛି ବୋଧେ ।"

"କାହିଁ ଦେଖି ଆଇଲୁ ଆଇଲୁ... ।"

"ମମତା ଝିଅକୁ ପାଖକୁ ନେଲେ ।"

"ତୁ କାନ୍ଦିଛୁ ମାମା- ସତ କହ ।"

"ଏଥର ଅନାମିକା ସମ୍ଭାଳି ପାରିଲା ନାହିଁ.... ପିଲାଙ୍କ ପରି କାନ୍ଦି ମମତାଙ୍କ ଛାତିରେ ମୁହଁ ଲୁଚାଇଲା ।"

"ମାମା, ତମେ ଏ ବାହାଘର ପ୍ରସ୍ତାବ ବନ୍ଦ କର, ପ୍ଲିଜ୍... ।"

"କାହିଁକି, ଏ ତ ଆରମ୍ଭ ମାତ୍ର... ଆହୁରି କେତେ ସୁନ୍ଦର ବରପାତ୍ର ସବୁ ଆସିବେ । ତୁ ଜଣକୁ ପସନ୍ଦ କରିବୁ... ଆଉ ତୋର ପସନ୍ଦ ହିଁ ମୋର ପସନ୍ଦ ।"

"ମାମା, ଯଦି ତମରି କଥା ହୁଏ ତେବେ ମୁଁ ଜଣକୁ ପସନ୍ଦ କରିଛି ମାମା । ଆଶା ତମେ ଅନୁମତି ଦେବ ।" ହଠାତ୍ ଏଭଳିଆ ଉତ୍ତରଟାଏ ପାଇବ ବୋଲି ମମତା ସ୍ୱପ୍ନରେ ସୁଦ୍ଧା ଭାବି ନଥିଲା । ଭାବିଥିଲା ଅନାମିକାର ପିଲାଗୁଣ ଏବେ ମଧ୍ୟ ଯାଇନାହିଁ । ଏପର୍ଯ୍ୟନ୍ତ ଭଲମନ୍ଦ ନିଷ୍ପତ୍ତି କରିବାର ବୟସ ଆସି ନାହିଁ । ଏପର୍ଯ୍ୟନ୍ତ ସେ ମା' କାନି ଛାଡ଼ିନି । କିନ୍ତୁ ଆଜି ଏ କ'ଣ କହୁଛି ସିଏ । ... କୌଣସି ଦିନ ଏଭଳିଆ କଥା ତା' କାନକୁ ଆସିନାହିଁ ।

"ତୁ ଏ କ'ଣ କହୁଛୁ ଅନାମିକା ମୁଁ ତ କିଛି ବୁଝିପାରୁନାହିଁ । ତୋ ଭଳିଆ ପିଲା ପୁଣି ଏ ବୟସରେ । ନା ନା ପ୍ଲିଜ୍, ତୁ ଏଭଳିଆ କିଛି କରିବସନା ଯାହାଫଳରେ ଦୁନିଆରେ ମୁଁ ଲୋକହସା

ହେବି । କେତେ ଦୁଃଖ କେତେ ଯନ୍ତ୍ରଣା ସହି ମୁଁ ତତେ ମଣିଷ କରିଛି ତୁ କ'ଣ କେବେ ଅନୁଭବ କରିନାହୁଁ ?"

"ମୁଁ ତମମାନଙ୍କ ମନରେ ଦୁଃଖ ଦେବା ଭଳି କିଛି କାମ କରିନାହିଁ । ଆମେ ଦୁହିଁଙ୍କର ବନ୍ଧୁତା ରହିଛି- ଆମେ ଦୁହେଁ ଦୁଇବର୍ଷ ପରେ ବିବାହ କରିବୁ । ପ୍ରଥମେ ନିଜ କ୍ୟାରିୟର୍ ଗଢ଼ିବୁ, ତା'ପରେ ଯାଇ... ।"

"ହଉ ହଉ, ବନ୍ଦ କର ତୋର ଯୁକ୍ତି । ତୁ କ'ଣ ଗଢ଼ିବୁ ତୋ କ୍ୟାରିୟର ? ଆଜି ବାପା ନାହାନ୍ତି ବୋଲି ମତେ ଏଭଳିଆ ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡୁଛି ।" ଏଥର ମମତା ଖୁବ୍ ଜୋର୍‌ରେ କାନ୍ଦି ପକାଇଲା । ସତେ ଯେମିତି ଘର ଭିତରେ ଝଡ଼ଟାଏ ଅଚାନକ ସୃଷ୍ଟି ହୋଇଗଲା ।"

"ଅନାମିକା କହିଲା ମାମା, ତମେ ମତେ ବିଶ୍ୱାସ କର– ତମ ବିଶ୍ୱାସରେ ମୁଁ କେବେ ବିଷ ଦେବି ନାହିଁ । ଏ ବିଷୟରେ ମୁଁ ମଧ୍ୟ ଆଉ କିଛି କଥା ହେବି ନାହିଁ । ତମ ମନରେ ମୁଁ ଆଘାତ ଦେଇଥିବାରୁ ଦୁଃଖିତ ମାମା । 'ଅନାମିକା ଯାଇ ଗୋଡ଼ତଳେ ପଡ଼ିଗଲା ।'

ସେଦିନ ରାତିରେ ମମତାକୁ ଆଉ ନିଦ ହେଲା ନାହିଁ– ନିଜକୁ ଏକଦମ୍ ଅସହାୟ ମନେକଲା– ହଠାତ୍ ତା'ର ମନେ ହେଲା ଏତେ ବଡ଼ ଦୁନିଆରେ ସେ ଏକଦମ୍ ଏକୁଟିଆ ହୋଇଯାଇଛି । ଏଭଳିଆ ପରିସ୍ଥିତିରେ ପାଖରେ ଠିଆ ହେବା ପାଇଁ କେହି ନାହିଁ– ଏକ ଦୋଛକି ରାସ୍ତାରେ ଠିଆ ହୋଇ ସେ ପଥଭ୍ରଷ୍ଟା ହୋଇଯାଉଛି– ଭାବୁଛି କୋଉ ରାସ୍ତା ସେ ବାଛିନେବ– କୋଉଟା ଠିକ୍ କୋଉଟା ଭୁଲ୍ । ଏଠି ତା'ର ଏକମାତ୍ର ଝିଅ । ଏଠି ଭାବପ୍ରବଣତାର ମୂଲ୍ୟ କିଛି ନାହିଁ । ପରିସ୍ଥିତିର ସାମ୍ନା କରିବାକୁ ପଡ଼ିବ । ହୋଇପାରେ ଯେତେ କଠିନ ଏ ନିଷ୍ପତ୍ତି । ପ୍ରଥମେ ଭାବିଲା ନିରଞ୍ଜନ ବାବୁଙ୍କୁ ଏ ବିଷୟରେ ଜଣାଇବ । ପରେ ଭାବିଲା ନିଜେ ଆଗେ ବୁଝିବା ଦରକାର । ଘଟଣାଟା କେଉଁ ବାଟରେ ଯାଉଛି ତା' ପରେ ଯାଇ ଯେଉଁ କଥା ।

ପରଦିନ ସକାଳେ ମମତା ତା'ର ନିଷ୍ପତ୍ତି ଶୁଣାଇଦେଲ । କହିଲା- "ଅନାମିକା ତୁ ଆଜି ସେ ପିଲାକୁ ମୋ ଘରକୁ ସନ୍ଧ୍ୟାବେଳକୁ ଡାକ ଚା' ପିଇବା ପାଇଁ । ମୁଁ ତା' ସାଥିରେ ଟିକିଏ କଥାବାର୍ତ୍ତା ହୁଏ । ଯଦି ମୁଁ ଦେଖିବି ସେ ପିଲାଟାର ଯୋଗ୍ୟତା ଅଛି ତୋର ହାତ ଧରିବାକୁ ତେବେ ମୁଁ ତତେ କଥା ଦେଉଛି ତୋର ମନରେ ମୁଁ ଦୁଃଖ ଦେବି ନାହିଁ । ତା' ପରେ ତମ ଦୁଇଜଣଙ୍କ ପାଇଁ ତ ମୋ ଜୀବନ । ତୋ ବାହାଘର ଯଦି ଭଲରେ ଭଲରେ ହୋଇଯାଏ ତେବେ ବାହାର ଦୁନିଆର ଲୋକ ନିନ୍ଦାକୁ ମୁଁ ସହଜରେ ଆଡ଼େଇ ଯିବି । ମୋ ଜୀବନରେ ଖାଲି ଝଡ଼ ଉଠିଛି, ଝଡ଼ ଥମିଯାଇଛି ମଧ୍ୟ ।"

"ଓଃ ଇଉ ଆର ସୋ ସୁଇଟ୍ ମାମା ।" ଅନାମିକା କହିଲା ଏବଂ ଖୁସିରେ ନାଚି ଉଠିଲା । ଫୋନ୍ କରିଦେଲା ତା'ର ବନ୍ଧୁକୁ ଏବଂ କହିଲା ଆଜି ସନ୍ଧ୍ୟାରେ ମାମା ତମକୁ ଚା'କୁ ଡାକିଛନ୍ତି ।

ସନ୍ଧ୍ୟା ସମୟ ଆସିଗଲା । ଅନାମିକା ଖୁସିରେ ଖାଲି ଏପଟ ସେପଟ ହେଉଥାଏ । ଯଦି ଅନୁଭବ ମାମାଙ୍କ ସାଙ୍ଗରେ କିଛି ଏପଟ ସେପଟ କଥାବାର୍ତ୍ତା ହୁଅନ୍ତି ତ ସରିଲା କଥା । କିନ୍ତୁ ସେ ଅନୁଭବକୁ ଜାଣେ । ବେଶ୍ ମାପିଚୁପି କଥାବାର୍ତ୍ତା କରନ୍ତି ସେ । ସେଇଥି ପାଇଁ ଅନାମିକା ତାକୁ ପସନ୍ଦ କରିଛି । ଭଲ ଛାତ୍ର ହିସାବରେ ଅନୁଭବର କଲେଜରେ ନା ମଧ୍ୟ ଅଛି । କଲେଜର ଅଧ୍ୟକ୍ଷ ମଧ୍ୟ ତା ଉପରେ ଖୁବ୍ ଉଚ୍ଚ ଆଶା ପୋଷଣ କରନ୍ତି । ଏଥରକ ବେଷ୍ଟ ଗ୍ରାଜୁଏଟ୍ ହେବାର ଆଶା ମଧ୍ୟ ରହିଛି ।

ବାହାରେ ମଟର ସାଇକେଲର ହର୍ଣ୍ଣ ଶୁଣାଗଲା । ଅନାମିକା ଦଉଡ଼ିଗଲା ଦୁଆର ଖୋଲିବାକୁ ।

"ମାଉସୀ ! ନମସ୍କାର... ମୋ ନା ଅନୁଭବ ମହାନ୍ତି ।"

"ବସ, ବସ ମତେ ଅନାମିକା ତମ କଥା ସବୁ କହିଛି ।"

ଅନୁଭବ ମୁହଁ ତଳକୁ କଲା ।

ମମତା ତା' ମୁହଁକୁ ଲକ୍ଷ୍ୟ କଲା... ଆରେ ଏ କ'ଣ ଦେଖୁଛି ସିଏ... ଇଏ ତ ସେଇ ମୁହଁ-ସେ ଚେହେରା, ସେଇ ଆଖି, ଚଉଡ଼ା କପାଳ । ଆରେ ଏ ତ ଅବିକଳ ତାଙ୍କରି ପରି । ହଠାତ୍ ଉଠିଯାଇ ତାକୁ ହଲାଇ ଦେଲା ।

ଅନୁଭବ ଉଠିପଡ଼ିଲା ଚେୟାରରୁ ।

"ମାଉସୀ ମତେ ଆପଣ କିଛି କହୁଛନ୍ତି କି ? ଯାହା ପଚାରିବା କଥା ପଚାରନ୍ତୁ ମୁଁ ଠିକ୍ ଠିକ୍ ଉତ୍ତର ଦେବି । ଅନାମିକା ମତେ କହିଛି ଆପଣଙ୍କର ତା' ପ୍ରତି କେତେ ମମତା । ଏଣୁ ଆପଣଙ୍କ ମନରେ ଦୁଃଖ ଦେଲାଭଳି ଆମେ କିଛି କରିବୁ ନାହିଁ ।"

"ଆଚ୍ଛା ପୁଅ, ତମ ନାଁ କ'ଣ କହିଲ ? ମମତା ଏଥର ସହଜ ହେବାକୁ ଚେଷ୍ଟା କରୁଥିଲା ।"

"ଅନୁଭବ... ଅନୁଭବ ମହାନ୍ତି ।"

"ବାପା କ'ଣ କରନ୍ତି ?"

"ବାପାଙ୍କ ନା ମହେଶ ମହାନ୍ତି । ଆଗରୁ ଆମେ ସମସ୍ତେ ଏଇଠି ଥିଲୁ । ବାପାଙ୍କର କଲିକତା ବଦଳି ହୋଇଯାଇଛି । ବାପା ମା' ସେଇଠି ଅଛନ୍ତି । ମୁଁ ଏଇଠି ଏକା ହଷ୍ଟେଲରେ ରୁହେ । ଅନୁଭବ ଖୁବ୍ ହାଲୁକା ଭାବରେ ଉତ୍ତର ଦେଲା ।

ହଠାତ୍ ମମତା ଅନୁଭବ କଲା, ତା' ଛାତିରେ ଯନ୍ତ୍ରଣା । ସତେ ଯେପରି ସେ ଚେତାଶୂନ୍ୟ ହୋଇଯାଉଛି । ସେ ଚିତ୍କାର କରି ସୋଫା ଉପରୁ ତଳକୁ ଗଡ଼ି ପଡ଼ିଲା ।

ଭିତର ଘରୁ ହାତରେ ଦୁଇ କପ୍ ଚାହା ଧରି ଡ୍ରଂଇ ରୁମ୍‌କୁ ପ୍ରବେଶ କରୁଥିଲା ଅନାମିକା । ମା'ଙ୍କର ଏ ଅବସ୍ଥା ଦେଖି ଚିତ୍କାର କରି ଉଠିଲା । ଚାହା ଦୁଇକପ୍ ହାତରୁ ଖସିପଡ଼ି ଭାଂଗି ଚୂର୍‌ମାର୍ ହୋଇଗଲା ।

ବାହାର ଆକାଶରେ ବର୍ଷା । ତା' ସାଙ୍ଗକୁ ପ୍ରବଳ ବେଗରେ ପବନ ବହିବାକୁ ଆରମ୍ଭ କରିଥିଲା । ମନେ ହେଉଥିଲା ସତେ ଯେପରି ଏ ଝଡ଼ ବତାସର ଗତି କ୍ରମଶଃ ବଢ଼ିବାକୁ ଆରମ୍ଭ କରିଛି ।



# ନିମନ୍ତ୍ରଣ

## ବିପିନ ବିହାରୀ ମିଶ୍ର

ବସ୍‌ଟା ସେ ବରଗଛମୂଳେ ପହଞ୍ଚିଲା ବେଳକୁ ଦି'ପହର ହେଲାଣି । ମଙ୍ଗୁଲି ତା' ପୁରୁଣା ବୁଜୁଳାଟା ଧରି ଓହ୍ଲେଇ ପଡ଼ିଲା । ବାପା ଅପେକ୍ଷା କରିଥିଲା ଗଛମୂଳେ, କେହି ପାସେଞ୍ଜର ଚଢ଼ିବାର ନଥିଲା, ବସ୍ ସାଙ୍ଗେ ସାଙ୍ଗେ ଚାଲିଗଲା ଧୂଳି ଉଡ଼େଇ ।

କିରେ ପୁଅ, ବସ୍ ଏତେ ଡେରି କରିଦେଲା ଯେ ?

ଭିଡ଼ିମୋଡ଼ି ହେଇସାରି ମଙ୍ଗୁଳି କୈଫିୟତ ଦେଲା ଯେ ବସ୍ ଡେରିରେ ବାହାରିଲା, ଚକା ପଙ୍କଚର୍ ହେଲା ଗୋଟିଏ ଜାଗାରେ, ବାଟରେ ହର୍ଣ୍ଣ ବାଜିଲାନି, ଇମିତି ହଉ ହଉ ଚାରିପାଞ୍ଚ ଘଣ୍ଟା ଡେରି ହେଇଗଲା ।

– ତମ ସ୍କୁଲ୍‌ରେ ଭଲ ପାଠପଢ଼ାପଢ଼ି ହଉଚି କି ନାହିଁ ?

– ହଁ ବାପା, ଦି'ବେଳା ଖାଇବା ପାଇଁ ଦେଉଛନ୍ତି, ପାଠ ପଢ଼ଉଚନ୍ତି ତ ।

ଓଃ ଡି.ଏଫ୍.ଓ. ସାହେବ ତା'ହେଲେ ବଢ଼ିଆ ବନ୍ଦୋବସ୍ତ କଲେ– କହିଲା ଫରେଷ୍ଟଗାର୍ଡ ସନାତନ । ଠିକ୍ ଅଛି ଚାଲ୍ ରାତିଟା ବାଟରେ ରହିଯିବା, କାଲି ସକାଳେ ଘରେ ପହଞ୍ଚିବା ।

ମଙ୍ଗୁଳି ଅନେଇଲା ଆଗରେ ସାପ ଭଳିଆ ଲମ୍ବିଯାଇଥିବା ସରୁ ପାଦଚଲା ରାସ୍ତାକୁ । ଜଣରୁ ଦି'ଜଣ ଏକାସଙ୍ଗେ ଯାଇପାରିବେ ନାହିଁ । ବାପା ପଛେ ପଛେ ସେ ଚାଲିଲା ସିନା କିନ୍ତୁ ସାଙ୍ଗ ଦେଇପାରିଲା ନାହିଁ । କିଛିବାଟ ଗଲାପରେ ସନାତନ ଅନେଇ ଦେଖିଲା ମଙ୍ଗୁଳି ବହୁତ ପଛରେ ରହିଯାଇଛି । "କିରେ ତତେ ଯଦି କଷ୍ଟ ହଉଚି, ବାଧୁଚି ଟିକେ ରହିଯିବା ।"

ସାମାନ୍ୟ ଲଜ୍ଜିତ ହୋଇ ମଙ୍ଗୁଳି କହିଲା– ନାଇଁ ବାପା ଚାଲ, ଯେତେ ଶୀଘ୍ର ଯିବା ସେତେ ଭଲ ।

ପାହାଡ଼ ତଳ ପହଞ୍ଚିଲା ବେଳକୁ ବେଳ ରତରତ, ଉପରେ ଘଞ୍ଚ ଜଙ୍ଗଲ, ପାହାଡ଼ ସାରା ଗଛ ଭର୍ତ୍ତି, ଅଧିକାଂଶ ବୃକ୍ଷରୋପଣ ଯୋଜନା ଅନୁସାରେ ।

ଏଇ ପାହାଡ଼ରେ ଆଗେ ସବୁ ରକମର ଗଛ ଥିଲା, ଜୀବଜନ୍ତୁ ଥିଲେ କିନ୍ତୁ ଗଛ କାଟି କାଟି ଗୋଟିଏ ମାତ୍ର ଗଛ ରହିଲା ନାହିଁ । ତା'ପରେ ସରକାର ଚାହିଁଲେ ପୁଣି ଗଛ ଲଗେଇବା ପାଇଁ । ପନ୍ଦର ବର୍ଷ ତଳେ ଡି.ଏଫ୍.ଓ. ସାହେବ ଆସିଥିଲେ । ବଢ଼ିଆ ଲୋକ, ସେ ଲୋକଙ୍କ ଦ୍ୱାରା ଗଛ ଲଗାଇଲେ । ଅଧିକାଂଶ ଗଛ ଲଙ୍କାଆମ୍ବ । ଲଙ୍କାଆମ୍ବ ବଢ଼ିଲା ପରେ ଅନ୍ୟାନ୍ୟ ଗଛ ବି ବଢ଼ିଲା ଓ ଜୀବଜନ୍ତୁ ପଶୁପକ୍ଷୀ ରହିବା ଆରମ୍ଭ କଲେଣି ।

ଲଙ୍କା ଆମ୍ବ ଗଛର ଡାଳଗୁଡ଼ିକ ସତୁରୀ ବର୍ଷର ବୁଢ଼ୀ ପରି ନଇଁ ପଡ଼ିଥାନ୍ତି ଚାରି ଆଡ଼କୁ । ଦିନବେଳେ ମଧ୍ୟ ଇଞ୍ଚେ ଜାଗାରେ ଖରା ପାଇବା କଷ୍ଟ । ପାଚିଲା ଲଙ୍କା ଆମ୍ବ ଗଛର ଛାଇ ହୋଇଥାଏ ବାଟସାରା, ହଳଦିଆ ଓ ନାଳିସିଆ ଲଙ୍କା ଆମ୍ବ ହାତ ପାଆନ୍ତାରେ ଅସଂଖ୍ୟ ।

ବାପା, ଲଙ୍କା ଆମ୍ବ ଖାଇବି ?

ଖା, କିନ୍ତୁ ବେଶି ଖାଇବୁନି, ତଣ୍ଟି କୁଣ୍ଡେଇ ହବ ।

ମଙ୍ଗୁଳି ଗଛ ପାଖକୁ ଚାଲିଗଲା ଗୋଟେ ଦି'ଟା ତୋଳିବା ପାଇଁ କିନ୍ତୁ ଲୋଭ ସମ୍ଭାଳି ପାରିଲା ନାହିଁ, ଦଶ ବାରଟା ତୋଳି ଦୁଇ ପକେଟ୍‌ରେ ଓ ବୁଜୁଳାରେ ଭର୍ତ୍ତି କଲା ।

କାଢ଼୍, କାଢ଼୍ ନହେଲେ କଷ୍ଟ ଲାଗିଯିବ କହି ବାପା ଚାରି ପାଞ୍ଚଟା ପତ୍ରରେ ଠୋଲାଟେ କରିଦେଲା, ମଙ୍ଗୁଳି ଲଙ୍କାଆମ୍ବ ସେଇଠେ ରଖିଲା ।

ଦେଖୁଚୁ ସେ ଗଛ ଗଣ୍ଡିକୁ, ବକଳା ଛାଡ଼ିଯାଇଛି ।

ହଁ, କିଏ ଛଡ଼େଇଲା ?

ହରିଣ, ଆଉ କିଏ ? ହରିଣ ଆସି ବେକ ଘଷିଚି, ଦଳର ନେତା ପ୍ରଥମେ ଇଲାକା ପ୍ରତିଷ୍ଠା କରିବା ପାଇଁ ଗଛରେ ଜୋର୍‌ରେ ବେକ ଘଷିଚି ଓ ଆଉ କେତେ ଜାଗାରେ ବି ଏମିତି ଘଷିଥିବ । ଏବେ ଚାଲ ଚାଲ ଡେରି ହେଲାଣି କହି ବାପ ଜଲ୍‌ଦି ଜଲ୍‌ଦି ଚାଲିଲା ଓ ପୁଅ ଅନୁସରଣ କଲା । ଖଣ୍ଡେ ବାଟ ଯାଇ ବାପ ପୁଣି ଠିଆ ହୋଇଗଲା । ଭୂଇଁରେ ପଡ଼ିଥିବା ମେଞ୍ଚା ମେଞ୍ଚା ଲଙ୍କା ଆମ୍ବଖଦାକୁ ଦେଖାଇ କହିଲା– ଦେଖ ଭାଲୁ ଖାଇଚି, ଭାଲୁକୁ ଲଙ୍କା ଆମ୍ବ ଭାରି ଭଲ ଲାଗେ । ଆଖୁ, ପାଚିଲା ଆମ୍ବ, ମହୁ ପରେ ସେ ପାଚିଲା ଲଙ୍କା ଆମ୍ବକୁ ଭଲପାଏ ।

ଭାଲୁକୁ ତ ତା'ହେଲେ ତମେ ବହୁଥର ଦେଖିଥିବ ବାପା ?

ହଁ, ମୁଁ ଜାଣିବାରେ ଏ ଜଙ୍ଗଲରେ ଚାରିଟା ଭାଲୁ ଅଛନ୍ତି । ସେମାନଙ୍କ ବାଟ ଅଲଗା, ଆମମାନଙ୍କ ବାଟ ଅଲଗା, ଆମେ ଚଲାପଥରେ ଯାଉ ସେମାନେ ଜଙ୍ଗଲ ବାଟରେ ଯାଆନ୍ତି । ଚଲାପଥ କଡ଼ରେ କେତେବେଳେ କେମିତି ଭାଲୁ ଯାଉଥାଏ ଓ ମଣିଷ ଦେଖିଲେ ପଛକୁ ଘୂରି ଅନାଏ । ବିରକ୍ତିରେ ଖୁଁ ଖୁଁ ତିନିଥର କରେ ଓ ତା' ବାଟେ ବାଟେ ଯାଏ । ମୁଁ ଭାଲୁକୁ ଦି ତିନିଥର ଦେଖିଚି, ମୁଁ ମୋ ବାଟେ ବାଟେ ଯାଏ ସେ ତା' ବାଟେ ଯାଇଚି ।

ଆଉ ହରିଣ ?

ହରିଣ ଆଖି ପିଛୁଳାରେ ଆସନ୍ତି ଯାଆନ୍ତି, ଦେଖୁ ଦେଖୁ ଚାହୁଁ ଚାହୁଁ ଜଙ୍ଗଲ ଭିତରେ ମିଳେଇ ଯାଆନ୍ତି, ବିପଦ ଆଶଙ୍କା କରି ମା' ଜଲ୍‌ଦି ଛୁଆକୁ କୋଳକୁ ଟାଣିନେଲା ପରି ଜଙ୍ଗଲ ତାକୁ ଟାଣିନିଏ କୋଳକୁ ।

ବହୁତ କିଛି ଜୀବଜନ୍ତୁ ଥିଲେ, ବାଘ ବି ଥିଲା । ମଣିଷମାନେ ଜଙ୍ଗଲ କାଟିଦେଲେ, ବାଘ ହରିଣକୁ ଗୁଳି କରି ମାରିଦେଲେ ଓ ବାକି ଛୋଟ ଛୋଟ ବୁଦାକୁ ଗାଈ ଛେଳି ଖାଇଗଲେ । ଛେଳିମାନେ ତ ବେଶି ନଷ୍ଟ କରନ୍ତି, ହରିଣ, ସମ୍ବର ସବୁ ରକମ ଗଛପତ୍ର ଖାଆନ୍ତି ଅଥଚ ଛେଳି କେତେକ ଅଳ୍ପ ଗଛର ପତ୍ର ଖାଇବା ଦ୍ୱାରା ଅନାବନା ଗଛ ରହନ୍ତି ଓ ଭଲଗଛ ମରିଯାଆନ୍ତି । ଯାହାହେଉ ସରକାର ନୂଆଗଛ ଲଗେଇଲେ ଓ ଜଗିବା ଦାୟିତ୍ୱରେ ମୁଁ ରହିଲି । ମୁଁ ଥିବା ସମୟରେ ଗୋଟିଏ ବି ଜନ୍ତୁ ଶିକାର ହୋଇନାହିଁ । ତେବେ ଗଛକଟା ପାଇଁ ଚେଷ୍ଟା ହୋଇଥିଲା, ଟ୍ରକ୍ ଧରି ଜଣେ ବାବୁ ଆସିଥିଲେ, ମୁଁ ମୋ' ଦୁଇନଳୀ ବନ୍ଧୁକ ଦ୍ୱାରା ମୁକାବିଲା କଲି । ସେଇଠୁ ଟ୍ରକ୍ ଫେରିଗଲା ଓ ଆଉଦିନେ କେହି ଆସିନାହାନ୍ତି ।

ବାପା ଅନ୍ଧାର ହେଲାଣି କ'ଣ କରିବା ? ବାପା ପୁଅର ହାତ ଧରି ନେଇଗଲା, ଚଲାପଥରୁ ଖଣ୍ଡେ ଦୂରକୁ । ଦି'ପୁରୁଷ ଉଚ୍ଚାର ଦି'ଟା ପଥର ସନ୍ଧିକୁ ବାଛିଲା ବିଶ୍ରାମ ନେବା ପାଇଁ । ପୁଅ ତରତର ହୋଇ ପଶିଯାଉଥିଲା, ବୁଢ଼ା ମନାକଲା । ପ୍ରଥମେ ଦି'ଚାରିଟା ଟେକା ଭିତରକୁ ମାରି ଅପେକ୍ଷା କଲା ଓ ପରେ ପଥର ସନ୍ଧିରେ ପଶିଲା । "କେମିତି ତରତର ହୋଇ ପଶିଯାଉଛୁ, ସାପ କାଳେ ଥିବ ଭୟ ପାଇ କାମୁଡ଼ି ଦବ ।" ପୁଅକୁ ବସେଇ ବୁଢ଼ା ଶୁଖିଲା ଡାଳ କିଛି ଆଣିଲା, ପତ୍ର

ଗଦେଇଲା, ସେ ସବୁରେ କିରୋସିନୀ କିଛି ଢାଳି ଦିଆସିଲି ମାରିଲା । ମୁଣିରୁ ବାହାର କଲା ସିଝା ଆଳୁ, ଲଙ୍କା ମରିଚ, ତେନ୍ତୁଳି । "ଯାକୁ ଖାଇ ରହିଯିବାରେ ପୁଅ, ଘରେ ପହଞ୍ଚିଲେ ଖାଇବା ।" ପୁଅକୁ ବାଡ଼ି ଖଣ୍ଡେ ଧରେଇ ବୁଢ଼ା କହିଲା ମଝିରେ ମଝିରେ ଭୂଇଁକୁ ପିଟୁଥିବୁ, ନିଆଁକୁ ଦେଖି ପୋକଯୋକ ଆସିବେ ଓ ପୋକଙ୍କ ପଛରେ ଏଣ୍ଡୁଅ, ଝିଟିପିଟି, ବେଙ୍ଗ ଓ ସେମାନଙ୍କୁ ତଲାସି ସାପ ଆସିବ । ଭୂଇଁକୁ ମଝିରେ ମଝିରେ ପିଟୁଥିଲେ ସାପ ପଳେଇବ । ବୁଢ଼ା ପଥରକୁ ଆଉଜି ଗୋଡ଼ ଲମ୍ୱେଇ ଶୋଇ ପଡ଼ିଲାଣି, ପୁଅ ଢୁଳେଇଲା ଓ ପୁଣି ନିଦ ଭାଂଗିଲେ ଭୂଇଁକୁ ବାଡ଼ିରେ ପିଟିଲା । ଘଣ୍ଟେ ଦି'ଘଣ୍ଟା ପରେ ବୁଢ଼ା ଚଟ୍‌ପଟ୍ ହୋଇ ଉଠିବସିଲା ଓ ପୁଅକୁ ଶୋଇବା ପାଇଁ କହିଲା । ସିନ୍ଦୂରା ଫାଟିବା ପୂର୍ବରୁ ବୁଢ଼ା ପୁଅକୁ ହଲେଇ ଉଠେଇଦେଲା ଓ ମୁଢ଼ି ଗଣ୍ଡେ ଗଣ୍ଡେ ଖାଇ ଉଭୟେ ପାହାଡ଼ ଚଢ଼ିଲେ ।

ତୁ ଶୋଇଥିଲୁ ମୁଁ ଭାଲୁ ଦେଖିଲି । ଆସିଲା, ଖଣ୍ଡେ ଦୂରରେ ବସିଲା, ମୁଁ ଜଳନ୍ତା କାଠ ଖଣ୍ଡେ ଦେଖାଇଲା ମାତ୍ରେ ଘୂରିପଡ଼ି ପଳେଇଲା ଓ ତା'ର ଅଧଘଣ୍ଟା ପରେ ଭୂସ୍‌ଭାସ୍ କରି ହରିଣ ପଲେ ବାଆଁଆଡୁ ଡାହାଣ ଆଡ଼କୁ ଚାଲିଗଲେ । ପୁଅ ଭାବିଲା ବାପା ତାକୁ ଉଠେଇ ଥା'ନ୍ତେ କି ସେ ବି ଦେଖିଥା'ନ୍ତା । ଆଜିକାଲି କୋଉ ଜୀବଜନ୍ତୁ ଦିଶୁଚନ୍ତି କି ?

ସୂର୍ଯ୍ୟକିରଣ ପଡ଼ିଲା ପାହାଚ ଉପରେ, ଘଞ୍ଚ ଲଙ୍କାଆମ୍ବ ପତ୍ରକୁ ଭେଦି ଭୂଇଁରେ ମନ୍ଦ ମନ୍ଦ କିରଣ ପଡୁଥାଏ । ଲଙ୍କାଆମ୍ବରେ କଅଁଳିଆ ଖରାପଡ଼ି ଚକ୍‌ଚକ୍ କରୁଥାଏ, ମଙ୍ଗୁଳିର ଲୋଭ ହେଲା; କାଲିର ଲଙ୍କାଆମ୍ବକୁ ଫୋପାଡ଼ି ଦେଇ ନୂଆ ଲଙ୍କାଆମ୍ବ ତୋଳନ୍ତା କି– ବାପ କିନ୍ତୁ ମନାକଲା । ଯେତିକି ଆବଶ୍ୟକ ସେତିକି ତୋଳ, କାଲିର ଲଙ୍କାଆମ୍ବ ଖାଇସାରିନୁ ଆଜି ଆଉ ତୋଳିବା କ'ଣ ଦରକାର ? ମଙ୍ଗୁଳି କଥା ମାନିଯାଇ ଚୁପ୍‌ଚାପ୍ ଚାଲିଲା । ହଠାତ୍ ତା' ଆଖି ଝଲସିଗଲା ତୀବ୍ର ସୂର୍ଯ୍ୟକିରଣ ମୁହଁରେ ପଡ଼ି । ଅନେଇଲା ପଶ୍ଚିମ ଆଡ଼କୁ - ସେଇଟା କ'ଣ ?

ଓଃ- ସେଇଟା, ସରୁ ଝରଣାଟେ ବର୍ଷରେ ଦୁଇତିନି ମାସ ପାଣିଥାଏ, ପାଣି ଝରି ଝରି ପଥର ଚିକ୍‌କଣ ହୋଇଯାଇଚି, ଧଳା ହେଇଯାଇଚି, ସୂର୍ଯ୍ୟକିରଣ ପଡ଼ି, ଆଖି ଝଲସେଇ ଦେଉଚି । ସେ ଝରଣାରେ ଆଗ ବର୍ଷସାରା ପାଣି ରହୁଥିଲା, ଗଛ କାଟିବା ପରେ ସବୁ ଶୁଖିଗଲା, ଏବେ ପୁଣି ବର୍ଷରେ ଦୁଇ ଚାରିମାସ ପାଣି ଝରୁଛି ।

ତମ ସମୟରେ ବାଘ ଦେଖିଥିଲ ?

ହଁ, ବହୁଦିନ ତଳେ, ମୁଁ ପିଲାଟିଏ ଥିଲି, ଆମ ଗାଈଟି ହଜିଗଲା, ବାପା କହିଲେ ଜଙ୍ଗଲକୁ ଯାଇ ଖୋଜିଆଣିବା ପାଇଁ । ବେଳ ଚାରିଟାପାଞ୍ଚଟା ହେବ, ମୁଁ ଏଇ ଚଲାପଥରେ ଆସିଲି । ବାପା କହିଥିଲା-ସୂର୍ଯ୍ୟ ବୁଡ଼ିବା ପୂର୍ବରୁ ଫେରିଆସିବା ପାଇଁ- ଜୀବଜନ୍ତୁଙ୍କ ଭୟ ତ ! ଗାଈକୁ ବହୁତ ଖୋଜିଲି, ଡାକ ପକେଇଲି କିନ୍ତୁ ଗାଈ ମିଳିଲା ନାହିଁ, ଫେରିଆସିଲି । ହଠାତ୍ ବାଁପଟେ ସେ ପଥରଟା ଦେଖୁଚୁ ତା' ଉପରେ କେତେବେଳେ ବାଘଟେ ଶୋଇରହି ମୋତେ ଅନେଇଚି, ମୁଁ ଜାଣିନି । ମୁଁ ବାଘକୁ ଅନେଇଲି, ମୋ ଗୋଡ଼ହାତ ବରଫ ଭଳିଆ ଥଣ୍ଡା ହୋଇଗଲା । ବାଘ ମୋତେ ଅନାଇ ହାଇଟେ ମାରିଲା ଓ ଖପ୍‌କରି ପଥରରୁ ଡେଇଁ କୁଆଡ଼େ ଉଭେଇଗଲା ଓ ସେ ଗଲାପରେ ମୋ ପିଣ୍ଡରେ ପ୍ରାଣ ପଶିଲା । ଏ ବାପା, ଦୌଡ଼ିଆସ, ବାଘ କହି ମୁଁ ପ୍ରାଣ ବିକଳରେ ଦୌଡ଼ିଲି । ଖଣ୍ଡେ ଦୂରରୁ ବାପା, ରହରେ ପୁଅ ମୁଁ ଆସୁଚି କହି ଟାଙ୍ଗିଆଟେ ଧରି ଆସିଲା । ବାପାକୁ ଜାବୁଡ଼ି ଧରି କାନ୍ଦ କାନ୍ଦ ହୋଇ ମୁଁ କହିଲି- ବାପା ବାଘ ମୋତେ ମାରି ପକେଇଥା'ନ୍ତା । ମୋଠୁ ସବୁକଥା ଶୁଣି ମୋତେ ବୁଝେଇଲା- ଏ ଜଂଗଲର ପ୍ରଭୁ ହଉଚି ବାଘ, ସେ କେବେ

ଅସନ୍ତୁଷ୍ଟ ହୋଇନି । ମାରିବ କାହିଁକି ? ତା'ପରେ ବାପ ବତେଇଲା ଯେ ହଜିଯାଇଥିବା ଗାଈ ମନକୁ ଫେରିଆସିଚି । ମଙ୍ଗୁଲି ଅନେଇଲା ତା' ବାପା ଦେଖେଇଥିବା ପଥରଟାକୁ ଓ କିଛି ନ କହି ଚୁପ୍‌ଚାପ୍ ଚାଲିଲା ପଥର ଆଡ଼େ । ବାପ ଠିଆହୋଇ କିଛିକ୍ଷଣ ତାକୁ ଅନେଇଲା । ମଙ୍ଗୁଲି ପଛକୁ ଘୂରି ଅନେଇଲା ଓ ଜାଣିଲା ବାପା ବାରଣ କରୁନାହିଁ । ପଥର ଉପରେ ଖପ୍‌କରି ଚଢ଼ିଗଲା ବାଘ ଯୋଉଠି ବସିଥିଲା ଠିକ୍ ସେଇଠେ ବସିଲା ଓ ତଳକୁ ଅନେଇଲା ।

ମୁଁ ବହୁତ ଦୂର ପର୍ଯ୍ୟନ୍ତ ଦେଖିପାରୁଚି, ବାଁ ଆଡ଼େ ପାହାଡ଼ଟା ଅଣଓସାରିଆ ହେଇଯାଇଚି । ଜନ୍ତୁ ଦିଶୁଛନ୍ତି କିରେ ?

ନାଇଁ ବାପା, କିନ୍ତୁ ବାଁ ପାଖୁ ତିନିଜଣ ଲୋକ ଚଢୁଛନ୍ତି । କାଇଁ ଦେଖିବା କହି ବାପ ପଥର ଉପରେ ଚଢ଼ି ଅନେଇଲା । ଆରେ ସତେ ତ ତିନିଟା ଲୋକ ପାହାଡ଼ ଚଢୁଚନ୍ତି । କାଇଁ ସେମାନେ ତ କେବେ ଆଗରୁ କହିନାହାନ୍ତି, ସନାତନ ତାଳିମାରି ଡାକିଲା, ଏ- ଏ ବାବୁମାନେ ଏଇଠେ କ'ଣ କାମ ?

ପାହାଡ଼ ଚଢୁଥିବା ତିନିଟା ଲୋକ ଅନେଇଲେ, ଖାକିପିନ୍ଧା ଫରେଷ୍ଟରଙ୍କୁ ଦେଖି ବୁଲିପଡ଼ି ପଳେଇଲେ । ପଛକୁ ସନାତନ ପାଟିକଲା- ବଦ୍‌ମାସ୍ କୋଉଁଠିକାର, ଆଉଥରେ ଆସିଲେ ଫାଏରିଙ୍ଗ୍ କରିଦେବି । ବାପ ପୁଅ ପୁଣି ପାହାଡ଼ ଚଢ଼ିଲେ ଓ ଦି'ଘଣ୍ଟା ପରେ ପାହାଡ଼ ଉପରେ ଘରଟେ ଦିଶିଲା ।

ଏ କ'ଣ, ଚାଳଘର ଥିଲା ଆଜବେଷ୍ଟସ୍ ହୋଇଗଲାଣି ଯେ !

ହଁ ବାବୁ, ମନ୍ତ୍ରୀ ଆସିଥିଲେ ବୃକ୍ଷରୋପଣ ଦେଖିବା ପାଇଁ, ମୁଁ ଆପତ୍ତି କରିବାରୁ ଚାଳ ଛପର ଜାଗାରେ ଆଜବେଷ୍ଟସ୍ ପକେଇବା ପାଇଁ କହିଲେ । ଏଣିକି ପାଣି ଗଳୁନି, ନହେଲେ ବର୍ଷାଦିନେ ଯୋଉ କଷ୍ଟ, ପାହାଡ଼ ଉପରୁ ବର୍ଷାଗୁଡ଼ା ପଡ଼େ ବର୍ଚ୍ଛା ଭଳିଆ, ପାହାଡ଼ ତାକୁ ସମ୍ଭାଳିନିଏ ବୃକ୍ଷଲତା ତାକୁ ଆଦରି ନିଅନ୍ତି କିନ୍ତୁ ଚାଳଘର ସମ୍ଭାଳିପାରୁ ନଥିଲା ।

ଘରଟା ଦୂରରୁ ଦିଶୁଥିଲା ସିନା କ'ଣ ପହଂଚିବା ଏତେ ସହଜ କଥା ? ବୁଢ଼ା ମଙ୍ଗୁଳିର ହାତଧରି ପହଞ୍ଚିଲାବେଳକୁ ମଙ୍ଗୁଳି ଧଇଁସଇଁ ହୋଇସାରିଲାଣି- ବୁଢ଼ାବାପା ଏଇ ଜଂଗଲରେ କେମିତି ଏତେ ତଳ ଉପର ହଉଚି କେଜାଣି ? ମଙ୍ଗୁଳିର ପ୍ରଶଂସା ଶୁଣି ସନାତନ ହସି ହସି କହିଲା- ଆରେ ବାବୁ ପାହାଡ଼ରେ ଚଢ଼ି ଚଢ଼ି ଗୋଡ଼ ଏମିତି ହେଇଚି ଯେ ସିଧାରାସ୍ତାରେ ଗଲାବେଳେ ବି ଆଗକୁ ମୁଁ ଢଳିଯାଉଚି ।

ବଖରିଆ ଘର ଭିତରେ କାନ୍ଥକୁ ଲାଗି ତିନିଟା ପଟା, ପଟାରେ ବୁଢ଼ା ବାପା ରଖିଥାଏ ଚାଉଳ, ଆଳୁ, ତେନ୍ତୁଳି, ହଳଦୀ ଓ ଡାଲି । ଆଉଗୋଟେ ଛୋଟ ଟିଣ ଟ୍ରଙ୍କ୍‌ରେ ଦୁଇ ଚାରିଖଣ୍ଡ ଲୁଗାପଟା ଓ ଛୋଟ ଟିଣରେ କିଛି ମୁଢ଼ି । ସୋରିଷତେଲ, ଦାନ୍ତକାଠି, ଲୁଣ ବାଁ କଡ଼କୁ ଓ ତା' ପାଖକୁ ଚାରୋଟି ଛୋଟ ଛୋଟ ଶିଶିରେ କିଛି ଟାବ୍‌ଲେଟ୍ । ଔଷଧ ଶିଶି ଉପରେ ଓଡ଼ିଆରେ ଲେଖା ହୋଇଥାଏ ଔଷଧର ଗୁଣ ଯଥା- ଝାଡ଼ା ପାଇଁ, ଜର ପାଇଁ କମ୍ପ ଜର ପାଇଁ ଇତ୍ୟାଦି । ପୁଅକୁ ଛାଡ଼ି ବୁଢ଼ା ଗଲା ବାଲ୍‌ଟିଟେ ଧରି ପାଖ ଝରଣାରୁ ପାଣି ଆଣିବା ପାଇଁ । ମଙ୍ଗୁଳି ଘର ଚାରିପଟେ ବୁଲିଲା, ପ୍ରାୟ ପାଞ୍ଚଶହ ଚାରା ପୁଡ଼ିଆ କରି ବନ୍ଧା ହୋଇ ଥୁଆ ହୋଇଥାଏ । ଘର କଣରେ ଶାବଳଟେ ଓ ଫାଉଡାଟେ ପ୍ରମାଣ କରୁଥାଏ ଯେ, ବୁଢ଼ା ରିତିମତ ଗଛ ଲଗେଇ ଚାଲିଚି ।

ପାଣି ଆଣି ବୁଢ଼ା ଦୁଇଟା ଇଟା ଉପରେ ଡେକ୍‌ଚିଟେ ରଖି ଚାଉଳ ଫୁଟେଇଲା ଓ କନାରେ ଚାରିଟା ଆଳୁ ପୂରେଇ ଫୁଟୁଥିବା ଚାଉଳ ପାଣିରେ ଝୁଲେଇଦେଲା ।

ବାପା, ତମ କାମ ତ ଗଛ ଜଗିବା କିନ୍ତୁ ତମେ ଗଛ ବି ଲଗଉଚ. ?

ହଁରେ ବାପା, ମୁଁ ଡି.ଏଫ୍.ଓ. ସାହେବଙ୍କୁ କହିଲି ମୋତେ ବି ଗଛ ଚାରା ଦିଅନ୍ତୁ ମୁଁ ଗଛ ଲଗେଇବି । ରହ ତତେ ଦେଖେଇବି ଗୋଟେ ଭଲକଥା, କହି ବୁଢ଼ା ଟିଣ ବାକ୍ସଟା ଖୋଲିଲା । ମଙ୍ଗୁଲି ବୁଢ଼ାପଛେ ଠିଆହୋଇ ଅନେଇଲା ଟିଣ ବାକ୍ସଟିକୁ । ବାକ୍ସରେ ପଡ଼ିଥାଏ ବୁଢ଼ାର ନୋଟ୍‌ବୁକ୍‌ଟେ ଓ ପେନ୍‌ସିଲ୍‌ଟେ । ଖିଅର ହବାପାଇଁ ଖୁର (ପ୍ରାୟ ଦଶଇଞ୍ଚ ଲମ୍ବା), ଛୋଟିଆ କପ୍‌ଟେ ଓ ତା' ସାଙ୍ଗରେ ଗୋଲାପୀ ରଙ୍ଗର ମୋଟା କାଗଜର ସାର୍ଟିଫିକେଟ୍ ।

କପ୍‌ଟାକୁ କାଢ଼ି ବୁଢ଼ା ଖଟ ଉପରେ ଥୋଇଦେଲା ଓ କହିଲା ଏଇ ଦେଖୁଚୁ ମୁଁ ଗଛ ଲଗେଇବା ଦ୍ୱାରା ମୋତେ ଡି.ଏଫ୍.ଓ. ସାହେବ ମନ୍ତ୍ରୀଙ୍କ ଆଗରେ ଠିଆକଲେ । ମନ୍ତ୍ରୀ ନିଜେ କପ୍ ଦେଲେ ଆଉ ଏଇ କାଗଜ ଖଣ୍ଡିକ । ମୋ ପିଠିକୁ ଥାପୁଡ଼େଇ ପଚାଶ ଟଙ୍କା ବି ଦେଲେ । ମୁଁ କ'ଣ କରିବି, ଡି.ଏଫ୍.ଓ. ସାହେବଙ୍କୁ କହିଲି ମୋତେ ଫାଉଡାଟେ ଦିଅନ୍ତୁ । ଫାଉଡାଟା ପୁରୁଣା ହୋଇ ଖୁଣ୍ଟା ହୋଇଗଲାଣି । ସାହେବ କହିଲେ ପଚାଶ ଟଙ୍କା ରଖ, ମୁଁ ନୂଆ ଫାଉଡାଟେ ଦେବି ।

ଭାତ, ଡାଲି, ଆଳୁଭର୍ତ୍ତା ଖାଇ ପୁଅ ଖଟିଆରେ ଗଡ଼ିପଡ଼ିଲା ଓ ବୁଢ଼ା ଶାବଳ ଧରି ଗଲା ଖଣ୍ଡେ ଦୂରକୁ, ଦୁଇଘଣ୍ଟା ପରେ ଫେରିଲା ବେଳକୁ ମଙ୍ଗୁଲି ନିଦରୁ ଉଠି ବାହାରୁଥିଲା ଲଙ୍କାଆମ୍ବ ତଲାସରେ । ପୁଣି ତାକୁ ବାରଣ କରି ବୁଢ଼ା କହିଲା ଦେଖ– ଘର ଚାରିପାଖେ ମୁଁ ଗାତ ଖୋଳିଚି, ଗାତ ନ ଖୋଳିଲେ ରାତିରେ ସାପ ଆସିବେ ଲଶୁନ ଆଳୁଅକୁ ଦେଖି । ଗାତ ଖୋଳିବା ପାଇଁ ମୋତେ ଚାରିଦିନ ଲାଗିଗଲା, ପୁଣି ବର୍ଷାଦିନେ ପାଣି ବାହାର କରିବାକୁ ପଡ଼େ ଗାତ ଭିତରୁ । ଜଣେ ଲୋକ ମୁଁ, ମୋତେ ସବୁ କରିବାକୁ ପଡୁଚି ।

ପୁଅ ବାପାଙ୍କୁ କହିଲା ସ୍କୁଲ୍ କଥା, ମାଷ୍ଟ୍ରଙ୍କ କଥା, ଟ୍ରେନ୍ କଥା । ବାପ ଟ୍ରକ୍ ଦେଖିଚି ଟ୍ରେନ୍ ଦେଖିନାହିଁ, ପଚାଶଟା ଟ୍ରକ୍ ଏକାସାଙ୍ଗେ ଠିଆ କରିଦେଲେ, ଟ୍ରେନ୍ ସାଙ୍ଗେ ସମାନ୍ ହେବ ଶୁଣି ବାପ ବିଶ୍ୱାସ କଲା ନାହିଁ । "ଏତେଗୁଡ଼େ ଟ୍ରକ୍‌କୁ କିଏ ଟାଣିବ, ମିଛ କହୁଚୁ ।" ପୁଅ ବହୁତ ବୁଝେଇଲା ଟ୍ରେନ୍ ବିଷୟରେ, ବାପା ଶୁଣିଲା । ମୁଣ୍ଡ ଟୁଙ୍ଗାରିଲା କିନ୍ତୁ ତା' ଆଖି ହଳକ କହିଦେଉଥିଲା ଯେ, ସେ ମାନିବା ପାଇଁ ପ୍ରସ୍ତୁତ ନୁହେଁ । ଛଅଦିନ ସରିବା ପରେ ପୁଅର ଫେରିବା ସମୟ ହେଲା, ଫେରିବା ବାଟରେ ବାପ ପଚାରିଲା– ତୋ ପାଠ କେବେ ସରିବ କିରେ ?

ଆଉ ବର୍ଷେ, ମାଟ୍ରିକ୍ ପାସ୍ କରିବି ।

ଠିକ୍ ଅଛି; ମୁଁ ଡି.ଏଫ୍.ଓ.ଙ୍କୁ କହିବି ତୁ ମୋ ଜାଗାରେ ଚାକିରି କରିବୁ ।

ନାଇଁ ବାପା ମୁଁ ଅଫିସ୍‌ରେ କ୍ଲର୍କ ହେବି ।

ସେଗୁଡ଼ା କି ଚାକିରି କିରେ ? ଖାଲି ଚଉକିରେ ବସି ଲେଖିବା କାମ । ଦେଖ୍ ମୁଁ କେତେ ଭଲରେ ଅଛି, ସାରା ପାହାଡ଼ଟା ମୋର, ମୁଁ ଯାହା କହିବି ସେଇଆ ହେବ । ବଡ଼ ସାହେବ ଏଠାକୁ ଆସିଲେ ଆଗରୁ ଚିଠି ଲେଖି ଏଠାକୁ ଆସନ୍ତି । ପାହାଡ଼ ତଳେ ପୋଷ୍ଟବାକ୍ସ ଅଛି, ମୁଁ ପ୍ରତି ହାଟପାଳିରେ ଜିନିଷପତ୍ର କିଣେ ବାକ୍ସ ଦରାଣ୍ଡି କାଗଜ ଥିଲେ ନେଇଆସେ ।

ମଙ୍ଗୁଳି ପାଇଁ କିନ୍ତୁ କ୍ଲର୍କ ଚାକିରି ଭଲ । ବାପାକୁ ମୁହଁରେ କିଛି କହିପାରିଲା ନାହିଁ । ତାକୁ ତିନିବର୍ଷ ନ ହଉଣୁ ମା' ମରିଗଲା । ବାପ ତାକୁ ପାଳିପୋଷି ମଣିଷ କରିଚି– କିମିତିକା ବାପକୁ କହନ୍ତା ତା' ପାଇଁ କିରାଣି ଚାକିରି ଭଲ । ଚୁପ୍‌ଚାପ୍ ହୋଇ ସେ ବାପା ପାଖରେ ଠିଆହେଲା । ହଠାତ୍ ବାଁ ଆଡ଼କୁ ଆଙ୍ଗୁଠି ଦେଖେଇ କହିଲା– ହେଇ ଦେଖ୍ ସେ ପଥର ଯାହା ଉପରେ ବାଘ

ମହାପୁର ବସିଥିଲେ ସେଇଟାରେ ତୁ ଆଉ ମୁଁ ବସିଲୁ ଆଉ କାହାକୁ ବସିବା ପାଇଁ ମଉକା ମିଳିବ ? ଭାଲୁର ସାଙ୍ଗେ ହୁଏ ମୁହାଁମୁହିଁ ମୁକାବିଲା, ସେକଥା ଅଫିସ୍‌ର ବାବୁମାନେ କରିପାରିବେ ? ହୁଁ ହୁଁ ମାରି ମାରି ମଙ୍ଗୁଳି ସନାତନ ପଛେ ପଛେ ଚାଲିଲା । ପାହାଡ଼ରୁ ଓହ୍ଲେଇ ରାସ୍ତାକଡ଼ରେ ମଙ୍ଗୁଳିକୁ ସନାତନ ବସ୍‌ରେ ଚଢ଼େଇଲା । ଯିବା ପୂର୍ବରୁ ମଙ୍ଗୁଳି ସନାତନକୁ କହିଲା ଏ ବର୍ଷ ଖରାଛୁଟିରେ ଆସିପାରିବ ନାହିଁ । ସାର୍‌ମାନେ କହିଛନ୍ତି ଫାଇନାଲ୍ ଇଅର ପରୀକ୍ଷା ପାଇଁ ବେଶି ପାଠ ପଢ଼େଇବେ । ଅନ୍ୟମନସ୍କ ହୋଇ ବୁଢ଼ା କହିଲା– ସବୁପାଠ ସାରି ଆସିବୁ ।

ବୁଢ଼ା ପ୍ରତି ସପ୍ତାହରେ ପାହାଡ଼ରୁ ତଳକୁ ଓହ୍ଲାଇ ପନିପରିବା ନିଏ, ସେଇଠେ ଆଉ ଦି'ଜଣ ଫରେଷ୍ଟଗାର୍ଡଙ୍କ ସାଙ୍ଗେ ଦେଖାହୁଏ । ହଠାତ୍ ଫରେଷ୍ଟଗାର୍ଡମାନେ ଦେଖିଲେ ତିନି ସପ୍ତାହ ହେଲା ବୁଢ଼ା ଆସୁନି । ସେମାନେ ରେଞ୍ଜରକୁ କହିଲେ ଓ ରେଞ୍ଜର ଡି.ଏଫ୍.ଓ.ଙ୍କୁ ଜଣେଇଲେ । ଡି.ଏଫ୍.ଓ. ଫରେଷ୍ଟ ଷ୍ଟାଫଙ୍କୁ ଧରି ଗଲେ କାରଣ ଜାଣିବା ପାଇଁ ।

ମଙ୍ଗୁଳିର ପରୀକ୍ଷା ଆଉ ତିନିମାସ ଥାଏ, ଜଣେ ଫରେଷ୍ଟ ଗାର୍ଡ ଆଶ୍ରମ ସ୍କୁଲରେ ପହଞ୍ଚିଲା ଓ ହେଡ୍‌ମାଷ୍ଟ୍ରଙ୍କୁ କ'ଣ କହିଲା କେଜାଣି ସେ ସାଙ୍ଗେ ସାଙ୍ଗେ ମଙ୍ଗୁଳିକୁ ଡକେଇ ଫରେଷ୍ଟଗାର୍ଡ ସାଙ୍ଗେ ଗାଁକୁ ପଠେଇ ଦେଲେ ଓ ଜଲ୍‌ଦି ଫେରିଆସିବା ପାଇଁ ତାଗିଦ୍ କଲେ ।

ମଙ୍ଗୁଳି ଗାର୍ଡ ସାଙ୍ଗେ ଆସିଲା, ବାଟସାରା ଗାର୍ଡ ବହୁତ ବାଁରେଇଲା । ପାହାଡ଼ ଚଢ଼ିବା ସମୟରେ ବହୁତ ଥର ସେ ଆଡ଼କୁ ଦେଖିଲା, ବାପା ନିଶ୍ଚେ ହରିଣ ବେକ ଘଷିଥିବା ଗଛ ପାଖରେ କିମ୍ବା ଚକ୍‌ଚକ୍ କରୁଥିବା ପାହାଡ଼ ପଥର ଉପରେ ନହେଲେ ବାଘ ବସିଥିବା ପଥର ଉପରେ ବସିଥିବ- କାହିଁ ନାହିଁତ । ବାପ କୁଆଡ଼େ ଗଲା, ନିଜେ କାଇଁ ଆସିଲା ନାହିଁ, ହଁ ହେଇଥିବ ଗଛ ଲଗାଇବାରେ ବ୍ୟସ୍ତ ଥିବ । ବାପା କୁଆଡ଼େ ଗଲେ ପଚାରିଲା ମଙ୍ଗୁଳି ଫରେଷ୍ଟ ଗାଡର୍କୁ । ବୁଝେଇବା ଢଙ୍ଗରେ ଗାର୍ଡ କହିଲା– ଘରେ ପହଞ୍ଚିଲେ ଜାଣିବୁନି, ଏତେ ବ୍ୟସ୍ତ କାହିଁକି ହଉଚୁ ?

ଘରେ ପହଞ୍ଚିଲା ବେଳକୁ ଡି.ଏଫ୍.ଓ. ସାହେବଙ୍କୁ ଦେଖି ଗାର୍ଡ ସଲାମ ଠୁକିଲା । ଡି.ଏଫ୍.ଓ. ଆସି ମଙ୍ଗୁଳିର ଦି' କାନ୍ଧକୁ ଧରିପକେଇ ବୁଝେଇବା ସ୍ୱରରେ କହିଲେ– "ବାବୁରେ କ'ଣ କରିବା କହ, ତୋ ବାପାକୁ ବେମାର ହୋଇଗଲା, ଅସାଧ ମେଲେରିଆ, ମସ୍ତିଷ୍କକୁ ଧରିନେଲା ଓ ବିଚରା ବୁଢ଼ା ମରିଗଲା ନିଜ ଘରେ । ଆମ୍ଭେମାନେ ଜାଣି ବି ପାରିଲୁ ନାହିଁ । ଆଉ ତୁ ଜାଣିଚୁ ତାକୁ ଏବର୍ଷ ମେଡାଲ୍ ଦେବା ପାଇଁ ନିଷ୍ପତ୍ତି କରିଥିଲୁ ସବୁଠୁଁ ଭଲ ଜଙ୍ଗଲ ସୁରକ୍ଷା ପାଇଁ ।"

ଡି.ଏଫ୍.ଓ. ସାହେବ ଏତେ ତରତରରେ କହିଲେ ଯେ, ମଙ୍ଗୁଳି ଜମା ବୁଝିପାରିଲା ନାହିଁ, କେବଳ ବାପା ମରିବା କଥା ଛାଡ଼ି । ଛୋଟିଆ ରୁମ୍‌ଟାକୁ ତନ୍ନ ତନ୍ନ କରି ଅନେଇଲା, ସବୁ ଜିନିଷ ସେମିତି ଅଛି, ଶାବଳ ଫାଉଡାରେ ଶୁଖିଲା ମାଟି ଲାଗିରହିଚି । କାନ୍ଥରେ ବୁଢ଼ା ଅଙ୍ଗାରରେ ଅଙ୍କାବଙ୍କା କରି ଅନେକ ଗଛ ଆଙ୍କିଥାଏ । ବାରଣ୍ଡାରୁ ଖଣ୍ଡେ ଦୂରରେ ଅଛି ସେଦିନ ଲଗାଇଥିବା ଚାରାଗୁଡ଼ିକ । ଫୁଟେ ଉପରକୁ ଉଚ୍ଚା ହେଇଗଲାଣି । ସାରା ପାହାଡ଼ଟା ଦିଶୁଥିଲା ହାସ୍ୟମୟ, ଜୀବନମୟ ଓ ନିମନ୍ତ୍ରଣ କରୁଥିଲା । ଭାବନାକୁ ଭାଙ୍ଗି ଡି.ଏଫ୍.ଓ. କହିଲେ ଆଉ ଦୁଃଖ କରି ଲାଭ କ'ଣ ?

ଜଙ୍ଗଲକୁ ପୁଣିଥରେ ଅନେଇ କହିଲା ମଙ୍ଗୁଳି ମୁଁ ଚାକିରି କରିବି– ଏଇଠି ।



# ଛାୟା ଦର୍ଶନ

## ଅର୍ଚ୍ଚନା ନାୟକ

ପୂଜା ଛୁଟି କଟାଇବା ପାଇଁ ଦିଲ୍ଲୀରୁ ଘରେ ଆସି ପହଞ୍ଚିବା ପରେ ଜାଣିଲି ବଡ଼ ମାମୁଁ ପନ୍ଦର ଦିନ ତଳେ ଚାଲିଯାଇଛନ୍ତି । ପ୍ରଥମେ ମୋର କୌଣସି ପ୍ରତିକ୍ରିୟା ହେଲା ନାହିଁ । ପ୍ରାୟ ଦୀର୍ଘ ତିରିଶ ବର୍ଷରୁ ଅଧିକ ହେବ ମୋର ମାମୁଁଙ୍କ ସହିତ ସାକ୍ଷାତ୍ ହୋଇ ନାହିଁ ବା ଏଇ ସମୟ ଭିତରେ କୌଣସି ଯୋଗାଯୋଗ ମଧ୍ୟ ମୋର ତାଙ୍କ ସହିତ ନଥିଲା ।

ବାହାହେବା ପରଠରୁ ସ୍ୱାମୀଙ୍କ ଚାକିରି ପାଇଁ ମତେ ଓଡ଼ିଶା ବାହାରେ ହିଁ ରହିବାକୁ ପଡ଼ିଲା । ଯେବେ ଟିକେ ସୁଯୋଗ ମିଳେ କିଛି ଦିନ ପାଇଁ ଓଡ଼ିଶା ଆସିବାକୁ, ସେ ସମୟତକ ବାପଘର ଶାଶୁଘର ଭିତରେ ବାଣ୍ଟି ହୋଇଯାଏ । ଏକା ସହରରେ ଥିବା ସବୁ ସାଙ୍ଗ ସାଥୀ ଓ ବନ୍ଧୁବାନ୍ଧବଙ୍କ ସହିତ ଦେଖା ବି ହୋଇପାରେନା । ତେଣୁ ନିପଟ ମଫସଲରେ ଥିବା ମାମୁଁ ଘରକୁ ଯିବାର ସମୟ କେବେ କରିପାରିନି କି ସେଥିପାଇଁ ମୋର ଆଗ୍ରହ ମଧ୍ୟ ହୋଇନାହିଁ ।

ଆଜି ମାମୁଁ ଚାଲିଯାଇଥିବା ଖବର ଜାଣିବା ପରେ ମୋ ସ୍ମୃତିରେ ଅସ୍ପଷ୍ଟ ହୋଇ ସାରିଥିବା ତାଙ୍କ ମୁହଁଟି ଧୀରେ ଧୀରେ ତା'ର ଆକାର ନେଇ ସ୍ପଷ୍ଟ ହୋଇଉଠିଲା ଓ ତା' ସହିତ ସୁଦୂର ଅତୀତର ହଜିଯାଇଥିବା କିଛି ଘଟଣା ବି ସଜୀବ ହୋଇଉଠିଲା ମୋ ମନରେ ।

ସ୍କୁଲରେ ପଢୁଥିବା ପର୍ଯ୍ୟନ୍ତ ବିଭିନ୍ନ ଛୁଟିରେ ଆମେ ଆମ ଗାଁରେ ବା ମାମୁଁ ଘରେ କିଛି ଦିନ ଲେଖାଏଁ କଟାଉଥିଲୁ । ଆମ ଗାଁ ପରି ମାମୁଁ ଘର ଗାଁକୁ ଯିବା ଏତେ ସୁବିଧାଜନକ ନଥିଲା । ନଈ ନାଳ ପାର ହୋଇ କିଛିବାଟ ପାଦରେ ଚାଲିକି ସେ ଗାଁକୁ ଯିବାକୁ ପଡୁଥିଲା । ତେବେ ପିଲାଦିନେ ଏମିତି ଯିବା ଆସିବାର କଷ୍ଟ ଆଦୌ ଜଣା ପଡୁନଥିଲା ବରଂ ବେଶି ଆମୋଦଦାୟକ ଥିଲା ।

ମାମୁଁ ଘରେ ରହୁଥିଲେ ଆଈ, ଦୁଇଜଣ ମାମୁଁ, ମାଇଁ ଦି'ଜଣ ଓ ତାଙ୍କର ପିଲାମାନେ । ମୁଁ ମୋର ଭାଇ ଓ ମା' ପ୍ରାୟ ଯେତେବେଳେ ସେ ଗାଁକୁ ଯାଇଥାଉ ସେ ସମୟରେ ଛୁଟି ରହୁଥିବାରୁ ମାଉସୀ ଓ ତାଙ୍କ ପିଲାମାନେ ବି ଗାଁକୁ ଆସିଥାନ୍ତି । ଅଜାଙ୍କୁ ଆମେ କେହି ଦେଖିନୁ । ମା' ଓ ମାଉସୀ ବାହା ହେବା ପୂର୍ବରୁ ହିଁ ଅଜା ଚାଲିଯାଇଥିଲେ ।

ବଡ ମାମୁଁ ଥିଲେ ଖୁବ୍ ଶାନ୍ତ ଓ ଗମ୍ଭୀର ପ୍ରକୃତିର ମଣିଷ । ନିହାତି ଆବଶ୍ୟକ ମନେହେଲେ ଦୁଇଚାରି ପଦ କହନ୍ତି । ନହେଲେ ସବୁବେଳେ ସେ ନୀରବ ରହନ୍ତି । କିନ୍ତୁ ଅନ୍ୟମାନଙ୍କ କଥା ବେଶ୍ ମନଦେଇ ଶୁଣନ୍ତି । ପିଲାମାନଙ୍କର ଗହଳି ତାଙ୍କ ପାଖରେ ଜମେନି, ଜମେ ସାନମାମୁଁଙ୍କ ପାଖରେ । ସାନ ମାମୁଁ ସବୁବେଳେ ଖୁସି ଥାନ୍ତି । ମଜା ମଜା ଗପ କହନ୍ତି, ସବୁ ଭଣଜା ଭାଣିଜୀ, ନିଜ ପିଲାମାନଙ୍କୁ ନେଇ ନଈକୂଳ ଓ ଆମ୍ବତୋଟା ଆଖୁ କିଆରିରେ ବୁଲାନ୍ତି । ତେଣୁ ସାନ ମାମୁଁ ଯୁଆଡେ ସବୁ ପିଲାତକ ତାଙ୍କ ପଛରେ ପଛରେ ଚାଲିଥିବେ ।

କିନ୍ତୁ ମୁଁ ବଡ ମାମୁଁଙ୍କ ପାଖ ଛାଡୁନଥିଲି । ଯେତିକି ଦିନ ମାମୁଁ ଘରେ ରହେ ମୋର ପ୍ରାୟ ସବୁ ସମୟ କଟେ ତାଙ୍କରି ପାଖରେ । ସକାଳୁ ଗାଧୋଇ ସାରି ଠାକୁର ଘରେ ସେ ବହୁତ ସମୟ

ପୂଜା କରନ୍ତି । ପୂଜା ଅପେକ୍ଷା ସେ ଧ୍ୟାନରେ ବସୁଥିଲେ ବେଶି । ସେତେବେଳେ ଠାକୁର ଘର କବାଟ ଦରଆଉଜା ରହୁଥିଲା । ମୁଁ କବାଟ ଫାଙ୍କରୁ ମାମୁଁ କ'ଣ କରୁଛନ୍ତି ଜାଣିବା ପାଇଁ କୌତୂହଳୀ ହୋଇ ଚାହିଁଥାଏ । ଗୋଟିଏ ମୁଦ୍ରାରେ ଜଣେ ଏତେ ସମୟ କିପରି ନିଶ୍ଚଳ ହୋଇ ବସିପାରିବ, ମୁଁ ବୁଝିପାରୁ ନଥିଲି ।

ମାମୁଁଙ୍କ ପରି ମୁଁ ଆଉ କାହାକୁ ସେପରି କରିବାର ଦେଖୁନଥିଲି । ସମସ୍ତେ ଠାକୁର ଘରେ ପଶି ଏଣୁ ତେଣୁ କ'ଣ ସବୁ ଗୁଣୁ ଗୁଣୁ ହୋଇ ମୁଣ୍ଡିଆଟିଏ ମାରି ତର ତର ହୋଇ ବାହାରି ଆସୁଥିବା ବେଳେ ମାମୁଁଙ୍କର ଏହି ଧ୍ୟାନମୁଦ୍ରା ମତେ ଖୁବ୍ ପ୍ରଭାବିତ କରୁଥିଲା ।

ମାମୁଁ ଧ୍ୟାନ ସାରି ପ୍ରଣାମ କରିବା ବେଳେ ମୁଁ କବାଟ ଖୋଲି ଭିତରକୁ ପଶିଯାଏ । ସେ ଟିକେ ହସି ଦିଅନ୍ତି । ମୋ ମୁଣ୍ଡ ଆଉଁସି, ହାତରେ ଟିକେ ତୁଳସୀପତ୍ର ଦେଇ ତାଙ୍କ କାମରେ ବାହାରି ଯାଉଥିଲେ । ଦୁଇଦିନ ମତେ ସେହି ସମୟରେ ଠାକୁର ଘର ବାହାରେ ବସୁଥିବାର ଦେଖି ସେଦିନ ମାମୁଁ କହିଲେ- 'ତୁ କୁଆଡେ ବୁଲାବୁଲି ନକରି ଏଠି ଏତେବେଳ ଲେଖାଏଁ ବସୁଛୁ ? ଏଥର ଇଚ୍ଛା ହେଲେ ଭିତରେ ଆସି ବସିବୁ ।'

ଆଈ ସେଠି ଥିଲା । ସେ ଜାଣେ ମାମୁଁଙ୍କର ଧ୍ୟାନ ସମୟ ଭିତରେ ସୃଷ୍ଟି ପ୍ରଳୟ ହୋଇଗଲେ ବି ସେ ହଲ୍‌ଚଲ୍ ହେବେ ନାହିଁ, କିଛି ଶୁଣିବେନି । ସେ ପୂଜାଘରେ ପଶିଲେ ଅନ୍ୟମାନେ ସେଠାରୁ ଦୂରକୁ ଚାଲିଯାନ୍ତି, କେହି ପାଟିତୁଣ୍ଡ କରନ୍ତିନି । ସେଥିପାଇଁ ବୋଧେ ଆଈ କହିଲା- 'ସିଏ ସେଇ ବାହାରେ ବସୁ, ଭିତରକୁ ଗଲେ ତୋର ଅସୁବିଧା ହେବ ।'

'ସେ କାଲିଠାରୁ ଯଦି ଭିତରେ ବସିବାକୁ ଚାହିଁବ ବସିବ, ମୋର କିଛି ଅସୁବିଧା ହେବନି ।' ମାମୁଁ ଏତିକି କଥା କହିଦେବା ପରେ ମତେ ଆଉ କିଏ ଅଟକାଇ ପାରିବ ! ତା'ପରେ ଯେତିକି ଦିନ ମୁଁ ସେଠି ରହିଲି ମାମୁଁଙ୍କ ସାଙ୍ଗରେ ତାଙ୍କ ଧ୍ୟାନ ସମୟରେ ସେଇ ଘରେ ବସିରୁହେ । ମୁଁ ଗାଧୁଆ ପାଧୁଆ ନକରି ପୂଜା ଘରକୁ ଯାଉଥିବାରୁ ମାଇଁ ଅସନ୍ତୁଷ୍ଟ ହେଉଥିଲେ କିନ୍ତୁ ମାମୁଁ ଯେତେବେଳେ ମୁଁ ଅଗାଧୁଆ ବୋଲି ଆପତ୍ତି କରୁନଥିଲେ ସେ ବିଷୟରେ କିଏ ଆଉ କ'ଣ କହିବ !

ମୁଁ ଆଖିବୁଜି ଏତେ ସମୟ ବସୁଥିବାରୁ ମୋ ମା'ର ସେଥିପାଇଁ ବଡ଼ ଚିନ୍ତା ହେଉଥିଲା । ଅନ୍ୟ ପିଲାଙ୍କ ପରି ବୁଲାବୁଲି ନ କରି ମୁଁ ଠାକୁର ଘରେ ଏତେ ସମୟ କାହିଁକି ବସୁଛି ବୋଲି ସେ ମୋ ଉପରେ ଟିକେ ବିରକ୍ତ ବି ହେଉଥିଲା । ସେ ଭାବୁଥିଲା, ମୁଁ ଆଉ ଯୋଗିନୀଟିଏ ହୋଇଯିବିକି ! ସଂସାରରୁ କାଳେ ମନ ଛାଡ଼ି ଯିବକି !

ହାୟ ଭାଗ୍ୟ, ଜୀବନର ଏତେ କଷ୍ଟ ବିତିଗଲା ଅଥଚ ଧ୍ୟାନ ତ ଦୂରର କଥା ସାଧାରଣ ଏକାଗ୍ରତା ବି ଆସିଲାନି । ସଂସାରରୁ ମନ ତ ଛାଡ଼ିନି ଏଣେ ସଂସାର ପୁଣି ତା'ର ସହସ୍ର ବାହୁରେ ମତେ ଜଡ଼ାଇ ଧରିଛି । ମୁଁ ଯେ ପିଲାଦିନେ ଏତିକି ସମୟ ବସିପାରୁଥିଲି ତା' କେବଳ ମାମୁଁଙ୍କ ଧ୍ୟାନର ପ୍ରଭାବ, ଆଉ କିଛି ନୁହେଁ ।

ମାମୁଁଘର ଗାଁରେ ମାଛ ସୁବିଧାରେ ମିଳେନି । ସେଥିପାଇଁ କାହାର କିଛି ଅସୁବିଧା ହେଉନଥିଲା । କେବଳ ମୁଁ ହିଁ ବିନା ମାଛରେ ଭାତ ପାଖରେ ବସୁନଥିଲି । ଭାଣିଜୀ ମାଛ ଭଲପାଏ ବୋଲି ନଈ କି ପୋଖରୀରୁ ଯେମିତି ହେଲେ କିଛି ମାଛ ଧରିବାର ବ୍ୟବସ୍ଥା ମାମୁଁ କରୁଥିଲେ ।

ଦୁଇ ମାମୁଁ ଆମିଷ ଖାଉ ନଥିଲେ, ମାଇଁ ବି ଆମିଷ ଛାଡ଼ି ଦେଇଥିଲେ । ତେଣୁ ରୋଷ ଘରେ ସେ ଆମିଷ ନ ପୂରାଇ ବାହାରେ ଥିବା ଚୁଲିରେ କଦବା କ୍ୱଚିତ୍ ତାଙ୍କ ପିଲାଙ୍କ ପାଇଁ ଓ ଆଈ ପାଇଁ ରାନ୍ଧି ଦେଉଥିଲେ । ଆମେ ଥିବାବେଳେ ପ୍ରତିଦିନ ଆଇଁଷ ତରକାରୀ ହେଲା । ସେଥିରେ ତାଙ୍କ ପିଲାମାନେ ଭାରି ଖୁସି । ମତେ ଏକୁଟିଆ ଦେଖି କହନ୍ତି- 'ତୁ ଏଠି ରହୁନୁ । ସାଙ୍ଗହୋଇ ସ୍କୁଲ୍ ଯିବା, ଖେଳିବା ।' ସେମାନଙ୍କର ଏ ଅହେତୁକ ଆଗ୍ରହ ପଛରେ ମାଛର ମହିମା ମୁଁ ବୁଝିପାରୁଥିଲି ।

ଦିନେ ଏହି କାରଣରୁ ବେଶ୍ ଅଡୁଆ ପରିସ୍ଥିତିଟିଏ ହେଲା । ଆମ ପିଲାମାନଙ୍କ ପାଇଁ ଓ ବଡ଼ମାମୁଁଙ୍କ ପାଇଁ ଏକା ସାଙ୍ଗରେ ବଢ଼ା ହେବାର ବ୍ୟବସ୍ଥା କରାଯାଇଥିଲା । ଆମ ପିଲାଙ୍କ ସଂଖ୍ୟା ସେଦିନ ଅଧିକ ଥିବାରୁ ଆମପାଇଁ କଦଳୀ ପତ୍ରରେ ବଢ଼ା ହେଉଥାଏ । ମାମୁଁଙ୍କର ଆସନ କିଛି ଦୂରରେ ପଡ଼ିଥିଲା । ତାଙ୍କ ପାଇଁ ବଢ଼ା ହୋଇଥିବା କଂସାବାସନ ସୁନା ପରି ଝଟକୁ ଥିଲା । କଂସା ଥାଳିରେ, ଧୋବ ଫରଫର ଅରୁଆ ଭାତରେ ଆଈ, ଘର-ମରା ଗାଈଘିଅ ଢାଳିଦେବା ବେଳେ ଖଣ୍ଡମଣ୍ଡଳ ମହମହ ହୋଇ ବାସିଉଠିଲା । କିନ୍ତୁ ଆମେ ଭାତରେ ମାଛ ଖାଇବୁ ବୋଲି ଆମ ଭାତରେ ଆଈ ଘିଅ ଦେଲାନି । ମୋର ମନ ସେଇ ମାମୁଁଙ୍କ ଥାଳିରେ । ମୁଁ ସିଆଡ଼େ କେମିତି ଚାହୁଁଥିଲି କେଜାଣି ମାମୁଁ ଜାଣିପାରି ତାଙ୍କ ସହିତ ଖାଇବାକୁ ଡାକିଲେ ।

ମୁଁ ଯେମିତି ସୁଯୋଗର ଅପେକ୍ଷାରେ ଥିଲି । ସେହିକ୍ଷଣି ପତ୍ର ଛାଡ଼ି ଉଠି ପଡ଼ିବା ବେଳକୁ ଆଈ ପାଟି କରି ଉଠିଲା- 'ହେ ଟୋକୀ, ସିଆଡ଼େ କୁଆଡ଼େ ଯାଉଛୁ ?'

ମାମୁଁ କହିଲେ- 'ମୁଁ ତାକୁ ଡାକିଛି, ସେ ମୋ ସହିତ ଖାଇବ ।'

'ଆରେ ସେ ଆଇଁଷଖିଆ ଠାକୁରାଣୀକୁ ତୁ କେମିତି ଡାକୁଛୁ ? ମାଛ ନହେଲେ ତା'ର ଗୁଣ୍ଡା ଯାଉନି, ତୋ ସାଙ୍ଗେ କେମିତି ଖାଇବ ?

ଆଈ ପାଟିରେ ମୁଁ ପତ୍ର ଛାଡ଼ି ଉଠୁ ଉଠୁ ପୁଣି ବସି ପଡ଼ିଲି । ମାମୁଁଙ୍କ ସାଙ୍ଗରେ ଖାଇଲେ ମାଛ ମିଳିବନି, ମାଛ ଖାଇଲେ ସେ ସୁନ୍ଦରିଆ କଂସାବାସନରେ ବଢ଼ାଯାଇଥିବା ବାସୁମତୀ ଚାଉଳର ଘିଅପକା ଭାତ ମିଳିବନି । ଅନ୍ୟସବୁ ପିଲା ସେତେବେଳକୁ ତାଙ୍କର ଖାଇବା ଆରମ୍ଭ କରିସାରିଲେଣି । ମୋ ଆଡ଼କୁ ଅନେଇବାକୁ କାହାର ବେଳ ଅଛି ।

ମାମୁଁ ମୋ ଅବସ୍ଥା ଲକ୍ଷ୍ୟକରି ହସି ହସି କହିଲେ– 'ମିନୁ ଏଇଠି ମୋ ସାଙ୍ଗରେ ଖାଇବ । ତା' ମାଛ ବି ଏଇଠିକି ଦିଅ ।'

ମାଇଁ ଚମକିପଡ଼ି କହିଲେ– 'ଇଏ କି କଥା, ତୁମ ଥାଳିରେ ସେ କେମିତି ଆଇଁଷ ଖାଇବେ ?'

ମାମୁଁ ସେମିତି ନିର୍ବିକାର ହସିହସି କହିଲେ– 'ସେଥିରେ କ'ଣ ଅଛି । ସେ ତା'ର ଯାହା ଖାଉଛି ଖାଉ, ଆ ମା' ଏଠିକି ଆ ।'

ଆଈର ଆଖି ଦେଖା, ମାଇଁଙ୍କର ନାକ ଟେକାକୁ ଖାତିର ନ କରି ମୁଁ ମାମୁଁଙ୍କ ସାଙ୍ଗରେ ବସି ସେଦିନ ଘିଅପକା ଅରୁଆ ଭାତ ଓ ମାଛ ତରକାରୀ ଖାଇଥିଲି । ମୋର ସେତେବେଳେ ଆମିଷ ନିରାମିଷ ଛୁଆଁଛୁଇଁର ସାଂଘାତିକ ବ୍ୟବସ୍ଥା ବିଷୟରେ କିଛି ଧାରଣା ନଥିଲା ।

ପରେ ମା ଯେତେବେଳେ କେଉଁ ଭଲମନ୍ଦ ଦିନରେ ଏଇଟା ଛୁଁନା, ସେଇଟା ଛୁଁନା, ହେଇ ଗୁରୁବାରଟାରେ ପିଆଜରେ ହାତ ମାରିଲାଣି ପ୍ରଭୃତି କହି ବିରକ୍ତ ହୁଏ, ମୋର ମାମୁଁଙ୍କ କଥା ମନେପଡ଼ିଯାଏ । ଭାବେ ମାମୁଁଙ୍କର ସ୍ଥିର ଚିତ୍ତବୃତ୍ତିର କାଣିଚାଏ ପଛେ ନାହିଁ, ଖାଲି ବାଜେ

କଥାରେ ବିରକ୍ତ ହେଉଛି ଓ ବିରକ୍ତ କରୁଛି । ସେଦିନର ସେଇ ସାନ ଘଟଣାଟି ମୋ ମନରୁ ଅନେକ ଅର୍ଥହୀନ ସଂସ୍କାରକୁ ଦୂର କରିବାରେ ସାହାଯ୍ୟ କରିଥିଲା ।

ମାମୁଁଙ୍କୁ ନେଇ ଆଉ ଏପରି ଏକ ଘଟଣା ଘଟିଥିଲା ଯାହା ଭୁଲିବାର ନୁହେଁ । ଆଈର ଦେହ ଖରାପ ହେବା ଖବର ପାଇ ମୁଁ ଓ ମା' ମାମୁଁ ଘରକୁ ଆସିଥାଉ । ବାପା ଓ ଭାଇ ବିଶେଷ କ'ଣ ଅସୁବିଧା ଥିବାରୁ ଆମ ସହିତ ଆସି ପାରି ନଥିଲେ । ଆଈ ଟିକେ ଟିକେ ଚଲାବୁଲା କରିପାରୁଥିଲା, ହେଲେ ବିଛଣାରେ ପ୍ରାୟ ଶୋଇ ରହୁଥିଲା । ତା'ର କ'ଣ ହେଉଥିଲା କେଜାଣି ! ସେଦିନ ମତେ ପାଖକୁ ଡାକି କହିଲା– ମୋ ଧନଟା ପରା, ଭାଗବତ ଟିକେ ପଢ଼ିଲୁ ଶୁଣିବି ।

ମୁଁ ମନଧ୍ୟାନ ଦେଇ ଆଗକୁ ପଛକୁ ଝୁଙ୍କି ଝୁଙ୍କି ଭାଗବତରୁ କୃଷ୍ଣ ଜନ୍ମ ପ୍ରସଙ୍ଗ ବୋଲୁଥାଏ । ଆଈ ବାରମ୍ବାର ଦୁଇହାତ ଯୋଡ଼ି ମୁଣ୍ଡରେ ଲଗାଉଥାଏ । ଏଣେ ତା' ଆଖିରୁ ଧାର ଧାର ଲୁହ ବୋହି ଯାଉଥାଏ ।

ମାମୁଁ କେତେବେଳେ ଆସି ସେ ଘରେ ଠିଆ ହୋଇ ଶୁଣୁଛନ୍ତି ମୁଁ ଜାଣିପାରି ନଥିଲି । ତାଙ୍କ ଉପରେ ମୋ ଆଖି ପଡ଼ି ଯିବାରୁ ମୁଁ ଭାଗବତ ପଢ଼ା ବନ୍ଦ କରିଦେଲି । ମୁଁ କାହିଁକି ବନ୍ଦ କଲି ବୋଲି ମାମୁଁ ପଚାରିଲେ । କିନ୍ତୁ ଆଈ ମତେ ଆଉ ନ ପଢ଼ିବା ପାଇଁ ଇସାରା କଲା ।

ମୁଁ ବହି ବନ୍ଦ କରି କାନ୍ଥ କଡ଼କୁ ଘୁଞ୍ଚି ବସିଲି । ମାମୁଁ ଆଈର ଗୋଡ଼ ପାଖରେ ବସି ତା' ଗୋଡ଼ ଆଉଁସିବାକୁ ଲାଗିଲେ । ଆଈ ହଠାତ୍ ତାଙ୍କୁ କହିଲା– 'ପୁଅ, ମୋର ଆଉ ଏ ସଂସାରରେ ରହିବାକୁ ମନ ଡାକୁନି ।'

'ସତ କହୁଛୁ ବୋଉ ? ତେବେ ସଂସାରରୁ ମନକୁ ଦୂରେଇ ନେଇ ପତିତପାବନଙ୍କ ପଦାରବିନ୍ଦରେ ମନ ଲଗେଇ ରଖ । ମୁକ୍ତି ପାଇଯିବୁ ।'

'ପୁଅ, ତତେ ଗୋଟେ କଥା କହିବାକୁ ଭାବୁଥିଲି ।'

'କହ ବୋଉ ! ଯାହା ତୋ ମନରେ ଅଛି ଖୋଲି କରି କହିଦେ । କୋଉଥିରେ ଯଦି ଆଶା ରହିଯାଇଛି, ସଙ୍କୋଚ ନ କରି ମତେ କହ ।

'ନା ପୁଅ, କୋଉ ଜିନିଷରେ ମୋର ଆଶା ନାହିଁ । ମୁଁ ଜାଣେ ତୁ ଗୋଟେ ସନ୍ନ୍ୟାସୀ, ମୋର ପୁଅ ହୋଇଆସିଛୁ । ତାହା ହିଁ ମୋର ସବୁଠାରୁ ବଡ଼ ଭାଗ୍ୟ । ତତେ ଗୋଟେ କଥା କହିବି ରଖିବୁ ?'

ମାମୁଁ ନୀରବରେ ଆଈ କଥା ଶୁଣିବାକୁ ଅପେକ୍ଷା କଲେ । ମୁଁ ଯେ ସେଠି କାନ୍ଥ କଡ଼ରେ ବସିଛି ସେ ଦିଗରେ ମା' ପୁଅ ଦୁହିଁଙ୍କର ଲକ୍ଷ୍ୟ ନଥାଏ ।

ଆଈ ଧୀରେ ଧୀରେ କହୁଥାଏ, 'ମୁଁ ଜାଣିଛି ପୁଅ, ତତେ ଗୋଟେ ବିଦ୍ୟା ଜଣାଅଛି । ଜଣଙ୍କର ମରଣ ଛ'ମାସ ଭିତରେ ହେବାର ଥିଲେ ତୁ ପରା ଜାଣିପାରୁ । ମତେ ଟିକେ କହନ୍ତୁନି ମୁଁ ଆଉ କେତେଦିନ ଭିତରେ ଯିବି ।'

ମାମୁଁ ତା' କଥାକୁ ଏଡ଼େଇ ଦେବାକୁ ଯେତେ ଚେଷ୍ଟା କଲେ ଆଈ ସେତିକି ଜିଦ୍ କଲା । ସେ ଯେମିତି ହେଲେ ଜାଣିବ ତା'ର ମୃତ୍ୟୁ କେବେ ହେବ ! ସତେ ଯେମିତି ସେ ଯିବା ପାଇଁ ପୂରା ପ୍ରସ୍ତୁତ ହୋଇସାରିଥିଲା । କେବଳ କେବେ ଯିବ ସେତିକି ଜାଣିବା ଥିଲା ତା'ର ବାକି । ଶେଷରେ ଅତ୍ୟନ୍ତ ବାଧ୍ୟବାଧକତାରେ ମାତୃଋଣ ଶୁଝିବା ପାଇଁ ବୋଧ ମାମୁ ରାଜି ହେଲେ । ମାମୁଁ ଆଈକୁ କହିଲେ 'ତୁ କାଲି ସକାଳେ ସୂର୍ଯ୍ୟୋଦୟ ବେଳକୁ ଖଳା ବାରିକୁ ଯାଇପାରିବୁ କି ?'

ଆଈ ସେହିକ୍ଷଣି ରାଜି ହୋଇଗଲା । ସେ ଯେ ଯିବା ପାଇଁ ସମର୍ଥ ଅଛି ଦେଖେଇବାକୁ ବିଛଣାରେ ସିଧା ହୋଇ ବସି ପଡ଼ିଲା ।

ମାମୁଁ ବାହାରିଗଲେ । ମୁଁ କିଛି ନ ଜାଣିବା ପରି ଏଣେତେଣେ ବୁଲିଲି । ମୁଁ ଜାଣେନି ସେଦିନ ରାତିରେ ଆଈ ଶୋଇପାରିଥିଲା କି ନାହିଁ କିନ୍ତୁ ମୋ ଆଖିରେ ନିଦ ନଥିଲା । ମୋର ଉତ୍କଣ୍ଠିତ ଅପେକ୍ଷା ଥିଲା ପରଦିନ ସୂର୍ଯ୍ୟୋଦୟ ବେଳାକୁ ।

ପାହାନ୍ତା ପହରକୁ ମୋ ଆଖି ଟିକେ ଲାଗି ଯାଇଥିଲା । ଚାଉଁକିନା ନିଦଟା ଭାଂଗିଗଲା । ମୁଁ ଉଠିପଡ଼ି ଦୌଡ଼ିଲି ଆଈ ଶୋଉଥିବା ବଖରାକୁ । ସେ ସେଠି ନଥିଲା । ମୁଁ ଜାଣିଥିଲି ସେ କୁଆଡ଼େ ଯାଇଥିବ, ସେଇ ଦିଗରେ ଦଉଡ଼ିଲି । ସେ ପର୍ଯ୍ୟନ୍ତ କେହି ପିଲା ଉଠି ନଥିଲେ । ଘରର ସ୍ତ୍ରୀଲୋକମାନେ ନିତ୍ୟକର୍ମ ସାରି ନଈରେ ଗାଧୋଇ ଆସିବାକୁ ହୁଏତ ବାହାରି ଯାଇଥିଲେ । ଆଈ ରହୁଥିବା ଖଞ୍ଜାରେ ଖଳା ବାରିଆଡ଼େ କାହାରି ଆସିବା ଯିବା ନଥିଲା । ମୁଁ ସନ୍ତର୍ପଣରେ ଖଳା ବାରି ପାଖରେ ଥିବା ଗୋଟ ବୁଦା ଆଢୁଆଳରେ ଲୁଚି ବସିଲି ।

ଖଳା ବାରିର ମଝିଆମଝି ଆଈ ଓ ମାମୁଁ ଠିଆ ହୋଇଥାନ୍ତି । ଆଈ ତା' ପିନ୍ଧା ଲୁଗାକୁ ଦେହରେ ଭିଡ଼ିଭାଡ଼ି ପିନ୍ଧିଥାଏ । ତଳକୁ ଝୁଲୁଥିବା ଲୁଗାର ଅଂଶକୁ କଛାମାରି ଦେଇଥିଲା । ତେଣୁ ତା'ର ଦୁଇଗୋଡ଼, ଦୁଇହାତ ଖୋଲା ରହିଥାଏ । ସିଧା ହୋଇ ଠିଆ ହେବାର ବଳ ତା'ର ନଥିଲା । କିନ୍ତୁ ତା'ର ମନୋବଳ ଏତେ ଅଧିକ ଥିଲା ଯେ, ସେ ମାମୁଁଙ୍କ କଥା ଅନୁସାରେ ସେଇ ସମୟତକ ତା' ଅଣ୍ଟାରେ ଦୁଇକଡ଼େ ଦୁଇହାତ ଦେଇ ବାଡ଼ିପରି ଠିଆ ହୋଇପାରିଥିଲା ।

ମୋର ଏଣେ ନିଃଶ୍ୱାସ ବନ୍ଦ ହୋଇଯିବା ପରି ଅବସ୍ଥା । ଖୋଲା ପାଟି ଦେଇ କ'ଣ ଗୋଟେ ଉଡ଼ାପୋକ ପଶିଗଲା ତଣ୍ଟି ଭିତରକୁ । ଦେହଟା ଶିର୍‌ଶିର୍ ହୋଇ ଭିତରୁ ପ୍ରଚଣ୍ଡ କାଶଟେ ଉଠିଆସୁଥିଲା । ମୁଁ ନାକ ପାଟିକୁ ପ୍ରାଣ ବିକଳରେ ମାଡ଼ିଧରି ବନ୍ଦ କରି ରଖିଲି । ମୋର ସେଠି କାଶି ଦେବା ଅର୍ଥ ସବୁକିଛି ଭଣ୍ଡୁର ହୋଇଯିବା । ବିଚାରି ଆଈ ମଲା ବିଛଣାରୁ କ'ଣ ଢାଣିବ ବୋଲି ଆସି ଏତେ ଦମ୍ଭରେ ଏଠି ଠିଆ ହୋଇଛି । ମାମୁଁଙ୍କର ଏକାଗ୍ରତାରେ ବି ବାଧା ଆସିଯିବ, ଯଦି ସେ ଜାଣିପାରିବେ ମୁଁ ସେଠି ଲୁଚିରହି ତାଙ୍କୁ ଲକ୍ଷ୍ୟ କରୁଛି ।

ମାମୁଁ ଆଖିବୁଜି ଆଈ ଆଗରେ ଠିଆ ହୋଇ ନିଜ ଡାହାଣ ହାତର ବିଶି ଆଙ୍ଗୁଠିରେ ଶୂନ୍ୟରେ ଅଙ୍କ କଷିବା ପରି କିଛି କରୁଥାନ୍ତି । ବୁଦା ଭିତରେ କ'ଣ ସବୁ ପୋକଜୋକ ମୋ ଦେହରେ ଚଢ଼ିଯାଉଥାନ୍ତି । ମୁଁ ତାଙ୍କୁ ନିଃଶବ୍ଦରେ ଛାଡ଼ିଦେଇ ଏକା ଲକ୍ଷ୍ୟରେ ଚାହିଁଥାଏ; ମାମୁଁ ଆଈକୁ କ'ଣ ଦେଖେଇବାକୁ ଯାଉଛନ୍ତି ।

ସୂର୍ଯ୍ୟ ପୂର୍ବ ଦିଗନ୍ତରେ ଉଠି ଆସିଲେ । ଆଈ ସୂର୍ଯ୍ୟଙ୍କୁ ପଛ କରି ଠିଆ ହୋଇଥାଏ । ତା' ଛାଇଟା ଲମ୍ବିଯାଇଥାଏ ଆଗକୁ । ଛାଇରେ ସ୍ପଷ୍ଟ ବାରିହୋଇପଡୁଥାଏ ତା'ର ହାତ ଗୋଡ଼ ଦେହ ଓ ମୁଣ୍ଡ ।

ମାମୁଁ ତା'ଠାରୁ କିଛି ଦୂରକୁ ଘୁଞ୍ଚିଗଲେ ଓ ଆଣ୍ଠୁମାଡ଼ି ବସି କ'ଣ ସବୁ ମନକୁ ମନ ପଢ଼ିବାକୁ ଲାଗିଲେ । ଗୋଟେ ଧାଡ଼ି ସେ ବାରମ୍ବାର ଉଚ୍ଚାରଣ କରୁଥିଲେ ଯେଉଁଥିରୁ ଦୁଇ ଚାରିଟା ଶବ୍ଦ ମୋର ମନେ ରହିଯାଇଥିଲା । ଆକାଶକୁ ଅନାଇ ହାତରେ ଏକ ନିର୍ଦ୍ଦିଷ୍ଟ ମୁଦ୍ରା କରି ପ୍ରତି ପଦର ଆଗରେ ସେ ଉଚ୍ଚାରଣ କରୁଥିଲେ 'ମେଘସ୍ୟ ଉପରି ଯୋ ମେଘଃ, ସୂର୍ଯ୍ୟସ୍ୟ ଉପରି ଯୋ ସୂର୍ଯ୍ୟଃ ।'

ଏଇ ଦୁଇଟା ଶବ୍ଦ ମୁଁ ଜାଣିଥିଲି ବୋଲି ମନେ ରହିଗଲା । ଆଉ ସବୁ ଥିଲା ମୋ ପାଇଁ ସଂପୂର୍ଣ୍ଣ ଦୁର୍ବୋଧ । ମାମୁଙ୍କ ଉପରୁ ଆଖି ଫେରେଇ ଆଣି ମୁଁ ଆଈକୁ ଓ ତା' ଛାଇକୁ ଚାହିଁଲି । ଏ ଭିତରେ ତା' ଛାଇ ଆଉ ଛାଇ ହୋଇ ରହିନି ପୂରା ମଣିଷଟେ ପରି କେମିତି ଜୀବନ୍ତ ଦିଶୁଥିଲା । ଛାଇଟା ଆଈ ଦେହର ଅବିକଳ ଅନୁରୂପ ଥିଲା, କିନ୍ତୁ ଜଣାଯାଉଥିଲା ସେ ଯେମିତି ଭିନ୍ନ ଏକ ସ୍ୱତନ୍ତ୍ର ସତ୍ତା ! ଚାହିଁଲେ ସେ ଛାୟାରୂପଟି ଆଈଠାରୁ ଅଲଗା ହୋଇଯାଇପାରିବ ।

ମୁଁ ଆଶ୍ଚର୍ଯ୍ୟ ହୋଇ ଦେଖୁଥାଏ ଅଦ୍ଭୁତ ଛାଇକୁ । ମାମୁଁଙ୍କ ପାଟି ଶୁଣାଗଲା, 'ବୋଉ ତୋ ଛାଇକୁ ଚାହିଁ ରହ, ମୁଁ ଯାହା ପଚାରୁଛି ଉତ୍ତର ଦେ ।'

ଆଈ ହଁ କହି ଏକା ଲକ୍ଷ୍ୟରେ ତା' ଛାଇକୁ ଚାହିଁଥାଏ ।

ମାମୁଁ ପଚାରିଲେ- 'ବୋଉ ଚାହିଁ ଦେଖ, ତୋ ଛାଇରେ ତୋ ଗୋଡ଼ ଦୁଇଟା ଦିଶୁଛି ତ ?'

- ହଁ ପୁଅ ଦିଶୁଛି ।
- ହାତ ଦି'ଟା ଦିଶୁଛି ତ ?
- ହଁ ପୁଅ ।
- ତୋ ଦେହଟି ପୂରା ଦିଶୁଛି ?
- ଦିଶୁଛି । କିନ୍ତୁ ପୁଅ !!
- କ'ଣ ଦିଶୁନି ତତେ ?
- ଛାଇର ମୁଣ୍ଡ ତ ଦିଶୁନି ।
- ଭଲ କରି ନିରେଖି ଚାହାଁ ।
- ନା, ପୁଅ ମୁଣ୍ଡ ନାହିଁ ଛାଇରେ, ମୁଁ ଦେଖିପାରୁଛି ।

ମୁଁ ବୁଦା ଉହାଡ଼ରୁ ଧୀରେ ବେକ କାଢ଼ି ଭଲକରି ଆଈର ଛାଇକୁ ଚାହିଁଲି । ସତ କଥା ତ ଛାଇର ମୁଣ୍ଡଟା କୁଆଡେ ଗଲା ! ଏଇ କିଛି ସମୟ ତଳେ ତ ସେ ଛାଇ ରୂପଟି ନିଟୋଳ ଥିଲା ।

ଦେଖିଲି ମାମୁଁ ଆଇ ପାଖକୁ ଆସି ତା' ଲୁଗାପଟା, ସଜାଡ଼ି ଦେଉ ଦେଉ କହିଲେ - 'ବୋଉ ଏଥର ଚାଲ୍ ଘରକୁ ଯିବା ।'

ଆଈ ହଠାତ୍ ଯେମିତି ତା'ର ପୂର୍ବ ଅବସ୍ଥାକୁ ଫେରି ଆସିଲା । ତା' ଅଣ୍ଟା ନଇଁ ପଡ଼ିଲା, ସେ ଆଉ ଠିଆ ହୋଇପାରିଲାନି । ମାମୁଁ ତାକୁ ପ୍ରାୟ ଟେକି ଟେକି ନେଇ ତା' ଘରେ ବିଛଣାରେ ଶୁଆଇଲେ ।

ମୁଁ ବୁଦାରୁ ବାହାରି ତାଙ୍କ ପଛେ ପଛେ ଆସି ଆଈ ଘରର ଝରକା ପଛ ପାଖରେ କାନପାତି ଠିଆ ହେଲି । ଶୁଣିପାରିଲି ଆଈ ପଚାରୁଛି 'କହିଲୁନି ତ ପୁଅ, କ'ଣ ଦେଖିଲୁ ମୋ କଥା ?'

ମାମୁଁ ତାଙ୍କର ସେଇ ଶାନ୍ତ ଧୀର ସ୍ୱରରେ କହିଲେ- ବୋଉ, କାହାର ମୃତ୍ୟୁ ବିଷୟରେ ଜାଣିଲେ ବି ପ୍ରକାଶ କରିବା ଶାସ୍ତ୍ରରେ ମନା । ନିର୍ଭୀକ ମଣିଷଟିଏ ମୃତ୍ୟୁକୁ ଭୟ କରେ ନାହିଁ ବୋଲି ମନରେ ଯେତେ ସାହସ ରଖିଥିଲେ ବି ମୃତ୍ୟୁ ତା'ର ନିକଟେଇ ଆସିଲାଣି ବୋଲି ଜାଣିଲେ ଆତଙ୍କିତ ହୋଇପଡ଼େ । ବଞ୍ଚିବାର ନାନା ଉପାୟ ପାଞ୍ଚୁଥାଏ । ଜୀବନକୁ ଅହରହ ନିନ୍ଦୁଥିବା ମଣିଷ ବି ବିକଳ ହୋଇ ନିର୍ବାପିତ ହୋଇ ଯାଉଥିବା ଜୀବନକୁ ସାରୁ ପତ୍ରରେ ବାନ୍ଧି ରଖିବାକୁ ଚେଷ୍ଟା କରେ । ତେଣିକି ବଞ୍ଚି ରହିବାର ସମୟ କେବଳ ଆତଙ୍କରେ ଛଟପଟ ହୁଏ । ଅନାଗତ ନ ଜାଣିଲେ ଭଲ । ତୁ ଠାକୁରଙ୍କୁ ଡାକୁଥା ।'

ଆଈ ତା'ର କ୍ଷୀଣ କଣ୍ଠରେ ବି ଦୃଢ଼ତାର ସହ କହିଲା- 'ପୁଅ ତୁ ଯାହା କହୁଛୁ ସବୁ ସତ । କିନ୍ତୁ ମୁଁ ଆରପାରି ପାଇଁ ପ୍ରସ୍ତୁତ ହୋଇସାରିଛି ବୋଲି ତତେ ଏତେବଡ଼ କଥାଟାଏ କରିବାକୁ କହିଲି । ମୁଁ କ'ଣ ଜାଣେନା ଯେ ତୁ କେବଳ ତୋ' ମା'ର ଶେଷ ଇଚ୍ଛା ପୂରଣ କରିବାକୁ ବାଧ୍ୟ ହୋଇ ମତେ ଛାଇ ରୂପରେ ମୋ କା'କୁ ଦର୍ଶନ କରେଇ ଦେଇଛୁ । ତୁ ଯାହା ଜାଣିଲୁ ମତେ ସତ କରି କହ ।'

ମାମୁଁ ଏଥର ସେମିତି ଧୀର ସ୍ୱରରେ କହିଲେ- 'ବୋଉ ତୋର ଆଉ ଆୟୁଷ ନାହିଁ ବୋଲି ଜାଣ । ଯେକୌଣସି ମୁହୂର୍ତ୍ତରେ ଚାଲିଯିବୁ । ପତିତପାବନଙ୍କ ପାଖରେ ମନ ରଖ ।'

ଆଈ ଶାନ୍ତିରେ ନିଃଶ୍ୱାସ ମାରିଲା । ଦୁଇହାତ ଯୋଡ଼ି ଉପରକୁ ଚାହିଁ ନମସ୍କାର କଲା । ମାମୁଁ ଚୁପ୍‌ଚାପ୍ ତା' ଘର ଭିତରୁ ବାହାରି ଚାଲିଗଲେ । ମୋର ଉପସ୍ଥିତି ସମ୍ପର୍କରେ କେହି ବି ସଚେତନ ନଥିଲେ ।

କିନ୍ତୁ ସେଇଦିନ ମାମୁଁ ଯେତେବେଳେ ଠାକୁର ଘରେ ଧ୍ୟାନ କରିବାକୁ ପଶିଲେ ମୁଁ ବି ତାଙ୍କ ସହିତ ଯଥା ରୀତି ଭିତରକୁ ପଶିଲି । ତାଙ୍କ ଧ୍ୟାନ କରିବା ସମୟତକ ମୁଁ ଧୈର୍ଯ୍ୟ ଧରି ଅପେକ୍ଷା କରୁଥାଏ । ମନ ଭିତରେ କଥାଟା ମତେ ଖୁବ୍ ଅସ୍ଥିର କରୁଥାଏ । ମାମୁଁଙ୍କୁ କଥାଟା ପଚାରି ବୁଝିବା ପାଇଁ ମୁଁ ଏକ ପ୍ରକାର ଛଟପଟ ହେଉଥାଏ । ମୁଁ ତାଙ୍କ ଅଜାଣତରେ ସବୁକଥା ଦେଖିଛି ଓ ଶୁଣିଥିବାରୁ ଗର୍ହିତ କିଛି କରିଛି ବୋଲି ଭାବୁ ନଥିଲି ।

ତେଣୁ ମାମୁଁ ତାଙ୍କର ନିତ୍ୟ ନୈମିତ୍ତିକ ଯୋଗକ୍ରିୟା ସାରି ଉଠିଲେ ଓ ମତେ ସେଠି ନିଶ୍ଚଳ ହୋଇ ବସିଥିବାର ଦେଖି ଟିକେ ହସି ଦେଲେ । ମୁଁ ସାହସ ପାଇଗଲି । ମାମୁଁଙ୍କୁ ସିଧା ପଚାରିଲି, 'ଛାଇର ମୁଣ୍ଡ ନଥିଲେ କ'ଣ ଲୋକଟା ମରିଯାଏ ?'

ମାମୁଁ ମତେ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ ଓ ସେହିକ୍ଷଣି ବୁଝିଗଲେ ଯେ ମୁଁ ସବୁକଥା କେମିତି ହେଉ ଜାଣିସାରିଛି । ସେ ହୁଏତ ଭାବିପାରି ନଥିଲେ ଯେ, ତାଙ୍କର ଏଇ ଭାଣିଜୀ ନାମକ ଛୋଟ ଜନ୍ତୁଟି ଖେଳାକୁଦ ବୁଲାବୁଲି ଛାଡ଼ି ତାଙ୍କ ଅଜାଣତରେ ତାଙ୍କରି ପଛେ ପଛେ ବୁଲୁଛି । ସେ କିଛି ସମୟ ଚୁପ୍ ହୋଇ ବସିଲେ । ମୁଁ ଡରିଗଲି ଭାବିଲି ମାମୁଁ କାଳେ ରାଗିବେ । କିନ୍ତୁ ସେ ମୋ ପରେ ଆଦୌ ବିରକ୍ତ ହେଲେ ନାହିଁ ବରଂ ମୁଣ୍ଡ ଆଉଁସି ପରମ ଶ୍ରଦ୍ଧାରେ କହିଲେ- 'ସେସବୁ କଥା ବୁଝିବାର ବୟସ ତୋର ହୋଇ ନାହିଁ । ବଡ଼ ହୋଇଯା, ସେତେବେଳେ ତୋର ଯଦି ଆଗ୍ରହ ହେବ ତତେ ମୁଁ ଛାୟାଦର୍ଶନ କିପରି କରିବାକୁ ହୁଏ ଶିଖେଇଦେବି । ଏବେ ସେ ବିଷୟରେ କିଛି ପଚାରିବୁନି । ଆଉ ଗୋଟେ କଥା ମନେରଖ ଯାହା ଦେଖିଛୁ ବା ଜାଣିଛୁ କାହାରିକୁ କହିବୁନି ।

ଶେଷ ପଦଟି ଗୁରୁ ଆଜ୍ଞା ପରି ମତେ ଶୁଣାଗଲା । ମୋ ପାଟିରେ ସତରେ ଯେମିତି ତାଲା ପଡ଼ିଗଲା ।

ଲକ୍ଷ୍ୟ କଲି ଆଈ ଆଉ ପୂର୍ବ ପରି ତା' ଝିଅ ବୋହୂ ନାତିନାତୁଣୀଙ୍କୁ ତା' ପାଖରେ ପୂରାଇବାକୁ ଚାହୁଁନି । ଯଦି କିଏ ଗୋଡ଼ ହାତ ଜିଦ୍ କରି ଆଉଁସି ଦେଉଛନ୍ତି ତେବେ ସେମାନଙ୍କୁ କିଛି କଥାବାର୍ତ୍ତା କରିବାକୁ ମନା କରୁଛି । ସେ ଆଖିବୁଜି ପଡ଼ିରହୁଥିବାରୁ ତା' ଅବସ୍ଥା ଭଲ ନୁହେଁ ଭାବି ମା', ଆଉ ଆମେ ରହୁଥିବା କଟକ ସହରକୁ ଫେରିବାକୁ ଚାହିଁଲାନି । ମୋ ପାଠପଢ଼ା ପ୍ରତି ସିଏ କେବେ ଗୁରୁତ୍ୱ ଦେଉଥିଲା ଯେ, ମୋର ସ୍କୁଲ ମାରା ହେବା କଥା ସେ ଭାବିବ ! ମୋର ବି କୋଉ ଚିନ୍ତା ଥିଲା ! ସେଦିନର ଘଟଣା ପରଠାରୁ ମୋ ଭିତରେ ଅବଶେଷ ଥିବା ପିଲାଳିଆମି ପୂରା ଚାଲି ଯାଇଥିଲା । ମୁଁ ହଠାତ୍ କେମିତି ବଡ଼ ହୋଇଯାଇଥିଲି ।

ଆଈ ଉପରେ ମୋର ସତର୍କ ଦୃଷ୍ଟି ସବୁବେଳେ ରହୁଥିଲା । କିନ୍ତୁ ଆଈ ଆହୁରି ବେଶି ସନ୍ତର୍ପଣରେ ରାତି ଅଧରେ କେତେବେଳେ ଚାଲିଯାଇଛି ସକାଳେ ଜଣାଗଲା ।

ତେଣିକି ଆରମ୍ଭ ହୋଇଗଲା ମହାକୋଳାହଳ ପର୍ବ । ବନ୍ଧୁବାନ୍ଧବ, ଝିଅଝିଆରୀ, ଜ୍ଞାତି କୁଟୁମ୍ବ, ଗାଁ ସାରା ଲୋକଙ୍କର ଯିବା ଆସିବାରେ ଘରେ ଆଉ କୋଉଠି ବସିବା ପାଇଁ ଟିକେ ଜାଗା ମିଳୁ ନଥିଲା । ମୋର ସବୁଠାରୁ ପ୍ରିୟ ସମୟ ବି ଆଉ ଆସିଲାନି ।

ଆଈର କ୍ରିୟାକର୍ମ ମାମୁଁ ଅତି ନିଷ୍ଠାପର ଭାବରେ ଶାନ୍ତ ମନରେ କରୁଥାନ୍ତି । ସେଦିନ ଥିଲା ଆଈ ମୃତ୍ୟୁର ତେରଦିନ । ସେଦିନଟା ମଲା ଘରକୁ କେହି ଆସନ୍ତି ନାହିଁ କି ଘର ଲୋକେ କେହି ବାହାରକୁ ଯାଆନ୍ତି ନାହିଁ । ବିଶେଷ କରି ବିଗତ ତିନିଦିନ ହେଲାଣି ଘରେ ଚାଲିଥିବା ଖାଇବା ପିଇବା, ଯିବା ଆସିବା, ହୋ ହଲ୍ଲା ନୀରବ ହୋଇ ଯାଇଥିଲା ।

ଖରାଦିନ ଥାଏ । ମାମୁଁ ଅଗଣାରେ ଖଟ ପକାଇ ଶୋଇଥାନ୍ତି । ଆଉ କେଇଜଣ ବି ଦଉଡ଼ିଆ ଖଟିଆରେ ଏଠି ସେଠି ଶୋଇଥାନ୍ତି । ମୁଁ ମୋ ମା' ପାଖରେ ଘର ଭିତରେ ପଡ଼ିଥିବା ଖଟ ଉପରେ ଶୋଇଥାଏ । ତଳେ ଶୋଇଥାନ୍ତି ତାଙ୍କ କୁଟୁମ୍ବର ଦୁଇ ତିନିଜଣ ସ୍ତ୍ରୀ ଲୋକ ।

ରାତି କେତେବେଳ କେଜାଣି ? ମୋ ନିଦ କେମିତି ଭାଙ୍ଗି ଯାଇଥିଲା କି ମୁଁ ଆଦୌ ଶୋଇ ନଥିଲି ମୋର ମନେ ପଡୁନଥିଲା । ମୁଁ ଶୁଣିପାରିଲି ମାମୁଁଙ୍କର ସ୍ୱର । ସେ କାହାକୁ କ'ଣ କହୁଛନ୍ତି ପ୍ରଥମେ ବୁଝିପାରି ନଥିଲି । କିନ୍ତୁ ଟିକେ କାନ ଡେରିବା ପରେ ମୁଁ ଜାଣିଗଲି କଥାଟା କ'ଣ ।

ମାମୁଁ କହୁଥିଲେ 'ବୋଉ, ତୋର କ'ଣ ଏ ଘରୁ ମାୟା ଛାଡ଼ିନି । ତତେ ଛାୟାଦର୍ଶନ କରେଇ କହିଥିଲି ପରା ସବୁକଥା । ପତିତପାବନଙ୍କୁ ସବୁବେଳେ ସ୍ମରଣ କରୁଥିଲୁ ପୁଣି କାହିଁକି ମାୟାରେ ପଡ଼ିଗଲୁ ? ତୋର ସବୁ କ୍ରିୟାକର୍ମ ଭଲରେ କରିଛି । ଏଥର ତୁ ଚାଲିଯା ।

ତା'ପରେ କିଛି ଆଉ ଶୁଣାଗଲାନି । ଟିକିଏ ପରେ ପୁଣି ଶୁଣିପାରିଲି ମାମୁଁ କହୁଛନ୍ତି- 'କୁଆଡ଼େ ଯିବୁ ବୁଝିପାରୁନୁ ? ସବୁ ଅନ୍ଧାର ଦିଶୁଛି ତତେ ? ମନ୍ତ୍ର ଭୁଲିଯାଇଛୁ ? ହଉ ତେବେ ଧ୍ୟାନ ଦେଇ ଶୁଣ ତତେ ମନ୍ତ୍ର ସ୍ମରଣ କରେଇ ଦେଉଛି । ଜପ କର । ତୁ ଭୟ କରନା ଅନ୍ଧାର ଦେଖି । ମୁଁ ତୋ' ପାଇଁ ଏବେଠାରୁ ସେ ମନ୍ତ୍ର ଜପ କରିବି । ସେଇ ଜପ ବଳରେ ତୋ ରାସ୍ତା ଅନ୍ଧାର ଭିତରେ ଖୋଲିଯିବ... ତୁ ଚାଲିଯିବୁ ?''

ମୋ ଦେହ ଉପରେ କାହାର ଚାପରେ ମୁଁ ଚମକି ପଡ଼ିଲି । ମୋର ଏକାଗ୍ରତା ଭାଙ୍ଗିଗଲା । ଦେଖିଲି ମୋ ମା' ବୋଧେ ଏ ଭିତରେ କେତେବେଳେ ଉଠିପଡ଼ିଛି ଓ ମାମୁଁଙ୍କର କଥା ଶୁଣି ଭୟରେ ମତେ ଜାବୁଡ଼ି ଧରିଛି ।

ଆମେ ତା' ପରଦିନ ଫେରି ଆସିଲୁ । ଆଈ ଯିବା ପରେ ମୁଁ ଆଉ ଦୁଇଥର ମାତ୍ର ମାମୁଁ ଘରକୁ ଯାଇଛି । କାରଣ ମୋ ମା'ର ତା'ପରେ ଆଉ ତା' ଗାଆଁକୁ ଯିବାର ଆଗ୍ରହ କମିଗଲା । ସେଇ ଦୁଇଥର ଭିତରୁ ପ୍ରଥମ ଥର ମାମୁଁ କୁଆଡ଼େ ଅଜ୍ଞାତବାସରେ ଯାଇଥିଲେ । ସେ ଏମିତି ମଝିରେ ମଝିରେ କିଛିଦିନ ପାଇଁ କୁଆଡ଼େ ଯାଆନ୍ତି, ଘରେ କାହାକୁ ତାଙ୍କର ଠିକଣା ଜଣାନଥାଏ ବୋଲି ଶୁଣିଲି । ଦ୍ୱିତୀୟ ଥର ମୁଁ ବେଶ୍ ବଡ଼ ହୋଇଯାଇଥିଲି । ଗାଁ ଝିଅଙ୍କ ସାଙ୍ଗରେ ନଈକୂଳରେ ବୁଲିବାକୁ ମତେ ବେଶି ଭଲ ଲାଗିଥିଲା । ମାମୁଁଙ୍କ ସହ ଧ୍ୟାନରେ ଯୋଗ ଦେବାକୁ ମୋର କାହିଁକି ଆଉ ଆଗ୍ରହ ହେଲାନି ।

ଆଈର ଅନୁପସ୍ଥିତି ମାମୁଁ ଘର ପ୍ରତି ଥିବା ଆକର୍ଷଣକୁ ଆମ ମନରୁ ଦୂରେଇ ଦେଇଥିଲା । ତା'ପରେ ମୁଁ ଆଉ ମାମୁଁଘର ଗାଁକୁ ଯାଇନି । ପାଠପଢ଼ା ନସରୁଣୁ ବାହାଘର, ତେଣିକି ଓଡ଼ିଶା ବାହାରେ କଟିଲା ମୋର ସମୟ । ଯେତେ ବି ଆସୁଥିଲି ସେଥିରେ ସମୟ କରି ମାମୁଁ ଘରକୁ ଯିବାର ପ୍ରଶ୍ନ ଆଉ ଉଠିଲାନି ।

ଏବେ ଆସି ଘରେ ପହଞ୍ଚି ଜାଣୁଛି ମାମୁଁ ଆଉ ନାହାନ୍ତି । ଆମ ସମସ୍ତଙ୍କର ଘରେ ପହଞ୍ଚିବା ଜନିତ ଆନନ୍ଦ କୋଳାହଳ ଭିତରେ ଲକ୍ଷ୍ୟ କରିଥିଲି ମା' ମୁହଁଟି ଶୁଖିଲା ଓ କାନ୍ଦ କାନ୍ଦ ଦିଶୁଛି । କାରଣ ଅନୁମାନ କରିବା ମୋ ପାଇଁ କଷ୍ଟକର ନଥିଲା । ବଡ଼ମାମୁଁ ଥିଲେ ମୋ ମା'ଠାରୁ ବୟସରେ ସାନ । ତେଣୁ ସେ ଥାଉ ଥାଉ ତା'ର ସାନଭାଇ ଚାଲିଯାଇଥିବା କଥାଟିକୁ ସେ ବୋଧେ ସହଜରେ ଗ୍ରହଣ କରିପାରି ନଥିଲା । ଭାବିଲି କାମ ସରିବା ପରେ ତା' ସହିତ ବସି ଧୀରେ ସୁସ୍ଥେ ଟିକେ କଥା ହେବି । ତା' ମନଟା ହାଲ୍‌କା ହୋଇଯିବ ।

ମୁଁ କଥା ହେବା ପୂର୍ବରୁ ମାମୁଁଘରୁ ତା'ର କୁଟୁମ୍ବର ଭାଇ ଜଣେ କ'ଣ ସବୁ ଜିନିଷ ଧରି ଗାଁରୁ ଆସି ପହଞ୍ଚିଲେ । ସେ ଦୁହେଁ ବସି ମାମୁଁଙ୍କ ବିଷୟରେ କଥା ହେଉଥିବାବେଳେ ସେ ଭାଇ ଜଣକ ମା'କୁ କହିଲେ- 'ବୁଝିଲୁ ଅପା, ଭାଇ କୁଆଡ଼େ ଏଡ଼େ ଜ୍ଞାନୀ ଥିଲେ ଯାହାକୁ ଯାହା କହିଦେଉଥିଲେ ତା' ହେଉଥିଲା । ଏମିତି କି ଛାୟାଦଶର୍ନ ବିଦ୍ୟା ଜାଣିଥିଲେ ଯେ ମୃତ୍ୟୁ କେବେ ହେବ ଜାଣିପାରୁଥିଲେ । ଅଥଚ ନିଜ ମୃତ୍ୟୁ କଥା ଜାଣିପାରିଲେନି ?

ନିଜ ପିଲାମାନେ ସବୁ ବାହାରେ ଅଛନ୍ତି । ସ୍ତ୍ରୀ ବି ପାଖରେ ନାହିଁ, କାହାରିକୁ ଡାକିଲେନି ଦେଖିବାକୁ, ପଦଟିଏ ବି କାହାକୁ କିଛି କହିନାହାନ୍ତି ବସିବା ଜାଗାରେ ଟଳିପଡ଼ିଲେ ପରା ।

ତାଙ୍କ ସ୍ୱରରେ ମାମୁଁଙ୍କର ଜ୍ଞାନ ବା ବିଦ୍ୟା ପ୍ରତି ଅବିଶ୍ୱାସ ବାରି ହୋଇପଡୁଥିଲା । ମା' ବି ତାହାହିଁ ଭାବୁଥିଲା ବୋଧେ ।

ଭାବିଲି କହିବି, ଛାୟାଦର୍ଶନ କିଛି ଯାଦୁବିଦ୍ୟା ନଥିଲା କି କାହାକୁ ଭେଲିକି ଦେଖାଇବା ଏ ବିଦ୍ୟାର ଉଦ୍ଦେଶ୍ୟ ନୁହେଁ । ମାମୁଁ ସେ ବିଦ୍ୟାଟି ଆୟତ୍ତ କରିଥିଲେ ମୃତ୍ୟୁକୁ ଭୟ ନକରି ସେପାରିକୁ ଯିବାପାଇଁ ପ୍ରସ୍ତୁତ ହେଉଥିବା ମଣିଷକୁ କିଛି ସାହାଯ୍ୟ କରିବା ପାଇଁ । ଯଦି ସେ ନିଜ ପାଇଁ ସେ ବିଦ୍ୟା ପ୍ରୟୋଗ କରି ନିଜର ଶେଷ ସମୟ ଜାଣିପାରିଥିବେ ତେବେ ଡାକି ବଜାଇ ନିଜର ମୃତ୍ୟୁ ଘୋଷଣା କରିଥାନ୍ତେ କାହିଁକି ? ବରଂ ନୀରବରେ ଅନନ୍ତ ପଥରେ ଯାତ୍ରାରମ୍ଭ ପାଇଁ ନିଜକୁ ପ୍ରସ୍ତୁତ କରିଥିବେ ।

ଆଶ୍ଚର୍ଯ୍ୟ ଧାରଣା ଆମମାନଙ୍କର, କହି ବୋଲି ସମସ୍ତଙ୍କ ସାମ୍ନାରେ ଯୋଗାସନରେ ବସି ଦେହତ୍ୟାଗ କଲେ ହିଁ ଆମେ ତାଙ୍କୁ ଯୋଗୀ ବୋଲି ଭାବିବୁ ? ଯୋଗୀଟିଏ କ'ଣ ସାଧାରଣ ମଣିଷ ପରି ମରିବାଟା ଗ୍ରହଣଯୋଗ୍ୟ ନୁହେଁ ।

ସବୁଠି କିଛି ନାଟକ ବାକି ରହିବା କ'ଣ ଦରକାର ? ମୃତ୍ୟୁରେ ବି... ?



## ରତ୍ନାକର ଚଇନି

ଏବଂ ପୁଣି ଥରେ ବୋବେଇଲା ବେଳକୁ କୋଇଲିଟି ଟିକିଏ ଶଙ୍କିତ ହୋଇ ଯାଇଥିଲା । ବୋଧହୁଏ ସେତେବେଳକୁ ସେ ଅବିକଳ ତା'ରି ସ୍ୱର କରୁଥିବା ପ୍ରାଣୀଟିକୁ ଦେଖିବା ପାଇଁ ଅନୁସନ୍ଧାନ ଆରମ୍ଭ କରି ଦେଇଥିଲା । ଏଠି ଏକଥା ନୂଆ ।

ବିସ୍ତୀର୍ଣ୍ଣ ବନଭୂମି ।

ପରିଚିତ ଗଛବୃଛ, ଝରଣା, ପାହାଡ ।

ଜଣାଶୁଣା ଇଲାକା । ସେ ସବୁ ଜାଣିଚି; ସମସ୍ତଙ୍କୁ ଚିହ୍ନିଚି । ଇଠି ତଆରି ଭଳି ଡାକ ଛାଡୁଥିବା ଆଉ ଗୋଟାଏ ଭିନ୍ନ ପ୍ରକାରର ଜୀବ କିଏ ସେ, କେବଠୁଁ ଆସିଗଲା ? କିଛି ନୀରବତା ପାଖରେ ଆଖିର ଦୂରବିନ୍ ଖଞ୍ଜି ସେ ଜାଣିବାକୁ ଚେଷ୍ଟା କରୁଥିଲା; କିନ୍ତୁ ଜାଣି ପାରୁ ନଥିଲା ।

କୋଇଲିଟିର ଅସହାୟତାକୁ ପଢିପାରିଥିଲା କସ୍ତୁରୀ । ଏଥର ସେ ତା'ର ଶଙ୍କିତ ସ୍ୱରକୁ ଆଉ ଅନୁକରଣ କଲା ନାହିଁ । ଆହା, ବିଚରା... ! ଏମିତି ଚିନ୍ତା କରୁ କରୁ ଫିକ୍‌କିନା ହସିଦେଲା ସେ । ଗଛବୃଛମାନେ ବି ତା' ହସର ପାଳି ଧଇଲେ । ପାହାଡ-ଖୋଲରେ ସୃଷ୍ଟିହେଲା ସେ ହସର ତରଙ୍ଗ । ଚାରିଆଡେ ବିଞ୍ଚି ହେଇ ପଡିଲା ଚୂନାଚୂନା ହସ ।

ତଥାପି ସେ ଜାଣି ପାରୁନଥିଲା ।

ଅନେକବେଳୁ କସ୍ତୁରୀ ସେଠିକି ଆସି କୋଇଲିଟିର ଗତିବିଧିକୁ ଲକ୍ଷ୍ୟ କରୁଥିଲା । ବସନ୍ତ ଆସୁଚି । ଫୁଲଫୁଟା ଋତୁ । ଶୀତ କମିକମି ଆସିଲାଣି । ଏ ଖବର ଦୁନିଆକୁ ଜଣେଇ ଦେବାକୁ ଚେଷ୍ଟା କରୁଥିଲା କୋଇଲି । ତା'ର ଅଖଣ୍ଡ ମୁକୁଳା ସାମ୍ରାଜ୍ୟରେ, ତା'ର ପରିଚିତ ବନଭୂମିରେ, କେତେବେଳୁ ଆସି ଚୁପ୍‌ଚାପ୍ ବସି ରହିଥିବା କସ୍ତୁରୀକୁ ଆବିଷ୍କାର କରିପାରି ନଥିଲା ସେ । ଯେତେବେଳେ ତାକୁ ସେ ଦେଖିଲା, ଉଡିଯିବା ପୂର୍ବରୁ, ଜଣେ ନପାରିଲା ଖେଳାଳି, ଜିତାପଟ ନେଇ ଯାଉଥିବା ଖେଳାଳିଟି ଯେ ଖେଳରେ ନିଶ୍ଚେ ଗୁନ୍ଦରେଇଥିବ- ଓ ତେଣୁ ଜିତିଗଲା ବୋଲି ବଡପାଟିରେ ମିଥ୍ୟା ରଚନା କରିଗଲା । ... ଏବଂ ସେମିତି କହିକହିକା ଉଡିଗଲା କେଉଁ ଦୂର ବନାଞ୍ଚଳକୁ ।

କସ୍ତୁରୀ ପୁଣି ଥରେ ହସିଦେଲା ।

ଚାପା ମାପଚୁପ ହସ ।

ତା'ପରେ ଗୋଟାଏ ଅମାନିଆ ଝରଣା ଭଳି ଆଗେଇ ଚାଲିଲା ଗଣକେନ୍ଦ୍ର ଆଡକୁ । ସେତେବେଳକୁ ଗୋଟିଏ ଅନିଚ୍ଛୁକ ସୂର୍ଯ୍ୟ ଉଇଁବା ପାଇଁ କୁନ୍ଥୁକୁନ୍ଥୁ ହେଇ ପୂର୍ବପଟ ଆକାଶରେ ଟିକେ ମୁହଁ ଦେଖେଇ ଦେଉଥିଲେ । ସୂର୍ଯ୍ୟ ଉଇଁବା ଆଗରୁ କେଇ ଘଣ୍ଟା ପାଇଁ ସେ କେବଳ ନିଜ କାମ କରେ; ନିଜର ହେଇ ଥାଏ । ତା'ପରେ ସେ ଗଣର, ଜଣର ନୁହେଁ ।

ଗୋଟାଏ ବିଚିତ୍ର ପରିବ୍ୟାପ୍ତ ଜୀବନଧାରା ।

କି ଦିନ, କି ରାତି-

କେଉଁ ନିର୍ଦ୍ଦିଷ୍ଟ ସମୟରେ, ସବୁଦିନେ, କୌଣସି ନିର୍ଦ୍ଦିଷ୍ଟ ଜାଗାରେ ସେ କିଛି ନିର୍ଦ୍ଧାରିତ କାମ କରେ ନାହିଁ । ମାତ୍ର ସବୁବେଳେ ସେ ସବୁଠି ଥାଏ । କୋଉଠି କିଛି ଗୋଟେ ଘଟଣ ଅଘଟଣ ଘଟିଗଲା ତ ସେଠି କସ୍ତୁରୀ ।

ତେଣୁ ଲୋକେ କହନ୍ତି, ସେ ବନଦେବୀ ।

ମହାପ୍ରୁ !

ସେ ନିଜ ଇଚ୍ଛାରେ ଉଭାହୁଏ । ସବୁରି ସୁଖଦୁଃଖ ବୁଝେ । ନିତିଦିନିଆ କଥାକୁ ନୂଆ ବାଗରେ ବୁଝାଏ । ମନ ଭିତରେ ବିଜୁଳି ଖେଳେଇଦିଏ । ତା' କଥାରେ କିମିଆ ମନ୍ତ୍ରଥାଏ; ଓଜନ ବି ଥାଏ । ଲୋକେ ପତିଆରା ରଖିଲେଣି ତା' ବିଚାର-ବୁଦ୍ଧି ଉପରେ । ସିଏ କିଛି ଗୋଟେ କଥା କହିଲାତ, କୌନସିଲା ହେଜବିଚାର ନକରି, କରିଯାଉଛନ୍ତି ସେ କାମ ।

ଗଣକେନ୍ଦ୍ର ତିଆରି ପରିକଳ୍ପନା ।

ସେ କହିଲା ତ ଆରମ୍ଭ ହେଲା ।

ଲୋକେ ମାନିନେଲେ ।

ସେଇଦିନୁ ଚାଲିଚି ତ ଚାଲିଛି ।

ଏଇ କେଇଟା ମାସ ତଳର କଥା । କ'ଣ ହଉ ନଥିଲା ଏଠି । ଜଙ୍ଗଲ ଜମାନ୍, ପୁଲିସି ଦାରୁଗା, ଠିକାଦାର ଓ ସରକାର ସାଇବ ସମସ୍ତଙ୍କର ପ୍ରଭୁପଣ । ମଣିଷଗୁଡାକ ସତେ ଯେମିତି ପୋକମାଛିଠାରୁ ହୀନ । ଏଇନା ସବୁ ବନ୍ଦ । କାହାରି ଅଦଉତି ନାହିଁ ଏ ଇଲାକାରେ । ଯାହା ଯେତିକି କାମ, ସେତିକିରେ ଯାଅ । ପାଦେ ଓଲମବିଲମ ହେଲେ ନିରାପଦରେ ଫେରିହେବ ନାହିଁ । କେତେଥର ଦୁର୍ଘଟଣା ଘଟିଗଲାଣି । କିଏ କରୁଚି, କେମିତି କରୁଚି, କେହି ଜାଣନ୍ତି ନାହିଁ । ହେଲେ ସବୁ ଖବର କିନ୍ତୁ ତା' ପାଖରେ ।

ଭାରି ଆଚମ୍ବିତ ଲାଗେ ବେଳେବେଳେ ।

ଏକୁଟିଆ ମଣିଷ; ଏତେ କଥା ଜାଣେ କେମିତି ? ନିଶ୍ଚେ ଅଦୃଶ୍ୟ ଗନ୍ଧର୍ବ ସାଇତି ରଖିଚି । ସେମାନେ ଦିନରେ ଦୃଶ୍ୟ ହୁଅନ୍ତି ନାହିଁ । ଅନ୍ଧାରରେ ଆସନ୍ତି; ଅନ୍ଧାରି କାମ କଲାବାଲା ଲୋକଙ୍କୁ ଠିକଣା କରି ଚାଲିଯାଆନ୍ତି, ଏକବାରେ ଅଗନାଅଗନି ବନସ୍ତ ଭିତରକୁ । ତଥାପି ସବୁବେଳ ସବୁରି ପଛରେ ସେମାନଙ୍କର ସତର୍କ ଆଖି । ବନଦେବୀ ମହାପ୍ରୁ ସେଇମାନଙ୍କ ଆଖିରେ ସବୁ ଘଟଣା ଦେଖେ; ସବୁ କଥା ଶୁଣେ । ଯାହା କରିବାକୁ ହେବ, ସେ ତାଙ୍କୁ କହନ୍ତି । ରାତି ପାହିଲା ବେଳକୁ ଯାହା ହେବାର କଥା, ସେଇୟା ହୋଇ ଯାଇଥାଏ । ସେଥିରେ ନେ- ନଥାଏ କି ନେଞ୍ଜରା ନଥାଏ ।

ଏସବୁ ଘଟିଲା ପରେ-

ଲୋକଙ୍କର ବିଶ୍ୱାସ ହୋଇଗଲା, ସେ ରକତ-ମାଉଁସର ମଣିଷଟିଏ ନୁହଁ । ସେ ନିଶ୍ଚେ ବନଦେବୀ କି ଆଉ କଅଣ । ତା'ର ଅନେକ କାନ ଆଉ ଅନେକ ଆଖି ଗଣକେନ୍ଦ୍ରକୁ ସେ ଦୂରରେ ଥାଇ ଜଗିଥାଏ । ସମସ୍ତେ ନିଜ ନିଜର ବଳକା ଜିନିଷ ସବୁ ବିକ୍ରିପାଇଁ ଥୋଇ ଦେଇଯାଆନ୍ତି ଏଇଠି । ଯାହାର ଯାହା ଦରକାର, ସିଏ ଆସି ନେଇଯାଏ । ହିସାବପତ୍ରରେ ଭୁଲ୍ ଭଟକା ହୁଏନାହିଁ । କାରଣ ମହାପ୍ରୁ ଦେଖୁଚି, ସିଏ ଜଗିଚି; ସିଏ ହିସାବ କରୁଚି । ଜାଣତରେ ଭୁଲ୍ କଲେ, ନିସ୍ତାର ନାହିଁ । ଗନ୍ଧର୍ବ ସଇନିଙ୍କ ଦାଢିରେ ପଡିବାକୁ ହବ ।

କସ୍ତୁରୀ; ବନଦେବୀ ମହାପ୍ରୁ ।

ଭୟ ଓ ଭକ୍ତିର ବୋଧଦ୍ରୁମ ।

ସିଏ କିଛି ନିଏ ନାହିଁ; ଖାଲି ଦେଇ ଯିବାକୁ ଚାହେ । ସେଥିରେ କାହାର ଆପତ୍ତି ରହେ ନାହିଁ । ଓଲଟି ଲୋକେ ଭାବନ୍ତି ଆଉ ଥରେକେହି ଆମର ନିଜର ହେଇ ରହିଛି ।

ସକାଳୁ ସକାଳୁ ଗଣକେନ୍ଦ୍ର ଗହଳ ହେଇ ଉଠେ । ପୁଣି ଥରେ ଗହଳ ହୁଏ ସଂଜ ରତ ରତ ହେଲାବେଳକୁ । ମୁଲକ ଯାକର ଜିନିଷ ଏଇଠି ଠୁଳ ହୁଏ । ଘୁଷୁରି, ଛେଳି, କୁକୁଡାଠାରୁ ଆରମ୍ଭ କରି ଶାଗମୁଗ ପର୍ଯ୍ୟନ୍ତ । ଜିନିଷ ବଦଳରେ ଜିନିଷ ବି ନେଇହୁଏ । ମଣିଷ ବଞ୍ଚି ରହିବା ପାଇଁ ଯୋଉ ଜିନିଷ ନିହାତି ଦରକାର, ତାହା ଏଠି ମିଳେ ।

ସେତିକି ଯଥେଷ୍ଟ ।

ଅଧିକା କ'ଣ ବା ଦରକାର ?

ଦିନେ ଗଣକେନ୍ଦ୍ର ବିଷୟରେ କହୁ କହୁ କସ୍ତୁରୀ ଲୋକମାନଙ୍କୁ କହିଥିଲା- 'ମଣିଷ ଆବଶ୍ୟକତାଠାରୁ ଅଧିକ ଜିନିଷ ଦାବୀ କରେ । ପୁଣି ତା' ଆବଶ୍ୟକତାର ଓ ଚାହିଦାର ଶେଷ ନାହିଁ । ଦିନକୁ ଦିନ ଅଧିକରୁ ଅଧିକ ସେ ଖୋଜି ବସେ । ଆମେ ଆବଶ୍ୟକତାକୁ ସଂକୋଚନ କରିବା ଉଚିତ । ଗୋଟା-ଗୋଟା ପଶୁ ଥାଆନ୍ତି- ଖାଆନ୍ତି ଯେତିକି, ତା'ଠୁ ନଷ୍ଟ କରନ୍ତି ବେଶି । ଆମେ ଅଭ୍ୟାସ୍ କଲେ ସବୁ କିଛି ହୋଇପାରିବ ।

ଅଳ୍ପରେ ଚଳିବା ଶିଖ ।

ଏ ପୃଥିବୀ ପାଇଁ ଏକ ଭୟଙ୍କର ଅକାଳ ଆସୁଚି । ସବୁଆଡେ ଖାଲି ମଣିଷଗୁଡା ସାଲୁବାଲୁ ହେବେ ଜନ୍ଦା-ପିମ୍ପୁଡି ପରି । ଖାଇବା ଜିନିଷ ଯଥେଷ୍ଟ ମିଳିବନି । ସବୁ ଜିନିଷ ଦୁର୍ମୂଲ୍ୟ ହେଇଯିବ । ଦରଦାମ ହେବ ଆକାଶଛୁଆଁ । ତେଣୁ ଆଜିଠୁଁ ନିଜକୁ ତିଆର୍ କର । ନିଜ ମୁଲକର ଲୋକଙ୍କ ପାଇଁ ନିଜେ ଚଳିବା ଭଳି ଜିନିଷ ପ୍ରସ୍ତୁତ କର । କାହାରି ହାତଟେକାକୁ ଅନିଶା ରଖନି । ନିଘା ରଖନି କାହାର ଦୟାକୁ ।

ଏଇ ଆମର ଛୋଟିଆ ପୃଥିବୀ । ଏ ଜଙ୍ଗଲ, ସୂର୍ଯ୍ୟ ଡେଇଁ ପାରୁନଥିବା ଏଇ ପାହାଡ, ସବୁଦିନେ ପ୍ରଚୁର ପାଣି ଯୋଗାଇ ଆସୁଥିବା ଏ ଝରଣା- ଏଇ ଆମର ସରହଦ । ଏଇଠି ଆମେ ଗଢୁଚେ ଆମର ନୂଆ ସମାଜ । ଏଠି କାହାରି ହୁକୁମ ଚଳିବ ନାହିଁ । ଆଉ କାହାର ନିୟମକାନୁନ୍ ଆମ ଉପରେ ଲଦି ଦିଆଗଲେ ତାକୁ ଆମେ ମାନିବା ନାହିଁ ।

ସବୁ ନୂଆକରି ଏଠି ଆରମ୍ଭ ହେବ ।

ଏକ୍‌ବାରେ ମୂଳରୁ ।

ସମସ୍ତେ ଭିତରଟାକୁ ଜଗ । ବାହାରକୁ ଜଗିବାପାଇଁ ଅଛନ୍ତି ଅଲଗା ଦଳ । ଜଙ୍ଗଲ ଜମାନ୍, ପୁଲିସ ଦାରୁଗା, ଠିକାଦାର, ସରକାର ସାଇବ- ଏ ସମସ୍ତଙ୍କ କଥା ବୁଝିବାକୁ ସେମାନେ ଅଛନ୍ତି । ଏଇଠି ଆମେ ପାଠ ପଢିବା । ନୂଆ ଦୁନିଆର ପାଠ । ଯୋଉ ପାଠ ଆମର ନିତିଦିନିଆ ଜୀବନ ପାଇଁ ଦରକାର, ସେଇ ପାଠ, ଆମେ ମୂଳକୁ ଫେରିଯିବା । ସେଇଯାଏ ଫେରିଯିବା, ଯୋଉଯାକେ ସବୁ ଠିକ୍ ଥିଲା । କୋଉ ଗୋଟାଏ ଦୋଛକି ଜାଗାରୁ ଆମେ ଭୁଲ ବାଟରେ ପଶି ଆସିଲେ । ଆମେ ସେ ଭୁଲ୍ ସୁଧାରିବା । ଖୋଜି ଖୋଜି ଠିକ୍‌ବାଟ ଧରିବା ।

ଅନେକ ସମୟ ଧରି ଲୋକେ ତା' କଥା ଶୁଣିଲେ ।

କିଏ କ'ଣ ବୁଝିଲା, ତାହା ଜାଣିବା ସହଜ ନଥିଲା ।

କେତେକ ସମର୍ଥନସୂଚକ ସ୍ୱରରେ କହିଲେ- 'ହଁଏ ହଁଏ' ... । କେହି କେହି ସେଦିନ ନିଜ ନିଜର ପଲାକୁ ଫେରିଯିବା ଆଗରୁ ପ୍ରଶ୍ନଟିଏ ମାନ ଫିଙ୍ଗିଦେଇ ଯାଇଥିଲେ, କସ୍ତୁରୀ ଉଦ୍ଦେଶ୍ୟରେ ।

-ତୁ ମହାପ୍ରୁ ତ ଭାରି ମଧୁରିଆ କଥା କହୁଚୁ । ସବୁ ଭଲ; କିମାତ୍ରକ ତୁ ତ କହିଲୁ ନେଇଁ, ତୁ କିଏ ? କୋଉଠି ଥେଲୁ ଆଜି ଯାକେ ? କୋଉଥି ପେଇଁ ଆଇଚୁ ଇଠିକି ?

ତୁ ଭୋଅଟ ମାଗି ଆଇଚୁନା ? ... ସତ କହ ।

ତୋ ଗେରସ୍ତ ପିଲାକବିଲା କାହାନ୍ତି ? ସାଥିରେ ଆଣିନୁ ?

ତୁ କ'ଣ ସତକୁ ସତ ବନଦେବୀ ? ତୋ ବାଘ କାଇଁ ? କହ ମାହାପ୍ରୁ... କପଟ ରଖନା ।

ଏତେ ସବୁ ପ୍ରଶ୍ନର ଗୋଟାଏ ଗୋଟାଏ ସରଳ ନିଖଳିଆ ଉତ୍ତର ଆଶା କରୁଥିବା ଜନପଦବାସୀ କିଛି ଶୁଣିବାକୁ ନ ପାଇଲାରୁ, ତା' ମୁହଁକୁ ଅନେଇଲେ ଘଡିଏ ଲେଖାଁ । ସବୁଠୁଁ ବୟସ୍କ ମନେ ହେଉଥିବା ମଣିଷ ଜଣକ ତା' ମୁହଁରୁ କ'ଣ ଠଉରେଇଲା କେଜାଣି, ହଠାତ୍ କହି ଉଠିଲା- 'ତୁ ଯିଏ ହଅ; ମାହାପ୍ରୁ ହଅ, କି ଭୋଅଟ- ନେଲାବାଲା ହଅ, ଅବିକା ତୁ ଆମର ହିତ ପାଞ୍ଚୁଚୁ । ଏଇ ହେଲା ସାର କଥା । ତେଇଁକି ଆମେ କାଲିଠଉଁ ସବୁ ଜିନିଷ ଆଣି ତୋ ଗୋଡ ପାଖରେ ଥୋଇଦବୁ । ତେଣିକି ତୋ ଇଚ୍ଛା; ଆଉ ଆମ କପାଳ ।

ତା'ପରେ ସେମାନେ ଚାଲିଗଲେ;-

ଓ ତା' ପରଦିନ ସକାଳୁ ପୁଣି ଆସିଲେ ।

ସାଙ୍ଗରେ କିଛି ନା କିଛି ଜିନିଷ ।

ଗୋଟିଏ ଗୋଟିଏ ଠାଆ ବାଛି ସେସବୁ ଜିନିଷକୁ ଥୋଇ ସେମାନେ ଯେମିତି ଆସିଥିଲେ, ସେମିତି ଚାଲିଗଲେ ଦଳ ଦଳ ହୋଇ । ସଞ୍ଜ ହେବା ଆଗରୁ ସେମାନେ ଆସିଲେ ପୁଣିଥରେ ଥରେ କୌତୂହଳ ନେଇ । ସେତେବେଳକୁ ସେ ଜାଗା ଖଣ୍ଡକର 'ଗଣକେନ୍ଦ୍ର' ବୋଲି ଜଣେ କହି ସାରିଥିଲା ଓ ତାହା ଅଧିକାଂଶ ଜାଣି ସାରିଥିଲେ ।

ପିଲାଛୁଆ, ମାଇପେ- ମିଣିପେ-

ସମସ୍ତଙ୍କ ମନରେ ଆଚମ୍ବିତ- କୁତୂହଳ ।

ବେଳ ଅବେଳ ନାହିଁ; ଯାହାର ଯେତେବେଳେ ସୁବିଧା । ମେଳା ମଉଛବକୁ ଗଲା ଭଳି ଗଣକେନ୍ଦ୍ରକୁ ଆସିଲେ; ବୁଲିଲେ; ହସ-ଖୁସି କଲେ । କିଏ କ'ଣ ନେଲା ଦେଲା, କାହାରି ପାଖରେ ହିସାବ ନାହିଁ । ମାତ୍ର ସମସ୍ତେ ସତର୍କ । ବନଦେବୀ ଦେଖୁଚି । ତା' ଆଖିରୁ ଖସି ଯାଇ ହବନି । ସେ ଜାଣିପାରିଲେ ଗନ୍ଧର୍ବ ସଇନି ଆସି ଦଣ୍ଡ ଦେବେ ।

ଏମିତି ତ ଭାରି ମଜା ଲାଗୁଚି । ଏତେ ଜିନିଷ ସବୁ ଆମର । ସତେରେ, ଏସବୁ ଆମରି ପାଖରେ ଥିଲା ! ଇଏ ଆମ ତିଆରି... !! ଇଏ ସବୁଠୁଁ ଭଲ । ଏମିତି ଚାଲୁ ଦିନାକେତେ । ଜିନିଷପତ୍ର ରଖିଦେଇ ଯାଇଥିବା ଓ ଦୂରରୁ ଲକ୍ଷ୍ୟ କରୁଥିବା ଲୋକମାନଙ୍କ ଆଖବରେ କୁତୂହଳ ଦିକ୍‌ଦିକ୍ କରୁଥିଲା । ମନକୁ ମନ ସେମାନେ କହି ଉଠୁଥିଲେ- ଏ ତ ବଡ ଆଚମ୍ବିତ କଥା ! ଏମିତି କେମିତି ହେଲା ! ଆଗରୁ ଏଇ ଜାଗା ଥିଲା; ଏଇ ଜିନିଷ ଥିଲା । ଏମିତି ହଉ ନଥିଲା କାହିଁକି ? ବନଦେବୀ ନିଶ୍ଚେ କିମିଆଁ ଜାଣେ ।

ଏ ଘଟଣାର କିଛି ଦିନ ପରେ, ସେମାନେ ଆହୁରି ଥରେ ଚକିତ ହୋଇ ପରସ୍ପରର ମୁହଁ ଚାହାଁଚାହିଁ ହେଲେ- ଯୋଉ ଦିନ ଠିକାଦାରର ଲୋକ ଆସି, ଜଣଜଣକୁ ଡାକି, ଘରଘର ବୁଲି

ତାଙ୍କର ପାଉଣାପତ୍ର ତୁଟେଇ ଦେଇଗଲା । କେବକାର ପାଉଣା, ଯାଚିକରି ଆସି କେମିତି ଦେଲା- ଏକଥା ପଚାରିବାକୁ କାହାରି ପାଟି ଖୋଲି ନଥିଲା । ଠିକାଦାରର ଲୋକ କେବଳ ଏତିକି କହୁଥିଲା- ତମ କଥା ସେଇ ମାଆ ବୁଝୁଛନ୍ତି; ତାଙ୍କୁ ପଚାର । ସିଏ ହିସାବ ବୁଝେଇ ଦେବେ । ଏସବୁ ପିଛିଲା ପଇସା । ଏଣିକି ନୂଆ ହିସାବ ।

ଗୋଟାଏ ଚମକ ଖେଳିଗଲା ସବୁରି ମନରେ ।

ଆଶ୍ଚର୍ଯ୍ୟ ଲାଗିଲା ସମସ୍ତଙ୍କୁ ।

ସେଇ ଠିକାଦାର, ସେଇ ମଣିଷ ।

ବୋଧେ କ'ଣ କୋଉଠି ଘଟିଗଲା । ଇଏ କି ଅଦ୍ଭୁତ ପରିବର୍ତ୍ତନ । କିଏ କିଛି ମନ୍ତ୍ର କରିଦେଲା କି ଆଉ । ବୋଧେ କଳିଯୁଗ ସରିଗଲା; ସତ୍ୟଯୁଗ ଉଦେ ହେଇ ଆସିଗଲା । ଶୁଣା ଯାଉଚି, ଠିକାଦାର ଇଠି ଗୋଟାଏ ପୂଜାପୀଠ ତିଆରି କରିବ, ତା' ନିଜ ପଇସାରେ । ସମସ୍ତେ ପୂଜାକରିବେ ନିଜ ନିଜ ଦିଅଁକୁ । ନୀରବରେ ନିଜ ମନକଥା କହିବେ । କାହାକୁ ବାରଣ ରହିବ ନାହିଁ ସେଠିକି ।

ଲୋକେ କ୍ରମଶଃ ଅନୁଭବ କଲେ;

ଗୋଟାଏ ଭିନ୍ନ ଦୁନିଆର ମିଠାଳିଆ ପବନ କେତେବେଳେ ଲୁଚିଛପି ଆସି ଆମ ମୁଲକର ସବୁରି ମନକୁ ଉଲୁସାଇ ଦେଇ ଯାଉଚି, ଅପୂର୍ବ ଅନୁଭୂତିରେ । ସବୁ କିଛି ନୂଆ ନୂଆ ଲାଗୁଚି । ଜୀବନର ଏକ ଭିନ୍ନ ଅର୍ଥ ଅଛି ବୋଲି ମାଲୁମ ହେଉଚି । ଶତାବ୍ଦୀ ଶତାବ୍ଦୀ ଧରି ତଳେ ପଡ଼ି ରହିଥିବା ମଲାମୁର୍କୁଟିଆ ତାଳପତ୍ର ଗୁଡାକରେ ଚେତନାର ଧାପେ ନିଆଁ କିଏ ଲଗେଇ ଦେଇଚି । ସିଏ ଏଇନା ଜଳୁଚି ହୁତ୍ ହୁତ୍ ହେଇ । ସବୁ ଅଳିଆ ଆବର୍ଜନା ପୋଡିଯିବ । ତା'ପରେ କଅଁଳିଆ ନୂଆପତ୍ର । ବିବାକ୍ ନୂଆ ।

ଏମିତିଆ ଗୋଟେ ବିଶ୍ୱାସ କ୍ରମେ ଜମାଟ ବାନ୍ଧୁଥିଲା ।

ସେମାନଙ୍କ ପାଖରେ କସ୍ତୁରୀ ଆଣି ଦେଇ ସାରିଥିଲା ସଜ ପତିଆରାଟିଏ । ସେମାନେ ଜାଣି ସାରିଥିଲେ- ବନଦେବୀ ମାହାପ୍ରୁ କଥାରେ କହେନି, କାମରେ କରେ । ସେ ଭୋଅଟ୍ ମାଗିଲାବାଲା ନୁହେଁ- ଆସିବେ; ଫୁସୁଲା ଫୁସୁଲି କରି ନୂଆ ନୂଆ କଥା କହିବେ । ବାସ୍, ତା'ପରେ ସିଏ ସିଆଡେ, ଇଏ ଇଆଡେ । ସେତିକିରେ ସେ ପାଲା ସରେ ନାଇଁ । ତା'ପରେ ମାଡି ଆସନ୍ତି ପଲପଲ ଶାଗୁଣା ବିଲୁଆ । ନାନା ହୀନସ୍ତା କରି ମଣିଷକୁ ଜୀଅନ୍ତା ଝୁଣନ୍ତି । ମଣିଷ ମଣିଷ ଭିତରେ ଫାଟ ଭିଆନ୍ତି । ପାଚିରି ଉଠାନ୍ତି । ଦଳ କଥା କହନ୍ତି, ଜାତି କଥା କହନ୍ତି । ମାଇକିନା ଅଣ୍ଡରାଙ୍କୁ ଅଲଗା ଅଲଗା ଗୋଷ୍ଠୀ କରନ୍ତି ।

ଛିଃ !

ସେଗୁଡା ମୋଟେ ଭଲ କଥା ନୁହେଁ ।

ଇଏ ଭଲ; ବହୁତ ଭଲ ।

ନ୍ୟାୟ-ନିଶାପ ସବୁ ଏଇଠି । କୋଉ ଦିନେ ମୂଲକକୁ ଯିବାକୁ ପଡିଲା ନାହିଁ । ତାଙ୍କରି ଭିତରୁ ବଛାଗଲେ ପଞ୍ଚ- ପାଞ୍ଚଜଣ । କିଏ ବାଛିଲା, କୋଉ ଦିନ ବାଛିଲା, କୋଉ ନିୟମରେ ବାଛିଲା, କେହି ଜାଣିଲେ ନାହିଁ । ନିଶାପ ଦିନ ସେମାନେ ଆସି ବସିଲେ ମାଟି ମଣ୍ଡପ ଉପରେ । ସେଇଠି ପରସ୍ପରକୁ ଦେଖିଲେ । ହସିଲେ । ସବୁକଥା ଶୁଣିଲେ । ନ୍ୟାୟ ବାଣ୍ଟିଲେ । ସେଠି ବସିଥିଲା ବେଳେ ସେମାନେ ମନେ ହେଲେ, ମୁଣ୍ଡାଏ ମୁଣ୍ଡାଏ ଧର୍ମାତ୍ମା ନ୍ୟାୟମୂର୍ତ୍ତି । ଭାରି

ବିଚାରବନ୍ତ ମାତ୍‌ବରିଆ ମଣିଷ । ସବୁ ନୀତି-ନିୟମ ତାଙ୍କ ଜିଭ ଅଗରେ ଥୁଆ । ତଳକୁ ଓହ୍ଲାଇ ଆସିଲା ମାତ୍ରେ ସେମାନେ ପୁଣି ହେଇ ଯାଉଥିଲେ ସାଧାରଣ ମଣିଷ । କାହାର ସ୍ୱାମୀ, କାହାର ଭାଇ, କାହାର ବାପ ଅବା କାହାର ଦାଦୀ କିମ୍ୱା ମଉସା ।

ଯୋଉ ଦିନ ଠାକୁର ଥାପନା ହେଲା...

ହଇଚଇ ଖେଳିଗଲା ମୁଲକରେ ଏମୁଣ୍ଡରୁ ସେମୁଣ୍ଡ ଯାଏଁ । ଜମିଗଲେ ଆସି ଶହଶହ ମାଇପେ-ମିଣିପେ, ପିଲାଛୁଆ, ବୁଢ଼ାବୁଢ଼ୀ । ମିଳିତ ଜନ୍ତାଳ ଓ ଗୋଷ୍ଠୀ ଭୋଜନର ଆୟୋଜନ କରାଯାଇଥିଲା । ନାଚ-ଗୀତ, ମଉଜ-ମଜଲିସ୍‌ର ଦିନ । ଠାକୁରଦେଖା, କଦଳୀ ବିକା । ଲୋକେ ଠାକୁର ଦେଖିଲେ, କିନ୍ତୁ ଜାଣିପାରିଲେ ନାହିଁ, ସେ କୋଉ ମାହାପ୍ରୁ । ସେ ମୂର୍ତ୍ତିକି ଦେଖି କିଏ ମୁହଁ ନେଫେଡିଲା, କିଏ ପଚାରିଲା ୟାଙ୍କୁ କ'ଣ କହି ପୂଜିବା । କି, ଅଲଗା କିସମର ଗୋଟେ ନାଁ ଦେଲା । କେହି କେହି କେତେ ଢଙ୍ଗରେ ଚିହ୍ନିବାକୁ ଚେଷ୍ଟା କଲେ । ମୂର୍ତ୍ତିଟି ଗୋଟିପଣେ ମଣିଷ ଭଳିଆ ନୁହେଁ କି ଖଣ୍ଡେ ଛକିପକା କାଠପରି ନୁହେଁ । ପଥରର ପ୍ରତିମାଟିଏ ନୁହେଁ, କି ଅର୍ଦ୍ଧଗୋଲାକାର ଅମୂର୍ତ୍ତ ପ୍ରତୀକଟିଏ ନୁହେଁ ।

ମୋଟ ଉପରେ ସେ ସବୁ କିଛି ଭଳି;

କିନ୍ତୁ କିଛି ଗୋଟାଏ ନିର୍ଦ୍ଦିଷ୍ଟ ଆକାରର ନୁହେ ।

ଅକସ୍ମାତ୍ ଲୋକେ ତାଆରି ଭିତରେ ନିଜ କଳ୍ପନାର ଦିଅଁକୁ ଠଉର କରି ନେଲେ । ବିଶ୍ୱାସର ଡାଳପତ୍ର ଥାପିଲେ ତାଙ୍କରି ଉପରେ । ଚେତନାର ଫୁଲଚନ୍ଦନରେ ମହକାଇ ଦେଲେ ନିଜ ନିଜର ଦେହ ମନକୁ । ଧୂପ ଦୀପ କର୍ପୂରର ମହକରେ ମହକି ଉଠିଲା ସାରା ପରିବେଶ । ଭାରି ଆନନ୍ଦ ଲାଗିଲା । ଗୋଟାଏ ପ୍ରକାରର ଦିବ୍ୟ ମତୁଆଲା ଭାବ ବିଛାଡି ହେଇ ପଡିଲା ଚାରିଆଡେ । ଖୁସି ଗୀତର ଲହରି ଛୁଟିଲା । ଆକାଶର ତୋଫା ଜହ୍ନଟା କେତେବେଳେ ଗଛ ଉହାଡରୁ ମୁରୁକି ହସ ଦେଇ ଉପରକୁ ଉଠି ସାରିଥିଲା, ତେଣିକି ନିଘା ନଥିଲା କାହାର ।

ଗୋଷ୍ଠୀ ଭୋଜନ ସରିଥିଲା ।

ରାତି ବେଶ୍ ଗଭୀର ।

ତଥାପି ସମସ୍ତେ ଥିଲେ; ଖାଇ ସାରି ବିଶ୍ରାମ ଦେଉଥିଲେ । ଏକମାତ୍ର ସେଠି ନଥିଲା କସ୍ତୁରୀ । ପୂଜାପାଠ ଚାଲିଥିଲାବେଳେ ସେ ଥିଲା ଏଇଠି । ତାଆରି ଭିତରେ କେତେବେଳେ ସେ ଖସି ଯାଇଥିଲା । ସେ କୁଆଡେ ଯାଏ, କୋଉଠି ଥାଏ, କ'ଣ ଖାଏ ଲୋକ ଦୃଷ୍ଟିରେ ତାହା ପ୍ରହେଳିକା । ନାନା କଥା ଗଢ଼ି ଉଠେ ମୁଗ୍ଧ ଜନତାଙ୍କ ମୁହଁରେ ।

ବୁଝିଲ; ମାହାପ୍ରୁ କିମାତ୍ରକ ବାସନା ପାଏ । ବାସନା ପାଇଲା, ଉଭାନ ହେଇଗଲା । ସିଏ ତ ତମ ଆମ ଭଳିଆ ମଣିଷ ହେଇନି ଯେ, ବୁହେ ଗିଳିବ ।

ବନଦେବୀର ଘର ତ ସବୁଠେଇଁ । ଯିଏ ଗୋଟାଏ ଜେଗାରେ ରହୁଥିଲେ ସିନା ତେବେ ବୋରାବୋରି ତାକୁ ଦେଖି ହୁଅନ୍ତା । ସିଏ ହେଇଟି ଅଛି, ହେଇଟି ନାଇଁ ।

ରାତି ନିଶବଦ ହେଇଗଲେ ବନଦେବୀ ସଇନି ବଳ ଧରି ବିଜେ ହୁଏ । ଧୂର ଶାଳବଣିଆରୁ ବାଘର ହେଣ୍ଟାଳ ଶୁଭେ; ଘୋଡା ଟାପୁ ଶୁଭେ । ରେରେକାର ଶୁଭେ । ଭୟରେ ଆମେ କେତେ ଥର ତାଟିକବାଟ କିଳି ଦେଇଚୁ । ଏଇନା ଯୋଉ ରୂପ ଦେଖୁଚ, ସିଏ ବିଜେ-ପ୍ରତିମା । ରାତିର ସେହି ପହରକୁ ତା'ର ଅସଲରୂପ । ଦେଖିଲେ ଭେଟଣା ହେଇଯିବ । ନଇଲେ କି ସେ ଏମନ୍ତେ ଖଣ୍ଡମଣ୍ଡଳ ପାଳୁଥାଆନ୍ତା ।

ଆଚ୍ଛା ତମର ଏ ମାହାପ୍ରୁ କେତେ ଗନ୍ଧରବ ସଇନି ରଖିଚି ?

ଜହ୍ନ ଆଲୁଅରେ ପଥର ମୂର୍ତ୍ତି ଭଳି ବସିଥିବା ଲୋକଟିର ମୁହଁରୁ 'ତମର' ଶବ୍ଦଟି ଶୁଣି କେହି ସେ ଆଡକୁ କାନ ଦେଲେ ନାହିଁ । କିମ୍ବା ଆଶ୍ଚର୍ଯ୍ୟ- ଚକିତ ବି ହେଲେ ନାହିଁ । ଲୋକଟି ଏ ପ୍ରଶ୍ନ ନିଜେ ନିଜକୁ ପଚାରିଲା ଭଳି ମନେକଲା । କାରଣ ସେତେବେଳକୁ ଅଧିକାଂଶ ଶୋଇ ସାରିଥିଲେ ଭୂଇଁର ଶେଯ ଉପରେ । କିଛି ଗୋଟାଏ ଅଦ୍ଭୁତ ଘଟଣା ଘଟିବ ବୋଲି ନିଦଠାରୁ ମହଲତ୍ ନେଇ ବସିଥିବା ଲୋକଟିମାନ ପ୍ରାୟତଃ ତନ୍ଦ୍ରଛନ୍ନ ଥିଲେ । ପ୍ରଶ୍ନକର୍ତ୍ତା ତା' ଚାରିପଟର ନୀରବତାକୁ ପଢିସାରି ଶୋଇବା ପାଇଁ  ଖୋଜି ହେଉଥିଲା ସାଢେ ତିନିହାତ ଲମ୍ବର ଜାଗା ଖଣ୍ଡେ ।

ସତେ କି ସେ ଯୁଦ୍ଧକ୍ଳାନ୍ତ ଅର୍ଜୁନ ।

ଅପୋଡା ଭୁଇଁ ଖଣ୍ଡେ ଖୋଜୁଚି ।

ସାଢେ ତିନି ହାତର, ଖାଲି ଜାଗା ଟିକେ ।

ସେ ଭାରି କ୍ଳାନ୍ତ । ତାର ବିଶ୍ରମ ଲୋଡା । କ୍ଳାନ୍ତି ଭୁଲିଯିବାର ବିଶ୍ରାମ । କିନ୍ତୁ ନାହିଁ କୋଉଠି ସେ ଜାଗା । ଚାରିଆଡେ ମଣିଷ ଆଉ ମଣିଷ । ଅଳ୍ପ କିଛି ଦୂରରେ ପୂଜାପୀଠ । ହୋମ ଅନେକ ବେଳୁ ସରିଥିଲେ ବି ନିଆଁର ଧାସ କମିନାହିଁ । ଦିକ୍‌ଦିକ୍ ହେଇ ତଥାପି ଜଳୁଚି, ରହିରହି । ସେଇଠି ଦିଇଟା ମଣିଷ ଅନେକ ସମୟ ହେଲା ପାଖାପାଖି ଠିଆହୋଇ ରହିଛନ୍ତି ଜଗୁଆଳ ଭଳି । ବୋଧହୁଏ ଠିଆ-ଠିଆ ଶୋଇ ଯାଇଛନ୍ତି । ସାମ୍ନାପଟ ଅନ୍ଧାରରେ ସେମାନେ ଦିଶୁଛନ୍ତି ଦିଇଟା ସିଲହଟ ଛବି ପରି ।

ଚାରିଆଡେ ଦିବ୍ୟ ପ୍ରଶାନ୍ତି ବିଞ୍ଚି ହେଇ ପଡିଚି ।

ରାତି ବଢୁଚି ।

ଆଖିପତା ମାଡି ହେଇ ପଡୁଚି । ଦୂରରୁ ନିଶାଚର ଜୀବମାନଙ୍କ ସ୍ୱର ଶୁଭୁଚି, ଅନିୟମିତ ବ୍ୟବଧାନରେ । ଠିକ୍ କରି ଜାଣି ହେଉ ନାହିଁ- ଆଜି କୋଉତିଥି, କୋଉ ପକ୍ଷ- କୋଉ ଋତୁ । ପ୍ରକୃତିର ଖୋଲା ଅଗଣାରେ ଏତେ ଶାନ୍ତି, ଏତେ ଆନନ୍ଦ ! ଅନେକ ଦିନ ହେଲା ମଣିଷ ଏସବୁଠୁଁ ଦୂରରେ ରହିଚି । ନିଜ ତିଆରି ନାଗଫାଶରେ ନିଜେ ବନ୍ଦୀ । ନିଜଗଢା ସଭ୍ୟତାର ନିଜେ ମୁଗ୍ଧ ନାନ୍ଦୀକାର । ବାସ୍ତବ ସତ୍ୟଠାରୁ ସେ ରହିଛି, ମାଇଲ୍ ମାଇଲ୍ ଦୂରରେ । ଯେଉଁଠି ଖାଲି କୃତ୍ରିମ ଶାନ୍ତି;  ଭେଜାଲ ଆନନ୍ଦ ।

ଆଜିର ଏ ରାତି ଭାରି କୁହୁକିନୀ ।

ଏମିତିଆ ଗୋଟେ ରାତିର ଉପଲବ୍ଧି ଜୀବନରେ ପ୍ରଥମ । ନିରୁତା ସହରୀ ଜୀବନରେ କୁଆଡୁ ମିଳିବ ଏସବୁ । ଇଚ୍ଛା ହେଉଚି, ଉତାରି ପକାନ୍ତା ଏ ମୁଖା । ନିଜର ଅସଲ ରୂପଧରି ସବୁରି ଆଗରେ ଉଭା ହେଇ ଯାଆନ୍ତା; କହନ୍ତା- 'ଶୁଣ ଭାଇମାନେ ! ମୁଁ ତୁମରିମାନଙ୍କ ଭଳି ମଣିଷଟିଏ ମନେ ହେଉଥିଲେ ବି ପ୍ରକୃତରେ ତାହା ନୁହଁ । ମୁଁ କୋଇଲି ବସାରେ କାଉଟିଏ । ଏ ମୁଲକର ଅସଲ ଖବର ଜାଣିବା ପାଇଁ ମୋର ଏ ଛଦ୍ମରୂପ । ମୁଁ ତୁମରିମାନଙ୍କ ଭଳି ପୋଷାକ ପିନ୍ଧିଚି, ତୁମରିମାନଙ୍କ ସାଙ୍ଗରେ ବସି ଗଣ ଭୋଜନରେ ଖାଇଚି । ଶେଷରେ ତୁମରିମାନଙ୍କ ଭଳି ପ୍ରଶ୍ନ କରୁ କରୁ ଭୁଲ୍‌ରେ କହି ପକାଇଚି- 'ଆଚ୍ଛା, ତୁମର ଏ ମାହାପ୍ରୁ କେତେ ଗନ୍ଧର୍ବ ସଇନି ରଖିଚି ?'

ବସି ବସି ଭାବି ହେଉଥିଲେ ସେ । ତଥାପି ଖୋଜି ହେଉଥିଲେ ସାଢେ ତିନିହାତ ଜାଗା; ଗୋଟିଏ ରାତିପାଇଁ ବିଶ୍ରାମ ଲୋଡା । ଜାଗା ଦିଶି ଯାଉଥିଲେ ବି ବିକାର ବାଧା ଦେଉଥିଲା । ଏମିତି କେମିତି ଶୋଇ ହେବ ! ଜୀବନରେ ତ ଏଭଳି ଶୋଇବାର ଅଭ୍ୟାସ ନାହିଁ କେବେ । ହେଲେ, ଭାରି କଷ୍ଟ । ମଣିଷ ଏମିତି ଗୋଟେ ଅବସ୍ଥାରେ ବୋଧହୁଏ ଶ୍ମଶାନରେ ଶୋଇପଡେ ।

ସେ ଶୋଇବାକୁ ଚେଷ୍ଟା କରୁଥିବା ସମୟରେ ହୁଦସ୍ତ ତାଙ୍କୁ ଟେକି ବସାଇଦେଲେ, କେତେଜଣ ଲୋକ । ଛାୟାଚନ୍ଦ୍ରିକାର ଅସ୍ପଷ୍ଟତାରେ ଏ ଲୋକଙ୍କୁ ଚିହ୍ନି ହେଉ ନଥିଲେ ବି ସ୍ୱରଟିଏ ସ୍ପଷ୍ଟ ଶୁଣି ହେଲା ।

-ତୁମେ ପତ୍ରକାର ମୋହନ ?

-ହଁ...; କିନ୍ତୁ ତୁମେ କେମିତି ଜାଣିଲ ?

-ଆମ ସାଙ୍ଗରେ ଆସ ।

-କୁଆଡକୁ ?

-ପ୍ରଶ୍ନ କରନା । ... ଚାଲ ।

-ତୁମେମାନେ କିଏ... ?

-ପୁଣି ଭୁଲ୍ କରୁଚ !

-ଶୁଣ, ମୋର କିଛି କହିବାର ଅଛି ।

-ଅନୁମତି ପାଇଲେ, ସେଇଠି କହବ ।

-ହଉ; ଧରା ତ ପଡିଲ । ତେଣିକି...

-ଚାଲ... ।

ସେମାନେ ଚାଲିଗଲେ । ତଥାପି ସେଇ ଶାନ୍ତ ନୀରବ ପରିବେଶରେ ସାମାନ୍ୟତମ ଉନ୍ମତା ବଢି ଯାଇ ନଥିଲା । କାହାରି ନିଦ ଭାଙ୍ଗି ଯାଇନଥିଲା । ରାତିର ମତୁଆଲା ନିଶା ଏତେ ଟିକେ କମି ନଥିଲା । ସବୁଠିଁ ଆଗାମୀ କାଲିର ସ୍ୱପ୍ନବିଭୋରତା ।

ସବୁଦିନ ଭଳି, ସକାଳ ହେବାର ବହୁ ପୂର୍ବରୁ, କସ୍ତୁରୀ ଏକାକୀ ଘୂରି ଆସିଥିଲା ବିସ୍ତୃତ ବନଭୂଇଁରେ । ଝରଣାରେ ଗାଧୋଇଥିଲା । କୋଇଲିର ସ୍ୱରକୁ ନକଲ କରି ଅବିକଳ ସେଇଭଳି ସ୍ୱର କରିଥିଲା । ହସିଥିଲା ମନଖୋଲା ହସ । ତା'ପରେ ଚପଳ ଛନ୍ଦା କିଶୋରୀଟି ଭଳି ନାଚିନାଚି ଆଗେଇ ଯାଇଥିଲା ଗଣକେନ୍ଦ୍ର ଆଡକୁ । ତଥାପି ସେ ପର୍ଯ୍ୟନ୍ତ ଛାମୁଁଡିଆଁର ବିଶାଳ ଶାଳବନର ବହଳ ଚାନ୍ଦୁଆ ଭେଦି ସୂର୍ଯ୍ୟକରିଣ ଫରଚା କରିପାରି ନଥିଲା, ସେ ମୂଳକକୁ /

ଏ ଅଞ୍ଚଳର ନାଁ ଛାମୁଁଡିଆ ।

ଯିଏ ଏଭଳି ନାଁ ଦେଇଥିଲା ସେ କବିଟିଏ ହେଇଥିବ ନିଶ୍ଚେ । ଚମତ୍କାର କଳ୍ପନାର ମହକ ଭାସିଆସେ ଏ ନାଁରୁ । ନିବିଡ ଜଙ୍ଗଲ ଭୂମିର ଛାମୁଁଡିଆ । ମୁକ୍ତ ଅଥଚ ବିସ୍ତୃତ ଛାମୁଁଡିଆ ତଳେ ବାସ କରି ରହି ଆସିଛନ୍ତି ଏ ଅଞ୍ଚଳର ଜନସମାଜ । ଶାନ୍ତି, ଉପଦ୍ରବହୀନ ଜୀବନ ପାଇଁ ପ୍ରକୃତିର ଏଇ ପରିବ୍ୟାପ୍ତ ସବୁଜ ବଳୟ । ସଭ୍ୟତାର କିମ୍ବା ପ୍ରଗତିର ଇଏ ପରିବ୍ୟାପ୍ତ ସବୁଜ ବଳୟ । ସଭ୍ୟତାର କିମ୍ବା ପ୍ରଗତିର ଦ୍ୱାହି ଦେଇ ଏବେ ଏ ଜନପଦର ନୀରବତାକୁ ଭାଙ୍ଗି ଦିଆଯାଉଛି । କସ୍ତୁରୀ ଏହିସବୁର ଚଳମାନ ସଚେତନତା- ପ୍ରତିବାଦର ମୂର୍ତ୍ତିମାନ ଝଡ ।

ସକାଳର ଏହି ମୁହୂର୍ତ୍ତଗୁଡିକ ବିଦ୍ୟାଦାନର ସମୟ । ମୁଲକ ଯାକର ପିଲେ ଦଳ ଦଳ ହେଇ ଠୁଳ ହୁଅନ୍ତି ଆସି ଏଇଠି । କେତେବେଳେ କୋଉ ଦଳ ଗଛମୂଳେ ବସି 'ଅ-ଆ କ ଖ'

ଶିଖନ୍ତି; କେହି କେହି ବହି ପଢନ୍ତି । କେତେବେଳେ କୋଉ ଦଳ ଗାଈ-ଗୋରୁ ଛେଳିମେଣ୍ଢା, ଘୁଷୁରୀ-କୁକୁଡା ଆଦିଙ୍କ ମେଳରେ ପଶି ସେମାନଙ୍କ ବିଷୟରେ ନୂଆ ନୂଆ କଥା ଜାଣନ୍ତି । ବେଳେବେଳେ ଗଛଲତା ଗହଳରେ ଅବା ଝରଣା କୂଳରେ ବୁଲି ସେମାନଙ୍କ ଜୀବନର କଥା ଶୁଣନ୍ତି । ଯୋଉ କଥା ସେମାନଙ୍କ ନିତିଦିନିଆ ଜୀବନରେ ଦରକାର, ସେକଥା ତାଙ୍କୁ ଶିକ୍ଷା ଦିଆଯାଏ । କୁକୁଡାଚାଷ, ମାଛଚାଷ, ଘୁଷୁରୀ ପାଳନ, ଗୋପାଳନ ଆଦି ନୂଆଢଙ୍ଗରେ ସେମାନଙ୍କୁ ପଢାଯାଏ ।

ସେମାନେ ପରିପୂର୍ଣ୍ଣ ଶିକ୍ଷା ପାଆନ୍ତି ।

ଜୀବନ ବିଦ୍ୟାଳୟ ତାଙ୍କ ଶିକ୍ଷାନୁଷ୍ଠାନ ।

ବାଧ୍ୟବାଧକତା ନାହିଁ ।

ଆଗ୍ରହ ସହ ପିଲା ଆସନ୍ତି, ପଢନ୍ତି ।

ସେଦିନ ପିଲାଏ, ଆସିଥିଲେ ଠିକ୍ ସମୟରେ ।

ଗଣକେନ୍ଦ୍ରର ଚାରିଆଡେ ସାଲୁବାଲୁ ହେଉଥିବା ଲୋକମାନଙ୍କୁ ଦେଖିଲେ । ସେଥିରେ ସେମାନେ ଆଶ୍ଚର୍ଯ୍ୟ ହେଇ ଯାଇ ନଥିଲେ । ସେମାନେ ସେମାନଙ୍କ କାମରେ ଲାଗି ଯାଇଥିଲେ । କେହି ଜଣେ କେତେବେଳେ ଆସି କହି ଦେଇ ସାରିଥିଲା, ବନଦେବୀ ମହାପ୍ରୁ ଏଇ ସକାଳୁ ସକାଳୁ ଇଠିକି ବିଜେ ହେବେ । ପିଲାଙ୍କ ପାଠପଢା ଦେଖିବା ଆଗରୁ ଆମମାନଙ୍କୁ ଭେଟିବେ; ଦୁଃଖସୁଖ ହେବେ । ଏ ଖବର ପାଇଗଲା ପରେ ଯେଝା ଯେଝା କାମକୁ ନ ଯାଇ ଲୋକେ ଅଟକି ଯାଇଥିଲେ ।

ଗଣକେନ୍ଦ୍ର ନିକଟରେ ଗତ ରାତିର ଭିଡ ଜମି ରହିଥିଲା । ବନଦେବୀ ମହାପ୍ରୁଙ୍କୁ ଦେଖିବା, ଦି'ପଦ ମିଠାକଥା ଶୁଣିବାର ଅଦମ୍ୟ ଆଗ୍ରହ । ହୋ-ହୋ ଘୋ-ଘୋ ଶୁଭୁଥିଲା । କୋଉଠି କିଛି ଗୋଟେ ଘଟିଗଲା ଭଳି, ହଠାତ୍ ବିଛାଡି ହେଇ ପଡିଲା ନୀରବତା ।

ସମସ୍ତେ ଚୁପ୍‌ଚାପ୍ ।

ସତେ କି ପୃଥିବୀ ଶବ୍ଦଶୂନ୍ୟ ।

କସ୍ତୁରୀ ଆସିଲା । ସକାଳର କଅଁଳ ସୂର୍ଯ୍ୟକିରଣରେ ସେ ଦିଶୁଥିଲା ସଦ୍ୟ ମାଜଣା ହୋଇଥିବା ଦେବୀ ପ୍ରତିମା ପରି । ସେ ମୁହଁରେ ହସ-ଆନନ୍ଦ ଥିଲା କି ଗମ୍ଭୀରତା ଖୁନ୍ଦି ହେଇଥିଲା, ଜାଣିବା ମୁସ୍କିଲ୍ । ଲୋକଙ୍କ ଭିତରେ ପଶି, ପଦିଏ ଲେଖାଏଁ ଆଳାପ କରିକରି ସେ ସେଇଠି ଆସି ଠିଆହେଲା, ଯେଉଁଠି ଗତ ରାତିରେ ହୋମକୁଣ୍ଡ ସଜା ହେଇଥିଲା । ଏହାରି ଭିତରେ ସେ ଜାଗା ନିଚିପର ଭାବରେ ପରିଷ୍କାର ହେଇ ସାରିଥିଲା । ଗଲା ରାତିରେ ଏତେ ବଡ ଆଡମ୍ବରର ଟିକେ ହେଲେ ଚିହ୍ନବର୍ଣ୍ଣ ସୁଦ୍ଧା ନଥିଲା ସେଠି । ଏତେ ସବୁ କାମ କିଏ କେତେବେଳେ କଲା, ଜଣା ପଡି ନଥିଲା କାହାକୁ ।

କିଛି ମୁହୂର୍ତ୍ତ ପାଇଁ ଟାଙ୍କୁବ୍ ହେଇ ଏଣେ ତେଣେ ଅନଉଥିବା ଲୋକେ ଶୁଣିଲେ କସ୍ତୁରୀର କଥା । ସେ କହୁଥିଲା- 'ଦେଖ, ଇଏଠି ଗତ ରାତିରେ କେତେ ଅନ୍ଧାର ଥିଲା । ସମସ୍ତଙ୍କୁ ଜାଣିହେଉ ନଥିଲା; ଚିହ୍ନି ହେଉ ନଥିଲା । ଆଜି ସକାଳୁ ସୂର୍ଯ୍ୟ ଉଇଁଲା ମାତ୍ରେ ସବୁ ଫର୍ଚ୍ଚା ହେଇଗଲା । ସବୁକିଛି ଦିଶିଗଲା ସ୍ପଷ୍ଟ । ଅନ୍ଧାରରେ ଦିହଛପା ଦେଇ ବାହାରର ଯଦି କେହି ଆମ ଭିତରେ ଆସି ମିଶି ଯାଇଥାଏ, ଏଇଲେ ତାକୁ ଚିହ୍ନିବା କଷ୍ଟକର ହେବ ନାହିଁ । ତେଣୁ ଆଲୁଅ ଆସୁ । ସବୁକିଛି ସ୍ପଷ୍ଟ ଦିଶିଯାଉ । ଅନ୍ଧାରରେ ପଶି ଆସୁଥିବା ବ୍ୟକ୍ତି ବା ବସ୍ତୁ ପ୍ରତି ଆମକୁ ସତର୍କ

ରହିବାକୁ ପଡିବ । ନଇଲେ ଆମେ ଆରମ୍ଭ କରିଥିବା ଏଇ ଆମର ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମର ଲକ୍ଷ୍ୟ ବିଳମ୍ବିତ ହେବ ।

ଭଲ କରି ଲକ୍ଷ୍ୟ କର;

ଆଜି ପର୍ଯ୍ୟନ୍ତ ଆମକୁ ସମସ୍ତେ କେବଳ ଠକି ଆସିଛନ୍ତି । ଆମର ମଙ୍ଗଳ କରିବା ନାଁରେ ଯୋଉମାନେ ଆମକୁ ବହୁଶ୍ରେଣୀ ବା ସଂପ୍ରଦାୟରେ ବିଭକ୍ତ କରିଛନ୍ତି ଓ କରୁଛନ୍ତି, ସେମାନଙ୍କ ପ୍ରତି ସାଧୁ ସାବଧାନ । ଇଂରେଜମାନେ ଆମକୁ ଏମିତି ଶ୍ରେଣୀ-ବିଭକ୍ତ କରି ଶହଶହ ବର୍ଷ ଶାସନ କରିଥିଲେ । ସେମାନେ ଜାଣିଥିଲେ ସେଇଠି ରହିଚି ଆମର ଦୁର୍ବଳତା । ସେମାନଙ୍କ ପରେ ଏବେ ଏମାନେ ଆମକୁ ଆହୁରି ଛୋଟ ଛୋଟ ଭାଗକରି ଶାସନ କରିବାର ଚକ୍ରାନ୍ତ କରୁଛନ୍ତି । ଆମକୁ ଯେତେ ଭାଗରେ ବିଭକ୍ତ କରିବେ, ଯେତେ 'କୋଟା' ଦେବାର ସାମ୍ବିଧାନିକ ବ୍ୟବସ୍ଥା କରିବେ, ସେଥିରେ ଆମକୁ ସବୁଦିନ ପାଇଁ ଛୋଟ ଆଉ ହୀନ କରି ରଖିବେ । ସେମାନଙ୍କ ନଜରରେ ଆମେ ସବୁଦିନ ପାଇଁ ଦୟାର ପାତ୍ର ହୋଇ ରହିଥିବା ।

ଆମର ନୂତନ ସମାଜ ହେବ କୋଟାମୁକ୍ତ ସମାଜ । କୋଟା ବ୍ୟବସ୍ଥା ଯୋଉମାନେ କରୁଛନ୍ତି ଏବଂ ଯୋଉମାନେ ତା' ସପକ୍ଷରେ ଯୁକ୍ତି କରୁଛନ୍ତି, ସେମାନେ ସମସ୍ତେ ସେମାନଙ୍କ ଲାଭ ପାଇଁ କରୁଛନ୍ତି । କରାଣ୍ଡି ଗୁଣ୍ଡି ବାଳିଆ ଧରିବାର ନ୍ୟାୟ । ଆମର ଉନ୍ନୟନ ପାଇଁ କୋଟି କୋଟି ଟଙ୍କା ଆଣି ସେମାନେ ହରିଲୁଟ୍ କରୁଛନ୍ତି । କ୍ଷମତା ଦଖଲ ପାଇଁ ଅଇଁଠାପତ୍ର-ଲୋଭୀ କୁକୁରଙ୍କ ଭଳି କଳି କରୁଛନ୍ତି ।

ଫଳରେ ଆମ ରାଜନୀତିକ ସ୍ୱାଧୀନତା ଆଜି ଭୂଲୁଣ୍ଠିତ ।

ଗଣତାନ୍ତ୍ରିକ ଜୀବନ ଉପହାସିତ ।

ତେଣୁ ଆମେ ଆରମ୍ଭ କରିଦେଇଚେ ନୂତନ ସଂଗ୍ରାମ । ଆମେ କରି ଆସିଥିବା ଅସଂଖ୍ୟ ଭୁଲ୍ ପାଇଁ ଇଏ ସଂଶୋଧନ ପ୍ରସ୍ତାବ । ଆମେ କାହାରି ଗୋଡାଣିଆ ନୁହଁ । ଆମେ କାହାରି ଆଦର୍ଶକୁ ଅନ୍ଧଭଳି ଅନୁସରଣ କରିବାକୁ ଚାହୁନା । ମଣିଷ ଜନ୍ମ ହେଇଥିଲା ମୁକ୍ତ ଭାବରେ । ଏବେ ସେ ଚାରିଆଡୁ ବନ୍ଦୀ । ନା, ... ଆମେ ଏବେ ମୁକ୍ତ ମଣିଷ । ନୂଆ କରି ସବୁକଥା ମୂଳରୁ ଆରମ୍ଭ କରିବା । ବହୁଧା ବିଭକ୍ତ ସମାଜ ବ୍ୟବସ୍ଥାକୁ ଆମେ ଭାଙ୍ଗି ଦେବା । ସବୁ ମଣିଷ ସମାନ । ଏ ବିଭକ୍ତ ରାଜନୀତିକୁ ନେଇ ଗଢା ସମାଜ ବ୍ୟବସ୍ଥାରେ ଆମର ବିଶ୍ୱାସ ନାହିଁ ।

ମାଙ୍କଡ ପିଠା ବାଣ୍ଟିବା କଥା ସମସ୍ତେ ଜାଣିଥିବେ । ଆମର ଏଠି ପିଠା ବାଣ୍ଟୁଥିବା ମଧ୍ୟସ୍ଥ ମାଙ୍କଡଙ୍କ ଭୂମିକା ଆଦୌ ରହିବ ନାହିଁ । ଆମେ ନିଜ ହାତରେ ଗଢିବା ଏକ ଚକ୍ରାନ୍ତହୀନ ନିରୋଗ ଭାରତୀୟ ସମାଜ । ତା'ର ଅୟମାରମ୍ଭ ହେଲା ଏଇଠୁ; -ଏଇ ବଣପାହାଡମୟ ମୂଳକ ଛାମୁଁଡିଆରୁ ।

ତା'ପରେ ଇଏ ଚାରିଆଡକୁ ପ୍ରସରିଯିବ ।

କଥାରେ ପୂର୍ଣ୍ଣଚ୍ଛେଦ ପଡିଲା ନାହିଁ ।

ଅପେକ୍ଷା ଆଉ କେଉଁ ସୁଯୋଗକୁ ।

ଲୋକେ ନିଜ ନିଜର କାମକାଗାକୁ ଫେରିଲା ବେଳେ ସବୁ ଆଡେ ତୋଫା ଖରା ବାଣ୍ଟିବୁଣ୍ଟି ହୋଇ ପଡି ସାରିଥିଲା । ଆଜି ଦିନର କାମ ଆରମ୍ଭ କରିବାକୁ ହେବ; ଉଚ୍ଛୁର ହେଲାଣି ଅନେକ । ତେଣୁ ସମସ୍ତେ ତରତର । ତଥାପି ମୁହଁରେ ପ୍ରଶ୍ନର ଖଇବାଣ । ପରସ୍ପର ନିଜ ନିଜର ସହଯାତ୍ରୀକୁ କୌତୂହଳୀ ପ୍ରଶ୍ନ ପଚାରି ପଚାରି ଆଗେଇ ଚାଲିଥିଲେ ।

-ହଇରେ, ଇଏ 'କୁଟା' କିସରେ ?

-କିଜାଣି । କିଛି ଗୁଟେ ଦାମିକା ଚିଜ ହେଇଥିବ ପରା ?

-ମାହାପ୍ରୁ 'କୁଟା' ଚାହୁଁନି । ତ ସିଏ ଭଲ ଜିନିଷ ନୁହଁ ।

-ଆଚ୍ଛା, ମାଙ୍କଡ ପିଠା ବାଣ୍ଟକଲା କାଇଁକି ? ମଣିଷ କିସ ବାଣ୍ଟି ପାରିଲେନି କି ?

-କିଜାଣି ! ଆଜି କାଇଁକି ମାହାପ୍ରୁର କଥା ଭାରି ଓଜନିଆ ଲାଗିଲା ।

-ଶୁଣିଚୁନା, କାଲି ରାତିରେ ଚୋର ଧରା ପଡିଲା ।

-ଧୁତ୍ ! ଚୋର କାହିଁକି ଉଠିକି ରାତିରେ ଆସିବ ? ଦିନ ସାରା ତ ସବୁ ଦରବ ଖୋଲା ମୁକୁଳା ।

-ଏତେ କଥା ମତେ ମାଲୁମ ନାଇଁ । କିମାତ୍ରକ ମୁଁ ଜାଣେ, ଦେବୀ ମାହାପ୍ରୁର ବାହନ ବାଘ ତାକୁ ଚିହ୍ନିପାରି ଖପ୍‌କିନା ମାଡି ବସିଲା । ଆଉ କି ତା' ଖାପଚିରୁ ଖସେ । ସି, କୋଉ ବାହାର ମୁଲକର ମନଷ । ହାଣ ଖାଇବ କି ଖସିବ ସେଇ ମାହାପ୍ରୁକୁ ଜଣା ।

-ବନଦେବୀର ବାହାର ମୂଲକ ପେଇଁ ଚିନ୍ତା ବଢିଚି । ଇଠି ଇଛା କିଛି ଅସୁବିଧା ନାଇଁ । ସବୁ ସାବାଡ । ଏକବାରେ ଠିକ୍ ।

ଖଣ୍ଡେ ବର୍ଷଣମୁଖୀ ମେଘ ବର୍ଷି ବର୍ଷି ଚାଲିଗଲା ଭଳି ଲୋକେ ଗପି ଗପି ଚାଲିଗଲେ, ନିଜ ନିଜ କାମକୁ । ନିତିଦିନିଆ ଜୀବନଧାରାର ଲାଗି ରହିଲା ଅଖଣ୍ଡ ପ୍ରବାହ । ଗଣକେନ୍ଦ୍ର ସବୁ ଦିନ ପରି ପାଲଟିଗଲା ଉପଭୋକ୍ତାର ବିପଣୀ । ପିଲାଏ ସମୟକୁ ଜଗି ପାଠ ଆରମ୍ଭ କରିଦେଇଥିଲେ, ଯନ୍ତ୍ରମଣିଷ ଭଳି । ସାମୟିକ ଭାବେ କସ୍ତୁରୀ ଉପରେ ବିରକ୍ତ ହୋଇ ଗହନବନକୁ ପଳେଇ ଯାଇଥିବା କୋଇଲିଟି ପୁଣି ଫେରି ଆସି ପତ୍ରଗହଳରେ ବସି ତା'ର ରିଆଜ୍ ଆରମ୍ଭ କରିଦେଲା ।

ଜଗତ ସ୍ୱାଭାବିକ ହେଲା ।

କସ୍ତୁରୀ ହେଲା କର୍ମମୁଖର ।

ସାମ୍ନାରେ ଗତରାତିର ଅପରାଧୀ ।

'ପତ୍ରକାର ମୋହନ' !

ହଁ, ମୁଁ ପତ୍ରକାର ମୋହନ । ଆପଣଙ୍କ ଲୋକେ ମତେ ଚିହ୍ନିବାରେ ଭୁଲ୍ କରିନାହାନ୍ତି । ମୁଁ ଗଲା ରାତିରୁ ଏଇ କଥା ଭାବି ହେଉଚି, ମୁଁ ତ ବେଶ ବଦଳେଇ ଥିଲି; ସେଇମାନଙ୍କ ସାଙ୍ଗରେ ମିଶି ଯାଇଥିଲି । ଆଭିଜାତ ଖୋଳପା ମୋର ଲୁଚି ଯାଇଥିଲା । ତଥାପି ସେମାନେ ଏତେ ଲୋକଙ୍କ ଭିତରୁ ମତେ ଚିହ୍ନିଲେ କେମିତି ? ମୋ ବିଷୟରେ ଏତେ କଥା ଜାଣିଲେ କେମିତି ? ଏତେ ବଡ ମେଳା । ଏତେ ଲୋକ । ସବୁ ମୁହଁ କ'ଣ ସେମାନଙ୍କ ନଖ-ଦର୍ପଣରେ ଅଛି ? ଏତେ ନିର୍ଭୁଲ କାମ କରୁଥିବା ଏଇ ଲୋକମାନେ ପ୍ରକୃତରେ କିଏ ?

ଗମ୍ଭୀର ଅଥଚ ଦମ୍ଭିଲା ସ୍ୱରରେ କସ୍ତୁରୀ କହିଲା- ଶୁଣ ! ମୁଁ ତୁମର କୌଣସି ପ୍ରଶ୍ନର ଉତ୍ତର ଦେବାକୁ ବାଧ୍ୟନୁହେଁ । ଓଲଟା ତୁମ ଉପରେ ଅଭିଯୋଗ- ତୁମେ ଏଠିକି ଛଦ୍ମବେଶରେ କାହିଁକି ଆସିଥିଲ ? ଆମ ଲୋକଙ୍କ ଭିତରେ ଲୁଚିବସି କି କଥା ଜାଣିବାକୁ ଚେଷ୍ଟା କରୁଥିଲ ?

ଏଥର ସ୍ୱାଭାବିକ ଭାବରେ ମୋହନ କହିଲେ- 'ସାମ୍ବାଦିକର କାମ ହେଲା ସତ୍ୟ ପ୍ରକାଶ କରିବା । ଦୁନିଆକୁ ବାସ୍ତବ ତଥ୍ୟ ସହ ପରିଚିତ କରାଇବା ।'

ପୂର୍ବର ଗମ୍ଭୀରତାକୁ କଣ୍ଠରେ ବଜାୟ ରଖି କସ୍ତୁରୀ କହିଲଣ- 'ସତ୍ୟ ?... ଆଉ ବାସ୍ତବ ତଥ୍ୟ ? । ଭାରତବର୍ଷର ସାମ୍ବାଦିକମାନେ ତାହା କରୁଥିଲେ, ଏ ଦେଶର ଅବସ୍ଥା ଆଜି ଏଇୟା

ହେଇନଥାନ୍ତା । ଗଣତନ୍ତ୍ରର ଜାଗ୍ରତ ପ୍ରହରୀମାନଙ୍କ ଭିତରୁ ଅଧିକାଂଶ ଏବେ କାହାରି ନା କାହାର ଠିକାଦାର । ତଥ୍ୟ ଓ ସତ୍ୟଠାରୁ ସେମାନେ ଏବେ ଅନେକ ଦୂରରେ । ଖବରକାଗଜରେ ଯାହାସବୁ ବାହାରୁଚି, ତାହା ଦେଶର ପ୍ରକୃତ ଚିତ୍ର ନୁହେଁ, ଚିତ୍ରାଭାସ ମାତ୍ର । ତାହାଠାରୁ ଆହୁରି ଭୟଙ୍କର, ଆହୁରି ଦୁଃଖଦ ଘଟଣା ଅନ୍ତରାଳରେ ରହି ଯାଉଚି ।'

ମୋହନକୁ କସ୍ତୁରୀର ଯୁକ୍ତି ଆମୋଦଦାୟକ ମନେ ହେଲା । ସେ ସତକଥା କହୁଥିଲା ବି ସମାଜ ବ୍ୟବସ୍ଥାକୁ ତ ରାତାରାତି ବଦଳାଯାଇ ପାରିବ ନାହିଁ । ତେଣୁ ଶାନ୍ତ କଣ୍ଠରେ ସେ କହିଲେ- 'ଦେଶର ପ୍ରକୃତ ଚିତ୍ର ସଂଗ୍ରହ କରିବା ପାଇଁ ମୋର ଏ ଦୁରନ୍ତ ଅଭିଯାନ । ଜିଲ୍ଲା ଉନ୍ନୟନ କମିଟି ମିଟିଂରେ ଜିଲ୍ଲାପାଳ ମିଷ୍ଟର ମହାପାତ୍ର ଆପଣଙ୍କର ଦୁଃସାହସିକ କାର୍ଯ୍ୟ ସମ୍ବନ୍ଧରେ କିମ୍ବା ଏଠିକାର ବିଧିବିଧାନ ସମ୍ବନ୍ଧରେ କିଛି କହିପାରି ନଥିଲେ ।

'ଜିଲ୍ଲାପାଳ ସଂଜୟ ମହାପାତ୍ର... !!'

କସ୍ତୁରୀ ସେ ନାଁଟାକୁ ଏଭଳି ଉଚ୍ଚାରଣ କଲା ଯେ, ମନେହେଲା, ସତେ ଯେମିତି କିଛି ଗୋଟାଏ ଜିନିଷକୁ ପାକୁଳି କରୁଚି । କିମ୍ବା ସେ ନାଁଟାରୁ କ'ଣ କିଛି ଖୋଜି ହେଉଚି ।

-'ଆପଣ ଜାଣନ୍ତି ତାଙ୍କୁ ?'

-'ନା... ।'

ଏତକ କହିସାରି ଟିକିଏ ନୀରବ ହୋଇଗଲା କସ୍ତୁରୀ । ସମ୍ଭବତଃ ସେ ଯାହା ଖୋଜି ହେଉଥିଲା, ହଠାତ୍ ହାତପାଆନ୍ତାରେ ମିଳିଲାନି । ତା'ପରେ ସେ ସ୍ୱାଭାବିକ ଢଙ୍ଗରେ କହିବାକୁ ଆରମ୍ଭ କଲା- 'ଶୁଣ ! ତୁମେ ସାମ୍ବାଦିକ । ସେଥିପାଇଁ ଏଥରକ ତୁମକୁ କ୍ଷମା ଦିଆଗଲା । ପୂର୍ବରୁ ସୂଚନା ନ ଦେଇ ଛଦ୍ମ ଭାବରେ ଆଉ କେବେ ଏ ଇଲାକା ଭିତରେ ପଶିବାକୁ ଚେଷ୍ଟା କରିବ ନାହିଁ । ଏହା ଏକ ଶୁଭଙ୍କର ସତର୍କତା । ଆଉ, ତୁମ ଜାଣିବା ପାଇଁ କହିପାରେ- ଏଠି ଆମେ କୌଣସି ଗୋପନୀୟ କାମ କରୁନାହୁଁ । ଆମ କାମ ସୂର୍ଯ୍ୟାଲୋକ ଭଳି ସ୍ପଷ୍ଟ ଓ ନିର୍ମଳ ।

ତୁମେ ତୁମ ଜିଲ୍ଲାପାଳଙ୍କୁ କହିପାର, ତୁମ ଅଭିଜାତ ସମାଜକୁ ଅବଗତ କରାଇପାର । ଭାରତବର୍ଷ କାହାରି ଚିରସ୍ଥାୟୀ ଉପନିବେଶ ନୁହେଁ । ଏଠି ଯେଉଁ ଗଣଚେତନା ମୁଣ୍ଡ ଟେକିଚି, ତାହା ଖୁବ୍ ଶୀଘ୍ର ସାରା ଦେଶକୁ ବ୍ୟାପିଯିବ । ମୁଁ ଥାଇପାରେ ବା ନଥାଇପାରେ, ମାତ୍ର ପ୍ରଜ୍ୱଳିତ ଅଗ୍ନିଶିଖାକୁ ଆଉ ଢାଙ୍କି ରଖିହେବ ନାହିଁ । ସବୁ ବେକାର ଯୁବକ-ଯୁବତୀ ହେବେ ଏହାର କର୍ମୀ । ହଁ, ଏକଥା ଲେଖିବାକୁ ଭୁଲିଯିବ ନାହିଁ- ଏହା କୌଣସି ରାଜନୈତିକ ବିପ୍ଳବ ନୁହେଁ, ଏହା ଏକ ସାମାଜିକ ଝଡ ।

ଏଇତ ଆରମ୍ଭ ।



# ସୁନ୍ଦରୀ

## ଆନନ୍ଦ ଚନ୍ଦ୍ର ପହି

ଯାହାର ଦିହଉଲୁସା କବିତା ବିନ୍ଧି ଥିଲା ସୁନ୍ଦରୀର ଲୋମ ଲୋମକେ ନାରାଚ, ମନକୁ ଅଲରା ବଲରା କରି ବାଇ ବିତାଳ କରିଥିଲା, କିଆରୀ କିଆରୀ ସପନର ସୁନାଚମ୍ପାର ମହକରେ ମହ ମହ ମହକାଇଥିଲା ମନ ଉପବନ, ସେଇ କବିଟିକୁ ବରିଥିଲା ସୁନ୍ଦରୀ, ତା' ବାପା ମାଆଙ୍କ ଅନିଚ୍ଛାରେ ।

ବାପା କହିଲେ ସୁନ୍ଦରୀଲୋ ! କବିଟା ନିଃସ୍ୱ । ନାକରେ କାନରେ ନିମ କାଠି ଖଣ୍ଡେ ଦେବାକୁ ତା' ଅଣ୍ଟାରେ ଳୁ ନାହିଁ । ତୋ ପରି ସୁନାନାକୀ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଝିଅ ପାଇଁ ରାଜକୁମାର ବରି ଆଣିବି ମାଆ । ତୁ ବାପୁଡ଼ା କବିଟାକୁ ତୁଚ୍ଛ କର । ଦଣ୍ଡେ ଧୈର୍ଯ୍ୟ ଧର ।

ସୁନ୍ଦରୀ କହିଲା–ନାଇଁ, ନାଇଁ । ମୋର ଲୋଡ଼ା ନାହିଁ ରାଜକୁମାର । ଲୋଡ଼ା ନାହିଁ ଆୟ ଅଳଙ୍କାର, ହୀରା, ଲୀଳା, ମୋତି, ମାଣିକ୍ୟ । ମୋର ଲୋଡ଼ା ଗୁଂଜମାଳି, ମୟୁର ପର, କୁରେଇ ଫୁଲ, ବଇଁଚ କୋଳି । ସରଗ ଛୁଆଁ ସପନ ତୋଳି ଦେବ ମୋତେ କବି । ମୋ ପାଇଁ ଧନ ଦରବଠୁଁ ସପନ ବଡ଼ । ଧନ ଆଜି ଅଛି କାଲିକି ନଥିବ । ଧନ ବଢ଼ିଲେ ବିପଦ ବଢ଼ିବ । ଚୋର ତସ୍କର ଲୁଟିବେ । ଧନ କାୟା ବିସ୍ତାରିବ ଆକାଶ ପାତାଳ । ଧନ ଚିନ୍ତା ଆବୋରି ବସିବ– ମନ ଆଉ ଜୀବନ । ସପନ କିନ୍ତୁ ମନକୁ ହାଲୁକା କରି ତୁଳା ପରି ଭିଣି ଦିଏ । ଖେଳେଇ ଦିଏ । ଆଖି ମୁଦିଲେ ଆସେ ନିଦ । ନିଦ ଆସିଲେ ଝୁମୁ ଝୁମୁ ପାଉଁଜି ବଜାଇ ବଜାଇ ଓହ୍ଲେଇ ଆସେ ସପନ । ଖୁସି ଖୁସି ସପନ । ଚୁନି ଚୁନି ସପନ । ମିଠା ମିଠା ସପନ ।

ନାଇଁ ନାଇଁ ମୋର ଧନ ସୌଦାଗର ଲୋଡ଼ା ନାହିଁ । ଲୋଡ଼ା ନାହିଁ ମୋର ରାଜକୁମାର । ଲୋଡ଼ା ମୋର କବି । ନିଛକ ନିରୁତା କବିଟିଏ ଲୋଡ଼ା ମୋର ।

ସୁନ୍ଦରୀର ବୋଉ ଆକଟିଲେ–ସୁନ୍ଦରୀଲୋ ତୁ ନିଜ ରୂପକୁ ସଜେଇବା ଛଡ଼ା ଏ ସଂସାର ବିଷୟରେ ଜାଣୁ କ'ଣ ? କବି ସାଧାରଣ ମଣିଷ ନୁହେଁ । ସିଏ ଅସାଧାରଣ ଏଇଥିପାଇଁ ଯେ, ସିଏ ଭଲ ମଣିଷର ଅଭିନୟ କଲେ ବି ସିଏ ପାଗଳଟିଏ । ତା'ର ମନର ପାଦ ଟଳମଳ । ତା'ର କଥା କାମରେ ଅମେଳ । ଘର ସଂସାର ପାତିବା ପାଇଁ ତା' ହାତରେ ବଳ ନାହିଁ । ହସୁଚି ତ ହସୁଚି । ଚାହିଁଚି ତ ଚାହିଁଚି । ଏମିତି ଖିଆଲି ମଣିଷକୁ ନେଇ ତୁ ହୁଏତ ସପନ ଦେଖିବାର ମଜା ଅମଜେଇବୁ; କିନ୍ତୁ କବିକୁ ନେଇ ଘର ସଂସାର ପାତିବାକୁ ଭରସା କୁଳେଇବ ନାଇଁ । ଭରା ନଈରେ ଦଦରା ନାଆରେ ବସେଇ ବାଟ ଦେଖିବ କବି । ତୋ ନହନହକା ଲହୁଣି କଅଁଳ ଅଣ୍ଟା କବି ସଂସାର ଭାର ସହିବ ନେଇଁ । ତୁ ଆମ କଥାକୁ ଘେନା କର ସୁନ୍ଦରୀ । ଆମେ ତୋର ଜନମଦାତା । ଆମେ ତୋର ଉଜୁତି ଚାହୁଁ । ତୋର ସୁଖ ଶିରୀ ଚାହୁଁ ।

ତୁ କବିକୁ ଛାଡ଼ି ବରଣ କର ଆଉ କୋଉ ସମ୍ଭ୍ରାନ୍ତ ସୁପୁରୁଷ, ରାଜକୁମାର, ସୌଦାଗର । ତୁ ମଙ୍ଗିବୁ ଯଦି ତୋ ବାପାଙ୍କୁ କହି ତୋ ସ୍ୱୟମ୍ୱର ଆୟୋଜନ କରାଇବି । ତୋ ପରି ସୁନ୍ଦରୀ ଝିଅର ନାଆଁ ଶୁଣିଲେ ସାରା ମହୀମଣ୍ଡଳରୁ ଧାଇଁବେ ରାଜକୁମାର ! ଥାଟ ପଲଟଣ ଛୁଟିବ ତୋ ସ୍ୱୟମ୍ୱରକୁ । ଚହଟ ଚମ୍ପାର ଗଜରା ଗଳାରେ ଲମ୍ବାଇ ତୁ ବରିବୁ ତୋ ମନ ପସନ୍ଦର ବର ।

ନାଇଁ, ନାଇଁ କହି ଅଡ଼ି ବସିଲା ସୁନ୍ଦରୀ । ଶୋଇଲା ଗମ୍ଭୀରି ଘରେ, ଯୋଉଠି ପଣପଣ ମୂଷାମାଟି, ଭଣଭଣ ବିଲେଇ ଗୁହ । ଭିତରୁ ମୁଦିଲା କବାଟ କିଳିଣି ଦେଇ । ସକାଳ ଯାଇ ସଂଜ ହେଲା । ସଂଜ ଯାଇ ରାତି ହେଲା । ସୁନ୍ଦରୀ ସେମିତି ଶୋଇଚି ମୁହଁମାଡ଼ି । ସହୀ, ସଙ୍ଗାତୁଣୀ, ଲବଙ୍ଗ, ଅଳେଇଚ, ଗୋଲାପ ଯିଏ ଯେତେ ଡାକିଲେ, କବାଟ ପିଟିଲେ, କାହାରି କଥାକୁ କାନ ଦେଲା ନାଇଁ ସୁନ୍ଦରୀ । ଭିତରୁ ରୁନ୍ଧିଚି ଯାଉଁଳି କବାଟ, ଗବାକ୍ଷ ବାଟ । ସମସ୍ତେ ଡାକି ଡାକି ଫାଟିଫୁଟି ଗଲେ । ସୁନ୍ଦରୀ ଶୁଣିଲା ନେଇଁ କି ହୁଙ୍କିଲା ନେଇଁ ।

ସୁନ୍ଦରୀର ପେଟରେ କୁହାଟୁଚି ଭୋକ । ମନକୁ ବିବଶ କରୁଚି କବି । ମନକୁ ସହସ୍ର ରନ୍ଧ୍ର କରି ରନ୍ଧ୍ର ରନ୍ଧ୍ରକେ ପଶିଚି କବି । ମନ ଦିହ ପ୍ରାଣ ସବୁ ତନ୍ତ୍ରୀରେ ବସିଚି କବି । କବି ଟାଣୁଚି, ଦୋହଲାଉଚି, ଝୁଙ୍କାରୁଚି ସୁନ୍ଦରୀକୁ ।

ଅଡ଼ି ବସିଲା ସୁନ୍ଦରୀ । ଜୀବନ ମରଣ ପଣ । କବିକୁ ନ ପାଇଲେ ଜୀବନ ହାରିଦେବ ।

ସୁନ୍ଦରୀର ବାପା ବୋଉ ଅଟଳ ମହାମେରୁ । ସେମାନେ ଅଡ଼ି ବସିଲେ– କବି ହାତରେ ଝିଅ ସଅଁପିବା ଯାହା ଅଥଳ ଦରିଆରେ ଭସାଇ ଦେବା ସେଇଆ ।

ନିଶା ଗରଜୁଚି ସାଇଁ ସାଇଁ । ଓଳି ତଳେ କାହାର ଚାପା ଚାପା ପାଦର ଗୁମୁସୁମ୍ ଆବାଜ୍ । ସୁନ୍ଦରୀର କାନ ଠିଆ ଠିଆ, କନ କନ । ନାହି ମୁଣ୍ଡାରୁ ଧୁନ୍ଦାଳି ଉଠିଲା ହାବୁକାଏ ପବନ ।

: କିଏ ? କିଏ ସେ ଆସିଚି ଏତେ ରାତିରେ ?

ପାଦ ଶବ୍ଦ ଥମି ଗଲା । ହେଲେ ବାସ୍ନାଟେ ଚହଟି ଗଲା ଘର ଭିତରେ । ନେସି ହେଇଗଲା ସୁନ୍ଦରୀର ଦିହରେ । କେମିତି ଚିହ୍ନା ଚିହ୍ନା ଲାଗୁଚି ସେ ମହକ । ମହକଟା ଭିତରକୁ ଭିତରକୁ ପଶି ପଶି ଚାଲିଛି । ଆଚ୍ଛନ୍ନ କରୁଛି ସୁନ୍ଦରୀର ତନୁ, ମନ, ଅନ୍ତର । ସୁନ୍ଦରୀର ଲୋମମୂଳ ଠିଆ ଠିଆ । ଦେହ ମନ ଉଚ୍ଚାଟ, ଉଚ୍ଚକିତ ।

ସୁନ୍ଦରୀ କାନ ଡେରିଲା । ଗବାକ୍ଷରେ କାହାର ହାତ ଥାପିବାର ଶବଦ । ସୁନ୍ଦରୀ ଦିହ ଭିତର ଚହଲି ଗଲା, ଚବକି ଗଲା ।

ଗବାକ୍ଷ ସେପଟେ କବି, ଏପଟେ ସୁନ୍ଦରୀ । ସୁନ୍ଦରୀର ଛାତିରେ ଛନକା, ମନରେ ଦବକ । ସାହସ କୁଳୋଉ ନାହିଁ ଗବାକ୍ଷର କବାଟ ଖୋଲି କବି ଆଖିରେ ଆଖି ମିଳେଇବାକୁ । ଗୋଟାପଣେ ଥରୁଚି ସୁନ୍ଦରୀ । ଅଙ୍ଗଲତାରେ ତାତି ତଡ଼ିତ୍ ।

ଥରିଲା ହାତରେ ଗବାକ୍ଷ ଫେଇଲା ସୁନ୍ଦରୀ । ବାହାରେ ଖିଲି ଖିଲି ହସୁଚି ରାଣୀଫୁଲ ପରି ଜହ୍ନ । ଆକାଶ ଭର୍ତ୍ତି ବାଉଳା ତା'ରା । ଜହ୍ନ ବିଞ୍ଚି ହେଇଚି ସୁନ୍ଦରୀର ସାରା ଗାଆଁ ଦାଣ୍ଡ । ଝର୍କାର ରେଲିଂ ଡେଇଁ ସୁନ୍ଦରୀର ଆଖି ଥମିଗଲା କବି ଉପରେ । କୋଣାର୍କ କାନ୍ଥର ଶିଳାମୂର୍ତ୍ତି ପରି ସ୍ଥିର ହୋଇଗଲା ସୁନ୍ଦରୀ ।

ଜଡ଼ିତ କଣ୍ଠରେ କବି ଡାକିଲା–ସୁନ୍ଦରୀ ! ସୁନ୍ଦରୀ !

ଶାପମୁକ୍ତ ରାଜଜେମା ପରି ସୁନ୍ଦରୀର ଶିଳାମୂର୍ତ୍ତିରେ ପ୍ରାଣ ପଶିଲା । ଲାଜେଇ ଗଲା ସୁନ୍ଦରୀ । ତନୁବଲ୍ଲରୀ ଜଡ଼ସଡ଼ । କେଶ ବାସ ବିବଶ ।

କବି ଡାକିଲା–ଆ ସୁନ୍ଦରୀ ! ଚାଲିଆ । ମୁଁ ବରଜିଛି ବାପ, ମାଆ, ଘର, ଦ୍ୱାର, ଧନ, ଦରବ, ଭିଟାମାଟି । ତୁ ମୁରୁଛି ଦେ ସେସବୁ । ଆ ସୁନ୍ଦରୀ ଘରୁ ଗୋଡ଼ କାଢ଼ି ବାହାରିଆ । ଆମେ ଚାଲିଯିବା, ଅଜଣା ଅଶୁଣା ଥାନକୁ । ସୁନା, ରୂପା, ମଣି, ମାଣିକ୍ୟର ଅଳଙ୍କାର ଖୋଲିପକା ଦିହରୁ । ତୋ ପରି ସୁନ୍ଦରୀ ନାରୀର ଭରା ଦିହକୁ ସେ ସବୁ ବୋଝ । ବାଟଚଲାକୁ ବେଢ଼ି । ତୋର ନିରାଭରଣ କଞ୍ଚା ହଳଦୀ ଦିହ ପାଇଁ ମୋର ମୋହ । ଅଳଙ୍କାର ପାଇଁ ନୁହଁ ।

ସୁନ୍ଦରୀ ଦଣ୍ଡେ ଚାହିଁଲା କବିର ଶ୍ୟାମଘନ ଅପଘନକୁ । ନିମିଷେ ଚାହିଁଲା ନିଜ ଦିହକୁ । ହାତରୁ ଖୋଲିଲା ସୁବର୍ଣ୍ଣ ଚୁଡ଼ି, ବାହୁରୁ କୃଷ୍ଣଚୂଡ଼ା, ବେକରୁ ଚନ୍ଦ୍ରହାର, କାନରୁ ମଧୁଝରା, ନାକରୁ ସୁବର୍ଣ୍ଣ ମରିଚ, ମଥାରୁ ଅଳକା, ପାଦରୁ ପାଉଁଜି, ଝୁଣ୍ଟିଆ ଆଙ୍ଗୁଳିରୁ ହସ୍ତପଦ୍ମ ।

ଆସ୍ତେ ପାଦ ଥାପିଲା ଏରୁଣ୍ଡି ଆର ପଟେ । କବି ହାତରେ ହାତ ଥାପିଲା ସୁନ୍ଦରୀ । ସୁନ୍ଦରୀଙ୍କ ହାତ ମୁଠାରେ ସ୍ୱର୍ଗ । ଓଠରୁ ଝରୁଛି ଚୂନି ଚୂନି ଚମ୍ପା କଢ଼ି । ଆଖି ଭର୍ତ୍ତି ସପନ । ସପନେ, ସପନେ କବି ଆଉ ସୁନ୍ଦରୀ; ସୁନ୍ଦରୀ ଆଉ କବି ।

ବିଲୁଆ ଡାକୁଚି । ପେଚା କୁହାଟୁଚି । ରାତି ଗରଜୁଚି । କବି ଦମ୍ଭ ଦେଉଚି– ସୁନ୍ଦରୀଲୋ ! ମୁଁ ଅଛି, ଡର ନାହିଁ, ଭୟ ନାହିଁ ।

କବି ହାତରେ ହାତ ଛନ୍ଦି କବି ପ୍ରେମରେ ଜୁଡୁବୁଡୁ ସୁନ୍ଦରୀ ଚାଲିଚି ନିଶାର୍ଦ୍ଧରେ । ଆଗରେ ବାଟ ଓଗାଳି ଗହନ ନିଦରେ ଶୋଇଚି ଅଳସୀ ଅଳକା ନଈ । ଅଦୂରରୁ ଶୁଭୁଚି ନାଉରୀ କଣ୍ଠରୁ ରାଗ ରାମକେରୀ ।

ନଈ କୂଳେ କୂଳେ ପାଣି ଚବ ଚବ କରି କବି, ସୁନ୍ଦରୀ ଦୁହେଁ ଚାଲିଲେ ରାମକେରୀକୁ କାନ ଡେରି ଡେରି । ନଈ ହୁଡ଼ାରେ ସୁର ମେଲିଚି ନାଉରୀ । କୂଳରେ ହୁଲି ଡଙ୍ଗା ।

ନାଉରୀ ମାଗିଲା ଘାଟମୂଲ । କବି ଚାହିଁଲା ସୁନ୍ଦରୀ ମୁହଁକୁ, ସୁନ୍ଦରୀ ଚାହିଁଲା କବି ମୁହଁକୁ । ମନ ଆଉ ଦିହ ପରି ହାତ ଖାଲି । ପଇସା କଉଡ଼ି ଆଯ ଅଳଂକାର କିଛି ନାହିଁ । ଦୁହେଁ ଚାହିଁଲେ ନାଉରୀକୁ କିନ୍ତୁ ନାଉରୀର ସେଥିକୁ ନିଘା ନାହିଁ । ତାକୁ ଘାରିଚି ସୁନ୍ଦରୀର ରୂପ ନିଶା । ତା' ଆଖି ଚରୁଚି ସୁନ୍ଦରୀର ଦିହ ବନସ୍ତରେ ।

କବି କହିଲା ନାଉରିରେ ! ସୁନ୍ଦରୀ ମୋ ଲାଗି ଛାଡ଼ିଛି ଘରଦ୍ୱାର, ବାପା, ବୋଉ । ମୁଁ ଛାଡ଼ିଚି ଗାଆଁ ଭୂଇଁ । ଅଂଗବାସ ଛଡ଼ା ଆମ ପାଖରେ କିଛି ନାହିଁ । ନାହିଁ, ନାହିଁ, କିଛି ନାହିଁ ।

ନାଉରୀ ଦଣ୍ଡେ ନିରବୀ ଗଲା । ଚାହିଁଲା ସୁନ୍ଦରୀ ମୁହଁକୁ । ଟିକେ ମୁରୁକି ହସିଲା । ନାଆରେ ଉଠିଲା କାତ ଧରି । କବି ନାଆରେ ଉଠିଲା ସୁନ୍ଦରୀର ହାତ ଧରି । ଭରା ନଈରେ ହାବୁକାଏ ପବନରେ ହୁଲି ଡଙ୍ଗା ଚହଲି ଗଲା । ଚହଲି ଗଲା ସୁନ୍ଦରୀର ଭରା ଦିହ ।

ଆକାଶକୁ ଅନେଇଲା ସୁନ୍ଦରୀ । ମୁକୁଳା ଜହ୍ନ ହସୁଚି କିରି କିରି । ତଳେ ଅଳକା ନଈ

ହସୁଚି ଖିଲିଖିଲି । ନାଆ ପହଁରେ ହଲି, ଦୋହଲି । ନାଉରୀ ଗାଉଚି ରାଗ ରାମକେରୀ । ସୁନ୍ଦରୀକୁ ଚାହୁଁଚି ଚୋରି ଚୋରି, ଚୋରି ଚୋରି ।

ସୁନ୍ଦରୀର ଛାତିରେ ଛନକା । ସୁନ୍ଦରୀ କବି କାନରେ କହିଲା ଚୁପି ଚୁପି–କେମିତି ଧାରୁଆ ଲାଗୁଚି ମତେ ନାଉରୀର ଆଖି । ଦୁଷ୍ଟ ହସ । ଦୁଷ୍ଟ ତା'ର ଠାଣି, ଚାହାଣି । ରୂପବତୀ ରାଜଜେମାଙ୍କୁ ଘରଣୀ କରିବା ଆଶାରେ ନଈର ଗଭୀର ଗଣ୍ଡକୁ ଠେଲିଥିଲା ଏଇ ନାଉରୀ । ପୂନେଇଁ ରାତିରେ ପୂରା ବଅସର ରୂପବତୀ ଦେଖିଲେ ନାଉରୀ ମତୁଆଳ ହୁଏ । ତା' ମୁଣ୍ଡ, ଦିହ ଗୋଳମାଳ ହୁଏ ।

ସୁନ୍ଦରୀ ଜାବୁଡ଼ି ଧରିଲା କବିକୁ । ଡଙ୍ଗା ଦୋହଲିଲା । ଚବକାଏ ଜହ୍ନମିଶା ପାଣି ଡଙ୍ଗାକୁ ଡେଇଁଲା ।

ନାଉରୀ ଆକଟିଲା ସୁନ୍ଦରୀକୁ– ହଲଚଲ ବୁଡେଇବ ଡଙ୍ଗା । ନଈ ଗଣ୍ଡରେ କାହିଁରେ କେତେ ପାଣି । କାତ କେଲୁଆର ପାଉ ନେଇଁ । ମନ ଥିର କର । ମନର ପାଦ ଟଳମଳ ହେଲେ ମୋ ହୁଲି ଡଙ୍ଗା ଦୋହଲିବ । ମନକୁ ଆବୁରୁ ଜାବୁର କଥା ପଶିଲେ ମନ ସାଙ୍ଗରେ ମୋ ଡଙ୍ଗା ଅଥୟ ଧରିବ ।

କବିର କଟି ଚାରିପଟେ ବୁଲିଚି ସୁନ୍ଦରୀର କଇଁନାଡ ପରି କଅଁଳ କଂପିତ ହାତ । ଡଙ୍ଗା ଚାଲିଚି ଅଳସୀ ଅଳକା ନଈରେ ସିଆର କାଟି କାଟି । ନଈ ଆର ପଟ ଘାଟରେ ଲାଗିଲା ନାଆ । ସୁନ୍ଦରୀ ପିଣ୍ଡରେ ପଶିଲା ପ୍ରାଣ । ରାତି ସାରା ଦୁହେଁ ଚାଲିଲେ ହାତରେ ହାତ ଛନ୍ଦି । ପାହିଲା ରାତି ।

ସକାଳ ସୂର୍ଯ୍ୟର ସୁନା ଆଲୁଅରେ ସୁନ୍ଦରୀର ହାତ ଧରି କବି ପଶିଲା ମାଟିଝାଟିର ନଡ଼ା ଛପର ଘେରା ନୂଆଁଣିଆ ଝୁପୁଡ଼ିକୁ । ଆଗରେ ଆମ୍ବ ତୋଟା । ପଛରେ କୁରେଇ ଫୁଲର ବୁଦିବୁଦିଆ ଜଂଗଲ । ବାଆଁରେ ବସିଚି କଷି ଧାନ କ୍ଷେତ । ଡାହାଣେ ଶୋଇଚି ସବୁଜ ଘାସ ପଡ଼ିଆ । ଦୂରକୁ ଆଖି ଲମ୍ବେଇଲେ ଦୂର ପାହାଡ । ତଳୁ ମହମହ, ମହକୁଚି ମାଟିବାସ୍ନା । ଝାଟି ଝର୍କା ଦେଇ ଘରକୁ ପଶୁଚି ଦିହ ଉଲୁସା ମନ୍ଦ ମଳୟ ମରୁତ ।

କବିର ଚଉଡା ଛାତିରେ ମୁଣ୍ଡ ଥାପି ସୁନ୍ଦରୀ ଚାହିଁଲା କବିକୁ, କବି ସୁନ୍ଦରୀକୁ । ଦିହିଙ୍କ ଦିହ ରୋମାଞ୍ଚିତ । ଆଖି ଭର୍ତ୍ତି ସପନ । ମୁଠା ଭର୍ତ୍ତି ସରଗ ।

କବିର ଦେହ ଦେଉଳରେ ଦେହ ଡେରି କମନୀୟ ଠାଣିରେ ବସିଚି ସୁନ୍ଦରୀ । ନିରେଖୁଚି ତା' କାରିଗରୀ । ବେକରେ ହାତ ଛନ୍ଦି ଓଠରେ ଥାପିଚି ଓଠ । ମାପୁଚି କବି ଦେହର ଉତ୍ତାପ ।

କବି ଦେହରେ ଶିହରଣ, ଶିତ୍‌କାର । ସୁନ୍ଦରୀ ଆଣ୍ଟରେ ବାନ୍ଧିଚି କବିର ଦେହ । ମୁଦା ଆଖିରେ କବି ଦେଖୁଚି ସପନ । ସପନରେ ଓହ୍ଲେଇ ଆସୁଚି ରାଜକୁମାରୀ । କବି ଆଶ୍ଳେଷୁଚି ରାଜକୁମାରୀକୁ । ସୁନ୍ଦରୀ ଦେହରେ ରାଜକୁମାରୀ । କବି ସୁନ୍ଦରୀର କାନରେ ଚୁପି ଚୁପି କହୁଛି– ରାଜକୁମାରୀ ! ତୁମେ ଅପରୂପା, ଅନୁପମା, ଅନନ୍ୟା ।

ସୁନ୍ଦରୀ କବିକୁ ଠେଲି ଦେଇ କହୁଛି–ମୁଁ ରାଜକୁମାରୀ ନୁହଁ, ମୁଁ ସୁନ୍ଦରୀ । ମୁଁ ସୁନ୍ଦରୀ ।

କବି ସେମିତି ମୁଦା ଆଖିରେ ଓଦା ଓଦା କଣ୍ଠରେ ପ୍ରଳାପ କରୁଛି–ନା, ତୁମେ ସୁନ୍ଦରୀ ନୁହଁ । ତୁମେ ରାଜକୁମାରୀ । ତୁମେ ରାଜକୁମାରୀ ।

ସୁନ୍ଦରୀ କାନ୍ଦୁଚି ଆଖି ଚିପୁଡ଼ି । ଥୋପି ଥୋପି ଲୁହ ବୁନ୍ଦା ପଡୁଚି କବି ଛାତିରେ । ସୁନ୍ଦରୀ ହାତରୁ କବିକୁ ଲୁଟି ନେଇଚି ରାଜକୁମାରୀ ।

କବି ସୁନ୍ଦରୀ ଭିତରେ ଦେଖୁଚି ରାଜକୁମାରୀକୁ । ସୁନ୍ଦରୀ ଜଳୁଚି ଈର୍ଷାରେ ଘର ଦ୍ୱାର, ବାପା, ମାଆ, ଗାଆଁ, ଭୂଇଁ ସବୁ ଛାଡ଼ି ସୁନ୍ଦରୀ ମୁଠେଇ ଥିଲା କବିକୁ । କିନ୍ତୁ ଆଚମ୍ବିତ କଥା । ସୁନ୍ଦରୀର ମୁଠା ଭିତରେ କବି ଆଉ ରାଜକୁମାରୀର ମିଥୁନ ମୁଦ୍ରା ।

ସୁନ୍ଦରୀର ଦିହେ ଦିହେ ଚରିଯାଉଚି ବିଷ । ସୁନ୍ଦରୀର ବାହୁ ବେଷ୍ଟନୀ ଭିତରେ କବି ହଜିଚି ରାଜକୁମାରୀର ପ୍ରେମରେ । ସୁନ୍ଦରୀ ଓଠରେ ଓଠ ଥାପି କବି ଚୁମୁଚି ରାଜକୁମାରୀର ଅଧର ମଧୁ ।

ଦ୍ୱିତୀୟ ଯାମିନୀରେ ସୁନ୍ଦରୀ ତନୁରେ କବି ଭେଟିଛି ଲାବଣ୍ୟବତୀକୁ । ତୃତୀୟ ରଜନୀରେ ରତିରସରେ ବୁଡେଇ ରଖିଛି କୋଟିବ୍ରହ୍ମାଣ୍ଡସୁନ୍ଦରୀ । ଚତୁର୍ଥ ରଜନୀରେ ଜଳପରୀ । ପ୍ରତି ରଜନୀରେ ସୁନ୍ଦରୀ ଦିହକୁ ଓହ୍ଲେଇ ଆସନ୍ତି କବି କଳ୍ପନାର ଅନୁପମା ରାଜକୁମାରୀ, ଦେବକନ୍ୟା, ଜଳପରୀ, ଗାନ୍ଧର୍ବୀ, କିନ୍ନରୀ । କିନ୍ତୁ କୌଣସି ଗୋଟିଏ ରଜନୀରେ କବି ଆଶ୍ଳେଷି ନାହିଁ ସୁନ୍ଦରୀକୁ ସୁନ୍ଦରୀ ଭାବରେ ତା' ଦେହ ବେଦିରେ ।

ପ୍ରତି ଯାମିନୀରେ ସୁନ୍ଦରୀର ଦେହ ବେଦିରେ ଚାଲିଛି ରତିକ୍ରୀଡ଼ା । କିନ୍ତୁ ରାତିଟିଏ ବି ସୁନ୍ଦରୀ କବିକୁ ଭୋଗି ନାହିଁ ।

ସୁନ୍ଦରୀକୁ ଧର୍ଷଣ କରି କବି ସମ୍ଭୋଗୁଚି ସପନ-ପରୀ, ରାଜକୁମାରୀ । ପ୍ରତି ରଜୀନରେ ଧର୍ଷିତା ସୁନ୍ଦରୀ ବୁକୁ ଫଟାଇ କାନ୍ଦୁଚି ଚୁପି ଚୁପି । ସୁନ୍ଦରୀର ଆଖି ଭର୍ତ୍ତି ଲୁହ । ଦେହ ଭର୍ତ୍ତି ଦାହ ।

ନିଜ ମନର ମଣିଷ, କୋଟି କଳ୍ପନାର କବି ନିଜେ ଧର୍ଷଣ କରୁଚି ସୁନ୍ଦରୀକୁ ତା' ଦିହ ଦେଉଳର ଚଉତରାରେ ।

ଏମିତି ଦେହ, ମନର ଦହଗଞ୍ଜ କେହି କେବେ ଭୋଗି ନାହିଁ । ଭୋଗିବ ବି ନାହିଁ । ଏମିତି ଧର୍ଷଣର ପଟାନ୍ତର ନାହିଁ । କେବେ କୌଣସି ରମଣୀ ନିଜ ସ୍ୱାମୀ କର୍ତ୍ତୃକ ନିଜ ଦେହ ଚଉତରାରେ ଧର୍ଷିତା ହେବା କେହି କେବେ ଦେଖି ନ ଥିବ, ଶୁଣି ନଥିବ । ଏମିତି ଅଭାବନୀୟ ଅଘଟଣ କା' ଆଗେ କହିବ ସୁନ୍ଦରୀ ? କିଏ ତା' କଥା ପରତେ ଯିବ ?

ଯେଉଁ ରାତିକୁ ସୁନ୍ଦରୀ ଉଚ୍ଚାଟିତ, ଉଲ୍ଲସିତ ହୋଇ ରତି ମାଗୁଥିଲା, ସେ ରାତିକୁ ଦେଖିଲେ ତା' ଛାତିରେ ଛାତିଏ ଡର । ପ୍ରତି ରାତି ତା' ପାଇଁ ରଖିଚି ଧର୍ଷଣ ବେଦନା, ଯାତନା ।

ରାତି ଆସିଲେ ସୁନ୍ଦରୀର ଯେଉଁ ଦେହମନ ରୋମାଞ୍ଚିତ ହେଉଥିଲା ଏବେ ସେଇ ଦେହର ଲୋମ ଲୋମକେ ପଶୁଚି ଭୟ । ଥର ଥର ଥରୁଚି ତା' ଦେହ । ଦେହର ଦାହ ମନକୁ ଜାଳୁଚି ହୁତୁହୁତୁ । ଶିଖା ଟେକି ଜଳୁଚି ଅନଳ । ଦିହ, ମୁହଁ ଅନଳ ଜାଳାରେ ପାଚି ଟହ ଟହ । ନିଆଁ ଧାସରେ ଧସୁଚି ମହୀରୁହ ।

ଦିନରେ କବି ହଜୁଚି କଳ୍ପନାରେ, ସପନରେ । କେବେ ଖୋଲା ଆଖିରେ, କେବେ ଅଧା ଖୋଲା ଆଖିରେ ଆଉ କେବେ ମୁଦା ଆଖିରେ କବି ଦେଖୁଚି ସପନ । କବି ଦେହଟା ଏଠି ସେଠି

ମାଂସ ପିଣ୍ଡୁଳା ପରି ମେଞ୍ଚା ହୋଇ ଉଇହୁଙ୍କା ପରି ପଡ଼ିଚି । ତା' ଭିତରେ କବି ନାହିଁ । ଦିହ ଛାଡ଼ି କବି ବିଚରୁଚି କାହିଁ କେତେ ଦୂରେ ଗହନ ବନସ୍ତରେ । ପାହାଡ଼ ସେପାରେ, ନଈଧାରେ କେବେ ସାରା ମର୍ତ୍ତ୍ୟରେ, କେବେ ସ୍ୱର୍ଗରେ ।

କେବେ ସୁନ୍ଦରୀର ବାହୁବେଷ୍ଟନୀ ଭିତରେ କବି କାଠ ଗଣ୍ଡି ପରି ଅସାଡ଼, ଜଡ଼ ପାଲଟି ଯାଏ । କବିର ଭେଣ୍ଡା ଦିହ ଭିତରୁ କବି ଓହ୍ଲେଇ ଯାଇଥାଏ ଶିଶୁଟିଏ ହୋଇ ଶିଶୁଙ୍କ ସଙ୍ଗେ ଧୂଳିଘର ତୋଳିବାକୁ, ସାରୁପତ୍ରରେ କଙ୍କି ଧରିବାକୁ, ଆଖି କଷା ହେବା ଯାଏ ନଈ, ନାଳ, ଗଡ଼ିଆ ପାଣିରେ ବୁଡ଼ିବାକୁ ।

ଆଉ କେବେ କବି ତା' ଯଉବନ ଛାଡ଼ି ଚମ ଧୁଡୁ ଧୁଡୁ ପାଚିଲା ବାଳିଆ ପାକୁଆ ପାଟିଆ ବୁଢ଼ାଟିଏ ହୋଇ ମିଶି ଯାଏ ବୁଢ଼ାବୁଢ଼ୀଙ୍କ ମେଳରେ, ଭାବ ଦିଆନିଆ କରି ଅନୁଭବ ସାଉଣ୍ଟିବାକୁ ।

କେବେ ଘର ଛାଡ଼ି କବି ଚାଲିଚି ଭୋଗ, ବିଳାସର ଅଳସ ପାଚେରି ଘେରା ମର୍ତ୍ତ୍ୟର ଅଳକାପୁରୀକୁ ଯୋଉଠି ମାଂସ ପଲଉର ମହୋତ୍ସବ ଲାଗିଛି, ଯୋଉଠିକୁ ପ୍ରତି ମୁହୂର୍ତ୍ତରେ ପୁଷ୍ପକ ବିମାନରେ ଲାଗିଛି ରାଜା, ମାହାର୍ଜା, ସାଧବ, କଟୁଆଳମାନଙ୍କ ଭିଡ଼, ଯେଉଁଠି ପ୍ରତି ରାତିରେ ସୋମରସରେ ରସଗୋଲା ପରି ଡୁବିଥାନ୍ତି ମାହାର୍ଜା, ମହାରାଣୀ, ରାଜଜେମା, ଜେମାଙ୍କ ସହଚରୀ, ମାହାର୍ଜାଙ୍କ ଭାଇ ବିରାଦର ।

କବିକୁ ଧରି ପାରୁନି ସୁନ୍ଦରୀ । କବି ପବନ ପରି ଗମୁଚି ଦଶ ଦିଶ । ସେଇନେ ଏଇଠି ଅଛି, ଏଇଠି ନାହିଁ । କବି ପଛେ ପଛେ ନିରାଶିଆ ଦଉଡ଼ ଦଉଡୁଛି ସୁନ୍ଦରୀ । କେଶ, ବାସ, ବିପର୍ଯ୍ୟସ୍ତ । ପାଦ ପାଦକେ ପ୍ରତିବନ୍ଧକ । ଅସୁମାରି କଣ୍ଟା ଭେଦିଚି ତା' ପାଦ ତଳେ । ଲହୁ ଲୁହାଣ ହୋଇ ଧାଇଁଚି ସୁନ୍ଦରୀ କବି ପଛରେ । ଅଳକାପୁରୀର ପାଚେରି ଡେଇଁ କବି କେତେବେଳେ ପଶୁଚି ଅଦରବା ଗରିବ ଘରେ । ମାଟି ଝାଟିର ଘର, ଚାଳ ଛପର, ଠାଆ ଠାଆ ଚାଳରୁ ଉଡ଼ିଚି ନଡା, କାନ୍ଥରୁ ଝଡ଼ିଛି ମାଟି । ମାଟି ଚଟାଣ ଛେଲା ଛେଲା ଛାଡୁଚି । ଖର ନିଃଶ୍ୱାସରେ ପୋଷ, ପୋଷ ଧୂଳି ଉଡୁଚି । ଚତୁର୍ମାସ୍ୟାରେ ଟପଟପ ଥପଥପ ଘରସାରା । ଖରା ଦିନେ ଘର ସାରା ଟାଇଁ ଟାଇଁ ଖରା । କାନ୍ଥକୁ ଛୁଇଁଲେ ଡହକ ଡହକି ଆସେ ଦେହକୁ । ଜାଡ଼ ଦିନେ କାନ୍ଥ, ଚାଳ ଆଉ ତାଟିର ସହସ୍ର ଜଳାରେ ଘର ଭିତରକୁ ଧସେଇ ପଶେ ତୁହାକୁ ତୁହା ହେମାଳ । ଚିରା ଅଖା ଆଉ ଚିରା କନ୍ଥା ଭିତରେ ଜାଡ଼ରେ ଚିର୍‌ଚିରେଇ ଉଠେ ଦିହ । ଠକ୍ ଠକ୍ ବାଜେ ଦାନ୍ତରେ ଦାନ୍ତ । କୋଲପି ଯାଏ ହାତ, ଖିଲି ମାରିଯାଏ ପାଦ, ଦିହ । ଜାଡ଼ରେ ମଡ଼ମଡ଼ ହୁଏ ମଂଜ ହାଡ଼ ।

ଏମିତି ମୁକୁଳା, ଫୁଙ୍ଗୁଳା, ନିଛକ, ନିରୁତା ଅନୁଭବ ସାଉଣ୍ଟିବାରେ ବେଳ, ଅବେଳ ମାନେନା କବି ।

ଛପି ଛପି ଚୁପି ଚୁପି ନିଶବଦ ପାଦ ଥାପି ଥାପି ସୁନ୍ଦରୀ ଝାଂପି ପଡ଼େ କବି ଉପରେ । କବିର ହାତ ଧରି ଟାଣେ, ଝୁଙ୍କାଏ, କଟାଳ କରେ ।

କବି କଇଁଛ ପରି ଜାକି ନିଏ ପାଦ । ଛୁଆଁ କି ଛାଇ ବାଜିଲେ କବି ମୁଦି ନିଏ ନିଜକୁ । ଆଷାଢ଼ ଜଡ଼ ପାଲଟି ଯାଏ ପଲକରେ । ସୁନ୍ଦରୀର ଝୁଙ୍କାଝୁଙ୍କିରେ କବି ଥିର ହୋଇ ଥମିଯାଏ ।

ବେଦନାବତୁରା କଣ୍ଠରେ କବି କହେ— ସୁନ୍ଦରୀ ! କବି ରାଜକୁମାର ନୁହଁ, ନୁହଁ ସୌଦାଗର । କବି ସ୍ରଷ୍ଟା, କବି ଦ୍ରଷ୍ଟା । କବି ଈଶ୍ୱର, କବି ଯାଯାବର ।

କବି ପାଇଁ ସଂସାର ବଡ଼ ନୁହଁ, ବଡ଼ ନୁହେଁ ଦେହ । ବଡ଼ ତା'ର ମନ, ବଡ଼ ତା'ର ସପନ । ବଡ଼ ତା'ର ଅନୁଭବ, ଅନୁଭୂତି ।

କହ ସୁନ୍ଦରୀ ! ଘର ସଂସାର କି ଦେହ ସୁଖ ବଡ଼, ନା ବଡ଼ ମୋର ଏଇ ଅନୋଖା ଅନୁଭବ ଯାହାକୁ ମୂଳ କରି ମୋ ଭିତରେ ମେଲିବ ଅନେଶ୍ୱତ ଡାଳ । ଡାଳ ହେବ ଆକାଶମୁହାଁ । ଡାଳରୁ ଲମ୍ବିବ ସହସ୍ର ଓହଳ । ଛୁଇଁବ ମାଟିର ମଥା । ଡାଳ ଡାଳରେ ଫୁଟିବ ଅସୁମାରି ଫୁଲ, ଫୁଲ ଫୁଲକେ ମେଲିବ ସହସ୍ର ପାଖୁଡ଼ା ।

ସୁନ୍ଦରୀ ଦଣ୍ଡେ ନିରବୀ ଯାଏ । କଳେ କବିର ସପନ ସାଗରକୁ, ତୁଳେ କବିର ସୃଷ୍ଟି ସମ୍ଭାରକୁ । ସୁନ୍ଦରୀ ଚାହେଁ କବିର ମୁହଁକୁ ଯାହା ଆକାଶ ପରି ଅନନ୍ତ, ଅସୀମ, ସାଗର ପରି ଗଭୀର ଅଥଳ ।

କବିକୁ ଜାବୁଡ଼ି ଧରି ସୁନ୍ଦରୀ କହେ— ମୁଁ ବରିନି ରାଜକୁମାର, ମୁଁ ବରିନି ସୌଦାଗର । ମୁଁ ବରିଚି କବି । ମୁଁ ବରିଚି ଯାଯାବର । ମୁଁ ବରିଚି ଈଶ୍ୱର । ମୁଁ ନିଜର ସତ୍ତା ନ ଖୋଜି ସଂପୂର୍ଣ୍ଣ ସମର୍ପି ଦେବି ନିଜକୁ ତୁମଠି । ହଜିଯିବି ତୁମ ସାର୍ଥକ ସୃଷ୍ଟିରେ । ମୁଁ ତୁମଠି ନିଜକୁ ହଜାଇ ବ୍ୟାପକ ହେବି । ବିସ୍ତୃତ ହେବି । ଅସୀମ ହେବି । ଅନନ୍ତ ହେବି । ମୋତେ ତୁମଠି ମିଶାଇ ନିଅ । ହଜାଇ ନିଅ ।

ସୁନ୍ଦରୀ ଆଉଜି ଆସିଚି କବିର ଚଉଡ଼ା ଛାତିକୁ । ସୁନ୍ଦରୀର ମୁଦା ଆଖିରେ ଶୋଇଚି ସମର୍ପିତା ସୁନ୍ଦରୀ ।

କବି ମୁହଁରେ ସୃଷ୍ଟି ଆଉ ସ୍ୱପ୍ନର ସ୍ୱାକ୍ଷର ।



# ରକ୍ତ ସଂପର୍କୀୟ

## ଉତ୍ତମ ପ୍ରଧାନ

ପ୍ରଫେସର ଡାକ୍ତର କମଳେଶଙ୍କ ଡାକରାପାଇ ମୁଁ ଯଥା ସମୟରେ ତାଙ୍କ ଚାରିମହଲା ଘରେ ସାକ୍ଷାତ କଲି । ମୁଁ ନମସ୍କାର ଜଣାଇବାବେଳେ, ସେ ସାତଟି ବୋତଲରେ ଲେବଲ୍ ମାରୁଥିଲେ 'ବି ପୋଜିଟିଭ ।' ମୋତେ ଦେଖିଲାକ୍ଷଣି କହିଲେ, ''ଡାକ୍ତର କୁମାର ! ତମେ ଆସିବା ଆଗରୁ ହିଁ ରୋଗୀଟି ମରିଗଲା । ବ୍ୟସ୍ତ ହେବାର କିଛି ନାହିଁ, ଆପଣ ଡେଥ୍ ସାର୍ଟିଫିକେଟ୍ ଦସ୍ତଖତ କରିଦିଅନ୍ତୁ, ଟେବୁଲ୍‌ରେ ରଖାହୋଇଛି ।''

ମୁଁ ଟେବୁଲ ଉପର ସାର୍ଟିଫିକେଟ୍ ପଢ଼ିଲି କୋଠରୀର ଗୋଟିଏ କଣରେ ଷ୍ଟ୍ରେଚର ଉପରେ ଥିବା ରୋଗୀ ଉପରୁ, ଧଳା ଚାଦରଟି ଖୋଲିଦେଲି ଏବଂ ଚିତ୍କାର କଲି, ''ସାର୍ ! ଲୋକଟା ବଞ୍ଚିଛି ସାର୍, ବଞ୍ଚିଛି ।''

ମୋର ଚିତ୍କାର ଶୁଣି ଡାକ୍ତର କମଳେଶ ବିରକ୍ତ ହୋଇ କହିଲେ, ''ଡାକ୍ତର କୁମାର, ମରିନାହିଁ ତ ଏମିତି ଚିଲଉଛ କିଆଁ ? ଏଇନା ମରିଯିବ । ଏଇଟି ତମର ସେୟାର୍ ଦୁଇହଜାର ଟଙ୍କା । ଲୋକଟା ଚଟାଣରେ ପଡ଼ିଗଲା, ହାତଟା ଫୁଲିଯାଇଥିଲା, ମୋ ପାଖକୁ ଆସିଲା । ଲୋକଟି ଗୁପ୍‌ଚୁପ୍ ବିକ୍ରି କରେ ଠେଲା ଗାଡ଼ିରେ । ପରୀକ୍ଷାରୁ ଜାଣିଲି, ଲୋକଟିର ରକ୍ତ ବି ପୋଜିଟିଭ୍ । ତମେ ଜାଣିଛ ଏହି ରକ୍ତ ପାଇଁ ଆମେ କେତେ ବିଜ୍ଞାପନ ଦେଲୁ, ମାତ୍ର ତିନି ବୋତଲ ମିଳିଛି । ଅତି କମ୍‌ରେ ଆଉ ଚାରି ବୋତଲ ହେଲେ ଯାଇ ମନ୍ତ୍ରୀଙ୍କ ଜୋଇଁର ଅପରେସନ୍ ସମ୍ଭବ । ଛାଡ଼ ସେକଥା । ତମର ପି.ଜି.ସିଟ୍ ପାଇଁ ମୁଁ ସବୁ ବ୍ୟବସ୍ଥା କରିଛି । ଯାଅ କୁମାର, ପଇସା ନେଇ ଘରକୁ ଯାଅ ।''

ପ୍ରଫେସରଙ୍କ ମୁହଁରେ ସେଦିନ ମୋଞ୍ଚାଏ ଛେପ ଫୋପାଡ଼ିଲି । ବେଜିଦ୍ କରିବାର ପରିଣାମ ଅନୁମାନ ଅନୁପାତରେ ଫଳିଲା ।

କିଛିଦିନ ପରେ ହିଁ ଡାକ୍ତର କମଳେଶ ହେଲେ ରାଜ୍ୟର ସ୍ୱାସ୍ଥ୍ୟ ବିଭାଗର ନିର୍ଦ୍ଦେଶକ ଏବଂ ମୋର ବଦଳି ହେଲା କଳାହାଣ୍ଡି, ଥୁଆମୁଲ ରାମପୁର ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରକୁ ।

ବର୍ଷରେ ଥୁଆମୁଲ ରାମପୁର ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ପାଇଁ ଏହା ଥିଲା ସପ୍ତମ ବଦଳି । ତା' ଆଗରୁ ଛ'ଅ ଜଣ ମାସାଧିକ କାଳ ଛୁଟିରେ ରହିବା ପରେ ପୁନର୍ବାର କଟକ, ଭୁବନେଶ୍ୱରରେ ଥଇଥାନ ହେଲେ । ମୋ ପକ୍ଷରେ କିନ୍ତୁ ଏଇ ଘଟଣା ପରେ ବଦଳି ଉପେକ୍ଷା କରିବା ସମ୍ଭବ ନ ଥିଲା । ମୁଁ ମଧ୍ୟ ସହରର କୁଟିଳ କପଟାଚାରକୁ ଏମିତି ଘୃଣା କରୁଥିଲି ଯେ ଏହି ବନବାସ ଆଦେଶକୁ ଆଗ୍ରହରେ ଗ୍ରହଣ କରିନେଲି ।

କଳାହାଣ୍ଡି କହିଲେ ମୁଁ ବୁଝିଥିଲି, ବାଘ ଭାଲୁ, ପାହାଡ଼ ଓ କଳାକଳା ଉଲଗ୍ନ ଆଦିବାସୀ ଆତଯାତ ହେଉଥିବା ଅନ୍ଧାର ଉପତ୍ୟକା ।

ସେଠିକି ଯିବାପରେ, କଳାହାଣ୍ଡିକୁ ଏକ ଶଂକିତ ଆତ୍ମୀୟତାରେ ଚିହ୍ନିବାକୁ ଚେଷ୍ଟା କଲି । ପ୍ରଥମେ ବ୍ଲକ୍‌ର ବିଡ଼ିଓ, କେଇଟି କଟକୀ କିରାଣୀ ଆଉ କମ୍ପାଉଣ୍ଡର୍ ବାବୁଙ୍କ ଭାଷା ହିଁ ବୁଝିପାରୁଥିଲି । ସେମାନଙ୍କ ମାଧ୍ୟମରେ ହିଁ ବାହାର ଲୋକଙ୍କ ସହ ଯୋଗାଯୋଗ କରୁଥିଲି ।

ଡାକ୍ତରଖାନାରେ କେବେ ଭିଡ଼ି ନ ଥିଲା । ସାଧାରଣତଃ ଦୀର୍ଘକାଳ ଅନାହାରରେ ରକ୍ତଶୂନ୍ୟ ଲୋକଙ୍କୁ ମୃତ୍ୟୁ ଆଗରୁ ଡାକ୍ତରଖାନା ଅଣା ହେଉଥାଏ । ତାଙ୍କର ଔଷଧ ଅପେକ୍ଷା ଭାତ ଜରୁରୀ ଏବଂ ବୁଭୁକ୍ଷୁ ଆଦିବାସୀଙ୍କୁ ଅନ୍ନ ଯୋଗାଣ ମୋର ସାଧ୍ୟ ବାହାରେ ।

ଡାକ୍ତରଖାନାରେ ମରହଟ୍ଟା ଅମଳର ଜଙ୍କ ଲାଗିଯାଇଥିବା ଅସ୍ତ୍ରୋପଚାର ଉପକରଣ । ସେ ମଧ୍ୟ କୌଣସି ଜଣେ ମହାମାନ୍ୟ ପାଦ୍ରୀଙ୍କ ଦାନ ଯୋଗୁ ଗଚ୍ଛିତ ଥିଲା । ବ୍ୟାଣ୍ଡେଜ୍ କନା, ଆଇଓଡ଼ିନ୍, ପେଥିଡିନ୍, ମେଲେରିଆ ବଟିକା ବ୍ୟତିରେକ, ଆଉ ସବୁ ଔଷଧ ଦୁର୍ଲ୍ଲଭ ।

ଦିନକର ଘଟଣା, ମୁଁ ରାତିରେ ଲଣ୍ଠନ ଜାଳି ବହିଟିଏ ପଢୁଥାଏଁ । ଘର ଭିତରକୁ ପଶି ଆସିଲା, କୁଟିଆ ରମଣୀଟିଏ । ଶିଶୁ କାଠରେ ତିଆରି କଣ୍ଢେଇଟେ ଭଳି ତାର ଶରୀର । ଅଣ୍ଟାରେ କସ୍ତା କନାର ଘେର । ହାତରେ ବେକରେ, କାନରେ ଓ ନାକରେ, ବିଭିନ୍ନ ରଙ୍ଗବେରଙ୍ଗ କଣ୍ଠିମାଳାର ଅଳଙ୍କାର । ଯୁବତୀ ମୋତେ ଦେଖିଲାକ୍ଷଣି ଦିହରୁ ଖଗଲା, ବଂଦରିଆ, କତ୍‌ରିଆ ସବୁ କାଢ଼ି, ମୋ ଗୋଡତଳେ ଥୋଇ ମୋର ପାଦଧରି କାନ୍ଦି କାନ୍ଦି ଯାହା କହିଲା ତାହାର ଅର୍ଥ ହେବ, ''ଡାକ୍ତର ବାବୁ ! ମୋ ସ୍ୱାମୀ ମୃତ୍ୟୁ ମୁହଁରେ, ତାଙ୍କୁ ରକ୍ଷାକର । ମୁଁ ଗରିବ, ପଇସା ନାହିଁ । ଏଇସବୁ ନିଅ ।''

ମୁଁ ଚମକି ପଡ଼ି ବାହାରକୁ ଆସି କମ୍ପାଉଣ୍ଡର୍‌ବାବୁଙ୍କୁ ଡାକିଲି । ତାଙ୍କ ସହ ଡାକ୍ତରଖାନା ଯାଇ ଦେଖିଲି, ପାଞ୍ଚ ଛଅଜଣ କୁଟିଆ ଜଣେ ରୋଗୀକୁ ହାତଗୋଡ଼ ବାନ୍ଧି, ଦୁଇଟି ବାଉଁଶ ମଝିରେ ବୋହି ଆଣିଛନ୍ତି । ଲୋକଟିର ଖପୁରୀ ଫାଟି, ଅଜସ୍ର ରକ୍ତ ପ୍ରବାହ ଚାଲିଥାଏ । କମ୍ପାଉଣ୍ଡରବାବୁ ତାଙ୍କସହ କଥାବାର୍ତ୍ତା କରି ବୁଝିଲେ, ଲୋକଟି ତା'ର ନବବିବାହିତା ସ୍ତ୍ରୀ ସହ ପ୍ରତ୍ୟୁଷରୁ ମହୁଲ ଗୋଟାଇବା ପାଇଁ ଯାଇଥିଲା । ବଦ୍‌ମାସ୍ ଘାଏଲା ଭାଲୁ ମଧ୍ୟରୁ ଗୋଟାଏ ଲୋକଟିର ଖପୁରି ଚମଡ଼ା ଟାଣିନେଲା । ବିଚାରୀ ସ୍ତ୍ରୀଲୋକଟି ପ୍ରଥମେ ଗାଁକୁ ବୋହିନେଲା ଅଚେତ ସ୍ୱାମୀକୁ ।

ଗାଁର ଜାନୀ ନିଦାନ କରିଥିଲା ଯେ, ଲୋକଟି ନୂଆଖାଇ ଆଗରୁ କଖାରୁ ଫୁଲ ଛିଣ୍ଡାଇଛି, ତେଣୁ ଏଇ ବିପତ୍ତି । ତେବେ ଧରଣୀ-ଶୀଳା, କୁକୁଡ଼ା ବା ଛେଳିର ରକ୍ତ ପାଇଲେ, ଲୋକଟି ଭଲ ହୋଇଯିବ । ଯଥାରୀତି, କୁକୁଡ଼ା ସ ଛେଳିର ରକ୍ତ ପାଇଲା ପରେ ମଧ୍ୟ ଲୋକଟି ଚେତା ଫେରିଯାଇ ନ ଥିଲା । ତା'ପରେ ସମସ୍ତେ ଏଇଠି ।

ମୁଁ ସଙ୍ଗେ ସଙ୍ଗେ ଲୋକଟିର ରକ୍ତସ୍ରାବ ବନ୍ଦ ହେବାର ବ୍ୟବସ୍ଥା କଲି । ଯନ୍ତ୍ରଣା ଲାଘବ ପାଇଁ ଗୋଟିଏ ଇଞ୍ଜେକ୍‌ସନ୍ ଫୋଡ଼ି, ରୋଗୀର ରକ୍ତ ସହ, ଅନ୍ୟ କୁଟିଆମାନଙ୍କର ରକ୍ତ ମଧ୍ୟ ପରୀକ୍ଷା ପାଇଁ ଆଦେଶ ଦେଲି । ଲୋକଟିକୁ ରକ୍ତ ଦେବା ନିହାତି ଜରୁରୀ ଥିଲା ।

କମ୍ପାଉଣ୍ଡରବାବୁ, ଲୋକଟିର ବ୍ଲଡ୍‌ଗ୍ରୁପ୍ ପରୀକ୍ଷା କରି କହିଲେ, ''ବି-ପିଜିଟିଭ୍ ସାର୍ ।''

ଯୁବତୀଟି, ଆପଣା ସ୍ୱାମୀର ଅଚେତ ଶରୀର ପାଖରେ ବସି, ଗୋଟାଏ ତମ୍ବାରୁ ପାଣି ଠୋପାଏ ଠୋପାଏ ହାତରେ ଆଣି ପାଟିରେ ଦେଉଥାଏ । କମ୍ପାଉଣ୍ଡରବାବୁ, ତା'ର ଆଙ୍ଗୁଠିରେ ଛୁଞ୍ଚିଫୋଡ଼ି, ସ୍ଲାଇଡ୍‌ରେ ରକ୍ତ ଟୋପାଏ ସଂଗ୍ରହ କଲା ବେଳେ, ପଚାରିଲା, ''ଏ ରକ୍ତ କାହିଁକି ?''

କମ୍ପାଉଣ୍ଡର୍‌ବାବୁ କହିଲେ, ''ସ୍ୱାମୀ ବଞ୍ଚିବା ପାଇଁ ରକ୍ତ ଦରକାର !''

ସ୍ତ୍ରୀ ଲୋକଟି କହିଲା, ''କ'ଣ ମଣିଷ ରକ୍ତ ! କେତେ ଦରକାର ?''

କମ୍ପାଉଣ୍ଡର୍ ବାବୁ ତା'ର ଆଙ୍ଗୁଠିରୁ ନେଇ କହିଲେ, ''ଏଇ ତୁମ୍ବାରେ ତୁମ୍ବାଏ ମଣିଷ ରକ୍ତ ଚାହି, ଅପେକ୍ଷାକର ମୁଁ ପରୀକ୍ଷା କରେଁ ।''

କମ୍ପାଉଣ୍ଡରବାବୁଙ୍କ କଥାଶୁଣି, ସ୍ତ୍ରୀ ଲୋକଟି, ରକ୍ତାକ୍ତ ସ୍ୱାମୀକୁ ଘଡ଼ିଏ ଜାବୁଡ଼ି ଧରିଲା । ଆଖିରୁ ଧାର ଧାର ଲୁହ ବହିଯାଉଥାଏ । ମୁଁ ଦୂରରୁ ଦେଖିଲି, ଲଣ୍ଠନ ଆଲୁଅରେ ତା'ର ଲୁହଧାର କୃଷ୍ଣକାୟାରେ ଚକ୍‌ଚକ୍ ମୋତିର ହାରଭଳି ମନେ ହେଉଥାଏ । ମୋ ଆଡ଼କୁ ଅତି କରୁଣ ଚାହାଣୀରେ ଚାହିଁ କହିଲା, ''ସତକଥା ମିତେ ! ଇଏ ବଡ଼ ବିପତ୍ତି, ଚେରେ. ଟିଙ୍ଗୁଲ୍ ରୁଧିର ନେଇଯାଏ, ମୁମୂର୍ଷ ରୁଧିର୍‌ନେ ଏକା ଏଇ ଥମ୍‌ବା ।''

ଏହାକହି ସେ ଉଠିପଡ଼ିଲା ଏବଂ ତୁମ୍ବା ସହ ଡାକ୍ତରଖାନାର ବାହାରକୁ ଚାଲିଗଲା । ଦୀର୍ଘ ପାହାଡ଼ ଘେରା ଉପତ୍ୟକାଟି ଅମାବାସ୍ୟା ଯୋଗୁଁ ଆହୁରି ଗାଢ଼ ଅନ୍ଧାର ହୋଇଯାଇଥାଏ ।

କିଛି ସମୟ ପରେ ସ୍ତ୍ରୀ ଲୋକଟି ପୁନର୍ବାର ଡାକ୍ତରଖାନା କୋଠରୀ ଭିତରକୁ ପଶି ଆସିଲା । ମୁଁ ତାକୁ ଦେଖିଲାକ୍ଷଣି, ଚିତ୍କାର କରି ତା' ପାଖକୁ ଦଉଡ଼ିଗଲି । ଯୁବତୀଟି, ଗୋଟାଏ ତୀକ୍ଷ୍ଣ ଶରରେ ଆପଣା ଛାତିକୁ ଭୁସି ଦେଇଥାଏ । ସେଇ ଶରବିଦ୍ଧ ବକ୍ଷରୁ ପିଚ୍‌ପିଚ୍ ରକ୍ତ ନିଗିଡ଼ି ପଡୁଥାଏ । ଗୋଟାଏ ହାତରେ ତୁମ୍ବା ମୁହଁକୁ ଛାତିରେ ଜାକି ରକ୍ତଧାରକୁ ସଂଗ୍ରହ କରୁଥାଏ । ମୁଁ ନିକଟ ହେବାକ୍ଷଣି ଆଉଟିକିଏ ଜୋର୍‌ରେ, ତୀରଟିକୁ ବାଆଁ ହାତରେ ଚାପ ଦେଇ, ରକ୍ତପୂର୍ଣ୍ଣ ତୁମ୍ବାକୁ ଡାହାଣ ହାତରେ ବଢ଼ାଇ ଦେଇ କହିଲା, ''ନେଏରେ ମତେ, ଡାକ୍ତର ମିତେ ନେ । ଏତିକି କାଢ଼ିଛେଁ, ଆଉ ଯେତେ ଅଛେ କାଢ଼ିନେ, ଧଙ୍ଗରା ମୋର ବଞ୍ଚିଯାଉ । ଆର୍ ଗୁଟେ, ଧାଙ୍ଗ୍‌ରୀ ତାକେ ମିଲ୍‌ବା... ।''

ଆଉ ବେଶୀ କହିବା ଆଗରୁ ସ୍ତ୍ରୀ ଲୋକଟି ମୋ କୋଳରେ ଲୋଟି ପଡ଼ିଲା ।

ସଙ୍ଗେ ସଙ୍ଗେ ସ୍ତ୍ରୀଟିର ଚିକିତ୍ସା ପ୍ରଥମେ ଆରମ୍ଭ କଲି । ଦିହିଁଙ୍କୁ ରକ୍ତ ଦରକାର । କମ୍ପାଉଣ୍ଡର୍ ବାବୁଙ୍କୁ କହିଲି ମୋଠୁଁ ରକ୍ତ ଦିହିଙ୍କୁ ଦେବାପାଇଁ । କମ୍ପାଉଣ୍ଡର ପ୍ରଥମେ ରାଜିହେଲେ ନାହିଁ । ମୁଁ ହିଲି, ''ମୋର ବି-ପଜିଟିଭ ରକ୍ତ । କମ୍ପାଉଣ୍ଡର୍ ! ଏହା ମୋର ଆଦେଶ, ଦିହିଁଙ୍କୁ ଅନ୍ତତଃ ଦରକାରୀ ପରିମାଣ ରକ୍ତ ମୋଠୁଁ ନେଇଯାଅ ।''

ତାହାହିଁ ହେଲା । ଦୀର୍ଘ ପନ୍ଦରଦିନ ପରେ ସ୍ୱାମୀ ସ୍ତ୍ରୀ ଦିହେଁ ଭଲ ହୋଇଗଲେ । ଯେଉଁ ଦିନ ଡାକ୍ତରଖାନାରୁ ମୁକ୍ତ ହେଲେ ସଂଧ୍ୟାରେ ଦିହେଁ ମୋ ଘରକୁ ଆସିଥିଲେ ଦିହେଁ ମୋ ଗୋଡ଼ତଳେ ବସି ବହେ କାନ୍ଦିଲେ । କିଛି କଥା କହୁ ନ ଥିଲେ । ମୁଁ ଆପଣା ଲୁହକୁ ରୋକିବାର ଚେଷ୍ଟା କରୁଥିଲି । ସ୍ତ୍ରୀ ଲୋକଟି କେଶରେ ପିନ୍ଧିଥିଲା ମନ୍ଦିରକାୟ ଶୁଭ୍ର ସୁନ୍ଦର ରୂପାର ଅଳଙ୍କାରଟାଏ । ସେଇ ଅଳାଙ୍କାରଟି ଚଉଁରିମୁଣ୍ଡି । କୁଟିଆଙ୍କର ବଡ଼ ପ୍ରିୟ । ସାଧାରଣତଃ ବିବାହ ଦିନ ବର ତରଫରୁ କନ୍ୟା ଗଭାରେ ଏହା ଉପହାର ଭାବରେ ଦିଆଯାଏ ।

ଗମ୍ଭୀର ପରିବେଶ ମଝିରେ ସ୍ତ୍ରୀ ଲୋକଟି ଆପଣା ଗଭାରୁ ଚଉଁରିମୁଣ୍ଡିକୁ ହାତରେ ଓଟାରି ମୋର ଦୁଇ ହାତରେ ଥୋଇ କାନ୍ଦି କାନ୍ଦି କହିଲା, ''ଡାକ୍ତର ମିତେ ! ମୁଁ ଟଙ୍କା ଦେବି ? ମୁଁଇ କର୍ଲାପାଟର କେତେକି ଜାନୀର ଟୁମକଲ୍, କସ୍‌ନା କୁଟିଆର କନିଆ । ମିତେ ରକତର କାଏଁ ମୁଲ୍ ଦେବି ? ତୁଇ ମର୍ ମିତ, ମିତଣିର ଚିହ୍ନ ଗୁଟେ ରଖ୍ । ଇ. ଚଅରିମୁଣ୍ଡି ନେ । ତର୍ କନିଆ ଆସୁ, ତାର ମୁଣ୍ଡେ ଇଟାକେ ଦେବୁ । କହେବୁ, କାର୍ଲାପାଟ୍‌ର କୁଟେନ୍ ବହେନ୍ ଇଟା ଦେଇଛେ ।''

ଆଜିକି ଅନେକ ବର୍ଷର ଏଇ ଘଟଣା । ଅନେକ ସହର ବୁଲିଛି । ବାପାମାଆ ଅନେକ ଠିକଣା ଆଣିଛନ୍ତି । ଅନେକ ଯୁବତୀ ଦେଖିଛି । କିନ୍ତୁ ଏଯାଏ ପାଇନି କୁଟିଆ ରମଣୀର ଉପହାର ପାଇଁ ଯୋଗ୍ୟା ଶିକ୍ଷିତା ଯୁବତୀଟିଏ । ଯାହା ଗଭାରେ ଭଉଁରିମୁଣ୍ଡି ଦେଇପାରିବି । ଏଯାଏଁ ପାଇନି କନ୍ୟାଟିଏ ଯାହାକୁ ବୁଝାଇ କହିବି ବରକନ୍ୟାର ସମ୍ପର୍କର କାହାଣୀ, କୁଟିଆ ରମଣୀର ରକ୍ତ-ସମ୍ପର୍କୀୟର କାହାଣୀ ।



# ଚୋରର ଚିଠି

## ଅଧ୍ୟାପକ ବିଶ୍ୱରଞ୍ଜନ

ରାତି ଏଗାରଟା ସୁଦ୍ଧା ଘରକୁ ଫେରି ଆସିବାର କଥା । କେତେ ବା ବାଟ ଭୁବନେଶ୍ୱରରୁ ପୁରୀ । ସନ୍ଧ୍ୟାବେଳେ ସେମାନେ ବାହାରି ଯାଇଥିଲେ । ଅବଶ୍ୟ ସେଦିନ ପୁରୀ ଯିବାର ଇଚ୍ଛା ବା ଆଗ୍ରହ ଆଦୌ ନଥିଲା ଅବିନାଶର । ମାତ୍ର ହଠାତ୍ ମହମ୍ମଦ୍ ସମିମ୍ ଫୋନ୍ କରି କହିଲେ- "ଆଜି ଜଗନ୍ନାଥଙ୍କର ସୁନାବେଶ । ପୁରୀ ଯିବା ।" ରଥଯାତ୍ରା କିମ୍ବା ବାହୁଡା ଯାତ୍ରାକୁ ସେ ଯାଇ ପାରିନଥିଲା ବୋଲି ଠାକୁରଙ୍କ ସୁନାବେଶ ଦେଖି ବାହାରିଥିଲେ । ପ୍ରଥମେ ନିଜର ଅନିଚ୍ଛା ପ୍ରକାଶ କରିଥିଲା ଅବିନାଶ । କାରଣ ତାକୁ କୌଣସି ପ୍ରକାର ଯାନିଯାତ୍ରାର ଗହଳି ବା ଭିଡ ଭିତରକୁ ପଶିବାକୁ ଭଲ ଲାଗେ ନାହିଁ । ତା' ଘର ପୁରୀ । ପ୍ରତି ରଥଯାତ୍ରାବେଳକୁ ସେ ପ୍ରାୟ ପୁରୀରେ ଥାଏ । ମାତ୍ର କ୍ୱଚିତ୍ ବଡଦାଣ୍ଡକୁ ବାହାରିଥାଏ । ଏଥର ଘରର ସମସ୍ତେ ଗଲେ ରଥ ଟାଣିବାକୁ । ମାତ୍ର ସେ ଘର ଭିତରେ ଶୋଇ ରହିଲା । ଅଭିମାନ କରିଥିଲା ଜଗନ୍ନାଥଙ୍କ ଉପରେ ବର୍ଷେକାଳ ତାଙ୍କ ମୁହଁ ଚାହିଁବ ନାହିଁ ବୋଲି । ତା' ଅଭିମାନର କାରଣ ସେ ଅବଶ୍ୟ କାହାକୁ କହି ନଥିଲା । ଏକାନ୍ତ ବ୍ୟକ୍ତିଗତ ସମ୍ପର୍କର ମାନ ଅଭିମାନର କଥା କ'ଣ ସମସ୍ତଙ୍କୁ କୁହାଯାଏ ?

ତେଣୁ ସମିମ୍ ବାବୁ ଯେତେବେଳେ ଜଗନ୍ନାଥଙ୍କ ସୁନାବେଶ ଦେଖିଯିବା କଥା ଉଠେଇଲେ, ଅବିନାଶ କହିଲା- "ଆପଣ ଯାଆନ୍ତୁ, ମୋର କାଲି ସକାଳେ ଗୋଟିଏ ମିଟିଂ ଅଛି ।" ଉମାକାନ୍ତ ବାବୁଙ୍କ ବହିର ଉନ୍ମୋଚନ ଉତ୍ସବ ।

ଲେଖକ ଉମାକାନ୍ତ ମହାପାତ୍ରଙ୍କର ସଂସାରରୁ ଅପ୍ରତ୍ୟାଶିତ ବିଦାୟର ଅବ୍ୟବହିତ ପୂର୍ବରୁ ଉପନ୍ୟାସଟିଏ ପ୍ରକାଶ ପାଇଥିଲା । ପ୍ରକାଶକ ମହେନ୍ଦ୍ରବାବୁ ଅବିନାଶକୁ ଅନୁରୋଧ କରିଥିଲେ ସେ ବହିର ଆଲୋଚନା କରିବା ପାଇଁ । ତାହା ହିଁ କୁଆଡେ ପରଲୋକଗତ ଲେଖକଙ୍କର ଇଚ୍ଛା ଥିଲା । ଅବିନାଶ ସେ ପର୍ଯ୍ୟନ୍ତ ବହିଟି ପଢି ନଥିଲା । ରାତିରେ ବହିଟି ପଢିବ ବୋଲି ସେ ପୁରୀ ଯିବାକୁ ମନାକଲା । ମାତ୍ର ସମିମ୍ ତାକୁ କହିଲେ – ରାତି ଏଗାରଟା ସୁଦ୍ଧା ଚାଲି ଆସିବା । ଆପଣ ତ ଆଉ ସକାଳେ ପରୀକ୍ଷାରେ ବସିବାକୁ ଯାଉନାହାନ୍ତି । ରାତିରେ ବହିଟି ଉପରେ ଦୃଷ୍ଟି ବୁଲେଇ ଆଣିବେ ।"

ଅବିନାଶର ଆଉ ନାହିଁ କରିବାର ଉପାୟ ନଥିଲା । ମହମ୍ମଦ ସମିମ୍ଙ୍କ ସହିତ ତା'ର ସମ୍ପର୍କ ଅନେକ ଦିନର । କ୍ଷମତା-ରାଜନୀତିରେ ସେ ଥିଲେ ମଧ୍ୟ ସାହିତ୍ୟ ଓ ସାହିତ୍ୟିକମାନଙ୍କ ସହ ତାଙ୍କର ସଂପ୍ରୀତି ଓ ସଦ୍‌ଭାବ ଲାଗି ସମସ୍ତଙ୍କର ସେ ଶ୍ରଦ୍ଧାର ପାତ୍ର । ମୁସ୍‌ଲିମ୍ ହେଲେ ବି ଜଗନ୍ନାଥଙ୍କ ପ୍ରତି ତାଙ୍କର ଭକ୍ତିଭାବ ମଧ୍ୟ ଲକ୍ଷ୍ୟ କରିବାର କଥା । ସେ ଯେତେବେଳେ ଜଗନ୍ନାଥ ଦର୍ଶନ କଥା କହୁଛନ୍ତି, ନିଜେ ଜଗନ୍ନାଥ ଧାମ ଓ ଧର୍ମର ଲୋକ ହୋଇ ଅବିନାଶ ସେ କଥାକୁ କିପରି ବା ଏଡେଇ ଯାଇ ପାରିବ ? ତେଣୁ ସେ ଓ ବଡପୁଅ ଦୁହେଁଯାକ ବାହାରିଗଲେ ପୁରୀ, ଆଗରୁ ପତ୍ନୀ ତାଙ୍କର ସାନପୁଅକୁ ସାଙ୍ଗରେ ଧରି ଚାଲି ଯାଇଥିଲେ । ପୁରୀରେ ପହଞ୍ଚିବା ପରେ ଭଲରେ ଦର୍ଶନ ହୋଇଗଲା । ମାତ୍ର ନାହିଁ ନଥିବା ଭିଡ । ବାପ୍‌ରେ ବାପ୍ ଏତିକି ଲୋକ-- ଏତିକି

ଯାନ ବାହନ । କାର୍‌ର ଧାଡି ଲମ୍ବିଛି ତ ଲମ୍ବିଛି ତା' ମଝିରେ ସ୍କୁଟର, ମୋଟର ସାଇକେଲ୍‌, ସାଇକେଲର ଧାଡି । ଆଗେ ରଥଯାତ୍ରାକୁ ଯାହା ଭିଡ ହେଉଥିଲା । ମାତ୍ର ଏବେ ସମସ୍ତଙ୍କ ପାଖରେ ଗାଡି । ଯିବା ଆସିବା ଅସୁବିଧା ନାହିଁ । ତେଣୁ ଜାନୁଆରୀ ପହିଲା ଦିନ ନୂଆବର୍ଷ ବୋଲି କିମ୍ବା ସେହିଭଳି ବିଶେଷ ଦିନମାନଙ୍କରେ ମଧ୍ୟ ଅସମ୍ଭବ ରକମର ଭିଡ ଜମିଯାଉଛି ପୁରୀ ସହରରେ । ସୁନାବେଶ ଦିନ ଛ'ଲକ୍ଷ ଲୋକଙ୍କର ସମାଗମ ହୋଇଥିଲା । ରାତି ୧୨ ଟାରେ ସେମାନେ ପୁରୀ ସହର ଛାଡିଲେ । ଅଥଚ ବାଟ ମଙ୍ଗଳାଠାରୁ ଆଉ ଆଗକୁ ଟପି ପାରିଲେ ନାହିଁ । କାର୍‌ର ଲାଇନ୍‌ ଲମ୍ବିଛି । କେହି ଆଗକୁ ଯାଇ ପାରୁନାହାନ୍ତି । ଦୀର୍ଘ ତିନିଘଣ୍ଟା ସେଇଠି ସେମାନେ ଅଟକିଗଲେ । ଭୁବନେଶ୍ୱରରେ ପହଞ୍ଚିଲାବେଳକୁ ଭୋର୍‌ ପାଞ୍ଚଟା । ଦେହ ଓ ମନ ଭୀଷଣ କ୍ଳାନ୍ତ । କିପରି ଶୀଘ୍ର ଦେହର ପୋଷାକ ବଦଳେଇ ଟିକିଏ ବିଶ୍ରାମ ନେବ– ସେଥିପାଇଁ ଅବିନାଶ ଅସ୍ଥିର ହେଉଥାଏ । ଦାଣ୍ଡ ଦୁଆରେ କଲିଂବେଲ୍‌ ଚିପିଲା । ମାତ୍ର କବାଟ ଖୋଲିବାର କୌଣସି ଲକ୍ଷଣ ନଥାଏ । ଅବିନାଶ ଭାବିଲା ସ୍ତ୍ରୀ ବୋଧହୁଏ, ଆଗରୁ ଆସି ଶୋଇ ପଡିଛନ୍ତି ! ପାହାନ୍ତା ପହରର ନିଦ ଲାଗିଯାଇଛି । ତେଣୁ ବେଡ୍‌ରୁମ୍‌ ପାଖକୁ ଥିବା ଆଉ ଏକ ପ୍ରବେଶ ଦ୍ୱାରରେ ସେ ହାତ ମାରିଲା ମାତେ ଦେଖିଲା କବାଟ ଖୋଲା ।

ଘର ଭିତରର ଦୃଶ୍ୟ ଦେଖି ଅବିନାଶ ଓ ଅନୁପ – ବାପ ପୁଅ ଦୁହେଁ ହତଚକିତ ହୋଇଗଲେ । ସ୍ତ୍ରୀ ସାନପୁଅଙ୍କର ଦେଖାନଥାଏ । ସମ୍ଭବତଃ ସେମାନେ ଫେରି ନାହାନ୍ତି । ମାତ୍ର ଘରର ପ୍ରତିଟି କୋଠରୀର ଆସବାବପତ୍ର ଇତସ୍ତତଃ, ବିକ୍ଷିପ୍ତ । ଷ୍ଟିଲ୍‌ ଆଲ୍‌ମିରା ଭଙ୍ଗାଯାଇଛି । କିଛି ସମୟ ପରେ ସାନପୁଅ ସହିତ ପତ୍ନୀ ଅନୁପମା ଆସି ପହଞ୍ଚିଲେ । ବାଟରେ ସେ ମଧ୍ୟ ଅଟକି ଯାଇଥିଲେ । ସବୁ ପୁରୀଯାତ୍ରୀଙ୍କର ସେ ଦିନ ସେଇ ଏକାଦଶା । ଅନୁପମା ସାଙ୍ଗେ ସାଙ୍ଗେ ତାଙ୍କ ସମ୍ପତ୍ତି ଅଣ୍ଡାଳି ପକାଇଲେ । ସମ୍ପତ୍ତି ବୋଲି କିଛି ସୁନାଗହଣା । ଯାହା ବା ପିନ୍ଧିଥିଲେ ସେ ସବୁକୁ ମଧ୍ୟ କାଢି ପକେଇଥିଲେ । ଜଗନ୍ନାଥଙ୍କ ସୁନାବେଶର ଗହଳିରେ ଚୋର-ପକେଟ୍‌ମାରଙ୍କ ପ୍ରାଦୁର୍ଭାବର ଭୟ ଥିବାରୁ ଜିଲ୍ଲା ପ୍ରଶାସନ ତରଫରୁ ଏ ପ୍ରକାର ଘୋଷଣା ମଧ୍ୟ କରାଯାଇଥିଲା ।

ମାତ୍ର ଚୋର ପୁରୀରେ ନୁହେଁ ଅବିନାଶଙ୍କ ପରିବାରର ଅନୁପସ୍ଥିତିରେ ଭୁବନେଶ୍ୱର ବସାଘରେ ହିଁ ସୁନଗହଣାର ସନ୍ଧାନ କରିଛି । ଆଲମିରାର ପ୍ରତ୍ୟାଶିତ ସ୍ଥାନରେ ମଧ୍ୟ ବୁଦ୍ଧିମତୀ ସ୍ତ୍ରୀ ଗହଣା ରଖିନଥିଲେ । ଚୋରର ଯେମିତି ଆଦୌ ନଜର ପଡିବ ନାହିଁ- ସେହିଭଳି ଏକ ଛିଣ୍ଡା ମଇଳା ଲୁଗାପଟା ଗଣ୍ଠିଲି ଭିତରେ ଗୁଞ୍ଜି ଦେଇ ଯାଇଥିଲେ ତାଙ୍କ ଗହଣା । ମାତ୍ର ଚୋରର ବୁଦ୍ଧି ସ୍ତ୍ରୀଙ୍କ ବୁଦ୍ଧିଠାରୁ ଆହୁରି ପ୍ରଖର । ସେମାନେ ଘରର ଅଳିକନ୍ଦି ସବୁ ଖୋଜିଛନ୍ତି । ଶେଷରେ ପାଇ ଯାଇଛନ୍ତି ଈପ୍‌ସିତ ସୁନା ଅଳଙ୍କାର । ତା'ପରେ ଭାବିଛନ୍ତି ସୁନା ଯଦି ମଇଳା ଲୁଗା ଗଣ୍ଠିଲିରେ ଥିଲା, ତେବେ ଗୃହସ୍ୱାମୀ ସେହିଭଳି ନଗଦ ଟଙ୍କା ମଧ୍ୟ ତାଙ୍କର କେଉଁ ବହିପତ୍ର, ଡାଏରୀ ବା ଫାଇଲ୍‌ ଭିତରେ ରଖିଥିବେ । ସେଇଥିପାଇଁ ସେମାନେ ଅବିନାଶର ସବୁ କାଗଜପତ୍ର, ଖାତା, ଡାଏରୀ ତନ୍ନ ତନ୍ନ କରି ଖୋଜିଛନ୍ତି । ଘରର ଚାରିଆଡେ ସବୁ ବିଛେଇ ହୋଇ ପଡିଛି । ମାସ ଶେଷରେ ଜଣେ ଅଧ୍ୟାପକର ଘରୁ ନଗଦ ଅର୍ଥ ଆସିବ କୁଆଡୁ ? ଚୋରମାନେ ନିରାଶ ହୋଇଛନ୍ତି । ମାତ୍ର ଘରର ଅନ୍ୟାନ୍ୟ ଆସବାବପତ୍ର ସେମାନେ ଛାଡିଯାଇଛନ୍ତି । ଚାହିଁଥିଲେ ଘର ଖାଲିକରି ଲଂପାମୋଛା କରିଦେଇ ମାଲ ମାରିଥାଆନ୍ତେ । ମାତ୍ର ତାହା ସେମାନେ କରିନାହାନ୍ତି । ଏହାକୁ ଅବିନାଶ ଜଗନ୍ନାଥଙ୍କର ତା' ପ୍ରତି କରୁଣା ଭାବି ନିଜକୁ ଧନ୍ୟ ମନେକଲା ।

ବାହାଘରର ବାରବର୍ଷ ଭିତରେ ସ୍ତ୍ରୀଙ୍କ ପାଇଁ ସାମାନ୍ୟ ମୁଦିଟିଏ ମଧ୍ୟ କିଣିଦେବାର ଆଗ୍ରହ ଓ ଆର୍ଥିକ ସମ୍ବଳ ଅବିନାଶର ନଥିଲା । ବହିକୁ ସେ ସୁନାଠାରୁ ଅଧିକ ମୁଲ୍ୟବାନ୍ ମନେ କରିଛି । ଯାହା କିଛି ସୁନାଗହଣା ଥିଲା ସେ ସବୁ ସ୍ତ୍ରୀଙ୍କର ପିତୃମାତୃଦତ୍ତ ଉପହାର । ସେ ସବୁକୁ ଏକାବେଳକେ ବିକିଦେଇ ବା ବନ୍ଧା ରଖି ସେହି ଅର୍ଥରେ ଘର ଖଣ୍ଡିଏ ପାଇଁ ଜାଗାଟିଏ କିଣିବାର ଯୋଜନାରେ ସେ ଥିଲେ । ଅବିନାଶ ଘର ପାଇଁ ଜାଗା ନ କିଣି କାଗଜ କିଣି ଥିଲା । କଲମରେ କାଳି ଭରିଥିଲା । ସେ ଦିନ ସନ୍ଧ୍ୟାରେ ଥାଏ ତା' 'ନୂଆଘର'ର ପ୍ରତିଷ୍ଠା ସମାରୋହ । ତା' ଲେଖକ ଜୀବନର ପ୍ରଥମ ଉପନ୍ୟାସ ମୁକ୍ତପଟ । ବନ୍ଧୁ ସମିମ୍‌ବାବୁ ହିଁ ଏକ ଉତ୍ସବର ଆୟୋଜନ କରିଥିଲେ ।

ସନ୍ଧ୍ୟାବେଳକୁ ନୂଆଘରର ଆନନ୍ଦ ଆସର । ଅଥଚ ସକାଳେ ଦେଖିଲାବେଳକୁ ନିଜର ବସାଘରେ ପୋଲିସ୍ ଭାଇମାନଙ୍କର ପୋଲିସ କୁକୁରର କୋଳାହଳ । ନୂଆ ସମ୍ପତ୍ତି ଅର୍ଜନ କଲାବେଳକୁ ସଞ୍ଚିତ ଅସଲ ସମ୍ପତ୍ତି ଅପହୃତ । ଅବିନାଶ ଭାବୁଥିଲା କାହାକୁ ବା ସେ ଅସଲି କହିବ ? ଯାହା ଚାଲିଗଲା ନା ଯାହାର ଉନ୍ମୋଚନ ପାଇଁ ଉତ୍ସବର ଆୟୋଜନ ହୋଇଛି ? ସଂଧ୍ୟାରେ ଯଥାରୀତି 'ନୂଆଘର' ପ୍ରତିଷ୍ଠା ପାଇଲା । ପ୍ରିୟଜନମାନେ ଆସିଥିଲେ । ବୟୋଜ୍ୟେଷ୍ଠ ଗୁରୁଜନମାନେ ଉପସ୍ଥିତ ରହି ଲେଖକ ଅବିନାଶଙ୍କୁ ଶୁଭ ବାର୍ତ୍ତା ଦେଇଥିଲେ । ପୂର୍ବ ରାତିରେ ଚୋରି କଥା ସେ ତାରି ଭିତରେ ଭୁଲିଯିବାକୁ ଚେଷ୍ଟା କରିଥିଲା ।

ଅବଶ୍ୟ ଥାନାକୁ ଦଉଡିବା, ପୋଲିସ୍ ବିଭାଗର ସଚ୍ଚୋଟ କର୍ତ୍ତାଙ୍କୁ ଭେଟି ନିଜର ଦୁଃଖ ଜଣାଇବା, ଚୋରକୁ ଚିହ୍ନଟ କରିବାରେ ସେମାନଙ୍କ ସକ୍ରିୟ ସହଯୋଗ କାମନା କରିବା ଇତ୍ୟାଦି କାର୍ଯ୍ୟ ସେ ଯଥାରୀତି କରିବାକୁ ଭୁଲି ନଥିଲା । ଚୋରି ଯାଇଥିବା ଅଳଙ୍କାର ଫେରି ପାଇବାର ସାମାନ୍ୟତମ ଆଶା ତା'ର ନଥିଲା । ମାତ୍ର ସେ ଚାହୁଁଥିଲା- ଚୋର ଧରା ପଡୁ । କାରଣ ସେ ଓ ତା'ର ବନ୍ଧୁମାନେ ସନ୍ଦେହ କରୁଥିଲେ ଯେ, ତାଙ୍କର ଆଖପାଖର କେହି ଜଣେ ଚୋର ଦଳର ସହଯୋଗୀ ଭାବରେ ରହିଛି । ସିଏ ଧରା ନ ପଡିଲେ ଏ ପ୍ରକାର ଘଟଣା ତାଙ୍କ ଅଞ୍ଚଳରେ ବଢ଼ିପାରେ । ପୋଲିସ୍‌ବାଲା ଟିକିଏ ଆଗ୍ରହ ସହକାରେ ଚେଷ୍ଟା କଲେ ଅପରାଧୀ ଧରାପଡିଯାଆନ୍ତା ।

ଅବିନାଶର ମନେ ପଡୁଥିଲା– କିଛି ବର୍ଷ ତଳର କଥା । ସେ ସେତେବେଳେ ଢେଙ୍କାନାଳରେ ଥାଏ । ରହୁଥାଏ କଲେଜ କ୍ୱାର୍ଟର୍ସରେ । ଖରା ଛୁଟିରେ ପୁରୀ ଯାଇଥାଏ ପରିବାର ସହ । ସେଇ ଛୁଟି ଭିତରେ ଖବର ମିଳିଲା, କେହି ଘର ଭାଙ୍ଗି ଟି.ଭି. ଓ ଅନ୍ୟାନ୍ୟ କିଛି ଆସବାବପତ୍ର ନେଇ ଯାଇଛି । ସେତେବେଳେ ଢେଙ୍କାନାଳର ଏସ୍.ପି. ଥାଆନ୍ତି, ତା'ର ଜଣେ ପୂର୍ବତନ ସହକର୍ମୀ ବନ୍ଧୁ ଅନୁପ ପଟ୍ଟନାୟକ । ତାଙ୍କୁ ଯାଇ ସେ ଦେଖା କଲା ଏବଂ କହିଲା- "ତମେ ଏ ଜିଲ୍ଲାର ପୋଲିସ୍ ମୁଖ୍ୟ ଥିଲାବେଳେ, ଏ ଭଳି ଅଧ୍ୟାପକ ଘରୁ ଚୋରି ?" ବାସ୍ ଏତକ କହି ଚାଲିଆସିଲା । ଏହା ଭିତରେ ତା'ର ବଦଳି ହେଲା ଫୁଲବାଣୀ । ଦୁଇମାସ ପରେ ଢେଙ୍କାନାଳ ଛାଡିବା ଉଦ୍ଦେଶ୍ୟରେ ଟ୍ରକ୍‌ରେ ତା'ର ଜିନିଷପତ୍ର ସଜଡା ହେଉଛି– ଥାନାର ଜଣେ ଅଫିସର ଆସି ତାଙ୍କୁ ଖବର ଦେଲେ ଆପଣଙ୍କୁ ଏସ୍.ପି. ସାହେବ ଡାକୁଛନ୍ତି । ସେ ସାଙ୍ଗେ ସାଙ୍ଗେ ଯାଇ ପହଞ୍ଚିଲା ଏବଂ ତା'ର ବିସ୍ମୟ ଓ ଆନନ୍ଦର ସୀମା ରହିଲା ନାହିଁ । ଯେତେବେଳେ ଚୋରି ଯାଇଥିବା ଜିନିଷପତ୍ର ସହ ଚୋରକୁ ଆଣି ତା' ସାମ୍ନାରେ ଏସ୍.ପି. ସାହେବ ହାଜର କରେଇ ଦେଲେ । ଏସ୍.ପି.ଙ୍କ ନିର୍ଦ୍ଦେଶରେ ଚୋର ମଧ୍ୟ ବର୍ଣ୍ଣନା କଲା ତା'ର ଚୋରି ବୃତ୍ତାନ୍ତ । ସେହି ମୁହୂର୍ତ୍ତରେ ଥାନାବାବୁ ମଧ୍ୟ ଅପହୃତ ଜିନିଷପତ୍ର ଅବିନାଶକୁ ଫେରାଇଦେଲେ । ଏସ୍.ପି.ଙ୍କ

ବନ୍ଧୁ ନହୋଇଥିଲେ ଥାନାରୁ ମିଳିଥିବା ଚୋରି ଜିନିଷ ମଧ୍ୟ ଉଦ୍ଧାର ପାଇବା ତା' ପକ୍ଷରେ ଏତେ ସହଜ ହୋଇନଥାନ୍ତା ।

ଏହାର ବହୁବର୍ଷପରେ ଭୁବନେଶ୍ୱରରେ ପୁଣି ଚୋରି । ପୋଲିସ୍ ବିଭାଗର ସର୍ବୋଚ୍ଚ କର୍ତ୍ତା, ଘରୋଇ ବିଭାଗର ଶାସନ ସଚିବ, ମନ୍ତ୍ରୀ, ସମସ୍ତଙ୍କ ସହ ଅବିନାଶର ବନ୍ଧୁତା ଥିଲା । ତା' ପାଖରୁ ଖବର ପାଇବା ପୂର୍ବରୁ ସେମାନେ ଖବର ପାଇ ସାରିଥିଲେ ଏବଂ ଆବଶ୍ୟକ କାର୍ଯ୍ୟାନୁଷ୍ଠାନ ପାଇଁ ନିର୍ଦ୍ଦେଶ ଦେଇ ଚାଲିଥିଲେ । ଅବିନାଶର ସନ୍ଦେହ ହେଉଥିଲା ତାଙ୍କ ଘରର ଉପର ମହଲାରେ ରହୁଥିବା ଜଣେ ଭଦ୍ରବ୍ୟକ୍ତିଙ୍କ ଚାକର ଉପରେ । ଭଦ୍ରବ୍ୟକ୍ତି ଆର୍ମିରୁ ଅବସର ନେବାପରେ ଭୁବନେଶ୍ୱରରେ କୌଣସି ବ୍ୟାଙ୍କ୍‌ରେ ସିକ୍ୟୁରିଟି ଅଫିସର ଥିଲେ । ତାଙ୍କ ସ୍ତ୍ରୀ ଥିଲେ ଖୋର୍ଦ୍ଧାରେ ବିଚାର ବିଭାଗର ଜଣେ ଅଧିକାରୀ । ସମ୍ଭବତଃ ମୁନ୍‌ସିପ୍ । ସ୍ୱାମୀ ସ୍ତ୍ରୀ ଅଧିକାଂଶ ସମୟ ଖୋର୍ଦ୍ଧାରେ ରହନ୍ତି । ମଝିରେ ମଝିରେ ଆସନ୍ତି । ତଥାପି ଚାକରଟିଏ ଘର ଜଗିଥାଏ । ଏହା ପୂର୍ବରୁ କେତେ ଚାକର ଆସି ରହିଛନ୍ତି ଓ ଚାଲି ଯାଇଛନ୍ତି । ସେମାନଙ୍କର ଅଭିଯୋଗ ଯେ, ଚାକିରି କରେଇଦେବା ଲୋଭ ଦେଖେଇ ବାବୁ ଓ ମା' ସେମାନଙ୍କୁ ଆଣି ରଖନ୍ତି, ଦରମା ଦିଅନ୍ତି ନାହିଁ । ଅଥଚ ଚାକିରିର ନାଁ ଗନ୍ଧ ଧରନ୍ତି ନାହିଁ । ଏବର ନୂଆ ଚାକର ଯାହା ଉପରେ ସନ୍ଦେହ ହେଉଥିଲା ସେ ମାତ୍ର ଛମାସ ହେଲା ଆସି ରହିଥାଏ । ଅଥଚ ସେ ଆସିବା ଭିତରେ ଅବିନାଶର ଘରକୁ ମିଶେଇ ଦୁଇଥର ଚୋରି ହେଲା । ତା' ପୂର୍ବରୁ ଉପର ମହଲାରେ ରହୁଥିବା ଆଉ ଜଣେ ଭଦ୍ରବ୍ୟକ୍ତିଙ୍କ ଘରୁ ଦିନବେଳା ତାଙ୍କ ସ୍ତ୍ରୀ ଝିଅକୁ ସ୍କୁଲରୁ ଆଣିବାକୁ ଯିବା ଭିତରେ, ମାତ୍ର ଅଧଘଣ୍ଟାଏ ବ୍ୟବଧାନରେ କେହି ତାଙ୍କ ଘରେ ପଶି ଆଲମିରାରୁ ନଗଦ ସତୁରିହଜାର ଟଙ୍କା ଓ ସୁନାଗହଣା ନେଇ ଛୁ । ତା'ପରେ ଅବିନାଶର ପାଳି । ମାତ୍ର ଆଶ୍ଚର୍ଯ୍ୟ, ପୋଲିସ୍ ସେ ଚାକରକୁ ପଚରାଉଚୁରା ପାଇଁ ଡାକିବାରୁ ତା'ର ମାଲିକ ମାଲିକାଣୀ ଦୁହେଁ ତୀବ୍ର ପ୍ରତିକ୍ରିୟା ପ୍ରକାଶ କଲେ । ସେମାନଙ୍କର ଅଦ୍ଭୁତ ଓ ଅବାନ୍ତର ଯୁକ୍ତି ଯେ, ତାଙ୍କ ଚାକରକୁ ସନ୍ଦେହ କରିବାର ଅର୍ଥ ସେମାନଙ୍କୁ ସନ୍ଦେହ କରିବା । ସେମାନେ ଆର୍ମି ଓ ଜୁଡିସିଆରୀର ଲୋକ ହୋଇ କ'ଣ ତା'ହେଲେ ଜଣେ ଅପରାଧୀକୁ ଘରେ ରଖିଛନ୍ତି ? ଏଭଳି ପ୍ରତିକ୍ରିୟା ଅସ୍ୱାଭାବିକ ମନେ ହେଉଥିଲା । କାରଣ ସେମାନେ ସିନା ଆର୍ମି ବା ଜୁଡିସିଆରୀରେ ଅଛନ୍ତି । ମାତ୍ର ସେମାନେ କେମିତି ଜାଣିବେ ଯେ, ତାଙ୍କ ଚାକର ପୂର୍ବରୁ ବା ପରେ କୌଣସି ଅପରାଧରେ ଜଡିତ ଅଛି କି ନାହିଁ ବୋଲି ? ଅବଶ୍ୟ ଆଉ ଗୋଟିଏ କଥା ମଧ୍ୟ କୁହାଯାଇପାରେ ଯେ, ଅପରାଧକୁ ରୋକିବା ପାଇଁ ଯେଉଁ ପୋଲିସ୍ ବିଭାଗର ସୃଷ୍ଟି ସେ ପୋଲିସ୍‌ବାଲାଙ୍କର କ'ଣ ଅପରାଧୀ ସହିତ ସମ୍ପର୍କ ଥିବା କଥାର ପ୍ରମାଣ ମଝିରେ ମଝିରେ ସମ୍ବାଦ ପତ୍ରରେ ପ୍ରକାଶ ପାଉନାହିଁ ? ଏପରିକି ଜେଲର୍‌ବାବୁଙ୍କର ଚୋର ସହିତ, ଜଜ୍‌ଙ୍କ ଦୁର୍ନୀତିର ପରିଚୟ ମଧ୍ୟ ଏବେ ମିଳୁଛି । ସେ ଯାହାହେଉ, ପୋଲିସ୍ ଆଉ ଅବିନାଶର ସନ୍ଦେହର ଚାକରଟିକୁ ବିଶେଷ ପଚରାଉଚରା କରିବାର ତତ୍ପରତା ପ୍ରକାଶ କଲେ ନାହିଁ, ତାଙ୍କ କୋର୍ଟ ମାଲିକାଣୀଙ୍କ ଭୟରେ । ବେଶ୍ ନିଷ୍କପଟ ପୁଲିସ ଥାନା ଅଫିସର କହିଲେ, "ଆମର-ଆଜ୍ଞା- କୋର୍ଟ୍ ବାଲାଙ୍କୁ ଭାରି ଭୟ । ସେମାନେ ଚାହିଁଲେ ଆମକୁ ହଇରାଣ କରି ଦେଇପାରିବେ ।" ତଥାପି ଅବିନାଶକୁ ସାନ୍ତ୍ୱନା ଦେଇ କହିଲେ– "ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଆମେ ଆବଶ୍ୟକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବୁ ।"

ଅବିନାଶର ବ୍ୟସ୍ତ ହେବାର ଆଉ କିଛି ନଥିଲା । ସେ ପୋଲିସ୍ ବିଭାଗର ସର୍ବୋଚ୍ଚଙ୍କ ଯାଏଁ ଯାଇଥିଲା । ଭୁବନେଶ୍ୱରରେ ଚୋରି, ଡକାୟତି ବଢିବାରେ ଲାଗିଥିଲା । ରାତିସାରା ପୋଲିସ୍

ପାଟ୍ରୋଲିଂ ଚାଲିଥିଲା । ଦିନବେଳା କିନ୍ତୁ ଚୋର, ଡକାୟତ, ପକେଟ୍‌ମାର୍‌ମାନେ ନିର୍ଭୟରେ ରାଜପଥରେ ସର୍ବସାଧାରଣଙ୍କ ସମ୍ମୁଖରେ ସେମାନଙ୍କର କାର୍ଯ୍ୟକଳାପ ଜାରି ରଖିଥିଲେ । ଏପରିକି ଆବଶ୍ୟକ ପଡିଲେ କାହାରିକୁ ମରଣାନ୍ତକ ଆଘାତ ଦେବାକୁ ବା ହତ୍ୟା କରିବାକୁ ପଛେଇ ଯାଉ ନଥିଲେ । ସେ ଦୃଷ୍ଟିରୁ ଜଗନ୍ନାଥଙ୍କର ଅବିନାଶର ପରିବାର ପ୍ରତି ଅଶେଷ କରୁଣା ଅଛି ବୋଲି ସେ ମନେ କରୁଥିଲା । କାରଣ ତାଙ୍କ ଅନୁପସ୍ଥିତିରେ ଅଳଙ୍କାରଗୁଡିଏ ସିନା ଅପହୃତ ହୋଇଗଲା, ହେଲେ ସେମାନଙ୍କ ଶରୀର ବା ପ୍ରାଣକୁ ଆଘାତ ଲାଗିଲା ଭଳି କୌଣସି ଅଘଟଣକୁ ସାମ୍ନା କରିବାକୁ ପଡି ନଥିଲା । ସତେ ଯେମିତି ଏମିତି ଅଘଟଣଟିଏ ଘଟିବ ବୋଲି ଜଗନ୍ନାଥେ ଇଚ୍ଛା କରି ସେମାନଙ୍କୁ ଡକେଇ ନେଇଥିଲେ । ତା' ନହେଲେ ପୁରୀ ଯାଇ ଜଗନ୍ନାଥଙ୍କ ସୁନାବେଶ ଦେଖିବା ପାଇଁ ଅବିନାଶର ବା ତା' ବଡପୁଅର କୌଣସି ପ୍ଲାନ, ପ୍ରୋଗ୍ରାମ ବା ଆଗ୍ରହ ନଥିଲେ ମଧ୍ୟ ଶେଷ ମୁହୂର୍ତ୍ତରେ ସେ ଦୁହେଁ ସମିମ୍‌ବାବୁଙ୍କ ସାଂଗରେ କାହିଁକି ବାହାରି ଯାଇଥାଆନ୍ତେ ? ସେଥିପାଇଁ ସ୍ତ୍ରୀ ଯେତେବେଳେ ନିଜର ଅଳଙ୍କାର ହରେଇଥିବାର ଦୁଃଖରେ ପୁଅ ଉପରେ ଦୋଷାରୋପ କଲେ ଯେ, ସେ କାହିଁକି ସାଂଗରେ ପୁରୀ ଗଲା, ସେ ରହିଥିଲେ ଚୋରି ହୋଇ ନଥାନ୍ତା ବୋଲି, ସେତେବେଳେ ପୁଅ ଠିକ୍ ସେଇ ଉତ୍ତର ଦେଲା ଯେ, "ଜଗନ୍ନାଥେ ମୋ ମଙ୍ଗଳ ପାଇଁ ମୋତେ ନିଶ୍ଚୟ ଡକେଇ ନେଲେ । ତା' ନହୋଇଥିଲେ, ଦଳବଦ୍ଧ ହୋଇ ଆସିଥିବା ଚୋରଦଳ ମୋତେ ଏକୁଟିଆ ଦେଖି ମୋ ଉପରେ ଆଗ ଆକ୍ରମଣ କରିଥାନ୍ତେ । ମୋତେ ପଚାରିଥାନ୍ତେ,'କହ, କେଉଁଠି ଟଙ୍କା ପଇସା ଅଛି ?' ମୁଁ ନାହିଁ କରିଥିଲେ ସେମାନେ କ'ଣ ବିଶ୍ୱାସ କରିଥାଆନ୍ତେ ? ବରଂ ମୋତେ ଆଘାତ କରିଥାଆନ୍ତେ । ମୁଁ ନ ଥିଲି । ଆମ ଉପରୁ ଦୁଷ୍ଟଗ୍ରହ ଚାଲିଗଲା ।

ପୁଅର ଉତ୍ତର ବେଶ୍ ଯୁକ୍ତିଯୁକ୍ତ ଓ ସନ୍ତୋଷଜନକ ଥିଲା । ଜଗନ୍ନାଥଙ୍କ ପ୍ରତି କୃତଜ୍ଞତାରେ ଅବିନାଶର ମୁଣ୍ଡ ନଇଁଗଲା । ସ୍ତ୍ରୀଙ୍କର ଗହଣାତକ ନେଇ ସେ ତା' ପୁଅର ଶରୀର ରକ୍ଷା କରିଦେଲେ ।

ଛ'ମାସ ତଳେ ଅବିନାଶର ବାପାଙ୍କର ପରଲୋକ ହୋଇଯାଇଥିଲା । ତାକୁ ତା'ର ଗୁରୁଜନ, ଆତ୍ମୀୟସ୍ୱଜନ ସମସ୍ତେ ଆଗରୁ ଚେତେଇ ଦେଇଥିଲେ- "ଏ ବର୍ଷଟା ଯାକ ଘାଣ୍ଟି ହେବାକୁ ପଡିବ । ଶାରୀରିକ, ଆର୍ଥିକ, ମାନସିକ ସବୁ ଦୃଷ୍ଟିରୁ ବର୍ଷସାରା ନାନା ଅହେତୁକ ସମସ୍ୟା ଓ ସଂକଟ ତାକୁ ଘେରି ରହିବ । ସବୁ ସହିବାକୁ ହେବ ।" ସେ ତେଣୁ ଏ ଚୋରି ଘଟଣାଟିକୁ ସେଇ ଭଳି ଏକ ଘାଣ୍ଟିହେବା, ଆର୍ଥିକ କ୍ଷତି ଜନିତ ଘଟଣା ଭିତରୁ ଗୋଟିଏ ବୋଲି ମନେକରି ଭୁଲିଯିବାକୁ ଲାଗିଲା । ସଂସାର ଯଥାରୀତି ଚାଲିଲା । ସ୍ତ୍ରୀ ଯେତେବେଳେ ତାଙ୍କ ଲଙ୍ଗଳା ବେକକୁ ତାଙ୍କୁ ଦେଖେଇ ଦିଅନ୍ତି, ସେ ତାଙ୍କୁ ପ୍ରଶଂସା କରି କହେ- "ତୁମର ଅନ୍ତଃ ସୌନ୍ଦର୍ଯ୍ୟ ଏତେ ବେଶୀ, ତା' ତୁଳନାରେ ଗଳାରେ ଲମ୍ବିଥିବା ସାମାନ୍ୟ ସୁନାର ହାରଟା ଅତି ତୁଚ୍ଛ ଦିଶୁଥିଲା । ଏଥର ସେଇ ଅନ୍ତଃ ସୌନ୍ଦର୍ଯ୍ୟର ଅଧିକ ବିକାଶ ଓ ପ୍ରକାଶ ପାଇଁ ଲାଗିପଡ । ଆମ ପାଇଁ ବିପଦର କାରଣତକ ଆମ ପାଖରୁ ଚାଲିଯାଇଛି, ତେଣୁ ଖୁସି ହୁଅ ।"

ଅବିନାଶର ଏଭଳି ଦାର୍ଶନିକତାକୁ ସମ୍ଭବତଃ ଅନୁପମା ସହଜରେ ଗ୍ରହଣ କରିପାରନ୍ତି ନାହିଁ । କୌଣସି ଯୁକ୍ତି ନକରି ନୀରବ ରହନ୍ତି । ପୁଅ ଖାଲି କହେ- "ବାପା, ତୋ ପାଇଁ ଭଲ ନୂଆ ହାରଟିଏ କରି ଦେବେ ଯେ !" ଅନୁପମା ଜାଣନ୍ତି ପୁଅର କଥାକୁ ସତ କଲା ଭଳି ଇଚ୍ଛା ବା ଆଗ୍ରହ ତା' ବାପାର କେବେ ନଥିଲା ବା ନାହିଁ । ସ୍ତ୍ରୀଙ୍କ ବେକ ପାଇଁ ହାରଟିଏ କରିବା ଅପେକ୍ଷା

ସେଇ ଟଙ୍କାରେ ସେ ତାଙ୍କର ଗୋଟିଏ ପାଣ୍ଡୁଲିପି ଛପେଇବାର ବ୍ୟବସ୍ଥା କରିପାରନ୍ତି ଏବଂ କହିଦେଇପାରନ୍ତି ଯେ, ହାରଟିଏ କଲେ ଏହା କେବଳ ତୁମ ଗଳାରେ ଲଟକି ରହିବ ଏବଂ ବେଳ ପଡିଲେ ବିପଦକୁ ବରଣ କରି ଆଣିବ । ମାତ୍ର ବହିଟିଏ ବାହାରିଲେ ତାହା କେତେ ଲୋକଙ୍କ ହାତକୁ ଯିବ । ବିପଦ ବଦଳରେ ବରଂ ସମ୍ପର୍କ ବଢିବ ।"

ହଁ ବାଇଶି ବର୍ଷର ବିବାହିତ ଜୀବନ ଭିତରେ ଅବିନାଶର ମନସ୍ତତ୍ତ୍ୱ ଅନୁପମା ଠିକ୍ ବୁଝିପାରିଥିଲେ ଏବଂ ସେଥିରେ ତାଙ୍କ ସହମତି ଥାଉ ବା ନଥାଉ, କେବେ କୌଣସି ବାଧା ସୃଷ୍ଟି କରିନଥିଲେ । ବସ୍ତୁଗତ ବାସନାର ପରିପୂରଣ ପାଇଁ ସେ ନିଜ ମାଆଙ୍କ ସ୍ନେହ ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳା ଥିଲେ । ତାଙ୍କ ମାଆଙ୍କ ଅନ୍ୟ ଝିଅଜ୍ୱାଇଁମାନେ କଟକ-ଭୁବନେଶ୍ୱରରେ ଏକାଧିକ ଘର ତିଆରି କରିପାରିଥିଲେ ବି ଘର ପାଇଁ ସାମାନ୍ୟ ଜମି ଖଣ୍ଡିଏ ମଧ୍ୟ ଅବିନାଶ ଅର୍ଜନ କରି ପାରିନଥିଲେ । ସେଥିପାଇଁ କ୍ଷୋଭର ସହିତ ଅନେକକାଳ ଅପେକ୍ଷା କରିବା ପରେ ଶେଷରେ ନିଜର ମାଲିକାନାରେ ଥିବା ଖାଲି ଜାଗାରୁ କିଛି ଅଂଶ ସେ ତାଙ୍କର ଏଇ ଅଲିଅଳି ଝିଅ ଅର୍ଥାତ୍ ଅବିନାଶର ସ୍ତ୍ରୀଙ୍କ ନାଁରେ ଲେଖି ଦେଇଥିଲେ । ଏଥର ସ୍ତ୍ରୀ ଅପେକ୍ଷା କରୁଥିଲେ ଦାନ ସୂତ୍ରରେ ମିଳିଥିବା ଜମି ଉପରେ କେବେ ସେ ତାଙ୍କ ମନ ପସନ୍ଦର ଘରଟିଏ ତିଆରି କରିବେ । ଅବିନାଶ କିନ୍ତୁ କାଗଜ କଲମରେ ଘର ତିଆରି କରିବାରେ ବ୍ୟସ୍ତ ଥିଲା । ଏବଂ ତାକୁ ପ୍ରତିଷ୍ଠା ଦେବାର ସ୍ୱପ୍ନ ଦେଖୁଥିଲା । ଏତିକିବେଳେ ଅନୁପମାର ସ୍ୱପ୍ନକୁ ଭାଙ୍ଗିଦେଇ ଚୋରମାନେ ଆସି ତାଙ୍କ ଅଳଙ୍କାରତକ ଲୁଟିନେଲେ ।

ଏ ଘଟଣା ବା ଦୁର୍ଘଟଣା ଯାହା କୁହ ପୁରୁଣା ହୋଇଯାଇଥିଲା । ଏତିକିବେଳେ ଅବିନାଶ ଚିଠିଟିଏ ପାଇଲା । ଡାକ ଯୋଗେ ଚିଠିଟିଏ । ଅବିନାଶ ପାଇଁ ତା'ର ଅର୍ଦ୍ଧଶତାବ୍ଦୀର ଜୀବନ କାଳ ଭିତେର ସବୁଠାରୁ ଚମକପ୍ରଦ ଚିଠି । ଏହାକୁ ସାମାନ୍ୟ ଚିଠି ବୋଲି କହିହେବ କି ?

ତଥାପି ଚିଠିଟିଏ । 'ଚୋରର ଚିଠି'- ଏହା ହିଁ ଥିଲା ଚିଠିର ଶିରୋନାମା । ଅବିଶ୍ୱାସ୍ୟ ହେଲେ ହେଁ ସତ । ଅଶେଷ ଆଗ୍ରହ ଓ ବିସ୍ମୟରେ ଚିଠିଟି ପଢି ବସିଲା ଅବିନାଶ । ଲେଖାହେଲା– "ସାର୍, ଆପଣ ମୋତେ ଚିହ୍ନନ୍ତି ନାହିଁ କି ଜାଣନ୍ତି ନାହିଁ । ମୁଁ ମଧ୍ୟ ଆପଣଙ୍କୁ ମୋର ନାମ ବା ଠିକଣା ଜଣାଇ ମୋର ପରିଚୟ ଦେବାକୁ ଯାଉନାହିଁ । ଗୋଟିଏ ଅପରାଧୀର ଭିନ୍ନ ପରିଚୟ ବା କ'ଣ ଆଉ ଥାଇପାରେ ?

ହଁ, ମୁଁ ଜଣେ ଅପରାଧୀ । ମୋର ଅପରାଧ ଆପଣଙ୍କ ଘରେ କିଛି ଦିନ ତଳେ ହୋଇଥିବା ଚୋରି ବ୍ୟପାରରେ ମୁଁ ଥିଲି ଜଣେ ଅଂଶୀଦାର । ବିଶ୍ୱାସ କରନ୍ତୁ ବା ନକରନ୍ତୁ, ମୋ ଜୀବନରେ ଏହା ହେଉଛି ପ୍ରଥମ ଘଟଣା । ପ୍ରଥମ ଅଭିଜ୍ଞତା । ଇଚ୍ଛା କରି ହେଉ ବା ଅଭାବରେ ପଡି ହେଉ, ବା ସଂଗ ଦୋଷରୁ ହେଉ ମୁଁ ସତକୁ ସତ ଚୋରି ଭଳି ଏକ ନିନ୍ଦନୀୟ କାର୍ଯ୍ୟରେ ସଂଶ୍ଳିଷ୍ଟ ହୋଇ ପଡିଲି ।

ଆପଣଙ୍କ ଘର ଭିତରେ ମୋର ବନ୍ଧୁମାନଙ୍କ ମେଳରେ ସେଦିନ ଅଧରାତିରେ ପ୍ରବେଶ କଲାବେଳେ ମୁଁ ଜାଣିନଥିଲି ଆପଣଙ୍କର ପରିଚୟ । ମାତ୍ର ଥରେ ପଶି ଆସିଲା ପରେ ଆପଣଙ୍କ ଥାକ ଥାକ ବହି ଭର୍ତ୍ତି ଡ୍ରଇଁରୁମ୍‌ରୁ, ପଢା ଟେବୁଲ ଉପରୁ ଆପଣଙ୍କର ପରିଚୟ ପାଇ ସାରିଲା ପରେ କୌଣସି ଜିନିଷରେ ହାତ ମାରିବା ପୂର୍ବରୁ କେମିତି ଏକ ଦୋଷୀ ଦୋଷୀ ଭାବ ମନକୁ ଆଚ୍ଛନ୍ନ କରିବସିଲା । ଆରମ୍ଭରୁ ହିଁ ମୁଁ ଅବଶ ଓ ଅବସାଦଗ୍ରସ୍ତ ହେଇ ପଡିଲି । ପ୍ରସ୍ତାବ ଦେଲି ବନ୍ଧୁମାନଙ୍କୁ ଫେରିଯିବା ପାଇଁ, କହିଲି ଜଣେ ଅଧ୍ୟାପକଙ୍କ ଘରୁ ବିଶେଷ କିଛି ମିଳିବାର ନାହିଁ ।

ସେମାନେ ମୋତେ ଥଟ୍ଟା କଲେ । କହିଲେ, ତୋର ଯଦି ସେ ମାଷ୍ଟ ପ୍ରତି ଏତେ ପ୍ରେମ ତୁ ତା'ହେଲେ ବସି ବସି ତା' ବହି ପଢ । ଆମେ ଖୋଜୁଛୁ । ସାରାରାତି ପଡିଛି । ଖବର ପାଇଛୁ ସପରିବାର ଯେତେବେଳେ ପୁରୀ ଯାଇଛି ସେ ଆଜି ଆଉ ଆସୁନାହିଁ । କାଲି ତ ରବିବାର ଛୁଟି ।

ଆପଣଙ୍କ ପୁରୀ ଯିବା ଖବର ସେମାନେ ଆପଣଙ୍କ ଘର ପାଖର ଚାକର ଟୋକାଠୁ ସଂଗ୍ରହ କରିଥିଲେ । ଆମେ ଥିଲୁ ପାଞ୍ଚଜଣ । ମୋର ଆଉ ଚାରିଜଣ ସାଙ୍ଗଙ୍କ ଭିତରେ ଇଂଜିନିୟରିଂ ପାଶ୍ କରିଥିବା ଜଣେ ପିଲା ବି ଥିଲା । ଆମେ ସମସ୍ତେ ବେକାର । ସବୁଦିନେ ସଞ୍ଜବେଳେ ଆପଣଙ୍କ ଘରପାଖ ଛକପାଖରେ ଏକାଠି ହେଉ । ନିଜର ଚା, ଜଳଖିଆ, ସିନେମା ଦେଖା ଖର୍ଚ୍ଚ ତୁଲେଇବା ପାଇଁ ଅନ୍ୟ ଚାରିବନ୍ଧୁ ନିୟମିତ ନ ହେଲେ ମଧ୍ୟ ମଝିରେ ମଝିରେ ଏଇ କେତେମାସ ହେଲା ଛୋଟ ବଡ ଚୋରିର ଆଶ୍ରୟ ନେଇଥିଲେ । ସେମାନଙ୍କ ମେଳରେ ଥାଇ କାହାରି ଘରେ ପଶିବା ମୋ ପାଇଁ ଏଇ ଥିଲା ପ୍ରଥମ । ଅବଶ୍ୟ ପୂର୍ବରୁ ଯଦି ଜାଣିପାରିଥାଆନ୍ତି, ଆମ ଅଭିଯାନର ଲକ୍ଷ୍ୟସ୍ଥଳ ଥିଲା ଆପଣଙ୍କ ଘର– ତେବେ ମୁଁ ହୁଏତ ସେଥିରୁ ଓହରି ଯାଇଥାଆନ୍ତି ।

ଆପଣଙ୍କୁ ଗୋଟିଏ, ଦୁଇଟି ସଭା-ସମିତିରେ ମୁଁ ଦେଖିଛି । ଆପଣଙ୍କ ଲେଖା ପଢିଛି । ଲେଖା ପଢି ବେଳେ ବେଳେ ଉଦ୍‌ବେଳିତ ହୋଇଛି । ଭାବିଛି କିଛି ବନ୍ଧୁଙ୍କୁ ଏକାଠି କରି ଲଢିବି । ଯେଉଁମାନେ ଆମକୁ ସେବା କରିବା ପାଇଁ ବା ଶାସନ କରିବା ପାଇଁ ବଡ ବଡ କଥା କହି ଆମକୁ ପ୍ରତି ମୁହୂର୍ତ୍ତରେ ଶୋଷିବାରେ ଲାଗିଛନ୍ତି, ଲୁଟିବାରେ ଲାଗିଛନ୍ତି– ଗୋଟିଏ ସହରରେ ନୁହେଁ, କିମ୍ବା ଗୋଟିଏ କୋଠାରେ ନୁହେଁ– ସାରା ଦେଶର ବିଭିନ୍ନ ସହରରେ– କୋଠାପରେ କୋଠା ଛଠେଇବାରେ ଲାଗିଛନ୍ତି– ଦେଶ ବିଦେଶର ବ୍ୟାଙ୍କ ଭରି ସାରିବା ପରେ, ଘର ଭିତରେ ଚାଉଳବସ୍ତା ଭଳି ଟଙ୍କା ରଖିଛନ୍ତି– ସେମାନଙ୍କ ତଣ୍ଟିକଣା କରିଦେବୁ । ବୋମା ପକେଇ ସେମାନଙ୍କ ଉଆସ ସବୁ ଭାଙ୍ଗି ପକେଇବୁ । ସେମାନେ ଆମକୁ ଦେଖିଲା ମାତ୍ରେ, ଆମ ନାଁ ଶୁଣିଲା ମାତ୍ରେ ଯେପରି କିଏ କୁଆଡେ ଯାଇ ଭୟରେ ଆତ୍ମଗୋପନ କରିବେ । ମାତ୍ର ଏ ସବୁ ମୁହୂର୍ତ୍ତର ଉଦ୍‌ବେଳନ । ପର ମୁହୂର୍ତ୍ତରେ କିଛି କରି ନ ପାରିବାର ଅସହାୟତା ହିଁ ଆବୋରି ପକାଏ । ଘରର ଅଭାବ, ଅନଟନ ହିଁ ମୋତେ ଦୁର୍ବଳ କରିଦିଏ । ଆମ ସମାଜର ବଡ ଚୋର ଓ ଡକାୟତଙ୍କୁ ସାବାଡ୍ କରିବାକୁ ଯାଇ ମୁଁ ଶେଷରେ ଚୋର ପାଲଟିଯାଏ ।

ବେଳେ ବେଳେ ମୁଁ ଭାବେ, ମୁଁ କିମ୍ବା ମୋର ବନ୍ଧୁମାନେ ସିନା ଅଭାବରେ ଥିଲୁ ବୋଲି ସ୍ୱଭାବ ଆମର ନଷ୍ଟ ହୋଇଗଲା । ହେଲେ ଯେଉଁମାନେ ଅର୍ଥ କ୍ଷମତାର ପ୍ରାଚୁର୍ଯ୍ୟ ଭିତରେ ଉବୁଟୁବୁ ହେଉଛନ୍ତି– ସେମାନେ ପୁଣି ଆଉ କେଉଁ ଅଭାବବୋଧରେ ନିଜର ସ୍ୱଭାବ ନଷ୍ଟ କରି ଚାଲିଛନ୍ତି । ଆବଶ୍ୟକତାଠାରୁ ଢେର୍ ଅଧିକ ପାଇ ମଧ୍ୟ ପୁଣି ସର୍ବଗ୍ରାସୀ କ୍ଷୁଧାରେ ଡହଳ ବିକଳ ହେଉଛନ୍ତି ଏବଂ ଆମଭଳି ଭୋକିଲା ମଣିଷର ଦୁରବସ୍ଥାକୁ ଆହୁରି ଦୟନୀୟ କରି ପକାଉଛନ୍ତି । ସେମାନଙ୍କ ସ୍ୱଭାବ ଭିତରେ ଅଭାବଟା ବୋଧେ ବସା ବାନ୍ଧି ରହିଯାଇଛି । ଅଥଚ ଏହିଭଳି ନଷ୍ଟ ଚରିତ୍ରମାନେ ହିଁ ଆମମାନଙ୍କ ଅର୍ଥରେ ସୁଦୃଢ ନିରାପତ୍ତାର ବଳୟ ଭିତରେ ସୁରକ୍ଷିତ ରହନ୍ତି । ଆଇନର ଦୀର୍ଘ ହାତ ସେମାନଙ୍କ କେଶକୁ ସ୍ପର୍ଶ କରିପାରେ ନାହିଁ । ଆମେ କିନ୍ତୁ ଆମର ଅଭାବ ପୂରଣ କରିବାକୁ ଯାଇ ଅପରାଧୀ ତାଲିକାଭୁକ୍ତ ହୋଇଯାଉ । ଲୁଚି ଲୁଚି ଅନ୍ଧାରରେ ବୁଲୁ ।

ମୁଁ ସେଦିନ ଅନ୍ଧ ଭଳି ମୋର ସଞ୍ଜବେଳର ଚାରି ସାଙ୍ଗଙ୍କୁ ଅନୁସରଣ କରି ରାତିର ଅନ୍ଧାରରେ ଆପଣଙ୍କ ଘର ଭିତରେ ସିନା ପଶିଗଲି, ହେଲେ ଆଲୁଅରେ ବସି ଆପଣଙ୍କ ବହି ପଢିଲି । ଆପଣଙ୍କ ଟେବୁଲ୍ ଉପରେ ଥାକ ମରା ହୋଇଥିବା କେତେ ପାଠକ, ପାଠିକା, ପୂର୍ବତନ

ଛାତ୍ର ଛାତ୍ରୀଙ୍କର ଅନୁରାଗ, ଆତ୍ମୀୟତା ଭରା ଚିଠି ପଢ଼ି ଅଭିଭୂତ ହୋଇ ପଡ଼ିଲି । ଏବେ ସିନା ଆପଣ ଖାଲି ଖବର କାଗଜରେ ଲୋକଙ୍କୁ ମତେଇଲା ଭଳି, ତତେଇଲା ଭଳି ଲେଖା ବେଶୀ ଲେଖୁଛନ୍ତି– ଦିନଥିଲା, ଆପଣ କିନ୍ତୁ ପତ୍ରିକା ପୃଷ୍ଠାରେ ବେଶ୍ ରୋମାଣ୍ଟିକ୍ ଗଳ୍ପ ସବୁ ଲେଖିଥିଲେ । ଆମ ଛାତ୍ର ସମୟରେ ଆପଣଙ୍କୁ ଆମେ ଜଣେ ପ୍ରେମିକ, ଗାଳ୍ପିକ ଭାବରେ ଗ୍ରହଣ କରିନେଇଥିଲୁ । ମନେ ପଡ଼ୁଛି ବାଣୀବିହାରରେ ପଢ଼ିଲାବେଳେ ନିରୋଳାରେ ଦିନେ ମୋ ପ୍ରେମିକାକୁ ପାଖରେ ବସେଇ ଆପଣଙ୍କର ଏକ ଚମତ୍କାର ପ୍ରେମଗଳ୍ପ ଶୁଣେଇଥିଲି । ସେଇ ଗଳ୍ପ ମାଧ୍ୟମରେ ହିଁ ମୁଁ ତା' ଆଗରେ ମୋ ଅବ୍ୟକ୍ତ ଭାବନାକୁ ବ୍ୟକ୍ତି କରିବାର ସୁଯୋଗ ପାଇଥିଲି । ଏବଂ ସେ ଗଳ୍ପଟି ଶୁଣି ସାରିବା ପାରେ ସେ ଏତେଦୂର ଉଦ୍‌ବେଳିତ ହୋଇ ଯାଇଥିଲା ଯେ, ମୋତେ ବିସ୍ମୟ ବିଭୋର କରିଦେଇ ତତ୍‌କ୍ଷଣାତ୍ ଓଠରେ ମୋର ନିବିଡ ସ୍ନେହର ଚିତ୍ରଟିଏ ଆଙ୍କି ଦେଇଥିଲା । ସେଇ ଚିତ୍ରାଙ୍କନର ମଧୁର ସ୍ମୃତି ଏବେ ବି ମୋ ଭିତରେ ସଜୀବ ହୋଇ ରହିଛି ଏବଂ ବ୍ୟର୍ଥ ବେକାର ଜୀବନକୁ ସଂଜୀବିତ କରି ରଖିଛି । ଅବଶ୍ୟ ସେଦିନର ସୁନ୍ଦରୀ ପ୍ରେମିକା ଆଉ ନାହିଁ । ବାଣୀବିହାରରରୁ ବିଦା ହେବା ପୂର୍ବରୁ ସେଇ ଏମ୍.ଏ. ଶେଷ ବର୍ଷ ହିଁ ତା'ର ଜଣେ ଆଲାଏଡ୍ ଅଫିସରଙ୍କ ସାଙ୍ଗରେ ବାହାଘର ସ୍ଥିର ହୋଇଗଲା ଏବଂ ପରୀକ୍ଷା ନ ଦେଇ ସେ ଚାଲିଗଲା । ଅବଶ୍ୟ ବାହାଘରକୁ ନିମନ୍ତ୍ରଣ ପତ୍ରଟିଏ ଦେବାକୁ ଭୁଲି ନଥିଲା ।

ଏମ୍.ଏ ପାଶ୍ କରିବା ପରେ ମୋର ବହୁତ ଇଚ୍ଛା ଥିଲା, ଅଧ୍ୟାପକଟିଏ ହେବା ପାଇଁ । ମୋର ଶିକ୍ଷକ ବାପାଙ୍କର ମଧ୍ୟ ସେଇ ଇଚ୍ଛା ଥିଲା । ମାତ୍ର କାହିଁ କେଉଁଠି ମିଳୁଛି ଅଧ୍ୟାପକର ନିଯୁକ୍ତି ? ସରକାରୀ କଲେଜମାନଙ୍କରେ ତ କେତେବର୍ଷ ହେଲା ନିଯୁକ୍ତି ନଥିଲା । ୟୁ.ଜି.ସି. ପରୀକ୍ଷାରେ ମନୋନୀତ ହୋଇ, ଏମ୍.ଫିଲ୍. ଡିଗ୍ରୀଧରି ମଧ୍ୟ ଅନେକ ବେକାର ହେଇ ବସି ରହିଥିଲେ । ଆଉ ସହର ବଜାର, ଗାଁ ଗହଳିମାନଙ୍କରେ ଯେତେ ସବୁ କଲେଜ ବର୍ଷାଦିନର ଛତୁ ଭଳି ଫୁଟି ଉଠୁଥିଲା, ସେ ସବୁକୁ ଆବେଦନ କରିବାର କୌଣସି ଅର୍ଥ ନଥିଲା । ଅବଶ୍ୟ ଆବେଦନ କରି ଇଣ୍ଟରଭ୍ୟୁ ଯେ ଦେଉନଥିଲି ତାହା ନୁହେଁ, ନିଜ ତରଫରୁ କଲେଜ ପାଣ୍ଠିକୁ ଅନୁଦାନ ଦେବାର ଆର୍ଥିକ କ୍ଷମତା ହିଁ ନିର୍ଣ୍ଣାୟକ ହେଉଥିଲା । ଅର୍ଥର ଆବଶ୍ୟକତା ପାଇଁ ଚାକିରିର ସନ୍ଧାନ କରୁଥିବା ଯୁବକଟିକୁ ପୁଣି ବିପୁଳ ଅର୍ଥ ଦେଇ ଚାକିରି ପାଇବାକୁ ହେବ– ଚମତ୍କାର ବ୍ୟବସ୍ଥା ସତରେ । ପଚାଶବର୍ଷର ସ୍ୱାଧୀନ ଭାରତବର୍ଷରେ ଏହା ଆମ ଭାଗ୍ୟର ବିଡମ୍ବନା ନୁହେଁ ତ ଆଉ କ'ଣ ? ବିପୁଳ ପରିମାଣର ଟଙ୍କା ଦେଇ, ମାସକୁ ତିନିଶହ ଟଙ୍କା ବେତନରେ ଅଧ୍ୟାପକ ହେଉଥିବା ଯୁବକଟି ପ୍ରଶ୍ନପତ୍ର ବିକ୍ରୀ କରି ପିଲାଙ୍କୁ ପରୀକ୍ଷାରେ କପି ଯୋଗାଇ, କୌଣସି ଉପାୟରେ ବୋର୍ଡ ସହିତ ଯୋଗସୂତ୍ର ରଖି ସେମାନଙ୍କ ମାର୍କ ବଢାଇ ନିଜ ଚାନ୍ଦାଟଙ୍କା ଏବଂ ନୂଆ ବେତନର କ୍ଷତି ପୂରଣ କରିବ ନାହିଁ ତ ଆଉ କ'ଣ କରିବ ? କୌଣସି ମତେ ଟଙ୍କା ଯୋଗାଡ କରି ଡୋନେସନ୍ ଦେଇ ଅଧ୍ୟାପକଟିଏ ହୋଇଥିଲେ ମୁଁ ମଧ୍ୟ ସେଇଭଳି ହୋଇଥାଆନ୍ତି । ଶିକ୍ଷକର ସମ୍ମାନଜନକ ଖୋଳପା ଭିତରେ ଯାବତୀୟ ଅକାର୍ଯ୍ୟ କରୁଥାଆନ୍ତି । ଆଜି କୌଣସି ଛଦ୍ମବେଶ ନରଖି ଛଳନା ନକରି ରାତିର ଚୋର ସାଙ୍ଗମାନଙ୍କ ସହିତ ସାମିଲ୍ ହୋଇଯାଇଛି । ଆପଣ କୁହନ୍ତୁ ସାର୍, କେଉଁଟି ଅଧିକ ସ୍ପୃହଣୀୟ ?

ନା କୌଣସି ଚାକିରି ମୁଁ ପାଇପାରିଲି ନାହିଁ । ସେଥିପାଇଁ ନା ଥିଲା ଆର୍ଥିକ ସମ୍ବଳ ନା ଉପରିସ୍ଥ କୌଣସି ବଡଲୋକଙ୍କ ଶୁଭଦୃଷ୍ଟି । ପ୍ରାଇମେରୀ ସ୍କୁଲରେ ପ୍ରଧାନ ଶିକ୍ଷକ ଭାବରେ ବାପା ଦୁଇବର୍ଷ ହେଲା ଚାକିରିରୁ ଅବସର ନେଇ ସାରିଥିଲେ । ହେଲେ ପେନ୍‌ସନ୍ ଟଙ୍କା ଆଜିଯାଏଁ

ମିଳି ନଥିଲା । ହାତରେ ଛତା ଖଣ୍ଡିଏ ଧରି ଖରାବର୍ଷାକୁ ଖାତିର ନକରି ଛିଣ୍ଡା ଚପଲକୁ ଘୋଷାରି ଘୋଷାରି ବାପା କେତେଥର ଯେ ଡି.ଆଇ. ଅଫିସ୍‌ରୁ ଡି.ପି. ଆଇ ଅଫିସକୁ ନ ଦଉଡିଛନ୍ତି । ହେଲେ ଫାଇଲ ଏ ଟେବୁଲ୍‌ରୁ ଯେ ଟେବୁଲକୁ ଯିବା ପାଇଁ ମାସ ମାସ ବିତିଯାଇଛି । ଶେଷରେ ଯେତେବେଳେ ଆବଶ୍ୟକ କାଗଜପତ୍ର ଯାଇ ଏ.ଜି. ଅଫିସ୍‌ରେ ପହଞ୍ଚିଲା ବୋଲି ବାପା ସରକାରୀ ଚିଠି ପାଇଲେ, ଖୁବ୍ ଖୁସି ହୋଇଗଲେ । ଆମେ ଭାବିଲୁ ଏଥର ଆଉ ଡେରି ହେବନାହିଁ । ମାତ୍ର କିଛି ଦିନର ଅପେକ୍ଷା ପରେ ଏ.ଜି. ଅଫିସ୍‌ରୁ କୌଣସି ଖବର ନ ମିଳିବାରୁ ମୁଁ ଯେତେବେଳେ ଯାଇ ଅନୁସନ୍ଧାନ କଲି ବାପାଙ୍କ ପେନ୍‌ସନ୍ ଚିଠି ସମ୍ପର୍କରେ ସେତେବେଳେ ସମ୍ପୃକ୍ତ କାର୍ଯ୍ୟକର୍ତ୍ତା ଜଣକ ନିହାତି ସରଳ, ସଂକ୍ଷିପ୍ତ ଏବଂ ନିର୍ଲିପ୍ତ ଉତ୍ତରଟିଏ ଫେରାଇଦେଲେ ଯେ– "ନା ସେ ଭଳି ଚିଠି କିଛି ଆମେ ପାଇନାହୁଁ ।" ଏହିଭଳି ଏକାଧିକବାର ଦୌଡି ଏବଂ ସେଇ ଏକା ନାସ୍ତିବାଣୀର ଉତ୍ତର ଶୁଣିଲା ମାତ୍ରେ ମୋ ଆଖିରେ ନିଆଁ ଚରି ଯାଉଥିଲା– ହେଲେ ବାପାଙ୍କ ଆଖିରେ ଲୁହ ଭର୍ତ୍ତି ହେଇ ଯାଉଥିଲା ।

ହଠାତ୍ ଦିନେ ବାପାଙ୍କୁ ଜ୍ୱର ହେଲା । ଆଉ ସେଇ ସାମାନ୍ୟ ଜ୍ୱର ତିନି ଚାରିଦିନ ଭୋଗିବା ପରେ ସେ ଆଖି ବୁଜିଦେଲେ । ତାଙ୍କର ପ୍ରାପ୍ୟ ପେନ୍‌ସନ୍‌ଟିକକ ହାତ ମୁଠାରେ ଧରି ଖୁସିରେ କାନ୍ଦି ପକେଇବାକୁ ସେ ଆଉ ରହିଲେ ନାହିଁ । ମା' ଓ ଭଉଣୀ ବସି କାନ୍ଦିଲେ ଆଉ ମୁଁ ହାତରେ ନିଆଁ ଧରିଲି ବାପାଙ୍କର ଯୁଦ୍ଧ-କ୍ଳାନ୍ତ ଅବଶ ଦେହଟାକୁ ଶେଷରେ ଜାଳିଦେବା ପାଇଁ । ମୋ ହାତର ନିଆଁଖୁଣ୍ଟା ମୋର ପ୍ରିୟ ବାପାଙ୍କର ମରଣଶୀଳ ଦେହଟାକୁ ସିନା ଜାଳିପୋଡି ପାଉଁଶ କରିଦେଲା, ହେଲେ ଆମ ଅମଲାମାନଙ୍କୁ ଜାଳିବା ତ ଦୂରର କଥା ସେମାନଙ୍କ ବିଧି ବ୍ୟବସ୍ଥାକୁ ସ୍ପର୍ଶ ମଧ୍ୟ କରିପାରିଲା ନାହିଁ ।

ବାପା ଚାଲିଗଲେ । ଆମକୁ ବଞ୍ଚିବାକୁ ହେବ । ସେ ଯିବା ପୂର୍ବରୁ ଭଉଣୀର ବାହାଘର ଠିକ୍ କରିଯାଇଥିଲେ । ଆମର ସୌଭାଗ୍ୟକୁ ବାପାଙ୍କ ଆଦର୍ଶରେ ଅନୁରାଗୀ, ତାଙ୍କର ଜଣେ ପୂର୍ବତନ ଛାତ୍ର ଏବଂ ହାଇସ୍କୁଲର ଜଣେ ଶିକ୍ଷକ ଭଉଣୀକୁ ବିନା ଯୌତୁକରେ ବାହା ହେବେ ବୋଲି ନିଜ ଆଡୁ ପ୍ରସ୍ତାବ ଦେଇଥିଲେ । ଏଥର ସେଇ ଭଉଣୀକୁ ତା' ନୂଆ ଘରକୁ ବିଦା କରିବାର ପାଳି ମୋର ।

ବିନା ଭୋଜି ଭାତରେ, ମନ୍ଦିର ଭିତରେ କେବଳ ଫୁଲମାଳ ବିନିମୟରେ ସାନ ଭଉଣୀ ମୋର ତା'ର ସଂସାର ଆରମ୍ଭ କରିବ । ମୁଁ ତା' ହାତକୁ ଦି'ପଟ ସୁନା କାଚ, ମୁଦିଟିଏ ବା ବେକକୁ ହାରଟିଏ କ'ଣ ଦେଇପାରିବି ନାହିଁ ? ମୁଣ୍ଡକୁ କିଛି ବୁଦ୍ଧି ଦିଶୁ ନଥିଲା । ସାଙ୍ଗମାନେ ବୁଦ୍ଧି ଦେଲେ । କହିପାରନ୍ତି– ଏହା ବୁଦ୍ଧି ନୁହେଁ– ଦୁର୍ବୁଦ୍ଧି । ତଥାପି ଅତି ସହଜରେ ମୁଁ ତାକୁ ଗ୍ରହଣ କରିନେଲି ଏବଂ ସେମାନଙ୍କ ସହ ନିଷିଦ୍ଧ ରାତ୍ରି ଅଭିଯାନରେ ସାମିଲ୍ ହୋଇଗଲି । ଭୁଲ୍ କଲି କି ଠିକ୍ କଲି– ସେ କଥା ଭାବିବାର ଶକ୍ତି ମୋର ନଥିଲା । ରାତି ବାରଟାରୁ ତିନିଟା ଯାଏଁ ଆପଣଙ୍କ ଘର ଡ୍ରଇଁରୁମ୍‌ରେ ବସି ମୁଁ କେବଳ ଆପଣଙ୍କ ବହିପତ୍ରକୁ ଦେଖୁଥିଲି । ଆପଣଙ୍କ ଟେପ୍ ରେକର୍ଡରରୁ ପୁରୁଣା ହିନ୍ଦୀ ଓ ବଙ୍ଗଳା ଗୀତ ସବୁ ଶୁଣୁଥିଲି । ମୋ ସାଙ୍ଗମାନେ ସେମାନଙ୍କ ଈପ୍‌ସିତ ବସ୍ତୁର ସନ୍ଧାନ ପାଇଯାଇଥିଲେ । ମୁଁ ଆସିଲାବେଳେ କେବଳ ଆପଣଙ୍କ ଉପନ୍ୟାସ 'ନୂଆଘର' ଓ କିଛି ବଙ୍ଗଳା ଗୀତର କ୍ୟାସେଟ୍ ନେଇ ଆସିଲି । ସେତିକି ମୋ ହାତରେ ଚୋରି ।

ମୋର ସାଙ୍ଗମାନେ ମୋ ପ୍ରତି ଅନ୍ତତଃ ଦୟାଶୀଳ ଥିଲେ । ସେମାନେ ମୋ ଭଉଣୀର ବାହାଘର କଥା ଜାଣିଥିଲେ । ସେମାନେ ଆପଣଙ୍କ ଘରୁ କ'ଣ ଆଣିଲେ ବା ନ ଆଣିଲେ, ତା'ର

ହିସାବ ମୁଁ ରଖି ନଥିଲି । ସେ ହିସାବ ରଖିବାର କୌଣସି ଆଗ୍ରହ ମଧ୍ୟ ମୋର ନଥିଲା । ମାତ୍ର ସେମାନେ ତା' ପରଦିନ ସନ୍ଧ୍ୟାରେ ଆମ ଘରକୁ ଆସି ମୋ ବୋଉ ହାତରେ ଛୋଟ ପ୍ୟାକେଟ୍‌ଟିଏ ଧରେଇ ଦେଲେ, କହିଲେ "ମାଉସୀ, ଆମ ସାଙ୍ଗମାନଙ୍କ ଉପାର୍ଜନରୁ କିଛି ଉପହାର ଆମ ଭଉଣୀ କୁନି ପାଇଁ ।" ମୁଁ ଆଶ୍ଚର୍ଯ୍ୟରେ ସେମାନଙ୍କୁ ଚାହିଁ ରହିଥିଲି । ସେମାନେ ମୋତେ ଚୁପ୍ ରହିବାକୁ ଇସାରା ଦେଲେ । ବୋଉ ପ୍ୟାକେଟ୍ ଖୋଲି ଦେଖିଲା– ତା' ଭିତରେ ଗୋଟିଏ ସୁନାହାର, ମୁଦିଟିଏ ଓ ଦି'ପଟ ସୁନାକାଚ ଥିଲା ।

ଆଉ ଗୋଟିଏ ସପ୍ତାହ ପରେ ଭଉଣୀର 'ନୂଆଘର' ପ୍ରତିଷ୍ଠା ପାଇବ । ଆପଣଙ୍କ ଘରୁ ଚୋରି ହୋଇ ଆସିଥିବା ସୁନା ଗହଣାରୁ କିଛି ସାଙ୍ଗରେ ନେଇ ସେ ତା' ସଂସାର ଗଢିବାକୁ ଯିବ । ଶାନ୍ତି ପାଇବ ତ ? ସୁଖମୟ ହେବ ତ ତା'ର ସଂସାର ? ମନରେ ମୋର ନାହିଁ ନଥିବା ଭୟ ଓ ଆଶଙ୍କା ।

କିନ୍ତୁ ବୋଉ ଆଗରେ ସତକଥା କହି ସାଙ୍ଗମାନଙ୍କୁ ସେ ଗହଣା ଫେରେଇ ଦେବାର ସାହସ ମୋର ନାହିଁ । ସାଙ୍ଗମାନଙ୍କ ପ୍ରତି ଏହା ବିଶ୍ୱାସଘାତକତା ହେବ ଏବଂ ବୋଉ ମଧ୍ୟ ଅସଲ ଘଟଣା ଜାଣିଲେ କମ୍ ଆଘାତ ପାଇବ ନାହିଁ ।

ତେଣୁ ବଡ ଦ୍ୱନ୍ଦ୍ୱ ଭିତରେ ମୁଁ ଏଇ କେତେଦିନ ହେଲା ଘାଣ୍ଟି ହେଉଛି । ତଥାପି କେମିତି ଏକ ଆଶା ଓ ବିଶ୍ୱାସ ନେଇ ଆପଣଙ୍କୁ ଏ ଚିଠି ଲେଖୁଛି । 'ନୂଆଘର' ଉପନ୍ୟାସରୁ ଆପଣଙ୍କ ପ୍ରେମମୟ ବ୍ୟକ୍ତିତ୍ୱର ପରିଚୟ ପାଇଲା ପରେ ଏ ବିଶ୍ୱାସ ମୋର ବଢିଯାଇଛି ଏବଂ ସେହି ଭରସାରେ ଲେଖୁଛି । ଶୁଣିଛି– ଆପଣଙ୍କର ଦୁଇପୁଅ କେବଳ । ଝିଅ କେହି ନାହାନ୍ତି । ଗୋଟିଏ ଅନୁରୋଧ କରୁଛି ଭଉଣୀକୁ ମୋର ମନେ ମନେ ଆପଣଙ୍କ ଝିଅ ଭାବରେ କ'ଣ ଗ୍ରହଣ କରିପାରିବେ ନାହିଁ ? ଧରିନେବେ ଆପଣ ଓ ଆପଣଙ୍କ ସ୍ତ୍ରୀ ଦୁହେଁ ମିଶି ସେତକ ଉପହାର ଦେଇଛନ୍ତି । ଭାବିନେବେ ଯେ, ଜଗନ୍ନାଥଙ୍କର ସମ୍ଭବତଃ ତାହା ହିଁ ଇଚ୍ଛା ଥିଲା । ଆପଣଙ୍କ ଭଳି ଭକ୍ତ ଜରିଆରେ ସେ ଏକ ଦୁଃଖୀନୀ ଝିଅକୁ କିଛି ସାହାଯ୍ୟ କରିବାକୁ ଚାହୁଁଥିଲେ । ତା'ହେଲେ ଆପଣଙ୍କ ମନରେ ଆଉ କୌଣସି ଦୁଃଖ କି ଅବଶୋଷ ରହିବ ନାହିଁ । ମୋ ମନରୁ ସବୁ ଭୟ ଓ ଆଶଙ୍କା ମଧ୍ୟ ଚାଲିଯିବ । ଭଉଣୀ ମୋର ସୁଖରେ ରହିବ ।

ସାର୍, ଆପଣଙ୍କ ମହାନୁଭବତାରୁ ମୁଁ କ'ଣ ଏତିକି ଟିକିଏ ଆଶା କରିବି ନାହିଁ ? ମୋର ଅପରାଧ ପାଇଁ କ୍ଷମା ନଦିଅନ୍ତୁ ପଛକେ, ମୋ ଭଉଣୀକୁ ଆପଣଙ୍କ ପିତୃ-ସ୍ନେହରୁ ବଞ୍ଚିତ କରିବେ ନାହିଁ ।

ଇତି ଆପଣଙ୍କର କୃପାଭିକ୍ଷୁ ଜଣେ ଚୋର ।

ଚିଠିଟି ପଢି ସାରିବା ପରେ ଅବିନାଶ ଘଡିଏ କାଳ ସ୍ତବ୍ଧ ହୋଇ ରହିଗଲା । ସେ ଜାଣିପାରୁ ନଥିଲା ଯେ ସେ କ'ଣ ସତରେ ଏକ ଚିଠି ପଢୁଛି ନା କୌଣସି ଲେଖକର କଥା ଓ କାହାଣୀ ?

କିଛି ସମୟ ପରେ ପ୍ରକୃତିସ୍ଥ ହୋଇ ଅବିନାଶ ଅନୁପମାଙ୍କୁ ପାଖକୁ ଡାକିଲା ଏବଂ ତାଙ୍କ ହାତରେ ଚିଠିଟି ଧରେଇ ଦେଇ କହିଲା– "ନିଅ ପଢ, ତୁମ ଚୋରି ଜିନିଷର ସନ୍ଧାନ ମିଳିଛି ।"

ଆଶ୍ଚର୍ଯ୍ୟ ଓ ଏକପ୍ରକାର ଅବିଶ୍ୱାସ ଭରା ଚାହାଣୀରେ ଅନୁପମା ଚିଠିଟି ନେଲେ । ଅବିନାଶ ଲକ୍ଷ୍ୟ କଲା, ଚିଠିଟି ପଢି ସାରିଲା ବେଳକୁ ତାଙ୍କ ଆଖିରେ ଦୁଇବୁନ୍ଦା ଲୁହ ଢଳ ଢଳ ହେଉଛି ।



# ଢାଲ୍‌ସବାର୍

## ଗୋଲାପ ମଂଜରୀ କର

ନିଛାଟିଆ ଖରାବେଳଟା ଅଗଣାରେ ଚକା ପାରି ବସିଛି । ଦୂରରୁ କୋଇଲିଟେ ତୁହାଇ ତୁହାଇ ଡାକ ଛାଡୁଛି । କେହି କୁଆଡ଼େ ନାହିଁ, ଚାରିଆଡ଼େ ଖାଁ ଖାଁ । ବାରିପଟ ଦୁଆରକୁ ଲାଗି ଲମ୍ୱି ଯାଇଛି ଆଖି ପାଉନଥିବା ବିଲ ପାଟ । ତା' ଉପରେ ଖରା ଚଗଲା ଛୁଆପରି କୁଦା ମାରୁଛି । ସୀତାର ଛାତି ଭିତରଟା ସତେକି ସେଇ ନିଶୂନ ଦି'ପହର । ଭରତ ବ୍ଲକ୍ ଅଫିସ୍‌କୁ ଚାଲିଗଲା ପରେ ସବୁଦିନେ ସେ ଏମିତି ଏକୁଟିଆ । ଯା ଆଗରୁ ସେମାନେ ଯୋଉଠି ରହୁଥିଲେ ସେଇଟା ଗୋଟେ କଲୋନୀ । ଚାରିପଟେ ଲୋକ । ଖରାବେଳ ସାରା ସ୍କୁଲକୁ ଯାଉନଥିବା ପିଲାଯାକ ତା' ଘରେ ହାଉଜାଉ ହଉଥାନ୍ତି । ସେମାନଙ୍କୁ ସୀତା ପାଖରେ ଛାଡ଼ି ଦେଇ ତାଙ୍କ ମା'ମାନେ ବି ନିଶ୍ଚିତ । ସେଇମାନଙ୍କ ଅଳି ଅର୍ଦ୍ଦଳି ସମ୍ଭାଳୁ ସମ୍ଭାଳୁ ସେ ଭୁଲିଯାଏ ତା'ର ଶୂନ୍ୟ କୋଳ କଥା ।

ଏଠିକି ବଦଳି ହେଇ ଆସିଲାବେଳେ ତା' ସାଙ୍ଗେ ସାଙ୍ଗେ ସେଇ ଖାଲିପଣର ବ୍ୟଥାଟା ଯେମିତି ଏ ଯାଏଁ ଡଙ୍କେଇ ଆସିଛି । ଭରତର ଅଣ୍ଟିକି ଚାହିଁ ଗାଁ ମୁଣ୍ଡର ଏଇ ନିଛାଟିଆ ଘର ଦି' ବଖରା ଭଡ଼ାରେ ମିଳିଛି । ଏଠିକି ଆସିଘର ଦୁଆର ସଜଡ଼ା ରଖାରେ ଏଇ କେଇଟା ଦିନ କଟି ଗଲାଣି । ଦି' ବଖରା ଘରକୁ କେତେ ଆଉ ସଜେଇବ ? ଗାଁ ଦାଣ୍ଡ ପଟକୁ ପୂର୍ବମୁହାଁ ଦୁଆରଟା ବନ୍ଦ ନ କଲେ ଘରେ ଘଡ଼ିକେ ଆଣ୍ଠୁଏ ବହଳର ଧୂଳି ଜମିଯିବ । ତା' ଛଡ଼ା ଏକୁଟିଆ ମାଇପି ଲୋକ ବୋଲି ସବୁବେଳେ ଦାଣ୍ଡ କବାଟ କିଳି ରହିବାକୁ ଭରତ ବତେଇଛି । ଆଜି ହାତରେ କିଛି କାମ ନାହିଁ । ଭାରି ଉଦାସିଆ ଲାଗୁଛି ସୀତାକୁ । ଜୀବନର ସବୁ ଖାଲିପଣକୁ କିଏ ଯେମିତି ଆଙ୍ଗୁଠି ଗେଞ୍ଜି ଗେଞ୍ଜି ଦେଖେଇ ଦଉଛି । ଦାଣ୍ଡପଟ ଛୋଟ ଜଳାକବାଟ ଆରପଟେ କିଏ ଠକ୍ ଠକ୍ କରୁଛି ଧୀରେ ଧୀରେ । ଚମକି ପଡ଼ିଲା ସୀତା । ଡରି ଡରି ଯାଇ କିଳିଣୀ ଖୋଲିଲା । ସେ ପାଖରେ ଅଳ୍ପ ବୟସୀ ସ୍ତ୍ରୀ ଲୋକଟିଏର ଓଢ଼ଣା ଦିଆ ହସିଲା ମୁହଁଟିଏ ଉଭା ହେଲା । ଜଳାବାଟେ ହାତ ଗଳେଇ ଗିନାଟିଏ ବଢ଼ାଇ ଧରିଛି । "ମଞ୍ଜା ରାଇ ଟିକିଏ କରିଥିଲି ଯେ...", କୁଣ୍ଠିତ ହୋଇ ସୀତା ଗିନାଟିକୁ ଧରିଲା । ''ତମ ନାଁ କ'ଣ ?'' ସେପଟର ପ୍ରଶ୍ନରେ ସୀତା ତା' ନାଁ କହିଲା । ତରଳ ହସରେ ବୋହି ଯାଉ ଯାଉ ଓଢ଼ଣା ତଳ ମୁହଁଟି କହିଲା, "ତା' ହେଲେ ଆମେ ଦି'ଜଣ ତ ମଇତ୍ର ।" ସୀତା ବି ହସି ପକେଇଲା । ତା' ମନ ଆକାଶରୁ ସବୁତକ ମେଘ ଝାଙ୍କେ ପଶ୍ଚିମା ପବନରେ କୁଆଡ଼େ ଉଡ଼ିଗଲା । ଦାଣ୍ଡ ଦୁଆର ଖୋଲି କୋଉ ଜନ୍ମର ମିତଣୀକୁ ହାତ ଧରି ଘର ଭିତରକୁ ଆଣି ବସାଇଲା । ଟିଣ ଡବାରେ ସାଇତା ପୁରୀ ଖଜା ଦି' ଖଣ୍ଡ, ଆଉ ନିର୍ମାଲ୍ୟ କଣିକେ ତା' ହାତକୁ ବଢ଼େଇ ଦେଇ ମିତ ପଣରେ ମୋହର ମାରି ଦେଲା ।

ଭରତ ଅଫିସ୍‌ରୁ ଫେରୁ ଫେରୁ ସୀତା ତା' ନୂଆ ମଇତ୍ର କଥା, ମଞ୍ଜା ରାଇ ସାଙ୍ଗକୁ ଆହୁରି କେତେ କଥା ଗପି ଦେଇଗଲା ଉଚ୍ଛାଟ ହେଇ । ଭରତ ବି ସୀତାକୁ ସାଙ୍ଗ ମିଳି ଯାଇଛି ବୋଲି ଆଶ୍ୱସ୍ତ ହେଲା । ଜଳାକବାଟରୁ ନଈକୂଳ, ମଙ୍ଗଳା ମନ୍ଦିରରୁ ହାଟ ପଡ଼ିଆ ଯାଏଁ ତାଙ୍କ ମଇତ୍ର ପଣ ଛଟ୍ରେଇ ଯାଇଥିଲା, ଏଇ କେତେଦିନ ଭିତରେ । ହେଲେ, ମଇତ୍ର ତାଙ୍କ ଘରକୁ ଯେତେ

ସରାଗରେ ଡାକିଲେ ବି ସୀତାକୁ ସେଠିକି ଯିବାକୁ କେମିତି ମାଡ଼ି ମାଡ଼ି ପଡ଼େ । ତା' ରାହାବାଳୀ ଶାଶୁର ମୁହଁ ମୋଡା ସାଙ୍ଗକୁ ସ୍ୱାମୀ ନବଘନର ଗୋଟା ଗିଳି ପକାଇବାର ଚାହାଣୀ ସୀତାକୁ କରଛଡ଼ା ଦେବାକୁ ବାଧ କରେ । ଯେବେବି ମଇତ୍ର ତା' ଦି' ଜଣିଆ ଘରକୁ ଆସେ, ତା' ଘରର ସୁତୁରାପଣ ଓ ତା'ର ସଣୁଣା ପଣିଆକୁ ପ୍ରଶଂସା କରେ । ମଇତ୍ର ସାଙ୍ଗରେ ତା'ର ଦି' ଝିଅଯାକ ପ୍ରାୟ ଆସନ୍ତି । ଖଜା, ବିସ୍କୁଟ କି ଭୁଜା ଯାହା ଥାଏ ସେ ଦିହିଙ୍କ ହାତରେ ଦେଇ ଗେହ୍ଲାରେ ଗେହ୍ଲାରେ ତାଙ୍କୁ ପୋତି ପକାଏ ସୀତା । ସେମାନେ ବି 'ମଇତ୍ର ମାଉସୀ' ଘରକୁ ଆସିବାକୁ ଓର ଉଣ୍ଡୁଥାନ୍ତି । କିନ୍ତୁ ତାଙ୍କ ବୁଢ଼ୀ ମା' ଜାଣିଲେ, ପାଟି କରି ଘର ମୁଣ୍ଡ ଉପରେ ଥୁଏ । ବାଂଝ, ଆଣ୍ଠୁକୁଡ଼ି, ନିଅଁଶୀ କହି ସୀତାକୁ କେତେ ସଁପେ, କାଟେ । ସୀତା ସବୁ ଶୁଣି ନ ଶୁଣିଲା ପରି ରହେ । ଯିଏ ନିଜ ବୋହୁଟାକୁ ଝିଅ ଜନମ କରିଛି ବୋଲି ଦିନରାତି ଉଲୁଗୁଣା ଦଉଛି, ଭଲମନ୍ଦ ଟିକିଏ ପାଟିରେ ମାରିବାକୁ ଦଉନି, ସିଏ ସୀତାକୁ କହିବା କୋଉ ବଡ଼ କଥା ? ଖାଲି ଶାଶୁ କାହିଁକି, ନବଘନ ବି ବେଳ ଅବେଳରେ ତା' ଉପରକୁ ହାତ ଉଠାଏ । ମାସରେ ଅଧେ ଦିନ ତା'ର କଟେ ଆଉ କୋଉ ନାଗରୀ ଘରେ । ମଇତ୍ର ସବୁ ଜାଣେ, ହେଲେ ଝିଅ ଦିହିଁଙ୍କ ମୁହଁକୁ ଚାହିଁ ଲୁହ ପିଇ ସବୁ ସହିଯାଏ ।

ଏବେ ପୁଣି ମଇତ୍ର ଅସଜ ହେଇଛି । ପୁଅ ମନାସି କେତେ ପୂଜା, ମାନସିକ ଚାଲିଛି । ଓଝା ଡକାଇ ଝଡ଼ାଫୁଙ୍କା ଠାରୁ ଗାଁ ମହାଦେବଙ୍କ ପାଖରେ ରୁଦ୍ରାଭିଷେକ ଯାଏଁ ସବୁ ସରିଲାଣି । ଏଥର ପୁଅଟିଏ ନ ହେଲେ ଆଉ ଗୋଟେ ବୋହୂ ଆଣିବ ବୋଲି ଶାଶୁବୁଢ଼ୀ ନିଇତି ଧମକଉଛି । ଘର ଗୋଟାକର କାମ, ଝିଅ ଦି'ଟାଙ୍କ ଅର୍ଦ୍ଦଳି ସାଙ୍ଗକୁ ଶାଶୁ ଓ ସ୍ୱାମୀର ଅଦଉତି ଖଟୁ ଖଟୁ ବିଚାରି ମଇତ୍ରଟା ଦରମଲା ହେଲାଣି । ହେଲେ ଘର ଲୋକଙ୍କର ସେଥିକି ନିଘା ନାହିଁ । ସୀତା ତ ପର ଲୋକ । ସିଏ ବା କ'ଣ କରି ପାରନ୍ତା । ଖାଲି କଥାରେ ମଇତ୍ରକୁ ଦମ୍ଭ ଦିଏ । ରାମାୟଣ, ମହାଭାରତରୁ ଦି' ଅଧା ପଢ଼ି ଶୁଣାଏ । ବହିରୁ କି ଖବର କାଗଜରୁ ପଢ଼ିଥିବା ଭଲ କଥା ସବୁ କହି ତା' ମନ ବହଲାଏ । ମଇତ୍ରଟାର ଭାରି କଅଁଳ ମନ । ସୀତା ବନବାସ ଶୁଣି କାନ୍ଦି ପକାଏ । ଦ୍ରୌପଦୀ ବସ୍ତ୍ରହରଣ କଥା ଶୁଣୁ ଶୁଣୁ କାନରେ ହାତଦେଇ କହେ ''ଯୁଧିଷ୍ଠି ଦେବ ଧାର୍ମିକ ବୋଲି ହୁରି ପଡ଼ିଛି । ସିଏ ପୁଣି ନିଜ ମାଇପକୁ ପଣ ରଖୁଛି, ଆଖି ଆଗରେ ମହତ ଯିବା ଦେଖୁଛି, ସିଏ କି ଧାର୍ମିକ ବା, ସିଏ କି ମରଦ ? ଏଗୁରା ଶୁଣିଲେ ମୋ ଦିହ ଜଳିଯାଏ । ମନ ହୁଏ, ଦୁଃଶାସନ ନୁହେଁ, ସେ ଯୁଧିଷ୍ଠି ଦେବଙ୍କ ତଣ୍ଟି କଣା କରିଦବାକୁ ।'' ସୀତା ହସି ହସି ଗଡ଼ିଯାଏ ମଇତ୍ରର ରାଗ ଦେଖି । ପୁଣି ଭାବେ, ସତେ ତ ! ସବୁ କାଳରେ ପୁରୁଷର ଟାଣ ରଖିବାକୁ ସ୍ତ୍ରୀ ହିଁ ବଳି ପଡ଼େ । ସେ ସୀତା ଦ୍ରୌପଦୀ ହୁଅନ୍ତୁ ବା ଗୋବର ଗୋଟେଇ ହଉ ।

ଦିନ ଯେତିକି ପାଖେଇ ଆସୁଥାଏ, ମଇତ୍ର ସେତିକି ଦୁର୍ବଳ ହେଇ ପଡୁଥାଏ । କାଳେ ପୁଣି ଝିଅଟେ ହବ, ଏଇ ଡର ତା'କୁ ବେଶି କାଇଲା କରି ଦଉଥାଏ । ମଇତ୍ର ପାଇଁ ସୀତା ଦିନରାତି ଠାକୁରଙ୍କୁ ଡାକେ, ନଡ଼ିଆ ଯାଚେ । ଯା'ହଉ, ପୁଅଟିଏ ଜନମ କରି ମଇତ୍ର ବଞ୍ଚିଗଲା । ସତ୍ୟନାରାୟଣ ପାଲା, ମୂଆଁ, ଲଡୁ ବଣ୍ଟାରେ ମାସଟିଏ ବିତିଗଲା । ପୁଅହବା ଖୁସିରେ ଯେତେ ଉଛୁଳିଲେ ବି ମଇତ୍ରର ପୋଖତି ଦେହଟା ବେଶି ନିବଳୁଆ ହେଇପଡ଼ିଲା । ଏକା ପୁଅର କାମ କରୁ କରୁ ଅଠାଠିକ । ବଡ଼ ଝିଅଟାର ଟିକିଏ ହେତୁ ପାଇଲାଣି । ନିଜ କଥା ନିଜେ କିଛିଟା ବୁଝି ନଉଛି । ହେଲେ ଦି' ବର୍ଷର ସାନ ଝିଅଟାର ଯତ୍ନ ମୋଟେ ନେଇ ପାରେନି । ମଇତ୍ରକୁ ସାହାଯ୍ୟ କରିବାକୁ ତା'ର ସାନଝିଅକୁ ବେଳେ ବେଳେ ସୀତା ତା' ଘରକୁ ନେଇ ଆସେ । କଥାରେ ଅଛି,

ଆଦର ପାଇଲେ ବାଘ ବି ପୋଷା ମାନେ । ଏଣିକି ସୀତାକୁ ଛାଡ଼ି ତାଙ୍କ ଘରକୁ ଯିବାକୁ ଛୁଆଟା ମୋଟେ ମଙ୍ଗୁନି । ଦଶ ବର୍ଷ ହେଲା ସୀତା ଭିତରେ କୁଙ୍କୁରି କାଙ୍କୁରି ହେଇ ଶୋଇଥିବା ମା'ଟି ମଇତ୍ରର ଝିଅକୁ ନେଇ ସବୁ ଓରମାନ ମେଣ୍ଟାଇ ନବାକୁ ଲୋଭେଇଲା । ପର ପିଲାକୁ ଯେତେ କଲେ ବି ସେ କେବେ ନିଜର ହବନି ବୋଲି ଭରତ ଯେତେ ବୁଝେଇଲେ ବି ସୀତା ମେଲା ଆଖିରେ ଅସୁମାରି ସପନ ଦେଖିଥିଲା । ଟିକିର ପାଠପଢ଼ାଠୁ ବାହାଘର ଯାଏଁ ସବୁ ସପନ ପାହାଚରେ ସେ ତା'ର ପାଦଚିହ୍ନ ଆଙ୍କି ଲାଗିଲା । ଝିଅକୁ ସୀତା ହାତରେ ଛାଡ଼ି ଦେଇ ମଇତ୍ର ବେଧଡ଼କ । ପୁଅ କାମ, ଘର କାମ କରିବାକୁ ଟିକିଏ ବେଳ ଅଣ୍ଟିଲା । ଶାଶୁବୁଢ଼ୀ ବେଳେ ବେଳେ ରବେଇ ଖବେଇ ହେଲେ ବି ଆଉ ମୁହଁ ଖୋଲି କହିବାକୁ ହିମତ ପାଉନଥିଲା । ଏଇ ମଉକାରେ ସୀତା ଆଡ଼କୁ ପାଖେଇ ଆସିବାକୁ ନବଘନ ଗୋଡ଼ ବଢ଼ାଇ ଥିଲା । ହେଲେ ସୀତା ଆଖିର ହୁଳାଫିଙ୍ଗା ତାତିରେ ସେ ବଢୁଥିବା ପାଦ ତେଲୁଣି ପୋକ ପରି ମୋଡ଼ି ହେଇ ଯାଉଥିଲା ।

ସେଥର ଭାଇ ବାହାଘର ପାଇଁ ସୀତା ବାପଘରକୁ ଯିବା କଥା । ଟିକିକୁ ସାଙ୍ଗରେ ନବାକୁ ଯେତେ ଜିଗର କଲେ ବି ଭରତ ରାଜି ହେଲାନି । ଟିକିକୁ ନ ନେଇ ସୀତା ଗଲା ସିନା, ସେଠି ତା' ମନ ଖାଲି ବାଛୁରୀ ହଜା ଗାଇ ପରି ଛଟପଟ ହେଲା । ଭାଇର ଚଉଠି ହୋମ ସରୁ ସରୁ ଅସମ୍ଭାଳ ହେଇ ଲେଉଟି ଆସିଲା । ଭରତ ଘର ତାଲା ଖୋଲୁ ଖୋଲୁ ସେ ଦଉଡ଼ି ଗଲା ମଇତ୍ର ଘରକୁ । ଟିକିକୁ ଗୋଡ଼ରେ ପକାଇ କୁନିପୁଅକୁ କ୍ଷୀର ପିଆଉଥାଏ ମଇତ୍ର । ''ହେଇଲୋ ତୋ ମା' ଆଇଲାଣି'' କହି ମଇତ୍ର ଯେମିତି ପାଟିଟାଏ କରି ଦେଇଛି ଟିକି ସୀତା ଆଡ଼କୁ ହାତ ମେଲେଇ ଭେଁ କିନା କାନ୍ଦି ଉଠିଲା । ସୀତା ଆଖିରେ ବି ଲୁହ ଜକେଇ ଆସିଲା । ବର୍ଷାରେ ଭିଜି ଟିକିକୁ ଦି'ଦିନ ହେଲାଣି ଜର । ତାକୁ କାନିରେ ଘୋଡ଼େଇ ଘରକୁ ନେଇ ଆସିଲା ସୀତା । ଟିକିକୁ ଦେଖି ଭରତର ସେ କି ରାଗ ! ଗରଗର ହେଇ ନ ଖାଇ ନପିଇ ଅଫିସ୍ ଚାଲିଗଲା । ସୀତା ଜାଣେ, ଆଗପରି ସେ ଆଉ ଭରତର ଯତ୍ନ ନେଉନି । ନୂଆ ନୂଆ କିସମର ଜଳଖିଆ ନ କରି ଭରତ ଆଗରେ ଚୂଡ଼ା, ମୁଢ଼ି କି ଛତୁଆ ଗିନେ ଥୋଇ ଦେଇ ଚଳେଇ ନବାକୁ କହୁଛି । ଭଲ ଲୁଗା ପିନ୍ଧି ବେଶବାସ ହେଇ ଭରତର ଫେରିବା ବାଟକୁ ଚାହିଁ ବସୁନି । ଏବେ ସବୁ ସମୟ ତା'ର ଟିକି ପାଇଁ ବନ୍ଧା । ସେଥିରୁ କାଣିଚାଏ ସେ ଆଉ କାହାକୁ ଦବାକୁ ରାଜି ନୁହେଁ । ଏଥି ପାଇଁ ଅନେକ ଥର ଭରତ ରାଗିଛି, ଗାଳି ଦେଇଛି, ପୁଣି ତା'କୁ ବୁଝେଇ ବସିଛି । ହେଲେ ସୀତାର ପିଲା ରଙ୍କୁଣି ସରଳ ମନ ପାଖରେ ପ୍ରତି ଥର ସେ ହାରିଛି ।

ବହୁତ ରାତିରେ ଘରକୁ ଫେରିଲା ଭରତ । ତା'ର ଡେରି ଦେଖି ସୀତା ସେତେବେଳେ ଅସରାଏ କାନ୍ଦି ସାରିଲାଣି । ଇଚ୍ଛା ନ ଥିଲେ ବି ଟିକିକୁ ତା' ଘରେ ଛାଡ଼ି ଦେଇ ଆସି ଭରତ ମନକୁ ପାଇଲା ପରି ରୋଷେଇ କରି ରଖିଥିଲା । କେତେ ରାଣ ନିୟମ ପକାଇ ତାକୁ ବଳେଇ ବଳେଇ ଖୁଆଇଲା । ହେଲେ ଟିକିକୁ ଛାଡ଼ି ତା' ନିଜ ତଣ୍ଟିରେ ଗୁଣ୍ଡା ଗଳିଲାନି । ରାତି ଯାକ ଆଖିରେ ପଲକ ପଡ଼ିଲାନି । କୁଆ କା'ନ କହୁଣୁ ଜଳାବାଟେ ମଇତ୍ରଠୁ ଟିକିର ଜର ବଢ଼ିବା କଥା ଶୁଣି ଅଧୈର୍ଯ୍ୟ ହେଇ ପଡ଼ିଲା ସୀତା । ଭରତ ଅଫିସ୍ ଯିବା ପରେ, ସବୁ ଛାଡ଼ି ଛୁଡ଼ି ଦେଇ ଟିକି ପାଖରେ ପହଞ୍ଚିଲା ବେଳକୁ ଅଛାଡ଼ ଛାଡ଼ ଜରରେ ଟିକି ଦେହଟା ଡହକୁଛି । କାଲିଠୁ ଯେତେ ଔଷଧ ଦିଆ ହେଲାଣି, କୋଉଥିରେ ବୋଲ ମାନୁନି । ଖରାବେଳଟା ସାରା ଟିକିକୁ ଛାତିରେ ଜାକି ବସିଥାଏ ସୀତା । ମୁହଁରେ ପାଣି ଟୋପେ ବି ଦେଇ ନଥାଏ । ନବଘନ ମଝିରେ ମଝିରେ ଆସି ଦେଖି ଯାଉଥାଏ । କାହାକୁ ଦେଖୁଥାଏ କେଜାଣି । ଆଖିରୁ ଡାହାଣାପଣ ଯେମିତି ଝାମ୍ପି ପଡୁଛି ।

ସୀତାର ବିକଳ ଦେଖି ମଇତ୍ର ତାକୁ ଦମ୍ଭ ଦେଉଥାଏ । ସଞ୍ଜ ଗଡ଼ିଲାରୁ ମଇତ୍ର ଶାଶୁ ତା' କୋଳରୁ ଟିକିକୁ ଟାଣି ନେଇଗଲେ । ''ତୁ ଏଥର ତୋ' ଘରକୁ ଯା' ଲୋ ଝିଅ । ଦିନଯାକ କୁଣ୍ଢେଇ କୁଣ୍ଢେଇ ମୋ ପିଲାଟା ନିଝୋଲିଆ ହେଇଗଲାଣି । ମା'ଟା ତ ନିଦା ପଥରମିତି ବସିଛି । ତୋର କିଆଁ ଏତେ ସକ ବୋହୁଚି ବା ? ମା' ଠୁ ଯିଏ ବେଶି କରେ... ?'' ମଇତ୍ର ଧାଇଁ ଆସି ଶାଶୁଙ୍କ ପାଟିରେ ହାତ ଦେଇଦେଲା । ପାଟିରେ ଲୁଗା ମାଡ଼ି ଛାଟ ଖାଇଲା ପରି ସୀତା ଦଉଡ଼ି ପଳାଇଲା ତା' ଘରକୁ ।

ସେ ରାତି ସାରା ବର୍ଷାର ବହପ ଅମାପ । ଗଛ ସବୁ ମଡ଼ ମଡ଼ ହୋଇ ଭାଙ୍ଗି ପଡୁଥାଏ । ବିଜୁଳି ଚମକୁଥାଏ ତୁହାକୁ ତୁହା । ଘଡ଼ଘଡ଼ି ଚଡ଼କରେ ଧରଣୀ ଧସି ଯିବକି ଆଉ ! ସେ ରାତି ଯେମିତି ଶେଷ ପ୍ରଳୟର ରାତି । ଆଉ କେବେ ସୂର୍ଯ୍ୟ ଉଇଁବନି କି ପକ୍ଷୀ ଡାକିବନି । ସୀତା ନିଜେ ସେଇ ଅପୁହା ରାତି ପାଲଟି ଯାଇଥାଏ । ସତରେ ସେ ରାତି ପାହିଲାନି । ବର୍ଷା ପବନର ଗର୍ଜନକୁ ବୁଡ଼େଇ ଦେଇ ଚିର୍ ଚିରା ରଡ଼ିଟାଏ ଭାସି ଆସିଲା ଜଳାକବାଟ ସେପାଖରୁ । ''ମୋ ଛୁଆଟାକୁ ସେ ଡାହାଣୀ ମାରି ପକାଇଲା ଲୋ, ମୁଁ କ'ଣ କରିବିଟି । ଦିନ ଯାକ ଯାବୁଡ଼ି ଯାବୁଡ଼ି ତା' ରକତଯାକ ସବୁ ଶୋଷି ନେଲାଲୋ ସେ ଡାହ୍ଣୀ... ।'' ଭରତ ତା' ଛାତିରେ ପ୍ରାଣପଣେ ଚାପି ଧରିଲା ସୀତାର ବରଡ଼ା ପତ୍ର ପରି ଥର ଥର କମ୍ପୁଥିବା ଦେହକୁ । ସୀତାର ଚେତା ହଜି ଯାଇଥିଲା ଭରତ ଛାତିରେ । ଭରତକୁ କିଛି ବୁଦ୍ଧି ବାଟ ଦିଶୁ ନଥାଏ । କେମିତି ସେ ସମ୍ଭାଳିବ ସୀତାକୁ ? ମଝିରେ ମଝିରେ ସୀତା ଟିକିଏ ଆଖି ଖୋଲି ଚାହୁଁଥାଏ । ପୁଣି 'ମୋ ଧନ, ମୋ ଟିକି' କହି କହି ଚେତା ହରଉଥାଏ ।

ରାତି ପାହିଲା ବେଳକୁ ଝଡ଼ ବର୍ଷା ଥମି ଯାଇଥାଏ । ଚେତା ଥାଇ ବି ସୀତା ଆଲିଜା ହୋଇ ପଡ଼ିଥାଏ ଭରତ ଛାତି ଉପରେ । ହଠାତ୍ ଘରଟା ସାରା କମ୍ପି ଉଠିଲା ବହୁତ ଲୋକଙ୍କ ପାଟିତୁଣ୍ଡ ହୋ ହଲ୍ଲାରେ । 'ମାର ମାର ଧର ଧର ଘୋଷାଡ଼ି ଆଣ...' ଶବ୍ଦ ସାଙ୍ଗକୁ ବାହାର କବାଟ ଦୁମ୍ ଦୁମ୍ ବାଡ଼ିଆ ଚାଲିଥାଏ । ସୀତାକୁ କାନ୍ଥରେ ଆଉଜାଇ ବସାଇ ଦେଇ କବାଟ ଖୋଲିବାକୁ ଉଠିଗଲା ଭରତ । କବାଟ ଖୋଲୁ ଖୋଲୁ ଅମଣିଆ ଝଡ଼ଟାଏ ପଶିଆସିଲା ଭିତରକୁ । ପଂଝାଏ ଲୋକ ତଡ଼ାବାଡ଼ି ଧରି ଏକାଥରେ ମାଡ଼ି ଆସିଲେ । ଭରତ କିଛି ଜାଣିବା, ବୁଝିବା ଆଗରୁ ତା'କୁ କେତେ ଜଣ ଶୂନ୍ୟେ ଶୂନ୍ୟେ ଟେକି ନେଇଗଲେ । "ଘୋଷାଡ଼ି ଆଣ ସେ ଡାଆଣୀକୁ", "ଲଙ୍ଗଳା କରି ପକାଅ", "ହାଣି ପକାଅ", "ଶା... କେତେ ଛୁଆଙ୍କ ରକତ ଶୋଷି ଏ ଗାଁକୁ ଆସିଛି" ଏମିତି ଚିତ୍କାର ଭିତରେ ଆଉ ପଂଝାଏ ଝପଟି ଗଲେ ସୀତା ପାଖକୁ । 'ମଇତ୍ର' ବୋଲି ଛାତି ଫଟା ଚିତ୍କାରଟେ କରି ତୁଳିଆ ଖୁଣ୍ଟଟାକୁ ଜାବୁଡ଼ି ଧରି ପୁଣି ଥରେ ଚେତା ହରେଇ ଦେଲା ସୀତା । ଅଚେତ ସୀତାର ଚୁଟି ପୁଳାଏ ଧରି ତାକୁ ଘୋଷାରି ନେଉଥାଏ ନବଘନ । "ତମ ଗୋଡ଼ ତଳେ ପଡୁଚି, ଛାଡ଼ିଦିଅ ତାକୁ" ସୀତାର ମଇତ୍ର ଲୁହ ନାଳ ହୋଇ ସମସ୍ତଙ୍କୁ ନେହୁରା ହେଉଥାଏ । ଲୋକଙ୍କ ବିକଟାଳ ହସରେ ଆକାଶ ସତେକି ଖଣ୍ଡ ଖଣ୍ଡ ହେଇ ଭାଜି ପଡ଼ିବ । ସୀତାର ପିନ୍ଧା ଲୁଗାଟାକୁ ଓଟାରି ଆଣି ଦୂରକୁ ଫିଙ୍ଗିଦେଲା ନବଘନ । କଞ୍ଚା ମାଂସ ଦେଖି ଶାଗୁଣା ପଲ ପରି ଲୋକଗୁଡ଼ାକ ଡେଣା ଝାଡ଼ି ଉଦଣ୍ଡ ହଉଥିଲେ । କୋହରେ ଆକ୍ତା ମାକ୍ତା ମଇତ୍ର ନବଘନର ଗୋଡ଼ ଦି'ଟାକୁ ଜାବୁଡ଼ି ଧଣି ଘୋଷାରି ହଉ ହଉ ଡକା ପାରୁଥାଏ "ଛାଡ଼ିଦିଅ ତାକୁ, ସେ ଡାଆଣୀ ନୁହେଁ । ମୋ ପିଲାକୁ ସେ ନିଜ ପିଲା ଭଳି ଭଲ ପାଏ । ମାଇପି ଲୋକଟାର ମହତ ରଖ । ଦୟାକର..." ନବଘନର ଗୋଡ଼ ଛିଞ୍ଚଡ଼ାରେ ଖଣ୍ଡେ ଦୂରରେ ଯାଇ

ପଡ଼ିଲା ସେ । ଆଉ କେହି ଆଗେଇ ଆସିଲେନି ନବଘନକୁ ବାଧା ଦବାକୁ । ତା' ଭିତରର ମୋଡ଼ି ମୋଡ଼ି ହୋଇ ରହିଥିବା ସାପଟା ଶିକାର ଗିଳିବାକୁ ହିସ୍ ହିସ୍ କରି ଫଣା ଟେକୁଥିଲା । ଚାରିପଟେ ଆହାରଠୁ ବେଶି ଭୋକଗୁଡ଼ାକ ଖୁନ୍ଦି ହେଇଛନ୍ତି ।

ସୀତାର ବେଚେତା ଅଧଲଙ୍ଗଳା ଦେହଟାକୁ ଗାଁ ଦାଣ୍ଡରେ ଘୋଷାରି ଘୋଷାରି ଦୋଳବେଦୀ ପାଖକୁ ନିଆହେଲା । ଜନ୍ତାରେ ପଡ଼ି ଘାଇଲା ବାଘ ପରି ଗର୍ଜୁଥିବା ଭରତକୁ ସେଠି ଗୋଟେ ଖୁଣ୍ଟରେ ଲଙ୍ଗଳ ଦଉଡ଼ି ଦେଇ ବନ୍ଧା ହେଲା । ତାଆରି ଆଖି ଆଗରେ ସୀତାକୁ ଉଧୁ ଲଙ୍ଗଳା କରି ଦିହଯାକ ତତଲା ଚେଙ୍କା ମାରି ମାରି ମଉଜ ଦେଖିବେ ଗାଁ ସାରା ଲୋକ । ତା'ପରେ ତା' ଚାରିପଟେ କାଠ ଗଦା କରି ସେଥିରେ ନିଆଁ ଲଗାଇ 'ଡାଆଣୀ ଘଉଡା' ଅଗିଜଳା ହବ । ପୋଡ଼ି ନ ମାରିଲେ ଛୁଆଖାଇ ଡାଆଣୀ କୁଆଡ଼େ ମରେନି ।

ଜମିଥିବା ଲୋକଙ୍କ ବେଢ଼ି ଚାରିପଟରୁ ଜାକି ହେଇଆସିଲା । ବଅସ ଖସିଯାଇଥିବା ବୁଢ଼ା କେଇଟା ଠେଲାପେଲା ହେଲେ ଆଗ ଡାଆଣୀ କି ଲଙ୍ଗଳା କରିବାକୁ । ବାଟ ଓଗାଳିଲା ନବଘନ । ତା' ଝିଅର ରକତ ଶୋଷି ଖାଇଛି ଡାଆଣୀ । ତେଣୁ ଶାସ୍ତି ଦବାର ପ୍ରଥମ ଅଧିକାର ତା'ର । ପାଟିତୁଣ୍ଡ ହୋ ହଲ୍ଲା ଥମିଗଲା । ଗୁଡ଼ାଏ ଚାହାଣୀର ତାତିରେ ପବନ ବି ଅଣନିଶ୍ୱାସୀ ହେଇଯାଇଛି । ଦ୍ରୌପଦୀର ଚୀର ହରଣ କ୍ଷଣକୁ ଚାହିଁ ରହଛି କୁରୁସଭା । ପଲକ ପଡୁନି । ଖୁଣ୍ଟରେ ବନ୍ଧା ସୀତାର ଚେତା ନଥିବା ବୁକୁ ଉପରେ ତା'ର ମୁଣ୍ଡଟା ଝୁଲି ପଡ଼ିଛି । ମୁହଁ ଉପରେ ପଡ଼ିଛି କଳା ଘୁମର ଅନାବନା ବାଳ ମେଞ୍ଚାକ । ଦୁଃଶାସନର ହାତଟା ବଢ଼ିଆସିଲା ଦ୍ରୌପଦୀର ଚୀର ଆଡ଼େ । ହଠାତ୍ ମେଦିନୀ ଫଟା ଚିତ୍କାରଟାଏ ରୋଧିଦେଲା ବଢ଼ନ୍ତା ହାତର ଗତି । ନିଶ୍ୱାସ ରୁନ୍ଧା ଆଖିଗୁଡ଼ାକ ବୁଲିଗଲେ ସେଇ ଆଡ଼କୁ । ଦୋଳବେଦୀ ଉପରେ ଛିଡ଼ା ହୋଇଛି ନବଘନର ସ୍ତ୍ରୀ । ମୁଣ୍ଡ ବାଳତକ ସତେକି ତାଣ୍ଡବ ଜଟା । ଛାତିରୁ ଲୁଗା ଖସି ଭୂଇଁରେ ଲୋଟୁଛି । ସେଇ ଲଙ୍ଗଳା ଛାତିରେ ଜାକି ଧରିଛି ଦି'ମାସର କଅଁଳା ପୁଅକୁ । ଜନତା ଦେଖୁଥିଲା, ଠିଆ ହେଇଛନ୍ତି ସର୍ବସଂହାରିଣୀ ମା' କାଳୀକା । ଆଖି ଦି'ଟା ଜଳୁଛି ଦାଉ ଦାଉ ହେଇ । "ମୋ [illegible] ତ୍ର ଧିଅରେ ହାତ ଦେଲେ ମୁଁ ତମ ପୁଅର ତଣ୍ଟି ଚିପି ଫୋପାଡ଼ି ଦେବି । ମୁଁ ତ ଫାଶୀ କାଠରେ ଝୁଲିବି, ହେଲେ ଗାଁଟାଯାକୁ ଗାରଦରେ ପୁରେଇବି । ଝିଅଟେ ହେଇଚି ବୋଲି ଯାଉଣୁ ଆସୁଣୁ ଖୁନ୍ଦେ ବିଧେ ପକଉଥିଲ । ଏବେ ମରିଗଲା ବୋଲି ବାପପଣିଆ ଦେଖଉଚ ? ଅଣପୁରୁଷାଗୁଡ଼ା, ଲାଜ ନାହିଁ ତୁମ ମୁହଁରେ ? ମାଇପିଟାକୁ ଖୁଣ୍ଟରେ ବାନ୍ଧି ଲଙ୍ଗଳା କରି ପୋଡ଼ି ମାରୁଚ ? ଛାଡ଼ିଦିଅ କହୁଚି, ନହେଲେ ଦେଖିବ..." ରଙ୍ଗ ଚହ ଚହ ଆଖିରୁ ନିଆଁଝୁଲ ଖସି ପଡୁଥିଲା । କଥାରୁ ଅହି ଗରଳ ଛିଟିକି ପଡୁଥିଲା । ଆଉ ଟିକକୁ ଧ୍ୱଂସିଯିବ ଧରଣୀ । ଶବ ଶିବ ଏକାକାର କରିଦବ । ମା' କାଳୀକେ ବିରାଜିଛନ୍ତି । ତା' ବଚନ ହୁଡ଼ିବାକୁ କୋଉ ଛାତିରେ ଏଡ଼େ ବହପ ଅଛି ?

ଅଗିଜଳା ପାଇଁ ଆସିଥିବା ମଶାଲ ସବୁ ପଛେଇ ପଛେଇ ଯାଉଥିଲେ । ଟିକକ ଆଗରୁ ଘଣ୍ଟାକର୍ଣ୍ଣ ସାଜିଥିବା ପାଳଭୂତଗୁଡ଼ାକ ଖଣ୍ଡିଆ ଭୂତ ତୋଡ଼ରେ ଛିନ୍‌ଛତ୍ର ହେଇ ଉଡୁଥିଲେ ଦୋଳପଡ଼ିଆ ସାରା । ବୁଢ଼ୀଟିଏ ଧାଇଁ ଆସି ଲୁଗା ଖଣ୍ଡେ ବେଢ଼େଇ ଦେଲା ସୀତା ଦେହରେ । ଖୁଣ୍ଟରୁ ଖୋଲି ଆଉଜେଇ ନେଲା ଚମ ଧୁଡୁ ଧୁଡୁ ଛାତି ଉପରକୁ । ମାଇପି ପଲେ ହୁଳହୁଳି ପକାଇ ଧପାଳି ଆସୁଥିଲେ । ସବା ପଛରେ ନବଘନ ବୋଉ... ।

(ବି:ଦ୍ର : ଡାଲ୍‌ସବାର- ଦୁଇଜଣ ତାନ୍ତ୍ରିକଙ୍କ ମଧ୍ୟରେ ତନ୍ତ୍ରଯୁଦ୍ଧ ରୂପକ ଖେଳ)



# ସ୍ୱପ୍ନାଶ୍ରିତ

## ସୁଲୋଚନା ଦାସ

ନିଦଟା ଚାଉଁକିନା ଭାଂଗିଗଲା । ଉତ୍ତେଜନାରେ ଦେହଟା କେମିତି ଗୋଟେ ଲାଗୁଥିଲା । ଏତେ ସୁନ୍ଦର ମଧୁର ସ୍ୱପ୍ନଟେ ଭାଙ୍ଗିଗଲା ବୋଲି ସିଦ୍ଧାର୍ଥଙ୍କ ମନରେ ଅବସାଦ ଭରିଗଲା । ଆଃ, ରାତି ପାହିବାଯାଏ ସେ ଏ ସ୍ୱପ୍ନଟା ଦେଖିନଥାନ୍ତେ !

ସ୍ୱପ୍ନଟା ଥିଲା ଏମିତି– ସିଦ୍ଧାର୍ଥଙ୍କ ଦେହଟା କେମିତି ପବନଠୁ ବି ହାଲୁକା ହୋଇଯାଇଛି । ଡେଣା ନୁହେଁ, ଅଥଚ କୌଣସି ଗୋଟେ ଯାନରେ ବସି ସେ ଉଡ଼ି ଉଡ଼ି ଯାଉଛନ୍ତି କାହିଁ କେତେଦୂରକୁ । ଗୋଟିଏ ପରେ ଗୋଟିଏ ଗ୍ରହ, ନକ୍ଷତ୍ର, ତାରା ସବୁ ସେ ଅତିକ୍ରମୀ ଯାଉଛନ୍ତି ଅନାୟାସରେ । ଆଖି ପାଆନ୍ତାରେ ଯେତେସବୁ ନକ୍ଷତ୍ର ଅଛନ୍ତି, ପୁଣି ତା'ପରେ ବି ତା'ର ଅନ୍ତରାଳରେ ଥିବା ବହୁ ବହୁ ଅଦୃଶ୍ୟ ନକ୍ଷତ୍ରମାନଙ୍କୁ ସେ ଆବିଷ୍କାର କରିଚାଲିଛନ୍ତି ଗୋଟିଏ ପରେ ଗୋଟିଏ । ନୀଳ ଆକାଶ । କେତେବେଳେ ପୁଣି ବରଫର ପାହାଡ଼ ପରି ମେଞ୍ଚା ମେଞ୍ଚା ଭାସମାନ ମେଘମାଳା ଦୃଶ୍ୟପଟ୍ଟରୁ ଅନ୍ତର୍ହିତ ହୋଇ ଯାଉଛନ୍ତି । ଶୂନ୍ୟରୁ ମହାଶୂନ୍ୟ । କେତେ କେତେ ରଂଗ, କେତେକେତେ ରୂପ । ଚତୁର୍ଦ୍ଦିଗରେ ଆଲୋକର ବର୍ଣ୍ଣାଢ଼୍ୟ ଐଶ୍ୱର୍ଯ୍ୟ । ଆଖି ଝଲସି ଯାଉଛି । ବିସ୍ମୟ ବିମୂଢ଼ ଚେତନାରେ ପ୍ରତି ମୁହୂର୍ତ୍ତରେ ଉଦ୍‌ଘାଟିତ ହୋଇଚାଲିଛି ଅନନ୍ୟ ବିଶ୍ୱପ୍ରକୃତି । କେଜାଣି କେତେ ଯୁଗ ଯୁଗାନ୍ତର ପରେ ସେ ପହଞ୍ଚିଛନ୍ତି ଗୋଟିଏ ଅଜଣା ଗ୍ରହରେ ।

ଅପୂର୍ବ ସେ ଗ୍ରହଟି । ତାଙ୍କ ଯାନଟି ଓହ୍ଲାଇଛି ଗୋଟିଏ ନୀଳ ଉପତ୍ୟକାରେ । ଚାରିପଟେ ଘଞ୍ଚ ବନାନୀର ସୁଦୃଶ୍ୟ ପ୍ରାଚୀର । ତଳେ ଧାଡ଼ି ଧାଡ଼ି ରଂଗବେରଂଗର ଫୁଲଶଯ୍ୟା । ଅସଂଖ୍ୟ ରଂଗୀନ୍ ପକ୍ଷୀ ଉଡ଼ି ବୁଲୁଛନ୍ତି ନିଶଙ୍କ ଚିତ୍ତରେ । ଦଳଦଳ ସୁନ୍ଦର ସୁନ୍ଦର ଚିତ୍ରବିଚିତ୍ର ପଶୁ ନିର୍ଭୟରେ ଚରୁଛନ୍ତି ଉପତ୍ୟକାଟିର ଶୋଭାକୁ ବହୁଗୁଣିତ କରି । ଅଦୂରରେ ଝରଣାଟିଏ କୁଳୁକୁଳୁ ତାନରେ ବହିଯାଉଛି ତଳକୁ । ଶତ ବୈଦୁର୍ଯ୍ୟରେ ଉଦ୍ଭାସିତ ହେଉଛନ୍ତି ଧାଡ଼ି ଧାଡ଼ି ସୂର୍ଯ୍ୟସ୍ନାତ ପର୍ବତମାଳା । ସତେ ଯେପରି ଆଉ ଗୋଟିଏ ଦ୍ୱିତୀୟ ପୃଥିବୀ । ଐଶ୍ୱର୍ଯ୍ୟମୟୀ । ଅପରୂପା ।

ଗୋଟେ କଥା ତାଙ୍କୁ ଆଚମ୍ବିତ ଲାଗୁଥିଲା । ଅନେକଗୁଡ଼ିଏ ଶିଶୁ ଖେଳୁଥିଲେ ପଶୁପକ୍ଷୀ, ବୃକ୍ଷଲତା, ଫୁଲଫଳ ସହିତ । ଏହି ଶିଶୁମାନଙ୍କ ମଧ୍ୟରେ ଅଧିକାଂଶ ଥିଲେ କନ୍ୟା । କିନ୍ତୁ କେହି ଜଣେ ହେଲେ ବୟସ୍କ ଲୋକ ତାଙ୍କ ଆଖିରେ ପଡୁ ନଥିଲେ । ଏପରିକି ତାଙ୍କ ବାପା ମା' ମଧ୍ୟ ଦେଖିବାକୁ ମିଳୁ ନଥିଲେ । କିଏ ଏମାନଙ୍କର ଯତ୍ନ ନେଉଛି ତା'ହେଲେ ? କି ବିଚିତ୍ର କଥା ! ସିଦ୍ଧାର୍ଥ ମନେ ମନେ ପ୍ରଶ୍ନ କଲେ । ଏତେ ସୁନ୍ଦର ଉପତ୍ୟକାଟିରେ କେହି ଜଣେ ହେଲେ ବଡ଼ ମଣିଷ ନାହାନ୍ତି କେମିତି ? ତେବେ ଏତେଗୁଡ଼ିଏ ମାନବଶିଶୁ ତେବେ ଆସିଲେ କେଉଁଠୁ ? କେଉଁ ଗ୍ରହ ଗ୍ରହାନ୍ତରରୁ ? ଅକସ୍ମାତ୍ ତ ଏମାନେ ଆଉ ଶୂନ୍ୟରୁ ଖସିପଡ଼ି ନାହାନ୍ତି ? ଏମାନଙ୍କ ବାପା ମା' ଗଲେ କୁଆଡ଼େ ? ତା'ହେଲେ ଏ ଶିଶୁମାନେ କ'ଣ ବାସ୍ତବରେ ମାନବଶିଶୁ ନୁହନ୍ତି ! କୌଣସି ମାୟାବୀର ଛଳନା ରୂପ ? ଏଠି ତ ସବୁକିଛି ପୃଥିବୀ ପରି ଭରପୂର ରହିଛି । କେବଳ ଏଇ ବୈଚିତ୍ର୍ୟ ବ୍ୟତୀତ । ତେବେ ଏ ମାନବଶିଶୁ କେଉଁ ଗ୍ରହରୁ ଆସିଲେ । ମଣିଷ ସୃଷ୍ଟିର

ସମ୍ଭାବନା ତ ଏଠି ପରିପୂର୍ଣ୍ଣ ଅଛି । ବୟସ୍କମାନେ ତେବେ ଗଲେ କୁଆଡ଼େ ! ସିଦ୍ଧାର୍ଥ ଯେମିତି ଏକ ବିରାଟ ଗୋଲକଧନ୍ଦା ଭିତରେ ପଶିଯାଇଥିଲେ ।

ସିଦ୍ଧାର୍ଥ ବିଚଳିତ ହୋଇପଡ଼ିଲେ । କ'ଣ କରିବେ କିଛି ସ୍ଥିର କରିପାରିଲେ ନାହିଁ । ଏତିକିବେଳେ ଖେଳୁଥିବା ଶିଶୁମାନେ ନିଜ ନିଜ ଖେଳ ଛାଡ଼ି ଘେରିଗଲେ ସିଦ୍ଧାର୍ଥଙ୍କୁ । ପିଲାଗୁଡ଼ିଏ ଏକ ଅବୋଧ ଭାଷାରେ କିଛି କହୁଥିଲେ ସିଦ୍ଧାର୍ଥଙ୍କୁ । ଯଦିଓ ସେ ଭାଷାର ଅର୍ଥ ବୁଝିପାରୁ ନଥିଲେ ସିଦ୍ଧାର୍ଥ, ତେବେ ସେମାନଙ୍କ ମୁଖଭଂଗୀରୁ ଏତିକି ବୁଝିଲେ ଯେ, ପିଲାମାନେ ଯେପରି କୌଣସି କାରଣରୁ ନିର୍ବାସିତ । ଯେଉଁମାନଙ୍କ ପିତାମାତା ଆଉ କେଉଁ ଗ୍ରହରେ ରହିଯାଇଛନ୍ତି । କେହି ଗୋଟେ ଅଦୃଶ୍ୟ ବ୍ୟକ୍ତି ଏମାନଙ୍କୁ ନେଇଆସିଛି ଏଠାକୁ । ଏମାନଙ୍କର ଏଠି କିଛି ଅସୁବିଧା ନାହିଁ, ଖାଇବା, ପିଇବା, ଖେଳିବା ସବୁଥିରେ ପ୍ରାଚୁର୍ଯ୍ୟ ଭିତରେ ଥାଇ ବି ସେମାନେ ଯେପରି ନିଃସ୍ୱ, ରିକ୍ତ !

ସିଦ୍ଧାର୍ଥ ସେମାନଙ୍କୁ ଆଶ୍ୱାସନା ଦେବା ପାଇଁ ଚାହିଁଲେ । କିନ୍ତୁ ପିଲାମାନେ ତ ତାଙ୍କ ଭାଷା ଜାଣନ୍ତି ନାହିଁ । ତେବେ କେଉଁ ଭାଷାରେ ସେ ପିଲାମାନଙ୍କ ପାଖରେ ନିଜ ହୃଦୟର ଶ୍ରଦ୍ଧା ଓ ଭାବକୁ ପ୍ରକାଶ କରିବେ । ନିଜ ସ୍ନେହ, ସମ୍ବେଦନ ଜଣାଇବେ ? ସେ ବିଚଳିତ ହୋଇପଡ଼ିଲେ । ତାଙ୍କୁ କୌଣସି ଉପାୟ ଦିଶୁ ନଥିଲା । ସେ ବିଷଣ୍ଣ ହୋଇ ଗୋଟିଏ ବଡ଼ ଗଛମୂଳେ ବସିପଡ଼ିଲେ । ଏତିକିବେଳେ ଜଣେ ଛଅ ସାତ ବର୍ଷର ଝିଅଟିଏ ଆସି ନିଜ ଭାଷାରେ କିଛି କହିବାକୁ ଚେଷ୍ଟା କଲା । କିନ୍ତୁ ସିଦ୍ଧାର୍ଥ କିଛି ବୁଝିପାରୁ ନଥିଲେ । ପରେ ନିରାଶ ହୋଇ ପିଲାଟି ତାଙ୍କ ପିଠିରେ ନଦି ହେଲା । ତାଙ୍କ ଦି ଗାଲରେ ନିଜ ମୁହଁ ଘଷି ଗେହ୍ଲା ହେଲା । ବାରମ୍ବାର କୋଳରେ ବସି ଯାଉଥିଲା । ସାଙ୍ଗମାନଙ୍କ ପାଖକୁ ଦୌଡ଼ିଯାଇ ସେମାନଙ୍କୁ କିଛି କହୁଥିଲା । ପୁଣି ଅପଲକ ନୟନରେ ସିଦ୍ଧାର୍ଥଙ୍କ ମୁହଁକୁ ଚାହିଁ ହସି ଦେଉଥିଲା । ସେ ଯେମିତି ଅନେକ କିଛି କହିବାକୁ ଚାହୁଁଥିଲା । ତା' ହୃଦୟର ଭାବକୁ ସେ ନାନା ଅଙ୍ଗଭଙ୍ଗୀ ଦ୍ୱାରା ବୁଝାଇ ଦେବାକୁ ଚେଷ୍ଟା କରୁଥିଲା । ତା' ମୁହଁରେ ଆନନ୍ଦର ଆଭା ଉକୁଟି ଉଠୁଥିଲା ।

ସିଦ୍ଧାର୍ଥ ବିମୋହିତ ହୋଇଯାଇଥିଲେ । ପିଲାଟିକୁ ନିଜ ଛାତିରେ ଚାପିଧରି ବାରମ୍ବାର ଚୁମା ଦେବାକୁ ଲାଗିଲେ । ଗୋରା ତକତକ ଛୁଆଟିର ଗାଲ ଦୁଇଟି ରକ୍ତାଭ ହୋଇଉଠିଲା । ତା' ଛାତିର ପ୍ରତ୍ୟେକଟି ସ୍ପନ୍ଦନ ସିଦ୍ଧାର୍ଥଙ୍କ ସ୍ପନ୍ଦିତ ହୃତ୍‌ପିଣ୍ଡରେ ମିଶି ଏକାକାର ହୋଇଯାଉଥିଲା । ତା'ର ଘନକୃଷ୍ଣ କେଶରାଶିରେ ସିଦ୍ଧାର୍ଥ ନିଜର ଅଙ୍ଗୁଳି ଚାଳନା କରୁଥିଲେ । ତା'ର ବେଦନାତୁର କଳା କଳା ଗଭୀର ଆଖି ଦୁଇଟି ଖୁସିରେ ଉଜ୍ଜ୍ୱଳି ଉଠୁଥିଲା । କେହି କାହାକୁ କିଛି କହିପାରି ନଥିଲେ । ଅଥଚ ଏଇ ଛୋଟ ଝିଅଟି ସିଦ୍ଧାର୍ଥଙ୍କ ହୃଦୟରେ ମମତାର ଆସନଟିଏ ଗ୍ରହଣ କରିସାରିଥିଲା । ଠିକ୍ ଏତିକିବେଳକୁ ନିଦଟା ତାଙ୍କର ଭାଂଗିଗଲା ।

କାହିଁକି କେଜାଣି ବାରମ୍ବାର ଏ ସ୍ୱପ୍ନ ଆସେ । ତାଙ୍କ ଶିରାପ୍ରଶିରାରେ ଆନନ୍ଦର ପୁଲକ ଭରିଯାଏ । ଜୀବନର ଯେଉଁସବୁ କାମନା ବାସନା ସୁଦୂରର ମାୟା ବୋଲି ମନେହେଉଥାଏ, ସେ ସବୁକୁ ପ୍ରାପ୍ତିର ପ୍ରାଚୁର୍ଯ୍ୟରେ ପୂର୍ଣ୍ଣ କରିଦିଏ ଏ ସ୍ୱପ୍ନ । ଯାହାକୁ ସକାଳର ସୂର୍ଯ୍ୟାଲୋକ ଦେଇପାରେନି, ତାକୁ କୁହୁକିନୀ ରାତ୍ରି ଆଣି ଭରିଦିଏ ତାଙ୍କ ଆଂଜୁଳାରେ । ଯାକୁ କ'ଣ ପୂରାପୂରି ଅବାସ୍ତବ କହି ହସରେ ଉଡ଼େଇ ଦେଇ ହେବ ? ଯାହା ବି ହେଉ ସ୍ୱପ୍ନ ଦେଖୁଥିବା ସମୟତକ ଗୋଟେ ବିଚିତ୍ର ଆନନ୍ଦର ଉପଲବ୍ଧି ତ ତାଙ୍କୁ ଆଚ୍ଛନ୍ନ କରି ରଖିଥାଏ । ଦିନକୁ ଯଦି ସତ୍ୟ ବୋଲି ବିଶ୍ୱାସ କରିବାକୁ ହେବ, ରାତ୍ରିର ସ୍ଥିତିକୁ ଅସ୍ୱୀକାର କରିହେବ କେମିତି ? ମନେମନେ ଅନେକ ଯୁକ୍ତି ବାଢୁଥିଲେ

ସିଦ୍ଧାର୍ଥ । ନିଜକୁ ନିଜେ ବି ସ୍ୱଗତୋକ୍ତି କଲେ, ଛାଡ଼୍, ଏସବୁ ଯୁକ୍ତିର ମାନେ କ'ଣ ! ସ୍ୱପ୍ନ ତ ସ୍ୱପ୍ନ । ତା'ର ବାସ୍ତବତା ସଂପର୍କରେ ଏତେ ପ୍ରଶ୍ନବାଚୀ କାହିଁକି ! ତେବେ ବାରମ୍ବାର ଏଇ ଗୋଟେ ପ୍ରକାର ସ୍ୱପ୍ନ ସେ ଦେଖୁଛନ୍ତି ଅଧିକାଂଶ ରାତିରେ । ପଚାରିବେ କି କାହାକୁ ଏହାର ଫଳାଫଳ, ଭଲମନ୍ଦ, ପରିଣତି ସଂପର୍କରେ ?

ସିଦ୍ଧାର୍ଥ ବିଛଣା ଛାଡ଼ି ଉଠିଲେ । ବାଥ୍‌ରୁମ୍ ଯାଇ ପରିସ୍ରା କଲେ । ଟେବୁଲ୍ ଉପରୁ ପାଣି ବୋତଲ ଆଣି ଗ୍ଲାସ୍‌ର ଘୋଡ଼ଣି କାଢ଼ି ଗ୍ଲାସେ ପାଣି ଢାଳି ପିଇଲେ । ଓଃ, ତଣ୍ଟିଟା ସତରେ ଭାରି ଅଠା ଅଠା ଲାଗୁଥିଲା । କେତେବେଳୁ ଶୋଷ କଲାଣି କେଜାଣି । ନୀଳିମାଙ୍କ ଦେହାନ୍ତ ହେବା ପରଠାରୁ ସେ ଏ ଘରେ ଏକୁଟିଆ ଶୋଉଛନ୍ତି । ରୋଷେଇବାସ କରୁଥିବା ପିଲାଟି ଦାଣ୍ଡଘରେ ଶୁଏ । ଉପରମହଲାଟା ପୂରାପୂରି ଖାଲି । କେବେ କେମିତି ଝିଅଜ୍ୱାଇଁ ଆସିଲେ ଦିନେ ଓଳିଏ ରହନ୍ତି । ସେଇ କେତେଟା ଦିନ ଯାହା ଗହଳି ଚହଳି ଟିକେ ଲାଗେ । ଘରଟା ପୂରିଉଠେ । ନୂଆ ଜୀବନ ପାଇଲା ପରି ମନେହୁଏ । ଲିଲିର ପୁଅଝିଅ ଦୁହେଁ ପଚାଶ ଥର ତଳ ଉପର ହୋଇ ଘରଟାକୁ କଂପଉଥାନ୍ତି । ସିଦ୍ଧାର୍ଥ ବାରଣ କରି କୁହନ୍ତି– ଆରେ, କେତେବେଳେ ପାହାଚରୁ ପଡ଼ି ଫଡ଼ି ଯିବରେ । ଗୋଡ଼ହାତ ଭାଂଗିବ ।

ସିଡ଼ିବାଡ଼ା ଉପରୁ ବସି ତଳକୁ ଖସୁ ଖସୁ ସିପୁନ କୁହେ– ଅଜା, ଦେଖ ଦେଖ ମୁଁ କେମିତି ସର୍କସ କରୁଛି ।

କହୁ କହୁ ଆଖି ପିଛୁଳାକେ ସେ ସର୍‌କିନା ଆସି ତଳେ ଠିଆ ହୋଇଯାଏ । ସିଦ୍ଧାର୍ଥଙ୍କ ଆଖି ଖୋସି ହୋଇଯାଏ । ମାତ୍ର ଚାରିବର୍ଷ ପୂରିଛି । ଏଡ଼ିକି ବକଟେ ଛୁଆ । ଦେଖ ତା' ନିଆଁଗିଳା ସାହସକୁ, ସିଦ୍ଧାର୍ଥ ଚିତ୍କାର କରି ଉଠନ୍ତି– ହେ ଲିଲି, ଦେଖିଲୁ ତୋ ପୁଅକୁ । ଇଏ ତ ମୋ କଥା ଜମା ଶୁଣୁନି । ଆଣିଲୁ ଦଉଡ଼ିଟେ ମୁଁ ତାକୁ ବାଂଧିଦିଏ ।

ବାପାଙ୍କ ଡାକ ଶୁଣି ଲିଲି ତଳକୁ ଆସି ହସି ହସି ସିପୁନକୁ ଏକପ୍ରକାର ଜୋର୍ କରି କୁଣ୍ଢେଇ ଧରେ । ଏତିକିବେଳେ ସିଦ୍ଧାର୍ଥ ତା' ପାଖକୁ ଆସି କହନ୍ତି– ଦେ ତାକୁ ମତେ ଦେ । ମୁଁ ତାକୁ ଏଇ ଖୁଣ୍ଟରେ ବାଂଧିଦେବି । ଦିନସାରା ଏଇଠି ସେ ବନ୍ଧାହୋଇ ପଡ଼ିଥିବ । କିଏ ତାକୁ ଆଜି ଫିଟେଇବ ମୁଁ ଦେଖିବି ।

ସିପୁନ ମା ପଛରେ ଛିଡ଼ା ହୋଇ ଅଜାଙ୍କୁ ଖତେଇ ହେଉଥାଏ । ସିଦ୍ଧାର୍ଥ ଚଟ୍‌କିନା ପଛପଟକୁ ବୁଲିଯାଇ ସିପୁନ୍‌କୁ ଦୁଇହାତରେ ଧରିନିଅନ୍ତି । ସିପୁନ୍ ଛାଟିପିଟି ହେଉଥାଏ । ତାକୁ କାଖେଇ ନେଇ ବଗିଚା ଆଡ଼େ ଚାଲିଯାଆନ୍ତି । ଲିଲି ପଛରୁ ଡାକୁଥାନ୍ତି– ତାକୁ କାଖରୁ ଓହ୍ଲେଇ ଦିଅ ବାପା । ସେ ଚାଲି ଚାଲି ଯିବ । ଏତେବଡ଼ ଛୁଆଟାକୁ ତମେ କାଖେଇ ପାରିବନି ବାପା । ଏଠି ହେଇଟି ଗୁଡ଼୍‌ଲି କାନ୍ଦିଲାଣି ସିଏ କାଖ ହୋଇଛି ବୋଲି । ତମେ ତାକୁ ଓହ୍ଲେଇ ଦିଅ ତ ।

ସିଦ୍ଧାର୍ଥ ଲିଲିର କଥା ଶୁଣି ନ ଶୁଣିଲା ପରି ବଗିଚା ଆଡ଼େ ଯାଆନ୍ତି । ସିପୁନକୁ ଗଛ ଦେଖେଇ ଚିହ୍ନେଇ ଦିଅନ୍ତି କେଉଁଟା କେଉଁ ଗଛ । କେଉଁଥିରେ କି ଫଳ ଫଳେ । ପ୍ରଜାପତି ଦେଖେଇ ଦେଇ କୁହନ୍ତି ପ୍ରଜାପତି କେମିତି ଜନ୍ମ ନିଏ । କୋଉ କୋଉ ଫୁଲ କେମିତି ଫୁଟେ, ତା'ର ବାସ୍ନା କେମିତି... । ସିପୁନ ଅଜାଙ୍କ କାଖରୁ ଓହ୍ଲେଇପଡ଼ି ପ୍ରଜାପତି ପଛେ ପଛେ ଘୂରିବୁଲେ ।

ସିଦ୍ଧାର୍ଥଙ୍କର ମନେପଡ଼ିଯାଏ ସ୍ୱପ୍ନରେ ଦେଖିଥିବା ସେ ସୁନ୍ଦର ଛୁଆଟିର କଥା । ଆଖି ତାଙ୍କର ଜକେଇ ଆସେ । ଆହା, କେଡ଼େ ସୁନ୍ଦର ଛୁଆଟିଏ । ସତରେ ଯଦି ତାଙ୍କ ପାଖରେ ଏମିତି ଛୋଟ ଛୁଆଟିଏ ଥାନ୍ତା, କେତେ ଖୁସିରେ କଟିଯାଉଥାନ୍ତା ତାଙ୍କର ଏ ବିଡ଼ମ୍ବିତ ସମୟଗୁଡ଼ାକ ।

ଅଥଚ ଆଜି ଜୀବନର ପ୍ରତ୍ୟେକଟି ମୁହୂର୍ତ୍ତ ବିତୁଛି କେବଳ ନିଃସଂଗତାରେ, ଦୀର୍ଘଶ୍ୱାସରେ । ମୃତ୍ୟୁ ତାଙ୍କ ପାଇଁ ଯେତିକି ବାଞ୍ଛିତ ହୋଇଉଠୁଛି, ସେତିକି ସେ ଦୂରେଇ ଯାଉଛି ତାଙ୍କ ପାଖରୁ । ପଞ୍ଚସ୍ତରୀ ବର୍ଷ ଜୀବନ ଜୀଇଁସାରିବା ପରେ ଆଉ କୋଉ ଆବଶ୍ୟକତା ଅଛି ତାଙ୍କର ! କାହା ପାଇଁ ସେ ଲୋଡ଼ା ଯେ ବଂଚିବାର ଆଗ୍ରହ ଆଉ ଆସିବ । ଆଗ କାଳର ଲୋକେ ଜୀବନର ଅର୍ଥ ସତରେ କେତେ ଭଲ ଭାବରେ ବୁଝିଥିଲେ । ସେଇଥିପାଇଁ ବାନପ୍ରସ୍ଥ ବ୍ୟବସ୍ଥାଟା ପ୍ରଚଳିତ କରିଥିଲେ । ଯାହା ବି ହେଉ ଆଜିକାଲି ଯେଉଁ ଜରାନିବାସ ହେଉଛି ସେ ବି ଗୋଟେ ଦୃଷ୍ଟିରୁ ଭଲ । ଅନ୍ତତଃ କିଛି ନହେଲେ ବି କିଛି ସାଙ୍ଗସାଥୀ ତ ମିଳିବେ ସେଠି । ସମୟ ତ ଆଉ ଏତେ କଣ୍ଟକିତ ମନେ ହେବନି । ଏପରି ନିଃସଙ୍ଗ, ଅବାଞ୍ଛିତ ଜୀବନର ଅର୍ଥ କ'ଣ ? କିନ୍ତୁ ସେ ଏ ଘରର ମୋହ ଛାଡ଼ିପାରୁଛନ୍ତି କୋଉଠି ? କାଳେ ପୁଅ ଝିଅଙ୍କ ସମ୍ମାନରେ ଆଞ୍ଚ ଆସିବ, ଲୋକେ ନିନ୍ଦା କରିବେ– ଏଇ ଭୟରେ ତ ସେ ବୁଢ଼ା ଯଖ ପରି ଜଗିରହିଛନ୍ତି ଏ ଘରଟାକୁ । ଦୁର୍ବିସହ ଜୀବନ ବଂଚୁଛନ୍ତି ଏକା ଏକା । ତାଙ୍କ ମୃତ୍ୟୁ ପରେ ଏ ଘରର ଅବସ୍ଥା କ'ଣ ହେବ, କିଏ ଜାଣେ !

ଖୁବ୍ ବେଶୀରେ ଦିନ ଚାରିଟା ରହି ଲିଲି ଫେରିଯାଏ । ଯେମିତି କେଉଁ ଇଲାକାରୁ ନୂଆ ଜୀବନର ସନ୍ଦେଶ ନେଇ କିଏ ଆସିଥିଲା ତାଙ୍କୁ ବଂଚିବାର ପ୍ରେରଣା ଭେଟି ଦେବାକୁ । ସିପୁନ ଓ ଗୁଡ଼୍ଲି ସାଂଗରେ ସେ ଦିନ କେଇଟା ବେଶ୍ ଆନନ୍ଦରେ ବିତିଯାଏ । ଲିଲି ଚାଲିଗଲା ପରେ ଘରେ ଶ୍ମଶାନର ନୀରବତା ରାଜୁତି କରେ । ଦୁଇଟି ମଣିଷ ଚଳପ୍ରଚଳ ହେଉଥିଲେ ବି ଏତେବଡ଼ ଘରଟାକୁ ମୃତ୍ୟୁର ଶୀତଳତା ଯେମିତି ଗ୍ରାସ କରି ରଖିଥାଏ । କେବେ କେମିତି ଅକାଳେ ସକାଳେ କୁଣିଆ ମଇତ୍ର ଆସନ୍ତି । ଟେକାପାଣି ଆଂଜୁଳାକ ପରି କିଛି ସମୟ ପରେ ପୁଣି ସବୁ ଶୁଷ୍କ, ନୀରସ ହୋଇଯାଏ ।

ସିଦ୍ଧାର୍ଥ ଆଲମିରା ଖୋଲିଲେ । ଥାକଥାକ ହୋଇ ଥୁଆ ହୋଇଥିଲା କୋଉକାଳର ଆଲବମ୍ । ଗୋଟିଏ ଗୋଟିଏ ସବୁ ଆଲବମ୍ କାଢ଼ି ଖଟ ଉପରେ ରଖିଲେ । ତକିଆଟାକୁ ପିଠି ପାଖକୁ ଭାରା ଦେଇ ସଳଖି ହୋଇ ବସିଲେ । ଅନେକଦିନ ତଳର ବହୁ ପୁରୁଣା ଫଟୋ ସବୁ । ନୂଆ ପୁରୁଣା । ତାଙ୍କ ବାହାଘର ସମୟର ଫଟୋଗୁଡ଼ିକ ରଂଗଛଡ଼ା ବିବର୍ଣ୍ଣ ଦିଶିଲାଣି । ମାଟିଆ ରଂଗର ଆସ୍ତରଣଟେ ଢାଂକିହୋଇ ଆସିଲାଣି । ବାହାଘର ବେଳକୁ ନୀଳିମାଙ୍କ ବୟସ ଥିଲା ମାତ୍ର ଉଣେଇଶି । ଉଇଁ ଆସୁଥିବା ପ୍ରଭାତସୂର୍ଯ୍ୟ ପରି ସରମବୋଳା ମୁହଁରେ ଫୁଟି ଉଠୁଥିଲା ତାରୁଣ୍ୟର ବିମଳ ଆଭା । ଯୌବନ ଲହଡ଼ା ଭାଂଗୁଥିଲା ତନୁ ବଲ୍ଲରୀରେ । ସିଦ୍ଧାର୍ଥଙ୍କ ପାଖକୁ ଲାଗି ଲାଜ ଲାଜ ହୋଇ ଗୋଟେ ଚଉକିରେ ବସିଥିଲେ ନୀଳିମା । ନୀଳିମା ଆଜି ସ୍ମୃତିର ଫୁଲବନରେ ଝରା ଶେଫାଳିର ମିଠା ମିଠା ମହକ । ଯାହାକୁ ଧରି ରଖିହୁଏନା କି ଭୁଲି ବି ହୁଏନା । ତାଙ୍କ ସମଗ୍ର ସତ୍ତାକୁ ଯିଏ ସୁରଭିତ କରୁଥାଏ ଅଲକ୍ଷ୍ୟରେ । ସଂଗୋପନରେ ।

ଆଉ ଗୋଟିଏ ଆଲବମ୍‌ର ପୃଷ୍ଠା ଓଲଟେଇଲେ ସିଦ୍ଧାର୍ଥ । ଏଇଟି ଥିଲା ଚନ୍ଦନ ଓ ଲିଲିର ପିଲାଦିନର ଫଟୋ ଆଲବମ୍ । ଚନ୍ଦନ ଅଢ଼େଇ ମାସର ହୋଇଥାଏ । ଗାଧୋଇ ଦେଇସାରି ତାକୁ ବିଛଣାରେ ଲଂଗଳା ଶୁଆଇ ଦେଇଥାନ୍ତି ନୀଳିମା । ଠିକ୍ ସେଇ ଅବସ୍ଥାରେ ଫଟୋଟିଏ ଉଠାଇଥିଲେ ସିଦ୍ଧାର୍ଥ । ବଡ଼ହେଲା ପରେ ତାକୁ ଦେଖି କେତେଥର ଚିରିବ ବୋଲି ବସିଛି ଚନ୍ଦନ । ଫଟୋ ଦେଖି ଲାଜରା ହେଇଯାଏ । ଲିଲି ଭାଇକୁ ଚିଡ଼ାଏ— ଭାଇ ଏ କାହା ଫଟୋ !

ଚନ୍ଦନ ମୁହଁ ଲୁଚେଇ ଉଠିଯାଏ । ମା' ବେକରେ ଝୁଲିପଡ଼ି କହେ– ମା', ଏ ଫଟୋଟା କାଇଁ ରଖିଚୁ କହିଲୁ ? ଦେ ମୁଁ ତାକୁ ଚିରିଦେବି ।

ନୀଳିମା ପୁଅକୁ କୋଳରେ ଜାକିଧରି କୁହନ୍ତି– ଆରେ, ଏଇଟା ପରା ମୁଁ ରଖିଚି ମୋ ନାତିକି ଦେଖେଇବି । ପିଲାଦିନେ ତା' ବାପା କେମିତି ହେଇଥିଲା । ଏଇଟା କ'ଣ ତୋ ଭଳି ବୁଢ଼ା ପୁଅର କି ! ଏଇଟା ପରା ମୋ କୁନି ପୁଅର ।

ଚନ୍ଦନ ମା'କୁ ଆହୁରି ନିବିଡ଼ ଭାବରେ କୁଣ୍ଢେଇ ଧରେ । ସିଦ୍ଧାର୍ଥ ଦୂରରୁ ଉପଭୋଗ କରୁଥାନ୍ତି ଏ ଦୃଶ୍ୟ । କୁଆଡ଼େ ଗଲା ସେ ଦିନ ସବୁ ? କିଏ ଲୁଟିନେଲା ତାଙ୍କର ଏ ସୁଖଶାନ୍ତିର କୁବେର ଭଣ୍ଡାରକୁ !

ତାଙ୍କ ନିଜର ଭାଇଭଉଣୀ ମିଶି ଛଅଜଣ ଥିଲେ । ବାପାଙ୍କ ଦେହାନ୍ତ ବେଳକୁ ପୁଅ ବୋହୂ, ଝିଅଜ୍ୱାଇଁ, ନାତିନାତୁଣୀ ମିଶି ପାଖାପାଖି ତିରିଶ ଜଣ ଚାରିପାଖରେ ଘେରି ବସିଥିଲେ । ଏକାଅଶୀ ବର୍ଷ ଜୀବନକାଳ ଭିତରେ ବାପା ଦିନେ ଏକୁଟିଆ ହୋଇନଥିଲେ । କେଇମାଣ ଜମି ବା ଥିଲା ତାଙ୍କର ! ସେଇଥିରେ ଶାଗମୁଗ କରି ବାପା ଛଅଛଅଟା ଛୁଆଙ୍କୁ ମଣିଷ କରିଥିଲେ । ବାହାଡୋଳା କରିଥିଲେ । ବନ୍ଧୁବାନ୍ଧବ ସଂଖୋଳି ଥିଲେ । ଭାର ବେଭାର ଦେଇଥିଲେ । ଅଭାବ ଅନଟନ ଭିତରେ କିନ୍ତୁ ଦିନେ ତାଙ୍କୁ ଅସୁଖୀ ହେବାର କେହି ଦେଖି ନାହାନ୍ତି । କେଡ଼େ ଶାନ୍ତି ସନ୍ତୋଷରେ ତାଙ୍କ ଦିନଗୁଡ଼ାକ ବିତିଯାଉଥିଲା । କାହା ବିରୋଧରେ ଅଭିଯୋଗ ନଥିଲା କି ଅଭିମାନ ନଥିଲା । ପିଲାଏ ମଣିଷ ହେଇ ଦାଣ୍ଡରେ ଛିଡ଼ା ହୁଅନ୍ତୁ– ଏତିକି ଥିଲା ତାଙ୍କ ସାରା ଜୀବନର ତପସ୍ୟା । ନିଜ ଜୀବଦ୍ଦଶାରେ ଏତିକି ପ୍ରାପ୍ତିର ପ୍ରାଚୁର୍ଯ୍ୟ ଈଶ୍ୱର ତାଙ୍କ ଦୁଇ ଆଂଜୁଳାରେ ଭରି ଦେଇଥିଲେ ।

ଅଥଚ ସିଏ ! ଜୀବନର ଅପରାହ୍ନରେ କେଡ଼େ ହତଭାଗା । ଯିଏ କେବଳ ମୃତ୍ୟୁକୁ ପ୍ରତୀକ୍ଷା କରି ବସିଛି ଗଭୀର ଉତ୍କଣ୍ଠାରେ । ଅର୍ଥ, ପ୍ରତିପତ୍ତି, କ୍ଷମତା, ପ୍ରାଚୁର୍ଯ୍ୟ କେଉଁଥିରେ ସେ ଉଣା ଥିଲେ । କିନ୍ତୁ ଆଜି ଏସବୁ କ'ଣ ହେଇପାରୁଚି, ସେ ଯାହା ଚାହୁଁଛନ୍ତି, ଯାହାକୁ ତାଙ୍କ ପ୍ରାଣ ଅଣ୍ଟାଳି ହେଉଛି ନୀରବରେ । ଗଣ୍ଡେ ଖାଇ ଦଣ୍ଡେ ଜୀଇଁବା ପାଇଁ ସେଇ ଚାକର ପିଲାଟି ଉପରେ ଭରସା କରି ପଡ଼ିରହିଛନ୍ତି । ଯିଏ ତାଙ୍କ ଅବଶିଷ୍ଟ ଆୟୁଷର ଏକମାତ୍ର ସାହାଭରସା ।

ସିଦ୍ଧାର୍ଥଙ୍କ ଆଖିରୁ ଲୁହ କେଇବୁନ୍ଦା ଝରିବ ଝରିବ ହେଉଥିଲା । ନିଷ୍ପ୍ରଭ କୋଟରଗତ ଆଖିର ଦୁଇକୋଣରେ ଝୁଲି ରହିଲା । ପୁରୁଣା ଆଲବମ୍ ସବୁଗୁଡ଼ାକ ଖୋଲି ଦେଖିବାକୁ ଆଉ ତାଙ୍କର ସାହସ ହେଲା ନାହିଁ । ସେ ଆଲମିରା ଖୋଲି ସେ ସବୁକୁ ରଖିଦେଲେ । ଥାକରୁ ଗୋଟେ ବଡ଼ ପ୍ୟାକେଟ୍ ଥିବା ଫାଇଲ୍ ଖସିପଡ଼ିଲା । ତାକୁ ଖୋଲିଲେ ସିଦ୍ଧାର୍ଥ । ଚନ୍ଦନ ଓ ଲିଲିର ପିଲାଦିନର ଅନେକଗୁଡ଼ିଏ ସାର୍ଟିଫିକେଟ୍ । କେଉଁଠି ଡିବେଟ୍ କଂପିଟିସନ୍‌ରେ, କେଉଁଠି କୁଇଜ୍‌ରେ, କେବେ ପ୍ରବଂଧ ପ୍ରତିଯୋଗିତାରେ, କେତେ ରକମର ଥାକ ଥାକ ସାର୍ଟିଫିକେଟ୍ ।

କଥା କଥାକେ ଲିଲି ବାଦ କରୁଥିଲା ଭାଇ ସାଂଗରେ । ଭାଇ ବେଶୀ କପ୍ ଆଣୁଛି ବାପା । ମୁଁ କାଇଁକି ଏତିକି ପାଇବି । ସିଦ୍ଧାର୍ଥ ଚନ୍ଦନ ହାତରୁ କପ୍ ଆଣି ଲିଲିକୁ ଦେଇ କହୁଥିଲେ– ଏତେ କପ୍ ଭାଇର କ'ଣ ହେବ । ନେ ସବୁ ତୋର । ଲିଲି ଖୁସିହୋଇ ସବୁ କପ୍‌କୁ ଗୋଟେଇ ପୁଟେଇ ନେଇ କାଚ ଆଲମିରାରେ ସଜାଡ଼ି ରଖୁଥିଲା । ଅତୀତର ନିର୍ମୋକ ପରି ସ୍ମୃତିର ସେ ମଧୁର ଦିନଗୁଡ଼ାକ ତାଙ୍କ ଚେତନାରେ ସତେକି ମେଘ ମହ୍ଲାରର ଝଂକାର ତୋଳୁଥିଲା । ଆଜି ଚନ୍ଦନ ଯୋଜନା ଯୋଜନ ମାଇଲି ଦୂରରେ । ଏ ଦୂରତ୍ୱ ସ୍ଥାନର କି କାଳର ନୁହେଁ । କେବଳ

ହୃଦୟର ଦୂରତ୍ୱ । ଯାହା ଅଲଂଘନୀୟ । ଶତଚେଷ୍ଟା ସତ୍ତ୍ୱେ ଯେଉଁ ଦୂରତ୍ୱକୁ ଆଉ ସେ ଡେଇଁ ଯାଇପାରୁ ନାହାନ୍ତି ହନୁମାନର ସପ୍ତସାଗର ପାରିହେବା ପରି । ତାକୁଇ ଝୁରି ଝୁରି ଦିନଟିଏ ଯୁଗଟିଏ ପରି ବିତୁଛି । ନୀଳିମା କେଡ଼େ ଭାଗ୍ୟବତୀ ତୁମେ ! ସ୍ୱାମୀ ଆଗରେ ଅହି ସୁଲକ୍ଷଣୀ ହୋଇ ଚାଲିଗଲ । ଏ ଦୁଃଖ ଭୋଗ କରିବାକୁ ଆଜି ତୁମେ ନାହଁ ।

ନୀଳିମାଙ୍କ ବିନା ସାହଚର୍ଯ୍ୟରେ ଗୋଟିଏ ଦିନ ବଂଚିବା ଯାହା ପାଖରେ ଅସମ୍ଭବ ଥିଲା, ଆଜି ସେ ସଂପୂର୍ଣ୍ଣ ଏକା ଏକା କେମିତି ବଂଚିପାରିଛନ୍ତି—ଯାଠୁ ବଳି ବିଡ଼ମ୍ବନା ଆଉ କ'ଣ ଥାଇପାରେ ! ସିଦ୍ଧାର୍ଥ ମନେମନେ ମହାକାଳକୁ ଅଭିଶାପ ଦେଉଥିଲେ । କେମିତି କିଛି ବିଧି ବ୍ୟବସ୍ଥା ରଖିନଥାନ୍ତା ବିଧାତା—ଏକାଠି ଏକା ସମୟରେ ସ୍ୱାମୀ ସ୍ତ୍ରୀ ଦୁହେଁ ସ୍ୱଇଚ୍ଛାରେ ସେପାରକୁ ଚାଲିଯାଇପାରନ୍ତେ ! କେଡ଼େ ମଂଗଳ ହୁଅନ୍ତା ! ଏପରି ଦୁର୍ବିସହ ନିଃସଙ୍ଗ ଜୀବନ– ସେ ଅନୁଭବ ଟିକେ ଯଦି ଥାନ୍ତା, ତେବେ ମହାକାଳ କ'ଣ ଏତେ ନିଷ୍କରୁଣ ହୋଇପାରିଥାନ୍ତା ? ସତକୁ ସତ ସ୍ୱପ୍ନର ସେ ନୀଳ ଉପତ୍ୟକାକୁ ଯଦି ସେ ଚାଲିଯାଇ ପାରନ୍ତେ– ଆଃ କେତେ ଭଲ ହୁଅନ୍ତା !

ଏହା ଭିତରେ ବିତିଯାଇଥିଲା କିଛି ଦିନ । ଆଗରୁ ଦେଖିଥିବା ସେ ସ୍ୱପ୍ନ ସ୍ଥିର ଚିତ୍ର ପରି ତାଙ୍କ ହୃଦୟରେ ଥାପି ହୋଇଯାଇଥିଲା । ଝିଅଟିର ମୁହଁକୁ ସେ ଆଦୌ ଭୁଲିପାରୁ ନଥିଲେ । କେଡ଼େ ସୁନ୍ଦର ଗୁଲୁଗୁଲିଆ ଚେହେରା । ଆହା, ସେଇ ଛୁଆଟି ତାଙ୍କୁ ମିଳିଯାଆନ୍ତାନି । ସେ ଏ ବୁଢ଼ା ବୟସରେ ବି ତା'ର ଯତ୍ନ ନିଅନ୍ତେ । ତା ସାଂଗରେ ଖେଳନ୍ତେ । ତାକୁ କାହାଣୀ କହନ୍ତେ । ତାଙ୍କ ସାରା ଜୀବନର ଅନୁଭୂତି ତାକୁ ଶୁଣାନ୍ତେ । ତା'ର ଋମ୍‌ଝୁମ୍ ଚାଲିରେ ଏ ଶୂନ୍ୟ ଘରଟା ଛନ୍ଦମୟ ହୋଇଉଠନ୍ତା । ତା'ର ସଂଗୀତମୟ ମଧୁର କଥା ଶୁଣୁଶୁଣୁ ତାଙ୍କ ପ୍ରାଣ ପୂରି ଉଠନ୍ତା । ତାଙ୍କର ଜରାଗ୍ରସ୍ତ ଶରୀରରେ ଜୀବନର ନୂଆ ସ୍ପନ୍ଦନ ଭରିଦିଅନ୍ତା–ସେ ଝିଅଟି ।

ସିଦ୍ଧାର୍ଥଙ୍କର ଭାରି ଇଚ୍ଛା ହେଲା, ସେ ଆଉ ଥରେ ଦେଖନ୍ତେ ନାଇଁ ସେ ଦୃଶ୍ୟ ! ସେ ଦୃଶ୍ୟକୁ ସେ ଆଦୌ ଭୁଲିପାରୁ ନଥିଲେ । ଏଭଳି ଏକ ଅବାସ୍ତବ ବିଚିତ୍ର ଅନୁଭୂତି ତାଙ୍କ ଚେତନାକୁ ମଥିତ କରୁଥିଲା ।

କିଛିଦିନ ପରେ ପୁଣି ସେଇ ସ୍ୱପ୍ନ । ସେ ପହଞ୍ଚି ଯାଇଛନ୍ତି ସେଇ ନୀଳ ଉପତ୍ୟକାରେ । ସାରା ଉପତ୍ୟକାଟିରେ ସୁନେଲି ରଂଗର ଆଭା ଉକୁଟି ଉଠୁଛି । କେଉଁ ଦିଗରୁ ଏ ଆଲୋକର ଧାରା ଛୁଟୁଛି ତାହା ସେ ଅନୁମାନ କରିପାରୁ ନଥିଲେ । ତଥାପି ତାଙ୍କୁ ସବୁକିଛି ଜ୍ୟୋତିର୍ମୟ ଦିଶୁଥିଲା । ତାଙ୍କ ଶରୀରରେ ଗୋଟେ ବିଚିତ୍ର ଶିହରଣ ସେ ଅନୁଭବ କରୁଥିଲେ ।

ସିଦ୍ଧାର୍ଥଙ୍କୁ ଦେଖୁ ଦେଖୁ ସବୁ ପିଲାଗୁଡ଼ିକ ଘେରିଗଲେ । ସେମାନେ ବେଶ୍ ପ୍ରଫୁଲ୍ଲ ଦିଶୁଥିଲେ । କେଡ଼େ ସୁନ୍ଦର ସଜେଇ ହେଇଥିଲେ ବଣ ଫୁଲରେ । ସିଦ୍ଧାର୍ଥଙ୍କୁ ସ୍ୱାଗତ ଜଣାଇବା ପାଇଁ ଯେମିତି ସେମାନେ ଆଗରୁ ପ୍ରସ୍ତୁତ ହୋଇଥିଲେ । ଏଥର ସିଦ୍ଧାର୍ଥ ସେମାନଙ୍କ ମୁଖର ଭଂଗୀ ଓ ତୁଣ୍ଡର କଥାକୁ ମିଳାଇ ଅନୁମାନ କରି ବୁଝିବାକୁ ଚେଷ୍ଟା କଲେ ସେମାନଙ୍କର ଭାଷା । ସେଇ ଛଅ ସାତ ବର୍ଷର ଝିଅଟି ବି ସେମାନଙ୍କ ମେଳରେ ଥିଲା । ସେ ଗୋଟେ ସଫେଦ ରଂଗର ପୋଷାକ ପିନ୍ଧିଥିଲା । ଯୋଉଟାକି ତା' ଦେହର ରଂଗ ସହିତ ପୂରାପୂରି ମିଶିଯାଉଥିଲା । ମୁଣ୍ଡରେ ସୁନ୍ଦର ଫୁଲ କେଣ୍ଡାଏ ଖୋସା ହୋଇଥିଲା ।

ଏଥର ସେ ଆସି ସିଧାସଳଖ ସିଦ୍ଧାର୍ଥଙ୍କ ଦୁଇ ହାତକୁ ନିଜ ହାତରେ ଜାବୁଡ଼ି ଧରିଲା । ବୋଧହୁଏ ସେ 'ହାଏ' କହିଲା ଆଉ ସିଦ୍ଧାର୍ଥଙ୍କୁ 'ଜେଜେବାପା' ବୋଲି ସମ୍ବୋଧନ କଲା । ସିଦ୍ଧାର୍ଥଙ୍କ ଓଠରେ ଚେନାଏ ହସ ଫୁଟି ଉଠିଲା । ଚନ୍ଦନ ସହିତ ସଂପର୍କ ନାହିଁ ଅନେକଦିନୁ ।

ତା'ର ଠିକଣା ସୁଦ୍ଧା ତାଙ୍କୁ ଜଣା ନାହିଁ । ଚନ୍ଦନର ପୁଅଝିଅ ଛଡ଼ା ଆଉ କିଏ ତାଙ୍କୁ 'ଜେଜେ ବାପା' ବୋଲି ସମ୍ବୋଧନ କରନ୍ତା ? ସେ ସୁଖରୁ ସେ ବଂଚିତ । ଅଥଚ ଝିଅଟି ତାଙ୍କୁ ଏପରି ସମ୍ବୋଧନ କରି ତାଙ୍କ ଭିତରର ମଞ୍ଜଟାକୁ ଯେପରି ଦୋହଲାଇ ଦେଲା । ସମସ୍ତ ଅସ୍ତିତ୍ୱକୁ ଯେପରି ସଜଳ କରିଦେଲା । ଆଖି ତାଙ୍କର ଜକେଇ ଆସିଲା । ସେ ଝିଅଟିକୁ କୋଳକୁ ନେଇ କହିଲେ– ତୁମେମାନେ କିଏ ? କାହିଁକି ଆସି ଏଠି ଏହି ନିର୍ଜନ ଉପତ୍ୟକାରେ ରହିଛ ? ତୁମମାନଙ୍କର ବାପା ମା' କହାନ୍ତି ? ଏଠି ତୁମର ଦେଖାଶୁଣା କିଏ କରୁଛି ? କିଏ ତୁମର ଯତ୍ନ ନେଉଛି ? ତମ ଭିତରୁ ଅନେକ ଝିଅ କାହିଁକି ? ମୁଁ କିଛି ବୁଝିପାରୁନି ଏ ରହସ୍ୟ ।

ବୋଧହୁଏ ଝିଅଟି ତାଙ୍କ ଭାଷା ବୁଝିବାକୁ ଚେଷ୍ଟା କରୁଥିଲା । ଝିଅଟି କାନ୍ଦକାନ୍ଦ ହୋଇ କହିଲା– ଜାଣିଛ ଜେଜେବାପା, ଆମେ ସବୁ ଅବାଞ୍ଛିତ ଶିଶୁକନ୍ୟା । ଦୁନିଆର ଆଲୋକ ଦେଖିବା ପୂର୍ବରୁ ଆମ ନିଜ ବାପା ମା' ଆମକୁ ଏତେ ଦୂରକୁ ପଠେଇ ଦେଇଛନ୍ତି । ଆମକୁ ହତ୍ୟା କରାଯାଇଛି ଜେଜେବାପା ! ଭ୍ରୂଣହତ୍ୟା । ଆମ ସମସ୍ତଙ୍କର ହତ୍ୟା । ଆମଭଳି କନ୍ୟା ସନ୍ତାନ ଜନ୍ମ ହୋଇଥିଲେ ସେମାନଙ୍କ ଜୀବନ କାଳେ ଦୁର୍ବିସହ ହେଇଯାଇଥାନ୍ତା । ସମାଜରେ ସେମାନଙ୍କ ପ୍ରତିଷ୍ଠା କମିଯାଇଥାନ୍ତା । ତୁମେ କୁହ ଜେଜେବାପା କ'ଣ ପାଇଁ ତେବେ ସେମାନେ ଆମ ଗର୍ଭସଂଚାରର କାରଣ ହେଉଥିଲେ । ଆମେମାନେ କ'ଣ ସତରେ ଆମ ବାପାମା'ଙ୍କ ପାଇଁ ଏତେ ଅବାଞ୍ଛିତ ? ସେମାନଙ୍କ ପାଇଁ ଅମଙ୍ଗଳକର ? ଅଶୁଭଙ୍କର ? ଆମେମାନେ ଜନ୍ମ ହୋଇଥିଲେ ସେମାନଙ୍କୁ କ'ଣ କିଛି ଖୁସି, କିଛି ଆନନ୍ଦ ଦେଇପାରି ନଥାନ୍ତୁ । ଆମକୁ କ'ଣ କେହି ଭଲପାଆନ୍ତି ନାହିଁ– ମା', ବାପା, ସମାଜ, ରାଷ୍ଟ୍ର... କେହି ବି ? ତମେ ବି... ?

ସିଦ୍ଧାର୍ଥ ବୁଝିପାରିଲେ କାହିଁକି ଏ ଉପତ୍ୟକାଟିରେ ଏତେ ଛୋଟ ଛୋଟ ଶିଶୁକନ୍ୟା ରହିଛନ୍ତି । ସେ ଝିଅଟିକୁ ଦୁଇହାତରେ ଆଶ୍ଳେଷି ନେଇ କହିଲେ– ନାଇଁରେ ମା' ମୁଁ ତୋତେ ଭଲପାଏ । ବହୁତ ବହୁତ ଭଲପାଏ । ଏ ବୁଢ଼ା ଜେଜେବାପା ତୁମ ସମସ୍ତଙ୍କୁ ଭଲପାଏ । ତମେମାନେ ସମସ୍ତେ ମୋ ସାଙ୍ଗରେ ଚାଲ । ମୋର ଗୋଟେ ବଡ଼ ଘର ଅଛି । ସେଠି ଆମେ ସମସ୍ତେ ଏକା ସାଂଗରେ ଏକାଠି ରହିବା । ତମର କାହାର କିଛି ଅସୁବିଧା ହେବନି । ମୋର ନିଃସଙ୍ଗ ମୁହୂର୍ତ୍ତଗୁଡ଼ିକ ଖୁସିରେ କଟିବ । ମୁଁ ନିଜକୁ ଭାଗ୍ୟବାନ ମନେକରିବି । ତୁମମାନଙ୍କ ଗହଣରେ ମୋତେ ସ୍ୱର୍ଗସୁଖ ମିଳିବ । ଏଇ ଦେଖ ଜୀବନସାରା ମୁଁ ଯେତିକି ଖୁସି ଯେତିକି ଆନନ୍ଦ ପାଇନଥିଲି, ଆଜି ତୁମମାନଙ୍କ ସାଂଗରେ ରହି ତା'ଠୁ ଅଧିକ ପାଉଛି ।

ଝିଅଟି ତୀକ୍ଷ୍ଣ ଦୃଷ୍ଟିରେ ଥରେ ତାଙ୍କ ମୁହଁକୁ ଚାହିଁଲା । ହୁଏତ ସେ ଏ କଥାର ଆନ୍ତରିକତା କଳନା କରିବାକୁ ଚେଷ୍ଟା କରୁଥିଲା । କିଛି ସମୟ ନିରୀକ୍ଷଣ କରିବା ପରେ ସେ ଭିଜା ଭିଜା କଣ୍ଠରେ କହିଲା– ହଁ ଜେଜେବାପା, ମା' ପେଟର ସେଇ ଅନ୍ଧକାର ଗର୍ଭରେ ଥାଇ ଦିନେ ମୁଁ ସ୍ୱପ୍ନରେ ବିଭୋର ହୋଇଉଠୁଥିଲି । ରାତିରେ ଶୋଇଲାବେଳେ ବାପା ମୋ ମା'ଙ୍କ ଆଗରେ ତାଙ୍କ ପିଲାଦିନର ସ୍ମୃତି ସବୁ କହୁଥିଲେ । କେମିତି ଜେଜେମା' ତାଙ୍କୁ ଗେହ୍ଲା କରୁଥିଲେ । ସେ କେମିତି ଅଝଟ ହେଉଥିଲେ । ତାଙ୍କ ଦେହ ଖରାପ ହେଲେ ଜେଜେମା' କେମିତି ରାତି ରାତି ଅନିଦ୍ରା ରହି ତାଙ୍କୁ ଜଗି ସେବା କରୁଥିଲେ । ତାଙ୍କୁ ସବୁଦିନେ ଗପ ଶୁଣେଇ ଶୁଆଇ ଦେଉଥିଲେ । ଖାଇଲାବେଳେ ଚଢ଼େଇ, ମାଙ୍କଡ଼, ଗୋରୁଗାଈ, ଗଛ, ମାଛ ଦେଖେଇ ଭୁଲେଇ ଭୁଲେଇ ଖୁଆଉଥିଲେ । ତମେ ତାଙ୍କୁ ନେଇ ବଜାର ବୁଲେଇ ଆଣୁଥିଲ । ଏମିତି ଅନେକ କଥା... । ମୁଁ

ସବୁ ଶୁଣିଛି ଜେଜେବାପା । ଦୁନିଆର ଆଲୋକ ଦେଖିଲା ପରେ ଏଇ ସୁଖ ଅନୁଭବ କରିବା ପାଇଁ ମୁଁ ବି ବ୍ୟାକୁଳ ହୋଇଉଠିଥିଲି ଜେଜେବାପା !

ସିଦ୍ଧାର୍ଥଙ୍କ ମନେପଡ଼ିଯାଉଥିଲା ଚନ୍ଦନର ପିଲାଦିନର ମଧୁର ସ୍ମୃତି । ଚନ୍ଦନ ଓ ଲିଲି କେମିତି ତାଙ୍କର ଓ ନୀଳିମାଙ୍କର ସବୁ ସ୍ନେହ ମମତା ନେଇ ବଡ଼ ହେଉଥିଲେ । ଏମାନଙ୍କର ଅଳି ଅଝଟ, ଦୁଷ୍ଟାମି, ସଫଳତା ବିଫଳତା ସବୁକୁ ମଥାର ତିଳକ ପରି ନୀଳିମା ଭାବୁଥିଲେ । ନୀଳିମାଙ୍କ ଜୀବନ, ସୁଖ ସୌଭାଗ୍ୟ ଚନ୍ଦନ ଓ ଲିଲି ପାଖରେ କେନ୍ଦ୍ରୀଭୂତ ହୋଇଥିଲା । ତାଙ୍କ ପାଇଁ ସାରା ବିଶ୍ୱର ଐଶ୍ୱର୍ଯ୍ୟ ଥିଲେ ଏ ଦୁହେଁ । ସିଦ୍ଧାର୍ଥ ସ୍ୱର୍ଗ ଦେଖି ନାହାନ୍ତି ସତ ଅଥଚ ଚନ୍ଦନ ଓ ଲିଲିକୁ ଦେଇ ନୀଳିମାଙ୍କର ବୈକୁଣ୍ଠ ସମାନ ଘରକୁ ଦେଖିଛନ୍ତି । ନିଜର ରକ୍ତ, ମାଂସ, ସ୍ୱେଦ ଦେଇ ନୀଳିମା ଏ ଘର ତିଆରି ଥିଲେ । ବାଲିଘର ପରି ସବୁ ଭୁଷୁଡ଼ି ପଡ଼ିଲା । କୁଆଡ଼େ ଗଲା ସେ ସବୁ ଦିନ । ସମୟ ଯଦି ସେଠି ସ୍ଥିର ହୋଇ ଯାଇଥାନ୍ତା... କେତେ ଭଲ ହୋଇଥାନ୍ତା ! ତାଙ୍କ ଛାତି ଭିତରଟା ଯନ୍ତ୍ରଣାରେ କଟକଟ କଲା । ଯେମିତି କିଏ ଗୋଟେ ବିରାଟ ଶିଳାଖଣ୍ଡ ତାଙ୍କ ଛାତି ଉପରେ ଚାପି ଧରିଛି । ସେ ନିଃଶ୍ୱାସ ପ୍ରଶ୍ୱାସ ନେବାରେ କଷ୍ଟ ଅନୁଭବ କରୁଥିଲେ । ତାଙ୍କୁ ଚାରିଆଡ଼ ଝାପ୍‌ସା ଝାପ୍‌ସା ଦିଶୁଥିଲା । ଦେହଟା ଗୋଟେ ଅବ୍ୟକ୍ତ ବେଦନାରେ ରୂପାନ୍ତରିତ ହୋଇ ଯାଉଥିଲା । ସେ ନିର୍ବାକ୍ ହୋଇ ଚାହିଁ ରହିଥିଲେ ସେ ଝିଅଟିର ମୁହଁକୁ ।

ଝିଅଟି ଟିକେ ଢୋକଗିଳି ଆରମ୍ଭ କଲା– ଜାଣିଛ ଜେଜେବାପା, ମୋ ମା'କୁ ଦେଖିବା ପାଇଁ, ତା' ଓଠର ହସ, ତା' ଢଳଢଳ ଆଖି ଦୁଇଟି ଦେଖିବା ପାଇଁ ମୁଁ ସ୍ୱପ୍ନ ବିଭୋର ହୋଇଉଠୁଥିଲି । ମୋ ମା' ଛାତିର ଅମୃତ ପାନ କରିବା ପାଇଁ କେଜାଣି କେତେ ବ୍ୟାକୁଳତା ଥିଲା ମୋ ଭିତରେ । ତା' କୋଳରେ ନିଶ୍ଚିନ୍ତରେ ନିର୍ଭୟରେ ଶୋଇ ଶୋଇ ମୁଁ କାହାଣୀ ଶୁଣିବି । ମୁଁ ତା' ପେଟର ଅନ୍ଧକାର ଗର୍ଭରେ ଥାଇ ଦିନ ଗଣୁଥିଲି । ଯେଉଁଦିନ ମୋତେ ମୁକ୍ତି ମିଳିବ... ମୁଁ ଦୁନିଆର ଆଲୋକ ଦେଖିବି... ମୋ ମା ତୁଣ୍ଡର ଭାଷା ଶୁଣିବି.. ସେ ମୋତେ କଥା କହିବା ଶିଖେଇବ... ମୋ ହାତଧରି ଚାଲିବା ଶିଖେଇବ... ଜଗତକୁ ଚିହ୍ନେଇଦେବ... ଜୀବନ ଜୀଇଁବାର କଳା ଶିଖେଇବ... ମୋ ମା'ର ଆଖିର ଆଇନାରେ ମୁଁ ପୃଥିବୀକୁ ଚିହ୍ନିବି... କେଉଁଦିନ ମୁଁ ମାତୃଗର୍ଭରୁ ପୃଥିବୀର ମାଟି ଛୁଇଁବି... କେବଳ ସେଇ ସ୍ୱପ୍ନ ଜେଜେବାପା... କେବଳ ସେଇ ସ୍ୱପ୍ନ ମୁଁ ଦିବାନିଶି ଅହରହ ସେ ଗର୍ଭଗୃହ ଭିତରେ ଥାଇ ଦେଖୁଥିଲି । ଅଥଚ... ।

– ତା'ପରେ, ତା'ପରେ କ'ଣ ହେଲା ମା ? ତୋର ଏ ସ୍ୱପ୍ନ କ'ଣ ଅଧୁରା ରହିଗଲା ?

ସିଦ୍ଧାର୍ଥ ଆତୁର ହୋଇ ପ୍ରଶ୍ନ କଲେ । ଝିଅଟି ମୁହଁକୁ ଅନ୍ତରଂଗ ଭାବରେ ଚାହିଁଲେ । ଝିଅଟି ମୁହଁରେ ଅକୁହା ବେଦନାର କଳାବାଦଲ ଛାଇ ହୋଇଯାଇଥିଲା । ଭିତରର ଜ୍ୱଳନ ଆଖିରେ ଲୁହର ବନ୍ୟା ସୃଷ୍ଟି କରିବାକୁ ଆଉ ବେଶୀ ସମୟ ନଥିଲା । ସେ ତାଙ୍କ ଦୁଇ ପାପୁଲିରେ ଝିଅଟିର ମୁହଁକୁ ଟେକି ଧରିଲେ । ତା' କପାଳରେ ଚୁମା ଆଙ୍କିଦେଲେ । ତାକୁ ଛାତିରେ କୁଣ୍ଢେଇ ଧରିଲେ । ସେ ଅନୁଭବ କରୁଥିଲେ ତା' ଆଖିର ଟୋପା ଟୋପା ଲୁହ ତାଙ୍କ ଛାତି ଭିଜାଇ ଦେଉଥିଲା । ତା'ର ପୁଞ୍ଜିଭୂତ ଦୁଃଖର ଗ୍ଲାସିଅର ଯେପରି ତରଳିବାକୁ ଆରମ୍ଭ କରିଥିଲା । ସିଦ୍ଧାର୍ଥ ଗୋଟିପଣେ ଭିଜି ଯାଉଥିଲେ ତାଙ୍କ ଭିତରକୁ ସଂଚରି ଆସୁଥିବା ଦୁଃଖର ଛିଟାରେ । କିଛି ସମୟ ନୀରବରେ ବିତିଗଲା । ସିଦ୍ଧାର୍ଥ ପୁନରାବୃତ୍ତି କଲେ– କହ ମା', ତା'ପରେ କ'ଣ ହେଲା କହ ।

ନିଜର ଆବେଗ ଓ କୋହକୁ ଯଥାସମ୍ଭବ ସମ୍ବରଣ କରି ଝିଅଟି କହିଲା– ଯେଉଁଦିନ ଡାକ୍ତର ଅଲ୍‌ଟ୍ରା ସାଉଣ୍ଡ୍ କରି ଘୋଷଣା କଲେ ମୁଁ କନ୍ୟା ଭ୍ରୂଣଟିଏ, ସେଦିନ ମୋ ବାପାଙ୍କର ମୋ

ପାଇଁ ସଂଚିତ ଥିବା ସବୁ ଭଲପାଇବା ଘୃଣାରେ, ରାଗରେ ରୂପାନ୍ତରିତ ହୋଇଯାଇଥିଲା । ସେ ମୋ ମା'କୁ ଭର୍ତ୍ସନା କରିବାକୁ ଲାଗିଲେ । ତାକୁ ନାନା ଭାବରେ ତିରସ୍କାର କଲେ କାରଣ ସେ ପୁତ୍ରସନ୍ତାନ ବଦଳରେ କନ୍ୟା ସନ୍ତାନର ଜନନୀ ହେବାକୁ ଯାଉଥିଲା । ସେ କାଳେ ଏଥିପାଇଁ ଦାୟୀ ବୋଲି ଆକ୍ଷେପ କଲେ । ସେ ପୁତ୍ର ସନ୍ତାନର ଜନକ ହେବାକୁ ଚାହୁଁଥିଲେ । କାରଣ ସେ ସେଇ ଗୋଟିଏ ସନ୍ତାନ ବ୍ୟତୀତ ଆଉ ଅଧିକ ସନ୍ତାନର ଜନକ ହେବାକୁ ଚାହୁଁ ନଥିଲେ । ସେ ମା'ଙ୍କୁ ଗର୍ଭପାତ କରିଦେବା ପାଇଁ ପ୍ରବର୍ତ୍ତାଇଲେ । ମା' ରାଜି ନ ହେବାରୁ ତାଙ୍କୁ ବାଧ୍ୟ କଲେ । ଏଥିପାଇଁ ଦୁହିଁଙ୍କ ଭିତରେ ଭୀଷଣ କଳି ଝଗଡ଼ା ଆରମ୍ଭ ହୋଇଗଲା । ମାଡ଼ ପିଟାପିଟି ଯାଏ କଥା ଗଲା । ଜାଣ ଜେଜେ, ସେତେବେଳେ ପେଟ ଭିତରେ ଥାଇ ମୁଁ କେତେ ଦୁଃଖ ପାଉଥିଲି । ମା'ର ଦୁଃଖ ଦେଖି ମୋତେ ଭୀଷଣ କଷ୍ଟ ହେଉଥିଲା । ମୁଁ ବିଧାତାଙ୍କୁ ପ୍ରଶ୍ନ କରୁଥିଲି– କାହିଁକି ମତେ ସେ କନ୍ୟା ଭ୍ରୂଣଟିଏ କରି ତିଆରିଲେ ! ମୁଁ ମୋ ମା'ଙ୍କ ଦୁଃଖର କାରଣ ହୋଇଗଲି ।

ଏ ଯନ୍ତ୍ରଣା ମୋତେ ଆଉ ବେଶୀଦିନ ସହିବାକୁ ହେଲା ନାହିଁ । ବାଧ୍ୟହୋଇ ମା' ଗର୍ଭପାତ କରାଇଲା । ତା' ପରଠୁ ଜେଜେ... ଏଇଠି ଏକ ଅଶାନ୍ତ ଗ୍ରହ ପରି ମୁଁ ଘୂରି ବୁଲୁଛି । ମୋରି ପରି ଏମାନେ ସମସ୍ତେ ଅବାଞ୍ଛିତ । ସମସ୍ତେ ଅଭିଶପ୍ତ । ଆମର ବାପାମା' କେହି ନାହାନ୍ତି । ପୃଥିବୀର ମୋହ ଛାଡ଼ି ଆମେ ଏଇଠି ରହିଛୁ । କିଏ ଆଣି ଏଠି ଆମକୁ ରଖିଛି, କେମିତି ରଖିଛି ସେକଥା ମୁଁ ଜାଣେନି । କିନ୍ତୁ ଆଶ୍ଚର୍ଯ୍ୟ କଥା, ତୁମକୁ ଦେଖୁ ଦେଖୁ ଜେଜେବାପା କେମିତି କେଜାଣି ମୁଁ ଚିହ୍ନିପାରିଲି ଯେ ତୁମେ ହିଁ ମୋ ଜେଜେବାପା !

– ହଁରେ ମା, ମୁଁ ହିଁ ତୋର ସେଇ ଅଥର୍ବ, ଅସହାୟ ଜେଜେବାପା । ତୁମ ସମସ୍ତଙ୍କର ଜେଜେବାପା । ତୋ ବାପା ଉପରେ ଯାହାର କୌଣସି କର୍ତ୍ତୃତ୍ୱ ନାହିଁ । ନଚେତ୍ କାନଧରି ତାକୁ ଶାସନ କରିପାରିଥାନ୍ତି... ଆରେ, ଲକ୍ଷ୍ମୀଛଡ଼ା ହେଲେ, ହତଭାଗ୍ୟ, ପାପୀ ଦୁରାଚାରୀ ହେଲେ ମଣିଷ କନ୍ୟା ସନ୍ତାନର ଭ୍ରୂଣହତ୍ୟା କରେ । ତୁ ବି ତ ମୋର ପୁଅ ହୋଇଥିଲୁ । କେଉଁ ସ୍ୱର୍ଗକୁ ନେଇଗଲୁ ମତେ । ଲିଲି ତ ମୋ ଝିଅ । କେଉଁ ଗୁଣେ ସେ ତୋଠୁ କମ୍ ? ଶିକ୍ଷାଦୀକ୍ଷା, ବୁଦ୍ଧିବିଦ୍ୟା, ସ୍ନେହମମତା, ପ୍ରତିଷ୍ଠା, ପ୍ରତିପତ୍ତି କେଉଁଥିରେ ସେ ତୋଠୁ କମ୍ ? ଆରେ ଅଭାଗା, ତୋତେ କାହିଁକି ଏ ଦୁର୍ବୁଦ୍ଧି ଘୋଟିଲା । ତୋତେ କେବେ ବି ମୁଁ ଖରାପ ଶିକ୍ଷା ଦେଇଛି ବୋଲି ମୋର ମନେପଡୁନି । ତୁ କେମିତି ଏମିତି ବଦଳିଗଲୁ । ତୋ ଭାଗ୍ୟରେ ସୁଖ ନାହିଁ ବୋଲି ତୁ ଏପରି ରାକ୍ଷସ ପାଲଟିଗଲୁ । ନିଜ ସନ୍ତାନକୁ ନିଜେ ହତ୍ୟା କଲୁ । ଝିଅଟିଏ ଜନ୍ମ ହୋଇଥିଲେ, କ'ଣ ପୃଥିବୀ ଓଲଟି ପାଲଟ ହୋଇଯାଇଥାନ୍ତା । ଛାଡ଼ ସେ କଥା, ତୋତେ ଶାସନ କରିବାର ଅଧିକାର ତ ମୋର ଆଉ ନାହିଁ । ତୋ ମୁଣ୍ଡକୁ ହାତ ପାଇ ଯାଇଛି । ତୁ ମଣିଷ ହୋଇଯାଇଛୁ । ମୁଁ ଅଥର୍ବ, ବୃଦ୍ଧ ।

ଅତୀତକୁ ସିଦ୍ଧାର୍ଥ ସ୍ମରଣ କରୁଥିଲେ । ଚନ୍ଦନର ବାହାଘର ଦିନର ସେ ଦୃଶ୍ୟ । ଆଜି ବି ତାଙ୍କ ଆଖିରେ ନାଚି ଯାଉଛି ଚଳଚିତ୍ରର ଛବି ପରି । ନୀଳିମାଙ୍କର ସେ ଅତୁଳନୀୟ ଉଚ୍ଛ୍ୱଳା ଆନନ୍ଦ । ନୂଆବୋହୂ ଘରେ ପାଦଦେବା ବେଳେ ସେ ହୁଏତ ଭାବୁଥିଲେ ପୃଥବୀରେ ଯାଠୁ ବଳି ଆଉ କୌଣସି ପାର୍ଥିବ ସୁଖ ଗରୀୟାନ୍ ହୋଇ ପାରେ ! ମାସେ ପରେ ପୁଅବୋହୂ ଚାଲି ଯାଇଥିଲେ ବମ୍ବେ । ନିଜ କର୍ମକ୍ଷେତ୍ରକୁ । ବର୍ଷ ଦିଟା ନୀଳିମାଙ୍କର ସେ ଆନନ୍ଦ ଅତୁଟ ରହିଥିଲା । ଖବର ପାଇଲେ, ବୋହୂ ସନ୍ତାନସମ୍ଭବା ହୋଇଛି । ନୀଳିମାଙ୍କର ଖୁସି ଦ୍ୱିଗୁଣିତ ହୋଇଥିଲା । କିନ୍ତୁ କିଛିମାସ ପରେ ତାଙ୍କର ସ୍ୱପ୍ନଭଂଗ ପର୍ବ ଆରମ୍ଭ ହୋଇଗଲା । ପୁଅ ବୋହୂକୁ ବାଧ୍ୟ କରିଥିଲା

ଭ୍ରୂଣହତ୍ୟା ପାଇଁ । କାରଣ ଭ୍ରୂଣଟି ଥିଲା କନ୍ୟା ସନ୍ତାନ । ଏଇ ଘଟଣାକୁ କେନ୍ଦ୍ର କରି ପୁଅବୋହୂଙ୍କ ଭିତରେ ମତାନ୍ତର ହେଲା । କ୍ରମେ ଏହା ମନାନ୍ତରର ରୂପ ନେଲା ।

ଏହାପରର ଘଟଣା କିନ୍ତୁ ସିଦ୍ଧାର୍ଥ ଓ ନୀଳିମାଙ୍କ ପାଇଁ ମର୍ମାନ୍ତିକ ଥିଲା । ଚନ୍ଦନ ବୋହୂକୁ ଛାଡ଼ପତ୍ର ଦେଲା । ଏହାର ଘୋର ବିରୋଧ କରିଥିଲେ ସିଦ୍ଧାର୍ଥ । ଫଳ ହେଲା ଓଲଟା । ପୁଅବୋହୂଙ୍କର ତ ଛାଡ଼ପତ୍ର ହୋଇଗଲା । କିନ୍ତୁ ସେଇଦିନଠୁ ଚନ୍ଦନ ସହିତ ସିଦ୍ଧାର୍ଥଙ୍କର ସବୁ ସଂପର୍କ ଛିନ୍ନ ହୋଇଯାଇଥିଲା । ଏପରିକି ଚନ୍ଦନ ବମ୍ବେ ଛାଡ଼ି କୁଆଡ଼େ ଗଲା, ସେ ଖବର ସୁଦ୍ଧା ସେ ପାଇପାରିଲେ ନାହିଁ ।

ସେଇ ଦୁଃଖରେ ଘାରି ହୋଇ ନୀଳିମା ଅକାଳରେ ସ୍ୱର୍ଗବାସୀ ହେଲେ । ସିଦ୍ଧାର୍ଥଙ୍କ ଆଖିର ଲୁହ, ପ୍ରାଣର କୋହ, ବ୍ୟାକୁଳତା ସବୁ ନିରର୍ଥକ ହେଲା । କିଛି ଚନ୍ଦନକୁ ବାଂଧି ରଖିପାରିଲା ନାହିଁ । ଚନ୍ଦନ ପାଇଁ ସେ ଜୀବନ୍ମୃତ ପାଲଟି ଯାଇଥିଲେ । କେଉଁ ସୁଖର ସଂଧାନରେ ସେ ସବୁକିଛି ଭୁଲିଗଲା– ଆଜିଯାଏ ସେ ରହସ୍ୟ ବୁଝିପାରି ନାହାନ୍ତି ସିଦ୍ଧାର୍ଥ, ଅବିଶ୍ୱାସ କରିପାରନ୍ତି ନାହିଁ ରକ୍ତକୁ । କିନ୍ତୁ ବିଶ୍ୱାସର ମୂଳଦୁଆ ଯେ ଧସିଯାଇଛି ରସାତଳକୁ– ଏ କଥା ଅସ୍ୱୀକାର ମଧ୍ୟ କରିପାରନ୍ତି ନାହିଁ ।

ସିଦ୍ଧାର୍ଥଙ୍କର ହୃଦୟର ଆବେଗ ଆଜି ଶ୍ରାବଣର ଉଦ୍ଦାମ ଗିରିନଦୀ ପରି ପ୍ରଖର ବେଗରେ ପ୍ରବାହିତ ହେଉଥିଲା । ସେ କ'ଣ କରିବେ, କୂଳକିନାରା ପାଉ ନଥିଲେ । ସେ ଯଦି ଏ ପିଲାଗୁଡ଼ିଙ୍କୁ ନେଇଯାଇ ପାରନ୍ତେ ନିଜ ଘରକୁ, କେତେ ଭଲ ହୁଅନ୍ତା ! ତାଙ୍କ ଶୂନ୍ୟ, ରିକ୍ତ ଜୀବନ ପୂର୍ଣ୍ଣ ହୋଇଯାନ୍ତା । କୋଳାହଳମୟ ହୋଇ ଉଠନ୍ତା ତାଙ୍କ ନିର୍ଜନ, ନିଶୂନ୍ ଘରଟା । କିନ୍ତୁ ଉପାୟ କ'ଣ ? ସେ ତ ଜାଣିନାହାନ୍ତି କେମିତି ନେଇଯାଇପାରିବେ ଏମାନଙ୍କୁ ।

ସେ ବ୍ୟାକୁଳ ଭାବରେ ଚାହିଁଲେ ଝିଅଟିର ମୁହଁକୁ । ଆବେଗ କଂପିତ କଣ୍ଠରେ କହିଲେ– ତମେମାନେ ସମସ୍ତେ ଚାଲ ମୋ ଘରକୁ । ତମମାନଙ୍କ ପାଇଁ ମୁଁ ଲୋକ ଖଞ୍ଜା କରିବି । କାହାର କିଛି ଅସୁବିଧା ହେବ ନାହିଁ । ମୋର ସବୁ ଅର୍ଜିତ ସଂପତ୍ତିକୁ ମୁଁ ତୁମମାନଙ୍କ ପାଇଁ ଅକାତରେ ଖର୍ଚ୍ଚ କରିବି । ସାରା ପୃଥିବୀର ସୁଖ ସୌଭାଗ୍ୟ ଆଣି ତୁମମାନଙ୍କ ପାଦ ତଳେ ଅଜାଡ଼ି ଦେବି । ତମେମାନେ ଖୁବ୍ ଭଲରେ ରହିବ ସେଠି । କାହାର କୌଣସି ସମସ୍ୟା ରହିବ ନାହିଁ ।

ଝିଅଟିର ମୁହଁ ଶୁଖିଗଲା । ଆଖିରେ ଲୁହ ଜକେଇ ଆସିଲା । ସେ ଥରଥର କଣ୍ଠରେ କହିଲା– ନା, ଜେଜେବାପା, ତାହା ଆଉ କେବେ ବି ସମ୍ଭବ ନୁହେଁ । ଆମେ ଆମର ଏ ଅଭିଶାପରୁ କେବେ ମୁକ୍ତି ପାଇବୁ ସେ କଥା ଆମେ ନିଜେ ବି ଜାଣୁନା । କିଏ ଆମର ତ୍ରାଣକର୍ତ୍ତା, ତା' ବି ଜାଣୁନା । କିନ୍ତୁ ଗୋଟିଏ ଅନୁରୋଧ ଆମର ରକ୍ଷା କରିବ ଜେଜେବାପା, ଆମକୁ ଦେଖିବାକୁ ତମେ ଆସୁଥିବ ନା ? ଶପଥ କରି କୁହ ଜେଜେବାପା । ଆମକୁ ଦେଖିବାକୁ ଆସିବ ନା !

ସିଦ୍ଧାର୍ଥଙ୍କୁ କୁଣ୍ଢେଇ ଧରି କଇଁ କଇଁ ହୋଇ କାନ୍ଦୁଥିଲା ଝିଅଟି । ସିଦ୍ଧାର୍ଥ ନିଜକୁ ସମ୍ଭାଳି ପାରିଲେ ନାହିଁ । ତାଙ୍କ ଛାତିଟା ସତେକି ଶତଧା ବିଦୀର୍ଣ୍ଣ ହୋଇଯିବ । ତାଙ୍କ ଆଖିରୁ ଧାର ଧାର ଲୁହ ନିଗିଡ଼ି ଆସି ଝିଅଟିର କପାଳ ଭିଜାଇ ଦେଉଥିଲା ।

ହଠାତ୍ ନିଦ ଭାଂଗି ଯାଇଥିଲା । ସିଦ୍ଧାର୍ଥ ନିଜ ଛାତିକୁ ଦୁଇ ହାତରେ ଛନ୍ଦି ପିଲାଙ୍କ ପରି କଇଁ କଇଁ କାନ୍ଦୁଥିଲେ । ରାତି ପାହିବାକୁ ଆହୁରି ଅନେକ ବିଳମ୍ବ ଥିଲା । ଆକାଶରେ ଏଯାଏ କୁଆଁତାରା ବି ଉଠି ନଥିଲା... ।



# ହାତୁଡ଼ି

## ଯଜ୍ଞଦତ୍ତ ଆର୍ଯ୍ୟ

ଯେଉଁଦିନ ଶୁଭଙ୍କର ସୁମିତ୍ରାର ଓଢ଼ଣା ଖୋଲି ତା ଟିକି ମୁହଁରେ ନେତ୍ର ପଖାଳିଲା, ସେଦିନ ତା ଦେହରେ ସ୍ୱାଭାବିକ ଉତ୍ତେଜନା ଆସିଲା ନାହିଁ କାରଣ ସୁମିତ୍ରାର ମୁହଁ ତାକୁ ସଂଗୀତାର ମୁହଁ ଭଳି ଦିଶିଲା ନାହିଁ, ତଥାପି ସ୍ମୃତିକୁ ସ୍ମୃତି କରି ଏକ ଆବଶ୍ୟକ ଉତ୍ତେଜନାରେ ସୁମିତ୍ରାର ମୁହଁକୁ ଜୋର୍‌ରେ ଜାବୁଡ଼ି ଧରିଲା । ତାପରେ ସେ ଆସ୍ତେ ଆସ୍ତେ ସୁମିତ୍ରାକୁ ନିଜର କରି ଶିଖିଲା । ତା ହସରେ ହସିଲା । ତା ଲୁହରେ ସେ ମୁହଁ ପଖାଳିଲା । ସେ ଚାହିଁଲା ସୁମିତ୍ରା ତା ଦୁଃଖରେ ଝାଉଁଳିପଡୁ । ତା ସୁଖରେ ଉଦ୍‌ବେଳି ଉଠୁ । ସୁମିତ୍ରାର ମୁହଁ ତା ପାଇଁ ହେଲା ସରଗର ଚାନ୍ଦ । ସୁମିତ୍ରା ଦୂରେଇ ଗଲେ ସେ ବିନୟ ପତ୍ର ଲେଖି ବସିଲା– ମୋ ରସଲେଖାରେ ମୋ ପ୍ରେମ ସୁଧାନିଧିରେ, ମୋ ନବୀନାରେ ମୋ ପିଆସୀ ଇଲାକାର ଭରା ନଈରେ, ମୋ ଆଲୋଡ଼ନର ଦୂରନ୍ତ କଣ୍ଢେଇରେ... ମୋର... ମୋରଃ.. ଶୁଭଙ୍କର ବେଳେ ବେଳେ ଆଶ୍ଚର୍ଯ୍ୟ ହେଲା ସୁମିତ୍ରା ପାଖକୁ ଏମିତି ବି ଲମ୍ବା ଲମ୍ବା ଚିଠି ଲେଖାଯାଇ ପାରେ । ପୁଣି ମନଗହନର ଉହଳ ବିକଳ ହେଉଥିବା ଗୁଡ଼ାଏ ଅଶ୍ଳୀଳତାକୁ ବି ଏମିତି ରୂପକଳ୍ପରେ ପ୍ରକାଶ କରାଯାଇପାରେ ?

ସୁମିତ୍ରା ଓ ସଙ୍ଗୀତା । ଟଙ୍କାର ଏପାଖ ସେପାଖ । ବେଳେ ବେଳେ ସେ ବଣା ହେଲା । ସୁମିତ୍ରାକୁ ସଙ୍ଗୀତା ଭାବିଲା ଓ ସଙ୍ଗୀତାକୁ ସୁମିତ୍ରା ଭାବିବାର ସୁଯୋଗ ତା ପାଖରେ ନଥିଲା, ସୁମିତ୍ରା ପାଖରେ ସେ ରାଣନିୟମ ଖାଇଲା, ସଙ୍ଗୀତାକୁ ତା ହୃଦୟ ସିଂହାସନରୁ ବିତାଡ଼ିତ କରି ସୁମିତ୍ରାକୁ ବସାଇବ । ଭାଟ ଭଳି ସୁମିତ୍ରରା ଚାରି ପାଖରେ ବୁଲି ସ୍ତୁତି ଗାଇବ ।

ଶୁଭଙ୍କର ସୁମିତ୍ରାଠିଁ ହଠାତ୍ ଦେଖିଲା କୋଣାର୍କର ପୃଥୁଳା ମୃଦଙ୍ଗ ବାଦିକା, ଲିଙ୍ଗରାଜ ମନ୍ଦିରର ଲସ୍ୟହାସ୍ୟମୟୀ ଓ ଜଗନ୍ନାଥ ମନ୍ଦିରର ଏକ ମିଥୁନରତା ନାରୀର ଆକୁଳତା ଓ ଚଟୁଳତା । ଯେଉଁ ଦିନ ସୁମିତ୍ରାର ପାଦ ତା କ୍ୱାର୍ଟରରେ ପଡ଼ିଲା, ପ୍ରଥମେ ଶୁଭଙ୍କର ରଙ୍ଗବତୀ ରେକର୍ଡ ଲଗାଇ ନାଚିଲା ସୁମିତ୍ରାକୁ ବାହୁରେ ଛନ୍ଦି । ସିନେମା ଡୁଏଟ୍ ରେଡ଼ିଓରୁ ଆସିଲେ ସୁମିତ୍ରାକୁ ରୋଷେଇ ଘରୁ ସେ ଘୋଷାରୀ ଆଣି ନାଚୁଥିଲା ବାୟା ରାଜା ଭଳି । ପାଦ ତାର ଥକି ପଡୁ ନଥିଲା ।

ସୁମିତ୍ରା ବାରଣ୍ଡାରେ ଠିଆହୋଇ କାହା ଉପରେ ଆଖି ପହଁରେଇ ଆଣୁଥିଲେ ଶୁଭଙ୍କର ମନ ଊଣା କରୁଥିଲା । ବଜାର ବୁଲିଗଲାବେଳେ ଶୁଭଙ୍କର କଣେଇ କଣେଇ ଚାହୁଁଥିଲା ସୁମିତ୍ରା ଆଉ କାହାକୁ ଚାହୁଁଛି କି ନାହିଁ ।

ସୁମିତ୍ରା ଦିନେ ତା' ଭିଣେଇର ଜଣେ ସମ୍ପର୍କୀୟ ଭାଇ ସହିତ ଗଦ୍ ଗଦ୍ ହୋଇ କଥା ହେଉଥିଲା ।

ଶୁଭଙ୍କର ସେ ହସରେ ଭାଗ ନେଇପାରିଲା ନାହିଁ ।

ସେହି ଟୋକାଟା ସହରରେ କି କାମ କରୁଥିଲା ତା'ର ସିଫ୍‌ଟ୍ ଡିଉଟି ଥିଲା । ବାଟରେ ଦେଖିଲେ ସାଇକେଲ୍‌ରୁ ଓହ୍ଲେଇ ପଡ଼ି ଶୁଭଙ୍କରଙ୍କୁ ସାଷ୍ଟାଙ୍ଗ ଜୁହାର କରୁଥିଲା । ସେମାନେ ଗପୁଥିଲେ, ସାଙ୍ଗ ହୋଇ ଚା' ପିଉଥିଲେ ।

ଥରେ ଶୁଭଙ୍କର ହଠାତ୍ ଦେଖିଲା ସେ ଟୋକାଟା ସହିତ ସୁମିତ୍ରା ଶୋଇବା ଘରେ ଚେସ୍ ଖେଳୁଛି ।

ତା' ନାକରୁ ବାମ୍ଫ ବାହାରିଗଲା ।

ତା' ମୁଣ୍ଡରେ କିଏ ଦୁମୁ ଦୁମୁ ହାତୁଡ଼ି ପିଟିଲା ।

ସେ ଭାବିଲା ସୁମିତ୍ରାଠୁଁ ସେ ଦଶବର୍ଷ ବଡ଼ ।

ସେମାନେ ଏକା ବୟସର ବୋଧହୁଏ, ଯେମିତି ସେ ଓ ସଙ୍ଗୀତା ଏକା ବୟସର ।

ଶୁଭଙ୍କର କାହିଁକି ତାର ଛାଇ ପଡ଼ିଲେ ଉଦାସୀ ସୂର୍ଯ୍ୟ ଭଳି ନିଷ୍ପ୍ରଭ ହୋଇପଡ଼ିଲା– ତା' ମୁହଁରୁ ଭଲ ହସ ଉତ୍ତୁରିଲାନି । କେମିତି ଛଳରେ ହସାଯାଏ ତାହା ସେ ଅଭ୍ୟାସ କଲା । ସୁମିତ୍ରାକୁ ସାଙ୍ଗରେ ଖୁଆଇବାକୁ ସେ ପୂର୍ବଭଳି ଅଡ଼ି ବସିଲାନି । ନୋଟା କଂସା ଥାଳି ଫୋପାଡ଼ିଲା । ସୁମିତ୍ରା ପାଖକୁ ଲାଗି ଲାଗି ଆସିଲେ ସେ ଘୁଞ୍ଚି ଘୁଞ୍ଚି ଆସିଲା । ସୁମିତ୍ରା ଦେହରୁ ସେ ଯେମିତି ଏକ ନୂତନ ଗନ୍ଧ ପାଇଲା । ସୁମିତ୍ରା ଏକ ମୃଦୁ ବନ୍ଧନରେ ବାନ୍ଧି ପକାଉଥିବା ବେଳେ ସେ ଅଣନିଃଶ୍ୱାସୀ ହୋଇ ଛାଟିପିଟି ପଳାଇ ଯାଉଥିଲା ।

ସୁମିତ୍ରାକୁ ସେ ମୁହଁ ବୁଲାଇ ଶୋଇଲା ।

ସୁମିତ୍ରା କାନ୍ଦିଲା ।

ଶୁଭଙ୍କର ପଥର ହେଲା ।

ଥଣ୍ଡା ସର୍ଦ୍ଦିରେ ସୁମିତ୍ରା ସୁଁ ସୁଁ ହେଉଥିଲେ ବି ଶୁଭଙ୍କର ଥରଟିଏ ତା' ଦେହରେ ହାତ ବୁଲାଇଲା ନାହିଁ ।

ସୁମିତ୍ରା ସୁଁ ସୁଁ ହୋଇ କାନ୍ଦିଲା ।

ସେ ମନ୍ତବ୍ୟ ଦେଲା– କାହିଁକି ସକେଇ ହେଉଚ ?

ସେ ଟୋକାଟା ଆସିଲେ ଶୁଭଙ୍କର ଆର ଘରକୁ ଯାଇ ଖବର କାଗଜରେ ମୁଣ୍ଡ ପୋତୁଥିଲା । ଶୂନ୍ୟକୁ ଶୂନ୍ୟ ନୂଆଶିଖା ହସ ହସୁଥିଲା । ମୁଣ୍ଡ ତା'ର ଝାଇଁ ଝାଇଁ ହେଉଥିଲା । କାନ ଆର ଘରକୁ ଡେରିଥିଲା ।

ଆରଘରେ ସୁମିତ୍ରା ହାତର ଚୁଡ଼ି ଝମ୍ କରି ବାଜିଲେ ତା' ସ୍ନାୟୁମାଳା ଯେମିତି ଛିଡ଼ି ପଡୁଥିଲା । ସତେ ଯେମିତି ନିଜର ଦୁର୍ବଳତାକୁ ଘୋଡ଼ାଇବା ପାଇଁ ସୁମିତ୍ରା ବଡ଼ ପାଟିରେ ଶୁଣେଇବା ଭଳି କଥା ହେଉଥିଲା ।

ଆରଘରେ ସେ ଟୋକାଟା ! ଚୁଡ଼ି ଲାଗ୍ ଲାଗ୍ ଝୁମ୍ ଝୁମ୍ ବାଜିଲେ ଯେମିତି ଶୁଭଙ୍କରର କାନ ପରଦା ଫାଟି ପଡୁଥିଲା ।

ହୁଏତ ଏକ ଶିକାରୀ କଟାଶ ବୁଦାମୂଳେ ଛପି ଛପି ଫୁଲ ଚୁଇଁ ଆଡ଼େ ଝାମ୍ପ ମାରୁଛି ।

ହୁଏତ କେଉଁ ଏକ ସ୍ୱର୍ଣ୍ଣକାତର ଅଞ୍ଚଳରେ ନୂତନ ସ୍ୱର୍ଣ୍ଣର ଆଲୋଡ଼ନ ।

ଦୁମୁଦୁମୁ ହାତୁଡ଼ି ପାହାର ଶୁଭଙ୍କର ମୁଣ୍ଡରେ ।

ସେ କେମିତି ଅଚଳ ଓ ଅଥର୍ବ ହୋଇପଡ଼ିଲା ।

ଯେତେବେଳେ ସଙ୍ଗୀତା ତା' ସହପାଠୀଙ୍କ ସହ କଳାବେଣୀ ନଚାଇ ନଚାଇ ହସି ହସି ପାହାଡ଼ୀ ବେଣୀ ଭଳି ଫିଟି ପଡୁଥିଲା, ସେତେବେଳେ ସେ ଗୌରବ ଅନୁଭବ କରୁଥିଲା, କାରଣ ଚାବିକାଠିଟି ଥିଲା ତା' ହାତରେ । ଏବେ ଚାବି କିଏ ଛଡ଼େଇ ନେଲା ? କିଏ ? କିଏ ?

ଅଥଚ ଶୁଭଙ୍କର ଅଭଦ୍ର ହୋଇପାରିଲାନି । ତା' ତୁଣ୍ଡ ଖୋଲିଲାନି । ନିଜ ପୌରୁଷ ଉପରେ କିଛିଟା ସନ୍ଦିଗ୍ଧତା ପୋଷଣ କଲା । ଚୁଡ଼ି ଝମ୍ ଝମ୍... ହାତୁଡ଼ି ପାହାର ଦୁମ୍‌ଦୁମ୍... କଳାମେଘୀ ଅନ୍ଧର... ଅଫିସ୍‌ରେ ଦୁମ୍ ଦୁମ୍... ଫାଇଲ୍‌ରେ ଦୁମ୍ ଦୁମ୍– ଖାଇଲା ବେଳେ ଦୁମ୍‌ଦୁମ୍... ଶୋଇଲା ବେଳେ ଦୁମ୍ ଦୁମ୍... ନାକରେ ଲୁ' ପ୍ରବାହ... ମୁଣ୍ଡରେ ଝାଳ ଆଉ ଝାଳ... ।

କେତେ ରାତି ହେବ କେଜାଣି, ଶୁଭଙ୍କର ଉଠିବସିଲା । ସୁମିତ୍ରାକୁ ତରାଟି ଚାହିଁଲା... ଛାତିରୁ ଶାଢ଼ୀ ଖସିଛି... ମୃଦଙ୍ଗ ବାଦିକା... ସୁନା କଳସୀରେ ବିଷ... ଶୁଭଙ୍କର ଆଖିରେ ବାଡ଼ବାନଳ– ନାକରେ ଲୁ' ଆଖି ଦି'ଟା ପଶିଆସିଛି... ମୁହଁଟି ଶୁଖିଲା ଶୁଖିଲା... କେଶର ଯତ୍ନ ନେଉ ନାହିଁ ବୋଧହୁଏ... ଦୁମୁ... ଦୁମୁ... ଦୁମୁ.... ଦୁମୁ... ଘନ ଘନ ହାତୁଡ଼ି ପାହାର... ସେ ସୁମିତ୍ରାର ବ୍ଲାଉଜ୍ ଚିରି ଫାଡ଼ି ଦେଲା, ବ୍ରା ଦାନ୍ତରେ କାମୁଡ଼ି ଟିକି ଟିକି କରିଦେଲା... ସୁମିତ୍ରା ଓସ୍ତପତ୍ରଟି ଭଳି ଭୟରେ ଥରିଲା... କ୍ଷତାକ୍ତ ବାଘ ଭଳି ସେ କ୍ଷତ କରି ଚାଲିଲା– ସେ ଆଉ କ'ଣ କ'ଣ କଲା, ତା'ର ମନେ ନାହିଁ ।

ଯେତେବେଳେ ସେ ସଂବିତ୍ ଫେରି ପାଇଲା, ଦେଖିଲା, ଏକ ନୋଚାକୋଚା ଫୁଲ ଉଜୁଡ଼ା ଓ ବିବର୍ଣ୍ଣ । ଆଖିରେ ତା'ର ଲୁହ ଶୁଖି ଚିକ୍ ଚିକ୍ କରୁଛି । ଓଠରୁ କୋହ ଲିଭିନି । ଶୁଭଙ୍କର ଆଶ୍ୱସ୍ତ ହେଲା ଏବଂ ହସିଲା ।

ସକାଳୁ ସୁମିତ୍ରା ଖଟବାଡ଼ ଧରି ଉଠିବାକୁ ଚେଷ୍ଟା କଲା । ଲୁହଧାର ଶୁଖି ତା' ମୁହଁଟା କେମିତି ଅଳିଆ କ୍ଷେତ ଭଳି ଦିଶୁଥିଲା ।

ସେଦିନ ସେ ଯେତେବେଳେ ଅଫିସରୁ ଫେରିଲା, ଦେଖିଲା ସୁମିତ୍ରା ବାରଣ୍ଡାରେ ଠିଆହୋଇ କେଶବିନ୍ୟାସ କରୁଛି । ସେ ଏଥର କହିପକାଇଲା– କାହାକୁ ଲମ୍ବା ବାଳ ଦେଖାଉଚ ? ବୁଝିଲ, ଏଟା ମୋ' ଘର ! ଏଠି ରୁଚି କିଛିଟା ଦରକାର, ବୁଝିଲ ?

ସୁମିତ୍ରା ଆଗରେ ସୁଖ ସବୁ ବାଙ୍ଗ ହୋଇ କେତେଦିନ ହେଲା ଉଡୁଛି । ସେ ଜାଣିପାରୁନି ସେ କେଉଁଠି, ମେଘରେ କି ମାଟିରେ ? କ'ଣ ହେଇଚି ତାଙ୍କର ! ହୁଏତ ନଣନ୍ଦଙ୍କଠୁଁ ଶୁଣିଥିବା ସେହି ସଙ୍ଗୀତାର ଭୂତ ତାଙ୍କ ମୁଣ୍ଡରେ, ପଶିଯାଇଛି କି କ'ଣ ! ଆଙ୍କର ଖାଲି ଅଛି ଆଉ କ'ଣ କା'ର ରାଗ ନାହିଁ ? ସୁମିତ୍ରା ରାଗ ବି ଶିଖିଲା । ଖୁମାଣ ବି ଅଭ୍ୟାସ କଲା । ଦିନକୁ ଦି'ଟା ହିନ୍ଦୀ ନଭେଲ ପଢ଼ିଲା । ନାରୀଜଗତ ଶୁଣିଲା ।

ତା' ପରଦିନ ସକାଳୁ କାହିଁକି ସୁମିତ୍ରା ବାନ୍ତିକଲା ଦୁହିଁ ହୋଇ । ଶୁଭଙ୍କର କାଠ ମୂର୍ତ୍ତିଟି ଭଳି ଠିଆହୋଇ ରହିଲା । ପିଠି ଟିକେ ଆଉଁସି ଦେଲା ନାହିଁ । ପୁଣି କିଛି ସମୟ ଛାଡ଼ି ବାନ୍ତି । ପାଟିରେ ଛେପ । ଶୁଭଙ୍କର ମେସିନ୍ ଭଳି ସୁମିତ୍ରା ପାଖକୁ ଗଡ଼ିଗଲା । ସୁମିତ୍ରା ମୁହଁରୁ ଆନନ୍ଦ ଆଉଟା ହସ ଝଲକାଏ ବାହାରି ପଡ଼ିଲା ।

ଶୁଭଙ୍କର ଆଖିରେ ସ୍ଫୁଲିଙ୍ଗ ।

ଛାତିରେ ବଲମର ପାହାର ।

ଦୁମ୍... ଦୁମ୍... ଦୁମ୍...ଦୁମ୍... ହାତୁଡ଼ି ପାହାର ।

ଦିନ ଗଡ଼ି ଚାଲନ୍ତେ ସୁମିତ୍ରା ବିଛଣାରେ ପଡ଼ିରହିଲା । ଘୋଷାରି ହୋଇ ବି' ପ୍ରାଣୀଙ୍କ ପାଇଁ ମୁଠାଏ ଫୁଟାଇଲା, ଅଥଚ ଜଳ ତୁଳସୀ ଆହାର କଲାନି । ଶୁଭଙ୍କର ଖାଇଦେଇ ହାକୁଟି ମାରି ବେଶ୍ ଆରାମରେ ଚାଲିଯାଉଥିଲା ।

ଶୁଭଙ୍କର ସୁମିତ୍ରା ପାଇଁ ଥିଲା ଏକ ଦୁର୍ଭେଦ୍ୟ ଦୁର୍ଗ ।

ଶୁଭଙ୍କରର କିଛି ଭିତର କଥା ଜାଣିପାରୁ ନଥିବାରୁ ସେ ନିଜକୁ ଧିକ୍‌କାର କଲା । ଭାବିଲା ଶୁଭଙ୍କର କୁଟିଳ ।

କର୍ତ୍ତବ୍ୟ ଦୃଷ୍ଟିରୁ ଶୁଭଙ୍କର ତା' ଉପରକୁ କେତେଟା ବାନ୍ତି ବଟିକା ଫୋପାଡ଼ି ଦେଲା ! ଡାକ୍ତରାଣୀ ଯାହାସବୁ କହିଲେ ସେଥିରେ ସେ ଉଲ୍ଲସିତ ହୋଇପାରିଲା ନାହିଁ । ସୁମିତ୍ରା ଅଥଚ ତା' ଭଙ୍ଗା ଦେହରୁ ଉଛୁଳି ପଡୁଥିଲା । ହସିଲେ ତା' ଗାଲରେ ଭଉଁରୀ ବେଶ୍ ମନୋରମ ଦିଶୁଥିଲା ।

ଉଦୟ ହେଲା ରୂପାର ପାହାଡ଼ ।

ଆଖିରେ ସ୍ଫୁଲିଙ୍ଗ– ନାକରେ ଲୁ'– ଛାତିରେ ଘୂର୍ଣ୍ଣିବାତ୍ୟା ।

ଆଉ ଦୁମ୍ ଦୁମ୍ ହାତୁଡ଼ି ପାହାର ।

ସେଠି ଆଖି ପଡ଼ିଲେ ସତେ ଯେମିତି ସେ ଅନ୍ଧ ହୋଇପଡୁଥିଲା । ଶୁଭଙ୍କର ଭାବିଲା ସେ ଟୁର୍‌ରେ ଯାଉଛି କହି ନ ଯାଇ ରାତି ବାରଟାରେ ଫେରି ଝରକା ପାଖରେ ଠିଆ ହେବ । ହୁଏତ ଶୁଣିବ କିଛି ଫୁସ୍‌ଫାସ୍ ଅବା ଚୁଡ଼ି ଝମ୍.. ଝାମ୍... ନାଁ... ନାଁ...

ଶୁଭଙ୍କର ମୁଣ୍ଡରେ ଝାଳ ।

ଛାତିରେ ପ୍ରଚଣ୍ଡ ଘୂର୍ଣ୍ଣି ।

ଆଉ ଏହି ଯେଉଁ ରୂପାର ପାହାଡ଼ ?

ଛି । ଥୁ !

ନକଲି । ଏଥିରେ ତାର ଗୌରବ ନାହିଁ ।

ସେ ଅସ୍ଥିର ହୋଇପଡ଼ିଲା ଏକ ପରାସ୍ତବୋଧରେ ।

ସେ ଥରିଲା । ଜଳିଲା । ଥରିଲା । ଜଳିଲା ।

ଦିନେ ସେ ଖୁବ୍ ରୁକ୍ଷ କଣ୍ଠରେ କହିଲା– ସୁମିତ୍ରା, କାଲି ତମେ ଗାଁକୁ ଯିବ । ଏଠି କିଛି ସବୁଧା ହେବ ନାହିଁ । ଜିନିଷପତ୍ର ସଜାଡ଼ି ନିଅ ।

ସୁମିତ୍ରା ଆଦୌ ବୁଝିପାରିଲା ନାହିଁ ଏମିତି କଡ଼ା ନିର୍ଦ୍ଦେଶନାମାର କାରଣ କ'ଣ ? ଏଠି ସବୁ ସୁବିଧା ଥାଉଁ ଥାଉଁ ଗାଁରେ ଡେଲିଭରି କରାଇବାକୁ ଶୁଭଙ୍କରଙ୍କର ଜିଦ୍ କାହିଁକି ?

ସେ ବି କହିପକାଇଲା– ଏଠି ତ ଖାଲି ଆନନ୍ଦ ଲହଡ଼ି ଖେଳୁଛି ଯେ ରହିବାକୁ ମନ ମାଡ଼ି ପଡୁଛି । ହଁ, ମୁଁ ଯିବି । ମତେ କାଲି ବସ୍‌ରେ ବସାଇ ଦେବ ।

ପରଦିନ ସକାଳେ ସୁମିତ୍ରା ବାସ୍କେଟ୍ ସଜାଡ଼ିବା ପୂର୍ବରୁ ଶୁଭଙ୍କର ପ୍ରସ୍ତୁତ ହୋଇସାରିଥିଲା । କାହିଁକି କେଜାଣି ବସା ଛାଡ଼ିବା ପୂର୍ବରୁ ସୁମିତ୍ରାର ମନ କୋହରେ ଭାରିହୋଇପଡ଼ିଲା ଏବଂ ଶୁଭଙ୍କର ଛାତିରେ ଲୋଟିପଡ଼ି କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲା ।

ଶୁଭଙ୍କର ବସ୍‌କୁ ଉଠିଲା ।

ଘରକୁ ଫେରି ଶୁଭଙ୍କର ଏକ ଭୀଷଣ ଶୂନ୍ୟତାବୋଧ କଲା– ଘରଯାକ ଦୁମ୍‌ଦୁମ୍ ହାତୁଡ଼ି ଶବ୍ଦ । କିଏ ସେ ବିଶ୍ୱକର୍ମା ଗଢୁଛି ରୂପାର ପାହାଡ଼– କିଏ ? ବୁଲି ବୁଲି ସମୟ କଟାଇଲା... ବେଶୀ ରାତ୍ରିରେ ଘରକୁ ଫେରିଲା । ଯେମିତି ସେ କବାଟ ବନ୍ଦ କଲା ଘର ଭିତରେ ପ୍ରତିଧ୍ୱନିତ ହେଲା ଚୁଡ଼ି ରୁଣୁଝୁଣୁ ଝମ୍‌ଝମ୍... ହାସ୍ୟରୋଳ... ଶୀକାରୀ କଟାଶ ଓ ଫୁଲଛୁଇଁ... ଯେମିତି ତା ଖପୁରୀ ଖସିପଡ଼ିଲା... ନୋଟାଏ ପାଣି ପିଇଗଲା... ଲାଇଟ୍ ଦେଲା... କିନ୍ତୁ ଶୋଇବାକୁ ଚେଷ୍ଟା କରି ବି ଶୋଇପାରିଲା ନାହିଁ– ଜିନ୍ ପିଇଲା... ତାକୁ ଖାଲି ଶୁଭିଲା ଖିଲି ଖିଲି ହସ... ଝମ୍ ଝମ୍... କଟାଶ ଓ ଫୁଲଛୁଇଁର ଚିତ୍କାର !

ଏଥର ସେ ଚିଠିଲେଖିବସିଲା । ତାର ଶୀର୍ଷକ ହେଲା 'ଶେଷ ଚିଠ' । ଦୈନିକ ଦୁଇପାଖ ଲେଖିଲା । ଲେଖୁ ଲେଖୁ ନିଦ ହୋଇଗଲା । ଚିଠି ଦଶପୃଷ୍ଠା ହେଲା, ଷୋଳ ପୃଷ୍ଠା ହେଲା, କୋଡ଼ିଏ ପୃଷ୍ଠା ହେଲା, ତଥାପି ସରିଲା ନାହିଁ ।

ତାର ପ୍ରାଣର ସୁମିତ୍ରା ପାଖକୁ ନୂଆ ନୂଆ ଶବ୍ଦ ଓ ରୂପକଳ୍ପ ଗଢ଼ି ଚିଠି ଲେଖିବା ପରିବର୍ତ୍ତେ ଏମିତି ଏକ ଅଦ୍ଭୁତ ଚିଠି ଲେଖୁଥିବାରୁ ସେ ମଧ୍ୟ ବିବ୍ରତ ହେଲା ନାହିଁ । ଚିଠି କିନ୍ତୁ ସେ ପକାଇ ପାରିଲା ନାହିଁ ।

ବୋଉ ଚିଠି ଲେଖିଥିଲା– ଆରେ ଶୁଭ, ଏମିତି ତୋର କ'ଣ ହେଇଚି ଯେ ଚିଠି ଖଣ୍ଡେ ଦେଉନୁ । ଘରକୁ ଯା' ବୋହୂକୁ ଛାଡ଼ିବାକୁ ଆସିଥିଲୁ ଆଉ ଆସିନୁ । ବୋହୂର ଦେହପା ଭଲ ଅଛି । ଭିଟାମିନ୍ ଔଷଧପତ୍ର ଖାଉଛି । ତୁ ଚିଠି ପାଇ ଝଅଟି ଆସିବୁ । ଚିଠି ଶୀଘ୍ର ଦେବୁ ।

ଶୁଭଙ୍କର ଅନିଚ୍ଛା ସତ୍ତ୍ୱେ ଲେଖିଲା– ଛୁଟି ନାହିଁ । ପରେ ଯିବି । ଦେହପା ଭଲ ଅଛି ।

ହଠାତ୍ ଦିନେ ସୁମିତ୍ରାଠୁଁ ସେ ଚିଠି ଖଣ୍ଡେ ପାଇଲା । ସୁମିତ୍ରା ଲେଖିଥିଲା– ଏମିତି ଚିଠି ଲେଖିବାର ସରାଗ ମଉଳି ଯାଇଥିଲେ ବି ମୁଁ ଜାଣିବାକୁ ଚାହୁଁଛି ମୁଁ କି ଭୁଲ୍ କଲି । ତମର ସୋହାଗ ସରାଗ ମୋ ପାଇଁ ସାତସପନ ହେଲା । ଗୋଟିଏ ଛୋଟ ଅନୁରୋଧ ରଖିବ ବୋଲି ପ୍ରାର୍ଥନା । ତମ ବୋଝ ଓହ୍ଲେଇ ଦେଲା ପରେ ଠାକୁରେ କରନ୍ତୁ ମୁଁ ନିଶ୍ଚିତ ହୋଇ ଆଖି ବୁଜେ । ଅନୁରୋଧ, ଥରଟିଏ ଆସି ମୋ ଶବ ପାଖରେ ଠିଆ ହେବ । ଛୁଇଁବ ନାହିଁ ।

ଶୁଭଙ୍କର ଚିଠିଟି ପଢ଼ି ନୂଆଶିଖା ହସଟି ହସିଲା ।

ମୋ ବୋଝ ! ଭୁଲ୍ ? ବୋଝ ! ଭୁଲ ?

ଭାବିଲା ମାୟା ନ ଦେଖିଥିଲେ ଦେଖ ସୁମିତ୍ରାନାମ୍ନୀ ନାରୀକୁ ।

କିଛିଦିନ ପରେ ବୋଉ ଲେଖିଲା– ବାପା, ବୋହୂର ସମୟ ଆକର ହେଲାଣି । କ'ଣ ତମ ସ୍ୱାମୀ-ସ୍ତ୍ରୀ ଭିତରେ ହେଇଚିକିରେ ? ଘର କରି କ'ଣ ସ୍ୱାମୀ-ସ୍ତ୍ରୀ ଭିତରେ ମନ ଫଟାଫଟି ହୁଏନା ? ଏମିତି ସେ କ'ଣ ମାରହାଣ କାମ କରି ପକାଇଛି ଯେ ତୁ ଏଡ଼େ ଦାରୁଣ ହେଉଚୁ ! ଛୁଆଟିର ଜୀବନ ଯାଉଚି ଆଉଚି । କାନ୍ଦି କାନ୍ଦି କଣ୍ଟା ହେଲାଣି । ଠାକୁରେ ତାକୁ ଭଲେ ଭଲେ ଖଲାସ କରି ଦିଅନ୍ତୁ । କେତେ ଠାକୁର ମନାସିଲିଣି । ପୁଅଟାଏ ହେଲେ ତା ନାଆଁ ଦେବି ଫକୀର । ଏକୋଇଶାକୁ ସତ୍ୟନାରାୟଣ ପାଲା କରିବି ।

ଶୁଭଙ୍କର ଭାବିଲା– ବୋଉଟା ଖାଲି ସପନ ଦେଖେ ।

ବୋଉ ହେଲେ ବି ତାକୁ କ'ଣ ଅଜାଗା ଘାଆର ଜଳାପୋଡ଼ା ଦେଖାଇ ହୁଏ ।

କିଛିଦିନ ପରେ ଟେଲିଗ୍ରାମ୍ ପହଂଚିଲା– ପୁଅଟିଏ । ଶୀଘ୍ର ଆସିବୁ ବାପା ।

ଗୋଟାପଣ ଝାଳରେ ଗାଧୋଇ ପଡ଼ିଲା ଶୁଭଙ୍କର ।

ମୁଣ୍ଡରେ ଦୁମ୍‌ଦୁମ୍ ହାତୁଡ଼ି ପାହାର । ଖପୁରୀ ଟଳମଳ ।

ଆଖିରେ ବାଡ଼ବାନଳ– ଛାତିରେ ପ୍ରଚଣ୍ଡ ଘୂର୍ଣ୍ଣିବାତ୍ୟା... ଅଫିସ୍ ବାଲା ମାଗିଲେ ମିଠା । ଅଜାଣତରେ ସେ କେତୋଟି ଟଙ୍କା ବଢ଼ାଇଦେଇ ଟେବୁଲ୍ ତଳେ ଟେଲିଗ୍ରାମ୍‌କୁ ମାଡ଼ି ମକଚି ଦେଲା ।

ପିତୃତ୍ୱର ଗୌରବରେ ସେ ଫୁଲି ଉଠିଲା ନାହିଁ । କେମିତି ଛୋଟ ପିମ୍ପୁଡ଼ି ଭଳି ହୋଇଗଲା । ମନ ମାରି ବସିଲା । କାଗଜରେ ସେ ଉଭଟ ଚିତ୍ର ଆଙ୍କିଲା । ଗାର ଟାଣିଲା । ଅନୁଭବ କଲା ଯେମିତି ତାର ଶ୍ୱାସରୁଦ୍ଧ ହୋଇଯାଉଚି ।

ଘରକୁ ଯିବାକୁ ତା'ର ଇଚ୍ଛା ହେଲା ନାହିଁ ।

ସେ ଛୁଆଟା ଅବିକଳ ବୋଧହୁଏ ସେ ଟୋ...କା...ଟା... ଭଳି ହୋଇଥିବ । ସେ ହୁ ହୁ ହୋଇ ଜଳିଲା । ନାକ ଓ ପାଟିରେ ବାମ୍ଫ ।

ଦୁମ୍‌ଦୁମ୍ ହାତୁଡ଼ି ପାହାର ।

ବୋଉର ଚିଠି– ତୁ ଏ ଚିଠି ପାଇ ଯଦି ଶୀଘ୍ର ନ ଆସିବୁ, ଜାଣିବୁ ତୋ ବୋଉ ମରିଛି ।

ସେ ଉତ୍କଣ୍ଠାଶୂନ୍ୟ ଭାବେ ଘରେ ପହଞ୍ଚିଲା ବାରରାତ୍ର ଦିନ ।

ମୁହଁରେ ଥିଲା ଦାଢ଼ି ଓ ରାଶି ରାଶି ଗ୍ଲାନି ଓ ବିଷଣ୍ଣତାର ପୋଡ଼ା ଫସଲ । ବୋଉ କୁଣ୍ଢେଇ ପକେଇ ଦେହମୁଣ୍ଡ ଆଉଁସି ପକାଇ କୁଶଳ ଜିଜ୍ଞାସା କଲା । ଛାତିକୁ ଆଉଜାଇ ବହୁତ କାନ୍ଦିଲା ।

ଘର ଲିପାଯାଇଛି । କମଳ ହେଁସ ସପ କନ୍ଥା ସଜଧୁଆ । ଛୋଟ ଛୋଟ ସଜକନା ଭଳି କନା ଶୁଖୁଛି, ପୁଅର । ସୁମିତ୍ରା ଏପାଖ ସେପାଖ ହେଉଛି । ପାଦରେ ପାଉଁଜ ରୁଣୁଝୁଣୁ । ନୂଆ ଚୂଡ଼ି ରୁଣୁଝୁଣୁ । ଯେମିତି ସେ ଗଡ଼ ଜିତିଛି ।

ଦୁମ୍... ଦୁମ୍... ଦୁମ୍... ଦୁମ୍.. ହାତୁଡ଼ି ପାହାର ।

ବସ୍ ଓଲଟି ପଡୁଛି ।

ସୁମିତ୍ରା ସେ ବାଟରେ ଯାଉଛି ଆସୁଛି, ବୋଧହୁଏ କଣେଇ ଚାହିଁ ମୁରୁକେଇ ହସୁଛି ।

ଶୁଭଙ୍କର ଦେହରେ ଶତ ବୃଶ୍ଚିକର ଦଂଶନ ।

କ'ଣ ହୋଇଛି ସୁମିତ୍ରାର ? ଏତେ ଗଉଁ ? ଆଗକୁ ଆସି ଥରେ ପଚାରନ୍ତା ନାହିଁ ? ନ ଆସୁ ।

ଘନ ଘନ ହାତୁଡ଼ି ପାହାର । ବର୍ଷାଭିଜା ପରଛିଣ୍ଡା ଚଢ଼େଇଟି ଭଳି ସେ ଅସହାୟ ।

ଶୁଭଙ୍କର ଏ କ'ଣ ସାମ୍‌ନାରେ ଦେଖୁଛି ? ଏକ ମୋହିନୀ ମୂର୍ତ୍ତିକୁ । ପାଦରେ ଝୁମୁକା ପାଉଁଜ । ସତେ କି ସରଗର ପରୀ ? ହାତରେ ରୂପା ପାହାଡ଼ର ଗୁପ୍ତଧନ । ପାଦରେ ଅଳତାର ଗାର । ଦେହରେ ହଳଦୀର ରଙ୍ଗ । ଆଖିରେ କଜ୍ଜଳର ବୋଇତ । ସିନ୍ଥି ଓ ମଥାରେ ଲାଲ୍ ଟକ୍ ଟକ୍ ସିନ୍ଦୂର । ବେକରୁ ଝୁଲିପଡ଼ିଛି ବଡ଼ ଲକେଟ୍ । କାଚ ରୁଣୁଝୁଣୁ । କେଶ ମୁକୁଳା ହେଲେ ବି ବିନ୍ୟାସ ଚମତ୍କାର । ଛାତି ଆଃ... ଦୋହଲି ଦୋହଲି ପଡୁଛି । ଗାଲରେ ହସର ଭଉଁରୀ । ସତେ ଯେମିତି ଅମୃତକୁଣ୍ଡରୁ ଉଠିଆସିଛି ସେ ପିଆସୀ ଇଲାକାର ଭରା ନଈ !

କିଏ ? କିଏ ଏ ? ଶୁଭଙ୍କର ଅନେଇ ରହିଗଲା ।

ସୁମିତ୍ରାର କୋଳରେ ଧନ । ଆଖିରେ କିଛିଟା ତ୍ରସ୍ତତା, ଅଭିମାନ, ହସର ଛିଟା ।

ଶୁଭଙ୍କର ଜଳୁଛି ହୁ ହୁ ହୋଇ ।

ଦୁମ୍ ଦୁମ୍ ହାତୁଡ଼ି ପାହାର । କାନର ପରଦା ନିଷ୍କ୍ରିୟ ।

ସୁମିତ୍ରାର ଆଖିରେ ଲୁହ– ହୁଏତ ସୁଖର ବା ସମର୍ପଣର ବା ଅଭିମାନର ବା ଆନନ୍ଦର ।

କଣ୍ଠ ଥରାଇ କହିଲା– ନିଅ ତାକୁ ।

ଶୁଭଙ୍କର ବରଡ଼ା ପତ୍ର ଭଳି ଥରିଲା । ଅନୁଭବ କଲା ଯେମିତି ସେ ମେରୁ ଅଞ୍ଚଳରେ ତରଳିଯାଉଥିବା ଏକ ଭାସମାନ ବରଫଖଣ୍ଡ ଉପରେ ବସିଛି ।

ଯନ୍ତ୍ରବତ୍ ସେ କୋଳକୁ ନେଇଥିଲା ପୁଅକୁ ।

ବୋଉ ମହୁମାଛି ଭଳି ଏଘର ସେଘର ହେଉ ହେଉ କହିଲା– ତୋ ପୁଅଟା ମତେ ସକାଳ ପହରୁ ହିନସ୍ତା କରି ମାରିଲାଣି । ଗୋଟାପଣ ତ ତୋ ମୁହଁ ଛିଣ୍ଡେଇ ଆଣିଛି । ଦେଖୁନୁ ଦେଖ୍, ତୋ କଳାଜାଇ ମନ୍ଦାକ ବି କାଖତଳେ ଆଣିଛି ।

ଏଥର ଶୁଭଙ୍କରର କାନ ପରଦା ଫାଟିଗଲା ଭଳି ଲାଗିଲା । ଦୁମ୍-ଦୁମ୍-ଦୁମ୍-ଦୁମ୍... ପାହାର ଘନ ଘନ କିଏ ପିଟିଲା । ଛାତିରୁ ଏକ ମସ୍ତବଡ଼ ଘୂର୍ଣ୍ଣି ଉଠିଲା । ଛୁଆର ହାତଟାକୁ ଟେକି କହିଲା– କାହିଁ, କାହିଁ, କଳାଜାଇ କାହିଁ । ତା ଆଖିରେ ଏତେ ଲୁହ ଖେଳୁଥିଲା ଯେ ସେ କିଛି ଦେଖିପାରୁ ନଥିଲା ।

ତାର ମନେପଡ଼ିଲା ବାପାଙ୍କର ଯେମିତି ଲମ୍ବା ବାଳଟାଏ ଡାହାଣ ହାତରେ ଉଠୁଥିଲା, ତା'ର ବି ସେହିଭଳି ବାଳଟାଏ ଉଠୁଥିଲା ।

ସେ ଠକ୍ ଠକ୍ ଥରିବାକୁ ଲାଗିଲା । କମ୍ପିଲା ।

ସୁମିତ୍ରାକୁ ସେ ଅନେଇ ରହି ତା ହାତଟାକୁ ଖୁବ୍ ଜୋର୍‌ରେ ମୁଠାଇ ଧରି ଥୁରୁଥୁରୁ ଥରିବାକୁ ଲାଗିଲା ।

ଅଥଚ ସୁମିତ୍ରା କିଛି ବୁଝିପାରୁ ନଥିଲା ।



# କୋମଳ ଗାନ୍ଧାର

## ତରୁଣକାନ୍ତି ମିଶ୍ର

ତା' ବିଷୟରେ ଏବେ ଲେଖିବସି ଭାବୁଛି, ଏ ମୋ' ପକ୍ଷରେ ଠିକ୍ ହେଲା ନାହିଁ । ତା' ବିଷୟରେ ମୁଁ କ'ଣ ବା ଜାଣେ ? ଏଇ ବିଗତ ପଚିଶି ବର୍ଷ ଧରି ସେ କେଉଁଠି ଅଛି, କିପରି, ମୋଟ ଉପରେ ସେ ବଂଚିଛି କି ନାହିଁ, ମୁଁ ଜାଣେନା । ମୋ ପକ୍ଷରେ ତା' ବିଷୟରେ ଲେଖିବା, କେତେଦୂର ସମୀଚୀନ, ଯେତେବେଳେ ତା'ର ମୋର ପରିଚୟ ମାତ୍ର ଗୋଟିଏ ବର୍ଷର; ଆଉ ଯେତେବେଳେ ଆମ ଦୁହିଁଙ୍କର ବୟସ ଥିଲା ମାତ୍ର ପନ୍ଦର ବର୍ଷ । ମୁଁ ବୋଧହୁଏ ତା'ଠାରୁ ସାମାନ୍ୟ ବଡ଼ ଥିଲି– ଏଇ ଦୁଇ, ଚାରିମାସର ପାର୍ଥକ୍ୟ ମାତ୍ର ।

ତଥାପି ମୁଁ ଲେଖିବସିଛି । ସେଦିନର କଥା ମୋର ଅବିକଳ ମନେନାହିଁ; ସେଇ ପୁରୁଣା ପରିତ୍ୟକ୍ତ ସହରର ରୂପ ମଧ୍ୟ ମନେନାହିଁ ଠିକ୍ ଭାବରେ । କିଛି ଅନୁମାନ କିଛିଟା ଧାରଣା ।

କିନ୍ତୁ, ତା' ମୁହଁଟା ମୋର ଠିକ୍ ମନେଅଛି– ଏଇ ଏବେ ମଧ୍ୟ ମୋ ଆଖି ସାମ୍ନାରେ ସେଇ ମୁହଁଟି ଦେଖାଯାଉଛି । ଗହଳ କଳା ମଥାଏ ବାବୁରି ବାଳ, ଉଚ୍ଚ କପାଳ, ଲମ୍ବା ନାକ, ଗୋରା ସୁନ୍ଦର ସୁଡ଼ୌଳ ଗୋଟିଏ ମୁହଁ ।

ତା' ନାମଟା କହି ନାହିଁ ଯେ – ତା' ନାମ ସୁମନ୍ୟୁ ।

ବାଲେଶ୍ୱରରୁ ବାପାଙ୍କର ବଦଳି ହେଲା କେନ୍ଦୁଝର ! ସେଇ କେନ୍ଦୁଝର ଗିବ୍‌ସନ୍ ହାଇସ୍କୁଲ୍‌ରେ ମୁଁ ନାମ ଲେଖାଇଲି, ଏକାଦଶ ଶ୍ରେଣୀରେ । ଏ ବର୍ଷ ମାଟ୍ରିକ୍ ପରୀକ୍ଷା ଦେବି ।

ସେଇ ସ୍କୁଲ୍‌ରେ ମୋର ତା' ସହିତ ପରିଚୟ ।

ନୂଆକରି ମୁଁ ସେଦିନ କ୍ଲାସ୍‌କୁ ଆସି ବଡ଼ କୁଣ୍ଠିତ ହୋଇପଡ଼ିଥିଲି; ଲଜ୍ଜା ଠିକ୍ ନଥିଲେ ବି ସଂକୋଚ ମୋର ଥିଲା ଖୁବ୍ । ଶ୍ରେଣୀରେ ପଛ ବେଞ୍ଚ୍‌ରେ ଯାଇ ବସିଥିଲି ।

ଯେଉଁଠି ବସିଲି, ସେଠାରେ ସବୁ ସିଟ୍ ଶୂନ୍ୟ, ଜଣେ କେବଳ ବସିଥିଲା ଏକାକୀ– ନିଜକୁ ଅନ୍ୟଠାରୁ ଦୂରେଇ ନେବା ପରି, ସେ ସୁମନ୍ୟୁ ।

ଉଚ୍ଚତାରେ ସେ ଏମିତି ବେଶି କିଛି ନୁହେଁ, ତଥାପି ସେ ବସିଥିଲା ପଛରେ । କାହିଁକି, ସେକଥା ମୁଁ ବୁଝିଥିଲି ପରେ ।

ସେଇ ପଛ ବେଞ୍ଚ୍‌ରେ ତା'ର ମୋର ପରିଚୟ । ପ୍ରଥମେ ସେ ଚୋରେଇ ଚୋରେଇ ମୋ ଖାତାରେ ଲେଖାଥିବା ନାମକୁ ପଢ଼ିଲା । ମୋ ମୁହଁକୁ ଚାହିଁଲା । ମୁଁ ମଧ୍ୟ ତା' ଖାତାକୁ ଚାହିଁଲି– ତା' ନାମ ଜାଣିବା ଅଭିପ୍ରାୟରେ. । କିନ୍ତୁ ଖାତା ଉପରେ କିଛି ନାମ ଲେଖା ନଥିଲା । ତେଣୁ ପଚାରିଲି–

ତୁମ ନାଆଁ କ'ଣ ?

– ସୁମନ୍ୟୁ ।

ଅତି ଚାପା, କ୍ଷୀଣ ତା'ର କଣ୍ଠ । ପନ୍ଦର ବର୍ଷ ବୟସର କଣ୍ଠସ୍ୱରରେ ଏକ ଆପାତ କର୍କଶତା ଥାଏ, କିନ୍ତୁ ସେପରି କର୍କଶତା ତା' ସ୍ୱରରେ ନଥିଲା ।

ମୋ ନାମ ଦୀପକ । ଦୀପକ ପଟ୍ଟନାୟକ ।

ସେ ମୁଣ୍ଡ ହଲାଇ ଆସ୍ତେ କହିଲା । ତା' ଅର୍ଥ ମୁଁ ଜାଣେ ।

ତା'ପରେ କଥାବାର୍ତ୍ତାରେ ଖିଅ ବଢ଼ିଲା ।

ବୟସ ପନ୍ଦର ବର୍ଷ, ପଢୁଛୁ ଏକାଦଶ ଶ୍ରେଣୀରେ, ଆଉ ଦଶମାସ ପରେ ମାଟ୍ରିକୁଲେସନ୍ ପରୀକ୍ଷା ଦେବୁ । ଏଣୁ ଯାହା କଥାବାର୍ତ୍ତା ହେବାର କଥା– ପଢ଼ା ପଢ଼ି କେତେ ଆଗେଇଛି, କୋଉ ସାର୍ କେମିତି ପଢ଼ାନ୍ତି ।

ତୁମର ପୋଜିସନ୍ କ୍ଲାସ୍‌ରେ କ'ଣ ଥିଲା ? ମୁଁ ପଚାରିଲି । ମୋର ଉଦ୍ଦେଶ୍ୟ ଥିଲା ସ୍ପଷ୍ଟ । ସେ କହିଲା ମୁଁ ଶ୍ରେଣୀରେ ସେକେଣ୍ଡ୍ ହୁଏ ।

ମୁଁ ମନେମନେ ସତର୍କ ହୋଇଗଲି । ଏ ତେବେ ମୋର ଜଣେ ପ୍ରତିଦ୍ୱନ୍ଦ୍ୱୀ ହେବ ଏଥରକ ।

: ଟୋଟାଲ୍ ମାର୍କ କେତେ ଥିଲା ?

: ଚାରିଶହ ସତୁରୀ ।

ମୁଁ ଆଶ୍ୱସ୍ତ ହେଲି । ମୋ ମନ ଭିତରର ଆଶଙ୍କା କ୍ଷୀଣ ଓ କ୍ଷୟିଷ୍ଣୁ ହୋଇ ଲୋପ ପାଇଗଲା ।

: ତମର ଏଗ୍ରିଗେଟ୍ କେତେ ଥିଲା ? ସେ ପଚାରିଲା ।

: ମୋର ଥିଲା ପାଞ୍ଚଶହ ସତାଅଶୀ । ମୁଁ ଗାମ୍ଭୀର୍ଯ୍ୟ ରକ୍ଷା କରି କହିଲି ।

ସେ ମୋ ଆଡ଼କୁ ଆଶ୍ଚର୍ଯ୍ୟ ହୋଇ ଚାହିଁଲା । ଏତେ ବଡ଼ ଗୋଟାଏ ସଂଖ୍ୟା ସେ ମୋଠାରୁ ଶୁଣିବାକୁ ଚାହିଁ ନଥିଲା ନିଶ୍ଚୟ । ମନେମନେ ଟିକିଏ ସଂକୁଚିତ ହୋଇ ଉଠିଥିବ ହୁଏତ । ସେଇ ସଂକୋଚ ମନରେ ରଖି କହିଲା : ତୁମେ ସେଠି ଫାଷ୍ଟ୍ ହେଉଥିଲ ?

ମୁଁ ମୁଣ୍ଡ ହଲାଇଲି ।

ସୁମନ୍ୟୁ ଆଉ କିଛି କହିଲା ନାହିଁ । ଚୁପ୍ ରହିଲା ।

: ଏଠି ଫାଷ୍ଟ ହୁଏ କିଏ ? ମୁଁ ପଚାରିବସିଲି ।

: ଇନ୍ଦୁ ।

ଏତେବେଳଯାଏ ମୋର ଦୃଷ୍ଟିରେ ସେ ପଡ଼ି ନଥିଲା । କିନ୍ତୁ ଏଥର ଦେଖିବାକୁ ପାଇଲି, କ୍ଲାସ୍‌ର ସବା ଆଗ ଧାଡ଼ିରେ ଅଲଗା, ଏକୁଟିଆ ଗୋଟିଏ ସିଟ୍‌ରେ ଗୋଟାଏ ଝିଅ । ସୁମନ୍ୟୁର କଥା ଅନୁସାରେ, ଇନ୍ଦୁ ।

: ଏଇ ?

ସୁମନ୍ୟୁ ମୁଣ୍ଡ ହଲାଇଲା । ସ୍ୱୀକୃତି ସୂଚକ । ମୁଁ ଲକ୍ଷ୍ୟ କଲି, ଆପାତତଃ ଏଇ ମୋର ପ୍ରତିଦ୍ୱନ୍ଦ୍ୱୀ । ମୋତେ ବେଶ୍ ଭଲ ଲାଗିଲା, ମୋ ବୟସର ଗୋଟିଏ ଝିଅକୁ ପ୍ରତିଦ୍ୱନ୍ଦ୍ୱୀ ମନେକରି ।

ଦେଖିବାକୁ ବେଶ୍ ସୁନ୍ଦର, ପିନ୍ଧିବା ପୋଷାକରୁ ମନେହେଲା ଯେମିତି ଅତି ଧନୀଘରର ଝିଅ । ମୁଁ ମନେମନେ ଉତ୍ସାହିତ ବୋଧକଲି ।

କେତେ ନମ୍ବର ଥିଲା ?

ସେଦିନ ପ୍ରଥମ ସାକ୍ଷାତ । ତେଣୁ ମୁଁ ଲକ୍ଷ୍ୟ କରିପାରି ନଥିଲି, କି ଏକ ଅଦ୍ଭୁତ ଉଜ୍ଜ୍ୱଳ ସମ୍ଭ୍ରମବୋଧ ସୁମନ୍ୟୁ ମୁହଁରେ ଫୁଟି ଉଠିଥିଲା । ଏକ ପ୍ରଚ୍ଛନ୍ନ ଗୌରବବୋଧ ତା' ସହିତ; କିନ୍ତୁ

କ୍ଷଣିକରେ ସେ ଅଭିବ୍ୟକ୍ତି ତା' ମୁହଁରୁ ଲିଭିଯାଇଥିବ, କାରଣ ସେ କହିଲା : ଏଠାରେ ବଡ଼ ଷ୍ଟ୍ରିକ୍‌ଟ ମାର୍କିଂ ହୁଏ । ବେଶି ନମ୍ବର ମିଳେ ନାହିଁ । ସେମିତି ନମ୍ବର ମିଳୁଥିଲେ ତ ସେ ଛଅଶହଠୁ କମ୍ ନମ୍ବର ପାଆନ୍ତେ ନାହିଁ । ତୁମେ ଜାଣି ନାହିଁ, ସେ ବଡ଼ ବ୍ରିଲିଆଣ୍ଟ, ବଡ଼...

ସୁମନ୍ୟୁ କଥାଟା ଅସଂପୂର୍ଣ୍ଣ ରହିଲା, କାରଣ ସେ କହେ ଅତି ସଂକ୍ଷେପରେ ଗୋଟିଏ ଦୁଇଟି ଶବ୍ଦରେ ସବୁକିଛି କହିଦେବାକୁ ଚାହେଁ । କିନ୍ତୁ ଏଇଠି ସେ ପାରିଲା ନାହିଁ । ରହିଗଲା ।

ସେ ବଡ଼ ବ୍ରିଲିଆଣ୍ଟ୍ । ଅତି ଭଲ ପଢ଼ନ୍ତି । ତୁମେ ନୂଆ ଆସିଛ, ଜାଣିପାରିବ ନାହିଁ ।

ତେବେ– ମୁଁ ସଂଖ୍ୟାଟି ଜାଣିବାକୁ ଚାହିଁଲି, କାରଣ ସେହି ସଂଖ୍ୟାଟି ଉପରେ ମୋର ଅନେକ କିଛି ନିର୍ଭର କରୁଥିଲା– କେତେ ରଖିଥିଲା ସେ ଝିଅଟି ?

ମୁଁ ସେଦିନ ଜାଣିପାରି ନଥିଲି ମୋ ସ୍ୱରରେ କିଭଳି ଉପେକ୍ଷା ଓ ଅବଜ୍ଞା ଫୁଟି ଉଠିଥିଲା, ସେ କହିବା ଭିତରେ– ମୁଁ ଜାଣିପାରି ନଥିଲି । ସୁମନ୍ୟୁ ମନେ ମନେ ଏଥିରେ ମୋ ଉପରେ ବଡ଼ ଅସନ୍ତୁଷ୍ଟ ହୋଇଥିବ ନିଶ୍ଚୟ; କାରଣ ପରେ ବନ୍ଧୁତା ଜମି ଉଠିବା ପରେ ମୁଁ ସୁମନ୍ୟୁକୁ ଅଧିକ ଚିହ୍ନିବାର ସୁଯୋଗ ପାଇଥିଲି ତ !

ସୁମନ୍ୟୁ ଶେଷକୁ ମତେ ନମ୍ବରଟି କହିଥିଲା । ପାଞ୍ଚଶହ ସତେଇଶି, ମୋଠାରୁ ଷାଠିଏ ନମ୍ବର କମ୍ । ମୁଁ ମନେ ମନେ ଆଶାନ୍ୱିତ ହେଲି । ଝିଅଟିକୁ ଚାହିଁ ଦେଖିଲି, ମୋର ପନ୍ଦରବର୍ଷ ବୟସର କିଶୋର ପ୍ରାଣରେ ପୁଲକ ସଂଚରିଗଲା ।

ସେଇ ସଂଚରିତ ପୁଲକକୁ ମୁଁ ଅନୁଭବକଲି ଆସିବାର ପ୍ରଥମ ଦିନ– ଥରେ ନୁହେଁ ଦୁଇଥର । ଗଣିତ ଶିକ୍ଷକ ଦୁଃଖୀଶ୍ୟାମ ବାବୁ କ୍ଲାସ୍‌ରେ ଉପସ୍ଥାନ ନେଇ ସାରି, ଶେଷରେ ଲେଖାଥିବା ମୋର ନାମ ପଢ଼ିଲେ ଓ ପଚାରିଲେ ।

: ତୁମେ ସେଇ– ବାଲେଶ୍ୱରରୁ ଆସିଛ ?

ମୁଁ ଠିଆହୋଇ ହଁ ଭରିଲି ।

: କ୍ଲାସ୍‌ରେ ଫାଷ୍ଟ୍ ହେଉଥିଲ ? କେତେ ଥିଲା ଏଥର ପରୀକ୍ଷାରେ ?

ଇନ୍ଦୁ ଆଡ଼କୁ ମୁଁ ଥରେ ଚାହିଁ ଦେଇଥିଲି ଏ ଭିତରେ । ସେ ଚୁପ୍‌ଚାପ୍ ଡେସ୍କ ଉପରର ଗୋଟିଏ ବହିକୁ ଚାହିଁ ରହିଥିଲା। କିନ୍ତୁ ଗଣିତ ଶିକ୍ଷକଙ୍କ ଦ୍ୱିତୀୟ ପ୍ରଶ୍ନ ଶୁଣି ସେ ଥରେ ମୋ ଆଡ଼କୁ ଚାହିଁଲା, ସାମାନ୍ୟ ଏକ ମୁହୂର୍ତ୍ତ ପାଇଁ ।

ମୁଁ ମୋ ନମ୍ବର କହିଲି– 'ପାଞ୍ଚଶହ ସତାଅଶି' । କ୍ଲାସ୍‌ର ସବୁ ପିଲା ଫେରି ମତେ ଚାହିଁଥିଲେ, ନୂଆ ଏକ ମେଧାବୀ ଛାତ୍ରକୁ ଚିହ୍ନିବା ପାଇଁ । ମୁଁ ପୁଲକିତ ହୋଇ ଉଠିଥିଲି । ସେଠି ଆମର ବଏଜ୍ ସ୍କୁଲ୍ । କିନ୍ତୁ ଏଠି ତାହା ନୁହେଁ, ଯାହା ସଦ୍ୟ ବିକାଶପ୍ରାପ୍ତ ଗୋଟିଏ କିଶୋର ପାଇଁ ଗୋଟିଏ ଅନବଦ୍ୟ ବ୍ୟାପାର । ପୁଣି ଯେଉଁଠି ପ୍ରତିଦ୍ୱନ୍ଦ୍ୱିନୀ ଜଣେ ବାଳିକା, ଏକା ବୟସର ।

ଇନ୍ଦୁ ଯେତେବେଳେ ମୋ ଆଡ଼କୁ ଚାହିଁଲା, ଏକ ଚଞ୍ଚଳ ଶିହରଣ ଖେଳିଗଲା ମୋ ଭିତରେ, ମୁଁ ତା' ଆଡୁ ଆଖି ଫେରାଇ ଆଣି ଗମ୍ଭୀର ହେବାକୁ ଚେଷ୍ଟା କଲି ।

ଗଣିତରେ ତୁମର କେତେ ଥିଲା ? ସାର୍ ପଚାରିଲେ ।

କମ୍ପଲ୍‌ସରୀରେ ଶହେ, ଅପ୍‌ସନାଲ୍‌ରେ ଅନେଶତ ।

ଦୁଃଖୀଶ୍ୟାମ ସାର୍ ସେଦିନ ଭାରି ଖୁସି ହୋଇଉଠିଥିଲେ । ଆହୁରି ଅନେକ କଥା ବି ପଚାରିଥିଲେ ।

ତେବେ ପ୍ରଥମରୁ ହିଁ ମୋର ସନ୍ଦେହ ହୋଇଥିଲା, ସୁମନ୍ୟୁ ନାମକ ପତଳା, ସ୍ୱାସ୍ଥ୍ୟହୀନ କିନ୍ତୁ ସୁନ୍ଦର ବାଳକଟି ମୋର ଏ ପ୍ରକାର ସମ୍ବର୍ଦ୍ଧନାରେ ସନ୍ତୁଷ୍ଟ ହୋଇପାରି ନଥିଲା ।

ତଥାପି– ସୁମନ୍ୟୁ ସହିତ ମୋର ସାକ୍ଷାତ ହୋଇଥିଲା ସବୁଠାରୁ ପ୍ରଗାଢ଼ । ଯଦିଓ ମାତ୍ର ଗୋଟିଏ ବର୍ଷ ପାଇଁ ତଥାପି ଏତେ ଶୀଘ୍ର ସେ ମୋର ନିକଟ ହୋଇଆସିଥିଲା, ଏତେ ଅନ୍ତରଙ୍ଗ ହୋଇ ଉଠିଥିଲା, ତାହା ମତେ ଏବେ ମଧ୍ୟ ଅଭିଭୂତ କରିଦିଏ ।

ତେବେ ପ୍ରଥମରୁ ହିଁ ସେ କହିଥିଲା, ତୁମେ ତାଙ୍କଠାରୁ ବେଶି ନମ୍ବର ରଖିଛ ସତ, ହେଲେ ସେ ଭାରି ଭଲ ପଢ଼ନ୍ତି । ସେ ଭଲ । ସେ ଖୁବ୍ ଭଲ । ତୁମେ ନୂଆ ଆସିଚ, କିଛି ଜାଣି ନାହଁ । ସତ କହୁଚି, ସୁମନ୍ୟୁର ଏଇ ଅବରୁଦ୍ଧ ଅସନ୍ତୋଷ ଓ ବିରୁଦ୍ଧ ଭାବ ମତେ ବେଶ୍ ଭଲ ଲାଗିଥିଲା । କାରଣ ତ ସ୍ପଷ୍ଟ ।

ସୁମନ୍ୟୁ ପଚାରିଥିଲା : ତୁମର ହବି କଅଣ ? ତୁମକୁ କ'ଣ ଭଲଲାଗେ ?

: କ୍ରିକେଟ୍ ।

ସୁମନ୍ୟୁ ମୋ ଉତ୍ତର ପାଇ ସନ୍ତୁଷ୍ଟ ହେଲା ବୋଲି ମୋର ମନେ ହେଲା ନାହିଁ । ମୋର କୌତୂହଳ ହେଲା, ପଚାରିଲି :

ତମର ପ୍ରିୟ ଖେଳ କ'ଣ ?

: ମତେ ଖେଳିବାକୁ ଭଲଲାଗେ ନାହିଁ । ଧୀରେ, ଶାନ୍ତ ଭାବରେ ଉତ୍ତର ଦେଲା ସୁମନ୍ୟୁ । ମୋ ହବି କଥା ଯଦି ପଚାରୁଚ, ତେବେ...

ସେମାନେ ଜଣେ ଜଣେ ଥାଆନ୍ତି । ଆମ ଭିତରେ । ଆମର ଅତି ନିକଟରେ । ଅଥଚ ଆମେ କେହି ଚିହ୍ନିପାରୁନା ସେମାନଙ୍କୁ । କ୍ଲାସ୍‌ରେ ସବୁଠାରୁ ପଛ ବେଞ୍ଚ୍‌ରେ ବସୁଥିବା ଏବଂ ଶ୍ରେଣୀରେ କେବେ ଦ୍ୱିତୀୟ, କେବେ ଚତୁର୍ଥ ସ୍ଥାନ ଅଧିକାର କରୁଥିବା ସେଇ ପିଲାମାନଙ୍କୁ ଆମେ ଜାଣି ପାରୁନାହିଁ । ସେମାନେ ଥାଆନ୍ତି ନିଃଶବ୍ଦ, ଚାପା । ଯଦିଓ ଆମର ଆଖି ସାମ୍ନାରେ । ମାତ୍ର ଆମେ ସେମାନଙ୍କ ଉପସ୍ଥିତି ଜାଣିପାରୁନାହିଁ, ଉପଲବ୍ଧି କରିପାରୁନାହିଁ ।

ସୁମନ୍ୟୁ କହିଥିଲା– ମୋ ହବି କ'ଣ ମୁଁ ତୁମକୁ କହିବି ନାହିଁ । ତୁମେ ସେକଥା ବୁଝିପାରିବ ନାହିଁ ।

ସତରେ, ସେତେବେଳେ ମୁଁ ଠିକ୍ ବୁଝିପାରି ନଥିଲି ତେବେ ଅଭିଭୂତ ଯେ ହୋଇପଡ଼ିଥିଲି, ଏକଥା ଠିକ୍ । ନହେଲେ ଆଜି, ସେଇଦିନ ସବୁ ବିତିବାର ପଚିଶ ବର୍ଷ ପରେ, ତାକୁ ହଠାତ୍ ମନେପକାଇ ପାରିନଥାନ୍ତି– ଆଉ ଏକ ନିରୁପାୟ ବ୍ୟାକୁଳତା ମୋ ଭିତରେ ଛାଟିପିଟି ହୁଅନ୍ତା ନାହିଁ ।

– ମୋ ହବି ତୁମେ ବୁଝିବ ନାହିଁ, ମୋଟେ ବୁଝିପାରିବ ନାହିଁ । ସେ ମୃଦୁ ସ୍ୱରରେ କହିଥିଲା ।

– ତେବେ ? ମୁଁ ଆଗ୍ରହର ସହିତ ପ୍ରଶ୍ନ କରିଥିଲି, ତୁମକୁ କ'ଣ ଭଲ ଲାଗେ, ସେକଥା ମୁଁ ବୁଝିପାରିବି ନାହିଁ ?

– ନା–

ସୁମନ୍ୟୁ କିନ୍ତୁ ଶେଷପର୍ଯ୍ୟନ୍ତ କହିଥିଲା– 'ମତେ ଭାବିବାକୁ ଭଲ ଲାଗେ । ଚୁପ୍‌ଚାପ୍ ବସି ଭାବିବା ପାଇଁ ଭାରି ଭଲ ଲାଗେ ।'

ଏ ପୁଣି କି ପ୍ରକାରର ହବି ? ଭାବିବା ଓ ଭାବିବା ପାଇଁ ଭଲପାଇବା– ମତେ ବଡ଼ ଆଶ୍ଚର୍ଯ୍ୟ ଲାଗିଥିଲା ।

: ମୁଁ ବସି ବସି ଭାବେ ରାତିରେ ଶୋଇବା ଆଗରୁ, ଘଣ୍ଟା ଘଣ୍ଟା ଧରି ଭାବେ । ଅନେକ କଥା, ଅନେକ ଲୋକଙ୍କ କଥା । ମତେ ଭଲ ଲାଗେ ।

: ଭାବିବାକୁ ଭଲଲାଗେ ? ଭାବି ଭାବି ତୁମ ମୁଣ୍ଡ ବଥାଏ ନାହିଁ ?

ସୁମନ୍ୟୁ ହସିଥିଲା ।

ରିସେସ୍ ଆୱାରରେ ଅଧଘଣ୍ଟା ପାଇଁ ଛୁଟି ମିଳେ । ପଡ଼ିଆରେ ଖେଳ କସରତ, ଧାଁ ଦଉଡ଼ ଚାଲେ । କିନ୍ତୁ ସୁମନ୍ୟୁ ଚାଲିଯାଏ ସେଇ ଗହଳି ଓ ପାଟିତୁଣ୍ଡଠାରୁ ଦୂରକୁ । ସେଠାରେ ଅନେକ ଗଛର ଛାଇ । ଚୁପ୍‌ଚାପ୍ ସେଇଠି ବସେ ସେ । ଯେତେବେଳେ ଦେଖେ ପଡ଼ିଆରୁ ପିଲାଏ ଚାଲିଯାଉଛନ୍ତି ସେ ଉଠେ । ଛୁଟି ସରିଲା ।

ମୁଁ ତା' ସହିତ ସେଇ ଗଛ ଛାଇ ତଳର ଶୂନ୍ୟ ନିର୍ଜନ ସମାଧିକୁ କେତେଥର ଆସିଥିଲି । ପ୍ରଥମେ ପ୍ରଥମେ କେବେ କେମିତି, ଯାଚି ହୋଇ । କିନ୍ତୁ ତା'ପରେ ଦୁହେଁ ସାଙ୍ଗ ହୋଇ ଆସୁ ।

-ଆଛା, ତୁମେ କ'ଣ ସବୁ ଭାବ ବସି କହିଲ ? ମୁଁ ଦିନେ ପଚାରି ଦେଲି ।

ମୋର ଏମିତି ପ୍ରଶ୍ନ ଶୁଣି ସେ ହସିଲା । କହିଲା–ସେ କଥା ତମେ ବୁଝିପାରିବ ନାହିଁ । ସେ ନିହାତି ବାଜେ କଥା–ଭାବି ଲାଭ ନାହିଁ ।

ମୁଁ ତା' ମୁହଁକୁ ଆଶ୍ଚର୍ଯ୍ୟ ହୋଇ କିଛି ସମୟ ଚାହିଁ ରହିଲି । ପଚାରିଲି :

'ତମେ କବିତା ଲେଖ ସୁମନ୍ୟୁ ?'

ଏମିତି ଧାରଣା ଗୋଟିଏ ଆସିବା ସ୍ୱାଭାବିକ । ଏଇପ୍ରକାର ପିଲାଙ୍କଠାରୁ ଏମିତି କିଛି ଯେ ଆଶା କରାଯାଏ, ସେ କଥା ମୁଁ ଜାଣିଥିଲି ।

ସୁମନ୍ୟୁ ହସି ଦେଇଥିଲା, ଯେମିତି ସେ ଲୁଚାଛପା କିଛି ଗୋଟାଏ ଅପ୍ରିୟ କାମ କେଉଁଠି କରୁଥିଲା, ଧରା ପଡ଼ିଯାଇଛି, ଆଉ ମୁକୁଳି ଯାଇପାରିବ ନାହିଁ ।

: ସତେ ? ତୁମେ କବିତା ଲେଖ ? ଗପ ଲେଖ ?

ସେ ଜଣେ କବି । କଥାଟା ଆବିଷ୍କାର କରିବା ମାତ୍ରେ ମୋ' ମନ ଭିତରେ ଗୋଟାଏ ଅଦ୍ଭୁତ୍ କୌତୁହଳର ଝଲକ ଖେଳିଗଲା ।

: କଅଣ ସବୁ ଲେଖ ତୁମେ ? କିପରି ? କିମିତିକା କବିତା ଲେଖିଛ ତୁମେ ? ମତେ ଦିନେ ଦେଖାଇବ !

କବିତା ମୁଁ କିଛି ପଢ଼ି ଥିଲି: ଜଣେ ଅଧେ କବିଙ୍କୁ ମଧ୍ୟ ଦେଖିଥିଲି । ଜଣେ ବଡ଼ କବି ଆସିଥିଲେ ମୁଁ ବାଲେଶ୍ୱରରେ ପଢୁଥିବା ସ୍କୁଲର ବାର୍ଷିକ ଉତ୍ସବରେ ଯୋଗ ଦେବା ପାଇଁ । ଦେଖିବାକୁ କି କୁତ୍ସିତ କଦାକାର । ଲୁଗାପଟା ପିନ୍ଧାରେ ଗୋଟାଏ ଅଦ୍ଭୁତ ଅସୁନ୍ଦର ଢଙ୍ଗ । ହାତ ଦୁଇଟା ଲୋମଶ, ଶିରାବହୁଳ । ଯେତେବେଳେ ଭାଷଣ ଦେଇଥିଲେ ବଡ଼ ଚିଡ଼ି ଲାଗୁଥିଲା ଶୁଣିବା ପାଇଁ । ସ୍ୱରଟା ତାଙ୍କର ବଡ଼ କର୍କଶ । ଉଚ୍ଚାରଣ ମଧ୍ୟ ଅସ୍ପଷ୍ଟ ।

ମୋ' ପନ୍ଦର ବର୍ଷ ବୟସର ଅଭିଜ୍ଞତାରେ କବି ଥିଲେ ଏଇମିତି ଜଣେ । କିନ୍ତୁ ସୁମନ୍ୟୁକୁ ଦେଖି, ସର୍ବପ୍ରଥମେ ମୋ ମନରେ ଧାରଣା ଆସିଲା, ଯେଉଁ ଭାବରେ କବି ଓ କବିତାକୁ ମୁଁ

ବୁଝିଛି, ତାହା ଠିକ୍ ନୁହେଁ ହୁଏତ । ଏଇ ମନୁଷ୍ୟ ହିଁ ଜଣେ କବି । ତା'ର ପ୍ରତିଟି ଭାଷା, ପ୍ରତିଟି ହାବଭାବ କବିତାର ଏକ ପଙ୍କ୍ତି ।

ଯେତେବେଳେ ମୁଁ ଜାଣିଲି ସୁମନ୍ୟୁ କବିତା ଲେଖେ, ମୋର ତା' ପ୍ରତି ଗଭୀର ଅନୁରକ୍ତି ଆସିଗଲା । ମୁଁ ତାକୁ ନୂଆ ରୂପରେ ଦେଖିବାକୁ ଚେଷ୍ଟା କଲି ! ତା' କଥା, ହାବଭାବରୁ ନୂଆ ଅର୍ଥ ଓ ନୂଆ ପ୍ରତୀକ ଖୋଜିବାକୁ ଚେଷ୍ଟା କଲି ।

ଆଉ ସବୁଠାରୁ ଆଶ୍ଚର୍ଯ୍ୟଜନକ ଥିଲା ତା'ର ଅଦ୍ଭୁତ ଲଜ୍ଜାଶୀଳତା, ଯାହା ସେ ଏକ କଠିନ ଗାମ୍ଭୀର୍ଯ୍ୟ ଭିତରେ ଛପାଇ ରଖିବାକୁ ବିପନ୍ନ ପ୍ରୟାସ କରେ ।

କିନ୍ତୁ ସେ ବେଳେ ବେଳେ ବାଙ୍ମୟ ହୋଇ ଉଠେ, ଅସ୍ୱାଭାବିକ ଭାବରେ ପ୍ରଗଲ୍‌ଭ । ମୁଁ ଚୁପ୍‌ଚାପ୍ ତାକୁ ଅନାଏ, ତା' ମୁହଁର ବଦଳୁଥିବା ଅଭିବ୍ୟକ୍ତିକୁ ଲକ୍ଷ୍ୟ କରେ, କଥା ଶୁଣେ ।

: ତମେ ବଡ଼ ହେଲେ କ'ଣ ହେବ ବୋଲି ଭାବିଛ ? କଥା କହୁ କହୁ ରହିଯାଇ ଥରେ ସେ ମତେ ଏକଥା ପଚାରିଲା । ମୁଁ ଚଟ୍‌ପଟ୍ ଜବାବ ଦେଇଥିଲି ।

: ସାଇଣ୍ଟିଷ୍ଟ ! ମତେ ସାଇନ୍‌ସ ଭାରି ଭଲ ଲାଗେ, ମୁଁ ସାଇଣ୍ଟିଷ୍ଟ ହେବି, ତମେ ? ତମେ କ'ଣ ହେବ !

ମୋ' ପ୍ରଶ୍ନର କିଛି ଉତ୍ତର ଦେଲା ନାହଁ ସେ, ଯେମିତିକି ମୋ' କଥା ସେ ଶୁଣିପାରି ନାହିଁ, ଆପଣାର ବିମୃଷ୍ଟ ଚିନ୍ତାରେ ହଜିଯାଇଛି ।

ଟିକିଏ ପରେ, ମୋ' ପ୍ରଶ୍ନର ପୁନରାବୃତ୍ତି ପରେ ସେ କହିଲା, ଧୀରେ ଧୀରେ, ମନକୁ ମନ ଭାବିହେଲା ପରି !

ମୁଁ ଜାଣିପାରୁନି, ମୁଁ କ'ଣ ହେବି । ମୋର କ'ଣ ହେବା ଉଚିତ । ତେବେ ମୋର ଇଚ୍ଛା, ମୁଁ ଏମିତି କିଛି ହେବି, ଏମିତି କିଛି କରିବି, ଯାହା ଫଳରେ ମୁଁ ମରିବା ସମୟରେ ମୋର ଦୁଃଖ ହେବ ନାହିଁ ଯେ, ମୋ ଜୀବନଟା ବ୍ୟର୍ଥ ହୋଇଯାଇ ନାହିଁ । ମତେ ଲାଗିବ, ମୋର ମୃତ୍ୟୁ ପରେ ବି ମୁଁ ବଞ୍ଚିଛି !

କିଶୋର ଜୀବନରେ ଏ କାମନା ଅତି ଅସାଧାରଣ ନୁହେଁ ଅବଶ୍ୟ । ଅମର ହେବାର ଅଭିଳାଷ ଏଇ ବୟସରେ ହିଁ ରୂପ ନେଇଥାଏ । ମୃତ୍ୟୁକୁ ଜୟ କରି ସମୟ ସହିତ ସାଲିସ୍ ନ କରି, ଅମର ଜୀବନ ପାଇବାର ଇଚ୍ଛା— ଏଇ ବୟସର ଗୁଣ ।

ମୁଁ ଠିକ୍ ଜାଣେ ନାହିଁ, ସୁମନ୍ୟୁର କବିତା ଲେଖିବାର ସ୍ପୃହା ଏଇ ଅମର ହେବାର ଅଭିଳାଷରୁ ଜାତ କି' ନା । ତେବେ ସେ ଲେଖୁଥିଲା ବେଶ୍ ଭଲ । ସାହିତ୍ୟରେ ମୁଁ ଭଲ ନମ୍ବର ରଖୁଥିଲେ ମଧ୍ୟ ଏ କଥା ମତେ ମାନିବାକୁ ହେବ, ଏପରି ଲେଖାଲେଖି ମୋ'ଦ୍ୱାରା ଆଦୌ ସମ୍ଭବ ନୁହେଁ ।

ସୁମନ୍ୟୁର କବିତା ବି ମୁଁ ଠିକ୍‌ରୂପେ ବୁଝିପାରୁ ନ ଥିଲି । ଦୁର୍ବୋଧ ପଦଗୁଡ଼ିକ ଦେଖାଇ ମୁଁ ପଚାରେ, ଏଇ ଧାଡ଼ିର ମାନେ କ'ଣ କହିଲ ?

ସେ ମତେ ବୁଝାଇବାକୁ ଚେଷ୍ଟା କରେ ।

କିନ୍ତୁ ଗୋଟାଏ କବିତା ପଢ଼ି ମୁଁ ଚମକି ଉଠିଥିଲି । ମୋର ଗଣିତ-ସର୍ବସ୍ୱ ମନରେ ବି ତାହା ଗାର ଟାଣି ଦେଇଥିଲା କିଛି ସମୟ ପାଇଁ ।

: ଏଇ କବିତାଟି ତୁମେ ତା'କୁ ନେଇ ଲେଖିଛ !

ସୁମନ୍ୟୁର ଗୋଟିଏ ଭୀଷଣ ଅପରାଧ ଯେମିତି ମୋ' ଆଖିରେ ଧରାପଡ଼ିଯାଇଛି । ସେ ଲଜ୍ଜିତ ଭାବରେ ତଳକୁ ମୁହଁ ପୋତି ଦେଲା । କିଛି କହିଲା ନାହିଁ ।

କିନ୍ତୁ ଏ କିପରି ସମ୍ଭବ ? ଯାହା ସହିତ ସେ କେବେ ଦିନେ କଥାବାର୍ତ୍ତା ବି କରି ନାହିଁ, ଯାହା ସାମନାରେ ପହଞ୍ଚିଗଲେ ସେ ପଳାଇ ଯିବାକୁ ବାଟ ପାଏ ନାହିଁ, ତା'କୁ ନେଇ ସେ କବିତା ଲେଖିବ !

ସୁମନ୍ୟୁ ମତେ ଭୟାର୍ତ୍ତ ଆଖିରେ ଚାହିଁଲା । ଡରିଲା ସ୍ୱରରେ କହିଲା: ଏକଥା କାହାକୁ କହିବ ନାହିଁ, ତୁମ ବିଦ୍ୟା ରାଣ ।

: ନା, ମୁଁ କାହାକୁ କହିବି ନାହିଁ । ମୁଁ ଆଶ୍ୱାସନା ଦେଇ କହିଲି । କିନ୍ତୁ ତା' ସହିତ ମୋର କୌତୁହଳ ମଧ୍ୟ ଆସିଲା, ପଚାରିଲି, ଇନ୍ଦୁକୁ ତୁମେ ଏଇ କବିତାଟି ଦେଖାଇଛ ?

ଆତଙ୍କିତ ହୋଇଉଠି ସୁମନ୍ୟୁ କହିଲା; ନା, ନା- ମୁଁ କେବେ ଦେଖାଇବି ନାହିଁ ।

ମୁଁ ଆଶ୍ଚର୍ଯ୍ୟ ହୋଇଥିଲି । ଯାହା ଉଦ୍ଦେଶ୍ୟରେ ତା'ର ଏଇ କବିତାଟି ଲେଖା, ତା'କୁ ସେଇଟି ଲୁଚାଇ ରଖିବାକୁ ଏତେ ଚେଷ୍ଟା କାହିଁକି ?

କିଛି ସମୟ ଚୁପ୍ ରହି ସୁମନ୍ୟୁ କହିଥିଲା, ଏ କବିତା ମୁଁ ତାଙ୍କୁ କେବେ ଦେଖାଇବି ନାହିଁ । କେବେ ନୁହେଁ । ଯଦି ସେ ଜାଣିପାରନ୍ତି... ଯଦି ସେ ଜାଣିପାରନ୍ତି... ଯେ ମୁଁ ତାଙ୍କୁ ନେଇ କବିତା ଲେଖିଛି, ତେବେ...

: ତେବେ ହେବ କ'ଣ ? ମୁଁ ବୁଝିପାରିଲି ନାହିଁ ।

: ତେବେ ସତ କହୁଚି ମୁଁ ଆଉ ବଞ୍ଚିବି ନାହିଁ । ସତ କହୁଚି ମୁଁ ଆତ୍ମହତ୍ୟା କରିଦେବି ।

ତା'ପରେ ସେ ମୋ ହାତରୁ ସେଇ କବିତା ଖଣ୍ଡିକ ଛଡ଼ାଇ ନେଇଗଲା । କାଗଜଟି ଅତି ଯତ୍ନରେ ଭାଙ୍ଗି ପକେଟରେ ପୁରାଇଲା ।

ଏଇ ଘଟଣାଟି ଘଟିବାର କିଛି ଦିନ ପରେ ସେ ମତେ ଚୁପି ଚୁପି ଗୋଟିଏ କଥା ପଚାରିଲା । ପ୍ରଶ୍ନଟିର ସେମିତି କିଛି ଗଭୀରତା ହୁଏତ ନାହିଁ; କିନ୍ତୁ ସେଇ ବୟସରେ ଏଇ ପ୍ରଶ୍ନଟି ଏକାନ୍ତ ମାରାତ୍ମକ ।

ସେ ପଚାରିଲା: ଏଇଟା କ'ଣ ନିହାତି ପାପ କଥା ?

: କୋଉ କଥାଟା ?

: ଏଇ... ମାନେ... ତୁମେ ଖରାପ ଭାବିବ... କିନ୍ତୁ-

ମୁଁ ସୁମନ୍ୟୁର କୁଣ୍ଠା ଦେଖି ଟିକିଏ ଭରସା ଦେବାପରି କହିଲି: କୁହ ! ମୁଁ ଆଦୌ ଖରାପ ଭାବିବି ନାହିଁ ।

ରହି ରହି ଚାପା ଓ ମ୍ରିୟମାଣ ସ୍ୱରରେ ସୁମନ୍ୟୁ ପଚାରିଲା-

: ଏଇ... ମୁଁ ଯେ- ମୁଁ ଯେ- ମନେ ମନେ ଇନ୍ଦୁକୁ ଲଭ୍ କରୁଛି, ଏଇଟା... କ'ଣ... ନିହାତି ପାପ କଥା ?

: ଇସ୍, ପାପ ନୁହେଁ ! ପାପ ନୁହେଁ ତ ତେବେ କ'ଣ ? ଏ ନିହାତି ଖରାପ କଥା ।

ମୁଁ ଯେଉଁ ସ୍ୱରରେ କଥା କହିଲି, ତାହା ମୋର ନିଜସ୍ୱ ସ୍ୱର ନୁହେଁ । ଅଭିଭାବକଙ୍କୁ ଅନୁକରଣ କରିଥିବା ଗମ୍ଭୀର ଗଳା ।

ସୁମନ୍ୟୁ ତଳକୁ ମୁହଁ ପୋତି କିଛିକ୍ଷଣ ବସି ରହିଲା । ମୋ ଠାରୁ ସେ ଟିକିଏ ପ୍ରଶୟପୂର୍ଣ୍ଣ କଥା ଶୁଣିବାକୁ ଆଶା କରିଥିଲା ହୁଏତ, ମୁଁ କିନ୍ତୁ ସେତକ ପ୍ରଶୟ ଦେଇ ପାରିଲି ନାହିଁ । ଝିଅଙ୍କ ସମ୍ପର୍କରେ ମୋର ଯେତେ କିଛି କୌତୂହଳ ଓ ଆଗ୍ରହ ଥିଲେ ମଧ୍ୟ, ଗୁରୁଜନଙ୍କ ତୀକ୍ଷ୍ଣ ନଜର ଓ କଠିନ ଶାସନ ଭିତରେ ଗଢ଼ି ଉଠିଥିବା ଏକ ଅକାଳ ପରିପକ୍ୱ ବିବେକ ଭିତରୁ ଏତିକି ଭାଷା ହିଁ ଉଚ୍ଚାରିତ ହେଲା । ନିଜକୁ ନିଜେ ଶାସନ କଲାପରି- ନା ଝିଅମାନଙ୍କ କଥା ଭାବିବା ଭଲ ନୁହେଁ । ସେମାନେ ଅଲଗା, ଆମେ ଅଲଗା । ସେମାନଙ୍କ ସହିତ ଆମର କି ସମ୍ପର୍କ ଅଛି !

ସୁମନ୍ୟୁ କିନ୍ତୁ ନିରସ୍ତ ହେଲା ନାହିଁ । ମତେ ପଚାରିଲା- ଆଚ୍ଛା, ସତ କୁହ ତ... ଇନ୍ଦୁକୁ ଦେଖିଲେ ତୁମକୁ କେମିତି ଲାଗେ ?

ଇନ୍ଦୁକୁ ଦେଖିଲେ ମତେ କିପରି ଲାଗେ, ସେ କଥା ମୋର ଏବେ ସ୍ପଷ୍ଟ ମନେ ଅଛି । ଏବେ ମଧ୍ୟ ମୋ ମନ ଭିତରେ ଏକ ଚଞ୍ଚଳ ଶିହରିତ ଆବେଗ ଚହଟି ଉଠେ । ତା'ର ସେହି ପନ୍ଦର ବର୍ଷ ବୟସର କୁମାରୀ ରୂପ ମୁଁ ଭୁଲିପାରି ନାହିଁ । ମଥାରେ ଗହଳ କଳାବାଳ, ଯାହା ବେଶ୍ ଲମ୍ବା ଓ ସୁନ୍ଦର, ଗାଢ଼ କଳା ଭୁରୁ ତଳେ ଉଜ୍ଜ୍ୱଳ ଗଭୀର ଦୁଇ ଆଖି, ନରମ ଓଠ ଓ ଧଳା ଧଳା ମୁକ୍ତାପରି ସଜା ଦାନ୍ତ-ସବୁ ମିଶି ସେ କେବଳ ସୁନ୍ଦର ଦେଖାଯାଏ ନାହିଁ, ମହିମାନ୍ୱିତ ମନେହୁଏ । ଖୁବ୍ ଶାନ୍ତ ଧୀର ସ୍ୱଭାବର ଝିଅ ଥିଲା ସେ, ସ୍କୁଲର ସବୁଠାରୁ ଦୁର୍ଦ୍ଦାନ୍ତ ଛାତ୍ର ବି ତାକୁ ଚିଡେଇବା ପାଇଁ ସାହସ ପାଏ ନାହିଁ ।

ମୁଁ ଏତେକଥା ଲେଖି ମଧ୍ୟ ଯେତିକି ବୁଝାଇ ପାରୁନାହିଁ, ସେତକ ସୁମନ୍ୟୁ ଖୁବ୍ ସଂକ୍ଷିପ୍ତରେ ମତେ ସେଦିନ ବୁଝାଇ ଦେଇ ପାରିଥିଲା । ମୋର ଛୋଟିଆ 'ବେଶ୍ ଭଲ ଝିଅଟିଏ' ମନ୍ତବ୍ୟ ଶୁଣିବା ପରେ ଟିକିଏ ଚୁପ୍ ରହି, ଚାପା ଦୀର୍ଘନିଃଶ୍ୱାସ ଛାଡ଼ି ସେ କହିଥିଲା-

ତାକୁ ଦେଖିଲେ ମତେ କେମିତି ଲାଗେ ମୁଁ ଆଦୌ ବୁଝାଇ ପାରିବି ନାହିଁ, ଦୀପକ । ତାକୁ କ୍ଲାସରେ ଦେଖିଲେ ମୋର ମନେହୁଏ ମୋ ଜୀବନରେ ଆଉ କିଛି ଲୋଡା ନାହିଁ, ଏ ଜୀବନରେ ମୁଁ ଆଉ କିଛି ଚାହେଁ ନାହିଁ । ମୁଁ ଏବେ ଏଇଠି ମରିଗଲେ ମଧ୍ୟ ମୋର କିଛି ଦୁଃଖ ନାହିଁ । ମୁଁ ସୁଖୀ । ମୁଁ ଧନ୍ୟ ।

କେବଳ ଦୂରରୁ ପଲକଟିଏ ଦେଖି ପାରିବାର ଏ ଯେଉଁ ସନ୍ତୋଷ, ସେ କଥା ବୋଧହୁଏ କେତେକଙ୍କୁ ଅଦ୍ଭୁତ ମନେହେବ । ପଦେ ବି କଥା ନ କହି, ନିକଟ ସାନ୍ନିଧ୍ୟର କୌଣସି ଲାଳସା ନ ରଖି, ଏତିକିରେ ପରିତୃପ୍ତ ହେବାର ଦୃଷ୍ଟାନ୍ତ ବୋଧହୁଏ ବହୁତ ବେଶି ନାହିଁ ।

ସୁମନ୍ୟୁ କିନ୍ତୁ ସେହିପରି ଜଣେ ।

ମୁଁ କହିଲି- ମତେ ସେଇ କବିତାଟି ଟିକିଏ ଦିଅ । ମୁଁ ଆଉ ଥରେ ଭଲକରି ପଢ଼ିବି ।

କବିତାଟି ମୁଁ ସେଦିନ ତା'ଠାରୁ ନେଇ ପାଖରେ ରଖିଥିଲି । ଯେଉଁ ଦୁର୍ବୁଦ୍ଧିର ବଶବର୍ତ୍ତୀ ହୋଇ ଏପରି କାମଟିଏ ମୁଁ କରିଥିଲି, ତାହା ମୁଁ ଆଜିପର୍ଯ୍ୟନ୍ତ ଠିକ୍ ରୂପେ ବୁଝି ପାରିନାହିଁ । ଏହା ପ୍ରକୃତରେ ଏକ ଦୁଃସାହସପୂର୍ଣ୍ଣ କାମ—ଅନ୍ତତଃ ମୋ' ପକ୍ଷରେ । ଏପରି ଦୁଷ୍ଟାମି (ହଁ, ଦୁଷ୍ଟାମି ନୁହେଁ ତ ଆଉ କ'ଣ ?) ମୁଁ ମୋ ଜୀବନରେ ପୂର୍ବରୁ କେବେ କରି ନଥିଲି । ପରେ କେବେ କରିବାକୁ ସାହସ ମଧ୍ୟ କରେନାହିଁ । ସେଇ ମୋର ପ୍ରଥମ ଓ ଶେଷ କଳୁଷିତ ଅପରାଧ ।

ନା- କଳୁଷିତ ବୋଲି ମୁଁ କହିବି ନାହିଁ । ଏହା ପାପ- ଏହା ମଧ୍ୟ ମୁଁ ସ୍ୱୀକାର କରେ ନାହିଁ । ତେବେ, ଅପରାଧ ନିଶ୍ଚୟ—ପ୍ରଚଳିତ ସାମାଜିକ ମୂଲ୍ୟବୋଧ ହିସାବରେ ।

କିନ୍ତୁ ମୋର ସେହି ଅପରାଧର ପ୍ରାୟଶ୍ଚିତ୍ତ ମୁଁ କଲିନାହିଁ । ଯେ କଲା ସେ ସୁମନ୍ୟୁ । ତା' ଆଖିରୁ ସେତେବେଳେ ଧାର ଧାର ଲୁହ ନିଗିଡ଼ି ପଡୁଥିଲା, ସେଇ ଲୁହ ଓ ଉଦ୍‌ଗତ କୋହ ଭିତରେ ଥରି ଥରି ସେ ମତେ କହିଲା...

ଯାହା କହିଲା ସେ ତ ପରର କାହାଣୀ । ତା' ପୂର୍ବରୁ ଯାହା ଘଟିଲା, ତାହା ପ୍ରଥମେ କହୁଛି ।

ସୁମନ୍ୟୁ କବିତାଟି ମୁଁ ନେବାର ଦୁଇଦିନ ପରେ ଇନ୍ଦୁର ବାପା ଆମ ସ୍କୁଲକୁ ଆସିଥିଲେ । ବଡ଼ ଗମ୍ଭୀର, ଥମଥମ । ସେ ଜଣେ ବଡ଼ ଅଫିସର । ତାଙ୍କୁ ଆମ ସ୍କୁଲରେ ସମସ୍ତେ ଚିହ୍ନନ୍ତି । ତାଙ୍କ ସୁନ୍ଦର ଘରଟି ମଧ୍ୟ ଆମେ ସମସ୍ତେ ଦେଖିଛୁ ।

ଇନ୍ଦୁର ବାପା ସ୍କୁଲକୁ ଆସି ହେଡ୍‌ମାଷ୍ଟରଙ୍କ ସହିତ କ'ଣ କଥାବାର୍ତ୍ତା ହେଲେ । ତା'ପରେ ଚାଲିଗଲେ । ସେ ଚାଲିଯିବା ଠିକ୍ ପରେ ପରେ ଆମ କ୍ଲାସକୁ ହେଡ୍‌ସାର୍ ଆସିଲେ । ହାତରେ ଗୋଟିଏ ଲମ୍ବା ବେତ—ସେହି ବେତର କରାମତି ଆମର କାହାରିକୁ ଅଜଣା ନୁହେଁ ।

କ୍ଲାସରେ ପହଞ୍ଚି ସେ ଗମ୍ଭୀର ସ୍ୱରରେ ଡାକିଲେ- ସୁମନ୍ୟୁ ।

ସୁମନ୍ୟୁ କ୍ଲାସ୍‌ରେ ଅନ୍ୟମନସ୍କ ହୋଇ ବସି ରହିଥିଲା; ଯେମିତି ସେ ଅଧିକାଂଶ ସମୟରେ ବସି ରହିଥାଏ । ନିଜ ନାମ ଡକାହେବା ଶୁଣି ସେ ଠିଆ ହୋଇପଡ଼ିଲା ।

ଏଠିକି ଆସ ।

ସୁମନ୍ୟୁ ଟେବୁଲ୍ ପାଖକୁ ଗଲା ।

ହେଡ୍‌ସାର ତାଙ୍କ ହାତରେ ଧରିଥିବା ଗୋଟିଏ କାଗଜ ତା'କୁ ଦେଖାଇଲେ ।

ଏଇଟା ତୁମେ ଲେଖିଚ ?

ସୁମନ୍ୟୁ କାଗଜଟି ଦେଖିଲା । ଚିହ୍ନି ପାରିଲା । ଏକ ଶିହରିତ ବିସ୍ମୟ ଖେଳିଗଲା ତା' ଭିତରେ । ଏଇ କାଗଜଟି ହେଡସାର୍‌ଙ୍କ ହାତକୁ ଆସିଲା କିପରି ?

ମୁଁ ବି ଚମକି ଉଠିଲି । କିନ୍ତୁ ମୋର ଚମକିବାର କି କାରଣ ଥିଲା ? ଦୁଇଦିନ୍ ତଳେ ମୁଁ ନିଜେ ତ ଏଇ କବିତାଟିର ତଳେ ସୁମନ୍ୟୁ ମିଶ୍ର ନାମ ଲେଖି ଡାକରେ ପଠାଇ ଦେଇଥିଲି । ଇନ୍ଦୁର ଘର ଠିକଣାରେ । ତା' ଘର ଠିକଣା ଆମ ସ୍କୁଲରେ ନ ଜାଣେ କିଏ ।

ଏମିତି ମୁଁ କାହିଁକି କରିଥିଲି ? କାହିଁକି ? ନା- ମୁଁ ନିଜେ ମଧ୍ୟ ଜାଣେ ନାହିଁ । ଭଗବାନଙ୍କ ଦ୍ୱାହି, ମୁଁ ଜାଣେ ନାହିଁ । କିନ୍ତୁ ପଠାଇ ଦେଇଥିଲି । ଆଜି ଇନ୍ଦୁର ବାପା ଆମ ସ୍କୁଲକୁ ଆସିଥିଲେ । ବର୍ତ୍ତମାନ ହେଡ୍ ସାରଙ୍କ ହାତରେ ସେଇ ଅଭିଶପ୍ତ କାଗଜ ଖଣ୍ଡିକ । ମୋ ଆଖି ଆଗରେ ଏବେ ସଂପୂର୍ଣ୍ଣ ଚିତ୍ରଟି ସ୍ପଷ୍ଟ—ଦିନ ଆଲୁଅ ପରି ।

ସୁମନ୍ୟୁର ଓଠରୁ ଏକ ନିରୁକ୍ତ ଯନ୍ତ୍ରଣାର ଭାଷା ବାହାରି ଆସିଲା । ତା' ଉପରେ ସପାସପ ବେତ ଚାଲିଛି । ହେଡ୍ ସାର ଅତି ରାଗୀ ଲୋକ । ପୁଣି ତାଙ୍କର ନୀତିନିୟମ ଜ୍ଞାନ ଅତି ବେଶି । ସୁମନ୍ୟୁର ଯେ ଆଜି ନିସ୍ତାର ନାହିଁ ସେ କଥା ବୁଝିପାରି କମ୍ପି ଉଠିଲି ମନ ଭିତରେ ।

ହେଡ୍ ମାଷ୍ଟରଙ୍କ ବେତ-ସାପର ଲହ ଲହ ଜିଭ ସୁମନ୍ୟୁର ନରମ ଦୁର୍ବଳ ଦେହକୁ ଚାଟି ଯାଉଥାଏ । ସେଇ ବିଷାକ୍ତ ଜ୍ୱାଳାରେ ସୁମନ୍ୟୁ ତଳେ ବସି ପଡ଼ିଲା—ଦୁଇ ହାତରେ ମୁହଁକୁ ଘୋଡାଇ ରଖି, ଉଦ୍‌ଗତ ଲୁହର ଧାରା ଶ୍ରବଣକୁ ଲୁଚାଇ ରଖି । କିନ୍ତୁ ତା' କୋହ ତ ଲୁଚି ରହିପାରିଲା ନାହିଁ ।

ସୁମନ୍ୟୁ ଦେହରେ ନୋଳା ବସି ଯାଇଥାଏ ।

ଦଣ୍ଡ ଦେଇସାରି ହେଡ୍‌ସାର ଗୋଟିଏ ଛୋଟ ଭାଷଣ ଦେଇଥିଲେ ଆମକୁ । ମଣିଷ ଜୀବନରେ ଚରିତ୍ର ହିଁ ସବୁଠାରୁ ବଡ଼କଥା । ଯାହାର ଚରିତ୍ର ନାହିଁ ସେ ପଶୁ, ସେ ସତରେ କଳ୍ପନା କରିପାରି ନଥିଲେ ଯେ ସୁମନ୍ୟୁ ନାମକ ଏକ ମେଧାବୀ ଛାତ୍ର ଏପରି ନୀଚ କାମଟିଏ କରିବ । ଯେଉଁ ଆର୍ଯ୍ୟଭୂମି ଭାରତବର୍ଷରେ ମହାତ୍ମାଗାନ୍ଧୀ ଓ ବୁଦ୍ଧଙ୍କ ପରି ମହାମାନବ ଜନ୍ମ ହୋଇଛନ୍ତି... ଇତ୍ୟାଦି, ଇତ୍ୟାଦି ।

ହେଡ୍‌ସାରଙ୍କ ଭାଷଣ ଆହୁରି ବଢ଼ିଥାଆନ୍ତା ବୋଧହୁଏ, କିନ୍ତୁ ଖେଳଛୁଟିର ଘଣ୍ଟା ବାଜି ଉଠିଲା । ସେ ବିଦାୟ ନେଲେ ।

ଏଇ ଆକସ୍ମିକ ଘଟଣାରେ ହତବାକ୍, ବିମୂଢ଼ ଅନ୍ୟାନ୍ୟ ସବୁ ଛାତ୍ରମାନେ ମଧ୍ୟ ସାଙ୍ଗେ ସାଙ୍ଗେ କ୍ଲାସ୍ ଛାଡ଼ି ଚାଲିଗଲେ- ବୋଧହୁଏ ଟିକିଏ ଅଧିକ ତରତର ହୋଇ ।

କ୍ଲାସ ନିର୍ଜନ ହୋଇଯିବା ପରେ ମୁଁ ସୁମନ୍ୟୁ ପାଖକୁ ଗଲି । ସୁମନ୍ୟୁ ଟେବୁଲ ପାଖରେ ସେମିତି ଆଣ୍ଠୁମାଡ଼ି ବସି ଆଖିଲୁହ ପୋଛୁଥାଏ ।

-ସୁମନ୍ୟୁ... ମୁଁ ଭୀତସ୍ୱରରେ ଡାକିଲା । ତା'ର ଆହତ ଦେହରେ ହାତ ଦେବାପାଇଁ ମୋର ସାହସ ହେଉନଥାଏ ।

ସେ ମୋ ଡାକ ଶୁଣିଲା ନାହିଁ ।

ସୁମନ୍ୟୁ ଭାଇ... ମୋର ଦୋଷ ହୋଇଛି । ମୁଁ ତୁମକୁ ନ କହି..

ମୋ ଭିତରେ କେଉଁଠି ଏତେ ଲୁହ, ଏତେ ଦୁଃଖ, ଏତେ ଅନୁତାପ ଜମି ରହିଥିଲା କେଜାଣି, ମୁଁ ଭୋ ଭୋ କାନ୍ଦି ଉଠିଲି । ତା'ର ଗୋଟିଏ ହାତକୁ ମୋର ମୁହଁରେ ଚାପିରଖି ।

ସୁମନ୍ୟୁ ତା' ହାତଟି ମୋ ହାତରୁ ଛଡ଼ାଇ ନେଇଗଲା । ମୁଁ ତା' ପାଖରେ ବସି ସେମିତି କାନ୍ଦି ଲାଗିଲି । ତା' ଆଖି ଏବେ ଶୁଖିଲା କିନ୍ତୁ ମୋ ଆଖିରୁ ଧାର ଧାର ଲୁହ ବହି ଚାଲିଲା । ମୁଁ ବିକଳ ହୋଇ କହିଲି- ମତେ କ୍ଷମା କର ସୁମନ୍ୟୁ- ମୁଁ ଜାଣି ନ ଥିଲି, ଜାଣି ନ ଥିଲି...

ସୁମନ୍ୟୁର ହାତ ଏଥର ମୋ ଆଡ଼କୁ ଲମ୍ବି ଆସିଲା । ମୋ ପିଠି ଉପରେ ହାତ ରଖି, ସେ ଅଶ୍ରୁସଜଳ କଣ୍ଠରେ କହିଲା— ମୁଁ ତୁମର କି ଦୋଷ କରିଥିଲି, ଦୀପକ—ତୁମେ ମତେ ଏମିତି...

ମୋର ଦୋଷ ହୋଇଛି ସୁମନ୍ୟୁ । ମତେ କ୍ଷମା କର ।

ମୁଁ ଏବେ—ମୁଁ ଏବେ ମୁହଁ ଦେଖେଇବି କାହାକୁ ? ମୁଁ ବଞ୍ଚିବି କିପରି ।

ସେ ଦିନର ବର୍ଣ୍ଣନା ଆଉ ଦୀର୍ଘ କରିବା ମୋର ଅଭିପ୍ରାୟ ନୁହେଁ । ତେବେ ଏତିକି ଲେଖିଲେ ଯଥେଷ୍ଟ ହେବ ଯେ ସେଦିନ ସୁମନ୍ୟୁ ପଛ ସିଟ୍‌ରେ ବସି ରହି ନିଃଶବ୍ଦରେ କାନ୍ଦୁଥିଲା ଓ ମୁଁ ଅନ୍ୟର ଅଲକ୍ଷରେ ତା' ପିଠି ଆଉଁସି ଦେଉଥିଲି । କ୍ଲାସ ଶେଷ ହେବା ପରେ, ହେଡ୍‌ସାରଙ୍କ ନିର୍ଦ୍ଦେଶ ଅନୁଯାୟୀ ସେ ଡିଟେଣ୍ଡ୍ ରହିଥିଲା ସନ୍ଧ୍ୟା ଛଅଟା ପର୍ଯ୍ୟନ୍ତ । ମୁଁ ସ୍କୁଲଗେଟ୍ ପାଖରେ ଠିଆ ହୋଇ ଅଧୀର ଭାବରେ ତାକୁ ଅପେକ୍ଷା କରି ରହିଥିଲି ।

ସନ୍ଧ୍ୟା ଛଅଟା ବେଳେ, ବିଷଣ୍ଣ ମ୍ରିୟମାଣ ଗୋଟିଏ କିଶୋର କ୍ଲାସରୁମ୍ ଛାଡ଼ି ବାହାରି ଆସିଥିଲା । ସାରାଦିନର ଶାରୀରିକ ନିର୍ଯ୍ୟାତନା ଓ ମାନସିକ ଯନ୍ତ୍ରଣାରେ ସେ ନଇଁପଡ଼ିଛି ଆଗକୁ । ମୁଣ୍ଡବାଳ ଅବିନ୍ୟସ୍ତ, ଆଖି ଲାଲ । ଓଠ କମ୍ପୁଛି । ସେ ଗେଟ୍ ପାଖକୁ ଆସିବା କ୍ଷଣି, ମୁଁ ଆଗେଇ ଯାଉଥିଲି । ମୁଁ ଜାଣେ, ସୁମନ୍ୟୁ ମୋ ଅପରାଧକୁ କ୍ଷମା ଦେବ ନାହିଁ । ମୁଁ ତା'ର ଏହି ବିପର୍ଯ୍ୟୟର

ଏକମାତ୍ର କାରଣ । ଆଜି ମୋତେ ଏଇ ଦଣ୍ଡ ଦିଆଯିବା ଉଚିତ ଥିଲା । କିନ୍ତୁ ମୁଁ ଦଣ୍ଡ ପାଇଲି ନାହିଁ । ଯେ ଦଣ୍ଡ ପାଇଲା ସେ ସୁମନ୍ୟୁ । କେହି ଜାଣିଲେ ନାହିଁ ଯେ ମୁଁ ଦୋଷୀ–

ସୁମନ୍ୟୁ ନିର୍ଦ୍ଦୋଷ ।

ଏକଥା ଭାବି ଭାବି ଆଗେଇ ଯାଉ ଯାଉ ମୁଁ ହଠାତ୍ ରହିଗଲି । ଦେଖିବାକୁ ପାଇଲି— ଗେଟ୍ ସେପାଖରୁ ଆଉ ଜଣେ ବାହାରି ଆସୁଛି । ଅଶରୀରୀ ଛାୟା ପରି ।

ସନ୍ଧ୍ୟାର ଛାୟାନ୍ଧକାର ଭିତରେ ସେପଟୁ ଯିଏ ବାହାରି ଆସିଲା, ତାକୁ ମୁଁ ଚିହ୍ନିପାରିଲି । ସେ ଇନ୍ଦୁ ।

ଇନ୍ଦୁ କଥା ମୁଁ ଏ ଯାଏ କିଛି କହି ନାହିଁ । ହେଲେ ତା' ସମ୍ପର୍କରେ ଆଉ କହିବାର ବା ଥିଲା କ'ଣ ? ସେ ଦିନସାରା ଅତି ଗମ୍ଭୀର ହୋଇ ନିଜ ସ୍ଥାନରେ ବସି ରହିଥିଲା—ସୁମନ୍ୟୁ ଯେତେ ବେତମାଡ଼ ଖାଇ କାନ୍ଦୁଥିଲା, ହେଡ୍ ସାର୍ ଯେତେବେଳେ ଚରିତ୍ର ଉପରେ ଭାଷଣ ଦେଉଥିଲେ, ସେତେବେଳେ ପିଅନ ନୋଟିସ୍ ନେଇ ଆସିଲା ସେ ସୁମନ୍ୟୁ ଆଜି ଛଅଟା ଯାଏ ଡିଟେଣ୍ଡ ରହିବ, ସାରା ସମୟ ଇନ୍ଦୁ ଥିଲା ନୀରବ, ନିଶ୍ଚଳ । ଯେମିତି ତା' ଦେହରେ ପ୍ରାଣ ନାହିଁ । ସେ ପଥର ପାଲଟି ଯାଇଛି ।

ଏବେ କିନ୍ତୁ ମୋ ସାମନାରେ ଇନ୍ଦୁ—ସେ ଗେଟ୍ ସେପଟରୁ ଧୀର ପାଦରେ ବାହାରି ଆସିଲା । ଛପି ଛପି ଅତି ସନ୍ତର୍ପଣରେ । ସାମନାରେ ଇନ୍ଦୁକୁ ଦେଖି ସୁମନ୍ୟୁ ଥମକି ଠିଆ ହୋଇ ପଡ଼ିଲା । କିନ୍ତୁ କିଛି ସେ କହିବା ପୂର୍ବରୁ ଶୁଣାଗଲା ଇନ୍ଦୁର ବାଷ୍ପରୁଦ୍ଧ ଆବେଗ କମ୍ପିତ ସ୍ୱର ।

- ସୁମନ୍ୟୁ, ମୁଁ ତୁମକୁ ଭଲପାଏ ।

ନୀରବ ନିର୍ଜନ ସେତେବେଳେ ସାରା ପୃଥିବୀ ଯେପରି । ଆକାଶରେ ସନ୍ଧ୍ୟାର ବିଷଣ୍ଣ ଅନ୍ଧାର । ପବନର ଗତି ନାହିଁ । ସାରା ପରିବେଶ ଶୂନ୍ୟ ଓ ନିର୍ଜନ । ସେହି ପରିବେଶ ଭିତରେ ଏ ସ୍ୱୀକାରୋକ୍ତି ଶୁଣାଗଲା । ଅଦ୍ଭୁତ ଅସହାୟ ଓ ବିଦୀର୍ଣ୍ଣ । ମୋର ମନେହେଲା ଯେପରି ସେଇ ସ୍ୱରଟି ନିଃଶବ୍ଦରେ ବ୍ୟାପିଯାଇ ସାରା ଆକାଶ ଓ ଅନ୍ଧକାରକୁ ଆଚ୍ଛନ୍ନ କରିଦେଲା । ମୁମୂର୍ଷୁ ପବନରେ ପ୍ରାଣସ୍ପନ୍ଦନ ସଞ୍ଚାରି ଦେଲା ।

ତା'ପରେ ଇନ୍ଦୁ ସୁମନ୍ୟୁର ଅତି ନିକଟକୁ ଚାଲି ଆସିଲା । କହିଲା—ସୁମନ୍ୟୁ, ମୁଁ ତୁମକୁ ସତରେ ଭଲପାଏ ।

ଗଭୀର ବେଦନା ଓ ଅଶ୍ରୁରେ ଇନ୍ଦୁର ସ୍ୱର ସଜଳ ହୋଇ ଉଠିଲା ! ତା'ର ନିଃଶ୍ୱାସର ଗତି ଦ୍ରୁତ ହୋଇଉଠିଲା ଯେମିତି । ସେ ଦୁଇ ହାତରେ ସୁମନ୍ୟୁକୁ ନିଜ ଛାତିରେ ଚାପି ଧରିଲା । ଗଭୀର ରୂପେ ତା' ଓଠରେ ଚୁମ୍ବନ ଦେଲା । ତା'ପରେ ଗୋଟିଏ ଝଟକାରେ ନିଜକୁ ମୁକ୍ତ କରିନେଇ, କେଉଁ ଅନ୍ଧାରରେ ମିଶିଗଲା ।

ଏବଂ ସୁମନ୍ୟୁ ଏକ ବଜ୍ରାହତ ବୃକ୍ଷପରି କିଛି ସମୟ ନୀରବରେ ସେଇଠି ଠିଆ ହୋଇ ରହିଲା, ତଳକୁ ମୁଣ୍ଡପୋତି । ସ୍ଥିର, ନିଶ୍ଚଳ ! ଯେମିତି ତା' ଛାତି ହଠାତ୍ ନିଷ୍ପନ୍ଦ ହୋଇଯାଇଛି । ନିଃଶ୍ୱାସ ଯାଉନାହିଁ । ଦେହରେ ପ୍ରାଣ ନାହିଁ ।

ତା'ପରେ ଟିକିଏ କମ୍ପିଉଠିଲା ତା' ଦେହ—ସେ ଧୀରପାଦରେ ଚାଲିବାକୁ ଲାଗିଲା । ପ୍ରେତାୟିତ ଗତିପରି ନିରୁଦ୍ଦିଷ୍ଟ ।

ମୁଁ ମୋର ଲୁଚିବା ସ୍ଥାନରେ ହିଁ ଆପଣାକୁ ଗୋପନ କରି ରଖିଲି । ପଦାକୁ ବାହାରିଲି ନାହିଁ ବହୁତ ସମୟ ଧରି । ତା'ପରେ ଆକାଶର ଅସଂଖ୍ୟ ତାରା ମତେ ଚାହିଁ ମିଟି ମିଟି ହସିବା ପରେ, ଗୋଟିଏ ଆହତ ପଶୁପରି ମୁଁ ବାହାରି ଆସିଲି ।

ପରଦିନଠାରୁ କିନ୍ତୁ ଆଉ ସୁମନ୍ୟୁର ଦେଖା ମିଳିଲା ନାହିଁ । ନା—ତା' ପରଦିନ ବି ନୁହେଁ । କ୍ରମଶଃ ଗୋଟିଏ ଗୁଜବ ରଟିଲା କ୍ଲାସରେ—ସୁମନ୍ୟୁ ଘର ଛାଡ଼ି କୁଆଡ଼େ ଚାଲିଯାଇଛି । କାହାକୁ କିଛି ନ କହି ନ ଶୁଣି, ଠିକ୍ ସେହିଦିନ ରାତିରେ ହିଁ ।

ଅବଶିଷ୍ଟ ଯେତେଦିନ ମୁଁ ସେ ସହରରେ ଥିଲି, ସୁମନ୍ୟୁର କୌଣସି ଖବର ଆଉ ମତେ ମିଳିନାହିଁ । ମୁଁ ସ୍କୁଲ ପାସ୍ କରି କଟକକୁ ଆସି କଲେଜରେ ନାମ ଲେଖାଇଛି । ତା'ପରେ ମୋ ଜୀବନର ପଚିଶବର୍ଷ ପାଣି ପରି ବହିଯାଇଛି । କିନ୍ତୁ ମୁଁ ତା' ଖବର ଆଉ ପାଇନାହିଁ ।

ମୁଁ ଜାଣେ ନାହିଁ, ସୁମନ୍ୟୁ ଏବେ କେଉଁଠି ଅଛି । ମୁଁ ଜାଣେ ନାହିଁ, ସେ ବଞ୍ଚିଛି କି ନାହିଁ । ହୁଏତ ସେ ଏଇଠି କେଉଁଠି ଅଛି । ଆମ ଭିତରେ । ହୁଏତ ସେ ମୋର ଏଇ ଗପଟି ପଢ଼ିବ । ପଢ଼ି ହସି ଦେବ । 'କାପୁରୁଷ-ଭୀରୁ'—ଏତିକି ସେ କହିବ ମତେ ମନେ ମନେ ।

ମୁଁ କାପୁରୁଷ ନିଶ୍ଚୟ । ଭୀରୁ ନିଶ୍ଚୟ । ନ ହେଲେ ସେଦିନର ସେଇ ଘଟଣାଟି ପରେ ମୁଁ ମୋର ଅପରାଧକୁ ଏମିତି ନୀଚ ଭାବରେ ଲୁଚାଇ ରଖିଥାଆନ୍ତି କିପରି ? ମୋର କ'ଣ ଏତିକି ସତ୍‌ସାହସ ଥିଲା ଯେ ମୁଁ ଯାଇ କହିଥାଆନ୍ତି ଏଇ କବିତାଟି ସୁମନ୍ୟୁ ପଠାଇ ନାହିଁ । ମୁଁ ପଠାଇଛି ଇନ୍ଦୁ ପାଖକୁ । ମତେ କି ଦଣ୍ଡ ଦେଉଛନ୍ତି ଦିଅନ୍ତୁ ।

ନା- ସେକଥା ମୁଁ କହିପାରିଲି ନାହିଁ । ତା'ର କାରଣ ମୁଁ ଇନ୍ଦୁକୁ କେବେ ହୃଦୟ ଦେଇ ଭଲପାଇ ନାହିଁ । କେବଳ ତା' ରୂପକୁ ଦେଖି ମୁଗ୍ଧ ଓ ସନ୍ତୁଷ୍ଟ ହୋଇଛି ମାତ୍ର । ସେଇଥି ପାଇଁ ଏକ କାପୁରୁଷ ପରି, ଏକ ଭୀରୁ ପରି ମୁଁ ଆତ୍ମଗୋପନ କରିଗଲି । କିନ୍ତୁ ସୁମନ୍ୟୁ- ଆଖିର ଲୁହ ଓ ହୃଦୟର ଯନ୍ତ୍ରଣା ନେଇ ସେ ଚାଲିଗଲା । ବୋଧହୁଏ ଖୁବ୍ ଦୂରକୁ । ଯେଉଁ ଦୂରତ୍ୱ ଅତିକ୍ରମ କଲେ ପାଇବା ଓ ନ ପାଇବାର ଅର୍ଥ ଏକ ହୋଇଯାଏ । ଆନନ୍ଦ ଓ ବେଦନାର ପାର୍ଥକ୍ୟ ଦୂର ହୋଇଯାଏ ।

ସେହି ଦୂରତ୍ୱ ବୋଧହୁଏ ସମସ୍ତେ ଅତିକ୍ରମ କରିପାରନ୍ତି ନାହିଁ ।



# ପୃଥିବୀର ଅସ୍ତ

## ରବି ସ୍ୱାଇଁ

ରାସ୍ତାକଡ଼ର ବୁଢ଼ା କୋଳି ଗଛ ମୂଳେ ମୁନା ଛିଡ଼ା ହେଇଥାଏ ।

କିନ୍ତୁ ଛିଡ଼ା ହୋଇ ରହିବା ପାଇଁ ତା' ଗୋଡ଼ରେ ଆଉ ବଳ ନଥାଏ । ଦଶ ବର୍ଷର କଅଁଳ ପାଦ ଦୁଇଟି ଥକି ଯାଇଥାନ୍ତି । ଦୁର୍ବଳ ଭଣ୍ଡା ଦୁଇଟି କ୍ଲାନ୍ତ ହେଇପଡ଼ିଥାନ୍ତି । ସେଇ କ୍ଲାନ୍ତ ଅବଶ ଗୋଡ଼ ଉପରେ ଭରା ଦେଇ ଠିଆ ହେଇଥାଏ ମ୍ରିୟମାଣ ଅବସନ୍ନ ଶିଶୁଟିଏ । ଆଉ ଚାଲିବାକୁ ବଳ ନାହିଁ । ସବୁଯାକ ବଳ ନିଗିଡ଼ି ଯାଇଛି ତା'ର ଶୀର୍ଣ୍ଣ ଶରୀର ଭିତରୁ ।

ତିନି ଦିନର ଅଧା ଉପାସ ଓ ଦିନକର ଖାଡ଼ା ଉପାସ ତା'ର ଖେଳି ବୁଲୁଥିବା ଶରୀରକୁ ଏମିତି ଶୁଖେଇ ଦେଇଛି । ତା'ର ଉଡ଼ିବୁଲୁଥିବା ମନକୁ ଶ୍ୱାସରୁଦ୍ଧ କରିପକେଇଛି ।

ଆଉ ଘରକୁ ଫେରିଯିବା ପାଇଁ ମନ ହଉନି କି ସାହସ କୁଳଉନି । ଘରକୁ ଫେରିଯାଇ ସେ କ'ଣ ଦେଖିବ ? ଚାରିଦିନ ହେଲା କିଛି ଖାଇ ନଥିବା ତା'ର ବୋଉ କାନ୍ଥକୁ ଆଉଜି ନୀରବରେ କାନ୍ଦୁଚି– ଏଇଆ ତ ? ନା ସେ ଆଉ ଘରକୁ ଯିବନି ।

ତା'ର ଶୁଖିଲା ଶରୀରଟି ଥରି ଉଠିଲା । ଆଖି ଜକେଇ ଆସିଲା । ଭୋକିଲା ଶିଶୁଟିଏ କଇଁ କଇଁ କାନ୍ଦି ଉଠିଲା । ଏଠି କିନ୍ତୁ ତାକୁ ତୁନି କରିବା ପାଇଁ କେହି ନଥିଲେ । ତା' ଆଗ ରାସ୍ତାରେ କାଁ ଭାଁ ମଣିଷଟାଏ କି ଗାଡ଼ି ମଟର ତାଙ୍କ ବାଟରେ ଚାଲି ଯାଉଥାନ୍ତି । ରାସ୍ତା ସେପଟେ ଦୋକାନଗୁଡ଼ିକ ସଜାସଜି ହେଉଥାଏ । ଆଜି ଦିନକ ପାଇଁ । ଅଳ୍ପ କେତୋଟି ଗରାଖ ସେଠି ଟୁଙ୍ଗୁଣୁ ମୁଙ୍ଗୁଣୁ ହେଉଥାନ୍ତି । ଟିକିଏ ଦୂରରେ ଆକାଶକୁ ମୁଣ୍ଡ ଟେକି କୋଠାଘରମାନ ଠିଆ ହେଇଥାନ୍ତି । ଟି.ଭି.ର ଆଣ୍ଟିନା ସେମାନଙ୍କର ଗର୍ବକୁ ଆହୁରି ବଢ଼େଇ ଦେଇଥାଏ । ସମସ୍ତଙ୍କର ଉଚ୍ଚତାକୁ ଟପିଯାଇଥାଏ ମନ୍ଦିରର ଚୂଡ଼ା । ତା' ଉପରେ ପତାକା ଫରଫର ହେଇ ଉଡୁଥାଏ । ଭିତରେ ଠାକୁର ବସିଥାନ୍ତି– ଭୋଗ ଖାଇବାକୁ ।

ଭୋକିଲା ଶିଶୁଟିଏ କାନ୍ଦୁଥାଏ– ଡହଳ ବିକଳ ହେଇ । ତାକୁ ସମସ୍ତେ ରାସ୍ତା କଡ଼ର ଆବର୍ଜନା ଭିତରକୁ ଠେଲି ଦେଇଥାନ୍ତି । ଏପରି ଏକ କ୍ରମବର୍ଦ୍ଧମାନ ସହର ପାଇଁ ସେ ଅଳିଆ ମୁଠାଏ ମାତ୍ର । ଏ ଚକ୍ ଚକ୍ ସଭ୍ୟତାକୁ ମଇଳା କରିବା ଛଡ଼ା ତା'ର ଯେପରି ଅନ୍ୟ କିଛି କାମ ନାହିଁ । ତେଣୁ ସେ ଘୃଣ୍ୟ– ଅଚ୍ଛବ ।

କାନ୍ଦିବାକୁ ଆଉ ମୁନାର ବଳ ପାଉନି । ତା' ମୁଣ୍ଡ ବୁଲେଇ ଦେଲା । କୋଳି ଗଛର ଆବଡ଼ା ଖାବଡ଼ା ଦେହକୁ ସେ ଆଉଜି ପଡ଼ିଲା । ବୋହି ଯାଉଥିବା ଲୁହକୁ ପାପୁଲିରେ ପୋଛି ଆଣି ପେଣ୍ଟ୍ ଦିହରେ ନେସି ଦେଲା । ଖସି ପଡୁଥିବା ପେଣ୍ଟ୍‌କୁ ଅଣ୍ଟା ଉପରକୁ ଟାଣି ଆଣି ଗଣ୍ଠି ପକେଇଦେଲା ।

ରାସ୍ତା ଉପରେ ଗହଳି କ୍ରମେ କ୍ରମେ ବଢ଼ିବାକୁ ଲାଗିଲାଣି । ଲୋକମାନେ ଯେଝା ଯେଝାର ଅଫିସ୍‌କୁ ଚାଲିଲେଣି । ପିଲାମାନେ ବି ଦଳକୁ ଦଳ ଚାଲିଲେଣି ସ୍କୁଲକୁ । ସେ କିନ୍ତୁ ଅନେକ ଦିନ ହେଲାଣି ତା' ସ୍କୁଲକୁ ଯାଇନି– ଯେଉଁଦିନୁ ତା' ବାପା କୁଆଡ଼େ ପଳେଇ ଗଲାଣି ।

ମୋ ବାପା– ମୋ ବାପା । ମୁନାର ହୃଦୟ ଚିତ୍କାର କରିଉଠିଲା ।

ତା'ର ବାପା ଦିନେ ହଠାତ୍ କୁଆଡ଼େ ଅନ୍ତର୍ଦ୍ଧାନ ହେଇଗଲା । ଏପର୍ଯ୍ୟନ୍ତ ବି ତା'ର ପତ୍ତା କେହି ପାଇନାହାନ୍ତି । ସେହିଦିନୁ ମୁନା ତା' ବାପାକୁ ଖାଲି ଝୁରିହେଉଚି ଓ ଝରିପଡୁଚି । ତା'ର ରୂପକୁ ସବୁବେଳେ ଦେଖି ହଉଚି ଓ ଭାବି ଚାଲୁଚି । ବାପାବିହୀନ ପୃଥିବୀ ତାକୁ ମିଛ ମିଛ ଲାଗୁଚି । ସେ ଭାବୁଚି ତା' ବାପା ହୁଏତ ଏଇଠି କୋଉଠି ଲୁଚିଚି। ଲୁଚକାଳି ଖେଳ ଖେଳୁଚି ତା' ସାଙ୍ଗରେ ଆଉ ଟିକକ ପରେ ବାହାରି ଆସିବ । କିନ୍ତୁ କାହିଁ ? ଏତେ ଦିନ ହେଇଗଲାଣି– ଆସୁନି କାହିଁକି ? ତାକୁ ଛାଡ଼ି ସେ କୁଆଡ଼କୁ ବା ଯାଇଚି ?

ତା' ବାପା ଯଦି ଥା'ନ୍ତା ସେ କ'ଣ ଏଇଠି ଏମିତି ଅର୍ଦ୍ଧିତ ଭାବରେ ଠିଆ ହେଇ...

ପୁଣି ତା'ର କୋହ ଉତୁରିପଡ଼ିଲା– ବାପା ତୁ କୁଆଡ଼େ ଗଲୁ ବାପା, ମତେ ନେଇଯା' । ମୁଁ ଆଉ ଭୋକ ସମ୍ଭାଳି ପାରୁନି । ମୁଁ ଆଉ ବୋଉର କାନ୍ଦ ସମ୍ଭାଳି ପାରୁନି ।

ଏକ ଅବ୍ୟକ୍ତ ଦୁଃଖ ତା'ର ତଣ୍ଟିକୁ ଜାବୁଡ଼ି ଧରିଲା ।

ତା' ବାପା ଥିଲେ ସେ କ'ଣ ଏମିତି କାନ୍ଦୁଥାନ୍ତା ? ନା– ତା' କାଉଁରୀ ହାତ ବାଜୁ ବାଜୁ ମୁନାର ଲୁହ ଶୁଖିଯାଉଥାନ୍ତା । ଏଇତ ଗତବର୍ଷର ବାତ୍ୟାରେ ତାଙ୍କ ଘରର ଛପର ଉଡ଼ିଗଲା । ତାକୁ କିଛି ଚିନ୍ତା କରିବାକୁ ପଡ଼ିଲାନି । ତା' ବାପା ଖାଲି ହାତ ବୁଲେଇ ଆଣିଲା ଓ ତାଙ୍କ ଚାଳର ପଞ୍ଜରା ଛପରରେ ଢାଙ୍କି ହେଇଗଲା । ତା' ପରେ ପରେ ପୁଣି ମାଡ଼ି ଆସିଲା ନାହିଁ ନଥିବା ବଢ଼ି । ଦୁନିଆଯାକ ଭସେଇ ନେଇଗଲା । କେତେ ଲୋକ ମରି ହଜିଗଲେ । ହେଲେ ତା' ବାପାର ଶକ୍ତ ହାତର ଜାବୁଡ଼ରୁ ନଈବଢ଼ି ତାକୁ ଛଡ଼େଇ ନେଇପାରିଲାନି । ନଈବଢ଼ି ପରେ ପରେ ମରୁଡ଼ି ମାଡ଼ିବସିଲା ତାଙ୍କ ଅଞ୍ଚଳକୁ । ସବୁ ଗଛଲତା ଶୁଖିଗଲା । ଶୁଖିଗଲା ବି ସମସ୍ତଙ୍କରମୁହଁ । କିନ୍ତୁ ତା ବାପାର ପ୍ରଶସ୍ତ ଛାତିର ଆଢୁଆଳରେ ସେ ହସିପାରୁଥିଲା । ଖୁବ୍ ନିରାପଦରେ । ଯୋଉଠୁ ନା ଯୋଉଠୁ ଆଣି ବାପା ଥୋଇଦେଉଥିଲା ଆହାର । ତା'ର କିଛି ପରବାଏ ନଥିଲା । ତା' ବାପା ବି ଥିଲା ସେମିତି ଏକ ବେପରବାଏ ମଣିଷ । କୌଣସି ବିପଦକୁ ଖାତିର ନାହିଁ । ସବୁବେଳେ ହସହସ । ଏତେ ବିପଦ ଭିତରେ ବି ସେ ହସି ପାରୁଥିଲା ଡାଲୁଅ କିଆରୀରେ ଶୋଇଥିବା ତା'ର ସ୍ୱପ୍ନମାନଙ୍କୁ ଦେଖି । ସେଇ ଡାଲୁଅ କିଆରୀମାନଙ୍କ ପାଖକୁ ଅନେକ ଥର ସେ ମୁନାକୁ ନେଇଯାଇଛି । ହସିହସି ମୁନାକୁ ପଚାରିଚି– ମୁନାରେ, ତୁ ବଡ଼ିଗଲେ ଏମିତି ଫସଲ ଉତାରିବୁ ନା ? ମୁନା ତା'ର ଭଙ୍ଗା ଦାନ୍ତର ପାଟିଏ ହସ ଅଜାଡ଼ି ଦେଇ 'ହଁ' ଉତ୍ତରଟିଏ ଦେଇଚି । ତାକୁ ଦି'ହାତରେ ଉପରକୁ ଟେକିଧରି ତା' ବାପା କହିଚି– ନାଇଁରେ ମୁନା ନାଇଁ । ତୁ ଚାଷ କରିବୁନି । ତୁ ପାଠ ପଢ଼ିବୁ । ବାବୁ ହବୁ । ବଡ଼ବାବୁ ହବୁ । ହବୁନା ? –ହଁ ବାପା ହଁ । ଏହି ପରିକା ହସ ଭିତରେ ଧାନ ଗଛ ବଢ଼ି ଯାଉଥିଲା । ଆହାର ନେଲା ବେଳକୁ କୋଉଠି ଥିଲେ ଜଉଆ ପୋକ ମାଡ଼ି ଆସିଲେ । ଧାନପାଟସାରା ଚରିଗଲେ । ସବୁଜ ଢଳ ଢଳ ପାଟଟାଯାକ ଅକାଳ ବାର୍ଦ୍ଧକ୍ୟରେ ଧଳା ପଡ଼ିଗଲା । କାହାର ଅଭିଶାପରେ ସ୍ୱପ୍ନମାନେ ବିକଳାଙ୍ଗ ହେଇଗଲେ । ତା' ବାପା ମୁହଁରୁ ହସ ନିଭିଗଲା । ସେ ଦାନା ଛାଡ଼ିଦେଲା । ଜଳିଗଲା ଧାନ କିଆରୀକୁ ଅନେଇ ବସି ରହିଥିବା ଅବସ୍ଥାରେ ସେ ବେହୋସ ହୋଇଗଲା । ଲୋକମାନେ ତାକୁ ଘରକୁ ଟେକି ଆଣିଲେ । ପରଦିନ ସକାଳେ ସେ ଉଠିଲା ବେଳକୁ ତା' ବାପା ଆଉ ନାହିଁ । ଘର ଛାଡ଼ି କୁଆଡ଼େ ନାଁ କୁଆଡ଼େ ପଳେଇ ଯାଇଚି । ମୁନା ଅଙ୍ଗେଇ ଅଙ୍ଗେଇ ତା' ବୋଉକୁ ପଚାରିଚି–

ବୋଉ, ବାପା କୁଆଡ଼େ ଗଲା ? କେବେ ଆସିବ ? ତା' ବୋଉ କିଛି କହିପାରିନି । ଲୁହରେ ଲୁହରେ ଉତ୍ତର ଦେବାକୁ ଚେଷ୍ଟା କରିଚି । ମୁନା ଆଉ ପଚାରିବାର ସାହସ କରିନି । ବାପା କଥା ମନେପଡ଼ି କାନ୍ଦ ମାଡ଼ିଲେ ସେ ବୋଉ ପାଖରୁ ଉଠିଯାଏ । ତାକୁ ଲୁଚେଇ ଲୁଚେଇ ଅଜସ୍ର ଲୁହ ଢାଳେ । ଠିକ୍ ତା' ବୋଉ ପରି ।

ମୁନା ଦେଖେ ତା' ବୋଉ କ୍ରମେ କ୍ରମେ ଶୁଖିଯାଉଛି । କେତେ ହସଖୁସି, କେତେ ସ୍ନେହ ଆଦର ସବୁ ଯେମିତି ଝାଉଁଳି ପଡୁଚି । ସବୁ ଭାସି ଯାଉଚି ଲୁହର ବଢ଼ିରେ । ତା'ର ଆଉ ଚଞ୍ଚଳତା ନାଇଁ । ବସିଚି ତ ବସିଚି । ଭାବୁଚି ତ ଭାବୁଚି । କୌଣସି କଥାରେ ମନ ନାହିଁ । କଥାବାର୍ତ୍ତା ପ୍ରାୟ ବନ୍ଦ । ଅନେକ ବେଳ ଧରି ଫାଙ୍କା ଆକାଶକୁ ଅନେଇ ରହୁଚି । ଏସବୁ ଦେଖି ମୁନାକୁ ଡର ମାଡୁଚି । କିନ୍ତୁ ପାଟି ଫିଟେଇ କହିପାରୁନି– କାଳେ ବୋଉ କାନ୍ଦିବ । ବୋଉ କାନ୍ଦିଲେ ତା'ର ହୃଦୟ ଫାଟିଯିବ । ସେ ସବୁ ଦୁଃଖକଷ୍ଟ ସହିଯିବ– ହେଲେ ତା' ବୋଉ ନ କାନ୍ଦୁ ।

ଦୁଃଖକଷ୍ଟ କିନ୍ତୁ କୌଣସି କଥାକୁ ବିଚାରକୁ ନେଇ ନଥାନ୍ତି ।

ବାପା ଚାଲିଯିବା ପରେ ଦିନ ତିନିଟାରେ ଘରେ ଥିବା ସମସ୍ତ ଚାଉଳ ସରିଯାଇଚି । ଅବଶିଷ୍ଟ ବାସନ କୁସନରେ ଆଉ କିଛି ଦିନ କଷ୍ଟେ ମଷ୍ଟେ କଟିବ । ଆଉ ଦି' ତିନି ଦିନ ଧାର ଉଧାରରେ ଗଡ଼ିଯାଇଚି । ତା'ପରଦିନଠାରୁ ଚୁଲି ଜଳିନି । ଆଜିକୁ ତିନିଦିନ ହେଇଗଲା । କାହା ଘରେ ବା ଅଛି ଯେ କିଏ ଦବ ? ଯା ଘରେ ବା ଅଛି ସେମାନେ ତ ଦାଣ୍ଡ ମଡ଼େଇ ଦେବେନି । ବୋଉ ତା'ର କେତେ ଚେଷ୍ଟା କରିଚି କିଛି ପାଇଟି କରି ଗୁଜୁରାଣ ମେଣ୍ଟେଇବ । ସେତକ ବି ସମ୍ଭବ ହେଇନି । ସମସ୍ତେ ମରୁଡ଼ି ପ୍ରତି ଅଧିକ ସଚେତନ । ବୋଉ ଅଭିମାନରେ ଖାଲି ଫୁଲି ଫୁଲି କାନ୍ଦିଚି । ଗତ ତିନିଦିନ ଭିତରେ ହାଣ୍ଡିରେ କ'ଣ ଦୋଟି ପଖାଳ ପଡ଼ିଥିଲା ଯେ ବୋଉ ତାକୁ ହିଁ ଖାଇବାକୁ ଦେଇଚି ଦି'ଦିନଯାକ । ମୁନା ଯେତେ କହିଚି ସେ ଖାଇନି, ବରଂ ତା' ଉପରେ ବିରକ୍ତ ହେଇଚି । ଲୁହ ଛଳଛଳ ଆଖିକୁ ବୁଲେଇ ନେଇଚି ତା' ଆଗରୁ । ସେ ଚୁପ୍ ରହିଚି । କିନ୍ତୁ ତା'ର ମନ ଭିତରେ ବର୍ଷି ଯାଇଚି ଅସରା ଅସରା ଲୁହ ।

ପଖାଳ କହିଲେ ତୋରାଣି ଅଧା ତାଟିଆଏ । ତା' ତଳେ କେଇଟା ବା ଭାତ । ପେଟର କୋଉ କୋଣକୁ ବା ଲାଗେ ? ଖାଲି ମନ ବୁଝିବା କଥା । ଭୋକରେ ତା' ପେଟ ଦାଉଦାଉ ଜଳେ । ତା' ବୋଉ କିନ୍ତୁ ତିନିଦିନଯାକ ପୂରାପୂରି ଉପାସ । ଖାଲି ପାଣି ପିଇ ପିଇ ପଡ଼ିରହିଚି ।

ଆଜି ସକାଳୁ ପଖାଳହାଣ୍ଡିକ ଖାଲି । କାଲିଠୁଁ ସେତକ ସରିଗଲାଣି ।

ଆଜି ସେ କ'ଣ ଖାଇବ କିଛି ଠିକ୍ କରିପାରୁ ନଥିଲା । ତା'ଛଡ଼ା ବୋଉ ବି ଏତେଦିନ ହେଲା କିଛି ଖାଇନି । ଆଜି ତାକୁ କିଛି ନା କିଛି କରିବାକୁ ହିଁ ପଡ଼ିବ । ମନରେ ଏଇ ଆଣ୍ଟ ବାନ୍ଧି ସେ ବାହାରିଗଲା ବାହାରକୁ ।

ପ୍ରଥମେ ସେ ଗଲା ବସ୍‌ଷ୍ଟାଣ୍ଡ୍‌କୁ । ଆଗରୁ ସେ ଦେଖିଚି ବସ୍‌ଷ୍ଟାଣ୍ଡରେ ଛୋଟ ପିଲାମାନେ ବି ଭିକ ମାଗନ୍ତି । ସେ ଯାଇ ପହଞ୍ଚିଲା ବେଳକୁ ବସ୍‌ଷ୍ଟାଣ୍ଡ୍‌ରେ ଜମା ବସ୍ ନାହିଁ । ଭିକାରୀମାନେ କୋଉଠି ଦେଖା ନାହାନ୍ତି ! ହୁଏତ ସେମାନେ ବସ୍ ଟାଇମ୍ ଜାଣନ୍ତି ଓ ଠିକ୍ ସମୟରେ ଆସି ହାଜର ହୁଅନ୍ତି । ବସ୍ ଆସିବା ପର୍ଯ୍ୟନ୍ତ ତାକୁ ଅପେକ୍ଷା କରିବାକୁ ପଡ଼ିବ । ଏତେ ବଡ଼ ବସ୍

ଷ୍ଟାଣ୍ଡ୍‌ଟା ସାରା ଖାଲି ପଡ଼ିଚି । ଠିକ୍ ତା'ରି ପେଟ ପରି । ସେ ମୁହଁ ବୁଲେଇ ଆଣିଲା । ରାସ୍ତା ଆରପଟ ଦୋକାନରେ କେତେ ରକମର ଖାଇବା ଜିନିଷ ସଜା ହୋଇ ଥୁଆ ହୋଇଛି । ସେସବୁକୁ ଦେଖୁ ଦେଖୁ ତା' ପେଟ ଭିତରକୁ ଯେପରି ଭୋକ ଡେଇଁ ପଡ଼ିଲା । ନଖ ଦାନ୍ତ ସାହାଯ୍ୟରେ କୋରି ପକେଇଲା ତା' ପେଟ ଭିତରକୁ । ଭୋକର ପଞ୍ଝା ଭିତରେ ସେ କାଉଲୁ ବାଉଲୁ ହେଇଗଲା । ତା'ର ଇଚ୍ଛା ହେଉଥିଲା ସେଠୁ ସିଧା ଯାଇ କାଚ ଭାଙ୍ଗି ଥାଳିକୁ ଥାଳି ଖାଇଯାନ୍ତା– କିନ୍ତୁ ସାହସ କୁଳେଇଲା ନାହିଁ । ତେବେ ସେ ମନେ ମନେ ଠିକ୍ କଲା ଆଜି ମାଗି କରି ଯେତିକି ପଇସା ରୋଜଗାର କରିବ ସେଥିରେ ସେ ନିଶ୍ଚୟ ଏଇ ଦୋକାନରୁ ଜଳଖିଆ କିଣିନେବ– ତା' ବୋଉକୁ ଦବ ଆଉ ସିଏ ଖାଇବ ।

କିଛି ସମୟ ଅପେକ୍ଷା କଲା ପରେ ବସ୍‌ଟିଏ ଆସଲା । ବସ୍‌ଟି ଆସୁ ଆସୁ ବିଭିନ୍ନ ଆଡୁ ଯାତ୍ରୀମାନେ ଦୌଡ଼ି ଆସିଲେ । ଭିକାରୀମାନେ ବି କୋଉଠି ଥିଲେ ଦୌଡ଼ି ଆସିଲେ । ସମସ୍ତଙ୍କଠାରେ ନିଉଛାଳି ହୋଇ ଭିକ ମାଗିବାକୁ ଲାଗିଲେ । ତାଙ୍କର କଣ୍ଠସ୍ୱର ଶୁଣି ମୁନା ଭାବିଲା ସେମାନେ ତା'ଠାରୁ ଆହୁରି ଦୁଃଖୀ । ଅନେକ ଅନେକ ଦିନ ଧରି ଏମାନେ ଖାଇ ନାହାନ୍ତି । ତା' ମନ ଭିତରେ ସ୍ୱତଃ ଏମାନଙ୍କ ପାଇଁ କରୁଣା ଝରିଆସିଲା । ତଥାପି ବି ତାକୁ ଭିକ ମାଗିବାକୁ ପଡ଼ିବ । ନହେଲେ...

ଏଥର ସେ ନିଜକୁ ପ୍ରସ୍ତୁତ କରିନେଲା ମାଗିବା ପାଇଁ । କିନ୍ତୁ କ'ଣ କହି ମାଗିବ ସେ କଥା ଠିକ୍ କରିପାରିଲା ନାହିଁ । ସେ କ'ଣ କହିବ– ବାବୁ, ମୋ ବାପା ଆମକୁ ଛାଡ଼ି ପଳେଇ ଯାଇଛି ! ନା ଏ କଥା ସେ କହିପାରିବନି । ତେବେ କ'ଣ କହିବ ? କହିବ– ମୁଁ ଓ ମୋ ବୋଉ ତିନିଦିନ ହେଲା କିଛି ଖାଇନୁ । ନା, କାଳେ କିଏ ବିଶ୍ୱାସ କରିବନି ? ନା କହିବ– ମୋର କେହି ନାହିଁ– ଦୟାକର ବାବୁ । ନା, ଏପରି ମିଛକଥା କହିପାରିବନି । ତେବେ ଖାଲି କହିଦବ– ଭାରି ଭୋକ କରୁଛି ବାବୁ– କିଛି ଖାଇନି– ପଇସାଟିଏ ଦିଅ– ଭଗବାନ ତୁମର୍ ମଙ୍ଗଳ କରିବେ ।

ଏଇ ଶେଷକଥାଟିକୁ ସେ ଦି' ତିନିଥର ଘୋଷି ହେଲା । ତା'ପରେ ଆଗେଇଲା ଭିକ ମାଗିବାକୁ ।

– ବାବୁ, ଭାରି ଭୋକ କରୁଛି ବାବୁ– କିଛି ଖାଇନି, ପଇସାଟିଏ ଦିଅ; ଭଗବାନ ତୁମର ମଙ୍ଗଳ କରିବେ ।

– ଶଳା ଏଠି ଭଦ୍ରଲୋକଙ୍କୁ ରଖେଇ ଦେବେନି । ଶଳା ସମସ୍ତେ କ'ଣ ଖାଇନା ? ନ ମରି ତମେ ବଂଚିଚ କେମିତି ବେ ? ହଇବେ ହେଇ ଟୋକା, ଶଳା ଖାଇବାକୁ ପାଉନୁ ଯଦି ହୋଟେଲ୍‌ରେ ଯାଉନୁ କାମ କରିବୁ । ହାତଗୋଡ଼ ପାଇଛୁ କାମ କରି ଖା– ଭିକ ମାଗୁଚୁ କିଆଁ ? କହିଲା ଭଗବାନ ମଙ୍ଗଳ କରିବେ ! ହଇବେ ଯାଉଚୁ ନା ଦେଖିବୁ ?

ଏକା ଥରକେ ସେଠୁ ମୁନା ପଳେଇ ଆସିଲା । ଏମିତିକା ଶୁଣିବା ଅପେକ୍ଷା ମରିଯିବା ବରଂ ଭଲ ।

ଫେରିବା ବାଟରେ ସେଇ ଲୋକାଟିର କଥା ତା'ର କଅଁଳ ମନକୁ ବାରମ୍ବାର ଦଂଶନ କରିବାକୁ ଲାଗିଲା । ତା'ର ଛଟପଟ ମନ ଭିତରେ ପୁଣି ଗୋଟିଏ ଆଶା ଜାଗି ଉଠିଲା । ହୁଏତ କୌଣସି ହୋଟେଲରେ କାମ କରି କିଛି ପଇସା ରୋଜଗାର କରାଯାଇପାରେ । ହୋଟେଲରେ

ବାସନ ମାଜିବା ପାଇଁ, ପତର ଗୋଟେଇବା ପାଇଁ, ପାଣି ଦବା ପାଇଁ ସେ ମନେ ମନେ ପ୍ରସ୍ତୁତ ହୋଇଗଲା । କେବଳ ବାକି ରହିଲା ହୋଟେଲକୁ ଯିବା, କାମ କରିବା ପାଇଁ କହିବା ଓ କାମ ପାଇବା ।

ସହରଟି ଛୋଟ ହେଲେ ମଧ ହୋଟେଲ ଓ ରେଷ୍ଟୁରାଣ୍ଟ ସହରସାରା ବିଛେଇ ହୋଇ ରହିଚି । ତା'ରି ପାଖରେ ଥିବା ଏକ ହୋଟେଲ ଆଗରେ ଯାଇ ଠିଆ ହେଲା । ଯିବକି ନାହିଁ ଯିବକି ନାହିଁ ହୋଇ ଶେଷରେ ହୋଟେଲ ବାରଣ୍ଡାକୁ ଉଠିଲା । ଅଳ୍ପ କେତେଜଣ ଲୋକ ସେଠି ଜଳଖିଆ ଖାଉଥାନ୍ତି । ସେ ବିକଳରେ ତାଙ୍କ ଖାଇବା ପ୍ଲେଟ୍ ଓ ପାଟିକୁ ଅନେଇ ରହିଲା । ସେତେବେଳକୁ ମାଲିକ ତାଙ୍କ ଆସନରେ ନଥାନ୍ତି । କିଛି ସମୟ ପରେ ଏକ ବିରାଟ କଳା ମଣିଷଟାଏ ଆସି ମାଲିକ ଆସନରେ ବସିଲା । ତାକୁ ଦେଖି ମୁନାର ରକ୍ତ ଶୁଖିଗଲା । ସେ କ'ଣ କରିବ କିଛି ଠିକ୍ କରିପାରିଲାନି । ସେ ଲୋକଟା କଟମଟ କରି ତା'ଆଡ଼େ ଚାହିଁଲା । ସେ ଆଉ ସେଠି ରହିପାରିଲାନି । ପଳେଇ ଯିବାକୁ ବୁଲିପଡ଼ିଲା ।

"ଏ ଟୋକା ରହ ।" – ଏକ କର୍କଶ ସ୍ୱର ତାକୁ ଅଟକେଇ ଦେଲା । ସେ ଭୟରେ ଥରି ଥରି ପଛକୁ ଅନେଇଲା ।

– "କିବେ ଟୋକା, କୁଆଡ଼େ ଆସିଥିଲୁ ?"

ତା' ପାଟିରୁ କଥା ବାହାରିଲାନି ।

– "କିବେ ଶଳା କହ କୁଆଡ଼େ ଆସିଥିଲୁ ? ନହେଲେ ଦେଖିବୁ ଏଇନେ ?"

ସେ ବାଧ ହୋଇ ଥରଥର କଣ୍ଠରେ କହିଲା– "ମୁଁ କାମ କରିବା ପାଇଁ ଆସିଥିଲି ।"

"ଶଳା– କାମ କରିବା ପାଇଁ ଆସିଥିଲୁ ନା ଚୋରି କରିବା ପାଇଁ ଆସିଥିଲୁ । ଯାଉଚୁ ନା ଶଳା ଦେଖିବୁ ଏଇନେ ।"

ଏଇ କଥାର ଧକ୍କା ତାକୁ ଠେଲିଦେଲା ବାରଣ୍ଡା ତଳକୁ । ସେ ଯେପରି କଣ୍ଟାବାଡ଼ ଉପରେ ହାମୁଡ଼େଇ ପଡ଼ିଲା । ସେଠୁ ସେ ଦଉଡ଼ି ଦଉଡ଼ି ପଳେଇ ଆସିଲା ଅନେକ ଦୂରକୁ । ଆଉ କୌଣସି କଥାରେ ତା'ର ମନ ଲାଗିଲାନି । ଏକ ଅବ୍ୟକ୍ତ କୋହରେ ତା'ର ଦେହ ଓ ମନ ଥରିବାକୁ ଲାଗିଲା । ଏଇ ସମୟରେ ବୋଉ କଥା ହିଁ ତା'ର ଅଧିକ ମନେ ପଡ଼ିଲା । ଶୀଘ୍ର ବୋଉ କୋଳକୁ ଫେରିଯିବା ପାଇଁ ସେ ବ୍ୟଗ୍ର ହୋଇଉଠିଲା । ଏକ ରକ୍ତାକ୍ତ ମନ ନେଇ ସେ ଘରକୁ ଫେରିଲା ।

ଘର ନିକଟତର ହେଇ ଆସିବା ବେଳକୁ ପୁଣି ପୂର୍ବ ଚିନ୍ତା ତା'ର ମନକୁ ଆବୋରି ବସିଲା ତା' ମନ ଭିତରୁ ସମସ୍ତ ଉତ୍ତେଜନା ଓହ୍ଲେଇଗଲା । ସେ ଅବଶ ହେଇପଡ଼ିଲା । କ୍ଳାନ୍ତ ହେଇପଡ଼ିଲା ।

ଅସହାୟ କ୍ଳାନ୍ତ ମୁନା ରାସ୍ତା କଡ଼ର ଏଇ କୋଳି ଗଛ ମୂଳେ ଅଟକିଗଲା । କୋଳି ଗଛରେ ନିଜର ଶରୀରକୁ ଡେରିଦେଇ ଅନିର୍ଦ୍ଦିଷ୍ଟ ଭାବରେ ସେ ଆଗକୁ ଅନେଇ ଥାଏ । ରାସ୍ତା ସେପଟରେ ନାଥନ୍ନାର ଜଳଖିଆ ଦୋକାନ । ସେଇଠି ଘଟୁଥିବା ଏକ ସାଧାରଣ ଦୃଶ୍ୟ ତା'ର ଆଖି ଟାଣିନେଲା ।

ନାଥନ୍ନା ତା'ର ତା' ଚୁଲି ପାଖରେ ପଡ଼ିଥିବା ଅଖା ଗଦି ଉପରେ ବସିଥାଏ । ବିକା ହେଇପାରି ନଥିବା ସେମଟା ଗନ୍ଧିଆ ପାଉଁରୁଟିକୁ ଖଣ୍ଡ ଖଣ୍ଡ କରି ତା' ପୋଷା କୁକୁର ଭାଲୁଆ

କତିକି ପକଉଥାଏ । ଭାଲୁଆ ପାଉଁରୁଟି ଟୁକୁଡା ପାଖକୁ ଝାଙ୍କି ଆସୁଥାଏ । ମାତ୍ର ଟିକିଏ ଶୁଙ୍ଘିଦେଇ ଗୋଡ଼ରେ ଆଡ଼େଇ ଦଉଥାଏ । ଭାଲୁଆର ଏ ଚେରିମି ଦେଖି ନାଥନ୍ନାର ରାଗ ପଞ୍ଚମକୁ ଉଠିଯାଉଥାଏ । ଭାଲୁଆର ଚଉଦ ପୁରୁଷକୁ ଉଝାଳୁ ଉଝାଳୁ ପୁଣି ଖଣ୍ଡେ ତା' ଆଡ଼କୁ ପକାଇ ଦେଉଥାଏ । ଭାଲୁଆ କିନ୍ତୁ ନଛୋଡ଼ବନ୍ଧା । ଠିକ୍ ପୂର୍ବ ପରି ଶୁଂଘି ଦେଇ ଆଡ଼େଇ ଦେଉଥାଏ ତା' ଗୋଡ଼ରେ । ନାଥନ୍ନା ଏଥର ଜଳି ଉଠିଲା । ଏଟା ଶଳା ମଣିଷ ହବନି– କହି ଧରିଥିବା ଲୁହା ଗୋଜିଣାରେ ପାହାରେ କଷିଦେଲା । ମର ଶଳା । ପାଉଁରୁଟିକୁ ଦଳି ମକଚି ବାରଣ୍ଡା ତଳକୁ ଫିଙ୍ଗିଦେଇ ଦୋକାନ ଭିତରକୁ ପଶିଗଲା ।

ରାସ୍ତା ଏପଟୁ ମୁନା ଏ ଦୃଶ୍ୟରେ ଲାଖିଯାଇଥିଲା । ଅନ୍ୟ ଦିନ ହୋଇଥିଲେ ସେଇଠି ହସି ହସି ଗଡ଼ିଯାଇଥାନ୍ତା । ନାଥନ୍ନାର ବିକଳିଆ ଚେହେରା ସାଙ୍ଗକୁ ତା'ର ଟିଣା କଥା ପିଲାମାନଙ୍କୁ ବେଶ୍ ମଜା ଯୋଗେଇଥାଏ । କିନ୍ତୁ ଆଜିର ପରିସ୍ଥିତି ଥିଲା ଅଲଗା । ପାଣି ନ ପାଇ ଚାରା ଗଛଟିର ମୁହଁରୁ ଯେପରି ହସ ଶୁଖି ଯାଇଛି । ଖାଲି ନିଷ୍ଠୁର ବାସ୍ତବତା ଦାନ୍ତ କିଟି କିଟି କରୁଛି । ସେଇ ଶୁଖିଲା ବାସ୍ତବତା ଭିତରୁ ମୁନା ଅନେଇଚି ପାଉଁରୁଟି ଆଡ଼େ । ଭାଲୁଆ ତା'ର ଗନ୍ଧକୁ ସହି ନ ପାରି ଠେଲି ଦଉଚି ଗୋଡ଼ରେ । କିନ୍ତୁ ମୁନାର ଜିଭ ତା'ର ଶୁଖିଲା ଓଠ ଉପରେ ବୁଲିଯାଉଚି ଥରକୁ ଥର । ସତେଇ ପାଉଁରୁଟିର ବାସନା ତା' ନାକ ପର୍ଯ୍ୟନ୍ତ ଲମ୍ବିଆସୁଛି । ସେ ଅଥୟ ହୋଇ ପଡୁଛି ।

ନାଥନ୍ନା ସେ ଜାଗା ଛାଡ଼ି ଚାଲିଗଲା ପରେ ସେ ଆଉ ଠିଆ ହୋଇ ରହିପାରିଲା ନାହିଁ । ଚିଲ ଭଳିଆ ରାସ୍ତା ପାର ହୋଇ ଯାଇ ଝାମ୍ପି ଆଣିଲା ପାଉଁରୁଟିଟିକୁ । ଧରୁ ଧରୁ ଭାଲୁଆ ଭୁକି ଉଠିଲା ଖୁବ୍ ଜୋର୍‌ରେ । ତା'ର ଚିତ୍କାର ଶୁଣି ସେ ପ୍ରଥମେ ହଡ଼ବଡ଼େଇ ଗଲା । କିନ୍ତୁ ସାଙ୍ଗେ ସାଙ୍ଗେ ଜୀବନ ମୂର୍ଚ୍ଛା ଦଉଡ଼ିବାକୁ ଲାଗିଲା ତା' ଘରଆଡ଼କୁ । ତାକୁ ଲାଗିଲା ଭାଲୁଆ ନିଶ୍ଚୟ ତା' ଚେନ୍ ଛିଣ୍ଡେଇ ତା' ପଛେ ପଛେ ଖେଦି ଆସୁଚି । ତାକୁ ପାଇଲେ କାମୁଡ଼ି ଖିନ୍‌ଭିନ୍ନ କରିପକେଇବ । ଜୀବନ ବିକଳରେ ଘର ଭିତରକୁ ପଶିଯାଇ ଆଗେ କବାଟ କିଳିଦେଲା ।

ଘର ଭିତରକୁ ଆସି ବି ସେ ଥିର ହୋଇ ଠିଆ ହୋଇପାରିଲାନି । ତା'ର ହାତ ଗୋଡ଼ ଜୋର୍‌ରେ ଥରୁଥାଏ । ଏତେ ଜୋର୍‌ରେ ଯେ ସେ ବାଧ୍ୟ ହୋଇ କବାଟର ପିଠି ଉପରକୁ ଆଉଜିପଡ଼ିଲା– ନହେଲେ ହୁଏତ ସେ ଚଟାଣ ଉପରେ କଚାଡ଼ି ହୋଇ ପଡ଼ିଥାନ୍ତା । ସେତେବେଳକୁ ତା'ର ନିଃଶ୍ୱାସ ଘର ଧରୁ ନଥାଏ । କବାଟ ଉପରେ ଆଉଜି ପଡ଼ି ଭଲ ଭାବରେ ନିଃଶ୍ୱାସ ନେବାକୁ ଚେଷ୍ଟା କଲା– କିନ୍ତୁ ପାରିଲାନି । ତାକୁ ଲାଗିଲା କିଏ ଯେପରି ତା'ର ତଣ୍ଟିମୂଳକୁ ଚିପି ଧରିଚି । ସେ ଅଣନିଃଶ୍ୱାସୀ ହେଇପଡୁଛି । ଆଖି ବନ୍ଦ କରି ସେ ସେମିତି ଠିଆ ହୋଇ ରହିଲା କିଛି ସମୟ । ଏହି ସମୟରେ କୌଣସି ଭାବନା ତା'ର ମୁଣ୍ଡରେ ଅଟକି ଯାଇପାରିଲାନି । ତା'ର କମ୍ପିଲା ମନରୁ ଭାବାନାଯାକ ଖସି ପଡୁଥାନ୍ତି । ସେ କେବଳ ଆଖିବୁଜି ଦାନ୍ତ କାମୁଡ଼ି ଘନ ଘନ ନିଃଶ୍ୱାସ ନେଉଥାଏ । ତା'ର ନିଃଶ୍ୱାସର ଶବ୍ଦକୁ ଛାଡ଼ି ଘର ଭିତରେ ଅନ୍ୟ କୌଣସି ଶବ୍ଦ ନଥାଏ । ଗୋଟିଏ ଭୟାତୁର ନୀରବତାରେ ଘର ଭିତର ଜୁଡୁସୁଡୁ ହେଇଯାଇଥାଏ । ସେଇ ନିଃଶ୍ୱାସ ଶବ୍ଦକୁ ଭେଦ କରି ତା' ପାଖକୁ ଅନ୍ୟ ଏକ ଧମ୍ ଧମ୍ ଶବ୍ଦ ମାଡ଼ିଆସୁଥାଏ, ତା' ଛାତି ଭିତରୁ । ତା'ର ହୃତ୍‌ସ୍ପନ୍ଦନ ଅସ୍ୱାଭାବିକ ଭାବରେ ବଢ଼ି ଯାଇଥାଏ । କିଏ ଯେପରି ହାତୁଡ଼ି ପିଟୁଥାଏ ତା'ର ଛାତି ଭିତରେ । ତା'ର ଦଶ ବର୍ଷର ଛାତି ଯେପରି ଭାଂଗିରୁଜି ଚୂନା ହୋଇଯିବ ।

ଏତିକିବେଳେ ତାଙ୍କ ଘରଆଡ଼କୁ କୁକୁରଟିଏ ଭୁକିଭୁକିକା ଦଉଡ଼ିଆସିଲା । ସେ ଆହୁରି ଛାନିଆ ହୋଇଗଲା । କବାଟର ଦେହକୁ ଆହୁରି ଜୋର୍‌ରେ ଲାଗିଆସିଲା । ତାକୁ ଲାଗିଲା କୁକୁରଟି ଯେମିତି ଭାଉଁ ଭାଉଁ ମୁହଁରେ ତା' ଉପରକୁ ଚଢ଼ିଆସୁଚି ତାକୁ ଭିଣି ପକେଇବା ପାଇଁ । କିନ୍ତୁ କୁକୁରଟି ସେମିତି ଭୁକିଭୁକିକା ପଳେଇଲା । କୁକୁରର ଭୁକା ଦୂରରେ ମିଳେଇଗଲା ପରେ ସେ ଟିକିଏ ଉଶ୍ୱାସ ଅନୁଭବ କଲା । ତା'ପରେ ଆଖି ଖୋଲିଲା ।

ଚାଳ ତଳୁ କିଛି କିଛି ଆଲୁଅ ଘର ଭିତରକୁ ଝରି ପଡୁଥାଏ । ମୁନା ସେଇ ଆଲୁଅରେ ଘର ଭିତରଯାକ ଭଲ ଭାବରେ ଦେଖିପାରୁଥିଲା । ବଖରିକିଆ ଘର ଭିତରେ ସମସ୍ତେ ଚୁପ୍‌ଚାପ୍ ତାଆଡ଼େ ଅନେଇ ରହିଥିଲେ । କେବଳ ତା'ର ବୋଉ ତଳକୁ ମୁହଁମାଡ଼ି କତରା ଉପରେ ଶୋଇଥିଲା । ମୁନା କିନ୍ତୁ ଜାଣିଥିଲା ବୋଉକୁ ନିଦ ହେଇ ନଥିବ । ସେମିତି ମୁହଁମାଡ଼ି ସେ ଖାଲି କାନ୍ଦୁଥିବ– ଖାଲି କାନ୍ଦୁଥିବ ।

ତା' ହାତରେ ଥିବା ପାଉଁରୁଟି ଆଡ଼େ ସେ ଅନେଇଲା । ତା' ପେଟ ଭିତରେ ଶଙ୍କିଯାଇଥିବା ଭୋକଟି ଫେରେ ପଦାକୁ ବାହାରି ଆସିଲା ଓ ତା' ପଞ୍ଝା ବାହାର କରି କୋରି ପକେଇବାକୁ ଲାଗିଲା । ଏଥର ସେ ମୋଡ଼ି ହୋଇଯାଇଥିବା କାଗଜକୁ ଖୋଲିଦେଲା । ଲୋଚାକୋଚା କାଗଜ ଭିତରେ ମଳି ମକଚି ହେଇଯାଇଥିବା ପାଉଁରୁଟି ଓ ତା' ଭିତରେ ତା' ବୋଉର ମୁହଁ । ପାଉଁରୁଟି ଉପରୁ ମୁହଁ ଟେକି ସେ ତା' ବୋଉ ଆଡ଼କୁ ଅନେଇଲା । ତା' ବୋଉ ଶୋଇଥାଏ ହାତ ଉପରେ ମୁହଁକୁ ମାଡ଼ିଦେଇ । ସେ ଆସ୍ତେ ଆସ୍ତେ ବୋଉ କତିକି ଆସିଲା । ତା' ମୁଣ୍ଡ ପାଖରେ ବସି ଡାକିଲା– ବୋଉ ଉଠ, ହେଇ ଦେଖେ ତ ତୋ ପାଇଁ କ'ଣ ଆଣିଚି ?

ବୋଉ ମୁହଁ ଟେକି ଅନେଇଲା– କ'ଣ ?

– ହେଇ ପରା ପାଉଁରୁଟି । ନେ, ଖା ।

ବୋଉ ଧଡ୍ କରି ଉଠି ବସିଲା । ସେ ଚମକି ପଡ଼ିଲା ।

ବୋଉ ତା' ହାତରୁ ଝାମ୍ପି ନେଇଗଲା କାଗଜ ସମେତ ପାଉଁରୁଟିଟିକୁ । ସେ ଘୁଞ୍ଚି ଆସିଲା କବାଟ କତିକି । ତା'ପରେ ବୋଉର ଆଖି ବିକଟାଳ ହୋଇଉଠିଲା । ମୁହଁସାରା କେମିତି ଟାଣେଇ ଗଲା । ପାଉଁରୁଟିର କାଗଜକୁ ଗୋଡ଼ରେ ମାଡ଼ିବସି ପାଉଁରୁଟିକୁ ଦାନ୍ତ ଓ ନଖରେ ଟାଣି ଛିଣ୍ଡେଇ ଦାନ୍ତ କଡ଼ମଡ଼ କରି ଚୋବେଇ ଚୋବେଇ ଖାଇଲା ।

ବୋଉର ଏ ରୂପ ଦେଖି ମୁନା ପ୍ରଥମେ ଡରିଗଲା । କିନ୍ତୁ ପାଉଁରୁଟି ସରିଆସିଲା ବେଳକୁ ଅସମ୍ଭବ ଭୋକ ତାକୁ ଅଥୟ କରିପକେଇଲା । ସେ ଭୋକିଲା ଆଖିରେ ଚାହିଁ ରହିଲା ଅବଶିଷ୍ଟାଂଶ ଆଡ଼େ ।

ବୋଉ ତା' ଆଡ଼କୁ ଟିକିଏ ହେଲେ ବି ଚାହିଁଲାନି । ପାଉଁରୁଟିତକ ଶେଷ କରିଦେଇ ଉଠିପଡ଼ିଲା । ପାଣି ମାଠିଆ ପାଖକୁ ଚାଲିଗଲା ପାଣି ପିଇବାକୁ । ରସକଂସାରେ କଂସାଏ ପାଣି ପିଇସାରି ଫେରିଲା ବେଳକୁ ଦେଖିଲା– ତଳେ ପଡ଼ିଥିବା ଟୁକୁଡ଼ାମାନଙ୍କୁ ମୁନା ସାଉଁଟି ସାଉଁଟି ଖାଉଚି । ଏ କଥା ଦେଖି ସେ ତାଟକା ହେଇ ତା'ଆଡ଼େ କେବଳ ଅନେଇ ରହିଲା । ମୁନା ଉପରକୁ ଅନେଇ ଦେଖିଲା ତା' ବୋଉ ତା'ଆଡ଼େ ଅନେଇ ରହିଛି । ତା' ଆଖି ଅଭିମାନରେ ଛଳଛଳ ହୋଇଉଠିଲା । ତାକୁ କୋଳକୁ ଆଉଜେଇ ନେଇ ବୋଉ ପଚାରିଲା– ବାପାରେ, ତୁ ଖାଇ ନଥିଲୁ ?

ମୁନା ଓଦା ଓଦା କଣ୍ଠରେ କହିଲା– ନାଇଁବା । ତୁ ମୁଁ ସାଙ୍ଗ ହୋଇ ଖାଇଥାନ୍ତେ । ତୁ ତ...

ଆଉ କେହି କିଛି କହିପାରିଲେନି । ଶବ୍ଦମାନେ ଲୁହ ଭିତରେ ବୁଡ଼ିଗଲେ । ସାରା ଘର ଡିଡିଯିବାକୁ ଲାଗିଲା ।

ମୁନା କାନ୍ଦି କାନ୍ଦି ଶୋଇପଡ଼ିଲା ସେଇଠି ।

ନିର୍ଦ୍ଧୂମ ଖରାବେଳେ ତା' ନିଦ ଭାଂଗିଲା । ନିଦ ଭାଂଗୁ ଭାଂଗୁ ବୋଉକୁ ଡାକ ପକେଇଲା । ସେତେବେଳକୁ ମାଟିଠାରୁ ହାତେ ଉପରେ ତା ବୋଉର ପାଦ ଦୁଇଟି ମାଟିକୁ ଛୁଇଁବା ପାଇଁ ଯଥାସାଧ୍ୟ ଚେଷ୍ଟା କରି କରି ସ୍ଥିର ହେଇଯାଇଥିଲେ ।

ବୋଉକୁ ଦେଖିଲାକ୍ଷଣି ସେ ଦଉଡ଼ି ଆସିଲା । ଝୁଲୁଥିବା ଗୋଡ଼କୁ ଧରି ପକେଇ ବୋଉ ବୋଉ ଚିତ୍କାର କରି ଉଠିଲା । କିନ୍ତୁ ତା'ର ଚିତ୍କାର ତା' ବୋଉର କାନ ପାଖରେ ପହଞ୍ଚି ପାରୁନଥିଲା– ଆଦୌ ପହଞ୍ଚି ପାରୁନଥିଲା ।



# ପ୍ରତିଶ୍ରୁତି

## ପ୍ରଦୋଷ ମିଶ୍ର

ଭାଉଜ, ଠାକୁର ଘର କାନ୍ଥକୁ ଆଉଜି ବସି ଥିଲେ । ଶୋଇବା ଘର ବାରଣ୍ଡା ଉପରେ ଅଧା ଚଉତା ସପ ଖଣ୍ଡେ ପଡିଥିଲା । ଅନେକ ଦିନର ପୁରୁଣା ପଙ୍ଖାଟା, ଯାହା କିଛି ପବନ ଫିଙ୍ଗୁଥିଲା, ତା' ଅପେକ୍ଷା ଅଧିକ ଖଟ୍ ଖଟ୍ ଶବ୍ଦ କରି ବିରକ୍ତିକର ପରିସ୍ଥିତି ସୃଷ୍ଟି କରୁଥିଲା ।

ଶରତ ନୀରବ ହୋଇ ସପ ଉପରେ ବସି ରହିଥିଲେ । ବୋଧହୁଏ ଭାବୁଥିଲେ, କଥାଟା କିମିତି ଆରମ୍ଭ କରିବେ । କେତେ ଥର ତଣ୍ଟି ପାଖକୁ ଭାବନାମାନଙ୍କୁ ନେଇ ପୁଣି ଫେରାଇ ଆଣୁଥିଲେ । ଆରମ୍ଭରୁ ଉପକ୍ରମଣିକା ଭୁଲ୍ ହୋଇଯିବାର ଭୟ, ତାଙ୍କୁ ନୀରବ କରି ଦେଉଥିଲା ।

ଭାଉଜ କେଜାଣି କ'ଣ ଭାବୁଥିଲେ । ଠାକୁର ଘରର ଜାଲି କବାଟଟା ଉପରେ ଆଉଜି ପଡି କୁଆଡକୁ ଚାହିଁ ରହିଥିଲେ ।

ଶରତ, ମୁହଁ ଟେକି ଦେଖିଲେ । ଅନେକ ବର୍ଷ ତଳର ହାସ୍ୟମୁଖର ଭାଉଜଙ୍କର ମୁହଁଟା କିମିତି ମଳିନ ଦେଖା ଯାଉଥିଲା । ଗୋରା ତକ୍ ତକ୍ ଦେହଟା ନିଷ୍ପ୍ରଭ ହୋଇ ଯାଇଥିଲା । ଖୁବ୍ ସୁନ୍ଦର ଗୋଲିଆ ମୁହଁରେ, କାଗଜର ଚଉତା ଭାଙ୍ଗ ପରି ବଙ୍କା ଟଙ୍କା ଦାଗଗୁଡା ସ୍ପଷ୍ଟ ବାରି ହୋଇ ପଡୁଥିଲେ । ବାଳଗୁଡା ବି କେତେକ, ମଝିରୁ ମଝିରୁ ପାଚି ଯାଇ ସେମାନଙ୍କର ଅସ୍ତିତ୍ୱ ପ୍ରକାଶ କରୁଥିଲେ ।

ଭାଉଜ କ'ଣ ବୁଢୀ ହୋଇ ଗଲେଣି ? କେତେ ବା ବୟସ ହେବ ତାଙ୍କର ? କିନ୍ତୁ ବୟସ ତୁଳନାରେ ସମୟ ତାଙ୍କ ପାଇଁ ଅଧିକ କିଛି ଗଡି ଯାଇଥିବାର ମନେ ହେଉଥିଲା ।

ଶରତ ଭାବିଲେ, ଭାଉଜ ବୋଧହୁଏ କଥା ଆରମ୍ଭ କରିବେନି । କିଛି ଗୋଟେ ଭାବନା ତାଙ୍କୁ ଅନେକ ଦୂରକୁ ଟାଣି ନେଇଛି, ବର୍ତ୍ତମାନର ପରିସ୍ଥିତିଠାରୁ । କ'ଣ ବା କହିବେ ଆଉ ସିଏ ? ସେଇ ପୁରୁଣା କଥା । ଦୈନନ୍ଦିନର ଦୁଃଖ । ପୁଅ ଝିଅଙ୍କ କଥା । ବିତି ଯାଇଥିବା ସମୟ । ଇମିତି କେତେ ଅଦରକାରୀ କଥା ?

ତାଙ୍କର ସେଥିରେ କ'ଣ ଯାଏ, ଆସେ ।

ଶରତ ଭାବିଲେ, ଏଥର ସେ ଆରମ୍ଭ କରିବେ । 'ନିରୁ'କୁ କଥା ଦେଇ ଆସିଥିଲେ । ଏଥର କିଛି ସମାଧାନ କରି ଫେରିବେ । ଭାଉଜଙ୍କଠି କ'ଣ ଅଛି କେଜାଣି, କିଛି ଗୋଟେ ସ୍ୱାର୍ଥର କଥା କହିଲା ବେଳକୁ ଜିଭ ଅଟକି ଯାଏ । ତଣ୍ଟି ପଡିଯାଏ । କିଛି କଥା କହି ହୁଏନି ।

ନିରୁ ସେକଥା ଜାଣନ୍ତି । ସେଥିପାଇଁ ଆସିଲା ବେଳେ ମୁରୁକେଇ ମୁରୁକେଇ ହସି କହିଲେ, 'ଭାଉଜଙ୍କ ଚେହେରା ଦେଖି ସବୁ ଭୁଲି ଯିବନି । କଥା କହିଲା ବେଳେ ତାଙ୍କର ମୁହଁକୁ ଚାହିଁବନି । ହୁଏତ ତାଙ୍କୁ ଦେଖି ଆମମାନଙ୍କ କଥା ଭୁଲି ଯାଇପାର । ବହୁତ ଦିନ ପରେ ଯାଉଛ ବୋଲି, ସବୁକଥା ଭୁଲି ଯିବନି ।

'ଶରତ', କଥା ଦେଇଥିଲେ । ସେ ନିଶ୍ଚୟ ତାଙ୍କର ଦାବି ଦୃଢ ଭାବରେ ଉପସ୍ଥାପିତ କରିବେ ।

ତେବେ ବି ନିରୂପମାଙ୍କର ଅବିଶ୍ୱାସ ଥିଲା । ସେ ଭାବି ପାରୁ ନଥିଲେ ଆଗାମୀ ଘଟଣାମାନଙ୍କୁ । ଦେଖାଯାଉ କ'ଣ ହେଉଛି ।

ଶରତ କହିଲେ, 'ଭାଉଜ ସିମିତି ଲୋକ ନୁହନ୍ତି ନିରୁ । ତାଙ୍କର ଅନ୍ତର ଭିତରଟା ଖୁବ୍ କୋମଳ । ସେ ମୋତେ ନିଜର ପୁଅ ପରି ସ୍ନେହ କରୁଥିଲେ । ତମେ ନ ଆସିବା ପୂର୍ବରୁ ପ୍ରତି ମାସରେ ଭଲମନ୍ଦ ଚିଠି ଖଣ୍ଡେ ନପାଇଲେ ଭାଇନାଙ୍କୁ ପଠାଇ ଦେଉଥିଲେ । ତମେ ତାଙ୍କୁ ଜାଣନା ।'

ଥାଉ । ମୁଁ କେଉଁ ଦିନ ମନାକଲି ଯେ, ସେ ତୁମକୁ ଭଲ ପାଆନ୍ତିନି ବୋଲି । ସବୁ ଭଲ ପାଇବାରେ ସ୍ୱାର୍ଥ ଟିକିଏ ନିଶ୍ଚୟ ଥାଏ । ଇମିତି କି ମୋର, ଆମ ପୁଅ ଝିଅଙ୍କର ବି କେଉଁଠି ସାମାନ୍ୟ ତ କେଉଁଠି ଟିକେ ବେଶି । ତାଙ୍କର ସ୍ୱାର୍ଥ ଏବେ ମଉଳି ଗଲାଣି । ତାଙ୍କର ପୁଅ ଝିଅ ବଡ ହେଲେଣି । ପରିବାର ବଢିଲାଣି । ତମକୁ ପଚାରେ କିଏ ?

ନିରୁ ଖୁବ୍ ଦୃଢ ଭାବରେ ନିଜର ଯୁକ୍ତି ସାବ୍ୟସ୍ତ କରୁଥିଲେ । ହୋଇଥିବ ଅବା ବଦଳି ଯିବେଣି, ଭାଉଜ ଯା ଭିତରେ ।

ନିରୁ କହିଲେ 'ଶୁଣ । ଦରମା ଯାହା ପାଉଛ କୁଆଡକୁ ନିଅଁଟ । ଖାଲି ନାମ୍ ବଡା, କାମ୍ ଥୋଡା । କ'ଣ ନା ଇନ୍‌କମ ଟାକ୍‌ସ ଅଫିସର । ଉଭା ଯେତେ ପୋତା ସେତେ । ଅନ୍ୟକୁ ଡରେଇବ କ'ଣ । ନିଜ କାମରେ ବେଶି ଡର । ଦି'ପଇସା ଲାଞ୍ଚ ଆଣିବାକୁ ବି ଡର । ଆରେ ବାବା ଲାଞ୍ଚଟା ଏବେ ଦୁର୍ନୀତି ଭିତରେ ଯାଉନି । ସେଇଟା ତ ଜୀବନର ଏକ ଅଂଶ ହୋଇଗଲାଣି । କାହାକୁ ତ ହାତ ପତାଉନ । ଆପେ ଆପେ ଯାହା ଆସୁଛି ଆସୁ ।

ମୋ କଥା ତ ବୁଝିବନି । ଏବେ କ'ଣ କରୁଛ କର । ଘରଟା ବନେଇ ଦେଲ ଯେ ସାରିବାକୁ ସମ୍ବଳ ନାହିଁ । ଅଧାପନ୍ତରା ହୋଇ ପଡିଛି । କେତେଦିନ ଆଉ ଇମିତି ରଖିବ ? କିଏ ଗୋଟେ ଘରକୁ ଆସିଗଲେ ହଇରାଣ । ପଛପଟେ ଦୁଇ ବଖରା ବଢିନି । ଆଗରେ ପୋର୍ଟିକୋ କାମ ସରିନି । ଘରଟା ଟିକେ ଆଖି ଦୃଶିଆ ନହେଲେ ସମ୍ମାନ ରହିବ କେଉଁଠି ?

ମୋ କଥା ମାନ । ଗାଁ ଘରରୁ ତମର ଅଧା ଭାଗ, ଆଉ ଯାହା କିଛି ଜମିବାଡି ଅଛି ସେଥିରୁ ବି ଅଧାଭାଗ ଆଣି ବିକ୍ରୀ କରିଦିଅ । ସେଇ ଟଙ୍କାରେ ଘରଟା ପୂରା କରିଦେବ । ସେମାନେ ଯଦି ବିକ୍ରୀ କରିବାକୁ ନଚାହିଁବେ, ତେବେ ଆମକୁ ସେତିକି ଟଙ୍କା ଦେଇ ଦିଅନ୍ତୁ । ଘରଟା ପୂରା ତାଙ୍କର ହୋଇଯିବ ।

ନିରୂପମାଙ୍କର କଥା ପୂରାପୂରି ବୁଝି ଯାଇଥିଲେ ଶରତ । ସତକଥା, ସେ କେଉଁ ଗାଁକୁ ଯାଉଛନ୍ତି କି ? ନା ତାଙ୍କର ପିଲାମାନେ ଭବିଷ୍ୟତରେ ଯିବାର ଅଛି । ଏତେ ବଡ ହେଲେଣି ଭଲ ଭାବରେ ଗାଁ ଦେଖିଲେନି ? ବହୁଦିନ ତଳେ ପୁଅ, 'ଇୟୋର ନେଟିଭ ଭିଲେଜ' ବିଷୟରେ ରଚନା ଲେଖିବ ବୋଲି, ଜିଦି କରି ଗାଁକୁ ଯାଇଥିଲା ଯେ, ଫେରିବାକୁ ବାଟ ମିଳିଲାନି । ଜମା ଚଳି ପାରିଲାନି ସେଠି । ତାକୁ ଗନ୍ଧ ଲାଗିଲା ସେଠିକାର ସବୁ କିଛି । ନିରୂପମା କଥା ଛାଡ । ଥରେ ମୁହଁ ମୋଡି ଦେଇଛନ୍ତି ଯେ, ଆଉ ଯିବାର ନା ଧରନ୍ତିନି । ପୋଲିସ ଅଫିସରଙ୍କର ଝିଅ । ଚାଳ ଛାଉଣୀ ଘର ଭିତରେ ଚଳିବେ କିମିତି ? ଝିଅର ଗାଁ ଦେଖିବାର ସୌଭାଗ୍ୟ, ଏପର୍ଯ୍ୟନ୍ତ ଜୁଟିନି ।

ଗାଁ ଘର, ଆମ ନାଁରେ ଥାଇ କ'ଣ ହେବ ? ଗାଁର ଯେତେ ସବୁ ସମ୍ପତ୍ତି ସେମାନେ ଖାଉଛନ୍ତି । ଦୁଇ ପଇସା ଦେବାର ନାହିଁ ।

-ତମେ ସବୁ ମୁହଁ ଖୋଲି କହିବ ।

ଶରତ ଶପଥ କରି ଆସିଥିଲେ, ନିଶ୍ଚୟ କିଛି ଗୋଟେ ବ୍ୟବସ୍ଥା କରିବେ । କିନ୍ତୁ ସକାଳ ଗଡି ଗଡି ଚାରିଟା ବାଜିଲାଣି । କିଛି କହୁ ନାହାଁନ୍ତି କାହିଁକି ? କେତେବେଳେ ଆଉ କହିବେ ?

ସକାଳୁ ବସ୍‌ରୁ ଓହ୍ଲାଇ ଚାଲି ଚାଲି ଆସିଥିଲେ । ବଡ ହାଲିଆ ହୋଇ ଯାଇଥିଲେ । ପିଲାଦିନର ଅଭ୍ୟାସ ଆଉ ନଥିଲା । ଗାଁ ପାଖ ହେଲା ବେଳକୁ କିମିତି ଏକ ଉଦାସିଆ ଭାବ ତାଙ୍କୁ ମାଡି ବସିଲା । ଧୀରେ ଧୀରେ ଯେତେ ଗାଁ ପାଖ ହୋଇ ଆସୁଥିଲା, ସବୁ ଭାବନା କଟିଯାଇ ଏକ ଉତ୍ତେଜନା, ଆଗ୍ରହ ତାଙ୍କର ମନକୁ ଆବୋରି ବସିଲା । ମନେ ହେଲା ଅନେକ ଦିନ ହେବ, ସେ ଖୋଜୁଥିବା ଶାନ୍ତି ଟିକକ ପାଇ ଯାଉଛନ୍ତି । ବଡ ପୋଖରୀ ତୁଠରୁ ସିମିତି ତାଙ୍କ ଗାଁକୁ ନାଲି ରାସ୍ତାଟାଏ ଲମ୍ବି ଯାଇଛି । ସିମିତି ଦୂରରୁ କପିଳେଶ୍ୱର ମନ୍ଦିର ଚୂଡା, ଆମ୍ବ ବଗିଚା ଭିତରୁ ଉଙ୍କି ମାରୁଛି । ବର, ଓସ୍ତ, ବଉଳ ଗଛ ଉହାଡରୁ ଲୁଚକାଳି ଖେଳିଲା ପରି କେଉଁଠି ଖଣ୍ଡେ ଖଣ୍ଡେ ଘର ବାହାରି ପଡି ପୁଣି ଲୁଚି ଯାଇଛି । କିଛି ତ ବଦଳିନି ଏଇ ପୋଖରୀ ହୁଡାରେ । ପବନା, କୁନିଆଁ, ରମେଶ, ଗିରିଜା, ଆଦି ବସି ଗପ ଯୋଡୁଥିଲେ । ଏଇ ଚାନ୍ଦିନୀ ଉପରେ ବସି ତାସ୍ ଖେଳୁଥିଲେ । ଏଇ ସ୍କୁଲ ଘରେ, ରାତି ଅନିଦ୍ରା ହୋଇ ଡ୍ରାମା ରିହର୍‌ସାଲ କରୁଥିଲେ । କେତେ ଶୀଘ୍ର ଭୁଲିଗଲେ ସେ ସବୁ । କୁଆଡେ ଗଲେଣି ସେତେବେଳର ସାଙ୍ଗ ସାଥୀ ।

ଶରତ, ଲକ୍ଷ୍ୟ କଲେ, କେତେ ପିଲା, ସେଠି ଜଣା ପଡୁ ନାହାଁନ୍ତି । ଡାହାଣ କଡରେ ଗାଁ ଶ୍ମଶାନ, ଏଇଠି, ବୋଉ ମରିଗଲା ବେଳେ ତାକୁ ପୋଡା ଯାଇଥିଲା । ଗାଁକୁ ଗଲାବେଳେ ପ୍ରଥମେ ସେଇଠି ମୁଣ୍ଡିଆ ମାରନ୍ତି । ଆଖିରୁ ତାଙ୍କର ଲୁହ ଗଡି ପଡେ ।

ଶରତ ମୁଣ୍ଡିଆ ମାରିଲେ, ସେଇ ଜାଗାରେ । ଦମକାଏ ପବନ ତାଙ୍କ ଉପର ଦେଇ ବହିଗଲା । ମନେ ହେଲା କେହି ଯିମିତି ଆଶୀର୍ବାଦ ଓଜାଡି ଦେଇ ଚାଲିଯାଉଛି । ସେ ତରତର ହୋଇ ଆଗକୁ ବଢ଼ିଲେ ।

ଗାଁ ଘର ଦାଣ୍ଡ ପିଣ୍ଡାରେ, ଭାଇନା ବସିଥିଲେ, ଚକା ପକେଇ । ପାଖରେ ଗାଁ'ର କେତେ ସବୁ ବୁଢା ବୁଢା ଲୋକ । ଭାଇନା ବି କେତେ ବୁଢା ଜଣା ପଡୁଥିଲେ । ଚାକିରିରୁ ଅବସର ନେଲା ପରେ ଖୁବ୍ ଶୀଘ୍ର ବାର୍ଦ୍ଧକ୍ୟ ତାଙ୍କୁ ମାଡି ବସିଛି ।

ସେ କଣେଇ କରି ତାଙ୍କ ଆଡକୁ ଚାହିଁଲେ । ଚଷମାକୁ ଟିକେ ଉପରକୁ ଟେକି ନିରେଖି ଦେଖି କହିଲେ, "କିଏ ? ଶର କିରେ ।" ତା'ପରେ ଉଠି ପଡୁ ପଡୁ ଚିତ୍କାର କରି ଡାକ ଛାଡିଲେ, "ଆହେ ଆମ ଶର ଆସିଛି ଦେଖିଲ । ଆରେ ମନୁ କକେଇର ବ୍ୟାଗଟା ଧର ତ । ଏତେ ବାଟ ଚାଲି ଆସିଲୁ । ଖବରଟା ପଠେଇଥିଲେ ଲୋକଟାଏ ପଠେଇ ଦେଇଥାଆନ୍ତି ।

ଆରେ ମନୁ, ଆସିଲୁ ନାହିଁ ।

-ଭାଉଜ ଧାଇଁ ଆସିଲେ । ଭାଇନାଙ୍କର ପାଦଧୂଳି ନେଉ ନେଉ, ଅଟକି ଗଲେ ଶରତ । କସ୍ତା ଶାଢି ପିନ୍ଧି ଏକ ଔଜଲ୍ୟ ମୂର୍ତ୍ତି ! ସାକ୍ଷାତେ ଲକ୍ଷ୍ମୀ ରୂପରେ ତାଙ୍କ ଆଗରେ ଠିଆ ହୋଇଛନ୍ତି ଯିମିତି ।

ଶରତ ଚାହିଁ ରହିଲେ । ବର୍ତ୍ତମାନର ରୂପ ଭିତରେ ଅନେକ ବର୍ଷ ତଳର ସେଇ କାଞ୍ଚନିକ ଛବିକୁ ତୁଳନା କରି ଚାଲିଥିଲେ । କେତେ ପରିବର୍ତ୍ତନ ହୋଇଯାଇଛି ସତରେ ।

ଆଖିରେ ଦୁଇଧାର ଲୁହ । ସ୍ଥିର ଦୃଷ୍ଟି । ମନେ ହେଲା ଯେମିତି ବହୁଦିନ ତଳର ଶରତଟିଏ କଲେଜ ଛୁଟିରେ ଘରକୁ ଫେରୁଛି । ଆଉ କେଜାଣି କେତେ ସ୍ନେହ, ଆବେଗ ସବୁ ଗଚ୍ଛିତ ରଖି, ବୋଉ ଚାହିଁ ରହିଛି, ତାଙ୍କର ଫେରିବା ବାଟକୁ ।

ସେ ଭୁଲିଗଲେ ତାଙ୍କର ପାଦ ସ୍ପର୍ଶ କରିବାକୁ । ହଠାତ୍ ଚହଲି ଉଠିଲା ମନର କୋହ, ଅପ୍ରତ୍ୟାଶିତ ଭାବରେ ।

ଭାଉଜ ଠିଆ ହୋଇ, ଏକ ଲୟରେ ଚାହିଁ ରହିଥିଲେ । ଶରତ ଭାବିଲେ, ଭାଉଜଙ୍କ ମନରେ ଏଥର ଅନ୍ୟ ଏକ ଭାବ ଜାଗି ଉଠିବ । ଏତେ ଦିନ, ନ ପଚାରୁ ଥିବାର, ଈର୍ଷା, ଦ୍ୱନ୍ଦ୍ୱ ଭାବ ତାଙ୍କୁ ଘାରି ଦେବ । ମୁହଁରେ ସନ୍ଦେହର ରେଖା ଫୁଟି ଉଠିବ ।

କିନ୍ତୁ, ସିମିତି କିଛି ହେଲାନି । ସେଇ ଧୀର ସ୍ଥିର ମୁହଁଟିରେ କୌଣସି ବିଦ୍ୱେଷର ପ୍ରତିଫଳନ ନଥିଲା ।

କିଛି ସମୟ ନୀରବତା ପରେ, ସେ କହିଲେ, 'ଏକା ଆସିଲ, ଶର ? ନିରୁ ଆଉ ପିଲାମାନେ ?'

-ସେମାନଙ୍କର... ।

-ହଉ, ଭିତରକୁ ଆସ ।

ଭାଉଜଙ୍କର ସେଇ ଦୁଇପଦ କଥା ଭିତରେ, ସେ ଯେ ସବୁ କଥା ବୁଝି ଯାଇଛନ୍ତି, ତା'ର ପ୍ରତିଫଳନ ଜାଣି ପାରିଲେ ଶରତ । ଏକ ଧାରାବାହିକ ଜୀବନଚର୍ଯ୍ୟା ଭିତରେ ତାଙ୍କର ନିଃସ୍ୱତା ପ୍ରତିପାଦନ କରିବାକୁ ଆଉ କିଛି ବାକି ନଥିଲା । ମନେ ହେଲା, ତାଙ୍କ ପରି ବାଧ ଦୋଷୀମାନଙ୍କ ପାଇଁ, ଭାଉଜମାନଙ୍କର ଇମିତି ପଦେ କଥା ହିଁ ଯଥେଷ୍ଟ ।

- ଶରତ ମୁଣ୍ଡ ନୁଆଁଇଲେ ।

- ସକାଳ ସାରା କଟିଗଲା, ଏଣୁ ତେଣୁ ଗପ, ଘରବାଡି ଦେଖା, ପଖାଳ ଭାତ, ବଡିଭଜା, ଶାଗ ଖରଡା ଭିତରେ । ବଡ ଖୁଡୀ ଆଚାର ଧରି ପହଞ୍ଚିଲେ ।

କହ୍ନେଇ ମାମୁଁ, ବୁଲା କକେଇ, ମୁଷା ବାପା, ଦେଢେଇ ବି ଆସିଲେ । ଭଲ ମନ୍ଦ ପଚାରିଲେ । ସେ ଯିମିତି ଶାଶୂଘରୁ ପ୍ରଥମ ହୋଇ ଫେରିଥିବା, ଏଇ ଗାଁର ଝିଅଟିଏ । ସମସ୍ତଙ୍କର ଅଲିଅଳ ।

ବହୁତ ଭଲ ଲାଗିଲା, ସେମାନଙ୍କର ଅକପଟ ସ୍ନେହ । କିମିତି ଛାଡି କରି ଥିଲେ ଏତେ ଗୁଡେ ମମତାକୁ । ଏକ ବୃଥା ବଡଲୋକୀର ପ୍ରହସନ ଭିତରେ କ'ଣ ମିଳୁଥିଲା ତାଙ୍କୁ ? ନିରୁ ଯଦି ଥରେ ଆସି ଦେଖନ୍ତେ... ।

ସମସ୍ତେ ନିରୁ ଓ ପିଲାମାନଙ୍କ କଥା ପଚାରିଲେ । ଏଥର କିନ୍ତୁ, ସେ ନୁହେଁ, ଭାଉଜ ଉତ୍ତର ଦେଲେ, ତାଙ୍କ ପଟ ହୋଇ ସେମାନଙ୍କର ବ୍ୟସ୍ତତାର ଦ୍ୱାହି ଦେଇ ।

ସକାଳ ସାରା କଟିଗଲା । କିଛି କଥା ନାହିଁ । କିଛି ଉଦ୍ଦେଶ୍ୟ ନାହିଁ ।

ତା'ପରେ କିଏ କିମିତି ପୁରୁଣା ସାଙ୍ଗ, ସାଥୀ ଆସିଥିଲେ । ପୁରୁଣା କଥା ସବୁ କହିଲେ । ଭଲ ଲାଗିଲା ।

ସେମାନେ କହିଲେ, ଗାଁ ରାସ୍ତା, କ୍ଲବ, ସ୍କୁଲଘର କଥା– କିଏ ଅଛି, କିଏ ଗଲେଣି । ଇମିତି ଅନେକ କଥା ।

ସେମାନଙ୍କର ଭାଷା ଖୁବ୍ ନିଜର ଲାଗିଲା । ବୁଲା ଜକେଇ କହିଲେ ଏତେ ବଡ ଲୋକ ହେଲ, ପୈତୃକ ସମ୍ପତ୍ତିକୁ ଚାହିଁଲନି ? ଘରଟା ବନେଇ ଦିଅ । ଗାଁରେ ହାଡି, ପାଣ ଆଦି ଭଲ ଘର କଲେଣି । ତମର ଏବେ ବି ଚାଳ ଘର ଖଣ୍ଡେ ପଡିଛି । ବୁଢାଟା ସ୍ୱର୍ଗରେ ଥାଇ କ'ଣ ଭାବୁଥିବ ? ଇମିତି ସବୁ ମଣିଷ ହେଲ । ବାପର ନାଁ ରଖିଲ ? କେତେ ଟଙ୍କା ପଡିବରେ, ଘରଟା ବାଗେଇବା ପାଇଁ । କେବେ ତ ଥରେ ଗାଁ ବୁଲି ଆସିବ । ଲୋକେ କହିବେ ଅମୁକଙ୍କ ଘରଟା ବୋଲି ।

ଶରତ ନୀରବ ରହିଲେ । ସେ ଠିକ୍ କଥା କହୁଥିବା ପରି ମନେ ହେଲା ତାଙ୍କର । କିନ୍ତୁ କ'ଣ ଯେ ବୁଝିବେ ଆଜିର ସଭ୍ୟ ବୋଲାଉଥିବା ତଥାକଥିତ ମଣିଷର ଅଭାବବୋଧ କଥା ।

-ସେ କିଛି ଭାବିଲେନି । ତାଙ୍କର ଅଧିକାରକୁ ମାନି ନେଲେ ।

ଦୁଇଟା ବେଳେ ଗାଁ ନଈର ମାଛ ଝୋଳ ଆଉ କେତେ କ'ଣ ଭଲ ଖାଇବା ଜିନିଷ ଭାଉଜ ରାନ୍ଧିଥିଲେ ।

ତା'ପରେ ସମୟ ମିଳିଲା ଟିକେ ଗପିବା ପାଇଁ । ସେଥିରେ ପୁଣି ଭାଉଜ ନୀରବ ।

ଶରତ ମନେ ପକାଉଥିଲେ, ନିରୁ କହିଥିବା, ଗୋଟି ଗୋଟି କଥା । କିଛି ଝାପ୍‌ସା, ଝାପ୍‌ସା ତାଙ୍କର ମନେ ପଡୁଥିଲା !

ଭାଇନା ଆସୁ ନାହାଁନ୍ତି କାହିଁକି ?

ଭାଉଜ କହିଲେ, 'ଶର । ଭାଇନାଙ୍କର ତ ଚାକିରି ସରିଲା । ଆଉ କେତେ ଦିନ ବା ବଞ୍ଚିବୁ ! ବୁଢା ବୁଢୀ ହେଲୁଣି ।'

ସେ କିନ୍ତୁ ଉପରକୁ ଚାହିଁଥିଲେ । ଯେଉଁଠି ଘରର ଆଟୁ ପାଖରୁ ଫାଳେ, ମାଟି ପଡି ଆଁ କରି ଚାହିଁ ରହିଥିଲା ।

ଏ ବର୍ଷ, ବର୍ଷା ପବନରେ ସବୁ ଉଡିଗଲା । ଭାଇନାଙ୍କ ମାଷ୍ଟ୍ରି ଚାକିରିରେ କେତେ ବା ପେନ୍‌ସନ । ଜମିବାଡି ତ, ବାପା ଅଧିକାଂଶ ବିକ୍ରୀ କରି ଦେଇଥିଲେ, ତମମାନଙ୍କ ପାଠପଢା ଆଉ ଝିଅ ବାହାଘରରେ । ମନୁଟା ବି ପାଠ ପଢିଲାନି, ଗାଁ ଟୋକାଙ୍କ ସଙ୍ଗେ, ଏ ସାଇ, ସେ ସାଇ ହେଉଛି ।

ଶରତ, ଦେଖିଲେ, ଚାରିଆଡେ ଅଭାବର ଛାପ । ଘରେ ଚୂନର ପ୍ରଲେପ ନାହିଁ । ସିମେଣ୍ଟରୁ ଖଣ୍ଡେ ଖଣ୍ଡେ ଛାଡି ବିକୃତ ଦେଖାଯାଉଛି । ଖଣ୍ଡିଆ ଯାଗାରେ ମାଟି ଲେସା ହୋଇ ସମାନ କରାଯାଉଛି । ପଛପଟ ଘରଟା ହଡା ବଳଦ ପରି ଶୋଇଗଲାଣି । ଆଉ ଖଞ୍ଜାର ଅସ୍ତିତ୍ୱ ହିଁ ନାହିଁ ।

ସେ ମନେ ମନେ ଘରଟାକୁ ଦୁଇ ଭାଗ କଲେ । ଗୋଟେ ଭାଗକୁ ଭାଙ୍ଗି ଦେଇ ପଡିଶା ଘର ସନେଇ ପିଉସାଙ୍କୁ ବିକ୍ରୀ କରିଦେବେ । ସେ, ସେଠି ଘର କରିବେ । ଯେଉଁଠି ପିଲାଦିନେ ସେ ପାଠ ପଢୁଥିଲେ । ବୋଉ ରୋଗରେ ସଢି ସଢି ମରିଥିଲା । ଖଟିଆ ଖଣ୍ଡେ ପକାଇ ଦେଇ ଭାଉଜ ତାଙ୍କ ପାଇଁ ବିଛଣା କରି ଦେଉଥିଲେ । -ସେଇଟା ତାଙ୍କ ପଟ । ସେ ସନେଇ ପିଇସାଙ୍କୁ ବିକ୍ରୀ କରିଦେବେ । ତାଙ୍କ ଭଙ୍ଗା ଘର ପାଖରେ ସେ କୋଠାଘର ତୋଳିବେ । ନଡିଆ ଗଛରୁ ଅଧେ, ବାଡିରୁ ଅଧେ ନେଇ ସେ ବିକ୍ରୀ କରିବେ । ଭାଉଜ ଅନେକ ଦିନର ରୋଷେଇ ଘରଟାକୁ ଆରପଟକୁ ଉଠାଇ ନେବେ । ପିଲାଦିନେ ନିଜେ ଖେଳୁଥିବା, ନାନୀମାନଙ୍କ ସଙ୍ଗେ ଅଳି ଅଝଟ କରି ମାଡପିଟ୍ କରୁଥିବା ବାଡି ଘରଟାରେ ସନେଇ ପିଇସାଙ୍କର ନାତିମାନେ ଡିଆଁ ମାରିବେ ।

ଶରତ ଅନ୍ୟମନସ୍କ ଥିଲେ ।

ଭାଉଜ କହିଲେ ଏ ବର୍ଷ କିଛି ଟଙ୍କା ଯୋଗାଡ କରି ଭାଇନା, କାଠ ମଗେଇବେ । ପଛପଟ ଘରଟା ଟାଇଲ କରିଦେବେ ବୋଲି କହୁଥିଲେ । ତମେ ଆରଥର ନିରୁକୁ ନେଇ ଆସିବ । ରହିବାରେ ଅସୁବିଧା ହେବନି ।

ଶରତ, ଭାଉଜଙ୍କ ମୁହଁକୁ ଚାହିଁଲେ । ସିମିତି ସେ ତୀର୍ଯ୍ୟକ ଭାବରେ, କେଉଁ ଆଡେ ଚାହିଁଛନ୍ତି । ସେଇ ସ୍ନେହମିଶ୍ରିତ ଧୀରସ୍ଥିର କଥାରେ ମନ କିଣି ନେଉଛନ୍ତି ।

ହଁ । ତମ କଥା କିଛି କହିଲନି । ପିଲାମାନେ ଭଲ ଅଛନ୍ତି ତ ? ରୁନା, ରୁନୀଙ୍କୁ ଅନେକ ଦିନରୁ ଦେଖିନି । କ'ଣ କରିବି ? ଏ ଘର, ଏ ଠାକୁରଙ୍କୁ ଛାଡି କୁଆଡେ ଯାଇପାରୁଛି କି ? ନିରୁକୁ କହିବ ରାଗିବନି । ପିଲାମାନଙ୍କୁ ମୋର ଆଶୀର୍ବାଦ ଦେବ ।

ତମେ ଆଜି ରହିବନି ? ନିହାତି ଜରୁରୀ କାମ ଅଛି ନା କ'ଣ ? ଭାଇନା କହୁଥିଲେ, "ପିଲାଟା ସହରରେ ଭେଜାଲ ଜିନିଷଗୁଡା ଖାଉଛି । ତା' ପାଇଁ କିଛି ଭଲ ଜିନିଷ କର । ଯାଇଛନ୍ତି ବଜାରକୁ ।"

ଶରତ କହିଲେ, "ମୁଁ ତ ରହି ପାରିବିନି ଭାଉଜ । ଟୁର୍‌ରେ ଆସିଛି । ବାହାନା ଦେଖେଇ ଗାଁକୁ ଆସିଲି ।

ଏତେ ବଡ ମିଛ କଥାଟେ କହି ଶରତ ଚମକି ଉଠିଲେ । ନିରୁକୁ କହି ଆସିଛନ୍ତି, ପରଦିନ ପହଞ୍ଚିବେ । ଏଠୁ କଟକ ଯାଇ ଶ୍ୱଶୁର ଘରେ ମୁହଁ ମାରି ଯିବେ ।

ହଉ, ତମ ଇଚ୍ଛା । ଇମିତି କେବେ କେବେ ଭାଉଜକୁ ଦେଖି ଆସୁଥିବ ।

ଶରତ, ଛେପ ଢୋକିଲେ । ଏଥର ସେ ଆରମ୍ଭ କରିବେ ତାଙ୍କ କଥା ଭାଇନା ଆସିବା ପୂର୍ବରୁ ତାଙ୍କୁ କହିଦେବେ । କ'ଣ କହୁଥିଲିକି ଭାଉଜ... ।

ହଁ, ତମ ଆଚାର କଥା ତ । ଏ ବର୍ଷ କରି ପାରିଲିନି । କିଛି ବଡି ରଖି ଦେଇଛି । ନଡିଆ, ସାତ ଆଠଟା ଗଲାବେଳକୁ ବ୍ୟାଗ୍‌ରେ ନେଇଯିବ ! ତମ ପାଖକୁ କିଛି ପଠାଇବାର ସୁବିଧା ତ ନାହିଁ । କ'ଣ କରିବି ଯେ ।

ସେ ସବୁ କ'ଣ ଦରକାର । ମୁଁ କ'ଣ କହୁଥିଲି କି...

କହୁନ... ।

ଶରତ ପୁଣି ଥରେ ଛେପ ଢୋକିଲେ । ତଣ୍ଟି ପାଖେ କେଉଁଠୁ ଗଚ୍ଛିତ ଥିବା କଥାଗୁଡା ଜମା ହୋଇଗଲା । କେଉଁଠି ଅଟକିଥିବା ପରଦାଟା ବି ଖୋଲିଗଲା ।

ଏ ଘରଟା...

-ଭାଙ୍ଗି ପଡିଛି ତ ।

ହଁ, ହଁ । ମୁଁ ଟଙ୍କା ଦେଇ ଯାଉଛି । ଭାଇନାଙ୍କୁ କୁହ ତିଆରି କରି ଦେବେ । ଆଗ ଘରଟା ବି ଟାଇଲ କରିଦିଅ । ଗାଁ ଲୋକେ ଇଆଡୁ ସିଆଡୁ କହୁଛନ୍ତି । ଭଲ ଲାଗୁନି । ଆମେ ବାହାରେ ରହିଲୁ ବୋଲି କ'ଣ ଭିଟାମାଟିକୁ ଭୁଲିଯିବୁ । ପିଲାମାନେ କହୁଛନ୍ତି ଆସିବେ ବୋଲି । ଏଇ ରଖ ଦଶ ହଜାର । ଆଉ ଦରକାର ହେଲେ ଲେଖିବ ।

-ଭାଉଜ, ଏତେ ବଡ ଆଖି କରି ଚାହିଁ ରହିଲେ ।

- ରଖ ଭାଉଜ । ନିରୁ କହିଥିଲା । ଭାଉଜ ଓ ପିଲାମାନଙ୍କ ଭଲ ମନ୍ଦ ବୁଝି ଆସିବ । ସୁବିଧା ଦେଖି ତମକୁ କଲିକତା ନେଇଯିବି ।

-ତମେ ପିଲା ପିଲି ଧରି ଏତେ ବଡ ସହରରେ ଚଳୁଛ । ଅସୁବିଧା ହେବନି ଶର । ଆମେ ତ ଗାଁରେ ଯେମିତି ସିମିତି ଚଳି ଯାଉଛୁ । ବରଂ ଧୀରେ ଧୀରେ...

ଅସୁବିଧା କ'ଣ ? ତମେ ତ ଜାଣ ମୁଁ କେତେ ବଡ ଅଫିସର । କେତେ ଦରମା । ସବୁତ ତମରି ଆଶୀର୍ବାଦରୁ ।

ଭାଇନା ଆସି ଯାଇଥିଲେ । ହାତରେ ବ୍ୟାଗରେ ପରିବା ବ୍ୟାଗେ । ସାଙ୍ଗରେ ମନୁ । ଲୁଙ୍ଗି, ଗଞ୍ଜି ଖଣ୍ଡେ ପିନ୍ଧିଛି । କାନ୍ଧରେ ନାଲି ଗାମୁଛା ।

ଶରତ, ତା' ଆଡକୁ ଚାହିଁଲେ । ଗୁନାର ବଡ ଭାଇ ମନୁକୁ । ମନୁକୁ, ବ୍ୟାଙ୍କରୁ ଲୋନ୍ କରି ଟ୍ରାକ୍ଟର ଖଣ୍ଡେ କରାଇ ଦିଅ । ଆମର ଯାହା କିଛି ଜମି ଅଛି, ଚାଷ କରୁ । ଚାକିରିରୁ କ'ଣ ମିଳିବ ।

କ'ଣ ଅଛି ସେଥିରେ ?

ଭାଇନା କହିଲେ, "ତୁ କ'ଣ ଏବେ ଚାଲିଯିବୁ ?"

ହଁ ଭାଇନା, କାଲି ଟ୍ରେନରେ ଟିକେଟ୍ କଟା ସରିଛି । ଅଫିସ କାମ ବି ଟିକେ ଅଛି ।

ପୁଣି କେବେ ଆସିବୁ ?

-ଶରତ ଏଥର ଉଠିଲେ । ଭାଉଜଙ୍କ ଗୋଡ ତଳେ ମୁଣ୍ଡ ନୁଆଁଇଲେ । ସେ ଲକ୍ଷ୍ୟ କଲେ ଦୁଇଟୋପା ଅଶ୍ରୁ, ତାଙ୍କରି ଉପରେ ଝରି ପଡୁଛି । ଯେଉଁ ଅଶ୍ରୁ ଝରି ପଡୁଥିଲା କେବେ କେବେ, ଅନେକ ବର୍ଷ ପୂର୍ବେ, ବୋଉର ଅଶ୍ରୁ ।

ସେ ପ୍ରସ୍ତୁତ ହେଲେ । ମନୁ ବ୍ୟାଗ ଧରିଲା । ଭାଇନାଙ୍କୁ ମୁଣ୍ଡିଆ ମାରୁ ମାରୁ ସେ ଫେରି ଚାହିଁଲେ । ସେଇ ଘରକୁ । ଯେଉଁଠି ଅନେକ ସ୍ମୃତି, ଅନେକ ପ୍ରତିଶ୍ରୁତି ଛାଡି ଦେଇ ସେ ଫେରି ଆସୁଥିଲେ । ତା'ପରେ ଆଗକୁ ଚାଲିଲେ, ଦାଣ୍ଡରେ ଧୂଳି ଉଡାଇ । ଯାହା ନିରୁପମାଙ୍କୁ ଦେଇ ଆସିଥିବା ପ୍ରତିଶ୍ରୁତି ଉପରେ ବସି ଯାଇ ମଳିନ ହୋଇ ଯାଉଥିଲା ।



# ଅବ୍ୟକ୍ତ

## ପୀତବାସ ରାଉତରାୟ

ଗଳ୍ପଟିଏ ଜନ୍ମ ନେବାକୁ କ'ଣ କିଛି ସମୟର ସୀମାରେଖା ଥାଏ ?

ଦୀର୍ଘ ପଚିଶ ବର୍ଷ ପରେ ଆଜି ଗଳ୍ପଟିଏ ଲେଖିଲା ବେଳକୁ ଭାବୁଛି ସମୟର ଚୌହଦିରେ ସବୁ ଗଳ୍ପକୁ ବାନ୍ଧିହେବ ନାହିଁ । ତା' ନ ହେଲେ ପଚିଶ ବର୍ଷ ତଳେ ମନରେ ଉଙ୍କି ମାରିଥିବା ପ୍ରଶ୍ନବାଚୀଟି ସକାଳର କାକର ପରି ଉଭେଇ ନ ଯାଇ ପଚିଶ ବର୍ଷ ପରେ ସୂର୍ଯ୍ୟାଲୋକରେ ଝଲମଲ ହୋଇ ମୋତେ ପୁଣି ଆନ୍ଦୋଳିତ କରୁଛି କାହିଁକି ? ପଚିଶ ବର୍ଷ ତଳେ ଉତ୍ତର ଖୋଜି ପାଉ ନଥିବା ପ୍ରଶ୍ନର ବନ୍ଧନରେ ମୁଁ ନିଜେ ହିଁ ବାନ୍ଧି ହୋଇଯାଇଛି କେମିତି ? ଆଜି ଗଳ୍ପଟି ଲେଖିଲାବେଳେ ଭାବୁଛି ଯେ ଏ ଗଳ୍ପର ଭ୍ରୂଣ ଯେମିତି ମୋ ପାଇଁ ଏକ ଗର୍ଭବେଦନା ଭଳି ରହିଯାଇଛି ଯାହା । ଏ ଗଳ୍ପ ଶେଷ କଲା ପରେ ହିଁ ଉପସମ ହେବ ।

ସ୍ମୃତିର ଲବଙ୍ଗ ବନ ଡେଇଁ ମୁଁ ଫେରୁଛି ପଚିଶ ବର୍ଷ ତଳକୁ । ସେତେବେଳେ ମୋ ହାତରେ ନିଯୁକ୍ତି ପତ୍ରଟିଏ, ଗୋଟିଏ ଆଭିଜାତ୍ୟ ବିଦେଶୀ ବ୍ୟବସାୟିକ ସଂସ୍ଥାର ବିକ୍ରୟ ଅଧିକାରୀ ପଦବୀ ।

ନିଯୁକ୍ତି କ୍ଷେତ୍ର ହେଲା ମହାନଗରୀ କଲିକତା ।

ଗୋଟିଏ ଗ୍ରାମୀଣ ପରିବେଶରୁ ଆରମ୍ଭ ହୋଇଥିଲା ମୋର ଜୀବନ । ପିଲାଦିନେ ବାପା ବୋଉଙ୍କ ପାଖରେ ରହି ଗାଁ ଚାଟଶାଳୀରୁ ଆରମ୍ଭ କରିଥିଲି ଅ ଆ କ ଖ । ମୋ ସ୍ମୃତିରେ ହିଁ ଲହଡ଼ି ଭାଂଗୁଥିଲା କଇଁଫୁଲ ରଙ୍ଗ ଆଉ ଆମ୍ବ ବଉଳର ସୁରଭି । କେତେବେଳେ ମୋ ସ୍ମୃତିରେ ଭାସି ଆସୁଥିଲା ବର୍ଷା ଦିନର ଓଦା ଚାଳ ଉପରେ ଉଠୁଥିବା ଧୂମକୁଣ୍ଡଳୀ ଅବା କେତେବେଳେ ମନକୁ ଆବୋରି ବସୁଥିଲା ସଂଧ୍ୟାବେଳର ଚଉରା ମୂଳେ ଗ୍ରାମ୍ୟବଧୂ ଓଢ଼ଣା ତଳର ଆଲୋକିତ ରୂପ । ସ୍ମୃତିରେ ମଧ୍ୟ ରହିଯାଇଥିଲା ପାଚିଲା ଧାନକିଆରୀର ବାସ୍ନା, ବର୍ଷାଦିନେ କାଦୁଅର ଗନ୍ଧ ଆଉ ଖରାବେଳେ ତୋଟାରେ କୋଳିତୋଳାର ଆନନ୍ଦ ।

ମନଦେଇ ପାଠ ପଢୁଥିଲି ବୋଲି ମୋତେ ବୃତ୍ତି ମିଳିଥିଲା । ଗାଁ ପାଠ ସାରିଦେଇ ମୁଁ ସହରକୁ ଆସିଲି, କଲେଜରେ ନାଁ ଲେଖାଇଲି ।

ସହରକୁ ଆସି ଆସ୍ତେ ଆସ୍ତେ ବିଜୁଳି ଆଲୁଅ ଓ ପାଣିକଳ ସହିତ ଅଭ୍ୟସ୍ତ ହେଲି । ଶେଷରେ ଶିକ୍ଷାର ଶେଷ ସୋପାନ ଅର୍ଥନୀତିରେ ସ୍ନାତକୋତ୍ତର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ବିଭିନ୍ନ ପରୀକ୍ଷା ଦେଉଥିବା ସମୟରେ ଆସିଥିଲା ନିଯୁକ୍ତି ପତ୍ରଟି ।

ଗାଁ ଛାଡ଼ି ଆସିଥିଲି ସହର, ମାତ୍ର ସହରରୁ ପୁଣି ଯିବି ମହାନଗର । ଏହା ଥିଲା ମୋ ଜୀବନରେ ଏକ ବଡ଼ ପରିବର୍ତ୍ତନ ।

କଲିକତା ଯିବା ପାଇଁ ଟ୍ରେନ୍‌ରେ ବସିଲା ପରେ ମୋର କଟକ ସହରର ସ୍ମୃତି ଯେତେ ମନେ ପଡୁନଥିଲା ତା'ଠାରୁ ବେଶି ମନେପଡୁଥିଲା ଗାଁର ସ୍ମୃତି । ରାସ୍ତାରେ ନଡ଼ିଆ ଗଛ, ଧାନ ବିଲ ଓ ପଦ୍ମ ପୋଖରୀ ଦେଖି ମନେ ପଡ଼ିଯାଉଥିଲା ମୋ ନିଜ ଗାଁର ଚିତ୍ର ।

ସବୁଠାରୁ ବେଶି ଆବୋରି ବସୁଥିଲା ବୋଉର ପଣତକାନି ଓ ସ୍ନେହଭରା କଥା । ପାଠ ପଢ଼ିବା ସମୟରେ ଅଷ୍ଟମ ଶ୍ରେଣୀରେ ବାପାଙ୍କୁ ହରାଇବା ପରେ ବୋଉ ମୋ ପାଇଁ ହୋଇଯାଇଥିଲା ବାପା ଓ ମା' । ନିଜେ କଷ୍ଟ କରି ଗାଁର ଜମିବାଡ଼ି, ଗାଈଗୋରୁ, ଚାକରବାକରଙ୍କ କଥା ବୁଝି ସେ ମୋ ପାଇଁ ଟଙ୍କା ପଠାଉଥିଲା । ମୁଁ ଭଲ ପଢ଼ିବି, ବଡ଼ ମଣିଷ ହେବି ଏ ଥିଲା ତା'ର ବଡ଼ ଉଦ୍ଦେଶ୍ୟ କାରଣ ମୁଁ ଥିଲି ଏକମାତ୍ର ସନ୍ତାନ ।

କଟକରୁ ମୁଁ ଯେତେବେଳେ ଛୁଟିରେ ଗାଁକୁ ଯାଏ କେତେ ସ୍ନେହରେ ସେ ମୋତେ ଆଉଁଷି ଦିଏ । ମୋତେ ଲାଗେ ମୁଁ ଯେମିତି ଖୁବ୍ ସୁରକ୍ଷିତ । ବୋଉର ପଣତକାନି ଯେମିତି ମୋ ପାଇଁ ବଡ଼ ଆଶ୍ରୟ । ବାଡ଼ିର ଶାଗ, ପୋଖରୀର ଚୂନା ମାଛ କିମ୍ବା ନଈର ବଡ଼ମାଛ ସବୁ ମୋ ପାଇଁ ଯୋଗାଡ଼ ହୁଏ । କେତେବେଳେ ସରୁ ଚକୁଳି, କେତେବେଳେ ଏଣ୍ଡୁରି ପିଠା କରେ, ମାତ୍ର କଟକ ଯିବା ସମୟରେ ସାଙ୍ଗରେ ପଠାଏ ଆରିସା ପିଠା । ସେ କେବଳ ମୋ ପାଇଁ ନୁହେଁ ସାଙ୍ଗମାନଙ୍କ ସହ ମିଶିକରି ଖାଇବା ପାଇଁ ଥାଏ ଉପଦେଶ । ମୁଁ ଗାଧୋଇ ଆସିଲା ପରେ ସେ ସ୍ନେହରେ ମୋ ମୁଣ୍ଡକୁ କୁଣ୍ଡାଇ ଦେଉଥିଲା । ମୁଁ କଲେଜରେ ପଢୁଥିଲେ ମଧ୍ୟ ମୁଣ୍ଡ କୁଣ୍ଡାଇବା ତା' ପାଇଁ ଥିଲା ବଡ଼ ଅଧିକାର । ମୁଁ ମଧ୍ୟ ଖାଇସାରିଲେ ବୋଉର ଲୁଗାକାନିରେ ମୁହଁ ପୋଛୁଥିଲି । ସେ ମଧ୍ୟ ଥିଲା ମୋର ଏକଚାଟିଆ ଅଧିକାର ।

ଗାଁର ସ୍ମୃତିକୁ ମନେପକାଇ ଆସି ପହଞ୍ଚିଲି କଲିକତା । ସେତେବେଳେ କଲିକତା ସହରର ଜନଗହଳି ଗାଡ଼ିମଟରର ଭିଡ଼ ଆଉ ତା' ସହିତ ନଭଶ୍ଚୁମ୍ବି ଅଟ୍ଟାଳିକା ମନରେ ଆଣୁଥାଏ ଅଜଣା ଭୟ, ତା' ସହିତ ଥାଏ ଚାକିରିଟିଏ ମିଳିଥିବାର ଆନନ୍ଦ ।

ମୋ ନିଯୁକ୍ତି ପତ୍ର ଧରି ମୁଁ ପହଞ୍ଚିଲି କଲିକତାର ଚୌରଙ୍ଗୀ । ସେଠାରେ ଖୋଜି ପହଞ୍ଚିଲି ଏଭରେଷ୍ଟ ଅଟ୍ଟାଳିକା ଓ ତା'ପରେ ପୁଣି ସେହି ଅଟ୍ଟାଳିକାର ଅଠର ମହଲାକୁ ଲିଫ୍‌ଟ ସାହାଯ୍ୟରେ ଉଠିଲି ।

ଅଫିସ ଭିତରେ ପହଞ୍ଚିଲା କ୍ଷଣି ମୁଁ ସଂସ୍ଥାର ରୂପରେଖ ଜାଣିପାରିଲି । ତଳେ ପଡ଼ିଛି ଲାଲ୍ ରଙ୍ଗର କାର୍‌ପେଟ୍ । ଅଫିସ୍ ଭିତରେ ବେଶ୍ ପରିଷ୍କାର ପରିଚ୍ଛନ୍ନ । କର୍ମଚାରୀଗଣ ଶୃଙ୍ଖଳାର ସହିତ କାର୍ଯ୍ୟରତ ।

ମୁଁ ସେ ଅଫିସର ମୁଖ୍ୟ ପ୍ରବନ୍ଧକ ମାଥୁର୍ ସାହେବଙ୍କ ସେକ୍ରେଟାରୀଙ୍କୁ ଭେଟି ମୋର ନିଯୁକ୍ତି ପତ୍ର ଦେଖାଇଲି ଓ ମାଥୁର ସାହେବଙ୍କୁ ସାକ୍ଷାତ କରିବାର ଅଭିଳାଷ ଜଣାଇଲି ।

ସଂଗେ ସଂଗେ ଡକରା ଆସିଗଲା ଦେଖା କରିବାକୁ । ମୁଁ ସଂଗେ ସଂଗେ ମୁଣ୍ଡ କୁଣ୍ଡାଇ ମୁହଁକୁ ପୋଛି ଅତି ସନ୍ତର୍ପଣରେ ମାଥୁର୍ ସାହେବଙ୍କ ପ୍ରକୋଷ୍ଠରେ ପ୍ରବେଶ କଲି ।

ମୋ ଆଖି ଆଗରେ ମାଥୁର୍ ସାହେବ ପିନ୍ଧିଥାଆନ୍ତି ଗୋଟିଏ ବାଦାମୀ ରଙ୍ଗର ସୁଟ୍, ବେକରେ ଟାଇ, ମୁହଁରେ ଚୁରୁଟ୍ । ସେ ମୋତେ ଦେଖିବା ମାତ୍ରେ ସ୍ୱାଗତ ଅଭିବାଦନ ଜଣାଇ ବସିବା ପାଇଁ ନିର୍ଦ୍ଦେଶ ଦେଲେ ।

ମୁଁ ବସିବା ମାତ୍ରେ ସେ ପ୍ରକୋଷ୍ଠର ଚାରିଆଡ଼େ ଆଖି ବୁଲାଇ ନେଲି । ଦେଖିଲି ମାଥୁର୍ ସାହେବଙ୍କ ଠିକ୍ ପଛପଟ କାନ୍ଥରେ ରହିଛି ଏକ ବେଗବାନ୍ ଅଶ୍ୱର ତୈଳଚିତ୍ର, ବାମକାନ୍ଥରେ ଟଙ୍ଗା ହୋଇଛି ପୂର୍ବାଞ୍ଚଳ ରାଜ୍ୟମାନଙ୍କର ମାନଚିତ୍ର । କାରଣ ସେ ପୂର୍ବାଞ୍ଚଳ ରାଜ୍ୟମାନଙ୍କର ପ୍ରବନ୍ଧକ । ଡାହାଣ କାନ୍ଥରେ ରହିଛି ଗତ ପାଞ୍ଚବର୍ଷ ଭିତରେ କମ୍ପାନୀର ବିକ୍ରି ଓ ଲାଭର ଚାର୍ଟ ଓ ଗ୍ରାଫ୍ ।

ଶୀତତାପ ନିୟନ୍ତ୍ରିତ କୋଠରି ଭିତରେ ଦାମୀ କାର୍ପେଟ୍,କୋଠରିକୁ ଆଲୋକିତ କରିବାକୁ ଚାରି ଚାରିଟି ବାର୍‌ଲାଇଟ୍, ସାଗୁଆନ କାଠର ବିରାଟ ଟେବୁଲ୍ ଓ ବଡ଼ ଆଲମିରାରେ ଥିବା ଦାମୀ ବହିରୁ ମାଥୁର ସାହେବ ତଥା ତାଙ୍କର କମ୍ପାନୀର ଆଭିଜାତ୍ୟ ବେଶ୍ ସୁସ୍ପଷ୍ଟ ହୋଇପଡୁଥିଲା ।

ସେ ଚୁରୁଟ୍‌ରେ ଅଗ୍ନି ସଂଯୋଗ କରି କହିଲେ, "ଅରୁଣ ତମେ ଆସିଗଲ, ବେଶ୍ ଭଲ ହେଲା । ତମେ ତ ଜାଣିଥିବ ଆମର ହେଲା ଗୋଟିଏ ବିଦେଶୀ ବ୍ୟାବସାୟିକ ସଂସ୍ଥା ଯାହା ଭାରତବର୍ଷର ଗୋଟିଏ ବିଶିଷ୍ଟ ବାଣିଜ୍ୟିକ ସଂସ୍ଥା ସହ ସହଯୋଗ କରି ଔଷଧ ପ୍ରସ୍ତୁତ କରୁଛି । ଆମ ଔଷଧ ଭାରତବର୍ଷରେ ବେଶ୍ ପ୍ରସିଦ୍ଧ । ଆମର ବହୁତ ପ୍ରତିନିଧି ଅଛନ୍ତି, ଯେଉଁମାନେ ବିଭିନ୍ନ ସହରରେ ବୁଲି ବୁଲି ଡାକ୍ତରମାନଙ୍କୁ ଆମ କମ୍ପାନୀର ଔଷଧ ସଂପର୍କରେ ଅବଗତ କରାନ୍ତି ଓ ରୋଗୀଙ୍କୁ ଏହି ଔଷଧ ଦେବା ପାଇଁ ଅନୁରୋଧ କରନ୍ତି । ଆମର ମୁଖ୍ୟ କାମ ହେଲା ଔଷଧକୁ ଠିକ୍ ସମୟରେ ଠିକ୍ ଜାଗାରେ ପହଞ୍ଚାଇବା ଓ ବିଭିନ୍ନ ବିକ୍ରୟ କଳା ମାଧ୍ୟମରେ ଔଷଧ ବିକ୍ରି ବଢ଼ାଇବା । ତମେ ମୋ ପାଖରେ ରହି ମତେ ସହଯୋଗ କରିବ ।"

ତା'ପରେ ଚୁରୁଟ୍‌ରେ ଅଗ୍ନି ସଂଯୋଗ କରି ପଚାରିଲେ, "କଲିକତା କେମିତି ଲାଗୁଛି ?"

ମୁଁ ଉତ୍ତର ଦେଲଇ, "ଆଜି ପ୍ରଥମ ଥର ପାଇଁ ଆସିଛି । ଆସ୍ତେ ଆସ୍ତେ ଅଭ୍ୟସ୍ତ ହୋଇଯିବି ।" ସେ ସଂଗେ ସଂଗେ କହିଲେ, "ଭେରିଗୁଡ୍ ।" ତାପରେ ଆରମ୍ଭ ହେଲା ମହାନଗରୀରେ ଚାକିରି ଜୀବନ । ମାଥୁର୍ ସାହେବଙ୍କ ସହ କାମ କରି ଆସ୍ତେ ଆସ୍ତେ ମୁଁ ତାଙ୍କର ପ୍ରିୟ ହୋଇ ଉଠିଲି । ଦିନେ ମାଥୁର୍ ସାହେବ ମୋତେ ସକାଳୁ କହିଲେ, "ଅରୁଣ, ଆଜି ସଂଧ୍ୟାରେ ଆମ ଘରକୁ ଆସିବ । ଆଜି ମୋ ଝିଅ ପିଙ୍କିର ଜନ୍ମଦିନ ।"

ଗାଁରେ ଥିଲାବେଳେ ମୁଁ ଜନ୍ମଦିନ ମାନେ ବୁଝୁଥିଲି ମୋ ବୋଉ ମୋତେ ନୂଆ ଲୁଗା ପିନ୍ଧାଇ ଗୁରୁଜନମାନଙ୍କୁ ମୁଣ୍ଡିଆ ମାରିବାକୁ ନିଏ ଓ ତା'ପରେ ମନ୍ଦିର ନେଇଯାଏ । ଦିନରେ ଯେମିତି ହେଲେ ଚକୁଳି ପିଠା ଓ ଖିରି କରେ ।

ଏତେ ବଡ଼ ଅଫିସର୍ ମାଥୁର୍ ସାହେବ । ତାଙ୍କ ଝିଅର ଜନ୍ମଦିନ, ସେ ପୁଣି ଅଫିସ୍‌ରେ କାହାକୁ ଡାକି ନାହାନ୍ତି । ମୁଁ ବଡ଼ ସଂଶୟରେ ପଡ଼ିଗଲି । ତଥାପି ଯିବାକୁ ତ ପଡ଼ିବ ।

ସଂଧ୍ୟାବେଳେ ତାଙ୍କର ଦଶ ବର୍ଷର ଝିଅ ପାଇଁ ଭଲ ଖେଳଣାଟିଏ ନେଇ ପହଂଚିବା କ୍ଷଣି ମାଥୁର୍ ସାହେବ ମୋତେ ଡାକିନେଲେ ଓ ଡ୍ରଇଂ ରୁମ୍‌ରେ ବସିବା ପାଇଁ କହିଲେ । ଡ୍ରଇଂ ରୁମ୍ ମଧ୍ୟ ମାଥୁର୍ ସାହେବଙ୍କ ଆଭିଜାତ୍ୟର ପ୍ରତୀକ ବହନ କରିଥିଲା । ଚଟାଣରେ କାର୍ପେଟ୍, କାନ୍ଥରେ ଦାମୀ ପେଣ୍ଟିଂ, କାଚ ଆଲମିରାରେ ପୃଥିବୀର ବିଶିଷ୍ଟ ଦେଶମାନଙ୍କର କଣ୍ଢେଇ ସବୁ ଡ୍ରଇଂରୁମ୍‌କୁ ବେଶ୍ ମାନୁଥିଲା । ଟେବୁଲ୍ ଉପରେ ବଡ଼ ବାର୍ଥଡେ କେକ୍, ତା' ପାଖରେ ମହମବତୀ ସବୁ ରଖାଯାଇଥିଲା ଜନ୍ମଦିନ ପାଳନ କରିବା ପାଇଁ । ମାଥୁର୍ ସାହେବ କହିଉଠିଲେ, "ଟିକିଏ ଅପେକ୍ଷା କର ଅରୁଣ, ମୋର ଅନ୍ୟ ସାଙ୍ଗମାନେ ଆସିଯିବେ । ତା'ପରେ ଜନ୍ମଦିନ ପାଳନ ହେବ ।"

ତା'ପରେ ସେ ଘର ବୁଲାଇ ତାଙ୍କର ପରିବାରର ଅନ୍ୟ ସଦସ୍ୟଙ୍କୁ ଚିହ୍ନା କରାଇ ଦେଲେ । ମାଥୁର୍ ସାହେବଙ୍କ ପତ୍ନୀ ଆହୁରି ଚକ୍ ଚକ୍ ପୋଷାକ ପିନ୍ଧିଥାନ୍ତି, ଝିଅ ପିନ୍ଧିଥାଏ ନୂଆ ଫ୍ରକ୍, ତାଙ୍କର ପୁଅ ମଧ୍ୟ ପିନ୍ଧିଥାଏ ନୂତନ ଡିଜାଇନ୍ ଟି ସାର୍ଟ । କେବଳ ମାଥୁର୍ ସାହେବଙ୍କ ବିଧବା ମା' ରୋଷେଇ ଘରେ ସାଦା ଶାଢ଼ି ପିନ୍ଧି ରାନ୍ଧିବାରେ ବ୍ୟସ୍ତ ଥିଲେ । ସମସ୍ତେ ଆସିଗଲା ପରେ ମହମବତୀ ଫୁଙ୍କି ଲିଭା ହେଲା, କେକ୍ କଟା ହେଲା ଓ ସମସ୍ତେ ସମବେତ କଣ୍ଠରେ 'ହାପି ବାର୍ଥଡେ ଟୁ ପିଙ୍କି' କହି ଉଠିଲେ ।

ତା'ପରେ ଆରମ୍ଭ ହେଲା ବିଦେଶୀ ସଂଗୀତର ଧୂନ୍ ଓ ବିଦେଶୀ ପାନୀୟର ଆସର । ମାଥୁର୍ ସାହେବ ତାଙ୍କ ସାଙ୍ଗମାନଙ୍କ ସହିତ ବିଦେଶୀ ପାନୀୟ ନେଲେ ମିସେସ୍ ମାଥୁର୍ ତଦାରଖ କରୁଥାନ୍ତି କାହାର କ'ଣ ଦରକାର ।

ମୁଁ ନିଜକୁ ଅପ୍ରସ୍ତୁତ ମନେକରୁଥାଏ । ମୋ ମନରେ ଆସୁଥାଏ ବୋଉର ସ୍ମୃତି । ଇଚ୍ଛା ହେଉଥାଏ ମାଥୁର ସାହେବଙ୍କ ବିଧବା ବୋଉ ପାଖରେ ବସି ଗପିବା ପାଇଁ । ମାତ୍ର ସେ ପାର୍ଟିରେ ଦେଖରଯାଉ ନଥିଲେ । ବୋଧହୁଏ ରୋଷେଇ ଘରେ ଥିଲେ ।

ମୋତେ ମାଥୁର୍ ସାହେବ ଡାକି ପଚାରିଲେ "ବସିଛ କାହିଁକି, ଟିକିଏ ଡ୍ରିଙ୍କ୍ କର ।"

ମୁଁ ତାଙ୍କୁ ଅନୁନୟ ହୋଇ ମନାକଲି । ସେ ମୋ ମନକଥା ବୁଝି କହିଲେ, ଆମେ ସାଙ୍ଗମାନେ ବେଶି ସମୟ ବସିବୁ । ତମେ ଖାଇ ଦେଇ ଚାଲିଯାଅ ।

ମୁଁ ମୋର ଖାଇବା ସାରି ବିଦାୟ ନେଇ ଚାଲିଆସିଲି । ଭାବୁଥାଏ, କେତେ ଶୀଘ୍ର ମୁଁ କେଉଁ ପରିବେଶରୁ ଆସି କେଉଁଠି ପହଞ୍ଚିଗଲିଣି । କାହିଁ ମୋ ବୋଉର ଜନ୍ମଦିନ ଉପଲକ୍ଷେ ସତ୍ୟନାରାୟଣ ପୂଜା ଓ ଶିରିଣି ଆଉ କାହିଁ ଏ କେକ୍ କଟା ଓ ବିଦେଶୀ ପାନୀୟ ।

ବୋଉ ବାରମ୍ବାର ଚିଠି ଲେଖୁଥାଏ ଅରୁ ତୁ ଦେଖିଚାହିଁ ଚଳିବୁ, ବେଶି ବୁଲାବୁଲି କରିବୁ ନାହିଁ, ଘରକୁ ଜଲ୍‌ଦି ଫେରୁଥିବୁ । ଭଗବାନ ତୋ ଆଗଗୋଡ଼େ କଣ୍ଟା ନ ଲଗାନ୍ତୁ । ତୁ କେମିତି ଅଛୁ । ତୋତେ କେତେଦିନ ହେଲା ଦେଖିନାହିଁ । ତୋ ପାଇଁ ବହୁତ ପ୍ରସ୍ତାବ ଆସୁଛି । ଏସନ ତୋର ଯେମିତି ହେଲେ ବାହାଘର ହେବ ।

ମୁଁ ତାକୁ ଲେଖେ ତୁ ବ୍ୟସ୍ତ ହେବୁ ନାହିଁ, ମୁଁ ଭଲ ଅଛି । ମୋ ଉପର ଅଫିସର୍ ମୋ କାମ ଦେଖି ବହୁତ ସନ୍ତୁଷ୍ଟ । ମୁଁ ମଝିରେ ଯାଇ ବୁଲି ଆସିବି ।

ଶେଷରେ ବୋଉର ବାରମ୍ବାର ତାଡ଼ନା ଓ ଜିଦ୍ ଫଳରେ ମୁଁ ଚାକିରି କରିବାର ଛ'ମାସ ପରେ ହିଁ ବିବାହ କରିବାକୁ ବାଧ୍ୟ ହେଲି ।

ସାଙ୍ଗରେ ଆସିଲେ ପତ୍ନୀ ସୁଜାତା ଓ ବୋଉ । ସୁଜାତା ଭୁବନେଶ୍ୱରରେ ବି.ଏ. ପଢୁଥିଲେ। ବାପା ତାଙ୍କର ସରକାରୀ ଚାକିରିଆ । ଆମ ଗାଁ ପାଖରେ ତାଙ୍କର ଗାଁ, ତେଣୁ ବୋଉ ମନକୁ ବେଶ୍ ପାଇଲା । ମୁଁ ମଧ୍ୟ ସୁଜାତାକୁ ଦେଖି ପସନ୍ଦ କରି ବୋଉକୁ ହଁ ଭରିଥିଲି ।

ବିବାହ ପରେ ବୋଉ ଓ ସୁଜାତାକୁ ନେଇ ଆସିଲି କଲିକତା । ମାଥୁର୍ ସାହେବ ବାହାଘରକୁ ଯାଇପାରି ନଥିଲେ ମାତ୍ର ଆମେ ଆସିବା ଜାଣି ତାଙ୍କ ଘରକୁ ଖାଇବା ପାଇଁ ନିମନ୍ତ୍ରଣ କରିଗଲେ ।

ସୁଜାତା ବାହାବେଳର ସବୁ ସୁନା ଅଳଙ୍କାର ପିନ୍ଧି ନବବଧୂ ବେଶରେ ସଜ ହୋଇ ବାହାରିଲେ । ମୁଁ ମଧ୍ୟ ବାହାଘର ପୋଷାକ ପିନ୍ଧିଲି । ଗଲାବେଳେ ବୋଉକୁ ଯିବା ପାଇଁ ପଚାରିଲି । ହେଲେ ବୋଉ କହିଲା "ତମେ ଯାଅ, ମୁଁ ଘର ଜଗିଛି ।" ଆମେ ବିଶେଷ ବାଧ୍ୟ ନ କରି ମାଥୁର୍ ସାହେବଙ୍କ ଘରକୁ ଗଲୁ ।

ତାଙ୍କ ଘରେ ବହୁତ ସମୟ ବସି ଖାଇପିଇ ଫେରିଲୁ । ତାଙ୍କ ଆଭିଜାତ୍ୟପୂର୍ଣ୍ଣ ଚଳଣିର ଝଲକାଏ ସୁଜାତାକୁ ଦେଖାଇ ଦେଲି । ମାଥୁର୍ ସାହେବ ଯେମିତି ମୋ ପାଇଁ ଥିଲେ ଏକ ଆଦର୍ଶ ପୁରୁଷ । ଅଫିସ୍‌ରେ ଥିଲା ତାଙ୍କର ବେଶ୍ ପ୍ରତିପତ୍ତି ଓ ଘରେ ମଧ୍ୟ ଥିଲା ଆଭିଜାତ୍ୟ ଚଳଣି । ଜୀବନରେ ଉନ୍ନତି କରି ଏମିତି ମାଥୁର୍ ସାହେବଙ୍କ ପରି ହେବା ପାଇଁ ମୋର ସଂଗୋପନ ଇଚ୍ଛା ମଧ୍ୟ ହେଉଥିଲା ।

କଲିକତାରେ ବୋଉ ଓ ସୁଜାତାଙ୍କୁ ଧରି ରହିବାର ତିନିମାସ ହୋଇଥାଏ । ହଠାତ୍ ଦିନେ ଆମର ମୁଖ୍ୟ କାର୍ଯ୍ୟାଳୟରୁ ଖବର ଆସିଲା ବାଙ୍ଗାଲୋରରେ ମିଟିଂ । ବିଦେଶରୁ କମ୍ପାନୀର ଉଚ୍ଚ ପଦାଧିକାରୀଙ୍କ ଭାରତ ଆଗମନ । ତେଣୁ ଯେମିତି ହେଲେ ପହଞ୍ଚିବାକୁ ପଡ଼ିବ । ସବୁ ପ୍ରକାର ତଥ୍ୟ ନେଇ ପୂର୍ବାଞ୍ଚଳ ବିଷୟରେ ସମ୍ୟକ୍ ଧାରଣା ଦେବାକୁ ପଡ଼ିବ ।

ଯିବା ପାଇଁ ସବୁ ପ୍ରକାର ଚେଷ୍ଟା କରି ଶେଷରେ ମାଥୁର୍ ସାହେବ କହିଲେ, ସବୁ କାଗଜପତ୍ର ନେଇ ମୁଁ ତାଙ୍କ ସହିତ ଟ୍ରେନ୍‌ରେ ଗୋଟିଏ ବଗିରେ ଯିବି, ବାଟଯାକ ଅଫିସ୍ କାମ ଚାଲିବ । ବାଙ୍ଗାଲୋର୍‌ରେ ପହଞ୍ଚିବା ବେଳକୁ ସବୁ କାଗଜ ତିଆରି ହୋଇଯିବ ।

ମୁଁ ପ୍ରଥମେ ଖବର ପାଇ ଟିକିଏ ଶଙ୍କି ଗଲି । ଗୋଟିଏ କମ୍ପାର୍ଟମେଣ୍ଟ୍‌ରେ ଦୁହେଁ ଯିବୁ । ମୁଁ ମାଥୁର୍ ସାହେବଙ୍କୁ ଦୂରରୁ ଦେଖିଛି । ଦୂର ପର୍ବତ ସୁନ୍ଦର, ହେଲେ ଏତେ ପାଖରେ ଦୁଇଦିନ ଧରି କେମିତି ବିତାଇବି ଭାବି ଡର ଲାଗିଲା ।

ଘରକୁ ଯାଇ ଯେତେବେଳେ ସୁଜାତାଙ୍କୁ କହିଲି, ସୁଜାତା ଖୁସି ମନରେ କହିଲେ, "ଯାଅ, ବାଙ୍ଗାଲୋରରେ ବଢ଼ିଆ ସିଲ୍‌କ ଶାଢ଼ି ମିଳେ । ବାଛିକରି ଭଲଟିଏ ଆଣିବ ।"

ମୁଁ ଯିବାକୁ ବାହାରିଲା ବେଳକୁ ବୋଉ କଳସରେ ପାଣି ଭର୍ତ୍ତି କରି ଦୁଆର ପାଖରେ ରଖିଦେଇ କହିଲା- "ଅଫିସର୍ ସାଙ୍ଗରେ ଯାଉଛୁ, ଦେଖିଚାହିଁ ଚଳିବୁ ।"

ମୁଁ ପୁଅ ହିସାବରେ ପଚାରିଲି– "ବୋଉ ତୋ ପାଇଁ କିଛି ଆଣିବି ?" ବୋଉ କହିଲା– "ତୁ ଭଲରେ ଫେରିଆସ ସେଇ ବଡ଼କଥା । ସୁଜାତା କହୁଥିଲା ପରା କ'ଣ ଭଲ ଶାଢ଼ି ମିଳେ ବୋଲି ! ହେଲେ ମୁଁ ଏ ବୟସରେ କ'ଣ ପିନ୍ଧିବି ? ଦେଖିବୁ, ଯଦି ପାରିବୁ ଖଣ୍ଡେ ଶସ୍ତା ଶାଢ଼ି ଆଣିବୁ । ଚନ୍ଦନକାଠ ସେଠାରେ ବହୁତ ଶସ୍ତା, ସେଥିରୁ ପୁଳାଏ ନେଇ ଆସିବୁ ଠାକୁରଙ୍କ କାମରେ ଲାଗିବ ।"

ମୁଁ ବୋଉର ପାଦ ଛୁଇଁ ଚାଲିଲି ଷ୍ଟେସନ୍ । ସେଠାରେ ଆସି ପହଞ୍ଚି ଯାଇଥିଲେ ମାଥୁର୍ ସାହେବ । ତାଙ୍କୁ ଛାଡ଼ିବା ପାଇଁ ଆସିଥିଲେ ମିସେସ୍ ମାଥୁର୍ ଓ ବଡ଼ପୁଅ ।

ଟ୍ରେନ୍ ଛାଡ଼ିଲା ରାତି ନଅଟା ବେଳେ । ମାଥୁର ସାହେବ କହିଲେ, "ଅରୁଣ, ଆଜି ରାତିରେ ଶୀଘ୍ର ଶୋଇଯିବା, କାଲି ଦିନଯାକ ବସି କାମ ଆରମ୍ଭ କରିବା ।"

ତା'ପରେ ସେ ତାଙ୍କର ସାର୍ଟଟିକୁ ଖୋଲିଦେଲେ ନାଇଟ୍ ସୁଟ୍ ପିନ୍ଧିବା ଉଦ୍ଦେଶ୍ୟରେ ।

ମୁଁ ଲକ୍ଷ୍ୟକଲି ସାର୍ଟ ଖୋଲିଦେବା ପରେ ଯେଉଁ ଗଞ୍ଜିଟି ଦିଶିଲା, ତା'ର୍ କାଖ ପାଖରେ ସାମାନ୍ୟ କଣା ହୋଇ ଚିରିଯାଇଛି । ଗଞ୍ଜିଟି ସଫା ଦିଶୁନାହିଁ ବରଂ ଲାଗୁଛି ଅପେକ୍ଷାକୃତ ମାଟିଆ ।

ମୋ ମନରେ ହଠାତ୍ ପ୍ରଶ୍ନ ଉଠିଲା କିନ୍ତୁ ଉତ୍ତର କିଛି ଖୋଜି ପାଇଲି ନାହିଁ । ଏତେ ବଡ଼ ସାହେବ, ସେ ପୁଣି ପୂର୍ବାଞ୍ଚଳର ସର୍ବେସର୍ବା, ସବୁବେଳେ ଗାଡ଼ି ମଟରରେ ଯାତ୍ରା, ଶୀତଦିନେ ଦେହରୁ ସୁଟ୍ ଉତାରନ୍ତି ନାହିଁ, କେତେ ହଳ ପୋଷାକ ଅଛି ଜାଣିବା କଷ୍ଟ, ତା'ପରେ ପୁଣି ଖର୍ଚ୍ଚର ସୀମା ନାହିଁ, ପାର୍ଟି ହେଲେ ମଦରେ ବି ପଇସା ଉଡ଼ିଯାଏ, ଚୁରୁଟ୍ ଟଣାରେ କେତେ ପଇସା ପ୍ରତିଦିନ ଯାଉଥିବ ଅଥଚ ଗଞ୍ଜିଟିଏ କିଣିପାରୁ ନାହାନ୍ତି ? ଗଞ୍ଜି ପାଇଁ କାହିଁକି ଏତେ ଅନାଦର ?

ମୁଁ ନିଜେ ନିଜକୁ ତର୍ଜମା କଲି । ପାଠ ପଢ଼ାରେ ଅଭାବ ଥିଲା । ଗଞ୍ଜି ଚିରିଗଲେ ମଧ୍ଯ ଚଳେଇ ନେଉଥିଲି । ବର୍ତ୍ତମାନ ମଧ୍ୟ ସୁବିଧା ଅସୁବିଧା ବେଳେ ଗଞ୍ଜି କିମ୍ବା ମୋଜାରୁ ଟିକିଏ ଚିରିଗଲେ ଆମେ ଚଳାଇ ନେଉଛୁ । ହେଲେ ମାଥୁର୍ ସାହେବଙ୍କର କ'ଣ ଅଭାବ ?

ମୋ ମନକଥା ମନରେ ରଖି ମୁଁ ଶୋଇଗଲି । ତା'ପରଦିନ ଅଫିସ୍ କାମ ଟ୍ରେନ୍‌ରେ ବସି ବସି ସାରିଲୁ । ବାଙ୍ଗାଲୋର୍‌ରେ ପହଞ୍ଚି ମିଟିଂ ମଧ୍ୟ ସୁରୁଖୁରୁରେ ସାରିଲୁ । କଲିକତା ଯିବା ଆଗରୁ

ମୁଁ ମାର୍କେଟ୍ ବାହାରିଲି ଶାଢ଼ି କିଣିବା ପାଇଁ । ପ୍ରଥମେ ସୁଜାତା ପାଇଁ ସିଲ୍‌କ ଶାଢ଼ି ବାଛି ବାଛି କିଣିଲା ପରେ ମୋ ଖର୍ଚ୍ଚ ଅଟକଳ ବଢ଼ିଗଲା। ମୁଁ ବୋଉ ପାଇଁ ଆଉ ଶାଢ଼ି ନେଇପାରିଲି ନାହିଁ । ଭାବିଲି ବୋଉ ତ ଏତେକରି କହି ନଥିଲା, ତା' ପାଇଁ ଚନ୍ଦନକାଠ ନେଇଗଲେ ଖୁସି ହେବ । ବୁଢ଼ୀଲୋକ । ଠାକୁର କାମରେ ତା'ର ମନ ବେଶି । ଶାଢ଼ି ବା କରିବ କ'ଣ ? ଅନେକ ଶାଢ଼ି ତ ତା'ର ଅଛି ।

କଲିକତାରେ ପହଞ୍ଚିବା ମାତ୍ରେ ସଂଗେ ସଂଗେ ବୋଉ ମୋର ମୁଣ୍ଡ ଆଉ ଦେହ ଆଉଁଷି ଦେଲା ଓ ଯେମିତି ସେ କୋଟିନିଧି ପାଇଗଲା ଅବା ।

ସୁଜାତା ଗାଧୁଆ ଘରେ ଥିଲା । ଗାଧୋଇ ସାରି ବାହାରିଆସି ସ୍ମିତହାସ୍ୟ ସହ ପଚାରିଲେ, "କ'ଣ ଭଲ ଶାଢ଼ି ଆଣିଛ ତ ?"

ମୁଁ ସଂଗେ ସଂଗେ ଆଟାଚି ଖୋଲି ତାଙ୍କର ଗାଧୁଆ ଘରୁ ଆସିଥିବା ଅଧା ପିନ୍ଧା ପୋଷାକ ଉପରେ ବେଢ଼େଇ ଦେଲି ।

ସୁଜାତାଙ୍କ ମୁହଁରେ ତୃପ୍ତିର ହସ, ଶାଢ଼ି ପାଇଁ ।

ମୁଁ ଚନ୍ଦନ କାଠ ଆଉ ଧୂପକାଠି କାଢ଼ି ବୋଉକୁ ଦେଲି ଆଉ କହିଲି, "ତୋ ପସନ୍ଦର ଶାଢ଼ି ସେଠି ମିଳିଲା ନାହିଁ । ଆରଥର ଗଲେ ନେଇଆସିବି ।"

ବୋଉ କହିଲା, "ଠାକୁର ଜିନିଷ ଆଣିଛୁ କେତେ ଭଲ ହେଲା, ମୋ କଥା ପାଇଁ ଏତେ ବ୍ୟସ୍ତ କାହିଁକି ?"

ବୋଉ କଲିକତାରେ ବେଶିଦିନ ରହିଲା ନାହିଁ । କାରଣ ଗାଁରେ କେତେ କାମ । ସେଠି ସେ ମାଟିରେ ସୁନା ଫଳାଉଛି । ସେଠି ବିଲବାଡ଼ି ହଳିଆ କେତେକେତେ । ରହିଲେ କେତେ କୁଣିଆ ମଇତ୍ର ଚର୍ଚ୍ଚା କରିବାକୁ ପଡ଼ିବ । ମୁଁ ତ ବାହାରେ ରହିଲି । ତେଣୁ ବନ୍ଧୁରକ୍ଷା କେମିତି ହେବ ? ବାପା ଥିଲେ ସିନା ଯାହା ହୋଇଥାନ୍ତା !

ବୋଉ ଗାଁରେ ରହିବା ପରେ ମୁଁ ଓ ସୁଜାତା ଛୁଟିରେ ଗାଁକୁ ଯାଉ । ବିବାହର ଦୁଇବର୍ଷ ପରେ ଜନ୍ମ ହେଲା ମିତା ଓ ତା'ର ଦୁଇବର୍ଷ ପରେ ଅସୀମ ।

ପିଲା ଜନ୍ମ ହେବା ସମୟ ଆସିଲେ ବୋଉ ପଳାଇଆସେ ଗାଁରୁ । ତା'ର ପରା କୁଳରେ ନୂଆ ଅତିଥି ଆସିବେ । ପିଲା ଜନ୍ମ ପରେ ନିଜେ ଗୋଡ଼ ଲମ୍ବାଇ ପିଲାଙ୍କୁ ଶୁଆଇ ହଳଦି ତେଲ ସବୁ ଭଲ ଭାବରେ ମାଲିସ୍ କରେ । ପିଲାମାନଙ୍କୁ ଡେଙ୍ଗା କରି ତିନିମାସ ପରେ ପୁଣି ଗାଁକୁ ଫେରିଯାଏ ।

ଆମେ ଯେତେବେଳେ ଗାଁକୁ ଯାଉ, ସେତେବେଳେ ତା'ର ଆନନ୍ଦ ଦେଖେ କିଏ ? ଦୁଇଟା ଚାକର ଦୁଇ ପିଲାଙ୍କ ପାଇଁ ବନ୍ଧା । ଗଛରୁ ପଇଡ଼ ପାର, ପୋଖରୀରୁ ମାଛ ଧର, ଖୁଆଇ ପିଆଇ ସେ ଯେତେ ଆନନ୍ଦ ପାଏ ତାକୁ ହିଁ ଜଣା ।

ଆସ୍ତେ ଆସ୍ତେ ବୟସ ହେଲା । ବୋଉକୁ ଭଲ ଦିଶିଲା ନାହିଁ । ମୁଁ ଯେତେ କହିଲେ ମଧ ବୋଉ ଆସି ଆମ ପାଖରେ ରହିଲା ନାହିଁ । ଯେବେ ଆସିଲେ ମଧ ଗାଁକୁ ଯିବାକୁ ଅଳ୍ପଦିନରେ ଜିଦ୍ ଧରେ ।

ମୁଁ ଧୀରେ ଧୀରେ ବିକ୍ରୟ ଅଧିକାରୀରୁ ନିଜର କାର୍ଯ୍ୟ ଦକ୍ଷତାରେ ମାଥୁର୍ ସାହେବଙ୍କ ଭଳି ପୂର୍ବାଞ୍ଚଳର ମୁଖ୍ୟ ହୋଇଗଲିଣି ପଚିଶି ବର୍ଷ ମଧରେ । ପିଲାମାନେ କଲେଜରେ ପଢ଼ିବା ଆରମ୍ଭ କଲେଣି । ମୁଁ ମାଥୁର୍ ସାହେବଙ୍କ ଭଳି ଚୁରୁଟ୍ ନ ପିଉଥିଲେ ମଧ ସିଗାରେଟ୍ ଟାଣି ଚଳାଇ

ନେଉଛି । ଉଡ଼ାଜାହାଜରେ ବୁଲି କନ୍‌ଫରେନ୍ସରେ ଯୋଗ ଦେଉଛି । ଘରେ ଗାଡ଼ି ଅଛି, ଦରକାର ପଡ଼ିଲେ ପାର୍ଟି ଦେଉଛି । ମୋର ପଚିଶ ବର୍ଷ ତଳର ଗୋପନ ଇଚ୍ଛା ଯେମିତି ପୂର୍ଣ୍ଣ ହୋଇଯାଇଛି । ଅଫିସ୍‌କୁ ଦିନେ ଖବର ଆସିଲା ମୋତେ କମ୍ପାନୀ ତରଫରୁ ସାତ ଦିନ ପାଇଁ ନ୍ୟୁୟର୍କ ଯାଇ ଗୋଟିଏ କନ୍‌ଫରେନ୍ସରେ ଯୋଗଦେଇ ଫେରିଆସିବା ପାଇଁ । ମୁଁ ଯିବା ପାଇଁ ଉଦ୍ୟତ ହେଲାବେଳେ ହଠାତ୍ ଖବର ପାଇଲି ବୋଉ ଦେହ ଖରାପ ।

ବଡ଼ ଦ୍ୱନ୍ଦ୍ୱରେ ପଡ଼ି ମୁଁ ବୋଉକଥା ଭାବିଲା ବେଳେ ସୁଜାତା କହିଲେ, ବୋଉଙ୍କର ଦେହ ତ ବେଶି ଖରାପ ରହୁଚି । ତମେ କେତେ ଏମିତି ଗାଁକୁ ଯାଉଥିବ ? ଏଥର ଜବରଦସ୍ତ ବୋଉଙ୍କୁ କଲିକତା ନେଇଆସ । ତମେ ଯାଇ ନ୍ୟୁୟର୍କରୁ ଫେର, ସାତଦିନର କଥା ତ !

ନ୍ୟୁୟର୍କ ସହରରେ ମୁଁ ଥିବା ସମୟରେ ମୋ ହୋଟେଲରେ ମିଳିଲା ଫୋନ୍ ଦ୍ୱାରା ଖବର ।

ସାତଦିନ ପାଇଁ ବାହାରି ଆସିଲି ମାତ୍ର ମୋ ପାଇଁ ବୋଉ ମୋର ହୋଇଗଲା ସାତ ସପନ ।

ମୋତେ ଲାଗିଲା ମୁଁ ଯେମିତି ବିଚ୍ଛିନ୍ନ ହୋଇଗଲି କେନ୍ଦ୍ରରୁ । ମୋ ବୋଉର ଆଶୀର୍ବାଦ ଆଉ ପାଇବି ନାହିଁ ଏ ଜୀବନରେ ।

ସଂଗେ ସଂଗେ ଉଡ଼ାଜାହାଜରେ ବାହାରିକୁ ଚେଷ୍ଟା କଲି । ବାଟରେ ଆସିଲା ବେଳେ ମୋ ଆଖିରେ ଥିଲା ଲୁହର ଲହଡ଼ି । ମନେ ପଡୁଥିଲା ମୋ ବୋଉ ଓ ମୋ ବାଲ୍ୟଜୀବନ । ତା'ର ବିଭିନ୍ନ ରୂପରେ ସ୍ନେହ ଓ ସେବା । ମୋ ଆଗ ଗୋଡ଼ରେ କଣ୍ଟା ନ ବାଜିବାକୁ ତା'ର ଠାକୁରଙ୍କୁ ପ୍ରାର୍ଥନା । ମୋ ପାଇଁ କେତେ ଓଷା, କେତେ ବ୍ରତ, କେତେ ଉପବାସ କରୁଥିଲା । ମୋ ସୁଖରେ ତା' ସୁଖ, ମୋ ଦୁଃଖରେ ତା'ର ଦୁଃଖ । ହେଲେ ତା' ଶେଷବେଳେ ମୁଁ ପାଖରେ ରହିପାରିଲି ନାହିଁ ।

ମୁଁ ସିଧା କଲିକତାରେ ଓହ୍ଲାଇ ଟ୍ରେନ୍ ଧରି ବାହାରିଆସିଲି ଗାଁକୁ । ଗାଁରେ ପହଞ୍ଚି ଓହ୍ଲାଇ ଗଲି ସେହି ସ୍ଥାନକୁ, ଯେଉଁଠି ଚାରିଦିନ ତଳେ ବୋଉର ଚିତାଗ୍ନି ଜଳିଥିଲା ।

ପରିବେଶରେ ଥିଲା ଯେମିତି ଆକୁଳତା । ମୋତେ ଲାଗୁଥିଲା ମୁଁ ଯେମିତି ଅନାଥ ହୋଇଯାଇଛି । ସେଇ ଜାଗାରେ ଛିଡ଼ା ହୋଇ ମୁଁ ମୁଣ୍ଡ ନୁଆଇଁ ପ୍ରଣାମ କଲି ।

ତା'ପରେ ପଶିଲି ଗାଁ ଭିତରକୁ । ଗାଁ ଲୋକ ରୁଣ୍ଡ ହୋଇ କେତେକଥା କହିଲେ । ବୋଉ କେମିତି ମୋତେ ଝୁରି ହେଉଥିଲା । ମଲାବେଳେ କେମିତି ଟୋପେ ପାଣି ପାଇଁ ଖୋଜି ହେଉଥିଲା ଇତ୍ୟାଦି କଥା, ଯାହା ମୋ ହୃଦୟରେ କଣ୍ଟା ଭଳି ଫୋଡ଼ି ହେଲା ପରି ଲାଗୁଥାଏ ।

ମୁଁ କେବଳ ଲୋତକ ସମର୍ପଣ କରି ବୋଉର ତିଳତର୍ପଣ କରିପାରିଲି ସିନା ବୋଉକୁ ଥରଟେ ପାଇଁ ଦେଖିପାରିଲି ନାହିଁ ।

ବୋଉର ଅସ୍ଥିକୁ ସେମାନେ ବାରିପଟ କୂଅ ପାଖରେ ପୋତି ରଖିଥିଲେ । ମୁଁ ତାକୁ ନେଇ ଗଙ୍ଗାରେ ବିସର୍ଜନ କରିବା ପାଇଁ ଇଚ୍ଛା ପ୍ରକାଶ କଲି । ମାତ୍ର ପୁରୋହିତ କହିଲେ, ଅତି କମ୍‌ରେ ବର୍ଷଟିଏ ପାଇଁ ବୋଉଙ୍କୁ ଏଇ ଗାଁରେ ରହିବାକୁ ଦିଅ । ଆସନ୍ତା ବର୍ଷ ଶ୍ରାଦ୍ଧ ଦେଇ ତମେ ତାଙ୍କ ଅସ୍ଥିକୁ ନେଇଯିବ । ସୁଜାତା ଓ ପିଲାମାନେ ମଧ୍ୟ ପୁରୋହିତଙ୍କ କଥାକୁ ସମର୍ଥନ କଲେ ।

ଶୁଦ୍ଧିକ୍ରିୟା ସବୁ ସମାପନ ହେଲା ପରେ ଶେଷଦିନ ଶ୍ରାଦ୍ଧ ଦେବା କଥା । ଶ୍ରାଦ୍ଧ ବେଳକୁ ବ୍ରାହ୍ମଣ ସବୁ ଆୟୋଜନ କରୁଥାନ୍ତି । ଅରୁଆ ଚାଉଳ, ଘିଅ, ପଞ୍ଚାମୃତ, ପାନ, ପରିବା ଆଦି ସଜା ହେଉଥାଏ । ମୁଁ ମୋ ପ୍ୟାଣ୍ଟ୍ ଓ ସାର୍ଟ ଖୋଲି ଧୋତି ପିନ୍ଧି ବସିବାକୁ ଉଦ୍ୟତ ହେଲି । ସେତେବେଳେ ବ୍ରାହ୍ମଣ ମୋତେ କହିଉଠିଲେ– "ଆପଣ ତ ସହରରେ ରହିଲେ । ଆପଣଙ୍କୁ କ'ଣ ଜଣା ଶ୍ରାଦ୍ଧର

ବିଧି ? ଧୋତିଟିଏ ପିନ୍ଧିଲେ ତ କାନ୍ଧରେ ଆଉ ଗୋଟିଏ କିଛି ପକାଇବେ । ସେ ଗଞ୍ଜି ଆପଣ ଯେଉଁ ପିନ୍ଧିଛନ୍ତି ସେଇଟା କାଖପାଖେ ଚିରା ଅଛି । ଶ୍ରାଦ୍ଧବେଳେ ନବବସ୍ତ୍ର ପିନ୍ଧି ଶ୍ରାଦ୍ଧ ଦେବା କଥା ।"

ହଠାତ୍ ମୋର ଯେମିତି ଗୋଟିଏ ବିସ୍ଫୋରଣ ହେଲା । ସତେ ତ, ଗଞ୍ଜିଟିର କାଖ ପାଖରେ ଛୋଟ କଣାଟିଏ । ପଚ୍ଚିଶ ବର୍ଷ ତଳେ ମାଥୁରୁ ସାହେବଙ୍କ ଗଞ୍ଜିରେ ଏମିତି ଗୋଟିଏ ଫୁଟା ମୁଁ ଆବିଷ୍କାର କରିଥିଲି ଟ୍ରେନ୍ କମ୍ପାର୍ଟମେଣ୍ଟରେ !

ଯେଉଁ ପ୍ରଶ୍ନ ମୁଁ ମାଥୁର ସାହେବଙ୍କୁ ପଚାରିବାକୁ ଚାହୁଁଥିଲି, ସେହି ପ୍ରଶ୍ନ ମୋତେ ହିଁ ଆନ୍ଦୋଳିତ କଲା ।

ମନେ ପକାଇବାକୁ ଚେଷ୍ଟା କଲି ବିଗତ ପଚିଶ ବର୍ଷ ଭିତରେ ମୁଁ ତ ଏମିତି କେତେ ଛୋଟ କଣାଥିବା ଚିରା ଗଞ୍ଜି ପିନ୍ଧିଛି । ମୋ ମୋଜାରେ ମଧ୍ୟ କଣା ରହିଛି । ମାତ୍ର ସାର୍ଟରେ ବୋତାମଟିଏ ନଥିଲେ ଫିଙ୍ଗିଦେଇଛି, ଯୋତା ପଲିସ୍ ନ ଥିଲେ ପଲିସ୍ କରାଇଛି ।

ମୁଁ ତ ପାର୍ଟିରେ ପଇସା ଖର୍ଚ୍ଚ କରୁଛି । ସ୍ତ୍ରୀ ପାଇଁ ଦାମୀ ଶାଢ଼ି କିଣୁଛି । ପିଲାମାନଙ୍କୁ କେତେ ଜାଗା ବୁଲାଉଛି, ହେଲେ ଗଞ୍ଜି ଭଳି ଜିନିଷଟି କାହିଁକି ଏତେ ଉପେକ୍ଷିତ ?

ହଠାତ୍ ମୋର ଯେମିତି ଜ୍ଞାନୋଦୟ ହେଲା । ଚିରା ଗଞ୍ଜି ଆଉ ବୋଉ ଲାଗିଲେ ଯେମିତି ଗୋଟିଏ ଭାବର ପ୍ରତୀକ ।

ମୋ ଆଖି ଆଗରେ ନାଚିଗଲା ସେଇ ବୋଉର ଚେହେରା, ଯିଏ ମୋତେ ଜନ୍ମ ଦେଇ ଛୋଟରୁ ବଡ଼ କରିଥିଲା । ସେ ଦିନେ ତ ମୋ ଉପରେ ଅଭିମାନ କରି ନଥିଲା । ଆଉ ତା'ର ସହି ନେବାର ଶକ୍ତି ଥିବା ଯୋଗୁଁ ମୁଁ ତ କିଛି କମ୍ ଅବଜ୍ଞା କରି ନାହିଁ !

ମୁଁ ନିଜେ ବାଙ୍ଗାଲୋର୍ ପ୍ରଥମ ଥର ଯିବାବେଳେ ସୁଜାତା ପାଇଁ ଶାଢ଼ି ଆଣିପାରିଲି, ହେଲେ ବୋଉ ପାଇଁ କାହିଁକି ଆଣିପାରିଲି ନାହିଁ ? ଚନ୍ଦନକାଠ ଓ ଧୂପକାଠି କ'ଣ ବୋଉର ପ୍ରୟୋଜନ ଥିଲା ? ହେଲେ ସେହି ବୋଉ ତ ମୁଣ୍ଡରେ ହାତ ଆଉଁସି କହିଥିଲା, ତୁ ଆସିଲୁ ସେଇ ମୋ ପାଇଁ ଯଥେଷ୍ଟ !

ବୋଉ କ'ଣ ସହି ଯାଉଥିବା ଗଞ୍ଜି ଯେ ଚିରିଗଲେ ସୁଦ୍ଧା ଶରୀରକୁ ଜଡ଼େଇ ହୋଇ ରହିଥାଏ ? ତାକୁ ଯେତେ ହେୟଜ୍ଞାନ କଲେ ମଧ୍ୟ ସେ ସେମିତି ନିବିଡ଼ ଭାବେ ଲାଗିରହେ ?

ଆମ ପାଇଁ ତ ଅଳଙ୍କାର ଆମ ସ୍ତ୍ରୀ ଓ ପିଲା ! ଯେମିତି ବାହ୍ୟ ଆଡ଼ମ୍ବର ପାଇଁ ଦରକାର ପ୍ୟାଣ୍ଟ୍ ଓ ସାର୍ଟ । ଯେଉଁ ଜିନିଷ ବାହାରକୁ ଦିଶିବ ନାହିଁ ଅବା ଯେଉଁ ମଣିଷ ସବୁ ଦୁଃଖ ଅଭିମାନ କଷ୍ଟକୁ ପିଇ ନୀଳକଣ୍ଠ ସାଜିବ, ତାକୁ ହିଁ ଆମେ ବେଶି ହତାଦର କରୁ- ସେ ଗଞ୍ଜି ହେଉ ଅଥବା ବୋଉ ହେଉ !

କେଜାଣି କାହିଁକି ମୋ ଆଖିରେ ଜକେଇ ଆସିଲା ଅମାନିଆ ଲୁହ ।

ସେ ଲୁହ ପୋଛିବା ପାଇଁ ମୁଁ କିଣି ଆଣିଥିବା ନୂଆ ତଉଲିଆ ଥିଲେ ମଧ୍ୟ ସେ ଚିରା ଗଞ୍ଜିକୁ ନେଇ ବୋହିଆସୁଥିବା ଲୁହକୁ ପୋଛିଦେଲି !

ବୋଉ ତ ନାହିଁ– ନାହିଁ ତା'ର ପଣତକାନି । ଆଜି କିଛି ନ ହେଲେ ଏ ଚିରା ଗଞ୍ଜି ତ ବୋଉର ପଣତ କାନିର ପ୍ରତୀକ ।

ଏତିକିରେ କିଛି ହେଲେ ମୋ'ର ଋଣ ତ ପରିଶୋଧ କରିପାରିବି !



# ସୁନା ଶିଆଳ

## ରଜନୀକାନ୍ତ ମହାନ୍ତି

ଖୁବ୍ ଅନ୍ଧାର । ଜବର ରାତି । ସାଁ ସାଁ ଗର୍ଜୁଚି । ସବୁଦିନ ଭଳି କାଙ୍ଗାଳି ବୁଢା ତା' ଫସଲ ବାଡିର ମଝିରେ ତିଆରି କରିଥିବା ବାଉଁଶ ମଞ୍ଚା ଉପରୁ ଗୋଟେ କଣକୁ ଚିତେଇ ପଡି ଆକାଶକୁ ନିରେଖିଲା । କୋଟିତାରାର ଆକାଶ । ଅମିସା ପକ୍ଷ । ଆକାଶକୁ କିଛିକ୍ଷଣ ଏକା ଏକା ଚାହିଁ ଦେଲେ ତା ଉପରେ ଯେମିତି ଆକାଶ ସବାର୍ ହେଇଯାଏ । ଆଖି ଦିଟା ଫର୍ଚ୍ଚା ହୋଇଯାଏ ଆହୁରି ଆହୁରି । ସେ ଭୁଲିଯାଏ ଯେ ଗାଁଠୁ ଦୂର ଏଇ ନଈକଡ ଫସଲ ବଗିଚାରେ ରାତି ଅଧରେ ଗୋଟେ ମଞ୍ଚା ଉପରେ ବସିଚି । ଜଗିଚି ଫସଲ ବାଡିକୁ । ଉପରେ ଆକାଶ । ତଳେ ମାଟି । ସବୁ କିଛି ଭୁଲିଯାଇ ସେ ପରିଣତ ହୁଏ ଏକ ବହମାନ ଉପଲବ୍ଧିରେ । ଯେତେ ବିଶାଳ ଏଇ ସଚରାଚର ବିଶ୍ୱ । ତା' ଭିତରେ ମଣିଷଟି ଏତେ ଟିକିଏ । ସେ ଏତେ ବଡ ପ୍ରକୃତିକୁ ଜୟ କରିଚି ? ତା'ର ଦାୟିତ୍ୱ ମୁଣ୍ଡକୁ ନଉଚି ? କେଜାଣି ?

ଯୁଗେ ଯୁଗେ ମଣିଷ ଯେତେବେଳେ ସଙ୍କଟର ଭାରାରେ ବ୍ୟତିବ୍ୟସ୍ତ, ରାହାହୀନ, ସେତେବେଳେ ଏଇ ବିଶାଳ ପ୍ରକୃତି ଦେଇଚି ଆଶ୍ରୟ, ଅଭୟ । ମଣିଷ ଚାହିଁଚି ବିମୁଗ୍ଧ ହେଇ ଆକାଶକୁ, ସମୁଦ୍ରକୁ, ପ୍ରକୃତିକୁ । ନିଜକୁ ନିଜେ ନ ହନ୍ତାଳି ପୁଣି ହନ୍ତାଳିଚି ପ୍ରକୃତିକୁ ଏବଂ ପାଇଯାଇଚି କିଛି ନୂଆ ଖୋରାକ୍, ନୂଆ ଅବଗାହ !

କାଙ୍ଗାଳି ବୁଢା ଆକାଶର ଛାତି ଚିରି ପହଞ୍ଚିଗଲା ତାରାଙ୍କ ଗହଣରେ । ଗ୍ରହମାନଙ୍କଠାକୁ ମଣିଷ ଗଲାଣି । ରକେଟ୍ ଗଲାଣି । ହଠାତ୍ ସେ କଂପିଗଲା । ଗ୍ରହ ପାଖକୁ ଯାଉ ଯାଉ ରକେଟ୍‌ର ଇଞ୍ଜିନ୍ ଖରାପ ହୋଇଗଲା ଯଦି ! ତା' ମଞ୍ଚା ଉପରେ ଖସିପଡେ ? ଆସ୍ତେକିନି ମୁଣ୍ଡଟାକୁ କାଢିନେଇ କାଙ୍ଗାଳି ମଞ୍ଚା ଉପରେ ନଡା ଓ ବରଡା ଛପର ତଳକୁ ଚାଲିଗଲା । ବିଡିଟେ ମୁହଁରେ ଧରାଇଲା । ଲଣ୍ଠନ ଆଲୁଅରେ ନିରେଖିଲା । ବାଡି, ଗୋଡି, ଡେଣ୍ଟା ତା' ବିଛଣା ପାଖେ ପାଖେ ଅଛି । ଲଣ୍ଠନରେ ତେଲ ଅଛି । ଆଜକୁ ପ୍ରାୟ ତିନିବର୍ଷ ହେଲା ଏଇ ମଞ୍ଚା ହେଇଚି ତା'ର ରାତି ଆଶ୍ରୟ । ହର୍ କିସମ୍‌ର ଫଳ ଫୁଲୁରି ସେ ଉତାରୁଚି ଏଇ ବାଡିରେ, ଫି'ସନ । ତିନିବର୍ଷ ତଳେ ଚୋର ପଶି ସାରାଫସଲକୁ ନେଇଗଲେ । ତେଣୁ କାଙ୍ଗାଳିର ଏ ରାତି ଜଗୁଆଳି କାମ । ସେବଠୁଁ ଆଉ ଚୋରୀ ହେଇନି ମୋଟେ । ଡେଣ୍ଟା ଫିଙ୍ଗିବାରେ ତା'ର ଲକ୍ଷ୍ୟ ଅବ୍ୟର୍ଥ । କୁଆଡେ ଚୋର ପଶି ଆସିବ, ତାକୁ ଆକ୍ରମଣ କରିବେ, ତା'ର ଫସଲ ସବୁ ଚୋରାଇନେବେ, ସେଇଥି ପାଇଁ ସେ ପାଖରେ ଡେଣ୍ଟା ଓ ବାଡି ରଖିଚି । ଦ୍ୱିପହରୁ ତିରିଶ, ଚାଳିଶଟି ଗୋଡି, ଛୋଟ ପଥର ସାଉଁଟି ମଞ୍ଚା ଉପରେ ରଖି ଦେଇଥାଏ । ବାଡିରେ କୋଉଠି ଖସ୍ ଖସ୍ ଶବ୍ଦ ଶୁଭିଲେ ସେଠାକୁ ଲକ୍ଷ୍ୟକରି ଢେଲା ଫୋପାଡେ । ଜୀବଜନ୍ତୁ ହୁରୁଡି ପଳାଇ ଯାଆନ୍ତି । ବେଳେ ବେଳେ ଖାଲିଟାରେ ବି ଢେଲାଟିଏ ଫୋପାଡି ଦିଏ । ପାଖ ନଈରେ ଢେଲାଟା ପଡି ଟବ୍‌କିନା ଶବ୍ଦ ହୁଏ, ନ ହେଲେ ଗଛପତ୍ରରେ ବାଜି ଶବ୍ଦଟେ ହେଲେ କୁଆଁରୀ ଜହ୍ନ ମେଲିଲା ଭଳି କାଙ୍ଗାଳିର ପାକୁଆ ପାଟିରେ ହସ ମେଲିଯାଏ । ଟାଣୁଥିବା ବିଡି ଧୂଆଁଗୁଡିକ ଏକାଥରକେ ପଦାକୁ ବାହାରି ଆସେ । ନିଶବ୍ଦ

ରାତି ତାକୁ ଅଡୁଆ ଅଡୁଆ ଲାଗେ । ଯେମିତି ପୃଥିବୀଟା ମରିଯାଇଚି । କିନ୍ତୁ ଶବ୍ଦ ତା'ର ଅସ୍ତିତ୍ୱକୁ ସୂଚାଇ ଦଉଚି । ଯେପରିକି ମଣିଷର ଆଶ୍ରୟ ହିଁ ଶବ୍ଦ ! ଶିଆଳମାନଙ୍କର ପହରିକିଆ ଡାକ ଶୁଣିଲେ କାଙ୍ଗାଳିର ଛାତି ନାଚିଯାଏ ଥେଇ ଥେଇ । ବେଳେ ବେଳେ ଶିଆଳମାନଙ୍କ ସାଙ୍ଗରେ ସେ ତାଳ ଦେଇ ଏକ ଅଦ୍‌ଭୂତ ନିମଜ୍ଜନରେ ଡାକେ ହୁକେ ହୋ, ହୁକେ ହୋ । ପିଲାମାନେ କୋଇଲିସ୍ୱର ଶୁଣି କୁ, କୁ ରାବିଲେ କୋଇଲି ପ୍ରତିଦ୍ୱନ୍ଦ୍ୱିତା କରି ସ୍ୱର ଲମ୍ୱେଇ ଦେଲା ଭଳି ଶିଆଳମାନେ ବି ଆଉ ଥରେ ରହି ଛାଡନ୍ତି ହୁକେ ହୋ, ହୁକେ ହୋ । କାଙ୍ଗାଳି ବୁଢା ଆନନ୍ଦେଇ ଯାଏ । ଗାଁ ଭିତରେ ଚାହିଁଥିବା ଲୋକେ କୁହାକୁହି ହୁଅନ୍ତି : ହେଇ କାଙ୍ଗାଳି ଶିଆଳ ଭୁକିଲାଣି ! ହୁକେ ହୋ, ହୁକେ ହୋ ରଡି ସାରିଲା ପରେ କାଙ୍ଗାଳି ନିଜକୁ ନିଜେ ଧିକ୍‌କାରେ- ଛି, ଛି, କେହି ଯଦି ଶୁଣିଥିବ, କ'ଣ ଭାବୁଥିବ ସତରେ, ବୁଢାଟା ପିଲା ହେଇଯାଉଚି, ଛି !

ରାତି ନୀରବ, ଛନ୍ ଛନ୍ । କାଙ୍ଗାଳି ମୁଣ୍ଡରେ ଗାମୁଛାକୁ ଠେକା ବାନ୍ଧିଲା । ପାଦ ତଳିପାରେ ତେଲ ବୋଳି ହେଲା । ଲଣ୍ଠନବତୀ କମେଇ ମିଞ୍ଜି ମିଞ୍ଜି କରି ଗନ୍ଥା ଘୋଡି ଶୋଇଲା । ଶିଆଳଟିଏ ଭୁକିଲା । କାଙ୍ଗାଳିର ଛାତିରୁ ଦୀର୍ଘଶ୍ୱାସଟିଏ ବାହାରି ଆସିଲା । ଏ ଦେଶରୁ ଶିଆଳ ସଂଖ୍ୟା କମି ଆସୁଛି । କିନ୍ତୁ ଗାଁବାଲାଏ କହନ୍ତି : କାଙ୍ଗାଳି ବୁଢାର ବାଡିରେ ସୁନା ଶିଆଳ ଶୋଇଚି । ଯେଉଁ ଗଛ କାଙ୍ଗାଳି ବୁଢା ଲଗଉଚି, ଫଳ ନ ଫଳୁଚି ବୋଲି ନୁହେଁ । ବୋଇତାଳୁ, ବାଇଗଣ, କାକୁଡି, ଲଙ୍କା, ଲେମ୍ବୁ, ଆମ୍ବ କ'ଣ ନଫଳୁଚି !

କିନ୍ତୁ ଏସବୁ ଫଳ ଖାଇବାକୁ କେହି ନାହିଁ । ରାତି ଆଉରି ଟାଣ ହେଇ ଉଠୁଚି । ଅନ୍ଧାର ନେସି ହେଇ ଯାଇଚି ଗୋଟାପୁଣି । ନଈକତ କିଆବୁଦା ପାଖେ ଖସର ଖସର । ଢେଲାଟିଏ ଛାଡିଲା- ଗୁଦ୍ ! ଜମି ଯାଉଚି ସ୍ମୃତି । ପହରା ଦଉଚି ତା' ଗହୀରା ଛାତି କୋଣରେ । ନିଦ ଆଖିକୁ ଆସିବାକୁ ବାଟ ପାଉନି । ଟୋକା ସମୟର କଥା । କାଙ୍ଗାଳି କଲିକତା ଚଟକଳରେ ଶ୍ରମିକ ଥିଲା । ପାର୍ବତୀ ତା'ର ସ୍ତ୍ରୀ ଥିଲା । ରବି, ଛୋଟ ପୁଅ ଥିଲା । ବର୍ଷକ ବାଦେ କାଙ୍ଗାଳି ଅନୁଭବ କଲା ସୁପରଭାଇଜର କିଷାନ୍ ତାକୁ ସବୁବେଳେ ରାତି ସିଫ୍‌ଟ ଡିଉଟି ବାଣ୍ଟୁଚି । ତା'ର କିଛିଦିନ ପରେ ଗୋଟେ ଦିନ ଉପର ଓଳି ସେ ଆବିଷ୍କାର କଲା ରବି ତା' ପାଖରେ ଶୋଇଚି । ପାର୍ବତୀ ଫେରାର୍ । ବହୁତ ଖୋଜିଲା ପାର୍ବତୀକୁ । କିନ୍ତୁ କାହାକୁ ମୁହଁ ଖୋଲି କିଛି ପଚାରି ପାରିଲାନି । କି ଥାନାରେ ଏତଲା ଦେଇପାରିଲା ନାହିଁ । କାରଖାନାରୁ ଖବର ପାଇଲା, ପାର୍ବତୀ ଏବେ କିଷାନ୍ ଘରେ । ରବିକୁ କାଖରେ ଜାକି ଲୁହ ନିଗାଡି ଥିଲା କାଙ୍ଗାଳି । କିନ୍ତୁ ପାର୍ବତୀ ଉପରେ ଆଦୌ ରାଗି ନଥିଲା । ଯେଉଁଠିକୁ ତା' ଆତ୍ମା ଡାକିଲା, ସେଠି ଆପଣାର ହେଲା, କ୍ଷତି କ'ଣ ? ସେଠୀ ସତୀ ମାଇକିନାର କାଠଗଡା ଅଯଥା କାହିଁକି ପ୍ରତିବନ୍ଧକ ହେବ ? କିନ୍ତୁ ସେ ବୁଝି ପାରିନଥିଲା ସେ ପାର୍ବତୀର କ'ଣଟା ଅଭାବ ହେଲା ଏଠି, ଯେଉଁଥି ପାଇଁ ଏକମାତ୍ର ଶିଶୁ ପୁତ୍ରର ମୁହଁକୁ ବି ସେ ଭୁଲି ଯାଇଥିଲା । ଏ ଯାଏ ବି ସେ ଗୁମରର ଗିରି ଖୋଲିପାରି ନାହିଁ କାଙ୍ଗାଳି । ତା' ଆରଦିନ ସକାଳୁ କାହାକୁ କିଛି ନକହି ନ ବୋଲି ରବିକୁ କାଖରେ ଯାକି ଫେରି ଆସିଲା ଗାଁକୁ । ଗାଁରେ କିନ୍ତୁ କହି ପାରିଲାନି ଯେ ପାର୍ବତୀ ତାକୁ ଛାଡି ଆଉ ଜଣକ ପାଖକୁ ପଳାଇଯାଇଚି । କହିଲା : ଝାଡା ବାନ୍ତିରେ ଶେଷ ହୋଇଯାଇଚି ।

କାଙ୍ଗାଳିର ଦେହ ଉଲୁସି ଉଠିଲା । ଛାନିଆ ପଶିଗଲା । ଲୋମମୂଳ ଟାଙ୍କୁରି ଉଠିଲା । କୋଉଠି କିଛି ହେଲେ ସୁର ଶବ୍ଦ ନାହିଁ । ନାହିଁ ଝିଙ୍କାରୀର ଝିଁ ଝିଁ, କପୋତୀର ଗୁମୁରୀ । କାଙ୍ଗାଳି

ପୁଣି ଢେଲାଟାଏ ଛାଡିଲା ନଈକୁ, ଟବ୍ । କାଙ୍ଗାଳୀ ଆଶ୍ୱସ୍ତ ହେଲା । ସାହସ ନେଲା, ନା ସବୁ କିଛି ଠିକ୍ ଅଛି । ଯାହା ନିଦ ଆସୁନି ଆଖିକୁ !

ରବି ବି ବଡ ହେଲା । ସାତ ଶ୍ରେଣୀ ଯାଏ ପାଠ ପଢିଲା । କାଙ୍ଗାଳିର ଛାତି ଭରି ଉଠିଲା । ଗାଁର ଆଉ ଜଣକ ସହ ରବି କଲିକତା ଯାଇ ସେଠି କାମ କରିବ ବୋଲି ଠିକ୍ କଲା । ଏବଂ କାଙ୍ଗାଳିର ସମସ୍ତ ବାରଣ ସତ୍ତ୍ୱେ ଚାଲିଗଲା । କାଙ୍ଗାଳିର ବଡ ଭୟ, କୁଆଡେ ରବିର ତା' ମାଆ ସହ ଭେଟ ପରିଚୟ ହେଇଯିବ କି ? ତା ମାଆ ଯେ କଲିକତାରେ ଝାଡାବାନ୍ତିରେ ମରିଯାଇଚି ବୋଲି ସେ ରବିକୁ କହିଚି !

ବଙ୍ଗାଳି ବାଡିରେ ପାଦ ଥାପିଲା ରବି । ଶେଷରେ ଜଣେ ବିଧବା ଗୋଦରୀଗୋଡି ପାଲରେ ନଟ୍‌କିଲା ଯେ ଖସି ପାରିଲାନି । ରହିଗଲା । ଗାଁ ନାଁ, ବାପା ନାଁ, ସବୁ ଭୁଲିଗଲା । କାଙ୍ଗାଳି ଯେତେ ଥର କଲିକତା ଗଲା, ସେତେ ଥର ଆଖିରେ ଲୁହ ଧରି ହିଁ ଫେରିଲା । ଶେଷଥର ବଙ୍ଗାଳୁଣି ଛାଞ୍ଚୁଣିରେ ଗୋଡେଇଲା ଯେ କାଙ୍ଗାଳି ଆଉ କଲିକତା ଯାଇନାହିଁ । ସ୍ତ୍ରୀ, ପୁତ୍ର ଥିଲେ, ଅଛନ୍ତି, ନାହାନ୍ତି ଭିତରେ ଏକ ହାଁ ହାଁ ଖାଁ ଖାଁ'ର ଝୁଲା ମଣିଷଟେ କାଙ୍ଗାଳି । ମଞ୍ଚାକୁ ଚଢୁଥିବା, ଭୂଇଁକୁ ଓହ୍ଲାଉଥିବା ଲୋକଟେ ।

ବାଡିରେ ଫଳୁଥିବା ଫସଲକୁ ବିକ୍ରୀ କରି କାଙ୍ଗାଳି ନିଜ ଖର୍ଚ୍ଚ ବାଦେ ସବୁ ପଇସା ସୁନା କରି ଦେଇଛି । ଘରମାଟି ତଳେ କାଠବାକ୍ସରେ ସୁନ । ଭର୍ତ୍ତିକରି ପୋତିଛି । ଯଦି ରବି ଘରକୁ ଫେରେ, ହୁଏତ ପାଇଯିବ ବାପ ମେହେନତ୍‌ର ସ୍ୱର୍ଣ୍ଣ ! କିନ୍ତୁ ଫେରିନି ରବି । ମଞ୍ଚା ଚଢିବାରୁ ତାକୁ ରିଆତି ମିଳୁନି । ଏକ ଦୂରନ୍ତ ଆଶାର ଝଡରେ ଦୋହଲୁଚି କାଙ୍ଗାଳି ।

ଦିଆସିଲିଟାକୁ ମୁଣ୍ଡ ପାଖରେ ଥୋଇଲା କାଙ୍ଗାଳି । ପାଖ ଟେଣ୍ଟା ଓ ବାଡିରେ ହାତ ମାରିଲା । ଲଣ୍ଠନଟିକୁ ଲିଭେଇ ଦେଲା । ରାତିଅଧରୁ ଅଧିକା ଆଗେଇଲାଣି । ପୃଥିବୀ ହେମାଳ ହେଇଆସୁଚି । ହଠାତ୍ କାଙ୍ଗାଳି ଯେମିତି ଶୁଣିଲା, କେହି ଜଣେ ତାକୁ ଡାକୁଚି । ପୁଣି ଯେମିତି ସେଇ ଡାକ । ଶିହରି ଉଠିଲା କାଙ୍ଗାଳି । ହାତର ଟେଣ୍ଟାଟାକୁ ମୁଠାଇ ଧରି ସାହସ ଧରିଲା ଏବଂ ହୁରି ଛାଡିଲା : ନଈ ସେ ପାଖ ଗହୀର ବିଲରୁ ଏତେ ରାତିରେ କିଏ ଡାକୁଚ ? କିଏ ?

କୌଣସି ଜବାବ୍ ମିଳିଲାନି । କାଙ୍ଗାଳି ଉଠି ବସିଲା । ଆଖି ବିସ୍ତାରିତ ହେଲା । ପୁଣି ଥରେ ଡାକ ଛାଡିଲା- ଏତେ ରାତିରେ ତମେ କିଏ ଡାକୁଚ ? କିଏ ? କାଇଁ, କୌଣସି ଉତ୍ତର ନାହିଁ । ଚିହିଁକିଲା ସେ । କିଆବୁଦା କଡେ କଡେ ଖସ୍ ଖସ୍ । କାଙ୍ଗାଳି ଢେଲାଟିଏ ଝାଡିଲା, ଧୂସ୍ । ପୁଣି ଶୁଭିଲା ଖସ୍ ଖସ୍ । ପୁଣି ଢେଲା ଛାଡିଲା, ଧୂସ୍ । ପୁଣି ଖସ୍ ଖସ୍, ପୁଣି ଢେଲାର ଧୂସ୍ । କାଙ୍ଗାଳିର ଛାତି ଶବ୍ଦ ଓ ନିଶ୍ୱାସର ହାଲି ବଢୁଥାଏ । ପୁଣି ଖସ୍ ଖସ୍, ପୁଣି ଧୂସ୍ । ଏଥର କାଙ୍ଗାଳି ଭାବିଲା : ନା, ଏ ବୋଧେ ଚୋର, ମୋ ଫସଲ ସବୁ ଲୁଟିବାକୁ ଆସିଚି ! ଆଉ ଟିକେ ଶଙ୍କା ଲାଗିବାରୁ କାଙ୍ଗାଳି ଭୂଇଁରୁ ମଞ୍ଚାକୁ ଲାଗିଥିବା ସିଡିଟାକୁ ଚଟାପଟ୍ ମଞ୍ଚା ଉପରକୁ ଉଠେଇ ନେଲା ଏବଂ କିଛିଟା ଆଶ୍ୱସ୍ତ ହେଲା । ଶଳା ଚୋର, ମୁଁ ଚେଇଁକି ଜାଣିବି ଆସୁଚି । ହୁଏତ ମୋତେ ଆକ୍ରମଣ କରି ଫସଲ ସବୁ ଉଜାଡି ନବ ! ପୁନର୍ବାର ଖସ୍ ଖସ୍ ହେଲା । କାଙ୍ଗାଳି ପୁଣି ଢେଲା ଛାଡିଲା । ଏଥର ଟେଣ୍ଟାକୁ ମୁଠାଇ ଧରିଲା । ନା, ଢେଲା ଦ୍ୱାରା କିଛି ସାଧନ ହେବ ନାହିଁ । ଏଥର ଟେଣ୍ଟା ହିଁ ଜରୁରୀ । ଶଳା ମରୁ ତ ବଞ୍ଚୁ ! ଆଉ କାଳ ବିଳମ୍ବ ନକରି ଆତ୍ମରକ୍ଷା ଶ୍ରେୟସ୍କର । ପୁଣି ଥରେ ଖସ୍ ଖସ୍ ଶବ୍ଦ ହେଲାରୁ କାଙ୍ଗାଳି ସେହି ଖସ୍ ଖସ୍ ଶବ୍ଦ ଆଡକୁ ଲକ୍ଷ୍ୟକରି ଛାଡି ଦେଲା ଟେଣ୍ଟା । ଲକ୍ଷ୍ୟସ୍ଥଳରୁ ଟେଣ୍ଟାଘାତରେ ଯେଉଁ କରୁଣ ଶବ୍ଦ ପ୍ରସରି ଆସିଲା

ତାହା ଥିଲା ଗୋଟେ ଶିଆଳର । ହତଭମ୍ଭ ହେଲା କାଙ୍ଗାଳି । ମୁଣ୍ଡ ଚକିରି ଖାଇଗଲା । ଆଃ, ଶିଆଳଟା ମରିଗଲା ତା'ହେଲେ ! ଗାଁ ଲୋକେ କହନ୍ତି : କାଙ୍ଗାଳି, ତୋ ବାଡିରେ ଏତେ ଫସଲ ଉତୁରୁଚି । ସୁନା ଶିଆଳ ଶୋଇଚିରେ !

ଏକ ଅଜଣା ଭୟରେ ସେ ଶିହିରି ଉଠିଲା । ଶିଆଳଟାକୁ ଦେଖିବାକୁ ଭାରି ଇଚ୍ଛା ହେଲା ତା'ର, କିନ୍ତୁ ଭୟରେ ତଳକୁ ଆସିପାରିଲାନି । ଆଉ କୌଣସି ଶବ୍ଦ ବି ସେ ଶୁଣିଲାନି । ଏଇ ମରିଯାଇଥିବା ଶିଆଳଟା ସୁନାଶିଆଳ କି ? ଏଇ ଶିଆଳ ତାଆରି ନାଁ ଧରି ତାକୁ ଡାକୁଥିଲା କି ଆଉ ? ସତେ ଯେମିତି କେଉଁ ଏକ ଅଭିଶାପ ଦୁର୍ଭାଗ୍ୟକୁ କୁଣ୍ଢାଇ ଧରି ତା' ଚାରିପାଖେ ଖୁଜୁରୁ ବୁଜୁରୁ ହେଉଚି । ଚାରିଆଡ ଖାଁ ଖାଁ ନୀରବତା । ତାକୁ ଭୟ ମାଡି ମାଡି ପଡୁଚି । ଦୀର୍ଘଶ୍ୱାସର ସୁଅ ଛୁଟିଚାଲିଚି ତା ନାକରୁ । ଗୋଟାଏ ପରେ ଗୋଟାଏ ଢେଲା ସେ ଚାରିଆଡକୁ ଫିଙ୍ଗିବାରେ ଲାଗିଲା ଗୋଟେ ପାଗଳ ଭଳି । ଢେଲା ପରେ ଢେଲା । ପୁଣି ଢେଲା । ଧୂସ୍, ଖସ୍, ଚର୍ର୍, ଟବ୍ ଶବ୍ଦମାନ ଉଗାଳି ପଡୁଥାଏ । ପ୍ରତିଟି ଶବ୍ଦରେ ନିଜ ଅସ୍ତିତ୍ୱକୁ ବାରିପାରୁଥାଏ । ହଁ, ମୁଁ ଅଛି, ମୁଁ ବଞ୍ଚିଛି ବୋଲି ପ୍ରତ୍ୟୟ ଲାଗି ଆସୁଥାଏ ତା' ପାଖକୁ । ନିଜ ଅସ୍ତିତ୍ୱକୁ ଚିହ୍ନିବା ପାଇଁ, ଜାହିର୍ କରିବା ପାଇଁ ଯେମିତି ଶବ୍ଦ ହିଁ ଜରୁରୀ ! ପ୍ରତିଟି ଶବ୍ଦରେ ଟିକେ ଅଶ୍ୱସ୍ତ ହେଉଥାଏ କାଙ୍ଗାଳି । ସାରା ରାତି ଆଦୌ ଶୋଇପାରିଲାନି ସେ ।

ଯେମିତି କୁଆଁତାରା ଫୁଟିବ, ନିଦ ମଳ ମଳ ପାହାନ୍ତା ପରହ ଯେମିତି ଚେଇଁଚି, ସିଡିଟା ମଞ୍ଚରୁ ତଳକୁ ପକାଇ ଓହ୍ଲାଇଲା କାଙ୍ଗାଳି । ତରତର ହେଇ ଧାଇଁଗଲା ଟେଣ୍ଟା ଭେଦିଥିବା ଲକ୍ଷ୍ୟସ୍ଥଳକୁ । ମଳିଛିଆ ଅନ୍ଧାରରେ ଦେଖିଲା ଶିଆଳଟେ ମରିଶୋଇଚି । ତା' ବେକ ଫୁଟିଚି ଟେଣ୍ଟାରେ । ରକ୍ତ ନିଗିଡି ସେ ଖଣ୍ଡକ ଲାଲ ହୋଇଯାଇଚି । ଆଃ, ଲୁହ ଟଳ ମଳ ହେଇ ଆସିଲା କାଙ୍ଗାଳି ଆଖିକୋଣରେ । ଗାଁ ଲୋକେ ଉଠି ଦେଖିଲେ କ'ଣ କହିବେ, ତୋ ଫସଲ ବାଡିରେ ଶୋଇଥିବା ସୁନା ଶିଆଳକୁ ଟେଣ୍ଟା ମାରି ମାରିଦେଲୁ ? କାଙ୍ଗାଳି ଶିଆଳଟାକୁ ଧରି କ୍ଷିପ୍ର ପାଦରେ ବାଡିରୁ ପଦାକୁ ବାହାରି ଆସିଲା ମାତ୍ରେ ଘର ଦାଣ୍ଡ ମୁହଁରେ ଗୋଟେ ଧଳାଲୁଗା ପରିହିତା ବୁଢୀଟିଏ ଶୋଇଥିବା ଦେଖି ଚିହିଁକି ଉଠିଲା । ପଚାରିଲା : କିଏ, କିଏ ତୁ ?

ବୁଢୀଟି ଉଠିଲା । କାଙ୍ଗାକିକୁ ଦେଖିଲା । ଗଭୀର ନିରିଖେଇଲା । ତା'ପରେ ଭୋ ଭୋ ରଡିକଲା । ପଚାରିଲା : ମୋ ପୁଅ କାହିଁ ?

: ପୁଅ ? କେ ପୁଅ ? ପଚାରିଲା କାଙ୍ଗାଳି ।

: ମୋ ପୁର ରବି !

ଚମକିଲା କାଙ୍ଗାଳି । ଏଇ ଯେମିତି ଭୂକମ୍ପ ହେଲା ତା ପାଦତଳେ । ତୁ... ତୁ... ତୁ... ଆଉ କହି ପାରିଲାନି ସେ ।

: ମୁଁ ଚଣ୍ଡାଳୀ ପାର୍ବତୀ ! କିଷାନ୍ ମୋତେ ଦୁଇମାସ ବାଦେ କଲିକତାରେ ଗୋଟେ ବେଶ୍ୟାବାଡିକୁ ପଠେଇଦେଲା । ତା'ପରେ ପୁଣି କାନ୍ଦିଲା ପାର୍ବତୀ ।

ରାତି ପାହି ଆସୁଥିଲା । କାଙ୍ଗାଳିର ମନ ଭିତରେ ଦଂଶୁଥିଲା ଘଟିବାକୁ ଯାଉଥିବା ଅସହ୍ୟ କାହାଣୀ । ସକାଳୁ ପାର୍ବତୀକୁ ଦେଖି ଗାଁ ଲୋକେ କହିବେ- ହଇରେ କାଙ୍ଗାଳି, ତୋ ମାଇପକୁ କଲିକତାରେ ଆଉ ଜଣେ ନେଇଯାଇଥିଲା, ତୁ ଆସି କହିଲୁ କ'ଣ ନା ପାର୍ବତୀ ଝାଡାବାନ୍ତିରେ ମରିଗଲା ! ଛି, ଛି !

କାଙ୍ଗାଳି ତର ତର ହେଇ ପଚାରିଲା : କାଲି ରାତିରେ ତୁ ମୋ ନାଁ ଧରି ଡାକିଥିଲୁ କି ?

: ନା, ନା'ତ ! ଘରେ ତାଲା ଝୁଲୁଚି ଦେଖି ମୁଁ ଫେରି ଯାଇଥାନ୍ତି । କିନ୍ତୁ ଏତେ ରାତି, ଭୟରେ ଏ ପିଣ୍ଡାରେ ଗଡିଗଲି ।

ମଲା ଶିଆଳଟି କାଙ୍ଗାଳି ହାତରୁ ଖସି ପଡିବ ଯେମିତି ! ସେ ମଲାଶିଆଳକୁ ଫସଲବାଡିକୁ ଫୋପାଡି ଦେଲା ଏବଂ ଅଣ୍ଟାରୁ ଚାବି ନେହ୍ଣା ବାହାର କରି ଘରର ଚାବି ଖୋଲିଲା ତର ତର ହେଇ ।

ପାର୍ବତୀ ବିସ୍ମିତ ହେଇ ପଚାରିଲା : ଆଉ ବାହା ହେଲନି ତମେ ?

କାଙ୍ଗାଳି ଦୀର୍ଘଶ୍ୱାସ ଛାଡିଲା ।

: ରବି କାଇଁ ? ପାର୍ବତୀ ପଚାରିଲା ।

: ସେ ବି କଲିକତାରେ, ଗୋଟେ ବିଧବା ପାଲରେ ପଡି ସେ ବି ଆସୁନି ।

: ସାରା ଜୀବନ ତମେ ଏକୁଟିଆ ରହିଗଲ ? ପାର୍ବତୀର କଣ୍ଠ ଭାରି ହୋଇଆସିଲା ।

କିଛି କହିଲାନି କାଙ୍ଗାଳି । ସାରା ମୁହଁ କାନ୍ଦୁଣୁ ମାନ୍ଦୁଣୁ ହେଇ ଆସୁଥାଏ । ପାର୍ବତୀ ଖାଲି ଜିଗର ଲଗେଇଲା : ଥରେ ମୋ ପୁଅକୁ ମୋତେ ଭେଟ କରିଦିଅ, ତା' ମୁହଁ ଚାହିଁ ମରିବି, ମୋତେ ନ ହେଲେ କଲିକତା ନେଇଚାଲ ! ଭାରି ଜିଗର ଲଗେଇଲା ।

କାଙ୍ଗାଳି ଆଉ ସମ୍ଭାଳି ପାରିଲାନି । ଶୀଘ୍ର ଲୁଗାପଟା ପିନ୍ଧି ପକାଇଲା ଏବଂ ଘରର ମଝି ସ୍ଥାନକୁ ଲକ୍ଷ୍ୟକରି କହିଲା : ଯା ତଳେ ମୁଁ ସୁନା ପୋଡିଛି । ଜଗିଥିବୁ । ରବିକୁ ସାଙ୍ଗରେ ନ ଆଣିଲା ଯାଏ ମୁଁ ଫେରିବିନି । ଯାଉଚି । କିନ୍ତୁ ଛାତି ଭିତରଟା ଖାଲି ହଁ ହାଁ କରି ଉଠୁଥାଏ- "କେମିତି ଆଣିବି ରବିକୁ, ତୁ ମରିଯାଇଚୁ ବୋଲି ମୁଁ ତାକୁ କହିଚି, ଏବେ କ'ଣ କହିବି, କେମିତି ବା କହିବି ଯେ ତୁ ମୋତେ ଛାଡି ଆଉ ଜଣକ ସାଙ୍ଗରେ ପଳେଇଥିଲୁ ବୋଲି ତାକୁ ମୁଁ ମିଛ କହିଥିଲି । କେଉଁ ବାପ ଏ କଥା ମୁହଁରେ ପୁଅକୁ କହିପାରିବ ? ମିଛଟାକୁ ମିଛ କହିବା କ'ଣ ଏତେ ସହଜ ?

ତାଟକା ମାଟକା ହେଇ ଚାହିଁ ରହିଥିଲା ପାର୍ବତୀ । ଏତେ ଦୀର୍ଘ ବର୍ଷର ଅସୌଜନ୍ୟ ବ୍ୟବଧାନ ଯେମିତି ଆଦୌ ନଥିଲା ବା ନାହିଁ । କେତେ ସହଜ ଭାବରେ କାଙ୍ଗାଳି ତାକୁ ଗ୍ରହଣ କରି ନେଉଛି । "ବାଡିରେ ସୁନା ଶିଆଳ ମରି ଶୋଇଚି, ଖବରଦାର୍, ରାତିରେ ତା' ଭିତରକୁ ଯିବୁନି" କହି ବାଡି ଚାବି, ଘର ଚାବି ପାର୍ବତୀକୁ ବଢାଇ ଦେଲା କାଙ୍ଗାଳି । ଏବଂ ଗାଁ ଲୋକେ ଉଠିବା ପୂର୍ବରୁ, ସୂର୍ଯ୍ୟ ଦିଗ ରକ୍ତବର୍ଣ୍ଣ ହେବା ପୂର୍ବରୁ ସେ ମାଡି ଚାଲିଲା ଷ୍ଟେସନ୍ ଆଡକୁ ।

କେତେ ଦିନ ବାଦେ ରବି ଆସି ପହଞ୍ଚିଲା, କିନ୍ତୁ ସାଙ୍ଗରେ ନଥିଲା କାଙ୍ଗାଳି । ବାଡି ଭିତରେ ଶିଆଳର ମଢ ପଚି ଆସୁଥିଲା ।



# କମଳା

## କୃପାସାଗର ସାହୁ

ସେଥର ନାଗପୁରରୁ ଝୁଡ଼ିଏ କମଳା ମଗାଇଥିଲୁ ।

କମଳାର ସହର ନାଗପୁର । ସେଠିକାର କମଳା ଖୁବ୍ ମିଠା, ଖୁବ୍ ଶସ୍ତା । ସେଥିପାଇଁ କମଳା ଋତୁରେ ଅନେକ ଲୋକ ନାଗପୁରରୁ କମଳା ମଗାନ୍ତି ।

ଆମେ ଯେଉଁମାନେ ରେଳ ବିଭାଗର କାମ କରୁଛୁ, ଆମ ପାଇଁ କମଳା ମଗାଇବାଟା ବଡ଼ ସହଜ । ଫୋନ୍‌ଟିଏ କରିଦେଲେ, ପ୍ରଥମ ଏକ୍ସପ୍ରେସ୍ ଟ୍ରେନ୍‌ରେ ଷ୍ଟାଫ୍‌ଙ୍କ ଜରିଆରେ କମଳା ଝୁଡ଼ି ଘରେ ଆସି ହାଜର ହୋଇଯିବ ।

ନାଗପୁରର ଷ୍ଟାଫ୍ ଜଣକ ଘରେ କମଳା ଝୁଡ଼ି ରଖି ଦେଇ ପଇସା ନେଇ ଚାଲିଗଲା । ଏହା ଥିଲା ଏ ବର୍ଷର ପ୍ରଥମ କମଳା ଝୁଡ଼ି ।

ମୋର ଝିଅ କୁସୁମକୁ ଫଳ ଖୁବ୍ ଭଲ ଲାଗେ–ବିଶେଷ କରି କମଳା । ଘରେ ଫଳ ଥିଲେ ସେ ଭାତ ଭୁଜା ନ ଖାଇ ଯାଉଣୁ ଆସୁଣୁ ଫଳ ଖାଉଥାଏ । ତେଣୁ ବିଶେଷ କରି ତା' ପାଇଁ କମଳା ମଗାଇବା ପାଇଁ ଶ୍ରୀମତୀଙ୍କର ଫର୍ମାସୀ ଥିଲା । ତା'ପରେ ଶ୍ରୀମତୀଙ୍କର ବକ୍ତବ୍ୟ । "ତୁମର ବି ବୟସ ହେଲାଣି । ଏଣିକି ଫଳ ଖାଅ । ଫଳ ରସ ପିଅ । ବରା, ପକୋଡ଼ି, ପିଆଜି- ଏଣୁ ତେଣୁ ଛଣାଛଣି ଜିନିଷ ଖାଇବା ବନ୍ଦକର ।"

ସେଥିପାଇଁ ଏ କମଳା ଝୁଡ଼ିର ଆଗମନ । ବେଶୀଦିନ ରହିବ ବୋଲି ଟିକିଏ ଟାଣ ଟାଣ କମଳା ଆଣିବା ପାଇଁ ବରାଦ ଦିଆଯାଇଥିଲା । ନାଁ ଦେଇ ପ୍ୟାକିଂ ହୋଇଥିବା ଝୁଡ଼ିର ଫାଙ୍କରୁ ଜଣାପଡୁଥିଲା ଯେ, କମଳାର ଆକାର ବେଶ୍ ବଡ଼ । ବଡ଼ ବଡ଼ କୋଲା ଥିବ ଏବଂ ବେଶୀ ରସ ବାହାରିବ ବୋଲି ଆଶ୍ୱସ୍ତ ହେଲୁ ।

କମଳା ଝୁଡ଼ି ଖୋଲି ଦେଖିବାକୁ ନା ମୋର ସମୟ ଥିଲା, ନା ଶ୍ରୀମତୀଙ୍କର । ତରବରରେ ଅଫିସ୍ ଚାଲିଯାଇଥିଲି ।

ଅଫିସ୍‌ରେ ଯାଇ ଦେଖିଲି, ଗାଁରୁ ଲୋକ ଆସି ଅପେକ୍ଷା କରିଛନ୍ତି । ସେମାନଙ୍କର ଆସିବା ଉଦ୍ଦେଶ୍ୟ, ଚାକିରି ବାହାରିଛି । ଖବରକାଗଜ ପଢ଼ି ଜଗୁର ପୁଅ ସେଥିପାଇଁ ଦରଖାସ୍ତ କରିଛି । ମୁଁ କୁଆଡ଼େ ସୁଦୟା କଲେ, ଚାକିରିଟି ହୋଇଯିବ ବୋଲି ବହୁ ଆଶା ନେଇ ଭୁବନେଶ୍ୱର ଦୌଡ଼ି ଆସିଥିବା ଜଗୁର ବକ୍ତବ୍ୟ ।

ଏଇ କିଛି ଦିନ ତଳେ ଖବର କାଗଜରେ ଆମେ ବିଜ୍ଞାପନ ଦେଇଥିଲୁ । ଲିଖିତ ପରୀକ୍ଷା ହେବ । ତା'ପରେ ମୌଖିକ ପରୀକ୍ଷା ହେବ । ଲୋକ ଏବେଠୁ ହାଜର ।

ଗାଁ ଲୋକ ବଡ଼ ଅବୁଝା । ସେମାନଙ୍କୁ ସରକାରୀ କଳର କଚ୍ଛପ ଗତି, ଆଦବ କାଏଦା ଏସବୁ ବୁଝାଇବା କଷ୍ଟ ।

ଏ ଅଠାକାଠିରୁ କେମିତି ବର୍ତ୍ତିବି, ମୁଁ ମନେ ମନେ ଉପାୟ ପାଞ୍ଚୁଥିଲି ।

''ଆଚ୍ଛା, ହଉ, ଦେଖିବା । 'କଲ୍ ଲେଟର୍' ପାଇଲେ ମୋତେ ଆସି ଦେଖା କର । ଆଚ୍ଛା, ଶୁଣ୍ ଜଗୁ, ତୁ ଆଜି ଗାଁକୁ ଫେରିବୁ ତ ? ଗୋଟିଏ କାମ କର ।''

କମଳା ଝୁଡ଼ି ମନେ ପଡ଼ିଲା । ଏବେ ତ ଗାଁକୁ ଯାଇ ହେଉନାହିଁ । ବାପାଙ୍କ ପାଖକୁ କମଳା ଝୁଡ଼ିଟା ଜଗୁ ହାତରେ ପଠାଇଦେଲେ କେମିତି ହୁଅନ୍ତା ? ଏହା ଭାବି ଜଗୁକୁ କହିଲି, ''ଗାଁକୁ ଗୋଟିଏ ଜିନିଷ ପଠାଉଛି । ନେଇ ବାପାଙ୍କୁ ଦେଇଦେବୁ ।''

ଜଗୁ ମୋର କିଛି କାମରେ ଆସି ପାରିଛି ବୋଲି ନିଜକୁ କୃତ୍ୟକୃତ୍ୟ ମଣୁଥିଲା ।

ବସାକୁ ଫୋନ୍ କଲି, ''ଶୁଣ । କମଳା ଝୁଡ଼ିଟା ଏବେ ଖୋଲନି । ଗାଁରୁ ଜଗବନ୍ଧୁ ଆସିଛି । ଏଇ ବାରଟା ବେଳ ବସ୍‌ରେ ଗାଁକୁ ଫେରିବ । ମୁଁ ଗାଡ଼ି ପଠାଉଛି । କମଳା ଝୁଡ଼ିଟା ସେଥିରେ ପଠାଇ ଦେବ । ଜଗବନ୍ଧୁ ଗାଁକୁ ନେଇଯିବ ।''

ଫୋନ୍ ସେପଟୁ ଏବେ ଘଡ଼ଘଡ଼ିର ଶବ୍ଦ ଶୁଭୁଥିଲା–

''କ'ଣ କହିଲ ? କମଳା ଆସୁ ଆସୁ ଗାଁକୁ ଯିବାକୁ ତର ସହୁନି ?

ଝୁଡ଼ିଟା କ'ଣ ଘରକୁ ଆଣିଥିଲ, ଆମକୁ ତା'ର ବାସ୍ନା ଶୁଙ୍ଘାଇବା ପାଇଁ ? ମୁଁ ତା' ହେଲେ କାହିଁକି ମଗାଇଥିଲି ଯେ ?''

''ଶୁଣ, ମୁଁ ଘରକୁ ଗଲେ କଥା ହେବା । ଏଇନେ ବହୁତ ବ୍ୟସ୍ତ ଅଛି । ପାଖରେ ଅନେକ ଲୋକ ଅଛନ୍ତି । ଏବେ ଯୁକ୍ତି ତର୍କ କରିବାକୁ ବେଳ ନାହିଁ । ଗାଡ଼ି ପଠାଇ ଦେଲିଣି । ଦୟା କରି, ଗାଡ଼ିରେ କମଳା ଝୁଡ଼ିଟା ପଠାଇ ଦେବ ।''

ସେପଟେ ଟେଲିଫୋନ୍‌ଟି ଉପରେ ଅକଥନୀୟ ଅତ୍ୟାଚାର ହେଲା ବୋଧହୁଏ । ବୁଲା କୁକୁର ଉପରେ ମାଡ଼ ହେଲା ବେଳର ଚିତ୍କାର ପରି, ଶବ୍ଦଟିଏ କରି ଟେଲିଫୋନ୍‌ଟି ନୀରବ ହୋଇଗଲା ।

ଲଞ୍ଚ୍ ସମୟରେ ଘରକୁ ଫେରିଲାବେଳେ, ଘର ଭିତର ଯେମିତି କିପରି ଖାଇ ଗୋଡ଼ାଉଥିଲା । ସବୁଆଡ଼େ ଖାଁ ଖାଁ, ନୀରବ ନିସ୍ତବ୍ଧ । ପିଲାଏ ସ୍କୁଲରୁ ଫେରି ନ ଥିଲେ ।

ବୈଠକ ଖାନାରେ, ବେଡ୍‌ରୁମରେ, ବାଲ୍‌କୋନୀରେ ସବୁଠି ଏକ ଅସ୍ୱାଭାବିକ ନୀରବତାର ରାଜୁତି । ଶ୍ରୀମତୀ ଘର ଖୋଲି ଦେଇ ବିନା ବାକ୍ୟବ୍ୟୟରେ ଶୋଇବାକୁ ଚାଲିଗଲେ ।

ମୁଁ ବେଡ଼ରୁମ୍‌କୁ ଯାଇ ତାଙ୍କୁ ବୁଝାଇବାକୁ ଚେଷ୍ଟା କରୁଥିଲି, ''ଦେଖ, ବାପା ବୁଢ଼ା ହେଲେଣି । କଠିନ ଖାଦ୍ୟ ପଦାର୍ଥ ଆଉ ତାଙ୍କର ହଜମ ହେଉନି । କମଳା ପାଇଲେ, କେତେ ଖୁସି ହେବେ, ଜାଣିପାରୁଛ ?

''ତା'ପରେ ଏବେ ଗୋଟିଏ ସୁଯୋଗ ମିଳିଥିଲା । ଗାଁ ଲୋକ ଆସିଥିଲେ । ସେମାନେ ବୋହି କରି ନେଇ ଠିକଣା ଜାଗାରେ ପହଞ୍ଚାଇ ଦେବେ । ଆମକୁ କ'ଣ ପଠାଇବାକୁ ଖର୍ଚ୍ଚ ଲାଗୁଛି ।''

ଶ୍ରୀମତୀ ଭିତରେ ଭିତରେ ଗୁମୁରି ଉଠୁଥିଲେ ଅଣ୍ଡା ଭାଙ୍ଗି ଯାଇଥିବା ଚଢ଼େଇ ପରି । ପରିସ୍ଥିତି ବେଶୀ ଅସମ୍ଭାଳ ବୋଲି, ଆଉ ବାକ୍ୟ ବ୍ୟୟ ନ କରି, ଏଣୁ ତେଣୁ ଟିକିଏ ଖାଇ ଅଫିସ୍ ଫେରି ଆସିଥିଲି । ଘର ତୁଳନାରେ ଏଠି ବେଶୀ ଆଶ୍ୱସ୍ତି । ଅଫିସ୍‌ଟା ଲାଗୁଥିଲା ଏକ ଶୀତତାପ ନିୟନ୍ତ୍ରିତ ଅଭୟାରଣ୍ୟ ପରି ।

ସନ୍ଧ୍ୟାରେ ଅଫିସ୍‌ରୁ ଫେରିଲି । ଝଡ଼ ତଥାପି ଥମି ନଥିଲା । ଶ୍ରୀମତୀ ବାଲକୋନୀରେ ଏକା ଏକା ବସିଥିଲେ । ଚାକର ପିଲା ଚା' ଆଣି ଧରାଇ ଦେଲା । ଚା' କପ୍ ନେଇ ତାଙ୍କର ମାନଭଞ୍ଜନ ପାଇଁ ବାଲକୋନୀକୁ ଗଲି ।

ଶ୍ରୀମତୀଙ୍କ ହାତ ଧରି ପକାଇ କହିଲି, ''କ'ଣ ରାଗିଛ ?''

ଏତିକିରେ ବନ୍ଧା ହୋଇଥିବା କୋହର ଜଳାଶୟ ଯେମିତି ଭୁଷୁଡ଼ି ପଡ଼ିଲା । କାନ୍ଦ କାନ୍ଦ ହୋଇ ସେ କହିଲେ, ''ପିଲାଏ ଖାଇବେ ବୋଲି ମୁଁ କମଳା ମଗାଇଥିଲି । ପରେ କାହା ହାତରେ କମଳା ମଗାଇ ଗାଁକୁ ପଠାଇଥିଲେ ହୋଇ ନଥାନ୍ତା ? ମୁଁ କ'ଣ ତମ ଘରକୁ କିଛି ଦେଉନି ? ମୋତେ କ'ଣ ତମେ ସ୍ୱାର୍ଥପର ବୋଲି ଭାବିଛ ? ଗାଡ଼ିଟା ପଠାଇବା ଆଗରୁ ମୋ ସହ ଟିକିଏ ଆଲୋଚନା ତ କରିପାରିଥାନ୍ତ ।''

କଥା କଟାକଟି, ବାକ୍ୟବାଣକୁ ବାକ୍ୟବାଣରେ ଉତ୍ତର ଦେବାର ଅବକାଶ ନ ଥିଲା । ଚୁପ୍ ରହିବାକୁ ବିଜ୍ଞତାର କାର୍ଯ୍ୟ ବୋଲି ଭାବିନେଲି ।

ସେଦିନ ଝଡ଼ ଶାନ୍ତ ହୋଇଗଲା । ପରଦିନ ଭୁବନେଶ୍ୱରକୁ ମନ୍ତ୍ରୀ ଆସିବାର କାର୍ଯ୍ୟକ୍ରମ ଥିଲା । ସ୍ଥାନୀୟ ମନ୍ତ୍ରୀ ହୋଇଥିବା ଯୋଗୁଁ ମାସକୁ ଥରେ ଦୁଇଥର ଗସ୍ତ ପଡ଼େ । କେତେବେଳେ ନୂଆ ଷ୍ଟେସନ ବିଲ୍‌ଡିଙ୍ଗ୍‌ର ଶୁଭ ଦିଅନ୍ତି ତ କେତେବେଳେ ନୂଆ ପ୍ଲାଟଫର୍ମର । ଆଉ କେତେବେଳେ ନୂଆ ଟ୍ରେନ୍ ଉଦ୍‌ଘାଟନ କରନ୍ତି ଓ ଆଉ କେତେବେଳେ ନୂଆ ଲାଇନ୍‌ର ସର୍ଭେ ଉଦ୍‌ଘାଟନ କରନ୍ତି ।

ସକାଳୁ ସକାଳୁ ପ୍ରସ୍ତୁତ ହୋଇ ଚାଲି ଯାଇଥିଲି । ବାହାରେ ଲଞ୍ଚ ଓ ଡିନର ଥିଲା । ଦିନବେଳେ ଘରକୁ ଫେରିବାକୁ ଫୁରୁସତ୍ ନଥିଲା । ମନ୍ତ୍ରୀ ଏବଂ ଅନ୍ୟାନ୍ୟ ଅତିଥିଙ୍କୁ ବିଦାୟ ଦେଇ ଫେରୁ ଫେରୁ ରାତି ଦଶଟା ବାଜି ଯାଇଥିଲା ।

ଡାଇନିଂ ଟେବୁଲରେ ବିମଳା ଓ ତା'ର ପିଲାମାନେ ବସି ଖାଉଥିଲେ ।

ବିମଳା ମୋର ସବୁଠୁ ସାନ ଭଉଣୀ ।

''ଆରେ, ତୁ କେତେବେଳେ ? ହଠାତ୍ କେମିତି ?''– କହି ଡାଇନିଂ ଟେବୁଲ୍‌ରେ ବସିବାକୁ ଗଲି ।

''ଏଇ ସନ୍ଧ୍ୟାବେଳେ ଆସି ପହଞ୍ଚିଲି ।''– କହି ବିମଳା ନମସ୍କାର କଲା ।

ବିମଳା ଗାଁ ପାଖରେ ବାହା ହୋଇଛି । ଭୁବନେଶ୍ୱର ବଦଳି ପରେ ପ୍ରଥମ କରି ଆସିଛି । ଖୁବ୍ ଖୁସି ଲାଗିଲା ।

ଡିନର୍ ଖାଇ ଆସିଥିଲେ ବି, କଥାବାର୍ତ୍ତା ହେବା ପାଇଁ ବସିଗଲି ।

ବିମଳା କହିଲା, ''ଭାଇ ! କୁସୁମ ଜନ୍ମ ହେଲାବେଳେ ଯାହା ଦେଖିଥିଲି । ତା'ପରେ ଆଉ ଦେଖିନି । କେଡୁଟିଏ ହେଲାଣି । ଶୁଣିଥିଲି, ସେଓ ଭଳିଆ ତା'ର ଗାଲ ଲାଲ ଲାଲ ଦିଶୁଛି । ସେ କୁଆଡ଼େ ଫଳ ଖାଇବାକୁ ଭଲପାଏ । ତା' ପାଇଁ କମଳା ଟିକିଏ ନେଇକରି ଆସିଛି ।

''ଭାଉଜ ! ଭାଇଙ୍କୁ ରାଶିଲଡୁ ଓ କାକରା ଭଲ ଲାଗେ । ସେ ବ୍ୟାଗରୁ ଟିକିଏ ବାହାର କରି ଆଣିଲ ।'

''ଆରେ, ନାଁ ନାଁ... ମୁଁ ଖାଇକରି ଆସିଛି । ଥାଉ, ପରେ ଖାଇବି ।'' କହି ମୁଁ ଧୁଆଧୋଇ ହେବା ପାଇଁ ବାଥ୍‌ରୁମ୍‌କୁ ଚାଲିଗଲି ।

ସେଠି ଆଇନାରେ ମୁହଁ ଦେଖିଲା ବେଳକୁ ଜଣା ପଡ଼ିଲା ଯେ ଯେମିତି କମଳା ଶବ୍ଦଟା ଶୁଣି ଆଶ୍ଚର୍ଯ୍ୟରେ ଚିହ୍ନଟିଏ ମୋ ମୁହଁରେ ଲାଖି ରହିଛି ।

ପୁଣି, ଭାବିଲି, ଯାହା ହେଉ ପତ୍ନୀଙ୍କ ଓରମାନ୍ ମେଣ୍ଟିଗଲା । ଅନୁଗୁଳର କମଳା ଗାଁ ହାଟକୁ ଆସେ । ଆକାରରେ ଛୋଟ ହେଲେ ବି, ଖୁବ୍ ମିଠା ।

ଭଗବାନ୍ ଅସୀମ ଦୟାଳୁ ବୋଲି ଭାବି ମୁଁ ଶୋଇବା ପାଇଁ ଚାଲି ଯାଇଥିଲି ।

ଶ୍ରୀମତୀ କାମଦାମ ସାରି ଶୋଇବାକୁ ଆସିଲାବେଳେ ଦୁଷ୍ଟାମିର ଦାମିକା ହସଟିଏ ମୁହଁରେ କାହିଁକି ଖେଳାଇ ଆସୁଥିଲେ, ଟିକିଏ ପରେ ଜଣାପଡ଼ିଲା । କହିଲେ, ''ତମ ସେଇ କମଳା ଫେରି ଆସିଛି ।''

''ମାନେ ? ବାପା ରାଗିକରି ଫେରାଇ ଦେଲେ ନା କ'ଣ ?''

''ନାଁ ନାଁ, ସେମିତି କିଛି ନୁହେଁ । ଆମର କମଳା ଘରେ ପହଞ୍ଚିଲା ବେଳକୁ, ବିମଳାଙ୍କ ଗାଁରୁ ଲୋକ ଆସି ବସିଥିଲା ।''

ତା'ପରେ ଘଟଣାର କ୍ରମ କ'ଣ ହୋଇ ପାରିଥାଏ, ଆଖି ଆଗରେ ଜଳଜଳ ଦିଶିଗଲା । ଏତେ ଶରଧାରେ ବାପାଙ୍କ ପାଖକୁ ଯେଉଁ କମଳା ପଠା ଯାଇଥିଲା, ସେ ନିଜ ପାଇଁ ନ ରଖି ତୁରନ୍ତ ବିମଳା ପାଖକୁ ପଠାଇ ଦେଇଛନ୍ତି ।

ବିମଳା କଷ୍ଟେ ମଷ୍ଟେ ଚଳେ । ବ୍ୟବସାୟରେ ତା'ର ସ୍ୱାମୀର ସେଭଳି କିଛି ଭଲ ରୋଜଗାର ନାହିଁ । ଗାଁରେ ବ୍ୟବସାୟରେ ବାକିକାଳି ନେଇ ଲୋକେ ପଇସା ବୁଡ଼େଇ ଦିଅନ୍ତି । ବ୍ୟବସାୟ ବା ଭଲ ଚାଲନ୍ତା କେମିତି ? ସେଥିଯୋଗୁ ବିମଳା ପାଇଁ ବାପାଙ୍କର ବେଶୀ ମନକଷ୍ଟ । ଯାହା ଟିକିଏ ଭଲ ଜିନିଷ ଆସେ ବାପା ତାହାରି ଘରକୁ ପଠାଇ ଦିଅନ୍ତି ।

କିଛି ନ ନେଇ ଘରକୁ ଆସିବାକୁ ବିମଳାକୁ ମାଡ଼ି ମାଡ଼ି ପଡୁଥିଲା । ଏତେ ଦିନ ପରେ ସେ ସାହସ ସଞ୍ଚୟ କରି ଆସିଛି । ନିଦ ଲାଗିଲା ନାହିଁ । ଉଠିପଡ଼ି ଟ୍ୟୁବ୍ ଲାଇଟ୍ ଲଗାଇଲି । ଖଟ ତଳେ ଗୋଟିଏ କୁଲାରେ କମଳା ସବୁ ରଖା ଯାଇଥିଲା । ଟ୍ୟୁବ ଲାଇଟ୍‌ର ତୋଫା ଆଲୁଅରେ ନାଗପୁରରୁ ଆସିଲା ବେଳେ ଈଷତ୍ ଶାଗୁଆ ଦିଶୁଥିବା କମଳାଗୁଡ଼ିକ ଏବେ ପାଚିଲା କୁଆମଇତା ପରି ଲାଲ ଟହ ଟହ ଦିଶୁଥିଲେ ।

ଏକ ସ୍ନେହର ତ୍ରିଭୁଜ ଭିତରେ ଗତିକରି କମଳାଗୁଡ଼ିକ ଆହୁରି ରସାଳ ଓ ଲୋଭନୀୟ ଦିଶୁଥିଲେ । ସେ ଭୁରୁଭୁରୁ ମହକରେ ମୁଁ ଅନେକ ରାତିଯାଏ ଶୋଇପାରି ନ ଥିଲି ।



# ନବଗୁଞ୍ଜର

## ପ୍ରଭାକର ସ୍ୱାଇଁ

ଶାଳ-ବୀଥିକାରେ ଅସରନ୍ତି ଫୁଲର ପସରା । ସମୀରଣର ମୃଦୁମନ୍ଦ ଗତିରେ ବନଭୂମି ଆମୋଦିତ । ମତୁଆଲା ମଧୁପର ଗୁଣୁଗୁଞ୍ଜନ ନୀରବ ବନଭୂମିରେ ସେଦିନ ଏକ ଅପୂର୍ବ ରାଗିଣୀ ସୃଷ୍ଟି କରୁଥିଲା । ସବୁଜ ବନାନୀର ଘନଛାୟା ଭେଦକରି ଚୂନା ଚୂନା ସୂର୍ଯ୍ୟରଶ୍ମି ଝରାଫୁଲ ପରି ଭୂମିରେ ବିଛାଡ଼ି ହୋଇପଡ଼ିଥିଲା । ଘନ ବନାନୀର ଅପୂର୍ବ ଶୋଭାରେ ସେଦିନ ମଜ୍ଜି ଯାଇଥିଲେ କିରାତବେଶୀ ତୃତୀୟ ପାଣ୍ଡବ । ଚାରିବର୍ଷ ଛଅମାସ ତେରଦିନ ହେଲା ହସ୍ତିନା ଛାଡ଼ି ସେ ବନକୁ ଆସିଲେଣି । ମୁଣ୍ଡରେ ତାଙ୍କର ମୟୁର ଝାଲି । କଣ୍ଠରେ ଗୁଞ୍ଜାର ମାଳି । ସର୍ବାଙ୍ଗରେ ଗୋପିଚନ୍ଦନଚିତା । ହାତରେ ତାଙ୍କର କଣ୍ଟା ବାଉଁଶ ଗୁଣ ଲାଗିଥିବା ଧାମଣା କାଠର ଧନୁ । କିରାତ ବେଶ ଧରି ସେ ବଣରୁ ବଣକୁ ବୁଲିଛନ୍ତି । କେତେ ନୂତନ ଦୃଶ୍ୟ ସେ ଦେଖିଛନ୍ତି । କେତେ ଅଭିଜ୍ଞତା ସେ ହାସଲ କରିଛନ୍ତି; ହେଲେ ସେଦିନ ମଣିଭଦ୍ରା ପର୍ବତରେ ସେ ପରିବେଶ ତାଙ୍କୁ ବେଶ୍ ମୁଗ୍ଧ ଓ ଚକିତ କରିଥିଲା । ପ୍ରକୃତିର ଅସରନ୍ତି ସୁଷମାକୁ ଉପଭୋଗ କରୁ କରୁ ସେ ନିଜକୁ ସେଠି ହଜାଇ ଦେଇଥିଲେ । ନିଜର ଦୈନନ୍ଦିନ କର୍ତ୍ତବ୍ୟ ସେହିଠାରେ ସମାପନ କରିବା ନିମିତ୍ତ ସେ ନିଜର ଅଜାଣତରେ ଏକ ମର୍କତ ଶୀଳା ଉପରେ ଉପବେଶନ କରିଥିଲେ । ଅଗୁରୁ ବୃକ୍ଷ ଓ ବେଣୁ ବୃକ୍ଷରେ ସେଦିନ ଧନୁଗୁଣର ଦୁଇମୁଣ୍ଡକୁ ବାନ୍ଧି ତାକୁ ସେ ବାରମ୍ବାର ମାଜି ଚାଲିଥାନ୍ତି । ମୁନିଋଷି ତପସ୍ୟାରେ ନିମଗ୍ନ ଥିବାଭଳି ଅର୍ଜୁନ ଧନୁରେ ନୂତନ ଗୁଣ ସଂଯୋଗ ପାଇଁ ଗୁଣ ପ୍ରସ୍ତୁତରେ ବ୍ୟସ୍ତ । କୁଆଡ଼େ ହେଲେ ତାଙ୍କର ନଜର ନାହିଁ ।

ଏହିପରି କିଛି ସମୟ ବିତିଯାଇଛି । ବେଣୁକୁଞ୍ଜର ଶବ୍ଦ ସହିତ ଖରଖର ନାଚର ପଦଧ୍ୱନି ବାରମ୍ବାର ତାଙ୍କ କର୍ଣ୍ଣପଟହକୁ ଥରାଇ ଦେଲା । କୌଣସି ଏକ ଜୀବ କ୍ଷଣେ ମାତ୍ର ତାଙ୍କ ସମ୍ମୁଖରେ ହଲି ଦୋହଲି ନାଚି, ପୁଣି ଦ୍ରୁମ ଗହଳରେ ଅନ୍ତର୍ଦ୍ଧାନ ହୋଇଯାଉଥିଲା । ଗୁଣ ଉପରୁ ହସ୍ତ ଉଠାଇ ସେଇଆଡ଼େ ଦୃଷ୍ଟିପାତ କଲେ ସବ୍ୟସାଚୀ । ଆଃ ! କି ବିଚିତ୍ର ସେ ନୃତ୍ୟ । ନୃତ୍ୟରେ ତିନୋଟି ପାଦ ନିବଦ୍ଧ । ଅନ୍ୟ ପାଦଟି ମଣିଷର ହସ୍ତ ପରି । ତହିଁରେ ପୁଣି ପଦ୍ମଫୁଲ ଧାରଣ କରି ଅପୂର୍ବ ଭଙ୍ଗୀରେ ସେ ନୃତ୍ୟରତ । ଆଶ୍ଚର୍ଯ୍ୟ ହେଲେ ଇନ୍ଦ୍ରସୁତ । କି ବିଚିତ୍ର ଏ ଜୀବ ! ସେ ସ୍ୱପ୍ନ ଦେଖୁନାହାନ୍ତି ତ ? ଦୁଇ ହସ୍ତରେ ଚକ୍ଷୁ ମଳି ପୁନଶ୍ଚ ସେ ଦୃଷ୍ଟିପାତ କଲେ । ନା, ସେ ଜାଗ୍ରତ । ଦୁଇ ଆଖି ମେଲି ଯାହା ଦେଖୁଛନ୍ତି ତାହା ସତ୍ୟ, ମାତ୍ର ଭାରତର ବିଭିନ୍ନ ଗିରି, ବନ, କାନ୍ତାର ଭ୍ରମଣ କରି ସେ ଏପରି ବିଚିତ୍ର ଜୀବ କେଉଁଠି ହେଲେ ଦେଖିନାହାନ୍ତି । ଅଦ୍ଭୁତ ସେ ପଶୁ- ପଶୁଟିର ମସ୍ତକ ଏବଂ ଗ୍ରୀବା ମୟୁର ପରି । ମସ୍ତକରେ କୁକ୍‌କୁଟର ଚୂଳ । ଦେହ ସିଂହ ପରି । ଦେହର ଉପର ଭାଗରେ ବୃଷଭର କୁବ୍‌ଜ । ପୃଷ୍ଠଭାଗର ଦକ୍ଷିଣଟି ଅଶ୍ୱପାଦ ଏବଂ ବାମଟି ବ୍ୟାଘ୍ର ପାଦ । ଅଗ୍ରଭାଗର ବାମ ପାଦଟି ହସ୍ତୀପାଦ ଏବଂ ଦକ୍ଷିଣଟି କମଳ ଧାରଣ କରିଥିବା ଏକ ମନୁଷ୍ୟର ହସ୍ତ । ସର୍ପର ପୁଚ୍ଛ ଶୋଭାପାଉଛି । ନଅଟି ପଶୁଙ୍କର ଅଙ୍ଗକୁ ନେଇ ଗଠିତ ଏପରି ଅଦ୍ଭୁତ ଜୀବ ସେ ଆଗରୁ କେବେ ଦେଖିନାହାନ୍ତି । ସମ୍ପୂର୍ଣ୍ଣ ରୂପେ ଗୁଣଟିକୁ ଛାଡ଼ି ସେ ଲକ୍ଷ୍ୟ କଲେ

ନର୍ତ୍ତକଙ୍କୁ । ଅପୂର୍ବ ଦିବ୍ୟମୂର୍ତ୍ତି, ଦୁର୍ଲ୍ଲଭ ସେ ରୂପ । ପୁଣି ସେ ନୃତ୍ୟର ଉପମା ନାହିଁ । ଷୋଳ ସହସ୍ର ଗୋପାଙ୍ଗନାଙ୍କୁ ପାଗଳ କଲାଭଳି ସେ ନୃତ୍ୟ ।

ବେଳେବେଳେ ଜୀବଟା କୁଦାମାରି ଅର୍ଜୁନଙ୍କ ଉପରକୁ ଡେଇଁ ଯାଉଛି ତ ପୁଣି ବେଳେବେଳେ ହଲି ଦୋହଲି ଲତାକୁଞ୍ଜରେ ଲୁଚି ଯାଉଛି । ଚିନ୍ତାମଗ୍ନ ହେଲେ ତୃତୀୟ ପାଣ୍ଡବ । କ'ଣ ସେ କରିବେ ? କେତେ ସମୟ ବା ଚୁପ୍ ହୋଇ ବସିବେ ? କରିବା ନ କରିବାର ଦ୍ୱନ୍ଦ୍ୱ ମଧ୍ୟରେ ମ୍ରିୟମାଣ ହୋଇ ସେ ଚକ୍ଷୁ ଉନ୍ମିଳିତ କଲେ । କ'ଣ ବା ସେ ହୋଇପାରେ ? ହୋଇପାରେ ମାୟାଧର । ମାୟାରୂପ ଧାରଣ କରି ପରୀକ୍ଷା କରିବାକୁ ଉପନୀତ, ଅଥବା କେହି ମନ୍ଦ ଅଭିପ୍ରାୟ ଘେନି ତାଙ୍କୁ ଧ୍ୱଂସ କରିବା ପାଇଁ ଉପଗତ । ତାହାହେଲେ କ'ଣ ସେ କରିବେ ? ସଂଗେ ସଂଗେ ଏକ ଉପାୟ ସେ ସ୍ଥିର କରିନେଲେ । ସେହି ଅଦ୍ଭୁତ ଜୀବଟିର ପାଦ ତଳେ ସାଷ୍ଟାଙ୍ଗ ପ୍ରଣିପାତ କରି ଅର୍ଜୁନ ଭଗବାନ ଶ୍ରୀକୃଷ୍ଣଙ୍କୁ ସ୍ତୁତି କରିବାରେ ଲାଗିଗଲେ । ଅଭିପ୍ରାୟ– ଜୀବଟି ମନ୍ଦ ଉଦ୍ଦେଶ୍ୟ ଘେନି ଆସିଥିଲେ ସଂଗେ ସଂଗେ ଭସ୍ମ ହୋଇଯିବ । ପଶୁ ନ ହୋଇ ଯଦି ଭଗବାନ ଶ୍ରୀକୃଷ୍ଣ ପରୀକ୍ଷା କରିବା ନିମିତ୍ତ ଉପଗତ ହୋଇଥାନ୍ତି,ତେବେ ସେ ଶ୍ରୀକୃଷ୍ଣଙ୍କର କରୁଣା ଲାଭ କରିବେ । ଠିକ୍ ତାହା ହିଁ ହେଲା । ଆଖି ପିଛୁଳାକେ ଏକ ବିରାଟ ପରିବର୍ତ୍ତନ ଘଟିଲା । ସେହି ବିଚିତ୍ର ମୂର୍ତ୍ତି ବଦଳରେ ଅର୍ଜୁନ ନିଜ ସଖା ଶଙ୍ଖଚକ୍ରଧାରୀ ଶ୍ରୀକୃଷ୍ଣଙ୍କୁ ଦେଖିଲେ ।

ହସହସ ମୁଖରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କୋଳକୁ ଟୋଳି ନେଇ କହିଲେ– "ତୁମକୁ ଭୁଲି ମୁଁ କ'ଣ ରହିପାରିବି ଧନଞ୍ଜୟ ? ତୁମେ ମୋ ପ୍ରାଣର ସଖା– ମୋର 'ଦିତି' ରୂପ ।" ଅର୍ଜୁନଙ୍କ ଆଖିରୁ ବହିଯାଉଥାଏ ଧାର ଧାର ଅଶ୍ରୁ । କହିଚାଲିଥାନ୍ତି ଶ୍ରୀକୃଷ୍ଣ । ଦ୍ୱାରକା ଛାଡ଼ି ସେ ଦିନେ ଆସି ପହଞ୍ଚିଲେ ହସ୍ତିନାପୁରରେ । ରାଜକର୍ମଚାରୀମାନେ ତାଙ୍କୁ ଆଦରରେ ପାଛୋଟି ନେଲେ । ଶ୍ରୀକୃଷ୍ଣ ଚାଲିଲେ ଧର୍ମସୁତ ଯୁଧିଷ୍ଠିରଙ୍କ ପାଖକୁ । ସେତେବେଳେ ଆସ୍ଥାନ ଉପରେ ବିଜେ କରିଥିଲେ ଯୁଧିଷ୍ଠିର । ଶ୍ରୀକୃଷ୍ଣ ତାଙ୍କୁ ଭେଟି ପ୍ରଣାମ କଲେ । ଯୁଧିଷ୍ଠିର ଆଶୀର୍ବାଦ କଲେ ଶ୍ରୀକୃଷ୍ଣଙ୍କୁ । ଯୁଧିଷ୍ଠିର ମଧ୍ୟ ପ୍ରଣାମ କଲେ ପକ୍ଷୀରାଜ ଗରୁଡ଼ଙ୍କୁ । ମଣିମାଣିକ୍ୟ ଖଚିତ ବହୁମୂଲ୍ୟ ଆସନରେ ଉପବେଶନ କଲେ ଶ୍ରୀକୃଷ୍ଣ । ସମ୍ମୁଖରେ ସମସ୍ତେ ଉପସ୍ଥିତ; ମାତ୍ର ସଖା ଅର୍ଜୁନ କାହାନ୍ତି ? ଯୁଧିଷ୍ଠିରଙ୍କୁ ଲକ୍ଷ୍ୟ କରି ଅର୍ଜୁନଙ୍କ ସମ୍ବନ୍ଧରେ ପ୍ରଶ୍ନ କଲେ ଶ୍ରୀକୃଷ୍ଣ ।

ନୀରବ ଧର୍ମ ଯୁଝେଷ୍ଠି । ଅକ୍ଷମ ସେ ଉତ୍ତର ଦେବାକୁ । ପ୍ରଶ୍ନିଳ ଆଖିରେ ଚତୁର୍ଦ୍ଦିଗକୁ ଚାହିଁଲେ ଶ୍ରୀକୃଷ୍ଣ । କିଏ ଦେବ ତାଙ୍କ ସଖାର ଠିକ୍ ସମ୍ବାଦ । ଶୋକ ଗଦ୍‌ଗଦ୍ କଣ୍ଠରେ ମାତା କୁନ୍ତୀ ବୟାନ କଲେ ପୁତ୍ରର ବନବାସ । ଆଶ୍ଚର୍ଯ୍ୟ ହେଲେ ଶ୍ରୀକୃଷ୍ଣ । କେଉଁଥିପାଇଁ ପୁଣି ବନବାସ । ଜ୍ୟେଷ୍ଠପୁତ୍ର ଯୁଝେଷ୍ଠିଙ୍କ ଆଜ୍ଞାରେ ସହଦେବ ନିର୍ଜନ ସ୍ଥାନରେ ଶ୍ରୀକୃଷ୍ଣଙ୍କ ସମ୍ମୁଖରେ ବର୍ଣ୍ଣନା କଲେ ଅର୍ଜୁନଙ୍କ ବନବାସର କାରଣ । କରଯୋଡ଼ି ସହଦେବ କହିଲେ– "ଭୀମ ଠାକୁରେ ବଳରେ ଯେପରି, ଭକ୍ଷଣରେ ଯେପରି, ମୈଥୁନରେ ମଧ୍ୟ ତତୋଧିକ । ତାଙ୍କରି ଯୋଗୁଁ ଆମେ ପାଞ୍ଚଭାଇ ଅଗ୍ନିକୁ ସାକ୍ଷୀ ରଖି ନିୟମ କରିଥିଲୁ ଯେ ଦ୍ରୁପଦ ନନ୍ଦିନୀଙ୍କ ସହିତ ଜଣେ ଅନ୍ତଃପୁରରେ ଥିବାବେଳେ ଅନ୍ୟ ଜଣେ ସେଠାକୁ ଯିବେ ନାହିଁ । ଅନ୍ତଃପୁରକୁ ଯିବାବେଳେ ସମସ୍ତେ ନିଜ ନିଜର ସନ୍ତକ ଦ୍ୱାରମୁହଁରେ ରଖି ଯିବେ । ଏହା ସତ୍ତ୍ୱେ ଯଦି ଜାଣିଶୁଣି କେହି ଯାଏ, ତେବେ ତାକୁ ବାରବର୍ଷ ବଣକୁ

ଯିବାକୁ ପଡ଼ିବ । ଏହିପରି ପାଞ୍ଚବର୍ଷ କଟିଗଲା । ସମସ୍ତେ ନିଜ ନିଜର କର୍ତ୍ତବ୍ୟ ପାଳନ କରି ଆସୁଥିଲେ ।

ପାଣ୍ଡବଙ୍କ ପାଇଁ ସେ ଏକ ଦୁଃସମୟ ଥିଲା । ସେଦିନ ବଡ଼ଠାକୁରେ ଅନ୍ତଃପୁରରେ ଦ୍ରୌପଦୀଙ୍କ ସହିତ ରତିରଙ୍ଗରେ ମାତିଥାନ୍ତି । ସଂକେତ ସ୍ୱରୂପ ଦ୍ୱାରମୁହଁରେ ପାଣ୍ଡୋଇ ଥାଏ । ଏହି ସମୟରେ ଅଗ୍ନିଦେବତା ବ୍ରାହ୍ମଣ ରୂପରେ ଅର୍ଜୁନଙ୍କ ଆଗରେ ଉପନୀତ ହେଲେ, କଣ୍ଠରୁ ତାଙ୍କର ନିର୍ଗତ ହେଉଥାଏ ସୁଲଳିତ ବେଦଧ୍ୱନି । ଅର୍ଜୁନ ଠାକୁରେ ବ୍ରାହ୍ମଣଙ୍କୁ ଯଥାବିଧି ସତ୍କାର କଲେ, ମାତ୍ର ବ୍ରାହ୍ମଣଙ୍କ ଉଦ୍ଦେଶ୍ୟ ଭିନ୍ନ ଥିଲା । ଅର୍ଜୁନଙ୍କ ପୂଜାର୍ଚ୍ଚନାରେ ସେ ସନ୍ତୁଷ୍ଟ ନ ହୋଇ ସେଇ ମୁହୂର୍ତ୍ତରେ ଯୁଧିଷ୍ଠିରଙ୍କ ସହିତ ଦେଖା କରିବାକୁ ଚାହିଁଲେ । ତୃତୀୟ ପାଣ୍ଡବ ତାଙ୍କୁ ବିନୟୀ ହୋଇ ଟିକିଏ ଅପେକ୍ଷା କରିବାକୁ କହିଲେ । କିନ୍ତୁ ବ୍ରାହ୍ମଣ ଅପେକ୍ଷା କରିବାକୁ ପ୍ରସ୍ତୁତ ନଥିଲେ । ରାଗରେ ତମତମ ହୋଇ 'ଷଡ଼' ନିଃଶ୍ୱାସ ମଧ୍ୟରେ ଯୁଧିଷ୍ଠିରଙ୍କ ଉପସ୍ଥିତି ସେ ଚାହୁଁଥିଲେ । ସେଥିରୁ ଅନ୍ୟଥା ହେଲେ ନିଜର କୋପଦୃଷ୍ଟିରେ ସେ ସମଗ୍ର ରାଜ୍ୟକୁ ଭସ୍ମ କରିଦେବାର ଭୟ ମଧ୍ୟ ଦେଖାଇଲେ ।

ଆଶ୍ଚର୍ଯ୍ୟ ହେଲେ ଧନଞ୍ଜୟ ବ୍ରାହ୍ମଣର କଥା ଶୁଣି । ଜ୍ୟେଷ୍ଠଭ୍ରାତା ଅନ୍ତଃପୁରରେ ଦ୍ରୌପଦୀଙ୍କ ନିକଟରେ । ଏ ସମୟରେ ଗଲେ ବାରବର୍ଷ ବନବାସ । ନ ଗଲେ ବ୍ରାହ୍ମଣଙ୍କର କୋପଦୃଷ୍ଟିରେ ବଂଶ ସହିତ ରାଜ୍ୟ ନାଶ । କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲେ ବୀର ପାର୍ଥ । ଚିନ୍ତାକରି ପନ୍ଥା ନିର୍ଣ୍ଣୟ କରିବାକୁ ପଡ଼ିବ । ନିଜେ ପଛେ ବାରବର୍ଷ ବନବାସ କରନ୍ତୁ ବଂଶ ଓ ରାଜ୍ୟକୁ ଅଗ୍ନିଶର୍ମା ବ୍ରାହ୍ମଣ କୋପରୁ ରକ୍ଷା କରିବାକୁ ପଡ଼ିବ । ତେଣୁ ବାଧ୍ୟ ହୋଇ ଅନ୍ତଃପୁରକୁ ସେ ଗମନ କଲେ । ଇତ୍ୟବସରରେ ଦ୍ୱାରଦେଶରେ ଥିବା ବଡ଼ଠାକୁରଙ୍କ ପାଣ୍ଡୋଇକୁ ଅଗ୍ନିଦେବ ଶ୍ୱାନ ବେଶରେ ହରଣ କରିନେଇଥିଲେ । ସୁତରାଂ ସଙ୍କେତ ନ ଦେଖି ଅର୍ଜୁନ ଠାକୁରେ ଭିତରେ ପଶିଲେ । ବଡ଼ଠାକୁରେ ଥିଲେ ଦେବୀ ଦ୍ରୌପଦୀଙ୍କ ସଙ୍ଗରେ । ତାହା ଅନ୍ତଃପୁର ପ୍ରବେଶର ପୁରାପୁରି ନିଷିଦ୍ଧ ସମୟ ।

ଅର୍ଜୁନଙ୍କୁ ଦେଖି ଲଜ୍ଜିତ ହେଲେ ଯାଜ୍ଞସେନୀ । ଦୁଃଖିତ ହେଲେ ବଡ଼ଠାକୁରେ । ପୁଣି ଏକ ବିପଦ । ନିୟମ ଭଗ୍ନର ଅଭିପ୍ରାୟ ସେ ଜିଜ୍ଞାସା କରି ବସିଲେ । ଅପେକ୍ଷାରତ କ୍ରୋଧୀ ବ୍ରାହ୍ମଣର ସମସ୍ତ କଥା ଅର୍ଜୁନଠାକୁରେ ଯଥାଶୀଘ୍ର ଜ୍ୟେଷ୍ଠଭ୍ରାତାଙ୍କ ନିକଟରେ ବୟାନ କରି ଯୁଧିଷ୍ଠିରଙ୍କ ସହ ଫେରିଆସିଲେ ବ୍ରାହ୍ମଣ ନିକଟକୁ, ମାତ୍ର ସେଠାରେ କେହି ନଥିଲେ । ଅଗ୍ନିରୂପୀ ବ୍ରାହ୍ମଣ ଅନ୍ତର୍ଦ୍ଧାନ ହୋଇସାରିଥିଲେ ସମସ୍ତଙ୍କ ଅଗୋଚରରେ । ଅନୁଜମାନଙ୍କ ସହିତ ଯୁଧିଷ୍ଠିର ଅନେକ ଖୋଜାଖୋଜି କଲେ, ହେଲେ ବ୍ରାହ୍ମଣର କିଛି ସନ୍ଧାନ ମିଳିଲା ନାହିଁ ।

ମାୟାରୂପୀ ବ୍ରାହ୍ମଣ ସିନା ଅନ୍ତର୍ଦ୍ଧାନ ହୋଇଗଲେ, ମାତ୍ର ଅର୍ଜୁନ ଯେଉଁ ଭୁଲ୍ କଲେ ତା'ର ପ୍ରାୟଶ୍ଚିତ୍ତ ତାଙ୍କୁ କରିବାକୁ ପଡ଼ିବ । ବାରବର୍ଷ ବନବାସ । ଅର୍ଜୁନଙ୍କ ବନଗମନ କଥା ଶୁଣି ଦେବୀ ଦ୍ରୌପଦୀ ବାହାରିଲେ ତାଙ୍କ ସହିତ ବନବାସ ପାଇଁ କାରଣ ବୀର ଅର୍ଜୁନ ହିଁ ଲାଖବିନ୍ଧି ତାଙ୍କୁ ଆଣିଛନ୍ତି । ତେଣୁ ଦ୍ରୌପଦୀଙ୍କ ଉପରେ ତାଙ୍କର ବେଶି ଅଧିକାର । ଦ୍ରୌପଦୀ ଜିଦ୍ ଧରି ବସିଲେ—ରାମଙ୍କ ସହିତ ସୀତା ଓ ନଳଙ୍କ ସହିତ ଦମୟନ୍ତୀ ବନଗମନ କଲାପରି ସେ ଅର୍ଜୁନଙ୍କ ସହିତ ବନକୁ ଯିବେ । ହେଲେ ଅର୍ଜୁନ ତାଙ୍କୁ ନେବାକୁ ରାଜି ହେଲେ ନାହିଁ । ସେ କହିଲେ– "ନିଜର କଲାକର୍ମ ଅନ୍ୟ କିଏ କାହିଁକି ବା ଭୋଗ କରିବ ?" ସ୍ତ୍ରୀଙ୍କୁ ସାଙ୍ଗରେ ନେଇ ବନବାସ କରିଥିବାରୁ ଉଭୟେ ରାମ ଓ ନଳ ବିପଦରେ ପଡ଼ିଥିଲେ । ସୁତରାଂ ଦ୍ରୌପଦୀ ହସ୍ତିନାରେ

ରହିବେ । ସେ ଏକାକୀ ବନକୁ ଯିବେ । ବନବାସ ତାଙ୍କ ପାଇଁ ନୂଆ ନୁହେଁ, ବାରବର୍ଷ ଦେଖୁ ଦେଖୁ ସରିଯିବ ।

ବଡ଼ଠାକୁରେ ଅର୍ଜୁନଙ୍କୁ ବାରଣ କଲେ ବନବାସ ପାଇଁ । କାରଣ ଯାହା ଘଟିଗଲା, ସେଥିରେ ଅର୍ଜୁନଙ୍କର ଟିକିଏ ହେଲେ ଦୋଷ ନଥିଲା, ହେଲେ ତୃତୀୟପାଣ୍ଡବ ତାହା କର୍ଣ୍ଣପାତ କଲେ ନାହିଁ । ସେ ଜିଦ୍ ଧରିଲେ ଥରେ ଯେତେବେଳେ ସତ୍ୟ କରିଛନ୍ତି, ସେ ସତ୍ୟଭ୍ରଷ୍ଟ ହେବେ ନାହିଁ । ଯୁଝେଷ୍ଠି ଦେବ ନିରୁପାୟ ହୋଇ କହିଲେ– "ଯେବେ ବନକୁ ଯିବୁ, ତେବେ ବେଶି ଦୂରକୁ ଯିବୁ ନାହିଁ । ନିକଟରେ ରହିଲେ ମୁଁ ସବୁଦିନ ତୋ ଖବର ପାଇବି ।"

କାନ୍ଦି କାନ୍ଦି ଜନନୀ କୋଇନ୍ତା ଅସାଷ୍ଟାମ ହେଲେ । ଭୀଷ୍ମ, ଦ୍ରୋଣ, ବିଦୁର ଖବର ପାଇ ଆସି ପହଞ୍ଚିଲେ । ସମସ୍ତଙ୍କ ଦୃଷ୍ଟି ମୋ ଉପରେ । ସମସ୍ତଙ୍କର ମୋତେ ଗୋଟିଏ ପ୍ରଶ୍ନ– 'କୁହ ସହଦେବ ସେ ବ୍ରାହ୍ମଣ କିଏ ?' ମୁଁ କରତଳକୁ ଅନାଇଲି । କହିଲି– ଶହେବର୍ଷ ପର୍ଯ୍ୟନ୍ତ ଶ୍ୱେତରାଜା ହୋମ କଲେ । ହେ ହୋମରେ ବହୁତ ଘିଅ ଆହୁତି ଦିଆଗଲା । ବୈଶ୍ୱାନର ନିଜର ଲୋଭ ସମ୍ଭାଳି ନ ପାରି ଅନେକ ମହଣ ଘିଅ ଖାଇଗଲେ । ସେଇଥିପାଇଁ ସେ ପୀଡ଼ିତ ହେଲେ ଲୁଦୁବୁଦୁ ବ୍ୟାଧିରେ । ରୋଗର ତୀବ୍ର ଯନ୍ତ୍ରଣାରେ ଅଗ୍ନି ଅସ୍ତବ୍ୟସ୍ତ ହେଲେ । ରୋଗମୁକ୍ତ ହେବା ନିମିତ୍ତ ସେ ଦେବବୈଦ୍ୟଙ୍କ ପରାମର୍ଶ ଲୋଡ଼ିଲେ । ବୈଦ୍ୟ କହିଲେ ସେ ରୋଗର ଔଷଧ ଖାଣ୍ଡବ ବନରେ ଅଛି । ତାହା ଖାଇଲେ ଅଗ୍ନିଦେବ ଆରୋଗ୍ୟ ହେବେ ।

ଅଗ୍ନିଦେବ ଇନ୍ଦ୍ରଙ୍କୁ ଔଷଧ ମାଗିଲେ, ମାତ୍ର ଇନ୍ଦ୍ର ବାରଣ କଲେ ଖାଣ୍ଡବବନ ଦେବା ପାଇଁ । ପୁନଶ୍ଚ ଖାଣ୍ଡବବନର ସୁରକ୍ଷା ପାଇଁ ମେଘମାନଙ୍କୁ ଡାକି ଇନ୍ଦ୍ର ଖାଣ୍ଡବବନର ଚତୁର୍ଦ୍ଦିଗକୁ ଜଗାଇ ଦେଇଛନ୍ତି, ଯାହା ଫଳରେ ଅଗ୍ନି ଖାଣ୍ଡବ ବନ ଆଡ଼କୁ ଯିବା ମାତ୍ରେ ସେମାନେ ଜଳଦ୍ୱାରା ଅଗ୍ନିକୁ ନିର୍ବାପିତ କରିଦେଉଛନ୍ତି । ଅଗ୍ନିଦେବ ଏବେ କର୍ତ୍ତବ୍ୟଶୂନ୍ୟ ।

ତିନିଯୁଗ ହେଲାଣି ଅନଳଦେବ ମନ୍ଦାଗ୍ନିରେ ପୀଡ଼ିତ । ଅର୍ଜୁନ ହେଉଛନ୍ତି ଏକମାତ୍ର ବ୍ୟକ୍ତି ଯିଏ ଇନ୍ଦ୍ରଙ୍କୁ ପରାଭୂତ କରି ଅଗ୍ନିଦେବଙ୍କୁ ସାହାଯ୍ୟ କରିପାରିବ । ଅର୍ଜୁନ ବନବାସ କଲେ ଅଗ୍ନି ତାଙ୍କୁ ବ୍ରାହ୍ମଣ ବେଶରେ ବର ମାଗିବେ । ସୁତରାଂ ଅଗ୍ନିଦେବ କପଟ ବେଶରେ ଆସି ଏତେବଡ଼ ଘଟଣା ଘଟାଇ ଅନ୍ତର୍ଦ୍ଧାନ ହୋଇଗଲେ ।

ସେଠାରୁ ଏକଥା ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ସେମାନେ କହିଲେ ଅର୍ଜୁନଙ୍କ ଯୋଗୁଁ ଯଦି ଅଗ୍ନିଦେବ ଆରୋଗ୍ୟ ଲାଭ କରନ୍ତି ତେବେ ଅର୍ଜୁନଙ୍କୁ ବଣରେ ବିପତ୍ତି ନାହିଁ ।

ଦୁର୍ଯ୍ୟୋଧନଙ୍କ ହାତରେ ଭାଇମାନଙ୍କୁ ସମର୍ପି, ଦ୍ରୌପଦୀଙ୍କୁ ଜନନୀ କୋଇନ୍ତାଙ୍କୁ ଦେଇ, ଅନ୍ୟମାନଙ୍କଠାରୁ ହସ ହସ ମୁଖରେ ବିଦାୟ ନେଇ ଅର୍ଜୁନ ଠାକୁରେ ବନଗମନ କଲେ । ସହଦେବଙ୍କ ମୁଖରୁ ସଖା ଅର୍ଜୁନଙ୍କ ସମ୍ବାଦ ନୀରବରେ ଶୁଣିଚାଲିଥାନ୍ତି ଜଗତର କର୍ତ୍ତା ଶ୍ରୀକୃଷ୍ଣ । କହିଚାଲିଥାନ୍ତି କନିଷ୍ଠ ପାଣ୍ଡବ ସହଦେବ... ।

ଆଜିକୁ ଠିକ୍ ଚାରିବର୍ଷ ଛଅମାସ ତେର ଦିନ ହୋଇଗଲା ଅର୍ଜୁନ ଠାକୁରଙ୍କ ବନବାସ । କିରାତର ବେଶ ଧରି ସେ ବଣରୁ ବଣକୁ, ପର୍ବତରୁ ପର୍ବତକୁ ଘୂରି ବୁଲୁଛନ୍ତି । ବନ ମଧ୍ୟରେ ଅନେକ ଦୁଷ୍ଟ ରାକ୍ଷସ ସେ ନିଧନ କରିସାରିଲେଣି । ହର-ଉଦ୍ୟାନ-ବନରେ ଈଶ୍ୱରଙ୍କୁ ଜିଣି ପାଶୁପତ ଅସ୍ତ୍ର ଓ ଅକ୍ଷୟ ତ୍ରୋଣ ସେ ଲାଭ କରିଛନ୍ତି । ବର୍ତ୍ତମାନ ସେ ମଣିଭଦ୍ରା ପର୍ବତରେ ଏକ ମର୍କତଶିଳା ଉପରେ ଅବସ୍ଥାନ କରି ଧନୁର ଗୁଣ ମାଜୁଛନ୍ତି ।

ଭୂତ-ଭବିଷ୍ୟତ-ଜ୍ଞାତା ସହଦେବଙ୍କଠାରୁ ଅର୍ଜ୍ଜୁନ ସମ୍ବାଦ ଶୁଣି ଶ୍ରୀକୃଷ୍ଣଙ୍କ ଗମ୍ଭୀର ମୁଖମଣ୍ଡଳରେ ଏକ କ୍ଷୀଣହାସ୍ୟର ଛଟା ଦେଖାଦେଇ ଉଭେଇଗଲା । ଆଶ୍ଚର୍ଯ୍ୟ ହେଲେ ପଞ୍ଚମ ପାଣ୍ଡବ । ଶ୍ରୀକୃଷ୍ଣ- ଇଚ୍ଛାମୟ ପୁରୁଷ । ତାଙ୍କରି ନିର୍ଦ୍ଦେଶରେ ଚନ୍ଦ୍ର ସୂର୍ଯ୍ୟ ଆତଯାତ । ଜୀବଜଗତ ସୃଷ୍ଟି, ବିଲୟ । ଜଗତ ଜାଣେ ଦୁହେଁ ସଖା । ସଖାର ବନବାସରେ ଶ୍ରୀକୃଷ୍ଣଙ୍କ ମୁଖରେ ହାସ୍ୟରେଖା । ଆଚମ୍ୱିତ ହେଲେ ସହଦେବ ! ଗରୁଡ଼ ପିଠିରେ ଚଢ଼ି ସଖାଙ୍କୁ ଖୋଜି ବାହରିଲେ ଶ୍ରୀକୃଷ୍ଣ ।

x x x x x x

ଦିଗନ୍ତବିସ୍ତାରୀ ସବୁଜ ବନାନୀର କୋଳରେ ଶୋଭା ପାଉଥିଲେ ଦୁଇ ସଖା– ଶ୍ରୀକୃଷ୍ଣ ଓ ଅର୍ଜୁନ । ବିଶ୍ୱନିୟନ୍ତା ଭଗବାନ ଶ୍ରୀକୃଷ୍ଣଙ୍କ ଲୀଳା ଦେଖି ଆଚମ୍ୱିତ ହେଉଥିଲେ ଧନଞ୍ଜୟ । ଆଖିରୁ ତାଙ୍କର ବହିଯାଉଥିଲା ଧାର ଧାର ଅଶ୍ରୁ । ବଣଜଙ୍ଗଲରେ ବୁଲି ସଖାଙ୍କୁ କଷ୍ଟ ହେଉଥିବ ଭାବି ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଦ୍ୱାରାବତୀପୁରକୁ ଯିବାକୁ ପ୍ରବର୍ତ୍ତାଉଥାନ୍ତି ! ଶ୍ରୀକୃଷ୍ଣଙ୍କ ମମତାବୋଳା କଥା ଅର୍ଜୁନଙ୍କ ହୃଦୟକୁ ଆନ୍ଦୋଳିତ କରୁଥାଏ । ସତ୍ୟରକ୍ଷା ପାଇଁ ସେ ସ୍ୱଇଚ୍ଛାରେ ବନବାସ କରିଥିବା ହେତୁ ସେ ଦ୍ୱାରାବଦି ଯିବାକୁ ଅନିଚ୍ଛୁକ ଥିଲେ । ସୁତରାଂ ଶ୍ରୀକୃଷ୍ଣଙ୍କୁ ସେ କହିଲେ– 'ହେ ଭଗବାନ ! ବନବାସରେ ମୋତେ ଦୁଃଖ ନାହିଁ; ପାର୍ଥିବ ସଂସାରର ବହୁ ଦୂରରେ ଏହି ବଣ ଜଂଗଲର ଶାନ୍ତିମୟ ପରିବେଶରେ ଯେଉଁ ସୁଖ ମିଳେ, ସେ ସୁଖ କ'ଣ ରାଜଉଆସରେ ସମ୍ଭବ ? ସେଥିପାଇଁ ସଂସାର ତ୍ୟାଗ କରି କେତେ ମୁନିଋଷି ଯୋଗସାଧନା ନିମିତ୍ତ ଏହି ଗିରି କନ୍ଦରକୁ ଆସିଥାନ୍ତି । ତେଣୁ ବନବାସକୁ ମୁଁ କଷ୍ଟ ବୋଲି ଭାବୁ ନାହିଁ । ସେଥିରେ ମୋର ମଧ୍ୟ ଦୁଃଖ ନାହିଁ । ମୋର ଦୁଃଖ, ବଣିଆ ଯେପରି ସୁନାକୁ ଥରକୁ ଥର କଷଟି ପଥରରେ କଷିଥାଏ, ମୋର ସଖା ସେହିପରି ନିଜକୁ ଭିନ୍ନ ରୂପେ ସଜାଇ ବାରମ୍ବାର ମୋତେ ପରୀକ୍ଷା କରିଚାଲିଛନ୍ତି ।'

ଅର୍ଜୁନଙ୍କ ସରଳ ସତ୍ୟ କଥାରେ ଶ୍ରୀକୃଷ୍ଣଙ୍କ ହୃଦୟ ଟିକିଏ ଦ୍ରବିଭୂତ ହୋଇଗଲା । ଶ୍ରୀକୃଷ୍ଣ କହିଲେ– 'କୌତୁହଳବଶତଃ ସଖା ନିକଟରେ ମୁଁ ଏକ ନୂତନ ରୂପ ଧାରଣ କରିଥିଲି । ଦେଖୁଥିଲି ସଖା ମୋର ଏ ଅଦଭୁତ ରୂପରେ ମୋତେ ଚିହ୍ନିପାରୁଛନ୍ତି ନା ନାହିଁ ।'

ସେଦିନ ଥିଲା ଚୈତ୍ର କୃଷ୍ଣ ତ୍ରୟୋଦଶୀ । ଗଙ୍ଗାରେ ମହାବାରୁଣୀ ଯୋଗ ପଡ଼ିଥାଏ । ଦୁଇସଖା ଇଚ୍ଛା କରିଥାନ୍ତି ଗଙ୍ଗାରେ ସ୍ନାନ କରିବେ ମାତ୍ର ଗଙ୍ଗା ଯେ ବହୁ ଦୂରରେ । ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ଅର୍ଜୁନ ମନ୍ତ୍ର ପଢ଼ି ଧନୁରେ ସୁରତରଙ୍ଗ ଶର ସନ୍ଧାନ କଲେ ଗଙ୍ଗାଙ୍କ ନିକଟକୁ । ଗଙ୍ଗା ଜାଣିଲେ ହରିଙ୍କ ଆଜ୍ଞାରେ ଅର୍ଜୁନ ଶର ପ୍ରେରଣ କରିଛନ୍ତି ତାଙ୍କ ନିକଟକୁ । ତାଙ୍କୁ ଯିବାକୁ ହିଁ ହେବ । ଶର ବାଟ କଢ଼ାଇଲା ଆଗେ ଆଗେ । ପତିତପାବନୀ ଗଙ୍ଗା ଚାଲିଲେ ପଛେ ପଛେ । ଶ୍ୱେତକଳ୍ପବୃକ୍ଷର କୋଟର ବିଦ୍ଧ କରି ଶର ବାହାରି ଆସନ୍ତେ ଗଙ୍ଗା ଶରର ପଛେ ପଛେ ନିର୍ଗତ ହେବାକୁ ଲାଗିଲେ ।

ଗଙ୍ଗାଙ୍କୁ ଦେଖି ଦୁଇସଖା ଆନନ୍ଦରେ ଉଦ୍‌ବେଳିତ ହୋଇ ପଡୁଥାନ୍ତି । ପବିତ୍ର ଗଙ୍ଗା ଜଳରେ ଦୁଇ ସଖାଙ୍କର ପ୍ରତିବିମ୍ବ ଝଲସି ଉଠୁଥାଏ । ହସୁଥାନ୍ତି ଶ୍ରୀକୃଷ୍ଣ, ଅର୍ଜୁନ, ହସୁଥାଏ ବନ ପ୍ରକୃତି ।



# ଫର୍ଚ୍ଚା ଆକାଶ

## ହୃଷୀକେଶ ପଣ୍ଡା

ଡଙ୍ଗର ମଥାନରୁ ଜହ୍ନଟା ସେପାଖକୁ ଓହ୍ଲେଇ ଗଲାଣି । ରାତିର ବୟସ ବଢ଼ିଚି । ପାହାଡ ମୂଳକର ବଣ ଜଙ୍ଗଲର ରାତିଟା ଧୀରେ ଧୀରେ ନିଶୂନ୍ ହେଇ ଯାଉଛି । କିଛି ସମୟ ଆଗରୁ ଛାଇ ଆଲୁଅ ଗୋଡାଗୋଡି ହୋଇ ଲୁଚକାଳି ଖେଳୁଥିଲେ । ଏବେ ଜହ୍ନ ଆଲୁଅକୁ ଛାଡି ମାଡି ବସିଚି, ଅନ୍ଧାର ବଢୁଚି ।

ସଂଜବେଳେ ପରଜା ଗାଆଁର ଧାଙ୍ଗଡା ଧାଙ୍ଗଡୀ ଡେମ୍‌ସା ନାଚୁଥିଲେ । ଆଗକୁ ଚଇତି ପରବ୍ ଆସୁଚି, ଅଳସୀ ମାଣ୍ଡିଆ ପାଚି ଗଲାଣି । ଡଙ୍ଗର ତଳେ କୂଟିଆ ଝୋଲା ପଡା । ଆଠ କି ଦଶ ଘର କୁଡିଆ । ମଝିରେ ରାସ୍ତା । ଦୁଇ ପାଖକୁ ଧାଡି ହେଇ ରହିଚି କୁଡିଆ ଘରଗୁଡିକ । ଡେମଣିଗୁଡା ପାଖକୁ କନ୍ଧପଡା । କୋଡିଏ ବାଇଶି କନ୍ଧ ରହନ୍ତି ସେଠି । ଭେଦି କୂଟିଆ ଝୋଲାରୁ କୋଶକର ବାଟ, ଡଙ୍ଗର ଡେଇଁ ପାଦଚଲା ରାସ୍ତାରେ ଯିବାକୁ ପଡେ ।

ଗାଆଁ ମୁଣ୍ଡରେ ରମିଆ ଜାନିର ଘର । ପାଖକୁ ଲାଗି ଗାଆଁ ଦେବୀ ଧରନୀ ମାଆର ଆସ୍ଥାନ । ରମିଆର ବାପ, ଗୁରୁବାପ, ଦିଅଁ ଦେବୀଙ୍କର ପୂଜା କରୁଥିଲେ । ଦିଶାରୀ କାମ କିଛି କିଛି ଜାଣିଥିଲେ । ଚେରମୂଳିକା ଦେଇ ବିମାର ଲୋକଙ୍କୁ ଭଲ କରୁଥିଲେ ।

ରମିଆ ବାପଠାରୁ କିଛି ତାଳପତ୍ରର ଖେଦା ପାଇଥିଲା । ସେହିଥିରୁ କିଛି କିଛି ଫୁଙ୍କା ଝଡା ମନ୍ତ୍ର ଶିଖିଥିଲା । ବାପା ସାଙ୍ଗରେ ବଣକୁ ଯାଇ କିଛି ଚେରମୂଳିକାର ଗଛ ଚିହ୍ନି ଥିଲା । ଦିନେ ସଂଜବେଳେ ହାଟ ସାରି ଫେରିଲାବେଳେ ଜଙ୍ଗଲ ଭିତରେ ତା' ବାପାକୁ ବାଘଡୁମା ସବାର ହେଲା । ରକ୍ତ ବାନ୍ତି କରି ସେଇଠି ମରିଗଲା ତା' ବାପ ଶୁକୁରା ଜାନି ।

ସେଇଠୁ ରମିଆ ଜାନି କାମ କରେ । ଦିଶାରୀ ବି ହୁଏ । ଫୁଙ୍କାଝଡା କରି ଆଦିବାସୀମାନଙ୍କର ବିମାର ଭଲ କରେ । ଜାନି ଘରକୁ ଅନେକ ସମୟରେ ଲୋକ ଆସନ୍ତି । ଚେରମୂଳିକା ଡଉଁରିଆ ବା ତାବିଜ ନେଇ ଘରକୁ ଯାନ୍ତି । ରମିଆ ଜାନିର ବେଶ୍ ଦୁଇ ପଇସା ରୋଜଗାର ହୁଏ । ଶନି ମଙ୍ଗଳବାର ମାଅଙ୍କ ପୂଜାଦିନ ବେଶୀ ଭିଡ ହୁଏ । ରମିଆଜାନି ପୂଜାରେ ବସେ । ବାଜା ଆଉ ତୁରୀ ବାଜିବା ପରେ ପରେ ସେ ମୁଣ୍ଡ ତଳକୁ ପୋତି ଥରିବାକୁ ଆରମ୍ଭ କରେ । ବାଜାର ତାଳ ସହିତ ମୁଣ୍ଡ ହଲାଇ କିଳିକିଳା ରଡି ଦିଏ । ତା' ଦେହରେ କାଳିସୀ ଲାଗେ । ଡଙ୍ଗର ଦେଇ ତା' ଦେହରେ ସବାର ହୁଅନ୍ତି । ଲୋକଙ୍କର ଭଲ ମନ୍ଦ କହିପକାନ୍ତି । ପ୍ରତିକାର ପାଇଁ ବାଟ ବତାଇ ଦିଅନ୍ତି । ମନ୍ତୁରା ଫୁଲ, କି ମନ୍ତୁରା ପାଣି ଦିଅନ୍ତି । ଲୋକଙ୍କର କେତେ କେତେ ରୋଗ ଭଲ ହୋଇଯାଏ । ନ ହବା କାମ ହୋଇଯାଏ ।

ପ୍ରତିବଦଳରେ ଡଙ୍ଗର ଦେଇ କଳା ବୋଦା, ଗଞ୍ଜା କୁକୁଡା ନହେଲେ ପାରା ବଳି ମାଗେ । ତା' କଥାରେ ରାଜି ନହେଲେ କିଳିକିଳା ରଡି ଦେଇ ଡରାଏ । ଡରରେ ଲୋକେ ହଁ କରି ପକାନ୍ତି । ପରେ ପଛେ ମୂଲ ଲାଗି, ସହର ବଜାରରେ କୁଲିଭୂତି କରି, ନହେଲେ ଘରେ ଗହମ,

ମାଣ୍ଡିଆ ଯାହା ବି ଥାଏ ତାକୁ ବିକ୍ରିବଟା କରି ଡଙ୍ଗର ଦେଈର ଜାନି ପାଖରେ ପୂଜା ଦେଇ ଆସେ ପରଜା ଆଦିବାସୀ ।

ଆଜି ଶନିବାର ଥିଲା । ଡଙ୍ଗର ଦେଈର ପୂଜା ବାରି । ଶୁକୁଟା ଜଙ୍ଗଲକୁ କାଠ ହାଣିବାକୁ ଘରୁ ବାହାରିଗଲା ପରେ, ଦମୟନ୍ତୀ ମାକ୍‌ଡାମୀ ଦିଶାରୀ ଘରକୁ ଗଲା । କାଳିସୀ ଲାଗିଲା ପରେ ଡଙ୍ଗର ଦେଈକୁ ମନକଥା ପଚାରିବ ବୋଲି ଚିନ୍ତା କରିଥିଲା । ଗଲାବେଳେ କୁଞ୍ଚିକାଏ ଅରୁଆ ଚାଉଳ ଗୁଆଗୋଟେ କନାରେ ବାନ୍ଧି ନେଇ ଯାଇଥିଲା । ବାଡିପଟରୁ କିଛି ଦରଫୁଟା ମନ୍ଦାର ଓ ଗେଣ୍ଡୁ କଢି ସାଙ୍ଗରେ ନେଇ ଥିଲା ।

କାଳିସୀ ଡଙ୍ଗର ଦେଈକୁ ମନର କଥାଟିଏ ପଚାରିବ ବୋଲି ଅନେକ ଦିନରୁ ଭାବୁଛି । ଯେତେଥର ଆସିଲାଣି ସବୁଥର କାଳିସୀ ଲାଗିଲା ପରେ ପରେ ଲୋକଙ୍କର ଗହଳି ଜମିଯାଏ । ଆଖ ପାଖ ଗାଆଁରୁ ଲୋକମାନେ ଆସି କାଳିସୀକୁ ଚାରିପାଖରେ ଘେରିଯାନ୍ତି । ସଭିଙ୍କ ଆଗରେ ଦମୟନ୍ତୀ ମନକଥା ଖୋଲି କହିପାରେ ନାହିଁ । ମନକଥା ମନ ତଳେ ରହିଯାଏ । ଶେଷରେ ଖାଲି ଚଟାଣ ଉପରେ ଲମ୍ବ ଲମ୍ବ ହୋଇ କାଳିସୀ ପ୍ରଣାମ କରିବା ପରେ ଫେରିଯାଏ । ମାଆ ଡଙ୍ଗରଦେଈ କାହିଁକି ତା' ମନକଥା ବୁଝି ତାକୁ ଉତ୍ତର ଦିଅନ୍ତି ନାହିଁ ବୋଲି ତା' ମନରେ ଦୁଃଖ ହୁଏ । ଅଭିମାନ ହୁଏ । ଡଙ୍ଗରଦେଈ ମାଆ ସବୁ ଜାଣେ । ସବୁଠି ବୁଲେ । ଆଦିବାସୀ ବନ ମୂଲକ କେଉଁଠି ହେଲେ ତାକୁ ଅଜଣା ନାହିଁ । ସମସ୍ତଙ୍କ ମନକଥା ବୁଝିପାରେ । ତେବେ, ଦମୟନ୍ତୀର ମନକଥା ବୁଝିପାରେନା କେମିତି ? ନବୁଝିଲେ ନବୁଝୁ ସିନା ହେଲେ, ଦିଶାରୀ ଆଗରେ ସମସ୍ତେ ଥିଲାବେଳେ ସେ ମନକଥା କହିବ ନାହିଁ । ଅଭିମାନରେ ଦୀର୍ଘଶ୍ୱାସ ଛାଡେ ଦମୟନ୍ତୀ । ବିଛଣାରେ ପଡି ଛଟପଟ ହୁଏ ।

ଦୂରରୁ ଭାଲୁ ଘଉଡା ଶବ୍ଦ ଶୁଭେ । ଚମକି ପଡେ ଦମୟନ୍ତୀ । ରାତି ଅନେକ ଗଭୀର ହେଲାଣି । ଶୁକୁଟା ଘରେ ନାହିଁ । ଯାଇଛି ମକାବାଡି ଜଗିବାକୁ । କ୍ଷେତ ମଝିରେ କାଠର ମଞ୍ଚାଟିଏ । ରାତିରେ ସେଇଠି ଶୁଏ ଶୁକୁଟା । ପାଖରେ ନିଆଁ ଜାଳି ଶୁଏ । ନିଆଁର ଶିଖା ଦେଖିଲେ ଭାଲୁ ଡରରେ ପଳାଏ । ତଥାପି, ଶୁକୁଟାକୁ ରାତିରେ ମଞ୍ଚା ଉପରେ ଜଗି ରହିବାକୁ ପଡେ ।

କାଳେ କେତେବେଳେ ନିଆଁ ଲିଭିଯିବ କି ଭାଲୁଟା ଷଡ ଷଡ କରି ମଞ୍ଚା ଆଡକୁ ମାଡି ଆସିବ । ମଉକା ଦେଖି ମକା ଖାଇବା ନିଶାରେ ଶୁକୁଟାକୁ ଆମ୍ପୁଡି ଲହୁ ଲୁହାଣ କରିଦେବ ।

ଦମୟନ୍ତୀର ଛାତିଟା ଡରରେ ଥରିଉଠେ । ଆଖି ମିଟି ମିଟି କରି ସେ ଅନ୍ଧାର ଆଡକୁ ଅନେଇ ରହେ । ସେ ଅନ୍ଧାରର ଛାତି ଚିରି ତା'ର ନଜର ଭଉଁରୀ କାଟେ ପାହାଡର ଢାଲୁ ଛାତିରେ ପେଟେଇ ପଡିଥିବା କ୍ଷେତ ଆଡକୁ ତା' ମଝିରେ ଠିଆ ହୋଇଥିବା ମଞ୍ଚା ଉପରକୁ ।

ଶାଳଫୁଲର ବାସନାରେ ମହକି ଉଠୁଚି ବନଭୂଇଁ । ଫୁଲ ବି ବେଶ୍ ଗଦେଇ ହୋଇଗଲାଣି । ସୁଲୁସୁଲିଆ ପବନରେ ଦେହ ଥରି ଉଠୁଛି । ପବନରେ ମହୁଲିର ବାସନା ମନକୁ ମତୁଆଲା କରୁଛି । ଆଖି ତା'ର ଧୀରେ ଧୀରେ ମୁଦି ହୋଇ ଆସେ । କେଉଁ ପାହାଡ଼ଖୋଲ ଦୂର ଗାଆଁରୁ ସାଇଲଡ଼ିର ଗୀତର ଲହର ଭାସି ଆସୁଛି । ଦମୟନ୍ତୀ ତା'ର କଳା ମଚ ମଚ ସୁଠାମ ଦିହରେ ନିଜର ଆବେଗରେ ଘୋଡେଇ ନେଇଛି ଅଳସୀ କ୍ଷେତର ସୁନେଲି ଶାଢ଼ିକୁ । ଝୋଲାର ଧାର ପରି କାନ ମୂଳରେ କିଏ ଗୋଟେ ଅଦ୍‌ଭୂତ ଗୀତ ଗାଉଛି । ସେଇ ଗୀତର ଆବେଗରେ ନିଦେଇ ଯାଉଛି ଦମୟନ୍ତୀ ।

କେତେବେଳେ ସେ କୁରେଇ ଫୁଲର ଗଭାକୁ ପୁଣି ମୁକୁଳାଇ ଦେଇଛି । କାଠର ପାନିଆଁରେ ମୁଣ୍ଡର କେଶକୁ ସଫା କରିଛି । ପିଣ୍ଡାର ସପ ଉପରେ କେତେବେଳୁ ଚିତ୍ ହୋଇ ଶୋଇ ଯାଇଛି ଜାଣେନା । ତା'ର ମନେ ହେଲା ବିରାଟ ଗୋଟେ ଅଜଗର ସାପ ହଠାତ୍ ତାକୁ ଗିଳିବା ଆରମ୍ଭ କରିଛି । କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ତାକୁ ଜମାରୁ ଡର ଲାଗୁନି । ବରଂ ବେଶୀ ବେଶୀ ଭଲ ଲାଗୁଚି । ଦେହରେ ଭରି ଯାଉଛି ଖଇଫୁଟା ତାତି । ଅଜଗରଟା ସାରା ଦେହକୁ ଧୀରେ ଧୀରେ ଗିଳି ଯାଉଛି । କେମିତି ଗୋଟେ ଅସ୍ୱସ୍ତିବୋଧରେ ଛଟପଟ ହେଉଛି ଦମୟନ୍ତୀ । ଅନ୍ଧାର ସାଙ୍ଗରେ ସେ ଅନ୍ଧାର ପାଲଟି ଯାଉଚି । ସେଇ ପ୍ରାଗୈତିହାସିକ ଅନ୍ଧାର, ଆଦିମ ଅନ୍ଧାର ।

ହଠାତ୍ ଶେଷ ରାତିଟାରେ ଡଙ୍ଗରର ଢାଲୁ କ୍ଷେତରୁ ଭାସି ଆସେ ଶୁକୁଟାର କଣ୍ଠସ୍ୱର । ଶୁକୁଟା ମଞ୍ଚା ଉପରୁ ଚିତ୍କାର କରୁଚି । 'ହେଉ' 'ହେଉ' ଶବ୍ଦ କରି ମକାବାଡିରୁ ଭାଲୁକୁ ଘଉଡାଉଚି । ମକାବାଡି ଭିତରେ ଷଡ୍ ଷଡ୍ ଶବ୍ଦ କରି ଭାଲୁଟା ଦୂରକୁ ପଳାଉଚି । ଶୁକୁଟାର ଚିତ୍କାର ଶୁଣି ଚମକି ପଡେ ଦମୟନ୍ତୀ । ନିଦ ଭାଙ୍ଗିଯାଏ । ବିଛଣାରୁ ଉଠିପଡ଼େ । ଦେହରୁ କପଡାଟା କେତେବେଳେ ଖସିଯାଇଛି । ଶାଢ଼ିଟାକୁ ଗୁଡାଇ ନିଏ ଦେହରେ । ପୂର୍ବ ଆକାଶ ଆଡକୁ ଅନାଏ । ଏବେ ବି ରାତି ପାହିବାକୁ ଅନେକ ଡେରି ଅଛି ।

ଆଖିକୁ ଆଉ ନିଦ ଆସେ ନାହିଁ ଦମୟନ୍ତୀର । ଅନାଇ ରହେ ଜଙ୍ଗଲର ଅନ୍ଧାର ଆଡକୁ । ଛାତି ଭିତରଟା ଖାଲି ଖାଲି ଲାଗେ । ପବନରେ ଚଇତିର ଛୁଆଁ । ମହୁଲି ନିଶାରେ ଆତୁର କରୁଚି । ଅଥଚ ଶୁକୁଟାକୁ ଚାହିଁ ଚାହିଁ ରାତି କଟିଯାଏ ଦମୟନ୍ତୀର । ନିଝୁମ୍ ରାତିରେ ମହୁଲି ନିଶାରେ ଧାଂଡୀ ଦେହଟା ଶୁକୁଟାର ଟାଣୁଆ ଛାତିର ସ୍ପର୍ଶ ଖୋଜେ । ଅଥଚ ଶୁକୁଟା ମକାବାଡିର ମଞ୍ଚା ଉପରେ ଭାଲୁ ଜଗିବା ପାଇଁ ଚାଲିଯାଏ । ଦୂରରୁ କ୍ଷେତର ମଞ୍ଚା ପାଖରୁ ମଶାଲର ଶିଖାଟାକୁ ଉଦାସ ଆଖିରେ ଦେଖୁଥାଏ ଦମୟନ୍ତୀ ।

ପାଞ୍ଚବର୍ଷ ଆଗରୁ ଦିନେ ଟୋକୀ ପରବ୍‌ରେ ଶୁକୁଟା ତା'କୁ ମେଳା ଭିତରେ ଝିଙ୍କି ଥିଲା । ସାଙ୍ଗେ ସାଙ୍ଗେ ଶୁକୁଟା ସାଙ୍ଗମାନେ ତାକୁ ଭିଡି ନେଇଯାଇଥିଲେ ଶୁକୁଟାର ଗାଆଁକୁ । ଶୁକୁଟା ଦମୟନ୍ତୀକୁ ନେଇ ପହଞ୍ଚିଲା ଗାଆଁ ମୁଣ୍ଡ ଧାଂଡି ବସାରେ । ସେଇଠି କଟାଇଥିଲେ ଦୁହେଁ ତିନିଦିନ ତିନି ରାତି । ଦମୟନ୍ତୀର ବାପା ମାଆ ମଦ ଚାଉଳ ନେଇ ପହଞ୍ଚିଲେ ଶୁକୁଟା ଘରେ । ତା'ପରେ ଦିନେ ବାହା ହେଇ ଶୁକୁଟା ସାଙ୍ଗରେ ଚାଲି ଆସିଥିଲା ଦମୟନ୍ତୀ ।

ହେଲେ ଦମୟନ୍ତୀ ଭୁଲି ପାରିନଥିଲା ରଙ୍ଗା ମାଡ୍‌କାମୀକୁ । ତା' ଗାଆଁର ରଙ୍ଗାଧାଣ୍ଡାକୁ ସେ ମନେ ମନେ ଭଲ ପାଇ ବସିଥିଲା । ରଙ୍ଗା ଖୁବ୍ ସୁନ୍ଦର ବଇଁଶୀ ବଜାଉଥିଲା । ଝୋଲାର କଳା ଝିର୍ ଝିର୍ ପାଣିରେ ପହଁରି ଦମୟନ୍ତୀ ଯେତେବେଳେ ତା'ର ବଢ଼ିଲା ପୂରିଲା ଦେହଟାକୁ ଘସି ମାଜି ଚିକ୍କଣ କରୁଥିଲା, ସେତେବେଳେ ଡଙ୍ଗର ମଥାନରୁ ରଙ୍ଗର ବଇଁଶୀ ସୁର ତାକୁ ବିବଶ କରୁଥିଲା । ସେ ଭୁଲିଯାଉଥିଲା ସବୁ କିଛି । ଝରଣା ପାଣିରେ ପାଦ ଦୁଇଟି ହଲାଇ ହଲାଇ ସେହି ବଇଁଶୀ ସୁର ସାଥିରେ ସେ ତାଳ ପକାଉଥିଲା । ଆଉ ଗୁଣୁ ଗୁଣୁ ହେଇ ସାଇଁଲରେ ଗୀତ ଗାଉଥିଲା । ଏମିତି କେତେବେଳେ ସୁଲୁସୁଲିଆ ପବନରେ ଦିନେ ମହୁଲିର ନିଶା ପରି ରଙ୍ଗା ମାଡ୍‌କାମୀ ପଶି ଆସିଥିଲା ତା' ମନ ଭିତରକୁ । ତା' ଧାଂଡି ମନ ଭିତରେ ସେ ବସା ବାନ୍ଧି ନେଇଥିଲା ସେହିଦିନରୁ । ଦମୟନ୍ତୀ ଅପେକ୍ଷା କରିଥିଲା ଚଇତ ପରବ୍‌କୁ । ଆଖିର ଇଶାରାରେ ସେ ରଙ୍ଗାକୁ କହି ଦେଇଥାନ୍ତା ତା'ର ମନକଥା ଆଉ, ତା'ର ମନକଥା ବୁଝିପାରି ରଙ୍ଗା ତାକୁ ଝିଙ୍କି ନିଅନ୍ତା ଧାଂଡି ବସାକୁ । ତା'

ସବଳ ବାହୁ ଭିତରେ ଦମୟନ୍ତୀର ନିଟୋଳ ଦେହଟାକୁ ଭିଡିଧରି ସେ ଜାହିର କରନ୍ତା ତା'ର ମରଦ ପଣିଆ । ଆପଣାର କରି ନିଅନ୍ତା ସବୁଦିନ ପାଇଁ ।

ହେଲେ, ଦମୟନ୍ତୀର ସ୍ୱପ୍ନ, ସ୍ୱପ୍ନରେ ହିଁ ରହିଗଲା । ମନର କଥା କହିବା ଆଗରୁ ରଙ୍ଗା ଦିନେ ଗାଆଁ ଛାଡି ଚାଲିଗଲା ସୁରତକୁ । ସେଠି ଲୁଗାକଳରେ କୁଲିଭୂତି କରିବାକୁ । ଆଉ ଫେରିଲାନି । ତା' ବାଟ ଚାହିଁ ଚାହିଁ ନିରାଶ ହେଲା ଦମୟନ୍ତୀ । ଦିନେ ଟୋକୀ ପରବ୍‌ରେ ପଡାର ପରଦା ଟୋକୀମାନଙ୍କ ସାଙ୍ଗରେ ଘୂରି ବୁଲିବାବେଳେ ତାକୁ ଝିଙ୍କି ନେଲା ଶୁକୁଟା ଜାନି । ଶୁକୁଟା ସାଙ୍ଗରେ ନୂଆ ନୂଆ ଜୀବନ ବାନ୍ଧିବାକୁ ଚେଷ୍ଟା କରୁଥିଲା ଦମୟନ୍ତୀ ହେଲେ, ମନ ଭିତରୁ ଭୁଲିପାରି ନଥିଲା ରଙ୍ଗାକୁ ।

ବାହାଘରର ପାଞ୍ଚଟା ବର୍ଷ ବିତି ଗଲାଣି ଏ ଭିତରେ । ହେଲେ, ଦମୟନ୍ତୀର କୋଳ ଖାଲି ପଡିଛି । ଘର ନିଶୂନ୍ ରହିଛି । ଶୁକୁଟା ବି ଯବାନ୍ ମାଇପିଟାକୁ ଏକା ଏକା ଛାଡି ରାତି ରାତି ମକ୍‌କାବାଡିରୁ ଭାଲୁ ଘଉଡାଇବା ପାଇଁ ଚାଲିଯାଏ କ୍ଷେତ ଜଗିବାକୁ । ଦମୟନ୍ତୀର କୋଳ ପରି, କୁଡିଆ ଘର ପରି ମନର ଅଗଣାଟା ବି ଏଣିକି ଶୂନ୍‌ଶାନ୍ ଲାଗୁଛି । ହେଲେ ମନର କଥା କହିପାରୁନି ଶୁକୁଟା ଜାନିକୁ । ଶୁକୁଟା ଜାନି ବୁଝିପାରୁନି ଏକା ଏକା ରାତି ପରେ ରାତି କେମିତି କାଟୁଛି ଦମୟନ୍ତୀ ।

ବେଳେବେଳେ ଚାଉଁକିନା ନିଦ ତା'ର ଭାଙ୍ଗିଯାଏ । ଗୋଟାପଣେ ଦେହ ଥରି ଉଠେ । ମସ୍ତବଡ କଳା ଭାଲୁଟାଏ ମକାବାଡି ଆଡୁ ଝପଟି ଆସୁଛି ତା'ରି ଆଡକୁ । ତା' ଶୋଇଲା ଦେହ ଉପରକୁ ଝାମ୍ପି ପଡୁଛି । ମୁନିଆଁ ନଖ ଦାନ୍ତରେ ଝୁଣି ବିଦାରି ଲହୁ ଲୁହାଣ କରି ଦେଉଛି । ଡରରେ ଥରି ଉଠେ ଦମୟନ୍ତୀ । ଭୟ ଜଡସଡ ଆଖି ଫିଟାଇ ଅନାଏ । ଆଖ ପାଖରେ କେହି ନାହିଁ । ମିଛ ସପନଟାଏ ଦେଖି ସେ ଡରିଯାଇଛି । ଶାଢ଼ି ସଜାଡି ନେଇ ମୁହଁରୁ ଝାଳ ପୋଛେ । ପବନରେ ଭାସି ଆସେ ମହୁଲ ଫୁଲର ବାସନା । ଡଙ୍ଗରର ମଝା ଆଡକୁ ଉଦାସ ଆଖିରେ ଅନାଏ ଦମୟନ୍ତୀ । ଶୁକୁଟାର ପାଟି ଶୁଭେ ନାହିଁ । ବୋଧହୁଏ ସେ ପାହାନ୍ତା ରାତିର ଶୀତୁଆ ପବନରେ କମ୍ବଳଟା ଘୋଡିଘାଡି ହୋଇ ଶୋଇ ପଡିଚି ନିଘୋଡ ନିଦରେ । ନିଆଁ ଲାଗିଥିବା କାଠଗଣ୍ଡିଟାରେ ବେଳେବେଳେ ପବନ ପିଟି ହେବାରୁ ଶିଖାଟା ତେଜିଆନ୍ ହେଇ ଉପରକୁ ଜିଭ ଲହ ଲହ କରୁଥିବାର ଦେଖେ ଦମୟନ୍ତୀ ।

ଦମୟନ୍ତୀ ପୁଣି ଆଖି ବୁଜି ଶୋଇବାକୁ ଚେଷ୍ଟା କରେ । ରମିଆ ଡିଖାରୀ କଥା ତା'ର ମନେ ପଡେ । ତା' ଦେହରେ ଡଙ୍ଗରଦେଇ ସବାର ହୁଏ । ତାକୁ କାଳିସୀ ଲାଗେ । ଦମୟନ୍ତୀ କେତେ ଥର ଗଲାଣି ତା' ପାଖକୁ... ମନକଥା ପଚାରି ବୁଝିବ, ହେଲେ ଲୋକଭିଡ ଦେଖି ଫେରି ଆସୁଛି । କେତେବେଳେ ନିରୋଳା ପାଇଲେ ସେ କହିବ ବୋଲି ଅପେକ୍ଷା କରୁଛି... । ଏଣୁ ତେଣୁ ଭାବୁ ଭାବୁ ତା' ଆଖିରେ ପୁଣି ନିଦ ଆସିଯାଏ । ପାହାନ୍ତା ରାତିର କାଲୁଆ ପବନରେ ଦେହ ଢାଙ୍କିବାକୁ ଚାଦର ଖଣ୍ଡିକ ଦେହ ଉପରକୁ ଭିଡି ଆଣେ । ହଠାତ୍ ଦମୟନ୍ତୀ ପୁଣି ଦେଖେ ଆଖ ପାଖରେ ଲୁଚିଥିବା ସେହି ମସ୍ତବଡ ଭାଲୁଟା ତା' ଆଡକୁ ପାହୁଣ୍ଡ ପକାଇ ମାଡି ଆସୁଛି । ପାଖକୁ ଆସି ସେ ଦମୟନ୍ତୀର ତଳିପାରୁ ତାଳୁଯାଏ ସାରା ଦେହଟାକୁ ଶୁଙ୍ଘୁ ଥାଏ । ଦମୟନ୍ତୀର ପାଟି ଫିଟେ ନାହିଁ । ସେ ନିର୍ଜୀବ ହୋଇ ବିଛଣାରେ ଚୁପ୍‌ଚାପ୍ ପଡିରହେ । ଭାଲୁଟା ଲମ୍ବା ଜିଭରେ ତା' ମୁହଁଟାକୁ ଚାଟେ । ମୁହଁରୁ ଖୋଲାବେକ ଯାଏ... ବେକରୁ ଛାତି... ଭାଲୁର ଉଷ୍ମଶ୍ୱାସ

ତା’ ଦେହସାରା ଖେଳିଯାଏ । ଭାଲୁଟା ଦମୟନ୍ତୀର କାନମୂଳରେ ଚାଟୁ ଚାଟୁ କହେ, “ଚାଲ୍ ସୁରତ୍ ପଳାଇଯିବା । ଲୁଗା କଳରେ ଦିନରାତି କୁଲିଭୂର୍ତି କରି କିଛି ଟଙ୍କା ମୁଁ କମେଇଚି । ଗୋଟେ ଘରଭଡା ନେବା... ତୁ ଆଉ ମୁଁ ସେଇଠି ରହିଯିବା... ଆମର ଗୋଟେ ପିଲା କରିବା... ମୋରି ଭଳିଆ ତା’ର ରୂପଟା ହେବ, ତୋଅରି ଭଳିଆ ହସ୍ ଖଣ୍ଡେ ଲାଖିଥିବ ତା’ର ମୁହଁରେ... ଚାଲ୍‌ଯିବା... ରାତି ପାହିବା ଆଗରୁ ଏ ଜଙ୍ଗଲ, ଏ ଝୋଲା... ଏ ଡଙ୍ଗର ଡେଇଁ ପଳେଇବା... ।”

ଚମକି ପଡେ ଦମୟନ୍ତୀ... ଭାଲୁଟା ଭିତରୁ ରଙ୍ଗା ମାଡକାମୀର କଣ୍ଠସ୍ୱର ଶୁଭେ । ତା’ ସାରା ଦେହରେ ଖେଳିଯାଏ ବିଜୁଳୀର ଚମକ... ବହିଯାଏ ଦାରୁଣ ବଇଶାଖୀର ଝାଞ୍ଜୀବାଆ... ସେମିତି  ବିଛଣା ଉପରେ ନିଶ୍ଚଳ ଭାବରେ ପଡି ରହେ ଦମୟନ୍ତୀ । ଭାଲୁର ମସ୍ ମସ୍ କଳା ଦେହଟା ପାଲଟି ଯାଏ ଧାଂଡି ରଙ୍ଗା ମାଡ୍‌କାମୀର ପୂରିଲା ପୂରିଲା ଟାଣୁଆ ଦେହ । ଅଦ୍‌ଭୁତ ଆବେଗରେ ଦମୟନ୍ତୀ ହଠାତ୍ ପାଲଟିଯାଏ ଗୋଟେ ଜିଅନ୍ତା ଆଗ୍ନେୟଗିରିର ତତଲା ଲାଭା... ରାତି ପାହି ଫର୍ଚ୍ଚା ହୁଏ... କେଉଁ ଗୋଟେ ପାଖ ଡଙ୍ଗରରୁ ଭାସି ଆସୁଥାଏ ବଇଁଶୀର ସୁର... ସେ ସ୍ୱର ବେଶ୍ ଚିହ୍ନା ଚିହ୍ନା ଦମୟନ୍ତୀର... ।



# ମହୁଲ ବଣର ରାଣୀ

## ସୁନୀତି ଦେବୀ

ଅନେକ ବାର ଭାବିଛି ଲିଆ ସହିତ ପଦେ କଥା ହେବି । ପଚାରିନେବି ଲିଆ ଭଲ ଅଛୁ । ହେଲେ ପାରେନା । ଲିଆକୁ ଦେଖିଲେ ମୁଁ ସଚେତନ ହୋଇଯାଏ । ମୋ ଭିତରେ କେମିତି କାହିଁକି ଲିଆ ପ୍ରତି ଗୋଟେ ସମ୍ବେଦନଶୀଳ ଆକର୍ଷଣ ବଢ଼ି ବଢ଼ି ଚାଲେ । ରାଜମିସ୍ତ୍ରୀ ପାଖରେ ଲିଆ କାମ କରେ । ମୁଣ୍ଡରେ ଗାଣ୍ଡୁଆରେ ଇଟା ଖଣ୍ଡମାନ ବୋହି ମିସ୍ତ୍ରୀ ହାତକୁ ବଢ଼ାଏ । ମିସ୍ତ୍ରୀ ସହ ହାତକୁ ହାତ ମିଳାଇ କାମ କରେ । କାମରେ କେବେ ଆକ୍ରାନ୍ତ ହୁଏ ନାହିଁ । ଝାଳନାଳ ହୋଇ କାମ କରୁଥିବ । ଟିକେ ଠିଆହେବ ନାହିଁ ପରୀକ୍ଷା ହଲ୍‌ରେ ପରୀକ୍ଷା ଦେବାକୁ ଆସିଥିବା ପିଲାଟିଏ ପରି । ଉଦ୍‌ଭ୍ରାନ୍ତ ଆଖିପତା ଯୋଡ଼ିକ ନିରବଛିନ୍ନ ଭାବରେ ମିସ୍ତ୍ରୀର ସମକକ୍ଷ ହେବା ଲାଗି ଉଦ୍‌ବିଗ୍ନ ଯେମିତି, ଲିଆ ଯେପରି ଜନ୍ମ ନେଉ ନେଉ କାମକୁ ଆଦରି ନେଇଛି । ସବୁବେଳେ ଖାଲି କାମ ଆଉ କାମ । ଲିଆ ବଳିଷ୍ଠ, ହୃଷ୍ଟପୁଷ୍ଟ, ସୁନ୍ଦରୀ ବୋଲି କହିବାର ଭରସା ବି ମୁଁ ପାଇଛି । ଲିଆକୁ ଦେଖିଲେ ମୋତେ ଲାଗେ ତା' ଚାହାଣୀରେ କିଛି ଅଜଣା ଭାଷା ରହିଛି । ଯୋଉ ଭାଷାରେ ସେ କହିବାକୁ ଚାହେଁ "ତମେ ଆସିବ ମୋ ପାଖକୁ ବୋଲି ମୁଁ ଜାଣିଥିଲି । ମୋ ଏଇ ଘଡ଼ିକ ଉତ୍ତାରୁ ମୋ କଥା ପଚାରି ବସିବ, ଯା ବି ଜାଣିଛି !"

ଲିଆ ଆଜିକୁ ଅଠର ଦିନ ହେବ ମୋ ଘର ତିଆରିରେ ମିସ୍ତ୍ରୀ ସହ ମିଶି କାମ କରୁଛି । ସ୍ୱଚ୍ଛନ୍ଦରେ ମୋ ଜାଗାରେ ବିଚରଣ କରୁଛି । ମୋ ଜାଗା ପାଖରେ ଥିବା କାଜୁ ବଣରୁ ଲଂକା ଆମ୍ବ ତୋଳି ଅଣ୍ଟିରେ ପୁରାଇ ଆସୁଛି । ପାଖ ଜାମୁକୋଳି ବଣରୁ ଗଛରେ ଚଢ଼ି ଜାମୁକୋଳି ପାରୁଛି । ଦେଖିବାକୁ ଗୋରା । କଳା ମଚମଚ ପିଟାଯାଏ ବେଣୀ ଲମ୍ୱିଛି । ଚେହେରା ଆଉ ଚାହାଣିରୁ ମନେ ହେଉଛି ଲିଆ ତା' ମାଆ ସ୍ତନରୁ ପ୍ରଚୁର କ୍ଷୀର ପାନ କରିଛି । ତା' ବାପାର ବଳିଷ୍ଠ ଚେହେରାକୁ ଉତ୍ତାରି ଆଣିଛି ଅବା । କେବଳ ହୁଏତ କେଉଁ ବିଡମ୍ବିତ ମୁହୂର୍ତ୍ତରେ ତା' ମାଆର ଗର୍ଭ ଚିରି ଯେତେବେଳେ ବାହାରି ଆସିଲା ସେତେବେଳେ ପ୍ରକୃତି ଅଲକ୍ଷ୍ୟରେ ତା' ସହିତ ଗୋଟେ ଅଜଣା ଚୁକ୍ତି କରି ନେଇଛି । ଯେଉଁଥି ପାଇଁ ମହୁଲ ବଣର ଲିଆ ମହୁଲ ନ ଗୋଟେଇ ସୁନ୍ଦର କେଉଁଝର ଜଙ୍ଗଲରୁ ଦୌଡ଼ି ଆସିଛି ସହରକୁ ପାଞ୍ଚଜଣରେ ଜଣେ ହେଇ ଠିଆ ହେବା ପାଇଁ । ଲିଆ ତା ବୟସରେ ସ୍ୱପ୍ନ ଦେଖିଛି କି ନାହିଁ ଜାଣେନି । ମୁଁ କିନ୍ତୁ ଘର କାମ ତଦାରଖ କରୁ କରୁ ଲିଆକୁ ନେଇ ଦିନରେ ସ୍ୱପ୍ନ ଦେଖେ, ପ୍ରତ୍ୟକ୍ଷରେ । ସ୍ୱପ୍ନରେ ମଜ୍ଜି ଯାଏ । ଲିଆ ଗଳାରେ ସାପ ପରି ଗୁରେଇ ହେଇ ରହିଥିବା କଣ୍ଠିମାଳକୁ ଚାହେଁ । ଗୋଟେ ପାହାଡ଼କୁ ନିରେଖି ପାରେ । ଗୋଟେ ବିଶ୍ୱାସରେ ଉତ୍ତୀର୍ଣ୍ଣ ହୁଏ ଲିଆ ନିଶ୍ଚୟ ସେଇ ସହର କେଉଁଝରେ ଜଙ୍ଗଲର ମହୁଲଣ ବଣର ରାଣୀ ହେଇଥିବ । ନ ହେଲେ ଲିଆ ଭିତରେ ଜୀବନର ଏତେ ପ୍ରାଚୁର୍ଯ୍ୟ ଭରପୁର ହେଇ ନଥାନ୍ତା । ମନେହୁଏ ଆର ଜନ୍ମରେ ବୋଧହୁଏ ଲିଆ ସହିତ କିଛି ନିବିଡ଼ ସମ୍ବନ୍ଧ ରହିଛି ନହେଲେ ଏତେ ମୂଲିଆ ମୂଲିଆଣୀ ମୋ ଘର ତୋଳାରେ ଲାଗିଛନ୍ତି ମୁଁ ଲିଆକୁ କାହିଁକି ମୂଲିଆଣୀ ବୋଲି ଭାବି ପାରେନାହିଁ । ଲିଆ ଗୋଡ଼ରେ ସିମେଣ୍ଟ ଲାଗିଲେ ମୋ ଲୋମ କାହିଁକି ଟାଙ୍କୁରି ଯାଏ ।

ଲାଗେ ମୁଁ କେମିତି ଲସର ପସର ହେଇ ସେଇ ସିମେଣ୍ଟ ଗୋଡ଼ି ଫେଣ୍ଟା କାଦୁଅରେ ଚାଲୁଛି । ବର୍ଷା ବେଳେ ଲିଆ ଓଦା ହୋଇ କାମ କଲେ ମୋ ଛାତି କାହିଁ ଦୁଲୁକି ଦୁଲୁକି ଯାଏ । ମୋ ସ୍ତ୍ରୀଙ୍କର ସବୁବେଳେ ଏଇ ଦୃଷ୍ଟିରୁ କାମ ବାସନାରେ ସବୁବେଳେ ମୋ ରୂପର ପ୍ରଶଂସା କରିବା ସଂଗେ ସଂଗେ ବି କହନ୍ତି ସୁନ୍ଦର ପୁରୁଷ ଜନ୍ତାରେ ଥିବା ବାଘପରି । ସେମାନଙ୍କୁ କେବେ ବିଶ୍ୱାସ କରିବ ନାହିଁ । ସହସା ଏକଥା ଶୁଣିବା ପରେ ମୋର ଚେତନା ପଶେ ମୁଁ ବଳିଷ୍ଠ, ସୁନ୍ଦର । ମୋତେ ଚାରିଜଣ ଚାହିଁଲେ ମନ ଲାଖି ଯାଇପାରେ ।

ଲିଆକୁ ଅଲକ୍ଷ୍ୟରେ ଲକ୍ଷ୍ୟ କରି ଭାବରେ ମୋତେ ଚାହୁଁଚ କି ନାହିଁ ମୁଁ ମଳିନ ପଡ଼ିଯାଏ । ଲିଆର ଖାଲି ସବୁବେଳେ କାମ ଆଉ କାମ । ମୋତେ ଚାହିଁବାକୁ ତା' ବେଳନାହିଁ । ଲିଆ ଏଇ ଦୃଷ୍ଟିରୁ ଖୁବ୍ ସୁଖୀ । ମୋ ଆଡ଼େ ନ ଚାହିଁ ତା' କୂଳ ଧର୍ମ ରକ୍ଷା କରିଛି । ଲିଆ ସ୍ୱଂୟ ସମ୍ପୂର୍ଣ୍ଣ ଜଗଂଲୀ ଝିଅ ଠିକ୍ ଅନ୍ନ ପାଇଁ ଆଜି ସିନା ତା' ରାଇଜ ଛାଡ଼ି ଧାଇଁ ଆସିଛି । ନ ହେଲେ ଲିଆ କ'ଣ ଆସିଥାନ୍ତା । ଲିଆର ସମ୍ଭ୍ରମତା ଉପରେ ଅନ୍ୟ ପାଞ୍ଚଜଣ ମୁଲିଆ ମୁଲୀଆଣୀ ଈର୍ଷା କରନ୍ତି । ତା' ନାଁରେ ସବୁବେଳେ ମିସ୍ତ୍ରୀ ଆଗରେ ପ୍ରତିବାଦ କରନ୍ତି । କେବେକେବେ ମିସ୍ତ୍ରୀ ବିରୋଧ କରେ । ତା' ପ୍ରତିକ୍ରିୟା ପ୍ରକାଶ କରେ । ମୋ କାନକୁ କଥା ଆସେ । ମୁଲିଆଣୀ କଥାରେ ହିଁ ହିଁ ହେଇ ହସନ୍ତି । କହନ୍ତି ବାବୁ କାଲେ ଲିଆକୁ କିଛି କହିବେ ? ସେ ପରା ରାଣୀ । ସେ କ'ଣ ମୁଲିଆଣୀ ହେଇଛି ଆମ ପରି ।

ଲିଆକୁ ଆଉ ପାଞ୍ଚଜଣଙ୍କ ଆଗରେ ମୋତେ ଅପମାନିତ କରିବାକୁ ଇଚ୍ଛା ହୁଏ ନାହିଁ । ପୁଣି ସେମାନେ କହନ୍ତି ଆମେ ଦଶ ଖଣ୍ଡ ଇଟା ଗାଣ୍ଡୁଆରେ ବୋହିଲା ବେଳେ ଲିଆ ନଉଛି ପାଞ୍ଚ ଖଣ୍ଡ । କିନ୍ତୁ କ'ଣ ଏହା ଦେଖି ପାରୁ ନାହାନ୍ତି ? ଆମେ ଭିଡ଼ କାମତକ କରିବୁ । ସେ ଠିଆ ହେଇ ମିସ୍ତ୍ରୀ ପାଖରେ ଇଟା ଖଣ୍ଡ ବଢ଼େଇବ । ମୁଚୁକୁନ୍ଦି ହସ ହସିବ । ମିସ୍ତ୍ରୀକୁ ପାନ ଦେବ । ରୂପ ଦେଖେଇ ଦେଖେଇ ସତୀ ହଉଛି ଏଇଠି ? ହୁଁଃ...

ଲିଆକୁ ମୁଁ ଚାହେଁ । କେମିତି ଲିଆର କିଛି ପ୍ରାପ୍ତିର ଆଶା ନାହିଁ । ସେ ସବୁକୁ ଉପେକ୍ଷା କରିପାରେ । ଅଥଚ ମୋ କଥାକୁ ଅନେଇ ରହିଥାଏ । ଲିଆ ଆଖିରେ ପତଳା ହାଲକା ହାଲକା ଭସା ବାଦଲ ପରି ଲୁହକୁ ଦେଖିଲେ ମୋ ମନ ଦବିଯାଏ । ତାକୁ କିଛି କହିବାକୁ ସ୍ପୃହା ଖୋଲେ ନାହିଁ । ଅଥଚ ମୂଲିଆଣୀମାନଙ୍କ ପ୍ରବଳ ଉତ୍ତେଜନାକୁ ମୋତେ ଦବେଇବାକୁ ହେବ ଏକଥା ଭାବି ଜାଣିଶୁଣି ଲିଆକୁ ମିଛରେ ଗାଳିଦିଏ । ଲିଆ ବୋଧହୁଏ ମୋର ବିଫଳତାକୁ ଠଉରେଇ ପାରେ । କହେ ସବୁ ମୋର ଯେ ହେଲେ ସବୁକଥା ତମକୁ ଠିକ ଲାଗିବ ଏଇଟା ତ ମୁଁ କହି ପାରିବିନି । ଭୁଲ୍ ଭଟକା ରହିଲେ ତମେ କୁହ । ହେଲେ ମୁଁ କାମ କରୁନି ବୋଲି କୁହ ନାହିଁ । ମିସ୍ତ୍ରୀ ପାଖରେ ଆଉ ଜଣକୁ ଦିଅ । ମୁଁ ପଛେ ସିମେଣ୍ଟ ଗୋଳା କାମ କରୁଛି । ଫୁଲ, ମରୁଆ ଆଉ ଅନ୍ୟାନ୍ୟ ମୁଲିଆଣୀ ଖୁସିରେ ବହେ ନାଚି ଯାନ୍ତି । ରାଜମିସ୍ତ୍ରୀ ଖୁବ୍ ଜୋର୍‌ରେ ଠିକ୍‌ବାର କରି କହେ । କି ପାଲା ଲାଗିଛି ସେଠି ? ଏଇଠି ମୋ ପାଖରେ ଲିଆ ବ୍ୟତୀତ ଆଉ କେହି କାମ କରିବେ ନାହିଁ । ତମ ଇଚ୍ଛା ହେଲେ କାମ କର । ନ ହେଲେ ନାହିଁ । ମୋତେ କାମ କରିବା ପାଇଁ ବହୁତ ମୂଲିଆ, ମୂଲିଆଣୀ ମିଳିବ । ମିସ୍ତ୍ରୀର ଘଡ଼ଘଡ଼ି ପାଟିରେ ଛତ୍ରଭଂଗ ଦିଅନ୍ତି ସମସ୍ତେ । ସବୁ ବିରୋଧଭାବ ଖଣ୍ଡ ଖଣ୍ଡ ହୋଇ ଭାଗିଂଯାଏ । ଲିଆ ମିସ୍ତ୍ରୀକୁ ଇଟା ଦେବ । କାନ୍ଥ ଉଠେ । ମୁଁ ମନେ ମନେ ଆନନ୍ଦରେ ଉଲୁସି ଉଠେ । ଜାଣିପାରେ ମୋ ସାମର୍ଥ୍ୟ ଭିତରେ ମୁଁ ନାହିଁ । ମୋତେ ଲଗେ ମିସ୍ତ୍ରୀ ବୋଧେ ମୋର ହିତାକାଂକ୍ଷୀ, ବଂଧୁ ! ପାନ ଦୋକାନରୁ ଦଶବାର ଖଣ୍ଡ ପାନ ଆଣି ସମସ୍ତଙ୍କ

ଅଲକ୍ଷ୍ୟରେ ମୁଁ ଲିଆକୁ ବଢ଼େଇଦିଏ । କହେ ତୁ ଖା ମିସ୍ତ୍ରୀକୁ ଦେ । ମୋ କଥା ଧରେନି । ମୁଁ ଦୁଃଖ ପାଇବି ।

ଲିଆ ପାନଖଣ୍ଡେ ତା' କଳରେ ଜାକି ଦେଉ ଦେଉ କହେ, ଜୀବନସାରା କାହୁଁ ପାଇବି ତମକୁ । କାମବେଳେ ପାନ ଦଉଛ । ଏଠୁ କାମ ସରିଗଲେ ମୋ କଥା ମନେ ରଖିବ ।

ଲିଆର ମୋହମାୟା ଘେରି ବସେ ମୋତେ । ଭାବେ ଘରଟା ମୋ ଛ'ମାସ ନ ଲାଗି ଛ ବର୍ଷ ଲାଗନ୍ତା କି ? ପାଠ ପଢ଼ିଲାବେଳେ ସହପାଠିନୀମାନଙ୍କୁ ମଧ୍ୟ ଦିନେ କେବେ ଅନ୍ୟ ଦୃଷ୍ଟିରେ ଦେଖି ନ ଥିଲି । ବିବାହ ପରେ ମୋ ଚରିତ୍ରରେ କିଛି ହେଲେ ଅପମିଶ୍ରଣ ହୋଇନାହିଁ । ହେଲେ ଲିଆ ପ୍ରତି ମୋହ ତରଂଗ ତରଂଗ ଭାବ ମୋତେ ଏତେ ବିଚଳିତ କାହିଁକି କରେ ମୁଁ ବି ଜାଣିପାରେନି । କେବଳ ମୋ ପରି ପିଲାଛୁଆର ବାପ ଲିଆ କଥା ଭାବିଲାବେଳେ କୁଳ, ଶୀଳ, ବିଦ୍ୟା, ମାନ ସାମାଜିକ ପ୍ରତିଷ୍ଠା ସବୁକଥାକୁ ତୁଳନା କରିବାକୁ ପ୍ରୟୋଜନ ମଣେ ନାହିଁ । ଏହାହିଁ ସତ୍ୟ, ମୁଁ ବିବେକାନନ୍ଦ ପରି ଦେଖାଯିବି କି ମହାତ୍ମା ହେବି । ମୋ ସ୍ତ୍ରୀଙ୍କର ସାହାଯ୍ୟର ପୋଷା ସ୍ୱାମୀ ହେବି ଏହା ଲିଆ ସହିତ କଥାବାର୍ତ୍ତା କଲାବେଳେ କେବେ କଳନା କରିନାହିଁ । ଲିଆ ମୋର ନିକଟତମ ହେଇପାରିଛି, ଲିଆ ପାଇଁ ମୋ ଆଖିପତା ଓଦା ହେଇପାରେ ଏକଥା ମୁଁ ଅନୁଭବ କରିଛି । ଲିଆ କେଉଁଠି ମୁଁ କେଉଁଠି ! ଲିଆ କେଉଁଝର ଜଙ୍ଗଲର ଝଡ଼ାପତ୍ରଟିଏ । ମୋ ମନର ହରଦମ୍ ଉଜାଣି ସ୍ରୋତରେ ଏବେ ଭାସୁଛି । ମୁଁ ତ ଜାଣିନି ଲିଆ ସେ ସ୍ରୋତରେ କେତେ ଘଣ୍ଟା ଭାସିବ । କିନ୍ତୁ ଲିଆ ପ୍ରତି ମୋ ଅନ୍ତରରେ ବ୍ୟାକୁଳତା ବୋଧହୁଏ ସ୍ୱାଭାବିକ ବୋଲି ମୁଁ ଧରି ନେଇଛି । କାରଣ ମୋର ଗାର୍ହସ୍ଥ୍ୟ ଜୀବନର ସବୁ ସ୍ଥୂଳ, ମୁହୂର୍ତ୍ତ ମୋ ସ୍ତ୍ରୀଙ୍କ ପାଇଁ ବଂଧା ପଡ଼ିଲେ ବି ମୋ ସୂକ୍ଷ୍ମ ମୁହୂର୍ତ୍ତରେ କିଛି ଅତର୍କିତ ଘଟଣା ମୋତେ ଆଚ୍ଛନ୍ନ କରିବ ନାହିଁ, ଯେ କିଏ କହିବ ? ଲିଆ ମୋତେ ସଂଚରି ଯାଇଛି । ଲିଆ ପାଇଁ ସୌହାର୍ଦ୍ଦ୍ୟର ଜଳଧାରଟିଏ ମୋ ହୃଦୟକୁ ଅଭିଷିକ୍ତ କରିଛି । ଏହା ଜାଣି ମୁଁ ମୋ ଭାବନାର ପର କାଟି ନିଃସଂଗ ହୋଇନାହିଁ ।

ଲିଆ ମଳିନ ଲୁଗା ପିନ୍ଧିଲେ, ମୁଣ୍ଡ ନ କୁଣ୍ଡାଇ କାମକୁ ଆସିଲେ ମୋ ସ୍ୱାଭାବିକ ଲାଜକୁଳା ଢଂଗକୁ କେମିତି ଛାଡ଼ି ସଭିଙ୍କ ଆଗରେ ହାଲ୍‌କା ଭାବରେ ତାକୁ ଏସବୁ କହି ପକାଏ ମୁଁ ଜମା ଜାଣିପାରେନା । ମୋ ବୟସର ଲୋକମାନଙ୍କର ଏ ଢଗଂଟାକୁ କ'ଣ କୁହାଯିବ ? ଲିଆ ମନରେ ମୋ କଥା ଗଭୀର ରେଖାପାତ କରେ କି ନାହିଁ ଜାଣି ହୁଏ ନାହିଁ କିନ୍ତୁ ଲିଆ ଯେ ମୋ କଥାରେ ଅପମାନବୋଧ କରେ ନାହିଁ କି ଆମୋଦିତ ହୁଏ ନାହିଁ ଏହା ମୁଁ ଜାଣିପାରେ । ତା'ର ଅସଂଯତ କେଶରାଶୀ ଉପରେ ବାମ ହାତ ବୁଲାଇ ଆଣୁ ଆଣୁ କହେ ବାବୁ ଘର ତ ଅଣ୍ଟାଭାଂଗି କତରା ଲଗା ହେଇ ପଡ଼ିଛି । ମୁଣ୍ଡ କୁଣ୍ଡାଇବି ଏଠି କାହାପାଇଁ । ମୁଁ ଚମକି ପଡ଼େ । କେଡ଼େ ଜ୍ଞାନୀ ମଣିଷଟାଏ ଏ ସ୍ତ୍ରୀଲୋକଟା । ସତେ ତ ସ୍ୱାମୀକୁ ଛାଡ଼ି ଆସିଛି ପାଞ୍ଚ ଶହ କୋଶ ଦୂର । ଅଥଚ ସେ ଭୁଲି ଯାଇନାହିଁ । ସାବୁନ ଫେଣ ପରି ମୋ ମନଟା ତୁହାକୁ ତୁହା ଫେଣେଇ ହେଇଯାଏ । ଲିଆ କଥାରୁ ଏତିକି ମାତ୍ର ଜାଣେ ସେ କେବେ ବିପଥଗାମୀ ହୋଇନାହିଁ । ତା' ନ ହେଲେ ଏତେ ଜୀବନ୍ତ କଥା କହନ୍ତା କାହିଁକି ?

ଲିଆର ମୁଁ ଯେତେ ଯେତେ ନିକଟ ହେଉଥିଲି ସେତିକି ତା' ଅନ୍ତଃସୌନ୍ଦର୍ଯ୍ୟରେ ମୁଁ ଆକୃଷ୍ଟ ହେବାରେ ଲାଗିଲି । ଲିଆ ହେରିକା ଗୋଟେ ଅଧା ତିଆରି ଘରେ ସଂସାର କରିଥାନ୍ତି । ମୂଲିଆ ମୂଲିଆଣୀଙ୍କ ଆଉ ଘର କ'ଣ ଯେ, ଯା ଘର ତିଆରିରେ ଲାଗିବେ ଛାତ ପଡ଼ିଗଲେ ତା'ରି ଘରେ ମୁଣ୍ଡ ଗୁଞ୍ଜିବେ, ସେ ଘର ସମ୍ପୂର୍ଣ୍ଣ ହେଲା ପର୍ଯ୍ୟନ୍ତ । ପୁଣି ସେଠୁ ଡେରା ଉଠିବ ଆଉ

ଗୋଟେ ଥାନକୁ । କିନ୍ତୁ କେବେ ସେମାନେ ଭାବନ୍ତି ନାହିଁ କାହା ପାଇଁ ପଥ କୁଆଡ଼େ । ଗୋଟେ ସନ୍ଧିକ୍ଷଣରୁ ଆଉ ଏକ ସନ୍ଧିକ୍ଷଣ । ରୋଗ, ଶୋକ, ଜରା ମୃତ୍ୟୁ ସବୁ ଯେମିତି ସିଧା ସଳଖ ଅତିକ୍ରମି ହେବ । ଗୋଲାପ ନଗରର କାନ୍ଥ ବାଡ଼ରେ ଯେଉଁଠି ଗୋଲାମଗିରିର ବିଜ୍ଞାପନ ସେଠି କେତେ ସ୍ୱାଧୀନ ଭାବରେ ସ୍ୱଚ୍ଛଳରେ କିଛି ନ ଥାଇ ବିତରଣ କରି ପାରନ୍ତି ଆଉ ନିଜକୁ ସୁରକ୍ଷିତ ଅନୁଭବ କରନ୍ତି ଏହା ଭାବି ମୁଁ ଆଶ୍ଚର୍ଯ୍ୟ ହେଉଛି ।

କଥା ହେଲା କିଏ କୋଉଠି ରହୁଛି କି ପ୍ରକାର ଜୀବନଯାପନ କରୁଛି କି ଧର୍ମ ଅନୁସରଣ କରୁଛି ତାହା ବଡ଼ କଥା ନୁହେଁ । ସବୁଠି ଦର୍କାର ଗୋଟେ ଆଡ୍‌ଜଷ୍ଟମେଣ୍ଟ୍ । ଆମେ ପରିବାର ଧରି ଗୋଟିଏ ଘରେ ବିଜୁଳି, ପଙ୍ଖା ତଳେ ରହିଲେ ବି ଆମ ହୃଦୟରେ ମନରେ ବାଲୁକାର ଆସ୍ତରଣ, ସଂଘର୍ଷ, ହାହାକାର ଭିତରେ ଆମର ସମୟ ସରିଯାଇଛି ଅଥଚ ଏମାନେ କେଉଁଠୁ କିଏ ଆସିଛି ଜଣା ନାହିଁ ଅଥଚ ଗୋଟିଏ ଛାତ ତଳେ ହାଣ୍ଡିକୁଣ୍ଡି ଅଲଗା ଥିଲେ ବି ଯଥାରୀତିରେ ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ ଉପଭୋଗ କରନ୍ତି । ହୃଦୟ ହୃଦୟରେ ମିଶାଇ ସେହି ଫଲ୍‌ଗୁରେ ଅନ୍ୟକୁ ସିକ୍ତ କରନ୍ତି । ରାତି ହେଲେ ହାଣ୍ଡିଆ ଖାଇ ମସ୍‌ଗୁଲ୍ ହୁଅନ୍ତି । ସକାଳ ହେଲେ ମୁଣ୍ଡରେ ପଖାଳ କଂସା ଲଦି କାମକୁ ଆସନ୍ତି । ନିଷ୍ଠାର ସହ କାମ କରନ୍ତି । ଆମ ଭଳି ଲୋକମାନଙ୍କର ଗୋଲାପ ବନେ କେଇଟା ଟଙ୍କା ପାଇଁ ବାପା ଭାଇ, ସ୍ତ୍ରୀ ପିଲାକୁ ଦୂରରେ ଛାଡ଼ି ଦେଇଆସି ରକ୍ତକୁ ନିଗାଡ଼ନ୍ତି ।

ଏଇ କଥା ଭାବି ଭାବି ମୋ ମନର ଅନେକ ଅଳିଆକୁ ସଫା କରେ ମୁଁ । ଘର କାମ ଚାଲେ । ସକାଳ ହେଲେ ମୁଁ ଜାଗା ପାଖକୁ ଦୌଡ଼େ । ମୋ ସ୍ତ୍ରୀ ଭାବନ୍ତି ଯାହା ହେଉ ମୋ ଭଳି ଗୋଟେ ନିରାସକ୍ତ ଲୋକ ବୁଢ଼ାକାଳେ ଘର ତିଆରି କାମରେ ପାଗଳ ହେଉଛି । ଭଲ । ଅଥଚ ମୋ ଘର କାମରେ ଅନୁରାଗ ଅପେକ୍ଷା କର୍ମୀମାନଙ୍କ ଜୀବନରେ ଅଧିକ ଅନୁରାଗ ଅଛି । ଆଉ ସେଇଥି ପାଇଁ ମୁଁ ନିବିଡ଼ ଭାବରେ ମୋର ରୋମାଞ୍ଚକର ଅନୁଭୂତିକୁ ପ୍ରଗାଢ଼ କରିବା ଯୋଗାଇ ବେଶି ମାତ୍ରାରେ ଆକୃଷ୍ଟ ସେଇ ଜାଗାକୁ ଦୌଡୁଛି ଏକଥା କାହୁଁ ଜାଣିବେ ମୋ ସ୍ତ୍ରୀ ।

ଲିଆ ତିନି ଦିନ ହେଲା କାମକୁ ଆସିନାହିଁ । କାମ ତ କେବେ ବନ୍ଦ ହେବନାହିଁ । ମୁଲିଆଣୀ ଝିଅଟିଏ ଧୀରେ ଧୀରେ ମୋତେ କହିଲା ବାବୁ ତିନିଦିନ ହେଲା ଲିଆ ଅପା କାମକୁ ଆସିନାହିଁ । ଜରରେ ପଡ଼ିଛି । ତମେ ତାକୁ ଦେଖିବାକୁ ଯିବନି । ଅଣ୍ଟା ଦୋହଲାଇ ଏତିକି କହି ମୁଲିଆଣୀ ଝିଅଟି କାମରେ ଲାଗିଲା । ମୁଁ ବ୍ୟଥିତ ହେଲି । ଆହା କିଏ ଅଛି ଆଉ ଏଠି ! ମନରେ ଭୟ ବି ଆସିଲା । ମୁଁ ଯଦି ଲିଆକୁ ଦେଖିବାକୁ ଯାଏ ଆଉ ଏଇ ମୁଲିଆ ମୁଲିଆଣୀମାନେ ଏ କଥା ଜାଣନ୍ତି ତେବେ ତାକୁ ଆଉ ରଖିବେନି । କେତେ ଅପନିନ୍ଦା ଦେବେ । ଅଥଚ ମୁଁ ଅନୁଭବ କରୁଥିଲି ମୋତେ ଯିବାକୁ ହେବ । ଲିଆ ମୋ ଭିତରେ ନିତ୍ୟ ଅନୁରଣିତ ହେଉଛି । ମନ ପ୍ରାଣରେ ଲିଆ ପାଇଁ ଅନୁରାଗର ମକରନ୍ଦ ଝର ଝର ହେଇ ଝରିବାକୁ ଲାଗିଲା । ସମସ୍ତଙ୍କ ଅଲକ୍ଷ୍ୟରେ ସାଇକେଲ ଛୁଟାଇ ଧୁ ଧୁ ଖରାରେ ମୁଁ ରାସ୍ତା ଅତିକ୍ରମ କରି ଲିଆ ପାଖରେ ପହଞ୍ଚିଲି ।

ପରମ ଅନୁରାଗରେ କତରା ଘୋଡ଼ି ହୋଇ ଶୋଇଥିବା ଲିଆର ମୁଣ୍ଡରେ ହାତ ଥାପିଲି । କଥା କହିବାର ସାମର୍ଥ୍ୟ ନାହିଁ ତା'ର ଅଥଚ ଆଖି ଯୋଡ଼ିକରେ ମୋ ପାଇଁ ଅନେକ ପ୍ରତିଶ୍ରୁତି । ମୁଣ୍ଡ ଉପରେ ସିଲଭର ଗିନାଟିରେ ପାଣି ଗିନାଏ ଥୁଆ ହୋଇଛି । ମୋ ରୁମାଲ ଓଦା କରି ତା' ମୁଣ୍ଡରେ ପଟିଦେଲି । ତା ମଥାଟି କୋଳକୁ ଆଣି ନିବିଡ଼ ଭାବରେ ଜଡ଼ାଇ ଧରି ପଚାରିଲି ? ମତେ ଟିକିଏ ଖବର ଦେଲୁନି ଲିଆ ? ମୁଁ କ'ଣ ତୋର କେହି ନୁହେଁ ?

ଲିଆ ତୁଣ୍ଡ ଖୋଲିଲା । ବାବୁ ମୋର ସଂପର୍କ ଅଛି ତୋ' ସାଥିରେ ମୋ ମନ କହୁଛି । ହେଲେ କି ସଂପର୍କ । କି ନାଁ ତା' ଜାଣିନି ବାବୁ । ସଂପର୍କର ନାଁ ନଥିଲେ କେମିତି ଡାକିବି

ତତେ । ମୁଁ ଅଭିଭୂତ ହେଲି, ବ୍ୟଥିତ ହେଲି ସତରେ ଭଲ ପାଇବାର କେଡ଼େ ଅଜ୍ଞାତ ଅଜ୍ଞେୟ ତତ୍ତ୍ୱଟିକୁ ଏଡ଼େ ସହଜରେ ଲିଆ ଘଡ଼ିକ ଭିତରେ ମୋତେ ବୁଝାଇଦେଲା । ମୋ ସହିତ ଲିଆର ସମ୍ପର୍କ କ'ଣ ? ସେ ସମ୍ପର୍କକୁ କ'ଣ ବ୍ୟାଖ୍ୟା କରିହେବ ? ନାଁ ଦେଇ ହେବ ? ତଥାପି ଏଇ ନାମହୀନ ସମ୍ପର୍କରେ ବେଳେ ବେଳେ ମଣିଷକୁ ଜୀବନ ସାରା ବାନ୍ଧି ହେବାକୁ ହୁଏ । ମରୁଭୂମିରେ ମରୀଚିକା ପାଇବା ପରି ବୃଥା ପାଗଳ ହେବାକୁ ହୁଏ । ତଥାପି ଏ ସମ୍ପର୍କରେ ଦମ୍ ଅଛି । ଗ୍ରାହ୍ୟ ଆଉ ଗ୍ରାହକ ଭିତରେ ଏହା ହିଁ ସୀମାବଦ୍ଧ । ମୋତେ ଲାଗିଲା ନିମିଷକ ଭିତରେ ମୋ ସୂକ୍ଷ୍ମ ତନ୍ତ୍ରୀ ନେଇ ଲିଆର ତାତି ମୋ ଦେହକୁ ସଂଚରିଗଲା । ଏବେ ଲିଆ ଦେହ ହିମ କାକର । ମୁଁ ବାମ ହାତରେ ତା' କପାଳ ସ୍ପର୍ଶ କରି ମୋ ରୁମାଲରେ ତା' ଦେହର ଝାଳ ପୋଛିଦେଲି । ତା' ହିଲ୍ଲୋଳିତ ବକ୍ଷରେ ମୋ ହାତ ସ୍ପନ୍ଦିତ ହେଉଥିଲା । ମୋତେ ଲାଗୁଥିଲା ମୁଁ ଯେମିତି ଶୀତଳ ଗଂଗା ବକ୍ଷ ଅତିକ୍ରମି ଯାଉଛି । ମୁଁ ସିକ୍ତ । କିଛିକ୍ଷଣ ପରେ ମୁଁ ଚମକି ଗଲି । କୋଳରୁ ଲିଆର ମଥାକୁ ଅଲଗା କରି ସାଇକେଲ ଧରି ଦୌଡ଼ିଲି । ବାଟସାରା ଭାବିଲି ଜାହ୍ନବୀକୁ କ'ଣ ଅତିକ୍ରମି ହୁଏ ? କେବଳ କୂଳରେ ଥାଇ ଜାହ୍ନବୀ ଜଳ ଛିଞ୍ଚି ନିଜକୁ ପବିତ୍ର କରିବାକୁ ହୁଏ ।

ଏହା ପରେ ଲିଆ ଆମଘର ଶେଷ ହେବା ପର୍ଯ୍ୟନ୍ତ କାମ କରିଛି । ପଦଟିଏ ମୋତେ କେବେ କହିନାହିଁ କି ମୋଠୁ କିଛି ଆଶା କରିନାହିଁ । ସବୁ ସେଇ ମୂଲିଆଣୀମାନଙ୍କଠାରୁ ଜାଣିବାକୁ ପାଇଛି । ଲିଆ ସ୍ୱାମୀ ଅଣ୍ଟା ଭାଂଗି ସେଇ ସୁଦୂର ଜଂଗଲରେ କୋଉ ଅଜଣା ଘରେ ପଡ଼ି ରହିଚି । ମହୁଲ ତୋଳୁ ତୋଳୁ ଗଛରୁ ପଡ଼ି ସ୍ୱାମୀର ଅଣ୍ଟାହାଡ଼ ଦିଗଡ଼ ହେଇଛି । ସ୍ୱାମୀ ତା'ର ପୁରୁଷତ୍ୱ ହରାଇଛି । ଆଉ ସେଇ ପକ୍ଷାଘାତ ରୋଗୀର ପଥି ପାଇଁ ମହୁଲ ବଣର ରାଣୀ ଆଜି ଦାଣ୍ଡରେ ଭିକାରୁଣୀ ସାଜି ସ୍ୱାମୀର ଆୟୁଷ ପାଇଁ ଆକୃଷ୍ଟରେ ପଣତ ପତାଇଛି ଗୋଲାମ ନଗରୀର ରାଜ ଦାଣ୍ଡରେ ।

ଲିଆ ପ୍ରକୃତରେ ଜାହ୍ନବୀ, ନ ହେଲେ ତାକୁ ସ୍ପର୍ଶ କରି ମୁଁ କ'ଣ ସେଦିନ ତା' ଯୌବନକୁ ଅତିକ୍ରମ କରି ନଥାନ୍ତି । ମୁଁ ପୁରୁଷ, ଲିଆକୁ ଅତିକ୍ରମ କରିବାକୁ ମୋର ସେଦିନ ସାହସ ନଥିଲା । ଯିଏବି ଅତିକ୍ରମ କରିବାକୁ ଚେଷ୍ଟା କରିବ ସେ ତା' ସ୍ରୋତରେ ଲୀନ ହୋଇଯିବ ସିନା, ଜାହ୍ନବୀ କଳଙ୍କିତ ହେବନାହିଁ ।

ଘରକାମ ସରିଲା । ଘର ପ୍ରତିଷ୍ଠା ଦିନ ସବୁ ମୂଲିଆ ମୂଲିଆଣୀ ଆସିଲେ ସିନା ମହୁଲ ବନର ରାଣୀ ଲିଆ ଆସିଲାନି । ମୂଲିଆଣୀମାନେ କହିଲେ ଲିଆ ତା' ସ୍ୱାମୀ ପାଖକୁ ଫେରିଗଲା ଶେଷକୁ । ଗଲାବେଳେ କହିଗଲା ଆଉ ଏ ଗୋଲାମ ନଗରୀକୁ ଆସିବ ନାହିଁ କି ଆଉ ଘରକାମ କରିବ ନାହିଁ ।

ମୋ ଘର ଆଉ ଥରେ ଏବେ ଝଲମଲ ନ ହେଲେ ପ୍ରତି ଇଟା ଖଣ୍ଡରେ ଲୁଚିଥିବା ହସ ଲିଆର ମୋତେ ବିଜୁଳି ଆଲୁଅଠାରୁ ଆହୁରି ତୀବ୍ର ଲାଗୁଛି ।

ଏବେ ମହୁଲ ବଣର ରାଣୀ କୋଉ କୋରଡ଼ ଜଂଗଲରେ ମହୁଲ ଗୋଟାଉଥିବ । ପକ୍ଷାଘାତ ସ୍ୱାମୀକୁ ଭାର କରି କାନ୍ଧରେ ବୋହି ବୋହି ବାଟ ଚାଲୁଥିବ । କିନ୍ତୁ ଜଙ୍ଗଲରେ ଭାବୁଥିବ ସହରୀ ବାବୁଙ୍କ ହାବୁଡରୁ ନିଜକୁ ରକ୍ଷା କରିଛି । ଆଉ ମୁଁ ଭାବୁଛି ମୁଁ ତ ଆଉ ଭଗୀରଥ ନୁହେଁ ଜାହ୍ନବୀକୁ ବୋହି ଆଣିବି ସହରକୁ । ଯାହାହେଉ ତା' ସ୍ପର୍ଶରେ ମୁଁ ପବିତ୍ର ହୋଇଛି, ଏଇ ମୋର ଭାଗ୍ୟ । ମନ ମୋର ସବୁବେଳେ କହୁଥିବ ଜାହ୍ନବୀ ମୋ ମହୁଲ ବଣର ରାଣୀ ।



# ଈଶ୍ୱରଙ୍କ ଅନ୍ତର୍ଦ୍ଧାନର ମୁହୂର୍ତ୍ତ

## ମନୋଜ କୁମାର ପଣ୍ଡା

ରାଜୁଲା ଦୀପ ଗତ ତିରିଶ ବର୍ଷ ଧରି ଗୋଟାଇବା କାମରେ ଲାଗିଛଂତି । କେବେ କେବେ ଗୃହପାଳିତ ପଶୁଂକ ଶବ– କୁକୁର, ବିରାଡ଼ି, ଘୁଷୁରି, ଗାଈ, ବଳଦ– ଆଉ କେବେ କେବେ ମଣିଷ ଶବ । କେଉଁ ରାସ୍ତା କଡ଼ରେ, କେଉଁ ଷ୍ଟେସନ୍‌ରେ, ଭିକାରି ବସ୍ତିରେ କେହି ମରିଗଲେ ତାଂକଯାଏ ଖବର ପହଂଚେ । ଶବ ଗୋଟାଇ ଶ୍ମଶାନଯାଏ ନିଅଂତି । କେହି ବାବୁଭାୟା ବା ପୁଲିସ ବାବୁ ବା ମ୍ୟୁନିସିପାଲିଟିର କେହି ଯଦି ତାଂକୁ କିଛ ସାହାଯ୍ୟ କରଂତି ତେବେ କାମଟା ଶୀଘ୍ର ସାରିଦିଅଂତି । ପାଂଚଦଶ ଟଂକ କିଛି ମିଳିବ କି ବୋଲି ମନେମନେ ଭାବୁଥାଅଂତି । କେବେ ମିଳେ, ଆଉ କେବେକେବେ ଥାନାବାବୁ ଚିଟ୍‌ଟିଏ ଲେଖିଦିଅଂତି । ତାକୁ ନେଇ ଭାଟିକୁ ଗଲେ ମଦବୋତଲଟିଏ ମାହାଳିଆରେ ଆଣି ଆସଂତି । ସେତକ ତାଂକର ପ୍ରାପ୍ୟ ।

ଏକଦା ମଦବୋଲତ ଆଣିଲେ ସିଧା ଘରକୁ ଆସୁଥିଲେ । ନିଜ ସ୍ତ୍ରୀ ରଜନୀ ରାନୀଂକ ସଂଗେ ମିଶି ପିଉଥିଲେ । ନିଶା ଲାଗିଲା ପରେ ବୋତଲକୁ ମୁଂଡ ଉପରେ ଥୋଇ ଗୀତ ଗାଇ ନାଚୁଥିଲେ । ସ୍ତ୍ରୀ ମନା କଲେ ଗାଳିଗୁଲଜ କରୁଥିଲେ । ରଜନୀ ରାନୀଂକୁ ନିଶା ଲାଗିଲେ ସେ କଂସାବାସନ ସ୍ୱାମୀଂକ ମୁଂଡକୁ ଲକ୍ଷ୍ୟକରି ଫିଂଗୁଥିଲେ । ବାଡ଼ି ଠେଂଗା ନିଆଁଖୁଂଟା ଚଟୁଅନ୍‌କା ଯାହା ପାଇଲେ ତହିଁରେ ପିଟୁଥିଲେ । ଏମିତି ବାଡ଼ିଆପିଟା ଗାଳିଗୁଲଜରେ ଅଧରାତି ହେଲା ପରେ ଦୁହେଁ ଉତ୍ତେଜିତ ହେଉଥିଲେ ଏବଂ ଅବିନ୍ୟସ୍ତ କେଶରାଶି ଓ ପୋଷାକପତ୍ର ଚିରାଫିଂଗା ମଧ୍ୟରେ ତଳେ ଗଡ଼ାଗଡ଼ି ହେଉଥିଲେ ।

ପାହାନ୍ତା ସମୟକୁ କବାଟ ଖୋଲାହେବା ବେଳେ ଦେଖୁଥିଲେ ଏକ ଭଦ୍ର ସକାଳ, ଏକ ଲାଜ ଲାଜ ସକାଳ । ଏକ ବିଲୋଳ ସକାଳ ଯେମିତି ତାଂକ ହସ ।

ରଜନୀ ରାନୀ ଦୀର୍ଘଦିନ ହେଲା ଆଉ ନାହାଂତି । ସେ ମଲାବେଳକୁ ରାଜୁଲା ଦୀପ କହିଥିଲେ,"ଆମେ ତ ଅଛୁଆଁରେ ବୁଢ଼ୀ । ଆମେ ଆଉ ଗଂଗା ଗୋଦାବରୀ ପାର ହେବା ନାହିଁ । ନାଳନର୍ଦ୍ଦମା ପାରହେବା । ତୁ ଯା, ତୁ ଭଲରେ ଯା, ସବୁ ନାଳନର୍ଦ୍ଦମା ପାରିହୋଇ ତୋରି ଆତ୍ମା ଆରପାରିକି ଯାଉ । ମୁଁ ବି ତୋ ପଛେ ପଛେ ଆସୁଛି । ସେପାରିରେ ଆମେ ପୁଣି ଝାଡୁ ଧରିବା, ଶବ ଫିଂଗିବା । ତୁ ଡାଁଣ ହେବୁ ମୁଁ ପାଣ ହେବି ।"

ରାଜୁଲାଦୀପ ଦୀର୍ଘ ଦିନ ହେଲା ଏକାକୀ ।

ଏବେ ରାତିର ପ୍ରଥମ ପ୍ରହର । କେହି ଜଣେ ତାଂକ କବାଟ ବାଡ଼େଇ ବାହାରୁ କହିଚାଲିଗଲା, ଯେ ରାଜୁଲା ବୁଢ଼ା ଭୋର ପାଂଚଟାରେ ନୂଆପଡ଼ାର ପଡ଼ିଆରୀ ଘରକୁ ଆସୁ, ତାଂକ ଗାଈଟା ମରିଯାଇଛି । ଗାଈ ମରିଥିବାର ଖବର କାନରେ ବାଜିବା ବେଳଠୁଁ ବୁଢ଼ା ନିଜ ଭଂଗା ଟ୍ରଲିକୁ ଏକ ଲାଇଟ୍ ପୋଷ୍ଟ ତଳକୁ ଆଣି ସଜଡ଼ା କାମରେ ଲାଗିଗଲେ । ଟ୍ରଲିରେ ତିନୋଟି ଜାଗାରେ ବଡ଼

ବଡ଼ କଣା ହୋଇଛି । ଜଂକ ଲାଗିଯାଇଛି ସବୁ ସ୍ଥାନରେ । ଚକ ଦୁଇଟି ଖୋଲି ପଡ଼ିଛି ବାହାରେ । ଗତ ନବେ ଦିନ ହେଲା ମଲା ଗାଈଟିଏ ସେ ପାଇ ନ ଥିଲେ ।

ପିଲାଦିନେ ସେ ତାଂକ ବାପାଂକୁ ଏପରି କାମରେ ସାହାଯ୍ୟ କରୁଥିଲେ । ସେତେବେଳେ ସବୁକଛି ଠିକ୍‌ଠାକ୍‌ରେ କାମ ପଟିଲେ ପାଂଚ ଛଅଟଂକା ମିଳୁଥିଲା । ଗାଈ ଚମଡ଼ାର ଦାମ ଥିଲା ଦୁଇଟଂକା । ହାଡ଼ର ଦାମ୍ ଥିଲା କେଜି ପ୍ରତି ଅଧ ପଇସା ଓ ମାଂସର ଦାମ୍ ଥିଲା କିଲୋ ପ୍ରତି ଚାରି ପଇସା । ଏବେ ସେସବୁ ବଢ଼ିଯାଇଛି । ଚମଡ଼ାର ଦାମ୍ ଦେଢ଼ଶହ ଟଙ୍କା । ମାଂସ କିଲୋପ୍ରତି ଦଶଟଙ୍କା ଓ ହାଡ଼ କିଲୋପ୍ରତି ଏକଟଂକା । ସବୁକାମ ଠିକ୍‌ରେ ପଟିଲେ ପ୍ରାୟ ଦୁଇଶହ ଟଂକାଯାଏ ମିଳେ । କିନ୍ତୁ ଭାରୀ ପରିଶ୍ରମ । ସବୁକାମ ସରିବା ପାଇଁ ସାତଦିନ ଲାଗିଯାଏ ।

ରାଜୁଲା ଦୀପଂକ ବୟସ ଷାଠିଏରୁ ଉର୍ଦ୍ଧ୍ୱ । ତାଂକ ଶରୀରର ସବୁ ଅଂଗ,ତାଂକ ଲୋଚାକୋଚା ଚର୍ମ, ଫାଟିଯାଇଥିବା ପାଦ, ସର୍ପିଳ ଗତିରେ ତଳୁ ଉପରକୁ ଉଠିଥିବା ଶିରାପ୍ରଶିରା, ବାଳ ଝଡ଼ିଯାଇଥିବା ମୁଣ୍ଡ, ବାଉଁଶ ଟାଟି ପରି ପଂଜରା, କୂଅ ପରି ଗଭୀର ନାଭି, ଓହଳି ପଡ଼ିଥିବା ଦୁଇଟି କାନ, ସବୁକିଛି ଜୀର୍ଣଶୀର୍ଣ ହୋଇଯାଇଛି, ବୁଢ଼ା ହୋଇଯାଇଛି । ଟିଉବ୍‌ମାନଙ୍କରେ ଦଶ ଜାଗାରେ ପେଚ୍ କଲାପରି ଦେହର ଚର୍ମରେ ହଜାର ପୋଡ଼ାଦାଗ, ଘା' ଦାଗ, ମାଡ଼ ଦାଗ । ସବୁକିଛି ବୃଦ୍ଧ ହୋଇଯାଇଛି କେବଳ ତାଂକ ଆଖି ଓ ହସ ଭିନ୍ନ । ତାଂକ ଆଖିର ଡୋଳା ଦୁଇଟି ଶିଶୁ ସୁଲଭ । ତାଂକ ଦୃଷ୍ଟିରେ ଏତେ ବିନମ୍ର ଭାବ, ଏତେ ସ୍ୱପ୍ନ ଝୁଂଦି ହୋଇଥାଏ । ଆଶ୍ଚର୍ଯ୍ୟ ଲାଗେ । ନବେ ଦିନ ହେଲା ମଲାଗାଈଟିଏ ପାଇ ନଥିଲେ, ଅଥଚ ଆଖିର ଭରପୁର ସ୍ୱପ୍ନ ଦେଖିଲେ ବିଶ୍ୱାସ କରିହୁଏନା । ଟିନ୍-ଏଜ୍ ଆଖିର ସ୍ୱପ୍ନ ବି ଫିକା ପଡ଼ିଯିବ ।

ତାଂକ ହସ ତ ଅନ୍ୟମାନଙ୍କ ପାଇଁ ଈର୍ଷାର କାରଣ ହୋଇଥାଏ । ଏତେ ପ୍ରଗଲ୍‌ଭ, ଏତେ ଔଦ୍ଧତ୍ୟ, ଏତେ ଖୋଲା,ଏତେ ମୁକୁଳା ଯେ ଲାଗେ ସତେ ଯେପରି ସେ ହିଁ ସର୍ବେସର୍ବା । ସେ ହିଁ ଏକା । ସେ ହିଁ ନିରାକାର । ସେ ହିଁ ଈଶ୍ୱର । ତାଙ୍କ ହସଟି ଏକ କଳାବିହୀନ କଳା । ଏମିତି ଏକ ଅଂତଃସ୍ରୋତ, ଏମିତି ଏକ ସ୍ୱତଃସ୍ଫୂର୍ତ୍ତ ପ୍ରବାହ ଯେ ଲାଗେ ସମସ୍ତଙ୍କ ହସ ଚୋରି କରି ନେଇ ସେ ଏକାକୀ ହସୁଛନ୍ତି । ହସିବା ଯେମିତି ତାଙ୍କର ହିଁ ଜାଗିରୀ । ଅନ୍ୟମାନେ ହସିପାରୁ ନାହାନ୍ତି ଖାସ୍ ତାଂକ ପାଇଁ ।

ରାଜୁଲା ଦୀପ ତାଂକ ସମୁଦାୟ ଜୀବନକୁ ଶୋଇବା ଓ ସ୍ୱପ୍ନ ଦେଖିବା- ଏଇ ଦୁଇଟି କାମରେ ସାରିଦେଇଛଂତି । ସେ ଶୋଇଥାଂତି ସବୁବେଳେ । ଶୋଇବା ଭିତରେ ସ୍ୱପ୍ନ ଦେଖଂତି । ସ୍ୱପ୍ନ ଭିତରେ ଶବ ଗୋଟାଂତି । ଟ୍ରଲିରେ ଠେଲି ଠେଲି ନିଅଂତି । ରାସ୍ତାରେ ପୁଣି ଶୋଇ ଶୋଇ ଯାଆଂତି । ସେଇ ଶୋଇବା ଭିତରେ ପୁଣି ସ୍ୱପ୍ନ ଦେଖଂତି । ତାଂକ ଘର ଆଗରେ ଗ୍ରାହକଂକ ଭିଡ଼ । ହାଡ଼, ମାଂସ, ଚମଡ଼ାର ଗ୍ରାହକ । ବିକ୍ରୀ କଲା ବେଳକୁ ପୁଣି ଶୋଇପଡ଼ଂତି ଓ ସ୍ୱପ୍ନ ଦେଖଂତି । ଯାହେଉ ଦଶକୋଡ଼ିଏ ଟଂକା ପାଇଛଂତି । କେହି କେହି ଦୁଇକିଲୋ ମାଂସ ନେଇ ଏକକିଲୋର ଦାମ୍ ଦେଲେ ବି ସେ ଖୁସି ହୁଅଂତି । ଜାଣିପାରଂତି ନାହିଁ । ହସୁ ଥାଆଂତି । ଖାଲି ହସୁ ଥାଆଂତି, ସ୍ୱପ୍ନ ଦେଖୁ ଥାଆଂତି ଓ ଶୋଇ ପଡୁଥାଆଂତି । ତାଂକର ଶୋଇବା ଭିତରେ ସ୍ୱପ୍ନ, ସ୍ୱପ୍ନ ଭିତରେ ଶୋଇବା, ସେଇ ଶୋଇବା ଭିତରେ ସ୍ୱପ୍ନ, ସେଇ ସ୍ୱପ୍ନରେ ଶୋଇବା ଚାଲୁ

ରହିଥାଏ । ଯେମିତି ବଡ଼ ବାକ୍ସ ଭିତରେ ଛୋଟ ବାକ୍ସ, ତା ଭିତରେ ପୁଣି ବାକ୍ସ, ପୁଣି ବାକ୍ସ, ପୁଣି ବାକ୍ସ, ବାକ୍ସ, ବାକ୍ସ ।

ଲାଇଟ୍ ପୋଷ୍ଟ ତଳେ ଟ୍ରଲିର ଚକ ସଜାଡ଼ିବାରେ ଲାଗିଛଂତି ରାଜୁଲା ଦୀପ । ଟ୍ରଲି ନୁହେଁ, ବରଂ କୁହାଯାଉ ନିଜ ସ୍ୱପ୍ନ ସଜାଡୁଛଂତି । ଚକ ଦୁଇଟି ନବେ ଦିନ ହେଲା ଗଡ଼ି ନଥିଲା । ତା' ଅଖରେ ହୁକ୍ ଓ କଂଟାସବୁ ନଷ୍ଟ ହୋଇଯାଇଛି । ତେଣୁ ଦଉଡ଼ି ବଂଧାବଂଧି କରି ସଜାଡ଼ି ସାରିଲା ବେଳକୁ ଢେର ରାତି ହୋଇଗଲା । ରାସ୍ତା ଓ ପାଖ ପଡ଼ୋଶୀ ସବୁ ଶୁନ୍‌ଶାନ୍ । ରାସ୍ତା ମଝିରେ ଖାଲି ରାଜୁବୁଢ଼ା ଓ ତାଂକ ଟ୍ରଲି ଓ ତାଂକ ନିଦ ଓ ତାଂକ ସ୍ୱପ୍ନ । ସେଠି ହିଁ ସେ ଶୋଇପଡ଼ିଲେ ।

ଭୋର ବେଳକୁ ଦି'ଚାରି ଜଣ ସେ ପାଖ ଦେଇ ଗଲାବେଳକୁ ବୁଢ଼ା ବୋଧହୁଏ ମରିଗଲାଣି ବୋଲି କୁହାକୁହି ହେଉଥିଲେ । ମାତ୍ର ସେମାନଙ୍କ ପାଦଶବ୍ଦ ଓ ଫିସ୍‌ଫିସ୍ କଥାରେ ରାଜୁଲାର ପତଳା ନିଦ ଭାଂଗିଗଲା ଓ ସେ ଉଠିବା କ୍ଷଣି ଟ୍ରଲିକୁ ଠେଲି ଠେଲି ଚାଲିଲେ । ଚାରି କିଲୋମିଟର ବାଟ ଯିବାକୁ ଅଛି । ରାସ୍ତା ମଝିରେ ଗୋଟିଏ ପାଣିକଳରେ ମୁହଁଟା ଧୋଇବେ ବୋଲି ଭାବୁଥିଲେ, ମାତ୍ର କିଛି ସ୍ତ୍ରୀଲୋକଙ୍କୁ ଦେଖି ପାଖକୁ ଆଉ ଗଲେ ନାହିଁ । ନଳପାଣି ଗଡ଼ିଯାଇ ଜମାହୋଇ ଥିବା ପାଖ ଗଡ଼ିଆରେ ମୁହଁ ଧୋଇନେଲେ । ମୁହଁରେ ପାଣି ଲାଗି ସମୁଦାୟ ଦେହଟା ଉଶ୍ୱାସ ଲାଗିଲା । ଗୋଟେ ଥଂଡା ସ୍ରୋତ ବହିଗଲା ପାଦଯାଏ । ତାଂକ ନିଶ ଓ ଭୂଲତା ଭିଜିଯାଇ ଟାଆଁସ ଓ ଅବିନ୍ୟସ୍ତ ଦେଖାଯାଉଥିଲା । ରାଜୁଲା ମନେ ମନେ କ'ଣ ଭାବି ଟିକେ ହସି ପକାଇଲେ ଫିକ୍ କିନା ଓ ଶେଷ ହସର ଦୀପ୍ତିକୁ ଓଠ ଆଗରେ ଝୁଲାଇ ରଖି ଚାଲିଲେ ।

ମଝିରେ ମଝିରେ ସେ ଆଖି ବଂଦ କରି ଦିଅନ୍ତି ଓ ସଂଗେ ସଂଗେ ତାଂକୁ ସ୍ୱପ୍ନ ମାଡ଼ି ଆସେ । ତାଂକ ଯୁବକ ବୟସରେ ଥରେ ମା' ବାପାଙ୍କ ସାଂଗରେ ଝଗଡ଼ା ଲାଗି ଘରୁ ପଳାଇ ଯାଇଥିଲେ । ଏଠି ସେଠି ଚାରିମାସ କାଳ ଭୋକରେ ଶୋଷରେ ବୁଲାବୁଲି କଲା ପରେ ଗୋଟାଏ ରାଜ ପ୍ରାସାଦର ମୁଖ୍ୟ ଫାଟକରେ ଚୌକିଦାର ରୂପେ ଚାରିବର୍ଷ କାମ କରିଥିଲେ । ତାଂକ ଜୀବନର ସେଇ ସମୟତକ ହେଉଛି ଏକ ମୋଡ଼ । ସେଠି ସେ ଶୋଇବା ଓ ସ୍ୱପ୍ନ ଦେଖିବା ଅଭ୍ୟାସ କରିଥିଲେ । ସେଠି ସେ ରଜନୀ ରାନୀଂକୁ ପ୍ରଥମେ ଭେଟିଥିଲେ, ପ୍ରେମ କରିଥିଲେ, ଏକାଠି ରହିଥିଲେ । ତାଂକୁ ଗୋଟିଏ ବଂଧୁକ ଦିଆଯାଇଥିଲା ଓ ଖାକି ପୋଷାକ ସାରେ ଦିଆଯାଇଥିଲା । କଂବଳ ଗୋଟେ ବି ଦିଆଯାଇଥିଲା । ତାହା ପାଂଚଜାଗାରେ କଣା ହେଲା ପରେ ବି ଏଯାଏଁ ଅଛି । ଆଗରୁ କଂବଳଟି ପତଳା ଥିଲା, ଏବେ ତହିଁରେ ପ୍ରଚୁର ଧୂଳି, ପୋକଜୋକ ଓଡ଼ଶ ଲାଗି ମୋଟା ହୋଇଯାଇଛି । ରାଜୁଲା ମଝିରେ ମଝିରେ ସେଇ ଓଡ଼ଶ ଓ ପୋକମାନଙ୍କ ସାଥିରେ କଥାବାର୍ତ୍ତା ହୁଅନ୍ତି । 'ରହ ରହ କୁଆଡ଼େ ଯାଉଛୁ ? ମୋ ସାଂଗରେ ଲୁଚକାଳି ଖେଳୁଛୁ ? ରହ, ଦେଖୁଛି ଏବେ ତୋତେ'– ଏତକ କହି କହି ଧରାପଡ଼ିଲେ ମାରି ଦିଅଂତି । ହାତର ରକ୍ତକୁ କଂବଳରେ ପୋଛି ଦିଅଂତି । 'ମର୍ ମର୍ ମଲୁ ? ତୁ ଆଉ ଗୋଟେ ବାହାରିଲୁ, ଶଳା ବଦମାସ୍, ମୋର ରକ୍ତ ଖାଇବୁ ? ମୋତେ ଫଁ ଫଁ କରୁଛୁ ? ଯା, କୁଆଡ଼େ ଯାଉଛୁ ଯା, ଯାଇ ଦେଖ୍, ପାରୁଛୁ ଯଦି ତୋ ଜୀବନକୁ ବଂଚାଇ ଦେଖ୍ ।' ସେ ଯଦି କୁଆଡ଼େ ହଜିଯାଏ,'ଆଜି ସିନା ବଂଚିଗଲୁ, କାଲି ଦେଖିବୁ' କହି କଂବଳ ଘୋଡ଼ିହୋଇ ଶୋଇଯାଆଂତି ।

ରାଜପ୍ରାସାଦରେ ତାଂକ କାମ ଥିଲା କେହି ଯଦି ରାଜାଂକୁ ସାକ୍ଷାତ ପାଇଁ ଆସଂତି ତେବେ ସେ ତାଂକ ନାଁ ପଚାରିବେ ଓ 'ଏବେ ସାକ୍ଷାତ ହୋଇପାରିବ ନାହିଁ, ରାଜା ବିଶ୍ରାମ କରୁଛଂତି' ବୋଲି କହିବେ । ବେଶ୍ ଏତିକି । କେହି ଯଦି ରାଜାଂକୁ ନିଶ୍ଚେ ଭେଟିବ ବୋଲି ଜିଦି କରେ ତେବେ ବଂଧୁକ ଏମିତି ଦେଖାଂତି ଯେ ଲୋକେ ଫିକ୍‌କିନା ହସି ଦିଅଂତି ଓ ତାଂକୁ ବଂଧୁକ କେମତି ଧରିବାକୁ ହୁଏ ଶିଖାଂତି । ରାଜୁଲା ବି ହସି ଦିଅଂତି । ମାତ୍ର କୌଣସି ଲୋକଂକୁ ଛୁଇଁବାକୁ ଚେଷ୍ଟା କଲେ, ଲୋକେ ତାଂକୁ ଗାଳି ଦେଇ ଫେରିଯାଆଂତି । ରାଜାଂକୁ ସାକ୍ଷାତ ସେତିକିରେ ରୁହେ ।

ଚାରିବର୍ଷ କାଳ ଚୌକିଦାର ରହିଲା ମଧ୍ୟରେ ସେ ବଂଧୁକର ଗୁଳି କେବେ ଦେଖି ନାହାଂତି । ବଂଧୁକର ଆଗ କେଉଁଟା ପଛ କେଉଁଟା, କେଉଁ ଅଂଶକୁ କ'ଣ କୁହାଯାଏ ସେ ଜାଣି ନାହାଂତି । ଅନେକ ସମୟରେ ବଂଧୁକ ମୁନକୁ ତଳକୁ କରି ତା ବଟ୍ ଉପରେ ଗାଲକୁ ଥୋଇଦେଇ ଖୁବ୍ ବେଳଯାଏ ଶୋଇ ପଡୁଥିଲେ ଠିଆ ଠିଆ । ଏମିତି ଶୋଇବା ଭିତରେ ଅବଶ୍ୟ ବିଲେଇ ଛୁଆଟିଏ ବି ତାଂକ ଫାଟକଦେଇ ଭିତରକୁ ଯାଇପାରୁ ନଥିଲା। ଲୋକେ ଖାଲି ନିଜ ଜାତି ପଳେଇଯିବ ଭାବି ବଂଧୁକଠାରୁ ବେଶି ରାଜୁଲାଂକ ଜାତିକୁ ଭୟ କରୁଥିଲେ । ରାଜା ବି ଯେତେବେଳେ ତାଂକୁ ତିନିଟଂକା ଦରମା ଦେଉଥିଲେ ମାସ ଶେଷରେ, ଏକଫୁଟ୍ ଉଚ୍ଚରୁ ତା ଆଂଜୁଳାକୁ ପକାଇ ଦେଉଥିଲେ । ଗୋଟାଇ ସାରିଲା ପରେ ହସି ହସି ଠିଆ ହୋଇ ରହୁଥିଲେ । ରାଜା ତାକୁ 'ଯା'' ବୋଲି କହିଲେ ଫେରୁଥିଲେ, ଅନ୍ୟଥା ନୁହେଁ ।

ତାଂକୁ ବସିବା ପାଇଁ ଛୋଟ ବେଂଚ ଗୋଟିଏ ଦିଆଯାଇଥିଲା । ତାହା ବି କେତେବର୍ଷ ତଳର ପୁରୁଣା ବେଂଚ୍‌ଟିଏ । ତା'ଉପରେ ଆହୁରି ଚାରିବର୍ଷ କାଳ ବସିବା, ଶୋଇବା ମଧ୍ୟରେ ତାର କଂଟା ସବୁ ଖୋଲିଯାଉଥିଲା । ରାଜୁଲା ତାକୁ ପଥରରେ ପିଟାପିଟି କରୁଥିଲେ । ବେଂଚର ଗୋଡ଼ ଓ ପଟାସବୁ ଫାଟିଯାଇଥିଲା । ତାକୁ ଦଉଡ଼ିରେ ବାଂଧି ପଥରରେ ଛେଚି, କୌଣସି ଗଛର ଡାଳ ଯୋଡ଼ି, କାଂଥରେ ଆଉଜାଇ ରଖୁଥିଲେ । ବସୁଥିଲେ ଓ ଶୋଉଥିଲେ ଅତି ସଂତର୍ପଣରେ । ତଥାପି ଚାରିବର୍ଷ ମଧ୍ୟରେ ସେ ବସିବା ଓ ଶୋଇବା ଅବସ୍ଥାରେ ସମୁଦାୟ ଅଠର ଥର ତଳେ ପଡ଼ିଥିଲେ । ତାଂକ ଫେଟସୋର୍ଟରେ କଂଟା ଲାଗି ଆଠଥର ଫାଟିଥିଲା । ବର୍ଷା ପାଣି ପଡ଼ି ପଟାସବୁ ଢେଉ ଢେଉକା ହୋଇଥିଲା ଏବଂ ସେଥିଲାଗି ତାଂକ ପିଠି ଓ ଅଂଟା ଅନବରତ ବଥାଉଥିଲା ଓ ଦଶଥର ଖଂଡିଆ ହୋଇ ରକ୍ତ ଝରିଥିଲା । କିଂତୁ ସେ ବେଂଚକୁ ରାଜୁଲା ଖୁବ୍ ଭଲ ପାଉଥିଲେ । ଖୁବ୍‌ଯତ୍ନ ନେଉଥିଲେ । ତା ସାଂଗରେ କଥାବାର୍ତ୍ତା ହେଉଥିଲେ । ହସୁଥିଲେ । ତାଂକ ଦୃଷ୍ଟିରେ ସବୁବେଳେ 'ମୁଁ ଗଲାପରେ ତୋ- ଅବସ୍ଥା-କ'ଣ-ହେବରେ-ବେଂଚ ?'ର ଭାବ । ଖୁବ୍‌ସ୍ନେହଶୀଳ । ଖୁବ୍ ଅନୁରାଗପୂର୍ଣ୍ଣ ।

ତାଂକୁ ଦିଆଯାଇଥିବା ଥ୍ରୀ ନଟ୍ ଥ୍ରୀ ବଂଧୁକ ସହିତ ବିସେ ଆବେଗପୂର୍ଣ୍ଣ ଭାବେ କଥା ହେଉଥିଲେ, "ତୁ ତ ମୋ ସାଂଗରେ ଏମିତି ଅଛୁ, ଯେମିତି, ଡାକ୍ତର ସମସ୍ତ ଦାଂତ କାଢ଼ିନେଇଥିବା ଗୋଟିଏ ବାଘ ।" ଏବଂ ନିଜେ କହିଥିବା ଢଂଗକୁ ମନେପକାଇ ହସିଦିଅଂତି । ବଂଧୁକକୁ ସ୍ନେହରେ ଆଉଁସି ଦିଅନ୍ତି ।

ଏଇ ଚାକିରି କାଳ ଭିତରେ ସେ ରଜନୀ ରାନୀଂକୁ ଭେଟିଥିଲେ । ରାଜନୀ ରାନୀ ପ୍ରତିଦିନ ଏକ ନିର୍ଦ୍ଦିଷ୍ଟ ସମୟରେ ସକାଳ ବେଳା, ରାଜପ୍ରାସାଦର ଦକ୍ଷିଣ କୋଣର ସୀମା ପାର ହୋଇ ମୁଂଡରେ ଏକ ବାଲଟି ବୋହି ଯାଉଥିଲେ । ସେପଟେ ଜଂଗଲ ଥିଲା । ବହୁତ ଦିନ ଯିବାଆସିବା ଦେଖିବା ପରେ ଦିନେ ମୁହଁକୁ ମୁହଁ ଚାହିଁ ଉଭୟେ ହସିଥିଲେ, ଖୁବ୍ ଦୂରରୁ । କିଛିଦିନ ପରେ ପାଖରୁ ହସିଥିଲେ । ଆଉ ଦୁଇଦିନ ପରେ ଗେଟ୍ ପାଖରେ । ଆଉ ଦିନେପରେ ଗାଜୁଲାଂକ କୋଠରିରେ । ପର ମୁହୂର୍ତ୍ତରେ ସେମାନେ ହସିଥିଲେ ଆଖିରେ ଓଠରେ, ଦେହରେ, ଚର୍ମରେ, ହାଡ଼ରେ, ମାଂସରେ, ଫୁସ୍‌ଫୁସ୍‌ରେ, କଲିଜାରେ, ଗର୍ଭାଶୟରେ, ଝାଳରେ-ରକ୍ତରେ-ରେତରେ, ସେମାନେ ହସିଥିଲେ ବି ପରସ୍ପର ସ୍ୱପ୍ନରେ, ପରସ୍ପର ନିରବତାରେ, ପରସ୍ପରର ଶବ୍ଦରେ, ପରେପରେ ସେମାନେ ହସିଥିଲେ ଧୂଆଁରେ କଳା ହୋଇଥିବା କଂଥକୁ ଦେଖି, କଳା ମକରାଜାଲକୁ ଦେଖି, ମୁଣ୍ଡରୁ ଉପୁଡ଼ି ଉଜୁଡ଼ି ଯାଇଥିବା ଫୁଲର ପରାଗରେଣୁ ଦେଖି, ଘରସାରା ବିଛାଇ ହୋଇପଡ଼ିଥିବା ଉଲିଚୋପା, ଚାଉଳର ଅଗାଡ଼ି, ଫଟା କଂଥାକନାକୁ ଦେଖି, ଓଡ଼ଶ ଦୌଡ଼ୁଥିବା କଂବଳକୁ ଦେଖି, ବଂଧୁକ ଦେଖି, ଭଂଗା ବେଂଚ ଦେଖି, ଫଟା ମସିଣା ଦେଖି, କାଂଥରେ ଝୁଲା ହୋଇଥିବା ଅପରିଷ୍କାର ମୋଜା ଓ ଫାଟି ଆଁ କରିଥିବା ଯୋତା ଦେଖି, ସେମାନେ ହସିଥିଲେ ପ୍ରଚୁର ।

ଦୁଇଦିନ ପରେ ଯେତେବେଳେ ରାଜାଂକ କାନକୁ ଖବର ଗଲା ସେଦିନ ରାଜା ନିଜେ ଡକାଇ, ଚାରିଟଂକା ତା ପାଖକୁ ଫିଂଗିଦେଲେ, ସେଇ ଯାଗାଛାଡ଼ି ଚାଲିଯିବାକୁ ନିର୍ଦ୍ଦେଶ ଦେଇଥିଲେ ଓ ବଂଧୁକଟି ନେଇଆସିବା ପାଇଁ ଲୋକ ପଠାଇଥିଲେ । ରାଜୁଲା ଓ ରଜନୀ ସେଦିନ ସେ ସହର ଛାଡ଼ି ଆସିବା ପାଇଁ ବାଧ୍ୟ ହୋଇଥିଲେ ।

ସେ ସବୁ ପ୍ରାୟ ଚାଳିଶ ବର୍ଷ ତଳର କଥା, ସ୍ୱପ୍ନର କଥା ।

ସକାଳ ତଥାପି ହୋଇ ନାହିଁ । ବୁଢ଼ା ଆଖି ବଂଦକରି ଶୋଇଶୋଇ ରାସ୍ତାରେ ଚାଲିଛଂତି । ଟ୍ରଲିର ଚକ ଖୋଲିଯିବାର 'ଖଟାକ୍' ଶବ୍ଦରେ ସେ ଚମକି ପଡ଼ି ଚାହିଁଲେ । ଟ୍ରଲିକୁ ପଚାରିଲେ, "କ'ଣ ହେଲା କିରେ ? ପୁଣି ଭାଂଗିଗଲୁ ? ତତେ ଆଉ କେତେ ସଜାଡ଼ିବିକହ ? କେତେ କାଳ ଆଉ ମୁଁ ତତେ ପାଳିବି ?" କହି କହି ପୁଣି ସଜାଡ଼ିବାରେ ଲାଗିଲେ । "ଆଜି ଗୋଟିଏ ଦିନ ପାଇଁ ଠିକ୍ ହୋଇଯା । କାଲିଠୁ ପୁଣି ପଡ଼ିଥିବୁ, ଶୋଇଥିବୁ । ଆଜି ଗୋଟିଏ ଦିନ ପାଇଁ ଠିକ୍ ହୋଇଯା । ମୁଁ ତତେ କେତେ ସାହାଯ୍ୟ ନକରିଛି ? ଆଜି ମୋତେ ଟିକେ ସାହାଯ୍ୟ କର । ନବେଦିନ ହେଲା ଗାଈଟିଏ ପାଇ ନଥିଲି । ତୁତ ଜାଣୁ ମୁଁ କେତେଦିନ ହେଲା ଖାଇ ନାହିଁ । ତୋତେ ଆଉ କେତେ ଖାଇବାକୁ ଦେଇପାରିବି ? ବୁଢ଼ୀ ତ ଚାଲିଗଲା । ମୁଁ ବି ବୁଢ଼ା ହେଲିଣି । ତୁବି ବୁଢ଼ା ହେଲୁଣି । ଆମେ ବି ଧୀରେ ଧୀରେ ଯିବା । ଆଜି ଗୋଟିଏ ଦିନ ମୋତେ ସାହାଯ୍ୟ କର । ଗାଈଟାକୁ ମୋ ଘରକୁ ଆଣିଦେ । ଆଜି ଦିନକ ମୋତେ ସାହାଯ୍ୟ କର । ଆଜି ଦିନଟିଏ । ଆଉ ମୁଁ ତୋତେ କେବେ କଷ୍ଟ ଦେବି ନାହିଁ ।"

ଏତେବେଳକୁ ବଂଧା ସରିଲା, ଚକ ଗଡ଼ିଲା । ରାଜୁଲା ପୁଣି ଟ୍ରଲିକୁ ଠେଲି ଠେଲି ପଡ଼ିଆରୀ ବୁଢ଼ା ଘର ଅଗଣାରେ ପହଂଚିଲେ । ସୂର୍ଯ୍ୟୋଦୟ ହୋଇ ଆସୁଥିଲା । ଉଜ୍ଜ୍ୱଳ ଓ ପରିଷ୍କାର

ଦେଖାଯାଉଥିଲା ଦଶଦିଗ । ସୁନାରଂଗର ଖରା ପଡ଼ିଆସୁଥିଲା ଗଛ ଉପରେ । ପଢ଼ିଆରୀ ବୁଢ଼ା ରାଜୁଲାଙ୍କୁ ହାତଠାରି ବତାଇଦେଲେ ଘରର ବାରିପଟକୁ ଯିବା ପାଇଁ । ପଛପଟ ଅଗଣାରେ ଚିତ୍ ହୋଇ ପଡ଼ିଛି ପ୍ରକାଂଡ ଗାଈଟି । ଗୋଟିଏ ଗୋଡ଼ ଟେକିଛି ଆକାଶମୁହାଁ କଳା ରଂଗର ଗାଈ । ପେଟରେ ହାତୀର ଶୁଂଢ଼ ପରି ଲଂବିଯାଇଛି ଏକ ମୋଟା ଧଳାରଂଗର ଗାର । କପାଳରେ ଧୂସର ରଂଗର ଅକ୍‌ଟୋପସ୍ ପରି ଏକ ଛାପ ।

ରାଜୁଲା ଦୀପ ସାଧାରଣତଃ ଜୀବଂତ ଲୋକଂକ ସଂଗେ କମ୍ କଥା ହୁଅଂତି । ମାତ୍ର ଶବମାନଂକ ସଂଗେ ବା ଗଛଲତା ଓ ବିଭିନ୍ନ ବସ୍ତୁ, ଯେପରି ତାଂକ କଂବଳ, କଂବଳର କୀଟ, ତାଂକ ଜୋତା, ପୋଷାକ, ତାଂକ ଟ୍ରଲି, ଘରର କାଂଥ, କବାଟ, ମାଟି, ଗୋବର, ଭୂଇଁ, ଆକାଶ ସଂଗେ ଯଥେଷ୍ଟ କଥା ହୁଅଂତି । ଏପରିକି ନିଜ ହାତ ସଂଗେ, ନିଜ ରକ୍ତ, ନିଜ ଘା, ନଜ ପିଠି, ଅଂଟା ସଂଗେ ବି ଯଥେଷ୍ଟ କଥା ହୁଅଂତି । ଏପରିକି ନିଜ ଦେହର ତାତିକୁ, ଜରକୁ, କହଂତି, "ଆଉ କେତେଦିନ ମୋତେ ଏମିତି ପକାଇ ରଖିବୁରେ ଜର ? ଏମିତି ପଡ଼ିଥିବୁ ଯଦି ଖାଇବୁ କ'ଣ ? ଆଜି ସକାଳ ହେଲା ଭିତରେ ଯଦି ମୋ ଦେହ ଛାଡ଼ି ନଯାଇଛୁ ତେବେ ଦେଖିବୁ, ମୁଁ ତୋତେ ଛାଡ଼ି ବାହାରି ଯିବି କାମକୁ ।" ଏବଂ ସତକୁ ସତ ସକାଳକୁ ଜର ଛାଡ଼ି ଚାଲିଯାଇଥାଏ । ବୁଢ଼ା ଟ୍ରଲି ଧରି ବାହାରିଲେ ରଜନୀ ରାନୀ କହୁଥିଲେ, "ଆଜି କୁଆଡ଼େ ଯିବା ଦରକାର ନାଇଁ । ତିନିଦିନ ହେଲା ଜର ଥିଲା । ଗୋଡ଼ହାତ କ'ଣ କହୁଥିବ ?" ଟ୍ରଲିକୁ ନିଜେ ଛଡ଼ାଇ ନେଇ ଠେଲି ଦିଅଂତି ଗୋଟେ କୋଣକୁ । ବୁଢ଼ା ଲଡ୍ କରି ବସି ରୁହଂତି ।

ସେ ଢେରଦିନ ତଳର କଥା । ବୁଢ଼ୀ ମରିବାର ଏବେ ଦଶ ବର୍ଷ ହେଲାଣି ।

ରାଜୁଲା ମଲାଗାଈର ଚାରିପଟେ ଘେରାଏ ବୁଲି ଆସିଲେ । କେଉଁଠୁ ପ୍ରଥମେ କାମ ଆରଂଭ କରିବେ ଭାବିଲେ । ପାଖରେ ପଢ଼ିଆରୀ ଘରର ଦୁଇଟି ହଳିଆଂକୁ ବିଡ଼ିଟିଏ ମାଗିଲେ । ସେମାନେ ବିଡ଼ିଟିଏ ଅଂଟାରୁ କାଢ଼ି ତା' ପାଖକୁ ଫିଂଗିଦେଲେ । ଦିଆସିଲି କାଢ଼ି କାଗଜ ଟୁକୁରାଟିଏ ଜାଳିଦେଲେ । ବୁଢ଼ା ସେଇ ନିଆଁରେ ବିଡ଼ି ପହଁଟାଇ ଘଡ଼ିଏ ବସି ପିଇଲେ । ଶେଷାଂଶକୁ ଲିଭାଇ ଦେଇ ବହୁ ଦୂରକୁ ଫିଂଗିଦେଲେ ଏବଂ ସଂଗେ ସଂଗେ ଗାଈକୁ ବଂଧାବଂଧି କାମରେ ଲାଗିପଡ଼ିଲେ । ଚାରିଟା ଗୋଡ଼କୁ ଏକାଠି କରି ବାଂଧି ପକାଇଲେ । ଟ୍ରଲିକୁ ଆଣି ବଂକେଇ ରଖିଦେଲେ ଏବଂ ଗୋଟିଏ ମୋଟା ଗଛର ଗଂଡିଟିଏ ଆଣି ଓ ଦୁଇଟି ଶକ୍ତ ଠେଂଗା ଆଣି ଖୁଂଟା ଦେଇ ଦେଇ ଗାଈର ଶବକୁ ଠେଲି ଠେଲି ଟ୍ରଲିରେ ଭର୍ତ୍ତି କଲେ । ପ୍ରାୟ ଏକଘଂଟା ଲାଗିଲା । ଟ୍ରଲିର ଚକଟିଏ ପୁଣି ଖୋଲିଗଲା । ତାକୁ ପୁଣି ବାଂଧିବାରେ ଆହୁରି ଏକଘଂଟା ଲାଗିଲା । ପଢ଼ିଆରୀ ବୁଢ଼ା ସେଇ ଦୁଇ ଘଂଟାକାଳ ପାଖରେ ଛିଡ଼ାହୋଇ ରାଜୁଲା କାହିଁକି ଡେରି କରୁଛି, ମୂର୍ଖଟାଏ, ବୁଢ଼ା ହେଲାଣି, ଏ କାମ ପାରୁନି ଯଦି ଛାଡ଼ି ଦେଉ, କହି କହି ଗାଳି ଦେବାରେ ଲାଗିଥିଲେ । ରାଜୁଲା ହସିବାରେ ଲାଗି ଥାଆଂତି, କାମରେ ଲାଗିଥାଆଂତି ।

ଟ୍ରଲିରେ ଗାଈର ମୁଂଡଟା ତଳକୁ ଝୁଲି ରହିଥାଏ । ଆଖି ଦୁଇଟି ତଥାପି ଦେଖୁଥାଏ । ଗୋଡ଼ ଚାରିଟି ବଂଧା ହୋଇ ଆକାଶମୁହାଁ । ଲାଂଜଟିର ଅଗ୍ରଭାଗ ଚକ ପାଖକୁ ଝୁଲି ପଡ଼ିଥାଏ । କିଛି ବଡ଼ବଡ଼ ମାଛି ମଧ୍ଯ ଡିଆଁଡେଇଁ ହେଉଥିଲେ ଖୁସିରେ । କିଛି ପିଂପୁଡ଼ି ବି ଇତସ୍ତତ ଯିବାଆସିବା

ହେଉଥିଲେ । ସେମାନେ ଖୁସିରେ ଥିଲେ କି ନଥିଲେ ଜଣାପଡୁ ନଥିଲା । ବାରିପଟ ଅଗଣାରୁ ରାସ୍ତାଯାଏ ଟ୍ରଲିକୁ ଠେଲି ଠେଲି ଆଣିବାରେ ବୁଢ଼ାକୁ ଅଧଘଂଟା ସମୟ ଲାଗିଲା । ବୁଢ଼ା ନିଜେ ଟ୍ରଲି ଦ୍ୱାରା ଠେଲି ହୋଇଯାଉଥାଂଆତି ।

ଯାହେଉ ପଢ଼ିଆରୀ ପରିବାର ଖୁସି ଯେ ଘରୁ ଗୋଟିଏ କାଳ ଗଲା । ଗାଈ ପଡ଼ିଥିବା ଜାଗାକୁ ହଳିଆମାନେ ଲିପିପୋଛି ସଫା କରିଦେଲେ । ଘରସାରା, ଅଗଣା ସାରା ତୁଳସୀ ପାଣି ପକାଗଲା । ଘରଟାକୁ ପବିତ୍ର କରିଦିଆଗଲା । ଗତକାଲି ରାତିରୁ ଅପବିତ୍ର ହୋଇ ଘରଟା ଅଛୁଆଁ ହୋଇଥିଲା ।

ଗାଈଟି ପ୍ରଥମେ ଯେଉଁ ଦିନ ଘରକୁ ଆସିଥିଲା ତା' ରଂଗ କଳା ହୋଇଥିବାରୁ ନାତି ନାତୁଣୀମାନେ କହିଥିଲେ ତା' ନାଁ କାଳୁ ରଖାହେବ । କିନ୍ତୁ ତାଙ୍କ ଅଜାଆଈ ପୂଜାଥାଳି ଧରି ଗାଈ ମୁହଁରେ ସିନ୍ଦୂର ଗାର ଲଗାଇଲା ବେଳକୁ ରାଗିଯାଇ କହିଥିଲେ, 'କାଳୁ' ନୁହେଁ, 'ଲାଲୁ' । ଏମିତି 'କାଳୁ' ଓ 'ଲାଲୁ'ର ଖେଳରେ ଶେଷରେ 'ଲାଲୁ' ନାଁଟି ରହିଲା । ତା' ବେକରେ ଗୋଟାଏ ଘଂଟ ବଂଧା ହେଲା । ତା' ଶିଙ୍ଘରେ ଲାଲକନା, ବେକରେ ଫୁଲମାଳ ବଂଧାହେଲା । ପରିବାର ସମସ୍ତେ ମିଶି ଫଟୋ ନେଲେ । ଛୋଟ ନାତୁଣୀଟି ଗାଈ ପିଠିରେ ବସି ଫଟୋ ଉଠାଇବ ବୋଲି ଜିଦ୍ କରିବାରୁ, ବୁଢ଼ା ବୁଝାଇଲେ, ଗାଈ ପିଠିରେ ବସନ୍ତି ନାଇଁ,ଗାଈ ଦେହରେ କେବଳ ଭଗବାନ ବସଂତି । ତେତିଶ କୋଟି ଦେବତା ଗାଈ ଦେହରେ ରହଂତି । ତା' ମୁହଁରେ ସ୍ୱୟଂ ବିଷ୍ଣୁ ଅନଂତ ଶୟନରେ ଥାଆଂତି । ପାଖରେ ଲକ୍ଷ୍ମୀ । ବିଷ୍ଣୁଂକ ନାଭି ଗର୍ତ୍ତରୁ ସହସ୍ର ପାଖୁଡ଼ାର ପଦ୍ମ ଫୁଲରେ ସ୍ୱୟଂ ବ୍ରହ୍ମା ଧ୍ୟାନମୁଦ୍ରାରେ ଥାଆଂତି । 'ଲାଲୁ'ର ପେଟରେ ନଂଦିନୀ ଗାଈ, ପାଖରେ ଛିଡ଼ା ହୋଇଥାଆଂତି ଶିବ ପାର୍ବତୀ । ତା' ପିଠିରେ ଥାଆଂତି ରାମ ଲକ୍ଷ୍ମଣ ଓ ସୀତା, ପାଖରେ ହନୁମାନ । ତା' ଲଂଜର ପ୍ରତ୍ୟେକ ବାଳରେ ଥାଆଂତି ସ୍ୱର୍ଗର ସବୁ ଦେବତା ଗଣ । ପର୍ବତାରୋହୀମାନଙ୍କ ପରି ଓହଳି ଥାଆଂତି ।

'ଲାଲୁ' କେତେ ପବିତ୍ର ନଥିଲା ସତେ ! ନଜର ନ ପଡ଼ିବ ବୋଲି ତା' ଗୋବରକୁ ପିଲାଂକୁ ଟିକା ମଖାଯାଉଥିଲା । ଅଗଣାକୁ ପବିତ୍ର ଓ କୀଟାଣୁ ଶୂନ୍ୟ ରଖିବା ପାଇଁ ଗୋବର ପାଣିରେ ଧୂଆ ଯାଉଥିଲା । କାର୍ତ୍ତିକ ମାସଯାକ ତୁଳସୀ ଚଉଁରା ମୂଳେ ଗୋବର ରଖି ତା' ଉପରେ ଗୁଆ ଥୋଇ 'କୁବେର' ନାଁରେ ପୂଜା କରାଯାଉଥିଲା । ଲାଲୁର ଅନେକ ମହାତ୍ମ୍ୟ ଥିଲା । ଅଥଚ ସଂଧ୍ୟା ଆଠଟା ବେଳକୁ ଗତକାଲି ତା'ର ପ୍ରାଣବାୟୁ ଉଡ଼ିଯାଇଥିଲା । ତା' ଦୁଇଟି ବାଛୁରୀ ଏବେ ବଡ଼ ହେଲେଣି । ତା' ପାଖରୁ ଆଠ ଲିଟର କ୍ଷୀର ମିଳୁଥିଲା । ରକ୍ଷାବଂଧନ ଦିନ ତାକୁ ସୁଂଦର ଭିଟାମିନ୍ ଯୁକ୍ତ ଖାଦ୍ୟ କଅଁଳ ଘାସ ସାଂଗରେ ନହେଲେ କୁଂଡା ସାଂଗରେ ଖାଇବାକୁ ଦିଆଯାଉଥିଲା । ତା' ମୁଂଡକୁ ଛୁଇଁ ତା' ଆଗରେ ମୁଂଡିଆ ମାରୁଥିଲେ ସମସ୍ତେ । ସଫା ପାଣିରେ ଡେଟଲ ପକାଇ ତାକୁ ଗାଧୋଇବା ପାଇଁ ପାଣି ଢଳା ଯାଉଥିଲା । ଖରାଦିନେ ଲାଲୁର କୋଠରି ଥଂଡା ହେବ ବୋଲି ଫ୍ୟାନ୍ ଲଗାଯାଉଥିଲା । ଲାଲୁ ସବୁବେଳେ ଶୁଦ୍ଧପୂତ ପବିତ୍ର ରହୁଥିଲା । ଅଥଚ ଡାକ୍ତର ଅସି କହିଲେ, 'ଅଧଘଂଟା ଆଗରୁ ମରି ସାରିଲାଣି ।'

ବୁଢ଼ାବୁଢ଼ୀ ଦୁହେଁ ଚମକି ପଡ଼ିଲେ । କାଂଦି ପକାଇଲେ । ରାତିରେ ଖାଇ ପାରିଲେ ନାଇଁ । ଶୋଇ ପାରିଲେ ନାଇଁ । ତା'ର ଶବ ସତ୍କାର ପାଇଁ ରାଜୁଲା ଦୀପକୁ ଡକାଇବାକୁ ପଡ଼ିଲା । କାରଣ

ଯେଉଁ ମୁହୂର୍ତ୍ତରେ ଲାଲୁର ପ୍ରାଣବାୟୁ ଉଡ଼ିଯାଇଥିଲା ସେଇ ମୁହୂର୍ତ୍ତରେ ସବୁ ଈଶ୍ୱର ଅଂତର୍ଧାନ ହୋଇଗଲେ । ତେତିଶ କୋଟି ଦେବତା ତା'ର ଦେହଛାଡ଼ି ଉଡ଼ି ଉଡ଼ି ଆଲୋକର ବେଗରେ, ସଂକେତକୁ ତିନିଲକ୍ଷ କିଲୋମିଟର ବେଗରେ ହିମାଳୟ ବାଟ ଦେଇ ସ୍ୱର୍ଗକୁ ପଳାଇଲେ । ଲାଲୁ ତେଣୁ ଅଛୁଆଁ ହୋଇଗଲା ଓ ଅଛୁଆଁ ପାଣକୁ ଡକାଗଲା ।

କୁକୁର ବିରାଡ଼ି ଘୁଷୁରି ଠେକୁଆ ମୂଷା ଶୁଆ ସାରୀ ପାରା କୁକୁଡ଼ା ହଂସ ବତକ କେହି ହେଲେ ଅଛୁଆଁ ହୁଅଂତି ନାହିଁ । କାରଣ ତାଂକ ଦେହରେ ତେତିଶ କୋଟି ଦେବତାରୁ ଗୋଟିଏ ହେଲେ ରହଂତି ନାଇଁ । ଖାଲି ଲାଲୁର ଲୋମ ଭିତରଟା ଉଷୁମ ଲାଗେ ବୋଲି ଈଶ୍ୱରମାନେ ଆରାମରେ ରହଂତି । ତା'ର କ୍ଷୀର ଖାଇ ହୃଷ୍ଟପୁଷ୍ଟ ହୁଅଂତି । ପଡ଼ିଆରୀ ବୁଢ଼ା ଘରକୁ ପଂଚାମୃତ ଦିଅଂତି । ଲାଲୁ ଏବେ ଆଉ ଇହ ଜଗତରେ ନାହିଁ । ଈଶ୍ୱରମାନେ ବି ଆଉ ଇହ ଜଗତରେ ନାହାତି । ପବିତ୍ର ଓ ଅପବିତ୍ରର ମଝିରେ ଯେଉଁ ସୂକ୍ଷ୍ମ ଗାରଟିଏ ଅଛି ତାକୁ ଛୁଇଁ ଦେବା କ୍ଷଣି ଈଶ୍ୱରମାନେ ଅନ୍ତର୍ଦ୍ଧାନ ।

ରାଜୁଲା ଠେଲି ଠେଲି ଯିବା ମଧ୍ୟରେ କେତେବେଳେ ନିଜେ ଠେଲିହୋଇ ଯାଉଛଂତି । ସମୁଦାୟ ରାସ୍ତାକୁ ଉଠ୍‌ପଡ୍ ହୋଇ ବସିଉଠି, ପାଣି ପିଇ, ନିଜ ଘର ଅଗଣା ଯାଏ ପହଂଚିଲା ବେଳକୁ ଅପରାହ୍ନ ହୋଇସାରିଥିଲା । ଘର ପାଖରେ ପହଂଚି ସାମାନ୍ୟ ଜୋରରେ ଠେଲି ନିଃଶ୍ୱାସ ମାରି ଦମ୍ ନେଲାବେଳକୁ ଟ୍ରଲିଟି ଦି'ଖଂଡ ହୋଇ ଭାଂଗିଗଲା ଏବଂ ଗାଈଟି ଘୋଷାଡ଼ି ହୋଇ ଅଗଣାରେ ପଡ଼ି ରହିଲା । ରାଜୁଲା ବି ଗୋଡ଼ହାତ ବିସ୍ତାରି ଅଗଣାରେ ଧୂଳି ଉପରେ ଆକାଶମୁହାଁ ହୋଇ ଗଡ଼ିପଡ଼ିଲେ । ନିଜ ଶରୀରର ପ୍ରାୟ ଦଶଗୁଣ ଓଜନର ଗାଈଟିକୁ ନିଜ ଘରଯାଏ ଆଣିପାରିଥିବା ହେତୁ ସେ ଭାରି ଖୁସି। ଏବେ କିଂତୁ ତାଂକ ମୁହଁରେ ହସ ନାହିଁ । ଆଖିରେ ଶିଶୁସୁଲଭ ଆବେଗ ନାହିଁ । ନିଷ୍ପ୍ରଭ ହୋଇଯାଇଛି । କିଂତୁ ସେ ଆଖି ବଂଦ କଲେ ଓ ରଜନୀ ରାନୀଂକୁ ସ୍ୱପ୍ନରେ ଦେଖିଲେ ।

ସେ କେତେ କରି ଚେଷ୍ଟା କରିଥିଲେ ନୂଆ ଟ୍ରଲିଟିଏ କିଣିବା ପାଇଁ । ଦୁଇଶହ ଟଙ୍କା ଅଭାବରେ ସେ କାମଟା ହୋଇପାରି ନଥିଲା । ରଜନୀ ତାଂକୁ ଗୋଟେ ହିସାବ ବାଢ଼ି ଦେଇଥିଲେ, ତାଂକର ଗୋଟିଏ ମାସର ରୋଜଗାର । ଥାନାବାବୁ ଘରେ କୋଡ଼ିଏ ଟଂକା, ବୁଠି ମାଷ୍ଟର ଘରେ ଦଶଟଂକା, ହାବିଲଦାର ଘରେ ଦଶ ଟଂକା, ରାଇଟର ଘରେ କୋଡ଼ିଏ ଟଂକା, ଠାକୁର ଘରେ ପଂଦର ଟଂକା, ଆର୍.ଆଇ. ଅଫିସରେ ଚାଳିଶ ଟଂକା, ପଠାନ ଘରେ ଦଶ ଟଂକା, ଚାରିଟି । ଦିଦି ଘରେ ଚାଳିଶ ଟଂକା, ଘାସି ଘରେ ଦଶ ଟଂକା, ଅଗ୍ରୱାଲ ମାରବାଡ଼ି ଘରେ ତିରିଶ ଟଂକା, ବଂଗାଲୀ ଘରେ ଦଶ ଟଂକା– ଏମିତି ସମୁଦାୟ ସେ ମଣିଷ ଗୁହ ବୋହି ମାସକୁ ଦୁଇଶହ ପଂଦର ଟଂକା ପାଏ । ତହିଁରେ କେବେକେବେ ରୁଟି, ଚା, ଅଇଁଠା ଭାତ, ଆଚାର, ଉଲି । ଆଉ କେବେ ଯଦି କାହାର ବାହାଘର ହୁଏ ତେବେ ଯଥେଷ୍ଟ ଭାତ ମିଳେ । ତାକୁ ଗରମ କରି ସାତ ଦିନଯାଏ ଖାଇବା ପିଇବା ଚାଲେ । ସେଇ ମାସମାନଂକରେ ବି ପଇସା ଜମାକରି ଟ୍ରଲିଟିଏ କିଣିବାର ଇଚ୍ଛା ପୂରଣ ହୋଇପାରେନା'। ରଜନୀ ରାନୀକୁ ଶେଷରେ ବାତରୋଗ ହୁଏ । ସେ ପଡ଼ିରୁହେ ବର୍ଷେ କାଳ ଓ ମରିଯାଏ ।

ବୁଢ଼ୀର ଶବକୁ ବି ସେ ଟ୍ରଲିରେ ନେବାର ଚିଂତା କରିଥିଲା । ମାତ୍ର ଦି'ଜଣ ଜାତି ଭାଇ ଖୁବ୍ ଦୂରରୁ ଖବର ପାଇ ଆସିବାରୁ ଘର ପାଖରେ ଗାତ ଖୋଳି ପୋତି ଦିଆଯାଇଥିଲା । ବଡ଼ ପଥରଟିଏ ମାଟିଗଦା ଉପରେ ରଖି ରାଙ୍କୁଲା ଘଂଟାଏ କାଳ ଚୁପ୍‌ଚାପ୍ କାଂଦିଥିଲେ । ବର୍ତ୍ତମାନ ଯଦି ବୁଢ଼ୀ ଥାଆଂତା ତାଂକୁ କେତେ ଯତ୍ନ କରି ନଥାଆଂତା !

ଗାଇ ପଡ଼ିଛି, ବୁଢ଼ା ପଡ଼ିଛି ।

ବୁଢ଼ା ଘଂଟାଏ ପରେ ଉଠିବସିଲେ । ଘର ଭିତରକୁ ଯାଇ ପୁରୁଣା ଛୁରୀଟିଏ ଖୋଜି ବାହାର କଲେ । ଲୋକଟିଏ ତା ଅଗଣାକୁ ଆସି କହିଲା, "ଚମଡ଼ାଟି ମୁଁ ନେବି, ଦୁଇଶହ ଟଂକା ଦେବି, ତୁ କଟାକଟି କର, ଆଉ କେହି ଆସିଲେ ମନା କରିଦେବୁ, ବୁଝିଲୁ ?"

ବୁଢ଼ା ମୁଂଡ ଟୁଂଗାରି ହଁ କଲେ । କିଛି କହିଲେ ନାଇଁ । ଲୋକଟି ଫେରିଗଲା ।

ତା' ଘରର ତାଟି କବାଟକୁ ଆଉଜାଇ ବୁଢ଼ା ଛିଡ଼ା ହେଲେ କିଛି ସମୟ । ମୁଂଡକୁ କାଂଥରେ ଆଉଜାଇ ଆଣିଲେ । ତାଂକ ଆଖିରୁ ଆଲୋକ ଲିଭି ଆସୁଛି ପରି ଜଣାଗଲା । ମୁଂଡ ବୁଲାଉଛି ପରି ଜଣାଗଲା । ବୁଢ଼ା ଆଖି ବଂଦ କରି ଶୋଇବାକୁ ଚେଷ୍ଟା କଲେ । କିଂତୁ ଆଖି ବଂଦ ହେଲା ନାଇଁ, କି ସ୍ୱପ୍ନ ବି ହେଲା ନାଇଁ । ହସିବାକୁ ଚେଷ୍ଟା କଲେ, ଓଠ ଦୁଇଟି ଖୋଲିଲା ନାଇଁ । ହାତଗୋଡ଼ ସବୁ ଥରି ଉଠୁଥିଲା । ଧୀରେ ଧୀରେ କାଂଥକୁ ଧରି ଗାଈ ପାଖକୁ ଆସିଲେ । ବଂଧାଗୋଡ଼ର ଦଉଡ଼ିକୁ ପୁରୁଣା ଛୁରୀରେ କାଟିବାକୁ ଉଦ୍ୟମ କଲେ । ଦୁଇ ମିନିଟ୍ ଘସିବା ପରେ ଦଉଡ଼ି ହୁଗୁଳା ହୋଇଯିବାରୁ ଗୋଟିଏ ଗୋଡ଼ ବୁଢ଼ାର ମୁଂଡରେ ଖୁବ୍ ଜୋର୍‌ରେ ଛିଂଚାଡ଼ି ହୋଇ ପିଟିହେଲା । ବୁଢ଼ା ଦୁଲ୍‌ଦାଲ୍ କଚାଡ଼ି ହୋଇ ଗାଈ ପେଟରେ ପଡ଼ିଗଲେ । ପ୍ରାୟ ଏକମିନିଟ୍ ଯାଏ ତାଂକର ଓଠ-ଗାଲ-ନାକ-ଆଖି ଏବଂ ହାତଗୋଡ଼ର ଆଂଗୁଠି ସବୁ ଭିଡ଼ିମୋଡ଼ି ହୋଇ ଦେହଟା ନିଷ୍ପଂଦ ନିଥର ହୋଇଗଲା । ବୁଢ଼ା ଶବ ପାଲଟିଗଲେ ।

ନବେ ଦିନର ବହଳିଆ ଅଂଧାର ଭରପୁର ହୋଇ ରହିଥିବା ତାଂକର ସବାଶେଷ ବାକ୍‌ସଟି ସ୍ୱପ୍ନହୀନ ହୋଇ ପଡ଼ିଥିଲା ।



# ଉଆସର ଉପକଥା

## ବିଜୟଲକ୍ଷ୍ମୀ ବଳୀୟାରସିଂହ

ଶୂନ୍ୟତାର ନିଜସ୍ୱ ସ୍ୱର ଅଛି ! ହେଲେ ସେ ସ୍ୱର କେମିତି ! ଖୁବ୍ ଯନ୍ତ୍ରଣାକାତର ? ଭୟଙ୍କର ? ହୃଦୟବିଦାରକ ? କେମିତି– କେମିତି ସତରେ ତା'ର ସ୍ୱର ! ଏଇ ତ ରୁବି ଚାରି ପାଖରେ ଶୂନ୍ୟତା । ତା' ଭିତରେ ବି ଶୂନ୍ୟତା । ହେଲେ ସବୁ ତ ଚୁପ୍‌ଚାପ୍ । ନା ଠିକ୍ ଚୁପ୍‌ଚାପ୍ ନୁହେଁ– କ'ଣ ଯେପରି କେଉଁଠି ଝଙ୍କୃତ ହେଉଛି, କିନ୍ତୁ ସେ କ'ଣ ! ଘରର ଝରକା କବାଟ ସବୁ ବଂଦ । ରୁବି ଏକା । ନିହାତି ଏକା– ସବୁଦିନ ଏଇ ସମୟଟା ତା'ର ନିହାତି ନିର୍ଜନ । କେବେ କୋଳାହଳମୁଖର ଥିଲା, ସେ କଥା ରୁବିର ଆଉ ମନେ ପଡ଼େନା । ହଁ, ଦିନେ ଥିଲା । ସେତେବେଳେ ମା' ଥିଲେ । ବାବା ଥିଲେ । ଆହୁରି ଅନେକ ଲୋକ ଏ ଘରେ ଥିଲେ । ଚାକରବାକର ମିଶି ବୋଧେ ପନ୍ଦରରୁ ଅଧିକ ଲୋକ ଏ ଘରେ ଥିଲେ । ବାବି, ବେବୀ ଆସି ନଥିଲେ । ତା'ପରେ କେବେ ଏ ଘର ଶୂନ୍ୟ ହୋଇଗଲା, ରୁବି ତା'ର ଦିନବାର ମନେରଖିନି । ହେଲେ ଘର ସହ ତା' ମନଟା ବି ଏମିତି ଶୂନ୍ୟ ହୋଇଗଲା କାହିଁକି ?

ପିଲାଦିନେ କେବେ କେଉଁଠି ପଢ଼ିଥିଲା– ରୁବି ଏକ ମୂଲ୍ୟବାନ ମଣି । କୌତୂହଳୀ ହୋଇ ବାବାଙ୍କୁ ପଚାରିଥିଲା, ମୋ ନାଆଁ ରୁବି କାହିଁକି ଦେଲେ ? କ'ଣ ଏଇ ମୂଲ୍ୟବାନ ମଣି ଯୋଗୁଁ ନା ଆଧୁନିକ ନଆଁଟିଏ ବୋଲି ?

ବାବା ଉତ୍ତର ଦେଇଥିଲେ, କିଛି ନ ଭାବି ତୋର ନାମକରଣ ହୋଇଥିଲା । କିନ୍ତୁ ପରେ ମୋର ମନେହେଲା, ତୁ ସେଇ ବହୁମୂଲ୍ୟ ମଣି ରୁବି ! ତୁ ମୋର ଅମୂଲ୍ୟ ଧନ ।

ଗର୍ବରେ ଫୁଲିଯାଇଥିଲା ରୁବି ।

ଜମିଦାରୀ ଯାଇଛି । ପ୍ରତିପତ୍ତି କମିଛି । କିନ୍ତୁ ବାବାଙ୍କର ସ୍ୱାଭିମାନ ବଢ଼ିଛି । ଅହଂକାର ବଢ଼ିଛି । କାହା ସହ ସେ କଥା କହନ୍ତି ନାହିଁ । ମା'ଙ୍କ ସହ ପଦେ ଅଧେ ଦରକାରୀ କଥା ଛଡ଼ା ଆଉ ପ୍ରାୟ ସେ କାହାକୁ କଥା କହନ୍ତିନି । କେବଳ ରୁବି ଥିଲା ତାଙ୍କ ପାଇଁ ବାହ୍ୟ ଜଗତ ସହ ଯୋଗସୂତ୍ର । ସଦାଉଦାସ ମୁହଁରେ ରୁବିକୁ ଦେଖି ହସ ଫୁଟେ । ରୁକ୍ଷ ଚାହାଣି ନରମ ହୁଏ । ରୁବିର ପ୍ରଗଲ୍‌ଭତାରେ ସେ ଅତିଷ୍ଠ ହୁଅନ୍ତି ନାହିଁ ।

ମା' କିନ୍ତୁ ବାବାଙ୍କର ସମ୍ପୂର୍ଣ୍ଣ ବିପରୀତ ଥିଲେ । ସମସ୍ତଙ୍କ ସହ ସେ ମିଶୁଥିଲେ । ହସି ହସି କଥା କହୁଥିଲେ । ଚାକରବାକରଙ୍କଠୁ ଆରମ୍ଭ କରି ପଡ଼ାପଡ଼ୋଶୀ କାହାର ବିପଦ ଆପଦ ପଡ଼ିଲେ ମା' ତା' ପାଖରେ ଠିଆ ହେଉଥିଲେ । କାହା ଘରେ କିଏ ଅସୁସ୍ଥ ଅଛି, ମା' ଯାଇ ସେଠି ହାଜର ହୁଅନ୍ତି ରୋଗୀ ପାଇଁ । ଦରକାର ପଡ଼ିଲେ ଆର୍ଥିକ ସାହାଯ୍ୟ କରନ୍ତି, ସେବା କରିବା ପାଇଁ ଆବଶ୍ୟକ ଉପଦେଶ ଦିଅନ୍ତି । ମା'ଙ୍କୁ ଦେଖି ଆସନ୍ନପ୍ରସବା ସଂଭ୍ରମର ସହ ଉଠି ବସେ । ମା' ଲକ୍ଷ୍ମୀ ଏ ଗରିବ କୁଡ଼ିଆରେ ବିଜେ ହେଲେ ? ମା' କିନ୍ତୁ ଖୁବ୍ ସ୍ନେହରେ ତା'ର ମଥା ସାଉଁଳି ତାକୁ ଶୁଆଇ ଦିଅନ୍ତି । ଭିକାରି ଡାକ ଶୁଣିଲେ ଖାଇବା ପାଖରୁ ଉଠି ତାକୁ ଖୁଆନ୍ତି । ବାବା ମା'ଙ୍କର ଏ ପ୍ରକାର ସାର୍ବଜନୀନ ପ୍ରେମ ପସନ୍ଦ କରନ୍ତିନି, କିନ୍ତୁ କେବେ ପ୍ରତିବାଦ ମଧ୍ୟ କରିନାହାନ୍ତି । ବାବା ମା'

ଦୁହିଁଙ୍କର ନିଜସ୍ୱ ପଥ ଭିନ୍ନ ଥିଲା । କିନ୍ତୁ ସାଂସାରିକ ପଥ ଏକ ଥିଲା । ମାନସିକତାର ଅମେଳ ସତ୍ତ୍ୱେ ସେ ଦୁହିଁଙ୍କ ବୈବାହିକ ଜୀବନର ମେଳ ଖୁବ୍ ଥିଲା । ବାବା ମା'ଙ୍କୁ ଅତିରିକ୍ତ ଭଲ ପାଉଥିଲେ । ମା'ଙ୍କର କୌଣସି କଥାରେ କେବେ ପ୍ରତିବାଦ କରୁ ନଥିଲେ । ମା' ବି ବାବାଙ୍କୁ ପ୍ରାଣ ଦେଇ ଭଲ ପାଉଥିଲେ । ବାବାଙ୍କ ସୁଖ ସୁବିଧା ପାଇଁ ମା'ଙ୍କୁ ଭୋକଶୋଷ ହେଉ ନଥିଲା କି ଆଖିରେ ନିଦ ନଥିଲା । କେବେ ସେ ଦୁହିଁଙ୍କର କଥା କଟାକଟି ହୋଇନାହିଁ ।

ଜମିଦାରୀ ନଥିଲା । ପ୍ରତିପତ୍ତି କିଛି ବି ନଥିଲା । ତଥାପି ସମସ୍ତେ ବାବାଙ୍କୁ ଦେଖିଲେ ଆଡ଼୍ ହୋଇଯାଆନ୍ତି । ବାବାଙ୍କ ସାମ୍ନାରେ କେହି କଥା ପଦେ ମଧ କହିବାକୁ ସାହସ କରନ୍ତି ନାହିଁ । ରୁବି ଶୁଣିଛି ତା'ର ପୂର୍ବପୁରୁଷ କାଳେ ଖୁବ୍ କଡ଼ା ଶାସକ ଥିଲେ । ଲୋକେ କହନ୍ତି ଭୟରେ ଗର୍ଭିଣୀ ଗାଈ ବାଟ ଛାଡ଼ି ଦେଉଥିଲା । ସେମିତି ଉଚ୍ଛୃଙ୍ଖଳ ବି ଥିଲେ ସେମାନେ । କିନ୍ତୁ ବାବାଙ୍କ ବିଷୟରେ ଏ ପ୍ରକାର ମନ୍ତବ୍ୟ ସେ ଶୁଣିନି । ଖୁବ୍ ଅଳ୍ପଦିନ ବାବା ଜମିଦାର ଥିଲେ । ତା'ପରେ ଜମିଦାରୀ ଉଚ୍ଛେଦ ହୋଇଥିଲା । ବାବା ଖୁବ୍ ଗମ୍ଭୀର । ତାଙ୍କୁ ଦେଖିଲେ ଭୟ ଲାଗେ । ସବୁବେଳେ ଚୁପ୍‌ଚାପ୍ ରହନ୍ତି । କିନ୍ତୁ କାହା ଉପରେ ଅତ୍ୟାଚାର କରିବା କଥା କେବେ ଶୁଣାଯାଇନି । ସେ କେମିତି ଅନ୍ୟମନସ୍କ । ଶୁଷ୍କ । ମା' ଚାଲିଯିବା ପରଠୁ ବାବାଙ୍କର ଏ ପ୍ରକାର ବୈରାଗ୍ୟ । ମା'ଙ୍କ ଛଡ଼ା ଆଉ କାହା ସହ ସେ ମନ ଖୋଲି କଥା କହିପାରୁ ନଥିଲେ ।

ମା'ଙ୍କ କଥା ଏବେ ରୁବିର ସ୍ପଷ୍ଟ ମନେ ପଡ଼େ ନାହିଁ । ସେତେବେଳକୁ ତା'ର ବୟସ କେତେ ? ଏଇ ଛ' କି ସାତ ବର୍ଷ ହେବ ବୋଧେ । ବାବାଙ୍କର ଶିକାର ନିଶା ଥିଲା ପ୍ରବଳ । ମନ ହେଲେ ସେ ଆଉ ଅଟକି ପାରନ୍ତି ନାହିଁ । ଏକକାଳୀନ ସାତ ଆଠଦିନ ପର୍ଯ୍ୟନ୍ତ ବାହାରକୁ ଚାଲିଯାଆନ୍ତି କି କେଉଁ ଜଙ୍ଗଲକୁ ପଳାନ୍ତି । କୁଆଡ଼େ ଯାଆନ୍ତି କେହି ଜାଣନ୍ତି ନାହିଁ । କେବଳ ରୁବି ଶୁଣେ, ବାବା ଶିକାରକୁ ଯାଇଛନ୍ତି ।

ସେଥର ବି ବାବା ଶିକାରକୁ ଯାଇଥାଆନ୍ତି । ହଠାତ୍ ଦିନେ ରାତିରେ ମା' ଆର୍ତ୍ତ ଚିତ୍କାର କରିଉଠିଲେ । ରୁବି ଉଠି ଦେଖିଲା ମା' ଛଟପଟ ହେଉଛନ୍ତି । ସମଗ୍ର ଶରୀର ତାଙ୍କର ନୀଳବର୍ଣ୍ଣ ହୋଇଗଲା । ବାଡ଼େଇପିଟି ହୋଇ ମା' ସ୍ଥିର ହୋଇଗଲେ । ସବୁ ଚାକର ଚାକରାଣୀ ଜମା ହୋଇଗଲେ । ଡାକ୍ତର ଆସିଲେ । ପରୀକ୍ଷା କରି କହିଲେ, ମା' ସର୍ପାଘାତରେ ପ୍ରାଣ ହରାଇଛନ୍ତି । କିନ୍ତୁ ସେ ସାପ କେଉଁଠି ଥିଲା, କେମିତି ମା'ଙ୍କୁ ଦଂଶନ କଲା, ସେ କଥା ଜଣାପଡ଼ିଲାନି । ଘର ଗୋଟାକ ଯାକ ଖୋଜାଗଲା, କିନ୍ତୁ ସାପର ଚିହ୍ନବର୍ଣ୍ଣ ମିଳିଲା ନାହିଁ ।

ମା'ଙ୍କ ମୃତ୍ୟୁର ପରଦିନ ଆଉ ଏକ ବିସ୍ମୟ ରୁବି ପାଇଁ ଅପେକ୍ଷା କରିଥିଲା । ସେ ଆସିଲେ । ସାଙ୍ଗରେ ବେବୀ ଆଉ ବାବୀ । ରୁବି କେବେ ତାଙ୍କୁ ଦେଖି ନଥିଲା । ସେ କିଏ ଜାଣି ନଥିଲା । ଚାକର ଚାକରାଣୀ ତାଙ୍କୁ ଆଭୂମି ପ୍ରଣାମ କଲେ– ସାନ ସାଆନ୍ତାଣୀ – ତା'ର ଖୁଡ଼ୀ– ଶୁଭ୍ର ବସ୍ତ୍ର ପରିହିତା ତେଜୋମୟୀ ନାରୀମୂର୍ତ୍ତି– ନିରାଭରଣା । ଆଉ କିଛି ତାଙ୍କ କଥା ମନେ ପଡ଼େନା । ତା'ର ଜଣେ ଦାଦା ଥିଲେ । ଅସବର୍ଣ୍ଣ ବିବାହ କରିବାରୁ ନିଜେ ନିଜେ ଘରୁ ଦୂରେଇ ଯାଇଥିଲେ । ମା' ଅନେକ ଅନୁରୋଧ କରିଥିଲେ ଘରକୁ ଫେରି ଆସିବା ପାଇଁ । ଦାଦା କିନ୍ତୁ ଶୁଣି ନଥିଲେ । ବାବା କିଛି କହି ନଥିଲେ । କେବଳ ଗମ୍ଭୀର ହୋଇଯାଇଥିଲେ । ଆଉ କେବେ ଦାଦାଙ୍କ କଥା କିଛି କହିନାହାନ୍ତି କି ସେମାନଙ୍କୁ ଖୋଜି ନାହାନ୍ତି । ମା' କିନ୍ତୁ ଖୁଡ଼ୀଙ୍କୁ ଖୁବ୍ ସ୍ନେହ କରୁଥିଲେ । ଗୋପନରେ ତାଙ୍କ ସହ ସମ୍ପର୍କ ରଖିଥିଲେ । ବାହାଘରର ଚାରି ପାଞ୍ଚବର୍ଷ ପରେ ଦାଦା ଥରେ ମାତ୍ର ଏ ଘରକୁ ଆସିଥିଲେ । ବାବାଙ୍କ ସହ ଶିକାର କରିବାକୁ ଯାଇଥିଲେ । ଆଉ ଦାଦା ଫେରିଲେ

ନାହିଁ । ବାବା କାହାକୁ କିଛି କହିଲେ ନାହିଁ । ଖୁଡ଼ୀ କେବେ ବି ଏ ଘରକୁ ଆସି ନଥିଲେ । ଆଜି ମା'ଙ୍କ ମୃତ୍ୟୁ ପରେ ନିଜେ ନିଜେ ସେ ଆସିଛନ୍ତି । ରୁବିକୁ କୋଳେଇ ନେଲେ ଖୁଡ଼ୀ ।

ମା'ଙ୍କ ମୃତ୍ୟୁର ଚାରିଦିନ ପରେ ବାବା ଫେରିଆସିଲେ । ଆଗ ଅପେକ୍ଷା ଆହୁରି ଗମ୍ଭୀର । ଅଳ୍ପଦିନ ପରେ ରୁବିକୁ ସହରକୁ ପଠାଇ ଦେଲେ । ହଷ୍ଟେଲ୍‌ରେ ରହି ପାଠ ପଢ଼ିବ । ରୁବି ଯେଉଁଦିନ ସହରକୁ ଆସିଲା ଖୁଡ଼ୀ ତା'ର ମଥା ସାଉଁଳି କହିଥିଲେ– ମୁଁ ବି କାଲି ଫେରିଯିବି ମା' । କେବଳ ତୋରି ପାଇଁ, ଅପାଙ୍କ ପାଇଁ ମୁଁ ଆସିଥିଲି। ରୁବି କିଛି କହିପାରି ନଥିଲା । କେବଳ କଇଁକଇଁ ହୋଇ କାନ୍ଦି ଉଠିଥିଲା ।

ତା'ପରେ ଦୀର୍ଘ ଆଠବର୍ଷ କଟିଯାଇଛି । ରୁବି ଘରକୁ ଆସିନି– ଛୁଟିମାନଙ୍କରେ ବାବା ଆସି ପହଞ୍ଚିଯାଆନ୍ତି । ରୁବିକୁ ସାଙ୍ଗରେ ଧରି ସାରା ଛୁଟି ବାହାରେ ବୁଲି ବୁଲି କଟାଇ ଦିଅନ୍ତି । ଭାରତର ସବୁ ଦର୍ଶନୀୟ ସ୍ଥାନମାନଙ୍କରେ ରୁବିର ଛୁଟି ରହଣି ହୁଏ । ବାବା କିନ୍ତୁ ସେମିତି ଚୁପ୍‌ଚାପ୍ । ଘରକଥା କିଛି ପଚାରିବାର ନଥାଏ କି ଜାଣିବାର ନଥାଏ । ଥରେ ରୁବି ଖୁଡ଼ୀଙ୍କ କଥା ପଚାରିଥିଲା । ବାବା କିଛି ଉତ୍ତର ଦେଇ ନଥିଲେ । ରୁବି ପାଖରେ ବାବା ରୁକ୍ଷ ହୁଅନ୍ତି ନାହିଁ । ତା' ସହ କଥା କୁହନ୍ତି । ରୁବି ଛଡ଼ା ବାବା ଆଉ କାହା ସହ ଗପିବାର ସେ କେବେ ଦେଖିନି । ଏତେ ବାହାରେ ଘୂରିଛି । ନିହାତି ଆବଶ୍ୟକ ସ୍ଥଳେ ବାବା ଅନ୍ୟମାନଙ୍କ ସହ ପଦେ ଦି'ପଦ କଥା କୁହନ୍ତି । ରୁବିକୁ ବେଳେବେଳେ ଅନେକ କଥା କହନ୍ତି । ସେଗୁଡ଼ା ନିଛକ ଦର୍ଶନ । ରୁବି ବୁଝି ମଧ୍ୟ ବୁଝିପାରେନା । ବି.ଏ. ପରୀକ୍ଷା ପରେ ପରେ ବାବା ଆସିଥିଲେ । ରୁବି ସବୁଥର ପରି ଭାବିଥିଲା, ଏଥର ମଧ୍ୟ ବାହାରକୁ କୁଆଡ଼େ ଯିବାକୁ ହେବ । କିନ୍ତୁ ବାବା କହିଥିଲେ– ତୋ'ର ଜିନିଷପତ୍ର ସଜାଡ଼ି ନେ । ଘରକୁ ଯିବା ।

ରୁବି କେବଳ ବାବାଙ୍କୁ ଚାହିଁ ରହିଥିଲା । ବାବା କେମିତି ଅଲଗା ଅଲଗା ଲାଗୁଥିଲେ– ଯେମିତି ଖୁବ୍ ଦୁଃଖରେ ସେ ଭିତରେ ଭିତରେ ଭାଂଗି ପଡୁଥିଲେ । ରୁବି କିଛି ପଚାରି ପାରି ନଥିଲା । ସେଇଦିନ ସେମାନେ ଗାଁକୁ ଆସିଥିଲେ ।

ଉଆସ– ହଁ, ସମସ୍ତେ ତାଙ୍କ ଘରକୁ ଉଆସ କହୁଥିଲେ । ଦୀର୍ଘ ଆଠବର୍ଷ ପରେ ଘରକୁ ଫେରି ରୁବି ସ୍ତମ୍ଭୀଭୂତ ହୋଇଯାଇଥିଲା । ବଗିଚାଟା ଜଙ୍ଗଲର ଭ୍ରମ ସୃଷ୍ଟି କରୁଛି । ନିହାତି ଅନାବନା ଗଛଲଟା ଛଡ଼ା ସବୁ ସୌଖୀନ ଗଛ ମୃତ ବା ମୃତପ୍ରାୟ । ପଥର ପାଚେରିର ଅବସ୍ଥା ତଦ୍ରୂପ । ଶିଉଳି ମାଡ଼ିଛି । ନାଁ ଅଜଣା ବଣୁଆ ଲଟାଗୁଡ଼ା ଏଠି ସେଠି ଉଠିଯାଇଛି । ସ୍ଥାନେ ସ୍ଥାନେ ପାଚେରି ଭାଂଗି ପଡ଼ିଛି । ଯେମିତି ଗୋଟେ ଶ୍ରୀହୀନତାର ସ୍ୱାକ୍ଷର ବହନ କରି ସାରା କୋଠାଟା ନିଃଶବ୍ଦ । ଭାରି ମନ ନେଇ ଧୀରେ ଧୀରେ ରିକ୍‌ସାରୁ ଓହ୍ଲାଇଲା ରୁବି । ବସ୍‌ଷ୍ଟାଣ୍ଡ୍‌ରେ ରିକ୍‌ସା କରିବା ଦେଖି ବାବାଙ୍କୁ ପଚାରିଥିଲା– 'ଗାଡ଼ି କ'ଣ ଖରାପ ହୋଇଛି ?'

ବାବା ଉତ୍ତର ଦେଇଥିଲେ– 'ଗାଡ଼ି ଆଉ ନାହିଁ । ବିକ୍ରୀ କରିଦେଇଛି ।'

ଘରର ଅବସ୍ଥା ଦେଖି ରୁବିର ମନେହେଲା, ସେ ଯେମିତି କେଉଁଠି ଅପରିଚିତ ଜାଗାରେ କେଉଁ ପରିତ୍ୟକ୍ତ ଭୂତକୋଠିରେ ଆସି ପହଞ୍ଚିଛି । କିଛି କଥା ନ କହି ଆସ୍ତେ ଆସ୍ତେ ପାଦ ପକାଇ ସେ ଆସୁଥିଲା– ସାମ୍‌ନାରେ ମଦନ । ପିଲାଦିନୁ ଏଇ ମଦନ କାଖେଇ କୋଳେଇ ତାକୁ ମଣିଷ କରିଛି । ଘରର ସବୁଠୁ ପୁରୁଣା ବିଶ୍ୱସ୍ତ ଭୃତ୍ୟ ସେ । ବୟସ ବଢ଼ିଛି । ରୁବିକୁ ଦେଖି କିଛି କହିବ କହିବ ହୋଇ କହିପାରିଲାନି । ତା'ର କୋଟରଗତ ଚକ୍ଷୁ ବାଷ୍ପାଚ୍ଛନ୍ନ ହୋଇଉଠିଲା । ଚୁପ୍‌ଚାପ୍

ନମସ୍କାର ପକାଇ ଗେଟ୍ ପାଖକୁ ଚାଲିଗଲା ସେ । ରୁବି ବାରଣ୍ଡାକୁ ଉଠିଲା । ଆଉ କେହି ଦିଶୁ ନାହାନ୍ତି ।

ଏଇ ଘର ଆଠବର୍ଷ ତଳେ ସେ ଛାଡ଼ିଥିଲା । ସେତେବେଳର କୋଳାହଳମୁଖର ଘରର ପ୍ରତିଛବି ଆଜିର ନୀରବତାରେ ଆଉ ମନେପଡୁନି । ରୁବିର ଭିତରଟା କେମିତି ସ୍ତବ୍ଧ ହୋଇଗଲା । ଏକେବାରେ ନିସ୍ତରଙ୍ଗ । ଘରର ଶୂନ୍ୟତା ତା'ର ସବୁ ସତ୍ତାକୁ ଆବୋରି ବସିଲା । ପଛରେ ବାବାଙ୍କ ପଦଧ୍ୱନି । ରୁବି ମୁହଁ ଫେରାଇ ଚାହିଁଲା ।

ବାବା ରୁବି ମୁହଁକୁ ନ ଚାହିଁ ଆଖି ଫେରାଇ କହିଲେ– ଘର ଭିତରକୁ ଚାଲ ମା' । ଠିଆ ହୋଇଗଲୁ କାହିଁକି ?

ଦାଣ୍ଡଘର ପାର ହେଲେ କଚେରୀ ଘର । ତା'ପରେ ଧାଡ଼ି ଧାଡ଼ି ହୋଇ କେତେଗୁଡ଼ିଏ କୋଠରି । ସେଗୁଡ଼ିକ ଅତିଥି ଗୃହ । ସାମ୍ନାରେ ପ୍ରଶସ୍ତ ଅଗଣା । ଅଗଣା ପାର୍ ହେଲେ ସିଡ଼ିଘର, ରୋଷାଇ ଘର । ଚାକର ଚାକରାଣୀଙ୍କ ରହିବା ଘର । ଉପର ମହଲାରେ ସେମାନେ ରହୁଥିଲେ । ରୁବି ଚାରିଆଡ଼କୁ ଭଲ କରି ଚାହିଁଲା । ସବୁ ଘରଗୁଡ଼ିକ ବାହାରୁ ବଂଦ । ତା' ଅର୍ଥ ଏ ଘରଗୁଡ଼ିକରେ କେହି ନାହାନ୍ତି । କେମିତି ଖାଁ ଖାଁ ଲାଗୁଛି । ମାଡ଼ି ମାଡ଼ି ପଡୁଛି ଘରଟା । ସିଡ଼ି ଦେଇ କେହି ଜଣେ ଦ୍ରୁତ ପାଦରେ ଓହ୍ଲାଇ ଆସିଲା । ସେ ବେବୀ । ଦାଦାଙ୍କ ଝିଅ । ରୁବିଠୁ ବର୍ଷେ ଖଣ୍ଡେ ସାନ ହେବ । ହଠାତ୍ ତାକୁ ଚିହ୍ନିପାରିଲାନି ରୁବି ।

ସେ ଆସି ରୁବିର ହାତ ଧରି କହିଲା, ଏମିତି ଘରକୁ ଆସୁ ଆସୁ ଚୁପ୍‌ଚାପ୍ ଠିଆ ହୋଇଯାଇଛ କାହିଁକି ଅପା ! କ'ଣ ଭାବୁଛ ? ମତେ ଚିହ୍ନିପାରିଲ ? ମୁଁ ବେବୀ ।

ରୁବି କିଛି ଶୁଣିପାରୁ ନଥିଲା । କିଛି ବୁଝିପାରୁ ନଥିଲା ବି । ବେବୀ ତାକୁ ଏକ ପ୍ରକାର ଟାଣି ଟାଣି ଉପରକୁ ନେଇଯାଇଥିଲା । ଉପର ମହଲା ପରିଷ୍କାର ପରିଚ୍ଛନ୍ନ । ବାସୋପଯୋଗୀ ଅଛି । ବେବୀ ତାକୁ ଆଣି ମା'ଙ୍କ ରୁମ୍‌ରେ ପ୍ରବେଶ କଲା ।

ଆଠବର୍ଷ ତଳେ ଯେଉଁ ଅବସ୍ଥାରେ ସେ ଘରଟିକୁ ଦେଖିଥିଲା, ତା'ର ଅନେକ ପରିବର୍ତ୍ତନ ହୋଇଛି । ଘର ଭିତରେ ମା'ଙ୍କର ଅନେକ ଜିନିଷ ଥିଲା । କିନ୍ତୁ ସେଗୁଡ଼ିକ କିଛି ନାହିଁ । ମା'ଙ୍କ ଅସ୍ତିତ୍ୱ ଯେମିତି ସେ ଘରୁ ନିଶ୍ଚିହ୍ନ ହୋଇଛି । ମା'ଙ୍କ ପଲଙ୍କ, ଡ୍ରେସିଂ ଟେବୁଲ୍, ଆଲମରୀ, ବାକ୍ସ– କିଛି ବି ସେ ଘରେ ଆଉ ନାହିଁ । ବର୍ତ୍ତମାନ ଘରଟି ହଷ୍ଟେଲ୍ ରୁମ୍‌ର ଭ୍ରମ ସୃଷ୍ଟି କରୁଛି । ଦୁଇଟି ବେଡ୍ ପଡ଼ିଛି ଠିକ୍ ହଷ୍ଟେଲ୍ ପରି । ପ୍ରତି ବେଡ୍ ପାଖରେ ଗୋଟେ ଲେଖା ଆଲମାରୀ, ଟେବୁଲ୍, ଚେୟାର ଓ ଆଲଣା । ବେବୀ କହିଲା, ମୁଁ ଆସିବା ପରେ ଏଇ ଘରେ ତମେ ଆଉ ମୁଁ ରହିବା ବୋଲି ବଡ଼ ବାବା କହିଲେ । ଏ ଘରକୁ ବଡ଼ବାବା ନିଜେ ଲାଗିପଡ଼ି ସଜାଡ଼ିଛନ୍ତି ।

– ମା'ଙ୍କ ଜିନିଷପତ୍ର କୁଆଡ଼େ ଗଲା ?

– ସବୁ ବଡ଼ବାବାଙ୍କ ଘରେ ଅଛି ।

ରୁବି ଆଉ କିଛି ନ କହି ଗାଧୁଆ ଘରକୁ ଗଲା । କେମିତି ନିଛାଟିଆ ଲାଗୁଛି । ମା'ଙ୍କ କଥା ଖାଲି ମନେପଡୁଛି । ମା' ଥିଲାବେଳେ ଏଇ ଘର କେତେ ଭଲ ଲାଗୁଥିଲା । ସବୁଠି କେମିତି ସୌନ୍ଦର୍ଯ୍ୟ ଶ୍ରୀ ଭରି ରହିଥିଲା । ମା' ଯିବା ପରେ ଆସ୍ତେ ଆସ୍ତେ ସବୁ ସରିଗଲା । ରୁବି ଆଖିରେ ଲୁହ ଜକେଇ ଆସିଲା । ବାହାରୁ ବେବୀ ପାଟି କରୁଛି– ଜଲ୍‌ଦି ଆସ ଅପା, ବଡ଼ବାବା ଡାକୁଛନ୍ତି ।

ରୁବି ଗାଧୁଆଘରୁ ବାହାରିଲା । ହସହସ ମୁହଁରେ ବେବୀ ଠିଆ ହୋଇଛି । ବେବୀ ଖୁଡ଼ୀଙ୍କର ଦ୍ୱିତୀୟ ସଂସ୍କରଣ । ଖୁଡ଼ୀଙ୍କ ପରି ଦୀର୍ଘାଙ୍ଗୀ । ତାଙ୍କରି ପରି ତା' ମୁହଁ, ଆଖି, ନାକ, ଭ୍ରୂ ସବୁ ।

କେବଳ ରଙ୍ଗ ଟିକେ ମଇଳା । ବେବୀକୁ ଚାହିଁ ହଠାତ୍ ତା'ର ଖୁଡ଼ୀ ଆଉ ବାବୀଙ୍କ କଥା ମନେପଡ଼ିଲା । ସତେ ତ ! ସେମାନେ କେଉଁଠି, ଆସିବା ପରେ ସେମାନଙ୍କୁ ତ ଦେଖିନି ? ଅନ୍ୟମନସ୍କ ହୋଇ ସବୁ ଭୁଲିଯାଇଛି । ବେବୀକୁ ପଚାରିଲା । ବେବୀର ହସନ୍ତ ମୁହଁଟି ମଉଳି ପଡ଼ିଲା । ନିଜକୁ ସଂଭାଳି ନେଇ କହିଲା, ସେ ଅନେକ କଥା । ପରେ ଶୁଣିବ । ଏବେ ଚାଲ ବଡ଼ବାବାଙ୍କ ପାଖକୁ ଯିବା ।

ମୁଣ୍ଡରେ ପାନିଆଟା ବୁଲାଇ ନେଇ ରୁବି ବେବୀ ସହ ବାବାଙ୍କ ପାଖକୁ ଗଲା । ଚୌଧୁରୀ ବୀର ନାରାୟଣ ବାହୁ ବଳେନ୍ଦ୍ର ସିଂହ– ବିରାଟ ନାଁ । ବାବାଙ୍କ ଚେହେରାଟି ମଧ୍ୟ ତଦ୍ରୂପ । ଶତ୍ରୁ ଶଙ୍କିଗଲା ପରି ଚେହେରା । ବାବାଙ୍କ ଶୟନକକ୍ଷ ସାମ୍ନାରେ ନୂତନ ନାମଫଳକ । ରୁବି ଟିକେ ଆଶ୍ଚର୍ଯ୍ୟ ହେଲା । ଶୋଇବା ଘର ଦୁଆର ମୁହଁରେ ନାମଫଳକ ଲଗା ହେବାର ତାତ୍ପର୍ଯ୍ୟ କେଉଁଠି ସେ ଜାଣିପାରୁ ନଥିଲା । ତେବେ ବାବାଙ୍କ ଖିଆଲ ସେ ଜାଣେ । କିଛି ଗୋଟେ ଖିଆଲ ଆସିଥିବ । ସେଥିପାଇଁ ଏ ନାମଫଳକ ।

ବାବା ବସି ବନ୍ଧୁକ ସଫା କରୁଥିଲେ । ରୁବି ବୁଝିଲା ଶିକାରକୁ ଯିବାର ପ୍ରସ୍ତୁତି ପର୍ବ ଆରମ୍ଭ ହେଉଛି । ବାବାଙ୍କ ଘର ଭିତରଟା ଦେଖି ରୁବି ଏକପ୍ରକାର ଚମକି ଉଠିଲା । ଗୋଟେ ଛୋଟକାଟର ମ୍ୟୁଜିୟମ୍ ହୋଇଯାଇଛି ଘରଟା । ବାବାଙ୍କର ସୌଖୀନ ଆସବାବ ପତ୍ର ସ୍ଥାନାନ୍ତରିତ ହୋଇଛି । ତା' ସ୍ଥାନରେ କେଉଁକାଳର ସିନ୍ଦୁକ, ଟ୍ରେଜେରୀ ସବୁ ଆସି ରହିଛି । ଯେଉଁଗୁଡ଼ା ଅଦରକାରୀ ଭାବରେ ଆଳିମାଳି ହୋଇ ଜମା ହୋଇଥିଲା, ସେଇ ସବୁ ଜିନିଷ ଆସି ଘର ଭର୍ତ୍ତି ହୋଇଛି । ସବୁଗୁଡ଼ା ଅତି ଯତ୍ନରେ ପାଟକନା ଘୋଡ଼ି ହୋଇ ରହିଛି । କାନ୍ଥରୁ ଗାନ୍ଧୀ, ଶ୍ରୀଅରବିନ୍ଦ, ବିବେକାନନ୍ଦ ପ୍ରଭୃତିଙ୍କ ଫଟୋ କୁଆଡ଼େ ଗଲାଣି । ସେଠାରେ ତାଙ୍କରି ପୂର୍ବପୁରୁଷମାନଙ୍କର ବିରାଟ ବିରାଟ ତୈଳଚିତ୍ର । ସେଇସବୁ ତୈଳଚିତ୍ରଗୁଡ଼ା ବୈଠକ ଘରେ ଥିଲା । ସେ ଦର୍ପିତ ଚେହେରା, ରୁକ୍ଷ ଚାହାଣି ରୁବିର ସହ୍ୟ ହୁଏନା । ହୁଅନ୍ତୁ ପଛକେ ସେମାନେ ତା'ର ପୂର୍ବପୁରୁଷ । କାହାରି ଚେହେରାରେ କୋମଳତା ନାହିଁ । ଜାଣି ଜାଣି ଯେମିତି ନିଜର ଏ ପ୍ରକାର ଭୟଙ୍କର ତୈଳଚିତ୍ର ତିଆରି କରାଇ ସେମାନେ ନିଜକୁ ପ୍ରତାପୀ ଦେଖାଇ ହେଉଥିଲେ । ସେମାନେ କ'ଣ ଜୀବନରେ କେବେ ହସୁ ନଥିବେ ? କେବେ ବି କ'ଣ ସେମାନଙ୍କ ମନରେ କୋମଳତା ସ୍ଥାନ ପାଉ ନଥିବ ! ସେମାନଙ୍କ ଚେହେରା କ'ଣ କେବେ ଖୁସିରେ ଝଲମଲ କରୁ ନଥିବ ? ଅଥଚ ଏମିତି ରୁକ୍ଷ ଛବିଗୁଡ଼ା କାହିଁକି କରାଇ ଥିଲେ କେଜାଣି ? ପ୍ରତି ତୈଳଚିତ୍ର ତଳେ ସେଇ ମହାପୁରୁଷଙ୍କର ସଂକ୍ଷିପ୍ତ ଇତିହାସ । ରୁବି କେବେ ବି ସେଗୁଡ଼ା ପଢ଼ିନି । ଇଚ୍ଛା ହୁଏନା । ତା'ପରେ କେବେ କିଏ ଶିକାର କରି ମହାବଳ ମାରିଥିଲେ, ବାରହା ମାରିଥିଲେ– ସେଇ ଚମଡ଼ା ସବୁ କାନ୍ଥରେ ଝୁଲୁଛି । ହରିଣ, ସିଂହ, ହାତୀ ଦାନ୍ତ ଏମିତି କେତେ କ'ଣ ସବୁ– ସେଇମାନଙ୍କର କୃତିତ୍ୱର ସାକ୍ଷୀ– ଏଗୁଡ଼ା ସବୁ ବୈଠକ ଘରେ ଥିଲା । ବାବା ଯେ କାହିଁକି ଏଗୁଡ଼ା ଆଣି ନିଜ ଶୋଇଲା ଘରେ ରଖିଛନ୍ତି– ତା'ର କାରଣ ରୁବି ବୁଝିପାରୁ ନଥିଲା । ବାବାଙ୍କୁ ଚାହିଁଲା ରୁବି । ବାବାଙ୍କର ନୂଆ ରୂପ ଦେଖି ରୁବି ଶଂକିତ ହେଲା । ବାବା ବି କ'ଣ ସେଇମାନଙ୍କ ପରି ଦିଶୁଛନ୍ତି– ସେମିତି ରୁକ୍ଷ କର୍କଶ ଚେହେରା, କ୍ରୂର ଦୃଷ୍ଟି । ଚିରଦିନ ତାଙ୍କୁ ସେ ଦେଖିଆସିଛି ଗମ୍ଭୀର, ଉଦାସ ରୂପ । ଆଜି ଏ କି ଚେହେରା ବାବାଙ୍କର ? କ'ଣ ସେଇ ପୂର୍ବପୁରୁଷଙ୍କ ଐତିହ୍ୟକୁ ଜାବୁଡ଼ି ଧରିବା ପ୍ରୟାସରେ ବାବା ତାଙ୍କ ଚେହେରାରେ ଜବରଦସ୍ତି ଏମିତି କାଠିନ୍ୟ ଫୁଟାଇଛନ୍ତି ! ବାବାଙ୍କର ଏମିତିକା ଚେହେରା ରୁବିକୁ ଭଲ ଲାଗୁ ନଥିଲା । କିନ୍ତୁ ସେଇ ମୁହଁକୁ ଚାହିଁ କିଛି କଥା କହିବାକୁ ତା'ର

ସାହସ କୁଳାଉ ନଥିଲା । ଚୁପ୍‌ଚାପ୍ ଠିଆହୋଇ ସେ ବାବାଙ୍କୁ ଦେଖୁଥିଲା । ଗମ୍ଭୀର ଭାବରେ ବାବା କହିଲେ, 'ବସ୍ ।'

ଯନ୍ତ୍ରଚାଳିତ ପରି ବସିପଡ଼ିଲା ରୁବି । ବାବା ରୁବି ମୁହଁକୁ ଚାହିଁଲେ । ରୁବିକୁ ଚାହିଁ ତାଙ୍କ ଦୃଷ୍ଟି ଉଦାସ, ସ୍ନେହସଜଳ ହେଲା । କଣ୍ଠ କୋମଳ କରି ପଚାରିଲେ– 'ଖାଇଛୁ !'

ରୁବି ମୁଣ୍ଡ ହଲାଇ ମନା କଲା । ବ୍ୟସ୍ତ ହୋଇଗଲେ ବାବା । 'ଯା ମା', ଖାଇସାରି ଆସିବୁ । କେତେଗୁଡ଼ିଏ କଥା କହିବାର ଅଛି ।'

ବିନା ପ୍ରତିବାଦରେ ରୁବି ଉଠିଆସିଲା । ବେବୀ ଅପେକ୍ଷା କରିଥିଲା । ସାଙ୍ଗ ହୋଇ ଦୁଇ ଭଉଣୀ ଖାଇ ବସିଲେ । ବେବୀ ପଚାରିଲା, 'ବଡ଼ବାବା କାହିଁକି ଡକାଇ ଥିଲେ ଅପା ?'

– କିଛି କହି ନାହାନ୍ତି– କହିଲେ ଖାଇସାରି ଯିବାକୁ ।

ଖାଇସାରି ରୁବି ପୁଣି ଥରେ ବାବାଙ୍କ ପାଖକୁ ଗଲା । ବାବା ଚୁପ୍‌ଚାପ୍ ବସିଥିଲେ । ରୁବିକୁ ପାଖରେ ବସାଇଲେ– କହିଲେ– 'ଏ ଘରଟା ଦେଖି ତତେ ତ ନିଶ୍ଚୟ ଆଶ୍ଚର୍ଯ୍ୟ ଲାଗୁଥିବ । କିନ୍ତୁ ଏଗୁଡ଼ାକ ଏଇ ବଂଶର ଇତିହାସ । ଯାକୁ ଦୂରରେ ରଖି ମୁଁ ଠିକ୍ ଯାର ମର୍ଯ୍ୟାଦା ବୁଝିପାରୁ ନଥିଲି । ସେଇଥିପାଇଁ ସବୁବେଳେ ଆଖି ଆଗରେ ରଖିବି ବୋଲି ଏଇ ଘରେ ଆଣି ରଖିଛି । ଏଇ ଦେଖ୍ ସେ ମୋ ବାପା । ତାଙ୍କ ଚେହେରା ପରି ତାଙ୍କ ମନ ବି ଖୁବ୍ କଠିନ ଥିଲା । ମାୟାମମତାର ସ୍ଥାନ ତାଙ୍କ ମନରେ ନଥିଲା । କର୍ତ୍ତବ୍ୟ ପାଖରେ ସେ ସ୍ତ୍ରୀ, ପୁତ୍ର, କନ୍ୟା ସମସ୍ତଙ୍କୁ ତୁଚ୍ଛ ମଣୁଥିଲେ । ନିଜର ଏକମାତ୍ର ଭଉଣୀକୁ ସେ ବଂଶ ପରମ୍ପରାରେ କଳଙ୍କ ଲଗାଇଥିଲା ବୋଲି ନିଜ ହାତରେ ବିଷ ଦେଇଥିଲେ । ସେଇ ପିଉସୀ ଜଣେ ଭୃତ୍ୟ ସହ ଗୃହତ୍ୟାଗ କରିବାର ପରିକଳ୍ପନା କରୁଥିବା ବେଳେ ଧରା ପଡ଼ିଥିଲା । ସେ ଭୃତ୍ୟକୁ ଅରଣ୍ୟକୁ ନେଇ ମହାବଳ ଆଗରେ ହାତଗୋଡ଼ ବାନ୍ଧି ଫିଙ୍ଗିଦେଇଥିଲେ । ଏପରି ଦୁର୍ଦ୍ଦାନ୍ତ ଥିଲେ ସେ ।'

ରୁବି ସାହସ କରି କହିଲା, ସେ କ'ଣ ଠିକ୍ କରିଛନ୍ତି ? ଏପରି ନିର୍ମମ ହେବା ଦ୍ୱାରା ତାଙ୍କ ନିଜ ବିବେକ କ'ଣ ତାଙ୍କୁ କେବେ ଦୋଷୀ ସାବ୍ୟସ୍ତ କରି ନଥିବ ? ସେ କ'ଣ କେବେ ଅନୁତାପ କରି ନଥିବେ ?

– ହଁ, କରିଥିଲେ । ସୁର ଯେତେବେଳେ ଘର ଛାଡ଼ି ତାଙ୍କ କର୍ତ୍ତୃତ୍ୱ ବାହାରକୁ ଚାଲିଗଲା, ସେତେବେଳେ ସେ ଖୁବ୍ ଅନୁତାପ କରିଥିଲେ । ଆହତ ସିଂହ ପରି ଗର୍ଜନ କରିଥିଲେ । ନିଜ ପୁଅ ହାତରେ ଶେଷ ଜୀବନରେ ଲାଂଛିତ ହେଲେ ବୋଲି ତାଙ୍କର ଅବସୋସର ସୀମା ନଥିଲା ।

ସୁରପ୍ରତାପ ହେଉଛନ୍ତି ରୁବିର ଦାଦା । ଅସବର୍ଣ୍ଣ ବିବାହ କରି ସେ ଗୃହତ୍ୟାଗ କରିଥିଲେ । ପିତାଙ୍କ କଡ଼ା ଶାସନ ତାଙ୍କୁ ଅଟକାଇ ପାରି ନଥିଲା ବା ତାଙ୍କର କିଛି କରିପାରି ନଥିଲା । ସେ ଅନେକ ଦୂରକୁ ଚାଲିଯାଇଥିଲେ । ପିତାଙ୍କ ମୃତ୍ୟୁ ସମ୍ବାଦ ପାଇ ସେ ସସ୍ତ୍ରୀକ ଘରକୁ ଆସିଥିଲେ । କିନ୍ତୁ ବୀରନାରାୟଣ ତାଙ୍କୁ କ୍ରିୟାକର୍ମ କରିବାର ଅନୁମତି ଦେଇ ନଥିଲେ । ବୋହୂକୁ ବାରଣ କରାଯାଇ ନଥିଲା । ବାପାଙ୍କ ଆତ୍ମାର ଅବମାନନା ହେବ ବୋଲି ସେ ଭାବିଥିଲେ । କିନ୍ତୁ ସ୍ୱଭାବତଃ ସେ ନିଷ୍ଠୁର ନଥିଲେ । ସାନଭାଇ ପ୍ରତି ତାଙ୍କର ଖୁବ୍ ସ୍ନେହ ଥିଲା । ବାପାଙ୍କ ଇଚ୍ଛାକୁ ସମ୍ମାନ ଦେଖାଇ କେବଳ ସେ ସେମାନଙ୍କୁ ଦୂରେଇ ଦେଇଥିଲେ । କିନ୍ତୁ ସାନଭାଇଙ୍କୁ ତାଙ୍କ ଅଧିକାରରୁ ବଂଚିତ କରାଇବା ତାଙ୍କର ଆନ୍ତରିକ ଇଚ୍ଛା ନଥିଲା । ପରେ ସେ ସୁରପ୍ରତାପଙ୍କୁ ଡକାଇ ସବୁ କଥା କହିଥିଲେ । କିନ୍ତୁ ସୁରପ୍ରତାପ ମାନି ନଥିଲେ । ସେ ବଡ଼ଭାଇଙ୍କ ପାଦ ଛୁଇଁ ବିନୀତ ଭାବରେ ସବୁ ପ୍ରତ୍ୟାଖ୍ୟାନ କରିଥିଲେ । ବାପା ତାଙ୍କୁ ଏକପ୍ରକାର ତ୍ୟାଜ୍ୟପୁତ୍ର କରିଥିଲେ । ସେଇ ବାପାଙ୍କ

ମୃତ୍ୟୁ ପରେ ତାଙ୍କ ସଂପତ୍ତି ଅଧିକାର କରିବା ପିତୃ ଅବମାନନା ହୋଇଥାନ୍ତା । ସେ କହିଥିଲେ, 'ଭାଇ, ଆପଣଙ୍କ ସ୍ନେହ ସହାନୁଭୂତି ମୋ ପାଇଁ ଯଥେଷ୍ଟ । ଯେଉଁ ମୁହୂର୍ତ୍ତରେ ମତେ ସ୍ମରଣ କରିବେ, ମୁଁ ଆସି ହାଜର ହେବି । କିନ୍ତୁ ମୁଁ ଆଉ ଏ ଘରେ ରହିପାରିବି ନାହିଁ ।'

ବୀର ନାରାୟଣ ଆଉ ବାଧ କରି ନଥିଲେ । ଶେଷରେ ସେଇ ଭାଇଙ୍କୁ ଶିକାର ଖେଳିବାକୁ ଯାଇ ସେ ହରାଇଥିଲେ । ଆକସ୍ମିକ ଭାବରେ ମଂଚାରୁ ଖସିପଡ଼ି ସେ ମହାବଳର ଶିକାର ହୋଇଥିଲେ । ବୀର ନାରାୟଣ କିଂକର୍ତ୍ତବ୍ୟବିମୂଢ଼ ହୋଇ ଯାଇଥିଲେ । ବଂଧୁକ ଚଳାଇ ବାଘକୁ ମାରିବା କଥା ଚିନ୍ତା କରି ପାରି ନଥିଲେ ବା ଭାଇଙ୍କୁ ରକ୍ଷା କରିବାକୁ ଜୀବନପଣ କରି ମହାବଳ ସହ ଯୁଝି ନ ଥିଲେ । ପରେ ନିଜ ନିଶ୍ଚେଷ୍ଟତାଜନିତ ଅବସୋସ ତାଙ୍କୁ ବହୁତ କଷ୍ଟ ଦେଇଛି । ଗଭୀର ଦୁଃଖରେ ସେ ଭାଙ୍ଗି ପଡ଼ିଛନ୍ତି । ଏକା ଘରକୁ ଫେରି କାହାକୁ କିଛି କୈଫିୟତ୍ ଦେଇ ନଥିଲେ । ନିଜ ଦୁଃଖକୁ ନିଜ ଭିତରେ ଚାପି ରଖିଥିଲେ ।

ସେଇ ଶାନ୍ତ ନିରୀହ ଭୂତପୂର୍ବ ଜମିଦାରଙ୍କ ରକ୍ତ ଗରମ ହୋଇ ଉଠିଥିଲା ସେହିଦିନ, ଯେଉଁଦିନ ସେ ଭ୍ରାତୃବଧୂକୁ ନିମନ୍ତ୍ରଣ କରିଥିଲେ । ସେ ଆଜକୁ ଦୀର୍ଘ ଆଠବର୍ଷ ତଳର କଥା । ଦେବୀପ୍ରତିମା ପତ୍ନୀ ମନ୍ଦାକିନୀ ଦେବୀଙ୍କ ମୃତ୍ୟୁ ପରେ ନିଜେ ନିଜେ ଜୟନ୍ତୀ ଏ ଘରକୁ ଆସିଥିଲେ । ଅଳ୍ପ କେଇଟା ଦିନ ପରେ ସେ ପୁଣି ନିଜର ପିତ୍ରାଳୟକୁ ଫେରି ଯାଇଥିଲେ । ରୁବିକୁ ହଷ୍ଟେଲ୍‌ରେ ଛାଡ଼ିବା ପରେ ବୀର ନାରାୟଣ ଖୁବ୍ ନିଃସଙ୍ଗ ହୋଇଗଲେ । ସେତିକି ବେଳେ ତାଙ୍କର ମନେପଡ଼ିଲା ବାବୀ ବେବୀଙ୍କ କଥା । ସେମାନେ ବି ଏଇ ବଂଶର ସନ୍ତାନ । ପର ଘରେ ସେମାନେ ପଡ଼ି ରହିବେ, ଅଥଚ ଏତେବଡ଼ ଘର ନିଶୂନ ହୋଇ ପଡ଼ିଥିବ ? ସେ ନିଜେ ଧାଇଁ ଯାଇଥିଲେ । ମାତ୍ର ଜୟନ୍ତୀ ଖୁବ୍ କଠୋର । ଯେଉଁ ଘରେ ବଧୂର ମର୍ଯ୍ୟାଦା ସେ ପାଇ ନାହାନ୍ତି, ସେଇ ଘରେ ବିଧବା ରୂପରେ କର୍ତ୍ତ୍ରୀ ହେବା ତାଙ୍କ ଆତ୍ମସମ୍ମାନକୁ ବାଧିଥିଲା । ସେ ପରିଷ୍କାର ଭାବରେ ମନା କରି ଦେଇଥିଲେ । ମନ୍ଦାକିନୀ ଦେବୀଙ୍କ ପ୍ରତି ତାଙ୍କର ଆନୁଗତ୍ୟ ଥିଲା । ସେଥିପାଇଁ ତାଙ୍କ ମୃତ୍ୟୁ ପରେ ସଦ୍ୟ ମାତୃହରା ଝିଅ ପାଇଁ ସେ ଛୁଟି ଆସିଥିଲେ । ସେଇ ଝିଅ ପାଇଁ ତାଙ୍କର କିଛିଟା ଆକର୍ଷଣ ଥିଲା । କିନ୍ତୁ ଏ ଘର ପ୍ରତି ତାଙ୍କର ତିଳେ ବି ଆକର୍ଷଣ ନାହିଁ । ବରଂ ସେ ଅନ୍ତର ସହ ଘୃଣା କରନ୍ତି ।

ଅପମାନ ବିଷରେ ଜର୍ଜରିତ ହୋଇ ଉଠିଥିଲେ ବୀର ନାରାୟଣ । ତଥାପି ନିଜକୁ ସମ୍ଭାଳି ନେଇ ବାବୀ ବେବୀଙ୍କୁ ଘରକୁ ଫେରାଇ ନେବା ଇଚ୍ଛା ବ୍ୟକ୍ତ କରିଥିଲେ । ସେ କଥା ବି ଜୟନ୍ତୀ ଅସ୍ୱୀକାର କରିଥିଲେ । ତାଙ୍କ ପୁଅ ଝିଅଙ୍କ ଉପରେ ଜମିଦାର ଘରର କିଛି ବି ଦାବି ନାହିଁ । ସେମାନଙ୍କୁ ଜୟନ୍ତୀ ନିଜେ ମଣିଷ କରିବେ । କାହାରି ସାହାଯ୍ୟ ସେ ଚାହାନ୍ତି ନାହିଁ ।

ବୀର ନାରାୟଣଙ୍କର ଜମିଦାର ରକ୍ତ ତାତି ଉଠିଥିଲା । ଏତେଦୂର ଆସ୍ପର୍ଦ୍ଧା ସେ ସହି ପାରି ନଥିଲେ । ବାଧ ହୋଇ ଫେରି ଆସିଥିଲେ ଅବଶ୍ୟ । କିନ୍ତୁ ତା' ପରେ ପରେ ତାଙ୍କର ବିରାଟ ପରିବର୍ତ୍ତନ ହୋଇଥିଲା । ତାଙ୍କର ନିରୀହ ସ୍ୱଭାବ ପାଇଁ ଭାଇବୋହୂ ହୋଇ ବି ଜୟନ୍ତୀ ତାଙ୍କୁ ଖାତିର କଲେ ନାହିଁ ବୋଲି ତାଙ୍କର ମନେ ହେଲା । ନିଜକୁ ଖୁବ୍ ଅପମାନିତ ମନେ କରି ସେ ଉତ୍‌କ୍ଷିପ୍ତ ହୋଇ ଉଠିଲେ । ତା'ପରେ ପରେ ପୂର୍ବପୁରୁଷମାନଙ୍କ ପଦାଙ୍କ ସେ କେମିତି ଅନୁସରଣ କଲେ ସେ କଥା ସେ ଠିକ୍ ଜାଣନ୍ତି ନାହିଁ । କିନ୍ତୁ ଖୁବ୍ କଠୋର ଭାବରେ ସେ ନିଜର ଶାନ୍ତସୌମ୍ୟ ଭାବମୂର୍ତ୍ତିକୁ ହତ୍ୟା କରି ରୁକ୍ଷ ହୋଇଗଲେ । କିନ୍ତୁ ତାଙ୍କ କୋମଳ ସ୍ୱଭାବ ବେଳେବେଳେ

ରୁଦ୍ଧଶ୍ୱାସ ହୋଇ ଯନ୍ତ୍ରଣାରେ ଚିତ୍କାର କରେ । ସେ କିନ୍ତୁ ଜାଣି ଜାଣି କାନ ବଂଦ କରି ଦିଅନ୍ତି । ଶୁଣନ୍ତି ନାହିଁ ।

ନିହାତି ଆକସ୍ମିକ ଭାବରେ ବାବୀ ବେବୀ ଏ ଘରକୁ ଆସିଲେ । ତାଙ୍କ ମାମୁ ଆଣି ସେମାନଙ୍କୁ ଏଠାରେ ଛାଡ଼ି ଦେଇଗଲେ । ଜୟନ୍ତୀଙ୍କ ଦମ୍ଭ ଭଗବାନ ସହ୍ୟ କଲେ ନାହିଁ । ହଠାତ୍ ଜୟନ୍ତୀଙ୍କର ମୃତ୍ୟୁ ହୋଇଗଲା । ବହୁକୁଟୁମ୍ବୀ ଭାଇ ତାଙ୍କର ଭଣଜା ଭାଣିଜୀଙ୍କ ଦାୟିତ୍ୱ ନେବାକୁ ପ୍ରସ୍ତୁତ ନଥିଲେ । ତା'ଛଡ଼ା ବୀର ନାରାୟଣ ନିଜେ ଚାହିଁଥିଲେ ପିଲା ଦୁହିଁଙ୍କୁ ଫେରାଇ ନେବାକୁ । ସେଇଆକୁ ଆଳ କରି ସେ ପିଲା ଦୁହିଁଙ୍କୁ ଆଣି ଆସି ପହଞ୍ଚିଲେ । ବୀର ନାରାୟଣ ମନା କରିପାରିଲେ ନାହିଁ । ତାଙ୍କ ଆଦରର ଭାଇ ସୁରର ସନ୍ତାନ ଏମାନେ । ଏମାନଙ୍କୁ ସେ ଅବହେଳା କରିପାରିବେ ନାହିଁ । ସେଇଦିନୁ ପିଲା ଦୁହେଁ ଏଇ ଘରେ ରହିଲେ । ବେବୀ ପାଠ ପଢ଼ା ପ୍ରତି ବିଶେଷ ମନ ଦେଲା ନାହିଁ । ମେଟ୍ରିକ୍ ପାଶ୍ ପରେ ଆଉ ପଢ଼ିବାକୁ ଇଚ୍ଛା କଲା ନାହିଁ । ବାବୀ ବର୍ତ୍ତମାନ ବନାରସରେ ପଢୁଛି ।

ସବୁ ସ୍ୱାଭାବିକ ହେଲା ସତ, କିନ୍ତୁ ବୀର ନାରାୟଣ ନିଜେ ଆଉ ସ୍ୱାଭାବିକ ହୋଇପାରିଲେ ନାହିଁ । ଜୟନ୍ତୀଙ୍କ ପାଇଁ ତାଙ୍କ ସୁକୋମଳ ସତ୍ତା ବିନଷ୍ଟ ହେଲା । ହିଂସ୍ର ହୋଇ ଉଠିଲେ ସେ । ହାତରେ କ୍ଷମତା ନାହିଁ । କିନ୍ତୁ ମନରେ ଶାସକର ଦମ୍ଭ । ଫଳ ହେଲା ଏଇ ଯେ ସବୁ ଭୃତ୍ୟ ଭୃତ୍ୟାମାନେ ଘର ଛାଡ଼ି ଚାଲିଗଲେ । ମାତ୍ର ଜଣେ ଦି'ଜଣ ରହିଲେ । ବୀର ନାରାୟଣ ସବୁ ବୁଝିଲେ । କିନ୍ତୁ ଉପାୟ ନାହିଁ । ପୂର୍ବପୁରୁଷମାନଙ୍କ ବୀରତ୍ୱ ତାଙ୍କୁ କେବଳ ଉତ୍ତେଜିତ କରୁଥିଲା । ସେଇ ସଇତାନ୍ କବଳରୁ ସେ ମୁକ୍ତ ହୋଇ ପାରୁ ନଥିଲେ । ପୁରୁଣା ଚାକର ଚାକରାଣୀ ଜଣେ ଦି'ଜଣ ଯେଉଁମାନେ ତାଙ୍କୁ ଖୁବ୍ ଭଲ ପାଆନ୍ତି, ତାଙ୍କ ଅସ୍ୱାଭାବିକତାରେ ମର୍ମାହତ ହୋଇ ସେଇମାନେ କେବଳ ପଡ଼ି ରହିଛନ୍ତି । ସେମାନେ ସବୁ ସହନ୍ତି । ତା'ପରେ ବେବୀ ଆସିବା ଦିନଠୁ ସେ ବୀର ନାରାୟଣଙ୍କୁ ସଂଭାଳି ନେଇଛି । ତାଙ୍କ ପାଗଳାମି ଅନେକଟା କମି ଯାଇଛି । ବେବୀ କଥା ସେ ଖୁବ୍ ମାନନ୍ତି ।

ବେବୀ ପାଖରୁ ସବୁ ଶୁଣି ଆଖି ପୋଛିଥିଲା ରୁବି । ଦୁଇଦିନ ହେଲା ବାବା ଶିକାରକୁ ଯାଇଛନ୍ତି । ସାଙ୍ଗରେ ମଦନ । ମଦନ ବୃଦ୍ଧ । ବାବା ପ୍ରକୃତିସ୍ଥ ନୁହନ୍ତି । ରୁବି ମନ ଆଶଙ୍କାରେ ଦୋଳାୟିତ ହେଉଥିଲା । ସତରେ କ'ଣ ବାବା ତା'ର ଅପ୍ରକୃତିସ୍ଥ ? ସେମିତି ତ ମନେ ହୁଏନା । ବେବୀ ଆହୁରି କହୁଥିଲା, ବାବା ସହରରେ କ'ଣ ଗୋଟେ ଫ୍ୟାକ୍ଟ୍ରୀ ଆରମ୍ଭ କରିଛନ୍ତି । ସେଥିପାଇଁ କିଛି ଜମି ଓ ଗାଡ଼ି ବିକ୍ରୀ କରି ଦେଇଛନ୍ତି । ସେ ଫ୍ୟାକ୍ଟ୍ରୀଟା ବେବୀ ରୁବିଙ୍କ ନାଁରେ ରହିବ । ବାକି ସବୁ ଜମି ବାବୀର । ଏଇଆ ଉଇଲ୍ ବି କରି ଦେଇଛନ୍ତି । କଥାଟା ଶୁଣି ରୁବିକୁ ଭଲ ଲାଗିଲା ନାହିଁ । ବାବା ବୋଧେ ନିଜ ଉପରୁ ଆସ୍ଥା ହରାଇ ବସୁଛନ୍ତି । ସେଥିପାଇଁ-

ବୀର ନାରାୟଣ ଫେରିଲେ । ଗୋଟେ କୁଟୁରା ଶିକାର କରି ଆଣିଥିଲେ ସେ । ସାଙ୍ଗରେ ଜଣେ ଅପରିଚିତ ଯୁବକ । ରୁବିକୁ ଡାକି ଚିହ୍ନାଇ ଦେଲେ- ଏ ଭଦ୍ରଲୋକ ହେଉଛନ୍ତି ଅମିୟ ଦାସ । ସଙ୍ଗୀତ କଳାରେ ତାଙ୍କର ବେଶ୍ ଦଖଲ ଅଛି । ତତେ ଓ ବେବୀକୁ ସେ ସଙ୍ଗୀତ ଶିକ୍ଷା ଦେବେ । ସେ ଏଇଠ ରହିବେ । ତାଙ୍କ ପାଇଁ ସବୁ ବନ୍ଦୋବସ୍ତ କରିଦେବୁ ।

ରୁବି ସାମାନ୍ୟ ଆଶ୍ଚର୍ଯ୍ୟ ହେଲା । ହଠାତ୍ ସଙ୍ଗୀତ ପ୍ରତି ବାବାଙ୍କର ଏ ଆକର୍ଷଣ କାହିଁକି ? କେବେ ତ ଆଗରୁ ସଙ୍ଗୀତ କଥା ସେ କହନ୍ତି ନାହିଁ । ତା' ମନୋଭାବ ବୁଝିବା ପରି ବୀର ନାରାୟଣ କହିଲେ, ବେବୀ ମା'ର ଗଳାଟି ଖୁବ୍ ମଧୁର । କେତେ ଥର ତା' ଗୀତ ଶୁଣିଛି । କିନ୍ତୁ

ସେ ତାଳ ଲୟ କିଛି ଜାଣିନି । ଅନେକ ଦିନୁ ମନେ ମନେ ଜଣେ ଉପଯୁକ୍ତ ଶିକ୍ଷକ ଖୋଜୁଥିଲି । ଯୋଗକୁ ଏ ଭଦ୍ରଲୋକଙ୍କୁ ପାଇଲି । ତାଙ୍କର କିଛି ଦାୟିତ୍ୱ ନାହିଁ । କାହା ପାଇଁ ତାଙ୍କର ଚିନ୍ତା କରିବାର ନାହିଁ କି ତାଙ୍କ ପାଇଁ କେହି ବ୍ୟସ୍ତ ହେବାର ନାହିଁ । ଏମିତିକା ଲୋକଟିଏ ମୁଁ ବି ମନେ ମନେ ଖୋଜୁଥିଲି । ସେଥିପାଇଁ ତାଙ୍କୁ ନେଇ ଆସିଛି ।

ରୁବି ଆଉ କିଛି କହି ନଥିଲା । ଅମିୟଙ୍କ ପାଇଁ କେଉଁ ରୁମ୍‌ଟା ଠିକ୍ କରିବାକୁ ହେବ ଦେଖିବାକୁ ଚାଲି ଯାଇଥିଲା ।

ତା'ପରେ ସ୍ୱାଭାବିକ ଭାବରେ କେତେଦିନ କଟି ଯାଇଛି । ବେଶ୍ ଶାନ୍ତ ସଂଯତ ମଣିଷ ଅମିୟ । ଖୁବ୍ ଭଦ୍ର । କମ୍ କଥା କୁହନ୍ତି । ସୁନ୍ଦର ଗୀତ ଗାଆନ୍ତି । ବେବୀର କଣ୍ଠସ୍ୱର ଶୁଣି ପ୍ରକୃତରେ ରୁବି ଅବାକ୍ ହୋଇଥିଲା । ବେବୀ ଯେ ଏତେ ସୁନ୍ଦର ଗାଇପାରେ, ଏ କଥା ସେ ସ୍ୱପ୍ନରେ ବି ଭାବି ନଥିଲା । ଅମିୟଙ୍କ ସହ କଣ୍ଠ ମିଳାଇ ଖୁବ୍ ସୁନ୍ଦର ଭାବେ ଗାଏ ବେବୀ । ରୁବିର କେଉଁଦିନ ସଙ୍ଗୀତ ପ୍ରତି ଆଗ୍ରହ ନଥିଲା । ବାବାଙ୍କ କଥା ମାନି ସେ ବସେ । କିନ୍ତୁ ପଦଟିଏ ବି ଗାଇ ପାରେନା । ଶେଷକୁ ସେ ନିଜେ ପ୍ରସ୍ତାବ ଦେଇଥିଲା, ତାକୁ ଭାଓଲିନ୍ ବଜାଇବା ଅମିୟ ଶିଖାଇବେ । ଗୀତ ଗାଇବା ତା' ଦ୍ୱାରା ହେବ ନାହିଁ । ବୀର ନାରାୟଣ ଆପତ୍ତି କରି ନଥିଲେ । ସମତାଳରେ ରୁବିର ଭାଓଲିନ୍ ବାଦନ ସହ ବେବୀର ସଙ୍ଗୀତ ଶିକ୍ଷା ଆଗେଇ ଚାଲିଥିଲା । ମଝିରେ ମଝିରେ ବୀର ନାରାୟଣ ଆସି ବସନ୍ତି । ତନ୍ମୟ ହୋଇ ଗୀତ ଶୁଣନ୍ତି । ସେତେବେଳେ ସେ କେମିତି ଅନ୍ୟ ପ୍ରକାର ମନେ ହୁଅନ୍ତି । ଛୋଟ ଶିଶୁ ପରି ଖାଲି ଚାହିଁ ରହନ୍ତି । ଭାବଲେଶହୀନ ମୁହଁ । ଶେଷରେ ଖୁସିରେ ଦୁଇ ଝିଅଙ୍କୁ ଆଦର କରି ଉଠି ଯାଆନ୍ତି । ଅମିୟଙ୍କୁ ପ୍ରଶଂସା କରନ୍ତି ।

କେତେଦିନ ପରେ– ଦିନେ ରୁବି ହଠାତ୍ ଲକ୍ଷ୍ୟ କଲା ବେବୀ ଓ ଅମିୟ ପରସ୍ପରକୁ ଲୁଚେଇ ଲୁଚେଇ ଚାହୁଁଛନ୍ତି । ଆଖି ଆଖି ମିଶିଗଲେ ବେବୀ ମୁହଁ ଲାଲ ହୋଇ ଯାଉଛି । ଅମିୟଙ୍କ ଦୃଷ୍ଟି ଗଭୀର ହୋଇ ଯାଉଛି–ସେ ଆଖିରେ କେତେ ଭାଷା ଫୁଟି ଉଠୁଛି । ଦୁହିଁଙ୍କ ଅଲକ୍ଷ୍ୟରେ ଯେ ରୁବି ସେମାନଙ୍କୁ ଲକ୍ଷ୍ୟ କରୁଛି, ଏ କଥା ବୁଝିବା ପରି ଅବସ୍ଥା ସେମାନଙ୍କର ନଥାଏ । ସେମାନେ ଯେମିତି ଅନ୍ୟ କେଉଁ ଲୋକରେ ବିଚରଣ କରନ୍ତି । ଅସ୍ୱସ୍ତି ଲାଗେ ରୁବିକୁ । କିନ୍ତୁ କାହାକୁ ବା ସେ କ'ଣ କହିବ ? ଏଇ ଯେଉଁ ଲୁଚକାଳି ଖେଳ ଆରମ୍ଭ ହୋଇଗଲା, ତା'ର ପରିଣତି କ'ଣ ହେବ ? ବାବା ଜାଣିଲେ ଯେ କି ଭୀଷଣ କାଣ୍ଡ କରି ବସିବେ, ସେ କଥା କଳ୍ପନା କରି ରୁବି ବେଳେ ବେଳେ ଭୟରେ ଶିହରି ଉଠେ । ଥରେ ଥରେ ମନେହୁଏ, ବେବୀକୁ ସତର୍କ କରିଦେବ । କିନ୍ତୁ ପର ମୁହୂର୍ତ୍ତରେ ସେ ଚିନ୍ତା ତ୍ୟାଗ କରେ । ବେବୀ ଯେ ପର୍ଯ୍ୟନ୍ତ ନିଜେ କିଛି ପ୍ରକାଶ ନକରିଛି ବଡ଼ ଭଉଣୀ ହିସାବରେ ତାକୁ କିଛି କହିବାଟା ରୁବି ପକ୍ଷେ ଉଚିତ ହେବ ନାହିଁ ବୋଧେ । ସେ ହୁଏତ ଅନ୍ୟଥା ଭାବିପାରେ ।

ମନେମନେ ଈଶ୍ୱରଙ୍କୁ ପ୍ରାର୍ଥନା କରେ ରୁବି । ବାବା ଯେମିତି କିଛି ନ ଜାଣନ୍ତୁ । ସେ ଯେତେବେଳେ ବୁଝି ପାରୁଛି, ଟିକେ ଲକ୍ଷ୍ୟ କଲେ ଯେ ବାବା ସବୁ ଜାଣି ପାରିବେ– ଏ କଥା ନିଶ୍ଚିତ । ଗୀତ ଶିଖିବା ବେଳେ ବାବା ଆସିଲେ ରୁବି ମନେ ମନେ ସଂତ୍ରସ୍ତ ହୋଇଯାଏ । କିନ୍ତୁ ଅମିୟ ଖୁବ୍ ଚାଲାକ୍ । ବାବା ଥିଲେ ସେ ନିଜ ଆଚରଣରେ କେବେ ବି ଦୁର୍ବଳତା ପ୍ରକାଶ

କରନ୍ତିନି । କିନ୍ତୁ ବେବୀ ପାରେନା । ରୁବି ନୀରବରେ ସବୁ ଲକ୍ଷ୍ୟ କରେ । କିନ୍ତୁ କାହାକୁ କିଛି କହିବାର ଅବକାଶ ସେ ପାଏନା ।

ଶେଷକୁ ସେଇ ଦୁର୍ଯୋଗ ଆସିଲା ।

ରୁବିର ଦେହ ସାମାନ୍ୟ ଖରାପ ଥିଲା । ସେଦିନ ସେ ଆଉ ତଳକୁ ଯାଇ ନଥିଲା । ବେବୀ ଏକା ଗୀତ ଶିଖୁଥିଲା । ଅଳ୍ପ ସମୟ ପରେ ବେବୀ ଫେରି ଆସିଲା । ରୁବି ପାଖରେ ବସିପଡ଼ି କଇଁକଇଁ ହୋଇ କାନ୍ଦି ଉଠିଲା ବେବୀ । ବ୍ୟସ୍ତ ହୋଇ ଉଠିଲା ରୁବି– କ'ଣ ହୋଇଛି ? କାନ୍ଦୁଛୁ କାହିଁକି ?

'ଅପା'– ଆହୁରି ଜୋର୍‌ରେ କାନ୍ଦିଲା ବେବୀ ।

ଅନେକ ସମୟ ପରେ କୋହ ସମ୍ବରଣ କରି ସେ ଯାହା କହିଲା, ରୁବିର ଅନ୍ତରାତ୍ମା ଥରି ଉଠିଲା । ହେ ଭଗବାନ୍- କ'ଣ ହେବ ?

ରୁବିର ଅନୁପସ୍ଥିତିରେ ବେବୀ ଓ ଅମିୟ ଟିକେ ଅଧିକ ସ୍ୱପ୍ନାବିଷ୍ଟ ହୋଇପଡ଼ିଥିଲେ । ଗୀତ ଗାଉ ଗାଉ କେତେବେଳେ ଅମିୟ ବେବୀର ହାତ ପାପୁଲିଟି ନିଜ ହାତ ମୁଠାରେ ଚାପି ଧରିଥିଲେ, ସେ କଥା କାହାରି ଖିଆଲ ନାହିଁ । କଣ୍ଠସ୍ୱର ବଂଦ ହୋଇଯାଇଛି । ମୋହାବିଷ୍ଟ ପରି ବେବୀର ହାତକୁ ମୁଠାଇ ଅମିୟ ବସିଛନ୍ତି । ହଠାତ୍ ଘର ଭିତରକୁ ବୀର ନାରାୟଣ ପଶି ଆସିଲେ ଏବଂ କାହାକୁ କିଛି ନ କହି ଯେମିତି ଆସିଥିଲେ ସେମିତି ଫେରିଗଲେ ! ତାଙ୍କ ପାଦଶବ୍ଦରେ ଦୁହିଁଙ୍କର ସଂବିତ୍ ଫେରିଲା । ଅମିୟ କିଛି କହୁଥିଲେ । କିନ୍ତୁ ବେବୀ କିଛି ଶୁଣି ପାରିନି । ପାଗଳୀ ପରି କାନ୍ଦି କାନ୍ଦି ଉପରକୁ ଚାଲି ଆସିଛି । ରୁବି ବା ଏ ଅବସ୍ଥାରେ କ'ଣ କହି ବେବୀକୁ ସାନ୍ତ୍ୱନା ଦେବ ? ସେ କେବଳ ସ୍ଥିର ଦୃଷ୍ଟିରେ ବେବୀ ମୁହଁକୁ ଚାହିଁଥିଲା ।

ବେବୀ ବ୍ୟାକୁଳ ହୋଇ ପ୍ରଶ୍ନ କରୁଥିଲା, କ'ଣ ହବ ଅପା, ବଡ଼ବାପା ତ ଖୁବ୍ ରାଗି ଯାଇଥିବେ । ମତେ ଭାରି ଡର ଲାଗୁଛି ଅପା । ତମେ କିଛି କୁହ, ମୁଁ କ'ଣ କରିବି ?

ରୁବି ଟିକେ କଠୋର ଭାବରେ କହିଲା, 'ଲୁଚକାଳି ଖେଳିବା ଆଗରୁ ମତେ ଯଦି ପଚାରିଥାନ୍ତୁ, ହୁଏତ କିଛି କହି ପାରିଥାନ୍ତି । ଏବେ ଆଉ କିଛି କହିବାର ନାହିଁ କି କରିବାର ନାହିଁ । ଟିକେ ବିଚାର କଲୁନି କାହିଁକି ? ଏମିତି ଅଂଧୁଣୀ ହୋଇଗଲୁ ଯେ'– ଆଉ କିଛି କହିପାରିଲାନି ରୁବି ।

ବେବୀର କାନ୍ଦ ହଠାତ୍ ବନ୍ଦ ହୋଇଗଲା । ସେ ଦୃଢ଼ ସ୍ୱରରେ କହିଲା, ଏ ଭୁଲ୍ ମୋର ଇଚ୍ଛାକୃତ ନୁହେଁ ଅପା । ଏଇଟା ବୋଧେ ମୋ ପାଇଁ ଦୈବୀ ନିର୍ଦ୍ଦେଶ । ଆମେ ଦୁହେଁ ପରସ୍ପରକୁ ଚାହୁଁ । ଖୁବ୍ ବେଶୀ ଚାହୁଁ । କେହି କାହା ବିନା ବଂଚି ପାରିବୁ ନାହିଁ । କେବେ ମୁହଁ ଖୋଲି କେହି କାହା ମନ କଥା କାହାକୁ କହିନୁ । ତମେ ତ ଜାଣ, କିନ୍ତୁ ମନକଥା ତାଙ୍କର ମୋ ପାଖରେ ସ୍ପଷ୍ଟ । ମୋ ମନକଥା ବି ତାଙ୍କୁ ଅଜଣା ନୁହେଁ । ଯାକୁ କ'ଣ ତମେ କହିବ ଆମେ ଇଚ୍ଛା କରି ଖେଳ ଆରମ୍ଭ କରିଛୁ ? ଏଇଟା ହିଁ ଆମ ପାଇଁ ବିଧିନିର୍ଦ୍ଦିଷ୍ଟ ।

ରୁବି ହସିଲା, ବେଶ୍ ତ । ସେଇ ଦୈବ ଉପରେ ନିର୍ଭର କରି ଚୁପ୍ ଚାପ୍ ଶୋଇ ଯା' । ବଡ଼ ବାବାଙ୍କ ଉପରେ ବି ସେଇ ଦେବୀ ସବାର ହୋଇଯିବେ ଓ ସେ ଯେତେ ଶୀଘ୍ର ସଂଭବ ତୁମ ଦୁହିଁଙ୍କୁ ଏକ କରିଦେବେ ।

ବେବୀ ମୁହଁରେ କିଏ ମୁଠାଏ ସିନ୍ଦୂର ପକାଇ ଦେଲା ଯେମିତି ! ସେ ଆଉ କହି ପାରିଲାନି । ଏଇ ଲଜ୍ଜାନମ୍ର ସାନ ଭଉଣୀଟି ମୁହଁକୁ ଚାହିଁ ରୁବିର କେମିତି ମାୟା ହେଲା । ସେ ବେବୀର ମୁଣ୍ଡ ସାଉଁଳି ଦେଇ କହିଲା, ଯା' ଶୋଇ ପଡ଼ିବୁ ।

ବେବୀ ଦ୍ୱିରୁକ୍ତି ନ କରି ଉଠିଲା । ବେବୀକୁ ବିଛଣାକୁ ପଠାଇ ଦେଇ ରୁବି କିନ୍ତୁ ଶୋଇ ପାରିଲା ନାହିଁ । ବାବାଙ୍କ ଗମ୍ଭୀର ଚେହେରା ବାରବାର ତା' ଆଖି ସାମ୍‌ନାରେ ଝଲସି ଗଲା । ବାବା ନିଜେ ତାଙ୍କ ପିଉସୀଙ୍କ କଥା କହୁଥିଲେ । ବେଶ୍ ନିର୍ବିକାର ଭାବରେ ସେ କହିଥିଲେ । ତାଙ୍କ ବାପା ନିଜ ହାତରେ ଦୁଇ ଦୁଇଟା ନରହତ୍ୟା କରିଥିଲେ । ସେଇ ବାବା ବେବୀକୁ କ୍ଷମା କରି ପାରିବେ ତ ! ଅଜ୍ଞାତକୁଳଶୀଳ ଅମିୟ ସଙ୍ଗୀତ ଶିକ୍ଷକରୁ ତାକୁ ଜାମାତା ପଦରେ ବାବା ଗ୍ରହଣ କରିପାରିବେ ତ ? ରୁବି ନିଜ ବାବାଙ୍କୁ ଯେତିକି ଚିହ୍ନେ ସେ ଜାଣେ ଏ କଥା ଏକାନ୍ତ ଅସମ୍ଭବ । ବାବା କ'ଣ ନିର୍ବିକାର ଭାବରେ ଏ କଥା ସହିଯିବେ ? ତାଙ୍କ ଝିଅର ହାତ ଧରିବାର ଅମାର୍ଜନୀୟ ଅପରାଧକୁ ସେ କ'ଣ ଆଖି ବୁଜି କ୍ଷମା କରିଦେବେ ? ଯଦି ବାବା ତାଙ୍କ ପୂର୍ବପୁରୁଷଙ୍କ ପରି ଉତ୍‌କ୍ଷିପ୍ତ ହୋଇ ଉଠନ୍ତି ? ଯଦି ତାଙ୍କ ପଦାଙ୍କ ଅନୁସରଣ କରନ୍ତି ? ଆଉ କିଛି ଭାବି ପାରୁନଥିଲା ରୁବି ।

ଖାଇବା ବେଳ ହେଲାଣି । ବେବୀକୁ ଉଠାଇଲା ସେ । ବେବୀ ପୁଣି କାନ୍ଦି ପକାଇଲା । 'ନା ଅପା, ବଡ଼ ବାବାଙ୍କ ପାଖରେ ମୁଁ ମୋଟେ ବସି ପାରିବିନି । ତମେ ଯାଅ ଖାଇନେବ । ମୁଁ ପରେ ଖାଇବି ।'

ରୁବି ବେବୀର ମାନସିକ ଅବସ୍ଥା ବୁଝିଲା । ତଳକୁ ଓହ୍ଲାଇଗଲା ସେ । ଖାଇବା ସଜାଡ଼ିବାକୁ କହି ସେ ବୀର ନାରାୟଣଙ୍କ ଶୟନକକ୍ଷକୁ ଗଲା । ଚମକି ପଡ଼ିଲା ରୁବି । ବଂଧୁକ ହାତରେ ଧରି ବୀର ନାରାୟଣ ଟହଲୁଥିଲେ । ତାଙ୍କ ପୂର୍ବ ପୁରୁଷମାନଙ୍କ ଛବି ନିକଟରେ ଠିଆ ହୋଇପଡ଼ି ନିବିଷ୍ଟ ମନରେ ସେମାନଙ୍କୁ ଚାହୁଁଥିଲେ । ପୁଣି ଅସ୍ଥିର ପଦଚାରଣ କରୁଥିଲେ ।

ରୁବି ଆସ୍ତେ ଡାକିଲା-

-ବାବା !

ଶୁଣି ପାରିଲେନି ବୀର ନାରାୟଣ ।

-ବାବା-ଏଥର ଟିକେ ଉଚ୍ଚ କଣ୍ଠରେ ଡାକିଲା ରୁବି ।

ସ୍ଥିର ଦୃଷ୍ଟିରେ ରୁବିକୁ ଚାହିଁଲେ ବୀର ନାରାୟଣ । ପଲକହୀନ ଅନ୍ତର୍ଭେଦୀ ଦୃଷ୍ଟି । ସେ ଦୃଷ୍ଟି ସମକ୍ଷରେ ରୁବି ଝାଉଁଳି ପଡୁଥିଲା । ନିଜକୁ ସମ୍ଭାଳି ନେଇ କହିଲା-

-ଖାଇବ ଆସ ।

ବଂଧୁକ ଥୋଇଦେଇ ବୀର ନାରାୟଣ ଆସିଲେ । ଖାଇବା ବେଳେ ବେବୀର ଅନୁପସ୍ଥିତି ପାଇଁ କିଛି ପ୍ରଶ୍ନ କଲେ ନାହିଁ ବା ରୁବି କିଛି କହିଲା ନାହିଁ । ନିହାତି ଅନ୍ୟମନସ୍କ ଭାବରେ ଖାଇଲେ ସେ । ରୁବି ଠିକ୍ ଲକ୍ଷ୍ୟ କରୁଥାଏ । କିନ୍ତୁ କିଛି କହିବାକୁ ତା'ର ସାହସ ହେଉ ନଥାଏ । ଖାଇ ସାରି ଉଠିପଡ଼ିଲେ ବୀର ନାରାୟଣ । ପଦଟିଏ କଥା ସେ କହି ନାହାନ୍ତି ।

ତା'ପରଦିନ ସକାଳୁ ଉଠୁ ଉଠୁ ରୁବି ଶୁଣିଲା ବାବା କହୁଛନ୍ତି-ମଦନ, ଶୀଘ୍ର ଦେଈଙ୍କୁ ଡାକ ତ !

ମଦନର ଡାକକୁ ଅପେକ୍ଷା ନକରି ରୁବି ତଳକୁ ଓହ୍ଲାଇ ଗଲା । ବାବା ଶିକାର ଯିବାକୁ ସଜ ହୋଇ ଠିଆ ହୋଇଛନ୍ତି । ମଥା ପୋତି ଅମିୟ ବି ଠିଆ ହୋଇଛନ୍ତି । ରୁବିକୁ ଦେଖି ବୀର ନାରାୟଣ କହିଲେ, ମୁଁ ଶିକାର ଖେଳି ଯାଉଛି । ଫେରୁ ଫେରୁ ଡେରି ହେବ । ସାବଧାନରେ ଚଲୁଥିବ ।

ରୁବିର ଉତ୍ତରକୁ ଅପେକ୍ଷା ନକରି ସେମାନେ ଚାଲିଗଲେ । ବୀର ନାରାୟଣ ଓ ଅମିୟ । ଅମିୟଙ୍କୁ ଦେଖି ମନେହେଲା, ସତେ ଯେପରି ଖୁବ୍ କଷ୍ଟରେ ସେ ଟାଣି ହୋଇ ଯାଉଛନ୍ତି । ତାଙ୍କର ଏତେ ଟିକେ ମନ ନାହିଁ ଯିବାକୁ । ଫାଶୀ ଆସାମୀ ତା'ର ଦଣ୍ଡାଦେଶ ଶୁଣି ସାରିବା ପରେ ତା' ମୁହଁ କେମିତି ଦେଖାଯାଏ ରୁବି ଦେଖିନି । କିନ୍ତୁ ଅମିୟଙ୍କୁ ଦେଖି ତା'ର ମନେ ହେଲା ବୋଧେ ଏମିତି ହୋଇଥିବ । ସେ ଆସାମୀର ମୁହଁ ଯେମିତି ଦିଶୁଛି, ଠିକ୍ ସେମିତି ଦିଶୁଛି ଅମିୟଙ୍କ ମୁହଁ । ଅମିୟ ବାଧ୍ୟ ବଳିଛାଗ ପରି ବୀର ନାରାୟଣଙ୍କ ପଛେ ପଛେ ଗଲେ । ମନା କରିବାର ଶକ୍ତି ନାହିଁ । ପଛକୁ ଫେରି ଚାହିଁବାର ସାହସ ନାହିଁ । ରୁବି ମନ କେମିତି ହୋଇଗଲା— ଗତ କାଲିର ଘଟଣା— ତା'ପରେ ଆଜି ସକାଳୁ ଶିକାର ଯାତ୍ରା ! ଦୁଇଟାର ଯେମିତି ଘନିଷ୍ଠ ଯୋଗାଯୋଗ ! ଆଉ ସେ ଯୋଗାଯୋଗର ଫଳାଫଳ—କିନ୍ତୁ ଏ ପରିସ୍ଥିତିରେ ତା'ର ବା କ'ଣ କରଣୀୟ ଅଛି ?

ଭାରି ମନ ନେଇ ପଛକୁ ମୁହଁ ଫେରାଇଲା ରୁବି । ସିଡ଼ି ଅଧାରେ ବେବୀ ଠିଆ ହୋଇଛି । ମଲା ମଣିଷ ମୁହଁ ପରି ତା' ମୁହଁ ସାଦା ହୋଇ ଯାଇଛି । ସେ ଯେପରି ଜୀବନ୍ତ ବେବୀ ନୁହେଁ । ଗୋଟେ ପଥର ମୂର୍ତ୍ତି । ରୁବି ଶୀଘ୍ର ଶୀଘ୍ର ପାଦ ପକାଇ ବେବୀ ପାଖକୁ ଗଲା । ପଥରର ଆଖି ମେଲି ବେବୀ ଚାହିଁରହିଛି । ସେ ଆଖିରେ ପଲକ ନାହିଁ । ଭାବଲେଶଶୂନ୍ୟ ଦୃଷ୍ଟି । ସିଡ଼ି ବାଡ଼ ଧରି ବେବୀ ଠିଆ ହୋଇଛି ।

-ବେବୀ - ବେବୀ !

ଦେହରେ ହାତ ମାରି ଡାକିଲା ରୁବି । କଟାଗଛ ପରି ସେଇ ସିଡ଼ି ଉପରେ ଲୋଟି ପଡ଼ିଲା ବେବୀ । ଧରିବାକୁ ଚେଷ୍ଟା କରି ବି ରୁବି ତାକୁ ଧରି ପାରିଲା ନାହିଁ । ବେବୀ ତଳକୁ ତଳକୁ ଗଡ଼ିଗଲା । ଚିତ୍କାର କରି ଉଠିଲା ରୁବି । ଚାକରବାକର ଧାଇଁ ଆସିଲେ । ବେବୀ ଗଡ଼ି ଗଡ଼ି ଅଗଣାରେ ଆସି ନିଶ୍ଚଳ ହୋଇ ପଡ଼ିଗଲା । ଡାକ୍ତର ଆସିଲେ । ବେବୀର ଆଘାତ ଖୁବ୍ ଗୁରୁତର । ବଂଚିବା ଆଶା କମ୍ । ମୁଣ୍ଡରେ ମାଡ଼ ହୋଇଛି । ରୁବି କାଳ ବିଳମ୍ବ ନ କରି ବେବୀକୁ ଧରି କଟକ ବାହାରିଲା । ସାଙ୍ଗରେ ମଦନ ଗଲା । କିନ୍ତୁ ସେମାନେ କଟକ ଡାକ୍ତରଖାନାରେ ପହଞ୍ଚିପାରିଲେ ନାହିଁ । ହଠାତ୍ ବାଟରେ ବେବୀ ଆଖି ଖୋଲି ଚାହିଁଲା । ବେବୀ ମଥାକୁ କୋଳରେ ଧରି ରୁବି ବସିଥିଲା । ସେ ଆଶାୟୀ ହୋଇ ବେବୀ ମୁହଁ ଉପରକୁ ଝୁଙ୍କି ପଡ଼ିଲା । ବେବୀ ଖନେଇ ଖନେଇ କିଛି କହୁଛି । ଶୁଣିବାକୁ ଚେଷ୍ଟା କଲା ରୁବି ।

ବେବୀ କହୁଛି- 'ମୁଁ ଜାଣେ ତମେ ଆଉ ଫେରିବନି । ଆଉ ତମେ କୁଆଡ଼େ ଯିବ ତା' ବି ମୁଁ ଜାଣେ । ମୁଁ ବି ଯାଉଛି । ଜଣେ ଆଗ ପହଞ୍ଚିଲେ ଆଉ ଜଣକୁ ଅପେକ୍ଷା କରିବା ।'

ଆଉ କିଛି କହୁନି ବେବୀ । ତା'ର ଏଇ ପ୍ରଳାପରୁ ରୁବି ଯେତିକି ବୁଝିଲା ସେତକ ଯଥେଷ୍ଟ । ରୁବି ଆଖି ଲୁହରେ ଝାପ୍‌ସା ହୋଇ ଯାଉଛି । ବେବୀ ସେମିତି ଆଖି ମେଲା କରି ଚାହିଁଛି । ହଠାତ୍ ଝଲକାଏ ରକ୍ତ ବାନ୍ତି କରି ପକାଲା ବେବୀ । ରୁବି ତା' ମୁହଁ ପୋଛି ଦେଲା । ତା'ପରେ ଦୁଇ ତିନିଟା ହିକ୍‌କା ପରେ ବେବୀର ନିଃଶ୍ୱାସ ବଂଦ ହୋଇଗଲା । ଭୋ ଭୋ ହୋଇ କାନ୍ଦି ଉଠିଲା ରୁବି । ସେଇଠୁ ଗାଡ଼ି ଫେରାଇ ସେମାନେ ପୁଣି ଘରକୁ ଫେରିଲେ । ବାବା ନାହାନ୍ତି । ଘରେ କେହି ମୁରବୀ ନାହାନ୍ତି । ବେବୀର ଅପମୃତ୍ୟୁ—କେତେ ଝାମେଲା । ରୁବିର ମୁଣ୍ଡ ଗୋଳମାଳ ହୋଇ ଯାଉଥିଲା । କିନ୍ତୁ ମଦନ ଅନେକ ଦିନର ବିଶ୍ୱସ୍ତ ଲୋକ । ଜମିଦାରୀ ଅମଳରୁ ସେ ଏ ସବୁରେ ଅଭ୍ୟସ୍ତ । ଘରେ ପହଞ୍ଚିବାର ଦୁଇଘଣ୍ଟା ଭିତରେ ବେବୀର ସତ୍ତା ଲୋପ

ପାଇଗଲା । ଏଡ଼େ ସୁନ୍ଦର କଅଁଳ ଛନଛନ ଝିଅଟା ମୁଠାଏ ପାଉଁଶ ହୋଇଗଲା । ସେମାନଙ୍କର ନିଜସ୍ୱ ଶ୍ମଶାନ ଅଛି । ସେଇଠି ଲୋକମାନେ ଜାଣିବା ପୂର୍ବରୁ ବେବୀର ମର ଶରୀର ଜଳି ଯାଇଥିଲା । ଗାଁ ଲୋକେ ଜାଣିଲେ ଉଆସରେ କିଏ ଜଣେ ମରିଗଲା । କିନ୍ତୁ ସେଇ ଜଣକ ଯେ କିଏ, ଏ କଥା ବୁଝିବାକୁ କାହାରି ତର ନଥିଲା । ଆଗେ ଭୟରେ ଉଆସ ବିଷୟରେ କେହି ଆଗ୍ରହ ଦେଖାନ୍ତି ନାହିଁ । ଏବେ ସେଇ ଅଭ୍ୟାସ ରହି ଯାଇଛି ।

ଚାରିଦିନ ବିତି ଗଲାଣି ।

ବାବା ଫେରି ନାହାନ୍ତି । ରୁବି ଖୁବ୍ ଭୟ ପାଇ ଯାଇଛି । ଶୂନ୍ୟ ମନ ନେଇ ଶୂନ୍ୟ ଘରେ ସେ ଖାଲି ପାଗଳୀ ପରି ଘୂରି ବୁଲେ । ବେବୀର ସେଇ ମୃତ୍ୟୁକାଳୀନ ପ୍ରଳାପ, ଅମିୟଙ୍କର ଅନିଚ୍ଛୁକ ଗତି– ସବୁ ତା' ଆଖି ଆଗରେ ଭାସି ଉଠେ । ସତରେ କ'ଣ ଅମିୟ ଆଉ ଫେରିବେନି ? ବେବୀଟା ଏମିତି ମରିଗଲା କେମିତି ? ବାବା ଆସି ବେବୀ କଥା ପଚାରିଲେ ସେ କ'ଣ କହିବ ?

ସବୁଠି ବେବୀର ଅସ୍ତିତ୍ୱ ଅନୁଭବ କରୁଛି ରୁବି । ଏଇ ଯେମିତି ବେବୀ କାନ୍ଦି କାନ୍ଦି ଏ ଘର ଚାରିପାଖରେ ବୁଲୁଛି—ଅମିୟ ଫେରିଲେଣି କି ନାହିଁ ଜାଣିବାକୁ ସେ ଯେମିତି ବ୍ୟାକୁଳ ହୋଇ ପାଚେରି କଡ଼େ କଡ଼େ ବୁଲୁଛି । କିନ୍ତୁ ଘରେ ପଶିବାକୁ ସାହସ କରି ପାରୁନି । ଭୟରେ ଚିତ୍କାର କରି ଉଠେ ରୁବି । ବେବୀ ମରିଯିବା ଦିନଠୁଁ ମକରା ମା' ରୁବି ଶୋଇବା ଘରେ ଶୋଉଛି । ମଦନ ବାରଣ୍ଡାରେ ଶୋଉଛି । କିନ୍ତୁ ଏକା ରୁବି ଶୋଇ ପାରୁନି । ରାତି ରାତି ଅନିଦ୍ରା ରହି ଶୂନ୍ୟତାର ବିଳାପ ଶୁଣୁଛି ସେ । ତା' ମନଟା ବି ଶୂନ୍ୟ ହୋଇ ଯାଇଛି । କାହାକୁ ପଦେ କଥା କହିବାକୁ ତା'ର ମନ ହେଉନି । ସବୁବେଳେ ଚୁପ୍‌ଚାପ୍ ବସି ରହୁଛି । ବାବୀ ପାଖକୁ ଟେଲିଗ୍ରାମ୍ କରା ହୋଇଛି । ସେ ବୋଧେ ଏଇ ଦିନେ ଦି' ଦିନରେ ଆସି ପହଞ୍ଚିବ ।

ସାତଦିନ ପରେ ବାବା ଫେରିଲେ । ଏକା । ଅମିୟ ନଥିଲେ । ବାବାଙ୍କୁ ଦେଖି ରୁବିର ମନେ ହେଲା, ଏ ଯେପରି ତା' ବାବା ନୁହଁନ୍ତି ! ଆଉ ଜଣେ କିଏ ଖୁଣୀ ଆସାମୀ ! ସଦ୍ୟ ଖୁଣ୍ କରି ଚାଲି ଆସିଛନ୍ତି ! ଏବେ ବି ଆଖିରେ ହିଂସ୍ର ଚାହାଣି ରହିଛି । ମୁହଁରେ ନିର୍ମମତାର ପ୍ରଲେପ । ବେଶୀ ସମୟ ବାବାଙ୍କ ମୁହଁକୁ ଚାହିଁ ପାରୁ ନଥିଲା ରୁବି ।

ଅମିୟଙ୍କ କଥା କେହି ପଚାରିଲେ ନାହିଁ । ବାବା ବି ନିଜ ତରଫରୁ କିଛି କହିଲେ ନାହିଁ । ସବୁ ଯେପରି ଚୁପ୍‌ଚାପ୍ ବୁଝାମଣା ! ସମସ୍ତେ ଯେପରି ସବୁ ଏଠି ବୁଝି ପାରନ୍ତି । ମୁହଁ ଖୋଲି କହିବା ଦରକାର ନାହିଁ । ଅମିୟ ପ୍ରସଙ୍ଗ ଏଠାରେ ଅବାନ୍ତର ।

ବେବୀର ମୃତ୍ୟୁ ସମ୍ବାଦ ବାବାଙ୍କୁ ବିଚଳିତ କଲା ନାହିଁ । ଧୀରସ୍ଥିର ଭାବରେ ସବୁ ଶୁଣିଲେ ସେ । ତା'ପରେ ମନ୍ତବ୍ୟ ଦେଲେ—ତୃତୀୟ ପୁରୁଷରେ ପୁନରାବୃତ୍ତି !

ଆଉ କିଏ କିଛି ବୁଝିଲେ କି ନାହିଁ କେଜାଣି । ରୁବି ଠିକ୍ ବୁଝିଲା । ତା'ର ବାବାଙ୍କ ସହ ପଦେ କଥା କହିବାକୁ ବି ତା'ର ଇଚ୍ଛା ହେଲା ନାହିଁ । ପାଦ ଗଣି ଗଣି ସେ ନିଜ ଶୋଇବା ଘରକୁ ଫେରି ଆସିଲା ।

ସେଇ ଶୂନ୍ୟ କୋଠରି- ଶୂନ୍ୟ ମନ – ଶୂନ୍ୟତାର ସ୍ୱର – ସେଇ ତା'ର ଏକାନ୍ତ ନିଜର – ଆଉ ସବୁ ମିଛ ।



# ନମସ୍କାର ସିଭିଲ୍ ସର୍ଜନ ମହାଶୟ ! ଆପଣଙ୍କ ଆଖିରେ ଲେଞ୍ଜରା ଲାଗିଚି

## ହୃଷୀକେଶ ପଣ୍ଡା

କୌଣସି ମେ' ମାସର ପୂର୍ବାହ୍ନରେ ନଚିକେତା ମୁଣ୍ଡରେ ଗୋଟେ ଶୂନ୍ ପଶିଗଲା ।

ସେଦିନ ସକାଳୁ ନିଦରୁ ଉଠିଲା ପରେ ପରେ ଶବ୍ଦ ମନେ ପଡୁନଥିବା କୌଣସି ଗୀତର ସୁର ତାକୁ ବ୍ୟସ୍ତ କରିପକେଇଲା । ସେ ଗୀତର ସୁର ବେଶ୍ ରୋମାଣ୍ଟିକ୍ ଥିଲା ଯଦିଓ ସେ ଗୀତର କଥା ଓ ଅର୍ଥ ସେ ମନେ ପକେଇ ପାରୁନଥିଲା । ଖବରକାଗଜରେ ସେଦିନ ବେଶ୍ ଭଲ ସମ୍ବାଦଟିଏ ବାହାରିଥିଲା । ଯାହାକୁ ପଢ଼ି ସାରି ସେ ଖୁସି ହୋଇଯାଇଥିଲା । ସମ୍ବାଦଟି ଏହିପରି ଥିଲା : କୌଣସି ଇଉରୋପୀୟ ସହରରେ କୌଣସି ଜଣେ ଭଦ୍ରବ୍ୟକ୍ତି ନିଜ ଗାଲର ମାଂସପେଶୀର କିଛି ଅସୁବିଧା ହେତୁ ପିଲାଦିନୁ ହସି ପାରୁନଥିଲେ । ହସିବାକୁ ଚେଷ୍ଟା କଲା ମାତ୍ରକେ ହିଁ ତାଙ୍କ ମୁଖମଣ୍ଡଳରୁ ଗୋଟେ ଯନ୍ତ୍ରଣା ଆରମ୍ଭ ହେଇ ସାରା ଶରୀରକୁ ପ୍ରସାରିତ ହେଉଥିଲା । ତାଙ୍କ ଗାଲରେ କୌଣସି ରୋଗାକ୍ରାନ୍ତ ମାଂସପେଶୀ ଥିଲା, ଯାହାହେତୁ ସେ ଏପରି ଅସୁବିଧା ଭୋଗ କରୁଥିଲେ । ତାଙ୍କ ମୁଖମଣ୍ଡଳ ଅପରେସନ୍ କରି ସେହି ରୋଗାକ୍ରାନ୍ତ ମାଂସପେଶୀଟିକୁ ବାହାର କରି ଦିଆଗଲା ଓ ସେଇ ସ୍ଥାନରେ; ଆଉ ଜଣେ ଭଦ୍ରମହିଳାଙ୍କର ମାଂସପେଶୀ (ଯେଉଁ ଭଦ୍ରମହିଳା ପିଲାଦିନୁ ସାମାନ୍ୟ କଥାରେ ଠୋ' ଠୋ' ହସୁଥିଲେ, ଏବଂ ପଇଁଚାଳିଶ ବର୍ଷ ବୟସରେ କୌଣସି ଟେଲିଭିଜନ୍ ଦୃଶ୍ୟ ଦେଖୁ ଦେଖୁ ହସି ହସି ମରି ଯାଇଥିଲେ) ଲଗାଯାଇଥିଲା । ଅପରେସନ୍ ପରେ ପରେ, ବ୍ୟାଣ୍ଡେଜ୍ ଖୋଲା ହେବା ମାତ୍ରକେ, ଭଦ୍ରବ୍ୟକ୍ତି ଜଣକ ପ୍ରଥମେ ଅଳ୍ପ ଅଳ୍ପ ହସିବାକୁ ଆରମ୍ଭ କରି କ୍ରମଶଃ ଖାସ୍ ହସିବାକୁ କ୍ଷମ ହୋଇଯିବା ଖୁସିରେ ଠୋ-ଠୋ ହସିଥିଲେ ।

ସମ୍ବାଦଟି ପଢ଼ିସାରି ନଚିକେତା ବେଶ୍ ଭଲ ମୁଡ୍‌ରେ ଥିଲା । ତା'ଛଡ଼ା ଆଗ ଦିନ ରାତିରେ ବାଥ୍‌ରୁମ୍‌ରୁ ଫୁଲ ବଗିଚାକୁ ସଂଲଗ୍ନ କରୁଥିବା କବାଟ ସେ ଭୁଲ୍‌ରେ ଖୋଲା ରଖିଦେଇଥିଲା, ଓ ସକାଳୁ ବାଥ୍‌ରୁମ୍ ସାରା ମଲ୍ଲୀଫୁଲ ବାସ୍ନା ଭର୍ତ୍ତି ହେଇଥିଲା । ଠିକ୍ ସେତିକିବେଳେ ଖୁବ୍ ପିଲାଦିନେ ଶୁଣିଥିବା ପରୀ ଗପଟିଏ ହଠାତ୍ ନଚିକେତାର ଅଧା ଅଧା ମନେ ପଡ଼ିଲା, କିନ୍ତୁ କଦାଚିତ୍ ଗପର ଶେଷ ଅଂଶ ଅଥବା ପରୀର ଚେହେରା ତା'ର ମନେ ପଡ଼ିଲା ନାହିଁ ତା' ଛଡ଼ା ଏତେ ସବୁକଥା ମନେ ପକେଇବା ପାଇଁ ତା'ର ବେଳ ନଥିଲା । ତା'ର ଅଫିସ୍ ଯିବା ସମୟ ପାଖେଇ ଆସୁଥିଲା ଓ ନିତ୍ୟକର୍ମ ସାରିବା ପାଇଁ ସେ ବ୍ୟସ୍ତ ଥିଲା । ଯା' ସହିତ ସେଇ ଶବ୍ଦ ମନେପଡୁ ନଥିବା ଗୀତର ସ୍ୱର ମିଳିମିଶି ନଚିକେତାକୁ ଅସ୍ତବ୍ୟସ୍ତ କରି ପକେଇଲେ । ସେଦିନ ସେ ଭଲ କରି ବ୍ରେକ୍‌ଫାଷ୍ଟ କରିପାରିଲା ନାଇଁ, ଓ ଟାଇ ବାନ୍ଧିବାବେଳେ ବାରଂବାର ଟାଇର ଲମ୍ବା ଭୁଲ୍ କଲା । ଏହି ସମୟରେ ସ୍ତ୍ରୀ ! ''କିଓ ଏତେ ଜଲ୍‌ଦି କ'ଣ ବାହାରିଗଲଣି''– ସତେକି କହିବେ କହିବେନି ହେଇ, ପଢ଼ି

ନଥିବା ଖବର କାଗଜକୁ ପଢ଼ିବେ ବା ପଢ଼ିବେନି ହେଇ, ନପଢ଼ି, ପୁଣି ରଖିଦେଇ, ଚାଲି ଯାଉଥିବା ନଚିକେତାର ପୃଷ୍ଠଭାଗକୁ ଅନେଇଲେ ।

ନଚିକେତା କାମ ସାଇଟ୍‌କୁ ବାହାରିଗଲା; ଦି'ଦିନ ହେଲା ଭଲ କାମ ହଉ ନାଇଁ ବୋଲି ତା' ବସ୍ ତାକୁ କାଲି ଦି'ପଦ ଗାଳି ଦେଇଥିଲା । ନଚିକେତା ଯଥାକ୍ରମେ ତା' ଓଭରସିଓର୍, କଣ୍ଟ୍ରାକ୍‌ଟର ଓ ଗ୍ୟାଙ୍ଗ୍‌ମେଟ୍‌ମାନଙ୍କୁ ଯା' ଇଚ୍ଛା ତା' କହିଗଲା ଓ ଆଜିପରି ଦିନରେ ମୁଡ୍ ଖରାପ କଲେ ବୋଲି ଭାବି ଆଉରି ବିମର୍ଷ ହୋଇଗଲା । ଓ ଠିକ୍ ସେତିକିବେଳେ, ଶୂନ୍‌ଟିଏ ତା' ମୁଣ୍ଡରେ ପଶିଯାଇ, ପାଣି ଫୋଟକା କାଚ ଧାରରେ ଆଶ୍ରୟ ନବା ପରି ଲଟ୍‌କି ଗଲା ।

ସାଇଟରୁ ଫେରି ନଚିକେତା ଅଫିସ୍‌ରେ ଦେଖିଲା ତା' ନାଁରେ ଟେଲିଗ୍ରାମ୍ ଅଛି । ମାୟା ଟେଲିଗ୍ରାମ୍ କରିଥିଲା । ମାୟା ସାଙ୍ଗେ ସେ ପାଞ୍ଚ ବର୍ଷ ଆଗରେ ପ୍ରେମରେ ପଡ଼ିଥିଲା, ଯେତେବେଳେ ମାୟା କୌଣସି ସେବାଶ୍ରମରେ ନୂଆକରି ମାଷ୍ଟ୍ରାଣୀ ଥିଲା ଓ ସେ କଲେଜରେ ପଢୁଥିଲା । ସେତେବେଳେ ମାୟାର ବାପା ଅଲ୍‌ସର ରୋଗୀ ଥିଲେ, ଚାକିରି କରିଥିଲେ ଓ କଳିହୁଡୀ ପତ୍ନୀ, ଦୁଇଟି ଅବିବାହିତା କନ୍ୟା ଓ ତିନି ଜଣ ଅଚ୍ଛ ଯୋଗ୍ୟ ପୁତ୍ରଙ୍କ ସଂସାର ସମ୍ଭାଳୁ ଥିଲେ । କିନ୍ତୁ ଟେଲିଗ୍ରାମ୍ ଅନୁଯାୟୀ ଗଲା ଦୁଇଦିନ ଆଗରୁ ସେ ଅକାରଣେ ମରିଯାଇଥିଲେ । ଅଥଚ ଚାଲିଆସିବା ପାଇଁ ମାୟା ଲେଖି ନଥିଲା । ମାୟା ବାହା ହେଇନଥିଲା, ଆଗପରି ମାଷ୍ଟ୍ରାଣୀ ଥିଲା, କିନ୍ତୁ ଗୋଟେ ସ୍କୁଲରୁ ଆଉଗୋଟେ ସ୍କୁଲକୁ ବଦଳି ଯାଇଥିଲା । ଟେଲିଗ୍ରାମ୍ ଭାରି ସଂକ୍ଷିପ୍ତ ଥିଲା । ''ବାପା ମରିଗଲେ, ତିନି ତାରିଖ ମାୟା ।'' ବୋଧେ ଟେଲିଗ୍ରାମରେ ଶବ୍ଦ ସଂଖ୍ୟା ବେଶି ହେଇଗଲେ ପଇସା ବେଶି ପଡ଼ିଯିବା ପାଇଁ ମାୟା ଡରୁଥିଲା ବୋଲି ନଚିକେତା ଭାବିଲା । ଗତ ଥର ମାୟାର ବାପା ସାଙ୍ଗେ ଦେଖା ହେଲାବେଳେ ସେ ନଚିକେତାକୁ ଚିହ୍ନିପାରି ନଥିଲେ ବୋଲି ମାୟା ହସି ହସି ଗଡ଼ି ଯାଇଥିଲା । ସେଇ ଭଦ୍ରଲୋକ ହଠାତ୍ ତିନି ତାରିଖ ଦିନ ମରିଯାଇଥିଲେ । ନଚିକେତା ତା' ଓଭରସିଅରକୁ ଅନେଇଲା, ଟେଲିଗ୍ରାମକୁ ପ୍ୟାଣ୍ଟ୍ ପକେଟ୍‌ରେ ପୂରେଇଲା ଓ ସିଗାରେଟ୍ ଲଗେଇ ପାଟି କଲା, ''ତିନିଦିନ ହେଲା ସାଇଟ୍‌ରେ କାମ ବନ୍ଦ ଅଛି, ତମେ ସବୁ କ'ଣ କରୁଚ ?'' ପାଟି କଲାବେଳେ ଗଲାକାଲି ବସ୍‌ର ଲାଲ୍ ମୁହଁ ମନେ ପକେଇଲା ଓ ତା'ର ଗୋଟେ ଜୋକ୍ ମନେ ପଡ଼ିଲା, ''ଜଣେ ବାରିକ ଯେତେବେଳେ ଆଉ ଜଣେ ବାରିକକୁ ଖିଅର କରୁଥାଏ, ସେତେବେଳେ କୋଉ ବାରିକ କଥା କହେ ?'' ଏଇ ଜୋକ୍‌ଟା ମୁଁ ଆଗରୁ କୋଉଠି ଶୁଣିଚି, ସେ ଭାବିଲା, ଭାବିସାରି ମାନ୍ଦା ହୋଇଗଲା ।

ଅଫିସ୍ ଛାଡ଼ିଲାବେଳକୁ ତା' ମୁଣ୍ଡରେ ବେଶ୍ ଗୁଡ଼ାଏ ଶୂନ୍ୟ ପଶି ଯାଇଥିଲେ । ରାସ୍ତାରେ ଯାଉ ଯାଉ ସେ ଭାବିବାକୁ ଚେଷ୍ଟାକଲା, ସବୁଠୁ ନିକଟରେ କେବେ ମାୟା ଘରକୁ ଯାଇ ହବ, ଓ ସେଇ ସିଦ୍ଧାନ୍ତ କରୁ କରୁ ଆସନ୍ତା ଦିନମାନଙ୍କର ପ୍ରୋଗ୍ରାମ୍ ମନେ ପକେଇଲା । କିନ୍ତୁ ଶୂନ୍‌ମାନେ ତାକୁ ଅସମ୍ଭବ ଅସ୍ତବ୍ୟସ୍ତ କରିପକେଇଲେ; ସେ ଥରକୁ ଥର କ'ଣ ଭାବୁଥିଲା, ଭୁଲିଗଲା । ଅଧାବାଟରୁ ସେ ଅଫିସ୍ ଫେରିଆସିଲା, ନନ୍ଦିତାକୁ ଟେଲିଫୋନ୍ କଲା, କମ୍ପାନି ଡାକବଙ୍ଗଳାକୁ ସନ୍ଧ୍ୟା ସାତଟାବେଳକୁ ଚାଲିଆସିବାକୁ ।

ନନ୍ଦିତାକୁ ଯେତେବେଳେ ନଚିକେତା ଦେଖେ, ସବୁବେଳେ ତା'ର ଧାରଣା ହୁଏ, ନନ୍ଦିତା ଆଉ ବହେ ମୋଟୀ ହେଇଯାଇଚି, ଓ ତା' ମୁହଁରେ ଆଉ ଦି'ଟା ବ୍ରଣ ବାହାରିଛି । ଏ କଥା

କମାରୁ ସତ ନୁହେଁ, କାରଣ ଯଦି ସତ ହେଇଥାନ୍ତା, ତା'ହେଲେ ଏ ବେଳକୁ ନନ୍ଦିତା ଆଉ ଢେର୍ ମୋଟୀ ହେଇସାରିଥାନ୍ତା ଓ ତା' ମୁହଁରେ ଆଉ ବ୍ରଣ ହବା ପାଇଁ ଜାଗା ନଥାନ୍ତା । ସେଦିନ ସନ୍ଧ୍ୟାରେ କମ୍ପାନି ବଙ୍ଗଳାରେ ନନ୍ଦିତାକୁ ଦେଖି ସେ ସେଇଆ ହିଁ ଭାବିଲା । ନନ୍ଦିତା ସେଇ ସହରର କୌଣସି କମ୍ପାନିରେ କାମ କରୁଥିଲା । କମ୍ପାନି ବଙ୍ଗଳାରେ ସାଙ୍ଗ ହେଇ ସେମାନେ ବ୍ରାଣ୍ଡି ପିଇଲେ ଓ କଲେଜ କଥା ମନେ ପକେଇଲେ । ନଚିକେତାର ସ୍ତ୍ରୀର ବିଭିନ୍ନ ଅନ୍ଧବିଶ୍ୱାସକୁ ନେଇ ଥଟ୍ଟା କଲେ, ଜନ୍ମ ହେବା ନିରର୍ଥକ ଜଞ୍ଜାଳ ନା ଅର୍ଥମୟ ଅ-ଜଞ୍ଜାଳ ଏ ସମ୍ପର୍କରେ ଏବଂବିଧ ଗମ୍ଭୀର ଆଲୋଚନା କଲେ ଓ ଯଦି ଏହା ସତ୍ୟ, ତା'ହେଲେ ଖ୍ୟାତି ପ୍ରଶସ୍ତି ପଛରେ ଧାଉଁଥିବା ଲୋକେ ତଥା ପ୍ରେସ୍‌ବାଲା କ'ଣ ଗଧଠୁ ବୋକା କି ବୋଲି କହି ହସି ହସି ଗଡ଼ିଗଲେ । ଓ ତା'ପରେ ନୀରବ ହେଇଗଲେ । ସେଦିନ ନନ୍ଦିତାର ବିଅର ପିଇବା ମୁଡ୍ ନଥିଲା ଓ ସେ ଭାରି ଉଦାସ ରହିଲା । ନଚିକେତା ଦିନଯାକର ବିଭିନ୍ନ କଥା ନନ୍ଦିତାକୁ କହିବାକୁ ଚେଷ୍ଟା କରି କିଛି କହିପାରିଲା ନାହିଁ; କ୍ରମଶଃ ବିଅର ଗ୍ଲାସ୍‌ରୁ ଉଠୁଥିବା ଫୋଟକାମାନେ ନଚିକେତା ମୁଣ୍ଡରେ ପଶି ଯାଉଚନ୍ତି ବୋଲି ଭାବୁଥିଲାବେଳେ, ଝର୍କା ବାହାରକୁ ଅଳ୍ପ ସମୟ ଅନେଇ ଜହ୍ନ ମୁହଁକୁ ଟର୍ଚ୍ଚ ପକାନ୍ତିକି ବୋଲି ନନ୍ଦିତା ଭାବୁଥିଲାବେଳେ ନଚିକେତା ଲାଇଟ୍ ଲିଭେଇ ଦେଲା ଓ ନନ୍ଦିତାର ଓଠ ମଝିରେ ଜିଭ ଭର୍ତ୍ତି କରିଦେଲା ।

ସେଦିନ ରାତିରେ ନଚିକେତା ବାଥ୍‌ରୁମ୍‌କୁ ଯାଇ ବେସିନ୍ ଧରି ବ୍ଲାକ୍ ଆଉଟ୍ ହେଇଗଲା । ଏମିତି ତା'ର ଅନେକ ସମୟରେ ହୁଏ, କିନ୍ତୁ ସେ ଅଳସୁଆମି ଓ ଭୟରେ ଡାକ୍ତର ପାଖକୁ କେବେ ଯାଇନଥିଲା । ବାଥ୍‌ରୁମ୍‌ରୁ ଫେରି ନଚିକେତା ନିଜ ଦେହ କଥା ପୁଣି ଭୁଲିଗଲା ଓ ବିଛଣାରେ ପଡ଼ିରହି ମନେ ମନେ କାଲି ସକାଳୁ କ'ଣ କ'ଣ କାମ ଅଛି, ତା'ର ଲିଷ୍ଟ କଲା । ଗଲା ସପ୍ତାହରେ ସେ ଚାରୋଟି ବ୍ୟକ୍ତିଗତ ଚିଠି ପାଇଥିଲା, ଯାହାର ଉତ୍ତର କାଲି ସକାଳୁ ଦାନ୍ତ ଘଷିବା ପୂର୍ବରୁ ଲେଖିଦେବ ବୋଲି ସ୍ଥିର କଲା । କାଲି ଅଫିସ ନଯାଇ ସି.ଏଲ୍. ଦରଖାସ୍ତ ଦବ ଓ ଦି'ପହର ବସ୍‌ରେ ମାୟା ଘରକୁ ଯିବ । ସାତଦିନ ଆଗରୁ ଦାଦାଝିଅ ଭଉଣୀର ବାହାଘର ଠିକ୍ ହେଇ ଯାଇଚି ବୋଲି ଚିଠି ପାଇଥିଲା ଓ ସେଥିପାଇଁ ବ୍ୟାଙ୍କ୍ ମ୍ୟାନେଜର ସାଙ୍ଗେ ଓଭରଡ୍ରାଫ୍‌ଟ ପାଇଁ କଥା ହବ । ତା'ଛଡ଼ା ବଦମାସ ଦର୍ଜି ତା' ନୂଆ ଜାମା ସିଲେଇ କରିନାଇଁ, ତାକୁ ମନେ ପକେଇଦବ ଓ ଆର୍.ଟି.ଓ. ଅଫିସ୍‌ରେ ସ୍କୁଟରର ଲାଇସେନ୍‌ସ ପାଇଁ ପକେଇଥିବା ଦରଖାସ୍ତ କୋଉଠି ଅଟକିଛି, ସେ କଥା ବୁଝିବ । ଏସବୁ ଭାବୁ ଭାବୁ ସେ ଶୋଇ ପଡ଼ିଲା । ଅଥଚ ତା' ପରଦିନ ସକାଳୁ ଭବଦୀୟ ଆଜ୍ଞାବହ ପତ୍ନୀ ଚା'କପ୍ ଆଣି ଥୋଇବାର ଦୁଇ ମିନିଟ୍ ପୂର୍ବରୁ , ସେ ହାତ ଦୁଇଟି ଅଧା ଭାଙ୍ଗି, ପାପୁଲି ଉପରେ ଚିବୁକ ଭରା ଦେଇ, ଝିଟିପିଟି ପରି ମୁଣ୍ଡ ଉପରକୁ ଟେକି, ଅଧାଅଧି ଭୁଜଙ୍ଗ ଆସନ ପୋଜ୍‌ରେ ବୋଧେ ଚା' ମାଗିବାକୁ ଯାଇ ମରିଗଲା । ତା' ମୁହଁରେ ଗୋଟେ ଅଧାବୁହା ଜୋକ୍‌ର ସାରାଂଶ ଲଟକି ଯାଇଥିଲା ସତେ ଯେମିତି ସେ ଗୋଟେ ଜୋକ୍ ଶୁଣୁଶୁଣୁ ହସିବାକୁ ଅପେକ୍ଷା କରିଚି, କେବଳ ଜୋକ୍‌ଟା ସରିଲାକି ନାହିଁ ଜାଣି ପାରିନାଇଁ ଓ ତେଣୁ ହସିପାରି ନାହିଁ ।

ପୂର୍ବ ରାତିରେ ନଚିକେତାର ସ୍ତ୍ରୀ ଗୋଟେ ଅଦ୍‌ଭୁତ ସ୍ୱପ୍ନ ଦେଖିଥିଲା । ସ୍ୱପ୍ନଟି ଏହିପରି ଥିଲା : ନଚିକେତା କୌଣସି ବରଗଛରୁ ଓରାଂଉଟାଂ ପରି ମୁଣ୍ଡ ତଳକୁ କରି ଝୁଲି ପଡ଼ିଚି, ତା'

ହାତ ଦୁଇଟି ବରଗଛର ଓହଳ ପରି ଇତସ୍ତତଃ ହଲୁଚି, ମାଟିରେ ଲାଗିବାକୁ ଚେଷ୍ଟା କରୁଚି ଓ ଲାଗି ପାରୁନାହିଁ । ସ୍ୱପ୍ନ ଦେଖିସାରି ସ୍ତ୍ରୀ ନିଦରୁ ଉଠିପଡ଼ି ପାଣି ପିଇଥିଲେ ଓ ପୁଣି ଶୋଇ ପଡ଼ିଥିଲେ । ତା' ସତ୍ତ୍ୱେ ସକାଳୁ ନଚିକେତାକୁ ନିଦରୁ ଉଠେଇବାକୁ ଯାଇ ସେ ନଉଠିବାରୁ ଚମକି ପଡ଼ିଲେ । ତାକୁ ଜୋର୍‌ରେ ହଲେଇଲେ, ହଇଓ, ହେଇଟି ବୋଲି ଅନେକ ଥର ପାଟି କଲେ, ଶେଷରେ ଭୋ' ହୋ' ହେଇ ଜୋର୍‌ରେ କାନ୍ଦିଲେ, ଉଚ୍ଚସ୍ୱରରେ ଚିତ୍କାର କଲେ । ପଡୋଶୀମାନେ ଧାଇଁ ଆସିଲେ, କମ୍ପାନି ହସପିଟାଲକୁ ଫୋନ୍ କରାଗଲା; ଆମ୍ବୁଲାନ୍‌ସ ଆସିଲା । ନଚିକେତା (ଅଥବା ତା'ର ଦେହ)କୁ ତିନି ମହଲା ଉପରକୁ ନିଆଗଲା । ସେଠି ଇମର୍ଜେନ୍‌ସି ବିଭାଗର ମୁଖ୍ୟ ଡାକ୍ତର ନଚିକେତାର ପଡୋଶୀ ସାହୁ ବାବୁଙ୍କୁ ଫୁସ୍‌ଫୁସ୍ କରି ନଚିକେତା ଅନକବେଳୁ ମରି ଯାଇଚି ବୋଲି କହିଲେ । ସାହୁବାବୁ ନଚିକେତାର ସ୍ତ୍ରୀଙ୍କ ଆଡ଼କୁ ଅନେଇଲେ । ନଚିକେତାର ସ୍ତ୍ରୀ ଇଲେକ୍‌ଟ୍ରିକ୍-ବ୍ଲୁ ରଙ୍ଗର ଶାଲ୍ ଘୋଡେଇ ହେଇ କେବଳ ଶିଖରରେ ବରଫ ଆଚ୍ଛାଦିତ ହୋଇଥିବା ପାହାଡ଼ ପରି ନିଶ୍ଚଳ ହେଇ ଛିଡ଼ାହେଇଥିଲେ । ସାହୁବାବୁ ତଳକୁ ଓହ୍ଲେଇ ଆସି ଖୁଁ ଖୁଁ କାଶିଲେ ଓ ସିଗାରେଟ୍ ଟାଣି ଟାଣି ଦେଖିଲେ ନଚିକେତାର ଦେହ ତଳକୁ ଆସିଲା ଓ ଆମ୍ବୁଲାନ୍‌ସରେ ଲଦା ହେଇ ଫେରିଗଲା ।

ନଚିକେତାର ସ୍ତ୍ରୀ ହତାଶ ହୋଇଗଲେ । ହତାଶ ହବାର ଅନେକ କାରଣ ଥିଲା । ନଚିକେତା ଖୁବ୍ ଜଣେ ପ୍ରସିଦ୍ଧ ଲୋକ ନଥିଲା । ଏପରିକି କମ୍ପାନୀର ସଇଁତିରିଶ କି ଅଠତିରିଶ ସରିକି ଇଞ୍ଜିନିଅରଙ୍କ ଭିତରେ ସେ ଖୁବ୍ ଜଣେ ପ୍ରତିଭାବାନ୍, ସାଧୁ, ଯୋଗାଡ଼ିଆ ବା ଶକ୍ତିଶାଳୀ ଇଂଜିନିଅର ନଥିଲା ଏବଂ ସେ ଯେ ଏଇମିତି କୌଣସି ମେ' ମାସର ଧୂ-ଧୁ ଗରମରେ ଅସଂଖ୍ୟ ଶୂନ୍ୟ ଭିତରେ ମରିଯିବ, ଏ କଥା ନଚିକେତାର ସ୍ତ୍ରୀ ବିଶ୍ୱାସ କରୁନଥିଲେ ।

ନଚିକେତା ମରିଗଲା ପରେ ଗୋଟଏ କମ୍ପାନୀର ଶୋକସଭା ବ୍ୟତୀତ ଆଉ କିଛି ହେଲାନାହିଁ । ସେ ମରିଗଲାବେଳେ ପବନ ଥମି ଗଲାନାଇଁ, ଘର ଚଟିଆମାନଙ୍କର କିଚିରିମିଚିରି ନିସ୍ତବ୍ଧ ହେଲାନାହିଁ, ଲନ୍‌ର ଘାସ ମୁର୍କୁଟିଆ ହୋଇଗଲେ ନାଇଁ, ଏପରିକି ପାଣିପାଇପରେ ଆଗଦିନ ପରି ପାଣି ଆସିବା ବନ୍ଦ ହେଲାନାହିଁ । ଗଜଲ ଶୁଣାହେଲାନାହିଁ, କି ଡାଇଲଗ୍ ମରାଗଲା ନାହିଁ । ଶବାଧାରରେ ପୁଷ୍ପବୃଷ୍ଟି ହେଲାନାହିଁ । ଉରୁଗୁଏର ରାଷ୍ଟ୍ରଦୂତ ଓ ତାଙ୍କ ପତ୍ନୀ ଫୁଲତୋଡ଼ା ଧରି ଆସିଲେ ନାହିଁ । ରେଡ଼ିଓ ଷ୍ଟେସନ୍‌ରେ ଅନବରତ ସାହାନାଇ ବାଜିଲା ନାହିଁ । ମରିବାର ଅବ୍ୟବହିତ ପରେ ଆକାଶରେ ଧୂମକେତୁ କି ସୁପର ନୋଭା ଦିଶିଲେ ନାହିଁ । ଖବରକାଗଜରେ ଫୋଟୋ ଓ ଶୋକ ସମ୍ବାଦ ବାହାରିଲା ନାହିଁ । କୌଣସି ଯୁବକଯୁବତୀ ମୃତ୍ୟୁର ଦୁଃଖରେ ଆତ୍ମହତ୍ୟା କଲେ ନାହିଁ ।

॥ ୨ ॥

ମରିସାରି ନଚିକେତା ସିଧା ଯମ ଅଫିସ୍‌କୁ ଚାଲିଗଲା । ସେଠି ମିଞ୍ଜି ମିଞ୍ଜି ଆଲୁଅ ଜଳୁଥିଲା, ସତେକି ଡିବିରି କି ମରିବାର ଅବସ୍ଥାକୁ ଆସୁଥିବା ତାରାଟିଏ । ତା' ସତ୍ତ୍ୱେ ପହଞ୍ଚିବା ମାତ୍ରକେ ତା' ସ୍ତ୍ରୀର ପରିଷ୍କାର ହସ ତାକୁ ଦିଶୁଥିଲା । ସେ ନଚିକେତାର ନାଁ, ଗାଁ, ଶିକ୍ଷାଗତ ଯୋଗ୍ୟତା, ଆମିଷାଶୀ କି ନିରାମିଷାଶୀ, ପୂର୍ବ ଅଭିଜ୍ଞତା (ଯଦି କିଛି ଥାଏ), ବ୍ୟବସାୟ (ଅନ୍ୟ ବ୍ୟବସାୟ ନଥିଲେ 'ଚାଷାଦି' ଲେଖନ୍ତୁ), ଇନ୍‌ସୁରାନ୍‌ସ୍ ନମ୍ବର, ଡ୍ରାଇଭିଂ ଲାଇସେନ୍‌ସ୍ ନମ୍ବର ସବୁ ବୁଝିଲା

ଓ ଖଣ୍ଡେ ଫର୍ମରେ ତିନିଖଣ୍ଡ କାର୍ବନ କପି କରି ଲେଖିଲା । ନଚିକେତା ଆଡ଼କୁ ବେଞ୍ଚଟିଏ ଦେଖେଇ ଦେଇ ବସି ପଡ଼ିବାକୁ କହିଲା । ମାଟିଆ ପୋଷାକ ପିନ୍ଧିଥିବା ଲୋକଟିଏ ନଚିକେତାର ଫର୍ମତକ ନର୍ସ ପାଖରୁ ନେଇ ଚାଲିଗଲା ଓ ଦରଜା ପାଖରେ 'ବସନ୍ତୁ'-'ବସନ୍ତୁ' ବୋଲି ନଚିକେତାକୁ କହିଲା । ପନ୍ଦର ମିନିଟ୍ ପରେ ସବୁ ମେକ୍‌ଅପ-ହେଇସାରି-ସତେକି-ଲିପ୍‌ଷ୍ଟିକ୍-ଲଗେଇବାକୁ - ଭୁଲିଯାଇଚି ସେଇମିତି ଶେତା ଓଠବାଲୀ ନର୍ସଟିଏ ତାକୁ 'ପ୍ରାଥମିକ ପରୀକ୍ଷା' ବୋଲି ଲେଖାଥିବା ଘର ଭିତରକୁ ନେଇଯାଇ ତା' ଉଚ୍ଚତା, ଓଜନ, ଟେମ୍ପେରେଚର, ରକ୍ତଚାପ, ବ୍ଲଡ୍‌ଗ୍ରୁପ ଇତ୍ୟାଦି ପରୀକ୍ଷା କଲା ଓ ସବୁ ଲେଖିଲା । ନଚିକେତା ଓଜନରେ ଦେଖିଲା, କିଛି ଓଜନ ତା'ର କମିଯାଇଚି; କିନ୍ତୁ ଗୋଟି ଗୋଟି ତା'ର ସବୁକିଛି ଠିକ୍ ଅଛି । ନଚିକେତା କୁଆଡ଼େ ଆସିଚି କି ବୋଲି ନର୍ସଟି ପଚାରିଲା । 'ମୋତେ ଡକରା ହେଇଚି', ନଚିକେତା କହିଲା ।

'କିଏ ଡାକିଚି ?'

କିଏ ଡାକିଛି ? ନଚିକେତା ଭାବିଲା, ଗୁଡ଼େଇ ତୁଡେଇ ନିଜକୁ ବାରମ୍ବାର ପଚାରିଲା, ଉତ୍ତର ନପାଇ ବ୍ୟସ୍ତ ହେଲା, ପୁଣି କୋଉ ପ୍ରଶ୍ନର ଉତ୍ତର ବିଷୟରେ ଭାବୁଥିଲା, ସେ କଥା ଭୁଲିଗଲା, ଓ ଗମ୍ଭୀର ହେଇ ବସିପଡ଼ିଲା । ''ଆପଣ ସବୁ ଲୁଗାପଟା ବାହାର କରି ମୁଖ୍ୟ ପରୀକ୍ଷା ଗୃହରେ ଅପେକ୍ଷାକରନ୍ତୁ'' ବୋଲି କହି ଶେତାଓଠବାଲୀ ନର୍ସଟି ଚାଲିଗଲା ।

ନଚିକେତା ସବୁ ଲୁଗାପଟା କାଢ଼ି 'ମୁଖ୍ୟ ପରୀକ୍ଷାଗୃହ'ରେ ଅପେକ୍ଷା କରିବା ପରେ ଧଳା ଆପ୍ରନ୍ ପିନ୍ଧା ଜଣେ ଭଦ୍ରଲୋକ ଘର ଭିତରକୁ ପଶି ଆସିଲେ । ନଚିକେତା ଭଦ୍ରାମୀ ଦୃଷ୍ଟିରୁ ନମସ୍କାର କରିବା ପାଇଁ ହାତ ଉଠେଇ, ହାତ ଠିକ୍ ଯୋଡ଼ିବାକୁ ଯିବା ପୂର୍ବରୁ ଭଦ୍ରଲୋକଙ୍କ ମୁହଁକୁ ସିଧା ଅନେଇଲା ଓ ଦେଖିଲା ଭଦ୍ରଲୋକଙ୍କ ବାଁ ଆଖିରେ ଲେଞ୍ଚରା ଲାଗିଚି ଏବଂ କହିଲା, 'ନମସ୍କାର ସିଭିଲ୍ ସର୍ଜନ୍ ମହାଶୟ ! ଆପଣଙ୍କ ଆଖିରେ ଲେଞ୍ଚରା ଲାଗିଚି !' କହିସାରି ହଠାତ୍ ନିଜେ ଲଙ୍ଗଳା ଅଛି ବୋଲି ଜାଣିପାରି ସଙ୍କୋଚରେ ବସିପଡ଼ିଲା । ''ମୁଁ ମରିଯାଇଚି,'' ନଚିକେତା କହିଲା, ''ମୁଁ ଜାଣିବାକୁ ଚାହୁଁଚି; ଆପଣ ଯଦି ଯମ, ତା'ହେଲେ ଆପଣ କାହିଁକି ଡାକ୍ତର ପୋଷାକ ପିନ୍ଧିଚନ୍ତି ?''

''ମୁଁ ଏଇଥିପାଇଁ ଡାକ୍ତର ପୋଷାକ ପିନ୍ଧିଥାଏ ଯେ, ଯଦି ଆପଣ ଯମକୁ ଡରୁଚନ୍ତି, ତା'ହେଲେ ଡାକ୍ତରଙ୍କ ଫିସ୍ କଥା ଭାବନ୍ତୁ, ଆପଣ କାହାକୁ ବେଶି ଡରୁଚନ୍ତି ?'' କହିସାରି ଲୋକଟି ହୋ-ହୋ ହେଇ ହସିଲା ।

ନଚିକେତା ଆଶ୍ୱସ୍ତ ହେଇ ବେଞ୍ଚରେ ଡେରି ହେଇ ବସିଲା ଓ ହସରେ ଯୋଗ ଦେଲା । ''ମୋର ଦ୍ୱିତୀୟ ପ୍ରଶ୍ନ'' ସେ ପଚାରିଲା, ଏବଂ ଅକସ୍ମାତ୍ କ'ଣ ପଚାରିବାକୁ ଯାଉଥିଲା, ତାହା ଭୁଲିଗଲା । କିନ୍ତୁ ଖୁବ୍ ଜୋର୍‌ରେ ମନେ ପକେଇବାକୁ ଚେଷ୍ଟା କଲା ଓ ମନେ ନପଡ଼ିପାରିବାରୁ ମୁହଁ ପୋତି କହିଲା, ''ମୋର ଦ୍ୱିତୀୟ ପ୍ରଶ୍ନଟି ତ ଜମାରୁ ମନେ ପଡୁନାହିଁ । ତେଣୁ ମୋର ଦ୍ୱିତୀୟ ପ୍ରଶ୍ନ ହେଉଚି: ମୁଁ ଆପଣଙ୍କୁ କ'ଣ ପଚାରିବାକୁ ଯାଉଥିଲି କହନ୍ତୁ ତ ?''

''ସେ କଥା ଅବଶ୍ୟ ମୁଁ ଜାଣେ ନାହିଁ; କିନ୍ତୁ ଯେହେତୁ ଆପଣ ବି ଜାଣିନାହାନ୍ତି, ମୁଁ ଗୁଲିମାରିଲେ ବି ଚଳିବ । ଆପଣଙ୍କ ଦ୍ୱିତୀୟ ପ୍ରଶ୍ନ ହେଇଥାନ୍ତା, ''ମୋ ସ୍ତ୍ରୀ ଏଇଲେ କ'ଣ କରୁଚନ୍ତି ?''

''ମୋର ତୃତୀୟ ପ୍ରଶ୍ନ'', ନଚିକେତା କହିଲା, ''ଆପଣ ଯଦି ଯମ, ଏବଂ ନର୍ସ ଯଦି ଆପଣଙ୍କ ଡାକ୍ତର ରୋଲ୍‌ର ନର୍ସ ଓ ରିସେପ୍‌ନିଷ୍ଟ୍ ଯଦି ଆପଣଙ୍କ ହସୁଥିବା ତାରୁଣ୍ୟ, ତା'ହେଲେ ମୁଁ କିଏ ଓ କାହିଁକି ଆସିଚି, ସେକଥା ଆପଣ କେମିତି ଜାଣିନାହାନ୍ତି ?''

''ମୁଁ ଯମ ନୁହେଁ ।'' ଲୋକଟି ହସିଲା, ''ଡାକ୍ତର ବି ନୁହଁ ।'' ଲୋକଟି ହା-ହୋ ହେଇ ହସିଲା । ''ପ୍ରକୃତରେ ମୁଁ ଜୀବଦ୍ଦଶାରେ ଜଣେ ଗଞ୍ଜୋଡ ଥିଲି । ମୁଁ ପାପ କରିନାହିଁ କି ପୁଣ୍ୟ କରିନାହିଁ । ମୁଁ ସବୁବେଳେ ଗଞ୍ଜୋଡ଼ ନିଶାରେ ମତ୍ତ ଥିଲି । ମରିଗଲା ପରେ ମୋତେ ସ୍ୱର୍ଗ-ମର୍ତ୍ତ୍ୟ ମଝାମଝି ଗୋଟେ ଗାରଦରେ ରଖିଚନ୍ତି । ମୁଁ ସମସ୍ତଙ୍କୁ ଲୁଚି, ଆଉ ଜଣଙ୍କ ଡ୍ରେସ୍ ପିନ୍ଧି ଆସିଚି । ସେମାନେ ବ୍ୟସ୍ତ ହେଇ ଖୋଜୁଥିବେ ମୁଁ କୁଆଡ଼େ ଗଲି । ସେମାନେ କୋଉଠୁ ଜାଣିବେ, ମୁଁ ନିଜେ ଡାକ୍ତର ସାଜି ଅନ୍ୟମାନଙ୍କ ଚିକିତ୍ସା କରୁଚି...'' କହୁ କହୁ ଲୋକଟି ଠୋ-ଠୋ ହସିଲା ।

ସେହି ପ୍ରତ୍ୟେକ ହସ ସାଙ୍ଗରେ ନଚିକେତା ମୁଣ୍ଡରେ କୋଟି କୋଟି ଶୂନ୍ ଭର୍ତ୍ତି ହୋଇଗଲେ । ନଚିକେତା ହଠାତ୍ ମୃତ୍ୟୁ ପ୍ରତି ଅସମ୍ଭବ ଡରିଗଲା । ସେ ଅନେକ ମରୁ ମରୁ ବଞ୍ଚି ଯାଉଥିବା ଲୋକଙ୍କ କଥା ମନେ ପକେଇଲା- ସତ୍ୟବାନ୍ ସାବିତ୍ରୀଙ୍କ ତପସ୍ୟାରେ ବଞ୍ଚିଯିବା କଥା, ରୋଗୀ ଅପରେସନ୍ ଟେବୁଲ୍‌ରୁ ଅସାଧ୍ୟ ରୋଗରୁ ଭଲ ହେଇ ବଞ୍ଚିଯିବା କଥା, ଅସମ୍ଭବ ବିପଦରୁ ପରୀ କାହାଣୀର ରାଜା ଓ ସିନେମାର ହିରୋମାନେ ବଞ୍ଚିଯିବା । ଚାହୁଁ ଚାହୁଁ ସେ ସାନ ହେଇଗଲା । ଏତେ ସାନ ହେଇଗଲା ଯେ ହଜିଗଲା, ସତେକି ବିନ୍ଦୁଏ ଅନ୍ଧାର ହେଇଗଲା, ଟିକିଲି ବ୍ଲାକ୍ ହୋଲ୍‌ଟିଏ ହେଇଗଲା । ଅଥଚ ପାଖରେ ଥାଇ ସେଇ ଗାରଦରୁ ଖସି ଆସିଥିବା ଲୋକଟି ଦେଖିଲା ନଚିକେତା ସେଠି ଛିଡ଼ା ହେଇ ସେହି ଅଧାକୁହା ଜୋକ୍‌ରେ ଲଟକି ଯାଇଚି, ଯାହାକୁ ତା' ସ୍ତ୍ରୀ ଦେଖିଥିଲେ, ଏବଂ ଜୋକ୍‌ଟି ସରିଲା କି ନାହିଁ, ଜାଣି ନପାରି ଦ୍ୱନ୍ଦ୍ୱରେ ହସି ପାରିନାହିଁ ।



# କସ୍ତୁରୀମୃଗ

## ଜ୍ୟୋତି ନନ୍ଦ

କମଳାକୁ ଗଂଭୀରି ଘରଟି ଦେଖାଇ ଦିଆଗଲା ।

ଗଂଭୀରି ଘରଟିର ଚାରିପଟରେ ବେଶ୍ ବଡ ଖଂଜା । ଦେଖିଲେ ଲାଗିବ ଘର ମାଲିକର ବେଶ୍ ସଙ୍ଗତି ଅଛି ନିଶ୍ଚୟ । କିନ୍ତୁ ଏତେ ବଡ ଖଞ୍ଜାଟାରେ କାହାରି ଜଣକର ବି ପାଟି ଶୁଭୁନାହିଁ । ଲାଗୁଛି ହଠାତ୍ ସମସ୍ତେ ଯେମିତି କୁଆଡେ ଏକା ସାଙ୍ଗରେ ବାହାରି ଯାଇଛନ୍ତି କଥାବାର୍ତ୍ତା ହୋଇ । ସବୁ କାମ ଅଧାରେ ଛାଡି ଯାଇଛନ୍ତି । ସେମାନେ ଫେରିଆସିବା ପରେ ସେହି ଅଧା ଠାରୁ ହିଁ ପୁଣି ପୁରା କାମରେ ଲାଗିଯିବେ । ଏମିତି ବି ହୋଇପାରେ ସେମାନେ ସମସ୍ତେ ହଠାତ୍ ଏକା ସଙ୍ଗରେ ଅଦୃଶ୍ୟ ହୋଇଯାଇଥିବାରୁ ପଡି ରହିଥିବା କାମ ମାନ ଅଧା ଅଧା ଲାଗୁଛି । ସେମାନେ ସବୁ ଥିଲେ ହୁଏତ ଏପରି ଲାଗନ୍ତା ନାହିଁ । ଅଗଣାରେ ଖରା ନପଡୁଥିବା ଜାଗାରେ ବଡି ଟିଣ ଶୁଖୁଚି, ଖରା ପଡୁଥିବା ଜାଗାକୁ ଘୁଞ୍ଚାଇ ନିଆଯାଇ ନାହିଁ ବଡଟିଣଟିକୁ । ପିଣ୍ଡା ଉପରେ ଲୁଗା ପଟା, କଂଥା, କଚାଲୁଗା ଅଧା ସାଇତା ହୋଇଅଛି । ଘର ଭିତରର ଆଲଣା ପର୍ଯ୍ୟନ୍ତ ତାହା ପହଞ୍ଚି ପାରିନି । ଆଉ ଗୋଟିଏ ଜାଗାରେ ଫୁଲଝାଡୁଟିଏ ପଡିଛି । ପାଖରେ ଛିଣ୍ଡା କାଗଜପତ୍ର, ଧୂଳି, ଅଳିଆ । ସେ ସବୁକୁ ଓଳେଇ ନେବା କାମ ଅଧାରେ ପଡିଚି । ଦର୍ପଣଟି ଠିଆ ହୋଇଚି, ପାଖରେ ତା'ର ଖୋଲା ସିନ୍ଦୁର ଫରୁଆ, ଅଳତା ଶିଶି, ଆଉ ମୁଠାଏ ଚୁଡି । ବେଶବାସ କାମ ବି ଅଧାରେ । ତେଲ ଚିକିଟା ଆରାମ ଚେୟାରଟା ପଡିଛି । ପାଖରେ ଅବଶ୍ୟ ବଂକୁଳୀ ବାଡିଟି ନାହିଁ, ମାତ୍ର ତାହାରି ଆଗରେ ଡାଳଟିଏ ଓଲଟି ପଡିଛି । ପାଣି ଗଡି ଯାଇଛି । ସମସ୍ତେ ଯେମିତି ହଠାତ୍ ସବୁକାମ ଅଧାରେ ରଖି ବାହାରକୁ ଚାଲିଯାଇଛନ୍ତି ଆକାଶରେ ଚକ୍କର କାଟୁଥିବା କୌଣସି ବ୍ୟୋମଯାନକୁ ଦେଖିବାକୁ ବା ଭୂଇଁରେ କୌଣସି ସର୍କସରୁ ହଠାତ୍ ପଳେଇ ଆସିଥିବା କୌଣସି ଜାନୁଆର୍‌କୁ ଦେଖିବାକୁ । ଏମିତି ବି ହୋଇପାରେ ଯେ କୌଣସି ଆଶ୍ଚର୍ଯ୍ୟଜନକ ଦୃଶ୍ୟ ସମସ୍ତଙ୍କୁ ଆକର୍ଷଣ କରି ଆଣି ନାହିଁ ହଠାତ୍ । ପ୍ରକୃତରେ ହଠାତ୍ ସମସ୍ତେ କୌଣସି ନିଭୃତ ସ୍ଥାନରେ ଲୁଚି ଯାଇଛନ୍ତି ଏକାଠି । କାରଣ ନିକଟରେ ଝଡ ଆସିପାରେ, ପ୍ରଳୟଙ୍କରୀ ଝଡ । ତେଣୁ ସମସ୍ତଙ୍କୁ ସତର୍କ କରି ଦିଆଯାଇଛି । ସେ ଯାହା ହେଉ, ଗୋଟିଏ ଲାଲ୍ ରଙ୍ଗର ପ୍ଲାଷ୍ଟିକ ବଲ୍‌କୁ କେଉଁଠି ସଜାଡି ରଖାଯିବା କଥା, ତାହା କେହି କହିପାରିବ ନାହିଁ । ଘରର ପିଣ୍ଡାରେ ପବନର ସ୍ପର୍ଶରେ ତାହା ଏପଟ ସେପଟ ହେଉଛି । ଏହି ବିରାଟ ଖଂଜାରେ କେବଳ ସେହି ଲାଲ୍ ପ୍ଲାଷ୍ଟିକ୍ ବଲ୍‌କୁ ହିଁ ଦେଖିଲେ ଲାଗୁଛି ଯେମିତି କୌଣସି କାମ ଅଧାରେ ନାହିଁ । କମଳା ଏ ସବୁ କଥା ଭାବି ନାହିଁ । ତା'କୁ କେବଳ ଗମ୍ଭୀରି ଘରଟି ଦେଖାଇ ଦିଆଯାଇଛି ।

ଆଗରୁ କଥାବାର୍ତ୍ତା ଛିଡିଥିଲା । କମଳା କଥାର ଖିଲାପ୍ କରିନାହିଁ । ଘଡିର କଣ୍ଟା ଭଳି ସେ ଠିକ୍ ସମୟରେ ଆସି ପହଞ୍ଚିଛି । ସମୟଟା ସେତେବେଳକୁ ବଢନ୍ତ ଦିପହର । ସୂର୍ଯ୍ୟାଲୋକରେ ତେଜ ରହିଛି ।

କମଳା ସାଙ୍ଗରେ ଆଣିଥିବା ପ୍ଲାଷ୍ଟିକ୍ ଝୁଡିରୁ ଲୁଗା ବାହାର କରି ବଦଳାଇ ନେଲା । ମୁହଁରେ ପାଉଁଡର ପଫ୍‌ଟାକୁ ହାଲ୍‌କା କରି ବୁଲାଇ ଆଣିଲା । ଛୋଟ ଶସ୍ତା ଅତର ଶିଶିରୁ ବେଶ୍ ବଡ କରି ଦୁଇ ଟୋପା ଅତର କାଖ ମୂଳରେ ମାଖିଲା, ଲୁଗାରେ ମାଖିଲା । ନାକରେ ବାସ୍ନା ନାରିଲା । ତାହାପରେ ସେ ପ୍ରସ୍ତୁତ ଗମ୍ଭୀରି ଘର ଭିତରକୁ ପ୍ରବେଶ କରିବା ପାଇଁ । ସେତେବେଳେ ତାହାର ମନେହେଲା ଯେ ଯେମିତିକି କୌଣସି ଅଭିସାରକୁ ବାହାରିଛି ଅବିକା । ଅଭିସାର କଥା ମନକୁ ଆସିଲା ମାତ୍ରକେ ସେ ଟିକିଏ ଲାଜେଇ ଗଲା । ମୁରୁକି ହସଟିଏ ତା' ଓଠ ଭିତରକୁ ଆସିଗଲା । ମାତ୍ର ମିଳେଇଗଲା ସାଙ୍ଗେ ସାଙ୍ଗେ । କୌଣସି ଅଭିସାରର ସମୟ ଏ ନୁହେଁ । ତେଜିଆନ୍ ସୂର୍ଯ୍ୟ କିରଣରେ, କୁଆର କର୍କଶ କାଁ କାଁରେ ଏମିତି ଏକ ବଢନ୍ତ ଦିପହର ଅଭିସାରର ହେବାର ନୁହେଁ । ବଢନ୍ତ ଦି'ପହର ମାନେ ହିଁ କ୍ଲାନ୍ତି, ଅବସାଦ, ଶୂନ୍ୟବୋଧ । ସେ ସବୁ କଥା କମଳାର ଚେତନା ଭିତରେ ଥିବା ଅଭିସାରକୁ ଟିକିଏ ଖେଂଚି ଦେଲା କି କ'ଣ ? କମଳା ମନେ ମନେ କହିଲା, ବେଳ ନୁହେଁ, ବେଳ ନୁହେଁ ଯେ' । ଖଂଜାଟା ସାରା ଖାଁ ଖାଁ କରୁଛି । ଏହିଭଳି ପରିବେଶଟିଏ ହିଁ କମଳା ଦରକାର କରୁଥିଲା । ଲୋକବାକ ଜମିଥିଲେ ଆଉ ସେମାନେ ସମସ୍ତେ ଅଯଥାରେ କୌତୁହଳୀ ହେଉଥିଲେ ମହା ଝାମେଲା । ମାତ୍ର କମଳା ଜାଣେ ଏହିଭଳି ଅବସ୍ଥାରେ ଲୋକବାକ ଭିଡ କରନ୍ତି ନାହିଁ । ସେମାନଙ୍କର କୌତୂହଳ ଉପରେ ପଥର ଲଦି ଦିଆଯାଏ । ପରିବେଶଟି କେବଳ ଖାଁ ଖାଁ କରେ । ସେହି ଲାଲ୍ ପ୍ଲାଷ୍ଟିକ୍ ବଲ୍‌ଟା ଗଡି ଆସିଲା କମଳାର ଗୋଡର ପାଖାପାଖି । କମଳା ସେଇ ବଲ୍‌ଟିକୁ ନିଜ ପାଦରେ ଜୋର୍‌ରେ ଆଘାତ କରିବାର ଇଛାଟିକୁ ଦମନ କରିନେଲା । ସମ୍ଭବତଃ ସେହି ଇଛାଟିକୁ ତୀବ୍ର ଭାବରେ ଦମନ କରିଥିବାରୁ କମଳା ଭିତରେ ସୃଷ୍ଟି ହେଲା ଭୟଙ୍କର କ୍ରୋଧଟିଏ । ଏତେ ବଡ ଖଂଜାଟିରେ ତା'କୁ କେବଳ ହିଁ ଗମ୍ଭୀରି ଘରଟି ଦେଖାଇ ଦିଆଯାଇଛି । ଗମ୍ଭୀରି ଘରର କବାଟଟାକୁ ଆସ୍ତେ ଠେଲି ଦେଲା ସେ । ଟୁପ୍‌କିନି କ୍ରୋଧଟି ଗଳି ସାରିଥାଏ ଭିତରକୁ ।

ଗମ୍ଭୀରି ଘରଟିରେ କେବଳ ମାତ୍ର ଗୋଟିଏ କବାଟ ଅଛି । ସେଇଟି ଅଛି କେବଳ ଯିବା ଆସିବା କରିବା ପାଇଁ । ତାହାଛଡା ଆଉ କୌଣସି କବାଟ କି ଝରକା ଘରଟିରେ ନାହିଁ । ସେଇଥି ପାଇଁ ତାହା ବୋଧହୁଏ ଗମ୍ଭୀରି ଘର । ଗମ୍ଭୀରି ଘର ଭିତରେ ସବୁକାଳ ଅନ୍ଧାରର ନିରଙ୍କୁଶ ରାଜୁତି । ଚେତନାର ସଂକୋଚନ,. ପ୍ରସାରଣ । ଏଠାରେ ଥିବା ଗମ୍ଭୀରି ଘର ଭିତରେ ବେଶ୍ ତୋଫା ଲଣ୍ଠନଟିଏ ଜଳୁଛି । ପଟା ଖଟଟିଏ କାନ୍ଥକୁ ଲାଗି ପଡିଛି । ଏ ସବୁକୁ ଛାଡି ଦେଲେ ସେହି ଗମ୍ଭୀରି ଘରଟି ପୁରାପୁରି ଫାଙ୍କା, ପୁରାପୁରି ପରିଷ୍କାର । କମଳା ଦେଖିଲା ଗୋଟିଏ କୋଣରେ ସୋରାଏ ଶୂନ୍ୟତା ଭଳି କାନ୍ଥ ସହିତ ଜଡି ଯିବା ପାଇଁ ଚେଷ୍ଟା କରୁଛି ଝିଅଟିଏ, ମାତ୍ର ପାରୁନାହିଁ । ଲଣ୍ଠନର ତୋଫା ଆଲୁଅରେ ଝିଅଟିର ସ୍ପଷ୍ଟ ରୂପରେଖ ଦେଖାଯାଉଛି । କିନ୍ତୁ ଏହି ସ୍ପଷ୍ଟତାକୁ ଲୁଚାଇ ଦେବାକୁ ଚେଷ୍ଟା କରୁଛି ଝିଅଟି । କାନ୍ଥ ଭିତରେ ସେ ମିଶି ଯାଇପାରୁନାହିଁ । ଲଣ୍ଠନକୁ ସେ ଲିଭାଇ ଦେଇ ପାରିନାହିଁ ଏ ପର୍ଯ୍ୟନ୍ତ । ଝିଅଟିକୁ ଦେଖିବା ମାତ୍ରକେ କମଳା କ୍ରୋଧରେ ଫାଟି ପଡିଲା । କମଳାର ସର୍ବାଙ୍ଗରୁ ହଠାତ୍ ଲାଭାର ସ୍ରୋତ । ନାକପୁଡା ଦୁଇଟି ତା'ର ଫୁଲି ଉଠିଲା । ତାହାରି ଭିତରେ କମଳାର ଖର ନିଃଶ୍ୱାସ ଆହୁରି ଖର । ଆଖି ଦୁଇଟାରେ ଅଗ୍ନି ସ୍ଫୁଲିଙ୍ଗ । କମଳା ଜୋର୍‌ରେ ଥରିବାକୁ ଲାଗିଲା ଗୋଡ ଠାରୁ ମୁଣ୍ଡ ପର୍ଯ୍ୟନ୍ତ, ଠିକ୍ କାଳିସୀ ଲାଗିଲା ପରି । ପାଟିରୁ ତା'ର ପଦଟିଏ କଥା ବାହାରିଲା ନାହିଁ । ଝିଅଟି ସେମିତି କାକୁସ୍ଥ ହୋଇ ଛିଡା ହୋଇଗଲା ଗୋଟିଏ କୋଣରେ କାନ୍ଥକୁ ଲାଗି । କାନ୍ଥଟା ଦୁଇ ଫାଳ ହୋଇଯାଇନଥାଏ ।

ଗତ କେତେମାସ ହେଲା ଝିଅଟିର କଥା ଚାରିଆଡେ ରାଷ୍ଟ୍ର ହୋଇଯାଇଛି । ମାତ୍ର କଥାଟି ରାଷ୍ଟ୍ର ହେବା ପରଠାରୁ ଝିଅକୁ କେହି ଦେଖିନାହାଁନ୍ତି । ତାକୁ ଗୋଟିଏ ଜାଗାରୁ ଆଉ ଗୋଟିଏ ଜାଗାକୁ ନିଆଯାଇଛି ଲୁଚାଇ ରଖିବା ପାଇଁ । ସେହି ଜାଗାମାନଙ୍କରେ ଝିଅଟି ଖାଲି ନୀରବ ରହିଛି । ଅସ୍ୱାଭାବିକ ଭାବରେ ନୀରବ । କିନ୍ତୁ ସେହି ଜାଗାମାନଙ୍କରେ ବସବାସ କରୁଥିବା ଅନ୍ୟଲୋକମାନେ ଝଡ ସୃଷ୍ଟି କରିଛନ୍ତି । ତେଣୁ ଝିଅଟିକୁ ପୁଣି ଅନ୍ୟ ଗୋଟିଏ ସ୍ଥାନକୁ ନିଆଯାଇଛି । ଏହା ଭିତରେ ଝିଅଟି ସବୁକିଛି ଭୁଲି ଯାଇଛି । ନିଜ ନାଆଁ, ନିଜ ଗାଆଁର କଥା, ନିଜ ଦେହ ଆଉ ନିଜର ମନ ମୁତାବକ ଶବ୍ଦମାନ । ସେ ଜାଣି ନେଇଛି ଯେ, ଏବେ ତା'ର ନିୟତି କୌଣସି ବାକ୍ସ ଭଳି, ଯାହାକୁ କି ସେମାନେ ଯେଉଁଠାରେ ଇଛା କରିବେ ସେଠାରେ ଥୋଇପାରିବେ, ଯେଉଁ ସ୍ଥାନରେ ହେଉ କି ଯେତେବେଳେ ହେଉ । ବାକ୍ସର କ'ଣ ମନ ଥାଏ ? ଖାଲି ଆକାରଟିଏ ଥାଏ । ଝିଅଟିର ମନ ନାହିଁ ମନ ଭିତରେ ତା'ର ଦେହର ଆକାରଟି ହଜି ଯାଇଛି ଏବେ । ତେଣୁ ନିଜ ଦେହକୁ ସେ ଚିହ୍ନି ପାରୁନାହିଁ । ବେଳେବେଳେ କେବଳ ଦେହର ଯନ୍ତ୍ରଣା ହିଁ ତାକୁ ମନେ ପକାଇ ଦେଉଛି ତା'କୁ ଦେହଟିର କଥା । ତାହା ପରେ ଦାନ୍ତଚିପି ସେ ଯନ୍ତ୍ରଣାକୁ ଭୁଲି ଯାଇଛି । ମାତ୍ର ବାହାରକୁ ତାହାର ଦେହଟି ଅଛି, ବାକ୍ସ ଭଳି । ଯଦିଓ ଦେହଟିକୁ ପୁରାପୁରି ଭୁଲିବା ସମ୍ଭବପର ନୁହେଁ ବୋଲି କେହି କୁହନ୍ତି, ତାହା ହେଲେ ଝିଅଟି ବି ନିଜ ଦେହକୁ ପୁରାପୁରି ଭୁଲି ଯାଇନାହିଁ । ତାହାରି ଆଗରେ ନିଜ ଦେହର ଗୋଟିଏ ଅସ୍ପଷ୍ଟ ରୂପରେଖ ରହିଛି । ସେହି ଅସ୍ପଷ୍ଟ ରୂପରେଖଟି ତା'ର ନିଜ ଦେହର ଧ୍ୱଂସାବଶେଷ କି ମୂଳଦୁଆ, ଠିକ କହିହେବ ନାହିଁ ।

ଝିଅଟି ମୁହଁପୋତି ଛିଡା ହୋଇଥାଏ । ଭୂଇଁରେ ନାଲି ପିଂପୁଡି ଧାରଟିଏ । ଗୋଟିଏ ନାଲି ପିଂପୁଡି ବାଟ ଭାଂଗି ଆସିଲା । ଝିଅଟିର ପାଦ ଉପରେ ଚଢିବାକୁ ଆରମ୍ଭ କଲା । ଝିଅଟିର ଗୋଟିଏ ପାଦରେ ତାହା ପରେ ପିଂପୁଡି କାମୁଡିବାର ଜ୍ୱାଳା । କିନ୍ତୁ ଝିଅଟି ତଥାପି ମୁହଁ ପୋତି ଛିଡା ହୋଇଥାଏ । ଗୋଡକୁ ସେ ଛିଂଚାଡି ଦେଲା ନାହିଁ । ଅତି ନିରେଖି ଦେଖିଲେ ଝିଅଟିର ମୁହଁରେ ଖାଲି ଟିକିଏ ଯନ୍ତ୍ରଣାର ଚିହ୍ନ । ତାହା ଘଡିକରେ ବି ମିଳାଇଗଲା । କମଳାର ଦୃଷ୍ଟି ଝିଅଟି ଉପରେ ସ୍ଥିର । ଲକ୍ଷ୍ୟକୁ ଭେଦ କରିବାର ଏ ହେଉଛି ଯେମିତି ପୂର୍ବ ମୁହୂର୍ତ୍ତ । ଆଉ ଘଡିକରେ ସେ ସାମ୍ନାରେ ମୁହଁପୋତି ଛିଡା ହୋଇଥିବା ଝିଅକୁ ଛିନ୍ନଛତ୍ର କରିଦେବ । ଅସୁମାରୀ କ୍ରୋଧରେ ଥରୁଥାଏ କମଳା । ତାହା ଭିତରୁ କ୍ରୋଧଟି ବାହାରକୁ ଚାଲିଯାଉଥାଏ ଏବଂ ପୁଣି ତା' ଭିତରକୁ ଫେରି ଆସୁଥାଏ ସେହି କ୍ରୋଧ । ଆଖିରେ ସେଇମିତି ତା'ର ନିଆଁ । ଯେତେ ଶକ୍ତି ଅଛି ସେ ସବୁକୁ ଠୁଳ କରି ହାତ ଦୁଇଟାକୁ ମୁଠା କଲା କମଳା । ଦେହର ସମସ୍ତ ଶିରା ପ୍ରଶିରା ତା'ର ଟାଣ ହୋଇ ଆସୁଥାଏ । ଗୋଟିଏ ହାତର ମୁଠାରେ କମଳା ଝିଅଟିର ମୁହଁକୁ ଟିକିଏ ଉପରକୁ ଟେକିଲା । ମୁହଁର ରୂପ ଦେଖିବାକୁ ସେ ଏଠାକୁ ଆସିନାହିଁ । ଆଖି ଦିଇଟାରେ ତା'ର ରଡ ନିଆଁ । ନିଆଁର କାମ କେବଳ ଜାଳି ଦେବା । କମଳାର ଆଖିରୁ ବାହାରୁଥିବା ନିଆଁରେ ଝିଅଟିର ମୁହଁ ଭସ୍ମ ହୋଇଗଲା ହଠାତ୍ । ହଠାତ୍ ଗୋଟିଏ ଝଟକାରେ ଝିଅଟିକୁ ସମ୍ପୂର୍ଣ୍ଣ ବିବସ୍ତ୍ର କରିଦେଲା କମଳା । ଗୋଟିଏ ଧକ୍କାରେ ଝିଅଟିକୁ ସେ ଚିତ୍‌କରି ଭୂଇଁରେ ପକାଇ ଦେଲା । ତା'ର ଦେହ ଉପରକୁ ଝାଂପି ପଡିଲା । ନିଜର ଯାବତୀୟ ଶକ୍ତିକୁ ନେଇ ଝିଅଟିକୁ ସେ ଦଳିଚକଟି ଚାଲିଲା । ମଂଥି ଚାଲିଲା ଯେମିତି ଝିଅଟିର ରସତକ ବର୍ତ୍ତମାନ ନିଗାଡି ଆଣିବ ସେ । ଝିଅଟି ଯେମିତି ତା'ର କେଉଁ କାଳର ଦୁସ୍‌ମନ୍ ହୋଇଗଲା । ସେଇ ଦୁସ୍‌ମନ୍ ସହ ଲଢି ଚାଲିଲା କମଳା । ସେହି ଲଢିବା ଭିତରେ କମଳାର ନିଜ ଦେହରେ ଟିକିଏ ସିତ୍‌କାର । ତାହା ପରେ ସିତ୍‌କାର ଆଉ

ସିତ୍କାର । ନିଜ ଦେହର ସିତ୍କାର ସହ କମଳାକୁ ନିଜକୁ ଲଢିବାକୁ ହେଲା । ଏହା ସାମର୍ଥ୍ୟର ସମୟ, ସିତ୍କାରର ନୁହେଁ । କମଳା ସେହି ଝିଅଟିକୁ ଜୋର୍‌ରେ ଜାବୁଡି ଧରିଥାଏ । ଝିଅଟିର କାନ ମୁଣ୍ଡାରେ ଭୋଁ ଭୋଁ ଶବ୍ଦ । ମରଣ ହେଉ ମୋତେ, ଝିଅଟି ଭାବୁଥାଏ । ନିଲଠା ରୂପ ଖଣ୍ଡକ ମୋର ଅସୁନ୍ଦର ହୋଇଯାଉ ଏଇଲେ, ଝିଅଟି ମନେ ମନେ କହୁଥାଏ । ଝିଅଟିର ଅଙ୍ଗ ପ୍ରତ୍ୟଙ୍ଗ ଖଣ୍ଡ ଖଣ୍ଡ ହୋଇଯାଉଥାଏ । ପେଟରେ ତା'ର ଅସମ୍ଭବ ଯନ୍ତ୍ରଣା । ଆଃ ବୋଲି ପ୍ରାଣପଣେ ଚିତ୍କାର କଲା ଝିଅଟି । ମାତ୍ର ସେହି ଚିତ୍କାରଟି କିନ୍ତୁ ଅତି ଆସ୍ତେ ଶୁଭିଲା କମଳାକୁ । କମଳା ଛିଟ୍‌କି ଆସିଲା ଝିଅଟିର ଦେହ ଉପରୁ । ତାହା ପରେ କ୍ରୋଧରେ ପୁଣି ଫାଟି ପଡିଲା, "ହାରମଜାଦି, ଢଙ୍ଗ ଦେଖଉଚି । ଶାଳୀ, ଆଗରୁ ଦିହ ସୁଖ କଲାବେଳେ ରସ ଗଳି ପଡୁଥିଲା, ଆଉ ଏଇଲେ... ? ହାରାମଜାଦୀ, ଦେବି ଯେ ବେଧକୁ... । ଢାଇ ଢାଇ କେତେଟା ଚଟକଣି କଷି ଦେଲା ସେ । ତାହା ପରେ କିନ୍ତୁ ଝିଅଟିର ଆଖିରୁ ଆଉ ଲୁହ ଗଡିଲା ନାହିଁ । ଆଗରୁ ଆଖିରୁ ତା'ର ଏତେ ଲୁହ ଗଡିଛି ଯେ ଆଉ ଲୁହ ନାହିଁ ଆଖିରେ ।

ଏତେ ସମୟ ଧରି ଗମ୍ଭୀରି ଘରର କବାଟଟା ଅଧା ଖୋଲା ହୋଇଥିଲା । କମଳାର କ୍ରୋଧ ପଡିଲା ସେହି କବାଟଟା ଉପରେ । ଧଡ଼୍‌କରି କବାଟଟାକୁ ଧକ୍‌କାଟାଏ ପକାଇ କମଳା ଚାଲିଆସିଲା ବାହାରକୁ । ସେ ସେଇମିତି କାଳିସୀ ଭଳି ଥରୁଥାଏ ।

ଦୂରରେ ଗୋଟିଏ ଆଲୁକୁଚି ମାଲୁକୁଚି ଭରା ଘରର ସନ୍ଧି ଖଣ୍ଡକରେ ବସିଥିଲା ଝିଅର ବାପା । କମଳାକୁ ଦେଖିବା ମାତ୍ରକେ କାନମୁଣ୍ଡ ଆଉଁଷି ଉଠି ଆସିଲା । ପାଖରେ ଝିଅଟିର ବାପାକୁ ଦେଖି ପୁଣି ଫାଟି ପଡିଲା କମଳା, "ଶଳା ହାରାମଜାଦା । ଝିଅକୁ ସମ୍ଭାଳି ପାରୁନୁ ତ ଜନ୍ମ ଦେଲୁ କିଆଁ ? ଶଳା, ତୁ ଶଳା ହିଁ ଏ କାମ ଖୋଦ୍ କରିଚୁ । ଆଉ ଅନ୍ୟ ନାଆଁରେ ଗଛେଇ ଦଉଚୁ, ନୁହଁ । ଝିଅଟିର ବାପା ରାମ୍ ରାମ୍ ବୋଲି କହି କାନରେ ହାତ ଦେଲା । ସବୁ ଭାଗ୍ୟ ବୋଲି କହି ସେ ଦୀର୍ଘଶ୍ୱାସ ଛାଡିଲା । ତାହାପରେ କମଳା କିନ୍ତୁ ହଠାତ୍ ଶାନ୍ତ ହୋଇଗଲା । ଯେମିତି ତା'ର ସବୁ ଶକ୍ତି ନିଃଶେଷ ହୋଇ ଯାଇଛି ସେଇମିତି କହିଲା, "ତମ ସ୍ତ୍ରୀ କାହାନ୍ତି । ଆଣ, ଉହ୍ନେଇଁରେ କିଛି ରଡ ନିଆଁ, ଗରମ ପାଣି, ଛିଣ୍ଡା କନା କିଛି । ହଁ, ଟେଣ୍ଟ୍ ଆଣିଚ ? ଲାମିନେରିଆ ଟେଣ୍ଟ୍ ମ ? ଲେଖି ଦେଇଥିଲି ଔଷଧ ଦୋକାନରୁ ଆଣିବା ପାଇଁ... । ତାହା ପରେ ପାଖ ଘର ଭିତରୁ ସ୍ତ୍ରୀଲୋକ ଜଣେ ଉହ୍ନେଇରେ ନିଆଁ ଧରି ଆସିଲେ । ନିଆଁଟି କୁହୁଳୁ ଥାଏ । ସ୍ତ୍ରୀ ଲୋକ ଜଣକଙ୍କର ମୁହଁଟି ଶାଢ଼ିରେ ଢଙ୍କା ହେଇଥାଏ । କେବଳ ଦେଖାଯାଉଥାଏ ତାଙ୍କର ଆଖି ଦୁଇଟି ଅଛ ।

ଗମ୍ଭୀରି ଘର ଭିତରେ ଶାଢ଼ିଟିକୁ ନିଜ ଉପରକୁ ସାଉଁଟି ଆଣିଥାଏ ଝିଅଟି ଏହା ଭିତରେ । ଘୁଷୁରି ଘୁଷୁରି ଯାଇ ଗୋଟିଏ କୋଣରେ କାନ୍ଥକୁ ଆଉଜି ଗୋଡ ଲମ୍ବାଇ ବସିଥାଏ ସେ । ମୁହଁଟି ତା'ର ତଳକୁ । ଆଣ୍ଠୁ ସନ୍ଧିରେ ମୁହଁ ପୋତି ବସିବା ପାଇଁ ବୋଧହୁଏ ସେ ଅନେକ ଚେଷ୍ଟା କରିଥିଲା । ମାତ୍ର ପାରିଲା ନାହିଁ । ବଢିଲା ପେଟକୁ ନେଇ ଆଣ୍ଠୁ ସନ୍ଧିରେ ମୁହଁ ପୋତି ବସି ହୁଏ ନାହିଁ । ମୁହଁକୁ ତଳକୁ କରିଦେଲେ କ'ଣ ସବୁ ଲୁଚିଯିବ ? ଲୁଚି ଯାଇପାରିବ ? ଝିଅଟିର ଏହି ଭଳି ବସିବା ଭିତରେ ସବୁ କିଛି ତା'ର ଦେଖାଯାଉଛି । ତା'ର ଚେହେରା, ବିଶେଷତଃ ତା'ର ବଢିଲା ପେଟ । ଦେହର ଏଇମିତି ପ୍ରକାଶରେ କିଛି କରିବାର ନାହିଁ ଝିଅଟିର । ଝିଅଟି ବର୍ତ୍ତମାନ ସିଧାସଳଖ ଚାହିଁ ପାରୁନାହିଁ । ସିଧାସଳଖ ଚାହିଁ ପାରିଲେ ହୁଏତ ତା' ଦେହର ଆହୁରି ଅନେକ କିଛି ପ୍ରକାଶ ପାଇ ଯାଇପାରେ । ଏହାଛଡା ତଳକୁ ମୁହଁ କରି ବସିବାରେ ଝିଅଟିର ସାମ୍ନାରେ

ଯେଉଁ ନାଆଁଟି ଆସିଥିଲା ସେହି ନାଆଁଟି ଅନେକ ବେଶି ଫାଙ୍କା ହୋଇଯାଇଛି । ନାଆଁଟି ପଛରେ ଯେଉଁ ବଳିଷ୍ଠ ଆଲିଙ୍ଗନ ତାହା ଯେମିତି ସେହି ନାଆଁଟିର ହୋଇ ଆଉ ନାହିଁ । ନାଆଁର ପଛରେ ଯେଉଁ ସ୍ୱପ୍ନର ରାଜମହଲ ତାହା ଯେମିତି ସେହି ନାଆଁର ହୋଇ ରହିନାହିଁ । ନାଆଁଟି ଯେମିତି ସେହି ନାଆଁ ହୋଇ ରହିନାହିଁ । ଏହା ଭିତରେ ଫାଙ୍କା ହୋଇଯାଇଛି ସେହି ନାଆଁଟି ।

କମଳା ପୁଣି ଗର୍ଜି ଉଠିଲା ସେହି ଗମ୍ଭୀରି ଘର ଭିତରେ । ଏଠାରେ ଏବେ ତା'ର ସଂପୂର୍ଣ୍ଣ ଶାସନ । "ବେଧ, ହାରାମଜାଦୀ, ଧର୍ମ ଅଧର୍ମ କିଛି ମାନିବନି । ବେଧ, କେତେ ମାସ ହେଲାବେ ? ଯା, ଶାଳୀ ଯା, ଏଥର ଛୁଆ କାଖେଇ କି ଯିବୁ । ଛତରି ଟୋକୀ, ଆଉ କେଇଟା ବର୍ଷ ସମ୍ଭାଳି ପାରିଲୁନି । ନିଜ ମରଦ ସାଙ୍ଗରେ କେତେ ଛୁଆ ଆଣିବୁ ଆଣ... । କିଏ ମନା କରୁଚି ? କମଳା ଧାଇ ମିଠା ଖାଇଥାନ୍ତା... । ବେଧ, ବଲବଲ କରି ପୁଣି ଚାହିଁଚି... । ମନ ହେଉଚି ଆଖି ଦୁଇଟାକୁ ତାଡି ଆଣନ୍ତି ! ମନ କଲୁ ଯଦି ଏବେ ମର୍ । ମର୍ । ମରଣ ହେଉ ତତେ । ଆଲୋ, ଦି ହାତ କୂଅ ଦଉଡି ତତେ ମିଳିଲାନି ? ଜାର ମହୁରା କିସ ଅପୂର୍ବ ? ରେଳ ଲାଇନ୍ କି କୂଅ ପୋଖରୀ ନାହିଁ... ? ଏବେ ତୁ ମର୍, ମର୍ । କମଳା ଝିଅଟାକୁ ଗୋଇଠାଏ ପକାଇଲା । ଗୋଇଠାଟି କେଉଁଠି ବାଜିଲା କେଜାଣି ଝିଅଟି ଲେଉଟି ପଡିଲା ଭୂଇଁ ଉପରେ । ତାହା ପରେ ଆସ୍ତେ ଆସ୍ତେ ଉଠି କାନ୍ଥକୁ ଟିକିଏ ଆଉଜି ଗଲା । ବହୁଦିନ ହେଲା କାନ୍ଥ ହିଁ ତା'ର ଅନେକ ଭରସା । କମଳାର ଓଠରୁ ଅସ୍ପଷ୍ଟ ଭାବରେ ବାହାରିଲା, "ମରଣ...।"

କାନ୍ଥକୁ ଆଉଜି ଯାଇଥିବା ଝିଅଟି ହଠାତ୍ ନିଜର ଦୁଇ ହାତ ଯୋଡି ଦେଲା । ଆଗକୁ ଟିକିଏ ଝୁଂକି ପଡିଲା ।

ଝିଅଟିକୁ ଏବେ ଫାଙ୍କା ଫାଙ୍କା ଲାଗୁଥାଏ । ବହୁତ ଦୂରରେ କାଲେଣ୍ଡର୍‌ଟିଏ ଟଙ୍ଗା ହୋଇଛି । ଗୋରା ତକ୍‌ତକ୍ ସୁନ୍ଦର ପିଲାଟି ସେଥିରୁ ଉଭେଇ ଯାଇଛି । ଆଣ୍ଠୁଆ ଗୋପାଳ ହାତରେ ଲଡୁ । ସେ ବି ଆଉ ନାହିଁ । ମାଆର ସ୍ତନ୍ୟ ଦିଇଟି ଉନ୍ମୁକ୍ତ । କ୍ଷୀର ଧାର ସ୍ରବି ଚାଲିଛି । ପିଲାଟି ଉଠି ଆସୁଛି ମାଆର କୋଳ ଉପରକୁ । କ୍ଷୀର ଧାରକୁ ଶୋଷି ନେବାର ଠିକ୍ ପୂର୍ବ ମୁହୂର୍ତ୍ତରୁ ପିଲାଟିର ଅବୟବ ଶୂନ୍ୟ ହୋଇଯାଉଛି । ଧାର ଧାର କ୍ଷୀର ପୂରି ଯାଉଛି ସମଗ୍ର କାଲେଣ୍ଡର୍‌ଟା । ତାହା ପରେ କ୍ଷୀରଧାର ଅସ୍ପଷ୍ଟ, ଧୂସର । ଅସ୍ପଷ୍ଟ ଧୂସର ରୂପଟି ତାହାପରେ ପଶି ଆସୁଛି ଝିଅଟିର ଜରାୟୁ ଭିତରକୁ । ଝିଅଟିର ଗର୍ଭରେ ପଦାଘାତ । ଅସ୍ପଷ୍ଟର ସେହି ପଦାଘାତଟି ଝିଅକୁ ବେଶ୍ ତୀବ୍ର ଲାଗୁଥାଏ । ଅସ୍ପଷ୍ଟଟି ଯଦି କୌଣସି ରୂପ ନେଇ ତା' ଗର୍ଭରେ ବଢିଚାଲିଲେ ତା'କୁ ଜମା କଷ୍ଟ ଲାଗିବ ନାହିଁ, ଝିଅଟି ଭାବୁଥାଏ । ରୂପଟି ସେତେବେଳେ ଚମତ୍କାର ସ୍ୱପ୍ନ ହୋଇଯିବ, ଆସନ୍ତା ସକାଳ ପର୍ଯ୍ୟନ୍ତ ସେ ତା'କୁ ବଞ୍ଚାଇ ରଖିବ । ମନେ ମନେ କହିଲା ଝିଅଟି, "ମୋତେ ଏହି ଅସ୍ପଷ୍ଟର ଆକ୍ରମଣରୁ ମୁକ୍ତ କରିଦିଅ । ଖଲାସ କରିଦିଅ ତାକୁ, ଯେ କୌଣସି ରୂପରେ ହେଉ ପଛକେ । ଖଲାସ କରିଦିଅ । ହାତ ଜୋଡୁଛି, ତମକୁ... ।

କମଳା ଟିକିଏ ନରମ ହୋଇଗଲା । ଏଠାରେ ନରମ ହୋଇଯିବା ହିଁ ତା'ର ଏକ ବଡ ଦୁର୍ବଳତା । ଦୁର୍ବଳ ହୋଇଗଲେ ତା'ର କାମ ଚଳିବ ନାହିଁ । ଏସବୁ କାମ ପାଇଁ ମନରେ ଟିକିଏ ଜୋର୍ ରହିବା ଦରକାର । ବର୍ତ୍ତମାନ କମଳାକୁ ଲାଗୁଛି ଯେମିତି ପୃଥିବୀର ସମସ୍ତ ପାପ ତା'ରି ସାମ୍ନାରେ ହାତ ଯୋଡି ଆଣ୍ଠୁ ମାଡି ବସିଛନ୍ତି । ସେ ସେମାନଙ୍କୁ ଶୂଳୀରେ ଚଢାଇ ଦେବାର ଆଦେଶ ଦେଇପାରେ ବା ଦୋଷ ମକୁବ ହେଲା ବୋଲି ଅଚିରେ ଘୋଷଣା କରିଦେଇପାରେ । ତଥାପି କ୍ଷମା କରିଦେବା କଥାଟି ତା'କୁ ଟିକିଏ ଆନ୍ଦୋଳିତ କରୁଛି । ଏବେ କ୍ଷମା କରିଦେଇ

ପାରିବାର ଶକ୍ତି ତା'ର ଅକ୍ତିଆର୍‌ରେ ଅଛି । ସେହି ଶକ୍ତି ତା'କୁ ଉଦାର କରିଦେଉଛି । ତେଣୁ କମଳା ଏବେ ଉଦାରତାର ଚୋରାବାଲିରେ । କମଳାର ମନେ ପଡିଗଲା ସେହି ଝିଅଟିର ବିଚରା ବାପଟିର କଥା । କିଛିଦିନ ତଳେ ସେ ବି ହାତ ଯୋଡିଲା ଭଳି କହିଥିଲା କମଳାକୁ, "ଆପଣ ହିଁ ଶେଷରେ ଭରସା । ଯାହା ଖର୍ଚ୍ଚ ଲାଗିବ ଦେବି । ମୁଖଲଜ୍ଜା ବୋଲି କଥା । ଡାକ୍ତରାଣୀ ଫେରେଇ ଦେଲେ । ଏତେ ଡେରି ହବାର କଥା ନୁହଁ । ବଡ ଖରାପ ସମୟ । ଶନି ଦଶା ଚାଲିଛି । ସବୁ ଲାଜ ଛାଡି ଗାଆଁ ପଂଚାୟତକୁ କଥାଟା ନେଲି । ଆମକୁ କ'ଣ ଯେ କାମ କରିବାକୁ ଭଲ ଲାଗୁଛି ? ମହାପାତକ ଯେ ? ଉପରବାଲାକୁ ତ ଆଉ ଫାଙ୍କି ଦେଇ ହେବନି... । ଗାଆଁ ପଂଚାୟତ ନିଶାପ କଲା । ଭଲ ନିଶାପ । ଟୋକାଘର ମାନିଗଲେ, ଟୋକାଟାବି ଟିକିଏ କୁନ୍ଥୁ କୁନ୍ଥୁ ହେଲାନାହିଁ । ଆମେ ଏଣେ ଆମ ଅନୁସାରେ ରେଡି । ଯାହା ହେଲେ ବି ସାଇଭାଇରେ ତ ଘର କରିଚୁ । ବାଜା ଖଣ୍ଡେ ତ ବାଜିବ । ଶାଗ ମାଛ ଟିକିଏ ହଉ ପଛକେ ପତ୍ରରେ ତ ପଡିବ । ହେଲେ ସକାଳ ବେଳାକୁ ସେ ଟୋକାଟା ଛୁ । ମିଲେଟାରୀରେ ପଳେଇଲା । ସବୁ ତା'ର ସେଇ କାଣ୍ଡେଇ ଭଉଣୀର କାମ । ମୁଁ ପକ୍‌କା ଖବର ପାଇଛି । ତା'ର ଜମାରୁ ଏଥିରେ ଇଚ୍ଛା ନଥିଲା । ମୋ ଝିଅର ରୂପକୁ କ'ଣ ସେ ସହି ପାରିବ ? ସବୁ ଭାଗ୍ୟ । ନିଲଠା ରୂପ ଖଣ୍ଡକ ଏତେ ଦାଉ ସାଧିଲା । ଟୋକାର ଭଉଣୀଟା ପକ୍‌କା ରାହାବାଲୀ ଖଣ୍ଡେ । ଆଖି ବୁଜି ଦୁଧ ପିଇଲେ କ'ଣ ଆମେ ଜାଣି ପାରୁନାହୁଁ ? ହଉ ଆମେ ତ ଅଛୁ, ଦେଖିବୁ ସେ ଟୋକୀକୁ କେମିତି ବର ଖଣ୍ଡେ ମିଳିବ ? ଶେଷରେ ସାହଡା ଗଛ... ହୁଁ । ଟୋକାଟା ଆଜ୍ଞା, ଗଲାବେଳକୁ ଚିଠଖଣ୍ଡିଏ ଲେଖି ଦେଇ ଯାଇଛି । ମୁଁ ଯାଉଛି, ମୋତେ ଆଉ ଖୋଜିବ ନାହିଁ । ତଥାପି ଆମେ ହାଲ୍ ଛାଡି ନଥିଲୁ । ପଛକେ ଟୋକାଟା ଚିଠି ଲେଖିଲା ସିକିମ୍ ନା କଉ ଗାଙ୍ଗଟକ୍‌ରୁ । ଟଙ୍କା ପଠେଇଥିଲା । ଆମକୁ କିଆଁ ପଠେଇବ ମ ? ତା'ର ବାପ ପାଖକୁ । ଚିଠି ଧାଡିଟେ ତ ଲେଖିନି ଆମକୁ, ଆଉ ଟଙ୍କା... ? ବାପକୁ ତା'ର କହିଲି, ନେହୁରା ହେଲି । ବାପ ବି ଚିଠି କେଇଖଣ୍ଡ ଦେଲା । ତା'ପରେ ସେ ଟୋକାର ସୋର୍ କି ଶବ୍ଦ ନାହିଁ । ସେ ଟୋକାଟା ଯଉଠି ଅଛି ସେଠିକି କ'ଣ ଆମର ଆଖି ପାଉଛି ? ଆଉ କ'ଣ କରିବି ? ଟୋକାର ବାପକୁ କହିଲି । ସେ କହିଲା, "ତମ ଦେଖିଲା କାମ କର ସମୁଦୀ, ଝିଅଟାକୁ ଆଗ ଏଥିରୁ ଖଲାସ୍ କର ।" ସମୁଦୀ ନା ଛତୁ... । ସରପଞ୍ଚବାବୁ ବି ଗୁପ୍ତରେ କହିଲେ, "ଝିଅଟାକୁ ଆଗ ଖଲାସ୍ କର, ଆଇନ ଅଛି ।" ଡାକ୍ତରାଣୀ ମନା କରିଦେଲେ । ସମୟ କ'ଣ ଅପେକ୍ଷା କରୁଚି ? ଆଶା ତ ପୁଣି ଅଛି ନା ନାହିଁ ? କହିଲ ଦିଦି, ପ୍ରଥମରୁ କ'ଣ ଆଶା ଛାଡି ଦେଇଥାନ୍ତୁ ? ସାହିଭାଇରେ ଲୋକଙ୍କ ମୁହଁରେ ଆଉ ବାଡବତା ନାହିଁ । ଆମ ବଉଁଶକୁ ଅନ୍ନଜଳ ପିତା ଲାଗିଲାଣି । ଏବେ ଝିଅକୁ ମୋ ସଢୁ ଘରେ ନେଇକି ରଖିଚି । ମୋ ସଢୁ ସମିତି ମେମ୍ବର । ବେଶ୍ ଥିଲାବାଲା ଘର । ସେଇଠେ ତମ କଥା ଶୁଣିଲି ଦିଦି । ସେ ଅଞ୍ଚଳରେ ତମର ଭାରି ନାମଯଶ । କେତେ ଓଷଧ ବିଷୁଧି କଲି । ହେଲେ କପାଳକୁ ଆମର ସେ ବି ମହୁରା ହେଲାନି । କଉ ଜନ୍ମର ଶତ୍ରୁ ବଢୁଚି କେଜାଣି, କଉ ଜନ୍ମର ଦାଉ ସାଧୁଚି ଏଇଲେ ? ଡେରି ତ ହେଇ ଯାଇଛି, ଦିଦି, ତମେ ଆମକୁ ଏଥିରୁ ଉଦ୍ଧାର କର । ତମେ ହିଁ ଆମର ଶେଷ ଭରସା । ପଛକେ ଝିଅଟି ଯଦି କ'ଣ ହୋଇଯାଏ ତମେ କିଆଁ ଦାୟୀ ହବ ? ତେଣିକି କପାଳ । ଗୁଣ ତ ଅର୍ଜିଛି, ଭୋଗିବନି କେମିତି ? ତମେ ଆଗ ଝିଅକୁ ମୋର ଖଲାସ୍ କରିଦିଅ । ତାହା ପରେ ଦେଖିବ, ସତ କହୁଚି, ମୁଁ ସେ ଟୋକାର ପୂରା ବଉଁଶକୁ ଯଦି ଜିଅଲ୍‌ରେ ଭର୍ତ୍ତି ନକରିଛି ତାହା ହେଲେ ମୋ ନାଆଁ... ।"
କମଳାକୁ ହଠାତ୍ ଲାଗିଲା ଯେ ଝିଅଟିର ବାପା ଏତେକଥା କହି ନାହିଁ । ଖାଲି କହିଛି ବୋଧହୁଏ ।

"ସବୁ କପାଳ, ସବୁ କପାଳ, ତମେ ହିଁ ଭରସା," ବା "ଯାହା ଖର୍ଚ୍ଚ ଲାଗିବ ଦେବି ବଂଧାଛଂଦା ପଡେ ପଛକେ", ଏହିଭଳି କିଛି । କମଳା ଆଗରେ କାହାଣୀଟି ଲମ୍ୱି ଯାଉଛି । ଏବଂ ଏହି କାହାଣୀଟି ହୁଏତ ଉଦାର କରି ଦେଉଛି କମଳାକୁ । ତା'କୁ ଲାଗୁଛି ଯେମିତି ସେଇ ଟୋକାଟା ମିଲିଟାରୀରୁ ଛୁଟି ନେଇ ଚାଲି ଆସିଛି ହଠାତ୍ । କମଳା ସାମ୍ନାରେ ଛିଡା ହୋଇ କହୁଛି, "ମୋ ପିଲାକୁ ମାରିଦେଲୁ, ଡାହାଣୀ । ଦେ ମୋ ପିଲାକୁ ଫେରେଇ ଦେ ।" ଝିଅଟି ନିଜ ମୁଣ୍ଡକୁ ଥାପି ଦେଇଛି ତାହା ପରେ ସେଇ ଟୋକାଟାର କାନ୍ଧରେ । ଝିଅଟି ଉଚ୍ଚତାରେ ବେଶୀ ନା ଟୋକାଟା ? ଏ ପ୍ରଶ୍ନ ହାସ୍ୟକର ଶୁଭୁଛି ସେହି ଲୀଳାୟିତ ଠାଣିଟିର ଆଗରେ । ମଧୁର ହସ । କମଳା ସଂକୁଚିତ ହୋଇ ଯାଉଛି । ସେ ଏହି ଭଳି ଅନେକ କାମ କରିଛି । କାହାଣୀଟି ଲମ୍ୱିଗଲେ ସେ ଆଉ ଶେଷରେ ନ ଥାଇପାରେ । ତେଣୁ କେବଳ ସେ ଚିତ୍କାର କଲା, "ବେଧ, ହାରାମଜାଦୀ, ହାରାମଜାଦୀ ଶାଳୀ, ଛତରୀ ଟୋକୀ, ଟୋକୀ... ଛତରୀ..." । ସତରେ ଏମିତି ବେଶୀ ସମୟ ସେ କ'ଣ ଚିତ୍କାର କରିପାରିବ ?

କୌଣସି ସ୍ପଷ୍ଟ ଆକାରଟିଏ ଜୀବନ୍ତ ହୋଇଗଲେ କମଳାକୁ ଭାରି ଡର ମାଡିବ । କମଳାର ପରାଜୟ ହୋଇଯିବ । ତାହାର ଯୁଦ୍ଧ କେବଳ ସେହି ଆକାରହୀନ ମାଂସପିଣ୍ଡୁଳା ସହ, ଅଂଧାରରେ । ତାହାପରେ ଆକାରହୀନ ମାଂସ୍ ପିଣ୍ଡୁଳାଟି ଶୂନ୍ୟ ହୋଇଯିବ । ବୋଧହୁଏ ଶୂନ୍ୟ ହିଁ ଶୂନ୍ୟ ହୋଇଯିବ । ଏଥିରେ ରକ୍ତ ଟୋପାଏ ଲାଗିବ ନାହିଁ କମଳାର ବୁକୁରେ । ଏ ସବୁ ଅନ୍ଧାରର କଥା, ଗର୍ଭଗୃହର କଥା । ଏ ସବୁ ଚେତନାର ପୂର୍ବର କଥା । ତାହା ପରେ କମଳା ଧାଇ ପରିଷ୍କାର ହୋଇ ଗମ୍ଭୀରି ଘରୁ ବାହାରି ଆସି ସାବୁନ୍‌ରେ ହାତ ଧୋଇବ । ଗର୍ଭଗୃହଟି ବାହାରକୁ ସୁନ୍ଦର ଦିଶିବ ନାନାଦି କୁଟିକମରେ । ତାହାପରେ ଆଉ ଆକାରହୀନ ମାଂସ ପିଣ୍ଡୁଳାକୁ ବାହାରେ କିଏ ଜଣେ ଚିହ୍ନଟ କରିପାରିବ ନାହିଁ କୌଣସି ମଣିଷର ବୋଲି ।

କିନ୍ତୁ ବେଶ୍ ଡେରି ହୋଇଯାଇଛି । ରିସ୍କ ଅଛି । ଝିଅଟିର ପେଟଟି ବେଶ୍ ବଡ । ପୁରାପୁରି ସେପ୍ ନେଇଯିବଣି ।

କମଳା ଚେଷ୍ଟା କଲା ତଥାପି । ଏଠାରେ ଶକ୍ତିର ବିଶେଷ ପ୍ରୟୋଜନ । ଅସୁରର ଶକ୍ତି । କମଳା ହଠାତ୍ ଜୋର୍‌ରେ ଗୋଇଠାଟିଏ ପକାଇଲା ଝିଅଟିର ପେଟ ଉପରକୁ । ଗୋଇଠା ମାରି ମାରି ଝିଅର ପେଟକୁ ସେ ସମତଳ କରିଦେବ ଯେମିତି ।

ଠିକ୍ ସେହି ଭଳି ମାଟି ଆଉ ବୀଜର କଥା । ପରସ୍ପର ପରସ୍ପର ଠାରୁ ଅଲଗା ପ୍ରଥମେ । କିନ୍ତୁ ପ୍ରତ୍ୟେକ ପ୍ରତ୍ୟେକକୁ ଅପେକ୍ଷା କରିଥାଏ ଯୁଗଯୁଗ ଧରି । ମାଟି ଭିତରକୁ ବୀଜ ଆସେ । ଅନ୍ଧାରରୁ ଆହୁରି ଅନ୍ଧାରକୁ ଯାଏ । ବୀଜ ଭିତରେ ଅସ୍ପଷ୍ଟ ଆକାର । ମାଟି ଆଉ ମନ ମାରି ବସେ ନାହିଁ । ସେ ନିଜର ଯାବତୀୟ ଉତ୍ତାପରେ ଆଲିଙ୍ଗନ କରିଯାଏ ବୀଜ ସମେତ ସେହି ଅସ୍ପଷ୍ଟ ଆକାରକୁ । ଅସ୍ପଷ୍ଟ ଆକାରଟି ଦୁଃସାହସ କରେ ତାହା ପରେ । ବୀଜର ଖୋଳପା କାଟି ବାହାରି ଆସେ ଅନ୍ଧାରରୁ ସେ । ମାଟିର ଉତ୍ତାପ ଆତୁରତାରେ ରୋମାଞ୍ଚିତ ହୁଏ ସେ । ତାହା ପରେ ଘଟଣାଟି ଘଟିଯାଏ । କେବଳ ଉତ୍ତାପ ନେଇ ନିଃସ୍ୱ ହୋଇଯିବାର ଆତୁରତା କ'ଣ ମାଟିର ଦୋଷ ? କ'ଣ ମାଟିର ପାପ ? ବେଳେବେଳେ ସମାଜ ଏକଥା କହେ । ସେଇଥି ପାଇଁ କମଳା ବୀଜ ସମେତ ସେହି ଅସ୍ପଷ୍ଟ ଆକାରକୁ ଟାଣି ଆଣିବ ମାଟି ଉପରକୁ । ଆଲୋକକୁ । ପାଣି ଭାଗ ଭାଗ ହେଲା ପରି ମାଟି ଟିକିଏ ଚହଲି ଯିବ, ସତକଥା । ସେଇଥିପାଇଁ ସେ କମଳା ଧାଇ,

କମଳା ମାଷ୍ଟ୍ରାଣୀ ନୁହେଁ । ଧାଈ ହାତରେ ସବୁବେଳେ ସୁଖ ପ୍ରସବ ହେବ ନାହିଁ । କିଏ ମରିବ, କିଏ ବଂଚିବ ସେ କଥା କେହି ଠିକ୍ ଭାବରେ କହିପାରିବେ ନାହିଁ ଆଗରୁ ।

ଝିଅଟିର ପେଟ ଉପରେ ପୁଣି ଗୋଇଠା । ଗୋଇଠା ପରେ ଗୋଇଠା । ଅନେକଙ୍କର ଗୋଇଠା ପଡିଲା ଝିଅର ପେଟ ଉପରେ ଏକା ବେଳକେ । ତାହା ଭିତରେ ବି କମଳାର ଗୋଇଠା ଥିଲା । କମଳା କୋରସ୍‌ରେ କଂଠ ମିଳାଇ କହୁଥାଏ "ମର୍... ମର୍ ତୁ... ବେଧ" ।

ଝିଅଟିକୁ କିନ୍ତୁ ଆଉ କୌଣସି ଯନ୍ତ୍ରଣା ଲାଗୁ ନଥାଏ । ମାଆର ମୁହଁ ତା' ଆଖି ଆଗରେ ଭାସି ଉଠୁଥାଏ । ମୁଣ୍ଡରେ ବେଶ୍ ବଡ କରି ସିନ୍ଦୂର ଟୋପା । ନଈ ପଠାରେ ବହୁତ ବାଲିଛତୁ । ଭୋଦୁଅ ପୋଖରୀରେ ଖୁଦୁରୁକୁଣୀର ଫୁଲ । ଲାଲ୍ ଲାଲ୍ । ଝିଅଟିର ପୁଣି ନାଆଁଟିଏ ମନେ ପଡିଗଲା । ସେହି ନାଆଁଟିରେ କିନ୍ତୁ ଝିଅଟି ଶିହରୀ ଉଠିଲା । ଗାଆଁ ସାରା ଲୋକଙ୍କ ଟାହୁଲି । ତଥାପି ସେହି ନାଆଁଟି ଆସୁଥାଏ । ହଠାତ୍ ସେହି ନାଆଁଟି ଝିଅଟିର ଜରାୟୁ ଭିତରକୁ ପ୍ରବେଶ କରିଗଲା । ସେ ପୁଣି ଶିହରୀ ଉଠି କହୁଥାଏ, "ଯା, ଯା ମୁଁ ତତେ ଧରି ରଖି ପାରିବିନି । ଯା, ଯେମିତି ହଉ ପଛକେ ଯା ।" ତାହାପରେ ମାଆର ହାତଟି ଆସ୍ତେ ଆସ୍ତେ ଝିଅର ଗାଲ ଉପରେ ବୁଲି ଆସୁଥାଏ । ଝିଅଟିର ଦେହଟି ଏବେ ପଦ୍ମପୋଖରୀ, ଅସୁମାରୀ ପଦ୍ମଫୁଲ ସେଥିରେ । ହଠାତ୍ ବୁଡମାରି ଉଠିପଡିଲା ନାଆଁଟି, ହାତରେ ତା'ର ଗୋଛାଏ ପଦ୍ମଫଲ । ଗୋଛାଏ ପଦ୍ମଫୁଲ କେବଳ ଝିଅକୁ ଦିଶୁଥାଏ । ତାହାପରେ ଆସ୍ତେ ଆସ୍ତେ ପଦ୍ମଫୁଲ ଗୋଛାକ ଅଦୃଶ୍ୟ ହେବାକୁ ଲାଗିଲା । ଝିଅଟି ଚିତ୍କାର କରି କହୁଥାଏ "ରହ... ରହ... ।" ତାହା ପରେ ଝିଅଟିର ଚେତା ବୁଡିଗଲା ।

କମଳାର ଦେହସାରା ଝାଳ କଂଟି ହୋଇ ଯାଉଥିଲା । ସେ ଦେଖିଲା, ଝିଅଟିର ଆଖି ଦୁଇଟି ବୁଜି ହୋଇ ଯାଇଛି । ଲଣ୍ଠନ ଆଲୁଅରୁ ସୋରାଏ ପଡିଛି ଝିଅଟିର ଉଲଗ୍ନ ଦେହ ଉପରେ । ପେଟଟା ତା'ର ଜୋର୍‌ରେ ଧକଧକ କରୁଛି । ହଠାତ୍ ପେଟର ମଝି ଅଂଶଟା ତା'ର ଫୁଲି ଉଠୁଛି ତ କିଛି ସମୟ ଛାଡି ପେଟର ପାଖ ଅଂଶ । କମଳା ଶାଢ଼ି କାନିରେ ମୁହଁରୁ ଝାଳ ପୋଛିଲା । ଅଣ୍ଟିରୁ ପାନଖଣ୍ଡେ ନେଇ କଳରେ ଯାକିଲା ତୃପ୍ତିରେ । ସବୁ ଠିକ୍‌ଠାକ୍ ଚାଲିଛି । ସେ କମଳା ଧାଈ, ତା'ର ନାମ ଯଶ ଅଛି । ଝିଅଟିର ପେଟରେ ପିଲାଟା ପୁରାପୁରି ସେପ୍ ନେଇଯିବଣି, କମଳା ଭାବିଲା । ମାତ୍ର ସେ କେବଳ ମାଂସ ପିଣ୍ଡୁଳାଟିଏ ହୋଇ ବାହାରକୁ ବାହାରି ଆସିବ । ଯେତେ ସ୍ପଷ୍ଟ ଆକାର ଧାରଣ କରୁ ପଛକେ ଜୀବନ ନଥିଲେ ସେ ଆଉ କ'ଣ କି ? ମାଂସ ପିଣ୍ଡୁଳା ନିଶ୍ଚୟ, କମଳା ଉତ୍ତର ଦେଲା । ତାହାର ଯେତେ ପ୍ରକାରର ଆକାର ଧାରଣ କରିବାର ସଂଭାବନା ତାହା ଧ୍ୱଂସ ହୋଇଯିବ ଭିତରେ ଥାଉ ଥାଉ । ଝିଅଟିର ପେଟ ଭିତରେ ଗତିଟି ଆଉ ଟିକିଏ ତୀବ୍ର ହେଲା । କମଳା ଭାବି ନେଲା, ଏଇଟା ହିଁ ପ୍ରକୃତ ସମୟ । କବାଟ ଖୋଲିବାର ସମୟ । ଜରାୟୁ ମୁକ୍ତ ହେବାର ସମୟ । କମଳା 'ଲାମିନେରିଆ ଟେଣ୍ଟ୍' ଖୋଜିଲା ।

'ଲାମିନେରିଆ ଟେଣ୍ଟ୍' ହେଉଛି ସୋଲର କାଠି ଭଳି ଖଣ୍ଡିଏ କାଠି । ଜରାୟୁକୁ ଖୋଲିବାର ଚାବିକାଠି ହେଉଛି ସେହି କାଠି ଖଣ୍ଡକ । ଏମିତିରେ ଜରାୟୁ ଖୁବ୍ ଶକ୍ତିଶାଳୀ । ସହଜରେ ତାହାର ବାଟ ଫିଟେ ନାହିଁ । ପ୍ରକୃତ ସମୟ ଆସିଲେ ବି ତାହାର ବାଟଟି ଖୋଲିବାକୁ ଆରମ୍ଭ କରେ ଆସ୍ତେ ଆସ୍ତେ । ଅସମୟରେ କବାଟରେ ତାହାର ଶକ୍ତ ଜାବ । ମାତ୍ର 'ଲାମିନେରିଆ ଟେଣ୍ଟ୍' ହେଉଛି କୁହୁକ କାଠି । ସେହି କୁହୁକ କାଠିର ସ୍ପର୍ଶରେ ଜରାୟୁର ଦ୍ୱାର ଉନ୍ମୁକ୍ତ ହୋଇଯାଏ ।

ଝିଅଟି ଗଁ ଗଁ ଚିତ୍କାର କରୁଛି ଏବେ । ଛାଟିପିଟି ହେଉଛି । ଗର୍ଭରେ ତା'ର ତୁମୁଳ ଆନ୍ଦୋଳନ । ଭିତରେ ଶେଷ ଚେଷ୍ଟା କରୁଛି ନିଜର ଜୀବନୀ ଶକ୍ତିକୁ ଜାହିରି କରିବା ପାଇଁ ସେ ଆକାରଟି । କମଳା ଏକାଗ୍ର ଭାବରେ ଅପେକ୍ଷା କରୁଛି ସେହି ମାଂସ ପିଣ୍ଡୁଳାକୁ । ଆଖିରେ ତା'ର ହଠାତ୍ କ୍ରୂରତାର କୁଟିଳ ହସ ଫୁଟି ଉଠିଲା । ଝିଅଟିର ପାଣ୍ଡୁର ପେଟ ଉପରୁ ତା'ର ଦୃଷ୍ଟି ଭେଦି ଯାଉଛି ଭିତରକୁ, ଆହୁରି ଭିତରକୁ । କମଳା ଧାଇ ପହଁରି ଚାଲିଛି । ନିକଟରେ ତା'ର ବି ନିଃଶବ୍ଦରେ ପହଁରି ଚାଲିଛି ଅବୟବହୀନ ସତ୍ତାଟିଏ । କମଳା ସେହି ଅବୟବହୀନ ସତ୍ତାଟିକୁ ଛୁଇଁ ପାରୁନାହିଁ, ଯେତେ ଚେଷ୍ଟା କଲେବି । ଅନ୍ଧାର ଆହୁରି ଗାଢ଼ ହେଉଛି । ବାହାରୁ ସେହି ଅସ୍ପଷ୍ଟ ଆକାରକୁ ଧ୍ୱଂସ କରିହେବ ନାହିଁ । ତା'କୁ ଦଳି ଚକଟି ଶେଷ ନକଲା ଯାଏ କମଳା ଧାଇ ବାହାରକୁ ବାହାରିବ ନାହିଁ । ପ୍ରାୟତଃ କମଳାର ପାଖାପାଖି ଚାଲିଆସିଲା ସେ । କମଳା ଯୋର୍‌ରେ ହାତଛାଟି ତା' ନିକଟକୁ ପହଁରିଗଲା । ସେ ଏଇଲେ ତା'କୁ ଧରି ପକାଇବ ବୋଧହୁଏ । ମାତ୍ର କମଳା ପାରିଲା ନାହିଁ, ହାତରୁ ଖସଡି ଗଲା ସେହି ଅବୟବହୀନ ସତ୍ତାଟି, ଅସ୍ପଷ୍ଟ ଆକାରଟି । ଏତେ ଅନ୍ଧାରରେ ବି କମଳା ଜାଣି ପାରିଲା କାହାଣୀଟି ଆସୁଛି । ସେଇ କାହାଣୀଟି ଯେମିତି ତା'କୁ ଛନ୍ଦି ପକାଇବ ଏଇଲେ । କମଳାକୁ ଲାଗିଲା କାହାଣୀଟି ଯେମିତି ଅନେକ ବେଶି ଛୋଟ ହୋଇ ଯାଇଛି । କାହାଣୀଟି ଛୋଟ, କିନ୍ତୁ ଯଥେଷ୍ଟ ତାହାର ଶକ୍ତି । କମଳାର ସ୍ୱାମୀ ହସ୍‌ପିଟାଲର ବେହେରା, ରାତିରେ ମାଲ୍ ପିଇ ବେହୋସ । ଟି.ବି. ୱାର୍ଡରୁ ଫାର୍ମାସିଷ୍ଟ ନବବାବୁ ଅନ୍ୟ କୁଆଡେ ନିରୁଦ୍ଦିଷ୍ଟ ହୋଇଗଲେ । ତାଙ୍କ ସହ ଆଉ କମଳାର ଦେଖା ହେଇନି । ପୃଥିବୀ ଥିବା ପର୍ଯ୍ୟନ୍ତ ଦେଖା ହେବାର ସମ୍ଭାବନା ନିଶ୍ଚୟ ଅଛି । କି ଗୋରା ତକ ତକ ସୁନ୍ଦର ଚେହେରା ନବବାବୁଙ୍କର । କଉ ଯୁବତୀ ଏଥିରୁ ଆଖି ଫେରେଇ ନବ ? ସେଇ ଦେହକୁ ଛୁଇଁଲେ କମଳା ଧାଇ କ'ଣ କାଳି କୁତ୍ସିତ ହୋଇଯିବ ? ଶେଷରେ ଏଇ କମଳା ଧାଇ ହିଁ ପାରିଲା । ନବବାବୁଙ୍କ ସୁନ୍ଦରପଣକୁ ଶୋଷି ଆଣିଲା ସେ । ସେତେବେଳେ ଏତେ ଶୋଷ କେଉଁଠି ଥିଲା କେଜାଣି ? ସେ ଗର୍ଭବତୀ ହେଲା । ତା' ସ୍ୱାମୀ ତ ନିଶାରେ ବେହୋସ । ଭିତରେ ଏତେ ଗୁମର ଅଛି ବୋଲି ସେ କାହୁଁ ଜାଣିବ ? ଆଃ, ପୃଥିବୀରେ ସେତେବେଳେ କେତେ ଫୁର୍‌ଫୁର୍ ପବନ । ଡାକ୍ତର କହିଲେ, "ଫାଣ୍ଟମ୍ ପ୍ରେଗ୍‌ନାନ୍‌ସି ।" କମଳା ଭାଙ୍ଗି ପଡିଲା । ଡାକ୍ତର ଅପରେସନ୍ କରି ଟ୍ୟୁମର୍‌କୁ ବାହାର କରିଦେଲେ ଦେହରୁ । ଅଲ୍ୟଳ ରାଜକୁମାର ସବୁଦିନ ପାଇଁ ଅବୟବହୀନ ହୋଇଗଲା । ତାହା ପରଠାରୁ କମଳା ମାଂସ ପିଣ୍ଡୁଳାମାନଙ୍କୁ ଦେହ ଭିତରେ ଥାଉ ଥାଉ ଧ୍ୱଂସ କରି ଦେଉଛି । ସେମାନେ ପୃଥିବୀକୁ ଆସିଲେ କୁତ୍ସିତ ହୋଇଯିବେ । ପାପ ପ୍ରତିଷ୍ଠିତ ହେବ । ସ୍ୱାମୀ ସାଙ୍ଗରେ ସେ ମିଳିତ ହେଉଛି । ସେ ମିଳନଟା ଗୋଟିଏ ଯୁଦ୍ଧ କ୍ଷେତ୍ର । ଆକ୍ରୋଶର ଟଙ୍କାର । ଅସଫଳତାର ମୁମୂର୍ଷୁ ଚିତ୍କାର । କଳା ମିଶି ମିଶି ପିଲାମାନେ ତା'ର ଯଥେଷ୍ଟ ସୁନ୍ଦର ବୋଲି ସେ ଧରି ନେଇଛି । ନବବାବୁ ମିଲିଟାରୀରେ ଚାଲିଗଲେ, ମିଲିଟାରୀରେ ଯିବା ବରଂ ଭଲ । କମଳା କାହାଣୀକୁ ଅତିକ୍ରମ କରିଗଲା । ସେହି ଅସ୍ପଷ୍ଟ ଆକାରକୁ କିନ୍ତୁ ସେ ଧରି ପାରୁନଥାଏ । ତା'କୁ ଲାଗୁଥାଏ ସେ ଯେମିତି ଏଇଠେ ଥିଲା, ଏଇଲେ ଖସି ଯାଇଛି କେଉଁଠିକୁ । ତଥାପି ହାତଗୋଡ ଛାଟି ପହଁରୁଥାଏ କମଳା । ହଠାତ୍ ସେ ଗୋଟିଏ ବୁଡ଼ ଦେଲା । ଆଉ ଏଥର ସେ ହାତଗୋଡ ଛାଟିବ ନାହିଁ । ନିଃଶବ୍ଦରେ ସେ ଏଥର ପହଁରିଯିବ । ସମସ୍ତଙ୍କର ପ୍ରଥମ ଗର୍ଭ ଏଥର 'ଫାଣ୍ଟମ୍ ପ୍ରେଗ୍‌ନାନ୍‌ସି', ସମସ୍ତଙ୍କ ପ୍ରଥମ ଅନୁଭୂତିର ଫଳ । କମଳା କ୍ଷେତ୍ରର ଏହା ହୋଇଛି । ସେ ଅନ୍ୟ ଜଣଙ୍କୁ ସୁନ୍ଦର ଆକାରଟିଏ ଜନ୍ମ ଦେବାକୁ ଦେବ କେମିତି ? ସେ ଜମା ସହି ପାରିବ

ନାହିଁ । ସହି ପାରିବ ନାହିଁ ଏକଥା । କମଳା ହଠାତ୍ ଧରି ପକାଇଲା ସେହି ଅସ୍ପଷ୍ଟ ଆକାରକୁ । ହାତରେ ତା'ର ଅବୟବହୀନ ମାଂସ ପିଣ୍ଡୁଳାଟିଏ । କମଳାର ହାତ୍‌ଟି ଯେମିତି ଗୋଟେ ସଣ୍ଡୁଆସୀ । ସେ ଜାଣିପାରୁନଥାଏ ଏତେ ଶକ୍ତି ତା'ର କେଉଁଠାରୁ ଆସିଲା ।

ଝିଅଟି ଯନ୍ତ୍ରଣାରେ ହଠାତ୍ ଚିତ୍‌କାର କରି ଉଠିଲା, "ମରିଗଲି ଲୋ, ମାଆ... ମରିଗଲି... ।" ଧାର ଧାର ରକ୍ତ । ସେଇ ଧାର ଧାର ରକ୍ତରେ ପହଁରି ପହଁରି ବାହାରକୁ ଆସିଲା ସେ । ଆଲୋକକୁ ।

ରୂପର ଆଲୁଅରେ ଚାରିଆଡ ହାଲୋଳ । ଚାରିଆଡେ ସୁନ୍ଦରପଣର ଛଟା । ଏହି ସୁନ୍ଦରପଣକୁ କମଳାର ଆଖି ସହି ପାରିଲା ନାହିଁ । ଏତେ ପରେ ବି ଆଖି, କାନ, ନାକ, ଅବୟବ, ସୁନ୍ଦରପଣ । ଏତେ ପରେ ବି ବଂଚିବାର ଆଦ୍ୟ ଓଁକାର, "କୁଆଁ ଆଁ... କୁ... ଆଁ ଆଁ ଆଁ... ।

କମଳା ପ୍ରକୃତରେ ଭୟ ପାଇଗଲା । ତଥାପି ସେ ସୁନ୍ଦରପଣର ଆହ୍ୱାନକୁ ଏଡାଇ ଦେଇ ପାରୁନାହିଁ । ଗୋଟିଏ ମାଂସ ପିଣ୍ଡୁଳା ଯେ ଏତେ ରୂପ ନେଇ ଆସେ ! ଆକାର ଗ୍ରହଣ କରେ ! ପାପ ଏପରି ସୁନ୍ଦର ଦିଶେ ! ଅନେକ ଥର ଦେଖିଲେ ବି ଅବସାଦ ଆସେ ନାହିଁ । କମଳାର ଦେଖି ସାରିବା କାମ ଶେଷ । ସେ ଆଉ ବେଶୀ ସମୟ ବିମୋହିତ ହୋଇ ରିହଲା ନାହିଁ । ଏହି ସୁନ୍ଦରପଣକୁ ସେ ଧରି ପାରିନାହିଁ । ହୁଏତ ଧରି ପାରିବ ନାହିଁ । ତାହା ପରେ ସମାଜ ବସିଛି ବାହାରେ । ଏ ଝିଅଟି କିନ୍ତୁ ହୁଏତ ସଫଳ ହୋଇଯାଇପାରେ । କମଳା ଏପରି ହେବାକୁ ଦେବ ନାହିଁ । ଶେଷ ଚେଷ୍ଟା କଲା ସେ ।

ଝିଅଟିର ଚେତା ଫେରିଆସିଛି, ସେତେବେଳକୁ । ତା' ଆଖି ଦୁଇଟିରେ ଅପାର ବିସ୍ମୟ । ଏତେ ଯନ୍ତ୍ରଣା ପରେ ବି ଝିଅଟିର ଓଠରେ ହସଟିଏ ଫୁଟି ଉଠିଲା । ଫିକା ହସ । ତା' ଦେହ ସହିତ ପଦ୍ମନାଡରେ ବଂଧା ହୋଇ ରହିଛି ଏକ ସୁନ୍ଦରପଣ । ସୁନ୍ଦରପଣ ସହ ଝିଅଟି ଏବେ ଅନ୍ତରଙ୍ଗ । ଖୁବ୍ ବେଶି ଅନ୍ତରଙ୍ଗ ।

କମଳା ପୁଣି ଥରେ ଗର୍ଜି ଉଠିଲା, "ଚାହିଁଚୁ କ'ଣ ବେ ବେଧ, ମାର୍ ତାକୁ । ମାର୍ । ମାର୍‌ବେ... ।" ତାହା ପରେ ଝିଅଟିର ପେଟକୁ ପୁଣି ଏକ ଶକ୍ତ ଗୋଇଠା ପକାଇଲା ସେ । ଝିଅଟିର ଆତ୍ମା ଭିତରୁ ଚିତ୍‌କାରଟିଏ ବାହାରି ଆସିଲା ଯନ୍ତ୍ରଣାର । ସେହି ଯନ୍ତ୍ରଣା ପାଇଁ ଆଉ ଶବ୍ଦ ନାହିଁ । ଝିଅଟିର ହାତ ଦୁଇଟି ବଢିଆସିଲା ଆଗକୁ, ଯନ୍ତ୍ର ଭଳି ।

କମଳା ସେତେବେଳକୁ ଆଉ ନଥାଏ ପାଖରେ ।

ଗମ୍ଭୀରି ଘରର କବାଟକୁ ଅତି ଆସ୍ତେ ଆଉଜାଇ ଆଣି ବାହାରକୁ ଆସିଲା ବେଳକୁ ଅତି କ୍ଷୀଣ କଣ୍ଠରେ କହିଥିଲା କମଳା ଅନ୍ୟ କାହାରିକୁ ନ ଶୁଭିଲା ଭଳି, "ପିଲାଛୁଆ ନେଇ ଘର କରିଚି, ଏ କାମ ମୁଁ ପାରିବିନି, ପାରିବି ନାହିଁ ?

ଗମ୍ଭୀରି ଘର ଭିତରେ ସେତେବେଳକୁ ଗୋଟିଏ ଆତତାୟୀର ଆଗକୁ ବଢୁଥିବା ହାତ ଦୁଇଟି ନିଜ ବେକ ପାଖକୁ ହିଁ ଫେରି ଆସୁଥାଏ ।



# ଜଗୁମାଷ୍ଟ୍ରେ

## ତୁଷାରକାନ୍ତି ପଣ୍ଡା

ମନଭିତରେ ସ୍ମୃତିସବୁ ଧରି ରଖିବାର ବୟସ ହେଲାପରେ ବାପା, ବୋଉଙ୍କ ବ୍ୟତୀତ ଆଉଜଣଙ୍କୁ ଭଲପାଇବାକୁ ଇଚ୍ଛା ହୋଇଥିଲା । ସେ ଥିଲେ ଜଗୁ ମାଷ୍ଟ୍ରେ । ଆମ ଗାଁ'ର ପିଲାମାନଙ୍କ ପାଇଁ ସେ କଢ଼ାଗଣ୍ଡା ପଣକିଆ ଓ ଶୁଦ୍ଧ ବନାନ ଶିଖାଇ ଛାତ୍ର ଜୀବନର ମୂଳଦୁଆ ଗଢ଼ିବାର ଅବଧାନ ଥିବାବେଳ ମୋର କ୍ଷୁଦ୍ର ହୃଦୟର ନିଭୃତରେ ତାଙ୍କ ପାଇଁ ସ୍ୱତନ୍ତ୍ର ସ୍ଥାନଟିଏ ସୃଷ୍ଟି ହୋଇଯାଇଥିଲା । ପ୍ରତିଦିନ ଚାଟଶାଳୀର ପ୍ରାର୍ଥନା ''ଅଖିଳ ବ୍ରହ୍ମାଣ୍ଡ ପତି ମୋ ଜୀବନ ସ୍ୱାମୀ, ହେ ପରମ ପିତାମାତା ପ୍ରଭୁ ଅନ୍ତର୍ଯ୍ୟାମୀ'' ପିଲାମାନଙ୍କ ସଙ୍ଗରେ ଗାଇବା ବେଳେ ଅଜ୍ଞାତରେ ମାଷ୍ଟ୍ରଙ୍କ ମୁହଁକୁ ଚାହିଁଦେଇ ମୋ କଣ୍ଠସ୍ୱର ହଠାତ୍ ଅମି ଯାଉଥିଲା । ପାଞ୍ଚ ଫୁଟରୁ ସାମାନ୍ୟ ଉଚ୍ଚ, ସାଧାରଣ ସ୍ୱାସ୍ଥ୍ୟ ଓ ସବୁବେଳେ ହସୁଥିବା ମଣିଷଟି ଭିତରେ ଏକ ଅତିମାନବୀୟ ଗୁଣର ସନ୍ଧାନ ମୁଁ ଯେ ବାଲ୍ୟ ଜୀବନରୁ ପାଇପାରିଥିଲି, ପରିଣତ ବୟସରେ ସ୍ପଷ୍ଟ ବୁଝି ହୋଇଥିଲା ।

ଜଗୁ ମାଷ୍ଟ୍ରେ ଯେ ଆଦ୍ୟ ଜୀବନରେ ଜଗନ୍ନାଥ ନାୟକ ନାମଧାରୀ ଏକ ସାଧାରଣ ମଣିଷ ଥିଲେ ଏବଂ ଉତ୍କଟ ଅର୍ଥାଭାବରୁ ମାତ୍ର ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ, ଅନେକ ସମୟରେ ବିଶ୍ୱାସ ହେଉ ନଥାଏ । ନିଜ ପରିବାରର ଆର୍ଥିକ ଦୁଃସ୍ଥିତି କାରଣରୁ କିଶୋର ବୟସରେ ନିଜେ ରୋଜଗାର କରି ପେଟ ଚାଖଣ୍ଡକ ପୋଷିବା ପାଇଁ ସେ କଲିକତା ମହାନଗରୀକୁ ଚାଲିଯିବା କଥା ଅନେକେ କୁହନ୍ତି । କଲିକତା ସହରରୁ ଫେରିବା ପରେ ନିଜ ଗାଁ'ରେ ପ୍ରାଥମିକ ଶିକ୍ଷାଦାନ ବ୍ୟବସ୍ଥାକୁ ଅନୁମୋଦନ କରିପାରେନି ତାଙ୍କର ହୃଦୟ । ଚାଟଶାଳୀଟିଏ ଆରମ୍ଭ କରନ୍ତି ଗାଁ'ରେ । କେତେଜଣ ବଦାନ୍ୟ ବ୍ୟକ୍ତିଙ୍କ ଦାନରେ ଗଢ଼ି ଉଠିଥିବା ଲାଇବ୍ରେରୀ ଘରେ ଗାଁ'ପିଲାଙ୍କର ଶିକ୍ଷାଦାନର ପଡ଼େ ଏକ ଶକ୍ତ ମୂଳଦୁଆ । ଏକଦା ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷା ଲାଭ କରି ପାରିଥିବା ଜଗନ୍ନାଥ ପ୍ରାଥମିକ ଶିକ୍ଷାଦାନର ସ୍ଥିର କରି ଗାଁ'ର ପିଲାଠାରୁ ବୁଢ଼ାଯାଏ ସମସ୍ତଙ୍କର ହୋଇଯାଆନ୍ତି 'ଜଗୁମାଷ୍ଟ୍ରେ' ।

ନୂଆକରି ଚାଟଶାଳୀଟିଏ ଗାଁ'ରେ ଆରମ୍ଭ କରି ସେ ଯେ କାହିଁକି ସମସ୍ତଙ୍କର ଅପ୍ରିୟ ହୋଇଯାଇଥିଲେ, ମୁଁ ସେତେବେଳେ ବୁଝିପାରିନଥିଲି । ବାପାବୋଉଙ୍କ ବ୍ୟତୀତ ଗାଁ'ରେ ଅଧିକାଂଶ ତାଙ୍କୁ ସନ୍ଦେହ ଚକ୍ଷୁରେ ଦେଖୁଥିଲେ । ପରେ ବୁଝିଥିଲି ଗାଁ'ର ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକଦ୍ୱୟଙ୍କର ପ୍ରଭାବ ନ୍ୟୁନ ହୋଇଯିବାର ଆଶଙ୍କାର ଶରବ୍ୟ ହୋଇଥିଲେ ମାଷ୍ଟ୍ରେ । ଗ୍ରାମ୍ୟ ଜୀବନ ଉପରେ ଏକଦା ପ୍ରଭାବ ବିସ୍ତାର କରି ରାଜନୀତିରେ ଅଧିକାଂଶ ସମୟ ଅତିବାହିତ କରୁଥିବା ଶିକ୍ଷକଦ୍ୱୟ ଗ୍ରାମବାସୀ ଭୁଲିଯାଇଥିବା ଏକ ଚରିତ୍ରର ପୁନଃ ଆବିର୍ଭାବକୁ ସହ୍ୟ କରିପାରିନଥିଲେ । ଆଶା-ଆଶଙ୍କା-ଦ୍ୱନ୍ଦ୍ୱ ଭିତରେ ମାତ୍ର ଦଶଟି ପିଲାରେ ମାଷ୍ଟ୍ରଙ୍କର ଚାଟଶାଳୀ ବର୍ଷେ ପର୍ଯ୍ୟନ୍ତ କୌଣସି ପ୍ରକାରେ ଚାଲିଥିଲା । ପ୍ରତ୍ୟେକ ଛାତ୍ରଛାତ୍ରୀଙ୍କ ଠାରୁ ମାସକୁ ମାତ୍ର

ଟଙ୍କାଟିଏ ନେଉଥିବା ମାଷ୍ଟ୍ରେ ସେ କେତେଦିନ କେମିତି ଚଳିଥିବେ ପରବର୍ତ୍ତୀ ଜୀବନରେ ଅନେକଥର ପ୍ରଶ୍ନ ହୋଇ ରହିଥିଲା ମୋ ନିମନ୍ତେ ।

ଖଣ୍ଡେ ଧୋତି ଏବଂ ଗୋଟିଏ ଚାଦରରେ ପରିତ୍ୟକ୍ତ ଲାଇବ୍ରେରୀ ଘରେ ନିଜ ହାତରେ ରୋଷେଇ କରି ଖାଉଥିବା ମାଷ୍ଟ୍ରଙ୍କର ପିଲାମାନଙ୍କ ଉପରେ ପ୍ରଭାବ କ୍ରମେ ସ୍ପଷ୍ଟ ହୋଇ ଆସୁଥିଲା । ଯେଉଁ ଗାଁରୁ ଗୋଟିଏ ମାତ୍ର ବିଦ୍ୟାର୍ଥୀ ଛାତ୍ରବୃତ୍ତି ପାଇବାକୁ ଯୋଗ୍ୟ ବିବେଚିତ ହେଉ ନଥିଲା, ପର୍ଯ୍ୟାୟକ୍ରମେ ଶିକ୍ଷା ଜିଲ୍ଲାର ସମସ୍ତ ବୃତ୍ତି କେବଳ ଆମ ସ୍କୁଲର ପିଲାମାନଙ୍କୁ ମିଳିବା ଆରମ୍ଭ ହୋଇଥିଲା । ସେଥିରେ ବିଦ୍ୟାଳୟର ଶିକ୍ଷକ ଦ୍ୱୟଙ୍କର ଆଦୌ କୃତିତ୍ୱ ନଥିଲା । ଥିଲା ମାଷ୍ଟରଙ୍କର ତପସ୍ୟାର ଫଳ । ପ୍ରତ୍ୟେକ ପିଲାର ମେଧାଶକ୍ତିକୁ ବିଚାରକୁ ନେଇ ସେ ତା'ର ଶିକ୍ଷାଦାନର ବ୍ୟବସ୍ଥା କରୁଥିଲେ । ତାଙ୍କର ସବୁଠୁଁ ପ୍ରିୟ ଛାତ୍ର ଥିଲା ସରୋଜ । ପ୍ରତ୍ୟେକଦିନ ସକାଳୁ ପ୍ରଥମେ ସେ ଚାଟଶାଳୀରେ ପହଞ୍ଚୁଥିଲା ଏବଂ ତା'ର ଅଭୂତପୂର୍ବ ମେଧାଶକ୍ତି ବଳରେ ସମସ୍ତ ପାଠ ଅନାୟାସରେ ଆୟତ୍ତ କରୁଥିଲା ।

ମାଷ୍ଟ୍ରଙ୍କର ପ୍ରତିଭା ସମସ୍ତେ ସ୍ୱୀକାର କରିବାକୁ ବାଧ୍ୟ ହୋଇଥିଲେ । ଆମ ଗାଁ ବ୍ୟତୀତ ନିକଟବର୍ତ୍ତୀ ଗାଁରୁ ବିଦ୍ୟାର୍ଥୀମାନେ କ୍ରମେ ତାଙ୍କର ଛାତ୍ର ହେବାକୁ ଆରମ୍ଭ କଲେ । ଚାଟଶାଳୀଟି ଏକ କ୍ଷୁଦ୍ର ବିଦ୍ୟାଳୟରେ ପରିଣତ ହୋଇଥିଲା । ନିଛାଟିଆ ବରଗଛ ମୂଳେ ଲାଇବ୍ରେରୀର ମନୋଜ୍ଞ ପରିବେଶରେ କେବଳ ଯେ ବିଦ୍ୟାର୍ଥୀମାନେ ଅଧ୍ୟୟନ କରୁଥିଲେ ତା' ନୁହେଁ, ପ୍ରତ୍ୟେକ ପିଲାଙ୍କୁ ଏକ ଆଦର୍ଶ ନାଗରିକ କରି ଗଢ଼ିତୋଳିବାରେ ମାଷ୍ଟ୍ରଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ ଥିଲା । ଶିକ୍ଷା ସମାପ୍ତି ପରେ ମଧ୍ୟ ଛାତ୍ରଛାତ୍ରୀମାନେ ମାଷ୍ଟ୍ରଙ୍କ ସଂଗରେ ସମ୍ପର୍କ ରଖିବାକୁ ଆରମଭ କରିଥିଲେ ଏବଂ ଉଚ୍ଚ ବିଦ୍ୟାଳୟ ତଥା ମହାବିଦ୍ୟାଳୟମାନଙ୍କରେ ମେଧାବୀ ଛାତ୍ର ରୂପେ ପରିଗଣିତ ହେଉଥିଲେ ।

ନିଜର ଦୈନନ୍ଦିନ ଆବଶ୍ୟକତା ପୂରଣ କରିସାରିବା ପରେ ମାଷ୍ଟ୍ରଙ୍କ ନିକଟରେ କିଛି ବଳକା ଟଙ୍କା ରହିବାକୁ ଆରମ୍ଭ ହୋଇଥିଲା । ଗୁରୁକୁଳ ଆଶ୍ରମ ଢାଞ୍ଚାରେ ଏକ ସ୍ଥାୟୀ ଚାଟଶାଳୀ ଗୃହ ଓ କେତେକ ଛାତ୍ରଙ୍କ ନିମନ୍ତେ ଏକ ଛାତ୍ରାବାସ ପ୍ରତିଷ୍ଠା କରିବାର ସ୍ୱପ୍ନ ଦେଖିଥିଲେ ସେ । ଏ ବିଷୟରେ ବାପାଙ୍କ ସାଙ୍ଗରେ ପରାମର୍ଶ କରିବା ମୁଁ ଶୁଣିପାରିଥିଲି । ଗାଁରେ ଭାଗବତ ଟୁଙ୍ଗୀର ପ୍ରଭାବ କମିଆସୁଥିବା ଏବଂ ପରସ୍ପର ଭିତରେ ଅବୁଝାମଣାର ସୂତ୍ରପାତ ହେବାବେଳକୁ ବାପା ମାଷ୍ଟରଙ୍କର ଏ ପ୍ରସ୍ତାବଟି ସମୟୋପଯୋଗୀ ଭାବି ଗ୍ରହଣ କରିଥିଲେ । ପ୍ରସ୍ତାବଟି ଯେତେବେଳେ ସ୍ୱତନ୍ତ୍ର ଭାବେ ଆହୂତ ଏକ ଗ୍ରାମସଭାରେ ଉପସ୍ଥାପିତ କରାଯାଇଥିଲା, ଦୃଢ଼ ଭାବରେ ବିରୋଧ କରିଥିଲେ ଆମ ଗାଁର ପ୍ରତିଷ୍ଠିତ ଓ ବିତ୍ତଶାଳୀ ବ୍ୟକ୍ତି ଗଦାଧରବାବୁ । ତାଙ୍କ ମତରେ ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବରେ ପ୍ରଭାବିତ ସମାଜରେ ଗୁରୁକୁଳ ଆଶ୍ରମ ଢାଞ୍ଚାରେ ପ୍ରସ୍ତାବିତ ବିଦ୍ୟାଳୟର କୌଣସି ମୂଲ୍ୟ ନାହିଁ ଏବଂ ଅଳ୍ପ କେତେଦିନ ପରେ ଚାଟଶାଳୀରେ ପାଠ ପଢ଼ିବାକୁ ମଧ୍ୟ ଛାତ୍ରର ଅଭାବ ହେବ । ଅଧିକାଂଶ ଗ୍ରାମବାସୀ ପ୍ରସ୍ତାବିତ ଆଦର୍ଶ ବିଦ୍ୟାଳୟ ଗଠନର ପ୍ରତିଷ୍ଠାକୁ ବିରୋଧ କରିଥିଲେ । ନିଜର ଇଚ୍ଛା ବିରୁଦ୍ଧରେ ଯେ ଗ୍ରାମବାସୀମାନେ ଗଦାଧରବାବୁଙ୍କ ପ୍ରଭାବରେ ପ୍ରଭାବିତ ହୋଇଥିଲେ ମୁଁ ପରେ ବୁଝିପାରିଲି ।

ଚାଟଶାଳୀ ପାଠ ଶେଷ କରି ମୁଁ ନିକଟବର୍ତ୍ତୀ ଏକ ହାଇସ୍କୁଲରେ ନାମ ଲେଖାଇଥାଏ । ସେଦିନ ଗାଁକୁ ଫେରି ଦେଖେ ତ ତୁମୁଳକାଣ୍ଡ । ଦୁଇଟି ସାହି ଭିତରେ ପଞ୍ଚାୟତ ପୋଖରୀରେ

ମାଛଧରାକୁ କେନ୍ଦ୍ର କରି ପିଟାପିଟି ଆରମ୍ଭ ହୋଇଯାଇଛି । ଦୁଇପଟରେ ନିଆଁ କୁହୁଳୁଥାଏ । ଅଶ୍ରାବ୍ୟ ଭାଷାରେ ଗାଳିଗୁଲଜ ଓ ପରସ୍ପର ପ୍ରତି ଅସୂୟା ଭାବ ମୁଁ ଜୀବନରେ ପ୍ରଥମ ଥର ନିମନ୍ତେ ଅନୁଭବ କରିଥିଲି । ମିଳାମିଶାର ଚେଷ୍ଟା କରି ମାଷ୍ଟ୍ରେ ଦୁଇ ପରସ୍ପର ବିରୁଦ୍ଧ ଗୋଷ୍ଠୀର ଶତ୍ରୁ ହୋଇଯାଇଥିଲେ । ଉଭୟ ପକ୍ଷ ମାଷ୍ଟ୍ରଙ୍କ ନିକଟରେ ଦାବୀ କଲେ ପରସ୍ପର ବିରୁଦ୍ଧ ସାହିର ପିଲାମାନଙ୍କର ଚାଟଶାଳୀରେ ପାଠପଢ଼ା ବନ୍ଦ କରିଦେବା ପାଇଁ । ମାଷ୍ଟ୍ରେ ହାତଯୋଡ଼ି ଯାହା ବୁଝାଉଥାନ୍ତି ସେ ସବୁ ଭୁଲିବାର ନୁହେଁ । ସେ କହୁଥାନ୍ତି, "ମୋତେ ଟିକିଏ ବୁଝିବାକୁ ଚେଷ୍ଟା କର ତୁମେମାନେ । ସାମାନ୍ୟ କେତେଟା ମାଛ ଯେ ତୁମ ଭିତରେ ଏତେବଡ଼ ଫାଟ ସୃଷ୍ଟି କରିବ ମୁଁ ଚିନ୍ତା କରିପାରୁନାହିଁ । ତୁମମାନଙ୍କ ଭିତରେ ଥିବା ସ୍ନେହ, ମମତା ଓ ପରସ୍ପରକୁ ଭଲପାଇବା ତ ମୋତେ ଏ ଗାଁକୁ ଟାଣିଆଣିଛି । ଏଇ ମାଟିର ପିଲାମାନଙ୍କୁ ମଣିଷ ପରି ମଣିଷ କରିବା ପାଇଁ ମୁଁ ଚାଟଶାଳୀଟିଏ ଖୋଲିଛି । କେମିତି ବନ୍ଦ କରିବି ପିଲାମାନଙ୍କୁ ପାଠ ପଢ଼ାଇବା । ମୋ ଜୀବନରେ ଏଇ ପିଲାମାନେ ତ ସର୍ବସ୍ୱ । ସେମାନଙ୍କ ଭିତରୁ ଜଣକୁ ମଧ୍ୟ ପରିତ୍ୟାଗ କରିବା ମୋ ନିକଟରେ ସମ୍ଭବ ନୁହେଁ ।" ଉଭୟ ପକ୍ଷରୁ ସମସ୍ୱରରେ ଗର୍ଜନ ଶୁଭିଥିଲା, "ତା'ହେଲେ ଅବଧାନେ ତମକୁ ଏ ଗାଁ ଛାଡ଼ିବାକୁ ପଡ଼ିବ ।"

ମାଷ୍ଟ୍ରେ ଦୁଃଖରେ ଚାଟଶାଳୀ ବନ୍ଦ କରିଦେଇଥିଲେ । ବଖୁରୀକିଆ ଲାଇବ୍ରେରୀ ଘରଟାରେ ଆପଣାକୁ କବାଟ କିଳି ଦେଇଥିଲେ । ନିଥର ହୋଇଯାଇଥିଲା ଗାଁଟା । ସୂର୍ଯ୍ୟ ଉଦୟ ପରେ ଉଷାର ପ୍ରଥମ କିରଣ ପୃଥିବୀକୁ ଛୁଉଁ ନ ଛୁଉଁଣୁ ଚାଟଶାଳୀରୁ ସମସ୍ୱରରେ ଶବ୍ଦାୟିତ ହେଉଥିବା ପବିତ୍ର ପ୍ରାର୍ଥନାର ସ୍ୱର 'ଅଖିଳ ବ୍ରହ୍ମାଣ୍ଡ ପତି ମୋ ଜୀବନ ସ୍ୱାମୀ' ଆଉ ପ୍ରତିଧ୍ୱନି ତୋଳୁ ନଥିଲା ପ୍ରତ୍ୟେକଙ୍କ ହୃଦୟରେ । ଲାଇବ୍ରେରୀର ନୁଆଁଣିଆ ଚାଳଘରୁ ମାଷ୍ଟ୍ରେ ରୋଷେଇ କରିବାର ପ୍ରତୀକ ଧୂମ୍ରକୁଣ୍ଡଳୀ ମଧ୍ୟ ଉଠିବା ବନ୍ଦ ହୋଇଯାଇଥିଲା । ଦୁଇଦିନ ପରେ ଗାଁ ଲୋକଙ୍କ ମଧ୍ୟରେ ଭାଲେଣି ପଡ଼ିଯାଇଥିଲା । ବାପାଙ୍କର ମଧ୍ୟସ୍ଥତାରେ ଉଭୟପକ୍ଷଙ୍କର ଏକ ଆଲୋଚନା ଡକରାଯାଇଥିଲା । ମାଷ୍ଟ୍ରଙ୍କୁ ଏକପ୍ରକାର ଜବରଦସ୍ତ ବାହାର କରାଯାଇଥିଲା ଲାଇବ୍ରେରୀ ଘର ଭିତରୁ । ଉଭୟ ପକ୍ଷ ନିଜର ଦୋଷ ସ୍ୱୀକାର କଲାପରେ ଗଦାଧରବାବୁଙ୍କ କୁଟୀଳାତା ପଦାରେ ପଡ଼ିଯାଇଥିଲା । ଗୋଷ୍ଠୀ କନ୍ଦଳରୁ ରାଜନୈତିକ ଫାଇଦା ଉଠାଇବା ତାଙ୍କର ଉଦ୍ଦେଶ୍ୟ ଥିଲା । ସେହିଦିନଠାରୁ ଗ୍ରାମବାସୀମାନଙ୍କ ଭିତରେ ତାଙ୍କର ପ୍ରଭାବ ହ୍ରାସ ପାଇଥିଲା ।

ସକାଳେ ଚାଟଶାଳୀ ହେଉଥିବା ଛୋଟିଆ ଘର ନିକଟରେ ନୂଆ ବଖରାଟିଏ ଚାଳଘର ତିଆରି ହେଲା ସଂଧ୍ୟାରେ ଆରମ୍ଭ ହେଲା ଭାଗବତ ଟୁଙ୍ଗୀର ଆସର । ସେହଦିନ ସଂଧ୍ୟାରୁ ରାମାୟଣ ପଢ଼ା ଆରମ୍ଭ ହୋଇଥିଲା । ତାପରେ ଗାଁ ଛାଡ଼ି ଉଚ୍ଚଶିକ୍ଷା ନିମନ୍ତେ ସହରକୁ ଯିବା ପର୍ଯ୍ୟନ୍ତ ଆମ ଗାଁରେ ଗୋଳମାଳ ହେବା ମୁଁ ଦେଖି ନଥିଲି । ଧନୀ ଗରୀବ ନିର୍ବିଶେଷରେ ଆମ ଗାଁର ପ୍ରତ୍ୟେକ ପରିବାରରେ ଏକାନ୍ତ ନିଜର ହୋଇଯାଇଥିଲେ ମାଷ୍ଟ୍ରେ । ପ୍ରତ୍ୟେକଙ୍କ ସୁଖରେ ସୁଖୀ ଓ ଦୁଃଖୀ ହେଉଥିଲେ । ସବୁଠୁଁ ବେଶୀ ଅନ୍ତରଙ୍ଗ ହୋଇଥିଲେ ଆମ ପରିବାର ସଂଗରେ । ତାଙ୍କର ଏକାକୀ ଜୀବନରେ ଆମ ପରିବାର ଭିତରେ ଅନ୍ତରଙ୍ଗତା ହୁଏତ ଖୋଜି ପାଇଥିଲେ ।

ସେଥର କଲେଜ ଛୁଟିରେ ଗାଁକୁ ଆସି ଦେଖେତ ବାଦୀପାଲା ଚାଲିଛି । ମାଷ୍ଟ୍ରଙ୍କୁ ପାଇଲି ପାଲାମଣ୍ଡପ ସାମ୍ନାରେ । ପାଲା ଗାୟକ ବର୍ଣ୍ଣନା କରୁଛନ୍ତି ଶ୍ରୀକୃଷ୍ଣଙ୍କର ପ୍ରଭାସ ଯଜ୍ଞ । ଯଜ୍ଞରେ ପୂର୍ଣ୍ଣାହୂତି ପ୍ରଦାନ କରୁଛନ୍ତି ଶ୍ରୀକୃଷ୍ଣ । ସମ୍ମୁଖରେ ମାତା ଦେବକୀ । ଯଜ୍ଞଶାଳା ବାହାରେ ଅନିମନ୍ତ୍ରିତ

ଯଶୋଦା । ଅପେକ୍ଷାମାଣ ଯଶୋଦାଙ୍କୁ ପ୍ରହରୀ ବାଧା ଦେଉଛି ଯଜ୍ଞଶାଳାକୁ ଯିବା ପାଇଁ । ତାଙ୍କ ଚକ୍ଷୁରୁ ଝରୁଛି ବାତ୍ସଲ୍ୟ ସ୍ନେହ ଓ ମମତା । ଆନନ୍ଦାଶ୍ରୁରେ ପ୍ଲାବିତ ମାତୃହୃଦୟ ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହେଁ ଯେ ଶ୍ରୀକୃଷ୍ଣ ଏ ଭିତରେ ଅନେକ ବଡ଼ ହୋଇଯାଇଛନ୍ତି । ଆକୁଳରେ ସେ ଡାକୁଛନ୍ତି- "ମୋ କହ୍ନେଇରେ । ମୋ ନୀଳମଣିରେ, ମୋ କୋଳକୁ ଆ'ରେ ମୋ' କଳାମାଣିକ । ତୋ ନିକଟକୁ ଯିବାକୁ ଏ ପ୍ରହରୀ ବାଧା ଦେଉଛି । କହୁଛି ମୁଁ ତୋ ମା' ନୁହେଁ । ତୋ ମା' ଦେବକୀ ।" ମାଷ୍ଟ୍ରଙ୍କ ସମ୍ମୁଖରେ ଠିଆହେଲି । ତାଙ୍କ ଚକ୍ଷୁରେ ଧାରାଶ୍ରାବଣ । ଚିବୁକ ଭିଜିଯାଇଛି । ଆତ୍ମବିସ୍ମୃତ ମଣିଷଟିର ବାହାର ଦୁନିଆ ପ୍ରତି ଧ୍ୟାନ ନାହିଁ । ବିଶ୍ୱାସ ହେଉ ନଥିଲା ବିବାହ କରି ସଂସାର କରିନଥିବା ମଣିଷଟିର ମନରେ ଏତେ ଦରଦ । ମାଷ୍ଟ୍ରେ ଯେ ତାଙ୍କର ସମସ୍ତ ଛାତ୍ରଛାତ୍ରୀଙ୍କୁ ସନ୍ତାନ ଜ୍ଞାନ କରୁଥିଲେ ସେଦିନ ମୁଁ ସ୍ପଷ୍ଟ ବୁଝିପାରିଥିଲି ।

ମାଷ୍ଟ୍ରଙ୍କର ପ୍ରିୟଛାତ୍ର ସରୋଜ ଯେଉଁଦିନ ସର୍ବଭାରତୀୟ ପରୀକ୍ଷାରେ ପ୍ରଥମ ହୋଇ ଉଚ୍ଚପଦସ୍ଥ ଅଧିକାରୀ ହେଲା ସେଦିନ ମାଷ୍ଟ୍ରେ ଆମ ଘରକୁ ଏ ସମ୍ବାଦ ଦେବା ପାଇଁ ଆସିଥିଲେ । ଆଖି ଦୁଇଟିରୁ ଆନନ୍ଦାଶ୍ରୁ ପୋଛୁ ପୋଛୁ କହିଥିଲେ- "ମୋ ତପସ୍ୟା ଆଜି ସଫଳ ହୋଇଛି । ତୁ ଯଦି ସରୋଜ ପରି ପରିଶ୍ରମ କରିଥାନ୍ତୁ ।" ସେ ଆଉ କହିପାରିନଥିଲେ । ମୋ ପାଇଁ ତାଙ୍କ ଅନ୍ତରରେ ଥିବା ସ୍ନେହ ତାଙ୍କ ଚକ୍ଷୁଦ୍ୱୟରେ ସ୍ପଷ୍ଟ ପ୍ରତିଭାତ ହୋଇଥିଲା । ସରୋଜ ମାଷ୍ଟ୍ରଙ୍କର ଆଶୀର୍ବାଦ ନେବା ପାଇଁ ଟ୍ରେନିଂ ଯିବା ପୂର୍ବରୁ ଆସିଥିଲା ତାଙ୍କ ନିକଟରୁ । ନିଜର ସମସ୍ତ ସ୍ନେହ ଓ ମମତା ଅଜାଡ଼ି ଦେଇଥିଲେ ମାଷ୍ଟ୍ରେ ତା' ଉପରେ । ଅନ୍ୟାନ୍ୟ ଛାତ୍ର-ଛାତ୍ରୀମାନଙ୍କୁ ସରୋଜର ଉଦାହରଣ ଯେ ସେ ଅନେକଦିନ ପର୍ଯ୍ୟନ୍ତ ଦେଉଥିଲେ ମୁଁ ପରେ ଶୁଣିଥିଲି । ନିଜର ଜଣେ ବାଲ୍ୟବନ୍ଧୁ ଉଚ୍ଚପଦବୀରେ ଅଧିଷ୍ଠିତ ହେବା ମୋତେ ମଧ୍ୟ ଉଲ୍ଲସିତ କରିଥିଲା ।

ଅଧ୍ୟାପକ ଚାକିରୀଟିଏ ପାଇ କଲେଜରେ ଯୋଗଦେବା ପୂର୍ବରୁ ମାଷ୍ଟ୍ରଙ୍କର ପାଦଧୂଳି ନେଇଥିଲି । କହିଥିଲି- "ଆପଣଙ୍କ ଆଶୀର୍ବାଦରୁ ଆପଣଙ୍କର ଉତ୍ତର ଦାୟାଦ ହୋଇଛି ମାଷ୍ଟ୍ରେ । କଲେଜ୍‌ରେ ପିଲାମାନଙ୍କୁ ଶିକ୍ଷାଦାନ କଲାବେଳେ ଆପଣଙ୍କର ଆଶୀର୍ବାଦ ମୋର ପଥ ପ୍ରଦର୍ଶକ ହେବ ।"

ମାଷ୍ଟ୍ରେ ଆଶୀର୍ବାଦ କରିବା ପରିବର୍ତ୍ତେ ମୋତେ ଜଡ଼ାଇ ଧରିଥବଲେ । ତାଙ୍କ ଆଖିରୁ ଆନନ୍ଦାଶ୍ରୁ ପୋଛୁ ପୋଛୁ ମୋ ମୁଣ୍ଡକୁ ସ୍ନେହରେ ଆଉଁସି ଦେବାବେଳେ ଭାବିଥିଲି ମୁଁ ହିଁ ଥିଲି ତାଙ୍କର ସବୁଠାରୁ ପ୍ରିୟ ଛାତ୍ର ।

କିଛିଦିନ ପରେ ଆମ ଜିଲ୍ଲାକୁ ବଦଳି ହୋଇ ଆସିଥିଲା ସରୋଜ । ଏ ଭିତରେ ମାଷ୍ଟ୍ରଙ୍କର ଚାଟଶାଳୀ ଘରତୋଳା ଆରମ୍ଭ ହୋଇଥାଏ । ଏ କାମରେ ସାହାଯ୍ୟ କରୁଥାନ୍ତି ଗାଁର ଏକଦା ବିତର୍କିତ ବ୍ୟକ୍ତି ଗଦାଧରବାବୁ । ତାଙ୍କର ଏକମାତ୍ର ଭେଣ୍ଡିଆ ପୁଅଟି ନିମୋନିଆରେ ପଡ଼ିବା ବେଳେ ମାଷ୍ଟ୍ରେ ଯେ ତାକୁ ଦିନରାତି ଜଗି ବସିଥିଲେ ଏବଂ ହସ୍‌ପିଟାଲ୍ ଯାଇ ତାଙ୍କରେ ଜଣେ ଡାକ୍ତର ଛାତ୍ରକୁ ରୀତିମତ ଧରିନେଇ ଆସିଥିଲେ ଅନେକଦିନ ପରେ ମୁଁ ଶୁଣି ଚକିତ ହୋଇଥିଲି । ତାଙ୍କର ସମସ୍ତ ଜନହିତକର କାର୍ଯ୍ୟକୁ ପ୍ରତ୍ୟକ୍ଷ ଭାବରେ ବିରୋଧ କରୁଥିବା ଏବଂ ଗାଁରେ ଅସ୍ଥିରତା ସୃଷ୍ଟି କରୁଥିବା ଲୋକଟିର ବିପଦବେଳେ ସବୁ ଭୁଲି ମାଷ୍ଟ୍ରେ ନିଜର ସାଧ୍ୟମତେ ସାହାଯ୍ୟ କରିବା କଥା କେମିତି ଅବିଶ୍ୱାସ ଲାଗୁଥିଲା । ଅବଶ୍ୟ ଗଦାଧରବାବୁଙ୍କର ପୁଅଟି ବଂଚି ନଥିଲା । ଏକମାତ୍ର

ପୁତ୍ରର ବିୟୋଗ ପରେ ସେ ମାଷ୍ଟ୍ରଙ୍କର ପରମ ହିତୈଷୀ ହୋଇଯାଇଥିଲେ ଏବଂ ଚାଟଶାଳୀ ଘର ତୋଳାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ ।

ନିଜର ଅତିପ୍ରିୟ ଛାତ୍ର ସରୋଜର ଦ୍ୱାରସ୍ଥ ହୋଇଥିଲେ ମାଷ୍ଟ୍ରେ । ଉଦ୍ଦେଶ୍ୟ ଥିଲା ଗାଁ ମୁଣ୍ଡରେ ଥିବା ଅନାବାଦୀ ଜମିଟିକୁ ଚାଟଶାଳୀ ନାଁରେ କରାଇନେବା । ମୁଁ ଶୁଣି ଆଶ୍ଚର୍ଯ୍ୟ ହୋଇଥିଲି ଯେ ସରୋଜ ମାଷ୍ଟ୍ରଙ୍କୁ ଚିହ୍ନି ନ ପାରିବାର ଅଭିନୟ କରିଥିଲା । ନିଜର ପରିଚୟ ଦେବା ପରେ ମଧ୍ୟ ଦିନ ଦ୍ୱିପ୍ରହରଟାରେ ମାଷ୍ଟ୍ରଙ୍କୁ ଗଣ୍ଡାଏ ଖାଇବାକୁ ଦେବାର ତ ଦୂରର କଥା ଚା' କପେ ମଧ୍ୟ ଯାଚି ନଥିଲା । ନିକଟରେ ଥିବା ସ୍ତ୍ରୀ ସାଙ୍ଗରେ ମାଷ୍ଟ୍ରଙ୍କର ପରିଚୟ କରାଇଦେଇ ନଥିଲା । ନିର୍ଦ୍ଦିଷ୍ଟ ଦରଖାସ୍ତରେ ସ୍ଥାନୀୟ ତହସିଲ୍‌ଦାରଙ୍କ ଅନୁମୋଦନ ଆଣି ଅଫିସ୍‌ରେ ଦେଖା କରିବାକୁ ପରାମର୍ଶ ଦେଇଥିଲା । ଏଇ ଘଟଣା ପରେ ଚାଟଶାଳୀ ଗୃହ ନିମନ୍ତେ ଗଦାଧରବାବୁ ତାଙ୍କର ଅର୍ଦ୍ଧାଧିକ ସମ୍ପତ୍ତି ଦାନ କରିଦେଇଥିଲେ ମଧ୍ୟ ମାଷ୍ଟ୍ରଙ୍କର ହୃଦୟରୁ ଦୁଃଖର ଦୂର ହୋଇ ନଥିଲା । ମଣିଷ ଯେ ଏତେ ସ୍ୱାର୍ଥପର ହୋଇପାରେ ଏବଂ କ୍ଷମତା ଗର୍ବରେ ହିତାହିତ ଜ୍ଞାନ ଭୁଲି ଏକଦା ଏକାନ୍ତ ନିଜର ଲୋକମାନଙ୍କୁ ବି ପର କରିଦେଇପାରେ ତାଙ୍କର ସରଳ ମନ ବିଶ୍ୱାସ କରିବାକୁ ପ୍ରସ୍ତୁତ ହୋଇ ନଥିଲା ।

ମୋର ବିବାହ ଠିକ୍ କରିବା ପାଇଁ ବାପାଙ୍କ ସାଙ୍ଗରେ ମାଷ୍ଟ୍ରେ ନିଜେ ଯାଇଥିଲେ ସହରକୁ ଝିଅ ଦେଖିବାକୁ । ସେଦିନ ବାପା ଓ ସେ ମୋ କଲେଜ କ୍ୱାର୍ଟର୍ସ୍‌ରେ ପହଞ୍ଚିବା ବେଳକୁ ଦିନ ବାରଟା । ଷ୍ଟୋଭ୍ ଲଗାଇ ନିଜେ ରୋଷେଇ କରିଥିଲି ସେଦିନ । ନିଜ ହାତରେ ବାଢ଼ି ମାଷ୍ଟ୍ରଙ୍କୁ ଖୁଆଇବା ବେଳେ ମନେ ହୋଇଥିଲା ତାଙ୍କ ସ୍ନେହର ଋଣରୁ କିଛି ସୁଝିପାରିଛି । ନିଜ ଆଖିର ଦୁଇବିନ୍ଦୁ ଉଦ୍‌ଗତ ଅଶ୍ରୁକୁ ଲୁଚାଇବାକୁ ଚେଷ୍ଟା କରୁଥିଲେ ସେ । ପ୍ରଭାସ ଯଜ୍ଞର ବର୍ଣ୍ଣନା ପାଲା ଗାୟକଙ୍କଠାରୁ ଶୁଣି ତାଙ୍କ ମନରେ ସୃଷ୍ଟି ହୋଇଥିବା ଆତ୍ମବିସ୍ମୃତିକୁ ମୁଁ ପୁଣିଥରେ ତାଙ୍କ ଭିତରେ ଆବିଷ୍କାର କରିଥିଲି । ବିବାହ ପରେ, ମୋ ସହଧର୍ମିଣୀ ପ୍ରଥମ ଦେଖାରେ ମାଷ୍ଟ୍ରଙ୍କ ଆଖିରେ ବାତ୍ସଲ୍ୟ ସ୍ନେହ ଓ ଏକାନ୍ତ ନିଜର ଭାବ ଲକ୍ଷ୍ୟ କରିଥିବାର ସ୍ୱୀକାର କରିଥିଲେ । ମନଃସ୍ତତ୍ତ୍ୱର ଅଧ୍ୟାପିକା ମୋ'ର ଜଣେ ଏକାନ୍ତ ନିଜର ମଣିଷ ଭିତରେ ଆତ୍ମୀୟତା ଖୋଜି ପାଇଥିବାର ଜାଣି ମୁଁ ମଧ୍ୟ ଉଲ୍ଲସିତ ହୋଇଥିଲି ।

ବିବାହର କିଛିଦିନ ପରେ ଅଧ୍ୟାପନା କାର୍ଯ୍ୟରେ ଯୋଗଦେବା ପାଇଁ ଗାଁ ଛାଡ଼ିବା ବେଳେ ମାଷ୍ଟ୍ରେ ଦୁଇଜଣଙ୍କ ମୁଣ୍ଡ ଛୁଇଁ ଆଶୀର୍ବାଦ କରିଥିଲେ । କହିଥିଲେ- 'ତୁମ ଦୁଇଜଣଙ୍କୁ ମୁଁ କିଛି କହିବି । ମୋର ଆଶା ଓ ଦୃଢ଼ ବିଶ୍ୱାସ ତୁମେ ମୋ କଥା ରଖିବ । ବହୁତ ପାଠ ପଢ଼ି ତୁମେ ଆଜି ସମାଜରେ ପ୍ରତିଷ୍ଠିତ । ଏ ଦୁନିଆଁ ସ୍ୱାର୍ଥପର କରିଦେଇଛି ମଣିଷକୁ । ପରସ୍ପର ପ୍ରତି ସ୍ନେହ ମମତା ବଦଳରେ ପରଶ୍ରୀକାତରତା ସମାଜରେ ଛାଇ ଗଲାଣି । ଦୁଃଖରେ କାହାକୁ ଆଉଁସି ଦେଇ ତା' ଆଖିରୁ ଲୁହ ଟିକିଏ ପୋଛିଦେବା ପାଇଁ ଆଜି ମଣିଷର ହାତ ଆଉ ଲମ୍ବିଯାଉ ନାହିଁ । ମୁଁ ସେ କାଳର ମଣିଷ । ତୁମକୁ ପିଲାବେଳରୁ ମୁଁ ଜାଣିଛି । ତୁମ ଭିତରେ ଏକ ଭିନ୍ନ ବ୍ୟକ୍ତିତ୍ୱକୁ ଦେଖିଛି । ବୋହୂମା'ଟି ମୋ'ର ଠିକ୍ ତୁମ ପରି । ବାହାଘର ଆଗରୁ ତା' ଆଖିର ଭାଷାକୁ ମୁଁ ପଢ଼ିଛି । ମୋର ଏତିକି ଉପଦେଶ; ଆତ୍ମକୈନ୍ଦ୍ରିକ ହେବ ନାହିଁ । ସବୁବେଳେ ମନେ ରଖିଥିବ ତୁମ କ୍ଷୁଦ୍ର ପରିବାର ବାହାରେ ଆଉ ଗୋଟିଏ ଦୁନିଆଁ ଅଛି । ସେଠି ଦୁଃଖ ଅଛି । ଅଛି ଯନ୍ତ୍ରଣା । ସେ ଦୁଃଖ

ଏବଂ ଯନ୍ତ୍ରଣାକୁ ଦୂର କରିବାକୁ ନିଜର ସାଧମତେ ଚେଷ୍ଟା କରିବି । ବାପା, ମା' ଓ ଭାଇଭଉଣୀଙ୍କୁ କେବେ ଭୁଲିବନି । ଭୁଲିବ ନାହିଁ ଏ ଗାଁ ମାଟିକୁ ।'

ନଇଁପଡ଼ି ପାଦଧୂଳି ନେଇଥିଲୁ ମାଷ୍ଟ୍ରଙ୍କର । ଗାଁ ଛାଡ଼ି ଗଲାବେଳେ ଆଖିପତା ଓଦା ହୋଇଯାଇଥିଲା ।

ମୁଁ ଓ ମୋ ସ୍ତ୍ରୀ ଅନେକ ସମୟରେ ମାଷ୍ଟ୍ରଙ୍କୁ ଏବଂ ତାଙ୍କ ଉପଦେଶକୁ ମନେ ପକାଉଥିଲୁ । ନିଜ ଜନ୍ମମାଟିକୁ ପର କରିଦେଇ ଭୁଲିଯାଉଥିବା ମଣିଷ ପାଇଁ କେତେ ଆତ୍ମୀୟତା ପୂର୍ଣ୍ଣ ଉପଦେଶ ନଥିଲା ସତରେ । ଆମେ ସ୍ଥିର କରିଥିଲୁ ଜୀବନରେ ଯେତେ ବାଧାବିଘ୍ନ ଆସିଲେ ମଧ ବର୍ଷକୁ ଦି'ଥର ରାସପୂର୍ଣ୍ଣିମା ଓ ରଜପର୍ବରେ ଗାଁକୁ ଯିବୁ । ଅନ୍ତତଃ ସପ୍ତାହଟିଏ କଟାଇବାକୁ କିଆ-ପଳାଶ-ନଡ଼ିଆ ଘେରା ସଙ୍ଗୀତମୟ ପରିବେଶରେ । ଅନ୍ତତଃ ମାସକର ଆୟ କେତୋଟି ଦରିଦ୍ର ପରିବାରର ଦୁଃଖ ଦୂର କରିବା ନିମନ୍ତେ ସାହାଯ୍ୟ ଦେବୁ । ସୁଖଦୁଃଖରେ ଭାଗୀ ହେବୁ ଗ୍ରାମବାସୀଙ୍କର ।

ପ୍ରଥମେ ଆସିଥିଲା ରାସପୂର୍ଣ୍ଣିମା । ସପ୍ତାହଟିଏ ଛୁଟିନେଇ ପହଞ୍ଚିଲୁ ଗାଁରେ । ମାଷ୍ଟ୍ରଙ୍କର ସ୍ୱାସ୍ଥ୍ୟ ଭାଂଗିପଡ଼ିବା ପରି ଲାଗୁଥିଲା । ଚାଟଶାଳୀରେ ସମୟ ଦେଇପାରୁ ନଥିଲେ ସେ । ଗୋଟିଏ ବେଳା ପାଠ ପଢ଼ାଇବା ବନ୍ଦ କରିଦେଇଥିଲେ । ବାର୍ଦ୍ଧକ୍ୟର ଅସହାୟତା ତାଙ୍କ ଆଖିରେ ସ୍ପଷ୍ଟ ବାରିହୋଇ ପଡୁଥିଲା । ଆମର ମାସକର ଆୟରେ ସହରରୁ ଆଣିଥିବା କମ୍ବଳ ତାଙ୍କରି ହାତରେ ବଣ୍ଟାଇଥିଲୁ ହରିଜନ ବସ୍ତିରେ । ଅସହାୟ ବୃଦ୍ଧ ବୃଦ୍ଧାଙ୍କୁ କମ୍ବଳ ବାଣ୍ଟିବା ବେଳେ ତାଙ୍କ ଆଖିରେ ପରିତୃପ୍ତିର ଚିହ୍ନ ସ୍ପଷ୍ଟ ପ୍ରତୀୟମାନ ହେଉଥିଲା ।

ସପ୍ତାହକ ପରେ ସହରକୁ ଫେରିଯିବା ବେଳକୁ ବୋଉକୁ କହିଥିଲି ମାଷ୍ଟ୍ରଙ୍କର ସୁବିଧା ଅସୁବିଧା ବୁଝିବା ପାଇଁ । କେତେଦିନ ପୂର୍ବରୁ ମାଷ୍ଟ୍ରଙ୍କର ରୋଷେଇ କରିବା ବନ୍ଦ ହୋଇଯାଇଥିଲା । ଆମ ଘରେ ନିୟମିତ ଖାଦ୍ୟର ବ୍ୟବସ୍ଥା ହୋଇଥିଲା ତାଙ୍କ ନିମନ୍ତେ ।

ଗଦାଧରବାବୁଙ୍କର ସଂଗରେ ମଧ ନିଭୃତରେ କଥା ହୋଇଥିଲି । ମୋ କଥାରେ ତାଙ୍କ ଆଖିରେ ଲୁହ ଆସିଥିଲା । ମୃତ ପୁତ୍ରର ସ୍ମୃତି ପୁନରୁଜ୍ଜୀବିତ ହୋଇଥିଲା ବୋଧହୁଏ । ସେ ଆଶ୍ୱାସନା ଦେଇ କହିଥିଲେ, 'ଜଣେ ସନ୍ତାନହରା ପିତା ଅସହାୟ ମଣିଷଟିର ଦୁଃଖ ବୁଝିବ ବାବୁ । ମାଷ୍ଟ୍ରେ ତ ଏ ଗାଁରେ ମୋର ଏକମାତ୍ର ବନ୍ଧୁ ।'

ସହରକୁ ଫେରିବା ପରେ ଶୁଣିଥିଲି ସରୋଜ ଗାଁକୁ ଯାଇଥିଲା ତା' ଭାଇମାନଙ୍କଠାରୁ ଭାଗ କରି ଜମି ବିକ୍ରୀ କରି ରାଜଧାନୀରେ ନିର୍ମାଣୋନ୍ମୁଖୀ ତ୍ରିତଳ ପ୍ରାସାଦକୁ ସମ୍ପୂର୍ଣ୍ଣ କରିବା ନିମନ୍ତେ । ମାଷ୍ଟ୍ରଙ୍କୁ ଦେଖା କରିବା ତା' ନିକଟରେ ଅସ୍ୱାଭାବିକ ଥିଲା ।

ମାଷ୍ଟ୍ରଙ୍କ କଥା ବେଶୀ ମନେପଡୁଥିଲା । ଆଖି ଆଗରେ ଭାସିଉଠୁଥିଲା ତାଙ୍କ ରୋଗୀଣା ଏବଂ ଅସହାୟ ମୁହଁ । ନିୟମିତ ଚିଠି ଦେଉଥିବା ମାଷ୍ଟ୍ରଙ୍କ ହାତରୁ ଚିର ପରିଚିତ ପୋଷ୍ଟକାର୍ଡ ଖଣ୍ଡିଏ ଦୁଇ ସପ୍ତାହ ହେଲା ମିଳି ନଥିଲା । ଆମେ ସ୍ଥିର କଲୁ ମାଷ୍ଟ୍ରଙ୍କୁ କିଛିଦିନ ପାଇଁ ଆମ ପାଖରେ ରଖିବୁ ଏବଂ ମେଡ଼ିକାଲ୍ କଲେଜରେ ତାଙ୍କର ସ୍ୱାସ୍ଥ୍ୟ ପରୀକ୍ଷା କରାଇବୁ ।

ଟୁରିଷ୍ଟ କାର୍‌ଟିଏ ଧରି ଗାଁକୁ ବାହାରିପଡ଼ିଥିଲୁ ଶନିବାର ସକାଳେ । ବାଲ୍ୟ, କୈଶୋର ଏବଂ ଆଦ୍ୟ ଯୌବନର ମୋ'ର-ଅତି ଆପଣାର ଗାଁଟିର ମୋତେ ସବୁଦିନେ ଆକର୍ଷିତ କରିଥାଏ ।

ଅଙ୍କାବଙ୍କା କିଆ ଗୋହିରୀ, ପଦ୍ମଫୁଲରେ ପରିପୂର୍ଣ୍ଣ ପଳାଶ ପୋଖରୀ ସାଙ୍ଗକୁ ମାଷ୍ଟ୍ରଙ୍କର ଅଜ୍ଞାତ ଆକର୍ଷଣ ମୋହାଚ୍ଛନ୍ନ କରିଦେଇଥାଏ ମୋତେ ।

ଗାଁ ମୁଣ୍ଡରେ ଜନାରଣ୍ୟ । ଗାଁରେ କୌଣସି ଉତ୍ସବର ଆୟୋଜନ ହେଉଥିଲେ ନିଶ୍ଚୟ ନିମନ୍ତ୍ରଣ କରିଥାନ୍ତେ ଗ୍ରାମବାସୀମାନେ । ଗାଡ଼ି ଅଟକାଇବା ପରେ ଯାହା ଶୁଣିବାକୁ ପାଇଲି ମନ ବିଶ୍ୱାସ କରିବାକୁ ପ୍ରସ୍ତୁତ ହେଉ ନଥିଲା । କୋହର ଉଚ୍ଛ୍ୱାସ ଉଠୁଥିଲା ହୃଦୟର ନିଭୃତରୁ । ମାଷ୍ଟ୍ରେ ଚାଲିଯାଇଥିଲେ ଆଉ ପାରିକି । ଗୋଡ଼ହାତ ସମ୍ପୂର୍ଣ୍ଣ ଅଚଳ ହୋଇ ଅନ୍ୟ ଉପରେ ନିର୍ଭରଶୀଳ ହେବା ପୂର୍ବରୁ ତାଙ୍କର ପୁଣ୍ୟ ଆତ୍ମା ଶରୀର ତ୍ୟାଗ କରିଥିଲା ।

ମାଷ୍ଟ୍ରଙ୍କୁ ସାଙ୍ଗରେ ନେବାର ଥିଲା । ତାଙ୍କ ସ୍ୱାସ୍ଥ୍ୟର ଦ୍ରୁତ ଅବନତି ବିଷୟରେ ଡାକ୍ତର ପରାମର୍ଶ କରିବାର ଥିଲା । କିଛି କରିପାରିଲିନି ତାଙ୍କ ପାଇଁ । ଭାବିଥିଲି ତାଙ୍କ ନିକଟରେ ବସିବି । ତାଙ୍କ ହାତକୁ ମୋ ହାତରେ ଜାକି ଧରି କହିବି- 'ମାଷ୍ଟ୍ରେ ! ଏ ଜୀବନରେ ତୁମର ଉପଦେଶ କେବେହେଲେ ଭୁଲିବିନି । ଏ ଗାଁ, ଏ ମାଟି, କିଆ ଗୋହିରୀ, ପଳାଶ ପୋଖରୀ ଏବଂ ନଡ଼ିଆ ଗଛର ମାୟା ଚିରଦିନ ମୋତେ ଆଛନ୍ନ କରିରଖିବ । ଏ ସଂକୀର୍ଣ୍ଣ ଦୁନିଆରେ ତୁମରି ଉପଦେଶ ହେବ ମୋର ପଥପ୍ରଦର୍ଶକ । ତୁମରି ଉତ୍ସର୍ଗୀକୃତ ଜୀବନ ହେବ ମୋ ପରି ମଣିଷମାନଙ୍କର ଆଦର୍ଶ ।'



# ଜହ୍ନରାତିର ନଟୀ

## ପୁଷ୍ପାଞ୍ଜଳି ନାୟକ

ତମାଳ ସାନଭଉଣୀର ବାହାଘରରେ ହିଁ ଘଟଣାଟି ଘଟିଥିଲା ।

ତମାଳ ସାନଭାଇର ପିଲାଟି ଦିନର ସାଙ୍ଗ । ଚତୁର୍ଥ ପଞ୍ଚମ ଶ୍ରେଣୀରୁ ମୁଁ ତାକୁ ଦେଖି ଆସିଛି । ତେଣୁ ତା' ସାନଭଉଣୀ ମାଳିନୀର ବାହାଘରକୁ ଯିବାଲାଗି ତା'ର ଅନୁରୋଧକୁ ମୁଁ ଏଡ଼ାଇ ପାରିନଥିଲି ।

ଆମେ ପହଞ୍ଚିବାବେଳକୁ ଡେରି ହୋଇଗଲା । ବ୍ରାହ୍ମଣ ଘର, ଦିନ ବାହାଘର । ସେତେବେଳକୁ ବାହାଘର ସରିଗଲାଣି । ବରଯାତ୍ରୀ ଓ ଅନ୍ୟାନ୍ୟ ଅତିଥି ଅଭ୍ୟାଗତ ଖାଇବସିଛନ୍ତି । ଘର ଘୋ ଘୋ ହେଉଛି । ଘରର ସ୍ତ୍ରୀ ଲୋକମାନେ ବନ୍ଧାପନା ଥାଳି ସଜାଡୁଛନ୍ତି । କନ୍ୟାର ଜିନିଷପତ୍ର ସଜାଡୁଛନ୍ତି । କନ୍ୟାକୁ ସଜ କରୁଛନ୍ତି । ଦୂର ବାଟ, ବରକନ୍ୟା ବେଳାବେଳି ବିଦା ହେବେ ।

ସେତିକିବେଳେ ହିଁ ଅଘଟଣଟି ଘଟିଗଲା ।

କନ୍ୟା ମୁହଁ ଧୋଇବାକୁ ବାରିପଟକୁ ଯାଇଥିଲା, ସାବୁନରେ ମୁହଁ ଧୋଉଁ ଧୋଉଁ ହାତର ସୁନାମୁଦିଟି କେଉଁଠି ଖସିପଡ଼ିଲା ।

ମୁହୂର୍ତ୍ତକ ଭିତରେ ହୁଲସ୍ଥୁଲ ପଡ଼ିଗଲା । କନ୍ୟା ହାତରୁ ସୁନା ହଜିବା ଶୁଭ ଲକ୍ଷଣ ନୁହେଁ । ବିଭିନ୍ନ ପ୍ରକାରର ମନ୍ତବ୍ୟ ଆରମ୍ଭ ହୋଇଗଲା । କିଏ କହିଲା ସୁନା ଚାଲିଗଲା ବୋଲି ଭାଗ୍ୟ ଚାଲିଯିବ, କଥାଟା ତା' ନୁହେଁ, କିନ୍ତୁ ବାହାଘର ଦିନ ସୁନା ହଜିବା ଅଶୁଭ । କିଏ କହିଲା, ବରଘରକୁ ଏକଥା କୁହନା । ସେମାନେ କହିବେ, କନ୍ୟା ଅମଙ୍ଗୁଳୀ ।

ତମାଳ ଭଉଣୀର ଶାଶୁଘର ନିପଟ ମଫସଲରେ । ସ୍ୱାମୀ ଯଦିଓ ଶିକ୍ଷିତ, ଚାକିରିଆ । କିନ୍ତୁ ତାକୁ ଯାଇ ଏବେ ସେଇ ମଫସଲରେ ରହିବାକୁ ହେବ । ସମସ୍ତେ ସ୍ୱାଭାବିକ ଭାବେ କନ୍ୟା ଉପରେ ହେବାକୁ ଥିବା ମନ୍ତବ୍ୟ ଲାଗି ଭୟ କରୁଥିଲେ ।

ବାରିପଟେ ଯେଉଁଠି ଢେଙ୍କିଶାଳ ଅଛି, ସେଇଠି ପିଣ୍ଡା ଉପରେ ବସି ମାଳିନୀ ମୁହଁ ଧୋଉଥିଲା ପିଣ୍ଡାତଳ ବର୍ଷାପାଣି ଓ ହାତଧୁଆ ପାଣିରେ କାଦୁଅ ପଚପଚ । ମୁଦି ଖସି ଯାଇଥିଲେ ସେଇଠି କେଉଁଠି ପଡ଼ିବା କଥା । ସମସ୍ତେ ହାତରେ କାଦୁଅ ଚକଟି ଚକଟି ଅଣ୍ଡାଳୁ ଥିଲେ ।

ସେ ମୁହଁ ଧୋଇବାବେଳେ ଛୋଟ ଛୋଟ ପିଲାମାନଙ୍କ ଛଡ଼ା ସେଠାରେ କେହି ନଥିଲେ । ଅପୋଗଣ୍ଡ ଶିଶୁ ସବୁ । ସେ ବୟସରେ ସୁନାରୂପା ଅପେକ୍ଷା ଗୋଡି ବାଲି, ଟେକା ପଥରରେ ସେମାନଙ୍କର ବେଶି ଲୋଭ । ତଥାପି ପଟରାଗଲା ନୂଆ ଜାମା, ପ୍ୟାଣ୍ଟ୍ ଯାତରା ଖର୍ଚ୍ଚର ଲୋଭ ଦେଖାଗଲା କେହି ମାନିଲେ ନାହିଁ ।

ବେଶି ମନଦୁଃଖ କରୁଥିଲେ ମାଳିନୀର ବଡ଼ ବାପା ଯିଏକି ସହରରେ ରହନ୍ତି । ମାଳିନୀର ସବୁ ଗହଣା କିଣିବାର ଦାୟିତ୍ୱ ତାଙ୍କୁ ଦିଆଯାଇଥିଲା । ମାଳିନୀର କୁଆଡ଼େ ସଲଜ୍ଜ ଅନୁରୋଧ

ଥିଲା, ଧଳା ପଥରବସା ମୁଦିଟିଏ ଲାଗି । ତେଣୁ ସେ ଖୋଜି ଖୋଜି ବଡ଼ ଧଳା ପଥର ଥିବା ମୁଦିଟିଏ ଆଣିଥିଲେ । ଓଜନ ଭରିଏ ଥିଲା ।

ବରଯାତ୍ରୀଙ୍କ ପାଖରେ କଥାଟା ପହଞ୍ଚି ନଥିଲା ।

ମାଳିନୀର ବଡ଼ବାପା କହୁଥିଲେ, କେହି କଥାଟା ପ୍ରଘଟ କରିନି । ହଜିଛି ତ ହଜିଛି । ମୁଁ ଅଷ୍ଟମଙ୍ଗଳା ଦିନ ଠିକ୍ ସେମିତି ମୁଦିଟିଏ ଆଣିଦେବି ।

ଠିକ୍ ସେତିକିବେଳେ ହଠାତ୍ ସମସ୍ତେ କୁହାକୁହି ହେଲେ, ଆଉ ଚିନ୍ତା ନାହିଁ, ଏଥର ମୁଦି ମିଳିଯିବ ।

ମୁଁ ଆଶ୍ଚର୍ଯ୍ୟ ହୋଇ ଦେଖିଲି, ରୋଷେଇ ବଖରାରେ ଅନେକ ସ୍ତ୍ରୀଲୋକ ଜଣକୁ ଘେରିଯାଇଛନ୍ତି । ସେ ବେଶ୍ ତୃପ୍ତ ଗଳାରେ କହୁଛି, ଚିନ୍ତା କରନି, ମା' ମନସା ଥାଉଁ ଥାଉଁ ମୁଦିକୁ କେହି ଭୋଗ କରିପାରିବେନି । ମୁଁ ମୁଦି କାଢ଼ିଦେବି ।

ମୁଁ ଅନାଇ ଦେଖିଲି, ପଚିଶ ତିରିଶ ବର୍ଷର ସ୍ତ୍ରୀଲୋକଟିଏ । ଆସନ୍ନସମ୍ଭବା । କଳା କିଟିକିଟ ଦେହ । ଦାନ୍ତଗୁଡ଼ିକ ପାନ ଗୁଡ଼ାଖୁରେ କଳା । ଦେହରେ ପଳେ ମାଂସ ନାହିଁ । ହନୁହାଡ଼ ବାହାରିପଡ଼ିଛି । ରୁକ୍ଷ, ଶୁଷ୍କ ଚର୍ମ । ଦୁଇ ହାତରେ ବୋଝେ ରଙ୍ଗଛଡ଼ା ପାଣିକାଚ । ବେକରେ ବଡ଼ ତୁଳସୀମାଳିଟିଏ । ଶାୟା ବ୍ଲାଉଜ ନାହିଁ । ପିନ୍ଧିଥିବା ଶାଢ଼ିଟି ମଇଳା କୋଚଟ, ଉତ୍କଟ ଦାରିଦ୍ର୍ୟ ଓ ଅବହେଳାର ଚିହ୍ନ ତା'ର ପ୍ରତିଟି ଅଙ୍ଗରେ ।

ମୋ ବିସ୍ମୟ କଟାଇ କେହି ଜଣେ କହି ଉଠିଲା, ସେ ଝୁମୁରୀ ଦାସୀ । ମାଳିନୀର ଦୂର ସମ୍ପର୍କୀୟ ଭଉଣୀ । ତିନୋଟି ପିଲାର ମା' । ଶାଶୁଘର ଓଡ଼ିଶାବଙ୍ଗ ସୀମାନ୍ତ କେଉଁ ଏକ ଗ୍ରାମରେ । ବାହାଘରକୁ ଆସିଛି ।

ତେବେ ତା'ର ବିଶେଷ ପରିଚୟ ସେ ଦେବୀ ମନାସାଙ୍କ କୃପା ପାଇଛି । ମନସା ସର୍ପମାନଙ୍କର ଦେବୀ । ଘରେ ମନସାଙ୍କ ଘଟ ରଖିଛି । ପ୍ରତି ମଙ୍ଗଳବାର, ଶନିବାରରେ ସେ ମନସାଙ୍କ ପାଖେ ଅଧିଆ ପଡ଼େ । ଦେବୀଙ୍କ କୃପାରୁ ଅତୀତ, ବର୍ତ୍ତମାନ, ଆଗତ ଭବିଷ୍ୟତ କଥା କହିଦିଏ । ହଜିଯାଇଥିବା ଜିନିଷ ମିଳାଇ ଦିଏ । ତା'କଥା କେବେ ବ୍ୟର୍ଥ ହୁଏନି । ବହୁତ ଲୋକ ତା' ପାଖକୁ ଯାଆନ୍ତି । ବାଲେଶ୍ୱର, ଭଦ୍ରକ, କଟକ, ଯାଜପୁର ମଧ୍ୟ ସେ ଯାଏ । ଲୋକେ ଆସି ଗାଡ଼ି ଭଡ଼ା ଦେଇ ନେଇଯାଆନ୍ତି । ପୁଣି ନୂଆ ଶାଢ଼ି ପିନ୍ଧାଇ ଛାଡ଼ିଯାଆନ୍ତି । ସେ ଅଞ୍ଚଳରେ ତା'ର ଖୁବ୍ ନାମ ।

ମୁଁ କେମିତି ରହସ୍ୟର ଗନ୍ଧ ପାଉଥିଲି ।

ଏତେ ଯଦି ତା'ର ସୁନାମ, ଏମିତି ଅବସ୍ଥା କାହିଁକି ? ଦାରିଦ୍ର୍ୟ ଓ ଚରମ ଅବହେଳାର ଚିହ୍ନ ତା'ର ପ୍ରତିଟି ଅଙ୍ଗରେ । ଜୀବନ ଯାଉଛି, ଆସୁଛି । ଲୋକେ ତ ଖୁସି ହୋଇ ଟଙ୍କା ପଇସା ଦେଉଥିବେ ।

କେତେ ପଇସା ଅବା ଲୋକେ ଆଉ ଦେଉଥିବେ ? ସ୍ୱାମୀଟା ପୂରା ଅପଦାର୍ଥ । କିଛି କରେନି । ଜମିବାଡ଼ି ବି ନାହିଁ । ଯାହା ଥିଲା ଗଞ୍ଜେଇ ନିଶାରେ ଯାଇଛି । ଝୁମୁରୀ ଅଲଗା ଦିନ ମୂଲ ଲାଗିବାକୁ ଯାଏ । ତିନିତିନିଟା ପିଲା, ସ୍ୱାମୀଙ୍କୁ ନେଇ ବିଚାରୀ ବଡ଼ କଷ୍ଟରେ ଚଳେ ।

ଝୁମୁରୀ ଦାସୀର କଥା ଶୁଣି ବିସ୍ମୟବିମୂଢ଼ ଭାବ ସମସ୍ତଙ୍କୁ ଗ୍ରାସିଗଲା । କେତେ ଜୋର୍‌ରେ ସେ କହୁଛି, ଚିନ୍ତା କରନି, ଝିଅ ଶାଶୁଘରକୁ ଯାଉ, ମୁଦି ସଞ୍ଜବେଳକୁ ମିଳିଯିବ ।

ମଫସଲ ଗାଆଁ । ଶାଶୁଘର ଦୂରବାଟ । କନ୍ୟାକୁ ସଜାସଜି କରି ସମସ୍ତେ ସବାରୀକୁ ଆଣିଲେ । କନ୍ଦାକଟାରେ ବେଶ୍ କିଛି ସମୟ ଗଲା । ଦି'ଘଡ଼ି ବେଳଥାଏ, କନ୍ୟା ବିଦା ହୋଇଗଲା ।

ଆମେ ବି ଦୂରରୁ ଯାଇଛୁ । ଖାଇ ସାରିବା ପରେ ଛାଇ ନିଦ ଲାଗିଯାଇଛି, ହଠାତ୍ ଏକ ଅଦ୍ଭୁତ ଗୀତରେ ନିଦ ଭାଙ୍ଗିଗଲା ।

ମୁହଁସଂଜ । ଆସନ୍ନ ସନ୍ଧ୍ୟାରେ ବିମର୍ଷ ଅନ୍ଧାକାର ଘର ଚାରିପାଖ ବୃକ୍ଷଲତା ଉପରେ ଲେସି ହୋଇ ଆସୁଛି । ଚାରିଆଡ଼ ମ୍ଳାନ ଦେଖାଯାଉଛି । ଘରେ ଘରେ ସଂଜବତି ଦିଆଯାଉଛି । ଭାସି ଆସୁଛି ଶଙ୍ଖଧ୍ୱନିର ସମ୍ମିଳିତ ନିନାଦ । ଘର ଭିତରେ ଅଧା ଅନ୍ଧାର, ଅଧା ଆଲୁଅ । ତା' ଭିତରେ ବହୁ ଲୋକଙ୍କର କୋଳାହଳ ଭିତରେ ସେଇ ବିଚିତ୍ର ଗୀତ ମତେ ଚମକାଇଦେଲା । ମାଣବସା ପୋଥି ଭଳି ସେ ଗୀତର ଧାଡ଼ି, ସୁର ମଧ୍ୟ ସେମିତି, ହେଲେ ତା'ର ଅର୍ଥ ଧରିପାରୁ ନଥିଲି । ସେଥିରେ ବଙ୍ଗଳା, ଓଡ଼ିଆ, ହିନ୍ଦୀ ଓ କିଛି ପରିମାଣରେ ସାନ୍ତାଳୀ ଭାଷା ଥିଲା । ହେଲେ, ବାକ୍ୟବିନ୍ୟାସ ଅଭିନବ ଓ ଦୁର୍ବୋଧ । ତା'ର କ୍ରିୟାପଦ ଚିରାଚରିତ କ୍ରିୟାପଦଠାରୁ ଅଲଗା ।

ଭିଡ଼ କଟାଇ ଦେଖିଲି, ବାରିପଟ ଗଡ଼ିଆରୁ ଝୁମରୀଦାସୀ ଗାଧୋଇ ଓଦାଲୁଗାରେ ଆସୁଛି । କେଶ ମୁକୁଳା, ମୁଣ୍ଡରେ ଟଙ୍କା ଆକାରର ସିନ୍ଦୂର ଓଦା ହୋଇ କପାଳ ସାରା ଲେସି ହୋଇଯାଇଛି । ଗହଳ କେଶ ମୁଣ୍ଡ ସାରା ଫିଟି ପଡ଼ିଛି । ବେକରେ ମନ୍ଦାର ଫୁଲର ମାଳଟିଏ । ସେ ବିଚିତ୍ର ଦୁର୍ବୋଧ ଏକ ଭାଷାରେ କିଛି ବାକ୍ୟକୁ ଗୀତ ଭଳି ଆବୃତ୍ତି କରି ଭୂଇଁରେ ଗଡ଼ିଗଡ଼ି ଆସୁଛି ।

ମୋ ଦେହରେ ଝାଳ କଣ୍ଟିଗଲା ।

ଜୀବନର ଅର୍ଦ୍ଧାଧିକ ସମୟ ମୋର ମଫସଲରେ କଟିଛି । ତେଣୁ ଦାସୀ ପଡ଼ିବା ଦୃଶ୍ୟ ମୋ'ଲାଗି ନୂଆ ନୁହେଁ । ସାଧାରଣତଃ ଗ୍ରାମଦେବତା ବା ବାସୁଳୀ, ମଙ୍ଗଳା, ଶୀତଳା ଆଦି ଠାକୁରାଣୀଙ୍କ ପାଖେ ଲୋକେ ଦାସୀ ପଡ଼ନ୍ତି । ଘଟୋତ୍ତୋଳନ ପରେ ପରେ ବା ମଙ୍ଗଳ ଆଳତି ବେଳେ ଝାଲି, ଘଣ୍ଟା, ଢୋଲବାଜା ଆଉ ଶଙ୍ଖଧ୍ୱନିର ସମ୍ମିଳିତ ନିନାଦ ଭିତରେ ପୂଜକ ଯେତେବେଳେ ଠାକୁରାଣୀଙ୍କ ସାମ୍ନାରେ ଘଟ ସ୍ଥାପନ କରୁଥାନ୍ତି ବା ମଙ୍ଗଳା ଆଳତି କରୁଥାନ୍ତି, ଯିଏ ଝୁଣା ସରା ମୁଣ୍ଡାଇଥାଏ, ହଠାତ୍ ତା' ଉପରେ ଠାକୁରାଣୀ ସବାର ହୁଅନ୍ତି ।

ସେ ପାଗଳ ଭଳି ଉଦଣ୍ଡ ନୃତ୍ୟ କରିବାକୁ ଆରମ୍ଭ କରେ । ମଝିରେ ମଝିରେ ନାନା ବିକୃତ ଅଙ୍ଗଭଙ୍ଗୀ ସହ ଭୟଙ୍କର ମୁଖଭଙ୍ଗୀ କରି ବିକଟ ଶବ୍ଦ କରୁଥାଏ । ଯେ ସେ ଦୃଶ୍ୟ ନ ଦେଖିଛି, ସେ ଦୃଶ୍ୟର ଭୟଙ୍କର ଭାବ ସେ ବୁଝିପାରିବନି । ତା'ରି ଭିତରେ ଅସଂଲଗ୍ନ ଭାବରେ କିଛି ଭବିଷ୍ୟତବାଣୀ କରୁଥାଏ । ତା'ଛଡ଼ା ଲୋକେ କିଛି ପ୍ରଶ୍ନ କଲେ ମଧ୍ୟ ଉତ୍ତର ଦେଉଥାଏ । କିଛି ସମୟ ନୃତ୍ୟ କଲା ପରେ ସେ ହଠାତ୍ ଅଚେତ ହୋଇ ଭୂମିରେ ପଡ଼ିଯାଏ । ଚେତା ଆସିଲା ପରେ ସେ ଆମରି ଭଳି ସାଧାରଣ ମଣିଷଟିଏ । ସେତେବେଳେ ସେ ପୂର୍ବକଥା ମନେପକାଇ ପାରେନାହିଁ ।

ଜୀବନରେ ଅନେକ ଅବୁଝା ରହସ୍ୟ ଭଳି ଏ ବି ମୋ' ଲାଗି ରହସ୍ୟଟିଏ । ଯଦିଓ ଦାସୀ ଦେହରେ ଠାକୁରାଣୀ ଭର ହେବା କଥାଟା ଆଜି ପରିଣତ ମନରେ ମତେ ବିଶ୍ୱାସ ହୁଏ ନାହିଁ, ହେଲେ ହଠାତ୍ ସାଧାରଣ ମଣିଷଟିଏ ଏଇ ଯେ ପାଗଳା ଭଳି ଆଚରଣ କରେ, ଅମାପ ଶକ୍ତିର ଅଧିକାରୀ ହୋଇଯାଏ, ତା'ପଛରେ କେଉଁ ମନସ୍ତତ୍ତ୍ୱ ଅବା କେଉଁ ବିଜ୍ଞାନ କାର୍ଯ୍ୟ କରେ, କେବେ ବୁଝିପାରେ ନାହିଁ । କେଉଁ ରହସ୍ୟମୟ ଆବେଗର ତାଡ଼ନାରେ ସାଧାରଣ ମଣିଷଟିଏ ହଠାତ୍

ଏତେ ଶକ୍ତିର ଅଧିକାରୀ ହୋଇ ସବୁ କୁଣ୍ଢା, ଲଜ୍ଜା, ତେଜି ଏମିତି ଉଦ୍ଦଣ୍ଡ ନୃତ୍ୟ କରେ, ଏମିତି ଭୈରବ ମୂର୍ତ୍ତି ଧରେ; ଧୂଳି, ବାଲି, ଇଟା, ପଥର କଣ୍ଟା ଝଣ୍ଟା ମାନେ ନାହିଁ । ଭୀମ ପ୍ରତାପରେ ଭୂଇଁରେ ପିଟି ହୋଇ ରକ୍ତାକ୍ତ ହୁଏ, ଏ ରହସ୍ୟ କେବେ ଭେଦି ପାରେ ନାହିଁ ।

ଏ କିନ୍ତୁ ଅଲଗା ଦୃଶ୍ୟଟିଏ !

ନଅମାସର ଗର୍ଭବତୀ କଙ୍କାଳସାର ସ୍ତ୍ରୀଲୋକଟିଏ ଏମିତି ଭୂମିରେ ଗଡ଼ିବାର ଦୃଶ୍ୟ ଏଇ ପ୍ରଥମ । ଦୃଶ୍ୟଟି କାରୁଣ୍ୟ । ମୁଁ ଯେମିତି ସହିପାରୁନଥିଲି । ଅଥଚ ଅନ୍ୟ ଲୋକମାନେ ଏ ଦୃଶ୍ୟକୁ ବେଶ୍ ଉପଭୋଗ କରୁଥିଲେ ।

ଝୁମୁରୀ ଦାସୀ ତା' ଭାଷାରେ ଦି'ପଦ ଗୀତ ଗାଇ ଦାନ୍ତ କଡ଼ମଡ଼ କରି ଆଖି ଡିମା ଡିମା କରି ବିକଟ ଶବ୍ଦ କରୁଥାଏ । ହାତ ମୁଠା ମୁଠା କରି ଗୋଡ଼ହାତ କଚାଡ଼ି ଭୂଇଁରେ ପିଟି ହେଉଥାଏ । ପୁଣି କିଛି ମୁହୂର୍ତ୍ତ ନିସ୍ତେଜ ଭାବରେ ଧୂଳିରେ ଶୋଇପଡୁଥାଏ । ପୁଣି ଉଠି କେତେବେଳେ ଗଡ଼ିଗଡ଼ି, କେତେବେଳେ ପେଟେଇ ପେଟେଇ ଆଗେଇ ଆସୁଥାଏ । ତା' ଭାଷା ବୁଝିବା ମୋ ପକ୍ଷେ ସହଜ ସାଧ୍ୟ ନଥିଲା । ଯେଉଁମାନେ ତା' ଭାଷା ସହିତ ପରିଚିତ, ସେମାନେ କହିଲେ, ସେ କହୁଛି, ଚିନ୍ତା କରନି, ମା' ମନସା ମୁଦି ମିଳାଇ ଦେବେ । ସେ ସେମିତି ଆସି ଦାଣ୍ଡଦୁଆରରେ ପହଞ୍ଚିଲା ଏବଂ ଠାରରେ ଫୁଲ, ଚନ୍ଦନ, ଦୀପ, ଧୂପ ଆଣିବାକୁ କହିଲା । ସବୁ ଯୋଗାଡ଼ ହେଲା । ତାର ପୂଜା ଦେଖିବାକୁ ଇତି ମଧ୍ୟରେ ବହୁତ ଲୋକ ଜମା ହୋଇଯାଇଥାନ୍ତି ।

ପୂଜା ଆରମ୍ଭ ହେଲା ।

ଝୁମୁରୀ ଦାସୀ କାଦୁଅ, ମାଟି, ଚନ୍ଦନ, ସିନ୍ଦୂରରେ ବୋଳିହୋଇ ଚକ୍ରାସନରେ ବସିଲା । ଆଗରେ ଗୁଆଟିଏ ଥୋଇ ପୂଜା ଆରମ୍ଭ କଲା । ଏତେ ଲୋକ, ସମସ୍ତେ ନିର୍ବାକ ହୋଇ ଏ ଦୃଶ୍ୟ ଦେଖୁ ଥାଆନ୍ତି । କେହି କେହି ତା'ର ପୂର୍ବରୁ କରିଥିବା ଅଲୌକିକ କାର୍ଯ୍ୟସବୁ ଆଲୋଚନା କରୁଥାନ୍ତି । ଥରେ କୁଆଡ଼େ କୌଣସି ଗ୍ରାମର ପୋଖତୀ ସ୍ତ୍ରୀ ଲୋକଟିକୁ ଭୂତ ଲାଗିଲା । କିଛି ଖାଇଲା ନାହିଁ । ଝୁମୁରୀ ଦାସୀକୁ ସେମାନେ ସବାରୀରେ ନେଇଗଲେ । ଝୁମୁରୀ ଦାସୀ ପଢ଼ି କହିଦେଲା, ତା' ଶ୍ୱଶୁରର ଭୂତ ଲାଗିଛି । ପୂଜା ଅର୍ଚ୍ଚନା ପରେ ଝୁମୁରୀ ତା'ଠୁଁ ଭୂତ ଛଡ଼ାଇଲା । ସ୍ତ୍ରୀ ଲୋକଟି ସୁସ୍ଥ ହୋଇଗଲା ।

ଆଉ ଥରେ ଆଉ ଏକ ଗାଆଁରେ ଜଣକ ଘରେ ସନ୍ଧ୍ୟା ହେଲା କ୍ଷଣି ଚାଳରେ ଢେଲା ପଡୁଥିଲା । କେହି ଧରି ପାରୁନଥିଲେ । ଝୁମୁରୀ ଦାସୀ ପଢ଼ି କହିଦେଲା, ଘର ଆଗରେ ଥିବା ତାଳଗଛରୁ ବ୍ରହ୍ମରାକ୍ଷସ ଢେଲା ପକାଉଛି । ନୂଆଧୋତି ଯୋଡ଼, ରୂପା ପଇତା, କଠଉ, ତାଳପତ୍ର ଛତା ଦେଇ ବ୍ରହ୍ମରାକ୍ଷସକୁ ଝୁମୁରୀ ଦାସୀ ପୂଜା କଲା ଓ ଗାଆଁରୁ ବିଦା କଲା ।

ଝୁମୁରୀ ଦାସୀର ପୂଜା ଚାଲିଥାଏ । ମଝିରେ ମଝିରେ ଦାନ୍ତ କଡ଼ମଡ଼ କରି, କେତେବେଳେ ଆଣ୍ଠେଇ, କେତେବେଳେ ପେଟେଇ ସେ ବିକଟ ଶବ୍ଦ କରୁଥାଏ । ଆଉ ତା'ର ଦୁର୍ବୋଧ୍ୟ ଭାଷାରେ କିଛି କହିଯାଉଥାଏ । ଲୋକେ ଅର୍ଥ କଲେ, ସେ କହୁଛି--ଯେଉଁ ପିଲାଟି ମୁଦି ନେଇଯାଇଥିଲା, ସଂଜବେଳେ ପୋଖରିପାଣି ଯାଇଥିଲା, ମନସା ସାପ ହୋଇ ତାକୁ ଛନ୍ଦିଲେ । ସେଉଠୁ ସେ ମୁଦି ଆଣି ଦାଣ୍ଡଦୁଆର ତଳେ ପକାଇ ଦେଇ ଯାଇଛି । ନିଶ୍ଚୟ ମିଳିଯିବ ।

ଆମକୁ ପୁଣି ବିମୂଢ଼ କରି ଝୁମୁରୀ ହାମୁଡ଼ି ହାମୁଡ଼ି ଚାଲିଲା । ପିଣ୍ଡାତଳକୁ ଓହ୍ଲାଇ କଦଳୀ ପତ୍ରଟିଏ ଉଠାଇଦେଲା । କଦଳୀପତ୍ର ତଳେ ଥିଲା ସେଇ ଧଳା ପଥରବସା ମୁଦି ।

ଆମେ ଅବାକ୍ ବିସ୍ମୟରେ ଏ ଦୃଶ୍ୟ ଦେଖୁଥିଲୁ ।

ମ୍ୟାଜିକ୍ ଖେଳ ମୁଁ ଦେଖିଛି । କିନ୍ତୁ ସେଥିରେ ଥାଏ ହାତ କାରସାଦି ଓ କିଛି ପରିମାଣରେ ବୁଦ୍ଧିର ଖେଳ । ହେଲେ, ଏ ଘଟଣା ଥିଲା ସମ୍ପୂର୍ଣ୍ଣ ଆଶ୍ଚର୍ଯ୍ୟଜନକ ।

ମୁଦି ହଜିଥିଲା ବାରି ପଟେ, ମିଳିଲା ଦାଣ୍ଡପଟେ । ଧରାଯାଉ, କେହି ଯଦି ସତକୁ ସତ ମନସାଙ୍କ ଭୟରେ ପକାଇ ଦେଇଯାଇଛି, ଏତେ ଜାଗା ଥାଉଁ ଥାଉଁ ସେଇ ନିର୍ଦ୍ଦିଷ୍ଟ ଜାଗାଟି ଝୁମରୀ ଦାସୀର ଜ୍ଞାତ ହେଲା କେମିତି ?

ବିସ୍ମୟମିଶା ଉଲ୍ଲାସର ଗୁଞ୍ଜରଣ ଧୀରେ ଧୀରେ କୋଳାହଳରେ ପରିଣତ ହୋଇଯାଉଥିଲା । ସମସ୍ତଙ୍କ ବିସ୍ମୟମିଶା ଦୃଷ୍ଟି କେନ୍ଦ୍ରୀଭୂତ ହୋଇଯାଇଥିଲା ଝୁମୁରୀ ଦାସୀ ଉପରେ, ଯିଏ ଏବେ କ୍ଳାନ୍ତ ହୋଇ ଆଖିବୁଜି ପଡ଼ିଥାଏ । ସାରା ଦେହରେ ଆଞ୍ଚୁଡ଼ା ଦାଗ, କେଉଁଠି କେଉଁଠି ଛିଣ୍ଡି ରକ୍ତ ବାହାରିଛି । ହେଲେ ମୁହଁରେ କେମିତି ଏକ ଶାନ୍ତ ଭାବ, ଯେମିତି ବିରାଟ ଗୁରୁ ଦାୟିତ୍ୱଟିଏ ତା' ମଥାରୁ ଓହ୍ଲାଇ ଯାଇଛି । ତା' ଚାରିପାଖେ ଲୋକମାନେ ଆପଣା ଆପଣା ସମସ୍ୟା କହିଚାଲିଥାନ୍ତି, କାହାର ବଳଦ୍ ହଜିଛି, କାହା ଗାଈର ଫଳ ଯାଉନି, କାହାର ପିଲାପିଲି ହେଉନି, କାହା ବାପାର ରୋଗ ଭଲ ହେଉନି । ଝୁମୁରୀ ଦାସୀ ନିସ୍ତେଜ ଭାବେ ପଡ଼ିଥାଏ । କେତେବେଳେ ଅସ୍ଫୁଟ ଭାବେ ହୁଁ, ହଁ କରୁଥାଏ । ତା'ର ଆଜି ଆଉ ଚେତା ଫେରିବନି । କାଲି ସକାଳୁ ଉଠିବ ।

ରାତି ବହୁତ ହୋଇଯାଇଥିଲା । ମୁଦି ମିଳିବା ଘଟଣାକୁ ନେଇ ସମସ୍ତ ଉତ୍ତେଜନା ଶାନ୍ତ ହୋଇଯାଇଥିଲା । ମାଳିନୀର ବଡ଼ବାବା ବଡ଼ି ଭୋଅରୁ ସାଇକେଲରେ ଯାଇ ମୁଦି ଦେଇ ଆସିବେ କହି ଶୀଘ୍ର ଖାଇ ଶୋଇପଡ଼ିଥିଲେ । ବାହାଘର ଥକାରେ ଅନ୍ୟମାନେ କିଏ କେଉଁଠି ଶୋଇପଡ଼ିଥିଲେ । କେବଳ ମୋ ଆଖିରେ ନିଦ ନଥିଲା । ସନ୍ଧ୍ୟାରେ ଝୁମୁରୀ ଦାସୀର କାର୍ଯ୍ୟକଳାପ ମନକୁ ଉତ୍ତେଜିତ କରି ରଖିଥିଲା । ଏ ବିଜ୍ଞାନ ଯୁଗରେ ସତରେ ଏମିତି ସମ୍ଭବ ? ନିପଟ ଗାଉଁଲି, ଅଶିକ୍ଷିତ ସ୍ତ୍ରୀ ଲୋକଟି ? ଏତେ କଥା ଜାଣୁଛି କେମିତି ?

କେହି ଜଣେ ଘର ଭିତରକୁ ପଶି ଆସିଲେ । ଚମକି ପଡ଼ିଲି । କିଏ ? ଦେଖିଲି, ମାଳିନୀର ମାଆ ମଶାରି ଟାଙ୍ଗୁଛନ୍ତି ।

ଏଯାଏ ଶୋଇନ ଯେ ଝିଅ ?' ମାଉସୀ ପଚାରିଲେ ।

ନିଦ ଆସୁନି । ଆଚ୍ଛା ମାଉସୀ, ଝୁମୁରୀ ଦାସୀ କେମିତି ମୁଦି ପାଇ ଦେଲା, କହନ୍ତୁ ତ ? ଯେତେ ଭାବୁଛି, ଆଶ୍ଚର୍ଯ୍ୟ ଲାଗୁଛି । ମୁଦି ପଡ଼ିଥିଲା ବାରି ପଟେ, ମିଳିଲା ଦାଣ୍ଡ ପଟେ । ସତରେ ମନ୍ତ୍ରତନ୍ତ୍ର, ଗୁଣି ଗାରେଡ଼ି ଅଛି ? ମୁଁ ପଚାରିଲି ।

''ମତେ କିନ୍ତୁ ଆଶ୍ଚର୍ଯ୍ୟ ଲାଗୁନି ।''

ତାଙ୍କ କଣ୍ଠର ଶୀତଳତାରେ ଚମକି ପଡ଼ିଲି ।

''କାହିଁକି ?''

''ସବାରୀକୁ ଉଠିବା ପୂର୍ବରୁ ମାଳିନୀ ମୋ କାନରେ କହିଯାଇଥିଲା, ସେ ମୁହଁ ଧୋଇବା ବେଳେ ପିଲାଙ୍କ ଛଡ଼ା ଏକା ଝୁମୁରୀ ଦାସୀ ସେଠାରେ ଛିଡ଼ା ହୋଇଥିଲା । ସେ ମତେ ମନା କରି ଯାଇଥିଲା । ତା' ନହେଲେ କହିସାରନ୍ତିଣି ।''

ମୁଁ ବିଛଣାରୁ ଉଠି ବସିଲି । ''ମାନେ ଆପଣ କଅଣ କହିବାକୁ ଚାହାନ୍ତି ?'' ମୁଦି ଝୁମୁରୀ କୁଡ଼ାଇଥିଲା ?

''ହଁ, ତା' ଭିନ୍ନ କେହି ନୁହେଁ ।'' ମାଉସୀଙ୍କ କଣ୍ଠ ଶାନ୍ତ ଓ ନିରୁଦ୍‌ବିଗ୍ନ ।

''କିନ୍ତୁ ଯଦି ସେ ମୁଦି ପାଇଥିଲା, ସାଙ୍ଗେ ସାଙ୍ଗେ ଦେଇ ନ ଦେଲା କାହିଁକି ? ଏତେ କାଣ୍ଡ କାରଖାନାର କି ଦରକାର ଥିଲା ?''

''ହେଲେ ସେ ଚଳିବ କେମିତି ? ମୁଦିଟି ସଙ୍ଗେ ସଙ୍ଗେ ଦେଇ ଦେଇଥିଲେ ତାକୁ ଲୋକେ ଜାଣନ୍ତେ କେମିତି ? ଏଇମିତି କରି ସେ ଯେ ଚଳେ । ଆଜି ମୁଦି ମିଳିଗଲା ପରେ ଆଠ ଦଶ ଜଣ ଲୋକ ତାକୁ ଡାକି ସାରିଲେଣି । ଗାଡ଼ିଭଡ଼ା ଦେଇ ନେଇଯିବେ, ନୂଆ ଶାଢ଼ି ଦେବେ, ଟଙ୍କା ଦେବେ, ସେ ତ ପୁଣି ଚଳିବ ! ଏତେଗୁଡ଼ାଏ ପେଟ ତ ପୁଣି ପୋଷିବ ।''

''ହେଲେ, ଏଠାରେ ସେ ସିନା ମୁଦି ଦେଖିଥିଲା ବୋଲି ଆଣିଦେଲା । ଅନ୍ୟଜାଗାରେ କେମିତି କଅଣ କରିବ ?''

''ମୁଁ ଜାଣିନି । ତେବେ, ଗୋଟାଏ କଥା ଯେ ବୁଝିଦେଲା, ସେଇ ବିଶ୍ୱାସରେ ଢେର ଲୋକ ଆସିବେ । ଯେଉଁଠି ସେ କିଛି କରି ନ ପାରିବ, ଆଉ କିଛି କହି ବୁଝାଇଦେବ । ଲୋକଙ୍କ ବିଶ୍ୱାସ ଜିଣି ପାରିବାଟା ବଡ଼ କଥା ।'

''ଝୁମୁରୀ କାହିଁ ?''

''ସେଇ ବାରଣ୍ଡା ତଳେ ପଡ଼ିଛି, ତାକୁ ଏବେ ଛୁଇଁବାକୁ ବାରଣ କରିଛି ।''

ମାଉସୀ ମନା କରୁଥିଲେ, ମୁଁ ତାକୁ ଥରେ ଦେଖିବାର ଲୋଭ ସମ୍ଭରି ପାରିଲିନି । କବାଟ ଫାଇଟାଇ ବାହାରକୁ ଗଲି ।

ବାରଣ୍ଡା ତଳେ ଭୂମିଶଯ୍ୟାରେ ଶୋଇଛି ଝୁମୁରୀ ଦାସୀ । ହୁଏତ ସେ ସତରେ ଶୋଇ ପଡ଼ିଛି ଦିନସାରା ତା ଦେହ ଉପରେ ବହୁତ ଝଡ଼ ଯାଇଛି । ବହୁତ କଷ୍ଟ ବିତିଛି । ହୁଏତ ସେ ଆଜି ସତରେ ଉଠିବା ଅବସ୍ଥାରେ ନାହିଁ ।

ବାହାରେ ଜହ୍ନରାତି । ଅମୀୟ, ଅକ୍ଷୟ, ଅନିର୍ବଚନୀୟ, ଶୁଭ୍ର ଜ୍ୟୋତ୍ସ୍ନା ଧାରା ତିଳତଣ୍ଡୁଳିତ ହୋଇ ଝରିପଡୁଛି ପୃଥିବୀ ଉପରେ, ଆଖପାଖରେ ଗଛବୃଛ, ବିଲବାରି, ଖାଲ-ଗୋହିରୀ, ବୁଦା-ବଣ ସବୁ ରୂପେଲି ଆଲୁଅରେ ଝଟକୁଛି । ପୃଥିବୀର ସବୁ ଦୀନତାକୁ, ସବୁ କାରୁଣ୍ୟକୁ, ସବୁ କୁତ୍ସିତତାକୁ ଜ୍ୟୋତ୍ସ୍ନାର ଯାଦୁରେ ଛପାଇ ସେଇ ମାୟାବିନୀ ଜହ୍ନରାତି ସୌନ୍ଦର୍ଯ୍ୟର ଫୁଆରାଟିଏ ଅବା ଫିଟାଇ ଦେଇଛି ।

ସେଇଟି ଜୀବନର ସବୁ ବେଦନା, ବଞ୍ଚନା, ଅବହେଳା ଓ କାରୁଣ୍ୟକୁ କେତେ ସହଜ ଭାବେ ଦେହରେ ମାଖି, ସ୍ୱାମୀ ସନ୍ତାନଙ୍କ ଜୀବନରେ ଜହ୍ନରାତି ଆଣିବା ପାଇଁ ଅନ୍ଧକାରକୁ ଆପଣାଇ ନେଇ, ଅନାଥିନୀ ଭଳି ଧୂଳିର ଶଯ୍ୟାରେ ଶୋଇ ପଡ଼ିଥିବା ସେଇ ନାରୀ ମୂର୍ତ୍ତିଟିକୁ ମତେ ଜହ୍ନରାତିଠାରୁ ଆହୁରି ମାୟାବିନୀ ଆଉ ବିଭବମୟୀ ମନେ ହେଉଥିଲା ।



# ମା'ର ପୁଅମାନେ

## ରଶ୍ମୀ ରାଉଳ

ବାପା ଅନେକ ଦିନରୁ ମରି ଯାଇଥିଲେ । ବଡ଼ପୁଅ ତା'ର ପିଲାପିଲି ନେଇ କଲିକତାରେ ରହେ । ତା' ତଳ ରାଉରକେଲା ଇସ୍ପାତ କାରଖାନାରେ ଚାକିରି କରେ, ଇଂଜିନିୟର । କ୍ୱାର୍ଟର ପାଇଛି । ପରିବାର ସହିତ ସେଇଠି ରହେ । ତା' ତଳକୁ ମୁଁ । ଗୋଟିଏ ମାତ୍ର ଝିଅ । ମୋ ଉପରେ ବଡ଼ ଦୁଇ ଭାଇ ଓ ତଳକୁ ସାନ ଦୁଇ । ମଝିରେ ନିକିତିର ଦଣ୍ଡିକଣ୍ଟା ପରି ମୁଁ-ବିବାହିତା । ସ୍ୱାମୀ, ସନ୍ତାନ ସହିତ ସହରରେ ମୋର ଘରକରଣା । ମୋ ତଳକୁ ମନୁ । ଅପାଠୁଆ ତୃତୀୟ ପୁଅ । ଗାଁରେ ରହୁଥିଲା । ଚାଷବାସ, ଜମିବାଡ଼ି, ଘରର ଦେଖାଶୁଣା କରିବା ଥିଲା ତା'ର କାମ । ମା' ରହୁଥିଲା ତା'ରି ପାଖରେ, ତା' ହେପାଜତ୍‌ରେ, କେବେ କେମିତି ନିହାତି ଦରକାର ହେଲେ ମାଁ ଯାଉଥିଲା ବଡ଼ପୁଅ ପାଖକୁ, କଲିକତା ନ ହେଲେ ରାଉରକେଲା ।

ଆଉ ସବା ସାନ ପୁଅଟି ?

ନୂଆ ବିବାହିତା ପତ୍ନୀ ସହିତ ସେ ରହୁଥିଲା କଟକରେ । କଟକ ନଗର, ଧବଳ ଟଗର । ମହାନଦୀର ପାଣି ପିଏ, କାଠଯୋଡ଼ିର ପବନ ଖାଇ ବଞ୍ଚେ । ବାପାଙ୍କ ମୃତ୍ୟୁ ବେଳକୁ ବଡ଼ଭାଇ ଚାକିରି କରି ବାହା ହୋଇ ସାରିଥିଲେ ଏବଂ ଖୁବ୍ ଶୀଘ୍ର ଦୁଇଟି ସନ୍ତାନର ଜନକ ମଧ୍ୟ । ତା' ତଳ ଭାଇ ନୂଆ ଚାକିରିରେ ଯୋଗଦେଇ ମାନସିକ ସ୍ତରରେ ଜଣେ ଝିଅକୁ ବାହା ହେବା ପାଇଁ ଠିକଣା କରି ସାରିଥିଲେ । ମୁଁ ବି.ଏ. ପଢୁ ଥିବାବେଳେ ହିଁ ବାପା ମୋ ବାହାଘର କାମ ତୁଟେଇ ଦେଇଥିଲେ । ମନୁ ପଢୁଥିଲା ଦଶମରେ ଓ ସବାସାନ ସପ୍ତମ ଶ୍ରେଣୀରେ ବୃତ୍ତି ପରୀକ୍ଷାରୁ ଫେରି ଜାଣିଲା ବାପା ଆଉ ନାହାନ୍ତି ।

ବଡ଼ ଦୁଇଭାଇ ସହରରେ ରହି ଚାକିରି କରୁଥିବା କାରଣରୁ ଗାଁରେ ରହି ଚାଷବାସ କଥା ବୁଝାସୁଝା କରିବା ସମ୍ଭବ ନଥିଲା । ସେମାନେ ମଝିରେ ମଝିରେ ଆସୁଥିଲେ ଛୁଟି ନେଇ । ଛୁଟି ପୂରିଗଲେ ଫେରିଯାଉଥିଲେ ଚାକିରି ଜାଗାକୁ । ତେଣୁ ଦଶମ ଶ୍ରେଣୀରେ ପାଠ ପଢୁଥିବା ମନୁ ହାଟ ସଉଦା କରିବା, ବିଲକୁ ମୂଲିଆଙ୍କ ସହିତ ଯିବା, ଚାଷ କଥା ବୁଝିବା, ମା' ପାଇଁ ଔଷଧ ଆଣିବା ଆଦି କାମ କରୁ କରୁ ତା'ର ପାଠପଢ଼ା ଦିଗଟି କ୍ରମଶଃ ଅବହେଳିତ ହୋଇ, ଦିନେ ଦେଖିଲା ବେଳକୁ ସେ ଚାଷୀଟିଏରେ ପରିଣତ ହୋଇସାରିଥିଲା ।

ଭାଇମାନଙ୍କ ଅପେକ୍ଷା ଭାଉଜମାନେ ଥିଲେ ବେଶ୍ ଚତୁରୀ ଓ ହିସାବୀ । ନେଇ ଆଣି ଥୋଇ ପାରିବା ବିଦ୍ୟାରେ ଖୁବ୍ ପାକଳ ।

ମା'ର ଚାରୋଟି ପୁଅ । ବଡ଼ ପୁଅ ଓରଫ ମୋର ବଡ଼ଭାଇ ତା'ର ପରିବାର ସହିତ ବେଶ୍ ଭଲରେ ଥାଆନ୍ତି କଲିକତାରେ । ଘରକୁ ଆସିଥିବାବେଳେ କିଛି ଖର୍ଚ୍ଚ ପାଇଁ ଦିଅନ୍ତି, ନ ହେଲେ ଏମିତିରେ ସେ ଟଙ୍କା ପଇସା ଘରକୁ ଦିଅନ୍ତି ନାହିଁ । ଗାଁକୁ ଆସିଲେ ଗାଁରେ ନୂଆ ଗଢ଼ି ଉଠିଥିବା ହାଇସ୍କୁଲ୍‌ରେ ପିଲାଙ୍କ ଭିତରେ ନାନା ପ୍ରକାରର ପ୍ରତିଯୋଗିତା କରାନ୍ତି । ଫାଷ୍ଟ ସେକେଣ୍ଡ୍ ପିଲାକୁ

ପୁରସ୍କାର ଦିଅନ୍ତି । ସ୍କୁଲ୍ ଅଫିସ୍ କାନ୍ଥରେ ଘଣ୍ଟାଟିଏ ନ ଥିବାରୁ ସେଠି ଘଣ୍ଟାଟିଏ କିଣି ଟଙ୍ଗେଇବାର ବ୍ୟବସ୍ଥା କରେଇ ଥାଆନ୍ତି । ଗାଁ ସ୍କୁଲ୍‌ର ହେଡ୍‌ସାର୍ ଭୂରି ଭୂରି ପ୍ରଶଂସା କରନ୍ତି ଓ ସଙ୍ଗେ ସଙ୍ଗେ ଆମର ସେଇ ଛୋଟ ଗାଁରେ ପ୍ରଚାରିତ ହୋଇଥାଏ । ବିରାଟ ବଡ଼ କାନ୍ଥଘଣ୍ଟାଟିଏ ଢେର୍ ପଇସା ଖର୍ଚ୍ଚ କରି ଶ୍ରୀଯୁକ୍ତ ରବିନାରାୟଣ ବାବୁ ସ୍କୁଲ୍‌କୁ ଦାନ କରିଛନ୍ତି । ସ୍କୁଲ୍‌ର ପ୍ରେସିଡେଣ୍ଟ୍ ମଦନବାବୁ ପାନ ଚାକୁଲୁ ଚାକୁଲୁ କହନ୍ତି, ''ଗାଁ ଗୋଟାକର ପୁଅ ତ ଖଣ୍ଡେ, ହାତ ଖୋଲା ମଣିଷ, ମନ ଯେମିତି ହୃଦୟ ବି ସେମିତି । ଘରକୁ ଆସୁ ଆସୁ ଆଗ ସ୍କୁଲ୍‌ର ହାନି ଲାଭ ବୁଝିଲେ, ପିଲାଙ୍କ ଭିତରେ ପାଠପଢ଼ା ପାଇଁ କେତେ ଜାଗରଣ ଭରିଦେଲେ । ତା'ପରି ପୁଅ-କିଏ ଭଲା ଘର କଥା ଏପରି ବୁଝୁଛନ୍ତି ?''

ବଡ଼ଭାଇ ସ୍କୁଲ୍ ପୋଖରୀରେ ଛବିଶ ଟଙ୍କା ପଚାଶ ପଇସାର ମାଛ ଯାଆଁଳ ଛାଡନ୍ତି । ଗୋପୀନାଥଙ୍କ ମନ୍ଦିର ପାଇଁ ପିତଳ ଥାଳି ଓ ଧୂପଦାନୀ କିଣି ଦିଅନ୍ତି । ହରି ସୁବୁଦ୍ଧି ବୁଢ଼ାକୁ ବିଡ଼ି ଟାଣିବା ପାଇଁ ପାଞ୍ଚ ଟଙ୍କାର ନୋଟ୍‌ଟିଏ ବି ଦେବାକୁ କୃପଣ ହୁଅନ୍ତି ନାହିଁ । ତା'ପରେ ମା'କୁ ନୂଆ ବାହାରିଥିବା ପାଞ୍ଚ ଟଙ୍କିଆ କଏନ୍ ପାଞ୍ଚଟି ଦେଇ ସକାଳ ଛଅଟାରେ ରମ୍‌ଜାନ୍ ମିଆଁ ବସ୍‌ରେ ରମାନା ହେବା ପାଇଁ ପ୍ରସ୍ତୁତ ହୁଅନ୍ତି ।

ଘର ଛପର ହୋଇଥିଲା, ମୂଲିଆକୁ ପଇସା ଦିଆ ଯାଇ ନାହିଁ । ମା'ର ଦେହ ଖରାପ ବେଳେ ଔଷଧ ଦୋକାନରୁ ଔଷଧ ଆସିଥିଲା, ବାକି ଅଛି ପଇସା । ଧାନତଳି କିଣା ହେଲେ ବିଲ ରୁଆ ହେବ, ତେଜରାତି ଦୋକାନ, ଲୁଗା ଦୋକାନରେ ବାକି ବଢୁଛି । ଏସବୁ କଥା କହିବା ପାଇଁ ସାନଭାଇଟି ଘର ବାହାର ହେଉଥାଏ, ମୁହଁକୁ ଅନଉଥାଏ । କହିବ ନ କହିବ ଭାବି ହେଉଥାଏ, ଅଥଚ କହି ପାରେ ନାହିଁ– ''ଭାଇ କିଛି ଟଙ୍କା ଦରକାର ଥିଲା ।''

ବଡ଼ଭାଇ କହନ୍ତି- ''ଆରେ ମନୁ, କୁଆଡ଼େ ଗଲୁ ? ଚାଉଳ ଥଳିଟା ନେ, ବସ୍ ବେଳ ହୋଇଗଲା ।'' ସାନଭାଇଟି ମୁଢ଼ି ଓ ଚାଉଳ ବସ୍ତା ସାଇକେଲ ପଛରେ ଲଦି ବସ୍ ପାଖକୁ ଯାଏ ଭାଇ ପଛେ ପଛେ । ସୁଯୋଗ ଖୋଜୁଥାଏ, ଭାଇକୁ କହିବା ପାଇଁ, ମାତ୍ର କହି ପାରେ ନାହିଁ । ସଡ଼କ ଉପରେ ଠିଆ ହୋଇଥାନ୍ତି–ଚକରା ଜେନା, ହରି ସୁବୁଦ୍ଧି, ମନ୍ଦିରର ପୂଝାରୀ ନନା, ପଦିଆ ପିଅନ । ସେମାନେ ଭାଇଙ୍କୁ କେତେ ପ୍ରଶଂସାର କଥା କହୁ କହୁ ବସ୍ ଆସିଯାଏ । ବଡ଼ଭାଇ ତାଙ୍କ ରହୁଥିବା ସହର ଅଭିମୁଖେ ଯାତ୍ରା ଆରମ୍ଭ କରନ୍ତି, ସମସ୍ତଙ୍କୁ ନମସ୍କାର କରି । ବସ୍ ଚାଲିଯିବା ପରେ ମନୁକୁ ସମସ୍ତେ ଘେରି ଯାଆନ୍ତି । ''ସାକ୍ଷାତ ରାମ ପରି ଭାଇ ଖଣ୍ଡେ ପାଇଛୁରେ ପୁଅ, ଘରକୁ ଢେର ଟଙ୍କା ଆଣିଥିବ ନାଇଁ,'' କହନ୍ତି ମନ୍ଦିରର ପୂଝାରୀ ନନା ।

ଅନ୍ୟମାନେ ବି ନାନା ମନ୍ତବ୍ୟ ଦିଅନ୍ତି ।

ମନୁର ମୁହଁ ଶୁଖିଯାଏ, ଆଖି ଛଳ ଛଳ ହୋଇ ଉଠେ । ସେତିକିବେଳେ ଔଷଧ ଦୋକାନୀ ଶ୍ରୀକାନ୍ତ ପଢ଼ିଆରୀ ଉଠି ଆସନ୍ତି ସଡ଼କ ଉପରକୁ– ''ଆଜି ଦୋକାନ ଆଡ଼େ ଆସିବ, ତ ଢେର୍ ଦିନରୁ ଟଙ୍କାଗୁଡ଼ା ମୋର ବାକି ପଡ଼ିଛି, ଟଙ୍କା ଦେଲେ ମାଲ୍ ଆଣିବାକୁ ଯିବି,'' ସ୍ୱର ଲମ୍ବେଇ ସେ କହନ୍ତି ।

ମନୁ କହେ, ''ହଉ କକା ।''

ସେ ଘରକୁ ଫେରିଆସେ ।

ଖୁଣ୍ଟକୁ ଡେରି ମା' ବସିଥାଏ ଗାଲରେ ହାତ ଦେଇ । ତା' ପାଖରେ ବସିପଡ଼ି ପଚାରେ– ''ମା, ଭାଇ ଟଙ୍କା ଦେଇଗଲେ କି ?''

ମା' ତା' ଶାଢ଼ି କାନିରୁ ପାଞ୍ଚଟି ପାଞ୍ଚ ଟଙ୍କିଆ ଇନ୍ଦିରା ଗାନ୍ଧୀ ମୁଣ୍ଡବାଲା କଏନ୍ ତଳେ ଥୋଇଦେଇ କହେ, ''ହଁ ରେ, ଏଇ ନେ ।''

ଗୋଟିଏ ଟଙ୍କା ଗଡ଼ ଗଡ଼ ହୋଇ ପିଣ୍ଡା ତଳକୁ ଗଡ଼ିଯାଏ । ମା' ପାଖରେ ଆଖି ବୁଜି ଶୋଇଥିବା ଟିମା କୁକୁର ଧଡ଼ ପଡ଼ ହୋଇ ଉଠିପଡ଼ି ଟଙ୍କା ପଛରେ ଝପଟି ଯାଏ । ଟଙ୍କା ଗଡ଼ି ଗଡ଼ି ଯାଇ ଓଳି ତଳେ ଚିତ୍ ହୋଇ ଗଡ଼ି ପଡ଼େ ପେଟ ଦେଖାଇ । ଟିମା ଶୁଙ୍ଘେ, ଗୋଡ଼ରେ ଠେଲି ଉଠେଇବାକୁ ଚେଷ୍ଟା କରେ । ତା'ପରେ ଫେରି ଆସି ପୁଣି ଶୋଇପଡ଼େ ।

ମା' ଚୁପ୍, ମନୁ ଚୁପ୍ । ବୋଧହୁଏ ଦୁହେଁ ଦୁହିଁଙ୍କୁ ବୁଝି ପାରନ୍ତି ଓ ଦୀର୍ଘଶ୍ୱାସ ପକାନ୍ତି । ତା'ପରେ ଆସନ୍ତି ମୋ ମା'ର ଦ୍ୱିତୀୟ ପୁଅ, ମୋର ଇଞ୍ଜିନିୟର ଭାଇ, ରାମ ଅନୁପମ । ଦୁଇଟି ପୁଅ ଗୋଟିଏ ଝିଅ । ପତ୍ନୀ ସୁନ୍ଦରୀ । ମୋ ମା'ର ଏଇ ପୁଅଟି ବେଶୀ ଭଲ ପାଆନ୍ତି ତାଙ୍କ ପତ୍ନୀଙ୍କୁ । ପତ୍ନୀ ସରଗ ତରା ଦୁଃଖ ପାସୋରା । ଭାଇ ଆମର ମୁଣ୍ଡେଇ ରଖିଥାନ୍ତି ସର୍ବଦା । ଘରକୁ କେବେ କେମିତି କାମ ପଡ଼ିଲେ ଆସନ୍ତି, କେବେ ସସ୍ତ୍ରୀକ, କେବେ ଏକା ଏକା । ଆସି ପହଞ୍ଚୁ ପହଞ୍ଚୁ ପଞ୍ଚାଏ ସାତଜଣ ପାରିଷଦ ପରି ବେଢ଼ି ରହନ୍ତି ଚାରିକଡ଼େ । ସତେ ଯେପରି ମହାରାଜ ବଡ଼ ଅପୂର୍ବ ଠାଣିରେ ବିଜେ କରନ୍ତି । ସାଥୀରେ ଆସିଥିବା ଲୋକମାନେ ବାରଣ୍ଡାରେ ପଡ଼ିଥିବା ତକ୍ତପୋଷ ଉପରେ ବସି ଯାଆନ୍ତି । ସମସ୍ତେ ଆମରି ଗାଁର, ସାଇ ପଡ଼ିଶା । ସେଇଠି ଖୋଲାଯାଏ ଭି.ଆଇ.ପି. ପେଟେରା । ମା' ପାଇଁ ଆସିଥାଏ ଶାଢ଼ି । ମନୁ ପାଇଁ ସାର୍ଟ ପ୍ୟାଣ୍ଟ କପଡ଼ା । ତା'ର ପୁଅ ଝିଅ ପାଇଁ ସାର୍ଟ ପ୍ୟାଣ୍ଟ । ଭାଇବୋହୂ ପାଇଁ ଶାଢ଼ି ।

ପାରିଷଦମାନଙ୍କୁ କୁହାଯାଏ କାହାର ଦାମ୍ କେତେ, କିପରି କେଉଁଠାରୁ ସଂଗ୍ରହ କରାଯାଇଛି, ଇତ୍ୟାଦି । ଯଦି ମିଠା ଇତ୍ୟାଦି ଆସିଥାଏ, ତେବେ ମା' ଉଦ୍ଦେଶ୍ୟରେ କୁହାଯାଏ- ''ଦେଲୁଦେଲୁ, ସେ ଥଳିରେ ମିଠା ଅଛି, ନାରଣ ଭାଇ ଇତ୍ୟାଦିଙ୍କୁ ।'

ମିଠା ଖାଇ ସମସ୍ତେ ତାରିଫ୍ କରନ୍ତି ।

ଉପର ଓଳି ସମସ୍ତଙ୍କୁ ଆସିବାକୁ କହି ସାନ ଭାଇ କକେଇଙ୍କ ଘର ଆଡ଼କୁ ବାହାରନ୍ତି ଯିବା ପାଇଁ । କକେଇଙ୍କ ବଡ଼ପୁଅ ନିଧିଆ ସେତିକି ବେଳକୁ ବିଲରୁ ଫେରୁଥାଏ, ଭାଇ କହନ୍ତି, ''ରହ ରହ ମୁଁ ବି ଯିବି ।'' କକେଇ ବାରଣ୍ଡାରେ ବସି ତେଲ ଲଗାଉ ଥାଆନ୍ତି ଗାଧୋଇବା ପାଇଁ । ଭାଇକୁ ଦେଖି କହନ୍ତି, ''କିରେ ବାବା ଏବେ ଆସିଲ, ମା'ଟା କେତେ ସରି ହେଲା, ଆଖିକୁ ଦିଶୁ ନାହିଁ, ବୁଢ଼ି ମଣିଷ, ପିଣ୍ଡା ତଳକୁ ଓହ୍ଲାଉ ଓହ୍ଲାଉ ଗୋଡ଼ ଖସିଗଲା, ମୁଣ୍ଡ ଫାଟି ବେଚେତା । ଜଣେ କେହି ଆସିଲ ନାହିଁ । ମନୁ ବିଚରା ବଡ଼ ହଇରାଣ ହେଲା ।''

ସାନ ଭାଇ କହନ୍ତି- ''କ'ଣ କରିବି କକେଇ, ଏକୁଟିଆ ଲୋକ । ପୁଅର ପରୀକ୍ଷା ଚାଲିଥିଲା, ତମ ବୋହୂଙ୍କର ଦେହ ବି ଭଲ ନ ଥିଲା । ବାହାରି ହେଲା ନାହିଁ ।''

ଏଣୁତେଣୁ ଦି' ଚାରି ପଦ କଥା ହୋଇ ସାନ ଭାଇ ଫେରି ଆସନ୍ତି ଘରକୁ । ବାରଣ୍ଡା ଉପରକୁ ଉଠି ଆସୁ ଆସୁ ପଚାରନ୍ତି- ''ମା' ତରକାରି ଆଜି କ'ଣ ହୋଇଛି ?'' ମା' କହେ, ''ତୁ କ'ଣ ଆଜି ଆସିବା କଥା ଜଣେଇଥିଲୁ ? ସେଇ ଡାଲି ଫାଲି କ'ଣ ହୋଇଥିବ, ଭଜାଭଜି କରିଦବ, ଘରେ ଅଣ୍ଡା ଅଛି ।''

ସାର୍ଟ ପକେଟ୍‌ରୁ ଶହେ ଟଙ୍କାର ନୋଟ୍ ଖଣ୍ଡେ କାଢ଼ି ସାନ ଭାଇ ମନୁ ହାତକୁ ବଢ଼େଇ ଦଉ ଦଉ କହିବେ– ''ଗଲୁ ପର୍ଶୁଭାଇ ଘର କୁକୁଡ଼ା ଥିବ, ନେଇ ଆସିବୁ । ଗାଁ କୁକୁଡ଼ା ଢେର୍ ଦିନରୁ ଖିଆ ହୋଇନି ।''

ମନୁ କାନ୍ଧରେ ଗାମୁଛାକୁ ଆଉ ଟିକିଏ ସଜାଡ଼ି ନେଇ ପିଣ୍ଡା ତଳକୁ ଓହ୍ଲେଇ ଯିବ । ଟିମା ଲାଙ୍ଗୁଡ ହଲେଇ ହଲେଇ ତା' ପଛରେ । ମା' କହିବ, ''ଉବେଳ ହେଲାଣି, ଏ ଓଳି ଥାଉ, ରାତି ବେଳକୁ କରିବ । ବୋହୂଟାର କୋଡ଼ ଛୁଆ, ଏଇନା ପୁଣି ମସଲା ମସଲି ବାଟିବ ।''

ସାନ ଭାଇ ମନୁର ସ୍ତ୍ରୀ ଉଦ୍ଦେଶ୍ୟରେ କହନ୍ତି- ''ଦିଅ ତ ପିଆଜ ରସୁଣ, ମୁଁ ଛଡ଼େଇ ଦେଇଥାଏ, ସେ ଆସିଲେ କୁକୁଡ଼ା ବାଗେଇ ଦବ, ଚଟାପଟ୍ ସବୁକାମ ହୋଇଯିବ ।''

ଠିକ୍ ସେତିକିବେଳକୁ ମନୁର ସ୍ତ୍ରୀଟି ନାକ ଉପରକୁ ଓଢ଼ଣା ଟାଣି ମା' କାନରେ ଫିସ୍ ଫିସ୍ କରି କହିବ, ''ମା, ରସୁଣ କି ଜିରା ନାହିଁ, ତେଲ ବି ଅଳ୍ପ ଅଛି । ରାତି ବେଳକୁ ମାଂସ କରିବା କଥା କୁହ ମା'... । ଇଏ ଆସିଲେ ବଜାର ଯାଇ ଜିନିଷ ପତ୍ର ନେଇ ଆସିବେ । ଏବେ ଯାହା ରନ୍ଧା ହୋଇଛି ଖାଇ ଦିଅନ୍ତୁ, ଅଣ୍ଡା ଅଛି ତାଙ୍କ ପାଇଁ ଭାଜି ଦେବି ।''

ମା' କହେ, ''ତୁ ବାପା ଯା' ଗାଧେଇ ପଡ଼ିବୁ, ଆର ଓଳିକୁ ଯାହା କରିବ ।'' ମନୁ ଫେରି ଆସିବ ଠିକ୍ ସେତିକି ବେଳକୁ । କହିବ, ''ପର୍ଶୁଭାଇ ଘର କୁକୁଡ଼ା ଅଛି ଯେ ବାହାରେ ସବୁ ଚରୁଛନ୍ତି, ଧରି ହେଲା ନାହିଁ । ସଂଜବେଳକୁ ତା' ପୁଅ ଆଣି ଦେଇଯିବ ।''

ସାନ ଭାଇ କହନ୍ତି, ''ହାଃ ତେରିକା । କେତେ ମନ କରିଥିଲି ।''

ତିନି ଚାରିଦିନ ରହନ୍ତି ସାନ ଭାଇ । ସାଇ ବୁଲନ୍ତି । ଗାଁର ଯେତେ ପାଠୁଆ, ଅଧା ପାଠୁଆ, ବେକାର ସମସ୍ତେ ଆସି ଆମ ଘରେ ମେଳି ଜମାନ୍ତି । ରାଉରକେଲା ଇସ୍ପାତ କାରଖାନାରେ ଚାକିରି କରିବା ପାଇଁ ସମସ୍ତଙ୍କର ଇଚ୍ଛା । ପିଅନ, ଚପରାସୀଠାରୁ ଅଫିସର୍ ପର୍ଯ୍ୟନ୍ତ– ଯାହା ହେଲେ ଖଣ୍ଡେ ଚାକିରି ମିଳନ୍ତା । ଷ୍ଟିଲ୍ ପ୍ଲାଣ୍ଟ୍ କଥା ପଡ଼େ, ଦରମା କଥା ବି ପଡ଼େ । କେତେ ଆଲୋଚନା ହୁଏ । କିଏ ବାୟୋଡ଼ାଟା ଆଣି ଦିଏ ତ କିଏ ନେହୁରା ହୋଇ କହେ ତା' ପାଇଁ କାମଟିଏ ଯୋଗାଡ଼ କରି ଦବା ପାଇଁ । ଗାଁର ଅବସ୍ଥା ଯାହା... । ଚାଷ ନାହିଁ ବାସ ନାହିଁ, ଘରେ ସବୁବେଳେ ପାଟିତୁଣ୍ଡ । ପାଠପଢ଼ି କେଉଁ କାମକୁ ହେଲା ନାହିଁ ବୋଲି ଦୁଃଖ କରି କିଏ କହେ ।

ଘରେ ସବୁବେଳେ ଲୋକ ଗହଳି । ରାଉରକେଲା ଷ୍ଟିଲ ପ୍ଲାଣ୍ଟ୍‌ର ଇଞ୍ଜିନିୟର୍ କ'ଣ କମ୍ କଥା କି ?

ମନୁ ବାରମ୍ବାର ଚେଷ୍ଟା କରେ କହିବା ପାଇଁ, ଆଜିକାଲି ଚାଷ ଆଉ ହେଉ ନାହିଁ । ହଳଟିଏ ଆଜିକାଲି ଶହେଟଙ୍କା । ସାର ବସ୍ତାକର ଦାମ୍ କାହିଁରେ କ'ଣ ? ସେଥିକୁ ପୁଣି ରୁଆ, ବଛା, କଟାକଟି ଅଛି, ମଜୁରି ଅଛି । ଧାନ ବିକି ଦେଇ ଏସବୁ ଭରଣା କଲେ ଛଅ ମାସ ଭାତ ଖାଇବାକୁ ନିଅଣ୍ଟ । ବନ୍ଧୁ ବାନ୍ଧବ ଅଛନ୍ତି, ଭାର ବେଭାର ଅଛି, ରୋଗିଣା ବୁଢ଼ୀ ମା' ସାଥୀକୁ ପୁଣି ତା' ନିଜର ଦି'ଟା ପିଲା । ସବୁବେଳେ କିଛି ନା କିଛି ଲାଗି ରହିଥାଏ । ଅଥଚ ଏସବୁ କଥା ସେ କିଛି କହିପାରେ ନାହିଁ ସାନ ଭାଇକୁ । ମା' ସୁଯୋଗ ଦେଖି କହେ, ''ବାପ, ବିଦେଶରେ ରହିଲୁ, ଘର କଥା ଟିକେ ଦେଖ୍ । ଅଳ୍ପ ହେଉପଛେ ମାସକୁ ଦି' ତିନିଶହ ପଠା । ମନୁଟାର ତ କିଛି ହେଲେ ରୋଜଗାର ନାହିଁ । ବିଚରା କ'ଣ କରିବ ? ଏଥର ମୋ ଦେହ ଖରାପ ହେଲା ଯେ ସାତ ଶହ ଟଙ୍କାର ଔଷଧ ଖାଇଲି । ବୋହୂର କାନଫୁଲ ବନ୍ଧା ପକେଇଛି । ଚାଷବାସ ତ

ହେଲା ନାହିଁ, ଟଙ୍କାବଳ ଥିଲେ ଚାଷ କରନ୍ତା, ସେଥିକୁ ପୁଣି ବଢ଼ି, ମରୁଡ଼ି ଅଛି । କିପରି ଚଳିବ ସିଏ ?''

ଭାଇ କହନ୍ତି, ''ହଉ ହଉ ତୁ ବ୍ୟସ୍ତ ହ'ନା । ଏଥର ପ୍ରତିମାସ ଟଙ୍କା ପଠେଇବି । ଦିନେ ଦି'ଦିନ ପରେ ସାନ ଭାଇଙ୍କର ଡେରା ଉଠେ ।

ଯିବାବେଳେ ବ୍ୟସ୍ତ ହୋଇ କହନ୍ତି- ''ଯାହା ତ ଆଣିଥିଲି ସବୁ ଖର୍ଚ୍ଚ କରିଦେଲି, ଏତେଗୁଡ଼ାଏ ଟଙ୍କା କୁଆଡ଼େ କେମିତି ସରିଗଲା କେଜାଣି ? ନେ'ରେ ପୁଅ,'' ସାନ ଭାଇ ମନୁର ପ୍ରଥମ ଶ୍ରେଣୀରେ ପାଠ ପଢୁଥିବା ପୁଅ ହାତରେ ଦଶ ଟଙ୍କାର ନୋଟ୍ ଖଣ୍ଡେ ଗୁଞ୍ଜି ଦିଅନ୍ତି ଓ ଆଉ ଦଶ ଟଙ୍କା ତା'ର ସାନ ଛୁଆଟି ପାଇଁ ବଢ଼େଇ ଦିଅନ୍ତି ।

ମା'କୁ କହନ୍ତି, ''ତୋର କ'ଣ ଦରକାର କହିଥା, ମୁଁ ଆସିଲେ ନେଇ ଆସିବି ଆର ଥରକୁ ।'' ସେତେବେଳକୁ ଗାଁର ଅଧେ ଟୋକା ଠିଆ ହୋଇ ସାରିଥାନ୍ତି- ''ଭାଇ ମୋ କଥା ଟିକେ ବୁଝିବେ', କିଏ କହେ, 'କକା, ମୋ ସାର୍ଟିଫିକେଟ୍ ଇତ୍ୟାଦି ଦେଇଛି'- ଯିକେ ଦେଖିବ । ଆଉ କିଏ ନିଜର ଫୋଟୋ ଲାଗିଥିବା ଆବେଦନ ପତ୍ର ଓ ସାର୍ଟିଫିକେଟ୍‌ର ଜେରକ୍ସ କପି ଖାମ୍ ଭିତରେ ପୂରେଇ ହାତକୁ ବଢ଼େଇ ଦିଅନ୍ତି ।"

ସାନଭାଇ ଯେମିତି ଆସିଥାନ୍ତି, ସେମିତି ପାରିଷଦ ନେଇ ରାସ୍ତା ଉପରକୁ ଆଗେଇ ଚାଲନ୍ତି । ମା' ବାନ୍ଧିଦେଇଥାଏ ସରୁ ଅରୁଆ ଚାଉଳ, ଚାଉଳ ଭଜା, ମୁଢ଼ି ମୁଆଁ । ମନୁ ସାଇକେଲ୍ କେରିଅର୍‌ରେ ଥଳି ଲଦି ପଛେ ପଛେ ଚାଲେ । ବରଗଛ ତଳେ ବସ୍ ଠିଆ ହୁଏ । ସାନଭାଇ ଫେରି ଯାଆନ୍ତି ତାଙ୍କ ସଂସାର ଭିତରକୁ । ଇସ୍ପାତ କାରଖାନାର ସାଇରନ୍ ଶବ୍ଦ ଭିତରେ ସେ ଭୁଲି ଯାଆନ୍ତି ମା'ର ମଧୁର ଡାକରାକୁ, ଗାଁକୁ, ଗାଁରେ ଛାଡ଼ିଯାଇଥିବା ମଦନ, ପରେଶ, ଲକ୍ଷ୍ମଣ, ଭରତ ଇତ୍ୟାଦିଙ୍କୁ । ତିନିଶହ ଟଙ୍କା ସେ ମାସକୁ ମାସ ପଠେଇ ପାରନ୍ତି ନାହିଁ । ଅଥଚ ବର୍ଷକୁ ଥରେ ଭାରତ ଭ୍ରମଣରେ ସ୍ତ୍ରୀକୁ ନେଇ ନାନା ଆଡ଼କୁ ବୁଲି ଆସନ୍ତି । ଶ୍ୱଶୁର ଘର, ଶଳା, ଶାଳୀଙ୍କର ନାନା ଫରମାଇସ ପୂରଣ କରନ୍ତି ।

ମଝିରେ ମୁଁ ।

ମୋ ମା'ର ଝିଅଟିଏ । ବି.ଏ. ପାଠ ପଢୁଥିବାବେଳେ ବାପା ବାହା କରି ଦେଇଥିଲେ । ମୋ ସ୍ୱାମୀ ଚାକିରି କରନ୍ତି ବ୍ୟାଙ୍କ୍‌ରେ । ଭଲ ଦରମା । ମୋତେ କେଉଁଥିରେ ଊଣା କରି ନାହାନ୍ତି । ବ୍ୟାଙ୍କରୁ ଋଣକରି ସେ କିଣିଥିବା ଜାଗାରେ ଘର ଖଣ୍ଡେ କରିଛନ୍ତି । ମୋର ଦି'ଟା ଦିଅର ମୋ ପାଖରେ ରହି ପାଠ ପଢ଼ନ୍ତି । ଶାଶୁ, ଶ୍ୱଶୁର ମଝିରେ ମଝିରେ ବୁଲି ଆସି କିଛି କିଛି ଦିନ ରହି ଯାଆନ୍ତି । ମୋର ପିଲା ଦୁହେଁ ବୁଢ଼ାବାପା, ବୁଢ଼ୀମା'ଙ୍କୁ ଭଲ ପାଆନ୍ତି ଖୁବ୍ । ମୋ ମା' ବି ଥରେ ଦି'ଥର ଆସିଛି । ମାସେ ଦି' ମାସ ରହି ବୁଲାବୁଲି କରି ଯାଇଛି । ପିଲାଙ୍କର ଛୁଟି ପଡ଼ିଲେ ମୁଁ ବାପ ଘରକୁ ମା' ପାଖକୁ ବୁଲିଯାଏ ଗାଁକୁ ଆଗରୁ ଚିଠି ଲେଖିଥାଏ ମନୁ ପାଖକୁ । ସେ ବସ୍ ପାଖକୁ ଆସିଥାଏ । ତା'ର ପୁଅ ତା' ହାତଧରି ଠିଆ ହୋଇଥାଏ । ଟିମା ବି ଅପେକ୍ଷା କରି ଲାଞ୍ଜ ହଲଉଥାଏ । ମୁଁ ମୋ ପିଲାମାନଙ୍କୁ ଧରି ବସ୍‌ରୁ ଓହ୍ଲାଏ । ଆହା, ସତେ ଯେପରି ମନୁ ମୁହଁରେ ହଜାରେ ୱାଟ୍‌ର ବଲ୍‌ବଟିଏ ଜଳି ଉଠେ । ତା' ପୁଅ 'ମୋ ଝିଅ' ଆସିଲା କହି ଡେଉଁଥାଏ । ଟିମାର ଲାଞ୍ଜ ହଲେଇବା ସ୍ପିଡ୍ ମିନିଟ୍‌କୁ କେତେ ଶହ ଥର ହୋଇ ଉଠେ ।

ମୋ ପୁଅ, ଝିଅ, ମନୁ ଓ ତା' ପୁଅ, ଟିମା ସମସ୍ତେ ମୋତେ ପଛରେ ପକେଇ ଦଉଡୁଥାନ୍ତି ଆଗେ ଆଗେ । ମୁଁ ଚାଲୁଥାଏ ଗୋହିରିରେ । ମା' ଦିଶେ ଗଛ ଫାଙ୍କରେ । ମୋ ମା' ।

ଆହା, ତା'ର ସାନ ମୁହଁରେ କେତେ ଖୁସୀ, କେତେ ଆନନ୍ଦ । ଉଜ୍ଜ୍ୱଳ ଦିଶୁଥାଏ ତା'ର ସାରା ମୁହଁ । ସ୍ୱଚ୍ଛ ଦେଖା ଯାଉଥାଏ, ଆଖି ଚିକ୍ ଚିକ୍ ହେଉଥାଏ ।

ଭଲ ଲାଗେ ମା', ଭାରି ଭଲ ଲାଗେ ମା'ଥିବା ଗାଁ । ସମୟ କୁଆଡ଼େ କୁଆଡ଼େ ଗଳି ପଡ଼େ । ଆଠଦିନ କିପରି ଶେଷ ହୋଇଯାଏ ଜାଣିପାରେ ନାହିଁ । ମୋ ପିଲାମାନେ କୁଆଡ଼େ ଯାଆନ୍ତି, କ'ଣ ଖାଆନ୍ତି, କିପରି ଶୁଅନ୍ତି, ମୁଁ କିଛି ଖବର ରଖେ ନାହିଁ । ଭାରି ଉଶ୍ୱାସ ଲାଗେ । ଗାଁରେ ବୁଲେ, ଦାଦାଖୁଡୀ, ବୁଢ଼ାବାପା, ବୁଢ଼ୀମା', ଭାଉଜ, ସଙ୍ଗାତ ହୋଇ ମୋତେ ବି ମଜା ଲାଗେ । ଏଇଠି ମୁଁ ଜନ୍ମ ହୋଇ ବଡ଼ ହୋଇଥିଲି । ମା' ସବୁ କଥା କହେ, ବଡ଼ଭାଇମାନଙ୍କ କଥା, ଭାଉଜଙ୍କ କଥା, ସବୁ । ଟଙ୍କାଟିଏ କେହି ଆଉ ପଠଉ ନାହାନ୍ତି । ସେମାନଙ୍କର ବନ୍ଧୁ ବାନ୍ଧବମାନେ ତ ଗାଁକୁ ବନ୍ଧୁ ଲୋଡୁଛନ୍ତି । ଭାର ବେଭାର ଏଇଠୁ ଦିଅ । ବାହାଘର, ବ୍ରତଘରରେ ଠିଆ ହୁଅ । କ'ଣ କରିବ ? କେବେଠାରୁ ମୂଲ ମଜୁରି କରନ୍ତାଣି କାହାଘରେ ଯାଇ । ତୋ ବାପା ଥିବା ବେଳେ କେତେ ମାନ ସମ୍ମାନ, ମୁଁ ଖାଲି ମରିଯାଏ, ତା'ପରେ ସେ ତା'ର ଯାହା କରିବ । ଏବେ ଆଉ କାହା ଘରେ ଯାଇ ହଳ ବୁଲେଇବ, ମୂଲ କରିବ ?

ମା'ର ଆଖି ଛଳ ଛଳ ହୁଏ, ଶାଢ଼ିକାନିରେ ସେ ଲୁହ ପୋଛେ । ମୁଁ ଘର ଭିତରକୁ ଉଠିଯାଇ ସୁଟ୍‌କେଶ୍ ଖୋଲେ । ତା' ଜୋଇଁ ଦେଇଥିବା ଦଶ ହଜାର ଟଙ୍କାର ଶହେ ଟଙ୍କିଆ ନୋଟ୍ ବିଡାଟି ଆଣି ତା' ହାତରେ ଦେଇ କହେ- ''ମନୁ ଦୋକାନଟିଏ କରିବ ବୋଲି ତା' ଭିଣୋଇଁ ଏତକ ଦେଇଛନ୍ତି ମା' । ମୁଁ ବଡ଼ଭାଇ, ସାନ ଭାଇକୁ କହିବି ସେମାନେ କିଛି କିଛି ଦେବେ । ରଞ୍ଜୁ ବି କିଛି ଦବ ।''

ମା' କହେ, ''ଦେଲେ ହେଲା । କେତେ ଥର ନେହୁରା ହୋଇ କହିଥିବି । ମୋ କଥା କିଏ ଶୁଣୁଛି ମା' ?''

ମୁଁ ପଚାରେ, ''ରଞ୍ଜୁ ଆସିଥିଲା କି ?''

''ସେ କୁଆଡ଼େ ଆସିବ ? ଏଠି ତା'ର କିଏ ଅଛି ?'' ମା'ର କଣ୍ଠ ଭାରି ଭାରି ଶୁଭେ । ମୁଁ ପ୍ରସଙ୍ଗ ବଦଳାଏ । ଖୁଡୀ ଆସି ପହଞ୍ଚି ଯାଆନ୍ତି । ଗାଁରେ ବେଶ୍ ଭଲରେ ଭଲରେ ସମୟ କଟେଇ ଆମେ ମା' ଛୁଆ ଫେରିଆସୁ । ମନୁ ଆସେ ଛାଡ଼ିବାକୁ । ମା' ଦେଇଥାଏ ମୁଢ଼ି, ନଡ଼ିଆ, ବଡ଼ି, ଆଚାର, ଗୁଆଘିଅ । ତେନ୍ତୁଳି, ଧାନୁଆ ଲଙ୍କା ମରିଚ, ମୁଗଡାଲି- ଜୋଇଁ ଭଲ ପାଉଥିବା ଆରିସା ପିଠା । ଆହୁରି କେତେ କ'ଣ ।

ମନୁର ସ୍ତ୍ରୀ ହାତ ଗୋଡ଼ ଧରି ନେହୁରା ହୁଏ- ''ପୁଣି ଆସିବ ଦିଦୀ, ତମେ ଆସିଲେ ଭାରି ଭଲ ଲାଗେ । ଘର ପୂରିଗଲା ଭଳି ମନେ ହୁଏ, ଏବେ ଯିବ ଯେ ଭାରି ଖାଲି ଖାଲି ଲାଗିବ । ଲକ୍ଷ୍ମୀ ଛାଡ଼ିଯିବ । ମା' ହାତରେ କିଛି ଟଙ୍କା ମୁଁ ଗୁଞ୍ଜି ଦିଏ । ମନୁର ସ୍ତ୍ରୀକୁ ହାତଖର୍ଚ୍ଚ ଦିଏ ।

ଗାଁରୁ ବସ୍ ଚଢ଼ି ମୁଁ ଫେରି ଆସେ ମୋ ସଂସାର ଭିତରକୁ । ମା'ର ଦୀର୍ଘଶ୍ୱାସ ମୋ ଦୀର୍ଘଶ୍ୱାସ ଭିତରେ ମିଶି ଏକାକାର ହୋଇଯାଏ ।

ତା'ପରେ ମନୁ ।

ମା'ର ତୃତୀୟ ପୁଅ । ସେ ତ ସବୁ ଭିତରେ ବାଣ୍ଟି ହୋଇଥାଏ । ମା' ଓ ଗାଁକୁ ଜଗି ସେ ପଡ଼ି ରହିଥାଏ ଗାଁରେ । ଅପାଠୁଆ କି ନା !

ଆମ ଗାଁରେ କେତେ ଲୋକ କଲିକତା, ଦିଲ୍ଲୀ, ହରିୟାଣା, ପଞ୍ଜାବ, ହାଇଦ୍ରାବାଦ ଇତ୍ୟାଦିରେ ରହି କାମ କରୁଛନ୍ତି । ସେ ଯିବା ପାଇଁ କେତେ ଥର ମନ କଲାଣି । ମାତ୍ର ମା' ? ଗାଁ, ଜମିବାଡ଼ି, ଗାଈ, ବଳଦ ତା'ର ପିଲାଛୁଆଙ୍କୁ ଛାଡ଼ି ଯାଇ ପାରେ ନାହିଁ । ଭାଇମାନେ ଭାବନ୍ତି ଆମେ ତ ଜମିବାଡ଼ି, ଘର ଦୁଆର ସବୁ ତାକୁ ଛାଡ଼ି ଦେଇଛୁ, ସେ ଚାଷବାସ କରିବ, ଖାଇବ । ଚିନ୍ତା କ'ଣ ? ଆମେ କ'ଣ ଧାନ ଚାଉଳ, ଡାଲି, ଶାଗରୁ ଭାଗ ଆଣୁଛୁ କି ? ଚାରି ପାଞ୍ଚଟା ପେଟ ପୋଷିହେଉ ନାହିଁ ? ଆମ ବାପା ପୁଣି ସେଇଥିରୁ ସବୁ କରି ଆମକୁ ପାଠ ପଢ଼େଇଲେ କିପରି ।

ସେମାନେ ଭୁଲିଯାଆନ୍ତି ବାପାଙ୍କ ସମୟ ଥିଲା ଅଲଗା । ଏବର ସମୟ ଅଲଗା । ବିନା ପଇସାରେ କିଛି ହୁଏ ନାହିଁ ଏବେ । ସେତେବେଳେ ବାପା, କକେଇ ଦି' ଜଣ ଏକାଠି ଥିଲେ, ଏକାଠି ଖଟୁଥିଲେ, ବିନା ସାରରେ ଅମଳ ହେଉଥିଲା କାହିଁରେ କ'ଣ । ଏବେ ସେତିକି ଜମି ଦି' ଭାଗ । ନା ଅଛି ଲୋକ ବଳ, ନା ଅଛି ଧନବଳ । ଏତେ ଏତେ ପଇସା ରୋଜଗାର କରି ଦି' ଶହ ଟଙ୍କା ଗାଁକୁ ପଠେଇବା ପାଇଁ ସେମାନଙ୍କୁ ଅଣ୍ଟୁ ନାହିଁ, ଗାଁରେ ବୁଢ଼ୀମା'ଟିଏ, ତା'ର ଦେହ ପା' ଅଛି । ଭଲମନ୍ଦ ଅଛି । ମନୁ ମୁହଁ ଖୋଲେ ନାହିଁ । ଭାଇମାନେ ଆସିଲେ ତା'ର କ୍ଷମତା ଅନୁସାରେ ସମସ୍ତଙ୍କ ହେପାଜତ୍ କରେ । ଦୋକାନ ବାକି ବଢ଼େ, ତା' ପୁଅ ପାଇଁ ବହି ସିଲଟ କିଣି ପାରେନା, ସ୍ତ୍ରୀ ପାଇଁ ଢଙ୍ଗର ଲୁଗାଖଣ୍ଡେ ଦେଇ ପାରେନା । ମା'କୁ ଏବେ ଦେଖାଯାଉ ନାହିଁ । ଆଖିରେ ପରଳ ମାଡ଼ି ଯାଇଛି । ଆଖି ଅପରେସନ୍ କଥା ସାନ ଭାଇକୁ କହିଥିଲା ଯେ ଭାଇ କହିଲା, ‘‘ମୁଁ ଯାଇ ସବୁ ଠିକଣା କରି ଚିଠି ଲେଖିବି ତୁ ମା'କୁ ନେଇ ମୋ ପାଖକୁ ଆସିବୁ । ଏଇଠି ଅପରେସନ୍ କରିଦେବା ।'' ଭାଇ ଫେରିଯିବା ପରେ ନା କିଛି ଖବର, ନା ଚିଠି ।

ମନୁର ସଂସାର, ନାହିଁ ନାହିଁର ସଂସାର । ତା' ପିଲାମାନେ କୂଅ ପାଣି ପିଅନ୍ତି । ପୋଖରୀରେ ଗାଧାନ୍ତି । ବର୍ଷାରେ ଭିଜନ୍ତି । ମାଟି କାଦୁଅ ଚକଟି ଖେଳନ୍ତି । ପଡ଼ିଯାଇ ଆଣ୍ଠୁ ଖଣ୍ଡିଆ ହୋଇଗଲେ ଟକ୍‌ସାଇଡ୍ ନେବା ଦରକାର ପଡ଼େ ନାହିଁ ।

ତା' ସ୍ତ୍ରୀ ମାଟି ଅଗଣାରେ ଗୋବର ପାଣିରେ ଲିପେ । କାନି ପାରି ତଳେ ଶୁଏ । ମା'ର ଗୋଡ଼ ଘସେ । ମନୁ ହଳ କରେ । ବିଲ ହିଡରେ ମାଟି ଲଦେ । ଚାଷରେ ହାରେ । ବନ୍ୟା ମରୁଡ଼ିର ସାମ୍ନା କରେ, ଭୋକିଲା ରହେ । ଦୋକାନର ବାକି ଖାତାରେ ବାକି ବଢୁଥାଏ ।

ଆଉ । ଆଉ ଜଣେ । ସେ ମୋ ମା'ର ସବା ସାନ ପୁଅ । ଆହାଃ, ମାତ୍ର ଦଶ ବାର ବର୍ଷରେ ବାପ ଛେଉଣ୍ଡ । ମା'ର କାନି ଧରି ଧରି ବଡ଼ ହୋଇଥିବା କୋଳପୋଛା ପୁଅ । ସୁକୁମାରିଆ, ଲୁତୁପୁତୁ, କାନ୍ଦୁରା ମୁହଁବାଲା ରଞ୍ଜନ । ବାପା ମଲାବେଳକୁ ବଡ଼ଭାଇମାନେ ଏତେ ଆପଣାସର୍ବସ୍ୱ ହୋଇ ନ ଥିଲେ କି ପତ୍ନୀମାନଙ୍କର ଏତେ ବୋଲକରା ପତି ପାଲଟି ନଥିଲେ । ଘରକୁ ଆସୁଥିଲେ । ମା' କାନିରେ ଝାଳ ପୋଛୁଥିଲେ । ଦୁଃଖ ସୁଖ ବାଣ୍ଟୁଥିଲେ, ମନୁ ହାତକୁ ଟଙ୍କା ବଢ଼େଇ ଦେଉଥିଲେ । ଧୀରେ ଧୀରେ ସବୁ ଦୂର ହୋଇଗଲା । ଗାଁ ମାଟି, ମା', ମନୁ ଓ ଗାଁ ଘର ।

ରଞ୍ଜନ ଓରଫ ରଞ୍ଜୁର ଗାଁ ସ୍କୁଲ୍ ପାଠ ଶେଷ ହୋଇଗଲା । ସେ ତ ଗୋଡ଼ ଟେକି ବସିଲା ବଡ଼ଭାଇ ପାଖକୁ ଯିବ, କଲେଜରେ ପଢ଼ିବ । ନ ହେଲେ ରାଉରକେଲା ସାନଭାଇ ପାଖକୁ । ଚିଠି ଲେଖିଲା । ଉତ୍ତର ଫେରିଲା ଡେରିରେ କଲିକତାରୁ । ଏଠି କଲିକତା ମେଟ୍ରୋ ସହର, ବଡ଼ ମହରଗ । ଘର ଜମା ବଡ଼ ନୁହଁ । ଦି' ତିନି ବଖରା ଘରେ ଏତେ ଲୋକ ରହିବା ସମ୍ଭବ ନୁହଁ । ବଡ଼ଭାଇର ଛାତି ତଳେ ଜାଗା ନଥିଲା ରଞ୍ଜୁ ପାଇଁ । ଅଥଚ ତା'ର ଶଳାଟିଏ ତା'ରି ପାଖରେ ରହି ପାଠ ପଢୁଥିଲା । ରାଉରକେଲାରୁ ଖବର ଆସିଲା ପୋଷ୍ଟକାର୍ଡରେ, ଏଠି ମୋ ଚାକର ପିଲା ପାଇଁ ଏଯାଏ କିଛି ବ୍ୟବସ୍ଥା କରି ପାରିନାହିଁ ଯେ ସେ ସିଡ଼ି ଘରେ ଶୋଉଛି । ତୁ ସାଇକେଲ୍ ଖଣ୍ଡେ କିଣି ଗାଁ-ପାଖ କଲେଜକୁ ଯିବା ଆସିବା କରି ପାଠ ପଢ଼ିଲେ କ'ଣ କ୍ଷତି ହୋଇଯିବ ? ଆଉ ମାସକୁ ତୋର ସାଇକେଲ୍ କିଣିବା ପାଇଁ ଟଙ୍କା ପଠେଇ ଦେବି, ତୁ ଗାଁରେ ରହି ପାଠ ପଢ଼ିଲେ ଭଲ । ରଞ୍ଜୁ ବାବୁଙ୍କର ମନ ଘର ଧରିଗଲା । ମା' ବି କଷ୍ଟ ପାଇଲା ।

ଶେଷକୁ ରଞ୍ଜନ ଚିଠି ଲେଖିଲା ଭିଣୋଇଁଙ୍କୁ, ମୋତେ ବି । ଭିଣୋଇଁବାବୁ ଲେଖିଦେଲେ, ''ଚାଲିଆ, ପରୀକ୍ଷା ଫଳ ଧରି । ଏଠି ସିଟ୍ ପାଇଲେ ପଢ଼ିବୁ ।'' ଆମ ପରିବାରରେ ସେ ସାମିଲ୍ ହୋଇଗଲା । ମୋର ବଡ଼ ଦିଅରଟି ଚାକିରି ପାଇ ସାରିଥାଏ, ବାକି ଥାଏ ସାନ ଦିଅର, ଏ ବର୍ଷ ପାଠପଢ଼ା ସରିଥାନ୍ତା । ଆଉ ଜଣେ ଆସିଗଲା । ରଞ୍ଜୁର ପାଠପଢ଼ା ଆରମ୍ଭ ହୋଇ ଶେଷ ବି ହୋଇଗଲା । ପରେ ପରେ ଚାକିରି ମଧ୍ୟ ପାଇଗଲା, କେନ୍ଦ୍ର ସରକାରୀ ଚାକିରି । ମା' ଖୁସି ହେଲା । ମନୁର ଅବସ୍ଥା ସୁଧୁରି ଆସିଲା ଧୀରେ ଧୀରେ । ଗାଁର ପୁରୁଣା ଘର ଭଙ୍ଗା ହୋଇ ନୂଆଘର ତିଆରି ହେଲା । ବଡ଼ଭାଇ ଦୁହେଁ ବାହାରେ ରହି ହାଣ୍ଡି ଖାଇଲେ ।

ବାହାଘର ପ୍ରସ୍ତାବ ଆସିଲା ବାବୁ ରଞ୍ଜନଙ୍କ ପାଇଁ । ଝିଅଟି ଶ୍ୟାମଳୀ, ମଧ୍ୟବିତ୍ତ ପରିବାର । ବି.ଏ. ପଢୁଥିଲା, ଶେଷ ବର୍ଷ । ବାହାଘର ଠିକଣା ହୋଇଗଲା । ରଞ୍ଜୁ ପରି ଲୁତୁପୁତୁ ଲହୁଣି ପିତୁଳା ସୁନ୍ଦର ପୁଅ ପାଇଁ କାଳୀ ଝିଅଟି ଠିକ୍ ହେବ । ଗୋରା ସୁନ୍ଦର ପୁଅଟି ପାଖରେ କାଳୀ ଝିଅଟି ସବୁବେଳେ ନମନୀୟ ହୋଇ ଚଳିବ ।

ବାହାଘର ସରିଗଲା । ପ୍ରକୃତରେ କାଳୀ ଝିଅ କୋଇଲି । ନିଜ ଚେହେରାରେ ନିଜେ ଲାଜ ପାଏ ବୋଲି ଘଞ୍ଚ ଗହଳ ପତ୍ର ଭିତରେ ଲୁଚି ଲୁଚି ବୁଲୁଥାଏ । ଗୀତ ଗାଏ, ମନ କିଣେ । ଆଉ ଆମର ଏ କାଳିବୋହୂଟି ନିଜ ଚେହେରାରେ ଲାଜ ପାଇବ କ'ଣ, ନିଜକୁ ଏତେ ବଡ଼ ମନେକଲା ଯେ ସମସ୍ତଙ୍କୁ ବଳିଗଲା । ନିଜ ଢଙ୍ଗରେ ଚଳ ପ୍ରଚଳ ହେଲା । ସେ ତା'ର ସ୍ୱାମୀ କାନ ଧରି ସ୍ୱାଧୀନତା ମାଗିଲା । ଏକାନ୍ତରେ ରହିବାକୁ ଦାବି କଲା । ସ୍ୱାମୀଟିଏ, ସ୍ତ୍ରୀଟିଏ । ସ୍ୱାଧୀନ ଜୀବନ । ଦାୟିତ୍ୱ ନ ଥିବ, ବୋଝ ନ ଥିବ । ରଞ୍ଜୁ ମୁଣ୍ଡ ହଲେଇଲା, ହଁ ଠିକ୍ କଥା । ଅନ୍ୟର ଦାୟିତ୍ୱ ସେ କାହିଁକି ନେବ ? ସ୍ତ୍ରୀର ଶାଢ଼ିକାନି ତଳ ସେ ସବୁଠାରୁ ନିରାପଦ ମଣିଲା ।

ସ୍ତ୍ରୀକୁ ପଚାରିଲା, ''ଆଜି କେମିତି ଗାଧୋଇବି ? ମୁଣ୍ଡରେ ପାଣି ଦେବି ନା ନାହିଁ ?'' ''ଖାଲି ପୋଛାପୋଛି ହୋଇ ଚାଲି ଆସ, ଭାତ ହୋଇଗଲାଣି ମୁଁ ହାତରେ ମଞ୍ଜୁଆଡି ଲଗେଇଛି, ଭାତ ଗାଳି ପାରିବି ନାହିଁ, ମାଛ ବି ସେମିତି ପଡ଼ିଛି, ଟିକିଏ କେଳେଇ ଦିଅ ।'' ସ୍ତ୍ରୀ କହିଲେ ।

କେବଳ ସ୍ୱାମୀଟିଏ ସ୍ତ୍ରୀଟିଏ ।

ତମେ ପୃଥିବୀର ଶ୍ରେଷ୍ଠ ସୁନ୍ଦରୀ । ସ୍ୱାମୀଟି କହେ । ପତ୍ନୀ ଗୋଡ଼ର ପାଉଁଜି ଅଧିକ ଛମ୍ ଛମ୍ ଶୁଭେ । ଘର ଭୁଲି ହୋଇଯାଏ, ମା' ଭୁଲି ହୋଇଯାଏ । ଭଉଣୀ, ଭିଣୋଇଁ, ଜୀବନଠାରୁ

ବଳି ଭଲ ପାଉଥିବା ଭଣଜା, ଭାଣିଜୀ ବି ଭୁଲି ହୋଇ ଯାଆନ୍ତି । ସବୁଠି ସ୍ତ୍ରୀ ମୁହଁ ଦିଶୁଥାଏ । ପୃଥିବୀ ସ୍ତ୍ରୀମୟ ହୋଇଯାଏ ।

ସ୍ୱାମୀଟିଏ, ସ୍ତ୍ରୀଟିଏ ।

ସ୍ୱାମୀଟି ସ୍ତ୍ରୀ ପାଖରେ ବନ୍ଧା ପଡ଼ିଯାଏ । ତା'ର ବାପା, ମା' ପାଖରେ ହାତ ଯୋଡ଼ି ଠିଆହୁଏ । ଚାକର ପରି । ସ୍ତ୍ରୀର ଆଦେଶକୁ ଅପେକ୍ଷା କରୁଥାଏ । ଘରକୁ ସେ ଯିବ କାହିଁକି ? ଘରକୁ ସେ ଦବ କାହିଁକି ? ଘରେ ତା'ର ଜମି ଅଛି, ଜମିର ଭାଗ ଅଛି । ସେଇ ଜମିକୁ ଯିଏ ଚଷିବ, ସେ ତା'ର ଭାଗଚାଷୀ, ବାସ୍ । ଆଉ ମା' ? ଆଜି ଅଛି କାଲିକୁ ରହିବ ନାହିଁ, ବୁଢ଼ି ହେଲାଣି ତ । ପତ୍ନୀ ମନରେ ଦୁଃଖ ଦେଇ କାହା ପାଇଁ କିଛି କରିବା କ'ଣ ସମ୍ଭବ ?

ରଞ୍ଜନ ଏବେ କଟକ ନଗରରେ, କେନ୍ଦ୍ର ସରକାରଙ୍କର ଜଣେ କର୍ମଚାରୀ । ଏକମାତ୍ର ପତ୍ନୀଙ୍କ ସହିତ ତାଙ୍କର ସ୍ୱାଧୀନ ଜୀବନ, ଶୁଣାଯାଏ କ'ଣ ପିଲାପିଲି ହେବ ।

ଏକଦା ତାଙ୍କର ବି ଅନ୍ୟ ଭାଇମାନଙ୍କ ପରି ଗୋଟିଏ ଗାଁ ଥିଲା । ଗାଁରେ ମା' ରହୁଥିଲା । ମା'ର ସ୍ନେହ ବର୍ଷା ହୋଇ ଝରି ପଡୁଥିଲା । ପୋଖରୀ ଗୋଟିଏ ଥିଲା, ସେଠି ବଗ ବସୁଥିଲା । ଗଡ଼ିଶା ପହଁରୁ ଥିଲା । ଟିମା କୁକୁର ଥିଲା, ଥିଲା ପୁଣି ପରୀ ବାଛୁରୀ, ବେକରେ ମାଳେ ଘୁଙ୍ଗୁର ବାନ୍ଧି ସେ ଡେଉଁଥିଲା । ଗବ ଗଛର ବାଡ଼ ଥିଲା, କଙ୍କି ବସୁଥିଲା, ଏଣ୍ଢୁଅ ମୁଣ୍ଡ ଟୁଙ୍ଗାରୁଥିଲା । ମାଙ୍କଡ଼ ଡାଳ ମାଙ୍କୁଡ଼ି ଖେଳୁଥିଲା । ଦକ୍ଷିଣା ପବନ ବହୁଥିଲା । ଥିଲେ ପୁଣି ନିଜର କିଛି ଆତ୍ମୀୟ ସ୍ୱଜନ । ବାଲ୍ୟ କାଳ, କୈଶୋର ଓ ଯୌବନର ଦିନ, ଏକଥା ଏବେ ସେ ଭୁଲି ଗଲେଣି ।

ଆଜିକାଲି ମା'ର ଦି'ଟାଯାକ ଆଖିକୁ ଦେଖାଯାଉ ନାହିଁ । ମୋତିଆ ବିନ୍ଦୁ ପାକଳ ହେଲାଣି । ଗାଁରେ ମା' ଅଣ୍ଡାଳି ହେଉଛି । କଚଡ଼ା ଖାଇ ଲହୁ ଲୁହାଣ ହେଉଛି । ମା'ର ଅପରେସନ୍ ହୋଇ ପାରୁନି । ବଡ଼ପୁଅ ତା'ର ମେଟ୍ରୋ ନଗରରେ ଜୀବନ ଖୋଜୁଛି । ଇଞ୍ଜିନିୟର ପୁଅ ରାଉରକେଲା ଇସ୍ପାତ ସହରରେ ରହି ଛାତିକୁ ଲୁହା କରି ସାରିଲାଣି । ତା'ର ହୃଦୟରେ ଆଜିକାଲି ରକ୍ତ ବଦଳରେ ତରଳ ଲୁହା ହିଁ ପ୍ରବାହିତ ହେଉଛି । ତା' ତଳ ପୁଅ ହିଡ଼ ମଥାରେ ବସି ଆକାଶକୁ ଅନେଇଛି କେବେ ବର୍ଷା ହେବ ?

ଆଉ ସବା ସାନ ପୁଅ– ମା'ର ଜୀବନ ?

କଟକ ବାଦାମବାଡ଼ି ବସ୍‌ଷ୍ଟାଣ୍ଡ୍‌ରୁ ଶ୍ୱଶୁର ଘରକୁ ଯିବା ପାଇଁ ଅପେକ୍ଷା କରିଛି ବସ୍‌କୁ ।



# ଶୂନ୍ୟ ଇଲାକାର ଶୋକ

## ସରୋଜିନୀ ସାହୁ

ଏଇଭଳି ଦିନେ ଦିନେ ବେଦବ୍ୟାସର ମୁଡ୍ ଅଫ୍ ହୋଇଯାଏ । ବିନା କାରଣରେ ସେ ଚିଡ୍‌ଚିଡ୍ ହୁଏ ମା' ଉପରେ, ଭାଇ ଭଉଣୀଙ୍କ ଉପରେ । କ'ଣ ଯେ କେମିତି ହେଉଥିଲା ଜାଣିପାରେନା ସେ, ହେଲେ ଏତିକି ଜାଣିପାରେ ଯେ ଏଇଭଳି ରୋଗଟା ତାକୁ ଗ୍ରାସ କରିଦେଉଥିଲା । ବଡ଼ କଷ୍ଟରେ, ବଡ଼ କଷ୍ଟରେ ଖସୁଥିଲା ଏ ଦିନଟା ହାତରୁ ତା'ର । ନିଦରୁ ଉଠିବା ପୂର୍ବରୁ ସବୁକିଛି ଠିକ୍ ଥାଏ । କିନ୍ତୁ ନିଦ ଭାଙ୍ଗିଗଲେ, ବିଛଣାରେ ପଡ଼ିରହେ ସେ । ତା'ର ମନେହୁଏ କ'ଣ କିଛି ଗୋଟେ ଗୋଳମାଳ ହେଇଯାଉଛି ତା' ଭିତରେ, କିମ୍ବା ମସ୍ତିଷ୍କରେ, ଏବଂ ସେ ଶୁଣେ ପ୍ରପାତର ଶବ୍ଦ ଝରିଯାଏ ସ୍ନାୟୁରେ ଆଉ ତା' ଛାତି ଉପରେ ଚଢ଼ି ଟହଲ ମାରେ ହାମ୍‌ଲେଟ୍ । ବାଧ୍ୟ ହୋଇ ସେ ଲାଙ୍ଗୁଡ଼ା ପୋକ ପରି ପିଠିରେ ଭରାଦେଇ, ତକିଆ ଉପରୁ ମୁଣ୍ଡ ଉଠେଇ, ଅଳସ ଭାଙ୍ଗେ ଓ ଉଠିପଡ଼େ ।

ସେତିକିବେଳେ ତା'ର ମୁଡ୍ ଅଫ୍ ହୋଇଯାଏ, ଯେତେବେଳେ ସେ ଏଫ୍.ସି.ଆଇ.ରୁ ସବିତା ଅପା ଘରକୁ ନ ଯାଇ ସିଧା ସେଇ ସହରରେ ଥିବା ତା' ନିଜ ଘରେ ପହଞ୍ଚିଯାଏ । ଏତେଦିନ ପରେ ଘରକୁ ଆସି ଘର ଭିତରେ ଚଳପ୍ରଚଳ ହେଉଥିଲେ ବି ମା' କିଛି କହନ୍ତି ନାହିଁ, ଚୁପ୍ ଚାପ୍ ଖାଇବାକୁ ଆଣି ଦେଇଯା'ନ୍ତି । ଆଉ ସାନ ଭାଇଭଉଣୀଗୁଡ଼ା ଆଗପରି ତାକୁ ଭୟ କରନ୍ତି ନାହିଁ । ସେ ତାଙ୍କ ଉପରେ ଚିଡ୍ ଚିଡ୍ ହେଇଉଠେ । ତା ଅଭାବ ଯେ ଏ ଘରେ ଅନ୍ୟମାନେ ଅନୁଭବ କରନ୍ତି ନାହିଁ ! ଏବଂ ଶେଷରେ ସେ ଘରୁ ଖସି ବାହାରିଯିବା ପାଇଁ ଚାହେଁ । ହେଲେ, ସେତିକିବେଳେ, ବାପା ପହଞ୍ଚିଯାଇ ଯା'ତୁ ସ୍ୟାତୁ କାମ ବରାଦ ଦେଇଯା'ନ୍ତି । ଗପନ୍ତି ବେସି ମେସିନ୍ ଭଳି । ପ୍ରତି କଥାରେ ନିଜ ଜୀବନର ଉଦାହରଣ ଆଣି ଥୁଅନ୍ତି । କୁନା– ତା' ସାନଭାଇ– କଥା ଗପିବାବେଳେ ଗର୍ବରେ ତାଙ୍କ ଛାତି ଫୁଲିଉଠେ । ବ୍ୟାସ ସହ୍ୟ କରିପାରେ ନାହିଁ । ତାକୁ ଭଲ ଲାଗେ ନାହିଁ ବାପାଙ୍କର ତା' ଆଗରେ ବନ୍ଧୁ ପରି ଗପିବାର ଢଙ୍ଗଟା । ଇଚ୍ଛା ହୁଏ ଖସିଯିବାକୁ । କିଛି କହିପାରେ ନାହିଁ ସେ । ମନ ଭିତରେ ଦାଇଁବୁଲେ ମେଘ, ପଲେ ବାଦୁଡ଼ି ଡେଣା ଝାଡ଼ି ଉଡ଼ିଗଲା ପରି । ତା' ନିଃଶ୍ୱାସ ଚାରିପଟେ ସେ ଦେଖେ ନୀଳ ମାଛିର ଭିଡ଼ । ସେ ବୁଝେ ତା'ର ମୁଡ୍ ଅଫ୍ ହେଇଯାଉଛି । ସେ ଅତିଷ୍ଠ ହୋଇଉଠୁଛି ।

ଠିକ୍ ସେତିକିବେଳେ ତା'ର ମୁଡ୍ ଅଫ୍ ହୁଏ, ଯେତେବେଳେ ରାସ୍ତାଘାଟରେ ସଲୀଳାକୁ ଦେଖି ସେ ହସିଦିଏ ଓ ତା' ଆଡ଼କୁ ଆଗେଇଯାଏ, ଅଥଚ ସଲୀଳା ତାକୁ ଦେଖି ନ ଦେଖିଲା ପରି ଚାଲିଯାଏ ଆଗକୁ, ତା' ସାଙ୍ଗମାନଙ୍କ ସଙ୍ଗରେ ଗପି ଗପି ।

ହଠାତ୍ ଗମ୍ଭୀର ହୋଇଯାଏ ବ୍ୟାସ । ତା' ନିଜ ଚାରିପଟେ ଟିକିଏ ଆଖି ବୁଲେଇ କାହିଁକି କେଜାଣି ନିଜ ଉପରେ ତା'ର ଦୟା ହୁଏ । ନିଜକୁ ବଡ଼ ଅପଦାର୍ଥ ଅପଦାର୍ଥ ମନେହୁଏ । ଯେତେବେଳେ ଖୁବ୍ ଇଚ୍ଛା ହୁଏ ନିଜକୁ ଥରେ ଚାହିଁନେବାକୁ, ନିଜ ସାଙ୍ଗରେ ଥରେ କହିବାକୁ,

ନିଜକୁ ଥରେ ପଚାରି ବସିବାକୁ : ଏ ମଣିଷ ! ତମେ କ'ଣ ଚାହଁ ? ଏ ବ୍ୟାସ ! ତମେ କ'ଣ ଚାହଁ ?

ବ୍ୟାସ ଭଲ ଭାବରେ ଜାଣେ, ଏ ପ୍ରଶ୍ନର ଉତ୍ତର ନାହିଁ ତା' ପାଖରେ । ମୁଣ୍ଡ ଭାରି ହୋଇଯାଏ ରାସ୍ତାରେ, ପ୍ରଚଣ୍ଡ ଶବ୍ଦ କରି ଟ୍ରେନ୍ ଚାଲିଯାଏ ତା' ଦେହ ଉପରେ । ଷ୍ଟେସନ୍ ନାଇଁ, ପ୍ଲାଟ୍‌ଫର୍ମ ନାଇଁ, ଟ୍ରେନ୍ ଚାଲିଯାଏ ।

ଅବଶ୍ୟ ବେଳେବେଳେ ସେ ଖୁସି ଥାଏ, ଯେତେବେଳେ ସେ ଯେ ଘର ଭିତରେ ଶୋଇ ରହିଛି, ଏ କଥା ଅନ୍ୟମାନେ ଭୁଲିଯା'ନ୍ତି, ଏବଂ ସେତିକି ସମୟ ସେ ବିଛଣାରେ ପଡ଼ିରହି ସମୟର ପିଠି ଆଉଁଷୁଥାଏ, ସକାଳର ପାଖୁଡ଼ାରେ ଭ୍ରମଣ କରୁଥାଏ । ହେଲେ ସମୟଟା ବଂଚିରହେନା ବେଶୀ ସମୟ– ଖୁଚୁରା ପଇସା ପରି ସରିଯାଏ । କେତେବେଳେ ସୁଖର ମୁହୂର୍ତ୍ତ ସବୁ ଶବ ହୁଏ ହାତରେ, କେତେବେଳେ ପୁଣି ଖସିଯାଏ ହାତରୁ ସ୍ୱର୍ଗଦ୍ୱାର ଆଡ଼େ– ସେ କଥା ସେ ଜାଣିପାରେ ନାହିଁ । କିନ୍ତୁ ଏଇଭଳି ମୁହୂର୍ତ୍ତରେ ତା'ର ମୁଡ୍ ଅଫ୍ ହୁଏ, ଯେତେବେଳେ ଶୋଇ ଶୋଇ କିଛି ଅଜବ ଚିନ୍ତା କରିବାକୁ ତା'ର ଇଚ୍ଛା ହେଉଥାଏ, ଅଥଚ ମା' ଆସି ବିଛଣା ଛାଡ଼ିବା ପାଇଁ ଡାକ ଦିଅନ୍ତି, ରୁମ୍‌ଟାରେ ଏପଟ ସେପଟ ହୁଅନ୍ତି, କି ଝାଡୁଟାଏ ଧରି ଘର ଓଳେଇ ବସନ୍ତି ।

ଗୋଟେ ଭଙ୍ଗାରୁଜା ମଇଳା ଚକ୍ ପରି କିଛି ସମୟ ସେ ପଡ଼ି ରହୁଥିଲା ଆଗେ । ମା'ଙ୍କର ଡାକ, ଭାଇ-ଭଉଣୀଙ୍କ ପାଟିଗୋଳ, ପଡ଼ିଶା ଘର ରେଡ଼ିଓର ସଙ୍ଗୀତ– ସବୁ ପରେ ବି ସେ ବିଛଣାରେ ପଡ଼ି ରହୁଥିଲା । ସେତେବେଳେ ତା' ହାତରେ କିଛି କାମ ନଥିଲା ।

କିନ୍ତୁ ହଠାତ୍ ଦିନେ, ଗୋଟେ ପାନଦୋକାନର ଛାତ ତଳେ ଛିଡ଼ା ହୋଇ ସେ ଜୀବନର ସବୁକିଛି ନିଷ୍ପତ୍ତି ନେଇଗଲା । ପୁରୁଣା ସାଙ୍ଗର ପଇସାରେ ସିଗାରେଟ୍ ଖାଇ, ସେ ଠିକ୍ କରିନେଲା, ତା' ସାଙ୍ଗଟି ସଙ୍ଗରେ ସେ ବି ଟ୍ରେନିଂ ନେବ ଏବଂ ନେଲା ମଧ୍ୟ । ଏଫ୍.ସି.ଆଇ. ସହ ସମ୍ପର୍କିତ ହୋଇପଡ଼ିବା ପରଠାରୁ ତରବରରେ ସେ ଉଠି ପଡୁଥିଲା ବିଛଣାରୁ । କାମ ସାରିଦେଇ ଘର ଭିତରେ ଏପଟ ସେପଟ ହେଉଥିଲା । ହେଲେ ମା' ତାଙ୍କ କାମ ନେଇ ଏତେ ବ୍ୟସ୍ତ ରହୁଥିଲେ ଯେ କିଛି ବି କହୁ ନଥିଲେ । କହୁ ବି ନଥିଲେ ଗଣ୍ଡେ ଖାଇକି' ଯା' ବୋଲି । ସେ ଯେମିତି କୋଉଠି ହଜି ଯାଉଥିଲା, ନିଖୋଜ ହୋଇଯାଉଥିଲା ଆହୁରି ସାତ ଭାଇଭଉଣୀଙ୍କ ଭିତରେ । ଶେଷରେ ସେ ନିଜେ ଉଠି ଯାଉଥିଲା ରୋଷେଇ ଘରକୁ ଓ ତା'ପରେ ସାଇକେଲ୍ ଧରି ବାହାରିଯାଉଥିଲା । ଘରେ ସେ ଖୁବ୍ କମ୍ ସମୟ ରହୁଥିଲା । ଆଜିକାଲି ତ ସେ ଘରକୁ ଯାଏନା, ସବିତା ଅପା ଘରେ ରହିଯାଏ । ସବିତା ଅପା ଏ ସହରକୁ ବଦଳି ହେଇ ଆସିବା ଦିନଠୁ, ଘରକୁ ଯିବା ତା'ର କମିଯାଇଚି । ତାଙ୍କର ତ ଚିହ୍ନାଜଣା ଖୁବ୍ କମ୍ ଏ ସହରରେ । ବାହା ହେଇନାହାନ୍ତି । ଏକା ରହିବାକୁ ନିରାପଦ ଭାବନ୍ତିନି । ସେଇଥିପାଇଁ ତାକୁ ରହିଯିବାକୁ କୁହନ୍ତି ଅନେକ ସମୟରେ । ପ୍ରଥମେ ପ୍ରଥମେ ସେ ଦୁଇଦିନରେ ଘରକୁ ଯାଉଥିଲା । ହେଲେ, ଏବେ ପ୍ରାୟ ସେ ଜମ୍‌ମା ଯାଏନା ଘରକୁ ।

ଏଇଠି ରହିବା ପରେ ତା'ର ଖୁମ୍ କମ୍ ମୁଡ୍ ଅଫ୍ ହେଇଛି । ଯାହାବି ହେଇଚି, ସେ ସବୁ ତା'ର ବ୍ୟକ୍ତିଗତ ପ୍ରେମ ସମ୍ପର୍କୀୟ ଘଟଣା ନେଇ । ସବିତା ଅପାର ଆଦର ଭିତରେ, ଭାଇଭଉଣୀଙ୍କ ଗୋଳମାଳଠୁ ଦୂରରେ, ବେଶ୍ ଆରାମ୍‌ରେ ଚାଲିଯାଏ ସମୟ, ହୃଦୟକୁ ଆଖିମାରି ।

ସବୁଦିନ ସକାଳୁ ବେଡ୍-ଟି ମିଳିଯାଏ– ସବିତା ଅପାର ଚାକର ଆଣି ଦେଇଯାଏ ତାକୁ । ବେଡ୍‌ଟି ଖାଇସାରି କିଛି ସମୟ ବିଛଣାରେ ପଡ଼ିରହିବା ସବିତା ଅପାର ଗୋଟେ ଅଭ୍ୟାସ । ସକାଳର କାମ ସରିଲା ବେଳକୁ ସବିତା ଅପା ଉଠିପଡ଼ିଥାନ୍ତି । କିଛି ଖାଇଦେଇ ଯିବା ପାଇଁ ବାଧ କରନ୍ତି ତାକୁ । ଚାକରଟୋକା ଖାଇବାକୁ ଆଣି ଦେଇଯାଏ । ସାଇକେଲ୍ ଧରି ବାହାରିଯାଏ ବ୍ୟାସ– ଏଫ୍.ସି.ଆଇ.କୁ । ସବୁଦିନ ତାକୁ ବାର କିଲୋମିଟର ରାସ୍ତା ସାଇକ୍‌ଲିଂ କରିବାକୁ ହୁଏ । ଗଳି ରାସ୍ତାରୁ ମୁଖ୍ୟ ରାସ୍ତାକୁ ଆସିବା ବେଳେ ସେ ସାଇକେଲ୍‌ଟାକୁ ପବନ ଭଳି ଉଡ଼େଇ ଦିଏ; କିନ୍ତୁ ଯେତେବେଳେ ଖୁବ୍ ଗୁଡ଼ିଏ ବାଟ ଚାଲିଆସେ, ଥର୍ମାଲ୍‌ରେ ଚିମିନୀ ଧୂଆଁ ଯୋଉଠୁ ଦିଶୁଥାଏ, ସେଇଠୁ ହିଁ ତାକୁ ବଡ଼ କଷ୍ଟ ଲାଗେ ସାଇକେଲ୍ ଠେଲିବାକୁ । ପାଡେଲ୍ ଉପରେ ପାଦଥୋଇ, ଅଣ୍ଟା ନୁଆଁଇ କଷ୍ଟ କରିବାକୁ ହୁଏ । କାହିଁକି କେଜାଣି ବ୍ୟାସର ସେତେବେଳେ ମନେପଡ଼େ ସର୍କସ୍‌ର କୁକୁର କଥା, କୁକୁର ସାଇକେଲ୍ ଚଳାଇବା କଥା । ଏକଦା ମଜା ଲାଗୁଥିବା ଦୃଶ୍ୟଟା ବଡ଼ କରୁଣ ହୋଇଉଠେ ତା' ଆଗରେ । ପକେଟ୍‌ରୁ ରୁମାଲ୍ କାଢ଼ି ଭଲ କରି ବେକ ମୁହଁ ପୋଛିନିଏ ବ୍ୟାସ । ସବୁଦିନର ଏ ପରିଶ୍ରମରେ ବି ତା'ର ମୁଡ୍ ଅଫ୍ ହୁଏନା ।

ସେ ଜାଣେ ଟ୍ରେନିଂ ପିରିୟଡ୍‌ଟା ସରିଗଲେ ତାକୁ ସେଇଠି ଗୋଟେ ସର୍ଭିସ୍ ମିଳିଯିବ । ଏଇଥିପାଇଁ ସେ ଗୋଟେ ବଡ଼ ଆଶା ବୋହି, ସ୍ରୋତମୁଖୀ ବୟସଟାକୁ ଆଞ୍ଜୁଳା ପାଣିରେ ବାନ୍ଧିବାକୁ ନ ଦେଇ, ଧାଇଁ ଆସେ ସକାଳେ ଏବଂ ଫେରିଯାଏ ସନ୍ଧ୍ୟାରେ । ଚାକିରୀ ପ୍ରତି ତା'ର ଖୁବ୍ ବେଶି ଗୋଟେ ଆକର୍ଷଣ ନ ଥିଲା କେବେ ଏବଂ ରାତାରାତି ଗୋଟେ ବଡ଼ଲୋକ ହେଇଯିବାର ଇଚ୍ଛା ବି ନଥିଲା ମନରେ ।

କେବଳ ସେ ଗୋଟେ ଚାକିରି ଖୋଜି ବୁଲୁଥିଲା, ତା' ସମ୍ପର୍କରେ ଅନ୍ୟମାନଙ୍କର ଆସ୍ଥା ଜମେଇ ନେବା ପାଇଁ । ଚାକିରିଟା ହୋଇଗଲେ, ବିଶେଷ କରି ସଲୀଳା ହାତରେ ହାତ ପକେଇ ସେ ଅନ୍ତତଃ ଜୋର୍‌ରେ ତ କହିପାରିବ, ଗୋଟାଏ ପରିବାରକୁ ଚଳାଇ ନେବାର ଭରସା ତା' ଉପରେ ରଖାଯାଇପାରେ ବୋଲି ।

ତାକୁ ଭଲ ଲାଗେନା ଏଫ୍.ସି.ଆଇ.ର ଏ ପୃଥିବୀ। ଇଚ୍ଛା ହୁଏ ଆଗଦିନ ଗୁଡ଼ା ପରି ଦଶ ପନ୍ଦର ସାଙ୍ଗକୁ ଧରି ମସ୍ତି କରନ୍ତା, ଆଡ୍‌ଡା ଦିଅନ୍ତା– ପ୍ଲାଟ୍‌ଫର୍ମରେ, ବସ୍‌ଷ୍ଟାଣ୍ଡ୍‌ରେ । ଇଚ୍ଛା କଲେ ବି ହୋଇପାରେନା । ଏବେ ପୃଥବବୀର ବାୟୁମଣ୍ଡଳରେ, ଚିମିନୀର ଧୂଆଁ ତା' ଛାତି ଭିତରେ ଡେଣା ଝାଡ଼େ । ପ୍ରପାତ ଝରିଯିବାର ଶବ୍ଦ ଶୁଣେ ସେ ମସ୍ତିଷ୍କରେ । ଅଧରାତିର ଟ୍ରେନ୍ ଚାଲିଯାଏ ତା' ଦେହ ଉପରେ ଚଢ଼ି, ଅପରିଚିତ ଯାତ୍ରୀଟିଏ ଧଳା ରୁମାଲ୍ ଧରି ହାତ ହଲାଏ ।

କିନ୍ତୁ ଏସବୁ ବେଶି ସମୟ ତାକୁ ଆଚ୍ଛନ୍ନ କରି ରଖେନା । ସବିତା ଅପାର ଗେଟ୍ ଭିତରେ ପଶିଗଲେ, କୁଆଡ଼େ ଏସବୁ ଭୁଲିଯାଏ, ଭୁଲିଯାଏ ଯେ ରାସ୍ତାସାରା ତା' ଦେହରୁ ଅନେକ ଝାଳ ବାହାରିଚି – ଯାହାକୁ ସେ ଲିଭେଇ ଦେଇଛି ତା' ଓଦା ରୁମାଲ୍‌ରେ । ସେ ଭୁଲିଯାଏ ଯେ ସଲୀଳା ସଙ୍ଗେ ତା'ର କେବେ ମତାନ୍ତର ହୁଏ ବୋଲି । ତା'ଣ ମନେହୁଏ, ଏ ପ୍ୟଥିବୀରେ ତଥାପି ସ୍ଥାନଟିଏ ଏବେ ବି ରହିଛି, ଯେଉଁଠି ଟିକେ ମିଠା ପବନ ମିଳିବ ।

ସଂଧ୍ୟାରେ ଫେରି ଆସି ଦେଖେ, ସବିତା ଅପା ହସ୍ପିଟାଲ୍‌ରୁ ଫେରି ବାରଣ୍ଡାରେ ରେଡ଼ିଓ ଧରି ବସି ଯାଇଥାନ୍ତି । ପାଖରେ ଜମେଇଥାନ୍ତି ୟାତ୍ରୁସ୍ୟାଡ଼୍ରୁ ଗୁଡ଼ିଏ ମାଗାଜିନ୍ ଓ ଖାଲି କପ୍ । ସବିତା ଅପା ତାକୁ ପାଖକୁ ଡାକି ବସାନ୍ତି, ଚାକର ଟୋକାକୁ ଦି'ଜଣଙ୍କ ପାଇଁ ଜଳଖିଆ ଆଣିବାକୁ ବରାଦ କରି, ପଚାରିବସନ୍ତି ୟାତ୍ରୁସ୍ୟାଡ଼୍ରୁ କେତେ କଥା ଏବଂ ସଲୀଳା କି ଅନ୍ୟ କେହି ଚିଠି

ଦେଇଥିବା ତା' ମନର ସାର୍ଟଟାକୁ ସିଲେଇ କରିଦିଅନ୍ତି । ସେ ଆଘାତ ଭୁଲିଯାଏ, ଦୁଃଖ ଭୁଲିଯାଏ, କିନ୍ତୁ ଆଶ୍ଚର୍ଯ୍ୟ, ସଲୀଳା ପ୍ରତି ତା'ର ଆକର୍ଷଣ ବି ବଢ଼ିଯାଏ, ଆଉ ସବିତା ଅପା ମା' ହେଇଯାନ୍ତି ତା' ସାମ୍ନାରେ– ତାଙ୍କର ପାଦ ଛୁଇଁ ପ୍ରଣାମ କରିବାକୁ ଇଚ୍ଛା ହୁଏ ତା'ର ।

ସନ୍ଧ୍ୟାରୁ ରାତି ନଅ ଦଶ ଯାଏ ଚେସ୍ ଖୁବ୍ ଜମିଯାଏ ବେଳେ ବେଳେ ଅବଶ୍ୟ ସେମାନେ ନଦୀଆଡ଼େ କିମ୍ବା ପମ୍ପ୍ ହାଉସ୍ ଆଡ଼େ ବୁଲିବାକୁ ଚାଲିଯାଆନ୍ତି । ଫେରିଆସି, ରାତି ଖାଇବା ଶେଷ କରି, ସବିତା ଅପା ତାଙ୍କ ବେଡ୍‌ରୁମ୍ କବାଟ ଦିଅନ୍ତି । ବ୍ୟାସ ଡ୍ରଇଂ ରୁମ୍‌ରେ ତା'ର ବିଛଣା ଝାଡ଼ି ଶୋଇଯାଏ ବ୍ୟାସର ବନ୍ଦ ଆଖିଇ ଭାବେ, ଏ ପୃଥିବୀରେ ତଥାପି ସ୍ଥାନଟିଏ ଏବେ ବି ରହିଛି, ଯେଉଁଠି ଟିକେ ମିଠା ପବନ ମିଳିବ ।

କିଛିଦିନ ଧରି ଗୋଟାଏ ସୁବିଧାବାଦର କିରଣରେ ଏଇ ନିରୀହ ମଣିଷଟି– ବ୍ୟାସ– ହଠାତ୍ ଦିନେ ଏକ ଦୁଃଖର ପ୍ରାଚୁର୍ଯ୍ୟମୟ ସକାଳରେ, ନିଜକୁ ସୋଫା ଉପରେ ଆବିଷ୍କାର କରି ଦେଖେ ଯେ ତା'ର ମୁଡ୍ ଅଫ୍ ହୋଇଯାଇଛି ।

ସେଦିନ ସୋଫା ଉପରେ ନିଜକୁ ଶୋଇଥିବାର ଦେଖି ଗତ ରାତିର କଥା ତା'ର ମନେପଡ଼ିଲା । ତା'ର ସବୁଦିନିଆ ବିଛଣାଟାରେ ସବିତା ଅପାର ସେଇ ଲୋକଟାକୁ ଦେଖି ଚିଡ଼ିଗଲା ବ୍ୟାସ । ତଥାପି ସେଇ ସୋଫା ଉପରେ ଶୋଇ ସେ ଅପେକ୍ଷା କରୁଥିଲା ଗୋଟେ ବାଷ୍ପମୟ କପ୍‌କୁ । ନିଦ ଭାଂଗିଯାଇଥିଲେ ବି ବାରମ୍ବାର କଡ଼ ଲେଉଟାଇ ଶୋଉଥିଲା ଓ ମନେ ମନେ ଚିଡ଼୍ ଚିଡ଼୍ ହେଇ ଉଠୁଥିଲା– ଏତେବେଳ ଯାଏ ଚା'ଟା କାହିଁକି ଯେ ତା' ପାଖରେ ପହଞ୍ଚି ପାରୁନି !

ଦଶ ପନ୍ଦର ମିନିଟ୍ ପ୍ରାୟ ସେମିତି ସୋଫାଟା ଉପରେ ପଡ଼ିରହିବା ପରେ ଆଉ ରହିପାରିଲାନି ବ୍ୟାସ । ସୋଫା ଛାଡ଼ି ବାହାରକୁ ଆସିଲା । ଅଗଣାକୁ ଖରା ଓହ୍ଲେଇ ଆସିଥିଲା ସେତେବେଳକୁ । ଖୋଲା ଟ୍ୟାପ୍‌ରୁ ପାଣିସବୁ ନଳାବାଟେ ବୋହିଯାଉଥିଲା ବାହାରକୁ । ବାରିପଟ ଦୁଆରଟା ପୁରା ମେଲା । ସେଇ ବାଟଦେଇ ବୁଲା-କୁକୁରଟେ ପଶିଆସି ଅଗଣାରେ ଭୂଇଁ ଶୁଙ୍ଘୁଥିଲା । ବ୍ୟାସ ବୁଝିପାରିଲାନି ପ୍ରଥମେ କଥାଟା କ'ଣ ? ଘରସାରା ବୁଲିଆସି ସେ ଦେଖିଲା ଯେ ଚାକର ଟୋକାଟାର ସେଇ ଛୋଟ ସୁଟ୍‌କେଶ୍ ଖଣ୍ଡକ ବି ନାହିଁ । ଏଥର ତାକୁ ଠିକ୍ ଭାବରେ ମାଲୁମ୍ ହେଇଗଲା କଥାଟା । ଚାକର ଟୋକାଟା ଲୁଚିକରି ଭୋର୍‌ରୁ ପଳେଇଥିଲା । ସେ ବାହାର କବାଟ ଖୋଲି ସେଇ ହସ୍ପିଟାଲ୍ କ୍ୟାମ୍ପସ୍‌ଟା ଟିକେ ବୁଲିଆସିଲା ଏବଂ ଫେରିଆସି ବାରିପଟ କବାଟ ଦେଇ ଦେଲା ।

ସେ ଜାଣିପାରୁଥିଲା ସବିତା ଅପା ବି ତା' ପରି ଚା' କପ୍‌ର ଅପେକ୍ଷାରେ ବିଛଣାରେ ପଡ଼ିରହି କଡ଼ ଲେଉଟାଇଥିବେ । ବ୍ୟାସ ଆଉ ନ ବସି ଉଠିଗଲା ରୋଷେଇ ଘରକୁ– ଗୁଡ଼ାଏ ଅଳିଆ କାଗଜ ଆଣି ପୁରେଇ ଦେଲା ଚୂଲୀରେ ଏବଂ ଦିଆସିଲି ମାରି ବସିଗଲା ଚା' କରିବାକୁ । ଆଖିରେ ନାକରେ ଧୂଆଁ ପଶି ଅଣନିଃଶ୍ୱାସୀ କରି ପକାଇଲା ତାକୁ । କେବଳ ଚା'ଟା କରିବା ପାଇଁ ଗୁଡ଼ାଏ ସମୟ ନେଇଗଲା । ଝାଳନାଳ ହୋଇ, ଚା' କପ୍ ଧରି, ସେ ଆଗେଇଗଲା ସବିତା ଅପାଙ୍କ ରୁମ୍ ପାଖକୁ । କବାଟ ବାଡ଼େଇଲା ବ୍ୟାସ । ସବିତା ଅପା କବାଟ ଖୋଲିଲେ ଓ ହାତରୁ ଚା' କପ୍‌ଟି ନେଲେ, କିନ୍ତୁ କିଛି ବି କହିଲେ ନାଇଁ ତାକୁ, ଏମିତି କି ଆଶ୍ଚର୍ଯ୍ୟ ହେଲେନି ଅଦିନିଆ ତା' ହାତରେ ଚା' କପ୍ ଦେଖି । ତା' ଝାଳୁଆ ନାଳୁଆ ମୁହଁ ଦେଖି, 'ଏତେ ପରିଶ୍ରମ କଲୁ କିଆଁ' ବୋଲି ଆହା ପଦଟିଏ ବି କହିଲେ ନାହିଁ । ବରଂ, ଚା' କପ୍‌ଟା ଥୋଇଦେଇ, କଡ଼ ଲେଉଟାଇ ଶୋଇ ରହିଲେ ।

ଗୋଟେ ବିଷଣ୍ଣ ବିଳାସରେ ଗାଧୋଇ ଫେରିଆସିଲା ବ୍ୟାସ । ନିଜ ଅଜାଣତରେ କେତେବେଳେ ସେ ପାଣି ଗରମ କରି ବସିଲା ସବିତା ଅପା ପାଇଁ, କେତେବେଳେ ପୁଣି ସବିତା ଅପାକୁ ବିଛଣା ଛାଡ଼ିବା ପାଇଁ ଆୱାଜ୍ ଦେଲା ଓ କେତେବେଳେ ନିଜ କାମ ସାରିଦେଇ ସାଇକେଲ୍ ଧରି ବାହାରିଗଲା ସେ କଥା ନିଜେ ବି ଜାଣିପାରିଲା ନାହିଁ ବ୍ୟାସ । ଘରୁ ବାହାରିବା ବେଳକୁ ଖରା କାନ୍ଥ ଉପରେ ଖେଳିବା ଆରମ୍ଭ କରିଦେଇସାରିଥିଲା ।

ଏଫ୍.ସି.ଆଇ.ରେ ପହଞ୍ଚିବା ବେଳକୁ କେଜାଣି କେତେ ସମୟ ହେଇଥିବ, ହେଲେ ଜାଣିଥିଲା ଯେ ଠିକ୍ ସମୟରେ ସେ କେବେ ପାରିବନି ଓ ପହଞ୍ଚିଲା ବେଳକୁ ଗେଟ୍ ବନ୍ଦ ହୋଇଯାଇଥିବ । ତଥାପି ସେ ଗେଟ୍ ପାଖକୁ ଗଲା । ଗେଟ୍ ବାହାରୁ ଭିତରକୁ ଚାହିଁ ଫେରିଆସିଲା । ଲେଟ୍‌ରେ ଯାଇଥିଲେ ବି ଚଳିଥାନ୍ତା, କିନ୍ତୁ କାହିଁକି କେଜାଣି, ଗଲାନି ସେ ।

ବାହାରେ ଠିଆ ହୋଇ ଭାବିଲା ବର୍ତ୍ତମାନ ସେ କ'ଣ କରିବ ? କିଛି ତ ହେଲେ ଗୋଟେ କରିବା ଦରକାର । ବର୍ତ୍ତମାନ ସେ କୋଉଠିକି ଯିବ ? ଘରକୁ ଫେରିଯା'ନ୍ତା, କିନ୍ତୁ ଘରେ ଯାଇ କରିବ କ'ଣ ? କାହା ସଙ୍ଗେ ଗପିବ ? ହୁଏତ ସବିତା ଅପାଙ୍କ ଘରକୁ ଫେରିଯା'ନ୍ତା । ମାତ୍ର ସବିତା ଅପା ତ ଏବେ ହସ୍ପିଟାଲ୍‌ରେ ଥିବ, ଆଉ ସେ କ'ଣ ଗପିପାରିବ ସେଇ ଲୋକଟା ସାଙ୍ଗରେ, ଯାହାକୁ ସେ ମା ଭଲ୍ ପାଇପାରୁନି !

ହଠାତ୍ ତା' ମୁଣ୍ଡରେ ଗୋଟେ ଆଇଡିଆ ଢୁକିଗଲା । ସାଇକେଲ୍ ବୁଲେଇ ସେ ପହଞ୍ଚିଗଲା ସଲୀଳାର ଘର ଆଗରେ । ସେ ଜାଣିଥିଲା ସଲୀଳା ଏବେ ଘରେ ଥିବ । ଆଗରେ ପରୀକ୍ଷା ଅଛି, ଘରେ ବସି ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିବ ।

ବ୍ୟାସ କଲିଂ ବେଲ୍‌ରେ ହାତ ଦେଲା । ଏଇ ତ ପ୍ରଥମ ଥର ସେ ତାଙ୍କ ଘରକୁ ସାହସ କରି ଆସିଛି । ଯଦି ସଲୀଳା ନଥିବ ଏବଂ ଅନ୍ୟ କେହି ଥିବ, ତେବେ କ'ଣ ସେ କହିବ ? କିଛି ଭାବିବା ପୂର୍ବରୁ ହିଁ ଦରଜା ଖୋଲିଦେଲା ତାଙ୍କ ଚାକର ।

ବ୍ୟାସ ପଚାରିଲା : ସଲୀଳା ଅଛି ?

: ହଁ ଅଛନ୍ତି । ଡାକିଦେବି ? କ'ଣ ବୋଲି କହିବି ?

: କହିବ.... କହିବ, ବ୍ୟାସ ଡାକୁଚି ବ୍ୟାସ ।

ଚାକରଟି ଚାଲିଗଲା । ସଂଗେ ସଂଗେ ସଲୀଳା ବାହାରି ଆସିଲା ଘର ଭିତରୁ । ବଡ଼ ବ୍ୟସ୍ତ ବିବ୍ରତ ଜଣାଯାଉଥିଲା ସେ । ମୁହଁଟା ତା'ର ରକ୍ତଶୂନ୍ୟ ହୋଇପଡ଼ିଥିଲା । ବାହାରକୁ ଚାଲିଆସି କବାଟଟାକୁ ଆଉଜାଇ ଆଣିଲା ବାହାରୁ, ସତେ ଯେମିତି ସେ ଖୁବ୍ ଡରିଯାଇଛି ।

: କାହିଁକି ଆସିଲ ?

: ଆସିବା ପାଇଁ କ'ଣ ମନା ?

ସଲୀଳା ଏଥର ବେଶି ବ୍ୟସ୍ତ ହେଇପଡ଼ିଲା : ମୁଁ ସେକଥା କହୁନି । ହେଲେ, ହଠାତ୍ କ'ଣ ଏମିତି ଦରକାର ପଡ଼ିଲା ? ଜାଣ, ମା' ଏବେ ଘରେ ଅଛି ?

ବ୍ୟାସ ଆଉ ରହିପାରିଲାନି । କହିଲା : ବିଶ୍ୱାସ କର ସଲୀଳା ! ମୁଁ ଆଜି ଚାଲିଯିବା ପାଇଁ ଆସି ନଥିଲା । ଗପିବା ପାଇଁ, ଖୁବ୍ ବେଶି ଗପିବା ପାଇଁ, ଆସିଥିଲି । ଆମ ବର୍ତ୍ତମାନର କଥା, ଆମ ଭବିଷ୍ୟତ କଥା ।

ଏଥର ସଲୀଳା ଗମ୍ଭୀର ହୋଇଗଲା, କହିଲା : ତମେ ବଡ଼ ଇମୋସନାଲ୍ ।

ସଲୀଳାର ସେଇ ଗମ୍ଭୀର ମୁହଁକୁ ଚାହିଁ ବ୍ୟାସ ଶୁଣିପାରୁଥିଲା ତା' ମସ୍ତିଷ୍କରେ ଝରିପଡୁଥିବା ପ୍ରପାତର ଶବ୍ଦ, ଦେଖି ପାରୁଥିଲା ତା' ଛାତି ଉପରେ ଚଢ଼ି ଟହଲ ମାରୁଥିବା ହାମ୍‌ଲେଟ୍‌କୁ, ଜାଣିପାରୁଥିଲା ରାତିଅଧର ଟ୍ରେନ୍ ପ୍ରଚଣ୍ଡ ଶବ୍ଦ କରି ଚାଲିଯାଉଛି ତା' ଦେହରେ ଆଉ ଅପରିଚିତ ଯାତ୍ରୀଟିଏ ଧଳା ରୁମାଲ୍ ଧରି ହାତ ହଲାଉଚି ।

ସଲୀଳା କେବଳ ଏତିକି କହିଲା : ବାପା-ମାଙ୍କୁ ମୋର ଖୁବ୍ ଭୟ । ମୁଁ କେମିତି ବାପାଙ୍କ ଆଗରେ କହିପାରିବି ଏ କଥା ? ଆମର ପ୍ରଥମରୁ ବଡ଼ ଭୁଲ୍ ହେଲା । ଆମେ କାହାକୁ କେହି ନ ଦେଖିଥାନ୍ତେ ଯଦି, କେତେ ଭଲ ହୋଇଥାନ୍ତା !

ବ୍ୟାସର ଆଖିପତା ତଳେ ଚାଲିଗଲା ଡେଣାଝଡ଼ା ବାଦୁଡ଼ିର ଆକାଶ । ତା' ମୁହଁକୁ ଚାହିଁ ସଲୀଳା କ'ଣ ଭାବିଲା କେଜାଣି, ତା ହାତଟାକୁ ଉଠେଇ ନେଇ ମୁଠାରେ ରଖିଲା । କହିଲା : ବିଶ୍ୱାସ କର, ମତେ ତମକୁ ଭଲ ଲାଗେ– ଏବେ ବି ।

ଏବେ ବି !

ବ୍ୟାସ ଇଚ୍ଛା କରି ବି ହସିପାରିଲାନି ଏବଂ ଭାବିପାରିଲାନି ଯାପରେ ସେ କ'ଣ କହିବ । ତା ମୁଣ୍ଡ ଭିତରେ 'ଏବେ ବି'ର ହାତୁଡ଼ି ପିଟା ଶବ୍ଦ । ସେ ସଲୀଳାର ମୁଠା ଭିତରୁ ହାତ ଖସେଇ ନେଇ କହିଲା : ମୁଁ ତେବେ ଯାଉଚି ସଲୀଳା ।

ବ୍ୟାସ ଚାଲିଆସିଲା । କ'ଣ ପାଇଁ ସେ ଦଉଡ଼ି ଯାଇଥିଲା ସଲୀଳା ଘରକୁ ? ସେ କ'ଣ ଜାଣେନା ଗୋଟେ ଇଞ୍ଜିନିୟରର ଝିଅକୁ ଟଳେଇ ନେବା ପାଇଁ ତା' ପାକରେ କିଛି ନାହିଁ । ସଲୀଳା ସମ୍ପର୍କରେ ତା' ସାଙ୍ଗମାନଙ୍କ ପାଖରୁ ସେ ଯାହା ଶୁଣିଛି, ତା' କ'ଣ ମିଛ ? ଚିଫ୍ ଇଞ୍ଜିନିୟର୍‌ର ପୁଅକୁ ଚାହିଁ ଏ କଥାକୁ କ'ଣ ଅବିଶ୍ୱାସ କରାଯାଇପାରେ ? ତଥାପି ବ୍ୟାସ ଦୌଡ଼ି ଯାଉଥିଲା କାହିଁକି ? କୋଉ ଭରସାରେ ? ଆଉ କୋଉ ଭରସାରେ ସଲୀଳା କହିପାରେ, 'ମୁଁ ତୁମକୁ ଭଲପାଏ, ଏବେ ବି' !

କେବଳ ଏଇ ପଦକ ଶୁଣିବା ପାଇଁ ସେ ଦୌଡ଼ି ଯାଇଥିଲା ? ନିଜ ଉପରେ ଦୟା ହେଲା ତା'ର । ସେ ନିଜକୁ ପଚାରିବାକୁ ଚାହିଁଲା : ଏ ମଣିଷ, ତମେ କ'ଣ ଚାହଁ ? ଏ ବ୍ୟାସ, ତମେ କ'ଣ ଚାହଁ ?

ମୁହଁ ଉପରେ ହାତ ବୁଲେଇ ବ୍ୟାସ ବିଡ୍ ବିଡ୍ ହେଲା : ଅଧିକାର, ଅଧିକାର ।

ବ୍ୟାସକୁ ଖୁବ୍ ଭୋକ ଲାଗୁଥିଲା । ଖାଇ୍ବା କଥା ଭାବିବାକ୍ଷଣି ସେ ଚମକି ପଡ଼ିଲା । ସବୁଦିନ ତା' ପକେଟ୍‌ରେ କିଛି ନା କିଛି ପଇସା ଥାଏ । ସବିତା ଅପାଠୁ କିଛି କିଛି ପଇସା ରଖିଥାଏ, ଲଞ୍ଚ୍ ଆୱାର୍‌ରେ କିଛି ଖାଇବା ପାଇଁ । ପକେଟ୍‌ରେ ହାତ ପୁରେଇଲା ବ୍ୟାସ । ମୁଠା ଭିତରେ ଅନୁଭବ କଲା କିଛି ଖୁଚୁରା ପଇସା ।

କ୍ୟାଣ୍ଟିନ୍‌ରୁ ବାହାରିବା ବେଳେ ତା' ହାତମୁଠାରେ ରହିଥିଲା କେବଳ ଦି'ପଇସିଟେ । ହାତ ମୁଠାରେ ଦି'ପଇସିଟି ଧରି ବ୍ୟାସ ଦି'ପହର ସାରା ବୁଲିଲା, ଏ ସାଙ୍ଗ ସେ ସାଙ୍ଗର ଘର ହୋଇ । ଅବଶ୍ୟ ଏମାନଙ୍କ ସଂଗେ ତା'ର ଆନ୍ତରିକତା ନାହିଁ । କାହାକୁ ଧରି ମସ୍ତି କରିବା, ଆଡ୍‌ଡା ଦେବା ତ ଦୂରର କଥା, କଥା ଗପିବା ପାଇଁ ବି କଥା ନଥାଏ । ତେବେ ବି କାହାକୁ ନିଦରୁ ଉଠେଇ, କାହାକୁ ପଢ଼ାରୁ ଉଠେଇ, ସେ ଗପିଥିଲା । ଗପି ଗପି ଫେରିଥିଲା ସଂଧ୍ୟାବେଳକୁ ।

ରାସ୍ତାରେ ଦେଖା ହୋଇଥିଲା ତା'ର ପୁରୁଣା ସାଙ୍ଗମାନଙ୍କ ସାଥିରେ । ସମସ୍ତେ ତାକୁ ଘେରି ଯାଇଥିଲେ, ପ୍ରଶ୍ନ କରିଥିଲେ, "କୁଆଡ଼େ ଥିଲୁ ? ଆଜି ଆସି ନଥିଲୁ ଯେ ! କ'ଣ

ହେଇଚି ତୋର ?" କେହି କେହି ସଲୀଳା ସଂଗେ ଯୋଡ଼ି ଥଟ୍ଟା କରିବା ଆରମ୍ଭ କରିଦେଲେ । ସେମାନେ ସେଦିନ ଗପି ଗପି ଟାଉନ୍‌ସିପ୍ ସାରା ଚକ୍‌କର ଦେଇଥିଲେ । ସାଉଥ୍ ଇଣ୍ଡିଆନ୍ ଦୋକାନରେ ବସି ବସି ଗପିଥିଲେ ସନ୍ଧ୍ୟା ସାତଟା ଯାଏ ।

ଯାପରେ କ'ଣ ବ୍ୟାସ ଜାଣିଥିଲା ଯେ ଗୋଟେ ଦୁଃଖ ଆସୁଚି ତା ପାଇଁ ସନ୍ଧ୍ୟାର ଷ୍ଟ୍ରେଚର୍‌ରେ ! ସେ କ'ଣ ଜାଣିଥିଲା ଯେ ଠିକ୍ ଯାପରେ ତା' ପାଇଁ ଘଣ୍ଟା-ଘଣ୍ଟା ମିନିଟ୍-କଣ୍ଟା ବଦଳିଯିବ, ବଦଳିଯିବ ତା'ର ସବୁଦିନିଆ ରୁଟିନ୍ !

ତା' ସାଙ୍ଗମାନେ ତାକୁ ଉସ୍‌କେଇ ଦେଲେ । ତାକୁ ଠେଲିପେଲି ପଠେଇ ଦେଲେ । ତା ପୁରୁଷପଣିଆକୁ ଖେଞ୍ଚି ବାରମ୍ବାର ଆଘାତ କଲେ ତାକୁ । ସେ ହାତ ଦେଖେଇ ଅଟକେଇ ଦେଲା । ହେଡ୍‌ଲାଇଟ୍‌ଟା ସ୍ଥିର ହେଇଗଲା ଚିଫ୍ ଇଞ୍ଜିନିୟର୍ ଘର କାର୍‌ଟିର ।

ହଠାତ୍ କ'ଣ ପଚାରିବ ପଚାରିବ ହେଇ ସେ ପଚାରିଦେଲା : ସଲୀଳା, ତମେ ଯା ଭିତରେ ! କୁଆଡ଼େ ବାହାରିଚ ?

ସଲୀଳା କିଛି କହିଲାନି ।

ଗାଡ଼ିର ଡୋର୍‌ଟାକୁ ଧରି ସେ ଏମିତି ଛିଡ଼ା ହେଇଥିଲା ଯେ ଗାଡ଼ିଟା ଯାଇପାରୁ ନଥିଲା । ସେମାନେ ବି କେହି କାହାକୁ କିଛି ନ କହି ସେମିତି ଚୁପ୍ ଥିଲେ ।

ହଠାତ୍ ପିଲାଟା ବ୍ୟାସ ଆଡ଼କୁ ଲକ୍ଷ୍ୟ କରି ପଚାରିଦେଲା, କ'ଣ ଦରକାର ଅଛି ଆପଣଙ୍କର ?

ବ୍ୟାସ ଚଟ୍‌କରି କହିଦେଲା : ଆପଣଙ୍କ ସାଙ୍ଗରେ ନୁହେଁ, ସଲୀଳା ସାଙ୍ଗରେ ।

ତା'ପରେ, ବ୍ୟାସର ଠିକ୍ ମନେ ନାହିଁ, କିଏ କାହାକୁ କେତେଟା ଓ କେତେ ପ୍ରକାରର ପ୍ରଶ୍ନ କରିଥିଲା ଓ କ'ଣ ଉତ୍ତର ମିଳିଥିଲା । ମନେନାହିଁ ବି କେତେବେଳେ ସେ କାର୍ ଭିତରେ ହାତ ପୂରେଇ ସାର୍ଟ-କଲାର୍ ଟାଣିଛି ଓ କେତେବେଳେ ନିଜେ ମାଡ଼ ଖାଇ ସାର୍ଟ ଚିରିଯାଇଚି ।

ଶେଷରେ କେବଳ ଦେଖାଯାଏ, ବ୍ୟାସ ଫେରିଆସେ ସବିତା ଅପା ଘରକୁ– ଫେରିଆସେ ରାତିବାରଟାର ଅନ୍ଧାରକୁ କାଟି କାଟି । ଚିରା ସାର୍ଟ ବାଟେ ପବନ ପଶିଯାଇ ତା'ର କାଖ ଓ ପେଟର ଝାଳକୁ ଶୁଖେଇଦିଏ । ବାଟସାରା ସେ ଶୁଣେ ମସ୍ତିଷ୍କରେ ପ୍ରପାତ ଝରିଯିବାର ଶବ୍ଦ, ଦେଖେ ଛାତି ଉପରେ ଚଢ଼ି ଟହଲ ମାରେ ହାମ୍‌ଲେଟ୍, ସଶବ୍ଦେ ଚାଲିଯାଉଥିବା ରାତି ଅଧର ଟ୍ରେନ୍‌ରେ ଅପରିଚିତ ଯାତ୍ରୀ କିଏ ଧଳା ରୁମାଲ୍ ହଲେଇ ଚାଲିଯାଏ । ମନେ ମନେ ସେ ବିଡ୍‌ବିଡ୍ ହେଇ କୁହେ, କାଲିଠୁ, ହଁ କାଲିଠୁ, ବ୍ୟାସ ପାଇଁ ଏଫ୍.ସି.ଆଇ. ଗେଟ୍ ବନ୍ଦ । ସେ ନିଶ୍ଚୟ କହିଦେବ । ତା' ବାପଟା ଶଳା ଏଫ୍.ସି.ଆଇ. ମ୍ୟାନେଜିଂ ଡିରେକ୍ଟରର ବଟଲ ଫ୍ରେଣ୍ଡ୍ ।

ସବିତା ଅପାର ଘରେ ପହଞ୍ଚିଯାଇ କବାଟ ବାଡ଼ାଏ ବ୍ୟାସ । କେହି ବି ଶୁଣନ୍ତିନି । ପୁଣି ବାଡ଼ାଏ ! ଭିତରୁ ଜବାବ୍ ଆସେନି । ଫାଙ୍କରେ ମୁଣ୍ଡରଖି ଚାହେଁ ସେ । ଘୁଙ୍ଗୁଡ଼ି ଶୁଣେ । ଚାରିକାତ ମେଲି ତା'ର ଖଟ ଉପରେ ପଡ଼ିଥିବା ସେଇ ଲୋକଟାକୁ ଦେଖେ । ସେଇ ପୁରୁଣା ରୋଗ ତାକୁ ପୁଣି ଗ୍ରାସ କରିଯାଏ । ରାଗରେ, ଦୁଃଖରେ ଆଉ ଦି'ଥର କବାଟଟାକୁ ପିଟିଦିଏ ସେ । ଏଥର ଲୋକଟା କିଏ ବୋଲି ପାଟିକରି ପୁଣି ଚୁପ୍ ହୋଇଯାଏ । ବ୍ୟାସ ଅପେକ୍ଷା କରି କରି ସେଇ ବାହାର ବାରଣ୍ଡାରେ ବସିପଡ଼େ । କାନ୍ଥକୁ ଆଉଜି ବିଶ୍ରାମ ନେଉ ନେଉ ଶୋଇଯାଏ ।



# ଶେଷ ସଂଧାର ସଙ୍ଗୀତ

## ବିଷ୍ଣୁ ସାହୁ

ଥରେ ଥରେ ଇଚ୍ଛା ହୁଏ, ନିଜର ସମସ୍ତ ସୃଜନଶୀଳତାକୁ ବିନିଯୋଗ କରି, ଏ ସଚରାଚର ଜୀବଜଗତ ପ୍ରତି ବିଧାତାଙ୍କର ବିଚିତ୍ର ଅବଦାନଗୁଡ଼ିକୁ ନିରୀକ୍ଷଣ କରିବାକୁ ।

ଏବଂ ଲକ୍ଷ୍ୟ କରିବାର କଥା- ସବୁ ବିଚିତ୍ରତା ଭିତରୁ ଶିଶୁମାନସଟି ହିଁ ଅତ୍ୟନ୍ତ ଅନୁପମ ଓ ବୈଚିତ୍ର୍ୟରେ ସବୁଗୁଡ଼ିକୁ ଟପିଗଲା ଭଳି ।

ଯେମିତି ବେଳେବେଳେ ଇଚ୍ଛା ହୁଏ ପୁଳାଏ ମେଘର ପିଠିରେ କୁଦିପଡ଼ି ବସିଗଲା ପରେ ପାହାଡ଼ରୁ ପାହାଡ଼, ଦିଗନ୍ତରୁ ଦିଗନ୍ତ ଘୂରି ବୁଲିବାକୁ, କିମ୍ବା କୌଣସି ନିର୍ଜନ ରାତିରେ ପ୍ରଶସ୍ତ କୋଠାଘରର ଛାତ ଉପରେ ବସି ଅତ୍ୟନ୍ତ ବିତ୍ତବାନ୍ ମନେ ହେଉଥିବା ଜହ୍ନଟି ସହିତ ଦୁନିଆର ହାଲ୍‌ଚାଲ୍ ପଛଭୂମିରେ ଯେଉଁ ନୈସର୍ଗିକ ସଙ୍ଗୀତର ସୃଜନ ହେଉଥିବ ବୋଲି ଅନୁମାନ, ତାକୁ କୌଣସି ଟେପ ରେକର୍ଡରରେ ମଡାଇ ରଖିବାକୁ- ସେମିତି ଗୋଟିଏ ଛୋଟ ପିଲାର ଚେତନାରେ ପଶିଯାଇ, ଏଯାବତ୍ ଆହରଣ କରିଥିବା 'ମୁଁ'ଟିକୁ ଅନ୍ତତଃ କିଛି ସମୟ ପାଇଁ ପାସୋରି ପକାଇବାକୁ ତୀବ୍ର ଭାବରେ ପ୍ରେରଣା ଜାଗେ ।

ସେ ପ୍ରେରଣାର ହେତୁ ମୋତେ ମଧ୍ୟ ଅଜଣା ।

କୌଣସି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ଆସି ମୁଁ ଯେଉଁ ସହରର ଗୋଟିଏ ହୋଟେଲରେ ମାସାଧିକ କାଳ ଭଡ଼ା ନେଇ ରହୁଥାଏ, ସେ ସହର ପ୍ରସିଦ୍ଧ ଥାଏ- ବିଭିନ୍ନ କିସମର ପାଟଶାଢ଼ି, ପ୍ରଭୂତ ବିଳାସବ୍ୟସନଖଚିତ ଗୋଟିଏ ସର୍ବାଧୁନିକ ପାର୍କ ଏବଂ ଅଳ୍ପ କେତେ ବର୍ଷ ତଳେ ଭାରତୀୟ ଜାତୀୟ କ୍ରିକେଟ୍ ଦଳରେ ଅନ୍ତର୍ଭୁକ୍ତ ହୋଇ ଚଳିତ ବିଶ୍ୱକପ୍ ଖେଳିବାରୁ ବାଦ୍ ପଡ଼ିଥିବା ଜଣେ ଯୁବଖେଳାଳିଙ୍କ ପୈତୃକ ଗୃହର ଅବସ୍ଥିତି ଯୋଗୁଁ ।

କିନ୍ତୁ ସେଠି ଯେ ଜଣେ ନିଷ୍ଠାବାନ୍ ସଙ୍ଗୀତଶିଳ୍ପୀ ଅଛନ୍ତି, ଯିଏ କି ତାଙ୍କର ସ୍ୱରଝଙ୍କାରରେ ଏକାଧାରରେ ଆଶା ଓ ଆନନ୍ଦର ନିର୍ଝର ସୃଷ୍ଟି କରିପାରନ୍ତି, ସେକଥା କାହାକୁ ମାଲୁମ୍ ଥାଇପାରେ ବୋଲି ମୁଁ ଅନୁମାନ କରିପାରୁ ନଥିଲି । ଯଦିବା ମାଲୁମ୍ ଥିବ, କେହି ସେସବୁକୁ ଗୁରୁତ୍ୱ ଦେଉ ନଥିବେ ବୋଲି ଧରିନେବା ମୋ' ପକ୍ଷରେ ସ୍ୱାଭାବିକ୍ ଥିଲା ।

କାରଣ, ସେ ସହରର ପ୍ରାୟ ସର୍ବାଧିକ ଲୋକ ଥିଲେ ଆଧୁନିକ ସଭ୍ୟତାର ହୋହଲ୍ଲା ଓ ଚାକଚକ୍ୟ ଦ୍ୱାରା ଆକ୍ରାନ୍ତ । ସେଠାରେ ଥିବା ମନ୍ଦିର କେତୋଟିରେ କୌଣସି ନିର୍ଦ୍ଦିଷ୍ଟ ତିଥିରେ ଯେଉଁ ଜନସମାଗମ ହେଉଥିଲା, ତାହା କେବଳ ମୂଲ୍ୟବାନ୍ ଶାଢ଼ି, ପ୍ରଚୁର ସ୍ୱର୍ଣ୍ଣାଳଙ୍କାର, ଟି.ଭି.ରେ ବିଜ୍ଞାପନ ଦେଉଥିବା ମଡେଲ ସୁଲଭ କେତେଜଣ ଗୃହବଧୂ ଓ ଧଳା ପାଇଜାମା-ପଞ୍ଜାବି ଉପରେ ଲମ୍ବମାନ ସୁନାଚେନ୍ ପକାଇଥିବା ଅନେକ ସୌମ୍ୟ ତରୁଣଙ୍କ ଭିତରେ କୌଣସି ପ୍ରତିଯୋଗିତା ହେଉଥିବା ପରି ବୋଧ ହେବା ବ୍ୟତୀତ, ଧର୍ମଭାବନାର ଚିହ୍ନବର୍ଣ୍ଣ ସୁଦ୍ଧା ନଥିଲା ।

ଅତଏବ ପରିବେଶଟି ପୂରାପୂରି ଥିଲା ବସ୍ତୁତାନ୍ତ୍ରିକ ।

ହୋଟେଲରେ ଦୁଇ ଦିନର ରହଣି ପରେ ସଙ୍ଗୀତର ସେଭଳି ଏକ ସ୍ୱର୍ଣ୍ଣ ଭଣ୍ଡାର ମହଜୁଦ୍ ଥିବା ଗୁପ୍ତ ସୁଡ଼ଙ୍ଗର ସନ୍ଧାନ ମୁଁ ପାଇଗଲି- ତତ୍‌ସହିତ ପାଇଗଲି ଆଉ ଏକ ସୂଚନା । ତାକୁ ଆବିଷ୍କାର ବୋଲି କହିବା ହିଁ ଠିକ୍ ହେବ ।

ସେଇ ଅଦେଖା ଶିଳ୍ପୀଙ୍କର ଲତା ଓ ଫୁଲଚାରାଭରା ଛୋଟ ଉଦ୍ୟାନଟିର ଅପର ପାର୍ଶ୍ୱରେ ଥିବା ଏକ ଅଭିଜାତ କୋଠାର ଅର୍ଦ୍ଧବୃତ୍ତାକାର ବାଲ୍‌କୋନି ଭିତରୁ ସେଇ ସଙ୍ଗୀତକୁ କାନ ଡେରି, ପ୍ରାୟ ପ୍ରତିଦିନ ମୁଣ୍ଡ ଟେକୁଥିଲା ଛ'ସାତବର୍ଷର ସୌମ୍ୟଦର୍ଶନ ଶିଶୁଟିଏ, ଯାହାର ପାଟଳ ରଙ୍ଗର ଓଠ ଥିଲା ଅଦ୍ଭୁତ କୋମଳତାରେ ଭରପୂର । ଚକ୍ଷୁଦୁଇଟି କେତେବେଳେ ଲାଗୁଥିଲା ଚଳଚଞ୍ଚଳ ମୃଗଶାବକର ନିର୍ମଳ ଚାହାଣି ପରି ତ କେତେବେଳେ ସୃଷ୍ଟି କରୁଥିଲା ଦୁଇଟି ସ୍ନିଗ୍ଧ ନୀଳକଇଁର ଭ୍ରମ । କେତେବେଳେ ପୁଣି ତାହା ବିସ୍ମୟ-ବିସ୍ଫାରିତ ହୋଇ ରହୁଥିଲା ଢେର୍ ସମୟ ପର୍ଯ୍ୟନ୍ତ, ଯେତେବେଳେ ସଙ୍ଗୀତ ଶିଳ୍ପୀଙ୍କର ସଙ୍ଗୀତର ତନ୍ମୟତା ଛାଇ ଯାଉଥିଲା ସେଇ ହୋଟେଲ୍‌ଟି ସମେତ ସମଗ୍ର ଇଲାକାରେ ।

ଯେହେତୁ ମୁଁ ରହୁଥିଲି ତିନି ମହଲାରେ, ଶିଶୁଟି ଦ୍ୱିତୀୟ ମହଲାରୁ ମୋତେ ଦେଖିବାର ପ୍ରଶ୍ନ ହିଁ ନଥିଲା । ଅନେକ ସମୟରେ ମୁଁ ମୋର ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରୁ ବିରତ ହୋଇ ତାକୁ କେବଳ ଅନାଇ ରହୁଥିଲି ନିର୍ନିମେଷ ଆଖିରେ । ଲାଗୁଥିଲା, ଯେଭଳି କୌଣସି ଏକ ଉଜ୍ଜ୍ୱଳ ନକ୍ଷତ୍ର ଖସିପଡ଼ିଚି ସେଇ ଅପୂର୍ବ ବାଲକୋନିରେ ଏବଂ ସେଇ କୋଠାଟିର କାରୁକାର୍ଯ୍ୟଗତ ସମସ୍ତ ବୈଭବ ଅତ୍ୟନ୍ତ ତୁଚ୍ଛପ୍ରାୟ ଦିଶୁଛି ସେଇ ଶିଶୁଟି ନିକଟରେ ।

ଶିଳ୍ପୀଙ୍କର ସଙ୍ଗୀତାଭ୍ୟାସର ପ୍ରଥମ ଚରଣରୁ ଅର୍ଥାତ୍ ଷଡ଼୍‌ଜରୁ ନିଷାଦ ପର୍ଯ୍ୟନ୍ତ ଆରୋହ-ଅବରୋହ ଭିତରେ ସମ୍ଭବତ ସେ ଟାଣି ହୋଇ ଆସୁଥିଲା ନିଜର ଅନ୍ୟାନ୍ୟ କାର୍ଯ୍ୟକ୍ରମକୁ ନାକଚ କରି ଏବଂ ହାମୁଡେଇ ରହୁଥିଲା ପାରାମିଟ୍ ଉପରେ । ମୁଁ ତାକୁ ଟପି ଯାଇ ପାରୁନଥିଲି । ମୋର ଉପସ୍ଥାନ ପଡ଼େ ଟିକେ ଡେରିରେ । ସେତେବେଳକୁ ସଙ୍ଗୀତର ସମୁଦ୍ର ସୃଷ୍ଟି କରୁଥିବା ସେଇ ମାମୁଲି ଘରଟି ଆଡ଼େ ଥାଏ ତା'ର ଦୃଷ୍ଟି । ଏଭଳି ପ୍ରଗାଢ଼ ତଲ୍ଲୀନତା ସେ ଦୃଷ୍ଟିରେ ଥାଏ ଯେ, ବାଲକୋନିର ସାମ୍ନା ପଡ଼ିଆରେ ଆକର୍ଷଣୀୟ ଲାଞ୍ଜ ହଲାଇ ଚକ୍କର କାଟୁଥିବା ତନ୍ଦ୍ରାବିଜଡିତ ଗୁଡ଼ି, କିମ୍ବା ଅନେକ ସମୟରେ ବାଲକୋନି ଛାତରୁ ଝୁଲୁଥିବା ସୌଖୀନ ବେତଦୋଳିରେ ଆସି ବସୁଥିବା ଗୋଟିଏ ବିରହୀ ହଳଦୀବସନ୍ତ କିମ୍ବା ରାସ୍ତା ଉପରେ ତୂରୀ ବଜାଇ ଯାଉଥିବା ଭ୍ରାମ୍ୟମାଣ ଆଇସକ୍ରିମ୍ ବିକାଳିଟିର ଡାକ, କିଛି ବି ତା'ର ଏକାଗ୍ରତାରୁ ଟଳାଇ ପାରେ ନାହିଁ ତାକୁ ।

ବଡ଼ ଉପଭୋଗ୍ୟ ଥାଏ ତା'ର ସେଭଳି ଏକାଗ୍ରତା, ଯେମିତିକି ସେ ହିଁ ଏ ସଚରାଚର ସୃଷ୍ଟିର ଗୋଟିଏ କୁନି-ବିଧାତା ।

କ୍ରମଶଃ ମୋ'ର ଦିନର ସବୁଗୁଡ଼ିକ କାର୍ଯ୍ୟସୂଚୀ ହୋଇପଡୁଥାଏ ଅବ୍ୟବସ୍ଥିତ । ସେ ଦିଗକୁ ମୋ'ର ଶୋଚନା ନଥାଏ । ସଙ୍ଗୀତ ଓ ଶିଶୁ ଯେମିତି ମୋର ଦୁଇ ହାତମୁଠାରେ ହୋଇ ରହିଥାନ୍ତି ଦୁଇପୁଳା ଐଶ୍ୱର୍ଯ୍ୟ । କେଉଁଟାକୁ ବି ଛାଡ଼ିବାକୁ ପ୍ରସ୍ତୁତ ନଥାଏ ମୁଁ ।

ମୋ'ର ସୀମିତ ସଂଗୀତଜ୍ଞାନରୁ ମୁଁ ଜାଣେ, ଖୁବ୍ ପ୍ରାତଃକାଳ ଓ ସନ୍ଧ୍ୟା ହିଁ ସଙ୍ଗୀତ ଅଭ୍ୟାସ ପାଇଁ ବିଧିସମ୍ମତ ସମୟ । କିନ୍ତୁ ଶିଳ୍ପୀଙ୍କ ରିଆଜ୍ ଆରମ୍ଭ ହୁଏ ଦିନ ପ୍ରାୟ ଏଗାରଟା ସୁଦ୍ଧା ଏବଂ ସରେ ଅପରାହ୍ନ ପାଞ୍ଚଟା ସରିକି । ମଝିରେ ପାଖାପାଖି ଦୁଇଘଣ୍ଟା ବିରତି । ସେତକ ଭୋଜନ ଓ ଭୋଜନ ପରବର୍ତ୍ତୀ ବିଶ୍ରାମ ସକାଶେ ବୋଲି ମୁଁ ଧରି ନେଇଥାଏ । କ'ଣ ପାଇଁ ବା ଶିଳ୍ପୀଜଣକ

ଏପରି ଏକ ଅନନୁକୂଳ ସମୟ-ସାରଣୀ ନିର୍ବାଚନ କରିଥାନ୍ତି, ସେ ସମ୍ପର୍କରେ ମୁଁ ବିଶେଷ ମୁଣ୍ଡ ଖେଳାଏନା ।

ଅନେକ ସମୟରେ ତାନପୁରାର କମ୍ପନ ସହିତ, ରାଗ ଇମନ କଲ୍ୟାଣ ଅଥବା ଜୟଜୟନ୍ତୀ ଉପରେ ଆଧାରିତ ସମ୍ପୂର୍ଣ୍ଣ ଶାସ୍ତ୍ରୀୟ ରୀତିର ସଂଗୀତ ଶୁଣୁଶୁଣୁ ଗୋଟିଏ ଛ'ସାତ ବର୍ଷର ଶିଶୁ ନିଜର କୁନିହାତଟି ଉପରେ ମୁଣ୍ଡ ରଖି ସଂଗୀତର କୁହୁକରେ ହଜିଯିବ ଏବଂ ଦୋହଲୁଥିବ ପବନରେ ଝୁଲୁଥିବା ଗୋଟିଏ ନିର୍ଭୀକ୍ କାଠଚମ୍ପା ଭଳି - ଏଭଳି ଦୃଶ୍ୟ ଯିଏ ଥରେ ଦେଖିଛି, ତା' ପାଇଁ ପୃଥିବୀର ଆଉ ସବୁ ପ୍ରଲୋଭନ ଯେ ଖୁବ୍ ତୁଚ୍ଛ ଏବଂ ଅଳୀକ, ଏ କଥା ନିଶ୍ଚିତ । ଥରେ ଥରେ ଲାଗେ, ପିଲାଟି ବଡ଼ ଉଦ୍‌ଗ୍ରୀବ ହୋଇ ଉଠୁଛି, ସଙ୍ଗୀତ ଝଙ୍କାରର ଉତ୍ପତ୍ତିସ୍ଥଳକୁ ତାର ଅଭିଯାନପ୍ରିୟ କୁନି କୁନି ପାଦରେ ଚାଲି ଆସିବା ପାଇଁ, ଅଥଚ ସେଭଳି ସୁଯୋଗ ତାକୁ ଦିଆଯାଉନାହିଁ ।

ଦିନେ ଦିନେ ମୋ' ଆଖିରେ ପଡ଼େ, ସେଇ ବାଲ୍‌କୋନିରେ ଏପଟସେପଟ ହେଉଛନ୍ତି ଜଣେ ମଧ୍ୟବୟସ୍କା ସ୍ତ୍ରୀଲୋକ । ସୌଖୀନ୍ ଧଳା ଶାଢ଼ି ଓ ମଥାରେ ଚନ୍ଦନର ଟିପାଟିଏ । ମସୃଣ ମୁହଁଟି ଥାଏ ଖୁବ୍ ଶାନ୍ତ ଏବଂ ଉଦାସ । ଅଥଚ ସେଇ ମହିଳା ଜଣକ କେବେ ଦିନେ ପିଲାଟିର ଉତ୍ସାହ ଓ ସଙ୍ଗୀତ ମନସ୍କତାରେ ବ୍ୟାଘାତ ପହଞ୍ଚାଇଛନ୍ତି ବୋଲି ମନେହୁଏ ନାହିଁ । ବେଳେ ବେଳେ ଲାଗେ, ସେ ଯେମିତି ଗୋଟିଏ ଛାଇ, ଯାହାର ଆକାର ଅଛି; କିନ୍ତୁ ଓଜନ ନାହିଁ । ପିଲାଟିକୁ ସଙ୍ଗୀତରେ ବୁଡ଼ାଇ ରଖିବାର ସୁଯୋଗଟିଏ ଦେବା ଯେମିତି ତାଙ୍କର ଏକମାତ୍ର ଦାୟିତ୍ୱ, ସେହିପରି ଥାଏ ତାଙ୍କର ଭାବଭଙ୍ଗୀ ।

ସମ୍ଭବତଃ ପରିଚାରିକା । ପିଲାଟିର ସୁରକ୍ଷା ଦାୟିତ୍ୱ ବହନ କରି ବେଶ୍ ଗରିମାମୟ ଥାଏ ତାଙ୍କର ଠାଣି । ସେ ଘରର ପରିସର ଭିତରେ ମୁଁ ଆଉ ଯାହାକୁ ଦେଖେ, ସେ ହେଉଛନ୍ତି ଗଗଲ୍‌ସ ପିନ୍ଧି ଭ୍ୟାନିଟି ବ୍ୟାଗ୍ ଓହଳାଇଥିବା ଦୀର୍ଘାଙ୍ଗୀ ଓ ନିଶ୍ଚିତ ଭାବରେ ଅହଂକାରିଣୀ ଜଣେ ମହିଳା- ପ୍ରତିଦିନ କାର୍‌ରେ ଯିବା ଆସିବା କରନ୍ତି । ମୁଁ ମାନିନେଇଥାଏ, ସେ ହିଁ ପ୍ରକୃତରେ ପିଲାଟିର ମା' । ସେ ପ୍ରାୟ ଫେରନ୍ତି ଦିନ ପାଞ୍ଚଟା ସୁଦ୍ଧା । ପିଲାଟିର ଆଉ କୌଣସି ଅଭିଭାବକଙ୍କୁ ମୁଁ ଦେଖେନା ।

ମଝିରେ ମଝିରେ ଇଚ୍ଛା ହୁଏ, ମୁଁ ସେଇ ବାଲକୋନିକୁ ଯାଆନ୍ତି ଓ ଏକାନ୍ତରେ ପିଲାଟିର ଦିବ୍ୟ ମୁହଁଟିକୁ ଟୋକି ଧରନ୍ତି । ତା' ଅଲରା କେଶ କପାଳରୁ ପୋଛି ଦିଅନ୍ତି ଝାଳ । ବାହୁରେ ତାକୁ ବନ୍ଦୀ କରି ରଖନ୍ତି ମନବୋଧ ହେବା ପର୍ଯ୍ୟନ୍ତ । ତାକୁ ଛାତିରେ ଜଡ଼ାଇ ଧରି ନେଇ ଆସନ୍ତି ଏକ ପ୍ରକୋଷ୍ଠକୁ । ସେଇ ଦେବଶିଶୁଟିର ସାନ୍ନିଧ ପ୍ରକୃତରେ କେତେ ଗୌରବାନ୍ୱିତ ନ କରନ୍ତା ମୋତେ ।

କିନ୍ତୁ ହାୟ ! ମୋର ଭାବନାକୁ ପ୍ରତିହତ କରେ, ସେ ଘର ପରିସର ଭିତରେ ଜମାଟ ବାନ୍ଧି ରହିଥିବା ଗୋଟିଏ କଠିନ ନୀରବତା । ଗଗ୍‌ଲସଲଗା ସ୍ତ୍ରୀ ଲୋକଟିର ଚାହାଣି ମୋତେ ଲାଗେ, ମୋ' ଇଚ୍ଛା ନିକଟରେ ମସ୍ତବଡ଼ ପ୍ରାଚୀରଟିଏ ଭଳି ।

ଥରେ ଦେଖିଥିଲି, ପିଲାଟି ଖେଳୁଛି ସେଇ ଦୂରାଗତ ହଳଦୀବସନ୍ତଟି ସହିତ । ହଳଦୀବସନ୍ତଟି ତା' ଚାରିକଡ଼ରେ ଘୂରିଘୂରି ଆସି ବସୁଚି ପାରାପିଟ୍ ଉପରେ, ଯେମିତିକି ଅତି ସହଜରେ ତା'ର ସେଇ ହଳଦୀକଜ୍ଜଳ ମସୃଣ ଡେଣାକୁ ସାଉଁଳେଇ ଦେଇପାରିବ ପିଲାଟିର ସ୍ନେହାତୁର ଅଙ୍ଗୁଳିଗୁଡ଼ିକ ।

ଦିନକର ଘଟଣା । ସେଦିନ ବୋଧହୁଏ ଶିଳ୍ପୀଜଣକ ଥିଲେ ପୀଡ଼ିତ କିମ୍ବା ଅନୁପସ୍ଥିତ । ସେଦିନ କିନ୍ତୁ ସଙ୍ଗୀତର ଶୂନ୍ୟସ୍ଥାନ ପୂରଣ କରିଥିଲା ଭାଗ୍ୟଶାଳୀ ହଳଦୀବସନ୍ତ । ସେ ଡେଇଁ ଡେଇଁ କେତେବେଳେ ବସୁଥିଲା ପିଲାଟିର କାନ୍ଧ ଉପରେ ତ କେତେବେଳେ ମୁଣ୍ଡ ଉପରେ । ପିଲାଟିର ଅତ୍ୟନ୍ତ ଅନୁଗତ ଓ ବଚସ୍କର ଥିଲା ସେ ପକ୍ଷୀଟି । କୌଣସି ଭାଷାର ଆବଶ୍ୟକତା ନ ଥିଲା ସେ ଦୁଇଜଣକର- କଥୋପକଥନ ପାଇଁ । ତାଙ୍କର ସେପରି ସୁକୁମାର କ୍ରୀଡ଼ାକୁ ମୁଁ ଉଠାଇ ନେଇଥିଲି ମୋ' କ୍ୟାମେରାରେ, ଯଦିଓ ଜାଣିଥିଲି ଦୂରତ୍ୱ ଯୋଗୁଁ ଛବିଟି ବିଶେଷ ସ୍ପଷ୍ଟ ହୋଇନପାରେ ।

ହଠାତ୍ ମୁହୂର୍ତ୍ତକ ପାଇଁ ପିଲାଟି ଅନାଇଦେଲା ଉପରକୁ । ମୋ'ର ଦୃଷ୍ଟି ବିନିମୟ ହେଲା ପିଲାଟିର ଆଖି ଦିଓଟି ସହିତ । ତାରକା ପରି ତା'ର ସେଇ ଉଜ୍ଜ୍ୱଳ ଆଖି ଦିଓଟି ମୋ' ଆଖିରୁ କ'ଣ ମାପିଦେଲା କେଜାଣି, ସେ ହସିଦେଲା । ଅଳସଭଙ୍ଗୀରେ ଗୋଟିଏ ଫୁଲର ଗୌରବୋଦ୍ଦୀପ୍ତ ପାଖୁଡ଼ାତକ ଖୋଲିବା ପରି ସେ ହସର ପ୍ରସ୍ଫୁଟନ ।

ପରେ ପରେ ଲକ୍ଷ୍ୟ କଲି, ସେ ବିମୁଗ୍ଧ ହଳଦୀବସନ୍ତଟି ଆସୁଚି ମୋ'ର ବାଲକୋନି ଦିଗରେ । ମୋ'ରି ଆଡ଼କୁ ହାତ ବଢ଼ାଇ ରହିଛି ସେ ବିସ୍ମୟ ବାଳକ । ବାୟୁମଣ୍ଡଳରେ ସ୍ୱର୍ଣ୍ଣିମ ରେଖାଟିଏ ଆଙ୍କି ଆଙ୍କି ଉଡ଼ିଆସୁଥିବା ପକ୍ଷୀଟି, ମୋ'ରି ନିକଟରେ ହିଁ ଖସାଇ ପକାଇଲା ଗୋଟିଏ ବୃନ୍ତଯୁକ୍ତ ଗୋଲାପ । ଉଡ଼ି ଚାଲିଗଲା ବିନୟୀ ଓ ବିଶ୍ୱସ୍ତ ଚଢ଼େଇଟି ତା'ର ପୂର୍ବସ୍ଥାନକୁ । ଭାବିଲି, ପିଲାଟି ହୁଏତ ଅନେକ ଆଗରୁ ତା' ପ୍ରତି ଥିବା ମୋର ଦୁର୍ବଳତାକୁ ଲକ୍ଷ୍ୟ କରିଚି । ଦେଖିଲି, ଅପର ବାଲକୋନିରେ ତା' କୁନି ହୃଦୟଟିର ଭାଷା ପଠାଇଥିବା ଶିଶୁଟି ତାଳି ମାରି ହସୁଚି, ଯେମିତି କୌଣସି ଦୁର୍ଲଭ ପ୍ରାପ୍ତିକୁ ସେ ମୁଠାଇ ଧରିଚି ହାତରେ । ବିହ୍ୱଳ ହେଉଚି ।

ଶୁଣିଥିବା କୌଣସି ପରୀକାହାଣୀ ପରି ଲାଗୁଥିଲା । ପକ୍ଷୀଟିର ସେପରି ବ୍ୟବହାର, ସତେ ଯେମିତି ଏକ ଅଦୃଶ୍ୟ ରଜ୍ଜୁରେ ଗୁନ୍ଥି ହୋଇ ଯାଇଥିଲା ମୋ' ସହିତ ସେହି ବାଳକଟିର ଅନ୍ତରାତ୍ମା ।

ଗୋଲାପଟି ଉପରେ ସ୍ନେହସିକ୍ତ ଚୁମ୍ବାଟିଏ ଦେଇ ମୁଁ ସେଦିନ ଅଭିନନ୍ଦନ ଜଣାଇଥିଲି ସେଇ ହସନ୍ତ ମୁହଁଟିକୁ । ସେ ଠିକ୍ ଗ୍ରହଣ କଲା ସେତକ ଉଷ୍ମତା ।

ପ୍ରତିଦିନ ସେଇ ରାସ୍ତା ଏବଂ ହୋଟେଲ୍ ପାର୍ଶ୍ୱରେ ସଂଘଟିତ ଅନେକ ଦୃଶ୍ୟ ଆଖିରେ ପଡ଼େ । କିନ୍ତୁ ଯେଉଁ ଶିଳ୍ପୀଟିର ସ୍ୱର ଝଙ୍କାର ମୋର ଏବଂ ସେଇ ବାଳକଟି ଭିତରେ ସଂଯୋଗ ସେତୁ ହୋଇ ରହିଥାଏ, ତାଙ୍କର ଦେଖା ମିଳେନା । ସେ ଗୋଟିଏ ପ୍ରତିମା ପରି ସତେ କି ନିଶ୍ଚଳ ହୋଇ ରହିଥାନ୍ତି ମନ୍ଦିରର ଅଭ୍ୟନ୍ତରରେ ।

କ'ଣ କରନ୍ତି ସେ ଶିଳ୍ପୀ ଜଣକ ? ସେ ଦେଖିବାକୁ କିଭଳି ? ସେ ଘରେ ଆଉ କେହି ଥାନ୍ତି କି ନା ? କିଏ ବା କେତେବେଳେ ନିଏ ସେ ଘରବାଡ଼ି ଓ ଫୁଲବଗିଚାର ଯତ୍ନ, ସେକଥା ମୋ ଆଖିରେ ଆଦୌ ପଡ଼େନା । କହିବାକୁ ଗଲେ, ସେ ଦିଗରେ ମଧ୍ୟରେ ମୋର ଆଗ୍ରହ ଥାଏ ବହୁତ କମ୍ ।

କେବଳ ମୁଁ ସଚେତନ ଥାଏ, ସେ ସଙ୍ଗୀତର ମୂର୍ଚ୍ଛନା ସମ୍ପର୍କରେ । ତାନପୁରାର ଗୁଞ୍ଜନ ଗୋଟିଏ ନୈସର୍ଗିକ ଓଁକାର ପରି ମୋତେ କରିଥାଏ କବଳିତ । ଶିଳ୍ପୀଜଣକ ଗୀତ ଗାଇବା ଆରମ୍ଭ କଲେ, ଏକାସାଙ୍ଗରେ ଲକ୍ଷେ ପ୍ରଦୀପ ପ୍ରଜ୍ୱଳିତ ହୋଇଯାଏ ଯେମିତି ! ସେ ସ୍ୱରର ପ୍ରଭାବରେ ମନେହୁଏ, ମେଘ ମେଦୁରିତ ହୋଇଯାଉଛି ଆକାଶ । ଶୋଭାମୟ ହୋଇଉଠୁଛି

ପଳାଶବର୍ଣ୍ଣର ପୃଥିବୀ । ଚତୁର୍ଦ୍ଦିଗରେ ଚହଟି ଯାଉଚି ସମୁଦ୍ର ସମୁଦ୍ରବ୍ୟାପୀ ଧୂପ ଆଉ ଚନ୍ଦନର ଗନ୍ଧ । ହୃଦୟଟି ମନେହୁଏ, କୌଣସି ପ୍ରିୟ ଦେବତାଙ୍କ ଉଦ୍ଦେଶ୍ୟରେ ସତେ ଅବା ମୁଗ୍ଧ ପୁଷ୍ପାଞ୍ଜଳି ।

ମନେ ମନେ ମୁଁ ସାବାସି ଦିଏ । ଧନ୍ୟ, ଧନ୍ୟ ତମେ ଶିଳ୍ପୀ । ଧନ୍ୟ ତମର ଶିଖରସ୍ପର୍ଶୀ ସ୍ୱର, ଯାହା ହୃଦୟର ସକଳ ଅନ୍ଧାର, ଗ୍ଲାନି ଓ ମଳିନତା ପୋଛି ନେଇ ତାକୁ ପରିଣତ କରୁଚି ପୁଳାଏ ଆହ୍ଲାଦର ଜଳପ୍ରପାତରେ । ଏଥି ସହିତ ସେଭଳି ସଂଗୀତର ନିର୍ବିଷ୍ଟ ଓ ସମୁଜ୍ଜ୍ୱଳ କୁନିସ୍ରୋତାଟି ସହିତ ଭେଟାଭେଟି ହେବାର ଦୁର୍ବାର ଇଚ୍ଛାଟିଏ ମୋ' ଭିତରେ କରାଘାତ କରୁଥାଏ ବାରମ୍ବାର ।

ସେ ସୁଯୋଗଟି ଉପସ୍ଥିତ ହେଲା ମାତ୍ର ଅଳ୍ପ କେତୋଟି ଦିନ ପରେ ।

ଦିନକର କଥା– ମୋ' ପ୍ରକୋଷ୍ଠର କଲିଂବେଲ୍‌ଟି ବାଜିବାରୁ ମୁଁ ଦ୍ୱାର ଖୋଲି ଯାହାକୁ ଦେଖିଲି, ତାକୁ ଚିହ୍ନିବାରେ ମୋ'ର ଆଦୌ ଅସୁବିଧା ହେଲା ନାହିଁ । ମୁହଁଟି ସମ୍ପୂର୍ଣ୍ଣ ଅପରିଚିତ ଲାଗୁଥିଲେ ମଧ୍ୟ, ଅନ୍ଧକାର ଭିତରୁ ନିଷ୍କୃତି ପାଇ ଆସିଥିବା ଗୋଟିଏ ଅମ୍ଳାନ ଆବେଗର ପ୍ରତିଛବି ଥିଲା ସେ ମୁହଁରେ ।

ବିନୀତ ଭାବରେ ନମସ୍କାର ଜଣାଇ ସେ କହିଲେ–

"ମୁଁ ଚନ୍ଦନର ଦୂର ସମ୍ପର୍କୀୟ ଜଣେ ମାଉସୀ । ଆୟା କହିଲେ ବି ଚଳିବ । ଆପଣଙ୍କୁ ଏତେବେଳେ ଡିଷ୍ଟର୍ବ କରିଥିବାରୁ କ୍ଷମା ଚାହୁଁଛି ।"

– "ଆରେ, ନା– ନା, କ୍ଷମା କାହିଁକି ମାଗୁଛନ୍ତି ? ଆପଣ ବସନ୍ତୁ ।" ତାଙ୍କୁ ସୋଫାରେ ବସିବାକୁ ଅନୁରୋଧ ଜଣାଇ ମୁଁ ମୋର ଟ୍ରାଉଜର ଓ ଗଞ୍ଜିପିନ୍ଧା ଦେହ ଉପରେ ଟାୱେଲଟିଏ ଘୋଡ଼ାଇ ଦେଲି । ମୋତେ ପ୍ରତିଦିନ ଗୋଟିଏ ଉଜ୍ଜ୍ୱଳ ଉପବନରେ ବୁଲିବାର ସୁଯୋଗ ଦେଉଥିବା ଅସାଧାରଣ ବାଳକଟିର ନାଁ ଯେ ଚନ୍ଦନ, ଏ କଥା ବୁଝିବା ଭିତରେ ଅନେକ କଥା ବୁଝିଗଲି ।

– "ଚନ୍ଦନ ଆପଣଙ୍କୁ ଚିହ୍ନିବା ଆଗରୁ ମୁଁ ଆପଣଙ୍କୁ ଚିହ୍ନି ସାରିଥିଲି । ଆପଣ କହୁନାହାନ୍ତି, ଜଣକର ନାଁ, ପିତାମାତା ଓ ବାସସ୍ଥାନ ଜାଣିବା କ'ଣ ଚିହ୍ନିବାରେ ଲେଖା ?" ସେ କହିଲେ । ହୃଦୟକୁ ପ୍ଳାବିତ କରିବା ପରି ଥିଲା ତାଙ୍କର ଭାଷା ଓ ଭଙ୍ଗୀ ।

ତାଙ୍କ ବକ୍ତବ୍ୟର ପ୍ରତ୍ୟେକଟି ଶବ୍ଦରୁ ବାହାରୁ ଥିଲା ଚନ୍ଦନର ଚତୁର୍ଦ୍ଦିଗକୁ ଘେରି ରହିଥିବା ମମତାମୟୀ ମାତୃତ୍ୱର ଏକ ସ୍ଫୁଲିଙ୍ଗ । ଏତେ ନୀରବ ନୀରବ ଲାଗୁଥିବା ମହିଳା ଜଣକ ପୁଣି ଏତେ ପ୍ରଭାବଶାଳୀ ଢଙ୍ଗରେ କଥାବାର୍ତ୍ତା କରି ପରିସ୍ଥିତିକୁ ସମ୍ପୂର୍ଣ୍ଣ ଭାବେ ନିଜ ଅକ୍ତିଆରକୁ ନେଇପାରନ୍ତି, ସେକଥା ଚିନ୍ତାକରି ବିସ୍ମିତ ହେଲି ।

– "ଆପଣ ଜାଣନ୍ତି, ଚନ୍ଦନ ମୋ'ର ନିଦ ହଜାଇ ଦେଇଚି ।" ମୁଁ କହିଲି । ମୋ' ସ୍ୱରରେ କୌଣସି ଦ୍ୱିଧା ଏବଂ ଆବରଣ ନ ରଖି ।

– "ଆପଣ ମଧ୍ୟ ନିଶ୍ଚୟ ଏ କଥା ଜାଣିଥିଲେ ଯେ– ଚନ୍ଦନର ନିଦ ହଜି ଯାଇଚି ସେଇ ସଙ୍ଗୀତ ଶିଳ୍ପୀଜଣଙ୍କ ପାଇଁ । ତା'ର ଏକା ଜିଦ୍, ସେ ଯିବ ସଙ୍ଗୀତ ସାଧନାମଗ୍ନ ସେଇ ଶିଳ୍ପୀଙ୍କ ନିକଟକୁ ।" ସେ ଟିକେ ଚିନ୍ତିତ ଜଣା ପଡ଼ିଲେ ।

– "ଯାଉ, କ'ଣ ସେଥିରେ ଅସୁବିଧା ?" ଯେମିତି ସେ ଦି'ଜଣଙ୍କ ସାକ୍ଷାତ ଘଟିବା ମଧ୍ୟ ମୋ'ର ଏକାନ୍ତ ଇଚ୍ଛା, ସେଇଭଳି ଆଗ୍ରହ ଓ ସମର୍ଥନ ରହିଥିଲା ମୋ' ସ୍ୱରରେ । ବାସ୍ତବିକ୍ ସେଭଳି ଘଟିଲେ ମୋ' ଖୁସି କେଡ଼େ ଅସୀମ ହୋଇ ନ ପଡ଼ନ୍ତା ସତରେ !"

– "ଅସୁବିଧା ଅଛି ।" ସେ କହିଲେ ଏବଂ ଟିକେ ରହିଯାଇ ପୁଣି ଯୋଗ କଲେ, "ଆପଣଙ୍କର ଯଦି କିଛି ଅସୁବିଧା ନଥାଏ ଏବଂ ମୋ' କଥା ଶୁଣିବାକୁ ଅଳ୍ପ ସମୟ ଥାଏ, ତେବେ ମୁଁ ସେସବୁ କଥା କହନ୍ତି । ଗୋଟାଏ ମସ୍ତବଡ଼ ଚିନ୍ତାରୁ ମୁକ୍ତି ମଧ୍ୟ ମିଳିଯାଆନ୍ତା ମୋତେ । ଚନ୍ଦନର କୌଣସି ପ୍ରିୟ ଇଚ୍ଛା ଅପୂରଣ ରହିବା ମୋ ପାଇଁ ଖୁବ୍ କଷ୍ଟଦାୟକ ।" ତାଙ୍କ ମୁହଁରୁ ସବୁତକ ସରସତା ଲିଭି ଆସୁଥିଲା ଯେମିତି ।

– "ଆପଣ କହନ୍ତୁ ଏବଂ ଏ କଥା ବି ଜାଣି ରଖନ୍ତୁ, ଚନ୍ଦନ ସମ୍ପର୍କିତ ସବୁ କାହାଣୀ ମୋତେ ମନେ ହେବ ସୁମଧୁର ସଙ୍ଗୀତର ଗୋଟିଏ ଗୋଟିଏ ପଂକ୍ତି ଭଳି । ଆପଣ ନିଶ୍ଚିତ ରହନ୍ତୁ, ମୋର ଯଦି କିଛି କରିବାର ଥାଏ ଚନ୍ଦନ ପାଇଁ, ତେବେ ସେଥିପାଇଁ ମୁଁ ସବୁମତେ ପ୍ରସ୍ତୁତ ।" ମୁଁ ଉତ୍ସାହୀ ହେଲି ।

ଏତେବେଳକେ ମୃଦୁ ହସର ରେଖାଟିଏ ଫୁଟିଲା ତାଙ୍କ ଓଠରେ । ସେ କହିଲେ–

"ପୁତ୍ର ଦୃଷ୍ଟିରୁ ଚନ୍ଦନ ଗୋଟିଏ ହତଭାଗ୍ୟ ସନ୍ତାନ । ବାପାର ସ୍ନେହ କ'ଣ ବୁଝିବା ଆଗରୁ ତାକୁ ତା'ର ଜନ୍ମଦାତା ସହିତ ବିଚ୍ଛିନ୍ନ କରିଦେଲା କୋର୍ଟର ଗୋଟିଏ ମାମୁଲି ନିର୍ଦ୍ଦେଶନାମା । ଚନ୍ଦନର ମମି, ଯାହାକୁ ଆପଣ କାର୍‌ରେ ଯିବା ଆସିବା କରିବାର ଦେଖିଥିବେ, ସେ ଡାଇଭୋର୍ସ କରିଛନ୍ତି ତାଙ୍କ ସ୍ୱାମୀଙ୍କୁ, ଦୀର୍ଘ ପାଞ୍ଚବର୍ଷ ତଳୁ । ତାଙ୍କର ଅପରାଧ ଥିଲା, କିଛି କିଛି କବିତା ଲେଖିବା ଓ ପ୍ରାଚୁର୍ଯ୍ୟ ଅଭିଳାଷିଣୀ ନିଜ ସ୍ତ୍ରୀକୁ ବିଳାସପୂର୍ଣ୍ଣ ଜୀବନର ଭଙ୍ଗୁରତା ଓ ଅସାରତା ପ୍ରତି ସଚେତନ କରାଇବା ।"

"ଅପର ପକ୍ଷରେ କବିତା ହେଉ କି ସଙ୍ଗୀତ, ଏସବୁ ଥିଲା ମୋର ସେଇ ସମ୍ପର୍କୀୟା ଭଉଣୀଟିର ପରମ ଶତ୍ରୁ । ବିବାହ ବିଚ୍ଛେଦ ହେଲା । ତାଙ୍କ ସ୍ୱାମୀ ଏବେ ତାଙ୍କ ବଡ଼ଝିଅ ସହିତ ଋଷିକେଶରେ ଏବଂ ମ୍ୟାଡାମ୍ ରହୁଛନ୍ତି ତାଙ୍କ ପୈତୃକ ଘରେ ! ପୈତୃକ ବ୍ୟବସାୟକୁ ଦେଖାଶୁଣା କରନ୍ତି ସିଏ ।"

"ଦୁର୍ଭାଗ୍ୟକୁ ଚନ୍ଦନ ଯେତିକି ଯେତକି ବଡ଼ ହେଉଥିଲା, ସେତିକି ସେତିକି ତା' ଭିତରେ ବଢୁଥିଲା ସଙ୍ଗୀତ ପ୍ରତି ଆକର୍ଷଣ । ଖାଇବା, ପିନ୍ଧିବା, ପାଠ ପଢ଼ିବା ସବୁଥିରେ ଶୃଙ୍ଖଳା ଓ ତତ୍ପରତା ଦେଖାଉଥିବା ପିଲାଟି ଥିଲା କାୟମନୋବାକ୍ୟରେ ସଙ୍ଗୀତ ପ୍ରତି ଉନ୍ମୁଖ । ସେଥିପାଇଁ ତା' ମମିର ପ୍ରଚଣ୍ଡ ପ୍ରତିରୋଧର ସମ୍ମୁଖୀନ ହୋଇଥିଲା ସେ । ଭୀଷଣ ମାଡ଼ ଖାଇ ରକ୍ତାକ୍ତ ନୋଳା ସବୁ ବସି ଯାଇଥିଲା ଚନ୍ଦନର ଶୁଭ୍ର ନରମ ପିଠି ଉପରେ । ସେ ଦୃଶ୍ୟ ଅତ୍ୟନ୍ତ ମର୍ମନ୍ତୁଦ – ଗଛ, ପତ୍ର, ନଦୀ ଓ ନକ୍ଷତ୍ର ସବୁକୁ କନ୍ଦାଇବା ପରି ।" ଭଦ୍ରମହିଳା ଆଖି ପୋଛିଲେ ଲୁଗାକାନିରେ ।

"ସେ ସବୁର ମୁଁ ହେଉଛି ଜୀବନ୍ତ ସାକ୍ଷୀ । କିନ୍ତୁ ଚନ୍ଦନ ଥିଲା ନଛୋଡ଼ବନ୍ଧା । ମାଡ଼ ପ୍ରତି ତାର ପରୱା ନଥିଲା । ନଥିଲା ମଧ୍ୟ କୌଣସି ବିକାର ତା' ମମିର ବିରକ୍ତି ପ୍ରତି । ସଙ୍ଗୀତର ମହୌଷଧି ପିଇପିଇ ସେ ସହିଯାଉଥିଲା ସମସ୍ତ ଅତ୍ୟାଚାର । ଆଖିରୁ ଲୁହ ପୋଛି ଲିଭାଇ ପକାଉଥିଲା ପ୍ରହାରର ଜ୍ୱାଳା । ବାପାଙ୍କ ପାଖକୁ ପଳାଇବା ପାଇଁ ତା'ର ବ୍ୟାକୁଳ ପ୍ରାର୍ଥନା କେବଳ ଯେ ନିଷ୍ଫଳ ହୋଇଥିଲା, ସେକଥା ନୁହେଁ, ପ୍ରତିବଦଳରେ ତାହା ସୃଷ୍ଟି କରିଥିଲା ଅହଂକାରିଣୀଟି ମନରେ ପୁଅ ପ୍ରତି ତୀବ୍ର ଘୃଣା ଓ ନିଷ୍ଠୁର ଉଦାସୀନତା ।"

"ମୋତେ ଆଣି ଏଠାରେ ରଖାଯାଇଥିଲା ଚନ୍ଦନର ଦାୟିତ୍ୱ ବୁଝିବାକୁ । ମୁଁ ତା'ର ହସ-କାନ୍ଦ, ଭଲ ମନ୍ଦ, ଆଶା ଆଉ ନିରାଶାର ସାକ୍ଷୀ ହେବାକୁ ହିଁ ଏଠି ପଡ଼ିରହିଲି । ମୋତେ ମଧ୍ୟ

ଆସ୍ତେ ଆସ୍ତେ ମା' ବୋଲି ଡାକିଲା ସେହି ସ୍ନେହକାଙ୍ଗାଳ ପିଲାଟା । ମମିର କୌଣସି ସମ୍ପର୍କ ଥାଏ ତା' ପାଇଁ ଅପହଞ୍ଚ ।"

"ତାକୁ ପାଠ ପଢ଼ାଇଲା ବେଳେ ସେ ମନଦେଇ ଶୁଣେ । ଯାହା ଦେଲେ ଖାଇଦିଏ । କୌଣସି ଦୁଷ୍ଟାମି, ଅଳିଅଝଟ କରିବାର ମୁଁ ଦେଖି ନାହିଁ କେବେ ବି । ବଗିଚାରେ ଫୁଲ ଫୁଟିଲେ ସେ ଖୁସି ହୁଏ, ହାତ ଉଠାଇ ନମସ୍କାର କରେ । ହାତଟେକି ନାଚିଯାଏ ମେଘଭର୍ତ୍ତି ଆକାଶ ଦେଖିଲେ । ସଙ୍ଗୀତ ଶୁଣିଲେ ପାଗଳ ହୋଇଯାଏ ଯେମିତି, ତା' ଆଖି ଦୁଇଟିରେ ଭରିଯାଏ ପ୍ରଶାନ୍ତି ଏବଂ ଅମୁସାରୀ ସ୍ୱପ୍ନ । ସେଇ ଶିଳ୍ପୀଜଣକ ଗୀତ ଗାଇବା ଆରମ୍ଭ କରିବାର ବହୁ ପୂର୍ବରୁ ସେ ପଳାଇ ଆସିଥାଏ ବାଲ୍‌କୋନିକୁ । ସେଇଠି ସେ ଗୀତ ଶୁଣେ । ମୋତେ ବାରମ୍ବାର ତାଗିଦ୍ କରିଥାଏ, ତାକୁ ବ୍ୟସ୍ତ ନ କରିବାକୁ । ତା'ର ତନ୍ମୟତା ଦେଖିଲେ, ଲାଗେ ସେ ଏ ଜଗତରେ ନାହିଁ ଯେମିତି ।"

"ଆପଣ ବୋଧହୁଏ ସେଇ ଶିଳ୍ପୀଙ୍କ ବିଷୟରେ କିଛି ଜାଣି ନଥିବେ । ମୁଁ ମଧ୍ୟ ବିଶେଷ ଜାଣିନାହିଁ । ଏତିକି ଜାଣିଛି, ତା'ର ସେଇ ସଙ୍ଗୀତ ଚର୍ଚ୍ଚାକୁ ନେଇ ଅନେକ ସମୟରେ ଯାଙ୍କର କଳିଗୋଳ ହୋଇଛି, କୋର୍ଟ କଚେରୀ ପର୍ଯ୍ୟନ୍ତ କଥା ମଧ୍ୟ ଯାଇଛି । ଏପରିକି ସେ ଯଦି ସକାଳେ କିମ୍ବା ସଂଧ୍ୟାରେ ସଂଗୀତ ଦ୍ୱାରା ମ୍ୟାଡାମ୍‌ଙ୍କୁ ଡିଷ୍ଟର୍ବ କରେ, ତେବେ ତା' ଭିଟାମାଟିରୁ ତାକୁ ଉଚ୍ଛନ୍ନ କରିଦିଆଯିବ ବୋଲି ଧମକ ମଧ୍ୟ ଦିଆଯାଇଛି ।

"ତେଣୁ ଶିଳ୍ପୀ ଜଣକ, ମ୍ୟାଡାମ୍ ଘରୁ ବାହାରିଯିବା ପରେ ହିଁ, ମୋଟର କାର୍‌ର ଶବ୍ଦ ଶୁଣିସାରି, ଆରମ୍ଭ କରନ୍ତି ତାଙ୍କର ସାଧନା । ମୋତେ ଅନେକ ସମୟରେ ସେ ପ୍ରଶ୍ନ କରେ ଶିଳ୍ପୀଙ୍କ ସଂପର୍କରେ । ସେ ଦେଖିବାକୁ କିଭଳି ? କିଭଳି ସେ ସୃଷ୍ଟି କରିପାରୁଛନ୍ତି ସଙ୍ଗୀତର ବନ୍ୟା ? ଆଉ କିଏ କିଏ ଅଛନ୍ତି ସେ ଘରେ ? କାହିଁକି ସେ କେବେ ବି ଥରୁଟିଏ ପଦାକୁ ବାହାରନ୍ତି ନାହିଁ ? ସେ ତାକୁ ସେଇଭଳି ସଙ୍ଗୀତ ଶିଖାଇ ପାରିବେ କି ନା ? ଯଦି ଶିଖାଇଦେବେ, ତେବେ କେତେ ଟଙ୍କା ନେବେ ? ତାକୁ ଏଣୁତେଣୁ ପାଠସବୁ ପଢ଼ା ନ ଯାଇ କେବଳ ସଂଗୀତ ପଢ଼ାଯାଉ ନାହିଁ କାହିଁକି ? ସେ ଶିଳ୍ପୀଜଣକ ଦେଖିବାକୁ କ'ଣ ତା'ର ବାବାଙ୍କ ଭଳି ? ତା ବାବା କାହିଁକି ଥରେହେଲେ ତାକୁ ଦେଖା କରିବାକୁ ଆସୁନାହାନ୍ତି ?... ଏମିତି କୋହ ସମ୍ଭାଳି ନ ହେବା ପରି ଅନେକ ଅସରନ୍ତି ପ୍ରଶ୍ନ ।

"ମୁଁ ତାକୁ ବାଆଁରେଇ ବାଆଁରେଇ ଥକିଗଲିଣି । ବେଳେବେଳେ ସେ କହେ... ମୋତେ ଏଠି ବଡ଼ ଅଣନିଃଶ୍ୱାସୀ ଲାଗୁଚି ମା' । ମୁଁ ହୁଏତ ଆଉ ବେଶୀ ଦିନ ବଂଚିବି ନାହିଁ । ମୁଁ ମରିଯିବି । ଆକାଶରେ ତାରା ହେଇଗଲେ ବି ମୁଁ ସଂଗୀତକୁ କାନ ଡେରିଥିବି । ମୁଁ ମରିବା ବେଳେ ତମେ କିନ୍ତୁ ମୋତେ କୋଳରେ ଧରିଥିବ । ମୋତେ ପାଖରୁ ଛାଡ଼ି ଜମା କୁଆଡ଼େ ଯିବ ନାହିଁ । ହଳଦୀବସନ୍ତକୁ ବି କହିଥିବ, ସେ ଆସି ବସିବ ମୋ' ପାଖରେ । ଫୁଲସବୁ ଆଣି ବିଂଚିବ ମୋ' ଉପରେ । ମୁଁ ମରିବା ପୂର୍ବରୁ ଚିଠିଟିଏ ଲେଖିଥିବି ବାବାଙ୍କ ପାଖକୁ । ତମେ ନିଜ ହାତରେ ତାଙ୍କୁ ଦବ । ତମେ ମନଦୁଃଖ କରୁଚ କି ? ତମ ପାଇଁ ବି ଗୋଟାଏ ଲମ୍ବା ଚିଠି ଲେଖିଥିବି । ମୁଁ ମରିବା ପରେ ଯାଇ ତମେ ସେ ଚିଠି ପଢ଼ିବ । ମମିକୁ କହିବ, ମୁଁ ମଲା ପରେ ସେ ଯେମିତି ମୋ' ଉପରୁ ସବୁତକ ରାଗ ଭୁଲିଯାଇ ମୋତେ ଚୁମାଟିଏ ଦେବ ।"

ସେତେବେଳକୁ ମୋ' ଆଖି ଲୁହରେ ଭର୍ତ୍ତି । ମୁଁ ଯେମିତି କିଛି ଶୁଣୁଚି... କିଛି ଶୁଣିନାହିଁ; କିଛି ଦେଖୁଚି... କିଛି ଦେଖୁନାହିଁ, ସେଇଠି ଅଛି ପୁଣି ସେଇଠି ନାହିଁ । ମୋ' ଚତୁର୍ଦ୍ଦିଗରେ କୁନିକୁନି ଅସଂଖ୍ୟ ଚନ୍ଦନର କ୍ରନ୍ଦନରତ ପ୍ରତିବିମ୍ବ ।

ଆମେ ଦୁଇଜଣଯାକ ଯେମିତି ଏ ପୃଥିବୀର ବହୁ ଉର୍ଦ୍ଧ୍ୱରେ ଏବଂ ଗୋଟିଏ ଶୀର୍ଷବିନ୍ଦୁରେ ହିଁ ଆମର ଅବସ୍ଥିତି । ସେଇଠୁ ଆମେ ଦେଖୁଛୁ ଚନ୍ଦନକୁ – ଯିଏ ଗୋଟିଏ ସ୍ୱର୍ଗ ଶିଶୁପରି ଆମଠୁଁ କାହିଁ କେତେ ଦୂରରେ ।

ଆମେ ଦୁଇଜଣଯାକ ଏକାସାଙ୍ଗରେ ଆଖି ପୋଛିଲୁ ।

– "କହିବାକୁ ଗଲେ, ଇଏ ଜଣେ ପ୍ରହ୍ଲାଦ ନୁହେଁ ତ ଆଉ କ'ଣ ? ଶିଳ୍ପୀ ଜଣକ ତା' ପାଇଁ ଈଶ୍ୱର । ହିରଣ୍ୟକଶିପୁର ହିଂସ୍ରତା କହିଲେ କ'ଣ ବୁଝାଯାଏ ତା' ମୁଁ ଦେଖିଛି ତା' ମମିର ଆଖିରେ । ତା'ର ଏକା ଜିଦ୍, ସେ ଶିଳ୍ପୀଙ୍କୁ ଭେଟିବ । କିନ୍ତୁ ତାକୁ ସେଠାକୁ ନେଲେ ଅନେକ ଅସୁବିଧା । ଅବଶ୍ୟ ମ୍ୟାଡାମ୍ ଏଇ ତିନିଦିନ ପାଇଁ ଯାଇଛନ୍ତି ବାହାରକୁ, କୌଣସି କାମରେ । ସେ ଯଦି ଫେରି ଜାଣନ୍ତି ଏକଥା, ତେବେ ପ୍ରଳୟ ଘଟିଯିବ ଏ ଘରେ । ମୋ' ପାଇଁ ମୋର ଚିନ୍ତା ନାହିଁ; ହେଲେ, ପିଲାଟାକୁ ପିଟିପିଟି ମାରିଦେବ ସେ ରାକ୍ଷସୀ ।

"ଦୈବାତ୍ ସେ ଆପଣଙ୍କୁ ଆବିଷ୍କାର କରିଚି ତା'ର ଜଣେ ପରମ ମିତ୍ର ଭାବରେ । ସେ ଧରିନେଇଚି, ଆପଣ ବି ତା'ରି ପରି ଜଣେ ଆତ୍ମବିସ୍ମୃତ ଶ୍ରୋତା । ଆପଣ ବି ସେହି ଶିଳ୍ପୀଙ୍କୁ ଭେଟିବାର ଇଚ୍ଛା ରଖିଥିବେ, ଠିକ୍ ତା'ରି ଭଳି । ଏଣୁ ଆପଣ ଠିକ୍ ପଢ଼ିପାରିବେ ତା' ବ୍ୟାକୁଳତାର ପରିଭାଷା ଏବଂ ତାକୁ ଦେଖାଇ ପାରିବେ ତା' ଇପ୍ସିତ ଈଶ୍ୱର ।"

"ତା'ର ସେଭଳି ଆବଦାର ଏଡ଼ି ନ ପାରି ମୁଁ ଆସିଚି ଆପଣଙ୍କ ନିକଟକୁ । ତା'ର ସେଭଳି ଆତୁରତା ମଧ୍ୟ ମୁଁ ସହ୍ୟ କରିପାରୁନାହିଁ । ହଁ, ଆପଣଙ୍କୁ ମୁଁ କହିବାକୁ ଭୁଲି ଯାଇଛି, ସେ ଶିଳ୍ପୀ ଜଣକ ଅଳ୍ପଦିନ ତଳେ ତାଙ୍କ ଆଖି ଦୁଇଟି ହରାଇଛନ୍ତି । ସେହି କାରଣରୁ ମୁହଁଟି ମଧ୍ୟ ତାଙ୍କର କଦାକାର । ଚନ୍ଦନ ତାଙ୍କୁ ଦେଖିଲେ କିଭଳି ହେବ ତା'ର ପ୍ରତିକ୍ରିୟା, ସେଥିପାଇଁ ମଧ୍ୟ ମୋର ଟିକେ ଭୟ ରହିଛି । ତେବେ, ଆପଣ ଥରେ ଆସନ୍ତୁ ତା' ପାଖକୁ । ତାକୁ ଟିକେ ବୁଝାଇବାକୁ ଚେଷ୍ଟା କରିବେ; ନଚେତ୍ କ'ଣ କରିବେ, ତା' ଆପଣ ଠିକ୍ କରିବେ । ତା'ର ଆପଣଙ୍କୁ ଭେଟିବା ଇଚ୍ଛାଟି ମୁଁ ଅନ୍ତତଃ ପୂର୍ଣ୍ଣ କରିପାରିବି– ଏଇ ଆଶା ନେଇ ମୁଁ ଆସିଚି ଆପଣଙ୍କ ପାଖକୁ ।"

"ଏବେ କହନ୍ତୁ, ଆପଣ ଥରେ ଆସିବେନା ଆମ ଘରକୁ ?" ସେ କହିଲେ ।

ମୋ'ର ଜୀବନ କାଳ ଭିତରେ ଅନୁରୋଧର ଏଭଳି ତୀବ୍ରତା ମୁଁ କେବେ ଅନୁଭବ କରି ନଥିଲି । ମୁଁ ମଧ୍ୟ ବୁଝିପାରୁ ନଥିଲି, ଅସୀମତା ଭିତରେ ବିଚରଣ କରୁଥିବା ଏ ବିସ୍ମୟବାଳକକୁ ମୁଁ କ'ଣ ବା ବୁଝାଇବି ? କିପରି ବା ବୁଝାଇବି ? ତେବେ, ତା' ପାଖକୁ ଯିବାକୁ ହେଲେ ମୋର କିଛିଟା ପ୍ରସ୍ତୁତି ବି ଦରକାର, ଯେଉଁଭଳି ପ୍ରସ୍ତୁତି ଆବଶ୍ୟକ ଗୋଟିଏ କୁନିବିଧାତା ସହିତ ମୁହାଁମୁହିଁ ହେବା ପାଇଁ ।

– "କାଲି ଯିବି ।" କିଛି ସମୟ ଚିନ୍ତା କରି ମୁଁ କହିଲି ।

ସେ ଚାଲିଗଲେ । ତାଙ୍କର ସେ ବିଦାୟକାଳୀନ ନମସ୍କାର ଏଭଳି କୃତଜ୍ଞତାରେ ଭରପୂର ଥିଲା ଯେ ମୋତେ ଲାଗିଲା, ସେଇଟି ମୋ' ଛାତିର ମଝି ଅଂଶରେ ହିଁ ଚିତ୍ରପଟଟିଏ ହୋଇ ଝୁଲୁଥିବ ମୋର ଶେଷ ନିଃଶ୍ୱାସ ଥିବା ପର୍ଯ୍ୟନ୍ତ ।

ପରଦିନ ସକାଳ । ରାଜପ୍ରାସାଦ ଭଳି ଦିଶୁଥିବା ଘରର ଗେଟ୍ ଖୋଲି କରିଡର ଡେଇଁ ସିଡ଼ି ପାହାଚ ଅତିକ୍ରମ କରି ମୁଁ ତାଙ୍କ ଉପର ମହଲାରେ ପହଞ୍ଚିଲି । ମୋତେ ଅଭିବାଦନ ଜଣାଇଲେ ଅପେକ୍ଷମାଣ ମହିଳାଜଣକ । ଭିତରକୁ ପାଛୋଟି ନେଲେ ।

ଦେଖିଲି, ବାଲ୍‌କୋନିରେ ଗୋଟିଏ ହ୍ୱିଲ୍ ଚେୟାରରେ ବସିଚି ତେଜୋଦ୍ଦୀପ୍ତ ଚନ୍ଦନ । ଅନତି ଦୂରରେ ବେତ ଦୋଳିରେ ବସିଛି ତା'ର ପ୍ରିୟ ହଳଦୀବସନ୍ତଟେ । ଗୋଟିଏ ନିଷ୍ପାପ ଓ ଅବୋଧ କୁନିହସ ସମ୍ୱଳିତ ତା'ର ସେଇ ନମସ୍କାରଟି ମୁଁ ତୋଳି ନେବା ପୂର୍ବରୁ ତାକୁ ସସ୍ନେହ ଲକ୍ଷ୍ୟ କଲି...

କିନ୍ତୁ ଏ କ'ଣ ? ଚନ୍ଦନର ଦୁଇଟିଯାକ ଗୋଡ଼ ଯେ ପୋଲିଓ-ଆକ୍ରାନ୍ତ ! ମୋର ବାକ୍‌ସ୍ଫୁର୍ତ୍ତି ହେଲା ନାହିଁ ।

– "ମୁଁ ଜାଣେ ଅଙ୍କଲ୍, ମା' ଆପଣଙ୍କୁ ଜମା କହିନଥିବେ, ମୋ' ଗୋଡ଼ ଦୁଇଟି ଅଚଳ ବୋଲି । ପିଲାବେଳେ ମୋ' ଗୋଡ଼ ଦୁଇଟି ଭଲ ଥିଲା ମ ଅଙ୍କଲ । ମୋତେ ଦୁଇବର୍ଷ ହୋଇଥିଲାବେଳେ ରୋଗରେ ପଡ଼ିଗଲି ତ, ସେଇଥି ପାଇଁ ।" ଚନ୍ଦନ ହସିଲା । ଅତ୍ୟନ୍ତ ବିମଳ ସେଇ ଟୋପାଏ ହସର କିରଣ ।

"ଏଇ ମୋ' ହାତକୁ ଦେଖୁଛନ୍ତି ନା ଅଙ୍କଲ ? ଏଇ ମୋର ହାତ, ପୁଣି ଏଇ ମୋର ଗୋଡ଼ । ମୁଁ ଏଇଥିରେ ଏ ଚେୟାରକୁ ଚଲାଏ ।" ସେ ତା' ଉକ୍ତିର ସତ୍ୟତା ମଧ୍ୟ ଦେଖାଇଲା ଚେୟାରଟିକୁ ଚଳମାନ୍ କରି ।

ମୋ' ପାଇଁ ଉଦ୍ଦିଷ୍ଟ ସୋଫାରେ ବସି ପଡୁପଡୁ ମୁଁ ନିର୍ବାକ୍ ଭାବରେ ଚାହିଁଲି ଭଦ୍ରମହିଳାଙ୍କୁ । ତାଙ୍କର ଓଠ ଦୁଇଟି କମ୍ପୁଥିଲା ବାତ୍ୟାଗ୍ରସ୍ତ ପୁଷ୍ପବୃନ୍ତ ପରି । ଯେମିତି ଏତକ ନ କହି ସେ ଖୁବ୍ ଗୋଟାଏ ଅପରାଧ କରିଛନ୍ତି, ସେମିତି ତାଙ୍କର ଚାହାଣି ।

ମୋ ଭିତରେ ବିଚଳନ ଏତେ ବେଶୀ ତୀବ୍ର ଥିଲା ଯେ ତାହା ମୋ'ରି ସ୍ଥିତିକୁ ପୂରାପୂରି ଧ୍ୱଂସ କରିସାରିଚି ବୋଲି ଲାଗୁଥିଲା । କୌଣସି ଶବ୍ଦଟିଏ ସୃଷ୍ଟି କରିବା ପାଇଁ ମୋର ଶକ୍ତି କୁଆଡ଼େ ଗଲା ଭାବି ଅସହାୟ ବୋଧ କଲି ।

– "ଆପଣ ବି ମୋରି ପରି ସଙ୍ଗୀତକୁ ଭାରି ଭଲ ପାଆନ୍ତି ନା ଅଙ୍କଲ ? ସେ ବାଲ୍‌କୋନିରୁ ଓହ୍ଲାଇପଡ଼ି ଶିଳ୍ପୀଙ୍କୁ ଦେଖିବାକୁ ଆପଣଙ୍କର କ'ଣ ଜମା ଇଚ୍ଛା ହୁଏନା ? ମୁଁ ତ ଭାବୁଚି, ଆପଣ ବି ମୋ'ରି ପରି ନିଶ୍ଚୟ ରାଗୀ ହୋଇଥିବେ । ମୁଁ ଯଦି ମିଛ କହୁଚି, ଏଇ ହଳଦୀବସନ୍ତକୁ ପଚାରନ୍ତୁନା, ସେ ବି ସେଇ ଏକା କଥା କହିବ । ନା କ'ଣରେ ସାଙ୍ଗ ?"

– "ହଁ ଚନ୍ଦନ, ମୁଁ ବି ଠିକ୍ ତମରି ପରି ଗୋଟିଏ କୁନି ପିଲା । ମୋର ବି ବହୁତ ଆଗ୍ରହ ଶିଳ୍ପୀଙ୍କୁ ଭେଟିବା ପାଇଁ" –ମୁଁ ସ୍ୱୀକାର କଲି ।

– "ମା'ଙ୍କୁ କହି କହି ଥକି ଗଲିଣି । ସେ ନେଉନାହାନ୍ତି । ଏବେ ତ ମମି ନାହାନ୍ତି– ଏମିତି ସୁଯୋଗ ଆଉ ଆସିବ ନାହିଁ । ମୋର ଇଚ୍ଛା, ମୁଁ ଖାଲି ନିଜ ହାତରେ ଗୋଲାପ ଫୁଲଟିଏ ଦେବି ସେ ଶିଳ୍ପୀ-ଅଙ୍କଲ୍‌ଙ୍କୁ ।" ଏତକ କହି ସେ ଟିକେ ନୀରବ ଆଉ ଗମ୍ଭୀର ହୋଇଗଲା କିଛିକ୍ଷଣ ।

"ମୋ ବାବା ଥିଲେ ସେ ନିଶ୍ଚୟ ନେଇଯାଇଥାନ୍ତେ ଗୀତ ଅଙ୍କଲ୍‌ଙ୍କ ପାଖକୁ । ଆପଣ ମୋ' ବାବା ନ ହୁଅନ୍ତୁ ପଛେ, ଅଙ୍କଲ୍ ତ ! ମୁଁ ତ ଭାବୁଚି, ମୋତେ ଦେଖିଲେ କେତେ ଖୁସି ନ

ହେବେ ସେଇ ଗୀତ-ଅଙ୍କଲ୍ !" ସେ ହ୍ୱିଲ୍ ଚେୟାରଟିକୁ ଚଳାଇ ଆଣି, ମୋ' କୋଳ ଉପରେ ତା'ର କୁନି ହାତ ଦୁଇଟି ରଖିଲା ।

ସେ ସ୍ପର୍ଶ ମୋତେ ମୋହାବିଷ୍ଟ କଲା ମୁହୂର୍ତ୍ତିଟିଏ ପାଇଁ । ସମ୍ପୂର୍ଣ୍ଣ ସତେକି ହିମ ପାଲଟି ଗଲା, ମୋ ଦେହର ସବୁତକ ଉଷ୍ଣତା ।

"ତମେ ଜାଣିଛ ନା ନାଇଁ ଚନ୍ଦନ ? ସେଇ ଗୀତ ଅଙ୍କଲ୍‌ଙ୍କର ଦୁଇଟିଯାକ ଆଖି ନାହିଁ । ତମେ ତାଙ୍କୁ ଦେଖିବ, ଠିକ୍ କଥା; ହେଲେ, ସେ ତମକୁ ଦେଖିବେ କେମିତି ? କିଛି ଚିନ୍ତା କରିବା ପୂର୍ବରୁ ଏତକ ମୁଁ କହିପକାଇଲି ।"

"ତା'ହେଲେ, ମୁଁ ବି ତାଙ୍କୁ ଦେଖିବି ନାଇଁ ।" ଅତ୍ୟନ୍ତ ଗମ୍ଭୀର ଭାବରେ ସେ ତା'ର ରାୟ ଶୁଣାଇଲା ।

ଖୁବ୍ ବିଷଣ୍ଣ ଭାବରେ ସେ ପୁଣି ଯୋଗ କଲା, "ଗୋଟାଏ କାମ କରନ୍ତୁ ନା ଅଙ୍କଲ୍ ! ଆପଣ ମୋ' ଆଖି ଦୁଇଟିକୁ ଫୁଟାଇ ଦିଅନ୍ତୁ । ଗୀତ-ଅଙ୍କଲ୍‌ଙ୍କର ଯଦି ଆଖି ନାଇଁ, ମୋ' ଆଖି ରହିବା କ'ଣ ଦରକାର ? ମୁଁ ସତ କହୁଚି, ମୁଁ ଆଉ କେବେ ବି ଅଝଟ ହେବି ନାହିଁ ତାଙ୍କୁ ଦେଖିବାକୁ । ଏଇ ବାଲ୍‌କୋନିରେ ଚୁପ୍‌ଚାପ୍ ବସି ତାଙ୍କର ଗୀତ ଶୁଣୁଥିବି ଖାଲି । ସେମିତି ଗୀତ ଶୁଣୁଶୁଣି ମୁଁ ଦିନେ ମରିଯିବି ।"

ସେ କାନ୍ଦି ପକାଇଲା । ବିମର୍ଷ ହଳଦୀବସନ୍ତଟି ମଧ୍ୟ ତା' ଚଞ୍ଚୁ ତଳକୁ କରି କାନ୍ଦୁଚି ବୋଲି ମନେହେଲା ।

ପରେ ପରେ ସେଇ ସ୍ଥାନଟି ଯେଭଳି ଗୋଟିଏ କ୍ରନ୍ଦନର ପଟ୍ଟଭୂମିରେ ରୂପାନ୍ତରିତ ହେଲା । ତା'ର କୌଣସି ଭାଷାଗତ ବର୍ଣ୍ଣନା ମୁଁ ଦେଇପାରିବି ନାହିଁ ।

ଚନ୍ଦନ ପରି ସଙ୍ଗୀତପ୍ରାଣ ଦୂରବର୍ତ୍ତୀ ମେଘ ଓ ପକ୍ଷୀକୁଳର ଅନ୍ତରଙ୍ଗ, ଆକାଶ, ପବନ ଓ ସବୁଜିମାର ସହଚର ଗୋଟିଏ ବିସ୍ମୟ-ବାଳକ ନିକଟରେ ମୋର ଅପାରଗତା ଓ ଅସହାୟତାର ସ୍ୱରୂପକୁ ଏବେ ମାପନ୍ତୁ ଏ ଗଳ୍ପର ସୁଧୀ ପାଠକବୃନ୍ଦ !

ସନ୍ଧ୍ୟାରେ ଥିଲା ସେଇ ସହରରୁ ଫେରି ଆସିବା ପାଇଁ ଟ୍ରେନ୍ । କହିବା ବାହୁଲ୍ୟ, ସେଇଟି ଥିଲା ସେଇ କୋଳାହଳପୂର୍ଣ୍ଣ ସହରରେ ମୋ'ର ଶେଷ ସନ୍ଧ୍ୟା ।



# ନୀଡ

## ଗୌରାଂଗ ଚରଣ ଦାଶ

ପହିଲି ପଉଷର ଏକ ଦୁର୍ବୋଧ୍ୟ ରାତ୍ରି ।

ଡାହାଣ ପାଖକୁ ଚାହିଁଲି । ସତୀ ଶୋଇ ପଡ଼ିଲାଣି । ରେଜେଇ ଭିତରୁ ହାତ ବାହାର କରି ଆଲୁଅ ନିଭେଇ ଦେଲି । ବାଁ ହାତ ଉପରେ ଶୋଇଥିବା ଟୁଲୁ ମଥାକୁ ଛାତି ଉପରେ ଜାକି ଦେଇ କହିଲି- ଦେଖ୍ ବାପା, ରାତି କେତେ ହେଲାଣି । ମା' ଶୋଇ ପଡ଼ିଲାଣି । ଶୋଇପଡ । ତୋ ପରି ଏତେ ରାତିଯାଏ କିଏ ଚାହିଁବ କହିଲୁ । ମୁଁ ପାରିବିନି ।

ମୋ ପାଟିରୁ କଥା ଶେଷ ହୋଇଚି କି ନାଇଁ ସେଇ ଛାତିଫଟା ପରିଚିତ ସ୍ୱର- "ବାବୁଲିରେ, ରେ ବାବୁଲି, ବାପାରେ ଏତେ ଶୀତ ରାତରେ କୋଉଠି ଶୋଇଲୁ, ମା' କଥା କ'ଣ ମନେ ପଡୁନି । ବା-ବୁ-ଲି-ରେ । ରେ ଧନ-" ମୋତେ ଯେପରି କହିଦେଲା- ଜୀବନରେ ନିଦ ଏକ ଅର୍ଥହୀନ ଅଭିସାର । ବର୍ତ୍ତମାନ ସହିତ ଏକ କରୁଣ ପ୍ରତାରଣା । ତୁ କ'ଣ ସତରେ ନିଜ ସହ ପ୍ରତାରଣା କରିପାରିବୁ ?

ଟୁଲୁ ମୋତେ ସେଇ ପୁରୁଣା ପ୍ରଶ୍ନରେ ଓଦା କରିଦେଇ କହିଲା- ବାପା, ଦେଖିଲ, ଶାନ୍ତି ମାଉସୀ ଶୋଇନି । ମା'ଟା କେମିତି ଶୋଇପଡିଲା ? ତା'ର ଖାଲି ନିଦ । ଚାହୁଁ ଚାହୁଁ ଶୋଇପଡ଼ିବ, ତମେ ଜାଣିପାରିବନି । ବାପା, ବାବୁଲିକି ସେମାନେ ପୋଡ଼ିଦେଲେ, ନିଆଁ ଜଳୁଛି, ନିଭିନି । ଆମ ଦାଣ୍ଡକୁ ଦିଶୁଚି । ଚାଲୁନ ଦେଖିବା । ମାଉସୀ କେମିତି କହୁଛି, ବାବୁଲିକୁ ଶୀତ କରୁଥିବ ବୋଲି । ମା'ପରି ମାଉସୀ ବି ହୁଣ୍ଡୀ । କିଛି ବୁଝି ପାରୁନି । ସେଇଥିପାଇଁ କାନ୍ଦୁଛି, ମିଛ କଥା କଉଚି ।

କଥା ବଦଳାଇ କହିଲି- ଦେଖ୍ ବାପା, ତୁ ଶୋଇପଡ଼ । ବଡ଼ ଲୋକମାନେ ମିଛ କହନ୍ତି । ମିଛ କହିବା ମହାପାପ । ମିଛ-ଗୁହ ପୋଛ, ସତ- ସୁନା ଗଛ । ଏ କଥା ତୁ କହୁତ । ତୁ ତ ଦେଖିଛୁ- ବାବୁଲି କୂଅରେ ପଡିଗଲା, ତାକୁ ଆମେ ଡାକ୍ତରଖାନା ନେଲେ । ସେ ମରିଗଲା । ତାକୁ ପୋଡ଼ିବା ପାଇଁ କାଠ ଆଣିଲେ । ତାକୁ ପୋଡି ଦେଲେ ।

ହେଲେ ବାପା ଶାନ୍ତି ମାଉସୀ ତାକୁ ଡାକୁଛି, କହୁଛି- ଶୀତରେ କାଇଁକି ବୁଲୁଚୁ । ନିଆଁ ପାଖରେ ତାକୁ ତ ଗରମ ହେଉଥିବ । ତମେ ତ କହୁଚ- ସେ ଠାକୁରଙ୍କ ପାଖରେ ଭଲରେ ଅଛି । ତମେ ବଡମାନେ ନା ସମସ୍ତେ ମିଛୁଆ । ଆଉ ସବୁଠାରୁ ବଡ଼ ମିଛୁଆ- ତମ ଭଗବାନ । ଛି ।

ଏଇ ଛି ପଦ କହିସାରିଲା ପରେ ସେ ଗମ୍ଭୀର ହୋଇଯାଏ । ଯେତେ ଯାହା ପଚାରିଲେ- କିଛି ବୋଲି କିଛି କୁହେନି । ଆଉ ଆଜି ସେଇ କଥାମାନ ପଚାରି ପଚାରି ପାଗଳ କରି ଦେଲାଣି । କେତେ ବା ବକର ବକର ହେବି । ତା'କୁନି ମଥା ଉପରେ ହାତ ବୁଲେଇ ଆଣି କହିଲି- ଶୋଇପଡ଼ ବାବୁ, ଶୋଇପଡ଼ । ସୁନା ପିଲା ପରା । ତତେ ଆଉ ବୁଝେଇ ପାରିବିନି ଏବଂ ସେ ଅଭ୍ୟସ୍ତ ରୀତିରେ ମୋ ହାତକୁ ତା' ଦେହ ଉପରୁ ଆସ୍ତେ ଉଠେଇ ଦେଇ କହିଲା- ତମେ

ଶୋଉନ; ମା'ତ ଶୋଇପଡିଲାଣି, ଚାହିଁଚ କାଇଁକି ? ଏବଂ ତା' ତୁଣ୍ଡରୁ କଥା ସରିଚି କି ନାଇଁ, ସେଇ ପରିଚିତ ଡାକ, 'ବାବୁଲି' ରେ ମତେ ପୁଣି ଟୁଲୁ ଭିତରକୁ ଫେରାଇ ଆଣିଲା ।

ବାବୁଲି ଏବେ ଠିକ୍ ଟୁଲୁ ପରି ଶାନ୍ତି ଆଉ ଶଙ୍କର ମଝିରେ ଶୋଇ ପଡିଥାନ୍ତା । ଦୁଇ ପାଖର ନିଶ୍ୱାସ ପବନକୁ ଏକ କରି ଦଉଥାନ୍ତା । କରି ଦଉଥାନ୍ତା ପ୍ରାଣବନ୍ତ ଓ ପବିତ୍ର । କ୍ରମଶଃ ଏକପାଖିଆ ହୋଇଯାଉଥାନ୍ତା । ଏବଂ ମା' ତୁଣ୍ଡରୁ ଫୁସ୍ ଫୁସ୍ କରି ବାହାରି ଆସୁଥିବା 'ହେ ବାବୁଲି ଶୋଇନି ପରା' ଶବ୍ଦଗୁଡିକର ଅସଲ ଅର୍ଥ ବୁଝି ନପାରି ବୋକାଙ୍କ ପରି ମନେ ମନେ ହସି ଦେଇ କହୁଥା'ନ୍ତା- "ହଉ, ମୁଁ ଜାଣିଚି ଯେ, ତମ କଥା । ରୁହ, ଦଉଚି । ଏବଂ ରାତିରେ ନିଜର ଆବେଶ ଭିତରେ କେତେବେଳେ ଉଠି ଯାଉଥାନ୍ତା ସେମାନଙ୍କ ମଝିକୁ । ଆଠ/ନଅ ବରଷ ଧରି ବାପା ବୋଉଙ୍କର ସ୍ୱାର୍ଥପରତାକୁ ସବୁଜ ରଖିଥିବା ପବିତ୍ର ହସର ଆକସ୍ମିକ ଅନ୍ତର୍ଦ୍ଧାନ କୋଉ ଅଦୃଶ୍ୟର ଅବିବେକୀ ଚକ୍ରାନ୍ତ ବ୍ୟତୀତ ଆଉ କ'ଣ ବା ହୋଇପାରେ ?

ଅନ୍ୟ ରବିବାର ଦିନମାନଙ୍କ ପରି ଆଜି ମଧ ସକାଳେ ଆମ ଘରକୁ ଆସିଥିଲା । କବାଟ ବାହାରର ବାରଣ୍ଡାରେ ବସି ଟି.ଭି.ରୁ 'ଚନ୍ଦ୍ରକାନ୍ତା' ଦେଖିଥିଲା ସେ ସେମିତି ବାହାରେ ବସି ଟି.ଭି. ଦେଖେ । ପାଖରେ ବସିବାକୁ ଡାକିଲେ ସହଜରେ ଆସେନି । ଆସିଲେ- ପାଖରେ ବସେନି । ବସିଯାଏ ଚଟାଣରେ । ତା' ଜାତିର ମଣିଷମାନଙ୍କୁ ଘର ଭିତରକୁ ଆସିବା କାଳେ ମନା । ସାମନ୍ତମାନଙ୍କର ଜାତି ମାରା ହୋଇଯାଏ । ମୋ କଥା ସେ ଟାଳି ଦେଇପାରେନା, ଖାଲି ହସିଦିଏ । ସୁନ୍ଦର, ପବିତ୍ର ଓ ରହସ୍ୟମୟ ହସ ଟି.ଭି. ଦେଖା ପରେ ଟୁଲୁ ଓ ସାଂଗମାନଙ୍କ ସହିତ ଆମ ଘର ଆଗର କୁନି ପଡ଼ିଆରେ କ୍ରିକେଟ୍ ଖେଳିଥିଲା । ଏବଂ ପରେ ପରେ ବଡପିଲାଙ୍କ ଡାକକୁ ଫାଙ୍କି ଦେଇ ନପାରି ନବତୀର୍ଥର ବଡପଡିଆକୁ ଖେଳିବା ପାଇଁ ଚାଲିଯାଇଥିଲା । ସେଇ ଖେଳିବାଇ ଥିଲା ତା' ଜୀବନର ଶେଷ ଖେଳ । ବଲ୍ ହାତରେ ଧରି ଖେଳୁ ଖେଳୁ, ନିଜେ ଯେପରି ବଲ୍‌ଟିଏ ହୋଇଯାଇଥିଲା ଏବଂ ନିଖୋଜ ହୋଇଗଲା ଅନ୍ୟମାନଙ୍କର ଆଖିର ଆକାଶରୁ ।

ଦି'ପହରରେ ଖାଇ ବସିଥିଲା ବେଳେ ତା' ଖେଳର ଚମତ୍କାରିତା ମୋ କାନରେ ପଡିଲା । ଅଧାଖିଆ ହୋଇ ତୀର୍ଥର ପଡିଆ ଆଡକୁ ଦଉଡିଗଲି । ଏବଂ କୂଅ ପାଖରେ ପହଞ୍ଚିଲା ବେଳକୁ ସମଗ୍ର ପରିବେଶ ହୋଇଯାଇଥିଲା ବାବୁଲିମୟ । ସମସ୍ତେ ତାକୁଇ ଖୋଜୁଥିଲେ । ଅବଶ୍ୟ ତାକୁ ଖୋଜି ବାହାର କରିବା ପାଇଁ ନିଆଁ ନିଭାଳୀ ଦଳଟିଏ ପହଞ୍ଚି ଯାଇଥିଲେ ସେଠି । ଅବଂଧା କୂଅର ଚାରିପାଖକୁ ସେମାନେ ଘେରି ଯାଇଥିଲେ । ତାର ଫୁଲାପଣକୁ କାବୁ କରିବା ପାଇଁ ବାଟ ଖୋଜୁଥିଲେ । ଏକ ପ୍ରକାରର ଚକ୍ରାନ୍ତ କରୁଥିଲେ, ଲଂବା ବାଉଁଶ ଖଣ୍ଡେ, ଗଣ୍ଠିମୟ ଦଉଡିଟିଏ ବି ଝୁଲେଇ ଦେଇଥିଲେ ତା' ପେଟ ଭିତରକୁ— ଗଭୀରତାକୁ ମାପିବା ଲାଗି । ବକଟେ ଆୟତନର ଅହଂକାର, ମଣିଷ ନାମକ ଜନ୍ତୁର ଜୀବନକୁ ଏତେ ତ୍ରସ୍ତ ଓ ଚକିତ ଯେ କରିପାରେ- ମୁଁ ଭାବି ପାରିନଥିଲି ।

ବୀରମାନେ ଶେଷରେ ସିଦ୍ଧାନ୍ତ ନେଲେ, ଯଂତ୍ର ସାହାଯ୍ୟରେ ତାକୁ ଶୋଷି ସଫା କରିଦେବା ଲାଗି । ଏବଂ ସେମାନେ ତାହାଇ କଲେ । ତା' ପେଟ ଭିତରୁ ସେମାନେ ଆବିଷ୍କାର କଲେ ଛିଣ୍ଡା ଦଉଡି, କଳଙ୍କିଲଗା ଫୁଟା ବାଲ୍‌ତି ଏବଂ ଶେଷରେ ଅନେକ ସମୟ ଧରି ଡାକି ଡାକି ବେହୋସ ହୋଇପଡିଥିବା ବାବୁଲିକୁ ସେମାନେ ଉପରକୁ ଆଣିଲେ । ଉପରେ ଚିତ୍ କରି ଶୁଆଇ ଦେଇ ଫୁଲିଲା ଫୁଲିଲା ଦିଶୁଥିବା ପେଟକୁ ଚାପିବାରେ ଲାଗିଲେ । ବୀରଙ୍କ ପରି ଭିତରେ ନାଟ କରୁଥିବା ପାଣିକୁ ପାଟି ଓ ନାକ ବାଟଦେଇ ବାହାରି କରିଦେଲେ । ଏବଂ ଗାଡ଼ି ଉପରେ ଶୁଆଇ ପକେଇ

ଘଣ୍ଟି ବଜେଇ ନେଇ ଯାଇଥିଲେ ଡାକ୍ତରଖାନାକୁ । ଏ ସତର୍କ ଘଣ୍ଟିର ଟିଁଣି ଟିଁଣି ନାଦ ଯେପରି ଅପ୍ରତିହତ, ଦୁର୍ନିବାର ।

ଶାନ୍ତି ସେତେବେଳକୁ କିନ୍ତୁ ଅଚେତ ହୋଇ ଶୋଇ ପଡ଼ିଥିଲା ମାଟି ଉପରେ । ଏବଂ ତା' ପାଖରେ ବସି – ମଥାରେ ହାତ ଦେଇ ଶଙ୍କର ଅନିଷା କରିଥିଲା ତା' ଓଦା ସରସର ବାବୁଲିକୁ କୋଳରେ ଧରି ବିଜୁଳି ବେଗରେ ଆଖି ଆଗରୁ ଅଦୃଶ୍ୟ ହୋଇ ଯାଉଥିବା ଲୋହିତ ଅହଂକାର ଆଡକୁ ।

ବାବୁଲିମୟ ପରିବେଶ ଅଳ୍ପ ସମୟ ପରେ ପରିଷ୍କାର ହୋଇ ଯାଉଥିଲା । ସତେ ଯେପରି କିଛି ବୋଲି କିଛି ଘଟିନି ସେଠି । ଏବଂ ସବୁ କିଛିକୁ ଜଗି ବସିଥିଲା- ଘଟଣାର ନାୟକ ପରି- ଏକୁଟିଆ ବାବୁଲି ।

ବାବୁଲିର ଓଦା ସରସର ଦେହ ସେତେବେଳେ କେତେ ଲୋଭନୀୟ ଦିଶୁ ନଥିଲା । ଜାମା, ପ୍ୟାଣ୍ଟ୍ ଓ କଳା ମୁଟୁ ମୁଟୁ ବାଳ ଲାଖି ଯାଇଥିଲା ତା' ସାବନା ଦେହରେ । ପାଖ ଅମରୀ ବାଡ଼ରୁ ଛାଟ ଭାଂଗି ତାକୁ ଗୋରୁକୁ ପିଟିଲା ପରି କରି ଦେଇଯିବାକୁ ମନ କହୁଥିଲା । ଶାନ୍ତିର ମନ ନେଇ କହିବାକୁ ଇଚ୍ଛା ହେଉଥିଲା– ଛତରା ଟୋକା କୋଉଠିକାର ବୀରପଣ ଦେଖେଇ ହଉଛି । ହଇରେ ପୋଡାମୁହାଁ, ଛିଣ୍ଡା ଦଉଡି, ଫୁଟା ଦଦରା ବାଲ୍ତିରେ ବନ୍ଧବାଡ ନଥିବା ଏଡେ ବଡ କୂଅରୁ ପାଣି କାଢିବାକୁ ତତେ କିଏ କହୁଥିଲା । ଜଳଦାନ କରୁଥିଲୁ; ନୁହେଁ । ସେ ଭେଣ୍ଡାଗୁଡାକ ଖେଳିବେ, ତୁ ସେବା କରିବୁ । ଚାଲ୍, ଘରକୁ ଚାଲ୍ । ତୋର ଦିନକୁ ମୋର ଦିନେ ।

ମାତ୍ର ଗୋଟାଏ, ଗୋଟାଏ ବ୍ରହ୍ମ ପାହାର ସମାଳି ନପାରି, ମାଲୋ ମରିଗଲି ମରିଗଲି ବୋଲି ଚିଲେଇ ଚିଲେଇ ବିଜୁଳି ବେଗରେ ସେ ଦୋଉଡି ପଳେଇଥାନ୍ତା ଘର ଆଡକୁ । ଚଟାପଟ୍ ଜାମା ବଦଳେଇ ଦେଇଥାନ୍ତା । ବ୍ରହ୍ମ ପାହାରରେ ପିଚାରେ ପଡିଯାଇଥିବା ଫୁଲିଲା ଫୁଲିଲା ନାଲି ରୋଳାକୁ ଆଉଁସି ଥାନ୍ତା । କାହାକୁ ଦେଖାଇ ନଥାନ୍ତା । ତା' ପଛେ ପଛେ ଶାନ୍ତି ଯାଇ ପହଞ୍ଚି ଥାନ୍ତା ଘରେ । ଲୁଗା କାନିରେ ମୁଣ୍ଡ ବାଳକୁ ଭଲ କରି ପୋଛି ପୋଛି କୁଣ୍ଢେଇ ତା' କାନିରେ ମୁହଁ ପୋଛି ପୋଛି ସେ କହିଥାନ୍ତା- 'ମା' ଲୋ ଭାରି ଭୋକ ହେଲାଣି କ'ଣ ଦେ'ନା ।"

ବାପା, କୂଅରୁ ବାହାରିଲା ବେଳେ ନା ବାବୁଲି ଭାରି ବଢିଆ ଦିଶୁଥିଲା । ମୁଁ ତା ପାଖରେ ଠିଆ ହୋଇଥିଲି । ଦେଖିଚି, ସେ କେତେ ଭଲ । ସମସ୍ତଙ୍କ କଥା ମାନିବ । ମନା କରେନି କହିଲା ଟୁଲୁ । ମୋ ନିରବ ଭାଷା ସେ ଶୁଣି ପାରୁଥିଲା କି କ'ଣ କେଜାଣି ?

ପୁଣି କହିଲା- ବାପା, ବାବୁଲିକୁ ନା ସେ ସାଇର ଟୋକାଟାଏ ପେଲି ଦେଲା । ତା'ର ଏଇ ପଛ ଶବ୍ଦ କେତୋଟି ମୋତେ ସତର୍କ କରିଦେଲା ଘଟଣା ସମ୍ପର୍କରେ । ମୋ କାନକୁ ବିଶ୍ୱାସ କରିପାରିଲିନି ।

ପଚାରିଲି- ପେଲି ଦେଲା ? କିଏ ? ତୁ କେମିତି ଜାଣିଲୁ ?

ମୋତେ ମିଟୁ, ପିଣ୍ଟୁ କହୁଥିଲେ ।

ମିଛ କଥା ବାପା, କୂଅ ଭିତରକୁ କିଏ କ'ଣ କାହାକୁ ପେଲି ଦିଏ । ମଣିଷ କ'ଣ ଇଟା, ମାଟି, ପଥର, ଡାଙ୍ଗ- କନା ହୋଇଛି ନା କ'ଣ । ତୁ ଜାଣିବୁ । ସେ ଅଭିମାନ ସ୍ୱରରେ କହିଲା- ତମେ ସବୁ ଜାଣିଚ, ଆଉ ଆମେ ମିଛ କହୁଛୁ । ଆଉ ମୁଁ କ'ଣ ମିଛ କହୁଛି ?

ଏଥର ସେ ଅଧିକ ଦୃଢ଼ତାର ସହିତ କହିଲା- ହଁ, ତମେ କହୁଚ । ତମେ ମତେ କହୁନଥିଲ- ବାବୁଲିକୁ ଜଳଦେବୀ ନେଇଗଲେ । ସେମାନେ ପିଲାମାନଙ୍କୁ ଭାରି ଭଲ ପାନ୍ତି । ପାଖକୁ ନେଇ ଯାନ୍ତି । ବାବୁଲି ଭଲ ପିଲା ଥିଲା । ତାକୁ ଖେଳି ଖେଳି ଯେମିତି ଶୋଷ ଲାଗିଛି- କୂଅ ପାଖକୁ ଗଲା । ଆଉ ବାଲ୍‌ତି ପକେଇଲା ଭିତରକୁ । ସେତିକିବେଳେ ମା' ଆସିଥିଲେ ପାଣି ଉପରକୁ । ତାଙ୍କ ଆଖି ବାବୁଲି ଉପରେ ପଡ଼ିଲା । ହସି ହସି ଯେମିତି ତାକୁ ଡାକି ଦେଇଛନ୍ତି ବାବୁଲିରେ, ବାବୁଲି । ସେ ଡେଇଁ ପଡ଼ିଲା ପାଣି ଭିତରକୁ । ମା'ଙ୍କ ସାଂଗରେ ଘଡ଼ିଏ ଖେଳିଲା । ଆଉ ଯେମିତି ଶାନ୍ତି ମାଉସୀ କଥା ତା'ର ମନେପଡ଼ି ଯାଇଚି ଉଠି ଆସିଲା ପାଣି ଉପରକୁ । ସେତେବେଳକୁ ଉପରେ ଆଉ କେହି ନଥିଲେ, ପୁଣି ଟୁବ୍‌କିନା ଭିତରକୁ ବୁଡ଼ିଗଲା । ମାଉସୀର ମାଡ ଭୟରେ ଆଉ ଉପରକୁ ଆସିଲାନି । ଏବେ ତ ଜଳଦେବୀ ମା' ପାଖରେ ମଜାରେ ଥିବ । ତମ କଥା ସୁଉଦୁ ମିଛ । ଗପ କଉଚ ।

ମିଛ ବୋଲି ତୁ କେମିତି ଜାଣିଲୁ । ଗପ କ'ଣ ସତ ନୁହେଁ ।

ସେ ପୋଖତ ଗବେଷକ ପରି କହିଲା - ନା କହିବିନି ।

ତାକୁ ପଚାରିଲି- ଆଚ୍ଛା କହିଲୁ, ବାବୁଲି ଭଲ ପିଲା କି ନାଇଁ ?

ହଁ ଭଲ ପିଲା । ମୁଁ କ'ଣ ମନା କଲିକି ? ସେ ମୋତେ ନେଉଆ, ପିଜୁଳି, ବରକୋଳି, ଆଉରି କେତେ କଥା ଦିଏ । ମୋତେ ନଦେଇ କିଛି ଖାଏନି ।

ସେ ତା' ମା', ଜେଜୀମା' ଓ ଜେଜେଙ୍କ ସାଙ୍ଗରେ ନବତୀର୍ଥର ଗଛମାନଙ୍କ ମୂଳରେ ପାଣି ଦିଏ କିନା ? ଗଛମାନଙ୍କୁ ସେ ଭାରି ଭଲପାଏ କି ନା ?

ହଁ ଭାରି ଭଲ ପାଏ ଗଛମାନଙ୍କୁ । ପାଣି ଦିଏ । କୂଅରୁ ପାଣି କାଢେ । ପାଣି କାଢିଲା ବେଳେ ମା' ଓ ଜେଜେ ପାଟି କରନ୍ତି, ସେ ଜମାରୁ ମାନେନା । ଛେଳି, ଗାଈ, ଗୋରୁ ଗଛମାନଙ୍କୁ ଖାଇଗଲାବେଳେ ସେ ସେମାନଙ୍କୁ ତଡ଼ିଦିଏ ନା ନାଇଁ ।

ହଁ ଗୋଡ଼େଇ ଗୋଡ଼େଇ ଦୂରରେ ଛାଡ଼ି ଦେଇ ଆସେ । ବେଶି ବାଡ଼ାଏନି । ସେମାନଙ୍କୁ ବି ଭଲ ପାଏ ।

ଖରାଦିନେ କୂଅରୁ ପାଣି କାଢି ସେମାନଙ୍କୁ ପିଇବାକୁ ଦିଏ କି ନା ?

ହଁ ବହୁତ ପାଣି ପିଆଏ । ସେମାନେ ଏତେ ଭଲ ପା'ନ୍ତି ନା, ତାକୁ ଦେଖିଲେ ପାଖକୁ ଦୋଉଡ଼ି ଆସନ୍ତି । ତାକୁ ମୁଣ୍ଡରେ ଭୁଷନ୍ତି । ସେ ସେମାନଙ୍କୁ ଆଉଁଷି ଦିଏ, ଗେଲ କରେ ।

ତୁ ଏବେ କହ, ତୁ ଯେଉଁମାନଙ୍କୁ ଭଲ ପାଉ, ସେମାନେ ତତେ ଭଲ ପାନ୍ତି କି ନାଇଁ ।

ହଁ, ସମସ୍ତଙ୍କୁ ଭଲପାଏ ।

ନବତୀର୍ଥର ଗଛମାନଙ୍କୁ କିଏ ଲଗେଇଛନ୍ତି- ଖାଇବା, ପିଇବାକୁ ଦେଇ ବଡ଼ କରିଛନ୍ତି, ଜଗି ରହିଛନ୍ତି- ବାବୁଲିର ବାପା, ମା', ଜେଜେ, ଜେଜୀ ନା ?

ସେ ସେମାନଙ୍କୁ ଭଲ ପାଏ- ସେମାନେ ତାକୁ ଭଲ ପାଇଲେ, ଏ କଥା କ'ଣ ମିଛ ? ଟୁଲୁ ଅଧିକ ପୁଲକିତ ହୋଇ କହିଲା- ତମେ ଜାଣିନ ବାପା, ବାବୁଲିନା ଗଛମାନଙ୍କୁ ଆଉଜି ବସେ । ଆମେ ସେମାନଙ୍କ ଦେହରୁ ଡାଙ୍ଗ ଭାଙ୍ଗିଲେ, ଫୁଲ ଛିଡ଼େଇଲେ ବାଡ଼ି ଧରି ବାଡେଇଲେ- ପାଟି କରେ । ତଳେ ପଡ଼ିଥିବା ଫୁଲ ସବୁ ଗୋଟେଇ ଏକାଠି କରେ । ଗଛମାନଙ୍କ ମୂଳକୁ ସଜାଏ । ମୂଳରେ ଠାକୁର କରି ଖେଳେ । ବେଳେବେଳେ ସେମାନଙ୍କୁ ଆଉଁସି ଥାଏ । ଗୀତ ବୋଲୁଥାଏ । କ'ଣ କରୁଛୁ ବୋଲି ପଚାରିଲେ- କହେ, ମନ୍ତର ପଢୁଛି ।

ତୁ ଏବେ କହ- ସେ ସେମାନଙ୍କୁ ଭଲ ପାଉଥିଲା । ସେମାନେ ତାକୁ ପାଖରେ ରଖିଲେ । ଏଥର ସେ ସବୁଦିନ ପାଇଁ ସେଇଠି ରହିବ । ସେମାନଙ୍କ ଭଲମନ୍ଦ କଥା ବୁଝିବ । ଜଳଦେବୀ, ପବନ ଦେବତା, ଗଛ ଦେବତାମାନଙ୍କର ଗେହ୍ଲା ପୁଅ ହୋଇ ରହିବ । ଦେବୀମାନେ ଯାହାକୁ ଭଲପା'ନ୍ତି ତାକୁ ଆଗ ନେଇଯା'ନ୍ତି ।

ଟୁଲୁ ମୋ କଥାରୁ କ'ଣ ବୁଝିଲା କେଜାଣି, କହିଲା- ମୁଁ କ'ଣ ଭଲ ପିଲା ନୁହେଁ ?

ମୁଁ ତା' ଗଛ, ପାଣି, ପବନ, ଫୁଲ, ଗାଈ, ଛେଳି, କୁକୁର ବିଲେଇଙ୍କୁ ଭଲ ପାଏ । ମତେ କାହିଁକି ନେଇଯାଉ ନାହାନ୍ତି ?

ତା'ର ଉତ୍ତର ଓ ପ୍ରଶ୍ନ ମୋତେ ଚକିତ ଓ ନିର୍ବାକ କରିଦେଲା । ମୋର ବଡପଣ, ବିଦ୍ୟା ଓ ଅହଂକାର ଯେପରି ପରିହାସ କରି କହୁଥିଲା- ଦେବ, ତମେ ପିତା ହୋଇଛ, ମାତ୍ର ପିତୃତ୍ୱକୁ ବୁଝିପାରିନା । ଶୈଶବକୁ ମନେ ପକାଇଚ ମଧୁର ସ୍ମୃତ ଭାବରେ । ତା'ର ପବିତ୍ର ତେଜ କେତେ ପ୍ରୀତିପଦ ଏବେ ବୁଝି ପାରୁଛ ତ ?

ମୋ ଆଖିରେ ନାଚି ଉଠିଲା ନବତୀର୍ଥର ଚିତ୍ର ।

ସୋମନାଥପୁର ଗାଁର ମଶାଣି ପଦାର ନୂଆଁ ନାଁ ନବତୀର୍ଥ । ଅଶରୀରୀମାନଙ୍କର ମୁକ୍ତ ବିଚରଣ ଭୂମି । ଏଇ ମାଟିରେ ତାଙ୍କୁ ପାଉଁଶ କରି ଦେବା ଲାଗି ଦିନେ ନିଜର ଶେଷ ଇଚ୍ଛା ପ୍ରକାଶ କରିଥିଲେ- ମୁକ୍ତ ଜୀବନ ଉପରେ ବିଶ୍ୱାସ ରଖିଥିବା ଜଣେ ସ୍ୱଚ୍ଛ-ମନସ୍କ, ନବବାବୁ । ତାଙ୍କ ଇଚ୍ଛାକୁ ପୂରଣ କରାଯାଇଥିଲା ଏବଂ ମଶାଣି ଦେହରେ ନୂଆ ନାଁ ଲେଖି ଦିଆଗଲା 'ନବତୀର୍ଥ' । ନବବାବୁ ଗଲା ଦିନ, ବାବୁଲା ଆସିଥିଲା ଏବଂ ତା'ର ମା' ହାତକୁ ଦି'ହାତ ହେବା ପର୍ଯ୍ୟନ୍ତ ରହିଥିଲା ନବବାବୁଙ୍କ ପାଖରେ । ସେ ଗଢିଥିବା ଆଶ୍ରମରେ ପାଠ ପଢିଥିଲା, ମଣିଷ ହୋଇଥିଲା । ତେଣୁ ଯେତେବେଳେ ସେ ପୋଡା ହୋଇଥିବା ମାଟିକୁ ସବୁଜ କରିବା ପାଇଁ ସେବକଙ୍କର ଲୋଡା ପଡିଲା, ଆଉ କେହି ତୁଣ୍ଡ ଖୋଲିବା ଆଗରୁ ଶାନ୍ତି ହଁ ହଁ କରି ଦେଇଥିଲା । ଆଠ ବରଷ ହେଲା- ଏହି ଟାଙ୍ଗରା ଭୂଇଁକୁ ପ୍ରାଣବନ୍ତ କରିବା ପାଇଁ ଶାନ୍ତିର ପରିବାର କେତେ ଶରଧାରେ ଲାଗି ପଡିଛନ୍ତି । ଗଛମାନଙ୍କୁ ନିଜ ରକ୍ତର ସନ୍ତକ ପରି ପାଳିଛନ୍ତି । କୋଉଠି ଟିକିଏ ବି ହେଳା କରିନାହାନ୍ତି । ଆଉ ଆଜି ସେଇ ଭୂଇଁରେ ... ।

ଶାନ୍ତିର ପବିତ୍ର ପ୍ରେମର କ'ଣ ଏହା ପୁରସ୍କାର ? କ'ଣ ବା ଅପରାଧ କରିଥିଲେ ସେମାନେ ?

ଅଂଧାରରେ ମୋ ହାତ ଦୁଇଟି ଯୋଡି ହୋଇଗଲା ଆପଣା ଛାଏ ଏବଂ ପାଟିରୁ ବାହାରି ଆସିଲା ଦୁଇଟି ଶବ୍ଦ- ହେ ପ୍ରଭୁ !

ରହସ୍ୟ ସହିତ ମୋର ଏ ଆକସ୍ମିକ ସଂପର୍କ ଟୁଲୁର ଅନୁଭବରେ ବୋଧହୁଏ ଧରାପଡି ଯାଇଥିଲା ।

ସେ ପଚାରିଲା- ବାପା ଚମକିଲ କି ? ହଁ ତମେ ମିଛ କହିଲ । ଡରିଲ । ଚମକି ପଡିଲ । ଛାତିରେ ଛେପ ପକେଇ ଦିଅ । ନଇଲେ ବେଶି ଡରିବ । ମିଛ କଉଚ ଫଳ ପାଅ ।.

ମୁଁ ହସି ଦେଲି ନିଃଶବ୍ଦରେ । ଏ ହସ ସାଧାରଣ ନଥିଲା । ତାହା ଯେପରି ଥିଲା ଟୁଲୁର ଅଦ୍‌ଭୁତ ବୀରତ୍ୱର କାରୁଣ୍ୟ ।

ସେ ମୋତେ ପୁଣି ପଚାରିଲା- ବାପା, ବାବୁଲି ଏବେ କୋଉଠି ଥିବ ।

କହିଲି- କେତେ ଥର ସେଇ କଥା କହିବି- ତା' ଦେବୀ ମା' ପାଖରେ ।

ତମେ ଦେବୀ ଦେଖିଚ ?

ହଁ, ଦେଖିଚି ।

ଶ୍ରୀଦେବୀ ପରି ଭାରି ସୁନ୍ଦରୀ ନା ?

କାଇଁକି, ତୋ ମା' କ'ଣ ସୁନ୍ଦରୀ ନୁହେଁ କି ?

ହଁ ସୁନ୍ଦର ଯେ । ଶ୍ରୀଦେବୀ, ମୀନାକ୍ଷୀ ପରି ସେ କ'ଣ ଦେବୀ ବେଶ ହେଉଚି କି ? ସେ ତ ଖାଲି ରାଗୁଚି । ରାଗି ଗଲେ ଛେଚି ଦଉଚି । ତମେ ଦେଖିନ କି ? ତା ମା'ଠୁ ଖାଉଥିଲା । ମୁଁ ଜାଣିଚି ବା । ଦେବୀମାନେ ରାଗିଗଲେ କେତେ ଗେହ୍ଲା କରନ୍ତି । ତମେ ସିନେମାରେ ପରୀ ଆଉ ଦେବୀମାନଙ୍କୁ ଦେଖିନା କି ? କେତେ ଭଲ କେତେ ସୁନ୍ଦର । ସିନେମା ତ ଦେଖିବନି । ଜାଣିବ କେମିତି ? ଦେବୀମାନେ ନାଚ ଗୀତ ଜାଣନ୍ତି । ମା' କ'ଣ ଜାଣିଚି କି ? ତା'ର ଯୋଉ କଣ୍ଠ ନା । କେଡେ ବଡ ପାଟି । ବାପ୍‌ରେ । ମୁଁ କଉଚି- ସେ ଦେବୀ ହୋଇ ପାରିବନି । କଥା କହିଲେ- ରାଗିବ । ରାଗିଲେ- କାନ୍ଦିବ । କାନ୍ଦିଲେ- ଶୋଇ ପଡିବ । ଦେବୀମାନେ କ'ଣ ସେମିତି ହନ୍ତି ।

ସେ ଆଉରି କେତେ କ'ଣ କହିବାକୁ ଯାଉଥିଲା । କହିଲି- ଗୁଣମଣି, ଏଥର ଶୋଇପଡ । ଭାଷଣ ଥାଉ । ନିଦ ମାଡିଲାଣି ।

ସେ ପୁଣି ଜିଦ୍ ଧରି କହିଲା- ତମେ ଏଥର ସତ କରି କୁହ, ବାବୁଲି କୋଉଠି ଥିବ । କ'ଣ କରୁଥିବ ।

ଟୁଲୁର ସରଳତାକୁ ଭେଦିବା ପାଇଁ ମୋ ପରି ଜଣେ ଯୁକ୍ତିବାଦୀ ମଣିଷ ସମ୍ଭବତଃ ସମର୍ଥ ନଥିଲା । ମୋର କୌଣସି ଉତ୍ତର ତାକୁ ସନ୍ତୁଷ୍ଟ କରି ପାରୁନଥିଲା ଏବଂ ସେଇଥି ପାଇଁ ନିଦ ଛୁଇଁ ପାରୁନଥିଲା ତା' ସବୁଜ ବିଶ୍ୱାସକୁ ।

ଏଥର ଦୃଢ଼ତାର ସହ କହିଲି- ଦେଖ୍ ବାପା, ସେ ତା' ମା' ପାଖରେ ଥିବ– ଶୀତ ଦିନରେ ପୁଣି କୂଅ ଭିତରେ ?

ତାକୁ ଶୀତ କରୁନଥିବ ।

ଦେଖ୍ ସେ ଯୋଉ ମା' ପାଖରେ ଅଛି- ସେଠି ଶୀତ କରେନା, ଖରା କାଟେନା । ସବୁବେଳେ ଭଲ ଲାଗେ । ଏଥର ସେ ତା' ଇଚ୍ଛା ଅନୁସାରେ ବଞ୍ଚିବ । ଯାହା ଇଚ୍ଛା ତାହା କରିବ । ବରଷାରେ ବୁଲିଲେ- ସେ ଓଦା ହବନି । ତା'ର ମନ ହେଲେ- ସେ ଓଦା ହେଇ ପାରିବ । ହେଲେ ତାକୁ ଜର ହେବନି । ସେ ପାଣିରେ ପହଁରି ପାରିବ । ଆକାଶରେ ଉଡ଼ି ଯେଣେ ଇଚ୍ଛା ତେଣେ ଯାଇପାରିବ । ତାକୁ କେହି ଦେଖି ପାରିବେନି । ସେ ଭଲ ପିଲା । ତମେ ଜାଣିଚନା ବାପା, ସମସ୍ତଙ୍କଠାରୁ ସେ ମତେ ବୋଲି ଭଲ ପାଏ । ମୁଁ ତା' ସାଂଗରେ କମାରୁ କଳି କରେନି, ମାରେନି । ମୋତେ ଦେଖି ଦେଲେନା, ଆଉ କାହା ପାଖକୁ ନଯାଇ ମୋ ପାଖକୁ ପଳେଇ ଆସେ । ତା' ବାପା ମା' ପାଖକୁ ଯାଏନା ପା । ପ୍ରଥମେ ମତେ କହିଦେଇଯାଏ । ମୋ ଛଡା ଆଉ କାହା ସାଂଗରେ ଖେଳେନା । ଆଜି ସକାଳେ ମତେ ବାରଟା ନୂଆ କାଚଗୁଲି ଦେଇ ଯାଇଥିଲା । ଉପରବେଳା ଖେଳିବ ବୋଲି କହିଥିଲା । ତମେ ମତେ ଯୋଉ ଡଟ୍‌ପେନ୍‌ଟା ଦେଇ ନଥିଲ- ତାକୁ ଦେଖିବାକୁ ଦେଇଥିଲି । ସେ ମାଗି ନଥିଲା ଯେ, ତା'ର ଲେଖିବାକୁ ମନ ଥିଲା । ସେ କ'ଣ କିଛି ମାଗେକି । ମା'କୁ କହି, ତମେ ମୋ ଜନ୍ମଦିନକୁ ଯୋଉ ଜାମା ଆଣି ନଥିଲ,ତାକୁ ଦେଇଚି । ଆଜି ପିନ୍ଧି କରି ଖେଳୁଥିଲା । ବଢିଆ ଦିଶୁଥିଲା । ମୋ ପୁରୁଣା ବହିଗୁଡାକ ବି ତାକୁ

ଦେବା ପାଇଁ କହିଥିଲି । ନୂଆ ବହି କ'ଣ ସେ କିଣି ପାରିଥାନ୍ତା । ଡାକ୍ତରଖାନାରେ ସେ ଯେମିତି ମରିଗଲା ବୋଲି ଶୁଣିଚିନା, ଆମ କୂଅରେ ଗୁଲିଗୁଡାକ ପକେଇ ଦେଇଚି । ଏଥର ଖେଳୁଥାଉ । ଛି...

ଟୁଲୁ ଆଉ ବାବୁଲିର ବଂଧୁତ୍ୱ ମୋ ଆଖି ଆଗରେ ନାଚି ଉଠିଲା । ବାବୁଲିକୁ ଖୋଜିଲେ ଟୁଲୁ ଆଉ ଟୁଲୁକୁ ଖୋଜିଲେ ବାବୁଲିକୁ ଠାବ କରିବାକୁ ପଡେ । ଘର ଆଗ ପଡିଆରେ ବାବୁରି ଗଛ ତଳେ ପଡିଥିବା ମାଙ୍କଡା ପଥରମାନଙ୍କ ଉପରେ ବସି, ନଚେତ୍ ବାରି ଆଡର ଜାମୁ ଆଉ କଇଁଆ ଗଛ ତଳେ ଠିଆ ହୋଇ ସେମାନେ ଘଣ୍ଟା ଘଣ୍ଟା ଧରି ଟୁପୁରୁ ଟାପର ହେଉଥା'ନ୍ତି । ସଂଜବେଳେ ପଡିଆ ଭିତରର ହୁଙ୍କା ପାଖରେ ବସିଥାନ୍ତି । ଜଣକୁ ଡାକି ଦେଲେ, ଚୁପ୍‌ଚାପ୍, କିଛି ନଜାଣିଲା ପରି ଚାଲିଯା'ନ୍ତି ଯେଝା ଯେଝା ବାଟରେ ।

ସଂସାରରେ ନିଜ ନିଜ ବାଟରେ ଖସି ଚାଲିଯିବାଇ ଯେମିତି ଏକମାତ୍ର ସତ୍ୟ । ଯେମିତି ଆମେ କେହି କାହାକୁ ଚିହ୍ନିନେ, ଜାଣିନେ ।

କିଛି ସମୟର ନିରବତାକୁ ଚହଲେଇ ଦେଇ ଟୁଲୁ ମତେ ପୁଣି ପଚାରିଲା- ବାପା ଡାକ୍ତରଖାନାରେ ସେମାନେ ତା'ର ମୁଣ୍ଡ ଆଉ ପେଟକୁ କାଟି ଦେଲେନା । ତାକୁ ଖୁବ୍ ଜୋର୍‌ରେ କାଟିଥିବ । ମରିଗଲା ତ । ପୁଣି କାଇଁକି କାଟିଲେ । ଯିଏ ତାକୁ କୂଅ ଭିତରେକୁ ପେଲିଦେଲା, ତାକୁ କାଟିଲେନି । ଭାରି ଡାକ୍ତର । ଦେଖେଇ ହଉଚନ୍ତି । ପିଲାଟା ବୋଲି ଦୟା ଆସୁନି । ଛି...

ତା'ର ଏ ଭିତିରି କଥାର ପୁନରାବୃତ୍ତି ମତେ ଆତଙ୍କିତ କଲା । ମୋ ବୟସ୍କ ବିଶ୍ୱାସର ମଞ୍ଚ ଦୋହଲିଗଲା । ଦୁଃଖ ଓ କ୍ରୋଧକୁ ଚାପି ରଖି କଅଁଳ ସ୍ୱରରେ ପଚାରିଲି ଆଚ୍ଛା ବାପା, ସେମାନେ ତାକୁ ପେଲିଦେଲେ ବୋଲି ତୁ କ'ଣ ଦେଖିଛୁ ? ସେ ଅଧିକ ସାଂଗରେ ଖେଳରେ ସବୁବେଳେ ହାରନ୍ତି ବୋଲି ଆର ସାଇର ଟାରଜାନ ଆଉ ବୁଲୁ ତାକୁ ପରା ଧମକେଇଥିଲେ । କହିଥିଲେ- ଦେଖିନବୁ । ଶାଳା ପାଣ ଟୋକା ଭାରି ଖେଳାଳୀ ଦେଖେଇ ହଉଛି । ରାହା ମୋରି ଆଗରେ ନା ତାକୁ ଦିଇ ଧକ୍କା ପକାଇଲେ ।

ବାବୁଲି ବି ଛାଡିବା ଜନ୍ତୁ ନହେଁ । ସେ ବି ଚାରି ଧକ୍କା ପକାଇଲା । ବୀରପରି କହିଲା- ଯା, ଯା । ତମପରି କେତେ ଟୋକା ଦେଖିଚି, କ'ଣ କରିବ ଯା, ମୁଁ ପାଣ ହେଲି, ତମେ କୋଉ ବାମ୍ହଣ କି ? ଘୁସୁରିଆ ପଡାରେ ରହୁଚ । ଆମ ସାଇରେ ଦାଦାଗିରି ।

ସେମାନଙ୍କର ରାଗ ଥିଲା, ଚଢି ଥିଲେ । ଆଉ ଆଜି ବାବୁଲି କୂଅରି ପାଣି କାଢୁଥିଲା ବେଳେ- ଦେଲେ ପେଲି, ତମେ ଜାଣିନ ବାପା, ସେଗୁଡାକନା ସୁଉଦୁ ଖରାପ । କାହାକୁ ମାନନ୍ତିନି ପରା ।

ଛୋଟ ପିଲାଟିଏ କୂଅରୁ ପାଣି କାଢୁଥିଲା ବେଳେ ସେମାନେ ତାକୁ ପେଲିଦେଲେ ପଛରୁ, ଭୀରୁଙ୍କ ପରି । ମୁଁ ନିଜକୁ ଜମା ବିଶ୍ୱାସ କରି ପାରୁନଥିଲି ।

ଖରାଟାରେ ଖେଳି ଖେଳି ତାକୁ ଶୋଷ ଲାଗିଥିବ । କିମ୍ବା କିଏ ତାକୁ ପାଣି ପିଇବାକୁ ମାଗିଥିବ । ବୀର ଦର୍ପରେ ତା'ର ଅତି ପ୍ରିୟ ଓ ପରିଚିତ କୂଅ ସହିତ ଦାଦାପଣର ସମ୍ପର୍କ ଯୋଡିବାକୁ ସେ ବ୍ୟାକୁଳ ହୋଇଥିବା ଆପଣାକୁ ସମର୍ପି ଦେବାର ଆନ୍ତରିକତା- ଏକ ଜୀବନ୍ତ ଜଳାଶୟ ପରି । ବାହାରେ ଅପେକ୍ଷା କରିଥିବ । ତୃଷିତମାନେ ତାକୁ ଅତର୍କିତ ଭାବରେ ଠେଲି ଦେଇଥିବେ ଭିତରକୁ । କହିଥିବେ- ବୀରବର, ଯା, ଯେତେ ଇଚ୍ଛା ସେତେ ପାଣି ପିଉଥିବୁ ଯା । ସେମାନଙ୍କ ଭୀରୁତାର ଭାରା ସହିନପାରି ସେ ଖସି ପଡିଥିବ ତଳକୁ । ମାତ୍ର ତଳେ କ'ଣ ରହିପାରିଥିବ ।

ବୀର କ'ଣ କେବେ ଅଂଧାରରେ ନୁଚି ରହିପାରେ ? ସେ ହୁଙ୍କାର ଛାଡି ଉଠି ଆସିଥିବ ଉପରକୁ । ହାତ ବଢାଇଥିବ ଏକ ପରିମିତ ଶୂନ୍ୟତା ଆଡକୁ- ଟିକିଏ ରାହା ପାଇଁ । ତା'ର ବୀରତ୍ୱକୁ ପରିହାସ କରୁଥିବା ବୃକ୍ଷାଳ ଓ ବଂଧୁମାନେ ସମ୍ଭବତଃ ପାଖରେ ପଡିଥିବା ଦଉଡିଟିଏ ତଳକୁ ଖସେଇ ଦେଇଥିବେ । କହିଥିବେ- ବୀରବର ଦଉଡିକି ଧର ଧର । ବଞ୍ଚିବାର ସର୍ବଶେଷ ସାନ୍ତ୍ୱନା ପରି ଶୂନ୍ୟରେ ଝୁଲୁଥିବା ଦଉଡିକୁ ସେ ହୁଏତ ଧରିଥିବ । ମାତ୍ର ଭୀରୁମାନଙ୍କର କରୁଣାର ପ୍ରତୀକ ଦୁର୍ବଳ ଅବଶୋଷଟି ତା'ର ବୀରତ୍ୱର ତେଜକୁ ସମ୍ଭାଳି ପାରିନଥିବ । ଅସହାୟ ମଣିଥିବ ନିଜକୁ । ବିଶ୍ୱାସଠାରୁ କାଟି ଦେଇ ଥିବ ଆତ୍ମିକ ସମ୍ପର୍କ, ଏବଂ ତା'ପରେ ? ବିଚରା ବାବୁଲି ଗୋଟିଏ ହାତରେ ବିଶ୍ୱାସକୁ ଜାବୁଡି ଧରି ଖସି ପଡିଥିବ ଭିତରକୁ । ଚିରନ୍ତନ ଶେଷକୁ ମାତ୍ର କେତୋଟି ମୁହୂର୍ତ୍ତ ଭିତରେ ସେ ଆତ୍ମସ୍ଥ କରି ଦେଇଥିବ । ଯେଉଁ ଶୋଷ ମେଣ୍ଟି ଗଲାପରେ ବ୍ୟକ୍ତିର ସକଳ ବୀରତ୍ୱ, ଅହଂକାର କାଳେ ଶୋଷୀ ହେଇଯାଏ । ଠିକ୍ ତାରି ପରି ଶୋଷୀ, ଶୋଷୀ ଖୋଜି ଖୋଜି ବାବୁଲି ତା'ର ପ୍ରିୟତମ ଟୁଲୁ ପାଖକୁ ଚାଲି ଆସିବନିତ ? ଟୁଲୁ ତା' ପାଇଁ ଏମିତି ଏକ ନିର୍ଭର ବୀରତ୍ୱର ଗୋପନ କଥା ଖୋଲି ଦେଇପାରିବ ।

ଟୁଲୁ ମୋତେ ହଲେଇ ଦେଇ ପଚାରିଲେ- କଉନ ବାପା, ସେମାନେ କାଇଁକି ତା' ମୁଣ୍ଡ ଆଉ ପେଟକୁ କାଟି ପକେଇଲେ ।

ମୁଁ ଟିକିଏ ଚଢାଗଳାରେ କହିଲି- ତୁ କେମିତି ଜାଣିଲୁ ?

ମୁଁ ଦେଖିଚି । ତାକୁ ଡାକ୍ତରଖାନାରୁ ଆଣି ଯେତେବେଳେ ତାଙ୍କ ଘର ଦୁଆର ମୁହଁରେ ରଖିଲେ ନା, ମୁଁ ତା' ପାଖରେ ପରା ଠିଆ ହୋଇଥିଲି । ତା' ମୁଣ୍ଡରେ କନା ଭିଡା ହୋଇଥିଲା । ବାପା, ବାବୁଲିର ଗୁଲୁଗୁଲିଆ ମୁହଁଟା ନା ପୂରା ଶୁଖି ଯାଇଥିଲା । କୂଅ ଭିତରେ ପାଣି ପିଇଗଲା ବେଳେ ତ ଅଣନିଃଶ୍ୱାସୀ ହୋଇ ପଡିଥିବ । ତା'ପରେ ତା' ମୁଣ୍ଡକୁ ଫଟେଇ ଦହି ବାହାର କରିଦେଲେ । ଭାରି କାଟିଥିବ । ଡାକ୍ତରମାନଙ୍କୁ ଡର ଲାଗେନି । ଦୟା ଲାଗିବା କଥା । କୁନି ପିଲାମାନଙ୍କୁ ବାଡେଇବାକୁ କ'ଣ ବଡମାନଙ୍କୁ ଭଲ ଲାଗେ ।

ଟାରଜନ୍ ଆଉ ବୁଲୁ, ପାନେ ପାଇବେ ଯେ ବାବୁଲି ଦବ, ସହଜରେ ଛାଡିବନି, ଟୁଲୁର ଏ ସ୍ୱୀକାରୋକ୍ତି ମତେ ପୁଣି ବିଚଳିତ କଲା ।

ତାକୁ ଧମକ ଦେଇ କହିଲି- ଦେଖ୍ ବାବୁଲିକୁ କିଏ ପେଲି ଦେଇଚି ବୋଲି କୋଉଠି କାହାରି ଆଗରେ କହିବୁନି । ଉପର ଓଳି ପୋଲିସ୍ ଆସିଥିଲା ଦେଖିଚୁ ତ ? ସେ କେମିତି କୂଅରେ ଖସି ପଡିଲା ସେମାନେ ସବୁ କଥା ଜାଣିବାକୁ ଚାହୁଁଛନ୍ତି ।

ତୁ ଯଦି କହିଦେବୁ- ଯିବୁ ଥାନାକୁ । ମାମୁଁ ଘର । ଖାଇ ପିଇ ଘର ଭିତେର ମଜାରେ ରହିବ । ଭଲ ହେବ ।

ମୋ ଧମକ ଓ ପୋଲିସ କଥା ଶୁଣି ସମ୍ଭବତଃ ସେ ଡରିଗଲା । କହିଲା- ଏ ପୋଲିସ୍‌ଗୁଡାକ ବି ଟାରଜନ ଆଉ ଡାକ୍ତରମାନଙ୍କ ପରି ଭାରି ଖରାପ ନା । ସତ କହିବାକୁ ଡରନ୍ତି । ଏମାନେ କ'ଣ ପିଲାଦିନେ ପଢି ନଥିଲେ 'ସତ କହିବାକୁ କିଆଁ ଡରିବି । ସତ କହି ପଛେ ମଲେ ମରିବି ।' ମୁଁ ଆଉ କାହାରି ଆଗରେ କହିବିନି । ଆଖି ଛୁଉଁଛୁ । ଛି... ।

ତା' ସ୍ୱରରୁ ଯେମିତି ଉଚ୍ଛୁଳି ଉଠୁଥିଲା ସଂସାର ବିରୋଧରେ ଘୃଣା ଆଉ ଅଭିମାନର ତରଙ୍ଗ ।

ପୁଣି କହିଲା- ସତ କଉଚି ବାପା । ମୁଁ ବାବୁରିକୁ ଜାଣିଚି । ତମେ ଜାଣିନ । ସେ ଏମାନଙ୍କୁ ଛାଡିବନି । ଦେଖିବ ।

ତା'ର ବିଶ୍ୱାସକୁ ତେଜି ଦେଇ ପଚାରିଲି- କ'ଣ କରିବ ?

ତମେ ଜାଣିନ- ନାଲୁ ଭାଇ କହୁଥିଲା- ସେ ଏଥର ବାଳକ ଭୂତ ହୋଇଗଲା । ତମେ ବାବନା ଭୂତ ଗପ ପଢିନ । ମତେ କଉନଥିଲ କି ?

ମୋ ନାଆଁ ବାବନା ଭୂତ, ମୁଁ ଖାଏ ଅଳପ ଭାତ
ଆକାଶରେ ମାରଇ ଡିଆଁ, କେହି ନଜାଣଇ ମୋହରି ନାଁ ।

ସେଇ କୂଅ ହେଲା ତା'ର ଘର । ସେ କୂଅରୁ ଆଉ କେହି ପାଣି ପିଇବେନି । ମାରା ହୋଇଗଲା । ସେ ଗଛରେ ରହିବ । ନବତୀର୍ଥ ମଶାଣିର ଚରାବୁଲା କରିବ । ଯିଏ ତାକୁ ହଇରାଣ କରିବ- ଡରେଇବ । ସେ ଯିବା ଆସିବା ଗଲାବେଳେ କେହି ତାକୁ ଦେଖି ପାରିବେନି । ସେ ଆମକୁ ଦେଖିପାରିବ । କୁକୁର, ବିଲୁଆ, ଚଢେଇମାନେ ତାକୁ ଚିହ୍ନିପାରିବେ । ମଶାଣିରେ ଆଉ ଯୋଉ ଭୂତ, ଭୁତୁଣୀମାନେ ନାହାନ୍ତି, ସେ ସେମାନଙ୍କ ସହିତ ଖେଳବୁଲା କରିବ । ସମସ୍ତେ ତାକୁ ଗେହ୍ଲା କରିବେ । ଆଉ କିନ୍ତୁ ବଡ ହୋଇ ପାରିବେନି । ଯେତିକି ହେଇଥିଲା ସେତିକି ହେଇ ରହିବ । ତମେ କ'ଣ ଏକଥା ଜାଣିନ କି ?

ମୁଁ ଆଉ କେମିତି ଜାଣିଲି ?

ଜମା ଜାଣିନ ? ମିଛ କଉଚ । ତମ ବାପା, ବୋଉ, ଜେଜେ ବାପା, ଜେଜୀ ମା' କ'ଣ କଥା କହିନଥିଲେ କି ? ବଡ ଲୋକମାନେ ସବୁବେଳେ ମିଛ କୁହନ୍ତି ।

ତୁ କେମିତି ଜାଣିଲୁ ?

ତମେ କେମିତି କହୁନ- ସେ ଜଳଦେବୀଙ୍କ ପାଖରେ ଅଛି । ସେ ଭଲ ପିଲା ଥିଲା । ଦେବୀ ତାକୁ ଭଲ ପାଉଥିଲେ । ତେଣୁ ନେଇଗଲେ । ମୁଁ କ'ଣ ଖରାପ ପିଲା କି ? ଖରାପ କଥା କହୁଚି । ମିଛୁଆ ବାପା ।

ଟୁଲୁର ଅଦ୍‌ଭୁତ ପ୍ରଶ୍ନମାନଙ୍କର ଉତ୍ତର ମୋ' ପାଖରେ ନଥିଲା । ପୃଥିବୀର ପ୍ରତ୍ୟେକ ନିର୍ବୋଧ ବାପା ବୋଧ ହୁଏ ଶୈଶବର ବୀରତ୍ୱ ଓ ସ୍ୱପ୍ନ ପାଖରେ ଏମିତି ଅସହାୟ। ତା' ତୁଣ୍ଡରୁ କଥା ଶେଷ ହୋଇଛି କି ନାହିଁ, ବାରିପଟରେ, ମେଳା ବାନ୍ଧି ଶୋଇଥିବା କୁକୁରମାନେ ଭୋ ଭୋ ହେଇ ଭୁକି ଉଠିଲେ । କିଏ ଯେମିତି ବାଡି ଧରି ଗୋଡେଇ ଆସୁଥିଲା ସେମାନଙ୍କ ଆଡକୁ । ପରେ ପରେ ମଶାଣି ପଦା । ସେମାନଙ୍କ ଡାକରେ ଜବାବ ଦେଲେ ଚିର ଶତ୍ରୁ ବିଲୁଆ ଭାଇମାନେ- ହୁକେ-ହୋ-ହୁକେ-ହୋ । ଏବଂ ଆମ ଘରର ଛପର ଉପରେ ଆନଂଦରେ ଶୋଇପଡିଥିବା ଗର୍ଭବତୀ ବରକୋଳି ଗଛର ଅଙ୍ଗପ୍ରତ୍ୟଙ୍ଗରେ ଚମକ ଖେଳେଇ ଦେଇ ଡେଣା ଛାଡି, ଅସନ୍ତୋଷରେ ଚିଡିଚିଡି ହେଇ ଉଡିଗଲେ କେତେଟା ନାଁ ଅଜଣା ଚଢେଇ ।

ସେମାନଙ୍କ କଥାକୁ ଟୁଲୁର ନିଷ୍ପାପ ମନ ବୁଝିପାରିଲାକି କ'ଣ, ଜାକି ହେଇ ଆସିଲା ମୋ ଛାତି ପାଖକୁ । ଏବଂ ଦାଣ୍ଡଆଡୁ ଭାସି ଆସିଲା ଶାନ୍ତିର ସେଇ ପରିଚିତ ସ୍ୱର- ବାବୁଲିରେ... ବାବୁଲି... ରେ ବାପା, ଏ ଶୀତ ରାତିରେ ଏକୁଟିଆ କୋଉଠି ବୁଲୁଚ, ଡର ମାଡୁନି, ଶୀତ କରୁନି । କୁଆଡେ ଗଲୁରେ ବାବୁଲି... ମୋ ଧନରେ...

ଶାନ୍ତିର ଡାକରେ ସତୀର ନିଦ ଭାଙ୍ଗିଗଲା । କହିଲା- ତମେ ବାପପୁଅ ହଳକ ଏଯାଏ ଶୋଇନ । ଭଟ ଭଟ ହଉଚ । ନିଦ ଆସୁନି । ଛଟ୍ ଛଟ୍ ଭାଙ୍ଗି ଯାଉଚି । କେଡେ ଭଲ ପିଲାଟିଏ ଥିଲା । ଈଶ୍ୱର ଭାରି ନିର୍ଦ୍ଦୟ । ଆଖି ଆଗରେ ତା' ମୁହଁ ନାଚି ଯାଉଛି ।

ସତୀ କଥା ଶୁଣି ଟୁଲୁ ହସି ହସି କହିଲା- ମିଛେଇ । ତୋ ନାଁ କିଏ ସତୀ ଦେଇଥିଲା କେଜାଣି ?

ମୁଁ ପୁଅ କଥାରେ ପାଳି ଧରି କହିଲି- ତମର ତ କଡେ ନିଦ ଗଲାଣି । ଅନିଦ୍ରା କେମିତି ରହିଲା । ଘୁଙ୍ଗୁଡି ମାରି ଚାହିଁଥିଲ ନାଁ କ'ଣ । କି ନିନ୍ଦା ସତୀତ୍ୱ ।

ମୋ ପାଟିରୁ କଥା ଛଡେଇ ଟୁଲୁ କହିଲା- ତମେ କୋଉ ସତିଆ କି ? ତମେ ବି ସେଇଆ । ସମ୍ଭବତଃ ମା'ର କ୍ରୋଧକୁ ଶୀତଳେଇ ଦେବାକୁ ଚାହୁଁଥିଲା ତା'ର ଚତୁର ଶୈଶବ ।

ସତୀକୁ କହିଲା- ମା' ଲୋ ତୋର ମନେ ଅଛିନା, ବାବୁଲି ମତେ ମୋ ପୁରୁଣା ବହି ଦେବାକୁ କହିଥିଲା । ସବୁ ବହି ମୋ ପାଖରେ ଥିଲା । ତୁ କହିଲୁ ବାପାରେ ବହି ନାହିଁ । ଇକି ପୋଡାମୁହିଁ ସବୁ ବହି ନେଇଗଲା । ଏଇ ବର୍ଷର ବହିସବୁ ତୋର, ହେଲା ବାପା ।

ଇକି ବହି ନେବାକୁ କହିଥିଲା । ନେଇ ନଥିଲା । ତୁ ତ ବାବୁଲିକୁ ଦେଇପାରିଥାନ୍ତୁ । ଇକିକୁ ମୁଁ ଭଲ ପାଏ ଯେ ହେଲେ ତା' ବାପାଙ୍କର ବହୁତ ପଇସା ଅଛି, ସେ ତ କିଣି ପାରିଥାନ୍ତେ । ଶାନ୍ତି ମାଉସୀ ହଇରାଣରେ ଚଳୁଛି । ମା'ଲୋ ଏ ବର୍ଷର ବହିଗୁଡାକ ନା ମୁଁ ବାବୁଲିକୁ ଦେବି ବୋଲି କହିଛି । ତୁ ଆଉ କାହାକୁ ଦେବାକୁ କହିବୁନି । ସେ ହିଁ ମୋ ବହି ନବ ।

ମୁଁ କହିଲି ବାବୁଲି ତ ନାହିଁ । କେମିତି ବହି ନବ ।

ମୋ ପାଟିରୁ କଥା ଛଡେଇ ସେ କହିଲା- ସେ କୂଅରେ ପକେଇ ଦେଇ ଆସିବି । ଯୋଉଦିନ ପରୀକ୍ଷା ସରିବ ଠିକ୍ ସେଇ ଦିନ । ଜମା ଡେରି କରିବିନି । ସେ ତାର ଯେମିତି ପଢିବ ପଢୁ । ତାକୁ ଦବା କି ନାହିଁ କହିଲ ।

ତମେ ବଡ ଲୋକମାନେ ତ ସୁଉଦ କାଂପୀ ଆଉ ଗନ୍ଧିଆ... ଛି...

ଟୁଲୁର କେଇପଦ କଥା ମୋ ବୟସ୍କ ପିତୃତ୍ୱକୁ ଚହଲେଇ ଦେଲା । ବାବୁଲି ଯେମିତି ମରି ନଥିଲା, ଥିଲା ଆମରି ଭିତରେ । ବାବୁଲିମାନେ କ'ଣ କେବେ ମରିପାରନ୍ତି ?

ଏବଂ ସେମାନଙ୍କୁ କେବେ କ'ଣ ହତ୍ୟା କରିପାରନ୍ତି ଚତୁର ଭୂତେଶ୍ୱରମାନେ ? ମୋ ଭିତରର କଥାକୁ ବାବୁଲି ଶୁଣି ପାରିଲା କି କ'ଣ କେଜାଣି- ଆକସ୍ମିକ ଭାବରେ ଏକ ସମୟରେ ଆମ ଚାରିପାଖରେ ବିଲୁଆ ଓ କୁକୁରମାନେ କଥାବାର୍ତ୍ତା ହେବାକୁ ଆରମ୍ଭ କଲେ ଏବଂ ବାରିଆଡେ ମିତ ବସିଥିବା ଏବଂ ତେନ୍ତୁଳି ଜାମୁ ଗଛରେ ବସା ବାନ୍ଧିଥିବା ଚଢେଇମାନେ ବି ମିଶିଗଲେ ସେମାନଙ୍କ ସହିତ । ବାବୁଲି ଯେପରି ସମସ୍ତଙ୍କୁ କହୁଥିଲା- ମୁଁ ଏଇଠି ଅଛି, ଏଇଠି । ମତେ ଦେଇ ପାରୁଛୁ ତ ତମର କିଛି ବୋଲି କିଛି କରିବିନି ।

ଏବଂ ଶାନ୍ତିର ମାତୃତ୍ୱର ଉଷ୍ଣତା ଶୀତ ରାତିରେ ପ୍ରସରି ଯାଉଥିଲା ସମଗ୍ର ବିଶ୍ୱରେ । ବାବୁଲିରେ... ବାବୁଲି ।



# ମା'

## ସଦାନନ୍ଦ ତ୍ରିପାଠୀ

କକେଇ ପୁତୁରା ଦିହେଁ ଋଷିକୂଲ୍ୟା ନଈ ପାଖାପାଖି ପହଂଚିଲା ବେଳକୁ ସମୟ ସନ୍ଧ୍ୟା ପାଞ୍ଚଟା । ଫାଲ୍‌ଗୁନ ମାସର କୃଷ୍ଣପକ୍ଷ ଅଷ୍ଟମୀ ତିଥି । ମାର୍ଚ୍ଚ ଦୁଇ ତାରିଖ । ମାଳ ଜାଗା । ଗରମ ମୋଟେ ପଡ଼ି ନଥାଏ । ହେଲେ ସାଢ଼େ ଚାରିଘଣ୍ଟା କାଳ ଅବିରାମ ଦଉଡ଼ି ଦଉଡ଼ି ବାଟ ଚାଲି ଆସିଥିବାରୁ ଦୁହିଁଙ୍କ ଦେହରୁ ବୋହିଯାଉଥାଏ ଗମଗମ ଝାଳ । ତା' ଉପରେ ପୁଣି କକେଇ ମୁଣ୍ଡେଇ ଥାଏ ଗୋଟିଏ ବସ୍ତା ଓ ଟ୍ରଙ୍କ ଏବଂ ପୁତୁରା ଧରିଥାଏ ଖଣ୍ଡେ ସୌଖୀନ ଆଟାଚି ଓ କନା ତିଆରି ଝୁଲାମୁଣି । ଦୁହେଁଯାକ ଭାରି କ୍ଳାନ୍ତ ହୋଇ ପଡ଼ିଥାନ୍ତି । ପୁତୁରା କହିଲା- କକା ! ଏ ନଈକୂଳଟାରେ କି ଆରାମ ଲାଗିଲାରେ ! କି ସୁଲୁସୁଲୁ ପବନ !

କକେଇ ଆଗକୁ ପାଦ ପକାଉ ପକାଉ ଜବାବ ଦେଲା- ଚାଲେ ମ' ! ଏଇଠେ ପବନ ଖାଉ ଖାଉ ସିଆଡ଼େ ଗାଡ଼ି ଫିଟିଯିବ ଯେ ।

ସେମାନେ ନଈ ପାରି ହୋଇ ରଜାଘର ତୁଠର ପାହାଚ ଉପରକୁ ଉଠିଲେ । ପାହାଚ ପରେ ପାହାଚ ଚଢ଼ି ରାସ୍ତା ଉପରକୁ ଆସିଲେ । ସାମ୍ନାରେ ଏକ ପରିତ୍ୟକ୍ତ ଡିହ । ସେଇଠି କେବେ ଗୋଟେ ସିନେମା ଘର ଥିଲା । ଡାହାଣ ପଟେ ଏକ ପ୍ରକାଣ୍ଡ ପାଚେରି । ପାଚେରି କୋଣରେ ଘରର ଦୁଆରବନ୍ଧ ପିରିମିତ ବାଟଟିଏ, ଭିତରକୁ ଯିବା ପାଇଁ । ଭିତରକୁ ପଶିବା ମାତ୍ରେ ହିଁ ପୋଚକା ପିସାପ ଗନ୍ଧରେ ନାକ ଫାଟି ପଡ଼ିବ । ପାଚେରି ଭିତରେ ପଡ଼ିଆ । ସୋରଡ଼ା ଗଡ଼ର ପରିବା ବଜାର । ପଛପଟ କାନ୍ଥକୁ ଲାଗି ଗୋଟିଏ ବିଦେଶୀ ମଦ ଦୋକାନ । ସାମନା ପଟେ ଅଛି ମୁଖ୍ୟରାସ୍ତାକୁ ବାହାରିବାର ବାଟ । ମୁଖ୍ୟରାସ୍ତା ଏପଟେ କେତୋଟି ଦୋକାନ ଓ ହୋଟେଲ । ଆରପଟେ ଏନ୍.ଏ.ସି. କାର୍ଯ୍ୟାଳୟ । ପୂର୍ବେ ସେଇଠି ହିଁ ଥିଲା ସୋରଡା ବସଷ୍ଟାଣ୍ଡ । ଏବେ ଘୁଞ୍ଚି ଯାଇଛି ବରାଡ଼ି ଆଡ଼କୁ । ପରିବା ବଜାରରୁ ବାହାରି ମୁଖ୍ୟରାସ୍ତାରେ ଅଳ୍ପଦୂର ଡାହାଣକୁ ଗଲେ ଚର୍ଚ୍ଚ ପାଖରେ ଯେଉଁ ବରାଡି ଛକ, ସେଇଠି ଗାଡ଼ିସବୁ ରହେ । କକେଇ ପୁତୁରା ଦିହେଁ ସେ ଛକରେ ପହଂଚି ଜଣେ ଲୋକକୁ ପଚାରିଲେ- ଆସିକା, ବରମ୍ପୁର ଯିବାକୁ ଆଉ ଗାଡ଼ି କେତେବେଳେ ମିଳିବ ?

ଲୋକଟି କକେଇକୁ କିଛି କ୍ଷଣ ବଲବଲ ଚାହିଁବା ପରେ ହସହସ ଦିଶିଲା ଓ ପଚାରିଲା ଆରେ, ଦିବାକର କି'ହେ ? ସୋରା ବାଟ ପାସୋରି ଦେଲ ନା କ'ଣ ବା ? ତିନି ଚାରି ବର୍ଷ ହେଲା ତୁମର ଆଉ କାଇଁ ଦେଖା ନାଇଁ ! ରଣବା ଗାଁ ଛାଡ଼ି ଆସିକା, ବ୍ରହ୍ମପୁର ଆଡ଼େ ଯାଇ ରହିଲାଣି କି ?

ଦିବାକର ଲୋକଟିକୁ ଚିହ୍ନିପାରି କହିଲା- ଆରେ, ଗୋସେଇଁ ମାହାପୁରୁ ! ତୁମକୁ ଆଉ ବିଲୁକୁଲୁ ଚିହ୍ନି ହଉନି । କ'ଣ ଏଡ଼େ କାଇଲା ଦୁଶୁଚ ! ଦିହ ଅଧୁଟେ ଶୁଖିଯାଇଚି । ସେ ବେଶଭୂଷା ମଧ କାଇଁ ନାଇଁ !

: ହଁ, ସେକଥା ଆଉ କାଇଁକି ପଚାରୁଛ ? ମୁଁ ତ ଆସି ବୁଢ଼ା ହେଲି । ମୋର ପରିବାପତ୍ର ବେପାର ବୁଡ଼ିଗଲା । ଯୋଡ଼ିକଯାକ ଝିଅ ଦରବୁଢ଼ୀ ହେଇ ଘରେ ବସିଛନ୍ତି । ବର ମିଳିବାକୁ

ନାହିଁ । ଭେଣ୍ଡା ପୁଅ ତିନିଟା ହେଣ୍ଡେ ହେଣ୍ଡେ ହେଇ ଇଆଡ଼େ ସିଆଡ଼େ ବୁଲୁଛନ୍ତି । ଆମ ପିଲାଙ୍କୁ ତ ଆଉ ଚାରିକି ମିଳିବନି । ଏମିତିରେ ଆଉ ଏ ଲୋକର ମନ କି ଦେହ କ'ଣ ଭଲ ରହିବ ? ଛାଡ଼ ସେ କଥା । ତୁମ ବିଷୟ କ'ଣ କୁହ । ଆସିକା, ବ୍ରହ୍ମପୁର ଗାଡ଼ି କାହିଁକି ଖୋଜୁଥିଲ ?

ଦିବାକର କହିଲା- ପୁତୁରାଟାକୁ ଛାଡ଼ିବାକୁ ଆସିଥିଲି । ସିଏ କଟକ ଯାଇଥାନ୍ତା । କଟକ ଓ.ଏ.ମ୍ପିରେ ସିପାହି ଚାକିରି କରୁଚି ପ୍ରାୟ ପାଞ୍ଚବର୍ଷ ହେଲା ।

ଗୋସେଇଁ ହସି ହସି କହିଲେ- ତା' ଡ୍ରେସ୍‌ଟା ଦେଖି ମୁଁ ସେତେବେଳୁ ସେକଥା ଭାବୁଚି ଯେ, ଓଏମ୍ପି ସିପାହି ବୋଇଲେ ଆମର ଏ ଥାନା କାନିଷ୍ଟିବିଲି ଭଳିଆ ନା ? ହେଲେ ଗାଁରୁ ଏକା ଡ୍ରେସ୍ ପକେଇକିରି କାଇଁକି ବାହାରିଚି ? ଓଏମ୍ପିରେ ଇମିତି କ'ଣ ବିଧି ଅଛି କି ?

: ନାଇଁ ସେ କଥା ନାଇଁ ଯେ । ବରମ୍ପୁର ଯାଇ ସେଇଠୁ ରେଳରେ କଟକ ଯିବ ତ ! ଡ୍ରେସ୍ ଉପରେ ଥିଲେ ରେଳଭଡ଼ା ଆଉ ଲାଗିବନି । ଦିବାକର କହିଲା ।

କକେଇ ଗୁମରଟା ପଦାରେ ପକାଇ ଦେବାରୁ ପୁତୁରା ଟିକିଏ କ୍ଷୁର୍ଣ୍ଣ ହେଲା ଓ ଅନ୍ୟ ଆଡ଼େ ମୁହଁ ବୁଲାଇଦେଲା । ତାହା ଦେଖି ଗୋସେଇଁ କହିଲେ- ଭେଦ ଫିଟିଗଲା ବୋଲି ଘେନାକଲୁ କି ବାପ ? ସେଥିରେ କ'ଣ ଅଛି ? ମୁଁ କ'ଣ ପର ପୁରା ହେଇଚି ? ତୋ କକା ସାଂଗରେ ମୋର ଭାରି ପୁରୁଣା ସଂପର୍କ ! ଆରେ, ତମେ ତ ଖାଲି ବସ୍ କି ରେଳରେ ମାହାଳିଆ ଯିବାକୁ ଡ୍ରେସ୍ ପିନ୍ଧୁଛ । ଆମର ଏ ଥାନା ପୋଲିସ ପରା ଡ୍ରେସ୍ ପିନ୍ଧି କୁରୁଛତ୍ର କୁକର୍ମ କରୁଛନ୍ତି ! ମୋର ଦୋକାନଟାକୁ ସେମାନେ ଏକା ଭାଙ୍ଗିଦେଲେ ନା । ମତେ ବୋଇଲେ ମାସିଆରି ମାସୁଲ ଦିଅ, ନ ହେଲେ ଝିଅ ଦି'ଟାକୁ ଆମମାନଙ୍କ ଘରେ କାମ କରିବାକୁ ଛାଡ଼ । ପରିବା ବଜାରରେ ଛୋଟ ଦୋକାନଟେ କରି ମୁଁ ସାତ ପ୍ରାଣୀ ପରିବାରକୁ ପୋଷୁଥିଲି । ତାଙ୍କୁ ମାହାଳିଆଟାରେ ମାସୁଲ ଦେବାକୁ ମୋର ସମ୍ବଳ କାଇଁ ? ଆଉ ବ୍ରାହ୍ମଣ ପରିବାରର ଯବାନୀ ଝିଅ କ'ଣ ପାଇଁ ସେମାନଙ୍କ ଘରେ ଯାଇ ଖଟିଥାନ୍ତେ ? ମୁଁ ସେମାନଙ୍କ କଥାରେ କାନ ଦେଲିନି ବୋଲି, ପରିବା ଦୋକାନରେ ଲୁଚାଚୋରାରେ ଗଂଜେଇ ବିକୁଚି କହି ମୋ ଦୋକାନଟାକୁ ଭାଙ୍ଗି ଦେଲେ । ମୁଁ ଗରିବ ବ୍ରାହ୍ମଣ । ନିଃଶ୍ୱାସ ପକେଇବା ଛଡ଼ା ଆଉ କ'ଣ ହେଲେ କରିପାରିବି ?

ପୁତୁରା ତା' ହାତଘଣ୍ଟାକୁ ଦେଖିଲା । ବ୍ୟତିବ୍ୟସ୍ତ ହୋଇ ପଚାରିଲା- ଆଉ ଗାଡ଼ି କେତେବେଳେ ଆସିବ ?

ଗୋସେଇଁ କହିଲେ- ଗାଡ଼ି ଆଉ କାଇଁ ? ଲାଷ୍ଟ୍ ବସ୍‌ଟା ତ ତମେ ଆସିବାର ଦଶ ମିନିଟ ଆଗରୁ ପଳେଇଲା । ଏପଟେ ଭଞ୍ଜନଗରକୁ ମଧ୍ୟ ଆଉ ଗାଡ଼ି ନାଇଁ । ନ ହେଲେ ଭଞ୍ଜନଗର ବାଟୁ ବ୍ରହ୍ମପୁର ଯାଇ ହେଇଥାନ୍ତା ! ଦେଖିବା ଯଦି କାଟିଙ୍ଗା, ଅସୁରବନ୍ଧ ଆଡୁ କାଠ ଲୋଡ୍ ଟ୍ରକ୍ ଆସେ ମୁଁ ତତେ ସେଥିରେ ବସେଇ ଦେବି ।

: କାଟିଙ୍ଗା ଜଙ୍ଗଲ ଆଡ଼େ ଆଜି ଟ୍ରକ୍ ଯାଇଚି ତ ? ଦିବାକର ପଚାରିଲା ।

ଗୋସେଇଁ କହିଲେ- ଆଜି ଯାଇଚି କି ନାଇଁ ମୁଁ ଅବଶ୍ୟ ଦେଖିନି । ଏଇଠେ ପଚାରିଲେ ଜଣାପଡ଼ିଯିବ ଯେ । ପ୍ରାୟ ତ ପ୍ରତିଦିନ କାଠ ଟ୍ରକ୍ ଯାଇଥାଉଚି । ମାତ୍ର ସେମାନେ ଫେରୁ ଫେରୁ ରାତି ନଅ କି ଦଶ ହବ । ତୁମେ ଦି'ଜଣ ବ୍ରିଜ୍ କି ବଜାର ଆଡ଼େ ବୁଲାବୁଲି କର । ରାତି ନଅଟା ବେଳକୁ କୋ' ହେଲେ ହୋଟେଲରେ ପାରୁଶ୍ୱ ପକେଇ ସିଧା ଏଇଠିକି ପଳେଇ ଆସ । ଟ୍ରକ୍ ଆସିଲେ, ମୁଁ କହିଦେଲେ ସେମାନେ ନେଇଯିବେ ଯେ ।

ପୁତୁରା କକେଇର ହାତକୁ ଟାଣି କିଛିଦୂର ନେଇଗଲା । ଦୁଇଜଣ କେତେ ସମୟ କ'ଣ କଥା ହେଲେ । ଗୋସେଇଁ ସେମାନଙ୍କୁ ଲକ୍ଷ୍ୟ କରୁଥିଲେ । ଦୁହେଁ ରଗାରଗି ହେଲା ଭଳି ହାତ ଛିଞ୍ଚାଡ଼ି କଥା ହେଉଥିବା ଦେଖି ସେ ସେମାନଙ୍କ ପାଖକୁ ଗଲେ । ଗୋସେଇଁ ପାଖେଇ ଆସିବାରୁ ଦୁହେଁ ଚୁପ୍ ହୋଇଗଲେ । ଗୋସେଇଁ ପଚାରିଲେ ଦିବାକରକୁ- ଟ୍ରକ୍‌ରେ ଯିବାକୁ ପୁତୁରାର ମନ ପାଉନି କି ହେ ? ନା, ଆଉ କୋଉ ବିଷୟରେ କଥା ହଉଚ ?

ଦିବାକର କିଛି କହିବା ପୂର୍ବରୁ ପୁତୁରା କହିଲା- ରାତି ନଅଟା ଦଶଟା ବେଳକୁ ଟ୍ରକ୍‌ରେ ବସିଲେ ମୁଁ ତ ଆଉ ରାତି ଏଗାରଟା ବେଳକୁ ବ୍ରହ୍ମପୁରରେ ପହଂଚି ପାରିବିନି । ରାତି ଟ୍ରେନ୍ ଧରି ନପାରିଲେ କାଲି ସକାଳ ଛ'ଟା ପୂର୍ବରୁ ଡେଡ କ୍ୱାର୍ଟରରେ ହାଜର ହେବା ସମ୍ଭବ ନୁହେଁ । ପନିସ୍‌ମେଣ୍ଟ ହେବାଟା ହେବ । କାଲି ସକାଳ ଛ'ଟା ପରେ ପହଂଚିବା ଯାହା, ଦିନକ ପରେ ପହଂଚିବା ତାହା । ଯେମିତି ହେଲେ ଶାସ୍ତି ଭୋଗିବାକୁ ପଡ଼ିବ । ତେବେ ଏଠୁ କାଲି ସକାଳେ ବସ୍ ଧରି ବ୍ରହ୍ମପୁର ନ ଯିବି କାହିଁକି ? ଦିନ ଦୁଇଟା ବେଳେ ସେଠାରୁ ଟ୍ରେନ୍ ଧରିଲେ ବି ମୁଁ ସନ୍ଧ୍ୟା ସାତଟା ପୂର୍ବରୁ କଟକରେ ପହଂଚି ଯାଇ ପାରିବି ।

ଗୋସେଇଁ ଦିବାକରକୁ କହିଲେ- ତୁମ ପୁତୁରା ତ ଠିକ୍ କଥା କହୁଛି । ତା'ପରେ ସେ ପୁତୁରାର ମୁହଁକୁ ଚାହିଁ ପଚାରିଲେ- ତୋର ନାଁ କ'ଣଟି ବାପ ?

ପୁତୁରା କହିଲା- ପ୍ରତାପ ।

ଗୋସେଇଁ ପୁଣି ଦିବାକରକୁ କହିଲେ- ପ୍ରତାପ ଯାହା କହୁଛି ଏକବାରେ ଉଆଜିବ କଥା । ସାରାରାତି ବ୍ରହ୍ମପୁର ରେଲ୍ ଷ୍ଟେସନ୍‌ରେ ସାମାନପତ୍ର ଧରି ପଡ଼ି ରହିବ କାହିଁକି, ଏଇଠେ କୋଉଠେ ରାତି ଘଡ଼ିଟା ଆରାମରେ ଶୋଇ ସକାଳୁ ବସ୍ ଧରି ନଯିବ କିଆଁ ? ସକାଳୁ ବଡ଼ଗଡ଼ କଟକ ବସ୍‌ଟା ନାଇଁ କି ହେ ? ସାତଟା ଅଧେରୁ ଆଠଟା ଭିତରେ ଏଇଠେ ଲାଗିବ । ବସ୍‌ରେ ଡାଇରେକ୍ଟ କଟକ ଯିବ ବୋଇଲେ ମୁଁ ସିଟ୍ ରଖିଦେବି । ଦେଖ, ତମେ ଯାହା ବିଚାର କରିବ । ହେଲେ ରାତିଟା ରହିବ କୋଉଠେ ?

ପ୍ରତାପ କହିଲା- କୋଉଠି ରହିବା କ'ଣ ଦରକାର ? ଗାଁକୁ ଫେରିଗଲେ ହବନି ? ଫେରେ ପାହାନ୍ତିଆରୁ ବାହାରି ସକାଳ ନଅଟା ବେଳକୁ ଏଇଠି ପହଂଚିଲେ ବି ଚଳିବ ।

ପ୍ରତାପର ସ୍ୱର ଟିକିଏ କର୍କଶ ଶୁଣାଗଲା । ଜଣାଗଲା ଯେମିତି କି ସେ ଗୋସେଇଁଙ୍କୁ ନୁହେଁ, କକେଇକୁ ହିଁ ସେକଥା କହିଲା ।

ଗୋସେଇଁ କପାଳରେ ଦୁଇଥର ହାତ ମାରି କହିଲେ- ହରେ କୃଷ୍ଣ ହରେକୃଷ୍ଣ ! ବାୟା ହେଲୁ କି ବାପ ! ତମ ଗାଁ କ'ଣ ଏଇଠେ ହେଇଚି ? କାହିଁ ଦୂରରେ ସେ ରଣବା ଗଡ଼ । ନଈ ଡେଇଁଲେ ଜୟସିଙ୍ଗ ଜଙ୍ଗଲ । ତା'ପରେ ମୂଳିଆପଲ୍ଲୀ, ମଥାଖାଲର ଖାପଚା ବାଟ । ସେଇଠୁ ଯାଇ ଘାଟି ଖାରିଗୁଡ଼ା ପାହାଡ଼ ଡେଇଁଲେ ରଣବା ଗଡ଼ । ଯେତେ ବେଗରେ ଚାଲିଲେ ମଧ୍ୟ ଚାରି ପାଞ୍ଚ ଘଣ୍ଟାରୁ ଊଣା ଲାଗିବନି । ଏବେ ଆସି ବେଳ ରତରତ ହେଲାଣି । ଆଉ ଘଡ଼ିଏ ଭିତରେ ଅନ୍ଧାର ହେଇଯିବ । ଅସାଧ ଅଗମ୍ୟ ବାଟରେ ଏ ଅନ୍ଧାର ରାତିରେ କାହିଁକି ବୃଥା ପରିଶ୍ରମ କରିବ କହିଲୁ ?

: ଅନ୍ଧାର କ'ଣ ? ଜହ୍ନ ବାହାରିବନି କି ? ପ୍ରତାପ କହିଲା ।

ଜହ୍ନ ? ଇଏ ପରା କୃଷ୍ଣପକ୍ଷ । ଆଜି ଅଷ୍ଟମୀ ତିଥି । ରାତି ଆଠଘଡ଼ି ଉତ୍ତାରୁ ଯାଇ ଜହ୍ନ ଦିଶିବ । ସିଏ ଯାଇ ରାତି ବାରଘଣ୍ଟା ପରର କଥା । ଦିବାକର ଘୋର ବିରକ୍ତିରେ କହିଲା ଓ

ସ୍ୱଗତୋକ୍ତି କଲା- କେତେ ବୁଝେଇଲି ଅଷ୍ଟମୀ ବେଳାଟା କୁଆଡ଼େ ଯିବା ଆସିବା ପାଇଁ ଭଲ ନାଇଁ, ଦିନକ ଆଗରୁ ବାହାରିପଡ଼େ । ମୋ କଥା ଶୁଣିଥିଲେ ଆଜି ଏ ଗାଡ଼ି ନମିଳିବା ଦଶା ଭୋଗିବାକୁ ପଡ଼ିଥା'ନ୍ତା ?

ଗୋସେଇଁ ମଝିରେ ପଶି କହିଲେ- ଯାହା ଗଲାଣି, ତାକୁ ଛାଡ଼ । ଏବେ ଆଉ ଗାଁକୁ ଫେରିବା କଥା ତୁଣ୍ଡରେ ଧରନା । ରାତି ଘଡ଼ିଟା କଟେଇବାକୁ ଯିବା ଆସିବାରେ ଆଠ, ଦଶ ଘଣ୍ଟା କାହିଁକି ସାରିବ ? ଏ ଗରିବ ବ୍ରାହ୍ମଣର କୁଡ଼ିଆରେ ଗଡ଼ପଡ଼ ହେଇ ରାତିଟା କଟେଇଦିଅ ।

ଦିବାକର କହିଲା- ଖାଲି ରାତି ଘଡ଼ିଟା କ'ଣ କହୁଚ, ଏବେ ପନ୍ଦର ଦିନ ରହିବି ବୋଇଲେ ମଧ୍ୟ ଆମ ସାଉକାର ଘର ନାଇଁକି ? ଯା'କୁ ଗାଡ଼ି ମିଳି ଯାଇଥିଲେ ମୁଁ ଆଉ ରାତିରେ କ'ଣ ଗାଁକୁ ଫେରିଥାନ୍ତି କି ? ସାଉକାର ଘରେ ରାତିଟା ରହି ସକାଳୁ ଯାଇଥା'ନ୍ତି ନା ! ଚାଲେ ସେଇଠେ ରାତିଟା ରହିଯିବା ବୋଇଲେ ଇଏ ପରା ମଙ୍ଗୁନି ।

ପ୍ରତାପ ନାକରେ କହିବା ଭଳି ଖେଦ ପ୍ରକାଶ କଲା- ଗାଁକୁ ପଳେଇ ନଯାଇ ଆମେ ଯା' ତା' ଘରେ କାହିଁକି ରହିବା ମ' ?

ଦିବାକର ବୋଧହୁଏ ରାଗିଗଲା । ଚଢ଼ାଗଳାରେ ସେ କହିଲା- ଯା' ତା' ଘର ବୋଲି କେମିତି କହିଦେଉଚୁ ? ସାଉଆଣୀଙ୍କୁ ତୁ ଦେଖିଲେ ଜାଣିବୁ । ସାକ୍ଷାତ ଦେବୀ ପ୍ରତିମା । ସତେ କି ସାରାଜଗତର ମା' । ଆମ ରଣବା ରଜା ତାଙ୍କ ଗୋସେଇଁ ଶ୍ୱଶୁରଙ୍କୁ ଯେଉଁ ଜମି ଦାନ କରିଥିଲେ ତିନିପୁରୁଷ ହେଲା ସେସବୁ ଚାଷ କରି ଆମେ ପାଞ୍ଚଲୋକରେ ମଣିଷ ହେଇଚୁ । ସାନ ସାଉକାରଙ୍କର କାଳ ହେଇଯିବା ପରଠୁ, ପ୍ରାୟ ଚାରିବର୍ଷ ହେଲା ତାଙ୍କର ଭାଗ ବାବଦକୁ ଆମେ କିଛି ଦେଇନୁ । ତଥାପି ଦେଖିବୁ ଚାଲେ, କିମିତି ସ୍ନେହ ଆଦରରେ ସାଉଆଣୀ ଆମର ଚର୍ଚ୍ଚା କରିବେ । ଥରେ ତାଙ୍କୁ ଦେଖି ଦେଇଥା' । ଜୀବନରେ କେବେ ଇମିତି ଲୋକ କୋଉଠେ ତୁ ଦେଖିବାକୁ ପାଇବୁନି ।

କିଛି ବୁଝି ନପାରିବା ଭଳି ଆବାକାବା ହୋଇ ଦୁହିଁଙ୍କ କଥା ଶୁଣୁଥିବା ଗୋସେଇଁ ପ୍ରତାପକୁ କହିଲେ- ଦିବାକର ଠିକ୍ କହୁଛନ୍ତି । ରାତି ହେଇଯିବ । ଏବେ ଆଉ ଚାଲିଚାଲି ଏତେ ଦୂର ଯିବାକଥା ଭାବେନା ବାପ । ତୁମ ଖାମିଦାଣୀ ପ୍ରକୃତରେ ଭାରି ଖାଣ୍ଟି ମଣିଷ । ସାରା ସୋରଡ଼ା ଗଡ଼ରେ ଖୁବ୍ ନାଁ ଡାକ । ଦୁଃଖୀରଙ୍କିଙ୍କର ପେଟ ଚିହ୍ନିବାକୁ, ଅତିଥି ଅଭ୍ୟାଗତଙ୍କର ସେବା ଯତ୍ନ କରିବାକୁ ଏମିତି ଲୋକ ଏ ଖଣ୍ଡମଣ୍ଡଳରେ ନମିଳେ । ବିଧାତା ସିନା ତାଙ୍କର ସୁଖ ଦେଖିଲାନି ବୋଲି କଞ୍ଚା ବୟସରେ ବିଧବା ହେଇଗଲେ । ତାଙ୍କ ଘରେ ରହିଲେ କେଡ଼େ ଶାନ୍ତିରେ ରାତିଟା କଟିଯିବ ତୁ ନିଜେ ଅନୁଭବ କରିପାରିବୁ । ତୁମର କିଛି ଅମର୍ଯ୍ୟାଦା ହବନି କି ପର ଘରେ ରହିଲା ପରି ଲାଗିବନି ।

ପ୍ରତାପର ଆଉ କୌଣସି କଥା ଶୁଣିବାର ଆଗ୍ରହ ନଥିଲା । ସେ ତା'ର ଆଟାଚି ଓ କନା ତିଆରି ଝୁଲାମୁଣି ଧରି ବଜାର ଆଡ଼କୁ ଫେରିଲା । ତରବର ହୋଇ ଦିବାକର ଗୋସେଇଁଙ୍କୁ କହିଲା ଅଖାବସ୍ତା ଓ ଟ୍ରଙ୍କଟିକୁ ତା' ମୁଣ୍ଡ ଉପରକୁ ଉଠାଇ ଦେବା ପାଇଁ । ତା'ପରେ ସେ ଦ୍ରୁତଗତିରେ ପ୍ରତାପର ଅନୁଗମନ କଲା । ପ୍ରତାପ ପଶିଲା ପରିବା ବଜାର ଭିତରେ । ତା' ପଛକୁ ଲାଗିଯାଇ ଦିବାକର ବାଁ ହାତ ରଖିଲା ତା' କାନ୍ଧ ଉପରେ ଓ କହିଲା -, ଶୁଣ୍, ଶୁଣ୍... ! ପ୍ରତାପ କାନ୍ଧକୁ ନୁଏଁଇ ଦେଇ ଛୋଟ ପିଲାଙ୍କ ଭଳି ମୁହଁ ଚିଆଁଡ଼ି କହିଲା – ମୁଁ କିଛି ଶୁଣିବିନି ଯା' ।

ଦୁହେଁ ପଣ୍ଡିତା ବଜାର ଅତିକ୍ରମ କଲେ । ରଷିକୂଲ୍ୟା ନଦୀରେ ରଜାଘର ତୁଠ ସିଧା ରାସ୍ତା ଉପରେ ଠିଆ ହେଲେ । ମୁହଁସଞ୍ଜ ଯାଏ ଦୁହିଁଙ୍କ ମଧ୍ୟରେ କଥା କଟାକଟି ଚାଲିଲା । ପ୍ରତାପର ଦିକ୍‌ଦାରିଆ ଜିଦ୍ ଆଗରେ ଦକଦକ ଦିବାକର ଅନ୍ୟନୋପାୟ ହୋଇ ଶେଷରେ କହିଲା- ହଉ, ହେଲା । ଚାଲେ ଟିକିଏ ସାଉଆଣୀଙ୍କୁ ଭେଟିଦେଇ ଆସିବାହ । ଏ ଜିନିଷପତ୍ରଗୁଡ଼ାକ ମଧ୍ୟ ତ ତାଙ୍କ ଘରେ ରଖି ଦେବାକୁ ପଡ଼ିବ ।

ଦୁହେଁ ଠିଆ ହୋଇଥିଲେ ତୁଠ ଆଡ଼କୁ ମୁହଁ ଓ ଭଂଗା ସିନେମା ଘରର ଡିହ ଆଡ଼କୁ ପିଠି କରି । ପ୍ରତାପ ପ୍ରତିବାଦ ନ କରିବାରୁ ଦିବାକର ଡାହାଣ ପଟକୁ ବୁଲି ଆଗରେ ଆଗରେ ଚାଲିଲା । ପ୍ରତାପ ଚାଲିଲା ତା' ପଛେ ପଛେ । ଅଳ୍ପ କେତୋଟି ଘର ପରେ ଦିବାକର ଗୋଟିଏ ପକ୍‌କା ଘରର ଗେଟ୍ ଖୋଲି ଭିତରକୁ ଗଲା । ମୁଣ୍ଡରୁ ଟ୍ରଙ୍କ୍ ଓ ବସ୍ତାକୁ ଗୋଟିକ ପରେ ଗୋଟିଏ ଓହ୍ଲାଇ ରଖିଲା । ବାରନ୍ଦା ଉପରେ । କବାଟରେ ଦୁଇଥର ଆଘାତ କରି ସେ ଡାକ ଛାଡ଼ିଲା- ସାଉକାର ଘରେ ଅଛନ୍ତି ?

ଘର ଭିତରୁ ପ୍ରାର୍ଥନାର ସ୍ୱର ଭାସି ଆସୁଥିଲା । ପ୍ରାର୍ଥନା ଚାଲିଥିଲା । ଧଳା ଲୁଗା ପିନ୍ଧିଥିବା ସ୍ତ୍ରୀ ଲୋକ ଜଣେ କବାଟ ଫିଟାଇ ବାହାରକୁ ମୁଣ୍ଡ ବାହାର କଲେ । ପିଲାଙ୍କର ପ୍ରାର୍ଥନା ଚାଲିଥିଲା ଘର ଭିତରେ । ପ୍ରତାପ ଅତ୍ୟନ୍ତ ବିମୋହିତ ହୋଇପଡ଼ିଲା । ସାତ୍ତ୍ୱିକ ଚେହେରାର ସେ ସତେଜା ବିଧବାଟିକୁ ଦେଖି । ତାଙ୍କର ବୟସ ବେଶୀରୁ ବେଶୀ ଚବିଶିକି ପଚିଶ ହେବ । ନିବୁତା ଗାଈ ଖୀର ପରି ତାଙ୍କର ଦେହର ରଙ୍ଗ । ବିଧବାର ପୋଷାକରେ ବି ଦିଶୁଛନ୍ତି ସ୍ୱର୍ଗର ଅପ୍‌ସରୀ ପରି । ବିଜୁଳିବତିର ଆଲୁଅରେ ନୁହଁ; ସତେ କି ତାଙ୍କରି ରୂପ କାନ୍ତିରେ ପୂରା ଝଲସି ଉଠିଛି ସାରାଟା ଘର । ତାଙ୍କ ମୁହଁ ହସହସ; ଉଜ୍ଜ୍ୱଳ । ଆନନ୍ଦରେ ଅଧୀର ହୋଇଥିବା ପରି ସେ ପ୍ରତାପର ଜକେଇଙ୍କୁ ପଚାରିଲେ- ଏ ଅବେଳରେ କେମିତିମ ଚଷାଘର ଭାଇ ! ଆସ ଆସ, ଘରକୁ ଆସ ।

: ନାଇଁ, ଆମେ ଏଇ ପିଣ୍ଡାରେ ଅଛୁ । ସାମାନପତ୍ର ଅଛି । ଦିବାକର ସାଙ୍କୁଡ଼ି ଗଲା ଭଳି ସ୍ୱରରେ କହିଲା ।

: ଇଏ କି କଥା ! ସେ କହିଲେ । ତାଙ୍କ ସ୍ୱରରେ କି ଦାବି , କି ଅଧିକାରବୋଧ ! ସାମାନପତ୍ର ଘର ଭିତରକୁ ଆଣ । ପଦାରେ କାହିଁକି ରଖିବ ? ତୁମେ କ'ଣ ଅଚିହ୍ନା ଇତର ଲୋକ କି ? ତା'ପରେ ସେ ପ୍ରତାପ ଆଡ଼କୁ ଚାହିଁ ପଚାରିଲେ- ଏ ବାବୁଟି କିଏ ?

ଦିବାକର କହିଲା- ମୋର ପୁତୁରା, ପ୍ରତାପ । କଟକ ଯାଇଥାନ୍ତା ଯେ, ଏବେ ତ ଆଉ ଏଠୁ କୁଆଡ଼େ ବି ଯିବାକୁ ଗାଡ଼ି ନାହିଁ ।

''ହଉ, କ'ଣ ହେଲା ? ସକାଳୁ ଯିବେ । ମୋର ତ ରନ୍ଧାରନ୍ଧି ପ୍ରାୟ ସରିଛି । ପିଲା ଦି'ଟା ପ୍ରାର୍ଥନା ସାରି ଦି'ଘଣ୍ଟା ପଢ଼ିବେ । ବଡ଼ଟା ଦ୍ୱିତୀୟରେ ପଢୁଛି । ସାନଟା ସ୍କୁଲକୁ ଆଉରି ଯାଇନି, ଏ ବର୍ଷ ଯିବ । ସିଏ ଘରେ ଅକ୍ଷର ମଡ଼ଉଚି । ଦୁହିଁଙ୍କ ପାଖରେ ଟିକିଏ ବସିବି । ନହେଲେ ଖୁମ୍ପୁଡ଼ା ଖୁମ୍ପୁରି ହେଇ ମାଡ଼ ଲାଗିବେ, କିଛି ପଢ଼ିବେନି; ପିଲାଲୋକ, ଜାଣୁନ ? ତୁମେ ଜକେଇ ପୁତୁରା ଦି'ଜଣ ବେଳାବେଳି ଖା'ପିଅ କରି ଶୋଇପଡ଼ । ଏତେ ବାଟ ଚାଲିଚାଲି ଆସିଛ, ଥକା ଲାଗୁଥିବ ।'' ସାଆନ୍ତାଣି କହିଲେ । ଘର ଭିତରକୁ ଯାଉଯାଉ ଦିବାକର କହିଲା- ''ଖା' ପିଅ କରିବା କଥା ଆଉ କୁହନି ସାଆନ୍ତାଣୀ ! ଆମର ସାମାନପତ୍ର ଏଇଠି ଥାଉ । ଆମେ ଗାଁକୁ ପଳେଇବୁ । ଫେରେ ସକାଳୁ ଆସିବୁ ।''

: ଇଏ କି ସୃଷ୍ଟିଛଡ଼ା କଥା ! ସାଆନ୍ତାଣୀ ଭାରି ବିସ୍ମିତ ହୋଇ କହିଲେ- ଏ କୃଷ୍ଣପକ୍ଷ ଅନ୍ଧାର ରାତିରେ ତୁମେ ଏବେ ରଣବା ଯାଏ ବୋଲି ଯିବ ? କ'ଣ ପାଇଁ ?

ପୁଅ ଦୁଇଜଣ ପ୍ରାର୍ଥନା ସାରି ଆସି ମା'ର ଲୁଗାକାନି ଧରି ଠିଆ ହେଲେ । ସେ କହି ଚାଲିଥିଲେ- ସେକଥା ହେବନି । ରାତି ହେଲାଣି । ଜଙ୍ଗଲ, ପାହାଡ଼ ରାସ୍ତା । ଭାଲୁ, ଡିଙ୍କିଆ ହାବୁଡ଼ରେ ପଡ଼ିବାକୁ ଯିବ ନା କ'ଣ ? ଏଇ ବାଟରେ ତ ବାଘ ମଧ୍ୟ ବାହାରୁଥାଇ ପାରନ୍ତି । ଏଇଠି ମୁଁ ଥାଉଥାଉ ଛାର ରାତିଟା କଟାଇବାକୁ ଏତେ ହଟହଟା ହେଇ ତୁମକୁ ଗାଁକୁ ଯିବା ପାଇଁ ଛାଡ଼ିଦେବି ? ବସ, ବସ । ସେ ଅଲୋକିତ ଭାବନା ମନରୁ କାଢ଼ି ଫିଙ୍ଗିଦିଅ ।

ପ୍ରତାପ ଠିଆ ହୋଇ ଘରର ସାଜସଜ୍ଜା ଦେଖୁଥିଲା । ମୁଗ୍ଧ ଦୃଷ୍ଟିରେ ଚାରିଆଡ଼େ ବୁଲାଉଥିଲା ତା' ଦୃଷ୍ଟି । ଦିବାକର ତଳେ ବସିବାର ଉପକ୍ରମ କରୁଥିଲା । ସାଆନ୍ତାଣୀ ଚିହିଁକି ଉଠିବା ଭଳି କହିଲେ, ''ଆରେ ଆରେ ! ତଳେ କ'ଣ ବସିପଡୁଛ ଚଷାଘରର ଭାଇ ? ସୋଫାରେ ବସ ।''

ପ୍ରଥମେ ପ୍ରତାପ ବସିଲା ସୋଫାରେ । ମା'ର ଦୁଇ ପାଖରେ ଠିଆ ହୋଇ ମୁଟୁମୁଟୁ ଚାହୁଁଥିବା ପୁଅ ଦୁଇଜଣଙ୍କୁ ଦେଖିଲା । ଭାରି ଗୁଲୁଗୁଲିଆ ହେଇଛନ୍ତି । ସମ୍ଭ୍ରାନ୍ତ ଦିଶୁଛନ୍ତି । ସେ ଚେଷ୍ଟା କରି ଦୁଇଥର ଦୁଇଆଖିର ପଲକ ପକାଇଲା । ପିଲା ଦୁଇଟି ନିର୍ବିକାର, ନିରୀହ ଦୃଷ୍ଟିରେ ଚାହିଁଥିଲେ ଦୁଇଟି ଧୋବ ଫରଫର ଠେକୁଆ ଛୁଆଭଳି । ସୋଫା ପାର୍ଶ୍ୱରେ ପଡ଼ିଥିବା ଗୋଟିଏ ଢକିରେ ବସୁ ବସୁ ଦିବାକର କହିଲା- ନାଇଁ ସାଉଆଣୀ, ମୋର ଏ ପୁତୁରାଟି ତ ମୋଟେ ମଙ୍ଗୁନି ଏଠି ରହିବା ପାଇଁ ।

ପ୍ରତାପ ମୁଣ୍ଡ ପୋତି ଦେଲା ।

: କି କଥା ! ଆମ ଘରେ ତମର ଅସମ୍ମାନ ହେବ ବୋଲି ଭାବୁଛ କି ବାବୁ ? ସାଆନ୍ତାଣୀ ପଚାରିଲେ ।

ପ୍ରତାପ ନିରବ ।

: କେଜାଣି, କ'ଣ ସିଏ ଭାବୁଛି ! ଦିବାକର କହିଲା । ଘଣ୍ଟାଟେ ହେଲା ତ ଏଇକଥା ଉପରେ ଆମର ବିବାଦ ଚାଲିଚି । ମୁଁ କହୁଚି, ରହିଯିବା । ସିଏ କହୁଚି ଗାଁକୁ ପଳେଇବା । ଯିବା, ଯିବା ବୋଲି ମୋର ଝାଙ୍କ ଛଡ଼େଇ ଦେଲାଣି ପରା ସାଉଆଣୀ ! ମୁଣ୍ଡକୁ ପୋତି ରଖିଥିଲେ ବି ପ୍ରତାପ କ୍ଷୁବ୍ଧ ହୋଇ ଉଠୁଥିବା ଭଳି ଜଣାପଡୁଥିଲା । ସାଆନ୍ତାଣୀ ଦିବାକରକୁ ପଚାରିଲେ- କିଏ ଜଣେ ବାହା ହେବେ ବୋଲି ମାଘ ମାସରେ ଯୋଉ ଖବର ପଠେଇଥିଲ, ଏଇ ବାବୁ ସେଇ କି ?

: ହଁ । ଦିବାକର କହିଚାଲିଲା- ଏଇ ଏକା ବିଭା ହେଲା ପରା, ଏଇ ପନ୍ଦର ଦିନ ତଳେ, ମାଘ ଶୁକ୍ଳ ଭୀଷ୍ମ ଅଷ୍ଟମୀରେ । ଗତ ଚଉଦ ତାରିଖ ଦିନ ତ ! ସେଥିପାଇଁ ଛୁଟି ଲୋଡ଼ି ଆସିଥିଲା ।

: ଓ ହୋ ! ଏମିତି କଥା ? ସାଆନ୍ତାଣୀ କହିଲେ ଓ ତୁରନ୍ତ ବୁଲିପଡ଼ି ଭିତର ଘରକୁ ଚାଲିଗଲେ । ପିଲା ଦୁଇଜଣ ତାଙ୍କ ପଛେ ପଛେ ଗଲେ । ପୁଣି ତାଙ୍କ ସାଂଗରେ ଆସିଲେ । ସାଆନ୍ତାଣୀ ଦିବାକର ହାତକୁ ବଢ଼ାଇ ଦେଲେ ଗୋଟିଏ ପାଞ୍ଚ ସେଲିଆ ଟର୍ଚ୍ଚ । କହିଲେ- ତମେ ତା' ହେଲେ ବଜାର ସାହିକୁ ଯାଅ । ସେଇଠି ଦୁଇ ତିନିଟା ସାଇକଲ ମାର୍ଟ ଅଛି । ସେମାନେ ସାଇକଲ ଭଡ଼ାରେ ଦିଅନ୍ତି । ତୁମକୁ ଯଦି ଚିହ୍ନିନଥିବାରୁ ଦେବାକୁ ମନା କରିବେ, ଆମ କଥା କହିବ । ନ ହେଲେ କାହାକୁ ଜଣକୁ ଡାକିବ ମୋ ସହିତ କଥାହେଇ ଯିବ । ତୁମେ ଆସ । ମୁଁ ବଢ଼ାବଢ଼ି କରିଦେଉଛି । ଖାଇଦେଇ ଚାଲିଯିବ । କେଜାଣି ଗାଁରେ ପହଂଚିବା ବେଳକୁ କେତେ ରାତି ହେବ ! ସମସ୍ତେ ଖାଇପିଇ ଶୋଇବେଣି । ଆଚ୍ଛା, ତୁମ ଗାଁକୁ ସାଇକଲ ଯାଇପାରିବ ଟି ? ଦିବାକର କହିଲା- ''ହଁ, ଯିବନି କାହିଁକି ? ମଝିରେ ମଝିରେ ଖଣ୍ଡେ ଖଣ୍ଡେ ବାଟ ଗଡ଼େଇ ଗଡ଼େଇ ନେବାକୁ ପଡ଼ିବ ।''

ଦିବାକର ଉଠିବା ପୂର୍ବରୁ ପ୍ରତାପ ରୀତିମତ ଖେପା ମାରି ଉଠିଲା ଓ ବାହାରକୁ ବାହାରିଗଲା ।

କକେଇ ପୁତୁରା ଦୁହେଁ ବଜାର ପାଖରୁ ଗୋଟିଏ ଭଡ଼ା ସାଇକଲ ଧରି ଆସିଲେ । ସାଆନ୍ତାଣୀ ବାଢ଼ିଦେଲେ । ସେ ଦୁହେଁ ଭୋଜନ କଲେ । ସବୁ ସାମାନ ଘର ଭିତରକୁ ଆଣି ରଖିଲେ । ପାଞ୍ଚ ସେଲିଆ ଟର୍ଚ୍ଚ ଧରିଲେ । ସାଇକଲ ବାହାରକଲେ ଓ ଚାଲିଗଲେ ।

ରାତିରେ ଶୋଇବା ବେଳେ ବଡ଼ପୁଅଟି ମା'କୁ ପଚାରିଲା- ବୋଉ ! ସେମାନେ ଏ ରାତିରେ ଜଙ୍ଗଲ ରାସ୍ତାରେ ଗଲାବେଳେ ବାଘ ମାମୁଁକୁ ହାବୁଡ଼ିବେନି ! ତାଙ୍କୁ ଭାଲୁ କାମୁଡ଼ି ନେବନି ?

ମା' କହିଲେ-ନା, ତାଙ୍କର କିଛି ହେବନି ।

ପରଦିନ ସକାଳ । ବହୁତ ବେଳୁ ଚାରିଆଡ଼େ ବିଛାଡ଼ି ହୋଇ ଖରା ପଡ଼ିଲାଣି । ଦିବାକର ଆସି ପହଂଚିଲା ସାଆନ୍ତାଣୀଙ୍କର ଘର ପାଖରେ । ସାଆନ୍ତାଣୀଙ୍କ ହାତକୁ ବଢ଼ାଇ ଦେଲା ଟର୍ଚ୍ଚ । କହିଲା- ମାର୍ଟରେ ସାଇକଲ ଫେରାଇ ଦେଇଛି ।

ସାଆନ୍ତାଣୀ ପଚାରିଲେ- ପୁତୁରା ବାବୁଟି କୁଆଡ଼େ ଗଲେ ?

ଦିବାକର କହିଲା-ସିଧା ବସ୍‌ଷ୍ଟାଣ୍ଡକୁ ପଳେଇଲା ।

ସାଆନ୍ତାଣୀ କହିଲେ- ଘରକୁ ଆସିଲେନି, ଜଳଖିଆ ଟିକିଏ ଖାଇଦେଇ ଯାଇଥା'ନ୍ତେ । ତୁମେ ତ ପାହାନ୍ତା ପ୍ରହରରୁ ଘରୁ ବାହାରି ଆସିଥିବ !

ଦିବାକର କହିଲା- ମୁଁ ଡାକିଲି । କହିଲି- ଆ, ଜୁହାର ହେଇ ଆସିବୁ ସାଉଆଣୀଙ୍କୁ । ସିଏ ମନା କଲା । କହିଲା- ମା'ଙ୍କୁ ମୋର ଜୁହାର କହିଦବ । ମୁଁ ଆଉ ତାଙ୍କ ଆଗକୁ ଯାଇ ପାରିବିନି । ମତେ ଡର ଲାଗୁଚି ।

: ପୁତୁରା ବାବୁ ଏମିତି କହିଲେ ? ସାଆନ୍ତାଣୀ ପଚାରିଲେ ।

: ହଁ ପରା ! ଦେଖୁନ ତା' ବୁଦ୍ଧି ! ମୁଁ କହିଲି- କିରେ, ତାଙ୍କୁ ମା' ବୋଲି କ'ଣ କହୁଚୁ ? ସିଏ ପରା ତୋ ଠାରୁ ବୟସରେ ସାନ ହେବେ । ଦିବାକର କହିଲା ।

ସାଆନ୍ତାଣୀ ସ୍ମିତ ହସି କେବଳ କହିଲେ-ଭଲପିଲା, ଭଲପିଲା ।

କିଛିକ୍ଷଣ ଚୁପ୍ ରହିବା ପରେ ସେ ପୁନର୍ବାର କହିଲେ- ଏ ସବୁ ଜିନିଷ ତ ତୁମେ ଥରକରେ ନେଇପାରିବନି । ରିକ୍‌ସାଟେ ଡାକି ଆଣି ନେଇଯିବ ?

ଦିବାକର କହିଲା- ନାଇଁ, ଦୁଇଥରରେ ବୋହି ନେଇଯିବି ଯେ ।

ଦିବାକର ଦ୍ୱିତୀୟ ଥର ସମାନ ଧରି ବସ୍‌ଷ୍ଟାଣ୍ଡ ଯିବାବେଳେ ସାଆନ୍ତାଣୀ କହିଲେ- ପୁତୁରାକୁ ଗାଡ଼ିରେ ଚଢ଼ାଇଦେବା ପରେ ଆସି ଏଠି ଭୋଜନ କରିଦେଇ ଯିବ ଚଷାଘର ଭାଇ ! ଆଉ, ଏଇଟିକୁ ରଖ । ପୁତୁରାକୁ ଦେଇଦେବ ।

ଦିବାକର ଦେଖିଲା ସୁନ୍ଦର ମଖମଲୀ କନାରେ ବନ୍ଧା ହୋଇଥିବା ଗୋଟିଏ ପୁଟୁଳି ସାଆନ୍ତାଣୀ ବଢ଼ାଇ ଦେଇଛନ୍ତି ତା' ଆଡ଼କୁ । ପୁଟୁଳିଟିକୁ ଧରି ସେ ଏକମୁହାଁ ଚାଲିଲା ବସ୍‌ଷ୍ଟାଣ୍ଡ ଆଡ଼କୁ ।

ପୁଟୁଳିଟିକୁ ପ୍ରତାପ ହାତକୁ ବଢ଼ାଇ ଦେଇ ଦିବାକର କହିଲା- ନେ, ସାଆନ୍ତାଣୀ ଦେଇଛନ୍ତି ।

ଗାଡ଼ି ଆସିବାକୁ ଡେରି ଥିଲା । ପ୍ରତାପ ଖୋଲିଦେଲା ସେ ପୁଟୁଳି । ମଖମଲୀ କନା ଭିତରେ ଥିଲା ଗୋଟିଏ ଶାଢ଼ି, ଡଜନେ ଚୁଡ଼ି, ଗୋଟିଏ ଛୋଟ ସିନ୍ଦୂର ଡବା ଓ ଚାରିଚଉତା କାଗଜ ଖଣ୍ଡେ । ପ୍ରତାପ କାଗଜଟି ଖୋଲି ଦେଖିଲା ସେଥିରେ ଲେଖାଅଛି- ଆମ ବୋହୂଟିର ହାତର କାଚ ବଜ୍ର ହେଉ । ତୁମଠାରୁ ଏଇଭଳି ଏକନିଷ୍ଠ ସ୍ନେହପ୍ରୀତି ସେ ସାରାଜୀବନ ପାଉଥାଉ ।

ଚିଠିଟି ପଢ଼ିସାରି ପ୍ରତାପ ଗଭୀର ଆବେଗରେ କାନ୍ଦି ପକାଇଲା ।



# ବିଉ

## କଇଳାଶ ପଟନାୟକ

ସୁଲତାନ ମିଆଁ ଲମ୍ୱ ହୋଇ ଶୋଇଚି ରାସ୍ତାରେ । ବାଁ ଗୋଡଟା ମୋଡି ହୋଇ ଯାଇଚି । ରକ୍ତ, ଦାଢ଼ି ଆଉ ଡାହାଣ ପାପୁଲି ଭିତରୁ ମୁହଁଟା ବାରିପାରିବା କଠିନ । ଘଟଣାଟି ସ୍ୱଚକ୍ଷୁରେ ନ ଦେଖିଥିଲେ କିମ୍ବା ତା' ପାଖରେ ନିଜର ଟିକି ପଲିଥିନ୍ ପ୍ୟାକେଟ୍ ଭର୍ତ୍ତି ରୁଟି ଟୁକୁରାଗୁଡିକ ବିଛେଇ ହେଇ ପଡିନଥିଲେ ଶୁକ୍‌ଲା ନିଜେ ବି ଜମାରୁ ଜାଣିପାରି ନଥାନ୍ତା, ସେ ଶବ ସୁଲତାନ ମିଆଁର ବୋଲି ।

ବଡ ବଜାରର ଗୋଟିଏ ସଉଦା ଦୋକାନ ତଳଟା ଥିଲା ଶୁକ୍‌ଲାର ଶୋଇବା ଆସ୍ଥାନ । ସେଇ କାଠ କ୍ୟାବିନ୍ ତଳର ସନ୍ତସନ୍ତିଆ ମାଟି ଉପରେ ରାତି ଶୋଇପଡି କ୍ୟାବିନ୍ ଚଟାଣର କାଠପଟା ଯୋଡେଇ ଫାଙ୍କରେ ସାଇକେଲ୍ ସ୍ପୋକ୍ ଖଣ୍ଡେ ଗେଞ୍ଜି ଗେଞ୍ଜି ଟିକେ ଟିକେ କୋଉଦିନ ଡାଲି, କୋଉଦିନ ମଇଦା, ଅଟା, ଚାଉଳ ପୋଷେ ଅଧେ ଯୋଗାଡ କରି ନେଉଥିଲା । ସାରାଦିନର ଭିକମଗା ରୋଜଗାର ଆଉ ରାତିର ସେ ଗୁପ୍ତ ସଂଗ୍ରହକୁ ଏକାଠି କରିଦେଲେ ଖାଇବା ଚିନ୍ତା ତା'ର ରହୁ ନଥିଲା । ଅବଶ୍ୟ ଭିକ ମାଗିବାରେ ବି ପ୍ରତିଦ୍ୱନ୍ଦ୍ୱୀ ଅନେକ । ତଥାପି କବଚ ହେଇଚି ତା' ହାତର ସେ ଭୟଙ୍କରିଆ ପୂଜ ଦଲଦଲ ଘା'ଖଣ୍ଡକ । ସେଇଟାକୁ ଦେଖିଲା ମାତ୍ରେ ଲୋକଙ୍କ କରୁଣା ଉଚ୍ଛୁଳି ପଡେ । ଷ୍ଟାଣ୍ଡରୋଡ୍‌ରୁ ବଡବଜାର ହଉଚି ତା' ଏରିଆ, ସୁଲତାନ ମିଆଁ ବି ସେଇମିତି ଜଣେ । ସେ'ବି ଶୋଉଥିଲା ଆଉ ଗୋଟିଏ ସଉଦା କ୍ୟାବିନ୍ ତଳେ । ଦିନେ ଶୁକ୍‌ଲାର ଖାଦ୍ୟ ସଂଗ୍ରହର ଗୋପନ ରହସ୍ୟ ଉଦ୍‌ଘାଟନ କରି ନିଜେ ଶୋଉଥିବା କ୍ୟାବିନ୍‌ରେ ପ୍ରୟୋଗ କଲା । ଫଳହେଲା ଏତିକି, ଦୋକାନର ଚାକରଟିଏ, ଯିଏ ଦୋକାନରେ ରାତି ଶୁଏ ଉଠି ପଡିଲା । କ'ଣଟେ କାମୁଡିଲା ଭାବି ଓ ଦୁଇ କାଠପଟା ଯୋଡେଇ ମଝିରେ ହାଇଜମ୍ପଲିପ୍ତ ସାଇକେଲ୍ ସ୍ପୋକ୍‌କୁ ଆବିଷ୍କାର କଲା । ସୁଲତାନ ମିଆଁ ତା' ପରଦିନଠୁ ହେଲା ନିରାଶ୍ରୟ । ତଥାପି ବଡବଜାର ଛାଡି ଗଲାନି କୁଆଡେ । କୁଆଡେ ବା ଯିବ ସବୁଠିତ ନୂଆ ଲୋକ, ଦେଖିଲା ମାତ୍ରେ ଦୂର୍ ଦୂର୍ ମାର୍ ମାର୍ ।

ବେଳେ ବେଳେ ଶୁକ୍‌ଲା ପାଖକୁ ଆସେ ସୁଲ୍‌ତାନ ମିଆଁ । ତା'ର ଭୋକ ଶୁଖିଲା ଆଖିରେ ଆଉ ପୂର୍ବର ତେଜ ନଥିଲା । ଶୁକ୍‌ଲା ତାକୁ ଦେଖିଲାମାତ୍ରେ ତଡି ଦିଏ । ଶଳା ଖାଇବାକୁ ମାଗିବ, ଯେମିତି ରଖିଯାଇଚି ଶୁକ୍‌ଲା ପାଖରେ କୁବେର ସମ୍ପତ୍ତି । ବୁଢାଟା ଶେଷବେଳକୁ ଆଉ ଚାଲବୁଲ କରିପାରୁ ନଥିଲା । ଶୋଇବାତ ଦୂରର କଥା, ଯା ଦୋକାନ ବାରଣ୍ଡା, ତା' ଦୋକାନ ତଳ ହେଉ ମାଡ ଗୋଇଠା ଖାଇ ରାତି କଟାଏ । ସୁଲତାନ ମିଆଁ ସିନା ବୁଢା ହେଇ ଯାଇଥିଲା, କତାଦଉଡି ଭଳିଆ ତା'ର ରୋଗା ଆଉ ଚେମେଡିଆ ଦେହ ଥିଲା- କିନ୍ତୁ ଶୁକ୍‌ଲା ପରି ତ ନ ଥିଲା ସେ ଭୟଙ୍କରିଆ ପୂଜ ଦଲଦଲ ଘା ମନ୍ଦାକ । ଭିକ ପାଇବା ତା' ପକ୍ଷେ ଭାରି କଠିନ ହେଇପଡୁଥିଲା । ଚିହ୍ନା ଜଣା ଦୋକାନୀମାନଙ୍କର ଛୋଟ ମୋଟ କାମ କରିଦେଇ କୌଣସି ମତେ ଚଳୁଥିଲା ସେ । ହେଲେ ପେଟ ପୂରୁ ନଥିଲା, ମନର ସାଧ ମେଣ୍ଟୁ ନଥିଲା, କି ଆଖିର ନିଦ ସରୁନଥିଲା । ଧୀରେ

ଧୀରେ ବଡବଜାର ସଉଦା ଦୋକାନୀମାନଙ୍କ ପାଖରେ ସୁଲତାନ ମିଆଁ ଆତଙ୍କ ହେଇ ଠିଆହେଲା । କେହି କହିଚି ଯଦି, ଯା'ତ ମିଆଁ ଚା ଦିଟା ଅର୍ଡର ଦେଇଆ । ମିଆଁ ନିଜେ କପେ ମଧ ପକେଇ ଦେଇ ଆସିଲାଣି ଦୋକାନୀଟା ନାଁରେ । କେହି ଯଦି କହିବ ଯା ବାଲ୍‌ତିଟା ନେଇ ପାଣି ଆଣିଦେ- ବାଲ୍‌ତି ବିକ୍ରୀ ସରିଥିବ କବାଡି ପାଖରେ, ମିଆଁ ଖାଇ ସାରିଥିବ ରୁଟି ଆଉ ଗୋସ । ତା'ପର ସବୁ ଘଟଣା ହେଇଗଲା ସଂକ୍ଷିପ୍ତ ଆଉ ସ୍ୱାଭାବିକ । ମିଆଁ ଆଶ୍ରୟ ହରେଇ ଥିଲା, ଏବେ ହରେଇଲା ବିଶ୍ୱାସ ଆଉ କାମ । ଗତକାଲି ଆସିଥିଲା ଶୁକ୍‌ଲା ପାଖକୁ । ଖୁବ୍ ମାଗୁଥିଲା କିଛି ଖାଇବାକୁ ଦବାକୁ । ମନା କରିଦେଲା ସେ ରୋକ୍‌ଠୋକ୍ । ତା'ପରେ ବଡ ବିକଳ ହେଇ କହିଥିଲା ରାତିଟା ଶୋଇବ ଶୁକ୍‌ଲା ପାଖରେ । ଦୟାକଲା ଶୁକ୍‌ଲା । ରାତିଟିଏ ପାଇଁ ଆଶ୍ରା ଦବ । ନିଜର ସ୍ୱୀକୃତି ଦେଇ ଅନୁଭବ କଲା ସେ ନିଜକୁ ବଡ ଉଦାର ଉଦାର । ନିଜ ଭିତରେ ନିଜେ ପୁଲକିତ ହୋଇ ଉଠିଥିଲା, ହେଇଥିଲା ଗୌରବାନ୍ୱିତ ।

ନିଦ ଭାଙ୍ଗିଲାବେଳକୁ ସକାଳ କେତେ ହେଲାଣି । ବଡବଜାର ଗହଳିଆ ହେଇଆସୁଚି । ଏବେ ତା'ର ଉଠିବା ଉଚିତ୍ । ହଠାତ୍ ଦେଖିଲା ସୁଲତାନ ମିଆଁ ନାଇଁ । ମନକୁ ପାପ ଛୁଇଁଲା, ଛାତିରେ ଛନକା ପଶିଲା, ଅଣ୍ଡାଳି ପକାଇଲା ସର୍ବତ୍ର । ମଣିଲା ତା' ନିଜର ସର୍ବସ୍ୱ ଧରି ବୁଢା ଚମ୍ପଟ । ଦୌଡିଲା ଏକା ରାହାକେ, ଖେଦି ପକାଇଲା ସାରା ବଡବଜାର ମୁହୂର୍ତ୍ତକେ । ଦେଖିଲା ଠାଏ ପରମ ନିଶ୍ଚିନ୍ତରେ ବୁଢା ବସି ବାଁ ହାତରେ ଧରିଚି ଗୋଟେ ଟିକି ପଲିଥିନ୍ ପ୍ୟାକେଟ୍, ଟୁକୁରା ଟୁକୁରା ଶୁଖିଲା ରୁଟି ଭର୍ତ୍ତି ହେଇଚି । ଡାହାଣ ହାତରେ ଧରି ଖାଇବାକୁ ଯାଉଚି ଦେଖିଲା କିଳିକିଳା ରଡିକରି ଦୌଡି ଆସୁଚି ଶୁକ୍‌ଲା । ଶୁକ୍‌ଲାର ସର୍ବସ୍ୱ ସେଇ ରୁଟି ଖଣ୍ଡ ଭର୍ତ୍ତି ଟିକି ପଲିଥିନ୍ ପ୍ୟାକେଟ୍‌ଟି ପ୍ରାଣଠୁ ପ୍ରିୟ କରି ଜାବୁଡି ଧରି ସୁଲତାନ ମିଆଁ ବି ଦୌଡିଲା ଆତ୍ମରକ୍ଷା ଠାଣିରେ । ମହାତ୍ମାଗାନ୍ଧୀ ରୋଡର ଏପାଖରୁ ସେପାଖକୁ ଦୌଡି ଯାଇ ପାରିଲେ... ଆଃ, ଶୁକ୍‌ଲା ଖୁବ୍ ଜୋର୍, ଚିତ୍କାର କରି ଉଠିଲା । ...ସୁଲତାନ ମିଆଁ ବାଡେଇ ହେଇ ଯାଇଚି ଚଳନ୍ତା ଟ୍ୟାକ୍‌ସିଟିଏରେ । ବିଛେଇ ହେଇଯାଇଚି ଶୁକ୍‌ଲାର ସର୍ବସ୍ୱ ତା' ଚାରିପଟେ ।

ମୁହୂର୍ତ୍ତକେ ସଜେଇ ଦେଇଗଲା ପରିଚିତ ଦୃଶ୍ୟଟିଏ । ରାସ୍ତାମଝିରେ ଶୁଅନ୍ତା ସୁଲତାନ ମିଆଁ, ତାକୁ ଘେରି କିଛି ଉତ୍ସୁକ ଓ କିଛି ନିରାସକ୍ତ ଦୃଷ୍ଟି, ସର୍ବୋପରି ଟ୍ରାଫିକ୍ ଜାମ୍ । ରାସ୍ତାର ସେଇ ଖଣ୍ଡକୁ ଅନେଇଥିଲା ଶୁକ୍‌ଲା ଆକୁଳ ଭାବେ ଆହା, ସୁଲତାନ ମିଆଁଠୁ ଶେଷ ପର୍ଯ୍ୟନ୍ତ ଛଡେଇ ଆଣି ପାରିଲାନି ତା'ର ସମ୍ପତ୍ତି । ବୁଣି ହେଇ ସଜେଇ ଦେଇଛି ବୁଢାକୁ ରୁଟିର ଟୁକୁରା ସବୁ । ମନେ ହେଉଚି ରୁଟିର ଶଯ୍ୟାରେ ଶୋଇ ସୁଲତାନ ମିଆଁ କ୍ଷୁଧାକୁ କରିଦେଇଚି ପରାହତ । ପୋଲିସ ଗାଡି ଆସିଗଲାଣି । ଲୋକ ଗହଳି ପତଳା ହେଲାଣି । ଶୁକ୍‌ଲା ଅନୁଭବ କରୁଥିଲା କ୍ଷୁଧା । ସାରା ଦିନର କାମ ପୂର୍ବରୁ, ଅଭିନୟ ପୂର୍ବରୁ କିଛି ଖାଦ୍ୟ ! ରାସ୍ତାର କାଦୁଅ ପିଚୁ ଉପରେ ସଜେଇ ହେଇଯାଇଚି ଟୁକୁରା ଟୁକୁରା ତା'ର ରୁଟି ସବୁ । ତା'ର ରୁଟି, ସାଜିଚି ସୁଲତାନ ମିଆଁ । ଶୁକ୍‌ଲାର ଆଖି ସ୍ଥିର ହେଇ ରହିଯାଇଥିଲା ଲୋଚା କୋଚା ରକ୍ତଧୁଆ ଟିକି ପଲିଥିନ୍ ପ୍ୟାକେଟ୍ ଓ ବିଞ୍ଚିହେଇ ପଡିଥିବା ତା'ର ସମ୍ପତ୍ତି ସବୁରେ ।

କେତେ କଷ୍ଟ ନକରିଚି ସିଏ, କେତେ କୂଟ ନକରିଚି ଏଇ ରୁଟି ଟୁକୁରା କେଇଖଣ୍ଡ ଯୋଗାଡ କରିବାରେ । ସେଥର ଆସୁଥିଲା ଷ୍ଟ୍ରାଣ୍ଡରୋଡରୁ ବଡବଜାର ଆଡକୁ । ସଂଧ୍ୟା ସେତେବେଳକୁ ହେଇ ସାରିଚି । ହାଓଡା ବ୍ରିଜ୍‌ର ଏମୁଣ୍ଡରେ ହଠାତ୍ ଦେଖିଲା ଏକ ଅଭିନବ ଦୃଶ୍ୟ । ଚଉଦ ପନ୍ଦର ବର୍ଷର ଟୋକାଟେ, ହେଇଚି ଧୋ ନଙ୍ଗଳା । ପିନ୍ଧିଚି ଜାମାଖଣ୍ଡ ଯେ,

କଲରର କି ବୋତାମ ନାହିଁ । ଧୂଳି, ମଇଳାରେ ଜାମା କୋଟଟ କଳା ଧରିଯାଇଚି । ହାତ, ପିଠି, ଅଣ୍ଟାପାଖରୁ ଦରକି ଯାଇଛି ସମଗ୍ର ଜାମା । ପିଲାଟାର ଦେହ ମୁଣ୍ଡ ବି ଜାମାର ରଙ୍ଗ ଧରିଚି । ଠିଆ ହେଇଚି ଏକ ଲୟରେ । ସାରା ଦେହର ଚମଡା ତା'ର କୁଣ୍ଡେଇ ହେଇ ହେଇ ଛାଡିଗଲା ପରି ହେଇଚି । ମନ୍ଦାକୁମନ୍ଦା ନାଲି ପଡି ଯାଇଚି ଓ ପ୍ରାୟ ସାରା ଦେହରୁ ଝରୁଚି ରକ୍ତ ଅନବରତ । ଗୋଟିଏ ହାତରେ ପରିପୁଷ୍ଟ ଗହମ ରଙ୍ଗିଆ ଲୋଭନୀୟ ରୁଟି ଖଣ୍ଡେ । ଆର ହାତରେ ନିର୍ବିକାର ଭାବେ ଧରିଚି ଯୌନାଙ୍ଗକୁ ଆଉ ଖେଳୁଚି । ଶୁକ୍‌ଲା ଅଟକିଗଲା ମୁହୂର୍ତ୍ତ କେଇଟି । ପିଲାକୁ ଦେଖିଲା, ନା ପିଲାକୁ ନୁହେଁ, ଦେଖିଥିଲା ତା' ହାତର ପରିପୁଷ୍ଟ ଗହମରଙ୍ଗିଆ ଲୋଭନୀୟ ରୁଟିଖଣ୍ଡକୁ । ରୁଟିକୁ ଯେତେ ଦେଖୁଥିଲା ତା' ମୁଣ୍ଡର ନିଆଁ ସେତେ ଚହଟି ଉଠୁଥିଲା । ଧକଧକ କରୁଥିଲା ଛାତି । ପିଲାଟି ପାଖକୁ ଗଲା ସେ । ଟିକେ ଠିଆ ହେଲା ପାଖରେ, ଆତ୍ମୀୟ ଭାବେ । ପିଲାଟି ଚାହିଁଲା ଥରେ ତାକୁ । ଯୌନାଙ୍ଗର ଖେଳ ବନ୍ଦ ହେଲା । ଆଖିରେ ଫୁଟିଲା ଜିଜ୍ଞାସା, ଧୀର ଭାବେ ଶୁକ୍‌ଲା ପଚାରିଲା କୋଉଠୁ ଆସିଚୁ ? ଡାଇମଣ୍ଡ ହାରବାର- ଉତ୍ତର ଦେଲା ପିଲାଟି । କାହିଁକି ପଳେଇ ଆସିଲୁ ? ରୋଜଗାର ହେଲା ନାହିଁ । ହଃ, ଏଠି ହବ ଭାବିଚୁ ? ଶୁକ୍‌ଲା ଆଖିରେ କୌତୁକ । ଏ ବ୍ରିଜ୍ ଉପରେ ମଣିଷଠୁ ବେଶୀ ଗାଡି ଯାତାୟତ କରେ । ତୁ ଫୁଟ୍‌ପାଥରେ ବସିଲେ ପଇସା ଟିଏବି ପାଇବୁନି, ଚାହାଁ ଅନ୍ୟ ଜାଗା ଖୋଜ । ପିଲାଟି ଆଖିରେ ଆତଙ୍କ । ବସି ପଡିଥିଲେ ସେତେବେଳକୁ ଦିହେଁ । ତମେ କୋଉଠି ରୁହ ? ଶୁକ୍‌ଲାର ରୁଢିଆ ବୟସ୍କ ଦୃଷ୍ଟ ମୁହଁ ଆଉ ହାଫ୍‌ପେଣ୍ଟ, ଗେଞ୍ଜିର ତେଜରେ ପିଲାଟି 'ତୁମେ' ସମ୍ବୋଧନ କରି ପକେଇଲା । ତୁମେ ? ଶୁକ୍‌ଲା ମନେ ମନେ ପୁଲକିତ ହେଲା । ମୁଁ ମୋର ଜାଗା ଅଲଗା । ଧନ୍ଦା ଅଲଗା ଗୁରୁତ୍ୱହୀନ ଭାବେ କଥାଟା କହିଦେଇ ଶୁକ୍‌ଲା ତା'ର ସୁସ୍ବାତ ହାପ୍‌ପ୍ୟାଣ୍ଟ ପକେଟରେ ହାତ ପୁରାଇ ବାହାର କଲା ବଡ ଜର୍ଦ୍ଦା ଡବାଟେ । ଭର୍ତ୍ତି ହୋଇଚି ତା' ଭିତରେ ଖଣ୍ଡିଆ ବିଡି ଆଉ ଅଧଟଣା ସିଗାରେଟ୍ ଦିଆସିଲି ବି । ପୋଡାମୁହଁ ବିଡିଟେ ବଢେଇଦେଲା ପିଲାଟିକୁ ଆଉ ନିଜେ ଖଣ୍ଡେ ଓଠରେ ଥାପିଲା । ଦିଆସିଲି ଦି ଚାର ଘଷାରେ ଜଳେଇ ପିଲାଟିକୁ ବଢଉ ବଢଉ ପିଲାଟି ଯେମିତି ରୁଟି ଖଣ୍ଡକ ତଳେ ରଖି ଦିଆସିଲି କାଠିର ନିଆଁକୁ ହୁଗୁଳିର ଦୁଷ୍ଟ ପବନ ପାଖରୁ ବଞ୍ଚେଇବାକୁ ହାତ ଦି'ଟି ତା' ଚାରିଆଡେ ଆଞ୍ଜୁଳା ପ୍ରାୟ କରିଚି- ଶୁକ୍‌ଲା ଝଡ ବେଗରେ ରୁଟିଖଣ୍ଡକ ହାତେଇ ମୁହୂର୍ତ୍ତକେ ଅଦୃଶ୍ୟ ।

ସେଇ ରୁଟିର ଟୁକୁରା ଏସବୁ । ଭବିଷ୍ୟତରେ ଖାଇବ ବୋଲି ରଖିଥିଲା । ସୁଲତାନ ମିଆଁ ଏବେ ଉଠ ଉଠ ହଉଚି । ସରକାରୀ ଲୋକ ଉଠେଇ ନବାକୁ ତତ୍ପର ହଉଚନ୍ତି । ଅଫିସ୍ ଟାଇମ୍, ରାସ୍ତାରେ ଭିଡ ବଢୁଚି ଦ୍ରୁତଗତିରେ । ଲୋକଟାକୁ ଜଲ୍‌ଦି ଉଠେଇ ନବାକୁ ହେବ । ଆଉ ରୁଟିର ଟୁକୁରାଗୁଡାକ ! ପୁଣିଥରେ ଶୁକ୍‌ଲାର ଆଖି ଦୌଡିଗଲା ତା'ଉପରେ । କେତେ ଯତ୍ନରେ ପଲିଥିନ୍ ପ୍ୟାକେଟ୍‌ଟିରେ ରୁଟିକୁ ଖଣ୍ଡ ଖଣ୍ଡ ଛିଣ୍ଡେଇ ସାଇତି ରଖିଦେଇଥିଲା ସେ । ଭଲ ମନ୍ଦ ଦେଖି ଖାଇବ ବୋଲି । ତା' ସାଇତା ମାଣିକ ଏବେ ଲୋଟିଚି କାଦୁଅ ପିଚୁ ରାସ୍ତାରେ । ସେ ସବୁକୁ ଗାଡି ମଟର ଦଳିବା ପୂର୍ବରୁ ସେ ଯଦି ଆଣିପାରନ୍ତା !

ଭୋକଶୀତଳ ଶୁକ୍‌ଲାର ଛାତିରେ ଅଚାନକ ବିଜୁଳି ଚମକିଗଲା । ସାରାଦେହରେ ଖେଳିଗଲା କମ୍ପନ । ସୁଲତାନ ମିଆଁର ଶବ ଉଠି ସାରିଲାଣି ସେତେବେଳକୁ । ରାସ୍ତା ଉପରର କେଇ ମନ୍ଦା ରକ୍ତ ଆଉ ରୁଟି ଖଣ୍ଡମାନ ଅବଶିଷ୍ଟ ରହିଯାଇଥିଲା– ଯାହା ଶେଷ ପର୍ଯ୍ୟନ୍ତ ସୁଲତାନ ମିଆଁର ଉପସ୍ଥିତ ସୂଚିତ କରୁଥିଲା । ଶୁକ୍‌ଲାକୁ ସେତେବେଳେ ଭୀଷଣ ଭୋକ । ଭିକ ମାଗି କିଛି ପଇସା

ପାଇ ଖାଇବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ତର ସହିଲାନି । ପେଟ ଭିତରଟା ମନ୍ଥି ହେଇଯାଉଚି । ସାରା ଦେହ ହେଇଯାଉଚି ଅବଶ । ପାଟି ଫେଣେଇ ଆସୁଚି । ସେତିକିବେଳେ ହିଁ ବିଜୁଳି ଚମକି ଗଲା ଛାତିରେ, ସାରା ଦେହରେ ଖେଳିଗଲା କମ୍ପନ-ରୁଟି ଟୁକୁରାଗୁଡାକୁ ସାଉଁଟି ନବାକୁ ରାସ୍ତା ସେପଟରୁ ଚାଲି ଆସିଲେ ଚାରିପାଞ୍ଚଟି ଲଙ୍ଗଳା ପିଲା । କାଳିଆ କାଳିଆ- ଅପରଚ୍ଛନିଆ, ମାଗନ୍ତାଗୁଡାକ । ପ୍ରତିଯୋଗିତା କଲାପରି ଗାଡିସବୁର ଦ୍ରୁତ ଚଳନ, ଲୋକ ଗହଳି, ଟ୍ରାଫିକ୍ ନିୟମ ସବୁକୁ ଉପେକ୍ଷା କରି ଝାମ୍ପି ପଡିଲେ ରୁଟିଖଣ୍ଡକୁ ଗୋଟେଇ ନବାକୁ । ଶାଲେ ଶୁଅରକେ ବଚ୍ଚେ... ଉଦଗାରୀ ପକେଇ ବିପରୀତ ଦିଗ ରାସ୍ତାରୁ ସେମାନଙ୍କ ଆଡକୁ ମାଡିଗଲା ଶୁକ୍‌ଲା । ଟ୍ରାମ୍‌ଟିଏର ନିଶ୍ଚିତ ଧକ୍‌କାକୁ ସତର୍କତା ନୁହେଁ ସୌଭାଗ୍ୟତଃ ଏଡାଇ ଦେଇ ପହଞ୍ଚିଗଲା ମାଗନ୍ତା ପିଲାଙ୍କ ଗହଣରେ ।

ତା'ରି ରୁଟିଖଣ୍ଡସବୁ ପଡିଚି ବିଞ୍ଚି ହେଇ । ସୁଲତାନ ମିଆଁ ହାତରୁ ଏସବୁ ଛଡେଇ ଆଣିପାରି ନଥିଲା ହେଲେ ଏମାନଙ୍କ ହାତରୁ ? ତା'ର ହାପ୍‌ପେଣ୍ଟ ଗେଞ୍ଜି ପିନ୍ଧା ଦେହ ଆଉ ରୁଜିଆ ମୁହଁରେ ଚରିଗଲା କ୍ରୋଧ । ମୁଣ୍ଡରେ ଖେଳିଗଲା ଅଧିକାର ଜାହିର କରିବାକୁ ଜିଦ୍ । ସୁଲତାନ ମିଆଁ ଉପରର ରାଗ ଶୁଝେଇଦେଲା ଏଇ ପିଲାଙ୍କ ଉପରେ । କାହାକୁ ବିଧେ, କାହାକୁ ଧକ୍‌କାଏରେ ଛିନ୍ନଛତ୍ର କରିଦେଇ ତୃପ୍ତିର ନିଶ୍ୱାସଟିଏ ନେଲା । ସମଗ୍ର ଘଟଣା ଘଟିଗଲା ସେକେଣ୍ଡ କେଇଟି ଭିତରେ । ହାତ ବଢେଇଚି ଠିକ୍ ରୁଟିଖଣ୍ଡଗୁଡିକୁ ସାଉଁଟି ନବାକୁ ହଠାତ୍ ମରଣାନ୍ତକ ଆଃ... ଚିତ୍କାର କରି ଶୁକ୍‌ଲା ଘୁରି ଛିଟିକି ପଡିଲା ଫୁଟ୍‌ପାଥ ଉପରକୁ । ତା'ର ବଢାଇଥିବା ହାତରେ ଥିଲା ସେଇ ଭୟଙ୍କରିଆ ପୂଜା ଦଲଦଲ ଘା'ମନ୍ଦାକ । ତା' ରୋଜଗାର ଯୋଗ୍ୟତାର ପ୍ରମାଣ ପତ୍ର । ତା'ରି ଉପରେ କଷି କରି ପାହାରେ ଥୋଇଚି ଟ୍ରାଫିକ ପୋଲିସ ଜଣକ, ମୃତ୍ୟୁପ୍ରାୟ ଆସୁଥିବା ଏକ ବସ୍ ଚାପାରୁ ତାକୁ ରକ୍ଷା କରିବାକୁ । ଯନ୍ତ୍ରଣା ରକ୍ତ ହେଇ ଝରଝର ବୋହି ପଡି ଭୋକ ଶୁଖିଲା ଶୁକ୍‌ଲାର ପେଟକୁ ଆହୁରି ମନ୍ଥି ଦେଲାବେଳେ, ଆଖିରେ ଅନ୍ଧାର ଘନେଇ ଆସିଲାବେଳେ ସେ ଦେଖିଲା ତା'ର ସମ୍ପତ୍ତି, ତା'ର ସ୍ୱପ୍ନ, ତା'ର ରୁଟିଖଣ୍ଡଗୁଡିକର ଉପରେ ମହାତ୍ମାଗାନ୍ଧୀ ରୋଡ୍‌ର ସବୁଯାକ ବସ୍, ଟ୍ୟାକ୍‌ସି, କାର୍ ମାଡି ଯାଉଛନ୍ତି । ଟ୍ରାଫିକ୍ ପୋଲିସ ଜଣକ ତାକୁ ଲକ୍ଷ୍ୟ କରୁଚି । ଶୁକ୍‌ଲାର ମନ ହେଲା ଟ୍ରାଫିକ୍ ପୋଲିସ ଜଣକ ଯେମିତି ଚଉଦ ପନ୍ଦର ବର୍ଷର ଟୋକାଟେ, ଧୋ ନଙ୍ଗଳା ହେଇଚି । ପିନ୍ଧିଚି ଜାମା ଖଣ୍ଡେ ଯେ କଲର ବୋତାମ ନାଇଁ... । ସାରାଦେହର ଚମଡା ତା'ର କୁଣ୍ଡେଇ ହେଇ ହେଇ ଛାଡିଗଲା ପରି ହେଇଚି, ମନ୍ଦାକୁ ମନ୍ଦା ନାଲି ପଡିଯାଇଚି, ଓ ପ୍ରାୟ ସାରାଦେହରୁ ଝରୁଚି ରକ୍ତ ଅନବରତ । ହାତରେ ଧରିଚି ରାସ୍ତାରେ ପଡିଥିବା ପରିପୁଷ୍ଟ ଗହମ ରଙ୍ଗିଆ ରୁଟିଖଣ୍ଡଗୁଡାକ ଓ ଓଠରେ ଶୁକ୍‌ଲା ପାଇଁ ଏକ ଦୟାମୟ ସ୍ମିତ ।



# ଲଳିତା

## ପ୍ରକାଶ ମହାପାତ୍ର

ବସ୍ ଝର୍କା ଦେଇ ବାହାରକୁ ଅନେଇଚି ପରୀକଥାର ଜେମା । ଚଳନ୍ତା ବସ୍‌ର ବିପରୀତମୁଖୀ ଅପସୃୟମାଣ ଜଂଗଲ, ରାସ୍ତା, ଦେହାତି ମଣିଷ, ଗାଈପଲ, ଟେଲିଫୋନ୍ ଖୁଂଟି । ପୁଣି ଠାଏ ଠାଏ ବସ୍ ଅଟକିଲା ବେଳେ ରିକ୍‌ସାବାଲା ଓ କୁଲିଂକ ଗହଳି, ଫେରିବାଲାର ଚାଇଁଆ ହାଂକ, ଭିକାରି ପିଲାର- ''ଆଁ ନେରଁକ୍ଷଁ ଇଁନଂକୁ ରଁଖଁପଂଁକଁଇଁ ମୁଖୁଁଅଁ...''

ଏସବୁ କିଛି ଯେମିତି ଦୃଶ୍ୟ ଓ ଶବ୍ଦର ଏକ ଅଦ୍‌ଭୁତ ସଂଯୋଜନା । 'କିଂତୁ ଚାହିଁଥିଲେ ଏ ପୃଥିବୀ କ'ଣ ଜେମା ପାଇଁ ଟିକେ ଅଧିକ ସୁଂଦର ହୋଇ ପାରଂତାନି ।' ନରେଂଦ୍ର ଭାବିବ ଓ ପରେ ପରେ ଅନୁଭବ କରିବ ଯେ ସବୁ ଯେମିତି ମିଛ । ସେ ହୁଏତ ଏ ଭିତରେ ଜେମାର ଆଖିରେ ପୃଥିବୀକୁ ଦେଖୁଥିଲା । ନହେଲେ ଏ ଜରାଗ୍ରସ୍ତ ପୃଥିବୀରେ ଅଛି କ'ଣ ! ଜେମାର ମୂର୍ତ୍ତିଭଳି ନିସ୍ପଂଦ ଚେହେରାରୁ ଯାହା ଲାଗୁଛି ଜେମା ବୋଧେ ଆମର ଏ ନିତ୍ୟ ପୃଥିବୀରେ ନାହିଁ । ଆଖିର ମେଲା ଝର୍କା ଦେଇ ଫେରାର୍ କେଉଁ କଳ୍ପଲୋକକୁ ।

କଳ୍ପଲୋକ କଥା ଭାବୁଭାବୁ କିଂଚିତ୍ ଅସହିଷ୍ଣୁ ହୋଇପଡ଼ିବ ନରେଂଦ୍ର । ଟିକେ ଛୁଇଁ ଦେଇ ଜେମାକୁ ଚମକେଇ ଦେଲେ କେମିତି ହୁଅଂତା ? କଥାଟା ମନକୁ ଆସୁ ଆସୁ ସେ ସଂକୁଚିତ ହୋଇପଡ଼ିବ ଓ ମନେ ମନେ କହିବ ଯେ- ହେତ୍ । ଏତେ ଦୂରରୁ କ'ଣ ଆମ ହାତ ପାଇବ ନା ତମେ ଧରାଦେବ ?

କିଂତୁ ଜେମା ଯଦି କଳ୍ପଲୋକରୁ ନ ଫେରେ ! ଆସୁ ଆସୁ ବାଟ ଭୁଲିଗଲା ଯଦି ? ନରେଂଦ୍ର ମନେ ମନେ ରୂପକଥାର ନାୟକ ଭଳି ଏକ ଦୁଃସାହସିକ ଅଭିଯାନ ପାଇଁ ନିଜକୁ ପ୍ରସ୍ତୁତ କରୁ କରୁ ହଠାତ୍ ଅଟକି ଯିବ । 'ନାଃ-ସଂଭବ ନୁହେଁ । ଖାଲି ଭାବି ଦେଲେ କି ହୁଏ ? ଏବକୁ ଢେର୍ ବଦଳି ଗଲାଣି ସମୟ । ସ୍ନାୟୁପୁଂଜ ଶିଥିଳ । ଉପଦ୍ରବୀ ମନ କେବେଠୁଁ ନିର୍ବାସିତ କେଉଁ ଅଜଣା ଇଲାକାକୁ । ଶିଥିଳ ରକ୍ତ କୋଉଠି ଦୁଃସାହସୀ ହେଲାଣି ନା ହବ ? ଅଭ୍ୟାସରୁ ସେମିତି ଭାବି ହୋଇଯାଏ ।'

କିଂତୁ ୱାନ୍‌ସ ଅପନ୍ ଏ ଟାଇମ୍ ଦେଆର୍ ୱାଜ୍ ଏ କିଂଗ୍ । ଏବେ ବି ଖୋଜା ଖୋଜି କଲେ ଆଲିମାଳିରୁ ବାହାରିବ ରଂଗ ଛାଡ଼ି ଯାଇଥିବା ସୁନା ମୁକୁଟ । ଭୂଇଁ ତଳୁ ବାହାରିବ କଳଂକି ଲଗା ତଲୁଆର । ଡେଣା ଛିଡ଼ି ଯାଇଥିବା ପକ୍ଷହୀନ ଘୋଡ଼ା ମୁହଁ ମାଡ଼ି ପଡ଼ିଥିବ କୋଉ ଅଂଧାରୀ ଅସ୍ତାବଲରେ ଉଆସ ପାଚେରି କଡ଼େ । ପଡ଼ିଲେ ପଡ଼ିଥିବ ପାରିଷଦଂକ ଛିଂଡା ନାଗେରା ଯୋତାରୁ ପଟେ । ଧୂତ୍ ତାକୁ ନେଇ ଭାବିବାକୁ ନା ଅଛି ବେଳ ନା ମନ ? ନରେଂଦ୍ର ଜାଣିଛି ଜୀବନର ଅନେକ ବାସ୍ତବତା ଏମିତି ଅବଲୀଳା କ୍ରମେ କାହାଣୀ ପାଲଟିଯାଂତି । ସେ ସବୁ କାହାଣୀ ଜଂଜାଳମୟ ଜୀବନରେ ପ୍ରାୟ ଭୁଲି ହୋଇଯାଏ । ତଥାପି ମଧ୍ୟ ବେଳେ ବେଳେ ଶୁଭିଯାଏ ଗହଳିରେ ହଜି ଯାଉଥିବା ଅତୀତର ସ୍ୱର । ଠିକ୍ ନିଶୂନ୍ ରାତିରେ ଦୂର ବଂଶୀର ସ୍ୱରଭଳି । ଟିକେ ଅଧେ

ବିଚଳିତ କରେ ବି ! ସ୍ୱାଭାବିକ କଥା । ତଥାପି କେବେ କେମିତି କେଉଁ ଘଟଣା ଓ ଦୃଶ୍ୟରେ ନଦୀର ସ୍ରୋତ ମୋଡ଼ ବଦଳେଇ ପଛକୁ ଫେରିଲେ ନରେଂଦ୍ର ଚମକି ପଡ଼ି ନିଜକୁ ସଂଭାଳେ ! ନିଜ ବୋକାମିରେ ନିଜେ ହସି ଦେଇ ନିଜକୁ ଟିକଲ କରେ । 'ଏଇତ ଗଲାନି ।'

ଛାଡ଼ ଛାଡ଼, ଏତେ କଥାରୁ ମିଳିବ କ'ଣ ! ସେ ଏଇନା ଯାଉଛି ତା' ପିଇସୀ ଘରକୁ । ବଡଂବା ରଘୁନାଥପୁର । ପୁରୁଣା ଫୋମ୍‌ର ହ୍ୟାଂଡ଼୍‌ବ୍ୟାଗ୍ ଭିତରେ ପଶିଛି ତା' ପିଇସା ଝିଅ ଭଉଣୀର ଶାଢ଼ି, ଚୂଡ଼ି, ସିଂଦୂର । ବ୍ୟାଗ୍‌ର ସବାତଳକୁ ଅଛି ଜରି ପ୍ୟାକେଟ୍‌ରେ ସିଲ୍ କରାଯାଇଥିବା ଇଲିଶି ଶୁଖୁଆ । ତା' ଉପରେ ଦି' ଚାରିପ୍ରସ୍ଥ ଖବର କାଗଜ ଦେଇ ଯତ୍ନରେ ରଖାଯାଇଛି ତା'ର ହଳେ ପ୍ୟାଂଟ୍ ସାର୍ଟ, ଖିଅର ପାଉଚ୍, ଲୁଂଗି ଟାୱେଲ୍ । କବିତା ଖାତାଟିକୁ ବି ନେଇଛି । ଯା' ଛଡ଼ା ଆଉ କ'ଣ କ'ଣ ସବୁ ଆଳିମାଳି ପଶିଛି ତାହା ନରେଂଦ୍ରକୁ ଅଗୋଚର । ତେବେ ବ୍ୟାଗ୍‌ଟି ବେଶ୍ ପେଟୁଆ ଓ ଭାରୀ । ଆସିଲା ବେଳେ ବୋଉ ତାଗିଦ୍ କରି କହିଛି- ଦେଖ୍ ନାନୁ ! ବାୟାବାତୁଳା ହୋଇ ଯିବୁନି । ଠିଇକି ଗୋଡ଼ତଳକୁ କିନି ବେଏଗକୁ ରଖିବୁ ଓ ତୁହାକୁ ତୁହା ନଜର ପକେଇବୁ । ମନେପଡ଼ିଲା କ୍ଷଣି-ନରେଂଦ୍ର ବ୍ୟାଗ୍‌ଟି ଉପରେ ନଜର ପକେଇବ ଓ ଚମକି ପଡ଼ିବ । 'ଯେ କ'ଣ !'

ପାଖ ସିଟ୍‌ରେ ସେଇ ଭଦ୍ରଲୋକ । ପୁଚ୍‌ପୁଚ୍ ଶରୀର, ଚଂଦାମୁଂଡ, ଆଖିରେ କଜଳ । ଫିନ୍ ଫିନ୍ ପଂଜାବି ଓ ଶାଂତିପୁରୀ ଧୋତିକୁ ଗୋଡ଼ରେ ଉଡ୍‌ଲ୍ୟାଂଡ୍ ଫୁଲ୍-ସୁ । ସେଇ ଉଡ୍‌ଲ୍ୟାଂଡ୍ ଯୋତା ଦୁଇଟି ନରେଂଦ୍ରର ବ୍ୟାଗ୍ ଉପରେ ଆରାମ୍‌ରେ ଶୋଇଛଂତି । 'ଏକ୍‌ସକ୍ୟୁଜ୍ ମି'... କହି ନରେଂଦ୍ର ଚାପା ଚିତ୍କାରଟିଏ କରିବ । 'ଓଃ... ସରି...' କହି ଉଡ୍‌ଲ୍ୟାଂଡ୍‌ର ପାଦ ଆପଣା ଜାଗାକୁ ଫେରିଯିବେ । ସ୍ପର୍ଦ୍ଧିତ ଅହଂକାର ଟିକେ ଖୁସି ହେବ । ଆଧିପତ୍ୟ ଅଛି ତା' ହେଲେ । ହୁକୁମ୍ ଇସ୍ତେମାଲ୍‌ର ଆପଣା ଢଂଗଟି ବି ଲାଗିବ ଅଦ୍‌ଭୁତ । ଉଡ୍‌ଲ୍ୟାଂଡ୍‌ର ପାଦ କ'ଣ ମାମୁଲି ପାଦ ? ସେଇ ସ୍ପର୍ଦ୍ଧିତ ଦୃଷ୍ଟି ନେଇ ନରେଂଦ୍ର ଚାହିଁବ ଜେମା ଆଡ଼େ । କିଂତୁ ଜେମା କୋଉ ଅଛି ଯେ ?

ଶ୍ୟାମାଂଗୀ ହେଲେ ବି ଜେମା ସୁଂଦରୀ । ଗୋଲ୍ ମୁହଁ, ଲଂବା ବେଣୀ, ଶାମୁକା ଭଳି ଆଖି ଦିଇଟା ନିଥର । ମୁହଁ ଉପରେ ହଲର ହଲର କେରାଏ ସ୍ୱେଚ୍ଛାଚାରୀ କେଶ । ବସ୍ ଝର୍କା ସମେତ ଜେମାଂକୁ ଦେଖିଲେ ମନେ ହେଉଛି କାନ୍‌ଭାସ୍‌ର ଚିତ୍ରଟିଏ । କାନ ପାଖରେ ଗୁଣୁଗୁଣୁ ହେବେ ଉପେଂଦ୍ର ଭଂଜ ।

ଲେଖିଚି ଚିତ୍ର କବିଦ୍ୱ ଏଥିରେ
ଏ ବାଳା ସମାନ ନାହିଁ ପୃଥ୍ୱୀରେ ।

- 'ଶୁଣୁଚଟି...' ନରେଂଦ୍ର ଅନୁଚ୍ଚାରିତ ଢଂଗରେ କଥାଟି କହି ଅଦୃଶ୍ୟରେ ଜିଭ କାମୁଡ଼ିବ । ଛିଃ ଲାଜ କଥା । ତମେ କେଉଁଠି ଆମେ କୋଉଠି । ଯେତେ ଚେଷ୍ଟା କଲେ ବି ଆଉ କୋଉ ଗଜ ପାଲିଂକିରେ ଚଢ଼ି ହୁଏ ନା ଛତି ଚାମର ମୁଂଡେଇ ହୁଏ ? ସାମର୍ଥ୍ୟ କାହିଁ ? ପୁରୁଷ କାର କାହିଁ ? ସବୁ ଯାଇଛି ।

ତିନିଜଣିଆ ସିଟ୍‌ରେ ସେମାନେ ମାତ୍ର ଦି' ଜଣ- ସେ ଓ ସେଇ ମୋଟୁ ଭଦ୍ରଲୋକ । ସେ ବେଶ୍ ଆରାମ୍‌ରେ ବସି ପାନ ଖାଉଛଂତି । ଲକ୍ଷ୍ନୌ କାମକରା ପଂଜାବିର ବୋତାମ ଫିଟିଯାଇଛି- ଭିତରୁ ଚକ୍ ଚକ୍ କରୁଛି ସୁନା ଚେନ୍ । ଛକିମରା ପାଦର ଉଡ୍‌ଲ୍ୟାଂଡ ବେପରୁଆ ହଲୁଛଂତି ଟିଂଗ୍ ଟିଂଗ୍ । ଏଇ ମୁହୂର୍ତ୍ତକ ଆଗରୁ ଦେଖେଇଥିବା ଆଧିପତ୍ୟର ଆୟୁଷ ବା କେତେ ? ଏବେ

ତ ମନେ ହେଉଛି- ସେସବୁ କ୍ଷମତା ବା ଆଧିପତ୍ୟ ଯେମିତି ରାଜାର ନୁହେଁ ସିପେଇର । ସିପେଇ, ପହରାଦାର ଯେମିତି ପାଟିକରେ- ହୁସିଆର...

ଠିକ୍ କଥା । ପହରାଦାର କଥାଟା ବେଶ୍ ଲାଗୁଛି । ମନକୁ ପାଇଲା ଭଳି । ହେଇ ତ କଂଟିଲୋ ପାଖରୁ ଓହ୍ଲେଇଲା ପରେ ଡହଡହ ମହାନଦୀ ବାଲିରେ ଚାଲିବାକୁ ହେବ ତିନି ମାଇଲ୍ ଓ ତା' ପରେ ବିଲହୁଡ଼ାରେ ଦେଢ଼ ମାଇଲ୍ ଗଲା ପରେ ଯାଇ ପଡ଼ିବ ରଘୁନାଥପୁର ଶାସନ । ସେତିକି ରାସ୍ତା ବ୍ୟାଗ୍‌ଟି ଶୂନ୍ୟରେ ଝୁଲିଝୁଲି ଯିବ । ଠିକ୍ ସବାରିରେ ମହାରାଣୀ ଗଲାପରି । ମଝିରେ ମଝିରେ ଯାହା କାନ୍ଧ ବଦଳି । ଭିତରୁ ଉଠୁଥିବା ଭାରୀ ଶ୍ୱାସଗୁଡ଼ିକରୁ ଶୁଣାଯିବ... 'ହାକୁମ୍ ଧାବଲ୍-ହେଁଇଆ । ନରେଂଦ୍ର ନଇଁପଡ଼ି ବ୍ୟାଗରୁ ଧୂଳି ଝାଡୁ ଝାଡୁ ବେଶ୍ ସଂତର୍ପଣରେ ଉଡ୍‌ଲ୍ୟାଂଡ୍ ଦୁଇଟିକୁ ଦେଖିବ । ଏ ଭିତରେ ସେମାନେ ସ୍ଥିର ହେଇଗଲେଣି । ତାଂକ ଆଡ଼କୁ ଚାହିଁ ବିନୟ ସହକାରେ ଆସ୍ତେ କହିବ- 'ସରି' ।

ଭଦ୍ରଲୋକ ଆଖି ମୁଦି ବସିଛଂତି । ପାନ ଚାକୁଳି କରୁଚଂତି । ସେ ବି କ'ଣ କଳ୍ପ ଲୋକରେ ? ଯେମିତି ଜେମା ? ସତରେ ଆଜିକାଲି ଇଚ୍ଛାକଲେ ବି କଳ୍ପଲୋକକୁ ଯାଇହୁଏନା । ଯଦି ବା କେବେ ଇଚ୍ଛା ହେଲା ତେବେ ଟିକେ ବାଟ ଯାଉ ଯାଉ ହାଲିଆ ଲାଗେ । ତା'ଛଡ଼ା ବେଳ ବି କାହିଁ ? ଅନେକ କାମ, ଅନେକ ଜଂଜାଳ । ବହୁ କୁଟୁଂବୀ ପରିବାର, କୁକୁଡ଼ା ଫାର୍ମର ଚାକିରି । ଦରମା କମ୍, ଦାୟିତ୍ୱ ବେଶି । ବାକି ଖାତାରେ ଗଡ଼ି ଚାଲିଛଂତି ସଂଭାବନା ଓ ଇଚ୍ଛାମାନେ । ଦାୟିତ୍ୱ ଜଂଜାଳର ଏ ବିଶାଳ ବୋଝ ଧରି କି ବେଶୀ ବାଟ ଉଡ଼ିହୁଏ ।

ଅଥଚ ରାଜପଦ-ହୀନ ବାସ୍ତବତାକୁ ବି କୋଉ ସହିହୁଏ ? ବାସ୍ତବତା ଚାହିଁଲେ କ'ଣ ଆଉ ଟିକେ ଅଧିକ ଘଟଣାମୟ ସୁଂଦର ହୋଇ ପାରଂତାନି । ଚାରିଆଡ଼େ ଆଖି ବୁଲେଇ ନେଇ ହତାଶ ହେବ ନରେଂଦ୍ର । ସରକାରୀ ବସ୍‌ର ଘଁ ଘଁ ଶବ୍ଦ । ବହୁ ମରାମତି କରା ପୁରୁଣା ବେଡ୍‌ଫୋର୍ଡ ଇଂଜିନ୍ । ସାରା ବସ୍‌ର ବାତାବରଣରେ ଖେଳି ବୁଲୁଥିବା ଡ୍ରାଇଭର୍‌ର ବିଡ଼ି ଧୂଆଁ । ଭାରି ବିରକ୍ତିକର । ବସ୍ ଭିତରେ ଘୁମେଇ ପଡ଼ିଥିବା ନିସ୍ତେଜ ଲୋକମାନେ ବି ଘଟଣାହୀନ । ମନେ ହେଉଛି ଆପଣା ଦେହଛାଡ଼ି କୁଆଡ଼େ ଚରିବୁଲି ଯାଇଛଂତି ବାହାରକୁ । ବସ୍ ଭିତରଟା ନିର୍ଜୀବ ବସ୍ତୁରେ ଭରପୂର । ଲାଗୁଛି ମୁର୍ଦାର ବୁହା ଗାଡ଼ି ମୁର୍ଦାର ଧରି ଯାଉଛି ମୁର୍ଦାର ଖାନାକୁ । ତା' ଭିତରେ ଏକମାତ୍ର ଜୀବିତ ସେ ନିଜେ, ନିଜ ସହ ବିଶେଷ କ'ଣ ବା ଗପି ହେବ ?

-ଆଚ୍ଛା, ସେ ବିଶ୍ୱାବସୁ ଝିଅ ନାଁଟା କ'ଣ ଥିଲାଟି ? ପ୍ରଶ୍ନକର୍ତ୍ତା । ସେଇ ଭଦ୍ରଲୋକ । ଉଡ୍‌ଲ୍ୟାଂଡ୍ ହଲୁଛି-ଓଃ ଅସହ୍ୟ । ଭଦ୍ରଲୋକଂକୁ ଚାହିଁଲା ନରେଂଦ୍ର । ସେ ପୁରୁଣା ପାନର ଖଦା ଫିଂଗି ନୂଆ ପାନ ଧରିଲେ । ଭଦ୍ରଲୋକଂକୁ ଦେଖି କିଛି ଅନୁମାନ କରି ହୁଏନା । ହୋଇପାରଂତି ପାଲା ଗାୟକ ନତୁବା ଓଡ଼ିଆ ପ୍ରଫେସର୍ । ନରେଂଦ୍ର ପ୍ରଶ୍ନଟି ଉପରେ ଟିକେ ଭାବିଲା- ଠିକ୍ ମନେପଡୁନି । ପଚାରିଲା- ଲବଂଗଲତା କି ?

-ଦୂର୍... ତିନି ଅକ୍ଷରିଆ ନାଁଟା, ଅଗ ଜିଭରେ ଅଛି ।

ନରେଂଦ୍ର ମନେ ମନେ କହିଲା- ''ସେମିତି ଅଗ ଜିଭରେ ହିଁ ଥାଉ । ଅଂତତଃ କଂଟିଲୋ ଯାଏ । କିଂତୁ ହଠାତ୍ ଭଦ୍ରଲୋକଂକର ମନେ ପଡ଼ିଗଲା । ସେ ସହର୍ଷ କହିଲେ- 'ମନେ ପଡ଼ିଗଲା- ଲଳିତା ନା ? ହଁ ତ... ।''

ନରେନ୍ଦ୍ରର ବି ମନେ ପଡ଼ିଗଲା ଓ ପୁଣି ଭାବିଲା ଯେ ଲଳିତା ଓ ଲବଂଗଲତା ଭିତରେ ଫରକ୍ ବା କ'ଣ ? ଉଭୟେ ସେମାନଂକ ପୋଷାକ ତଳେ କ'ଣ ଏକା ଭଳି ନଗ୍ନ ନୁହଁତି ?

–'ସେଇ ଯୋଉ ବିଦ୍ୟାପତି ସହ ଆଫେୟାର୍ ! ମନେ ପଡୁଛି ତ !'

ନରେଂଦ୍ର ଜେମାକୁ ଚାହିଁଲା । ଫେରିନି । ଯେମିତି ଆହୁରି ଅନେକ ହିସାବ ବାକି ଅଛି । ଶବ୍ଦଂକ ହାଟରୁ ବିକାକିଣା ସରିନି ନା କ'ଣ ? କେତେବେଳେ ଆଉ ଫେରିବ ? ଫେରିଲେ କ'ଣ ହେବ ଯେ । ନରେଂଦ୍ର ନିଜକୁ- ପ୍ରଶ୍ନଟିଏ ପଚାରି ଉତ୍ତର ପାଇବନି । ଟିକେ ଅପ୍ରସ୍ତୁତ ହେବ । ମନେ ମନେ କହିବ- କିଛି ନହେଉ, ଅଂତତଃ ଏ ନିଶ୍ଚଳ ବାତାବରଣରେ ତରଂଗଟିଏ ଖେଳୁ । ସେତିକି, କେବଳ ସେତିକି କ'ଣ ଯଥେଷ୍ଟ ନୁହେଁ ?

–ଗୋଟେ କଥା ଏଠି ଲକ୍ଷ୍ୟକର ଯେ- ଘଟଣାଟି କେତେ ପାରାଡକ୍ସିକାଲ୍ ମାନେ ଯେତିକି ସୁନ୍ଦର ସେତିକି ନିଷ୍ଠୁର । ଗୋଟେ ପ୍ରଚ୍ଛନ୍ନ ପ୍ରେମ ସହିତ ମିଶିଛି ବିଶ୍ୱାସଘାତକତା । ବେଇମାନି । ଭଦ୍ରଲୋକ ବସ୍‌ରେ ଲେଖା 'ପକେଟ୍-ମାର୍‌କୁ ସାବଧାନ', ଲେଖାଟିକୁ ଚାହିଁ ଦାର୍ଶନିକ ହସଟିଏ ହସିଲେ । କିଂତୁ... ସେ ବେଇମାନି ପଛର କାରଣଟିକୁ ଦେଖିଲେ ମନେହେବ କେଡେ ମହତ୍ ! କେଡ଼େ ସ୍ପିରିଚୁଆଲ୍ ! ମାନେ ନୀଳମାଧବଂକ ପାଇଁ ହୃଦୟ ଓ ସଂପର୍କକୁ ଥୋପ କରିଦେଲାଟି... ଭଦ୍ରଲୋକ ବିଭୋର ହୋଇ କହିବେ 'ହେଇ ଆମ ବିଦ୍ୟାପତି ଲଳିତା କଥା । ଭାବ ।'

ଲଳିତା ଠକି ଯାଇପାରେ, କିଂତୁ ଜେମା କ'ଣ ଠକି ଯିବ ? ନାଃ-ସେମିତି ଲାଗୁନି । ଅଂତତଃ ଜେମା ମୁହଁର ଗାଂଭୀର୍ଯ ଓ ଠାଣିରୁ ସେମିତି ମନେ ହେଉନି । ଅଂତତଃ ଜେମାର ଭଲ ପାଇବାକୁ କେହି ଈଶ୍ୱରଂକ ପାଇଁ ବାଜି ଲଗେଇ ପାରିବନି । ଜେମାର ସେଇ ଆଖିକୁ ଦେଖିଲେ ମନେ ହେଉଛି ଯେମିତି ଅନେକ ଗୋପନୀୟତା, ରହସ୍ୟବୋଧ ଲୁଚି ରହିଛି ତହିଁରେ । ନରେଂଦ୍ର ଅନ୍ୟମନସ୍କ ଭାବେ ଭଦ୍ରଲୋକଂକୁ ଚାହିଁଲା । କେଉଁ ଏକ ଅଜଣା ପୁଲକରେ ଭଦ୍ରଲୋକ ହସୁଥିଲେ ନିରବରେ । ନରେଂଦ୍ରକୁ ଫେରିବା ଦେଖି ଟିକେ ଶବ୍ଦ କରି ହସିଲେ । ନରେଂଦ୍ରର ଆଖିରେ ଆଖି ମିଶିଯିବା ପରେ ସଫେଇ ଦବା ଢଂଗରେ କହିଲେ- ଏଇ ମନେ ପଡ଼ିଲା ସେଇ ସୋରିଷ ବୁଣି ବୁଣି ଯିବା କଥା । ସେଇ ବିଦ୍ୟାପତିକୁ ନେଇଗଲାନି ତା' ଆଖିରେ ଗାମୁଛା ବାଂଧିକରି... ! ସେଇ କଥା କବିର କି ଅଦ୍‌ଭୁତ କଳ୍ପନା- ଅ କାରରେ ଭାବିଲେ ସାଦା ମନେ ହେବ... କବିତା ଆକାରରେ ଭାବିଲେ ମନେ ହେବ ଅଦ୍‌ଭୁତ ।

–କେମିତି ? ନରେଂଦ୍ର ଆଗ୍ରହର ସହ ପଚାରିଲା ।

ଭଦ୍ରଲୋକ ଆଂଗୁଠି ହଲେଇ ହଲେଇ ଆବୃତ୍ତି କଲେ- ଗଲ ଅଂଧ ହୋଇ / ଫେରିଲ ଅଂଧ ହୋଇ ଏବଂ ଠିକ'ଣା ବେଳକୁ ଆବିଷ୍କୃତ ପଥ / ସୋରିଷ ଫୁଲରେ ଧରା ହସଂତ ।

ନରେଂଦ୍ର ଅନ୍ୟମନସ୍କ ହୋଇଗଲା । ହୁଏତ କିଛି ଗୋଟେ ମନେ ପଡ଼ିଗଲା । କାହା ଉଦ୍ଦେଶ୍ୟରେ କହିଲା ଯେମିତି- 'ହଁ ଠିକ୍ କଥା । ଜାଣିଛି । ଏମିତି ଗୋଟେ ଗୋଟେ ରାସ୍ତା ଥାଏ ଯେଉଁଥିରେ କେବଳା ଅଂଧପୁଟୁଳି ବାଂଧି ହିଁ ଯିବାକୁ ହୁଏ । ଏ ଅଂଧତ୍ୱ କିଂତୁ ସ୍ୱେଚ୍ଛାକୃତ । ଇପ୍‌ସିତ ଲକ୍ଷ୍ୟକୁ ଅଂଡାଳି ଅଂଡାଳି ଯିବାରେ, ଘାତ-ପ୍ରତିଘାତ ସହି ଲହୁଲୁହାଣ ହୋଇଯିବାରେ ବି ଗୋଟେ ତୃପ୍ତି ଅଛି । ମନକୁ ମନ କହିଲା- 'ମତେ ସେମିତି କିଏ ନେଇ ଯାଆଂତାକି... ଆଖିରେ ଅଂଧପୁଟୁଳି ବାଂଧି ? ଥରେ ଖାଲି ଦେଖି ନିଅଂତି ମୋ ଇପ୍‌ସିତ ଲକ୍ଷ୍ୟକୁ । ବାସ୍ ସେତିକି । କେବଳ ସେତିକି । ହେଇ ଦେଖ ମୋ ପକେଟରେ ଫୁଂଟାଏ ବି ସୋରିଷ ନାହିଁ । ମୁଁ

ଜାଣିଛି ଲକ୍ଷ୍ୟ କେବଳ ବି ହାତମୁଠାକୁ ଆସେନା । ଅଦୃଶ୍ୟ ରାସ୍ତା ଆବିଷ୍କୃତ ହେଉ ହେଉ ହିଁ ନୀଳମାଧବ ଅଦୃଶ୍ୟ ହୋଇଯାଂତି । କାହାକୁ କହିଲା ?

ଭଦ୍ରଲୋକ ଏ ପର୍ଯ୍ୟଂତ ତା' ଆଡ଼କୁ ଚାହିଁଥିଲେ ଭିକାରି ପିଲାପରି । ତୁଚ୍ଛ ସମ୍ମତି ଆଶାରେ । ଆଖି ମିଳିବା ପରେ ନରେଂଦ୍ର କହି ଉଠିଲା- ବାଃ, କବିର ତୁଳନା ନାହିଁ ।

ଭଦ୍ରଲୋକ ହସର ଫୁଆର ଛୁଟେଇ କହିଲେ- ବୁଝିଲ ତ ?

ନରେଂଦ୍ର ଖୁସି ହୋଇ କହିଲା- ହଁ, ହଁ- ଓ ତା'ପରେ ଜେମା ଆଡ଼କୁ ଅନେଇ ନିରବରେ କହିଲା- ଆଉ ତମେ ? ବହୁ ଦୂରରେ ଥିବାରୁ ଜେମାକୁ ବୋଧେ ଶୁଭିଲାନି ।

ନରେଂଦ୍ରର ଇଚ୍ଛା ହେଲା ସେ ଗୋଟେ ଦୁଃସାହସୀ ରାଜପୁଅକୁ ଖୋଜିବ । ଯାହା ପାଖରେ ଥିବ ଜେମାକୁ କଳ୍ପଲୋକକୁ ଫେରାଇ ଆଣିବାର ଅଫୁରଂତ ଶକ୍ତି ଓ ସାହସ । କିଂତୁ ସେମିତି ରାଜପୁଅଟେ କ'ଣ ହାଟ-ବଜାରରେ ମିଳେ ? ନରେଂଦ୍ରର ବିଶ୍ୱାସ ଯେତେ ଛଦ୍ମବେଶରେ ଥିଲେ ବି ସେ ରାଜପୁଅକୁ ଠିକ୍ ଚିହ୍ନିପାରିବ । ଏମିତି ବି ଯୋଗୀ ଭିକାରି ବେଶରେ ଥିଲେ ବି ! ରାଜାପୁଅ- ରାଜାପୁଅ ! ଠିକ୍ ଚିହ୍ନିହେବ । ତା'ଛିଂଡା ଜୋତା, ମସିଆ ଲୁଗା ଓ ଗଂଧ ଭୁତୁରା ମୁଂଡ ପଛ ପାଖେ ବି ଠିକ୍ ଦେଖି ହେବ ଆଭା ମଂଡଳକୁ । ଖୋଜିବାକୁ ହିଁ ହେବ ନଚେତ୍ କେହି ବିଦ୍ୟାପତି ଆସି ଯଦି ଜେମାକୁ ଛଳନାରେ ବଶୀଭୂତ କରେ ? ଭିତରେ ଭିତରେ ନରେଂଦ୍ର ବ୍ୟସ୍ତ ହୋଇପଡ଼ିବ । ବାହାରି ଯାଉ ଯାଉ ଟିକେ ଅଟକି ଯାଇ ଜେମା ଉଦ୍ଦେଶ୍ୟରେ ମନେ ମନେ କହିବ- ''ତମେ ଚାହଁ କି ନ ଚାହଁ, ଆମେ କିଂତୁ ତମକୁ ଅକାଳରେ ଝରିବାକୁ ଦେବୁନି ଲଳିତା ଭଳି ।''

ବାଣୀବିହାର କ୍ୟାଂପସ୍‌ର ବଉଳ ଗଛ ମୂଳେ ଜିନ୍ ପିଂଧା ପିଲାଟି ଶୋଇଶୋଇ ଟାଣୁଛି ଉଇଲ୍‌ସ ଫିଲ୍‌ଟର । ବାଲିରେ ଆଂକିଛି ପାନପତ୍ର ଉପରେ ତୀରଚିହ୍ନ ! 'ଯା କଥା ଭାବୁଛ କି ?' କିଂତୁ ଜେମା କେମିତି ଜାଣିବ ଯେ କେତେ ଦୀର୍ଘଶ୍ୱାସ ମିଶିଛି ସେ ସିଗ୍ରେଟ୍‌ଧୂଆଁରେ ? ଯଦିବା ମିଶିଛି ତେବେ ସେ ଦୀର୍ଘଶ୍ୱାସ ଦେହର ନା ହୃଦୟର ? ନତୁବା ଏମିତି ହୋଇପାରେ- ହୋଟେଲ୍ ପଇସା ବାକି, ପରୀକ୍ଷା ଫିସ୍ ଦିଆଯାଇନି । ବେଳେ ବେଳେ ଜେମା, ଗୋଟେ ଦୁଃଖ ଆଉ ଗୋଟେ ଦୁଃଖର ସାହାରା ନିଏନି କି ? ଯେ କ'ଣ ତୁମକୁ ଉଦ୍ଧାର କରିପାରିବ ଜଂଗଲ ଦସ୍ୟୁମାନଂକ କବଳରୁ ? ଯଦି ସୁନା ଅସର୍ପି ଦ୍ୱାରା କିଣି ହୋଇଯାଏ ?

-ନା, ସେଠି ସେ ଯେଉଁ ପିଲାଟି ଜେମା ! କାଠଯୋଡ଼ି କୂଳରେ କାଶତଂଡୀ ଫୁଲକୁ କବିତା ଶୁଣଉଚି ! ଇସ୍ କି ଉଦାସ । ଲଂବା ପଂଜାବି, ଶାଂତିନିକେତନୀ ଝୁଲା, ଅବିନ୍ୟସ୍ତ ଦାଢ଼ି, ବାବୁରିବାଳ ପ୍ଲସ୍-ପ୍ଲସ୍ ଆହୁରି କେତେ କ'ଣ ! ହାଲକା ଚଷମାଟିଏ ବି ପିଂଧିଛି ନା କ'ଣ । ପାଦରେ କାନପୁରୀ ଚପଲ । ଭଲିଗଲ ଗୋ ଜେମା ? ତେବେ କେମିତି ଜାଣିବ ତା' କବିତା ସବୁ ଲୁହରେ ତିଆରି ନା ପାଣିରେ ? ଓଡ଼ିଆ କବିମାନେ ଭାରି ମାୟାବୀ, ଉଦାସୀନତାର ମୁଖା ପିଂଧିବାରେ ଅଭ୍ୟସ୍ତ । ଏକାଂତ ଭାବେ ନିୟଂତ୍ରଣହୀନ ଆତ୍ମସମ୍ମୋହିତ । ଅବଶ୍ୟ ହୋଇପାରେ ଜଣେ ସଚ୍ଚା କବି । କିଂତୁ ଟିକେ ଭଲ କରି ଲକ୍ଷ୍ୟ କଲେ ଜାଣିବ ସେ ନିଜକୁ କେବେ ସମ୍ରାଟ ବୋଲି ଭାବେନା । କବିତ୍ୱର ବୈଭବକୁ ସେ ଦେଖିପାରିନି ଜେମା, ଖାଲି ଅଭ୍ୟାସରୁ ଲେଖି ଚାଲିଛି । ଭିତରେ ଭିତରେ କିଂତୁ ହୀନମନ୍ୟତାରେ ଭାରାକ୍ରାଂତ । ବିତ୍ତଶାଳୀଂକ ପାଖରେ ଲାଂଜ ହଲେଇବ ନତୁବା ପ୍ରତିକ୍ରିୟାଶୀଳ ହୋଇଯିବ । ନାଃ-ଜେମା, ଯେ ତୁମ ଯୋଗ୍ୟର ନୁହଁ ।

ବୁଲିବୁଲି ବିଫଳ ହୋଇ ଫେରିଲା ପରେ, ଚାଲି ଚାଲି କ୍ଳାଂତ ହେଲା ପରେ ନରେଂଦ୍ର ଅନୁଭବ କରିବ ଯେ ସେ ଅଟକିଗଲେ ବି ବସ୍ ଚାଲିଛି । ଜାଣି ହେଉନି କେଉଁ ବସ୍ । ଆଉ କେତେବାଟ ରହିଲା ? ଝର୍କାବାଟେ ଦିଶୁଛି ବିଲମାଳ, କିଆରୀର ପାଳଭୂତ, ନଇଁ ପଡ଼ିଥିବା ତାଳଗଛର ବାୟାବସା । ଆକାଶରେ ଚକ୍ରି ହେଉଛଂତି ଶଂଖଚିଲ । ନରେଂଦ୍ରର ପିଲାଦିନର ଢଗ ମନେ ପଡ଼ିବ । କହିବ-ଶଂଖଚିଲ ଭାଇ ନମସ୍କାର, ମାଟିଆ ଚିଲକୁ ଗୋଇଠା ମାର୍ । ଶଂଖଚିଲ ଶୁଭ, ମାଟିଆ ଚିଲ ଅଶୁଭ । କିଂତୁ ଦୂରରୁ କେମିତି ଚିହ୍ନିବ କୋଉଟା ଶଂଖଚିଲ, କୋଉଟା ମାଟିଆ ଚିଲ ? ସବୁ ତ ଏକା ଦିଶିବେ ! ଦୂରରୁ ସବୁ ଭଲ, ସବୁ ସୁଂଦର । ପାଖକୁ ଯାଇ ଦେଖିବାର-ପରଖିବାର ଚାଲାକି ଥିବା ଦରକାର । ଜେମା ଶୁଣୁଛ ?

ମୋଟୁ ଭଦ୍ରଲୋକ ତା' ଆଡ଼କୁ ବାରଂବାର ଚାହୁଁଥିଲେ । ପାନ ବୋଧେ ସରିଯାଇଚି । ପାନ ସରିଯାଇଛି ଓ ମୁହଁ ଶୁଖି ଯାଇଛି । ତଥାପି ଯେମିତି କିଛି କହିବି କହିବି ହେଉଛଂତି । କିଂତୁ ନରେଂଦ୍ରକୁ ପାଉନାହାଂତି ବୋଲି ଅଟକି ଅଛଂତି । ଶେଷକୁ ନରେଂଦ୍ରକୁ ଫେରିବାର ଦେଖି ମୁରୁମୁରୁ ହସିଲେ । ଥିଲେ ଥିଲେ- ଚୁପ୍‌କିନା କାନ ପାଖକୁ ନଇଁଆସି କହିଲେ- 'ଲଳିତାଟା ପ୍ରବଳ ସେକ୍ସି ଥିଲା ।' କହି ଫେରିଗଲେ । ଅଳ୍ପକ୍ଷଣ ପାଇଁ ନରେଂଦ୍ର ଥରି ଉଠିଲା ଓ ତା'ପରେ ଗୋଟେ କ୍ଷୀଣ ବିରକ୍ତି ଫୁଟି ଉଠିଲା ମୁହଁରେ । ଭଦ୍ରଲୋକ ସାମାନ୍ୟ ଅପ୍ରସ୍ତୁତ ହେଲେ ବୋଧେ ଓ ଚଟାପଟ ନିଜ ଭାବକୁ ଢାଂକିଦେଇ କହିଲେ- କାଇଁକି କହିଲି କହନି ? ନରେଂଦ୍ରଠାରୁ କୌଣସି ଜବାବ୍ ଆଶା ନ କରି ମନକୁ ମନ କହିଚାଲିଲେ- ଦିଇଟି ଚରିତ୍ରଂକର ଚେତନାର ସ୍ତରକୁ ଦେଖ, ଅବଶ୍ୟ ତମେ ସେ ଲାଇନ୍‌ର ଲୋକ ନ ହୋଇଥିଲେ ବୁଝିପାରିବନି । ଏମ୍.ଏ.ରେ ଫିଲୋସଫି ହେରିକା ଥିଲାକି ? ପୁଣି ଅପେକ୍ଷା ନ କରି କହି ଚାଲିଲେ ଏଇ ସେକ୍ସ କଥାଟାର ଭୁଲ୍ ଇଂଟରପ୍ରିଟେସନ୍ ହିଁ ତମେ ମେନ୍ ପଏଂଟରୁ ଖସିଯିବ । ଯଦି ଭାବିଦେଲ ସେଇ କଥାଟାର ମାନେ ନିଆଁ ଜଳିବା ଓ ନିଆଁ ଲିଭିବା ବୋଲି ତ ଗଲା, ସବୁ ଭଂଡୁର ହୋଇଗଲା । ଏବେ ଭାବ ଇଂଗିତଟା କୁଆଡ଼ିକି ?

ନରେଂଦ୍ରର ମନେ ପଡ଼ିଲା ତା' ମାଉସୀପୁଅ ଭାଇ ପୂର୍ଣ କଥା । ପୂର୍ଣ ନିଆଲିଭା ଅଫିସ୍‌ରେ କାମ କରେ । ଏଇନା ଖୋର୍ଧା ଫାୟାର ବ୍ରିଗେଡ୍‌ରେ ସବ୍‌ଇନସ୍‌ପେକ୍ଟର ହୋଇଗଲାଣି । ତା'ର ନୟାଗଡ଼ କଲେଜରେ ଫୋର୍ଥ ଇୟର ଗ୍ରାଜୁଏସନ୍ ବେଳକୁ ପୂର୍ଣ ମ୍ୟାଟ୍ରିକ୍ ଫେଲ୍ ହୋଇ ଫାୟାର ବ୍ରିଗେଡ୍‌ରେ କନେଷ୍ଟବଲ୍ ହୋଇ ଜଏନ୍ କରିଥାଏ । କଲେଜ ପାଖ ରାସ୍ତା ଦେଇ ଆଖପାଖ ଗାଁକୁ ନିଆଁ ଲିଭେଇବାକୁ ଗଲାବେଳେ ସେ ପୂର୍ଣକୁ ଦମକଳରେ ବସି ଘଂଟି ବଜେଇ ବଜେଇ ଯିବାର ଦେଖିଛି । ମନେ ମନେ ପୂର୍ଣ ଉଦ୍ଦେଶ୍ୟରେ ବିଚରା ବୋଲି ଶବ୍ଦଟିଏ ବି ଉଚ୍ଚାରଣ କରିଛି । ଏଇନା ହଠାତ୍ କାହିଁ ସେ ଦୃଶ୍ୟଟି ମନେପଡ଼ିଲା ମାତ୍ରେ ନରେଂଦ୍ରର ମନେ ହେଲା ଯେ ସେ ବି ଗୋଟେ ଆଧିଭୌତିକ ଦମକଳ ଉପରେ ବସି ଘଂଟି ବଜେଇବାରେ ଲାଗିଛି । ଧୀରେ ଧୀରେ ତା'ର ମନେ ହେଲା କେବଳ ସେ କାହିଁକି, ସମସ୍ତେ ବୋଧେ ଏମିତି ବଜାଂତି । କିଂତୁ ସବୁ ଦମକଳ କ'ଣ ଘରପୋଡ଼ି ପାଖେ ପହଂଚିପାରେ ? ହୁଏତ ପହଂଚିଲା ବେଳକୁ ଘରପୋଡ଼ି ପାଉଁଶ ହୋଇଯାଇଥାଏ । ନତୁବା କେତେକ ସ୍ଥଳରେ ଦମକଳ ପହଂଚିବା ପୂର୍ବରୁ ଗାଁ ଲୋକ ପାଣି ଢାଂକି ନିଆଁ ଲିଭେଇ ଦେଇଥାଂତି । ଦମକଳ ପହଂଚିଲା ବେଳକୁ ପୋଡ଼ାଘର ଭଂଗାକାଂଥରୁ ଧୂଆଁ ବାହାରୁଥାଏ । ଦରପୋଡ଼ା ଦେହ ଯେମିତି କହୁଥାଏ- ଆସିଲ ଯେ ହେଲେ ଡେରି କରିଦେଲ !

ଏଇ ଦରପୋଡ଼ା ଦେହର ଭାଷାକୁ ନରେଂଦ୍ର ବହୁବାର ଶୁଣିଛି- ରାତିରେ, ନିଭୃତରେ ଦୂର ଅତୀତରୁ ଭାସି ଆସୁଥିବା ସ୍ୱରରେ ।

ନରେଂଦ୍ର ଭାବିଲା ଯେ- ଜୀବନରେ ସେ କେବେବି ଘରପୋଡ଼ିର ବାସ୍ତବ ଦୃଶ୍ୟ ସହ ପରିଚିତ ହୋଇପାରିନି । ଯେତେସବୁ କଲ୍ ପାଇଛି ସେ ସବୁ ଭୁଆଁ କଲ୍ । ଘଂଟି ବଜେଇ ଠିକଣା ଜାଗାରେ ପହଂଚିଲା ବେଳକୁ ଘର ଆପଣା ଜାଗାରେ ଠିକ୍ ଥାଏ ଓ ଆଶ୍ଚର୍ଯ୍ୟ ହୋଇ ପଚାରେ- କୁଆଡ଼େ ? ଇସ୍-କି ଲଜ୍ଜାକର ! ନରେଂଦ୍ରକୁ ମରିଗଲା ଭଳି ଲାଗେ । ସାଜ ପୋଷାକ ପିଂଧି କାର୍ଟୁନଟିଏ ଭଳି ଲାଗେ ନିଜକୁ । କେତେଥର ଭାବିଛି- ପ୍ରତିଜ୍ଞା ବି କରି ପକେଇଛି- ନାଃ, ଏଥର ଆଉ ଠକିବିନି । ପୁଣି ଭାବେ କାଳେ ଯଦି ସତ ହୋଇଥିବ ?

ଭଦ୍ରଲୋକ ବୁଝେଇ କହିଲେ - 'ଇଂଗିତଟା ଏମିତି- ଗୋଟେ ବସ୍ତୁର ଜଗତ ଓ ଗୋଟେ ଚେତନାର ଜଗତ । ହେଲାକି ! ଉଭୟ ଜଗତ କିଂତୁ ପରସ୍ପର ଜାଗାରେ ବ୍ୟାପ୍ତ । ଗୋଟେ ହେଲା ମାୟା । ଆଉ ଗୋଟେ ହେଲା ପରଂବ୍ରହ୍ମ ନୀଳମାଧବ । ଲଳିତାଟା ଶୂଦ୍ରାଣୀ, ଅଛି ଶୂଦ୍ର ଚେତନାରେ, ମାୟାରେ । ବିଦ୍ୟାପତି ବ୍ରାହ୍ମଣ, ଯାଇଁ ରହିଲାଣି ବ୍ରହ୍ମଚେତନାରେ । ମାନେ ବ୍ରହ୍ମ ଓ ମାୟାର ଅପୂର୍ବ ସଂଯୋଗ । ଧଇଲ ?

-ନାଃ', ନରେଂଦ୍ର ନିରୀହ ଭାବେ ଉତ୍ତର ଦେଲା ।

-ଭାରି କଷ୍ଟ ଧରିବା । କିଛି ବି ଧରିହେଉନି ? ଭଦ୍ରଲୋକ ଚିଂତିତ ହୋ କହିଲେ- କୋଉଠି ଅଟକିଲ ?

-ସେଇ ନିଆଁ ଓ ଲିଭିବା ଠି ।

- ଏହେଃ, ଠିକ୍ ଜାଗାରେ ଖସିଗଲ ! ଜାଣିଥିଲି ପରା ! ଭଦ୍ରଲୋକ ବ୍ୟସ୍ତ ହେଲେ ।

ଖସିଗଲି ! ସ୍ୱତଃ ଶବ୍ଦଟି ଉଚ୍ଚାରଣ କଲା ନରେଂଦ୍ର । ଖସିଗଲେ କ'ଣ ହେବ ? ଅନେକ ତ ବୟସ ହୋଇଗଲାଣି । ଦେହ ହରେଇ ବସିଗଲାଣି ଔଜ୍ଜ୍ୱଲ୍ୟ । ଶିଥିଳ ହୋଇଗଲାଣି ଅଂଗ ପ୍ରତ୍ୟଂଗ । ଖସିଗଲେ କ'ଣ ହେବ ! ହେଗୋ ଜେମା ! ଭୟ କରୁଛ ! ଏବେ ଅତିବେଶିରେ ସେବା କରିବା ବାହାନାରେ ଟିକେ ଛୁଇଁ ଦେବି ! ତୁମ ଅଂଗବାସକୁ ଗୋପନରେ ଆଘ୍ରାଣ କରି ରୋମାଂଚିତ ହେବି ! କାହା ଉଦ୍ଦେଶ୍ୟରେ ପ୍ରେରିତ ତୁମ ଚୋରା ଚାହାଣିକୁ ଛବି କରି ଝୁଲେଇବି ମୋ ମନର କାଂଥରେ । ଯା' ଛଡ଼ା ଆଉ କ'ଣଟେ କରିପାରିଛ ? ଖସିଗଲି ବୋଲି କ'ଣ ଏତିକି ସୁଯୋଗ ଦବନି ! ହେଗୋ ଜେମା !

ଫି'କିନା ହସିଦେଲା ଜେମା । ଜେମାର ହସ ବିଜୁଳି ଚମକିଲା ପରି । କିଛି ବୁଝିବା ପୂର୍ବରୁ ନରେଂଦ୍ରର ଆଖି ଝଲସି ଗଲା । ଜେମା କେତେବେଳୁ ଫେରିଆସିଛି ଜାଣିପାରିନି ନରେଂଦ୍ର । ଜେମାକୁ ଦେଖିଲା ପରେ ହଠାତ୍ କେମିତି ଗୋଟେ ଲଜ୍ଜାବୋଧ ତାକୁ ମାଡ଼ି ବସିଲା । ଜେମା ଶୁଣି ଦେଇନି ତ ତା' କଥାଗୁଡ଼ାକ ? ନାଃ- ଏତେ ଭିତରର କଥା ଶୁଣିବା ସଂଭବ ନୁହେଁ । ତା' ହେଲେ ଜେମା ହସୁଚି କାହିଁକି ?

ବସ୍‌ଟା ଅଟକିଛି । ଗୋଟେ ଷ୍ଟପେଜ୍ ବୋଧେ । ନରେଂଦ୍ର ଲକ୍ଷ୍ୟକଲା- ଜେମା ତା' ସାମ୍ନାରେ ବସିଥିବା ଗୋଟେ ଟୋକାକୁ ଲକ୍ଷ୍ୟ କରି ହସୁଛି । ନରେଂଦ୍ରର ଦେହ ଜଳିଗଲା । ଯେ କ'ଣ ଜେମାର ଯୋଗ୍ୟ ? ନା- ସେ ଟୋକା ଆଗରେ ଠିଆ ହୋଇଥିବା ସେ ଦୀର୍ଘଦେହୀ ପୁରୁଷକୁ ? ଚଳିବ, ହେଲେ- ବୟସ୍କ । ନରେଂଦ୍ର ତେଣିକି କାନ ଡେରିଲା ।

ବସ୍‌ର ମଝିରେ ସରୁ ରାସ୍ତା ଥାଇ ଦି' ପାଖରେ ମାଳ ମାଳ ସିଟ୍ । ଗୋଟେ ଗୋଟେ ତିନିଟିକିଆ ଓ ଅନ୍ୟପାଖେ ଦିଟିକିଆ । ନରେଂଦ୍ର ବସିଛି ଜେମାର କରକୁ ଥିବା ତିନିଟିକିଆ ସିଟ୍‌ରେ । ଜେମା ପାଖ ସିଟ୍‌ଟା ଫାଂକା । ତା' ସାମ୍ନାକୁ ଥିବା ସିଟ୍‌ରେ ବସିଛି ସେ ଟୋକାଟି । କିଂତୁ ଝର୍କା ପାଖ ସିଟ୍ ଛାଡ଼ିଦେଇ ରାସ୍ତା ଧାରକୁ ବସିଛି । ବାକି ସବୁ ସିଟ୍ ଭର୍ତି । ମଝିରେ କେହି ଲୋକ ଉଠି ନାହାଂତି ବୋଲି ସିଟ୍ ଖାଲି ଅଛି । ନରେଂଦ୍ର ପାଖ ସିଟ୍‌ରେ ବସିଛଂତି ସେହି ବିଶାଳଦେହୀ ଦାର୍ଶନିକ । ତାଂକ ଝର୍କା ପାଖ ସିଟ୍‌ଟା ବି ଖାଲି । ଧୂଳିଆ ରାସ୍ତା । ଧୂଳି ଉଠିବ ବୋଲି ବୋଧେ ଝର୍କା ପାଖ ସିଟ୍‌ରେ କେହି ବସୁନାହାଂତି । ତେବେ ଜେମା ଆଗ ସିଟ୍‌ରେ ବସିଥିବା ସେଇ ଟୋକାକୁ ନେଇ ହିଁ କିଛିଟା କୋଳାହଳ ଲାଗିଛି । ତା' ପାଖରେ ଛିଡା ହୋଇଥିବା ସେଇ ଦୀର୍ଘଦେହୀ ପୁରୁଷର ଚିକ୍ରାର ଭାସି ଆସୁଛି । ନରେଂଦ୍ର ଘଟଣାଟିକୁ ବୁଝିବାକୁ ଚେଷ୍ଟାକଲା ।

ଦୀର୍ଘଦେହୀ ବଳିଷ୍ଠ ଲୋକଟି ଏଇ ବସ୍ ଭିତରକୁ ସଦ୍ୟ ଉଠିଛି ଓ ଟୋକାଟିକୁ ଅନୁରୋଧ କରୁଛି ଘୁଂଚି ବସିବା ପାଇଁ । ଆଉ ଟୋକାଟି ଯେମିତି ସେ ଲୋକଟିର କଥା ବୁଝିପାରୁନି ସେମିତି ଆଚରଣ କରୁଛି । ଲୋକଟି ପାଖ ସିଟ୍‌କୁ ଘୁଂଚିବାକୁ କହିଲା ବେଳେ ଟୋକାଟି ତା' ଆଂଠୁ ଆଡ଼େଇ ସେଇ ପାଖ ସିଟ୍‌କୁ ଦେଖେଇ ଦେଉଛି । ଦି' ତିନିଥର ଏମିତି ହେଲା ପରେ ଲୋକଟା ଚିକ୍ରାର କରି କହିଲା 'କ'ଣ ହେଲା, ଏତେଥର କହିଲା ପରେ ବି ଏଡ଼େ ହେୟଜ୍ଞାନ, କ'ଣ ହୋ' ବାବୁ ।' ହେ୍ୟ ଟୋକାଟି ନିର୍ବିକାର । ଟୋକାଟିର ଏଇ ଆଚରଣରେ ବୋଧେ ଜେମା ହସି ପକେଇଛି । ନରେଂଦ୍ରକୁ କୌତୁକ ଲାଗିଲା ।

ଅନେକ କହି ବିଫଳ ହେଲା ପରେ ବି ଟୋକାଟା ଘୁଂଚୁନି । ଲୋକଟା ବି ଯାଉନି, ପଛରେ ଯଦିଚ ଅନେକ ସିଟ୍ ଅଛି । ଲୋକଟା ତା' ଦାଂତ କଡ଼ମଡ଼ କଲା । କହିଲା-ହେ୍ୟା ବାବୁ, ଜାଣିଚ ମୁଁ କିଏ ? ଖଂଡପଡ଼ା ଦାରୋଗା କହିଲେ- ଗର୍ଭିଣୀ ଗାଈ ବାଟ ଛାଡ଼ିବ, କ'ଣ କରି ପାଇଛ କି, ଆଏଁ ? ଟୋକାଟି ପୂର୍ବଭଳି ନିର୍ବିକାର ଭାବେ ଆଖି ମୁଦିକରି ବସିଛି । କି ଶୋଇଗଲାଣି ନା କ'ଣ ? ପୁଲିସ୍‌ବାଲା ବୋଲି ଜାଣିବା ପରେ ବସ୍ ପାସେଂଜର୍ ଟିକେ ନରମି ଗଲେଣି । କେହି କେହି ପାସେଂଜର୍ ମଧ୍ୟ ପୁଲିସ୍ ବାବୁଂକ ସମର୍ଥନରେ ସେ ଟୋକାକୁ ମିଳିତ ଭାବେ ଝର୍କା ପାଖକୁ ଘୁଂଚିଯିବାକୁ ନିର୍ଦ୍ଦେଶ ଦେଲେଣି । ଟୋକାଟି କିଂତୁ ସେମିତି ଚୁପ୍‌ଚାପ୍ ଆଖିମୁଦି ବସିଛି । ଶୋଇନି କିଂତୁ । କାରଣ ନରେଂଦ୍ର ଲକ୍ଷ୍ୟ କରିଛି ଯେ ତା' ଗୋଡ଼ ହଲୁଛି । ନରେଂଦ୍ର ମନେ ମନେ ଖୁସି ହେଉଥିଲା । ତାକୁ ଲାଗିଲା ଟୋକାଟିର ପଛ ପଟେ ଧୀରେ ଧୀରେ ପ୍ରକଟିତ ହେଉଛି ଏକ ଆଭାମଂଡଳ । ଜେମା ସତୃଷ୍ଣ ନୟନରେ ଚାହିଁ ରହିଛି । ମନ ଖୋଲି ହସିବାକୁ ଇଚ୍ଛା, ହେଲେ ମୁହଁ ପାଖରେ ହାତ ଦେଇ ରୋକିଛି ।

ଭଦ୍ରଲୋକ ପୁଣି ନରେଂଦ୍ରର କାନପାଖକୁ ମୁହଁ ଆଣିଲେ । ଟୋକାକୁ ଲକ୍ଷ୍ୟ କରି କହିଲେ- ମହା ଝାମେଲା ସୃଷ୍ଟିକାରୀ । ନରେଂଦ୍ର କ୍ରୁଦ୍ଧ ଭାବରେ ପ୍ରତିବାଦ କଲା । କହିଲା- କାହିଁକି ସେମିତି ଭାବିଲେ ! ଭଦ୍ରଲୋକ କହିଲେ- ଜିଦ୍‌ଖୋର୍ ହେବାଟା ନିହାତି ବସ୍ତୁନିଷ୍ଠ ଅହଂକାରୀ ଚେତନା । ହେଇ ଦେଖ ବିଶ୍ୱାବସୁ କେତେ ଭଲ ଲୋକ ଥିଲା । କିଂତୁ ନୀଳମାଧବଂକୁ ମୁଠେଇ ଧରିଲା । କହିଲା ମୋର ମୋର ମୋର ମୋର । ପ୍ରଭୁ ଖସିଗଲେଟି ? ଯାହା ସାର୍ବଜନୀନ ତା' ଉପରେ ବ୍ୟକ୍ତିଗତ ମାଲିକାନା ଜାହିର କରିବା ଅର୍ଥ କ'ଣ ? ନରେଂଦ୍ର କ୍ରୁଦ୍ଧ ଦୃଷ୍ଟିରେ ଭଦ୍ରଲୋକଂକୁ

ଚାହିଁଲା । କହିଲା- ଆପଣ କିଛି ବୁଝିନାହାଂତି । ଭଦ୍ରଲୋକ ଭ୍ରୂକୁଂଚିତ କରି ନରେଂଦ୍ରକୁ ଚାହିଁଲେ ଓ ଅସ୍ପଷ୍ଟ ଭାବେ କହିଲେ- 'କିଛି ବୁଝିନି ?

ପୁଲିସ୍‌ବାଲା ନିରୁପାୟ ହୋଇ ଅନ୍ୟଲାଇନ୍ ଧରିଲା । ପାସେଂଜର୍‌ଙ୍କୁ ସଂବୋଧନ କରି କହିଲା- ଦେଖ ହୋ ! ଝର୍କା ପାଖ ସିଟ୍‌ରେ ମୋ ଏଇ ଖଂଡିଆ ଆଂଠୁଟା ବାଜିବ ବୋଲି ବୁଝେଇ କହିଲି । ଏଇ କର ସିଟ୍‌ରେ ବସିଲେ ମୁଁ ଟିକେ ଆଡୁଆ ହୋଇ ବସିପାରିବି । ରିକ୍ୱେଏଷ୍ଟ କଲି । ମୁଁ ଆଜ୍ଞା ଜିଂଦେଗିରେ କାହାକୁ ରିକ୍ୱେଏଷ୍ଟ କରିନି । ଆମେ ତ ସିଧା ବଂଧୁକରେ କଥାବାର୍ତ୍ତା କରିବୁ, ଡୁଂଡରେ କିଆଁ ? ତଥାପି, ଡ୍ରେସ୍‌ରେ ନାହିଁ ଯେତେବେଳେ, ଆମେ ସିଭିଲିଆନ୍ ହେଲୁ । ତା' ବୋଲି ତେମେ ଆମ ଉପରେ ଚଢ଼ିବ ? ପୁଲିସ୍ ଟୋକା ଆଡ଼କୁ ମୁହଁ କରି କହିଲା । ଟୋକା ଆଖି ମେଲି ଥରେ ପୁଲିସ୍‌କୁ ଚାହିଁଲା ଓ କାନ କୁଂଡ଼େଇଲା । ନରେଂଦ୍ରକୁ ଭଲ ଲାଗିଲା । ଏ ଆଚରଣ । ଏଥର ପୁଲିସ୍‌ବାଲା ଉଦ୍ଦେଶ୍ୟରେ ମୁହଁ ଖୋଲିଲା ସେ । କହିଲା- 'ପ୍ଲିଜ୍, ସାର୍, ପଛରେ ଏତେ ସିଟ୍ ଥାଉ ଥାଉ ଆପଣ କାହିଁକି ତାଂକ ପଛରେ ଲାଗିଛଂତି ? ହଁ, ସିଟ୍ ନ ଥାଆଂତା କି ! ମୋଟୁ ଭଦ୍ରଲୋକ ସଂଗେ ସଂଗେ ସ୍ୱର ମିଳେଇ କହିଲେ- 'ନହେଲେ ସେଇ ଝର୍କା ପାଖେ ଟିକେ କଷ୍ଟ କରି ବସଂତୁ ।'

-ତା' ବୋଲି ମାନବିକତା ବୋଲି କିଛି ନାହିଁ ? 'ହଉ'- କହି ପୁଲିସ୍‌ବାଲା ପଛକୁ ଚାଲିଗଲା ।

ମୋଟୁ ଭଦ୍ରଲୋକ ଖୁସି ହୋଇ ନରେଂଦ୍ରକୁ ଚାହିଁଲେ । ନରେଂଦ୍ର ଲକ୍ଷ୍ୟ କଲା ଜେମା ତାକୁ ଚାହିଁଛି । ନରେଂଦ୍ର ସେ ଟୋକାଟିକୁ ଚାହିଁଲା । ସିଟ୍ ଉପରେ ସେ ବାଜା ବଜଉଛି । ମାନେ ନରେଂଦ୍ରର ସମର୍ଥନ ପ୍ରତି ତା'ର କୌଣସି ଆଗ୍ରହ ନାହିଁ । ନଥାଉ, ସେଇ ତ ରାଜକୀୟତା ! ଜେମା ଚିହ୍ନି ପାରୁଛ ? ଭଦ୍ରଲୋକ କହିଲେ- 'କଂଟିଲୋ ନୀଳମାଧବ ଯାଉଛଂତି ?

ନରେଂଦ୍ର କହିଲା- 'ନାଃ ।'

-ଉସ୍... ମିସ୍ କଲ ।'

ନରେଂଦ୍ର ହସିଲା । କହିଲା- ଲଳିତାର ପ୍ରେମଠୁଁ କ'ଣ ନୀଳମାଧବ ବଡ଼ ? ଭଦ୍ରଲୋକ କରୁଣ ଦୃଷ୍ଟିରେ ନରେଂଦ୍ରକୁ ଚାହିଁଲେ ।

ସଂଧ୍ୟା ହୋଇ ଆସୁଥିଲା । ବସ୍‌ର ଗତି ମଧ୍ୟ ଧୀରେ ଧୀରେ ମଂଥର ହୋଇ ଆସୁଥିଲା । ନରେଂଦ୍ର ଦେଖିଲା ସୂର୍ଯ୍ୟ ଅସ୍ତ ଗଲେଣି । ବସ୍ କଂଟିଲୋରେ ରହିଲା ବେଳକୁ ମାଛି ଅଂଧାର । ମୋଟୁ ଭଦ୍ରଲୋକ ଆଂଠୁରେ ଭରାଦେଇ ଉଠିଲେ । କହିଲେ ଜୟ ନୀଳମାଧବ । ନରେଂଦ୍ର ଦେଖିଲା ଯେ ସେ ଟୋକାଟା ବି ଠିଆ ହେଲା । ତା' ପଛେ ପଛେ ଜେମା । ନରେଂଦ୍ର ଅପଲକ ଦୃଷ୍ଟିରେ ଚାହିଁ ରହିଲା ।

କିଛିଟା ତୃପ୍ତି ଓ କିଛିଟା ବିଷାଦ ବି । କାହାଣୀ ସରିସରି ଆସୁଛି । ତଥାପି ଯେମିତି ଲାଗୁଛି- ନାଃ, ଯେ ଶେଷ ନୁହେଁ । ଆହୁରି ଅଛି । ଅନଂତକାଳ ଧରି ଦେଖିଲା ଭଳି ।

ସିଟ୍ ତଳେ ଥିବା ବ୍ୟାଗ୍‌ରୁ ଧୂଳି ଝାଡ଼ି ପ୍ରସ୍ତୁତ ହେଉ ହେଉ ନରେଂଦ୍ର ଅନୁଭବ କଲା ଜେମା ତା' କରରେ । ଜେମାର ଉତ୍ତରୀୟ ତା' ମୁହଁ ପାଖରେ ଛୁଇଁ ଦେଇ ଯାଉଛି । କେମିତି ଗୋଟେ ହାଲ୍‌କା ମଧୁର ଶବ୍ଦ । ଏ ଗଂଧ କାଳକାଳକୁ ମନେ ରହିବ । ଆଗରେ ରଜାପୁଅ ଅଳସ ଭାଂଗୁଛି । ପଛରେ ଜେମା । ନରେଂଦ୍ରର ନଜର ଅଟକିଗଲା କର ସିଟ୍ ଉପରେ ପଡ଼ିଥିବା

ପର୍ସଟି ଉପରେ । ପର୍ସଟି ନିଶ୍ଚୟ ଦେଇ ଦୁଃସାହସୀ ବିଦ୍ୟାପତିର । ନରେଂଦ୍ର ପର୍ସଟି ଉଠେଇ ନେବାକୁ ଯାଉଛି ଦେଖିଲା ଜେମା ତାକୁ ଉଠେଇ ଦେଲାଣି । ମନେ ମନେ କହିଲା- ଭଲ ଭଲ । ତମ କାମ ତମେ କରିବ । ଆମେ କିଆଁ ? ପର୍ସଟି ଧରି ଜେମା ଡାକିଲା- ଏଇ; ଶୁଣୁଛଂତି । ରଜାପୁଅ ଶୁଣିପାରୁନି । ଭୂତ ଭଳି ଆଗକୁ ମାଡ଼ି ଚାଲିଛି । ନରେଂଦ୍ରର ମନ ଦୁଃଖ ହେଲା । ଜେମା ପୁଣି ଡାକିଲା- ଏଇ... ଏଇ ! ନରେଂଦ୍ର ବି ଅନୁଚ୍ଚାରିତ ଭାବେ ଡାକିଲା- ଏଇ... ଏଇ ! ଲଳିତା ଡାକୁଛି, ଶୁଣିପାରୁନୁ ! ଛିଃ !

ଟୋକା ଯାଇ କଂଡକ୍‌ଟର ସିଟ୍ ପାଖରେ ହେଲାଣି । ଜେମା ଡାକିଲା ଟିକିଏ ବଡ଼ ପାଟିରେ- ଏଇ... ! କଂଡ଼କ୍‌ଟର ହାତ ଆଂଗୁଳି ଅଟକେଇଦେଲା ଟୋକାଟାକୁ । ଜେମା ହାତରୁ ପର୍ସଟା ନେଇ ଧରେଇ ଦେଲା ତା' ହାତରେ । ଟୋକାଟି ହସିଲା- କଂଡକ୍‌ଟର କହିଲା- ତାକୁ ଆଜ୍ଞା ଡାକିଲେ ଶୁଣିବନି । ଜନ୍ମକାଲ, ବାୟାଟା । କଂଡକ୍‌ଟରର ଶବ୍ଦଗୁଡ଼ିକୁ ଶୁଣିଲା ନରେଂଦ୍ର । ଏ କାହାଣୀର ଶେଷ ଶବ୍ଦ । ସିଟ୍‌ରୁ ଉଠୁଉଠୁ ବସିପଡ଼ିଲା ସ୍ଥାଣୁ ହୋଇ ।

ଜେମା ଘରୁ କିଏ ଲୋକବାକ ଶଗଡ଼ ନେଇ ଆସିଥିଲେ । ଜେମା ଶଗଡ଼ରେ ବସିଯାଉଛି । ନଈ ଧାରେ ଧାରେ ଯାଉଛି ଶଗଡ଼ । ବଳଦ ବେକର ଘଂଟି ବାଜୁଛି ଟିନ୍‌ଟିନ୍ । ବିସ୍ତୃତ ମହାନଦୀ ବାଲିରେ ଛିଡ଼ା ହୋଇ ନରେଂଦ୍ର ଆକାଶକୁ ଚାହିଁଲା । ଅନେକ ସମୟ ଧରି । ଗୋଟେ ଏକୁଟିଆ ପକ୍ଷୀ ଉଡ଼ି ଉଡ଼ି ଯାଉଚି- ବଗ କି ବାଦୁଡ଼ି । ମନେ ମନେ କହିଲା- ମୁଁ ବା ଆଉ କ'ଣ କରିପାରିଥାଂତି ? ମୁଁ ତ ନିମିତ୍ତ ମାତ୍ର ।

ପଛରୁ ସେଇ ମୋଟୁ ଭଦ୍ରଲୋକଂକ ସ୍ୱର ଶୁଭିଲା । ମୁଁ ଆଉ କ'ଣ କହୁଥିଲି କି ? ସେଇକଥା, ସେଇକଥା ।

ନରେଂଦ୍ର ବୁଲି ଚାହିଁଲା- କେହି ନାହାଂତି ।



# ଲୋଭ

## ଦେବବ୍ରତ ମଦନରାୟ

ଓଦା ସରସର ହୋଇ ଗୋପିଆ ଘର ଭିତରକୁ ପଶିଆସିବା ଦେଖି କମଳୀ ପାଟିକରି ଉଠିଲା- "ପିଣ୍ଡା ତଳେ ପୋଛିପାଛି ହୋଇ ଆସିପାରିଲୁନୁ- ଏକାଥରକେ ଡେଇଁ ଆସିଲୁ ଘର ଭିତରକୁ । ମୁଁ ଆଉ ଏତେ ଥର ଲିପି ପାରିବିନି -"

ଗୋପିଆ ତାକୁ ନୀରବ ରହିବାକୁ ଆଖିରେ ଠାରି ଦେଲା । ତା'ପରେ ଦଦରା କବାଟକୁ ଆଉଜାଇ ଦେଲା । ଘର ଭିତରେ ଖେଳିଲା ସାମାନ୍ୟ ଅନ୍ଧାର । କାରଣ ଫୁଟି ଯାଇଥିବା ଚାଳ ବାଟେ ଖରା ଆସି ପଡୁଥିଲା ଉତୁରିଲା କ୍ଷୀର ପରି ଘର ଭିତରେ । ବିସ୍ମିତ ହେଲା କମଳୀ । ଚାରିଆଡକୁ ଥରୁଟିଏ ଚାହିଁ ଓଦା ଲୁଙ୍ଗିକୁ ଫିଟେଇଲା ଗୋପିଆ । ତା' ଅଣ୍ଟାରେ ଥିବା କାଦୁଅ ମେଞ୍ଚାଟା ଖସି ପଡିଲା ମାଟି ଚଟାଣ ଉପରେ ।

"କ'ଣ ?" କମଳୀ ଧୀର ସ୍ୱରରେ ପଚାରିଲା ।

ତଳୁ ମାଟି ଟେଳାକୁ ଗୋଟାଇ ଗୋପିଆ କବାଟ ପାଖକୁ ଗଲା । ଆଁ ହୋଇଥିବା କବାଟ ଫାଙ୍କରେ ବାହାରକୁ ଚାହିଁ ପୁଣି ଫେରିଆସିଲା କମଳୀ ପାଖକୁ ।

"ସାଆନ୍ତଙ୍କ କୂଅରେ ଢାଳ ପଡିଯାଇଥିଲା । ତାକୁ ଖୋଜୁଥିବାବେଳେ ଏଇ ଜିନିଷକୁ ପାଇଛି । ଲୁଚାଇ କରି ନେଇଆସିଛି । ନ ହେଲେ ସାଆନ୍ତେ ଦେଖିଥିଲେ-"

ମାଟି ଟେଳାକୁ ଚାହିଁଲା କମଳୀ । -"ସେଇଟା କ'ଣ ?"

ହସ ରେଖାଟିଏ ଗୋପିଆ ମୁହଁରେ ଦେଖାଦେଲା । -"ତୁ ଦେଖିବୁ ତା'ହେଲେ" ଏହା କହି କାନ୍ଥ କଣରେ ଥିବା ମାଠିଆ ପାଣିରେ କାଦୁଅ ଟେଳାକୁ ସେ ଧୋଇଲା । ମାଟି ଧୋଇ ହୋଇଗଲା ଧୀରେ ଧୀରେ । ତା' ହାତ ଭିତରେ ଚିକ୍ ଚିକ୍ କରି ଉଠିଲା ପଟେ ପାଉଞ୍ଜି । - "ହଇଲୋ, ଏ କଳା ରୂପାରେ ତିଆରି ନୁହେଁ- ଖାଣ୍ଟି ଚାନ୍ଦିରେ-"

"ଚାନ୍ଦିରେ-" ଆନନ୍ଦରେ ଆତ୍ମହରା ହୋଇଗଲା କମଳୀ ।

କମଳୀ ଆନନ୍ଦରେ ଆତ୍ମହରା ହେବାର କାରଣ ଥିଲା । ଗରିବ ଘରର ଝିଅଟିଏ । ଦିନେ ଚୁଲି ଜଳିଲେ ଆର ଦିନକ ତା' ବାପ ଘରେ ଚୁଲି ଜଳୁ ନଥିଲା । ଭୋକ ଉପାସରେ ଚୁଲି ଉପରେ ସେକିସାକି ହୋଇ ବଡ ହୋଇ ଯାଇଥିଲା ଆପଣା ଛାଏଁ । ବଡ ହେଲା ପରେ ବାପ ବାହା କରିଦେଲା ବିନା ବାଜା, ବିନା ଭୋଜିରେ । ଭୋଜିଭାତ ନଦେଇଥିବାରୁ ଆଜିଯାଏ ବାପ ଜାତିରୁ ବାସନ୍ଦ ଅଛି । କଥା ଦେଇଥିଲା ସୁନା ମୁଦିଟିଏ ଜୋଇଁକୁ ଦେବା ପାଇଁ... । ମାତ୍ର ମୁଦିଟିଏ ସେ ଦେଇପାରି ନଥିଲା । ତେଣୁ ବେଳେ ବେଳେ ସେ ଖୁଣ୍ଟା ଶୁଣେ ଗୋପିଆ ପାଖରୁ । ଏ ଘରେ ପାଦ ଦେଲା ପରେ ସେ ଭାବିଥିଲା ତା' ଭାଗ୍ୟ ବଦଳିଗଲା । କଷଣ ସରିଗଲା । କିନ୍ତୁ ତା' ଭାଗ୍ୟରେ ହେଲା ନାହିଁ । ଅଭାଗିନୀର କପାଳ ସବୁବେଳେ ଫଟା । ଏଠାରେ ମଧ୍ୟ ପେଟ ପୂରେ ନାହିଁ ସବୁଦିନ । ଯେଉଁଦିନ ଗୋପିଆକୁ କାମ ମିଳିଲା ସେହି ଦିନଟି ସେମାନେ ପେଟ ପୂରାଇ ଖାଆନ୍ତି । ଆଉ ଅନ୍ୟ ଦିନେ ସେହିପରି । ଓପାସ । ନିଜ ଗାଆଁରୁ ଆସୁଥିବା ଲୋକଙ୍କୁ

ସେ ମୁହଁ ଦେଖାଇ ପାରେ ନାହିଁ । ସେମାନେ ଗଲାବେଳେ କହନ୍ତି- ତୋ' ବାପ ତୋତେ ବୁଡାଇ ମାରିଦେଲା । ଏହି ଦୁଃଖ, ଦାରିଦ୍ର୍ୟ ଭିତରେ ରୂପା ପାଉଞ୍ଜି ଦେଖିବା ସ୍ୱପ୍ନର କଥା । କିନ୍ତୁ ଗୋପିଆ ହାତରେ ପଟେ ପାଉଞ୍ଜି ଦେଖି ସେ ବିଶ୍ୱାସ କରିପାରିଲା ନାହିଁ ନିଜ ଆଖିକୁ ମଧ୍ୟ । ନିଜକୁ ମଧ୍ୟ । ଛଡାଇ ଆଣିଲା ସେ ପାଉଞ୍ଜିକୁ ଗୋପିଆ ହାତରୁ ।

ହସିଲା ଗୋପିଆ । -"ହଇଲୋ ଏମିତି ଛଡାଇ ନେଉଛୁ କ'ଣ ? ଆଉ କିଏ କ'ଣ ନେଇଯାଉଛି ? ଏଇଟା ଏବେ ତୋର ।"

କମଳୀ ଅତି ସାବଧାନରେ ପାଉଞ୍ଜିକୁ ହାତ ପାପୁଲି ଭିତରେ ଏପଟ ସେପଟ କଲା । ତା'ପରେ ବସି ପଡିଲା ଚଟାଣ ଉପରେ । ଧଡି ଚିରି ଯାଇଥିବା ଲୁଗାକୁ ଗୋଡ ଭଣ୍ଡା ଉପରକୁ ଟେକି ପାଉଞ୍ଜିକୁ ପିନ୍ଧିଲା । ତା'ପରେ ହଲାଇଲା ଗୋଡ । ଛମ୍‌ଛମ୍ କରି ଉଠିଲା ପାଉଞ୍ଜିର ଘୁଙ୍ଗୁର । ପୁଣି ଆଉ ଥରେ ହଲାଇଲା ଗୋଡ । ପୁଣି ଥରେ ବାଜି ଉଠିଲା ଘୁଙ୍ଗୁର । ମାତ୍ର ଏଥରକ ଶବ୍ଦରେ ତା' ଶରୀର ଭିତରେ କମ୍ପନଟିଏ ଖେଳିଗଲା । ସେହି କମ୍ପନରେ ହିଲ୍ଲୋଳୀ ଗଲା ତା' ଶିରାପ୍ରଶିରା । ଠିଆ ହୋଇପଡିଲା ସେ । ତା' ପରେ ଘର ଭିତରେ ନାଚି ବୁଲିଲା ହରିଣୀ ପରି । ରୁଣୁଝୁଣୁ ଶବ୍ଦରେ ହସିଉଠିଲା ଘର ଭିତର ।

ଗୋପିଆ ନିଜ କାନରେ ହାତ ଦେଲା । କମଳୀର ମଥା ଖରାପ ହୋଇଗଲା ନା କ'ଣ ? ଚିତ୍କାର କରି ଉଠିଲା ସେ । ଥମ୍‌କରି ରୁଣୁଝୁଣୁ ଶବ୍ଦ ନିଥର ହୋଇଗଲା । ଥମକିଗଲା ଆତ୍ମହରା ମନ ।

"ସାବଧାନ ! ଲୋକେ ଶୁଣିଲେ କ'ଣ କହିବେ ? ମୁଁ କେଉଁଠାରୁ ଚୋରିକରି ଆଣିଛି ବୋଲି । ତା'ପରେ ଚୌକିଦାରକୁ କହିଦେବେ । ଶେଷରେ-"

ପାଦ ଚିପିଚିପି କମଳୀ ତା' ପାଖକୁ ଆସିଲା । ଛାତିରେ ମଥା ରଖିଲା । ନିଜ ପାଦକୁ ଦେଖାଇ କହିଲା- "ଆଉ ପଟେ ପାଇବୁନି ?"

ବିସ୍ମିତ ହେଲା ଗୋପିଆ । ବୁଝିପାରିଲା ନାହିଁ କମଳୀର କଥା ।

"ଆଉ ପଟେ- ଏହାରି ପରି-" ବୁଝାଇଲା ଢଙ୍ଗରେ କହିଲା କମଳୀ । ଏଥରକ ବୁଝିଲା ସେ ।

"ଆଉ ପଟେ କେଉଁଠୁ ପାଇବି ? ଭାଗ୍ୟରେ ଥିଲା ବୋଲି ଏଇଟାକୁ ପାଇଲି । ସେ କୂଅରେ ଡାଳ ନପଡିଥିଲେ କ'ଣ ମୁଁ ସେ କୂଅରେ ପଶିଥାଆନ୍ତି, ନା ଏଇଟା ମିଳିଥାଆନ୍ତା-"

"ମୁଁ ସେଇ କଥା ହିଁ କହୁଛି- ସେଇ କୂଅରୁ ପଟେ ପାଇଲୁ- ଆଉ ପଟେ ନିଶ୍ଚୟ ସେହି କୂଅ ଭିତରେ ଥିବ- ଲୋକମାନେ କୁହାକୁହି ହୁଅନ୍ତି ସାଆନ୍ତଙ୍କ ବୋହୂ କୁଆଡେ ସେହି କୂଅକୁ ଡେଇଁ ଜୀବନ ହାରିଥିଲା- ତୁ ଯଦି ଆଉ ଥରେ-"

ଚିହିଁକି ଉଠିଲା ଗୋପିଆ ।

"କ'ଣ କହିଲୁ ଆଉ ଥରେ- କ'ଣ ଆଉ ଥରେ ମୁଁ ପଶିବି ସେହି କୂଅ ଭିତରେ ? ତୁ ଜାଣିଛୁ ସେ କୂଅର ଗହୀର କେତେ, ସାତ ଆଠ ତାଳ ପାଣି ହେବ କି ତା'ଠାରୁ ବେଶୀ । ଥରେ ବୁଡିକରି ଉଠିଲେ ମଣିଷର ଦମ୍ ଚାଲିଯାଏ । ସାଆନ୍ତେ ପାଞ୍ଚ ଛଅ ଥର କହିଲେ ବୋଲି ମୁଁ ସାହସ କରି କୂଅ ଭିତରେ ପଶିଥିଲି । ମୁଁ ଆଉ ଥରେ ପଶି ପାରିବି ନାହିଁ । ତୁ ଫିଟାଇଲୁ ପାଦରୁ ସେ ପଟକୁ ମୁଁ ରଖିଦିଏ ଚାଳରେ-"

ଗୋପିଆ ଅଣ୍ଟା ଚାରିପଟରେ ହାତ ଛନ୍ଦିଲା କମଳୀ ।

"ଶୁଣ ମୋ' କଥା- ତୋ' ଜୀବଦ୍ଦଶାରେ ତୁ ଆଉ ପଟଟିଏ କରିପାରିବୁନି । ବାପ ତ ତୋତେ ମୁଦିଟିଏ ଦେଇନି ବୋଲି ତାକୁ ସବୁବେଳେ ଖୁଣ୍ଟା ଦେଉଛୁ । ତୁ କୂଅରୁ ଆଉ ପଟେ ଆଣିଦେଲେ ମୁଁ ଦଶରାରେ ପିନ୍ଧି ଆମ ଗାଆଁକୁ ଯାଆନ୍ତି । ମୋ' ବାପ ମୋତେ ଭସାଇ ଦେଇଛି ବୋଲି ଯେଉଁମାନେ କହନ୍ତି, ସେହିମାନଙ୍କ ଆଗରେ ଏହି ପାଉଞ୍ଜି ହଳକ ପିନ୍ଧି ତୁମର ବଡିମା ଦେଖାଇ ହୁଅନ୍ତି-"

ଏଇକଥା ଶୁଣି ଗୁମ୍‌ମାରି ବସି ପଡିଲା ଗୋପିଆ । ବିତିଲା ସମୟ । ଓଦାଲୁଗାରୁ ପାଣି ନିଗିଡି ଓଦା ହେଲା ମାଟି ଚଟାଣ । ଓଦା ମାଟି ଚଟାଣ ଉପରେ କମଳୀର ପାଦରେ ଥିବା ପଟେ ପାଉଞ୍ଜି ଉପରେ ସେ ନଜର ପକାଇଲା । ଧୀରେ ଧୀରେ ବିହ୍ୱଳିତ ହୋଇପଡିଲା । କିଛି ସମୟ ପୂର୍ବରୁ ତା' ଭିତରେ ନାହିଁ କରୁଥିବା ନିପାରିଲା ମଣିଷଟି ହଠାତ୍ ଶକ୍ତିଶାଳୀ ହୋଇପଡିଲା । ମାଟିକୁ ବିଧାଟିଏ ପକାଇଲା ସେ ।

"ହଉ ଠିକ୍ ଅଛି ମୁଁ କୂଅ ଭିତରେ ଆଉ ଥରେ ପଶିବି- କିନ୍ତୁ ଦିନରେ ନୁହେଁ । ରାତିରେ, ଅନ୍ଧାରରେ-"

କମଳୀ ମୁହଁରେ ହସ ଫୁଟି ଉଠିଲା । ଚମ୍ପାଫୁଲର ରଙ୍ଗ ପରି । ପାଉଞ୍ଜି ପଟକ ଅତି ଯତ୍ନରେ ଓହ୍ଲାଇ ବାଉଁଶ ନଳା ଭିତରେ ପୂରାଇ ଚାଳରେ ସେ ଗୁଞ୍ଜି ଦେଲା ।

"ଏ- ସେଇଠି ଚିହ୍ନଟିଏ ଦେ' - ନହେଲେ ଭୁଲିଯିବୁ-"

ଚେତେଇ ଦେଲା ଗୋପିଆ ।

ଆସିଲା ରାତି । ଆସିଲା ଅନ୍ଧାର । ନିଶୂନ୍ ହେଲା ଗାଆଁ ଦାଣ୍ଡ । ପୂର୍ବ ଯୋଜନା ଅନୁଯାୟୀ ଗୋପିଆ ଘରୁ ବାହାରିଲା । ତା' ପଛେ ପଛେ ରସି ଧରି ଆସିଲା କମଳୀ । ସେମାନଙ୍କୁ ଦେଖି କୁକୁର କେଇଟା ଭୁକି ଉଠିଲେ । ସେ ଦୁହେଁ ସେମାନଙ୍କୁ ଖାତିର ନକରି ଅତି ସତର୍କତା ସହ ଆସି ପହଞ୍ଚିଲେ କୂଅ ନିକଟରେ । ପ୍ରଥମେ ରସି ଖସାଇଲା କୂଅ ଭିତରକୁ କମଳୀ । ସେଇ ରସିକୁ ଧରି ଓହ୍ଲାଇଗଲା କୂଅ ଭିତରକୁ ଅନ୍ଧାରରେ । ଚହଲିଲା ପାଣି । କମଳୀ ମୁହଁରେ ହସ ଦେଖାଦେଲା । ପାଣିର ଅତଳ ଗହ୍ୱର ଭିତରକୁ ଚାଲିଗଲା ଗୋପିଆ । ଦରାଣ୍ଡି ପକାଇଲା କାଦୁଅ ପାଣି । ହାତରେ ଧରାପଡିଲା ଭଙ୍ଗା ମାଠିଆର ଟୁକୁରା ଅଂଶ । ଗୋଡି । ପଥର । ଏମିତି ସମୟରେ ଉଠି ଆସିଲା । କୂଅ ଆଂଶ ଧରି ଦମ୍ ନେଲା । ଉପରେ କମଳୀ ଠିଆ ହୋଇଥାଏ ସେହିପରି ଦଉଡି ହଲିବାକୁ ଅପେକ୍ଷା କରି । କୂଅ ଭିତରକୁ ଅନେଇଲା ସେ- ଖାଲି ଅନ୍ଧାର । ଦିନରେ ତ କୂଅ ଭିତରେ ଦେଖାଯାଏନି । ଆଉ ପୁଣି ଏ ହେଉଚି ରାତି । ଅନ୍ଧାରିଆ ରାତି ।

ପୁଣି ଥରେ ପାଣି ଭିତରେ ବୁଡିଲା ଗୋପିଆ । ଠାକୁରଙ୍କୁ ଡାକିଲା ମନେ ମନେ । ତା ଆଖି ସାମନାକୁ କଳା କଳା ଚକାଆଖି ଆସିବା ପରିବର୍ତ୍ତେ ଆସିଲା କମଳୀର ପାଉଞ୍ଜି ପିନ୍ଧା ପାଦ । ଚମ୍ପା ରଙ୍ଗ ପାଦରେ ଚିକ୍ ଚିକ୍ କରୁଥିବା ଆମ୍ବକଷିଆ ପାଉଞ୍ଜି । ସେ ପାଦରେ କି ସମ୍ମୋହନ ଶକ୍ତି ଥିଲା କେଜାଣି ସେ ଆହୁରି ବୁଡାଇଦେଲା ତାକୁ ପାଣି କାଦୁଅ ଭିତରେ । ଭୁଲିଗଲା ନିଜର ସ୍ଥିତି । ଘାଣ୍ଟି ପକାଇଲା ପଙ୍କ କାଦୁଅ । କେତୋଟି ମୁହୂର୍ତ୍ତ ପରେ ପଙ୍କ ଭିତରୁ ହାତ କାଢି ଆଣିଲା ବେଳକୁ ସେ ଚମକି ପଡିଲା । ତା'ପରେ ମୁହଁରେ ଚହଟିଗଲା ହସ । ଉଠିଲା ହୁଙ୍କା ମାରି ପାଣି ତଳୁ ।

ଭୁକିଉଠିଲା ବିଲୁଆ ଅନ୍ଧାରରେ । କାହିଁ କେତେ ଦୂରରେ । କମଳୀକୁ ଡର ଲାଗିଲା । ସେ ଡାକିଲା ଗୋପିଆକୁ ଅସ୍ପଷ୍ଟ ସ୍ୱରରେ । କିନ୍ତୁ ତାହାରି ସ୍ୱରରେ ପ୍ରତିଧ୍ୱନି ଖୋଲି ଦେଲା ସାଆନ୍ତଙ୍କ ଦରଜା । ଘର ଭିତରୁ ଛିଟିକି ହୋଇପଡିଲା ଲଣ୍ଠନ ଆଲୁଅ କୁଅ ଉପରେ ।

"ସେଠି କିଏ- ?"

ସାଆନ୍ତଙ୍କ ଧମକିଲା ସ୍ୱରରେ କମଳୀ ହାତରୁ ଖସିପଡିଲା ରସିଟା କୂଅ ଭିତରେ । ଛାନିଆରେ ସେ ମିଶିଗଲା ଅନ୍ଧାର ଭିତରେ ।

ସାଆନ୍ତ କୂଅ ପାଖକୁ ଆସିଲେ । ସେଠାରେ କାହାକୁ ଦେଖି ପାରିଲେ ନାହିଁ । ଘର ଭିତରକୁ ପୁଣି ଫେରିଗଲେ । କୂଅ ଭିତରେ ସାଆନ୍ତଙ୍କ ସ୍ୱର ଶୁଣିପାରିଲା ଗୋପିଆ । ପାଣିତଳୁ ଉଠି ଆସି ରସି ଭିଡୁଥିବା ସମୟରେ ରସିଟି ଖସି ପଡିଲା ତା' ଉପରେ । ସେ ପୁଣି ଖସିଗଲା ଅତଳ ଗହ୍ୱର ପାଣି ଭିତରେ । ଛନ୍ଦି ହୋଇଗଲା ରସିରେ । ତୁବୁଟୁବୁ ହେଲା । ଚିତ୍କାର କରିପାରିଲା ନାହିଁ ସେ ।

କିଛି ସମୟ ପରେ ଚହଲୁଥିବା ପାଣି ସ୍ଥିର ହୋଇଗଲା ।

କମଳୀ ଅନ୍ଧାରରେ ଘରକୁ ପଳାଇ ଆସିଲା । ଭୟରେ ଗାଧୋଇ ପଡିଲା ଠୋପା ଠୋପା ଝାଳରେ । ସାଆନ୍ତାଙ୍କ ହାତରେ ଗୋପିଆ ଧରାପଡିବାର ଭୟ ତାକୁ ରାତିସାରା ଅନିଦ୍ରା ରଖିଲା । ମଝିରେ ମଝିରେ କାନ୍ଥ ଠଣାରେ ଥିବା ଠାକୁରଙ୍କ ପାଦ ତଳେ ମୁଣ୍ଡିଆ ମାରି ଆକୁଳ ଅନୁରୋଧ କରିଥିଲା ।

ଆସିଲା ସକାଳ । ସାଆନ୍ତଙ୍କ କୂଅମୂଳେ ଜମା ହୋଇଗଲେ ଗାଆଁ ଲୋକ ।

ଦଦରା କବାଟ, ଫୁଟି ଯାଇଥିବା ଚାଳ, ସାତସିଆଁ ଲୁଗାର ଘର ଭିତରୁ ଧୀରେ ଧୀରେ ଶୁଣାଗଲା କମଳୀର କାନ୍ଦ । ଗଲାକାଲି ଗୋପିଆର ଓଦା ଲୁଗାର ପାଣିରେ ଭିଜିଥିବା ଚଟାଣ ଆଜି ଭିଜିଲା କମଳୀର ଲୁହରେ ।

ଗାଆଁର ସ୍ତ୍ରୀ ଲୋକମାନେ ଆସିଲେ । ସେଇ ଚଟାଣରେ ପିଟି ଚୂନା କରିଦେଲେ କମଳୀ ହାତର କେଇଟା ପାଣିକାଚ ।

ସୂର୍ଯ୍ୟ ମଥାନ ଉପରକୁ ଆସିଲାବେଳକୁ ଚିତା ଜଳିଲା ଗାଆଁ ମଶାଣିରେ । ଗୋପିଆ ପେଟ ଭିତରେ ପାଣି ଭରି ରହିଥିଲା । ସହଜରେ ଜଳିଲା ନାହିଁ । ଅଧା ଜଳା ଅବସ୍ଥାରେ ଜାତି ଭାଇ ଛାଡି ପଳାଇ ଆସିଲେ । କିଏ ବା ଜାଳି ଥାଆନ୍ତା ଦିନସାରା ବସିରହି । ମାଲପା ଟିକିଏ ନଥିଲା ଦେହରେ ଲଗାଇ ଗାଧୋଇବା ପାଇଁ । ତିକ୍ତ ଖାଇବାକୁ କମଳୀ ଘରେ ମୁଠାଏ ଚାଉଳ ନଥିଲା । ଜାତିଭାଇ ଛାଡି ଆସିଲା ପରେ ବିଲୁଆ କୁକୁର ଟଣାଟଣି ହେଲେ ନିଜ ଭିତରେ ଶବର ଅବଶିଷ୍ଟାଂଶ ଖାଇବା ପାଇଁ ।

କମଳୀ ବସିଥିଲା ସେହି ମାଟି ଚଟାଣ ଉପରେ । ଏଯାଏ ପୋଛି ହୋଇ ନାହିଁ ଓଦା ଚଟାଣ ଉପରେ ଗୋପିଆର ପାଦଚିହ୍ନ । କିନ୍ତୁ ଆଉ ନଥିଲା ଗୋପିଆ ଏବଂ ସେ ବଞ୍ଚି ଥାଉ ଥାଉ ମଧ୍ୟ ପାଲଟିଛି ଶବ ।

ଏତିକିବେଳେ ଦଦରା କବାଟକୁ ଠେଲି ଓଦା ସରସର ହୋଇ ପଶିଆସିଲା ଦଶ ବାରବର୍ଷର ପୁଅ ସନିଆ । ଗୋପିଆ ମୁହଁରେ ମୁଖାଗ୍ନି ଦେଇ ଫେରିଛି । ଜୀବନ କ'ଣ ନ ଜାଣିବା ପୂର୍ବରୁ ମୃତ୍ୟୁକୁ ଭେଟିଛି ସେ ।

"ବୋଉ-"

ମଥା ଟେକିଲା କମଳୀ ।

"ଏଇଟା ବାପା ହାତ ମୁଠା ଭିତରେ ଥିଲା- ଧୋବା ନେଇ ଯାଉଥିଲା- ତାହାଠୁଁ ଛଡାଇ ମୁଁ ଆଣିଛି-"

ହାତରେ ଧରିଥିବା ଜିନିଷଟିକୁ ଫୋପାଡିଦେଲା ସେ ବିରକ୍ତିରେ । କମଳୀ ପାଦ ପାଖରେ ପଡିଲା ସେଇଟା । ତା' ଆଖିରେ ଫୁଟିଉଠିଲା ବିସ୍ମୟର ଭାବ । ଧୀରେ ଧୀରେ ହାତ ବଢାଇ ଛୁଇଁଲା ଅଛୁଆଁ ଜିନଷକୁ ଛୁଇଁଲା ପରି । ତାହାରି ହାତର ସ୍ପର୍ଶରେ ରୁଣୁଝୁଣୁ ହୋଇ ବାଜି ଉଠିଲା ସେଇଟି । ଶିହରଣଟିଏ ଖେଳିଗଲା ତା' ଭିତରେ । ତଳୁ ଉଠାଇ ଆଣି ମୁଠାଇ ଧରିଲା ଛାତି ପାଖରେ ।

ଏତିକିବେଳେ ପୁରୋହିତ ଆସି ପହଞ୍ଚିଲେ । ସନିଆ ପିଢାଟିଏ ଦେଲା । ପୁରୋହିତ ତା' ଉପରେ ବସି ଝାଳୁଆ ମୁହଁକୁ ଗାମୁଛାରେ ପୋଛିଲେ । -"ଆଜି ଯିଏ ଜନ୍ମ ନେଇଛି କାଲି ସେ ମୃତ୍ୟୁ ଲାଭ କରିବ- ଗୋପିଆଟା ଚାଲିଗଲାନି ଯେ ତରିଗଲା ଏ ସଂସାରରୁ । ତା' କଥା ଭୁଲି ଯାଇ ତା' ପାଇଁ କର୍ମ କରିବାକୁ ପଡିବ- ନହେଲେ ତା' ଆତ୍ମା ଶାନ୍ତି ପାଇବନି । ଘୂରି ବୁଲିବ ସେ ଏଇ ସଂସାରରେ ପ୍ରେତ ହୋଇ-"

"ତୁମେ ନନା କିଛି କର-"

"କ'ଣ କରିବି- ? ପଇସା ଦେଲେ ହେବ- ସବୁ କରିଦେବି । ସେ ମୁକ୍ତି ପାଇଯିବ-"

କମଳୀ ଆଡକୁ ଚାହିଁଲା ସନିଆ । କିଛି ନକହି କମଳୀ ମାଟିରେ ଭରା ଦେଇ ଉଠିଲା । ଚାଳରେ ଖୋସିଥିବା ବାଉଁଶ ନଳାକୁ କାଢି ଆଣି ସେଥିରୁ ପାଉଞ୍ଜିକୁ ବାହାର କଲା । ଆଉ ହାତରେ ଧରିଥିବା ମାଟିଲଗା ପାଉଁଜିକୁ ଧୋଇ ପରିଷ୍କାର କଲା ପାଣିରେ ।

"ଟଙ୍କା କେତେ ଲାଗିବ- ?" ପଚାରିଲା ସନିଆ ।

"କେତେ ଆଉ କ'ଣ- ? ତୁ ଯେତେ ଚାହିଁବୁ ସେତେ ଖର୍ଚ୍ଚ କରିପାରିବୁ- ମାତ୍ର ତୋ' ଅବସ୍ଥା ଯାହା- ଶହେ ଖଣ୍ଡେ ହେଲେ ଚଳିଯିବ-"

କମଳୀ ପାଉଞ୍ଜି ହଳକୁ ସନିଆ ହାତକୁ ବଢାଇ ଦେବା ପାଇଁ ଆଗକୁ ଆସିଲାବେଳେ ପାଦ ପଡିଗଲା ଓଦା ମାଟିରେ । ଗତକାଲି ଗୋପିଆ ଦେହର ନିଗିଡା ପାଣିରେ ଭିଜିଥିବା ମାଟି ଉପରେ । ଚମକିପଡି ହାତ ଫେରାଇନେଲା ସେ ।

"ନାଃ- ନାଃ- ଆମର ଦରକାର ନାହିଁ ଶୁଦ୍ଧି ହେବା- ତୁମେ ଯାଅ ଏଠାରୁ-"

ବୁଝିପାରିଲା ନାହିଁ ସନିଆ । ନିର୍ବାକ ନିସ୍ପନ୍ଦ ହୋଇଗଲା ସେ କମଳୀର ଚିତ୍କାରରେ । ମାତ୍ର ପୁରୋହିତ ରାଗ ତମତମ ହୋଇ ପିଢାରୁ ଉଠି ଠିଆ ହେଲେ ।

"ଯାଃ, ଏବେ ନର୍କକୁ ଯାଉ ଗୋପିଆର ଆତ୍ମା- ପିଣ୍ଡ ପାଣି ନପାଇ ଘୂରି ବୁଲୁ ପ୍ରେତ ହୋଇ"- ତା'ପରେ ଗାମୁଛାକୁ କାନ୍ଧରେ ପକାଇ ସେ ଚାଲିଗଲେ ।

ସେ ଯିବା ପରେ ସନିଆ କମଳୀ ପାଖକୁ ଆସିଲା । ଅନାଇଲା ଅବୁଝା ଆଖିରେ । ଅସ୍ପଷ୍ଟ ଭୟ ବିଜଡିତ ସ୍ୱରରେ ଡାକିଲା- "ବୋଉ"

କମଳୀ କୌଣସି ଉତ୍ତର ନଦେଇ ସେହି ଓଦାମାଟିରେ ପାଉଞ୍ଜି ହଳକୁ ଧରି ବସି ପଡିଲା ଧ୍ୟାନମଗ୍ନା ସନ୍ନ୍ୟାସିନୀ ପରି ।



# ମୁଖାଗ୍ନି

## ଗାୟତ୍ରୀ ସରାଫ୍

ଛଅ ମାସ କାଳ ମୃତ୍ୟୁ ସହ ସଂଗ୍ରାମ କଲେ ମୋ ବାପା । ଆଜି ସକାଳେ ଚାଲିଗଲେ । କାଲି ସନ୍ଧ୍ୟାରୁ ଲାଗୁଥିଲା ସେ ଆଉ ରହିବେ ନାହିଁ । ତେଣୁ ମୁଁ କଲିକତାରେ ରହୁଥିବା ମୋ ବଡ଼ଭାଇଙ୍କୁ ଜଣେଇ ଦେଲି: ଏଥର ଆସିଲେ ଆଉ ତୁମକୁ ଅପେକ୍ଷା କରିବାକୁ ପଡ଼ିବ ନାହିଁ । ସେମାନେ ଆସୁଥିବେ । ତିନିଟା, ଚାରିଟା ସୁଦ୍ଧା ପହଞ୍ଚିଯିବେ । ବାପାଙ୍କ ମୃତ୍ୟୁ ସମ୍ବାଦ ଖୁବ ଶୀଘ୍ର ପ୍ରଚାରିତ ହୋଇଗଲା । ସାଙ୍ଗେ ସାଙ୍ଗେ ବନ୍ଧୁବାନ୍ଧବ, ଆତ୍ମୀୟ ସ୍ୱଜନଙ୍କ ଭିଡ଼ ଜମିଲା । ମତେ ସେମାନେ ସାନ୍ତ୍ୱନା ଦେଲେ । ବାପାଙ୍କ ଭଲ ଗୁଣ ସଂପର୍କରେ ଯିଏ ଯାହା ଜାଣିଥିଲେ ଜାହିର୍ କଲେ । ସମସ୍ତେ ବଡ଼ଭାଇଙ୍କୁ ଖୋଜିଲେ ଏବଂ ତାଙ୍କୁ ଅପେକ୍ଷା କରାଯାଉ ବୋଲି କହିଲେ । ମୁଁ କହିଲି, ''ମୁଁ ମୁଖାଗ୍ନି ଦେବି । କ୍ରିୟାକର୍ମ କରିବି । ଭାଇଙ୍କର ହୁଏତ ଡେରି ହୋଇପାରେ । ବାପା ଆଉ କେତେ ସମୟ ଏମିତି ପଡ଼ି ରହିବେ ?'' ମୋ ସ୍ୱର, ମୋ ଶବ୍ଦ ଶୁଣି ସମସ୍ତେ ଚମକି ଗଲେ । ଜଣେ ଆଉ ଜଣକୁ ଚାହିଁଲେ । ତା'ପରେ ମୋ ଆଡ଼କୁ ଅବିଶ୍ୱାସର ଚାହାଣୀ ଫିଙ୍ଗିଲେ । ଗୁଣୁ ଗୁଣୁ ସ୍ୱରରେ କେତେ କ'ଣ କହିଲେ । ହେଲେ ମୁଁ ନିଷ୍ପତ୍ତି କରିସାରିଥାଏ । ମୁଁ ମୁଖାଗ୍ନି ଦେବା କଥା ନିଶ୍ଚିତ ରୂପେ ଏକ ଅସାଧାରଣ ଘଟଣା । ତେଣୁ ମୋ ଶବ୍ଦମାନଙ୍କରେ ହଠାତ୍ ଯେମିତି ଡେଣା ଖଞ୍ଜି ହେଲା । ଯିଏ ଶୁଣିଲା ବିସ୍ମିତ ହେଲା । ଚହଳ ପଡ଼ିଲା ସହରରେ । କିଛି ଲୋକ କହିଲେ, ''ଅନେକ ଜାଗାରେ ଏବେ ଝିଅମାନେ ମୁଖାଗ୍ନି ଦେଉଛନ୍ତି । 'ପୁଅ ଆଉ ଝିଅ ଭିତରେ ତଫାତ୍ ନାହିଁ'ର ସ୍ୱର ଏକ ଫ୍ୟାସନ୍ ହୋଇଛି, ତେଣୁ ଏ ଫାର୍ସ । ହେଲେ ଝିଅମାନେ ସେଇ ଝିଅ । ପୁଅର ଯେଉଁ ଗୌରବ, ସେମାନେ କେଉଁଠୁ ପାଇବେ ?''

ଆଉ କିଛି ଲୋକ କହିଲେ, ''ଖାଲି ମୁଖାଗ୍ନି ଦେଲେ ତ କାମ ସରେନା । ଦଶବାର ଦିନର ଯେଉଁ କଠୋର ଦାୟିତ୍ୱ ତାକୁ କ'ଣ ଜଣେ ଝିଅ ତୁଲେଇ ପାରେ ?''

ଆଲୋଚନା, ସମାଲୋଚନା ମତେ ପୁଣି ରିଲେ ହେଉଥିଲା । ମୁଁ ସବୁ ଶୁଣୁଥାଏ । ମତେ କିଛି ସ୍ପର୍ଶ କରୁନଥାଏ । ମୁଁ ଅଟଳ । ମୁଁ ପାରିବି, ସବୁପାରିବି । ମୋ ବାପାଙ୍କ ଅସୁମାରୀ ସ୍ନେହ ପାଇଁ ତ ମୋର ଏ ନିଷ୍ପତ୍ତି । ଲୋକେ କହନ୍ତୁ । ମୁଁ ପଛଘୁଞ୍ଚା ଦେବି ନାହିଁ । ବାପାଙ୍କ ମୃତ ଦେହଟି ଏବେ ଡ୍ରଇଂ ରୁମରେ ରଖାଯାଇଛି । ତାଙ୍କ ମୁହଁକୁ ଚାହିଁ ମୁଁ ବସିଛି । ଲାଗୁଛି–ସେ ନିଘୋଡ଼ ନିଦରେ ଶୋଇଛନ୍ତି । ଟିକେ ପରେ ଉଠିବେ, ଆଖି ଖୋଲିବେ ଏବଂ ମତେ 'ପରୀ' ବୋଲି ଡାକିବେ । ମୁଁ ପଚାରିବି: ବାପା ! ପାଣି ଦେବି କି ? ପାଟି ଖୋଲ । ଆଁ କର । ଏଇ... ମେଡ଼ିସିନ୍‌ଟା ଖାଇ ନିଅ– କିନ୍ତୁ ଏଖାଲି ମୋର ଭାବନା । ସତ ନୁହେଁ । ସତ ଲାଗୁଛି ମିଛ ପରି । ଜାଣିଥିଲି ବାପା ଆଉ ରହିବେ ନାହିଁ, ଚାଲିଯିବେ । ଖୁବ୍ ଶୀଘ୍ର ଚାଲିଯିବେ । ଆଉ ଆଜି ସକାଳେ ସତରେ ସେ ଚାଲିଗଲେ । ବତିଶ ବର୍ଷର ଏକ ସ୍ନେହ ସଂପର୍କର ଅବସାନ ହୋଇଗଲା ।

ବାପାଙ୍କ ଗ୍ରାମୋଫୋନ୍ ଆଉ ବାଜିବ ନାହିଁ । ଭାଗବତର ଝଙ୍କାର ଶୁଭିବ ନାହିଁ । ରେଡିଓରେ କେବେ ସୁନନ୍ଦାଙ୍କ କଣ୍ଠରେ ''ଜୀବନ ପାତ୍ର ମୋ...'' ଶୁଣିଲେ କେହି ଆଉ ତନ୍ମୟ ହୋଇ

ଶୁଣିବେ ନାହିଁ । ପାନଡାଲା ଖାଲି ପଡ଼ିବ । ଗୁଆ, ଗୁଣ୍ଡି, ମସଲାର ମହକ ଆଉ ଉଠିବ ନାହିଁ । ସବୁ ହେବ ସ୍ମୃତି, ପଛକଥା, ଅତୀତ ଏବଂ ତା' ଭିତରେ ମତେ ବଞ୍ଚିବାକୁ ହେବ । ବାପାଙ୍କ ବିନା ମତେ ବଞ୍ଚିବାକୁ ହେବ । ବାପା ଶୂନ୍ୟ, ବନ୍ଧୁ ଶୂନ୍ୟ, ସଖା ଶୂନ୍ୟ ଜୀବନ ! ବାପା ଖାଲି ମୋର ବାପା ନ ଥିଲେ । ତାଙ୍କ ଭିତରେ ମୁଁ ଭେଟିଥିଲି ଜଣେ ବନ୍ଧୁଙ୍କୁ ଯିଏ ମୋର ସୁଖ ଦୁଃଖକୁ ଭାଗ କରୁଥିଲା । ଅଳି ଅଭିମାନର ମାନ ରଖୁଥିଲା ।

ହଁ, ମନେପଡୁଛି ଏବେ ମୋର ସେଇ କଥା । ବାପା ଦିନେ ମତେ କହିଥିଲେ, ''ପରୀ ! ମୋ ଆଟେଚି ଭିତରେ ଡାଇରୀଟିଏ ଅଛି । ସେଥିରେ ଗୋଟେ ଲଫାପା ଅଛି ! ଲଫାପା ଖୋଲିବୁ । କିଛି ଅଛି ତୋ ପାଇଁ । ହେଲେ ମୋ ବଞ୍ଚି ଥିବା ଅବସ୍ଥାରେ ନୁହେଁ । ଯେଉଁଦିନ ମୋର ନିଶ୍ୱାସ ବନ୍ଦ ହେବ ସେଦିନ ହିଁ ଖୋଲି ଦେଖିବୁ । ମନେ ରଖ ଆଗରୁ ନୁହେଁ କି ପରେ ନୁହେଁ–ଠିକ୍ ସେଇଦିନ । ମୋ ମୃତ ଶରୀର ଘରୁ ବାହାରିବା ଆଗରୁ... ?'' ସେଦିନ ସେ କଥାଟି ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଥିଲି । ଇଚ୍ଛା କରିଥିଲି ସାଙ୍ଗେ ସାଙ୍ଗେ ଯାଇ ଲଫାପା ଖୋଲି ଦେଖିବାକୁ । ବାପା ଶଯ୍ୟାଶାୟୀ ହେଲାବେଳେ ବି କେତେଥର କୌତୂହଳ ହୋଇଛି ଜାଣିବାକୁ, ହେଲେ ତାଙ୍କ ସହ ବିଶ୍ୱାସଘାତକତା କରି ନଥିଲି । କେତେ ସ୍ନେହରେ ବିଶ୍ୱାସର ଜଉମୁଦ ଦେଇ ବାପା କିଛି ସାଇତିଛନ୍ତି ମୋ ପାଇଁ ! କେମିତି ଖୋଲି ଦେବି ଆଗରୁ ? ନା... ଖୋଲିବି ନାହିଁ । ଖୋଲି ନ ଥିଲି । ସେମିତି ବନ୍ଦ ଥିଲା ଲଫାପାଟି ।

ଆଜି ସେଇଦିନ । ଲଫାପା ଖୋଲି ଦେଖିବା ଦିନ । ନିର୍ଦ୍ଦେଶ ଅଛି–ମୃତ ଶରୀର ଯିବା ଆଗରୁ ହିଁ ଦେଖିବି । ବାପାଙ୍କୁ ଚାହିଁଲି । ଥଣ୍ଡା କପାଳରେ ହାତ ବୁଲେଇ ଆଣି କହିଲି, ''ତୁମ କଥା ମନେ ଅଛି, ବାପା । ତୁମର ବନ୍ଦ ଲଫାପା ଏଇନେ ମତେ ଖୋଲିବକୁ ହେବ । ଜାଣେନା– କ'ଣ ରଖିଛ ମୋ ପାଇଁ । ତୁମକୁ ମୁଁ କିଛି ମାଗି ନଥିଲି । ତୁମ ସ୍ନେହ ତ ମୋ ପୁଞ୍ଜି, ସବୁଠୁ ବଡ଼ ସମ୍ପତ୍ତି ।''

ମୁଁ ଉଠି ଆସିଲି । ରୁମକୁ ଆସି ଆଟେଚି ଖୋଲିଲି । ଡାଇରୀ, କଲମ, କାଗଜପତ୍ର ସବୁକୁ ଛୁଇଁ ଦେଖିଲି । ଡାଇରୀ ଖୋଲିଲି ଧୀରେ । ତା' ଭିତରେ ଥିବା ଲଫାପାଟିକୁ କାଢ଼ିଲି ଆହୁରି ଧୀରେ । କ'ଣ ଅଛି ଏଥିରେ ? କହି ନାହାନ୍ତି ବାପା, ଗୋପନ ରଖିବାକୁ ଇଚ୍ଛା କରିଛନ୍ତି ? ଛାତିରେ, ଦେହରେ, ହାତରେ ସ୍ପନ୍ଦନ, କ'ଣ ? ଲଫାପା ଖୋଲିଲି ।

ଖୋଲିଗଲା ଏଇ–ବାପାଙ୍କ ରୁଦ୍ଧମନର ଦ୍ୱାର । ଦେଖୁଛି ମୁଁ, ପଢ଼ି ନେଉଛି । ଲଫାପା ଭିତରେ କାଗଜଟିଏ । ମୁକ୍ତା ପରି ଅକ୍ଷରରେ ବାପା କିଛି ଲେଖିଛନ୍ତି । ହଁ, ଚିଠିଟିଏ । 'ପରୀ' ସମ୍ବୋଧନ କରି ଚିଠିଟିଏ । ମତେ ସବୁ କହନ୍ତି ବାପା– କ'ଣ ବାକି ଥିଲା ? କ'ଣ ଅକୁହା ଥିଲା ? ଖୁବ୍ କୌତୂହଳର ସହ ଚିଠିଟି ପଢ଼ିଲି । ଶବ୍ଦ ସବୁ ପଢ଼ି ପଢ଼ି ଯେତିକି ଆଗକୁ ଯାଉଥାଏ, ଝୁଣ୍ଟି ପଡୁଥାଏ । ଫେର୍ ଉଠୁଥାଏ । ପାଦର ଜୋର୍, ମନର ଜୋର୍ କମି ଯାଉଥାଏ । କେମିତି ମୁଁ ଠିଆ ହେବି ? ମାଟି କାହିଁ ? ପାଦତଳର ମାଟି କାହିଁ ମୋର ? ବାପା ! ଏତେ ଦୁଃଖ ରଖିଥିଲ ମନରେ ? କହିଥାନ୍ତ ଥରେ ! ଏବେ କହିଲ ଖାଲି ଆତ୍ମାର ଶାନ୍ତି ପାଇଁ ? ମୁଁ, ସବୁରି ମୂଳରେ ମୁଁ ? ମୁଁ କେବଳ ? ଆଃ... ଅନୁଭବ କରିପାରୁଛି । ମାପି ପାରୁଛି ବର୍ତ୍ତମାନ ମୋର ସୀମା ସରହଦ୍ କେତେ ? କେତେ ମୋର ପରିଧି ? କେତେ ମୋର ଦାବି ? ଅଧିକାର ?

ବାପା ! ତୁମେ ଏ ଚିଠି ଲେଖିଛ ? ତୁମେ ମତେ ଏମିତି ଆହତ କରିଛ ? ହଁ, ହଁ, ତୁମେ । ଅଥଚ ଦେଖ, ମୁଁ ତୁମକୁ ହିଁ ଖୋଜୁଛି–ତୁମ କାନ୍ଧ ଉପରେ ମୁଣ୍ଡ ରଖି କାନ୍ଦିବାକୁ ଇଚ୍ଛା

କରୁଛି । କାରଣ ମୋର ବୋଲି ମୁଁ ଆଉ କାହାକୁ ଜାଣି ନଥିଲି । ଆଶ୍ୱସ୍ତ ଥିଲି ଏତେବର୍ଷ, ତୁମ ସ୍ନେହର ହାତ ମୋ ମୁଣ୍ଡ ଉପରେ ଅଛି ବୋଲି । ହେଲେ ନିର୍ବୋଧ ମୁଁ । ମୁଁ କ'ଣ ଜାଣିଥିଲି ଯେ ନାରୀ ସବୁବେଳେ ଏକା । ପିତା-ପୁତ୍ର-ସ୍ୱାମୀ କେହି ତା'ର ନୁହେଁ, ଅଥଚ ସେ ସମସ୍ତଙ୍କୁ ମୋର ମୋର ବୋଲି କହେ । ମିଛ ସଂପର୍କକୁ ସତ ବୋଲି ଭାବେ, ଆଶ୍ୱସ୍ତ ହୁଏ । ବାଟ ଚାଲେ ଛଳନାର ରାସ୍ତାରେ ଏବଂ ଆତ୍ମ ପ୍ରବଞ୍ଚନାର କଣ୍ଟା ଝଣ୍ଟା ଭିତରେ । ଜୀବନର ଏତେ ଗୁଡ଼ାଏ ରାସ୍ତା ସେମିତି ଏକ ଭ୍ରମରେ ପଡ଼ି ଅତିକ୍ରମ କଲି ମୁଁ ପରିଧି ମହାନ୍ତି ।

ହଁ, ଏଇ ନାଁଟି ମତେ ଦେଇଥିଲେ ମୋର ବାପା ମା' । ଆଉ ଅତି ଗେହ୍ଲାରେ 'ପରୀ' ବୋଲି ଡାକୁଥିଲେ । ଆମେ ଦୁଇ ଭାଇ ଭଉଣୀ ପିଲାବେଳୁ ମା'ଙ୍କୁ ରୁଗ୍ଣ ଅବସ୍ଥାରେ ହିଁ ଦେଖି ଆସିଥିଲୁ । ତେଣୁ ଆମ ଅଳି, ଅଭିଯୋଗ ସବୁ ବାପାଙ୍କ ପାଖରେ । ସେ ହିଁ ବୁଝନ୍ତି ଘର କଥା, ଆମ କଥା, ମା'ଙ୍କ କଥା । ତାଙ୍କ ଆଦର ଯତ୍ନରେ ଆମେ ଭାଇ ଭଉଣୀ ବଢ଼ିଛୁ, ବଡ଼ ହୋଇଛୁ । ମୁଁ ପି.ଜି. କଲାବେଳେ ମା'ଙ୍କ ମୃତ୍ୟୁ ହୋଇଥିଲା। ବାପା ଭାଇଙ୍କ ସ୍ନେହର ସୀମା ମୋ ପାଇଁ ଆହୁରି ପ୍ରସାରିତ ହୋଇଥିଲା । ପରେ ପରେ କଲିକତାର ଗୋଟେ କମ୍ପାନୀରେ ଭାଇଙ୍କ ଚାକିରି ଓ ବାହାଘର । ପରବର୍ଷ ମୋର ବାହାଘର । ବାପାଙ୍କଠୁ ମୁଁ କେବେ ଦୂରକୁ ଯାଇ ନଥିଲି । ଏତେ ବର୍ଷକାଳ ତାଙ୍କ ସ୍ନେହ ଦୋଳାରେ ଦୋଳି ଝୁଲୁଥିଲି ନିଶ୍ଚିନ୍ତରେ । ସବୁ କଥାରେ ବାପା, ବାପା ବୋଲି ଚଲୁଥିବା ଗେହ୍ଲା ଝିଅ ବାପାଙ୍କଠୁ ଦୂରେଇ ଚଳିବି କେମିତି ? ବିବାହ ତିଥି ନିର୍ଦ୍ଧାରିତ ହେବା ପରେ ଏ କଥା ଭାବି ମୁଁ ଖୁବ କାନ୍ଦିଲି । ବାପା ମୋତେ ମା'ଟିଏ ପରି ବୁଝେଇଲେ–
"ପ୍ରତ୍ୟେକ ଝିଅକୁ ନିଜ ଘର ସଂସାର କରିବାକୁ ହୁଏ । ବାପ ଘରୁ ବିଦାୟ ନେବାକୁ ହୁଏ । ଶାଶୁଘରର ବୋହୂ ହୋଇ ଚଳିବାକୁ ହୁଏ । ଏ ହେଉଛି ଆମ ଦେଶର ସଂସ୍କୃତି, ପରମ୍ପରା । ତତେ ବି ଯିବାକୁ ହେବ, ପରୀ । ଛାତିକୁ ପଥର କରି ତତେ ମୁଁ ବିଦା କରିବି । 'ସୁଖୀ ହ' ବୋଲି କାମନା କରିବି ।"

ମୋ ବାହାଘର ଆଡମ୍ବର ସହ ଶେଷ ହେଲା । ବାପାଙ୍କୁ ଏକା ଛାଡି ଦେଇ ପୁଣ୍ୟ ନାମକ ଜଣେ ଅପରିଚିତ ପୁରୁଷ ସାଙ୍ଗରେ ତାଙ୍କ ଘରକୁ ଆସିଲି । ଭାଇ-ଭାଉଜ ମତେ ବିଦା କରି କଲିକତା ଚାଲିଗଲେ । ବାପାଙ୍କ ଚାକିରି ଆହୁରି ପାଞ୍ଚ ବର୍ଷ ଥିଲା । ସେ ଏକା ରହିଲେ ଘରେ । ଚାକର ପିଲାଟିଏ ରାନ୍ଧିଲା । ସେ ଖାଇଲେ ଏକା ଏକା । ରହିଲେ ଏକା ଏକା । ତାଙ୍କୁ ଦେଖି ପାରେନା, କିନ୍ତୁ ଅନୁଭବ କରିପାରେ ତାଙ୍କ ଏକାକିତ୍ୱକୁ । ଆଖିରୁ ନିଦ ଗାଏବ୍ ହୋଇଯାଏ । ବାର୍‌ବାର୍ ଟେଲିଫୋନ କରେ । ଦଶ ପନ୍ଦର ଦିନରେ ଚାଲି ଆସେ । ତାଗିଦ୍ କରିଯାଏ : ବାପା ଭାତରେ ବେଶୀ ଲୁଣ ଖାଇବନି । ଚା'ରେ ବେଶୀ ଚିନି ଦେବନି । ମର୍ଣ୍ଣିଂ ୱାକରେ ଯିବ । ଅଫିସରୁ ଫେରି ଖାଲି ଚା' ଖାଇବନି... ଦେଖ... ଦେହର ଯତ୍ନ ନେବ... ମୁଁ ନାହିଁ ବୋଲି ଅମାନିଆ ହୋଇ ଯିବନି– ମୁଁ ଆସୁଥିବି ଏମିତି... ।

ବାପା ମୁରୁକି ହସୁଥିଲେ ଏବଂ କହିବେ, "ତୁ ମୋର ଝିଅ ନୁହେଁରେ ପରୀ, ମୋର ମା'... ଶାଶୁ ଘରେ କ୍ରମେ ମୁଁ ପୁରୁଣା ହୁଏ । କିନ୍ତୁ ମଜ୍‌ବୁତ ହୁଏନା । କାହାର ହୃଦୟ ମୁଁ ଜୟ କରିପାରେନା । ଏମିତି କି ପୁଣ୍ୟଙ୍କ ହୃଦୟ ବି ନୁହେଁ । ଆରମ୍ଭ ହୁଏ କଥା କଟା କଟି, ମନାନ୍ତର । ମୋର ଓ ତାଙ୍କ ସ୍ୱଭାବରେ ଆଦୌ ମେଳ ନଥାଏ । ରୁଚି ଓ ପସନ୍ଦ ଖାପ୍ ଖାଉ ନଥାଏ । ଦୁହେଁ ଦୁହିଁଙ୍କୁ ଆଉ ଭଲ ପାଇଲୁ ନାହିଁ, ଭୁଲ୍ ବୁଝିଲୁ । ନା ମୁଁ ସାଲିସ୍ କଲି, ନା ସେ । ବହୁତ ସ୍ନେହ ଓ ଗେହ୍ଲାପଣ ଭିତରେ ବଢିଥିଲି ତ, ଟିକେ ବେଶୀ ଜିଦ୍‌ଖୋର ହୋଇଥିଲି । ସ୍ୱାଭିମାନ ଆଦୌ

ଛାଡ଼ି ନଥିଲି । ସେଥିପାଇଁ ଖୁବ୍ ଶୀଘ୍ର ରୁଗ୍‌ଣ ହୋଇ ପଡ଼ିଥିଲା ମୋ ଯୁଗ୍ମ ଜୀବନ । ଦିନେ ମୋ ଭିତରର ସହିବାପଣ ଶେଷ ହୋଇଗଲା । ଆଟେଚିରେ ଲୁଗାପଟା ସଜାଡ଼ି ଗୋପନରେ ମୁଁ ବାପାଙ୍କ ପାଖକୁ ଚାଲି ଆସିଲି । କହିଲି, "ମୁଁ ଆଉ ସେଠିକି ଫେରିବି ନାହିଁ । ଜଣେ ସ୍ୱାର୍ଥପର, ସ୍ନେହଶୂନ୍ୟ ପୁରୁଷକୁ ସ୍ୱାମୀ ବୋଲି ମାନିବାକୁ, ଜୀବନଯାକ ଚଳିବାକୁ ମୁଁ ପ୍ରସ୍ତୁତ ନୁହେଁ । ମୋର ଟିକେ ବି ସ୍ୱାଧୀନତା ନାହିଁ ସେଠି । ଅଣନିଶ୍ୱାସୀ ଲାଗୁଛି । ତେଣୁ ଚାଲି ଆସିଲି ।" ବାପାଙ୍କ ମୁହଁରୁ ଯେମିତି ରକ୍ତ ନିଗିଡ଼ି ଗଲା । ଯୁଗ୍ମଜୀବନ ଉପରେ ସେ ଅନେକ କଥା କହିଲେ । "ତୁମର ସବୁକଥା ବୁଝିଛି, କିନ୍ତୁ ମୁଁ ସେଠି ସୁଖୀ ନୁହେଁ । ସୁଖୀ ହୋଇ ପାରିବିନି, ବାପା । ତୁମେ କ'ଣ ଚାହଁ ଦୁଃଖ, ଯନ୍ତ୍ରଣା ଭିତରେ ଅହରହ ଜଳୁଥାଏ ମୁଁ ? ନୁହେଁ ନା ?" ବାପା ଭାବିଲେ ଏମିତି ହୁଏ । ପୁଣି ଠିକ୍ ହୋଇଯାଏ ସବୁ ସମୟ କ୍ରମେ । ମୋ ଜୀବନରେ ବି ସେଇୟା ହେବ । ମୁଁ ଫେରିଯିବି । ସେ ଆସି ମତେ ନେଇଯିବେ । ପୁଣ୍ୟଙ୍କ ସହ ସେ ଟେଲିଫୋନରେ କଥାବାର୍ତ୍ତା କଲେ । ମତେ ଫେରେଇ ନେବାକୁ ଅନୁନୟ କଲେ । ସେ ଅନୁନୟର ସ୍ୱର ମତେ ଆଦୌ ଭଲ ଲାଗିନଥିଲା । ବାପା ଅପେକ୍ଷା କଲେ– ମୋ ମନ ବଦଳିବ ଏବଂ ପୁଣ୍ୟଙ୍କ ମନ ବି ବଦଳିବ । ହେଲେ କିଛି ବଦଳିଲା ନାହିଁ । ନିଜ ନିଜ ଜିଦ୍‌ରେ ଦୁହେଁ ଅଟଳ । ଭାଇ-ଭାଉଜ ଆସିଲେ, ବୁଝେଇଲେ । ଦୁହିଁଙ୍କୁ ଏକାଠି କରିବା ପାଇଁ ଚେଷ୍ଟା କଲେ । ହେଲେ ସବୁ ବିଫଳ । ପୁଣ୍ୟଙ୍କ ସହ ସମସ୍ତ ସଂପର୍କ ତୁଟିଲା । ମୁଁ ବାପାଙ୍କ ପାଖରେ ହିଁ ରହିଲି । ସ୍ୱାବଲମ୍ବୀ ଭାବରେ ବଞ୍ଚିବାକୁ ନୂଆ ହୋଇ ଖୋଲିଥିବା ସାନ୍ଧ୍ୟ କଲେଜରେ ଅଧ୍ୟାପନା କଲି । ତା'ପରେ ଭୁଲି ଯିବାକୁ ଚେଷ୍ଟା କଲି ଯେ ମୋର କେବେ ବିବାହ ହୋଇଥିଲା । ବର୍ଷଟିଏ ପାଇଁ ମହାନ୍ତିରୁ ପଟ୍ଟନାୟକ ହୋଇଥିଲି । ପୁନର୍ବାର ମୁଁ ପରିଧି ମହାନ୍ତି, ଡଟର୍ ଅଫ୍ ଜଗଦୀଶ ମହାନ୍ତି ।

ବାପା ବେଶ୍ କିଛିଦିନ ଗମ୍ଭୀର ରହିଲେ । ଦୁଃଖୀ ଦୁଃଖୀ ମନେ ହେଲା । ଝର୍କା ପାଖେ ବସି ଆକାଶ ଦେଖିଲେ । ପରେ ଅବଶ୍ୟ ସେ ନର୍ମାଲ ରହିଲେ, ପୁଣି ହେଲେ ମୋର ସେଇ ସ୍ନେହ ଛଳଛଳ ପିତା ଏବଂ ମୁଁ ତାଙ୍କର ସେଇ ଆଦରର ଝିଅ ପରୀ । ଦୁହେଁ ଦୁହିଁଙ୍କ କଥା ଠିକ୍ ଆଗ ପରି ବୁଝୁ, ବରଂ ଆଉ ଟିକେ ବେଶୀ । ବାପା ମତେ ଆହୁରି ବଡ଼ ହୋଇ ଦିଶନ୍ତି । ବ୍ୟାପ୍ତ ଓ ପ୍ରସାରିତ ଲାଗନ୍ତି । ଏତେ ବେଶୀ ଯେ ଆକାଶ ଛୋଟ ଲାଗେ । ସମୁଦ୍ର ସାନ ଦିଶେ ।

ତା' ପୂର୍ବରୁ ଘରକରଣା ପ୍ରତି, ଘରର ଦାୟିତ୍ୱ ପ୍ରତି ମୋର ବେପରୱା ଭାବ । କିନ୍ତୁ ଆସ୍ତେ ଆସ୍ତେ ସେ ସବୁ ମୁଁ ହାତକୁ ଆଣିଲି । କହିଲି, "ବାପା 'ତୁମେ ଏଣିକି ମୁକ୍ତ । ଯଦି କିଛି ଦୁଃଖ ଅଛି, ଯନ୍ତ୍ରଣା ଅଛି ଦିଅ ମତେ ।" ବାପା ହସନ୍ତି । ସେ ହସ ସୂର୍ଯ୍ୟ କିରଣ ପରି ଦିଶେ । ଶୁଖେଇ ଦିଏ ମୋ ମନର କ୍ଷତ ଚିହ୍ନକୁ । ନୂଆ ଭାବ ନେଇ, ନୂଆ ଶୈଳୀ ନେଇ ମୁଁ ବଞ୍ଚେ । ନୂଆ ନୂଆ ଖାଦ୍ୟ ପ୍ରସ୍ତୁତ କରେ । ବଗିଚାରେ ନୂଆ ଗଛ ଲଗାଏ । ଡ୍ରଇଂରୁମକୁ ନୂଆ କରି ସଜାଡ଼େ । ବାପାଙ୍କ ପାଇଁ ଲାଇବ୍ରେରୀରୁ ବହି ଆଣେ, ମ୍ୟାଗାଜିନ୍ କିଣେ । ରାଜନୀତି, ଖେଳ, ଟି.ଭି. ସିରିଏଲ ବିଷୟରେ ଦୁହେଁ ବସି କଥାବାର୍ତ୍ତା କରୁ । ଯେମିତି ଆମେ ବାପା-ଝିଅ ନୁହେଁ, ଦୁଇ ବନ୍ଧୁ । ସନ୍ଧ୍ୟାରେ କଲେଜ ଯିବା ଆଗରୁ ବାପା ଅଫିସ୍‌ରୁ ଫେରନ୍ତି । ଚା' ଜଳଖିଆ ପରେ ସମୟ ଥିଲେ ବଗିଚା ଯାଇ ଗଛ ପତ୍ର ଫୁଲର କଥା ବୁଝୁ । ମୁଁ କଲେଜରୁ ଫେରିବାବେଳକୁ ସେ ପ୍ରସ୍ତୁତ କରେଇ ରଖିଥିବେ ରାତ୍ରିର ଖାଦ୍ୟ । ମୁଁ କମ୍ ଖାଇଲେ ସେ ତାଗିଦ୍ କରିବେ । ସେ ନ ଖାଇଲେ ମୁଁ ଜୋର୍ କରିବି । କେବେ କେବେ ରାତି ନ'ଟାରେ ବାପା ଟେଲିଫୋନରେ ଭାଇଙ୍କ ନମ୍ବର ମିଳେଇବେ । ଭାଇ ଭାଉଜଙ୍କ ସାଙ୍ଗରେ ଅନେକ ସମୟ କଥା କହିବେ, ଭଲ ମନ୍ଦ

ପଚାରିବେ । ଭାଇଙ୍କ ପୁଅ ଲିଟୁନ୍‌ର କାନ୍ଦ ଶୁଣିବାକୁ ଚାହିଁବେ । ପୂଜାଛୁଟିରେ ବହୁ ଆଗରୁ କହିବେ, ଶୀଘ୍ର ଆସିବ । ଏଥର ଟିକେ ବେଶୀ ଦିନ ରହିବ । ଛୁଟିରେ ସେମାନେ ଆସିବେ । ଘର ଉଚ୍ଛୁଳି ପଡିବ ଆନନ୍ଦରେ । ବାପା ସାଇକେଲ ଚଢି ବଜାର ଯିବେ । ମାଛ, ମାଂସ, ତଟକା ପରିବା ଆଣିବେ । ଲିଟୁନ୍‌କୁ ଛାତିରେ ଜାକି ବୁଝୁ ନବୁଝୁ ଅନେକ ଗପ କହିବେ । ଚୁମାରେ ଚୁମାରେ ତାକୁ ଭିଜେଇ ଦେବେ । କହୁଥିବେ : ମୁଁ ତୋର ପାପାର ପାପା–ଜେଜେବାପା–ଡାକ୍ ମତେ ଜେଜେ ବୋଲି । ଥରେ ଡାକ୍... କିଛିଦିନ ପରେ ସେମାନେ ଚାଲିଯିବେ । ବାପା ରେଲଓ୍ୱେ ଷ୍ଟେସନରୁ ଫେରି ଉଦାସ ରହିବେ । ଦୁଇ ତିନି ଦିନ ଅନ୍ୟମନସ୍କ ରହିବେ । କମ୍ କମ୍ ଖାଇବେ । କିଛିଦିନ ପରେ ଟେଲିଫୋନରେ ଭାଇଙ୍କ ସ୍ୱର ଶୁଣାଯିବ : ବାପା, ଭଲରେ ପହଞ୍ଚିଲୁ । ଆମେ ଭଲ ଅଛୁ, ଲିଟୁନ୍ 'ଜେଜେ', 'ଜେଜେ' ଘୋଷି ହେଉଛି । ତା'ପରେ ସେ ସ୍ୱାଭାବିକ ରହିବେ । 'ପରୀ' ବୋଲି ଡାକିବେ, ହସିବେ, ଅଫିସ୍ କଥା କହିବେ । ହସର ଦିନ ଫେରିବ । ଖବରକାଗଜ ପଢୁ ପଢୁ କହିବେ, "ପରୀ ! ପୁଣ୍ୟ ସାଙ୍ଗରେ ତୋର ପଡିଲା ନାହିଁ, ତା'ବୋଲି ସାରା ଜୀବନ ତୁ ଏମିତି ଚଳିବୁ ? ତୋର କ'ଣ କେହି ବନ୍ଧୁ ନାହାନ୍ତି ? ତୁ କାହାକୁ ପସନ୍ଦ କରୁନା ?" ବାପାଙ୍କ ମନ କଥା ସ୍ପଷ୍ଟ ପଢିପାରେ । ସେ ଚାହୁଁଥିଲେ ମୁଁ ପୁନର୍ବାର ବିବାହ କରେ । ଘର ସଂସାର କରେ । ଯଦି କାହାକୁ ଭଲ ପାଉଥାଏ ତାକୁ ଗ୍ରହଣ କଲେ ସେ ଆପତ୍ତି କରିବେ ନାହିଁ । କିନ୍ତୁ ମୁଁ କ'ଣ କରିବି ? ମତେ ସବୁ ପୁରୁଷ ପୁଣ୍ୟ ପରି ଲାଗନ୍ତି । ଅବିଶ୍ୱସ୍ତ ଅବିଶ୍ୱସ୍ତ ମନେ ହୁଅନ୍ତି । ମୋ ପୁରୁଷ ସହକର୍ମୀଙ୍କଠୁ ସେଥିପାଇଁ ମୁଁ ଦୂରେଇ ରହେ । କମ୍ କଥା କହେ । ସୁଯୋଗ ଦିଏନା କାହାକୁ ପାଖକୁ ଆସିବାକୁ । ଭାଇ-ଭାଉଜ ଥରେ ପ୍ରସ୍ତାବଟିଏ ନେଇ ଆସିଲେ । ମୁଁ ପ୍ରତ୍ୟାଖ୍ୟାନ କଲି । ବାପାଙ୍କ ଝିଅ ହୋଇ ସାରା ଜୀବନ ରହିବି ବୋଲି ନିଷ୍ପତ୍ତି ଶୁଣେଇଲି । ଏମିତି କଟିଯାଏ ଦିନ-ମାସ-ବର୍ଷ । ବର୍ଷ, ବର୍ଷ, ଚାରିବର୍ଷ ।

ଦିନେ ଆସିଲା ବାପାଙ୍କ ଚାକିରି ଜୀବନର ଶେଷଦିନ । ସହକର୍ମୀମାନଙ୍କଠୁ ବିଦାୟ ନେଇ ଚାକିରିକୁ ବିଦାୟ କହି ସେ ଘରକୁ ଫେରିଲେ । ଚା' ଖାଇବାକୁ ମନା କଲେ । ସେଇ ପୋଷାକ ପିନ୍ଧି ଗୁମ୍‌ମାରି ବସିଲେ । ଅଫିସ୍‌ରୁ ପାଇଥିବା ଫୁଲମାଳକୁ କରୁଣ ଆଖିରେ ଚାହିଁଲେ–ତା'ପରେ ଭାଇଙ୍କୁ ଟେଲିଫୋନରେ ଡାକିଲେ । ଭାଇଙ୍କ ହ୍ୟାଲୋ ଶୁଣୁ ଶୁଣୁ ସେ ଭାବବିହ୍ୱଳ କଣ୍ଠରେ କହିଲେ, "ବାବୁରେ ! କାଲିଠୁ ମୁଁ ଆଉ ଅଫିସ୍ ଯିବି ନାହିଁ । ଆଜି ମୋ ଚାକିରିର ଶେଷ ଦିନ ଥିଲା ।"

ଭାଇ ସେପଟୁ ବୋଧହୁଏ ଏମିତି କିଛି ଶବ୍ଦ କହିଲେ, "ବାପା ! କଲିକତା ଆସି କିଛିଦିନ ରହିଯାଆନ୍ତୁ । ଲିଟୁନ୍ ଖୋଜୁଛି..." ତା'ର ଉତ୍ତରରେ ବାପା କହିଲେ, "ମୁଁ ବି ଖୋଜି ହେଉଛିରେ ମୋ ବାୟାକୁ । କିନ୍ତୁ କେମିତି ଯିବି ? ପରୀ ଏଠି ଏକା ହୋଇଯିବ ଯେ..., " କହିଲାବେଳେ ବାପାଙ୍କ ଆଖିରେ ଲୁହ ଟଳମଳ । ତା' ପୂର୍ବରୁ ଦୁଇଥର ଦେଖିଛି ବାପାଙ୍କ ଆଖିର ଲୁହ–ମା'ଙ୍କ ମୃତ୍ୟୁରେ ଏବଂ ମୁଁ ଶାଶୁଘରକୁ ଯିବାବେଳେ । କିନ୍ତୁ ସେଦିନର ଲୁହ ସବୁଠୁ କରୁଣ ଲାଗିଲା । ଭାବିଲି ଏତେ ବର୍ଷର ଚାକିରି, ଏତେ ବର୍ଷର ସଂପର୍କ ସବୁ ଶେଷ ହୋଇଗଲା । ତେଣୁ ସେ ଲୁହ ଏତେ କରୁଣ ! ଏତେ ଯନ୍ତ୍ରଣାଦାୟକ !

ହେଲେ ଆଜି ଜାଣୁଛି–ଚିଠି ପଢିଲା ପରେ ଜାଣୁଛି କ'ଣ ଥିଲା ସେ ଲୁହର ପରିଭାଷା । କାହିଁକି ଲାଗୁଥିଲା ସେ ଲୁହ ଏତେ କରୁଣ । ବାପା ! ବାପା ! ଠିକ୍ ସମୟରେ ଠିକ୍ କଥାଟି ବୁଝିହୁଏନା । କାହିଁକି ଯେ ? ସେଥିପାଇଁ ତ ଯେତେସବୁ କଷ୍ଟ, ଦୁଃଖ, ଯନ୍ତ୍ରଣା । ନୁହେଁ ? ଯଦି

ସେଦିନ ତୁମ ଲୁହର ଭାଷାକୁ ମୁଁ ଠିକ୍ ଠିକ୍ ବୁଝିନେଇ ଥାଆନ୍ତି, ତେବେ ଏ ଚିଠିର ପ୍ରୟୋଜନ ହିଁ ଆସିନଥାନ୍ତା । ହେଲେ ମୁଁ କେଡେ ନିର୍ବୋଧ ଦେଖ । ଏତେ ପାଠ ପଢ଼ିଲି, ଏତେ ପାଠ ପଢ଼େଇଲି ଅଥଚ ତୁମ ମନର ମାନସିକତା ପଢ଼ି ଜାଣିଲି ନାଇଁ ? ତୁମେ ମତେ ଅନେକ ସ୍ନେହ ଦେଇଛ, ବାପା । ଅନ୍ଧ କରିଦେଇଛ ସ୍ନେହରେ । ସେଥିପାଇଁ ଏମିତି ହେଲା । ମୁଁ ଆଉ ଜାଣିଲି, ବୁଝିଲି କେତେବେଳେ ? ରିଟାୟାର୍‌ମେଣ୍ଟର ପ୍ରାୟ ଚାରି ପାଞ୍ଚ ମାସ ପରେ ବାପା ଯେମିତି ଭାଙ୍ଗି ପଡ଼ିଲେ । ଭାଙ୍ଗି ପଡ଼ିଲା ତାଙ୍କ ସ୍ୱାସ୍ଥ୍ୟ । ନାନା ପ୍ରକାର କମ୍ପ୍ଲେନ୍ ବାହାରିଲା । ଗୋଟିଏ ରୋଗର ଚିକିତ୍ସା କରୁ କରୁ ଆଉ ଗୋଟିଏ ରୋଗର ଜୀବାଣୁ ତାଙ୍କ ଦେହରେ ଘର କରି ରହୁଥାଏ । ଡାକ୍ତର, ମେଡିସିନ୍, ସେବା, ଯତ୍ନ, ରୋଗ ଜାଣି ଖାଦ୍ୟ କୌଣସିଥିରେ ମୋର ହେଳା ନଥାଏ । ନିଜ ହାତରେ ତାଙ୍କର ସବୁ କାମ କରେ । ଟିକେ ସୁସ୍ଥ ଲାଗିଲେ ସେ କହନ୍ତି, "ପରୀ ! ମୁଁ ତତେ ଖୁବ ହଇରାଣ କରୁଛି ନା ରେ ?" ତାଙ୍କ କପାଳ ଆଉଁସି ପକେଇ କହେ, "ନା, ବାପା ନା । କ'ଣ କରୁଛି ମୁଁ ? ବୋଧହୁଏ ଆହୁରି କିଛି କରିବା କଥା । ତୁମେ କେତେ କଷ୍ଟ ପାଉଛ । ମୁଁ ତୁମର ଝିଅ । ସବୁଠୁ ବେଶୀ ତୁମେ ମତେ ଭଲପାଅ । ଅଥଚ ତୁମ ଯନ୍ତ୍ରଣା ଟିକେ ବି ନେଇପାରୁନି– ଯାଠୁ ବେଶୀ ଅସହାୟତା କ'ଣ ଅଛି, ବାପା ?"

ସେତେବେଳେ ଦିନେ ବାପା ମତେ ପାଖକୁ ଡାକି ସେ ଲଫାପା କଥାଟି କହିଥିଲେ । ମୁଁ ପଚାରିଥିଲି : କ'ଣ ଅଛି ସେ ଲଫାପାଟିରେ ? ହଁ ସେମିତି କିଛି ଅଛି, ମୋ ମୃତ୍ୟୁ ପରେ ଖୋଲିବୁ... ଆଉ କେତେଦିନ ଯେ ? ନା, ତୁମକୁ ଏତେ ଶୀଘ୍ର ଛାଡ଼ିବିନି । ତୁମେ ଭଲ ହୋଇଯିବ ବାପା, ନିଶ୍ଚୟ ଭଲ ହୋଇଯିବ । ପୁଣି ମର୍ଣ୍ଣିଂ ୱାକ୍‌ରେ ଯିବ । ବଗିଚାରେ ମଲ୍ଲୀ, ସେବତୀ ଲଗେଇବ ।

ହେଲେ ବାପା ଆଉ ଭଲ ହୋଇନଥିଲେ । ମର୍ଣ୍ଣିଂ ୱାକ୍‌ରେ ଯାଇ ନଥିଲେ । ମଲ୍ଲୀ, ସେବତୀ ଲଗେଇନଥିଲେ । ଦିନକୁ ଦିନ ତାଙ୍କ ଅବସ୍ଥା ଖରାପ ଆଡ଼କୁ ଗତି କଲା । ସେ ଆଉ ବିଛଣାରୁ ଉଠି ପାରିଲେ ନାହିଁ । ଶଯ୍ୟାଶାୟୀ ହେଲେ । କଥା କହିଲେ ଖୁବ କଷ୍ଟରେ । ଡୁଗ୍ ଡୁଗ୍ ଖାଲି ଚାହିଁଲେ । ନିଶ୍ୱାସ ପ୍ରଶ୍ୱାସ ନେବାରେ ଅସୁବିଧା ହେଲା । ପରିସ୍ରା ବନ୍ଦ ହୋଇଗଲା । ଭାଇ-ଭାଉଜ ଆସନ୍ତି । ଛୁଟି ନାହିଁ ବୋଲି ଚାଲିଯାଆନ୍ତି । ମୋର ବ୍ୟସ୍ତତା ବଢ଼ିଯାଏ । ତାଙ୍କ ଅସହାୟତା ପାଇଁ ମୁଁ ନିଜ ଭିତରେ ଟୁକୁରା ଟୁକୁରା ହୋଇଯାଏ । ପୁଣି ଭାବେ ବାପାଙ୍କ ପରେ ଏ ଘରେ ମୁଁ ରହିବି କେମିତି ? ଜୀବନର ବାକି ଦିନ କାଟିବି କେମିତି ? ହେଲେ ମନର ଭାବନା ମୁହଁକୁ ଆଣେନା । ଖୁବ ସହଜ ଓ ସ୍ୱାଭାବିକ ଭାବରେ ମୁଁ ତାଙ୍କ ସବୁ କଥା ବୁଝେ, ଯତ୍ନରେ ରଖେ, ତାଙ୍କ ସ୍ୱାଭିମାନକୁ ସମ୍ମାନ ଦିଏ । ତାଙ୍କ ପାଇଁ ବାଣୀର କାହାଣୀ ପଢ଼େ, ବୋଡୋର ଆତଙ୍କବାଦର ବିବରଣୀ ଶୁଣାଏ । ଟି.ଭି. ଅନ୍ କରିଦିଏ, କଲେଜରୁ ଶୀଘ୍ର ଚାଲିଆସେ । ସବୁବେଳେ ଛାତି ଭିତରେ ଗୋଟେ ଧପ୍ ଧପ୍ ଭାବ, ଗୋଟେ ଆଶଙ୍କାର ସ୍ୱର । ଜାଣି ସାରିଥିଲି ଯେ କୌଣସି ମୁହୂର୍ତ୍ତରେ ବାପାଙ୍କ ନିଃଶ୍ୱାସ ଟିକକ ବନ୍ଦ ହୋଇପାରେ । ମୃତ୍ୟୁ ତା'ର ପରୱାନା ଜାରି କରିପାରେ–ସେତେବେଳେ ବାପାଙ୍କ ମୁହଁ ଚାହିଁ ମୁଁ ନିଷ୍ପତ୍ତିଟେ କରି ପକେଇଲି–ବାପା ତ ମତେ ଅସୁମାରୀ ସ୍ନେହ ଦେଇଛନ୍ତି, ବଦଳରେ ମୁଁ କ'ଣ ଦେଇଛି ? କ'ଣ କରିଛି ? ପିତୃ ସ୍ନେହର ଋଣ ପୁଣି ଏମିତି ଯେ ଶୁଝି ହୁଏନା । ହିସାବ ନିକାଶ କରିହୁଏନା । ତେବେ ମୋ ବାପାଙ୍କ ପାଇଁ ମୁଁ କିଛି କରିବି । ଅସ୍ୱାଭାବିକ ମନେ ହେବ । ସମାଲୋଚନାର ସ୍ୱର ଶୁଭିବ, ଅଥଚ ମୁଁ ସେ କାମଟି ସମ୍ପନ୍ନ କରିବି । ହଁ ମୁଁ, ମୁଁ ମୁଖାଗ୍ନି ଦେବି ।

ବାପାଙ୍କ ଶେଷ ଅବସ୍ଥାର ଖବର ଶୁଣି ବନ୍ଧୁବାନ୍ଧବ, ଆତ୍ମୀୟ ସ୍ୱଜନ ଆସିଲେ । ସମସ୍ତେ କହିଲେ ବର୍ତ୍ତମାନ ପୁଅ-ବୋହୂ ଆସି ପାଖରେ ରହିବା କଥା । ପରୀ ତୁ ତାଙ୍କୁ ଡକେଇ ଆଣ ।

ମୁଁ ଟେଲିଫୋନ କଲି । ଭାଉଜ କହିଲେ, "ବାପା ତ ଅନେକ ଦିନରୁ ସେମିତି ଅଛନ୍ତି, ଆମେ ଯାଇ କେତେଦିନ ଅପେକ୍ଷା କରିବୁ ? ତା'ଛଡା ଆମର ଦର୍କାର କ'ଣ ଯେ ତୁମେ ପରା ମୁଖାଗ୍ନି ଦେବ ?"

"ହଁ ଦେବି । ତଥାପି ତୁମକୁ ଆସିବାକୁ ହେବ ।" ମୁଁ ସଶବ୍ଦ ରିସିଭର ରଖିଦେଲି । ତା'ପରେ ତିନିଦିନ କଟିଲା । କେମିତି କଟିଲା । ମୁଁ ଜାଣେ, ମୋର ଆତ୍ମା ଜାଣେ । କାଲି ସନ୍ଧ୍ୟାରେ ଅଟକି ରହିଥିଲା ଖାଲି ସେବା ଶେଷ ନିଃଶ୍ୱାସଟି । ମୋ ପିଉସୀ ଆସି ପହଞ୍ଚିଲେ । ଲୁହ ଛଳ ଛଳ ଆଖିରେ ତୁଳସୀ ପାଣି ପାଟିରେ ଦେଲେ । ଭାଗବତର କିଛି ଧାଡି ଆବୃତ୍ତି କଲେ । ମୁଁ ଭାଇଙ୍କୁ ଟେଲିଫୋନରେ କହିଲି, "ଏଥର ଆସିଲେ ଆଉ ତୁମକୁ ଅପେକ୍ଷା କରିବାକୁ ପଡିବ ନାହିଁ ।" ସାରା ରାତି ଉଦ୍‌ବେଗରେ କଟିଲା । ଆଜି ଭୋର୍‌ରେ ବାପା ମୁଟ୍‌ମୁଟ୍ ଚାହିଁଲେ- ଛାତ ଆଡେ, କବାଟ ଆଡେ, ଝର୍କା ଆଡେ । । ଦୃଷ୍ଟି ଖେଳେଇଲେ ଆଉ ଆଖି ବୁଜିଦେଲେ । ମତେ ଲାଗିଲେ ସେ ପୁଣି ଚାହିଁବେ । ବାପା ବାପା ବୋଲି ଡାକିଲି, ହଲେଇଲି । ସେ କିନ୍ତୁ ଶୁଣିଲେ ନାହିଁ । ମୁଁ ଡାକ୍ତରଙ୍କୁ ଡାକିଲି । ସେ ଆସିଲେ । 'ହି ଇଜ୍ ନୋ ମୋର' ବୋଲି ଘୋଷଣା କଲେ । ପିଉସୀଙ୍କ କୋଳରେ ମୁଣ୍ଡ ଗୁଞ୍ଜି ମୁଁ କାନ୍ଦଣାରେ ଭାଙ୍ଗି ପଡିଲି । ସବୁ ଶେଷ । ସବୁ ଶୂନ୍ୟ । ସବୁ ଖାଲି ଖାଲି । ମୋ ବାପାଙ୍କୁ ମୁଁ ଆଉ ପାଇବି ନାହିଁ । ତଥାପି ନିଜକୁ ନିଜେ ବୁଝେଇଲି । ଦୁର୍ବଳତମ ମୁହୂର୍ତ୍ତ ସହ ଲଢିଲି । ଧୈର୍ଯ୍ୟ ଧରିଲି । ଆଖିର ଲୁହ ପୋଛିଲି । ମତେ ହିଁ ତ ସବୁ କରିବାକୁ ପଡିବ । ଶ୍ମଶାନ ପାଇଁ ସରଞ୍ଜାମ ସଜାଡିବାକୁ ହେବ । ସାଙ୍ଗରେ ଯିବାକୁ ହେବ ।

ସବୁ ସଜିଲ ହେଲା । ମୋ ବାପା ଯିବେ ଏଥର । ଏମିତି ଯିବେ ଯେ ଆଉ ଫେରିବେ ନାହିଁ । ପରୀକୁ ଥରେ ବି ଚାହିଁବେ ନାହିଁ । ଏମିତି ଯାଆନ୍ତି ବାପା ? ଏତେ ନିର୍ମମ ହୋଇ ? କୁହ ତ ମୁଁ କେମିତି ରହିବି ଏକା ଏକା... ?

ଲୁହ ଭିତରେ, କୋହ ଭିତରେ ହଠାତ୍ ମନେ ପକେଇଲି ବାପାଙ୍କ କହିଥିବା କଥା । ଏଠିକି ଆସିଲି । ଡାଇରୀରୁ ଲଫାପା ଖୋଲିଲି । ଚିଠି ପଢିଲି । ଏଇ ତ ସେ ଚିଠି । ଏଇ ମୋ ହାତରେ... ।

: ପରୀ,

ବର୍ଷ ବର୍ଷ ଧରି ଦୁଃଖଟିଏ ଚାପି ରଖିଥିଲି ଛାତି ତଳେ । ସେ ଦୁଃଖର ବୟସ କ୍ରମେ ବଢିଥିଲା । ମତେ ଅହରହ ଜାଳି ଥିଲା । ସେ ଗୋପନ ଦୁଃଖଟିର କଥା କେତେଥର ଭାବିଛି ତତେ ଖୋଲାଖୋଲି କହିଦେବି ବୋଲି । ହେଲେ ନା, କହି ପାରିନଥିଲି । ତେଣୁ ଏ ଚିଠି । କିଛି ନକହି ଚାଲିଗଲେ ମୃତ୍ୟୁ ପରେ ବି ମୁଁ ଅଶାନ୍ତ, ଅତୃପ୍ତ ରହିଯିବି ଯେ । ପରୀ ! ତୁ ମୋ ଝିଅ । ଖୁବ ଗେହ୍ଲାରେ ପାଳିଲି ତତେ । ଅଜାଡି ଦେଲି ମନ ତଳର ସ୍ନେହ । ତୋର ସବୁ ଇଚ୍ଛା ପୂରଣ କରିଛି । ତୋ ପାଠ ପଢା ସରିଲା । ଯୋଗ୍ୟ ପାତ୍ରରେ ତତେ ବାହା ଦେଲି । ଭାବିଲି, ଏଥର ତୋ ଦାୟିତ୍ୱରୁ ମୁକ୍ତ । କିନ୍ତୁ ତୁ କ'ଣ କଲୁ ? ଶାଶୁ ଘରେ ଚାଲିପାରିଲୁ ନାହିଁ । ସ୍ୱାମୀ ସାଙ୍ଗରେ ତୋର ପଡିଲା ନାହିଁ । ଜିଦ୍ କରି ଚାଲିଆସିଲୁ, ପୁଣି ରହିଲୁ ମୋ ପାଖରେ । କେତେ ବୁଝେଇଲି, ବୁଝିଲୁ ନାହିଁ କି ତୋ ସ୍ୱାମୀଙ୍କ ପାଖକୁ ଫେରିଲୁ ନାହିଁ । ପରୀ ! କେଉଁ ବାପା

ଚାହେଁ, ବିବାହ ପରେ ଝିଅ ଆସି ତା' ପାଖରେ ରହୁ ? ମୁଁ ବି ଚାହିଁ ନଥିଲି । ତୁ ଚାଲିଆସି ମୋ ପାଖରେ ରହିବା ପରେ ଅନେକ ଲୋକଙ୍କ ଅନେକ ପ୍ରଶ୍ନ । ମୁଁ ଆଉ ମୁଣ୍ଡ ଉଠେଇ ଚାଲି ପାରିଲି ନାହିଁ । ପୁଣି ତୁ ରହିଲୁ ବୋଲି ସାରା ଜୀବନ ତତେ ଜଗି ରହିଲି । ପ୍ରଣୟ ପାଖକୁ ବି ଯାଇ ପାରିଲି ନାହିଁ । ଦୂରରେ ରହିଲି ତା'ର ସୁନ୍ଦର ସଂସାରଠୁ । ରିଟାୟାରମେଣ୍ଟ ପରେ ତ ନିହାତି ଯାଇ ପ୍ରଣୟ ଘରେ ରହିବା କଥା । ଲିଟୁନ ସାଙ୍ଗରେ ଖେଳିବା କଥା । କିନ୍ତୁ ତୁ ମୋତେ ଯିବାକୁ ଦେଲୁ କେତେବେଳେ ? ତୋ ଅନୁପସ୍ଥିତିରେ ମୁଁ ଖାଲି ସେମାନଙ୍କୁ ଫଟୋରେ ଦେଖେ । ଫଟୋରେ ଛୁଏଁ । ଲିଟୁନର 'ଜେଜେ' ଡାକକୁ ମୁଁ ଝୁରି ଝୁରି ହୁଏ । ମନରେ ଲୁହ ଜମେ । ହେଲେ ନିରୁପାୟ । ମୁଁ ଜଣେ ଯୋଗ୍ୟ ପୁଅର ବାପା । ପରୀ; ତୁ କିନ୍ତୁ ମତେ କେବଳ ଜଣେ ସ୍ୱାମୀ ପରିତ୍ୟକ୍ତା ଝିଅର ବାପା କରି ବାନ୍ଧି ରଖିଲୁ । ଡହ ଡହ ନିଆଁରେ ମୋ ଇଚ୍ଛାମାନେ, ମୋ ସ୍ୱପ୍ନମାନେ ଜଳିଗଲେ । ତୁ ଭୁଲ କଲୁ । ଶାସ୍ତି ପାଇଲି ମୁଁ, ଦଣ୍ଡିତ ହେଲା ମୋର ପିତୃତ୍ୱ । ଏ କିମିତି କଥା ? ଅବଶୋଷ ରହିଗଲା ଏ ଜନ୍ମରେ । ପୁଣି ଜନ୍ମ ନେବି ମୁଁ । ସେତେବେଳେ କାମନା କରିବି ପୁଅର ବାପା ହେବି । ହଁ
ଖାଲି ପୁଅର ବାପା । ଇତି, ଜଗଦୀଶ ମହାନ୍ତି

ମୁଁ ପରିଧି ମହାନ୍ତି । ସ୍ୱାମୀ ପରିତ୍ୟକ୍ତା ପରିଧି ମହାନ୍ତି । ପରିତ୍ୟକ୍ତାର ପରିଧିରେ ରିଲେ ରେସ କରୁଥିବା ପରିଧି ମହାନ୍ତି । ଭାବୁଛି ନାରୀଟିଏ ଜୀବନ ସାରା ପରିବାରର ପୁରୁଷମାନଙ୍କ ପାଖରେ କେବଳ ସ୍ନେହ ପହଞ୍ଚାଉଥିବ ? ନିଜର ଦାୟିତ୍ୱ ତୁଲେଇଲା ପରେ ବି ତା'ର କ'ଣ ନିଜତ୍ୱ ନାହିଁ ? ସେ କେବଳ ପୁରୁଷର ଆଇଡେନ୍‌ଟିଟି ନେଇ ବଞ୍ଚିବ ?

ବାପାଙ୍କ ସ୍ନେହର ଆକାଶ ତଳେ ଥିଲି ବୋଲି ମତେ ପାଖ ଲାଗୁଥିଲା ମେଘ । ଦୁଃଖକୁ ହାତ ପାଆନ୍ତାରେ ପାଇ ବି ମୁଁ ହାରି ନଥିଲି । ଯଦି ବା ହାରିଥିଲି, ଅନୁଶୋଚନା ନଥିଲା । କିନ୍ତୁ ବାପାଙ୍କ ଚିଠି ପଢିଲା ପରେ ଜାଣୁଛି ଅନୁଶୋଚନା କ'ଣ । ପୁଣି ଜାଣୁଛି ସେ ସ୍ନେହର ଆକାଶରେ ଜଳ ନଥିଲା, ଛଳ ଥିଲା । ଥିଲା ଏକ ଶୂନ୍ୟସ୍ଥାନ ।

ମୁଁ ଉଠି ଆସିଲି । ଚିଠିଟି ଆଲମୀରା ଭିତରେ ବନ୍ଦ କରି ରଖିଲି । ଏବେ ବି କ'ଣ ମୁଁ ବାପାଙ୍କ ମୃତ ଶରୀରରେ ଅଗ୍ନିସଂଯୋଗ କରିବା ନିଷ୍ପତ୍ତିରେ ଅଟଳ ରହିବି ?



# ଚଷାଖଣ୍ଡର ରଂଗିନାନୀ

## ସୁରେନ୍ଦ୍ର ମିଶ୍ର

ଚଷାଖଣ୍ଡ ଗାଁ'ରେ ବହୁ ଚର୍ଚ୍ଚିତ ରଙ୍ଗିନାନୀର ଏକ ବିଶେଷ ସ୍ୱାତନ୍ତ୍ର୍ୟ ଥିଲା । ଇଚ୍ଛା କଲେ ସେ ମୁହୂର୍ତ୍ତକ ମଧ୍ୟରେ ଗାଁ'ରେ ଭୂମିକମ୍ପଟିଏ ସୃଷ୍ଟି କରି ଦେଇ ପାରୁଥିଲା । ମଝି ଦାଣ୍ଡରେ ପିନ୍ଧା ଲୁଗାକୁ ପୂରା ଖୋଲି ଦେଇ ସମ୍ପୂର୍ଣ୍ଣ ଉଲଗ୍ନ ହୋଇଯିବା ଭଳି ଅପୂର୍ବ କ୍ଷମତା ତା'ର ଥିଲା । ସେତେବେଳେ ବଡ଼ମାନେ ସମ୍ଭ୍ରମର ସହିତ ଲଜ୍ଜିତ ହେଉ ହେଉ ତାକୁ କଣେଇ ଚାହିଁ ଦେଉଥିଲେ । ରଙ୍ଗିନାନୀର ତୀକ୍ଷ୍ଣ ଦୃଷ୍ଟି ଯଦି କାହା ଚୋରା ଚାହାଣିକୁ ଧରିଦେଲା ତା'ହେଲେ ବିଚରାଟିର ସପ୍ତପୁରୁଷ ଉଝୁଲିବା ନିଶ୍ଚିତ । ରଙ୍ଗିନାନୀର ଏ ଅନୌପଚାରିକ ତାଣ୍ଡବ ପିଲାମାନଙ୍କୁ ବେଶ୍ ମଜାର ଖୋରାକ ଯୋଗାଉଥିଲା । ସେମାନେ ବଡମାନଙ୍କ ନଜରକୁ ଫାଙ୍କି ଦେଇ ରଙ୍ଗିନାନୀର ଉଦ୍ଦଣ୍ଡ ନୃତ୍ୟକୁ ଉପଭୋଗ କରୁଥିଲେ ଓ ନାନା ଢଗଢମାଳି ସାହାଯ୍ୟରେ ତାକୁ ଆହୁରି ଉତ୍ତପ୍ତ କରୁଥିଲେ । କେହି ତା' ଆଗରେ ପଡିଗଲେ ସେ କହୁଥିଲା, 'ହଁରେ ଖରାବେଳିଆ । ଯା, ତୋ ଘରେ ବି ସବୁ ଅଛି, ଦେଖିବୁ ଯା । ମୋଠି ଅଧିକ କ'ଣ ଅଛି ଦେଖୁଛୁ, ଆଁ ?' ତା'ପରେ ସେ ଏମିତି ଭଙ୍ଗିଟେ କରୁଥିଲା ଯେ, ତାକୁ ଚିହାଉଥିବା ପିଲାଟା ଆଖି ପିଛୁଡାକେ ତା' ଆଗରୁ ଅପସରି ନଯିବାର ଉପାୟ ନଥିଲା ।

ରଙ୍ଗିନାନୀ ଚଷାଖଣ୍ଡ ଗାଁ'ରେ ଗୋଡ ଦେବା ଦିନଠାରୁ ହିଁ ଚର୍ଚ୍ଚିତ ହୋଇ ଚାଲିଥିଲା ଏକ ଦର୍ଶନୀୟ ଜୀବ ଭାବରେ । ସେ ବାହା ହୋଇ ଏ ଗାଁ'କୁ ଆସିବା ବେଳେ ଚଷାଖଣ୍ଡ ଗାଁ'ର ପିଲା ମାଇପେଠୁ ବୁଢାହଡା ଯାଏ ଆଖି ଖୋସି ଦେଇଥିଲେ ତା'ର ସୌନ୍ଦର୍ଯ୍ୟରେ । ଚଷାଖଣ୍ଡ ଗାଁ' ବି ବୋଧହୁଏ କେବେ ଭାବି ନଥିଲା ଏତେ ସୁନ୍ଦରୀ ନୂଆ ବୋହୁଟେ ଦିନେ ମୁଣ୍ଡରେ ଓଢଣା ଦେଇ ତା'ର ଥିରି ଥିରି ପାଦ ତା' ଛାତିରେ ଥାପିବ ବୋଲି । ତା'ପରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ ତା'ର ଅମାୟିକ ବ୍ୟବହାରରେ । ଚଷାଖଣ୍ଡର ଲୋକେ ଯଦିଓ କଦବା କ୍ୱଚିତ୍ କେଉଁଠି ସୁନ୍ଦରୀ ସ୍ତ୍ରୀଟିଏ ଦେଖିବାର ସୁଯୋଗ ପାଇଥିଲେ ସେମାନଙ୍କର ବ୍ୟବହାର ଏହା ପ୍ରମାଣ କରି ଦେଇଥିଲା ଯେ ସୁନ୍ଦରୀମାନେ ଉଗ୍ରା । ରଙ୍ଗିନାନୀ ବାହାଘରର ଦୁଇଦିନ ପରେ ଗାଁ'ର ପ୍ରବୀଣମାନେ ଏକ ଅଣଆନୁଷ୍ଠାନିକ ଆଲୋଚନାରତ ଥିଲାବେଳେ ସମ୍ମାନନୀୟ ଚୌଧୁରୀ ମହାଶୟ ତାଙ୍କ ମତ ଶୁଣାଇଦେଲେ, 'ବୁଝିଲ ! ସୌନ୍ଦର୍ଯ୍ୟର ଗୋଟାଏ ନିଜସ୍ୱ ଅହଂକାର ଅଛି । ପ୍ରଚଣ୍ଡ ଅହଂବାଦୀ ଏହି ସୁନ୍ଦରୀମାନେ ଉଗ୍ରା ହେବାକୁ ବାଧ୍ୟ ।' କିନ୍ତୁ ଶାସ୍ତ୍ରକାର ଚୌଧୁରୀଙ୍କର ସିଦ୍ଧାନ୍ତକୁ ରଙ୍ଗିନାନୀ ଅବିଳମ୍ବେ ଭୁଲ ବୋଲି ପ୍ରମାଣିତ କରିଦେଲା । ସେ ଏତେ ମେଳାପି, ଭଦ୍ର ଓ ଅମାୟିକ ଥିଲା ଯେ ତା'ର ପ୍ରଚୁର ସୌନ୍ଦର୍ଯ୍ୟ ସତ୍ତ୍ୱେ ଓ ଗାଁ'ରେ ଅନେକ ନିହାତି ଅସୁନ୍ଦରୀ ଓ ଅର୍ଦ୍ଧ ସୁନ୍ଦରୀଙ୍କ ଉପସ୍ଥିତି ପରେ ବି ତା' ପ୍ରତି ଈର୍ଷା କରିବା ଲୋକଙ୍କ ସଂଖ୍ୟା ଯଥେଷ୍ଟ କମ୍ ଥିଲା । ଭୋଳାର ହାତ ଧରି ସେ ଖୁବ୍ ଖୁସି ଥିଲା । ଜଣେ ସଚ୍ଚୋଟ, ସୁପୁରୁଷ ହିସାବରେ ଭୋଳାର ସେ ଅଞ୍ଚଳରେ ଅଖଣ୍ଡ ପ୍ରଭାବ ଥିଲା । ସେଥିପାଇଁ ରଙ୍ଗିନାନୀ ଓ ଭୋଳାର ଯୋଡି ଅନ୍ୟମାନଙ୍କ ପାଇଁ ଏକ ଉଦାହରଣ ପାଲଟି ଯାଇଥିଲା । ବିବାହର ପାଞ୍ଚବର୍ଷ ପରେ ରଙ୍ଗିନାନୀ ଗର୍ଭବତୀ ହେଲା । ଦୀର୍ଘଦିନ

ଯାଏ ଜଣକ ପାଖରେ କିଛି ଖୁଣ ନ ଦେଖିବାରେ ଅଭ୍ୟସ୍ତ ନଥିବା ଚଷାଖଣ୍ଡିଆମାନେ ସେତେବେଳକୁ ବ୍ୟସ୍ତ ହୋଇ ରଙ୍ଗିନାନୀକୁ ବାଞ୍ଝ ଆଖ୍ୟା ଦେଇ ସାରିଥିଲେ । ସ୍ତ୍ରୀ, ପିଲାଏ ତା' ଛାଇକୁ ଡରିବା ଶିଖି ଯାଇଥିଲେ । ଏତେଗୁଡିଏ ଲୋକଙ୍କର ଆଶଙ୍କା ବି ପୁଣି ଥରେ ଭୁଲ୍ ହେଲା ଓ ରଙ୍ଗିନାନୀ ବଳିଆକୁ ଜନ୍ମ ଦେଲା । ପିଲାକୁ ଦେଖି ଘନ ଆଚାର୍ଯ୍ୟ ମୁହେଁ ମୁହେଁ କହିଦେଲେ, 'ଏ ପିଲା ଅକ୍ଷମ ହେବ ।'

ବଳିଆ ସାତ ବର୍ଷରେ ମା' ଡାକିଲା ଓ ଦଶ ବର୍ଷରେ କଥା କହିଲା । ସେତେବେଳକୁ ତା'ର ସାଙ୍ଗମାନେ ଯେଉଁମାନେ ଚାଲାଖି ଥିଲେ ଓ ବର୍ଷେ, ଦେଢ଼ ବର୍ଷରେ କଥା କହି ଶିଖିଥିଲେ ତାକୁ ନେଇ କଥା ଶିଖେଇବା ଆଳରେ ଅଶ୍ଳୀଳ ଶବ୍ଦ କେତେଟା ମୁଖସ୍ଥ କରାଉଥିଲେ । ସାଙ୍ଗମାନଙ୍କ ସହିତ ଖେଳିବା ବେଳେ ବଳିଆ ଏକ ଉପଭୋଗ୍ୟ ଜୀବ ଥିଲା । ଚାଲାଖି ଓ ଉନ୍ନତ ସାଙ୍ଗମାନେ ବଳିଆକୁ ସାହସୀ ବୋଲି ଚିତ୍ରଣ କରି ତା' ସାହସର ପୁନଃ ପ୍ରମାଣ ପାଇଁ କାମୁଡା କୁକୁର ଲାଞ୍ଜରେ ବାଣ ବାନ୍ଧି ଫୁଟେଇବାକୁ କହୁଥିଲେ । କେହି ଅପରିଚିତ ସେବାଁଟେ ଯାଉଥିଲେ ବଳିଆର ଲକ୍ଷ୍ୟ ଠିକ୍ ଅଛି କି ନାହିଁ ତା' ପିଠିରେ ଟେକା ବଜାଇ ପରୀକ୍ଷା କରିବାକୁ ଚାହୁଁଥିଲେ । ମାଙ୍କଡଠୁ ବି ବଳିଆ ଭଲ ଡେଇଁପାରେ ବୋଲି ସରୋଜ କହୁଥିଲା । ଶୁଭେନ୍ଦୁ ସଙ୍ଗେ ସଙ୍ଗେ ପରିହାସ କରୁଥିଲା, "ହୁଁଃ ମାଙ୍କଡ ଆଉ ବଳିଆ ! ଆଚ୍ଛା ଡେଇଁଲୁ ଏ ବାଡଟା ଦେଖିବା ?" ଗୋଟେ ଉଚ୍ଚା ବାଡକୁ ଲକ୍ଷ୍ୟ କରି ଶୁଭେନ୍ଦୁ ବଳିଆକୁ ଆହ୍ୱାନ କରୁଥିଲା । ସରୋଜ କହୁଥିଲା, "ଡେଇଁକି ଦେଖେଇ ଦେଲୁ ଶୁଭେନ୍ଦୁକୁ । ସେ ନିଜେ ମାଇଚିଆ ବୋଲି ତତେ ବି ତା ଭାବୁଛି !" ବଳିଆ ତତ୍‌କ୍ଷଣାତ୍ ବାଡକୁ ଡେଉଁଥିଲା ଓ କ୍ଷତାକ୍ତ ହୋଇ ତୃପ୍ତିର ହସ ହସୁଥିଲା ।

ବର୍ଷାଦିନ ଆସିଲେ, ବେଙ୍ଗା ନଈ ଉଛୁଳିଲେ ଚଷାଖଣ୍ଡ ଓ ହୀରାଖଣ୍ଡ ଗାଁ ଲୋକେ ତାତି ଉଠନ୍ତି । ଚାଷ ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ ଗାଁ' ଦୁଇଟି ଚାଷ ପାଇଁ ବେଙ୍ଗା ନଈକୁ ଭରସା କରିଥାନ୍ତି । ହୀରାଖଣ୍ଡ ଉପର ଗାଁ ଓ ଚଷାଖଣ୍ଡ ତଳ ଗାଁ । ଦୁଇ ଗାଁ କଡ ଦେଇ ବହିଯାଇଛି ବେଙ୍ଗା ନଈ । ଅଣଓସାରିଆ, ଅଗଭୀର ଅବିଶ୍ୱାସୀ ବେଙ୍ଗାନଈ । ମଝିରେ ବନ୍ଧ । ଜୋର ବର୍ଷା ହେଲେ ପାଣି ନଈରୁ ଯାଇ ବିଲରେ ପଶେ । ଫସଲ ବୁଡିଯାଏ, ପଚିଯାଏ । ତେଣୁ ଅଧିକ ବର୍ଷା ବେଳେ ହୀରାଖଣ୍ଡ ଗାଁ' ଲୋକେ ବନ୍ଧଟାକୁ ଭାଙ୍ଗିଦେଇ ଜଳର ପ୍ରାବଲ୍ୟକୁ ଚଷାଖଣ୍ଡ ଅଞ୍ଚଳକୁ ଠେଲି ଦିଅନ୍ତି । ଏ ଅଦୌତି ଚଷାଖଣ୍ଡ ପାଇଁ ଅସହ୍ୟ ହୋଇ ଉଠେ । ପୁଣି, ବର୍ଷା ନଥିଲେ ବିଲ ଶୁଖି ଆଁ କଲେ ଚଷାଖଣ୍ଡ ଲୋକେ ଓର ଉଣ୍ଡି ବନ୍ଧଟାକୁ ଭାଙ୍ଗି ଦିଅନ୍ତି ଓ ପାଣି ତାଙ୍କ ଅଞ୍ଚଳକୁ ଗଡିଯାଏ । ଯାହାଦ୍ୱାରା ସେମାନେ ନିଜ ନିଜ ଜମିରେ ପାଣି ମଡେଇ ପାରନ୍ତି । ସେଇଠୁ ହୁଏ ବଚସା, ଠେଙ୍ଗା, ତେଣ୍ଟା ଓ ଖଣ୍ଡା ବାହାରେ । ଦଙ୍ଗା ହୁଏ । ହୀରାଖଣ୍ଡ ପ୍ରାୟ ପ୍ରତି ଦଙ୍ଗାରେ ଜିତେ । କିନ୍ତୁ ସମସ୍ୟାର ସମାଧାନ କେବେ ହୁଏନା । ଏଭଳି ସମୟ ଆସିଲେ ଭୋଳା ଚିନ୍ତିତ ହୋଇପଡ଼େ । ସେ ଦୁଇ ପକ୍ଷଙ୍କୁ ବୁଝାଏ । ତା' କଥା ସମସ୍ତେ ଶୁଣନ୍ତି । ଆଶ୍ଚର୍ଯ୍ୟର କଥା, ହୀରାଖଣ୍ଡ ବାଲାଏ ମଧ୍ୟ ତା' କଥାକୁ ସମ୍ମାନ ଦିଅନ୍ତି । କିନ୍ତୁ ଦୁଇ ଗାଁର ଲୋକଙ୍କ କଥାବାର୍ତ୍ତା ଯେତେବେଳେ ରକ୍ତ ମାଧ୍ୟମରେ ହୁଏ, ତାଙ୍କ ମନ ଯେତେବେଳେ ନିଜ ସତ୍ତା ସହ ପ୍ରତାରଣା କରି ଗୋଟେ ଝୁଂ ମାରିବା ତାଳରେ ଥାଏ ସେତେବେଳେ ଭୋଳା ଅସହାୟ ହୋଇପଡେ । ଏମିତି ଏକ କାଳରାତ୍ରିରେ ଯେତେବେଳେ ଖଣ୍ଡା, ତେଣ୍ଟା ଓ ବମ୍ ଭିତରେ ଦୁଇ ଗ୍ରାମବାସୀ ନିଜ ନିଜର ପରିଚୟ ଖୋଜୁଥିଲେ ଭୋଳା ନିଜ ଜୀବନ କଥା ନ ଭାବି ତା' ଭିତରେ ପଶି ଜଣ ଜଣଙ୍କୁ

ବୁଝାଉଥିଲା । ସେତିକି ବେଳେ ବମ୍‌ଟାଏ ଭୋଲା ପାଖରେ ପଡ଼ିଲା ଓ ତା'ର ଅକାଳ ମୃତ୍ୟୁ ହେଲା ।

ଭୋଲାର ମୃତ୍ୟୁରେ ରଙ୍ଗିନାନୀ ପ୍ରଥମେ ଭାଙ୍ଗି ପଡ଼ିଥିଲେ ମଧ୍ୟ ଧୀରେ ଧୀରେ ସାହସର ସହିତ ସେ ନିଜ ବୈଧବ୍ୟକୁ ସହିନେଲା । ହାତରୁ କାଚ ଭାଙ୍ଗି, ମୁଣ୍ଡରୁ ସିନ୍ଦୁର ଲିଭେଇ ଧଳା ଶାଢ଼ି ପିନ୍ଧି, କାମଧନ୍ଦା କରି ବଳିଆ ସହ ସେ ନୀରବରେ ବଞ୍ଚି ଚାଲିଲା । ରଙ୍ଗିନାନୀ ପାଇଁ ଚଷାଖଣ୍ଡ ଗାଁ'ରେ ସହାନୁଭୂତିର ସୀମା ନଥିଲା । ହୀରାଖଣ୍ଡ ବାଲାଏ ମଧ୍ୟ ରଙ୍ଗିନାନୀର ଦୁର୍ଭାଗ୍ୟ ପାଇଁ ବ୍ୟଥିତ ଥିଲେ । କିନ୍ତୁ ଦୁଇ ଗାଁ ଭିତରେ ଯିବା ଆସିବା ନଥିବାରୁ ସେମାନେ ରଂଗିନାନୀକୁ ଭେଟି ନିଜ ସହାନୁଭୂତି ଜଣେଇ ପାରୁ ନଥିଲେ । ଚଷାଖଣ୍ଡ ଗାଁ'ରେ ରଂଗିନାନୀ ଦୁଃଖର ଗୋଟିଏ ଜୀବନ୍ତ କିମ୍ବଦନ୍ତୀ ପାଲଟି ଗଲା । ଗାଁ' ଲୋକଙ୍କ ଅବସର ସମୟରେ ମୃତ ଭୋଲା, ଜୀବନ୍ତ ରଙ୍ଗିନାନୀ ଓ ଅର୍ଦ୍ଧ ଉନ୍ମାଦ ବଳିଆ ସେମାନଙ୍କ ଆଲୋଚନାର ମୁଖ୍ୟ ବିଷୟ ଥିଲା । କାହା ବାଡ଼ିର କାକୁଡ଼ିଟେ, କାହା ଗଛର ନଡ଼ିଆଟେ, କିଏ ଖାଇ ଦି' ଗୌଣି ନେଇ ରଙ୍ଗିନାନୀକୁ ଦେଇ ଆସୁଥିଲେ । ସଇଫୁଟା ରଙ୍ଗିନାନୀ ମଉଳା କଢ଼ଟେ ପରି ସେମେଟି ଯାଇଥିଲା ସେତେବେଳକୁ । କେବଳ 'ହଁ' 'ନାହିଁ'ରେ ସେ କଥାର ସମାପ୍ତି କରୁଥିଲା । ଗୋଟେ ପୂର୍ଣ୍ଣ କାର୍ଯ୍ୟକ୍ଷମ କଳ ଭଳି ସେ କାମ କରି ଯାଉଥିଲା ତା' ସଂସାରର ।

ଦିନେ ହଠାତ୍ ଗୋଟାଏ ହୋ ଉଠିଲା । ଖରାବେଳଟା । ପାଟି ଶୁଣି ଗାଁ' ଲୋକେ ରଙ୍ଗିନାନୀ ଘର ପାଖରେ ଗୁଣ୍ଡ ହୋଇଗଲେ । ବୈଧବ୍ୟ ଯନ୍ତ୍ରଣାରେ ତପସ୍ୱିନୀ ପରି ଦିଶୁଥିବା ରଙ୍ଗିନାନୀର ମୂର୍ତ୍ତି ଯେ ଏତେ ଉଗ୍ର ହୋଇପାରେ ସେ ବିଶ୍ୱାସ କାହାରି ନଥିଲା । ରଙ୍ଗିନାନୀ ଗୋଟେ ଭୟଙ୍କର ରୂପ ଧରିଥିଲା । ତା' ଦେହରେ ଲୁଗା ନଥିଲା । ମୁଣ୍ଡରେ ବାଳ ମୁକୁଳା ହୋଇ ଫୁର୍ ଫୁର୍ ଉଡୁଥିଲା । କେବଳ ସାୟା, ବ୍ଲାଉଜ୍ ପିନ୍ଧି ବାଁ ହାତରେ ଗୋଟେ ପନିକି ଓ ଡାହାଣ ହାତରେ ପହଁରା ଧରି ସେ ବେଣୁ ରାଉତକୁ ବାଡେଇ ଚାଲିଥିଲା । ବେଣୁ ରାଉତର ଗାମୁଛା ଓ ଧୋତି ରଙ୍ଗିନାନୀ ଘରେ ପଡ଼ିଥିଲା । ଖାଲି ଅଣ୍ଡରଉଇଅର ପିନ୍ଧି ବେଣୁ ରାଉତ ଜୀବନ ବିକଳେ ରଙ୍ଗିନାନୀ ଘରୁ ବାହାରକୁ ଦଉଡ଼ି ଆସୁଥିଲା । ତା' ପିଠି, ମୁହଁ ଫାଟି ସେଥିରୁ ଠାଏ ଠାଏ ରକ୍ତ ବାହାରୁଥିଲା । ରଙ୍ଗିନାନୀ ତାକୁ ପହଁରାରେ ବାଡେଇ ବାଡେଇ ଗୋଇଠା ମାରି ମାରି ବାହାରଯାଏ ଆଣୁଥିଲା । ବେଣୁ ରାଉତ ବାହାରେ ଏତେ ଲୋକ ଦେଖି ଦୌଡ଼ି ଦୌଡ଼ି ତା' ନିଜ ଘରକୁ ପଳାଇଲା । ରଙ୍ଗିନାନୀ ତା' ଘରକୁ ପଶି ଆସିଲା । ଗାଁ' ଲୋକଙ୍କ ଭିତରେ ଗୋଟେ ଦବକ ପଶିଗଲା । ସେମାନେ ନିଜ ନିଜ ଭିତରେ ଆଲୋଚନା କଲେ । ଅସମାପ୍ତ ଅଲୋଚନାକୁ ସଙ୍ଗରେ ଧରି ସେମାନେ ନିଜ ନିଜ ଘରକୁ ଫେରିଲେ ।

ସେହିଦିନରୁ ରଙ୍ଗିନାନୀର ରଙ୍ଗ ବଦଳିଲା । ସିଧା ଭାବେ କାହା ମୁହଁକୁ ଚାହୁଁ ନଥିବା ରଙ୍ଗିନାନୀ ଫଣା ଟେକି ଶିଖିଲା । ଅଣ୍ଟାରେ ଲୁଗା ଗୁଡେଇ, ହାତ ହଲେଇ ଡେଇଁ ଡେଇଁ ସେ କଳି କଲା । ଏହିଭଳି ଏକ ଅବସରରେ ଗୋଟେ ପାଜି ତାକୁ 'ରଙ୍ଗିନାନୀ' ବୋଲି ଥଟ୍ଟାରେ ଡାକିଦେଲା ଓ ସେ ଭୀଷଣ ଚିଡ଼ିଥିଲା । 'ରଙ୍ଗିନାନୀ' ନାଁରେ ସେ ଯେତେ ଚିଡ଼ିଲା ପିଲାଏ ତାକୁ ସେତେ ଅଧିକା ଚିଡେଇଲେ ଓ ସମୟକ୍ରମେ ସେ ତା' ନିଜ ନାଁ ହଜେଇ 'ରଂଗିନାନୀ' ହୋଇ ରହିଗଲା । ତା' ଭିତରେ ସେ ବୋଧହୁଏ ବଞ୍ଚିବାର ସରଳ ସୂତ୍ରଟିଏ ଆବିଷ୍କାର କରି ପକାଇଥିଲା । ସେ ଫଣା ଟେକି ସମସ୍ତଙ୍କୁ ଗୋଡାଇଲା, ସମସ୍ତଙ୍କ ସପ୍ତ ପୁରୁଷ ଉଝାଳିଲା । ତା'ର ଦୁର୍ଭାଗ୍ୟ ପାଇଁ ସହାନୁଭୂତିରେ ପୋତି ହୋଇ ଯାଉଥିବା ଗ୍ରାମବାସୀମାନେ ପରିବର୍ତ୍ତିତ ପରିସ୍ଥିତିରେ ତାକୁ

ନିଜର ସମକକ୍ଷ ବା ତା'ଠାରୁ ଉର୍ଦ୍ଧ୍ୱରେ ବୋଲି ଭାବିଲେ । ତେଣୁ ସେମାନେ ତାକୁ ଭୟ କଲେ ଓ ତାଙ୍କର ଶତ୍ରୁ ବୋଲି ମନେକଲେ ।

ରଙ୍ଗିନାନୀର ଦୌରାତ୍ମ୍ୟ ଧୀରେ ଧୀରେ ବଢ଼ିବାକୁ ଲାଗିଲା । ନିଛାଟିଆ ଖରାବେଳେ ଓ ଗଭୀର ରାତ୍ରିରେ ସେ କାହା ବାଡିରୁ ବାଇଗଣ, କାହା ଗଛରୁ ଅମୃତଭଣ୍ଡା ତ କାହା ବିଲରୁ ମୁଗ ଚୋରେଇ ନେଉଥିଲା । କେହି କେହି ଚୋରିର ପ୍ରମାଣ ପାଉଥିଲେ ମଧ୍ୟ ତାହା ସହ ମୁକାବିଲା କରିବାକୁ ଯଥେଷ୍ଟ ସାହସ ଯୋଗାଡ କରି ପାରୁ ନଥିଲେ । ଜଣେ ଅନାବଶ୍ୟକ ଘୃଣିତ ମଣିଷ ବୋଲି ବିବେଚିତ ହୋଇ ବି ସେ ନିଃସଙ୍କୋଚ ଭାବରେ ଗାଁ' ଭିତରେ ବିଚରଣ କରୁଥିଲା । ରଙ୍ଗିନାନୀ ତା'ର ଶତ୍ରୁମାନଙ୍କୁ ବେଳେବେଳେ ଖୁସି ହେବାର ସୁଯୋଗ ମଧ୍ୟ ଦେଉଥିଲା । ଯୁବକ ବଳିଆଟାର ବାଳ ଝିଙ୍କି, ତା' ବାହୁ ଟାଣି ତା' ଉପରେ ସେ ବିଧା, ଚାପୁଡା, ପାହାର ଅଜାଡି ପକାଉଥିଲା । ବଳିଆ ନିଜ ଦୁଇ ହାତରେ ତା'ର ବିଭିନ୍ନ ଅଙ୍ଗକୁ ମା'ର ମାଡରୁ ରକ୍ଷା କରୁ କରୁ ତା'ର ଭର୍ତ୍ସନା ଶୁଣୁଥିଲା, 'କୋଉ ମାଇପ ପାଖରେ ଥିଲୁ ଏତେବେଳଯାଏ, ଆଁ ? ମୁଁ ତତେ ଗନ୍ଧଉଛି, ଏ ଘର ଗନ୍ଧଉଛି । ହଜାରେ ଥର କହିଲି, ଘରେ ଖା' । ଘରେ ରହ । କୁଆଡେ ଗାତରେ ପଶିବାକୁ ଚାଲିଯାଉଛୁ, ହଇରେ ପୋଡମୁହାଁ ? କାହା ବିଲରେ ଖଟୁଥିଲୁ ?' ବଳିଆ ମାଡ ଖାଉ ଖାଉ ଜବାବ ଦେଉଥିଲା, 'ହରି ଧଳ କିଆରିରେ ।' ରଙ୍ଗିନାନୀ ରାଗରେ ପାଚି ଯାଉଥିଲା, 'ହରିଆ ଦିହରେ କ'ଣ ବଡରୋଗ ହୋଇଛି ତୋତେ ନେଇ ଖଟଉଛି । ହଉ, ଦିନମାନ ତ ଖଟିଲୁ, କ'ଣ ରୋଜଗାର କରିଛୁ ? ଟଙ୍କା ଦେଇଛି ?'

'ନାଁ' । ଡରି ଡରି ବଳିଆ ଜବାବ ଦେଉଥିଲା ।

'ଆଉ ? କାହିଁକି ଖଟୁଥିଲୁ ?'

'ସରୋଜ ସାଙ୍ଗରେ ଯାଇଥିଲି । ସେ ଡାକିଲା । ସରୋଜ କହିଲା- ଯା ।'

'ମାଗଣା ?'

'ପିଠା ଦେଇଥିଲା ।'

'ହଇରେ ସର୍ବସ୍ୱଗିଳା, ମୁଁ ତତେ ଖାଇବାକୁ ଦୋଉନି ? ତୁ ଚାଲିଗଲୁ ମାଗି ଖାଇବାକୁ । ସେ କୋଢିଏଙ୍କୁ ଆଉ କେହି ମିଳିଲେନି ? ମୋରି ପୁଅକୁ ଦି'ଟା ପିଠା ଦେଇ ଦିନମାନେ ଖଟଉଛନ୍ତି ?' ଆହୁରି ଦି'ଟା ବିଧା ତା' ଦେହରେ ଥୋଇ କହୁଥିଲା ରଙ୍ଗିନାନୀ ।

'ଏମିତି ଯଦି ସବୁବେଳେ ମାରିବୁ ମୁଁ କଲିକତା ପଳେଇବି । ସରୋଜ କହିଛି, ପଠେଇଦବ ମତେ ତା' ସାଙ୍ଗ ସାଥିରେ ।'

'ଯା, ପଶିବୁ ସେଇ ଗାତରେ । କଲିକତା ଯିବ । ତତେ ସେଇ ଅଲପେଇସା ସରୋଜ ଗୁଣି କରିଛି । ଆଗରେ ପାଆନ୍ତି ଯଦି ସେ ଚୁଲିପଶାର ବେକ ମୁଁ ମୋଡି ଦିଅନ୍ତି । କୋଉ ଗୁଣି ଗାରିଡି ମୋର କିଛି କରିପାରନ୍ତା ନାହିଁ । ତତେ କେତେଥର କହିଲି ତା' ସାଙ୍ଗ ହବୁନି ବୋଲି ?'

ମା' ପୁଅଙ୍କର ଏହି ଦୃଶ୍ୟ ଚାଲିଥିବା ବେଳେ ଗାଁ' ପିଲାଏ ସେଠାରେ ଜମା ହୋଇ ଯାଆନ୍ତି । ମାଇପେ ନିଜ ଦେହଟିମାନ କବାଟ ଫାଙ୍କରେ ଲୁଚେଇ ମୁହଁ ଗଳେଇ ଉପଭୋଗ କରୁଥାଆନ୍ତି ମଜା । ପୁରୁଷମାନେ ଦଳ ଦଳ ହୋଇ କିଛି ନଦେଖିବା ଭଳି ସବୁ ଦେଖୁଥାନ୍ତି ଓ ଶୁଣୁଥାନ୍ତି । ରଙ୍ଗିନାନୀର ହୋସ ଆସିଲେ ସେ ଚିଲାଏ 'ନାଟ ଦେଖୁଥା'ରେ ଅଲପେଇସା ଦଳ । ନାଟ ଲଗାଅ ଆଉ ଦେଖ । ମରିବ । ସମସ୍ତେ ମରିବ ।' କହି ସେ ବଳିଆକୁ ଘର ଭିତରକୁ ଠେଲିଦିଏ ଓ କବାଟ ଦେଇଦିଏ ।

ଘରେ ବଳିଆ ଅଭିମାନ କରେ । ରଙ୍ଗିନାନୀ ତା' ଗାଲରେ ଆଉ ଦି' ଖୁନ୍ଦା ପକାଇ ତାକୁ ଏକୋଇଶିଆ ଛୁଆ ଭଳି ମାଡ଼ିବସି ଖୁଆଏ । ତା'ପରେ ବିଛଣା ବିଛେଇ ତାକୁ ଶୋଇଦିଏ । ବଳିଆକୁ ଥଣ୍ଡା ଧରିଲେ ସେ ସୋରିଷ ତେଲରେ ରସୁଣ ଫୁଟେଇ ତା' ଗୋଡ଼ରେ ମାରେ । ବଳିଆକୁ ସଲସଲ ଲାଗେ । ସେ ହସିଦିଏ । ରଙ୍ଗିନାନୀ ମଲମ ଆଣି ତା' ଦେହରେ ନୋଳା ଫାଟି ଯାଇଥିବା ଜାଗାରେ ଲଗାଏ । ସେ ବଳିଆର ମୁଣ୍ଡ ଆଉଁସେ । କଅଁଳେଇ କରି କହେ, 'କଥା କହି ଶିଖିରେ ଧନ । କାମୁଡ଼ି ଗୋଡ଼େଇ ଶିଖ୍ । ଫଁ କରି ଜାଣ ।'

ଦିନ ଗଡ଼େ । କିନ୍ତୁ ବଳିଆ କଥା କହି ଜାଣେ ନାହିଁ । ସେ କାମୁଡ଼ି ଗୋଡ଼େଇ ପାରେ ନାହିଁ କି ଫଁ କରି ଜାଣେ ନାହିଁ । ରଙ୍ଗୀନାନୀ ସକାଳୁ ବଳିଆକୁ ଖୋଇପେଇ ଘରୁ ନ ବାହାରିବାକୁ ଆକଟ କରି ଚାଲିଯାଏ । ସେ ପାଖ ଗାଁମାନଙ୍କୁ ଯାଇ ଧାନକୁଟେ, କାହାର ବୋଲହାକ କରେ ଓ ନିଜର ତଥା ତା' ପୁଅର ଆହାର ଯୋଗାଡ଼ କରି ଫେରି ଆସେ । ସେ ଅଧିକ ସମୟ ହୀରାଖଣ୍ଡ ଯାଏ । ରଙ୍ଗିନାନୀ ଯେତେବେଳେ ପ୍ରଥମେ ହୀରାଖଣ୍ଡ ଗଲା ଚଷାଖଣ୍ଡ ଗାଁ' ଲୋକେ ତାକୁ ବାରଣ କଲେ, ନିଆଁ ପାଣି ଅଟକ ରଖିବାକୁ ଧମକ ଦେଲେ । ସେତେବେଳେ ତା' ଫଁରେ ଏତେ ବିଷ ନଥିଲା । ରଙ୍ଗିନାନୀ ନିଜ ଫଣାରେ ବେଶି ବିଷ ଭରିଲା ଓ ଜୋର କରି ଫଁ କରି ଶିଖିଲା । ବୀର ପାଇକ ପୁଏ ଅଷାଣ୍ଢୁଆ ମାଇକିନିଆଟାକୁ ଦେଖି ଡରକିଲେ । ପଛଘୁଞ୍ଚା ଦେଲେ । ଚଷାଖଣ୍ଡ ବାଲାଏ କଥାବାର୍ତ୍ତା ହୁଅନ୍ତି, ରଙ୍ଗନାନୀ କାଳେ ଚଷାଖଣ୍ଡ ଗାଁ'ର ଗୁପ୍ତ ଖବର ହୀରାଖଣ୍ଡ ଗା'ରେ ପହଞ୍ଚେଇ ଦେବ । ତେଣୁ ଚଷାଖଣ୍ଡର କୌଣସି ବିଚାର ଆଲୋଚନା ରଙ୍ଗିନାନୀ କାନ ଯାଏ ଆସି ପାରେନା ।

ରଙ୍ଗିନାନୀ ଚାଲିଗଲେ ବଳିଆ ଘରୁ ବାହାରି ଆସେ । ସରୋଜ ଓ ଶୁଭେନ୍ଦୁ ଛକରେ ଅପେକ୍ଷା କରିଥାନ୍ତି । ସରୋଜ ତାକୁ କୁକୁର ସାଙ୍ଗରେ ଦୌଡ଼ିବାକୁ କୁହେ । ନଈରେ ପହଁରି ଏପାରିରୁ ସେପାରିକୁ ଯିବାକୁ କୁହେ । ତାକୁ ତେନ୍ତୁଳି ନ ହେଲେ ପିଜୁଳି ଖାଇବାକୁ ଦେଇ ନେଇଯାଏ ତାଙ୍କ ଜମି ବାଛିବାକୁ । ବଳିଆକୁ ଯେକୌଣସି କାମରେ ଲଗାଇ ଦେଲେ ଖୁବ୍ ଦକ୍ଷତାର ସହ ସେ କାମ କରିପକାଏ । ତେଣୁ ମୌକା ଦେଖି ଯିଏ ଯେତେବେଳେ ପାରିଲା ବଳିଆକୁ ଡାକିନେଇ ତା' ମା' ଅଲକ୍ଷ୍ୟରେ ତାକୁ କାମରେ ଲଗାଇ ଦିଅନ୍ତି । ବଳିଆ, ସରୋଜକୁ ପଚାରେ, 'କେବେ କଲିକତା ପଠେଇବୁ ମୋତେ ?' ସରୋଜକହେ, 'ବୁଝି ଦେବି ଯାରି ଭିତରେ ।'

ଦେହ ଅସୁଖ ଲାଗିବାରୁ ରଙ୍ଗିନାନୀ ସେଦିନ ଖରାବେଳେ ଚାଲିଆସିଲା ହୀରାଖଣ୍ଡରୁ । ସେ ଘରେ ପଶିଛି କି ନାହିଁ ଦେବାବୋଉ ତାଙ୍କ ଦୁଆରେ ଡାକ ଛାଡ଼ିଲା, 'ଏଇ ରଙ୍ଗିନାନୀ ! ଆରେ ବଳିଆ !! ଡାକିଲୁ ତୋ ମା'କୁ ।'

ରଙ୍ଗିନାନୀ ବାହାରି ଆସିଲା ଘରୁ । ତା' ପଛେ ପଛେ ବଳିଆ । ରଙ୍ଗିନାନୀ ଖିଙ୍କାରୀ ହେଲା ଭଳି କହିଲା, 'କ'ଣ କହିବୁ ଜଲଦି କହ । ମୋ ମୁଣ୍ଡ ବିନ୍ଧୁଛି ।'

ଦେବାବୋଉ ଟିକିଏ ଦମ୍ ନେଲା ଓ କିଛି ସାହସ ସଞ୍ଚୟ କଲା । ତା' ପରେ ଗଳାରେ ଜୋର ଦେଇ ଝାଡ଼ିଝାଡ଼ି କହିଲା, 'ମୋ ବାଡ଼ିରୁ କାକୁଡ଼ି କାହିଁକି ଚୋରି କଲୁ ?'

ରଙ୍ଗିନାନୀ ଦ୍ୱାର ସେପଟରୁ ଡେଇଁ ଡେଇଁ ମାଡ଼ି ଆସିଲା ଦେବାବୋଉ ଆଡ଼େ, 'ଆଲୋ ହେ, ହଇଲୋ ଛତରଖାଇ ! କ'ଣ କହିଲୁ ? ମୁଁ ଚୋରଣୀ ? ଆଁ । ମରିବୁ ଲୋ ମରିବୁ । ଯୋଉ କାକୁଡ଼ି ପାଇଁ ଗର୍ବ କରୁଛୁ ସେ କାକୁଡ଼ି ବି ଆଁ କରି ମରିବ ।'

ଗୋଟେ ଦୃଢ ମନ ନେଇ ଆସିଥିଲା ଦେବାବୋଉ । ସେ ଅଣ୍ଟାରେ ଲୁଗା ଭିଡି ଦେଇ ଛାତି ଉଚ୍ଚା କରି ରଙ୍ଗିନାନୀ ଆଗରେ ଛିଡା ହେଲା, 'ତୋ ଭଳିଆ ଛତରି ନୁହେଁ ଲୋ ମୁଁ । ରାଣ୍ଡ ଏତେ ଅବସ୍ଥା ହେଉଛୁ, ତା'ପରେ ବି ବୁଝୁନୋଉଁ । ଘଇତା ମଲା । ପରଘରେ ଯାଇ ଧାନ କୁଟିଲୁ । ପୁଅ ତୋର ଏତେ ସରି ହେଉଛି । ତୋରି ଗୁଣରୁ ଲୋ ।'

ରଙ୍ଗିନାନୀ ଦି ହାତ ହଲେଇ ହଲେଇ ଦେବାବୋଉ ଉପରକୁ ଚଢିଯିବା ଭଳି ଆଗେଇ ଗଲା । ଦେବା ବୋଉ ପଛେଇ ଆସିଲା । ରଙ୍ଗିନାନୀ କହିଲା, 'କ'ଣ କହିଲୁ ଲୋ ଦାରିଆଣି, କ'ଣ କହିଲୁ ତୁ ? ମୁଁ ଚିହ୍ନେ ଲୋ ଚିହ୍ନେ । ତତେ ଚିହ୍ନେ, ତୋ ଘଇତାଙ୍କୁ ଚିହ୍ନେ । ଏ ଗାଁ'ସାରା ସମସ୍ତଙ୍କୁ ଗୋଟି ଗୋଟି କରି ଚିହ୍ନେ । ପାଞ୍ଚଟା ଛୁଆ ବେଇଛୁ ବୋଲି ଭାରି ଗର୍ବ ତୋର । ମୁଁ କ'ଣ ଜାଣିନି ଭାବିଛୁ ? ସବୁ ଜାଣେ । କୋଉଠି ଶୋଇ ତୁ ଛୁଆ ଜନ୍ମ କରୁ ସବୁ ଜାଣେ । ଗର୍ବ ତୋର ଖର୍ବ ହବ ଲୋ ହବ ।'

ରଙ୍ଗିନାନୀର ପ୍ରତିକିୟା ଶୈଳୀରୁ ଦେବାବୋଉ ଅଧିକ ସାହସ ପାଇଲା । ସେ କହିଲା, 'ତୋ ଭଳି ଦୋଚାରୁଣୀ ନୁହେଁ ଲୋ ମୁଁ । ଘଇତା ମଲା ଘରୁ ଗୋଡ କାଢିଲୁ । ଚୋରି କଲୁ । ତୋ ପୁଅ ସେଠି ଛିଡା ହୋଇଛି । ତା' ମୁଣ୍ଡରେ ହାତ ଦେଇ କହିଲୁ- ତୁ ନେଇନୁ କାକୁଡି ? କିରେ ବଳିଆ, ତୋ ମା' ଆମ ବାଡିରୁ କାକୁଡି ଆଣି ନଥିଲା ?'

ବଳିଆ, ରଙ୍ଗିନାନୀ ପଛରେ ଛିଡା ହୋଇଥିଲା । ସେ କହିଲା, 'ହଁ, କାଲି ଆଣିଥିଲା । ମୁଁ ଖାଇଛି' ।

ରଙ୍ଗିନାନୀ ହଠାତ୍ ବୁଲି ପଡିଲା ବଳିଆ ଆଡେ, 'କ'ଣ କହିଲୁ ପୋଡାମୁହାଁ, ଖାଇଛୁ ? ରହ ଆହୁରି ଖାଇବୁ । ଗାତରେ ପଶିବାକୁ ତୁ କୁଆଡେ ଆସିଛୁ, ଯା ।' ରଙ୍ଗିନାନୀ ବଳିଆକୁ ଠେଲି ଠେଲି ନେଇ ଘରେ ପୂରାଇ ଦେଇ ଆସିଲା । 'କ'ଣ କହିଲୁ ତୁ ପୁତୁଖାଇ ? ତୋର ଏତେ ସାହସ ? ମୋ ପୁଅ ଉପରେ ଆଖି ? ମରିବୁ ଲୋ ମରିବୁ । ତୁ ମରିବୁ । ରାଣ୍ଡ ହବୁ । ଯୋଉ ପୁଅଙ୍କ ପାଇଁ ଗର୍ବ କରୁଛୁ ସେ ପୁଅ ତୋର ଗୋଟି ଗୋଟି ହୋଇ ମରିବେ । ତତେ ଧର୍ମ ସହିବ ନାହିଁ ଲୋ, ମତେ ଦୋଷ କଲୁ ।' ରଙ୍ଗିନାନୀ କହି କହି ନିଜ ଘର ଭିତରକୁ ପଶିଗଲା ଓ କବାଟ ଦେଇଦେଲା ।

ଜୀବନରେ ପ୍ରଥମ ଥର ରଙ୍ଗିନାନୀର ପଛଘୁଞ୍ଚା ଗ୍ରାମବାସୀଙ୍କୁ ବେଶ୍ ଆମୋଦିତ କଲା । ସମସ୍ୟାର ସମାଧାନ ନହୋଇ ପାରିଥିଲେ ବି ଦେବାବୋଉ ରଙ୍ଗିନାନୀକୁ ଚେଙ୍କେ ଦେଇ ପାରିଛି ଭାବି ସଗର୍ବେ ଫେରିଲା ।

ଦେବାବୋଉ ମୁଣ୍ଡରେ ଶିରପା ବାନ୍ଧି ଗାଁବାଲାଏ ରଙ୍ଗିନାନୀର ପ୍ରଥମ ପରାଜୟର ଉତ୍ସବ ମନାଉଥିବା ବେଳେ ବଳିଆ କାନ୍ଦିକାନ୍ଦି ଗାଁ' ଦାଣ୍ଡକୁ ଚାଲି ଆସିଲା । ସେ ସରୋଜକୁ କହିଲା, 'ମୁଁ କୋଉଦିନ କଲିକତା ଯିବି କହ । ଦେବାବୋଉ ଘର ବାଡିରୁ ମା' କାକୁଡି ନେଇଥିଲା । ମୁଁ କହିଦେଲି ବୋଲି ମୋତେ ମାରୁଛି । ତୁ ମତେ କାହିଁକି ନେଇ ଚାଲୁନୁ କଲିକତା ?'

ସରୋଜ କିଛି ଉତ୍ତର ଦେବା ଆଗରୁ ରଙ୍ଗିନାନୀ ଦୌଡି ଦୌଡି ଆସୁଥିବାର ସେ ଦେଖି ପାରିଲା । ଦରମଲା ସାପର ବିଷ ଉତ୍କଟ । ତେଣୁ ତାକୁ କେହି ପ୍ରତିରୋଧ କରିବାର ସାହସ କଲେ ନାହିଁ । ସେ ସରୋଜକୁ କହିଲା, 'ମୋ ପୁଅକୁ ଗୁଣି କରୁଛୁ । ମରିବୁରେ ତୁ । ଅକାଳ ମୃତ୍ୟୁ ହେବ ତୋର । ମୋ ବେଇଲା ପୁଅ ମୋ କଥା ଶୁଣୁ ନାହିଁ, ତୋ ପାଖକୁ ଦୌଡୁଛି । ତୁ

ମରିବୁ, ନିଶ୍ଚୟ ମରିବୁ ।' ତା'ପରେ ସେ ବଳିଆର ବାଳ ଝିଙ୍କିଝିଙ୍କି ତା' ଘରକୁ ନେଇଗଲା ବେଳେ ପାଟି କରୁ ଥିଲା, 'ପୋଡାମୁହାଁ, ଗାତରେ ପଶିବାକୁ ଚାଲି ଆସୁଛୁ ।'

ରଙ୍ଗିନାନୀ ଓ ବଳିଆ ଚାଲିଯିବା ପରେ ସରୋଜ, ଶୁଭେନ୍ଦୁ ଓ ଅନ୍ୟମାନଙ୍କର ଏକ ସରଗରମ ଆଲୋଚନା ଚାଲିଲା । ସେତେବେଳେ ରଘୁ ମହାନ୍ତି ସେଠି ପହଞ୍ଚିଲେ । ସେ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଉତ୍‌ଥାପନ କଲେ, 'ଏ ବର୍ଷ ତ ବର୍ଷା ଦଗା ଦେଲା । ବେଙ୍ଗାରେ ବି ପାଣି ବେଶି ନାହିଁ । ଯାହା ବି ଅଛି ବନ୍ଧ ସେପଟରେ । ହୀରାଖଣ୍ଡ ବାଲାଏ ବନ୍ଧ ପାଖରେ ତମ୍ବୁ ପକାଇ ଜଗି ରହିଛନ୍ତି । ତାଙ୍କ ଜମିକୁ ପାଣି ମ୍ରାଡୁଛି । ଆମ ବିଲ ଫାଟି ଆଁ କଲାଣି । ତମେ ଯୁବକମାନେ ପରା ଏଥରର ଦାୟିତ୍ୱ ନେଇଥିଲ ? କ'ଣ ଠିକ୍ କଲ ?'

ଜୀବିକାର ଏ ମୁଖ୍ୟ ସମସ୍ୟାଟି ଗାଁ'ରେ କିଛିଦିନ ଧରି ଆଲୋଚିତ ହୋଇ ଆସୁଛି । ପାଣିର ବନ୍ଦୋବସ୍ତ ଖୁବ୍ ଶୀଘ୍ର ନ ହେଲେ ଚଷାଖଣ୍ଡ ଗାଁ'ର ଫସଲ ଉଜୁଡିଯିବ । ଗତବର୍ଷ ଖୁବ୍ ବର୍ଷା ହୋଇଥିଲା । ନଈ ପାଣିରେ ଉବୁଟୁବୁ ହେଲା । ଚଷାଖଣ୍ଡର ଟୋକାଦଳ କହିଥିଲେ, 'ଆମେ ବନ୍ଧ ଜଗି ରହିବୁ । ଭାଙ୍ଗିବାକୁ ଦେବୁ ନାହିଁ ।' କିନ୍ତୁ ବୟସ୍କମାନେ କହିଥିଲେ, 'ହୀରାଖଣ୍ଡ ସାଙ୍ଗରେ ଆମର ବହୁତ ଗଣ୍ଡଗୋଳ ହେଲାଣି । ସବୁଥର ଆମର କ୍ଷତି ହେଉଛି ଅଧିକ । ଏଥର ଆମେ ବଡମାନେ ଯାଉଛୁ । ତାଙ୍କୁ ବୁଝାଇବୁ । ତୁମେ ପିଲାମାନେ ରୁହ ଗାଁ'ରେ ।' ତା'ପରେ ବଡମାନେ ଯାଇଥିଲେ ହୀରାଖଣ୍ଡ । ହୀରାଖଣ୍ଡ ବାଲାଏ ତାଙ୍କୁ ଅଟକ ରଖି ଆସି ବନ୍ଧ ଭାଙ୍ଗି ଦେଲେ । ବନ୍ଧ ଭାଙ୍ଗିବାରୁ ଚଷାଖଣ୍ଡ ବାଲାଏ ବାଡି, ଠେଙ୍ଗା ଧରି ଆସିଲେ । ଗଣ୍ଡଗୋଳ ହେଲା । ଚଷାଖଣ୍ଡ ବାଇଧରର ମୁଣ୍ଡ ଫାଟିଲା । ଦେହରେ ଠେଙ୍ଗା ବାଜିଲା । ଛଅମାସ ଡାକ୍ତର ଖାନାରେ ପଡିବା ପରେ ସେ ଉଠିବାକୁ କ୍ଷମ ହେଲା । ସେଇ ପାଣିରେ ଗତବର୍ଷ ଚଷାଖଣ୍ଡର ଅଧା ଫସଲ ଧୋଇଗଲା । ତେଣୁ ଏଥର ଯୁବକମାନେ ବଡମାନଙ୍କ କଣ୍ଠରୋଧ କରିଦେଲେ, 'ତୁମମାନଙ୍କ ନେତୃତ୍ୱରେ ଚଷାଖଣ୍ଡର କିଛି ଉନ୍ନତି ହୋଇ ନାହିଁ, ହେବ ନାହିଁ । ଏଥର ଆମେ ହୀରାଖଣ୍ଡର ମୁକାବିଲା କରିବୁ । ବନ୍ଧ ଭାଙ୍ଗିବୁ ।

ରଘୁ ମହାନ୍ତି ପଚାରିଲେ, 'ଆଉ ଡେରି କଲେ ଧାନ ତ ମରିଯିବ ।'

ସରୋଜ କହିଲା, 'କାଲି ପାଇଁ ଠିକ୍ ହୋଇଛି । ଆଜି ସଞ୍ଜରେ ସଭା ବସିବ । କାଲି ବନ୍ଧ ଭାଙ୍ଗିବ ।'

ରଘୁ ମହାନ୍ତି ଆସ୍ତେ କରି ପଚାରିଲେ, 'କେମିତି । ସେମାନେ ତ ରାତିସାରା ପହରା ଦେଉଛନ୍ତି ।'

ସରୋଜ କହିଲା, 'ସେମାନେ ପହରା ଦେଉଥାନ୍ତୁ । ବନ୍ଧ ଭାଙ୍ଗିବା କଥା ଭାଙ୍ଗିବ ।'

'ତୁ ଯୋଜନାଟା କହିଲେ ସିନା ?'

'କେମିତି ଭଙ୍ଗାଯିବ ସେ କଥା ଗୁପ୍ତ । ଅନ୍ୟକଥା ସବୁ ସଂଧ୍ୟାରେ ଆଲୋଚନା ହେବ, କିନ୍ତୁ କାଲି ଗାଁ ଲୋକେ ପ୍ରସ୍ତୁତ ହୋଇ ରହିବେ, ସମସ୍ତେ । ହୀରାଖଣ୍ଡ ବାଲା ଆସିଲେ ତାଙ୍କୁ ଗୋଟେ ଶିକ୍ଷା ଦେବାକୁ ପଡିବ ।'

ରଘୁ ମହାନ୍ତି ଆହୁରି ସରୋଜ ପାଖକୁ ଲାଗିଯାଇ ତା' କାନ ପାଖରେ କହିଲେ, 'କେମିତି ଭାଙ୍ଗିବ ବନ୍ଧ ?'

'କହିଲି ପରା ସେଟା ଗୁପ୍ତ । କାମ ସରିଲେ ଜାଣିବନି ? ଶୁଭେନ୍ଦୁ ଆଉ ମୁଁ ମିଶି କରିଦେବୁ ଦେଖିଲା କାମ ।'

ହୀରାଖଣ୍ଡର ଦୌରାତ୍ମ୍ୟରେ ବ୍ୟଥିତ ଚଷାଖଣ୍ଡବାସୀ ରାହା ପାଉ ନଥିଲେ । ବାରମ୍ବାର ପରାଜୟର ଗ୍ଲାନିରେ ଉପାୟଶୂନ୍ୟ ହୋଇ ପଡିଥିବା ଗ୍ରାମବାସୀମାନେ ସରୋଜର ଯୋଜନା ବିଷୟରେ କିଛି ନବୁଝି ମଧ୍ୟ ତା'ପ୍ରତି ଆସ୍ଥାବାନ୍ ହୋଇ ପଡିଥିଲେ । ବୟସ୍କ ଓ ପ୍ରବୀଣମାନଙ୍କର ବିଗତ ଦର୍ଘ ସମୁର ବିଫଳ ଯୋଜନାକୁ ସରୋଜ ଖୋଲାଖୋଲି ସମାଲୋଚନା କରୁଥିଲା । ସେମାନେ ଏତେ ମ୍ରିୟମାଣ ହୋଇ ପଡିଥିଲେ ଯେ ସେମାନଙ୍କୁ ପ୍ରତି କଥାରେ ସମାଲୋଚନା କରି ପାରୁଥିବାରୁ ସେମାନେ ସରୋଜକୁ ବୀର, ଦକ୍ଷ ଓ ଯୋଗ୍ୟ ବୋଲି ଭାବିଲେ ଏବଂ ତା' ଯୋଜନା ଉପରେ କୌଣସି ପ୍ରଶ୍ନ ଚିହ୍ନ ନରଖି ତା' ନେତୃତ୍ୱରେ କାମ କରିବାକୁ ଅଣ୍ଟା ଭିଡିଲେ । ହୀରାଖଣ୍ଡର ସମ୍ଭାବ୍ୟ ଆକ୍ରମଣକୁ ପ୍ରତିହତ କରିବା ପାଇଁ ଗାଁର ସବୁ ପୁରୁଷ ଲୋକ ନିଜ ନିଜ ହତିଆର ଧରି ସଜାଗ ହୋଇ ରହିବେ । କିନ୍ତୁ ସମସ୍ତେ କବାଟ ବନ୍ଦ କରି ଘର ଭିତରେ ଶୋଇବାର ଅଭିନୟ କରୁଥିବେ । କେବଳ ସରୋଜ ଓ ଶୁଭେନ୍ଦୁ ରହିବେ ବାହାରେ । ଯଦି ସେମାନେ ଗାଁ' ଦାଣ୍ଡରେ ଆସି ଡାକ ଝାଡିବେ ତା'ହେଲେ ସବୁ ପୁରୁଷ ଲୋକେ ଏକାବେଳେକେ ବାହାରି ଆସିବେ ଓ ହୀରାଖଣ୍ଡବାଲାଙ୍କର ମୁକାବିଲା କରିବେ । ସରୋଜ ଗୋଟାଏ ନୂଆ ଅସ୍ତ୍ର କଲିକତାରୁ ଆଣିଛି ଓ ଦରକାର ପଡିଲେ ସେ ଅସ୍ତ୍ର ସାହାଯ୍ୟରେ ସେ ହୀରାଖଣ୍ଡ ବାଲାଙ୍କୁ ଥରେଇ ଦେବ ବୋଲି ସେ ପ୍ରତିଶ୍ରୁତି ଦେଲା ।

କୃଷ୍ଣପକ୍ଷର ରାତିଟା ବିଶାଳ ଜଣା ପଡୁଥିଲା । ଚଷାଖଣ୍ଡ ଗାଁ'ର ମଥାନମାନଙ୍କରେ ଚାଲିଥିଲା ଅନ୍ଧକାରର ଉଦଣ୍ଡ ନୃତ୍ୟ । ଅଦୂରରେ ପେଚାଟାଏ ରହି ରହି ଡାକ ଛାଡୁଥିଲା । ଗାଁ ମଶାଣି ମୁଣ୍ଡରେ କିଆବୁଦା ପାଖରେ ଲୁଚି ବସିଥିଲେ ଶୁଭେନ୍ଦୁ ଓ ସରୋଜ । ଶୁଭେନ୍ଦୁ ପଚାରିଲା, 'କାହିଁ ଆସିଲା ନାହିଁ ତ ?'

ସରୋଜ କହିଲା, 'ତୁ ଯା ଚୁପ୍ କରି ଡାକି ଆଣିବୁ ।'

ଶୁଭେନ୍ଦୁ ଡରିଲା ସ୍ୱରରେ କହିଲା, 'ତୁ ଦେଖିଛୁ ତ ନିଜେ, ରଙ୍ଗିନାନୀ ନାହିଁ ବୋଲି ?'

'ମୁଁ ନିଜେ ଦେଖିଛି । ସେ ବୋତଲଟାଙ୍ଗ ଆଡେ ଯାଉଥିଲା ସଞ୍ଜବେଳେ । ତା'ପରେ ବଳିଆକୁ ପଚାରିଥିଲି । ସେ କହିଲା, ତା' ମା' ରାତିରେ ଫେରିବନି ବୋଲି ।'

ରଙ୍ଗିନାନୀ ରାତିରେ ଘର ଛାଡି କେବେ କୁଆଡେ ଯାଏ ନାହିଁ । ଦୁଃଖର ସମୁଦ୍ର ଭିତରେ ସେ ବି ଥରେ ସ୍ୱପ୍ନ ଦେଖି ପକାଇବାକୁ ବାଧ୍ୟ ହେଲା । ତା' ସାଙ୍ଗ ବେଙ୍ଗୁଲି ବାହା ହୋଇଥିଲା ବୋତଲଟାଙ୍ଗରେ । ତା'ର ଝିଅଟିଏ । ରୂପ ଟିକିଏ କଞ୍ଚା ହେଲେ ବି ଗୁଣ ଭଲ । ସେ ସଧବା ଥିବାବେଳେ ଯେତେବେଳେ ବେଙ୍ଗୁଲିର ଝିଅ ଜନ୍ମ ହେଲା ଦି'ସଙ୍ଗାତ କଥା ହୋଇଥିଲେ ସମୁଦୁଣୀ ହେବେ ବୋଲି । ପିଲାଏ ବଡ ହେବା ପରେ ବେଙ୍ଗୁଲି କେବେ ବି ତା' ଜବାବ କଥା ଉଠାଇ ନାହିଁ । ବଳିଆର ଅବସ୍ଥା ଦେଖି ରଙ୍ଗିନାନୀ ଭାଗ୍ୟକୁ ନିନ୍ଦିଛି ଓ ପ୍ରସ୍ତାବଟା କଥା ବେଙ୍ଗୁଲି ପାଖରେ ଦୋହରାଇବାକୁ ଠିକ୍ ମଣିନାହିଁ । ବେଙ୍ଗୁଲି ଝିଅର ବର ଏବେ ବେଦୀରୁ ଉଠିଗଲା । ବେଙ୍ଗୁଲିକୁ ବୁଝାଇଲେ କାଳେ ସେ ବଳିଆ ପାଇଁ ରାଜି ହୋଇଯିବ ସେଥିପାଇଁ ସବୁ ଲଜ୍ଜା ତେଜି ରଙ୍ଗିନାନୀ ରାତିଟେ ବେଂଗୁଲୀ ପାଖରେ ରହି ତାକୁ ବୁଝେଇବ ବୋଲି ବୋତଲଟାଙ୍ଗ ଚାଲି ଯାଇଥିଲା । ଯିବା ବେଳେ ବଳିଆ ଏକା ରହି ପାରିବ କି ନାହିଁ ତାକୁ ଶହେ ଥର ସେ ପଚାରିଥିଲା । ବଳିଆ ବଡ ଦମ୍ଭରେ କହିଥିଲା, "ତୁ ଯାଉନୁ । ମୁଁ କ'ଣ ଛୁଆ ହୋଇଛି ?"

ରାତି ଆହୁରି ଅନ୍ଧାର ହେଲା । ସରୋଜ, ଶୁଭେନ୍ଦୁକୁ କହିଲା, "ଯା ତାକୁ ଡାକି ଆଣିବୁ ।"

ଶୁଭେନ୍ଦୁ ନଈବନ୍ଧକୁ ଚାହିଁ ତା' ଉପରେ ବୁଲୁଥିବା ଟର୍ଚ୍ଚ ଆଲୁଅକୁ ଦେଖି କହିଲା, "ବନ୍ଧ ଉପରେ ପହରା ଦେଉଛନ୍ତି । ତମ୍ବୁ ଭିତରେ ବି ଆଲୁଅ ଦିଶୁଛି । କେହି ଶୋଉ ନାହାନ୍ତି ରାତିରେ ।"

ଏତିକି ବେଳେ ପାଦଶବ୍ଦ ଶୁଭିଲା । ସରୋଜ ଟର୍ଚ୍ଚ ମାରିଲା । ବଳିଆ । "କିରେ, ଏତେ ଡେରି କଲୁ ?" ପଚାରିଲା ସରୋଜ, "ହଉ ଆ, ପାଦ ଚାପି ଚାପି । ଏକଦମ୍ ଯେମିତି ଶବ୍ଦ ନହୁଏ ।"

ସେମାନେ ତାଙ୍କ ପଟ ନଦୀ ପାର ହୋଇ ବନ୍ଧର ଆର ମୁଣ୍ଡକୁ ଗଲେ । ସରୋଜ, ବଳିଆ ହାତକୁ ମୁଣାଟାଏ ବଢ଼ାଇ ଦେଲା । କହିଲା, 'ଧୀରେ ଧୀରେ ଯିବୁ । ମୁଣାକୁ ହଲେଇବୁନି ଜୋର୍‌ରେ । ଆମେ ତତେ ଏଇଠି ଅପେକ୍ଷା କରିଛୁ । ତୁ ବନ୍ଧ ପାଖକୁ ଯା' । ଯେଉଁମାନେ ପହରା ଦେଉଛନ୍ତି ସେମାନେ ବନ୍ଧ ସେପଟକୁ ଗଲେ ତୁ ବନ୍ଧ ଏପଟେ କିଛି ବାଟ ଆଗେଇ ଯିବୁ । ତା'ପରେ ମୁଣାଟାକୁ ବନ୍ଧ ଉପରେ କଚାଡ଼ି ଦେଇ ଦୌଡ଼ି ପଳାଇ ଆସିବୁ । ତା'ପରେ ସିଧା ଘରକୁ ପଳେଇବୁ । ଘରେ ଯାଇ ନିଦରେ ଶୋଇ ପଡ଼ିବୁ । ମୁଣା ଫିଙ୍ଗିଲା ପରେ ସେଠି ଜମା ଅପେକ୍ଷା କରିବୁ ନାହିଁ । ମୁଣାକୁ ଟିକିଏ ଜୋର୍‌ରେ ଦୂରକୁ ଫିଙ୍ଗି ଦେବୁ, ବୁଝିଲୁ ?'

ବଳିଆ 'ହଁ' କଲା ଓ ସରୋଜ ହାତରୁ ମୁଣା ନେଇ ସେ ଆଗେଇଲା ।

ଶୁଭେନ୍ଦୁ ପଚାରିଲା, 'ଆମେ ଏଇଠି ଅପେକ୍ଷା କରିବା ?' ସରୋଜ କହିଲା, 'ନା, ଘରକୁ ପଳାଇବା ।'

କିଛି ସମୟ ପରେ ହୀରାଖଣ୍ଡ ଓ ଚଷାଖଣ୍ଡ ମଝି ବେଙ୍ଗାନଈ ବନ୍ଧ ଉପରେ ଗୋଟିଏ ଭୟଙ୍କର ଶବ୍ଦ ହେଲା । ଦୁଇ ଗାଁ'ର ଘରଗୁଡ଼ିକ ବି ଅଳ୍ପ ଅଳ୍ପ ଥରି ଉଠିଲା । ଆତଙ୍କରେ ଶିହରୀ ଉଠିଲେ ସେ ଅଞ୍ଚଳର ଲୋକେ । ବନ୍ଧଟାର ଅର୍ଦ୍ଧାଧିକ ଭାଙ୍ଗି ଖସି ପଡ଼ିଲା । ହୀରାଖଣ୍ଡ ଗାଁ' ପଟର ପାଣିସବୁ ବୋହି ଆସିଲା ଚଷାଖଣ୍ଡ ପଟକୁ । ଭାଗ୍ୟକୁ ଯେଉଁ ଦୁଇଜଣ ସେତେବେଳ ବନ୍ଧ ଉପରେ ପହରା ଦେଉଥିଲେ ସେମାନେ ବିଡ଼ି ଟାଣିବାକୁ ତମ୍ବୁ ପାଖକୁ ଚାଲି ଆସିଥିଲେ । ପ୍ରଚଣ୍ଡ ଶବ୍ଦ ଓ ଭୂମିର କମ୍ପନରେ ଭୟଭୀତ ହୋଇ ପହରାଦାରମାନେ ତମ୍ବୁ ଓ ଅସ୍ତ୍ରଶସ୍ତ୍ର ଛାଡ଼ି ହୀରାଖଣ୍ଡ ଗାଁ' ଭିତରକୁ ଦୌଡ଼ି ଆସିଲେ । ହୀରାଖଣ୍ଡବାଲାଏ ସେତେବେଳକୁ ଘରୁ ବାହାରି ଏକଜୁଟ ହୋଇ ସାରିଥିଲେ । କିନ୍ତୁ ଚଷାଖଣ୍ଡ ଉପରେ ଆକ୍ରମଣକୁ ଏକ ଉତ୍ସବ ମଣୁଥିବା ହୀରାଖଣ୍ଡ ବାଲାଏ ଆଉ ଏକ ଆକ୍ରମଣ ପାଇଁ ଭରସି ପାରିଲେ ନାହିଁ । କାଳେ ଚଷାଖଣ୍ଡ ବାଲାଏ ଆକ୍ରମଣ କରିବେ ସେଥିପାଇଁ ସେମାନେ ଏକଜୁଟ ହୋଇ ଗାଁ' ମୁଣ୍ଡରେ ରାତିସାରା ବସି ରହିଲେ ଉଜାଗର ହୋଇ ।

ଚଷାଖଣ୍ଡବାଲାଏ ବି ଏ ଭୀଷଣ ଶବ୍ଦରେ ଘରୁ ବାହାରକୁ ଆସିଥିଲେ । ଏକତ୍ର ହେଲେ ସମସ୍ତେ । ନଈ କୂଳକୁ ଯାଇ ଦେଖିଲେ, ନଈରେ ସୁଅ ଚାଲିଛି, ପାଣି ବଢ଼ୁଛି । ସେମାନେ ଅସ୍ତ୍ର ସଜ୍ଜିତ ହୋଇ ନୂତନ ଉତ୍ସାହରେ ଗାଁ' ମୁଣ୍ଡରେ ଜଗି ରହିଲେ । ପାଆନ୍ତା ଯାଏ କୌଣସି ବିପଦର ସୂଚନା ମିଳିଲା ନାହିଁ । ସେତେବେଳକୁ ଜହ୍ନ ଉଇଁ ସାରିଥିଲା । ସରୋଜ ଶୁଭେନ୍ଦୁ କାନରେ କହିଲା, "ବଳିଆ କୁଆଡ଼େ ଗଲା ? ଦେଖି ଆସିଲୁ ତା' ଘରେ ।"

ଶୁଭେନ୍ଦୁ ଆସି ଖବର ଦେଲା, "ବଳିଆ ଘରେ ନାହିଁ ।"

ଯୁଦ୍ଧକ୍ଷମ କେତେଜଣ ଦାୟିତ୍ୱବାନ ବାର ସରୋଜ ଓ ଶୁଭେନ୍ଦୁଙ୍କ ନେତୃତ୍ୱରେ ବନ୍ଧ ପାଖକୁ ଆସିଲେ । ତ୍ରସ୍ତ ହୀରାଖଣ୍ଡବାସୀ ତାଙ୍କ ଗାଁ' ମୁଣ୍ଡରେ ନିଆଁ ଜାଳି ଗୋଟିଏ ଜାଗାରେ ରୁଣ୍ଡହୋଇ

ବଞ୍ଚିବାର ଓ ଯୁଝିବାର ସାହସ ଯୋଗାଡ କରୁଥିଲେ । ଥରେ ମାତ୍ର ହେଉ ପଛେ ବିଜେତାର ଗର୍ବ ଚଷାଖଣ୍ଡବାସୀଙ୍କୁ ଗ୍ରାସୀ ଗଲା । ଅତୀତରେ ବହୁ ଯୁଦ୍ଧ ଦେଖିଥିବା ଓ ସବୁ ଯୁଦ୍ଧରେ ଏକରକମ ପରାସ୍ତ ହୋଇଥିବା ପ୍ରୌଢ ଶଙ୍କର ଆନନ୍ଦ ଗଦ୍ ଗଦ୍ ହୋଇ ରଡିଟେ ଛାଡିଲା, 'ଚଷାଖଣ୍ଡ କି... ଜୟ ।' ସଙ୍ଗେ ସଙ୍ଗେ ରଘୁ ରାଉତ ଓ ଯଦୁ ସାମନ୍ତରା ତା' ମୁହଁକୁ ମାଡି ବସିଲେ, 'ଚୁପ୍, ଚୁପ୍ ମୂର୍ଖ !'

କି ବିଡମ୍ବନା ! ଆନନ୍ଦର ଅବସରକୁ ବି ଉଲ୍ଲାସରେ କଟେଇବାକୁ ମନା । ଚୋରଙ୍କ ଭଳି ଉଦ୍‌ବୃତ୍ତ ଆନନ୍ଦକୁ ନିଜ ଭିତରେ ମାଡି ରଖି କଷ୍ଟ ଭୋଗିବାକୁ ପଡିଲା ।

ସରୋଜ ଓ ଅନ୍ୟ କେତେଜଣ ପାଣିରେ ପଶି ନଦୀ ଆର ପଟକୁ ଗଲେ । ଶୁଭେନ୍ଦୁ ଓ ଅନ୍ୟମାନେ ନଦୀ ଏପଟରେ ରହିଲେ । ବଳିଆକୁ ଖୋଜୁ ଖୋଜୁ ଶୁଭେନ୍ଦୁ ଚମକି ପଡିଲା । ଗୋଟାଏ ମାଟି ଅତଡା ତଳୁ ହାତଟାଏ ଦିଶୁଥିଲା, ମଣିଷ ହାତ । ସମସ୍ତେ ମିଶି ମାଟି କାଢି ଯାହାକୁ ଆବିଷ୍କାର କଲେ ସେ ଥିଲା ମୃତ ବଳିଆର କ୍ଷତବିକ୍ଷତ ଶରୀର । ଯୋଜନାଟାଏ ବିଜୁଳି ବେଗରେ କେତେକଙ୍କ ମୁଣ୍ଡରେ ପଶିଗଲା । ଅନ୍ୟମାନଙ୍କୁ ଅବଗତ କରାଗଲା ସେ ବିଷୟରେ । ଶେଷରେ ସମସ୍ତେ ସେ କଥାରେ ଏକମତ ହେଲେ ।

ବଳିଆର ଶବକୁ ଗାଁ' ମୁଣ୍ଡକୁ ଅଣାଗଲା । ଘଟଣାକୁ ଆଉ କାହାକୁ ଅବଗତ ନକରାଇ ବଳିଆକୁ ଶ୍ମଶାନ ଉତ୍ତର କଡକୁ ଥିବା ଘନ କିଆବଣ ଭିତରେ ଖୁବ୍ ଗହୀର ଗାତ ଖୋଳି ପୋତି ଦିଆଗଲା । ତା'ପରେ ଯିଏ ଯାହା ଘରକୁ ଆସି ସତର୍କତାର ସହ ନିଦ୍ରାର ଅଭିନୟ କଲେ ।

ଚିରାଚରିତ ରୀତିରେ ସକାଳ ଆସିଲା, ଝୁଲିଝୁଲି । ଆଖପାଖ ଗାଁ'ର ଯେଉଁ ଲୋକେ ପ୍ରଚଣ୍ଡ ଶବ୍ଦଟାର ଶ୍ରବଣରେ ନିଦ୍ରା ତେଜିଥିଲେ ସେମାନେ ଆସିଲେ । ବନ୍ଧଟାର ଦୟନୀୟ ଅବସ୍ଥା ଦେଖିଲେ । ବନ୍ଧ ଭଙ୍ଗା ରହସ୍ୟ ବିଷୟରେ ଚଷାଖଣ୍ଡବାଲାଙ୍କୁ ପଚାରିଲେ । ସମସ୍ତେ ଏକା ଉତ୍ତର ଦେଲେ, 'ଆମକୁ ଜଣା ନାହିଁ ।' ସେମାନେ ହୀରାଖଣ୍ଡ ବାଲାଙ୍କୁ ପଚାରିଲେ । ସେମାନେ ବି ଏକା ଉତ୍ତର ଦେଲେ, 'ଆମକୁ ଜଣାନାହିଁ ।' କେତେଜଣ ଟିଟିକାରି ମାରିଲେ ହୀରାଖଣ୍ଡବାଲାଙ୍କୁ 'ତମେ ପରା ବାବୁ ତମ୍ବୁ ପକେଇ ପହରା ଦେଉଥିଲ ? ଜାଣିନା କେମିତି ?' କେବଳ ନୀରବ ରହି ଭିତରେ ଭିତରେ ଜଳିବା ଛଡା ହୀରାଖଣ୍ଡ ବାଲାଙ୍କର ଅନ୍ୟ ଉପାୟ ନଥିଲା ।

ରଂଗିନାନୀ ଗାଁ'ରେ ପହଞ୍ଚି ଦେଖିଲା, ବନ୍ଧ ଭାଙ୍ଗିଛି, ନଈରେ ପାଣି ଆସିଛି । ସେ ଆଶ୍ଚର୍ଯ୍ୟ ହେଲା, ଖୁସି ବି ହେଲା । ମାଇଚିଆଏ ମାତିଛନ୍ତି । ତା'ର ଯେଉଁ ଗାଏମୋଟ ଅଧ ଏକର ଜମି ଶୁଖି ଫାଟି ଆସିଥିଲା, ବଳିଆକୁ ଲଗେଇ ସେଥିରେ ପାଣି ମଡେଇ ଦେବ । ନିଜେ ପଛେ କାମ ବନ୍ଦ କରି ଦି'ଦିନ ସେ ବଳିଆ ସାଙ୍ଗରେ ଲାଗିବ । ରଙ୍ଗିନାନୀ ତରତର ହୋଇ ତା' ଘରକୁ ପଶିଗଲା । ହେଲେ ବଳିଆ କାହିଁ ? ବଳିଆ ଘରେ ନଥିଲା । ସେ 'ବଳିଆ, ବଳିଆ' ହୁରି ଛାଡି ଗାଁ' ଏ ମୁଣ୍ଡରୁ ସେମୁଣ୍ଡ, ପଡିଆ, ବିଲ ସବୁଆଡେ ଖୋଜି ଆସିଲା । ଚଷାଖଣ୍ଡର କୌଣସି ଚାଷୀ ସେଦିନ ବିଲ କାମକୁ ଯାଇନଥିଲେ । ରଙ୍ଗିନାନୀ, ସରୋଜକୁ ଭେଟିଲା, 'କିରେ ଚୁଲିପଶା ! ମୋ ବଳିଆ କୁଆଡେ ଗଲା ?'

ସରୋଜ ଶାନ୍ତ ସ୍ୱରରେ କହିଲା, 'ତୁ ମୋତେ କାହିଁକି ମିଛୁଟାରେ ଗାଳିଦେଉ କହିଲୁ ?'

'ହଉ ବେଶି ଛୋପରା ହ' ନା । ବଳିଆ କାହିଁ କହିଲୁ ?'

'ସେ କଲିକତା ପଳେଇଲା ।'

'କଲିକତା ?' ରଙ୍ଗିନାନୀ ମୁଣ୍ଡରେ ହାତ ଦେଇ ମଝି ଦାଣ୍ଡରେ ବସିଗଲା ଓ ବାହୁନିଲା, 'କଲିକତାରେ ମୋ ଛୁଆ କେମିତି ରହିବରେ, ମୁଁ ଚାଣ୍ଡାଲୁଣୀ କାହିଁକି ତାକୁ ଛାଡି ଯାଉଥିଲି ଲୋ ।' ତା'ପରେ ସେ ଧଡକରି ଉଠିପଡି ସରୋଜର ବାଳ ଧରି ଝିଂକିବାରେ ଲାଗିଲା, 'ତୁଇ ଅକାଳମୌତିଆ, ଝାଡାପଶା, ଗାତପଶା ମୋ ପୁଅକୁ ଗୁଣି କରିଛୁରେ । ସେ ଛତରଖିଆ ତୋ ବୁଦ୍ଧିରେ ଚାଲିଲାରେ । ମୁଁ କ'ଣ କରିବି ଲୋ, ମୋ ଛୁଆ ଯାଇ କୋଉ ଗାତରେ ପଶିଲା ଲୋ...'

...ରଙ୍ଗିନାନୀର ବାହୁନା ଭିତରେ ସରୋଜ କଷ୍ଟେ ମଷ୍ଟେ ନିଜକୁ ତା' ହାତରୁ ମୁକ୍ତ କରି ଖସିଗଲା । ରଙ୍ଗିନାନୀ ସେଠି ମାଟିରେ ଗଡି, ରାହା ଲମ୍ବେଇ ଛାତି ପିଟି କାନ୍ଦିଲା ଓ ମନଇଚ୍ଛା ଅଭିଶାପ ଦେଲା ଅନେକ ସମୟ । ରଙ୍ଗିନାନୀର ଏ ଜୀବନ୍ତ ଅଭିନୟ ଦେଖିବାକୁ ଚଷାଖଣ୍ଡର କୌଣସି ବୟସ୍କ ଓ ଯୁବକ ଯୁବତୀ ତା' ପାଖକୁ ଆସିଲେ ନାହିଁ । କେତେଗୁଡାଏ ଉଲଗ୍ନ ଓ ଅର୍ଦ୍ଧ ଉଲଗ୍ନ ପିଲା ତା'ଠାରୁ ନିରାପଦ ଦୂରତ୍ୱରେ ତା' ଚାରିପାଖରେ ଘେରି ରହିଥିଲେ । ସେ ସେମାନଙ୍କୁ ମଝିରେ ମଝିରେ ବାଲି ଛାଟି କାନ୍ଦି ଚାଲିଥିଲା । ତା'ପରେ ସେ ସେଇଠି ଅଚେତ ହୋଇଗଲା ।

ବନ୍ଧଭାଙ୍ଗି ଚଷାଖଣ୍ଡ ଅଞ୍ଚଳକୁ କେଉଁ ପାଣି ଆସିଲା ସେଥିରେ କେବଳ ରଙ୍ଗିନାନୀ ବିଲକୁ ଛାଡି ବାକି ସମସ୍ତଙ୍କ ବିଲରେ ପାଣି ମଡା ହେଲା । ରଙ୍ଗିନାନୀର ଧାନ ମରିଗଲା । କିନ୍ତୁ ବାକି ସମସ୍ତଙ୍କର ଫସଲ ଖୁବ୍ ଭଲ ହେଲା । ହୀରାଖଣ୍ଡବାଲାଙ୍କର ମନୋବଳ ଏତେ ଭାଙ୍ଗିଗଲା ଯେ ସେମାନେ ବନ୍ଧଟା ମରାମତି କରିବା କଥା ଓ ଚଷାଖଣ୍ଡ ଉପରେ ଆକ୍ରମଣ କରିବା କଥାକୁ ପୂରା ପାସୋରି ଗଲେ । ବନ୍ଧ ଭାଙ୍ଗିବା ପରେ ବନ୍ଧ କାହିଁକି ଭାଙ୍ଗିଲା ଓ କ'ଣ କରିଥିଲେ ତାଙ୍କ ଗାଁ ଅପମାନିତ ହୋଇ ନଥାନ୍ତା ସେ ବିଷୟ ଉପରେ ଯୁକ୍ତି ହୋଇ ତାଙ୍କ ଗାଁ'ଦୁଇଭାଗ ହୋଇଗଲା ।

ରଙ୍ଗିନାନୀ ଏବେ ଆଉ ହୀରାଖଣ୍ଡ ଯାଉ ନଥିଲା । ଗାଁ'ରୁ କାହା ବାଡିରୁ ସେ ଆଉ ଫଳଟିଏ କି କଢଟିଏ ଚୋରି କରୁ ନଥିଲା । ସେ ପତ୍ର ଗୋଟାଉଥିଲା । ଗୋବର ଗୋଟେଇ ଘସି କରି ବିକୁଥିଲା । ତା' ମୁହଁରେ ଆଉ ସେ ଧାର ନଥିଲା । ସେ କାହାକୁ କଟୁ କଥା କହୁନଥିଲା, ଗାଳି ଦେଉନଥିଲା, ମାରି ଗୋଡାଉ ନଥିଲା । କିନ୍ତୁ ତା'ର ଗୋଟିଏ ପ୍ରଶ୍ନକୁ ଗାଁ' ସାରା ସମସ୍ତ ଡରୁଥିଲେ, 'ସତ କହିଲୁ, ବଳିଆ କୁଆଡେ ଗଲା ?' ସେମାନେ କହୁଥିଲେ, 'କଲିକତା ।' ସେମାନେ ଏହା କହୁଥିଲେ ଓ ଡରିଯାଉଥିଲେ । ବେଳେବେଳେ ସେ ବହୁ ସମୟ ଶୂନ୍ୟକୁ ଚାହିଁ କହୁଥିଲା, 'ଯୁଆଡେ ଯାଉ, ଚିଠି ଖଣ୍ଡେ ଦିଅନ୍ତା ନି ??'

ଏମିତି ଅନେକ ଦିନ ପରେ ଦିନେ ଦେଖାଗଲା ରଙ୍ଗିନାନୀ ନାହିଁ । ତା' ଘର ମୁକୁଳା ପଡିଛି, ଜିନିଷପତ୍ର ସେମିତି ଥୁଆ ହୋଇଛି, ଅଥଚ ସେ ନାହିଁ । ଦିନେ, ଦୁଇଦିନ, ତିନିଦିନ ଗଲା । ଶୁଣାଶୁଣିରୁ ଜଣାପଡିଲା, ରଙ୍ଗିନାନୀ ବି କଲିକତା ପଳେଇଛି ।



# ବଳି

## ନିବାରଣ ଜେନା

ପୁଅ ଅଝଟ ହେଲେ ମା'କହେ–ଶୋଇପଡ ବାବୁ, ନହେଲେ ଡାହାଣୀ ବୁଢୀ ଆସିବ । ପୁଅ ମଣ୍ଟୁ ଭାରି ଚାଲାକ୍ । ପଚାରେ–ମା' ଡାହାଣୀ କିଏ ?

ମା' ସେଇଠୁ ଡାହାଣୀ ବୁଢୀର କାହାଣୀ କହିବସେ–

ସେ ସବାଖାଇ ଅମ୍ନିବୁଢୀଟା କାଉଁରୀ କାମାକ୍ଷା ଯାଇ ମନ୍ତର ଶିଖିଚି । ରାତି ହେଲେ ନଂଗଳା ହୋଇ ମୁଣ୍ଡ ତଳକୁ ଗୋଡ ଦିଟା ଉପରକୁ କରି ଚାଲେ । ବିଷ୍ଠା ଚରେ । ଗାଁ ମୁଣ୍ଡରେ ସେ ବୁଢାଥୁଣ୍ଟା କଦମ୍ବ ଗଛକୁ ମନ୍ତୁରେଇ ଶୂନ୍ୟେ ଶୂନ୍ୟ ଉଡାଇ ନେଇଯାଏ କାଉଁରୀ କାମାକ୍ଷା ମୁଲକକୁ । ସେଠି ଅଛନ୍ତି ତା'ର ସାତ ଭଉଣୀ । ସାତ ସଉତୁଣୀ । ସିଏ ସେଦିନ କଅଁଳା ପିଲାଟେ ଶିକାର କରିଥାଏ  ତାକୁ ଆଣି ମନ୍ତର ଫୁଙ୍କି ଜିଆଁଇ ଦିଏ । ତା' ରକତ ସମସ୍ତେ ଚଁ ଚଁ କରି ପିଅନ୍ତି । ତାକୁ ପନିଖିରେ ପରିବା କାଟିବା ପରିକା କାଟନ୍ତି । ତା' ମାଉଁସକୁ ସମସ୍ତେ ବାଣ୍ଟି ଖା'ନ୍ତି ।

ମଣ୍ଟୁର ଦେହ ଥରି ଉଠେ । ମା' ଦେହ ବି ଶୀତେଇ ଯାଏ ଗୋଟିଏ ଅଜଣା ଭୟରେ । ଆତଙ୍କିତ ମା' ପୁଅକୁ କୋଳେଇ ନେଇ ତା' ଛାତିରେ ଦି'ହତା ଛେପ ଥୁକି ଦେଇ ପୁଅକୁ ପଣତ କାନିରେ ଘୋଡ଼ାଇ ନେଇ କହେ–ନା ଲୋ, ମୋ ଧନ, ମୋ ମଣି, ମୋ ନୟନ ପିତୁଳା । ସେ ବୁଢ଼ୀ ମରୁ । ତା' ବଂଶ ଲୋପ ପାଉ । ତୁ ମୋ ସୁନାପୁଅ । ମା' ବାସୁକୀ ତୋତେ କୋଟି ପରମାୟୁ ଦେଉ । ମୋ ଆୟୁଷ ନେଇ ତୋତେ ଭଲରେ ରଖୁ ।

ମଣ୍ଟୁ ସେଇଠୁ ଜିଦ୍ ଧରେ–ମା', ତୁ ନିତି ମୋତେ ଛାଡ଼ି କୁଆଡ଼େ ଯାଉଛୁ ? ମୁଁ ନିଦରୁ ଉଠି ତୋ ଦେଖା ପାଉନି । ଆଜି ଆଉ ଶୋଇବିନି । ତୁ ସକାଳେ କୁଆଡ଼େ ଗଲେ ମୁଁ ସାଥୀରେ ଯିବି ।

ମା ଚିହିଁକି ଉଠେ–ନା ଲୋ ଧନ । ଏମିତି ଅବୁଝା ହ'ନା । ବଣରେ ବାଘ, ଭାଲୁ ଆଉ କେତେ ଜନ୍ତୁ ଜୁନ୍ତା ଆତଯାତ । ଡାହାଣୀ ବୁଢ଼ା ବି ସେଇଠି ଘୂରେ । ତୁ ମୋ ସୁନା ପୁଅ, ଶୋଇପଡ଼ । ଉଠିଲେ ସ୍କୁଲ ଯିବୁ । ପାଠ ପଢ଼ିବୁ । ରେଂଜର ବାବୁ ପରିକା ବଡ଼ ମଣିଷ ହବୁ । ନାଇଁ ସେଇଟା ଘୁଷ୍‌ଖୋର । ତୁ ମୋର କଲେକ୍ଟର୍ ହବୁ । ସାହିବ ବନିବୁ । କାଲି ତୋ ପାଇଁ ବଣରୁ ବାଘୁଆ ମହୁ ନେଇ ଆସିବି । ଆମ୍ବ ବି ପାଚିଲାଣି । ଯଉଁଠି ହଉ ଖୋଜି ଆମ୍ବ ଆଣିବି । ମହୁଲ ଆଣି ପିଠା କରିବି । ଶୋଇ ଯା'ରେ ଧନ । ଆଖି ବୁଜି ଶୋଇ ଯା' ।

ମା' ଥାପୁଡ଼ିଦିଏ । ଗୁଣୁଗୁଣୁ ହେଇ ଗୀତ ଗାଏ- ଚକା ଚକା ଭଉଁରୀ... । ମା' କୋଳରେ ଭାଂଗିମୋଡ଼ି ହୋଇ ଗୀତ ଶୁଣୁଶୁଣୁ ଶୋଇଯାଏ ମଣ୍ଟୁ । ମା' ବି ଗୀତ ଗାଉ ଗାଉ ପୁଅକୁ ଶୁଆଉ ଶୁଆଉ ନିଜେ ଶୋଇଯାଏ ।

ପୂର୍ବ ଦିଗଟା ଫର୍ଚ୍ଚା ହବା ଆଗରୁ ଧଡ଼୍‌ପଡ଼୍ ହେଇ ଉଠିପଡ଼େ ମା' । ଝିଅ ଚମ୍ପିକି ବିଛଣାରୁ ଉଠାଇ ବରାଦ କରେ–ଘର ଚାରିପଟେ ଗୋବର ପାଣି ସିଂଚିଦେ । ଅଇଁଠା ବାସନଗୁଡ଼ିକ ମାଜି

ଦେବୁ । ମଣ୍ଟୁ ଶୋଇଚି, ଉଠିଲେ ତାକୁ ବହଲେଇ ଦେବୁ । ହାଣ୍ଡିରେ ଯେତିକି ପଖାଳ ଅଛି ଦି'ଜଣ ଖାଇବ । ମଣ୍ଟୁ ପିଲାଲୋକ ଅବୁଝା । ତାକୁ ଦି'ଟା ଅଧିକ ଦେବୁ । ଜାମାପ୍ୟାଣ୍ଟ ପିନ୍ଧାଇ ତା' ମୁଣ୍ଡ କୁଣ୍ଡେଇ ଦବୁ । ତାକୁ ଜମା ମାରିବୁନି । ଭାଇ ତୋର । ଜିଦ୍ ଧରିଲେ ବୁଝାଇ ଦବୁ । ତାକୁ ନେଇ ସ୍କୁଲରେ ଛାଡ଼ି ଦେଇ ଆସିବୁ ।

ମା'କଥାରେ ଚମ୍ପି ମୁଣ୍ଡ ଟୁଙ୍ଗାଉଥାଏ । ମା' ବ୍ୟସ୍ତ ହୋଇଉଠେ । ବଣକୁ ଯିବା ପାଇଁ । ସହଳ ସହଳ ବଣରେ ନ ପହଂଚିଲେ କିଛି ମିଳିବନି । ଜଂଗଲଟାକୁ ପୁରା ଝଟେଇ ଦେଇଥିବେ ଏ ମାଇପି ମାନେ । ଏ ସବାଖାଇମାନଙ୍କ ଆଖିରୁ ଯେମିତି କିଏ ନିଦ ଚୋରାଇ ନେଇଚି । ରାତି ନପାହୁଣୁ ମହୁଲ ଗଛମୂଳରେ ପଣପଣ ଗାଁଯାକର ଭୁଆସୁଣୀ ଆଉ ଭେଣ୍ଡିଆ ଟୋକୀମାନେ । ମୋର ବାବା ବଳ ବୟସ ଗଲାଣି । ସେଥିରେ ଫିର୍ ଭୋର ବେଳକୁ ଏ ଅଣ୍ଟାଟା ଧରୁଚି ଯେ ବିଛଣାରୁ କି ସହଜରେ ଉଠି ହେଉଚି ? ଏ ମଲା ଗତରଟା ଯୋଗୁଁ ମଣିଷ ଯାହା ଦହଗଂଜ ହେଉଚି । ମହୁଲ ଗୋଟାଇବା ମାତ୍ର, ମାସେ ଦେଢ଼ମାସର କାମ । ସେମିତି ନିମ୍ବ ଫଳ, କୋଚିଲା ଫଳ, ଝୁଣା, ଆମ୍ବ, ପଣସ, ଅଲଗା ଅଲଗା ଋତୁରେ ଅଲଗା ଅଲଗା କାମ । ଶାଳପତ୍ର ତୋଳିବା ଅବଶ୍ୟ ବାରମାସୀ କାମ । ଗଛର ପତ୍ର । ହେଲେ ତା ପାଇଁ ବି ଏ ଦଶାହାଟିଆ ଫରେଷ୍ଟର ବାବୁ ମାସିକିଆ ବଟି ନଉଚି । ନ ହେଲେ ବଣରେ ପଶେଇ ଦବନି । ଆଜିକାଲି ଯାହା ଯୁଗ ହେଲାଣି, ଛି, ଛି । କି ନାଜର କଥା । ଏ ଭେଣ୍ଡିଆ ଟୋକୀମାନଙ୍କୁ ତ ନାଜ ସରମ ବୋଲି କିଛି ନାହିଁ । ବଟି ନ ଦେବେ ବୋଲି ସେ ସବାଖାଇ ଫରେଷ୍ଟର ବାବୁଟା ସହ ହେଁ ହେଁ ଫେଁ ଫାଁ ହେବେ । ଦେହ ଘଷିବେ । ଛି, ଛି । ପୋଡାମୁହିଁଙ୍କ ବଂଶ ବୁଡୁ ।

ମା' ତରତର ହୋଇ ଟୋକେଇଟା ଅଣ୍ଟାରେ ଧରି ଏକ ପ୍ରକାର ଦୌଡେ ବଣକୁ । ଯାଉ ଯାଉ ବି ପଛରୁ ହୁରିକରି କହେ–ଚମ୍ପିରେ, ମଣ୍ଟୁକୁ ଟିକେ ନିଘା କରିବୁ । ତାକୁ ପଖାଳ ଦବୁ । ସ୍କୁଲ ନେଇ ଛାଡ଼ିବୁ । ଅଝଟ ହେଲେ ବୁଝାଇ ଦେବୁ । ଖବରଦାର ତାକୁ ପିଟିବୁ ନାହିଁ । ମନେ ରହିଲା ତ ?

X X X X X X

ସେମାନେ ବୁଲୁଥିଲେ । ଭଉଣୀ ଚମ୍ପି ଆଉ ଭାଇ ମଣ୍ଟୁ । ଘର ପାଖ ନାଳକୂଳ ଘାଟ ପାଖରେ ପଡ଼ିଚି ଖଣ୍ଡେ ସଜ କଟା କଦଳୀ ପତ୍ର । ପତ୍ର ଉପରେ ଅଧା ପା' ସରିକି ଅରୁଆ ଚାଉଳ । ଚାଉଳ ଉପରେ ଗୋଟିଏ ଛୋଟ ଗୁଆ, ଦିଟା ଆଠଣି ଆଉ ଗୋଟିଏ ଚୋପା ଛଡ଼ା କଦଳୀ ।

ଏ ସବୁ ଦେଖି ମଣ୍ଟୁ ଲୋଭେଇଗଲା । ଚିଲ୍ଲେଇ ଉଠିଲା- ଅନା ଅପା, ଏଆଡ଼େ ଅନାଇଲୁ । କେତେବଡ଼ କଦଳୀଟା । ଦି'ଟା ଆଠଣି ବି ପଡ଼ିଚି । ଚମ୍ପି ଚିହିଁକି ଉଠିଲା– ନା, ମଣ୍ଟୁ ନା । ସେ ସବୁ ଛୁଁ'ନା । ସେଇଟା ସେହି ଡାହାଣୀବୁଢ଼ୀର କାମ । ଦେଖୁନୁ କେତେ ନୋକ ଏ ନାଳକୁ ଗାଧୋଇ ଆସୁଚଂତି, ସମସ୍ତେ ଦେଖୁଛଂତି, କେହି ହାତ ଦଉଚି ?

–ନା, ଅପା । ତୁ ମିଛ କହୁଚୁ । ମା' ପରିକା ତୁ ବି ମୋତେ ଡରାଉଚୁ । ମୋତେ ଭାରି ଭୋକ ହଉଚି । ମା' କେତେବେଳେ ଫେରିବ କେଜାଣି । ଭାରି ଭୋକ । ମୋ ପେଟ କ'ଣ ହେଇଯାଉଚି । କଦଳୀଟା ଅରୁଆ ଚାଉଳରେ ଚକଟି ଖାଇଲେ କେତେ ମିଠା ଲାଗିବ ।

ଚମ୍ପି ବୁଝାଉଥାଏ–ନା, ମଣ୍ଟୁ ଛୁଁନା । ସେ ଡାହାଣୀ ବୁଢ଼ୀର ଏ ପ୍ରେତ ପୂଜା । ମନ୍ତୁରା ଭୋଗ ।

ହେଲେ ବୁଝିଲାନି ମଣ୍ଟୁ । ପେଟରେ ତା'ର ସର୍ବଗ୍ରାସୀ ଭୋକ । ଆଜି ହାଣ୍ଡିରେ ମୁଠେ ପଖାଳ ଥିଲା । ଖାଲି ତୋରାଣୀ ପିଇ ଯାଇଥିଲା ସ୍କୁଲ । ଶେଷବେଳକୁ କବାଡ଼ି ଖେଳି ଭୋକ କଲାଣି ସାଂଘାତିକ । ଘରକୁ ଫେରିଲା ବେଳାକୁ କିଛି ନାହିଁ । ମା' ଯାଇଚି ଯେ ଯାଇଚି । ଏ ବେଳରେ ଭଉଣୀର କଥା ମୁଣ୍ଡରେ ଢୁକେ ?

ଅପାଟା ମା' ପରି । ଖାଲି ଡରାଇବ । ଡାହାଣୀ ବୁଢ଼ୀ କଥା କହି ଚୁପ୍ କରାଇ ଦବ । ସାର୍ ତ ସେଦିନ କହୁଥିଲେ–ଭୂତ, ଡାହାଣୀ କିଛି ନାହିଁ । ସେଇଟା ଅଂଧବିଶ୍ୱାସ ।

ସେ ପତ୍ର ସହ ଉଠାଇନେଲା ଚାଉଳ, କଦଳୀ ଆଉ ଦି'ଟା ଆଠଣି । ପଇସା ପକେଟ୍‌ରେ ରଖିଦେଇ କଦଳୀଟା ଚାଉଳରେ ଚକଟି ଆଗେ ଦି'ମୁଠା ଖାଇଦେଲା । ତା'ପରେ ଭଉଣୀକି ଯାଚିଲା ଯେ ଭଉଣୀ ନେଲାନି । ନ' ନଉ ।

ଚାଉଳ କଦଳୀ ଚକଟା ଚଟାପଟ ଖାଇନେଇ, ପତ୍ରଟାକୁ ଫେର୍ ଭଲ ଭାବେ ଜିଭରେ ଚାଟି ନେଇ ନାଳକୁ ଗଲା । ଦି ପାପୁଲିର ଅଂଜୁଳା କରି ପାଣି ଦି ଚାରି ଅଂଜୁଳା ପିଇ ନେଇ ତୃପ୍ତିରେ ହିକିଟି ମାରିଲା । ଜାମାରେ ମୁହିଁ ପୋଛୁ ପୋଛୁ ଚମ୍ପି ପାଖରେ ପହଂଚି କହିଲା–ଅପା, ମୁଁ ଯାଉଚି ହରିସାହୁ ଗୁଡ଼ିଆ ଦୋକାନରୁ ଚଣା ଭଜା ନେଇ ଆସିବି । ଦି'ଜଣ ଖାଇବା । ତୋତେ ବି ଅପା ଭୋକ ଲାଗିବଣି, ନୁହଁଲୋ ?

ଚମ୍ପି ମୁହଁ ତଳକୁ କଲା । ବଡ଼ ପିଲା ସେ । ପେଟରେ ଭୋକ ଥିଲେ ବି ଲାଜରେ ମୁହଁ ଫିଟାଇ ହଁ କହି ପାରିଲା ନାହିଁ ।

ମଣ୍ଟୁ କହିଲା– ଅପା, ଆମେ ଭାରି ଗରୀବ ନୁହଁଲୋ ? ଆମେ କାହିଁକି ଗରୀବ ହେଲେ ? ଆମ ସ୍କୁଲରେ କେତେ ଧନୀ ପିଲା ପଢୁଛନ୍ତି । ନୂଆଖାଇ, ଦୀପାବଳୀ, ଦଶହରାରେ ନୂଆ ନୂଆ ଜାମାପେଣ୍ଟ୍ ପିନ୍ଧି ଆସୁଛନ୍ତି । ନିତି ସ୍କୁଲକୁ ଟିଫିନ୍ ନେଇ ଆସୁଛନ୍ତି । ଖାଇବା ଛୁଟିରେ ଚକୋଲେଟ୍, ଆଇସ୍‌କ୍ରିମ୍ କିଣି ଖାଉଛନ୍ତି । ଆଉ ଆମେ ଦିନଟାରେ ଥରେ ବି ମୁଠେ ଖାଇବା ପାଇଁ ପାଉନୁ ।

ସାନଭାଇର କଥାରେ ଭଉଣୀ ମୁରୁକି ହସିଦେଲା । ଛୋଟ ପିଲାଟାର କି ବୁଦ୍ଧି ଦେଖ । ଏ ବୟସରୁ ଢେର୍ କଥା ଜାଣିଗଲାଣି । ଭଲ ବି ପଢୁଚି । ଫାଷ୍ଟ ହେଉଚି । ମା' କହୁଥିଲା ମଣ୍ଟୁ ବଡ଼ ହେଲେ ଚାକିରି କରିବ । ପାଖ କାରଖାନାରେ ଇଂଜିନିୟର୍ ହେବ । ସେତେବେଳାକୁ ଆମ ଦୁଃଖ ଯିବ । ଚାକିରି କରି ମଣ୍ଟୁ ଘରକୁ ଢେର୍ ଟଙ୍କା ଆଣିବ । ମା'କୁ ଆଉ ନିତି ବଣକୁ ଯିବା ପାଇଁ ପଡ଼ିବ ନାହିଁ କି ସେ ଫରେଷ୍ଟରବାବୁର ନାଲିଆଖିର ଧମକ ଶୁଣିବାକୁ ପଡ଼ିବନି ।

ମଣ୍ଟୁ ଧାଇଁଗଲା ହରିସାହୁ ଗୁଡ଼ିଆ ଦୋକାନକୁ । କିଛି ସମୟ ପରେ ଚଣାଭଜା ଖାଇଖାଇ ଫେରିଲା । ଭଉଣୀ ହାତରେ ମୁଠେ ଚଣା ଦେଇ କହିଲା– ଅପା, ବ' ଏଇଠି । ଦୁହେଁ ବସିଲେ ସେ ଘାଟରେ । ମଣ୍ଟୁ ଖୁବ୍ ଖୁସିଥିଲା । କହିଲା– ଆମ ଭାଗ୍ୟ ଭଲଲୋ ଅପା । ଦେଖିଲୁ ଆଜି କେମିତି ମାଗଣାରେ ଟଙ୍କାଟେ ମିଳିଗଲା ? ଆଜି ମା' ଯେତେବେଳେ ଆସିବ ଆସୁ । ଆଉ ଚିନ୍ତା ନାହିଁ । ଚମ୍ପି କହିଲା– ହଉ ଚାଲ ଘରକୁ । ମଣ୍ଟୁ କହିଲା– ନା, ଏତେବେଳୁ ଘରକୁ ଯାଇ କି କରିବି ? ତୁ ଯା' ମୁଁ ଟିକେ ବସିଚି ।

ଚମ୍ପି ଘରକୁ ଫେରିଲା । ସେତେବେଳାକୁ ମା' ଫେରି ଆସିଲାଣି ବଣରୁ । ଚମ୍ପିକି ଦେଖି ମା' ପଚାରିଲା– ମଣ୍ଟୁ କାହିଁ ? ଏ ଯାଏ ସ୍କୁଲରୁ ଫେରିନି ? ଚମ୍ପି କହିଲା– ହଁ, ନାଳପାଖକୁ ଯାଇଚି ।

ବାବୁଟା ଭୋକିବଣି ।

ମା' ବ୍ୟସ୍ତ ହେଲା ।

ଚମ୍ପି କିନ୍ତୁ କହିଲାନି– ମଣ୍ଟୁ ଘାଟପୂଜାରୁ ଟଙ୍କାଟେ ପାଇ ଚଣା କିଣି ଖାଇଚି । ପୂଜା ଭୋଗ ଖାଇଯାଇଚି ।

ମା' ରାଗିବ – ତୁ କାହିଁକି ମନା କଲୁନାହିଁ କହି ଗାଳି ଦେବ । ମଣ୍ଟୁ ଉପରେ ବିରକ୍ତ ହେବ ।

ଚମ୍ପି ଚୁପ୍ ରହିଲା ।

କିଛି ସମୟ ପରେ ମଣ୍ଟୁ ଫେରିଲା । କେମିତି ଗୋଟିଏ ଅନ୍ୟମନସ୍କ ଭାବ । ମା' ଡାକିଲା– ମଣ୍ଟୁ ଖାଇବୁ ଆ' ।

ମଣ୍ଟୁ କହିଲା–ନା ଭୋକ ନାହିଁ ।

ମା' ଆଶ୍ଚର୍ଯ୍ୟ ହେଲା– କ'ଣ ହେଇଚି କି ମଣ୍ଟୁର ?

ସେ ପ୍ରାୟ ମୋ ଉପରେ ରାଗି ଯାଇଚି । ହଉ । ମୁଁ ଚଟାପଟ ଶାଗ ଖରଡ଼ି ଆଣେ । ଟିକିଏ ଗେହ୍ଲା କରିଦେଲେ ବଳେ ଖାଇବନି ?

ମା' ଚାଲିଗଲା ଶାଗ ଖରଡ଼ିବା ପାଇଁ । ମଣ୍ଟୁ କିନ୍ତୁ ପୁଣି ଚାଲିଲା ନାଳ ଆଡ଼କୁ ।

+ + +

ଗାଁ ଭିତରୁ ଶୁଭୁଚି ଶଙ୍ଖଘଣ୍ଟାର ଧ୍ୱନି । ଛତ୍ର ବାହାରିବ । ମା' ବାସୁଳୀଙ୍କ ଛତ୍ର । ମା' ବାସୁଳୀ ପ୍ରତ୍ୟକ୍ଷ ଦେବୀ । ଯିଏ ତାଙ୍କୁ ଖୋଲା ମନରେ ଭକ୍ତି କରିବ, ମା'ଙ୍କୁ ସନ୍ତୁଷ୍ଟ କରିପାରିବ, ମା' ତା' ଉପରେ ପ୍ରସନ୍ନ ହେବେ । ଧନ, ଜନ, ଗୋପଲକ୍ଷ୍ମୀରେ ପୂରି ଉଠିବ ତା' ଘର । ଆଉ ଯିଏ ତାଙ୍କୁ ଅବଜ୍ଞା କରିବ, ତାଙ୍କୁ ବଦ୍‌ନାମ କରିବ, ଠାକୁରାଣୀଙ୍କୁ ଖଣ୍ଡେ ତୁଚ୍ଛା ପଥର ଭାବି ହେୟ କରିବ, ତାକୁ ମା' ଆଚ୍ଛା କରି ପାନେ ଦେବେ । ତା' ଘରେ ବସନ୍ତ, ମହାମାରୀ ବ୍ୟାପିବ, ତା' ବଂଶ ନିପାତ ହେବ ।

– ମା'ଗୋ ମୋ ମଣ୍ଟୁକୁ କୋଟି ପରମାୟୁ ଦେ ମା' । ମୋ ଆୟୁଷ ନେଇ ତାକୁ ଶହେ ବର୍ଷ ବଂଚାଇ ରଖ । ତୋ ଛତ୍ର ମୁଁ ବାହାର କରିବି ।

ଠାକୁରାଣୀଙ୍କ ଉଦ୍ଦେଶ୍ୟରେ ମାଟିରେ ମୁଣ୍ଡ କୋଡ଼ିଲା ମା' । ଭୁଟୁରୁ ଭାଟର୍ ହୋଇ ଘଡ଼ିଏ ଯାଏଁ କ'ଣ ମନାସିଲା । ପୁଣି ଭୂଇଁରୁ ମୁଣ୍ଡ ଉଠାଇ କାନ ନାକ ମୋଡ଼ି ନିଜ ଗାଲରେ ଠା ଠା ଚଟକଣା ମାରିଲା ।

ଭୂଇଁରୁ ଉଠି ଛିଡ଼ା ହେଲା ମାତ୍ରେ ତା'ର ମନେ ପଡ଼ିଲା ମଣ୍ଟୁ ଘରେ ନାହିଁ । ପିଲାଟା ଏ ଉଦୁଉଦିଆ ଖରାବେଳେ କୁଆଡ଼େ ଯେ ଗଲା ? ସ୍କୁଲରୁ ଫେରି ତ ଯାଇଥିଲା ନାଳ ଆଡ଼େ । ବୁଲି ବୁଲି ଫେରି ଆସିଲା । ଫେର କାହିଁଗଲା ? ଏ ଯାଏ କାହିଁକି ଫେରୁନି ? ଭୋକରେ ମୋ ପିଲାଟା ଆଉଟୁପାଉଟୁ ହେଉଥିବ ।

ମା' ଧାଇଁଗଲା ନାଳ ଆଡ଼କୁ । ସେଠି ମଣ୍ଟୁ ନ ଥିଲା । ଦାଣ୍ଡରେ ଖୋଜିଲା, ମିଲ୍ ପଡ଼ିଆରେ ଖୋଜିଲା । ଖୋଜିଲା ବଣ, ବୁଦା, ଅନ୍ଦିକନ୍ଦି । ମଣ୍ଟୁ ନାହିଁ ।

– ମୋ ପୁଅ କୁଆଡ଼େ ଗଲା ଗୋ ।

ମା' ବୋବାଳି ଛାଡ଼ିଲା । କୁହାଟ ମାଇଲା– ମଣ୍ଟୁ, ମଣ୍ଟୁରେ, ମୋ ବାପ, ମୋ ଧନରେ । କୁଆଡ଼େ ଗଲୁରେ ।

ପାଟି ଶୁଣି ଗାଁ ଲୋକେ ଧାଇଁ ଆସିଲେ । ମଣ୍ଟୁକୁ ଚାଲିଲା ଖୋଜା ।

ସେଆଡ଼େ ଠାକୁରାଣୀ ଛତ୍ର ବାହାରିଲା । ଶଙ୍ଖ, ଘଣ୍ଟା, ଝାଳ ହୁଳହୁଳିରେ ଗାଁଟା କମ୍ପୁଚି । ଛତ୍ର ଆଗରେ ଅମ୍ବିବୁଢ଼ୀ କୁହାଟ ମାରୁଚି– ମୋତେ ଧୂପ ଦେ, ଝୁଣା ଦେ, କୁକୁଡ଼ା ବଳି ଦେ । ମେଣ୍ଢା ଦେ । ରକତ ଦେ । ଖାଇବି । ନ ଦେଲେ ତମ ଗାଁଟାକୁ ଉଚ୍ଛନ୍ନ କରିଦେବି । ଗାଁରେ ବସନ୍ତ ବ୍ୟାପିବ । ମେଲେରିଆ, ହାଡ଼ଫୁଟିରେ ସବୁ ମରିବେ । ତମ ବଂଶ ନିପାତ୍ ହ'ବ ।

ଆଜି ଖୁବ୍ ଭୟଙ୍କର ଦିଶୁଚି ଅମ୍ବିବୁଢ଼ୀ । ଆଖି ତରାଟି କଟମଟ କରି ଚାହୁଁଚି । ନାଚିନାଚି ଡେଇଁଡେଇଁ ଧୂଳିରେ ଗଡ଼ୁଚି । ଆଗପଛ ବାଁ ଡାହାଣ ମୁଣ୍ଡ ହଲାଇ, ଜିଭ କାଢ଼ି, ଗଛର ଭଂଗା ଡାଳଟିଏ ହଲାଇ ଦୋହଲୁଚି । ବୁଢ଼ୀ ଦେହରେ ଅସୀମ ଶକ୍ତି । ଅପୂର୍ବ ବଳ । ଶରୀରରେ ରୋମାଞ୍ଚ ।

ଖୋଜା ଚାଲିଚି । ମଣ୍ଟୁର ପତ୍ତା ମିଳୁନି । କିଛି ଲୋକ ନାଳ ପାଣିରେ ଖୋଜି ଖୋଜି ଗୋଳିଆ କରି ସାରିଲେଣି । ରାସ୍ତାଘାଟ, ଗଛବୃଛ, ବୁଦା, ପଡ଼ିଆ ଖୋଜି ଖୋଜି ଶେଷରେ ପରିତ୍ୟକ୍ତ ମିଲ୍ ପଡ଼ିଆର ବୁଦା ଉହାଡରୁ ମିଳିଲା ମଣ୍ଟୁର କ୍ଷତବିକ୍ଷତ ମୃତ ଶରୀର । ବେକ, ଛାତି, ଗଳା, ପେଟ, ତଳିପେଟ, ଯୌନେନ୍ଦ୍ରୀୟ, ପାଦ, ହାତ ସବୁଆଡ଼େ କଟାଦାଗ । ଦେହସାରା ଯେମିତି କିଏ ସରୁସରୁ ଗାତ ଖୋଳିଚି ଲୁହାକଣ୍ଟାରେ । ଏମିତି କି ପାଦତଳେ ବି ଗାତ ।

ଗାଁର ମୁଖିଆ ସରଯୂ ପ୍ରଧାନ କହିଲେ– ପିଲାଟାକୁ ନିଶ୍ଚୟ ବଳିରେ ଚଢ଼ା ଯାଇଚି । ତା' ଦେହରୁ ରକତ ସବୁ ନିଗାଡ଼ି ନିଆଯାଇଚି ।

ଦଳେ ଟୋକା ଧାଇଁଗଲେ ପୋଲିସ୍ ଫାଣ୍ଡି ।

କେତେ ଘଣ୍ଟା ପରେ ପୋଲିସ ଆସିଲା । ଗାଁ ଲୋକେ କହିଲେ–ଏ ସେଇ ଅମ୍ବି ଡାହାଣୀର କାମ । ସେ ପିଲାଟାକୁ ବଳି ଚଢ଼ାଇଚି । ତା'ର ରକତ ନିଗାଡ଼ି ନେଇଚି ।

ପୋଲିସ୍ ବାବୁ ରାଗି ଉଠିଲେ–ହେଟ୍ ! ସେ ଅଂଧବିଶ୍ୱାସ ଛାଡ଼ । ତୁମେ ଶଳେ ସେମିତି କହିବ । ଆଇନ୍‌କାନୁନ କ'ଣ ତମ ବୋପାଙ୍କ ଘରୋଇ ସମ୍ପତ୍ତି ? ଦେଶ ଏକବିଂଶ ଶତାବ୍ଦୀ ଆଡ଼କୁ ଆଗେଇ ଯାଉଚି ଆଉ ତମେ ସବୁ ସେହି କୁସଂସ୍କାର, ଅଂଧବିଶ୍ୱାସର ଅଂଧାରରେ ମରି ସଢୁଚ ।

ଦୀନା ସାହୁ ହାତ ଦଳେଇ ଦଳେଇ କହିଲା– ହଜୁର, ମୁଁ ଅମ୍ବିବୁଢ଼ୀ ଘରକୁ ଯାଇଥିଲି । ତା' ଘର କବାଟ ବଂଦ ଥିଲା । ତଳେ ପିଲାଟା ଚିତ୍ ହୋଇ ପଡ଼ିଥିଲା । ଅମ୍ବି ତା' ଗୋଡ଼ ତଳେ ମୁହଁ ଲଗାଇ ରକତ ଶୋଷୁଥିଲା ।

–ଚୁପ୍ ଶଳା ! ତୁ ଚିହ୍ନିଚୁ ସେ ଚିତ୍ ହୋଇ ପଡ଼ିଥିବା ପିଲାଟା ଏଇ ପିଲା ବୋଲି ? ବୁଢ଼ୀ ଗୋଡ଼ବାଟେ ରକ୍ତ ଶୋଷିବାର ତୁ ଦେଖିଚୁ ?

ପୋଲିସ୍ ବାବୁର ଧମକ୍‌ରେ ଡରିଗଲା ଦୀନା ସାହୁ । ତା' ପାଟି ଖନି ମାରିଗଲା । ଠିଆ ହୋଇ କାନମୂଳ ଆଉଁସିଲା ।

ସରଯୂ ପ୍ରଧାନ ଗୁଣଗୁଣେଇ ହେଲା— ମୁଁ ଜୋର୍‌ଦେଇ କହିବି, ଛାତିରେ ହାତମାରି କହିବି ଏଇଟା ସେ ଅମ୍ବି ଡାହାଣୀର କାମ । ମଣିଷ ରକତ ଠାକୁରାଣୀଙ୍କୁ ଦେଇ ସେ ଆରାଧନା କରିଚି । ନ ହେଲେ ଏତେ ଶକ୍ତି ସେ ପାଇଲା କୁଆଡୁ ? ମାଧମୁଖୀ ସରଯୂ ପ୍ରଧାନ କାନରେ କହିଲା— ବୁଢ଼ୀ କହୁଥିଲା ତାକୁ ସ୍ୱପ୍ନାଦେଶ ହୋଇଚି ମଣିଷ ରକ୍ତରେ ଠାକୁରାଣୀଙ୍କ ପୂଜା କରି ଛତ୍ର ଦେଲେ ତା' ବାଡ଼ି ପଛପଟେ ଗୋଟିଏ ସୁନା ଗଗରା ମାଟିତଳୁ ସେ ପାଇବ ।

ସରଯୂ ପ୍ରଧାନ ଏକଥା ପାଟି କରି ଶୁଣାଇ ଦେଲା । ଲୋକେ ଧାଇଁଲେ ଅମ୍ବିବୁଢ଼ୀର ବାଡ଼ିକୁ । ସତରେ ବାଡ଼ିର ପଛପଟେ ବିରାଟ ଗାତଟିଏ ଖୋଳା ହୋଇଚି । ବୁଢ଼ୀ ଘରୁ ରକ୍ତ ଲାଗିଥିବା ଆଲୁମିନିୟମ୍ ବେଲାଟିଏ ମିଳିଲା । ଗୋଟିଏ ଘରର କାନ୍ଥରେ ଲାଗିଥିଲା ରକ୍ତର ଛିଟିକା ।

ପୋଲିସ୍ କିନ୍ତୁ ଏ ସବୁ ଯେ ଗୋଟିଏ ଡାହାଣୀର କାମ ବିଶ୍ୱାସ କରିବା ପାଇଁ ନାରାଜ ।

ମଣ୍ଟୁର ଶବ ଉଠିଲା । ପୋଷ୍ଟମର୍ଟମ୍ ପାଇଁ ଯିବ ସହର । ମା' କିନ୍ତୁ ମଣ୍ଟୁକୁ ଛାଡ଼ିବା ପାଇଁ ନାରାଜ । କାନ୍ଦି କାନ୍ଦି ଭୂଇଁରେ ମୁଣ୍ଡ କୁଡ଼ାଇ ମୁହଁ ଫୁଲିଚି । ମୁଣ୍ଡ ଫାଟିଚି । ମା' ବୁଢ଼ୀ ପାଗଳୀ ପରି ମଣ୍ଟୁର ମଲା ଦେହକୁ ଜାବୁଡ଼ି ଧରିଚି । ଝିଅ ଚମ୍ପି ଯେମିତି ପାଲଟି ଯାଇଚି ମୂକ, ବଧିର । ଖାଲି ବଲବଲ କରି ଅନାଇଚି ମଣ୍ଟୁର କ୍ଷତବିକ୍ଷତ ଦେହ ଆଡ଼େ । ଆଖିରୁ ବହିଯାଉଚି ଲୁହର ଧାର ।



# ବୈତରଣୀ କୂଳର ଝିଅ

## ଜ୍ୟୋସ୍ନା ରାଉତରାୟ

ଆଷାଢ ଶେଷର ଝିପିଝିପି ବର୍ଷାରେ ଭିଜି ଭିଜି ଫେରୁଥିଲା ଜୟିତା ମାଲଭାଇ ଆଉ ଶବବାହକମାନଙ୍କ ସାଙ୍ଗରେ । ଶୁକ୍ଳ ପକ୍ଷ ହେଲେ ବି ମେଘର ଆଢୁଆଳରେ ଚନ୍ଦ୍ର ଲୁଚି ଯାଇଥିଲେ । କେବଳ ତାଙ୍କର କିରଣର ଛଟା ବିଛାଡି ହୋଇ ପଡିଥିଲା ସାରା ପୃଥିବୀର ଛାତିରେ, ଯାହା ମେଘ ଅନ୍ଧାର ରାତିରେ ବି ଏକ ଅଦ୍‌ଭୂତ ଆଲୋକ ସୃଷ୍ଟି କରୁଥିଲା । ଏବେ କେତେ ରାତି ହେବ ? ଅନ୍ଦାଜ କରିବାକୁ ଚେଷ୍ଟା କଲା ଜୟିତା । ଏଗାରରୁ ବାର ଭିତରେ ହୋଇପାରେ । ନିରବତା ଭଙ୍ଗ କରିବାକୁ ଇଚ୍ଛା ହେଲା ନାହିଁ ତା'ର । ଶ୍ମଶାନରୁ ପାଦଚଲା ରାସ୍ତାଟିଏ ଲମ୍ୱିଯାଇଛି ଗାଁ ଆଡକୁ । ଦୁଇପଟେ ବୁଦୁବୁଦିକିଆ ଜଙ୍ଗଲ । ଅସ୍ପଷ୍ଟ ଜହ୍ନ ଆଲୁଅ ଆଉ ଝିପିଝିପି ବର୍ଷା ଏକ ଅହେତୁକ ଭୟାର୍ତ୍ତ ପରିବେଶ ସୃଷ୍ଟି କରୁଥାଏ । କେଉଁଠି ରହି ରହି ବିଲୁଆଟିଏ ଡାକ ଛାଡୁଥାଏ । ଅତି ପାଖରୁ ପୂର୍ଣ୍ଣଗର୍ଭା ବୈତରଣୀ ନଦୀର କୁଳୁ କୁଳୁ ସ୍ୱନ କାନରେ ଏକ ବିଷାଦର ସଂଗୀତ ଭରି ଦେଉଥାଏ ।

ଦୀର୍ଘଶ୍ୱାସଟିଏ ବାହାରି ଆସିଲା ଜୟିତାର ଛାତି ଚିରି । ଆଜି ବୈତରଣୀ କୂଳର ଝିଅଟି ଚାଲିଗଲା ସବୁଦିନ ପାଇଁ ଏ ପୃଥିବୀ ଛାଡି । ନିଥର ଇଥରରେ ମିଳେଇଗଲା ତା'ର ହସ ଆହ୍ଲାଦର ସ୍ୱର । ଆଉ ହୁଏତ ସେ ଫେରିବନି ତା'ର ଏଇ ପରିଚିତ ପୃଥିବୀକୁ ।

ବର୍ଷାଭିଜା ପବନର ଝାପଟ। ଲାଗୁଛି ମୁହଁରେ । ଭିଜା ଶାଢି କାନିଟାକୁ ଅକାରଣରେ ଦେହରେ ଗୁଡେଇ ଆଣିବାକୁ ଚେଷ୍ଟା କଲା ଜୟିତା । ଝିପି ଝିପି ବର୍ଷା ଥମିବାକୁ ନାହିଁ । ଆଲୋକ ପାଖକୁ ଲାଗିଆସି କହିଲେ, ଏ ପ୍ରହସନ ନ କରିଥିଲେ କ'ଣ ଚଳି ନଥାନ୍ତା ? ଦୀପୁ ତ ମୁଖାଗ୍ନି ଦେଲା, ତମେ ପୁଣି...

ସେଇ ମେଘ ଅନ୍ଧାର ଆଉ ଅଳ୍ପ ଆଲୁଅର ଲୁଚକାଳି ଭିତରେ ବି ଜୟିତା ମୁହଁ ଟେକି ଚାହିଁଲା ଆଲୋକଙ୍କୁ । ଆଲୋକ ତା'ର ସ୍ୱାମୀ । ଅଥଚ ସେ ତାଙ୍କୁ ବି ବୁଝେଇ ପାରୁନାହିଁ, ସେ କାହିଁକି ଆସିଥିଲା ମାଲଭାଇମାନଙ୍କ ସାଙ୍ଗରେ ।

ମଣିଷ ବୋଧହୁଏ ନିଜ ହୃଦୟର କଥା ଅନେକଙ୍କୁ ଶୁଣାଇ ପାରେ ନାହିଁ । ଏମିତିକି ନିଜ ଜୀବନସାଥୀକୁ ବି ନୁହେଁ । ହେଲେ ଶୁଣି ପାରନ୍ତି ନିଜ ବାପା ଓ ମା' । ଅଦ୍ଭୁତ ସେ ମଣିଷ ଦୁଇଟି । କେବଳ ମୁହଁ ଦେଖି ବୁଝି ପାରନ୍ତି ସନ୍ତାନର ଦୁଃଖ ଆଉ ବ୍ୟାକୁଳତା । ପଢି ପାରନ୍ତି ତା' ହୃଦୟର ସବୁ ଅକ୍ଷର !

ମାତ୍ର ପନ୍ଦର ଦିନ ତଳେ ଶେଷ ଦେଖା ହୋଇଥିଲା ବୋଉ ସାଙ୍ଗରେ । ବୋଉ ଶୋଇଥାଏ ଖଟ ଉପରେ । ମୁଣ୍ଡ ଉପରେ ଜଗନ୍ନାଥଙ୍କ ଫଟୋ । ଖଟ ପାଖକୁ ଲାଗି ଜୟିତା ବସିଥାଏ । ବୋଉର ଆଖିରେ ଏକ ଭିନ୍ନ ଆକୁଳତା । କ'ଣ କହିବ ବୋଉ ! ବୋଉର ମୁଣ୍ଡଟାକୁ ଧୀରେ ଆଉଁସି ଦେଇଥିଲା ଜୟିତା ନିଜର ଛୋଟ ଝିଅଟେ ପରି । ଆଉଁସି ଦେଉଥିବା ଜୟିତାର ଡାହାଣ

ହାତଟାକୁ ବୋଉ ଜାବୁଡ଼ି ଧରିଲା ନିଜ ବାଁ ହାତରେ । ଜୟିତା ହାତଟା ଥରିଉଠିଲା ବୋଉର ସ୍ପର୍ଶରେ । କେତେଦିନ ପରେ... କେତେ ବର୍ଷ ପରେ ବୋଉର ଏ ସ୍ପର୍ଶ ! ଅତୀତର ଘଟଣା ମନେ ପଡ଼ିଗଲା ତା'ର । ଜୟିତାର ପ୍ରଥମ ଡେଲିଭରି । ସିଜରିଆନ୍ । ଅପରେସନ୍ ଥିଏଟରକୁ ଯିବା ଆଗରୁ ଜୟିତା ବୋଉକୁ ଚାହିଁଥିଲା ବ୍ୟାକୁଳ ଆଖିରେ । ବୋଉ ମୁଁ ବଞ୍ଚିବି ତ ? ସେଦିନ ବି ଠିକ୍ ଏମିତି ଜାବୁଡ଼ି ଧରିଥିଲା ତା'ର ଡାହାଣ ହାତକୁ ବୋଉ । ମା'ରେ, ସେଇ ତତେ ରକ୍ଷା କରିବେ । ସେଇ ନୀଳାଦ୍ରୀବିହାରୀ, ନୀଳମାଧବ ।

ବୋଉର ନୀଳମାଧବ ଜୟିତାଙ୍କୁ ରକ୍ଷା କରିଥିଲେ । କନ୍ୟାସନ୍ତାନର ମା' ହୋଇଥିଲା ସେ । ବୋଉ କହିଥିଲା, 'ଆସିଗଲା ମୋର ସଉତୁଣୀ' । ତା' ପରେ ପୁଅ । ଦୁଇଟି ସନ୍ତାନର ଜନନୀ ଜୟିତାର ହାତକୁ ସେଦନ ପରି ଆଜି ଜାବୁଡ଼ି ଧରିଛି ବୋଉ । ହେଲେ ଫରକ ଏତିକି ଜୟିତା ଆଖିରେ ସେଦିନର ବ୍ୟାକୁଳତା ଆଜି, ପ୍ରସରି ଯାଇଛି ବୋଉର ଆଖିରେ । ଦିନେ ମା' ତା' ଝିଅ ପାଖରେ ଛୋଟ ମଣିଷଟିଏ ହେଇଯାଏ, ଠିକ୍ ତା'ର କୁନି ଝିଅ ପରି । ଏ ଗୋଟିଏ ଋତୁଚକ୍ର ଯେମିତି ! ପ୍ରଶ୍ନିଳ ଆଖିରେ ଜୟିତା ଚାହିଁଥିଲା ବୋଉକୁ । ଧୀର ସ୍ପଷ୍ଟ ସ୍ୱରରେ ବୋଉ କହିଲା- ମା'ରେ, ତୁ ମୋର ଗୋଟିଏ ବୋଲି ଝିଅ । ମୋ କଥାକୁ ରଖିବୁ ? ମୁଁ ଆଉ ବଞ୍ଚିବିନି ଲୋ...

ଜୟିତା ବୋଉର ହାତ ଉପରେ ନିଜର ବାଁ ହାତକୁ ଚାପି ଧରି କହିଲା, 'ବୋଉ ଏମିତି କ'ଣ କହୁଛୁ ? ତୋର କିଛି ହବନି । ଠାକୁର କ'ଣ ଏତେ ନିଷ୍ଠୁର ହେବେ ? ମିଲୁର ବାହାଘର ହେଇନି । ତା' ବାହାଘର ଦେଖି ସାରିଲା ପରେ...

'ନାରେ ଜୟି, ମୁଁ ଆଉ ବେଶୀ ଦିନ ନୁହେଁ । ମୋର ଗୋଟିଏ କଥା ରଖିବୁ । ମୁଁ ମରିଗଲେ ମତେ ନେଇ ଆମ ଗାଁରେ ଦାହ କରିବୁ । ତୁ ମୋତେ ମୁଖାଗ୍ନି ଦବୁ ।

ଚମକି ପଡ଼ିଥିଲା ଜୟିତା । ଏ କେମିତି କଥା କହୁଛି ବୋଉ ! କିଡ୍‌ନିରେ କ୍ୟାନସର ଭୋଗୁଥିବା ବୋଉର ମୁହଁଟା ଦିଶିଥିଲା ଠିକ୍ ଜଣେ ମୃତ୍ୟୁ ପଥର ଯାତ୍ରୀ ଭଳି । କହ, ତୁ ମତେ ମୁଖାଗ୍ନି ଦବୁ ?

ଅତି କଷ୍ଟରେ ପାଟି ଫିଟେଇଲା ଜୟିତା- ବୋଉ, ଦୀପୁ ଅଛି, ମିଲୁ ଅଛି । ଦୁଇ ଦୁଇ ଜଣ ପୁଅ ଜନ୍ମ କରି ତୁ ମତେ କହୁଛୁ ଏ କଥା ? ମୁଁ ତ ପରଘରି । ସେକଥା କ'ଣ ସମ୍ଭବ ? ଝିଅମାନେ କ'ଣ ମୁଖାଗ୍ନି ଦିଅନ୍ତି ?

ବୋଉର ବଡ ବଡ ଆଖି ଦୁଇଟା ଛଳ ଛଳ ହୋଇ ଆସିଲା । କେମିତି ଗୋଟିଏ ହତାଶା ଅଥବା ଦୁଃଖରେ ତା'ର ମୁହଁଟା ଯେମିତି ବିବର୍ଣ୍ଣ ହୋଇ ଆସୁଥିଲା । ସେମିତି ବ୍ୟର୍ଥତାଭରା କଣ୍ଠରେ କହିଲା- 'ହଁ, ମୋର ଦୁଇଟି ପୁଅ ଠାକୁରେ ଦେଇଛନ୍ତି । କିନ୍ତୁ ତୁ ତ ମୋର ପୁଅଠୁ ବଳି । ବାହା ହୋଇ ତୋ' ବାପା ସାଙ୍ଗରେ ଏ ଘରକୁ ଆସିଲା ପରେ ଦଶବର୍ଷ ବିତିଗଲା । କେତେ ଠାକୁର ପୂଜା କରି, ଓଷାବ୍ରତ, ହୋମ, ପାରାୟଣ କରି ତତେ ପାଇଲି ! ତୁ ମତେ ମା' ଡାକ ପ୍ରଥମେ ଶୁଣେଇଲୁ । ତୁ ମୋର ନାରୀ ଜନ୍ମ ସାର୍ଥକ କଲୁ । ତୁ ଝିଅ ହେଲେ ବି କ'ଣ ମୋ ମୁହଁରେ ନିଆଁ ଟିକେ ଦେଇପାରିବୁନି ? କହୁ କହୁ ବୋଉର ଛାତିରୁ ଯେମିତି କୋହ ପରେ କୋହ ଉଠିଆସିଲା । କାନ୍ଦୁ କାନ୍ଦୁ ଅଣନିଃଶ୍ୱାସୀ ହୋଇଗଲା ସେ । ଜୟିତା ଉଠିପଡ଼ି ଆଉଁସି

ଦେଲା । ନିଜ ଶାଢ଼ି କାନିରେ ବୋଉର ଝାଳୁଆ ମୁହଁଟାକୁ ଆସ୍ତେ ପୋଛି ଦେଲା । ମୁହଁ ଉପରେ ପଡ଼ିଥିବା ଅଲରା କେଶସବୁ ସଜାଡ଼ି ଦେଲା ।

ପାଖରେ କେଉଁଠି ବିଲୁଆଟିଏ ଘଡ଼ିମାରି ଡାକି ଉଠିଲା । ଚମକି ପଡ଼ିଲା ଜୟିତା । ନିଜ ଭାବନାରେ ନିଜକୁ ଏ ପର୍ଯ୍ୟନ୍ତ ହଜେଇ ଦେଇଥିଲା ସେ । ଆଉ ଅଳ୍ପବାଟ, ମାମୁ ଘରକୁ ଯିବା ପାଇଁ । ବର୍ଷାଭିଜା ମାଲଭାଇମାନେ ନିରବରେ ଚାଲୁଛନ୍ତି । ପାଖରେ ଟ୍ରେନ୍ ଲାଇନ୍ । ମାଲ୍‌ଗାଡ଼ିଟିଏ ପ୍ରଚଣ୍ଡ ଶବ୍ଦ କରି ଚାଲିଗଲା ବର୍ଷା ଅନ୍ଧାର ଭିତରେ ଗୋଟିଏ ଉଲ୍‌କାପାତ ହେଲା ଭଳି । ଆଲୋକ ପାଖେ ପାଖେ ଚାଲୁଥିଲେ । ଜଣାପଡୁଥିଲା, ସେ ଜୟିତା ଉପରେ ଖୁବ୍ ବିରକ୍ତ ଆଉ ଅସନ୍ତୁଷ୍ଟ ।

ଆଜି ସକାଳେ ବୋଉ ଚାଲିଗଲା । ଶେଷ ଦେଖା କରି ପାରିଲାନି ଜୟିତା । ତା'ରି ବୋଉ... ହେତୁ ପାଇଲା ପରେ ଯିଏ ଜୟିତାକୁ ସବୁବେଳେ କହେ, ମା'ରେ ବଡ ହେବୁ, ମଣିଷ ହେବୁ । କେବେ ଭାବିବୁନି ମୁଁ ଝିଅ ବୋଲି । ସେତିକି ଭାବିଲେ ତୁ ପଛେଇଯିବୁ । ଆଗେଇ ପାରିବୁନି । ମନେ ଅଛି ଜୟିତାର । ମାଟ୍ରିକ୍ ପରୀକ୍ଷା ପାଇଁ ପଢ଼ାପଢ଼ି କରୁଥାଏ । ତା'ଠାରୁ ଦୁଇବର୍ଷ ସାନ ଭାଇ ଦୀପକ ଅଷ୍ଟମ ଆଉ ଚାରିବର୍ଷ ସାନ ଭାଇ ମିଳନ ଷଷ୍ଠରେ ପଢୁଥାନ୍ତି । ବଡ ପିଉସୀ ବୁଲିବାକୁ ଆସିଥାନ୍ତି । ପଢୁ ପଢୁ ଜୟିତା ଶୁଣିଲା ପିଉସୀ କହୁଛନ୍ତି– 'ଏ ସାନ ବୋଉ, ଝିଅଟାକୁ ଏତେ ପାଠ ପଢେଇ ଲାଭ କ'ଣ କହିଲୁ ? କାମଦାମ, ସଣ୍ଢୁଣା ଏ ସବୁ ଶିଖା । ସେ କ'ଣ ପାଠ ପଢ଼ି ହାକିମ ହେବ ? ଯେତିକି ପଢ଼ିଲା ସେତିକି । ମ୍ୟାଟ୍ରିକ୍ ପରେ ବାହା କରିଦେ । ଅଧିକ ଦିନ ଘରେ ରହିଲେ ଝିଅ-ଘିଅ; ପାରିବୁନି ।'

ପ୍ରତିବାଦ କରିବା ପାଇଁ ପଢାଘର ଭିତରୁ ଦୌଡ଼ି ଆସିଥିଲା ଜୟିତା । କିନ୍ତୁ ତା' ପୂର୍ବରୁ ବୋଉ ପ୍ରତିବାଦ କରି କହିଥିଲା– 'ସେମିତି କୁହନି ଅପା, ଜୟିକୁ ସେମିତି କୁହନି । ମୋର ନାରୀ ଜନ୍ମ ସେ ସାର୍ଥକ କରିଛି । ମତେ ମା' କହିଛି । ଭାରି ସୁଲକ୍ଷଣୀ ବୁଦ୍ଧିମତୀ ଝିଅ ମୋର । ତାକୁ ମୁଁ ନିଶ୍ଚେ ହାକିମ କରିବି । ପୁଅ ଖାଲି ମତେ ସ୍ୱର୍ଗକୁ ନବ, ଆଉ ଝିଅ ନବନି ?' ବୋଧହୁଏ ବୋଉର ସେଇ ଜିଦ୍ ଆଜି ଜୟିତାକୁ ଏତେ ବାଟ ଟାଣି ନେଇଆସିଛି । ଦୂରରେ ଥାଇ ବାପା ମୁରୁକି ମୁରୁକି ହସୁଥିଲେ । ଜୟିତା ବି ହସି ଦେଇ ଫେରି ଆସିଥିଲା । ବଡ ପିଉସୀ ମୁହଁ ଝାଡ଼ି ପରିବା କଟାରେ ମନ ଦେଇଥିଲେ ।

ବୋଉର ଆଶୀର୍ବାଦ ଫଳପୁଷ୍ପ ପରି ବର୍ଷି ଯାଇଛି ଜୟିତାର ଜୀବନରେ । ଆଜି ସେ ଓ.ଏ.ଏସ୍. । ଶିକ୍ଷା ବିଭାଗର ଜଣେ ପଦସ୍ଥ ଅଫିସର । ଆଲୋକ ବି ଓଡିଶା ସରକାରଙ୍କର ଜଣେ ସିନିଅର ପ୍ରଶାସନିକ ଅଫିସର ।

ଏଭଳି ବର୍ଷାରେ ଭିଜି ଗୋଟାଏ 'ସିନ୍ କ୍ରିଏଟ୍' କରିବା ତମର ଉଚିତ ନଥିଲା ଜୟି । ଗାଁ ଲୋକେ କ'ଣ କହୁଛନ୍ତି ଜାଣିଛ ? ପାଠପଢ଼ି ହାକିମ ହେଇଛି ବୋଲି କ'ଣ ହିନ୍ଦୁଘରର ନୀତି ନିୟମକୁ ବି ମାନି ଚଳିବନି ?

ଆଲୋକଙ୍କ କଥାର କିଛି ଉତ୍ତର ହେଲା ନାହିଁ ଜୟିତା । ବର୍ଷାର ଶୀତଳତା ଯେମିତି ତା'ର କଣ୍ଠରୁଦ୍ଧ କରିଦେଇଥିଲା । ଆକାଶଟା ସତେ କି କାନ୍ଦି ଚାଲିଛି ବୋଉ ପାଇଁ ! ବର୍ଷାଟା ଜୋର୍‌ରେ ହେଉନି କି ଛାଡୁନି । ବୋଉ ଦେହ ତ୍ୟାଗ କଲା ଠିକ୍ ଅପରାହ୍ନ ପାଞ୍ଚଟାରେ । ଅମୃତ ବେଳା ଥିଲା ବୋଲି ପୁରୋହିତ କହିଲେ । ତା'ପରେ ଖବର ପାଇ ମାତ୍ର ଦୁଇଘଣ୍ଟା ଭିତରେ ଜୟିତା ପହଞ୍ଚିଥିଲା । ସମସ୍ତଙ୍କୁ ଜଣାଇଥିଲା ବୋଉର ଶେଷ ଇଚ୍ଛା; ଶେଷ କୃତ୍ୟ ପାଇଁ ତାକୁ

ମାମୁଘର ଗାଁକୁ ନିଆଯିବ । ଭାଇ ଦୁଇଜଣ ଚମକି ପଡିଲେ । ବାପା ବଡ କଠିନ ସ୍ୱରରେ କହିଲେ- 'ଏ କେମିତି କଥା ? ମଣିଷର କର୍ମସ୍ଥଳ ହିଁ ତା'ର ଶେଷ ଜୀବନର ବାରାଣସୀ । ଏଇଠି ତା'ର ଶେଷକୃତ୍ୟ ହେବ ।'

ଜୟିତା ଆଶ୍ଚର୍ଯ୍ୟ ହୋଇ ଚାହିଁଥିଲା ବାପାଙ୍କୁ । ଟିକେ ଆଗରୁ ଶୋକରେ ବିହ୍ୱଳିତ ବାପାଙ୍କର ସେଇ ଭିଜା ଭିଜା ଆଖିରୁ ଯେମିତି ବାହାରୁଥିଲା ଅଗ୍ନି-ସ୍ଫୁଲିଙ୍ଗ ! ବୋଉକୁ ସୁନ୍ଦର ଭାବରେ ସଜେଇ ଦେଇଥିଲେ ଭାଉଜମାନେ । ଜୟିତା ଦେଖୁଥିଲା ବୋଉର ନିର୍ଜୀବ ମୁହଁକୁ । ସତେ ଯେମିତି ସିନ୍ଦୂର ଲଗେଇ ଆଖିବୁଜି ଶୋଇଛି ସେ । ବୋଉ ବୋଲି ଡାକିଦେଲେ 'ଓ' କରିବ ଆଉ ପଣତକାନିରେ ମୁହଁପୋଛି ଦେବ !

ଜୟିତାର ଛାତି ଭିତରେ ଦୁଃଖର ସମୁଦ୍ର ଗର୍ଜନ । ସତେ କି ତା'ର ଛାତି ଫାଟିଯିବ ! ସେ କ'ଣ ପାରିବ ନାହିଁ ? କେମିତି 'ଆତ୍ମଜା' ସେ ! ସେ କ'ଣ ଲଢି ବୋଉର ଶେଷ ଇଚ୍ଛା ପୂରଣ କରି ପାରିବ ଏତେ ମଣିଷଙ୍କ ସାଙ୍ଗରେ !!

ବାପାଙ୍କର ଗୋଡଧରି କାନ୍ଦି କାନ୍ଦି ଲୋଟି ପଡିଥିଲା ଜୟିତା । "ବାପା, ମଣିଷର ଶେଷ ଇଚ୍ଛା ହିଁ ତା'ର ସର୍ବଶ୍ରେଷ୍ଠ ମାଗୁଣି । ବୋଉକୁ ଏତିକି ଦୟାକର ବାପା । ସେ ତ ଆଉ ଫେରିବନି । ହେଲେ ତା'ର ଶେଷ ଇଚ୍ଛା ଟିକକ ଅପୂର୍ଣ୍ଣ ରହି ନ ଯାଉ ।"

ଅନେକ ସମୟ ପରେ ବାପା କେବଳ 'ହଉ ନେଇଯାଅ' ବୋଲି ଦୁଇଟି ଶବ୍ଦ ଉଚ୍ଚାରଣ କରିଥିଲେ । ଭାଇ, ଭାଉଜ ଓ ପରିବାର ପରିଜନଙ୍କ ମୁହଁରେ ଗଭୀର ଅସନ୍ତୋଷ ଆଉ ଅନିଚ୍ଛା । ସବୁକୁ ସାମ୍ନା କରୁଥିଲା ଖୁବ୍ ଦମ୍ଭରେ । ହେଲେ ଆଲୋକ ପ୍ରତିବାଦ କଲେ- 'ଜୟି, ବର୍ଷାଦିନ । ଆହୁରି ଦେଢଘଣ୍ଟାର ବାଟ ମାମୁଘର । ମୃତ ଦେହ ନେଇ ସମସ୍ତେ ଯାଉ ଯାଉ 'କର୍ମ' ବି ଭଲରେ ହୋଇପାରିବ ନାହିଁ । ବୋଉଙ୍କର 'କର୍ମ'ଟା ଅନ୍ତତଃ ଭଲରେ କରିବାକୁ ଦିଅ ।'

କିନ୍ତୁ ଜୟିତା ନିଜ କଥାରେ ଅଟଳ ଅଟଳ ମହାମେରୁ ଯେମିତି । ପଡିଶା ଘରର ମାଉସୀ, ଯାହାଙ୍କୁ ପିଲାଦିନରୁ ଦେଖି ଆସିଛି ଜୟିତା, ପାଖକୁ ଆସିଲେ । ଜୟିତାର ମୁଣ୍ଡ ଆଉଁସି ଦେଇ କହିଲେ, ମା' ଝିଅ ଜନମଟାତ ଏମିତି । ଜନମ ଗୋଟିଏ ଜାଗାରେ ତ ମରଣ ଆଉ ଗୋଟିଏ ଜାଗାରେ । ତା'ର ଶାଶୂଘର ହିଁ ତା'ର ଶ୍ମଶାନ ଘାଟ । ତୋ ବୋଉର କେମିତି ବାପଘର ଶ୍ମଶାନରେ ଶେଷକାମ ହେବ ? ଜୟିତା ଦୃଢ କଣ୍ଠରେ କହିଲା- 'ମାଉସୀ, ମଣିଷର ଶେଷଇଚ୍ଛା କ'ଣ ପୂରଣ ହୁଏ ନାହଁ ? ବୋଉର ଶେଷ ଇଚ୍ଛା ଥିଲା, ସେ ମାମୁଘର ଗାଁ ଶ୍ମଶାନରେ ଦାହ ହେବ । ଆମେ କ'ଣ ସେତିକି କରିବାନି ? ତା'ର ଆତ୍ମାକୁ କଷ୍ଟ ଦେବା ?' ଏତିକି କହି ଭୋ ଭୋ ହୋଇ କାନ୍ଦି ଉଠିଥିଲା ଜୟିତା ।

ଏଥର ସମସ୍ତେ ବାହାରି ଆସିଲେ ମାମୁଘର ଗାଁ ଉଦ୍ଦେଶ୍ୟରେ । ବୋଉକୁ ଜିପ୍‌ରେ ଧରି ଆସିଲେ ଜୟିତା ଓ ଭାଇମାନେ । ବାପା ଆଉ ଆଲୋକ ଥିଲେ ପରିବାର ପରିଜନଙ୍କ ଗାଡିରେ । ସେତେବେଳଠାରୁ ବର୍ଷା ଲାଗି ରିହିଛି ଯେ, ଏ ପର୍ଯ୍ୟନ୍ତ ଛାଡିବାକୁ ନାହିଁ । ଶୀତେଇ ଉଠୁଛି ସାରା ଦେହ । ଇଏ ଗୋଟିଏ ନୂଆ ଅନୁଭୂତି । କେବଳ ବୋଉ ପାଇଁ ଆଜି ସେ ଏଇ ଅନୁଭବକୁ ମର୍ମେ ମର୍ମେ ଆପଣେଇ ନେଇଛି ।

ବୋଉର ଜନ୍ମ ବୋଧହୁଏ ଉଣେଇଶି ଶହ ତିରିଶ ମସିହାରେ । ବେଳେ ବେଳେ ସେ କହେ, 'ମୋ ବାହାଘର ବର୍ଷ ଦେଶ ସ୍ୱାଧୀନ ହେଲା । ଗାନ୍ଧୀ ମହାତ୍ମା କଟକରୁ ଆମ ଗାଁ ବାଟ

ଦେଇ ଯାଇଥିଲେ । ସପ୍ତମ ଶ୍ରେଣୀରେ ମୁଁ ପଢୁଥିଲା ବେଳେ ଆମ ଗାଁ ଆନିକଟ ପାଖରେ ସେ ସଭା କରିଥିଲେ । ଆମର ଶ୍ୟାମସୁନ୍ଦର ମନ୍ଦିରକୁ ଦେବ ଦର୍ଶନ ପାଇଁ ଆସିଥିଲେ । ମୁଁ ସ୍ୱାଧୀନତା ଆନ୍ଦୋଳନରେ ମିଶିଥାନ୍ତି, ହେଲେ ମୋ ବାପା, ତମମାନଙ୍କ ଅଜା ମୋର ପାଠ ପଢା ବନ୍ଦ କରିଦେଲେ । ଅବଶ୍ୟ ଆମ ଗାଁରେ ସପ୍ତମ ଶ୍ରେଣୀ ପରେ ପଢିବା ପାଇଁ ଆଉ ସ୍କୁଲ ନଥିଲା । କ'ଣ କରିବି ? ଘରେ ରହିଲି ।'

ବୋଉର ଗପ ଭିତରେ ଥାଏ ଏକ ଅଦ୍ଭୁତ ସନ୍ଦେଶ । ଜୟିତା ଏକମନ ହୋଇ ଶୁଣେ । ଦୀପୁ ଆଉ ମିଲୁ ଗପ ଶୁଣୁ ଶୁଣୁ ନିଦେଇ ଯାଆନ୍ତି । କାହିଁକି କେଜାଣି ସେଇ ପିଲାଦିନରୁ ବୋଉ ଭିତରେ ଏକ ଅଦ୍ଭୁତ 'ବ୍ୟକ୍ତିତ୍ୱ'ର ସନ୍ଧାନ ପାଇଥିଲା । ଜୟିତା ।

କ୍ୟାମେରାରେ ଉତ୍ତୋଳିତ ବଛାବଛା ଦୃଶ୍ୟ ଭଳି ଜୟିତାର ମନ ଭିତରେ ପ୍ରିଣ୍ଟ୍ ହୋଇ ରହିଯାଇଛି ସେଇ ସବୁ ଚିତ୍ର, ଯାହା ବୋଉକୁ ଜଣେ ସାଧାରଣ ମା'ଠାରୁ ଅନେକ ଉଚ୍ଚରେ ପ୍ରତିଷ୍ଠିତ କରିଛି । ଶ୍ୟାମଳ ବରଣା, ଦୀର୍ଘାଙ୍ଗୀ ବୋଉର ହସରେ ଥାଏ ମାଦକତା; ଚାଲିରେ ଥାଏ ସଂଯମ । କାହା ଉପରେ ବୋଉ କେବେ ରାଗିବାର ଜୟିତା ଦେଖି ନାହିଁ । ସତେ ଯେମିତି କ୍ରୋଧକୁ ଜୟ କରିଥିଲା ସେ ! ଦ୍ରୌପଦୀ ଭଳି ସମସ୍ତଙ୍କୁ ଦେଇ ସାରି ଶେଷରେ ନିଜେ ଖାଦ୍ୟ ଗ୍ରହଣ କରେ । ସୂର୍ଯ୍ୟ ଭଳି ଉଜ୍ଜ୍ୱଳ ବର୍ଣ୍ଣସମ୍ପନ୍ନ ଆଉ ଦୁର୍ବାସା ଭଳି କ୍ରୋଧୀ ବାପାଙ୍କ ପାଖରେ ବୋଉ ଥିଲା ଯେମିତି ଟୋପାଏ ଶୀତଳ ଚନ୍ଦନ ଅବା ନୀରବ ସନ୍ଧ୍ୟାଦୀପଟିଏ ! ବେଶ୍ ଶାନ୍ତ ଆଉ ମଧୁର ।

ଏଇ ଗାଁକୁ ପିଲାଦିନେ ଅନେକ ଥର ଆସିଛି ଜୟିତା । ଖରା ଛୁଟି ହେଲେ ପ୍ରାୟ ବୋଉ ସାଙ୍ଗରେ ସେମାନେ ଆସନ୍ତି । ମସ୍ତବଡ ଖଞ୍ଜା ଥିଲା ଅଜା ଘରେ । ଦୁଇଭାଇ ଅଜାଙ୍କର । ଅଜା ବଡ ଥିଲେ । ହେଡ୍‌ମାଷ୍ଟର । ସାନ ଅଜା ଜମିବାଡି ବୁଝାବୁଝି କରୁଥିଲେ । ବୋଉ ଏକ ମାତ୍ର କନ୍ୟା । ତା'ର ତିନି ଭାଇ । ଜୟିତାର ତିନି ମାମୁ ।

ଗାଁକୁ ଆସିଲେ ବୋଉ ଯେମିତି ଗୋଟିଏ ଉତ୍‌ଫୁଲ୍ଲିତା କିଶୋରୀ ପାଲଟିଯାଏ ! ବିଶେଷ କରି ଜୟିତାର ହାତ ଧରି ସେ ବୁଲେଇ ନେଇଯାଏ ତାଙ୍କର ଅମାର ଘର, ଆମ୍ବତୋଟା, ମନ୍ଦିର ଆଉ ବୈତରଣୀ ନଈକୂଳ । ନିର୍ଜନ ନଈକୂଳରେ ଛିଡା ହୋଇ ବୋଉ ଚୁପ୍‌ଚାପ୍ ଚାହିଁ ରହେ ଦୂର ଦିଗ୍‌ବଳୟକୁ । ତା' ପରେ ଜୟିତାକୁ କୋଳକୁ ଟାଣି ନେଇ କହେ- 'ମା'ରେ, ଏଇ ନଈ ଭଳି ଆମର ଜୀବନ ବହି ଚାଲିଯାଏ । ହେଲେ ଯେଉଁ ନଈ ମା' ବୈତରଣୀ ଭଳି ତା'ର ଦୁଇକୂଳକୁ ଶସ୍ୟଶ୍ୟାମଳା କରେ, ସେଇ ନଈ ପୂଣ୍ୟତୋୟା । ଠିକ୍ ଗଙ୍ଗା ପରି । ଏଇ ନଈରେ ମୁଁ କେତେ ପହଁରିଛି । ମତ୍ସ୍ୟକନ୍ୟାମାନଙ୍କୁ ଛୁଇଁଛି । ସେମାନଙ୍କ ସହିତ ମିତ ବସିଛି ।' ବୋଉର ଉଷ୍ମ କୋଳ ଭିତରେ ଥାଇ ଜୟିତା କେବଳ ଶୁଣେ ପରୀ କାହାଣୀ ଭଳି ସେଇ କଥାସବୁକୁ ।

'ଆଉ ସେଇ ଯେଉଁ ଗଛ ଗହଳି ଭିତରେ ନିଆଁ ଜଳୁଛି ଦେଖୁଛି, ସେଇଟା ଶ୍ମଶାନ । ଆମ ଗାଁର ଶ୍ମଶାନ । ମଣିଷଟିଏ ଦାହ ହୋଇ ସାରିଲା ପରେ ମା' ବୈତରଣୀରୁ ଜଳ ନେଇ ତା'ର ଜୁଇ ଶୀତଳ କରାଯାଏ । ଠାକୁରେ କରିବେ, ମୁଁ କ'ଣ ସେଇଠି ଶେଷ ସ୍ଥାନ ପାଇବି !'

ସେଦିନ ବୋଉ କଣ୍ଠରେ ଥିବା ଆତୁରତାକୁ ବାଳିକା ଜୟିତା ବୁଝିପାରି ନଥିଲା ।

ବୋଉକୁ କାନ୍ଧ ଦେଇଥିବା ସାନମାମୁ କହିଲେ- 'ଆଉ ଅଚ୍ଛବାଟ ରହିଲା । ସବୁ ଗାଁରେ, ଗାଁ ମୁଣ୍ଡରେ ଶ୍ମଶାନ । ହେଲେ ଆମ ଗାଁ ତା'ର ବ୍ୟତିକ୍ରମ । ଶ୍ମଶାନ ପୂରା ନଈକୂଳରେ । ପୂର୍ବଜମାନଙ୍କର ଯୋଜନା । 'ଦାହ' କରିବ- ମା' ବୈତରଣୀରେ ବୁଡ଼ ପକେଇବ ।'

ଶ୍ମଶାନରେ ପହଞ୍ଚିଲା ପରେ କାଠର ଶେଯ ଉପରେ ଶୁଆଇ ଦିଆଯାଇଥିଲା ବୋଉକୁ । ନାଲି ଧଡ଼ିର ନୂଆ ଶାଢ଼ି ଆଉ ଫୁଲମାଳ ପିନ୍ଧା ବୋଉ ଲାଗୁଥିଲା ଜଣେ ପୂଜାରିଣୀ ଭଳି । ଜୟିତାର ଦେହଟା ଶୀତେଇ ଉଠିଲା ଏକ ଅପୂର୍ବ ରୋମାଞ୍ଚରେ । ଝିପିଝିପି ବର୍ଷା ଭିତରେ ବି ତା'ର କାନ ଆଉ ବେକ ପାଖରେ ଏକ ଅହେତୁକ ସ୍ୱେଦର ସ୍ପର୍ଶ ! ସେ ପାରିବ ?

ସବୁ ପ୍ରକାର କର୍ମ ସରିଲା ପରେ ଘାଟିଆ ପୁରୋହିତ ଦୀପୁ ହାତରେ କାଠନିଆଁ ଧରାଇ ଦେଲେ । ହାତ ବଢ଼ାଇଦେଲା ଜୟିତା । ପାଖରେ ଛିଡ଼ା ହୋଇଥିବା ଆଲୋକ ଜୟିତାର ହାତଟାକୁ ଜୋର୍‌ରେ ଟାଣି ନେଇଆସିଲେ । କିନ୍ତୁ ଜୟିତା ଯେମିତି ପାଗଳୀ ହୋଇ ଯାଇଥିଲା । ଆଲୋକଙ୍କର ହାତଟାକୁ ଛିଞ୍ଚାଡ଼ି ଦେଇ ସେ ଘାଟିଆ ପୁରୋହିତଙ୍କୁ କହିଲା, 'ନନା, ମତେ ନିଆଁ ଦିଅ, ମୁଁ ବି ବୋଉକୁ ମୁଖାଗ୍ନି ଦେବି' ।

-'ଏ କେମିତି କଥା ମା' ! ମୃତାର ଆତ୍ମା କଷ୍ଟ ପାଇବ । କେଉଁଠି କେଉଁ ଶାସ୍ତ୍ରରେ ନାହିଁ ଯେ ଝିଅ ମୁଖାଗ୍ନି ଦେବ । ପୁଣି ତମେ ବିବାହିତା ।'

ଉପସ୍ଥିତ ମାଲଭାଇମାନଙ୍କ ଭିତରେ ଯେମିତି ଏକ ବିଦ୍ରୋହର ଗୁଞ୍ଜରଣ । କିନ୍ତୁ ଲୁହ କୋହ ଭିତରେ ଭାସୁଥିବା ଜୟିତାର ଯେମିତି କାହା ପ୍ରତି ଭ୍ରୂକ୍ଷେପ ନଥିଲା । କାଠର ଆଢୁଆଳରେ ଲୁଚିଯାଇଛି ବୋଉର ମୁହଁ । ସେଇ ମୁହଁରେ ଟିକେ ନିଆଁ ଦେବାକୁ ପଡ଼ିବ ଜୟିତାକୁ । ବୋଉର ଶେଷ ଇଚ୍ଛା ପୂରଣ କରିବାକୁ ପଡ଼ିବ । ବୋଉ ତାକୁ ସାହସ ଦେଇଥିଲା- କାହିଁକି ତୁ ମୁଖାଗ୍ନି ଦେଇପାରିବୁନି ? ପୁଅକୁ ଜନ୍ମ ଦେଲା ବେଳେ ମୁଁ ଯେଉଁ କଷ୍ଟ ପାଇଥିଲି, ତୋ ବେଳେ ବି ସେଇ କଷ୍ଟ ପାଇଥିଲି ମା' । ତେଣୁ ତୁ କେଉଁ ଗୁଣରେ କମ୍ ?

ଏକ ନିଶାଗ୍ରସ୍ତ ମଣିଷ ପରି କାଠ ଖଣ୍ଡେ ଉଠେଇ ନେଇଥିଲା ଜୟିତା । ଦୀପୁ ଧରିଥିବା ଜଳନ୍ତା କାଠରୁ ନିଆଁ ଲଗେଇଥିଲା ସେ । ସମସ୍ତେ ସ୍ତବ୍ଧ । ବର୍ଷା ଯେମିତି ହଠାତ୍ ଥମିଗଲା । କାହିଁ ଟୋପାଏ ବି ତ ଦେହରେ ପଡୁ ନାହିଁ ! ଆକାଶକୁ ଚାହିଁଲା ଜୟିତା । ଶୁକ୍ଳ ପକ୍ଷର ଆଭା ବିଛେଇ ପଡ଼ିଛି । ଛାଇ ଛାଇ ଅନ୍ଧାର ଆଉ ଆଲୁଅରେ ଫେଣ୍ଟାଫେଣ୍ଟି ଏକ ଅଦ୍ଭୁତ ପରିବେଶ ।

ଧୀର କଣ୍ଠରେ ସେ କହିଲା, 'ନନା ମନ୍ତ୍ର ପଢ଼ ।'

କିଂକର୍ତ୍ତବ୍ୟବିମୂଢ଼ ପୁରୋହିତଙ୍କ ଦେହରେ ଯେମିତି ଚେତା ଫେରିଆସିଲା । ମନ୍ତ୍ର ଉଚ୍ଚାରଣ ଭିତରେ ଦୀପୁର ପାଖେ ପାଖେ ରହି ବୋଉର ଶେଷଶଯ୍ୟା ଚାରିପଟେ ବୁଲି ମୁଖାଗ୍ନି ଦେଲା ଜୟିତା । ଠିକ୍ ଦୀପୁ ପରି ।

ମାଲଭାଇଙ୍କ ଭିତରେ କିଏ ଜଣେ କହି ଉଠିଲେ- 'ବୁଢ଼ୀର ଭାଗ୍ୟଟା ଭଲ ନାହିଁ । ପୁଅ ଝିଅ କ'ଣ ସମାନ ? ପୁଅ ପୁଅ, ଝିଅ ଝିଅ ନା । ଦେଖ, ଜୁଇ ଜଳୁଛି କି ନାହିଁ !'

ଜୟିତାର ଛାତିରେ ଯେମିତି ଶିଳପୁଆର ପାହାର ପଡୁଥାଏ । ଥମି ଯାଇଥିଲା ବର୍ଷା, ଥମି ଯାଇଥିଲା ବର୍ଷାର ଭିଜା ଭିଜା ପବନ । ଆଉ ସେଇ ଶୀତଳ ପରିବେଶରେ ବି ହୁତ୍ ହୁତ୍ ହୋଇ ଜଳି ଉଠିଥିଲା ବୋଉର ଜୁଇ । ମନ୍ତ୍ର ଉଚ୍ଚାରଣ କଲା ପରି ଜୟିତା ଆଖି ବୁଜି ପ୍ରାର୍ଥନା କରୁଥିଲା- 'ବୋଉ ଲୋ, ତୋର ଇଚ୍ଛା ପୂରଣ କରିବାର କିଛି ତ୍ରୁଟି ରହିଯାଇଥିଲେ, ମୋତେ କ୍ଷମା କରିଦେବୁ ।'

ଠିକ୍ ସେତିକିବେଳେ ଥମି ଯାଇଥିବା ବର୍ଷାଟା ପୁଣି ଆରମ୍ଭ ହୋଇଯାଇଥିଲା ଝିପି ଝିପି ହୋଇ । ସମସ୍ତଙ୍କ ସହିତ ଜୟିତା ବି ଯାଇ ବୁଡ଼ ପକେଇଥିଲା ବୈତରଣୀ ଜଳରେ । ଜୟିତାର

ଆଖି ଲୁହ ବୈତରଣୀର ପବିତ୍ର ପାଣି ସହିତ ମିଶି ଏକାକାର ହୋଇଯାଇଥିଲା । ଆଞ୍ଜୁଳା ଆଞ୍ଜୁଳା ପାଣି ମୁହଁକୁ ଛାଟି ଜୟିତା ଶାନ୍ତିରେ ନିଃଶ୍ୱାସ ଛାଡିଲା । ଆଖି ବୁଜି ସେ ଦେଖି ପାରୁଥିଲା, ନଦୀରେ କଳସୀ ଭସେଇ କିଶୋରୀଟିଏ ପହଁରି ପହଁରି ଚାଲିଯାଉଛି କେଉଁ ଅଜଣା ଦିଗନ୍ତକୁ । ସେ କିଶୋରୀର ମୁହଁଟି ଠିକ୍ ତା' ବୋଉର ମୁହଁ ପରି !

'ଜୟି ଅପା, ନେ... ପିତା ନେ... ପାଟିରେ ଦେଇ ଘର ଭିତରକୁ ଯା' ଲୁଗା ବଦଳାଇବୁ ।'

ଦୀପୁର କଥାରେ ଚମକି ପଡିଲା ଜୟିତା । ୟା' ଭିତରେ କେତେବେଳେ ସେମାନେ ଆସି ମାମୁଘର ଦୁଆର ପିଣ୍ଡା ପାଖରେ ପହଞ୍ଚି ଯାଇଛନ୍ତି । ଆଲୋକ, ତମତମ ହୋଇ ଜୟିତାକୁ ପ୍ରାୟ ଠେଲି ଦେଇ ପିତା ଖାଇ ଘର ଭିତରକୁ ପଶିଗଲେ । ପିଣ୍ଡା ତଳେ ଛିଡା ହୋଇ ଆକାଶକୁ ଚାହିଁଲା ଜୟିତା । ମେଘ ଥମ୍ ଥମ୍ । କିନ୍ତୁ କେଉଁଠି ଟିକେ ଶୁକ୍ଳ ପକ୍ଷର ଆଭାସ । ରାତି ଜଗା ପକ୍ଷୀଟିଏ କେଉଁଠୁ ଥାଇ ରାବି ଉଠିଲା । ସତେ ଯେମିତି ସେ ପଚାରୁଥିଲା- 'ବୈତରଣୀ କୂଳର ଝିଅ ଲୋ, ଆଉ କ'ଣ ଫେରିବୁନି... ?'

ଜୟିତାର ଛାତି ଭିତରେ କିଏ ଯେମିତି ଆତୁର ହୋଇ ବାହୁନି ଉଠିଲା- 'ନା-ନା-ନା ।'



# ମାଟି, ପାଣି, ପବନ

## ଅଜୟ ସ୍ୱାଇଁ

ମାଟିରେ ତିଆରି ହୋଇଥିଲା ଘର ।

ସୂର୍ଯ୍ୟ ଯେତିକି ଜାଳୁଥିଲା, ସେତିକି ଶୀତଳ କରୁଥିଲା ଜହ୍ନ । ପାଣି ଯେତିକି ବତୁରଉଥିଲା, ସେତିକି ଶୁଖଉଥିଲା ପବନ । ମାଟି ବେଶୀ ବେଶୀ ମାଟି ହେଉଥିଲା । କଠିନ ହେଉଥିଲା । ବେଳେ ବେଳେ ଏଇ ମାଟିରେ ଫୁଟୁଥିଲା ଫୁଲ । ବାସ୍ନାରେ ଚହଲୁଥିଲା ପବନ । ଚାଳ ଉପରେ ସୋରିସୋରି ଧୂଆଁ... ସୋରି ସୋରି ଆଲୁଅ... ସୋରି ସୋରି ଅନ୍ଧାର ।

ମାଟି ଘର ଭିତରେ, ମାଟିରେ ଶାଗପଟାଳିର ଚିତ୍ର ଆଂକିଥିଲା ମା' । ନେଳି ନେଳି । ପୁଣି ଗେଣ୍ଡୁ, ହରଗଉରା, ଜାତିଜାତିକା ଝୋଟି । ମା' ହାତରେ ଯାଦୁ ଅଛି । ଯା'କୁ ଛୁଇଁବ, ସେ ଚିତ୍ର ହେଇଯିବ । ଫୁଲ... ଫଳ ହେଇଯିବ । ସକାଳୁ କାଉ ମାଗିବ, ହାଁ ହାଁ ଖରାବେଳେ କୋଇଲି ମାଗିବ, ମାଇସଂଜରେ କପୋତୀ ମାଗିବ: ଆମକୁ ଦିଅ ଗଛପତ୍ର ଫୁଲ ଫଳର ସଂସାର । ମା' ମାଟିରେ ଗଢ଼ିଦବ ଠାକୁରାଣୀ, ତାକୁ ଜୀବନ ଦେଇ କହିବ : ଏମାନଂକୁ ତୁ ସଂଭାଳ୍ । ଠାକୁରାଣୀ ହସୁଥିବ । ସିନ୍ଦୂରର ହସ । ମା' ହସୁଥିବ । ଯାଦୁକର ମା' ।

ପିଲାମାନେ ମାଟିର ଏନ୍ତୁଡ଼ି ନିଆଁରେ ସେକି ହେଉଥିବେ । ନାହି ନାଡ କଟା ହୋଇ ନାଲି ଗୁଲୁଗୁଲୁ ମାଂସ ପିଣ୍ଡୁଳାମାନଂକୁ ନିଆଁରେ ସେକୁଥିବ ମା' । ଛାତିରୁ କ୍ଷୀର ନୁହେଁ, ପାଣି ଢାଳି ଦେଉଥିବ ସେମାନଂକ ପାଟିରେ । ସେଇ ପାଣିରେ ଥିବ ଅମୃତ । ଜୀବନ୍ୟାସ । ସେଇ ମାଟି ପିଣ୍ଡୁଳାମାନଙ୍କରୁ ଡାଳପତ୍ର ବାହାରୁଥିବ ଫୁଲଫଳ ଫୁଟୁଥିବ ସେଥିରେ ଜାତି ଜାତିକା ଚଢ଼େଇ ବସାବାନ୍ଧୁଥିବେ । ପୁଣି ଉଡ଼ିଯାଉଥିବେ । ପୁଣି ଆସୁଥିବେ ଆଉ ଦଳେ । ପୁଣି ବସାବନ୍ଧା ବସାଭଂଗା । ଡାଳ ଆକାଶକୁ ଛୁଉଁଥିବ ।

ଏସବୁ ମା' ହାତର ଯାଦୁଖେଳ ।

ମାଟିଘରକୁ ଆଲୁଅ ଛୁଇଁବା ଆଗରୁ ମା' ଉଠି ସାରିଥାଏ । ଗୋବର ଗୋଳା ପାଣି ପକେଇ ପହଁରି ସାରିଥାଏ ଦୁଆର, ଅଗଣା । ଗାଧୋଇ ସାରି ବୃନ୍ଦାବତୀରେ ପାଣି ଦେଇସାରି, ମାଟିକାନ୍ଥ ସାରା ପକେଇ ସାରିଥାଏ ଚାଉଳବଟାର ଝୋଟି । ଜାତିଜାତିକା ଧାନଶିଁଷା, ଲକ୍ଷ୍ମୀପାଦ, ମୟୂର, କଦଳୀ, ଚାନ୍ଦୁଆ, ଫୁଲ ଫୁଲୁରି, ଜାତି ଜାତିକା ଲତା, ବନସ୍ପତି ।

ଦିନସାରା ତର ନଥାଏ ମା'କୁ । ଚାଉଳରୁ ଗୋଡ଼ି ବାଛ । ମାଛ ପେଟରୁ ପିତ୍ତ ବାହାର କର । ଠାକୁରାଣୀମାନଙ୍କୁ ଫୁଲଚଂଦନ, ଧୂପଦୀପ ଦିଅ । ପୁରୁଣା, ମଇଳା ପେଣ୍ଟ, ସାର୍ଟ, ବେଡସିଟ୍, ତକିଆଖୋଳ, ଗୁହମୂତ କନାପଟା ସଫା କର । ବାଡ଼ି ଶାଗପଟାଳିରୁ ଘାସ ବାଛି ଗୋବର ଖତ ଦିଅ । କଖାରୁ ନଟାର ଅଗିଲା ଡଙ୍କକୁ ଚାଳ ଉପରକୁ ମଡାଅ । ଶୁଖୁଆବାଲି ସାଂଗରେ ଟୁପୁରୁ ଟୁପୁରୁ ହୋଇ ଏଥର ବି ଦି'ପା ଡାଂପଡ଼ା ଶୁଖୁଆ ବାକିରେ କିଣ । ପଡ଼ିଶା ଘରର ଛେଳିଛୁଆ ଫୁଲଗଛ ଖାଇ ଯିବାରୁ ତା' ସହ ଅଧଘଣ୍ଟେ କଜିଆ କର । ଘଡ଼ଘଡ଼ି ପଡ଼ି ବର୍ଷେ ତଳେ ମରିଥିବା ମାମୁଙ୍କ କଥା ମନେପକେଇ ଘଡ଼ିଏ ବାହୁନ ।

ମା'କୁ ଚିହ୍ନିପାରୁଚି କିଏ ? କ'ଣ ନା ଘର ସାରା ସବୁ ବେଳେ ଆତଯାତ ହଉଥିବା ହାତଟିଏ, ଫଟା ଗୋଇଠି ଦିଓଟି । ପେଜୁଆ ଆଖି ହଲେ । ଏଇ ଘର ଭିତରେ ତ ଅଛି । ହୁଲୁରୁ ହୁଲୁରୁ ହଉଚି କାନରେ ହଲେ ସୁନା କାନପେଣ୍ଡି । ହଉଚିତ । ମା' ଅଛି ତ । ଚିହ୍ନୁଚି କିଏ ? ପିଲାମାନେ ଥନରୁ କ୍ଷୀର ଚୋଷି ଭେଣ୍ଡିଆ ହଉଛନ୍ତି । ଦାଣ୍ଡକୁ ଡେଇଁପଡ଼ି ଧୂଳି ଖେଳୁଛନ୍ତି । ଯୁଦ୍ଧ ଭୂଇଁକୁ ଯାଇ ଯୁଦ୍ଧ କରୁଛନ୍ତି । ବୋଇତରେ ଯାଉଛନ୍ତି ଜହ୍ନ ଆଲୁଅ ଧରି । ସୁନା ରୂପା ମଣି ମାଣିକ୍ୟ, ସିନ୍ଦୁର, ହାହାକାରକୁ ବୋଇତରେ ବୋଝେଇ କରି ଫେରୁଛନ୍ତି ।

ଆଉ ଦଳେ ଗୁଡ଼ି ଉଡ଼ଉଛନ୍ତି । କ'ଣ ନା ଆକାଶକୁ ଛୁଇଁବେ । ଛୁଅଁ । କିଏ ମନା କରୁଛି ? ଆଉ ଦଳେ ଗୀତ କବିତା ହାର୍ମୋନିୟମ୍ ବଜେଇ ସ୍ୱର ସାଧୁଛନ୍ତି: ବାଛଲ୍ୟ ମମତା ଘେନି ଭାଲୁଛନ୍ତି ମାତ... ମାତ... ଅ... ଅ... ।

ମା' ସବୁ ଶୁଣୁଚି । ହସୁଚି । ଯାଦୁକର ହାତକୁ ଯୋଡ଼ି ଦଉଚି, ନିଜ ହାତ ତିଆରି ଠାକୁରାଣୀ ମାନଂକ ପାଖେ: ମାଲୋ ! ତୁ ସାହା ହେଇଥା... ଅର୍ଶିତମାନଂକୁ । ଘଣ୍ଟ ଘୋଡେଇଥା' ପଣତ ଘୋଡ଼େଇ ଥା' । ସେମାନେ କିଛି ଜାଣି ନାହାନ୍ତି । ସେମାନଙ୍କ ଆକାଶ ଛୁଇଁବା କଥା ମିଛ । ସ୍ୱର ସାଧିବା କଥା ମିଛ । ଜହ୍ନ ଆଲୁଅ ଧରିବା କଥା ମିଛ ।

ମା'ର ପୁଣି ମା ! ହାଃ ହାଃ ହାଃ ।

ଝଡ଼ି ବରଷାରେ ମା' କୋଳରେ ସମସ୍ତେ । ଗୋଟିଏ କୁଡୀର ଚିର ଝୁଣି ଆଠଟା ଛୁଆ କ୍ଷୀରପିଇ ଜାକି ଜୁକି ସେଇଠି ଶୋଇ ପଡ଼ିବା ପରି ପିଲା ପିଚିକା । ମା'ର ଅଭୟ: ଡର କାହାକୁ ଭୟ କାହାକୁ... ଠାକୁରେ ଅଛନ୍ତି ଚଉବାହାକୁ । ମା'ର ପୁଣି ବାରବ୍ରତ, ତେର ଉପାସ । ଅଖିଆ, ଅପିଆ ରହି ସବୁ ପିଲା ପିଚିକାଙ୍କ ପାଇଁ । ସେମାନେ ବଡ଼ ହେବେ । ମାଟିକୁ ସୁନା କରିଦେବେ । ଘର ପୂର୍ଣ୍ଣ କରିଦେବେ କୋଳାହଳରେ, ଧନ ରତ୍ନରେ । ତା' ପିଲାମାନେ କୋଉଥିରେ ଊଣା କି ? ବଳରେ, ନା ବିଦ୍ୟାରେ, ନା ସହିବାରେ ? ପିମ୍ପୁଡ଼ି ଗାତରେ ଗୁଡ଼ ପକେଇ ମା' କହେ : ପ୍ରଭୁ ପିମ୍ପୁଡ଼ି ଦେବତା ! ମୋ ପିଲାମାନଂକୁ ଏକାଠି ରହିବାକୁ ଶିଖାଅ । ନଈରେ ଦିହୁଡ଼ି ଭସେଇ କହେ ମା' ନଈଦେବୀ ! ପିଲାମାନଂକୁ ମୋର ଯୁଆଡ଼େ ନବୁ ନେ, ଏମିତି ଆଲୁଅ ଦେଖେଇ ନେ ଓ ପୁଣି ଫେରେଇ ଦେ' ମୋର କୋଳକୁ । ଆକାଶର ଜିକିଜିକି ଉଜ୍ଜ୍ୱଳ ତାରାକୁ କହେ: ମୋ ପିଲାମାନେ ଦୂରରେ ଥାଇ ଝଟକୁ ଥାଆନ୍ତୁ । ଖାଲି ମତେ ଦିଶୁଥାନ୍ତୁ ସବୁବେଳେ ।

ମା' ସମସ୍ତଙ୍କୁ ଦେବତା ଭାବେ ।

ତା' କୋଶଳା ପଟାଳି ଷଣ୍ଢ ନଷ୍ଟ କରେ । ଷଣ୍ଢ ଦେବତା । ଶିବଙ୍କ ବାହାନ । ବିଲେଇ କ୍ଷୀର ହାଣ୍ଡି ଭାଂଗିଦିଏ । ବିଲେଇ ଦେବତା, ଲକ୍ଷ୍ମୀ କୁକୁର ତା' ଠାକୁର ଘରେ ପଶିଯାଏ । କୁକୁର ଦେବତା । ଶନିଶ୍ଚର ।

କାହାକୁ ଅସୁଖ ପାଏ ନାହିଁ ମା' । ସମସ୍ତଙ୍କ ପାଇ ସୁଖ ମନାସେ । ପ୍ରାର୍ଥନା କରେ ।

ମାଟି, ପାଣି, ପବନ ଗଢ଼ା ସେଇ ଛୋଟ ଘର ତା'ର ସ୍ୱର୍ଗ । ତାକୁ ଛାଡ଼ି କୁଆଡ଼େ ଯାଇ ପାରେନା ମା' । ଯୁଆଡ଼େ ଗଲେ ଗୋଟେ ଦିନରେ ମନ ତା'ର ଛଟପଟ ହୁଏ । ଘର ମନେ ପଡ଼େ । ପିଲାମାନେ ମନେପଡ଼ନ୍ତି । ପୁଣି ଫେରି ଆସେ । ତାକୁ ସମସ୍ତେ ଝୁରି ହୁଅନ୍ତି । ଘର ଚଟିଆ ଚଢ଼େଇ ବି ମା' ନଥିଲା ବେଳେ ତାକୁ ଖୋଜେ ।

ବଡ଼ପୁଅ ସହରରେ ରହେ । ନେତା । ବଡ଼ଘର । ସ୍ତ୍ରୀ, ପିଲାପିଲି ନେଇ ସୁଖରେ ଥାଏ । ପୁଣି ସହର ତଳିରେ ଗୋଟେ ବଡ଼ ଫାର୍ମ ହାଉସ୍ ବନଉଥାଏ । ଭୋଟବେଳେ ଗାଁକୁ ଆସେ ।

ମା'କୁ ଗାଡ଼ିରେ ବସେଇ ଗାଁ ଗାଁ ବୁଲେ । ମା'କୁ ଲାଜ ମାଡ଼େ । ହାତେ ଓଢ଼ଣା ଟାଣି ବସିଥାଏ ମା' । ପୁଅର ଧଳା ପଂଜାବୀ ଧୂଳିରେ ବୁଡ଼ିଯାଏ । ତା' ତଣ୍ଟି ବସିଯାଏ । ଲୋକଙ୍କୁ ବଡ଼ ଭକ୍ତିରେ ମୁଣ୍ଡିଆ ମାରେ । ଆଶୀର୍ବାଦ ମାଗେ । ମା' ପରେ ବାଢ଼ି ଦିଏ ପଖାଳ, ଶାଗ, ଶୁଖୁଆ ପୋଡ଼ା । ବଡ଼ପୁଅ ହସେ । କହେ, ମା' ! ସହରକୁ ଚାଲ୍ । ମୋ' ପାଖେ ରହ । ତୋ' ଦେହ ଏଠି କ'ଣ ହେଲାଣି ? ତୋ' ଅଣ୍ଟା ନଇଁ ଗଲାଣି । ତୋର ବୋଧେ ଆତ୍ମା ବାହାରିଲାଣି ? ତୁ ଏଠି ଏକା କାଇଁକି ପଡ଼ିଛୁ ? ଏଠି କ'ଣ ଅଛି ? ଏ ବୟସରେ ନିଜେ ରାନ୍ଧୁଚୁ, ଖାଉଚୁ । ମତେ ଏ ସବୁ ଭଲ ଲାଗୁନି ମା' ! ତୁ ମୋ ସାଂଗରେ ଚାଲ୍ ।

ମା' ହସେ । ମାଟିର ହସ । ପବନ ଉଡ଼େଇ ନିଏ ହସର ଶବ୍ଦ । ପୁଅ ବିରକ୍ତ ହଉଥାଏ । ତୁ ଗୋଟେ ନେତାର ମା' । ଆର ବର୍ଷକୁ ମନ୍ତ୍ରୀ ହେବି । ସେଠି ପଚାଶ ଲୋକ ମାଗଣା ଖାଉଛନ୍ତି । ତୁ ଏଠି ରହିଚୁ । ଲୋକେ ମତେ କହିବେ କ'ଣ ? କହିବେ: ଏମ୍.ଏଲ୍.ଏ ହେଇଚି, ନିଜ ମା'ଟାକୁ ପଚାରୁନି ?

ମା' ଅନ୍ଧାର ହୋଇ ସାରିଥାଏ ସେତେବେଳକୁ । ଅଂଧାର ଭିତରୁ ଲଣ୍ଠନଟିଏ ଧରି ମା' ଆସୁଥାଏ । ମା' ମୁହଁରେ ଫାଳେ ଆଲୁଅ... ଫାଳେ ଅଂଧାର ।

ମା' ତାହେଲେ କିଛି ଶୁଣିନି ? ଧେତ୍ ।

ବଡ଼ପୁଅ ପୁଣି ଜିତେ । ଗାଁରେ ବାଣ ଫୁଟେ । ବୋହୂ, ପିଲାମାନେ ସେଇ ମାଟି ଘରକୁ ଆସନ୍ତି । ପିଲାମାନେ ମାଟି ଅଗଣାରେ କଙ୍କି ଧରିବାକୁ ଦୌଡ଼ନ୍ତି । ଛୁଞ୍ଚିପତର ପିଠା, ଆରିସା ଖାଆନ୍ତି । ବୁଢ଼ୀ ମା' ଉପରେ ଲାଉ ହଅନ୍ତି । ଗୀତ ଗାଇ ଶୁଣାଏ ମା' ।

କାଠ କୁଟୁରୀ... କାଠ କୁଟୁରୀ.. କୁଟୁରୀ କାଟଇ କାନ...

କାନ ତ କାନ... ହାତୀର କାନ... ପାଟିରେ ଲବଂଗ ପାନ...

ପାନରେ ପାନ... ନସରେ ଦିନ... ରାଣୀ ହଜିଗଲେ ବାଟରେ...

ରାଜା ଖୋଜି ଖୋଜି ପାଇଗଲେ ତାଙ୍କୁ ବନମାଳୀପୁର ହାଟରେ...

ପିଲାଙ୍କ ନିଦ ନଭାଂଗୁଣୁ ମଟର ହର୍ଣ୍ଣ ଶୁଭେ । ସମସ୍ତେ ଚାଲିଯା'ନ୍ତି । ମା' ମାଟି ପିଣ୍ଡାରେ ବସିଥାଏ । ମଟର ଗାଡ଼ି କୁହୁଡ଼ିରେ ହଜିଯାଏ । କୋଇଲିଟିଏ ରାବେ । କାଉଟିଏ ରାବେ । ଫୁଲଛୁଇଁ ଚଢେଇମାନେ ସଜନା ଗଛର ଫୁଲ ଝାଡ଼ନ୍ତି ।

ଆହା ! ପିଲାମାନେ ଏସବୁ ଦେଖିଥାନ୍ତେ ପରା ! କୋଇଲିକୁ ଖତେଇ ହେଇଥାନ୍ତେ ପରା । ସେମାନେ କୋଉ ଖତେଇ ହବା ଶିଖି ପାରିଲେ ?

ମା' କୋଇଲିକୁ ଟିକେ ଖତେଇ ହେଲା ଓ ନିଜେ ଲାଜ କରି କହିଲା: ମାଲୋ ! ତେଣେ କେତେ କାମ ପଡ଼ିଛି । ଯାଏ ମୁଁ... ।

ସାନଟି ଦୁଃଖୀ । କ'ଣ ସବୁ ଲେଖାଲେଖି କରେ । ବାପ ପରି ବଡ଼ ନିରୀହ... ସୁକୁମାର ଆଖି ଦିଓଟି । ଖାଲି ଅନେଇଥାଏ, ପାହାଡ଼କୁ... ଜହ୍ନକୁ... ନ ହେଲେ ଆକାଶକୁ । ବାପକୁ ଦେଖି ପାରି ନାହିଁ । କ'ଣ ଲେଖୁଥାଏ... ଭାବୁଥାଏ । ନ ହେଲେ ଏଣେ ତେଣେ ବୁଲୁଥାଏ । ନ ହେଲେ ବଂଶୀ ଫୁଙ୍କେ । ବଡ଼ ସୁନ୍ଦର ବଜାଏ ବଂଶୀ । ମା'କୁ ଦେଖିଲେ ହସେ । ବୁଢ଼ାଟା ହେଲାଣି, ମା' ସାଂଗେ ଗେଲ ହୁଏ । ତା' ବଂଶୀ ଶୁଣିଲେ ମା'କୁ କାନ୍ଦ ମାଡ଼େ । କୋଉଠୁ ଶିଖିଲା ଏ ଟୋକା ଏତେ ଉଦାସପଣ । ଏତେ କାଂଦୁରା ସ୍ୱର । ବାପ ତ ଏମିତି କାନ୍ଦୁରା,

ଉଦାସିଆ ମଣିଷ । କୋଉଥିରେ ଲୋଭ ନାହିଁ । ଗୋଟେ ଜହ୍ନରାତିରେ ବାହାରିଗଲା, କହିଲା: ଯାଉଛି ।

ମା' କିଛି ବୁଝି ପାରିଲା ନାହିଁ । ସେତେବେଳେ ସାନପୁଅ ପେଟରେ । ତଥାପି ମା'ର ଆଖି ନଈ ହୋଇଗଲା । ବାପା ଏକମୁହାଁ ହୋଇ ବାହାରିଗଲା ବେଳେ ଆଖି ଆଗର କୋଉ ଗୋଟେ ତରାକୁ ଚାହିଁ କହିଲା: ପାଇଲେ ଫେରିବି । ଅପେକ୍ଷା କରିଥିବୁ ।

ମା' ସେତେବେଳେ ବାପାର ମୁହଁ ଦେଖି ନଥିଲା । ବାପା ସେତେବେଳକୁ ଘରକୁ ପଛ କରି ସାରିଥିଲା । ବହୁତ ଦିନଯାଏ ମା' କିଛି ବୁଝି ପାରିନଥିଲା । ସେମିତି କହିଲେ, ଏଯାଏ ବି ସେ କିଛି ବୁଝିନି । ଖାଲି ଯା' ବାପର ସେଇ ଉଦାସ ଆଖିହଳକ ଆଣିଛି ସାନ ପୁଅ । ମା'କୁ ଡର ଲାଗେ । ବାପ ପରି ଇଏ ସେମିତି ତାରାକୁ ଖୋଜିବାକୁ ଚାଲିଯିବନି ତ ?

ସାନପୁଅ ହସେ । ମା' ସାଙ୍ଗେ ଗେଲ ହୁଏ । ମା'କୁ ଜହ୍ନ ମାଗେ । ମା'କୁ ତାରା ମାଗେ । ମା'କୁ ସକାଳର ଚଢ଼େଇମାନଙ୍କ ଗୀତ ମାଗେ । ମା' କହେ: କେଡ଼େ ଅଭିଲା କଥା ସବୁ ମାଗୁଚୁରେ ପୁଅ । ତତେ କୋଉ ଆକାଶର ତରା ନା ଚଢ଼େଇର ଗୀତ ଅପୂରୁବ ?

ସାନପୁଅ ହଜି ହଜି ଯାଏ । ତା' ଆଖି ଆଗରେ ସମୁଦ୍ର ଢେଉ ପିଟି ହୁଏ । ପରୀମାନେ ଡେଣାରେ ଆଲୁଅ ବିଂଚି ବିଂଚି ଆସନ୍ତି ।

ସାନପୁଅ କଲମ ଧରେ । କ'ଣ ସବୁ ଏଣୁ ତେଣୁ ଗାର ଟାଣେ । କ'ଣ ସବୁ ଅବୁଝା ଶବ୍ଦ ଯୋଡେ, ପୁଣି କାଟେ । ତଳକୁ ତଳ ସଜେଇ ଲେଖେ । ସଞ୍ଜ ସରିଗଲେ, ସେସବୁ କାଗଜକୁ ଚିରି ଦିଏ ନହେଲେ ଡଂଗା କରି ବର୍ଷା ସୁଅରେ ଭସେଇ ଦିଏ । ଆହା ! ବାପ ଛେଉଣ୍ଡ କୋଡ଼ପୋଛା ପୁଅଟିଏ । ମା' ପଣତ କାନିରେ ପେଜୁଆ ଆଖି ପୋଛେ । ବାପ ଥିଲେ କେତେ କଥା ଶିଖେଇ ଥାନ୍ତା । କେତେ ଗଛବୃଛ ଚିହ୍ନେଇଥାନ୍ତା । କେତେ ଫୁଲଫଳର, ଚଢ଼େଇମାନଙ୍କ ନାଁ ବୁଝେଇଥାନ୍ତା । କିଛି ଜାଣିଲା ନାହିଁ ।

ବଡ଼ପୁଅ ବାପ କାନ୍ଧରେ ବସି କେତେ ଆଡ଼ ନବୁଲିଛି ? କେତେ ଗପ ନ କହିଚି ତା' ବାପ । ଅତଳା ତଳ ସମୁଦ୍ର ଭିତରେ ଯୋଉ ମତ୍ସ୍ୟକନ୍ୟାର ଗୀତ କଥା... । ମନପବନ କଠଉ କଥା... ହଉ ପଛେ ମିଛ, ମିଛ କଥାକୁ ଗପ ପରି କହିବା କ'ଣ କମ୍ ସାହସର କଥା ? କମ୍ ବୁଦ୍ଧିର କଥା ?

ମା' କାନ୍ଦେ ।

ସାନଝିଅ ରହେ, ଦଣ୍ଡକାରଣ୍ୟରେ । ତା' ସ୍ୱାମୀ ସେଠି କାଠ କଂଟ୍ରାକ୍ଟର । ସାନଝିଅ ହାର୍ମୋନିୟମ୍ ବଜେଇ ଜାଣେ । ତା' କଣ୍ଠରେ ସରସ୍ୱତୀ ଅଛନ୍ତି । ବଡ଼ ଜଙ୍ଗଲି ମନ ତା'ର । ତାକୁ ଘଞ୍ଚ ଗଛ ବୃଛ ଭଲ ଲାଗେ । ପାହାଡ଼, ଝରଣା ଭଲ ଲାଗେ, ଏଣୁ ଦଣ୍ଡକାରଣ୍ୟ ତାକୁ ଭଲ ଲାଗିଲା । ସେ ସଫାସଫା ମା'କୁ କହିଦେଲା: ମୁଁ ଏ କଂଟ୍ରାକ୍ଟରକୁ ବାହାହେବି । କାଠ କଂଟ୍ରାକ୍ଟର ସେଦିନ ସଫାରୀ ପିନ୍ଧିଥିଲା । ପାନ ଖାଇଥିଲା କି ନାହିଁ କେଜାଣି ? ତା'ଦାନ୍ତ ପରିଷ୍କାର ଥିଲା । ଏଣୁ ହସିବାରୁ ସୁନ୍ଦର ଦିଶିଲା । ମା' ପଚାରିଲା: ବାବୁ ! ତମେ ମୋ ଝିଅକୁ ସୁଖରେ ରଖିପାରିବ ତ ? ଗୋଟିଏ ବୋଲି ରତ୍ନ ମୋର । ବଡ଼ ଅଲିଅଳରେ ବଢ଼ିଛି । କାଠ କଣ୍ଟ୍ରାକ୍ଟର ହସିଲା ଗୋଟେ ଚମତ୍କାର ସବୁଜ ହସ । କହିଲା: ମାଗୋ ! ତୁମ ଝିଅକୁ ମୁଁ ଚିରହରିତ୍ ଅରଣ୍ୟ କରି ରଖିବି । ଦେଖିବନି କି ?

କାଠ କଣ୍ଟ୍ରାକ୍ଟର ଜଂଗଲ ସଫା କରି ଟ୍ରକ୍ ଟ୍ରକ୍ କାଠ ଚାଲାଣ କରି ଅଚିରେ ବହୁ ଧନୀ ହୋଇଗଲା ଓ ଝିଅକୁ ବହୁତ ସୁଖରେ ରଖିଲା । ପୁଣି ଅରାଏ ଜଂଗଲ କାଟି ତିଆରିଲା ଗୋଟେ ଦି'ତାଲା କୋଠା । ସାନଝିଅ ଉପର ତାଲା ବାଲ୍‌କୋନୀରେ ଗୋଟେ ଦୋଳିରେ ଝୁଲିଲା ଓ ଖୁସି ହେଲା ।

ମା' ପାଖେ ସବୁ ଖବର ପହଞ୍ଚେ । ମା' ଠାକୁରଂକୁ ପୁଅ, ଝିଅ, ଜୋଇଁଙ୍କ ଲମ୍ବା ଆୟୁଷ ମାଗେ ।

ବଡ଼ପୁଅ ମନ୍ତ୍ରୀ ହେଲା ଦିନ, ମା' ଗୋଟେ ଓଳି ଓପାସରେ ଠାକୁର ଘର ଭିତରେ ପଶି ତପସ୍ୟା କଲା । ତା'ଭାଷାରେ କାନ୍ଦୁରୁମାନ୍ଦୁରୁ ହୋଇ କ'ଣ ସବୁ ଠାକୁରଂକୁ କହିଲା । ବଡ଼ ପୁଅ ଆସି ପାରିଲା ନାହିଁ । ବହୁତ କାମ ସବୁ ପଡ଼ିଗଲା ତାକୁ । ମଟର ଗାଡ଼ିରେ ବଡ଼ ବଡ଼ ବାବୁମାନେ ମା' ପାଖକୁ ଆସିଲେ । ମା' ସମସ୍ତଙ୍କୁ କଲ୍ୟାଣ କଲା । ଠାକୁରଙ୍କ ପ୍ରସାଦ ଦେଲା । ବଡ଼ ଭକ୍ତିରେ ସେମାନେ ମା'କୁ ପ୍ରଣାମ କଲେ ।

ମା', ବାପାଙ୍କୁ ମନେ ପକେଇ ସେ ରାତିରେ ଆଉ ଶୋଇ ପାରିଲା ନାହିଁ । କୁଆଡ଼େ ଗଲା ଲୋକଟା ? ସେମିତି ଏକମୁହାଁ ହୋଇ କୁଆଡ଼େ ଗଲା ? ଫେରି ଆସନ୍ତାନି ଏବେ ? ବାପାଙ୍କର ସେଇ କୁଂଚୁକୁଂଚିଆ ବାଳ, ବଡ଼ ବଡ଼ ଆଖି, ଡେଂଗା ଡେଂଗା ଗୋଡ଼, ବଳୁଆ ବାହା... ସେମିତି ଅବିକଳ ମନେ ଅଛି ମା'ର । ସିଏ କ'ଣ ବୁଢ଼ା ହେଇ ଯାଇଥିବେ ଏ ଭିତରେ ? ମା' କାନ୍ଦିଲା । ଏଥର ବଡ଼ପୁଅ, ବାପକୁ ଖୋଜି ଆଣିବ ପରା ? ଏତେ ମଣିଷ, ପୁଲିସ୍, ଚପରାଶି ତା' ପାଖରେ । ସେ ନିଶ୍ଚେ ଖୋଜି ପାରିବ । ହେଲେ ବଡ଼ ପୁଅ କହୁଚି: ମା' ! ତୁ କ'ଣ ଭାବୁଚୁ, ବାପା ଏ ଯାଏ ଅଛନ୍ତି ? ମା' ଆଶ୍ଚର୍ଯ୍ୟ । ନାହାନ୍ତି ତ ଆଉ ଗଲେ କୁଆଡ଼େ ? ଏଇ ମାଟି, ଆକାଶ ଭିତରେ ତ ଥିବେ ନା ?

ବଡ଼ପୁଅ କହୁଛି: ସେ ଗୋଟେ ପଳାତକ ମଣିଷ । ସ୍ତ୍ରୀକୁ, ପିଲାମାନଙ୍କୁ ଅନାଥ କରି ଯିଏ ଚାଲିଯାଏ । ତାକୁ ଆଉ କ'ଣ କହିବି, କ'ଣ ବା କୁହାଯାଇପାରେ ? ଆଉ ବେଶୀ କହିବା କଥା । ଖାଲି ତୋ'ମନ ଦୁଃଖ ହବ ବୋଲି କହୁନି ।

ମା' ଆଶ୍ଚର୍ଯ୍ୟ ହୁଏ । ଏମିତି କଥା, ପିଲାମାନେ କେମିତି କହିପାରନ୍ତି ? ସେ ନିଜେ ତ ଦିନେ ଏମିତି ଭାବିନି ? ଅଥଚ ଏମାନେ ଏତେ ସବୁ କଥା କେମିତି ଭାବି ପାରନ୍ତି ?

ମା' ଆଉ କଥା ବଢ଼ାଏ ନାହିଁ । ପିଲାମାନେ ପୁଣି ବାପାକୁ ଭୁଲି ସହଜ ହୋଇଯା'ନ୍ତି । ମା' କିନ୍ତୁ ବେଳକୁ ବେଳ ବେଶୀ ବେଶୀ ଦୁଃଖରେ, ଅନୁଶୋଚନାରେ ଘାଣ୍ଟି ହେଉଥାଏ । ବେଳେ ବେଳେ ଦୂର ଦିଗ୍‌ବଳୟ ଆଡ଼କୁ ଅନେଇ ରହେ, କାଳେ ମଇଳା ଧୋତିଟିଏ ପିନ୍ଧି, ମୁଣ୍ଡରେ ଖୋରଧା ଗାମୁଛାଟିଏ ପକେଇ, ଆଣ୍ଠୁଯାଏ ଧୂଳି ଧୂସର ହୋଇ ରୁଢ଼ିଆ ମୁହଁର ଲୋକଟିଏ ପହଞ୍ଚି ଯାଇ, ସେଇ ଗାଁ ମୁଣ୍ଡରୁ ଡାକଟିଏ ଛାଡ଼ିବ: ସୁଲୋଚନା... ମୁଁ ଆସିଗଲି ।

ମା'ତ ସେତେବେଳକୁ ନିଜ ନାଁଟା ଭୁଲି ଯାଇଥିବ । ମୁଣ୍ଡରେ ଓଢ଼ଣା ଟାଣି ଦେଇ ନିଜକୁ ନିଜେ କହିବ : ମଲା ! ଏଡ଼େ ପାଟିରେ ଗାଁ ମୁଣ୍ଡଟାରେ ଡାକ ନପକେଇ ଥିଲେ କ'ଣ ଚଳି ନଥାନ୍ତା ?

ଦିଗ୍‌ବଳୟ ଆଡୁ ବାପା ନଆସି ଅଂଧାର ଆସିଯିବ ବି ମା' ଆଖିରେ । ପିଲାମାନେ ଏସବୁ ଜାଣି ପାରି ନଥିବେ । ପିଲାମାନେ ଏ ସବୁ ଜାଣିବା କ'ଣ ଦରକାର ଯେ ?

ସାନଝିଅ ଆସିଲା । କଂଟ୍ରାକ୍ଟର ଜୋଇଁବାବୁ ଆସିଲେ । ମା' କହିଲା: ଭଲ ହେଲା !

ବଡ଼ ଏକୁଟିଆ ଲାଗୁଥିଲା । ଜୋଇଁବାବୁ ଦେଶୀ କୁକୁଡ଼ା ଆଣି ମୋଡ଼ିଲେ । ମା' ଆଇଁଷ ଖାଏନା । ବଡ଼ ପୁଅଟା ଆଇଁଷ ନହେଲେ ଥାଳି ପାଖେ ବସେନା । ଜୋଇଁବାବୁ ରୋଷେଇ କଲେ ।

ସାନଝିଅ ମା' ଗୋଡ଼କୁ କୋଳ ଉପରେ ଥୋଇ ଘଷିଲା ଓ ସୁକୁ ସୁକୁ ହୋଇ କାନ୍ଦିଲା ।

ମା' କହିଲା: କ'ଣ ହେଲା ? ମୋ ସୁନାନାକୀ ଝୁଅର କ'ଣ ହେଲା ?

ସାନଝିଅ କହିଲା : ୟାଙ୍କର ତିନିଟା ଯାକ ଟ୍ରକ୍‌କୁ ପୁଲିସ୍ ଧରିଛି । ଆମେ ତ ସର୍ବସ୍ୱାନ୍ତ ହୋଇଗଲୁଲୋ ମା !

ମା' କହିଲା: ତେବେ ? ମୁଁ କ'ଣ କରିବି ?

ଜୋଇଁ ରୋଷେଇ ସାରି ଦୂରରେ ଛିଡ଼ା ହୋଇ ସିଗାରେଟ୍ ଟାଣି ସବୁ ଶୁଣୁଥିଲେ । କହିଲେ: ମାଗୋ ! ତମେ ଯଦି ଭାଇଙ୍କୁ ଥରେ କହି ଦିଅନ୍ତ, ତା'ହେଲେ ହେଇଯାଆନ୍ତା । ଭାଇ ଆମର ମନ୍ତ୍ରୀ, ମନ୍ତ୍ରୀଙ୍କ ଭଉଣୀର ଟ୍ରକ୍ ଏ ଶଳା ଛାର ପୁଲିସ୍‌ବାଲା ଅଟକେଇବେ । ବଡ଼ ଦୁଃଖ... ବଡ଼ ଅପମାନ... ବଡ଼ ସାଂଘାତିକ ।

ସାନଝିଅ ଯୋଡ଼ିଲା: ମା' ! ଭାଇ ଏକା ତୋ କଥା ରଖି ପାରନ୍ତି । ତୁ କହିଲେ...

ମା' କିଛି ବୁଝି ପାରିଲା ନାହିଁ, ତେବେ କହିଲା, କହିବି । ମା' ଝିଅ ଜୋଇଁଙ୍କ ସହ ବଡ଼ପୁଅ ବସାରେ । ପହଁଚିବା ବେଳକୁ ଖରା, ବଡ଼ପୁଅ ଯାଇଛି ମିଟିଂକୁ । ନାତି ନାତୁଣୀମାନେ ସ୍କୁଲ୍‌ରେ । ବୋହୂ ଏକା । ବହୁ ଲୋକ ଏପଟ ସେପଟ । ବୋହୂର ପାଟିରୁ କଥା ନ ସରୁଣୁ କାମ ଶେଷ୍ ।' ମା' ବେଶ୍ ଖୁସି ହୋଇ ମନକୁ ମନ କହିଲା: ମୋ ଲକ୍ଷ୍ମୀମନ୍ତ ବୋହୂ । ଏ ବୋହୂଟି ଆସିଲାଠୁ ବଡ଼ପୁଅର ବହୁ ଉନ୍ନତି । ଅଇ ସୁଲକ୍ଷଣୀ ହେଇଥା' ।

ବଡ଼ବୋହୂ ଗୋଟି ଗୋଟି କରି ସବୁ ଦେଖେଇଲା ମା'କୁ । କି ସୁନ୍ଦର ଜିନିଷ ସବୁ । ଆହା ! ସବୁ ଭୋଗ କର ମୋ ପିଲାମାନେ ! ସବୁ ଭୋଗ କର ।

ଥଣ୍ଡା ଘରେ ମା' ଶୋଇଲା । ତାକୁ ନିଦ ଲାଗିଗଲା । ନିଜ ଭାଂଗିବା ବେଳକୁ ବଡ଼ପୁଅ ଆସିଗଲାଣି । ମା' ଉଠୁ ଉଠୁ ବଡ଼ପୁଅ ରାଗିଲା : ପାଂଚ ପାଂଚଟା ଗାଡ଼ି, ତୁ ଗୋଟେ ଜିପ୍‌ରେ ଆସିବା କ'ଣ ଦରକାର ଥିଲା ? ବୁଢ଼ୀଲୋକ । ମା' କହିଲା: ଜୋଇଁ କହିଲେ ତ ?

ବଡ଼ପୁଅ ବୁଝେଇଲା : ଜୋଇଁ କହିଲେ ତୁ ଚାଲି ଆସିବୁ ? ତୁ ଗୋଟେ ମନ୍ତ୍ରୀର ମା' । ମାନେ ରାଜମାତା । ତୁ ପୁଣି ଆସିବୁ ଜିପ୍‌ରେ ? କ'ଣ ଏମିତି ଗୋଟେ ଜରୁରୀ ଥିଲା ଯେ...

ମା' ଗୋଟେ ନୁଖୁରା ହସ ହସିଲା । କହିଲା: ପୁଅରେ... ତୋ' ଭଉଣୀ ଆଉ ତା' ଜୋଇଁ ବଡ଼ ବିପଦରେ ପଡ଼ିଛନ୍ତି... ସେଇଥି ପାଇଁ... ବଡ଼ପୁଅ ହସିଲା । ଗୋଟେ ନାଟକୀୟ ଭଂଗୀରେ କହିଲା: ବିପଦ ! କି ବିପଦ ! ଚୋରୀ କରିବ... ଧରା ପଡ଼ିଲେ କହିବ, ବିପଦ ଆରେ ବାବୁ ! ମାଲ୍ ଲଢ଼ାଅ । ମାରିଲ ଦଶ ଲକ୍ଷ, ତିନି ଲକ୍ଷ ଖର୍ଚ୍ଚ କରିବନି, କ'ଣ ନା ବିପଦ ? ଯେତେସବୁ ବାଜେ କଥା ।

ମା' କିଛି ବୁଝିପାରିଲାନି । ଏମିତିକି 'ଚୋରୀ' ଶବ୍‌ଦଟିକୁ ବି । ବଡ଼ପୁଅ ହସିକି କହିଲା : ଠିକ୍ ହୋଇଯିବ । ତୁ କିଆଁ ବ୍ୟସ୍ତ ହଉଚୁ ? ତତେ ସେଇଥି ପାଇଁ ସେ ଡାକି ଆଣିଛି, ମାଗଣା ମାଗଣା କାମ ହେଇଯିବ ବୋଲି ? ଆରେ ବାବୁ । ବନ୍ଧୁ ବାନ୍ଧବ କଥା ଅଲଗା । ଆଇନ୍ କାନୁନ୍ କଥା ଅଲଗା । ଆଗରୁ ପାଂଚ ଥର ମୋ ନାଁ କହି ଖସିଛି । ଏଥର ମୁଁ ନିଜେ କହିଲି ଛାଡ଼ନା ତାକୁ । ଏବେ ପଡ଼ିଛି ହରଡ ଘଣାରେ । ବେଶ୍ ହେଇଛି । ଏଥର ମାଲ୍ ଲଢ଼େଇବତ, ଖସିବ ।

ମା' କିଛି ବୁଝିପାରିଲାନି ତଥାପି । କହିଲା କ'ଣ ତୁ କହୁଚୁରେ ପୁଅ ?

ବଡ଼ପୁଅ କହିଲା: ମା' ! ଏ ହଉଚି ପଲିଟିକ୍ସ୍ । ତୁ ଏଥିରେ ମୁଣ୍ଡ ପୂରାନା । ତୋ' ଝିଅ-ଜୋଇଁ ଥରେ ହଇରାଣ ନହେଲେ ଚେତିବେନି ? ତୁ ଆଉ ଟିକେ ଶୋଇପଡ଼ । କ'ଣ ଖାଇବୁ, ରୋଷେୟାକୁ ବରାଦ ଦବୁ । ତୁ ଏବେ ଏଠି ମାସେ ଖଣ୍ଡେ ରହ ।

ବଡପୁଅର ଫୋନ୍ ଆସିଲା । ସେ ଚାଲିଗଲା । ବଡ଼ପୁଅ ଯିବା ପରେ ଝିଅ ଆସି କାନ୍ଦିଲା । କହିଲା: ଦେଖିଲୁ ମା' ! ନିଜ ଭାଇ ମନ୍ତ୍ରୀ ହବାରୁ କେମିତି ପଚାରୁନି । ଖାଲି ଗୋଟେ ଫୋନ୍ କରିଦେଲେ ହେଇଯାଆନ୍ତା । ସବୁ ଆମ ଭାଗ୍ୟ ।

ଜୋଇଁ କହିଲା: ମନ୍ତ୍ରୀଙ୍କ ଭିଣୋଇ ହୋଇ ଆମେ ଯଦି ଲାଞ୍ଚ ଦବୁ । ତା'ହେଲେ କ'ଣ ଲାଭ ? ଆମର ତା'ହେଲେ କେହି ନାହିଁ । ଆମେ ଅନାଥ । ଆମେ ଅରକ୍ଷିତ । ଅରକ୍ଷିତକୁ ଦଇବ ସାହା । ଆମେ ଯାଉଛୁ । ଆମେ ଜାଣିଲୁ ଯେ, ଆଜିଠୁ ଆମର କେହି ନାହାନ୍ତି । ନା ଶାଶୂ, ନା ଶଳା, ନା କେହି ।

ଝିଅ ଜୋଇଁ ଖାଇଲେ ନାହିଁ । ଚାଲିଗଲେ । ବଡ଼ବୋହୂ କହିଲା: ମିଡିଲ୍‌କ୍ଲାସ୍ ସେଣ୍ଟିମେଣ୍ଟ୍ ।

ମା' ତଥାପି କିଛି ବୁଝି ପାରିଲା ନାହିଁ । ଖାଲି ଏତିକି ବୁଝିଲା : ତା' ଝିଅ ଜୋଇଁଙ୍କ କାମ ବଡ଼ପୁଅ କଲା ନାହିଁ, କାରଣ ସେମାନେ ଠିକ୍ କାମ କରିନଥିଲେ । କେଜାଣି ? ମା' ବଡ଼ପୁଅ ଘରେ ହିଁ ସେ ସ୍ୱପ୍ନଟା ଦେଖିଲା । ଏଇ ସ୍ୱପ୍ନଟା ଦେଖିବ ବୋଲି ସେ କେତେ ଆଗରୁ ଭାବି ନଥିଲା ? ହେଲେ ସେଇଟା ଆସିବାକୁ ଲାଗିଗଲା ତିରିଶ ବରଷ କି ତା'ଠୁ ବେଶୀ । ସେଇ ସ୍ୱପ୍ନକୁ ଭାବିଭାବି ମୁଣ୍ଡବାଳ ସବୁ ପାଚିଗଲା । ଆଖିକୁ ଭଲ ଦିଶିଲାନି । ଏମିତିକି ଯୋଉ ଘରକୁ ଏତେ ସୁନ୍ଦର କରି ସଜେଇଥିଲା, ସେସବୁକୁ ବି ଦେଖି ପାରିଲାନି ଭଲ କରି । କେତେଥର ମା' ନଚାହିଁଛି, ସତରେ ପଛେ ନ ହେଲେ ନାହିଁ, ସପନରେ ତାଙ୍କୁ ଥରୁଟେ ଦେଖିଦବାକୁ । ସପନ ଦେଖିବା ପରେ ମା' ଉଠି ବସିଲା । ଆଉ ନିଦ ଆସିଲା ନାହିଁ ମୋଟେ ।

ବଡ଼ପୁଅ ସବୁ ଶୁଣିଲା । କହିଲା : ଏ ସବୁ ତୋ' ମନର ଭୂତ । ବଡ଼ବୋହୂ କହିଲା : ବୟସ ହେଲେ ଭ୍ରମ ହୁଏ । ଏଇଟା ଗୋଟେ ସାଇକୋଲୋଜିକାଲ୍ ପ୍ରବ୍ଲେମ୍ ।

ମା' ବେଳକୁ ବେଳ ଉଦାସ ହେଲା । ଅନ୍ୟମନସ୍କ ହେଲା । କହିଲା: ମୋ ସପନ ନିଶ୍ଚେ ସତ । ତାଙ୍କ ଦାଢ଼ି ବଢ଼ି ଯାଇଛି ସିନା, ହେଲେ ସେ ଆଖି ଦି'ଟା ସେମିତି ଅଛି ଢଳ ଢଳ ନିରୀହ । ସେମିତି ପିଲାଳିଆ ହସ । ସେମିତି ଖୋଜିଲା ଖୋଜିଲା ମୁହଁ । ଜାଣିଚନା ସବୁ, ତାଙ୍କ ଆଖିରେ ଲୁହ । କାଇଁକି ଲୁହ ? କେତେ ଦୁଃଖ, କେତେ କଷ୍ଟ ସେ ଭୋଗିଛନ୍ତି, ଜାଣିଚନା ସବୁ ? ନା ତମେ ସବୁ କେମିତି ଜାଣିବ ?

ବଡ଼ପୁଅର ସ୍ମୃତିରେ 'ବାପ'ର ଚିତ୍ର ଝାପ୍‌ସା ହୋଇ ସାରିଥିଲା । ବାପର ବାସ୍ନା ପହଁରୁ ନଥିଲା ବଡ଼ପୁଅର ଚାରିପାଖେ । ମୋଟା ମୋଟି ବଡ଼ପୁଅ, ବାପାକୁ ଭୁଲି ସାରିଥିଲା । ଏମିତି ବି ହୋଇପାରେ, ବାପକୁ ମନେ ପକେଇବାର ବୟସ ଆଉ ବଡ଼ପୁଅର ନଥିଲା । ଏଣୁ ସେ ମା'ର ସ୍ୱପ୍ନ ସଂପର୍କରେ ବେଶୀ ଗୁରୁତ୍ୱ ଦେଲାନାହିଁ ।

ମା' ଫେରିଆସିଲା ଗାଁକୁ ।

ଗାଁରେ ତାକୁ ଆଉ କିଛି ଭଲ ଲାଗିଲା ନାହିଁ । ଶାଗପଟାଳିରେ ପଡ଼ିଶା ଘରର ଛେଳିମେଣ୍ଢା ଚରିଗଲେ । ଚାଉଳ ପିଠୋଉର ଝୋଟି କ୍ରମଶଃ ମାଟିଆ ହୋଇ ମାଟିକାନ୍ଥରେ ମିଶିଗଲା । ବାଡ଼ ପଟର ଗଛଗୁଡ଼ା ମରିଗଲେ । ବାରମାସୀ ମଲ୍ଲୀଗଛ କଟା ନହୋଇପାରି ବେଶ୍ ବଢ଼ିଗଲା ଓ

ସେଥିରେ ଆଉ ଫୁଲ ଫୁଟିଲା ନାହିଁ । ଭାଗବତ ଗାଦୀ ଘରେ ଆଉ ଦଶମସ୍କନ୍ଧ ପଢ଼ା ହେଲାନାହିଁ । ଠାକୁର ଠାକୁରାଣୀଙ୍କ ଫଟୋରେ ଉଇ ଚରିଗଲେ । ହେଲେ ମା' କାହିଁରେ ମନଦେଲା ନାହିଁ ।

ଘର ଉଜୁଡ଼ିଗଲା । ମା' ଜାଣିପାରିଲା ନାହିଁ ।

ସାନପୁଅ ମା' କୋଳରେ ଶୋଇ ଶୋଇ ଆକାଶର ତରା ଦେଖୁଥିଲା । ମା' କିଛି କହୁ ନଥିଲା । ସାନପୁଅ ପଚାରିଲା : କିଛି କହୁନୁ ଯେ ? ମା' ସେମିତି ଅନ୍ୟମନସ୍କ ହୋଇ କହିଲା : ସେ ଡାକୁଛନ୍ତି । ମୁଁ ଯିବି । ବଡ଼କଷ୍ଟରେ ସେ ଅଛନ୍ତିରେ ବାପା ! ବହୁତ ଝଡ଼ି ବି ଯାଇଛନ୍ତି । ଜୀବନ ସାରା ତମ ସେବା କଲି । ଏ ବୁଢ଼ା ବୟସରେ ତାଙ୍କ ସେବା ମୁଁ କରିବି ନାହିଁ ତ ଆଉ କରିବ କିଏ ?

ସାନପୁଅ 'ବାପ'କୁ ଦେଖି ନଥିଲା । ମା'ର କଥା ଶୁଣି 'ବାପ'ର ଚିତ୍ରଟିଏ ଯାହା ତିଆରି ଥିଲା ମନେ ମନେ । ସେଇ ମନରୁ ଗୋଟେ ଦୁଃଖୀ ଲୋକର ଛାଇ ତିଆରି କଲା ଓ ତା'ର ନାଁ ଦେଲା ବାପା । ସେଇ ଛାଇ ବାପା ଖୁବ୍ ଅନୁଚ୍ଚ କଣ୍ଠରେ ଗୀତଟିଏ ଗାଉଥିଲେ । ଆଗରେ ଥିଲା ନଈ । ନଈ ସେପଟେ ଉଇଁ ଆସୁଥିବା ଲାଲ୍ ସୂର୍ଯ୍ୟ । ଗୀତଟି କ୍ରମଶଃ ଶ୍ଲୋକ ପରି ଶୁଭିବାକୁ ଆରମ୍ଭ କରୁଥିଲା । ସାନପୁଅ, ମା' କୋଳରେ ମୁହଁ ଗୁଂଜି କହିଲା: ତୋ' ସାଂଗରେ ମୁଁ ଯିବି ମା ! ମୁଁ ବି ତାଙ୍କୁ ଦେଖିବି ।

ମା' ହସିଲା । କହିଲା : ହଉ । ଶୋଇପଡ଼ ।

ସାନପୁଅ ଶୋଇପଡ଼ିଲା । ସେ ବି ଗୋଟେ ସ୍ୱପ୍ନ ଦେଖିଲା ! ବାପାର ଛାଇ ଉଭେଇ ଯାଇଛି । ମାଟିରଂଗର ବାପା ବସିଛନ୍ତି, ସେଇ ନଈକୂଳେ । ନଈ ବଢ଼ିଛି । ବାପା ନଈ ଉପରେ ଚାଲିଚାଲି ଯାଉଛନ୍ତି, ସୂର୍ଯ୍ୟ ଉଉଁଥିବା ଦିଗ ଆଡ଼କୁ । ବାପାଙ୍କ ପାଦରେ ପାଣି ଲାଗୁନାହିଁ । ଲାଗୁଛି, ଯେମିତି ଶାଗୁଆ ଧାନବିଲର ହିଡେ ହିଡେ ଚାଲି ଯାଉଛନ୍ତି । ପଛରେ ଧାଉଁଛି ମା' । ଆହା ! ମା'ର କି କାନ୍ଦ ! କାନ୍ଦସବୁ କେମିତି ଗୀତ ପରି ଲହରେଇ ଲହରେଇ, ପହଁରେଇ ଦଉଛି ପାଣିସବୁକୁ । ବାପା ହସୁଛନ୍ତି ଓ ପାଣି ଉପରେ ଚାଲିଯାଉଛନ୍ତି । ସାନପୁଅ ଚିତ୍କାର କଲା : ବାପା... ହେ ବାପା... ।

ସକାଳ ହୋଇସାରିଥିଲା । ସାନପୁଅର ଚିତ୍କାରର ଅଧେ ମିଶିଯାଇଥିଲା କୁହୁଡ଼ିରେ ଓ ଅଧେ ଚଢ଼େଇଙ୍କ କିଚିରି ମିଚିରିରେ ।

ସାନପୁଅ ଉଠିଲା । ଅଗଣା ମଲ୍ଲୀ ଗଛରେ ଗଛେ ଫୁଲ । ମା' କାହିଁ ? ସାନପୁଅ ଡାକିଲା: ମା'... ମା'... ।

ମା' ନଥିଲା ।

ଠାକୁର ଘର, ଶାଗ ପଟାଳି, ହାଣ୍ଡିଶାଳ, ବାଡିଦୁଆର, କୋଉଠି ନଥିଲା ମା' ।

ସାନପୁଅ ବାଡ଼ିଦୁଆର ଖୋଲି ନଈ ଆଡ଼କୁ ଦୌଡ଼ିଲା । ଆମ୍ବତୋଟା ଆଡ଼େ ଦୌଡ଼ିଲା ।

ଦୌଡ଼ି ଦୌଡ଼ି ଥକ୍କା ହୋଇ ବସି ପଡ଼ିଲା । ଯିଏ ଗଲା ତାକୁ ପଚାରିଲା : ମୋ, ମା'କୁ ଦେଖିଚ ?

ବଡ଼ପୁଅ ଥାନାରେ ଏତଲା ଦେଲା । ଖବର କାଗଜରେ ମା'ର ଫଟୋ ବାହାରିଲା । ଖବର ବାହାରିଲା: ମା' ହଜିଯାଇଛି । ଯିଏ ଖୋଜି ଆଣିଦବ, ପୁରସ୍କାର ମିଳିବ । ମା'ର ବୟସ ପଁଷଠୀ । ବାଳ ଧଳା । ମୁଣ୍ଡରେ ସିନ୍ଦୂର । ବଡ଼ବାଗୀ ଆକାଶୀ ରଂଗର ଶାଢ଼ି । ପାନ ଖାଏନା

ବେଶୀ । ଗୋରା ରଂଗ । ଏଇ କେଇଦିନ୍ ହେବ ତା'ର ମୁଣ୍ଡ ଠିକ୍ ନଥିଲା । ମାନ୍ୟବର ମନ୍ତ୍ରୀ ମହୋଦୟଙ୍କର ସେ ମା' ।

ମା' ମିଳିଲାନି । ପୁଲିସ ଖୋଜି ଖୋଜି ଥକିଲା । ଲୋକମାନେ ଖୋଜାଖୋଜି କଲେ । ନିରାଶ ହେଲେ । ମା' କୋଉଠି ନଥିଲା ।

ବଡ଼ବୋହୂ କହିଲା : ମା' କିଛି ଭଲ କଲେନି । ଅମାକୁ ଖାଲିଯା' ବଦ୍‌ନାମ କଲେ । ଛି !

ବଡ଼ପୁଅ କିଛି କହିଲାନି । ମିଟିଂ ପାଇଁ ଚାଲିଗଲା । ମୁଖ୍ୟମନ୍ତ୍ରୀ ଡାକିଥିଲେ ।

ସାନପୁଅ ଦିନେ ସକାଳୁ ସକାଳୁ ବଡ଼ଭାଇ ପାଖେ ପହଞ୍ଚିଲା । କହିଲା : ମୁଁ ଯାଉଛି, ମା'କୁ ଖୋଜିବାକୁ ।

ବଡ଼ପୁଅ କହିଲା : ତାକୁ କୋଉଠୁ ପାଇବୁ ତୁ ?

ସାନପୁଅ କହିଲା : ମୁଁ ତାକୁ ପାଇବି । ବାପାଙ୍କ ପାଖରେ ଥିବ । ବଡ଼ପୁଅ କହିଲା ପାଗଳ । ନହେଲେ ତାରାଙ୍କ ମେଳରେ ଥିବ ।

ସାନପୁଅ ଚାଲିଗଲା ଦିନେ ସକାଳର ଗାଡ଼ିରେ ସତକୁ ସତ ।

ସେଇଦିନଠୁ ଦୁହେଁ ଫେରି ନାହାନ୍ତି । ନା ମା', ନା ସାନପୁଅ । ଗାଁର ସେ ମାଟି ଘର, ଶାଗ ପଟାଳି, ଠାକୁର ଘର, ଭାଗବତ ଗାଦୀ, ଚାଉଳ ପିଠୋଉ ଝୋଟି, ବାଡ଼ିପଟର ଗଛବୃଛ, ସେଇସବୁ ଚଢ଼େଇଙ୍କ କିଚିରି ମିଚିରି ଅଛି କି ନାହିଁ କେଜାଣି ? କାହାର ସମୟ ଅଛି, ସେଇସବୁ ପୁରୁଣା କଥାକୁ ଘାଣ୍ଟିବାକୁ ?



# ଏବେ ଆମେ ଭଲ ଅଛୁ

## ଭୀମ ପୃଷ୍ଟି

'ଏବେ ଆମେ ଭଲ ଅଛୁ'

– ମୁଁ କହିଲି ।

ସେ ଭଡ଼ଭଡ଼ିଆ ଲୋକ ଚିଡ଼ିଉଠିଲା– 'ଏବେ ଆମେ ଭଲ ଅଛୁ ବୋଲି ଯେଉଁ କଥା କହିଲେ । କୁହନ୍ତୁ, ଆପଣ ଭଲ ଅଛନ୍ତି ? ଆପଣଙ୍କର ବି ଅସୁସ୍ଥ ମାନସିକ ଅବସ୍ଥା । ଦେଖୁନାହାନ୍ତି, ଆମ ଏରିୟା, ଆମ ଉପରେ ହଜାର ରିପୋର୍ଟ ବାହାରିଲା, ଟି.ଭି. ଚ୍ୟାନେଲ୍‌ରେ ଦେଖା ହେଲା, ସାରା ପୃଥିବୀ ଜାଣିଲା– ଆପଣ ଆସିଛନ୍ତି ପୁଣି ଏତେଦିନ ପରେ ?'

ମୁଁ ସେ ଆଂଟୁଆ ଲୋକକୁ ବୁଝାଇଲି,

–'ଦେଖ, ମୁଁ ରିପୋର୍ଟ ଫିପୋର୍ଟ ପାଇଁ ଆସିନି ।'

–'ତେବେ ଆପଣ କ'ଣ ଏନ୍.ଜି.ଓ. ଲୋକ ? ନା ସର୍କାରୀ ଏଜେନ୍ସି ? କାହିଁ ଆମ ପାଇଁ କ'ଣ ନେଇ ଆସିଛନ୍ତି ? ଆମକୁ ଦେଖି ଏନ୍‌ଜୟ କରିବାକୁ ଆସିଛନ୍ତି । ଆମକୁ ଦେଖି ଟାଣି ଓଟାରି କଷ୍ଟ ପାଇବାକୁ ଆସିଛନ୍ତି । ଏଠୁ ଗଲାପରେ ସେଠି ଆମ ଅବସ୍ଥା ଆଉ ଦଶଜଣଙ୍କ ପାଖରେ ଗପିବାକୁ ଆସିଛନ୍ତି ।

ସେ ଗାଡୁରୁ ମାଡୁର ହୋଇ ମୋତେ ଜେରା କଲା । ମୁଁ ମୁଣ୍ଡ ନାଡ଼ି ନାଡ଼ି କେବଳ ନାଇଁ ନାଇଁ କରୁଥିଲି । ସେ ମୋ କଥାକୁ ଗଂଠେଇ ଧରି ନିଜ ଅସନ୍ତୋଷ ଝାଡୁଥିଲା । ପ୍ରଥମ କଥା, ଗୋଟେ ବିପତ୍ତି ତା' ମୁଣ୍ଡ ଦେଇ କଟି ଯାଇଥିଲା । ଏବେ ଭଲ ଅଛି ଜଣାଇ ହେବାକୁ ସାଫ୍ ସୁତରା ପୋଷାକ ପିନ୍ଧିଥିଲା । ହସଖୁସିର ଲାଗୁଥିଲା । ଉପରେ ଭଲ ଅଛି ଦେଖାଇ ଭିତରେ ଯେପରି ଫାଙ୍କୁଥିଲା ।

ମୁଁ ଜାଣିବାକୁ ଚାହିଁଲି ।

– ସେ ଘଟଣା ପରେ ତୁମ ପରିବାରରେ ଆଉ କେତେ ଜଣ ନାହାନ୍ତି ? ତୁମ ଛଡ଼ା ଆଉ କିଏ କିଏ ଅଛନ୍ତି ?

– ' କହୁଥିଲ ରିପୋର୍ଟ ପାଇଁ ଆସିନା । ଦେଖୁଛି ତ ପକ୍କା ରିପୋର୍ଟର । କେଉଁ କାଗଜର ? ସର୍କାରୀ ନା ବିରୋଧୀ ଦଳ କାଗଜର ?

ଲୋକଟାର ତାଲୁଲ୍ୟ କିଟ୍‌କିଟ୍ କାଟିଲା । ଦାନ୍ତ କାମୁଡ଼ି ସହିଲି ।

– 'ତମକୁ ତୁମ କଥା ପଚାରୁଛି ମାନେ ଏସବୁ ନ୍ୟୁଜ୍ ପାଇଁ ନୁହେଁ । ମୋର ଜାଣିବା ପାଇଁ ।

– 'ସେଇଠୁ । ଜାଣି କ'ଣଟା କରିବେ ?'

ସେ ମୋତେ ଫଟରେଇ ଫଟରେଇ ପଚାରିଲା । ମୁଁ କଥା ବାଆଁରେଇ ଦେଲି । କେବଳ ବୁଝାଇଲି ।

– 'ଦେଖ ! ଏଠି ମୋର ହଜାରେ ଲୋକଙ୍କ ସହ ମିଶିବାର ନାହିଁ କି ହଜାରେ ଜାଗା ଯିବାର ନାହିଁ । ମୁଁ ଏଠାରେ କାହାକୁ ଦେବା ପାଇଁ କିଛି ଆଣିନାହିଁ । ଏଠୁ ନେଇ କରି କିଛି ଯିବି ନାହିଁ । ମୋର କେବଳ ତୁମେ ଦର୍କାର । ଆଉ ଥରେ ମୋତେ ଦେଖା କରିବ । ବାସ୍ ।'

ଲୋକଟା ମଧ୍ୟ କଥା ରଖିଲା ।

ଗୋଟେ ଏଜେନ୍ସି ତିଆରି କରି ଦେଇଥିବା ସ୍କୁଲ୍ ଘରେ ମୁଁ ଆସି ରହୁଥାଏ । ସ୍କୁଲ୍ ଆରମ୍ଭ ହୋଇଗଲେ ମୁଁ ବିସ୍ତର ଗୋଟେଇ କ୍ଲାସ୍ ରୁମ୍‌ର ଗୋଟିଏ କୋଣରେ ଡେରିଦିଏ । ସ୍କୁଲ୍ ଛୁଟି ପରେ ମୁଁ ମୋ ବିସ୍ତର ବିଛେଇ ଦିଏ । ହାତ ରନ୍ଧା ବଢ଼ା ଜିନିଷପତ୍ର କାନ୍ଥ କୋଣରେ ସଜାଡ଼ି ରଖେ । କିରୋସିନି ଲ୍ୟାମ୍ପଟିଏରେ ମୋ ପଢ଼ା-ଲେଖା କାମ ରାତିରେ ଚଳେଇ ନିଏ ।

ତା'ପର ଦିନ ସନ୍ଧ୍ୟାବେଳେ ତା' ବାଇକ୍ ମୋ ସ୍କୁଲ୍ ପାଖରେ ଅଟକିଲା ।

ପୋଷାକ ଭିତରେ ତା' ଜିନ୍‌ପ୍ୟାଣ୍ଟ୍, ଟିସାର୍ଟ ଠିକ୍ ଥିଲା । କେବଳ ତା' ଅଲରାମଲରା ବାଳ ଫୁରୁଫୁରୁ ଦିଶୁଥିଲା ।

ଆସିଲା । ମୋ ବିଛଣା ଦାଢ଼ରେ ଛିଡ଼ା ହେଲା । କହିଲି– 'ବସ' । ସେ ମୋ ବିଛଣାରେ ଗୋଡ଼ ନ ଲଗାଇ ବସିଲା । ମୋ କିରୋସିନି ଷ୍ଟୋଭ୍, ଜଣିକିଆ ରୋଷେଇ ସରଂଜାମ ଆଡ଼େ ନଜର ବୁଲାଇଲା । ମୋତେ ଅନ୍ଦାଜ ଲଗାଉ ଲଗାଉ ତର ତର ହେଲା,

– 'କୁହନ୍ତୁ, ଏଠି କାହିଁକି ମୁଁ ଆପଣଙ୍କ ଦର୍କାର ?'

– 'ଦର୍କାର ଏଇଥି ପାଇଁ, ପ୍ରଥମେ ଯେତେବେଳେ ଏଠି ପହଞ୍ଚିଲି ଧରି ନେଲି ଏଠି ପ୍ରଥମେ ଯେଉଁ ଅଚିହ୍ନା ଲୋକ ସହ ଦେଖା ହେବ, ତାକୁ ମୋ ବନ୍ଧୁ ଭାବେ ବାଛିବି । ତୁମେ ଦେଖା ହେଲ । ମୋର ଏଠି, କେଇ ଦିନ ରହିବା ଭିତରେ ଆମେ କିଛି ସମୟ କାଟି ପାରିବା ନାହିଁକି ?

ମୋର କୈଫିୟତରେ ତା'ର ଯେପରି ମନବୋଧ ହେଲା ନାହିଁ । ଅଯଥାରେ ସେ ରାତିଟାରେ ତା' ଗଗ୍‌ଲେସ୍‌କୁ ରୁମାଲ୍‌ରେ ପୋଛୁଥିଲା । ଶେଷକୁ ସିଗ୍ରେଟ୍ ପ୍ୟାକେଟ୍ ଦେଖାଇ କହିଲା– 'ଚଳିବ' ? ମୁଁ ମନାକଲି । ସେ ସିଗ୍ରେଟ୍ ଲଗାଇ ଧୂଆଁ ଟାଣିବା ଭିତରେ ବି ଅସ୍ଥିର ହେଉଥିଲା । ବାହାରକୁ ବାହାରିଯିବା ପାଇଁ ତରତର ଥିଲା । ହେଲେ ମୋ ପାଖ ଛାଡ଼ି ଯିବାର ସୁଯୋଗ ପାଉ ନଥିଲା ।

– 'ଆଜି ତୁମେ ବ୍ୟସ୍ତ ଜଣାପଡୁଛ । ଠିକ୍ ଅଛି ମୋ ସହିତ ମିଶିଲେ ତୁମକୁ ଯଦି ଭଲ ଲାଗିବ ବୋଲି ମନେକରିବ, ତୁମ ସୁବିଧାରେ ସଂଧ୍ୟାବେଳେ, ଆମେ ଏଠି ଘଣ୍ଟେ ଦୁଇଘଣ୍ଟା କଟାଇବା । ପୁଣି କେତେବେଳେ ଆସ ।'

– 'ହଉ' । ବୋଲି କହି ସେ ଗଲା । ଗଲାବେଳେ ଭୁଲ୍‌ରେ ତା' ରୁମାଲ୍ ଛାଡ଼ି ଦେଇ ଗଲା ।

ଲୋକଟା ଅଜବ ଥିଲା । ଯେମିତି ଏଠି କିଛି ହୋଇ ନାହିଁ । ସେହି ହଂଡ୍ରେଡ୍ ସିସି ବାଇକ୍ ଚଢ଼ା, ସେହି ଜିନ୍‌ପ୍ୟାଣ୍ଟ୍ । ସେହି ସିଗ୍ରେଟ୍ ଫୁଙ୍କା, ବେଫିକର୍, ବେପରୁଆ ।

ଏମିତି ଘୁରାଫେରା ମଣିଷ ହଜାର ମଣିଷଙ୍କୁ ଛୁଇଁ ପାରନ୍ତି । ସେ ପାଇଁ ଏଠି ପହଞ୍ଚିଗଲା ପରେ ଏ ଚୁଙ୍ଗୁଚୁଙ୍ଗୁ ଲୋକଟା ମୋ ଆଖିରେ ଧରା ପଡ଼ିଲା ଆଗେ ।

ଏଠି ଯାହା ତ ଖିନ୍‌ଖରାବୀ ହୋଇସାରିଥିଲା । ଯେତେକ ଯାଇଥିଲେ ଯାଇ ଥିଲେ । ଯେତକ ବଳକା ରହିଥିଲେ । ସେ ଲୋକମାନେ ଲାଗୁଥିଲେ ଛାଞ୍ଚବନ୍ଧା; କରୁଣ ଆଖିମାନଙ୍କର ମାଲିକ୍ । ହେଲେ ଏ ଲୋକର ଆଖିରେ କି ଯାଦୁ ଥିଲା ? ଏ ମୋତେ ଯାଦୁ ଲଗାଇ ଦେଲା ନା ମୁଁ ତାକୁ ଯାଦୁ କରିବାକୁ ବାଛିଲି ?

ଥରେ ସେ ରାତି ଆଠଟା ସାଢ଼େ ଆଠଟାରେ ଚିକେନ୍ ପଲିଥିନ୍‌ରେ ଭରି ଆସି ମୋ ପାଖରେ ହାଜର୍ । ସେତେବେଳକୁ ମୁଁ ଭାତ ଗାଳିସାରି ଡାଲ୍‌ମାରେ ଛୁଙ୍କ ଦେଉଥାଏ । ମୋ ରୋଷେଇ ଶେଷ ହୋଇଯାଇଛି ଜାଣି ସେ ଫେରିଯାଉଥିଲା । ତାକୁ ଅଟକାଇଲି ।

– 'ରୁହ । ଚିକେନ୍ ଆଣିଛ ଯଦି ରୋଷେଇ କରିବା । ଖାଇବା । ଗପସପ ହେବା ।'

ସେ ଅଟକିଲା । ମୁଁ ଡାଲ୍‌ମା ଘୁଞ୍ଚେଇ ଚିକେନ୍ ପାଇଁ ମସଲା ମସଲି ଯୋଗାଡ଼ରେ ଲାଗିଗଲି । ସେ କହିଲା,

'ମୋର ଜଣେ ସାଙ୍ଗ ଆସିବ । ସେ ରୁଟି ଆଣିବା ପାଇଁ ଗାଡ଼ି ଧରି ହୋଟେଲ୍ ଯାଇଛି । ଏଇଠି ଖାଇବା ପିଇବା । ଆପଣଙ୍କର ଚଳେ ତ ?'

ସେ ପିଇବା କଥାଟା ଠାରି ଦେଲା ।

ମୁଁ ବି ଏ ସୁଯୋଗଟିଏ ଖୋଜୁଥିଲି । କହିଲି,

– 'ଦେଖ ଚିକେନ୍ କର । ପିଆପିଇ କର । ମଉଜ କର । ଏଠି ତୁମେ ସବୁଠୁ ଭଲ ପ୍ରାଇଭେସୀ ପାଇବ । ତୁମ ଛଡ଼ା ଅନ୍ୟ କେହି ଆମ ମେଳରେ ଆସର କରନ୍ତୁ, ଅନ୍ତତଃ ଏତକ କଥା ମୋତେ ଭଲ ଲାଗିବ ନାହିଁ ।

ସେତେବେଳକୁ ସେ ଚିକେନ୍ ରାନ୍ଧିବାକୁ ବସିଥିଲା । ମୋ କଥା ଶୁଣି ଡେକ୍‌ଚିରେ ତା' ଖୁଡ୍‌ଖାଡ୍ ବନ୍ଦ ହୋଇଗଲା । କିଛି ସମୟ ପରେ ରୁଟି ଧରି ପହଞ୍ଚିଲା ତା' ସାଙ୍ଗ । ସେ ରୋଷେଇ ପାଖରୁ ବାହାରକୁ ଉଠିଗଲା । ସ୍କୁଲ୍ ବାରଣ୍ଡାରେ ଅନ୍ଧାରରେ ଛିଡ଼ା ହୋଇ ତା' ସାଙ୍ଗକୁ କହିଲା,

– 'ଏ ବାବୁ ଏନ୍.ଜି.ଓ., ଏଜେନ୍ସିବାଲା ନୁହଁନ୍ତି । ରିପୋର୍ଟର ବି ନୁହଁନ୍ତି । ଏ ଅଲଗା ପ୍ରକାରର । ମୋ ଛଡ଼ା ଆଉ କାହା ସହିତ ବସିବାକୁ ଚାହୁଁ ନାହାନ୍ତି । ଆମେ ଅଲଗା ଦିନେ କେଉଁଠି ବସିବା ।

ଆସର ପାଇଁ ଆସିଥିବା ସାଙ୍ଗଟି ବୁଝିଗଲା ପରି ଗାଡ଼ି ଷ୍ଟାର୍ଟ କରି ବାହାରିଲା । ଏ ବଡ଼ପାଟିରେ କହିଲା– 'କାଲି ସକାଳେ ମୋତେ ଆସି ନେଇଯିବୁ ।'

ସେ ଫେରିଆସିଲା ମୋ ପାଖକୁ । ସେତେବେଳକୁ ମୁଁ ଦୁଇଟି ଜାଗାରେ ବାଢ଼ି ସାରିଥାଏ ଭାତ, ରୁଟି, ଡାଲ୍‌ମା, ଚିକେନ୍ ଝୋଲ୍ ।

ସେ ଦୁଇଟି ଗ୍ଲାସ୍‌ରେ ପେଗ୍ ବନେଇବାକୁ ଯାଉଥିଲା । ମୁଁ ମୋ ଗ୍ଲାସ୍‌ଟି ମୁହଁମାଡ଼ି ଓଲଟାଇ ରଖିଦେଲି । ସେ ଥ' ହୋଇ ମୋତେ ଓ ମୁହଁମାଡ଼ି ରହିଥିବା ମୋ ଗ୍ଲାସ୍ ଆଡ଼େ ଚାହିଁଲା । ମୋତେ ବାଧ୍ୟ କଲା ନାହିଁ । ତା' ନିଜ ପାଇଁ ସେ ତିଆରି କଲା ପ୍ରଥମ ପେଗ୍ ।

ତା' ହାତରନ୍ଧା ଚିକେନ୍ ଟେଷ୍ଟରୁ ଜାଣିଲି ଏ ଖାଇବା ପିଇବା ଘରର ଲୋକ ।

– 'ଜାଣିଛନ୍ତି ଏବେ ମୋର ଘର ନାହିଁ । ପରିବାର ନାହିଁ । ମୁଁ ଏକା ।'

ସେ ପ୍ରଥମ ପେଗ୍ ନେଇସାରି ସିଗ୍ରେଟ୍‌ରୁ ଦି କଳ ଧୂଆଁ ଛାଡ଼ି ଏ କଥା ମୋତେ କହିଲା । ନିଜ ଭିତର କଥା ଆଉ କାହା ଆଗରେ କହି ଉଶ୍ୱାସ ହେବାକୁ ସେ ହୁକୁହୁକୁ ହେଉଥିଲା । ସେ ରାତିରେ ତା' ପାଖରେ ଜୁଟିଥିଲି ମୁଁ ।

ସେ ତା'ର ଚିକେନ୍‌ରେ ହାତ ମାରି ନଥିଲା । ରୁଟି ଫଡାଏ ଖାଇ ତିଆରି କରିଛି ପୁଣି ଗୋଟେ ବଡ଼ ପେଗ୍ । ତା' ହାବଭାବ ଦେଖି ପ୍ରମାଦ ଗଣିଲି । ସେ ଯେତିକି ଆଣିଛି 'ଏଠି ପିଉ, ବାନ୍ତି କରୁ' ହାଲ୍ଲାଚୁଲ୍ଲା ନ କରୁ ।

ନିଶା ଖାଇଲା ପରେ ଖୁବ୍ କମ୍ ଲୋକ କାନ୍ଦନ୍ତି । ସେ ସେୟା କଲା । ନିଜ ଭିତର କଷ୍ଟଟି ପାଇଁ ତା' ଆଖି ଲାଲ୍ ପଡ଼ି ଯେପରି ବାହାରକୁ ବାହାରି ଆସିଲା । ମଳିଚ୍ଛା ଲ୍ୟାମ୍ପ୍ ଆଲୁଅରେ ତା' ରକ୍ତ ଚଅଚଅ ଡୋଳାରେ ଟଳମଳ ଲୁହ । ଓଠ ଥରା ଆତୁରତା । ସେ ଚେଷ୍ଟା କରୁଛି ସବୁ କିଛି କହିଦେବ । କହିପାରୁ ନଥିଲା କିଛି । କଇଁ କଇଁ ହୋଇ କାନ୍ଦିଲା ଶେଷକୁ । କି ଛେଉଣ୍ଡିଆ କାନ୍ଦଣାର କୋହ !

ମୁଁ ମୋ ପାପୁଲି ପିଠିରେ ପୋଛିଦେଲି ତା' ଲୁହ । କହିଲି– 'ଚିକେନ୍‌ରେ ହାତ ମାରିଲ ନାହିଁ ଯେ ?'

ହଠାତ୍ ସତର୍କ ହେଲା ପରି ବଦଳାଇ ଦେଲା ନିଜକୁ । ଆଖି ପୋଛି ପାଛି କଠିନ ହେଲା । ପୁଣି ଗୋଟେ ପେଗ୍ ତରବରରେ ଢୋକି ଚିକେନ୍ କଡ଼ମଡ଼ ଚୋବେଇଲା ।

– 'ଦେଖନ୍ତୁ । ଯେଉଁମାନେ କାଲି ପାଇଁ ଆଶା କରିଥିଲେ, ସେମାନେ ଆଜି କେଉଁଠି ? ମୁଁ କେମିତି ଠାକି ବଂଚି ରହିଗଲି । ନହେଲେ ମୁଁ ଥାନ୍ତି ନା, ଆପଣଙ୍କ ପାଖରେ ଆଜି ରାତିରେ ବସି ଏ ଖିଆପିଆ କରୁଥାନ୍ତି ?

ମୁଁ ତା' ଦଦରା ଛାତିରେ ଆହୁରି ଟିକେ କଥାର ମଲମ୍ ମାରିଦେଲି,

–'କାହିଁକି ସେଗୁଡ଼ା ମନେ ପକାଉଛ ।'

–'ମନେ ପକାଉ ନାହିଁ । ମନେ ପଡ଼ି ଯାଉଛି ।'

ସେ କହିଲା । ସେ ତା'ର ଶେଷ ପେଗ୍‌ଟି ସାରି ଚିକେନ୍ ରୁଟି ଡାଲ୍‌ମା ସବୁକୁ ଶେଷ କରିସାରିଲା । ପେଟ ଭରିଗଲା ପରେ ତା' ଭିତରୁ ଉକ୍‌କି ଆସିଲା ସ୍ୱାଭିମାନ ।

– ଦେଖନ୍ତୁ ! ସେ ଘଟଣା ପରେ । ମୋର ସମସ୍ତେ ଭାସିଭୁସା ଗଲେ । ଏ ଦୁନିଆରେ ଏକା ହୋଇ ମୁଁ ରହିଗଲି । ମୋର ଏବେ ଗୋଟିଏ କଥା-ଖାଅ, ପିଅ, କାଲି ପାଇଁ ଚିନ୍ତା ନାହିଁ । ଦେଖନ୍ତୁ, ମୋର ଚାରିଜଣ ଭାସିଗଲେ । ବାପା, ମାଆ, ସାନଭାଇ, ସାନ ଭଉଣୀ । ମୋ ବାହାଘର ହୋଇଥାନ୍ତା । ସେ ପାଇଁ ଧାନ-ଚାଉଳ, ଚୂଡ଼ା-ମୁଢ଼ି, ଆମର ହଳେ ବଳଦ, ଗର୍ଭିଣୀ ଗାଇଟେ, ସମସ୍ତେ ଗଲେ । ମୋ ଲୋକଙ୍କ ମୁଣ୍ଡପିଛା କ୍ଷତିପୂରଣ ମିଶି ମୋତେ ମିଳିଲା ଚାରିଲକ୍ଷ । ସେ ଟଙ୍କା କେଉଁ ହାତକୁ ଆସିଲା ? ପାସ୍ ବହିରେ ଜମା ରହିଲା । ବ୍ୟାଙ୍କ୍‌ରୁ ଯେଉଁ ତେଇଶ, ଚବିଶ ଶହ ଟଙ୍କା ସୁଧ ମିଳୁଛି, ଚଳିଯାଉଛି ।

– 'ଆଉ ଏ ମୋଟର ସାଇକେଲ ?'

– ମୋ ନାଁରେ ଯେଉଁ ଡିପୋଜିଟ୍ ଟଙ୍କା । ସେଥିରୁ ପଚାଶ ହଜାର ଟଙ୍କା ଲୋନ୍ ଉଠେଇ ମୁଁ ଏ ଗାଡ଼ିଟା କିଣିଛି । ଗାଡ଼ିଟିଏ ନଥିଲେ ବ୍ଲକ୍, ତହସିଲ, ନେତା- ଏମିତି ଦୌଡ଼ାଦୌଡ଼ି କାମ ଅଣ୍ଡାଳି ହେବନି । ମୋର ସବୁ ଯାଇଛି ବୋଲି ମୁଁ କ'ଣ ଗାଡ଼ି ଚଢ଼ି ପାରିବି ନାହିଁ ?

ଓଲଟି ସେ ମୋତେ ମଗଜବିନ୍ଧା କଥା କହିଲା । ମୁଁ ଢେର ରାତିକୁ ଡରୁଥିଲି ଡରୁଥିଲି ତା'ର ଉତ୍ତେଜନାର ଉଚ୍ଚା ସ୍ୱରକୁ ।

– 'ହଉ । ଏବେ ଲ୍ୟାମ୍ପ୍ ଲିଭେଇ ଆମେ ଶୋଇଯିବା ।'

କହିଲି । ତା' ବିଛଣା ପାଇଁ ଆଉ ଗୋଟେ ସତରଞ୍ଜି ବିଛାଇଲି । ମୋ ଜାମାପଟା ଗାମୁଛା, କାନବ୍ୟାଗ୍‌ରେ ଭରି ତିଆରି କଲି ତା' ପାଇଁ ତକିଆ ।

ସେ ଚିତ୍ ହୋଇ ଶୋଇଥାଏ । ନିଶାରେ ବାଉଳି ଚାଉଳି ହୋଇ ଢେର୍ କଥା ମନେ ପକାଉଥାଏ । ଆଗରୁ ବାତ୍ୟା ସେଠି ଛିନ୍‌ଛତ୍ର କରିଯାଉଥିଲା । ରାତିର ପବନରେ ଖେଳି ବୁଲୁଥିଲା ପିଛିଲା ପବନର ସିଁ ସିଁ ସ୍ୱର । ମୁଁ ମୋର ନିଦରେ ଶୋଇଗଲି ।

ତା'ପର ରାତି ନ'ଟାରେ ମୋ ସ୍କୁଲ୍ ପାଖରେ ତା' ଗାଡ଼ି ଅଟକିଲା । ସେ ଫିନ୍‌ଫିନ୍ ଦିଶୁଥିଲା । ଫୁର୍ତ୍ତି ଥିଲା । ଚିକେନ୍ ନୁହେଁ, ପାଉଁରୋଟି, ମିକ୍ସର ଧରି ଆସିଥିଲା ।

– 'ଏସବୁ ଆଣିବାର କ'ଣ ଦରକାର ଥିଲା ? ମୁଁ ତ ରିଲିଫ୍‌ରେ ଏସବୁ ଦେବା କଥା । ତୁମେ କ'ଣ ମୋ ପାଇଁ ରିଲିଫ୍ ଧରି ଆସିଛ ?'

ମୋ କୋକ୍‌ରେ ସେ ହୋ ହୋଇ ହୋଇ ହସିଲା– 'ଆପଣ ଯେଉଁ କଥା କୁହନ୍ତି ? ଦେଖନ୍ତୁ, ଆପଣ ତ ଏଠି ଭାତ ଡାଲ୍‌ମାରେ ଚଳେଇ ନେଉଛନ୍ତି । ଜଳଖିଆ ଟିକେ ପାଉନାହାନ୍ତି । ବଜାର ଯାଇଥିଲି । ମିକ୍ସର ପାଉଁରୋଟି ଆଣିଛି । ଜଳଖିଆ ବେଳେ ବେଳେ ଖାଇବେ । ଆଉ କ'ଣ ?

ମୁଁ ତା'ର ଆଗ୍ରହ ଓ ଭଲ ପାଇବା ଆଡ଼େ ଚାହିଁଲି । ସତରେ ଲୋକଟାର ଭଙ୍ଗାତୁଟା ଭିତରେ ସବୁ କିଛି ଥିଲା । କେବଳ ଫୁଟ୍‌କି ମାରି ମୋର ବାଇକ୍ ଧରି ଘୂରୁଥିଲା । ସେ ମୋତେ ଯେଉଁ କଥା କହିବା ପାଇଁ ମିକ୍ସର ପାଉଁରୋଟିର ବାହାନାରେ ଆସିଥିଲା । ସେହି କଥାଟା କହିଲା,

–'କାଲି ଯେଉଁ ମୁଁ ଚିକେନ୍ ଧରି ଆସିଲି । ଏଠି ପିଆପିଇ କଲି । ନିଶା ଜୋର୍‌ରେ ଆପଣଙ୍କୁ କ'ଣ ନାହିଁ କ'ଣ ସବୁ କହିଲି ।'

ମୁଁ ତା' ପିଠିରେ ହାତ ମାରିଲି– 'ସବୁ ଚଳିବ । ନୂଆ ନୂଆ ସାଙ୍ଗସୁଙ୍ଗା ଜମିଲେ ଏସବୁ ହୁଏ । ଆଚ୍ଛା ! ତୁମେ ତ କହୁଥିଲ, ତୁମ ବାହାଘର ଠିକ୍ ହୋଇଥିଲା ?'

ମୁଁ ତା' ଆଡ଼କୁ ତା'କୁ ନେଇଗଲି ।

– 'ହୋଇଥିଲା, ମୋ ବାହାଘର ଠିକ୍ ହୋଇଥିଲା । ଆମ ଘର ଲୋକେ ଦେଖି ଆସିଥିଲେ । ମୁଁ ଓ ମୋ ସାଙ୍ଗମାନେ ସେ ଝିଅକୁ ଦେଖି ପସନ୍ଦ କରିଥିଲୁ । ସବୁ ଠିକ୍‌ଠାକ୍ ସରିଥିଲା । ଲଗ୍ନ ଖୋଲିବାକୁ ମାସେ ଥିଲା ବାହାଘର । ଏ ଘଟଣା ଘଟିଗଲା ।

– 'ସେ ଝିଅଘର କ'ଣ ଏବେ ତୁମକୁ ତାଙ୍କ ଝିଅକୁ ବାହା ଦେବାକୁ ରାଜି ହେବେ ?'

ମୁଁ ଆଗ୍ରହରେ ପଚାରିଲି । ସେ ମୋ ଆଗ୍ରହ ଉପରେ ପାଣି ଛାଟି ଦେଲା ।

– 'ସେମାନେ କ'ଣ ଆଉ ଅଛନ୍ତି ! ମୋ ପରିବାରରୁ ମୁଁ ସିନା ଏକା ରହିଗଲି । ତାଙ୍କ ପରିବାର ସହ ସେ ଝିଅ ମଧ୍ୟ ଯାଇଛି । ମୋର କିନ୍ତୁ ପସନ୍ଦ ହୋଇଥିଲା ସେ ଝିଅ । ମେଟ୍ରିକ୍ ପାଶ୍ କରିଥିଲା, ଘର କାମଦାମ ସବୁ ଜାଣିଥିଲା । ମୋ ପାଇଁ ସେ ଝିଅ ଠିକ୍ ଥିଲା । ସେ କେଉଁ ରହିପାରିଲା ?'

ତା' କଥାର ତୋଡରୁ ଜାଣିଲି ଭାସି ଯାଇଥିବା ସେ ଝିଅଟି କଥା ସେ ଭୁଲି ନାହିଁ । ମୁଁ ତାକୁ ଭୁଲେଇବା ପାଇଁ କହିଲି,

– ଯିଏ ଗଲା, ଗଲା । ଏବେ ତୁମେ ବାହା ହେଲେ ଝିଅ କେଉଁ ନ ମିଳିବେ ?'

ଏସବୁ ଝିଅ, ବାହାଘର, ସ୍ୱପ୍ନଫପ୍ନ କଥାରେ ଆମେ ଦୁହେଁ ଉଷୁମ୍ ହୋଇଉଠୁଥିଲୁ । ଶେଷକୁ ପ୍ରସ୍ତାବଟେ ଦେଲି– 'ଆଜି ତୁମେ ଏଇଠି ଖାଇ କରି ଯିବ ।'

ସେ ନା କଲା । କହିଲି– "ଯେତିକି ରୋଷେଇ ହୋଇଛି ଦୁଇଜଣଙ୍କ ପାଇଁ ଚଳିଯିବ ।"

ସେ ହାତ ଧୋଇବାକୁ ଉଠିଲା । ମୁଁ ଭାତ ବାଢ଼ିଲି । ତା' ପାଇଁ କଂଚାଲଙ୍କା, ଲେମ୍ବୁ, ଲୁଣ ଯୋଗେଇ ଦେଲି । ସାରା ଦିନ ସେ କେଉଁଠୁ କେଉଁଠୁ ଘୂରାଫେରା କରି ଆସିଥିଲା । ତାକୁ ଆକଟିବା ପାଇଁ କେହି ନାହାନ୍ତି । କେବଳ ପେଟ ଭରିବାକୁ ଦିନବେଳା କେଉଁଠି ଖାଇଥିଲା କି ନାହିଁ । ଭାତ ଡାଲ୍‌ମା ଆଗ୍ରହରେ ଖାଇଲା ।

ଗଲାବେଳେ କହିଲି– 'ତୁମ ପାଇଁ ଝିଅଟେ ଠିକ୍ କରୁନା ।'

–'ଆମର ଏଠି ଆଗ ଅବସ୍ଥା ବଦଳି ନାହିଁ । ଅନ୍ୟ ଜାଗାରୁ କେଉଁ ଲୋକ ଏଠିକା ଲୋକକୁ ଝିଅ ଦେବ ? ଦେଖାଯାଉ । ମୁଁ ଆଗେ ନିଜ ଗୋଡ଼ରେ ଛିଡ଼ା ହୁଏ । ବାହାଘର ହୋଇଥିଲେ ଯେଉଁ ବାପାମାଆ, ଭାଇଭଉଣୀ ଖୁସି ହୋଇଥାନ୍ତେ । ସେମାନେ ତ ରହିଲେନି ଆଉ ବାହାଘର କେଉଁ ଖୁସିରେ ?'

ସେ ମୋତେ ଚୁପ୍ କରେଇ ଗାଡ଼ି ଷ୍ଟାର୍ଟ କଲା । ସେ ଗଲାପରେ ଅନେକ ରାତିଯାଏ ନିଦ ହେଲା ନାହିଁ । କାହିଁକି ଏ ଲୋକଟାକୁ ନେଇ ମୁଁ ଏଠି ପଡ଼ି ରହିଛି ? ଏହି ଗୋଟିଏ ଲୋକ ସହିତ ମିଶୁଛି ସିନା, ଏହାରି ଭିତରୁ ଏଠି ବଂଚିରହିଥିବା ଲୋକଙ୍କ କଷ୍ଟତକ ଶୁଣୁଛି ।

ତଥାପି ମୁଁ ତା'କୁ ସଂଧାବେଳେ, ରାତି ଅନେକ ଯାଏଁ ଅପେକ୍ଷା କରୁଥିଲି । କେତେବେଳେ ଲାଗ୍‌ଲାଗ୍ ଦି ଚାରିଦିନ ଆସିବ । କେବେ କେବେ ତିନି ଚାରିଦିନ ତା'ର ଦେଖା ଦର୍ଶନ ନଥିବ ।

ଥରେ ତ ସକାଳ ଆଠଟା ସୁଦ୍ଧା ସେ ମୋ ପାଖରେ ହାଜର୍ ।

ସ୍କୁଲ୍‌ପିଲା ଜଣେ ଜଣେ ନ'ଟା ସାଢ଼େ ନ'ଟାରେ ପହଞ୍ଚିଯିବେ । ମୁଁ ତରତରରେ ମୋ ବେଡିଂବିସ୍ତର କାନ୍ଥକୋଣରେ ରଖି ତା ଉପରେ ପଲିଥିନ୍ ତମ୍ବୁଟିଏ ଘୋଡ଼େଇ ଦେଉଥିଲି ।

ସେ ଜିଗର ଲଗାଇଲା– 'ବସନ୍ତୁ ମୋ ଗାଡ଼ିରେ, ଏବେ ତ ସ୍କୁଲ୍ ହେବ । ଏଠି କ'ଣ କରିବେ ? ଆସନ୍ତୁ, ବୁଲାବୁଲି କରିବା । ମୋର ଜଣେ ଦି'ଜଣଙ୍କ ପାଖରେ ଟିକେ କାମ ଅଛି ଭେଟିବା, ସେଠୁ ଫେରି ଅଳ୍ପ ସମୟ ପାଇଁ ବ୍ଲକ୍ ଅଫିସ୍ ଯିବା । ସେଠୁ ହୋଟେଲ୍‌ରେ ଖାଇ ସଂଧାବେଳେ ମୁଁ ଆପଣଙ୍କୁ ଏଠି ଛାଡ଼ି ଦେବି ।'

ମୁଁ ତା' ଏତେ ବଡ଼ ପ୍ରୋଗ୍ରାମକୁ ଭାଂଗିଦେଲି,

–' ଦେଖ । ମୋର ଏଠି କାହା ପାଖକୁ କି କେଉଁଠିକି ଯିବାର ନାହିଁ । ତୁମେ ତୁମ କାମ ବନ୍ଦ କରି କାହିଁକି ମୋତେ ଧରି ଅଯଥାରେ ବୁଲିବ ?'

ସେ ତା' ଗାଡ଼ିରେ ବସେଇ ବୁଲେଇବାର ଆଗ୍ରହ ନେଇ ଆସିଥିଲା । ମୋତେ ଯେଉଁଠିକି ହେଲେ ନେବ, ବସେଇବ ତା' ଗାଡ଼ିରେ । ନଛୋଡ଼ବନ୍ଧା ହୋଇ ପ୍ରସ୍ତାବ ଦେଲା ।

– 'ହଉ । କୁଆଡ଼େ ନ ଯିବେ ଯଦି ନ ଯିବା । ଆସନ୍ତୁ ଦେଖି ଆସିବେ ମୋ ଘର । ସେ ଘର ମୋତେ ରିଲିଫ୍‌ରେ ମିଳିଛି ବୋଲି ଯଦି ଆପଣ ନ ଯାଆନ୍ତି ସେ ଅଲଗା କଥା ।'

ତା' ଅଭିମାନର ତାକତ୍‌ରେ ଯାଇ ମୋଟର ସାଇକେଲ୍ ପଛ ସିଟ୍‌ରେ ବସିଲି ।

ସେ ତାଲା ଖୋଲି ତା'ର ଗୋଟେ ବଖୁରିଆ ଘର ଭିତରକୁ ନେଲା ।

ଗୋଟେ ଝର୍କା ଥିଲା । ଖୋଲି ଦେଲା । ପଟା ଖଟରେ ମଇଳା ବେଡ୍‌ସିଟ୍ ଉପରେ ଲୋଟାକୋଟା ଗଂଜି, ଗାମୁଛା ଲୁଂଗି ପଡ଼ିଥିଲା । ଗୋଡ଼ ପାଖକୁ ମୋଲାୟମ ଦାମିକା କଂବଳଟିଏ ଚଉଭାଙ୍ଗ ହୋଇ ରହିଥିଲା । ଗୋଟେ କୋଣରେ ଗଦା ହୋଇଥିଲା କେଉଁ ଏନ୍.ଜି.ଓ. ବାଲାଙ୍କ ପୋଷ୍ଟର, ବ୍ୟାନରର ବ୍ୟାଣ୍ଡଲ୍ । ବ୍ୟବହାର ହୋଇ ନଥିବା ଔଷଧ ଶିଶି ସବୁ । ଦୁଇ ତିନିଟା ପଲିଥିନ୍ ତମ୍ବୁ ଭାଙ୍ଗ ହୋଇ ରହିଥିଲା । ଧୂଳି ଜମୁଥିଲା । ଅଳଂଧୁ ଲାଗିଥିବା ଷ୍ଟୋଭ୍ । ପାଣି ରଖିବା ପାଇଁ ଚମତ୍କାର ଷ୍ଟିଲ୍ ଗରା । ବାସନ କୁସନ ।

ମୋତେ ତା' ପଟା ପିଟା ଖଟରେ ବସେଇ କହିଲା,

—'କେୟାର ଟୁଡେ' ପାଇନାନ୍ସରେ 'ଆକ୍ସନ ଏଡ' ବାଲା ତିଆରି କରିଛି ଏ ଘର । ଏ ଘର ମୋତେ କ'ଣ ମିଳିଥାନ୍ତା ! ଏନ୍.ଜି.ଓ. ଏଜେନ୍ସିବାଲାଙ୍କ ପାଖରେ ପାଟିତୁଣ୍ଡ କରି ଏ ଘର ପାଇଛି । ଏ ଯେଉଁ ଦେଖୁଛନ୍ତି ବାସନ କୁସନ, କମ୍ବଳ, ପଲିଥିନ୍, ଔଷଧ-ସବୁ ମିଳିଛି ରିଲିଫ୍‌ରେ । ଆମେ ବସିଥିବା ଏ ଖଟ ଖଣ୍ଡକ କେବଳ ଏବେ ମୁଁ କିଣିଛି ।

ତା' କଥାବାର୍ତ୍ତାରେ ଭରି ରହିଥିଲା ମନ ଖୋଲା ଭାବ । ସେହି ଛେଉଣ୍ଡିଆ ଗଉଁ ।

ତା' ଅଳଂଧୁଲଗା ରୋଷେଇ ସାମାନ୍ ଦେଖି ପ୍ରସ୍ତାବଟେ ଦେଲି,

—ଆଜି ତୁମ ଘରେ ପ୍ରଥମେ ଗୋଟେ ରୋଷେଇ ଷ୍ଟାର୍ଟ ହେଉ । ସାଙ୍ଗ ହୋଇ ତୁମ ଘରେ ଖାଇବା ।'

ସେ ଖୁସିରେ ହୁଲୁକୁମତା ହେଲା । ମୁଁ ହାଁ ହାଁ କହୁ କହୁ ସେ ଗାଡ଼ି ଷ୍ଟାର୍ଟ କଲା । ଝୁଲା ଧରି ବାହାରିଗଲା ।

ସବୁ ତ ତା'ର ପାଣି ପବନରେ ଯାଇଥିଲା । ଯାହା ଘଣକରଣା ଠୁଳ କରିଛି ରିଲିଫ୍‌ରେ । ତା'ର ହେପାଜତ, ପରିଷ୍କାର ପରିଚ୍ଛନ୍ନ, ସଜଡ଼ା ସଜଡ଼ି କରି ରଖିବା କାମରେ ମୁଁ ଲାଗିଗଲି ।

ଛୋଟ ବଜାରରୁ ସେ ସବୁ ସଜାଡ଼ି ଧରି ଫେରିଲା । ଷ୍ଟୋଭ୍ ପାଇଁ କିରୋସିନି । ରୋଷେଇ ପାଇଁ ତେଜରାତି, ପରିବାପତ୍ର । ପଲିଥିନ୍ ଭରା ଗାଡ଼ିଆଧରା ଦେଶୀ ମାଛ ।

ଦୁଇଜଣଙ୍କ ରୋଷେଇବାସ, ଖିଆପିଆ ତା' ଘରେ ବେଶ୍ ଜମିଲା । ସଂଧ୍ୟାବେଳେ ମୋତେ ଆଣି ସ୍କୁଲ୍‌ରେ ଛାଡ଼ି ଦେଲା । ଫେରିଲାବେଳେ କହିଲା—

'ଆପଣଙ୍କ ସହ ଦିନବେଳା ମୋ ଘରେ ଏ ଯେଉଁ ରୋଷେଇବାସ, ଖିଆପିଆ ମୋତେ ପରିବାରରେ ଥିବା ଭଳି ଲାଗିଲା । ରାତିରେ ମୁଁ କ'ଣ ଭଲରେ ଶୋଇ ପାରିବି ? ସେମାନଙ୍କ ମୁହଁ ମୋ ଆଖିରେ ଖାଲି ଭାସିବ ।

ମୁଁ ତା' ଛାତି କଷ୍ଟର ବାମ୍ଫ ବାରି ପାରିଲି । ତା' ପାଇଁ କ'ଣ ବା ଉପଶମ ଅଛି ମୋ କଥାର ? – 'ସବୁ ଠିକ୍ ହୋଇଯିବ ।' ଏତେକ କେବଳ ମୁହଁ ଅନ୍ଧାରରେ ତାକୁ କହିଲି ।

ଚାରି ପାଞ୍ଚଦିନ ଧରି ତା'ର ଦେଖା ମିଳିଲା ନାହିଁ । ଯାଉ ଯୁଆଡ଼େ ବୁଲୁ । ଯାହା କରୁ । ଗାର୍ଜନ ନ ଥିବା ଘରର ପିଲା ଏୟା ହେବ ଇ । ମୁଁ ତା' ଉପରେ କମ୍ ବିରକ୍ତ ହେଉଥିଲି । ବେଶୀ ଅପେକ୍ଷା କରୁଥିଲି ।

ଦିନେ ରାତି ଦଶଟା ସାଢ଼େ ଦଶଟା ହେବ । ସ୍କୁଲ୍ ସାମ୍ନାରେ ତା' ଗାଡ଼ି ରହିବାର ଶବ୍ଦ ଶୁଭିଲା । ସେତେବେଳେ ମୁଁ ଖାଇସାରି ବିଛଣା ସଜାଡୁ ଥାଏ । ସେ ଆସିଲା, ମୋ ବିଛାରେ ବସିଲା, ତା' ମୁହଁ ଫଣ୍ ଫଣ୍ । ନିଶାରେ ଥିଲା ବୋଲି ତା' ଡୋଳା ବାହାରି ପଡ଼ିଥିଲା ପଦାକୁ । ସେ ଗୁମ୍ ଥିଲା ।

ମୁଁ ପଚାରିଲି– 'କ'ଣ ଆଜି ରାତିରେ ଘରକୁ ଫେରି ପାରିବଟି ?'

– 'ଛାଡ଼ନ୍ତୁ । ସେ ଘର ଫର ଫାଲ୍‌ତୁ କଥା ଛାଡ଼ନ୍ତୁ । କୁହନ୍ତୁ, ଆପଣ କିଏ ? କେଉଁ ଉଦ୍ଦେଶ୍ୟରେ ଏଠି କ୍ୟାମ୍ପ୍ କରି ପଡ଼ିଛନ୍ତି ? ଏ ସ୍କୁଲ୍‌ବାଲା ଆମ ଏରିୟାରେ ରହିବାକୁ କିପରି ପରମିଶନ୍ ଦେଇଛନ୍ତି ?

ତା' ଲୋକାଲ୍ ନେତାଳିଆ ସ୍ୱରରେ ଭରି ରହିଥିଲା ଛି ଛା' ଚ୍ୟାଲେଞ୍ଜ୍ । ସେ ଅଭିଯୋଗ ନେଇ ଆସିଥିଲା ବୋଲି ଶାନ୍ତ ହେବାକୁ ପ୍ରସ୍ତୁତ ନଥିଲା ।

– 'କ'ଣ କହିବାକୁ ଚାହଁ ତୁମେ ? ସିଧାସିଧା କୁହ ।'

ମୁଁ ଯୁଦ୍ଧ କରିବାର ସ୍ୱରକୁ ତେଜ୍ କଲି । ସେ ଦବିଲା ।

– ଆପଣ ଏଠିକା 'ମମତା ଗୃହ' ଆଡ଼େ ଯାଇଛନ୍ତି କାହିଁକି ? ସେଠି କୁଆଡ଼େ ଦିନସାରା ଆପଣଙ୍କ ବସାଉଠା, ହସଖୁସି, ଖିଆପିଆ, ଆପଣଙ୍କ ଉଦ୍ଦେଶ୍ୟ କ'ଣ ?

ତା' ଉତ୍ତେଜନା ଦେଖି ମୋ ନାକ ଆଗରେ ହସ ଚାଲିଆସିଲା– 'କିଏ ଏସବୁ କଥା ତୁମକୁ କହିଲା ?'

–'ଯିଏ କହୁ । କୁହନ୍ତୁ ଦିନବେଳା ଆପଣ 'ମମତା ଗୃହ'ରେ ବସାଉଠା କରୁଛନ୍ତି କି ନାହିଁ ?'

–'ହଁ ମୁଁ ଯାଉଛି ।'

ମୁଁ ମାନିଲି । ଯଦି ସତକଥାଟା ସନ୍ଦେହ ହୋଇଯାଉଛି, କଥାଟା ଯେତେଶୀଘ୍ର ପରିଷ୍କାର ହୋଇଯିବା ଦର୍କାର । ସେ ମୋ ମୁହଁ ସାମ୍ନାରେ ଛିଡ଼ା ହେଲା । ଫିଙ୍ଗିଲ ତୀର,

– 'ସେଠି କେତେଟା ଝିଅଙ୍କୁ ଚାକିରି କରେଇ ଦେବି, ବାହା କରେଇ ଦେବି କହି ଫସେଇଲେଣି ? ଆମ ଝିଅବୋହୂଙ୍କୁ ଏଠୁ ଫୁସୁଲେଇ ନେବେ । ଭାଡୁଆଙ୍କୁ ବିକି ଦେବେ । ଏଇଥି ପାଇଁ ଆସିଛନ୍ତି ଏଠିକି ? ମୁଁ ଜାଣେ ଆପଣ ରିପୋର୍ଟର ନୁହନ୍ତି କି ଏଜେନ୍ସିବାଲା ନୁହନ୍ତି । ଦଲାଲ୍ ।'

ଏଇ କ'ଣ ସେହି ? ଯିଏ ପାଉଁରୋଟି, ମିକ୍ସର ପ୍ୟାକେଟ୍ ଧରି ଆସିଥିଲା । ତା' ଘରକୁ ଡାକି ନେଇ ଘରୋଇ ଭୋଜିଭାତରେ ଖୁସି ହୋଇଥିଲା ?

ମୁଁ ତା' କାନ୍ଧ ଧରି ଜୋର୍ କରି ମୋ ବିଛଣାରେ ବସେଇ ଦେଲି । ଚଢ଼ା ସ୍ୱରରେ କହିଲି– 'ତୁମକୁ ଜୋର୍‌ରେ ନିଶା ହୋଇଯାଇଛି । ଏଇଠି ଶୋଇପଡ଼ ସକାଳେ ତୁମ ସହିତ କଥାବାର୍ତ୍ତା ।'

ସେ ମୋ ବିଛଣା ଉପରେ ବସି ବାଉଳି ଚାଉଳି ହେଲା ।

– 'ନିଶା ହୋଇଛି । ହେଉ । କେଉଁ ରିଲିଫ୍ ପାର୍ଟି ଏଠିକି ରିଲିଫ୍‌ରେ ଆମକୁ ନିଶା ଦେଇଛନ୍ତି ? ଆପଣ ଦେଇଛନ୍ତି ? ମୋ ନିଜ ଲୋକଙ୍କ କ୍ଷତିପୂରଣ ଟଙ୍କା ସୁଧରେ ମୁଁ ପିଉଛି ।'

ସେ କହୁ କହୁ ବିଛଣାରେ ଶୋଇଲା । ତଥାପି ତା'ର ବକବାସ୍ ଜାରି ରଖିଥିଲା– ମୋ' ସାଙ୍ଗସାଥୀ ସହିତ ଆପଣ ମିଶୁ ନାହାନ୍ତି । ଏଠିକା ଲୋକଙ୍କ ସହ ଆପଣଙ୍କ ସଂପର୍କ ନାହିଁ, କେବଳ ମୋ ସହିତ ମିଶୁଛନ୍ତି କାହିଁକି ? ଏଠୁ ଝିଅବୋହୂ ଧରି ଆପଣ ଚମ୍ପଟ୍ ମାରିବେ । ଶେଷକୁ ଲୋକେ ମୋତେ ଛେଚିବେ । ଥାନାରେ ଦେବେ । ଏୟା ଆପଣଙ୍କ ମତଲବ୍ ?'

ଶୁଣାଶୁଣି କଥାରେ ସେ ଗର୍ଜୁ ଥିଲା । ନିଶା ଖାଇ କଷ୍ଟ ଭୋଗୁ ଥିଲା । ସେ କହି କହି କ୍ଳାନ୍ତ ହୋଇ ଶୋଇପଡ଼ିବା ଯାଏ ମୁଁ ଚୁପ୍ ରହିଲି । 'ଦୁନିଆରେ ଭଦ୍ରଲୋକଙ୍କୁ ବିଶ୍ୱାସ ନାହିଁ । ଦୁନିଆଟା ବଡ଼ ହାରାମୀ' –ଏମିତି କୁହାବୋଲା କରି ସେ ଶୋଇଗଲା ।

ସେହି ଖାଁ ଖାଁ ସମୁଦ୍ରତଟ ଜାଗାରେ ରାତିର ପବନ ତା' ଫଟା ଫୁଙ୍ଗୁଳା ପାଦ ଦୁଇଟିକୁ ଥର ଉଠାଉଥିଲା । ମୁଁ ଚଦରଟିଏ ତା' ପାଦରୁ ଅଣ୍ଟାଯାଏ ଘୋଡ଼େଇ ଦେଲି । ମୋ ପାଇଁ ବିଛଣା ତିଆରି କଲି ।

ତହିଁ ପରଦିନ ଭୋର୍ ଭୋର୍ ବନେଇଲି ଦି'କପ୍ କଡ଼ା ଲିକର୍ ଚା' । ବାମ୍ଫଉଠା ନାଲି ଚା ଉପରେ ଚିପୁଡ଼ି ଦେଲି ଦି ଚାରିଟୋପା ଲେମ୍ବୁରସ । ତାକୁ ଉଠାଇଲି । ଅଘଷା ମୁହଁରେ ଚା ପିଇବା ତା' ଅଭ୍ୟାସ । ଶୋଇବା ଭିତରେ ଭୁଲି ଯାଇଥିଲା ଯେପରି ଗତକାଲି ରାତିର ତା'ର ନାଚକୁଦ । ମୋ ହାତରୁ ଚା' କପ୍ ନେଲା ।

ସେ ଚା' ପିଇ ଉଷୁମ ହେଲା । ପଚାରିଲା ସେ ପୁରୁଣା କଥା ।

– 'କୁହନ୍ତୁ ! ଆପଣ 'ମମତା ଗୃହ'କୁ କାହିଁକି ଯାଉଛନ୍ତି ? ସେଠି ଆପଣଙ୍କ କାମ କ'ଣ ?'

– 'ଭାବିଲେ ସେଠି ମୋର କିଛି କାମ ନାହିଁ । ଭାବିଲେ ସେଠି ମୋର କାମ ଯେ ହେବାର ଅଛି । ଏଠିକି ପହଞ୍ଚି ପ୍ରଥମେ ତୁମ ସହିତ ସଂପର୍କ ହେଲା । ସେହି ସଂପର୍କର ସୂତ୍ର ଧରି ସେଠିକି ମୋର ଯିବା ଆସିବା । ମୁଁ ଚାହେଁ ଆଜି ତୁମେ ବି ମୋ ସହିତ ସେଠିକି ଚାଲ । କ'ଣ କହୁଛ ?

ମୁଁ ଆଗ୍ରହରେ ଡାକିଲି । ସେ କୁହୁଡ଼ି ଭିତରେ ରହି ରାଜି ହୋଇଗଲା ।

– 'ହଉ ଚାଲନ୍ତୁ । ଯିବା ସେଠିକି ।'

ମୋ ରହୁଥିବା ସ୍କୁଲ୍ ଘରଠାରୁ 'ମମତା ଗୃହ' ଚାରି ପାଞ୍ଚ ମିନିଟ୍ ଚାଲି ପହଞ୍ଚି ଯିବାର ବାଟ । ସେ ସେଠି ପହଞ୍ଚି ମୋ ହାବଭାବ ତନଖିବା ପାଇଁ ଗାଡ଼ି ଷ୍ଟାର୍ଟ କରି ଡାକିଲା– ଆସନ୍ତୁ । ବସନ୍ତୁ । ଯିବା ।'

ତା' ନିଜ ଏରିଆରେ ସର୍କାରୀ ଏଡ୍‌ରେ ଗୋଟେ 'ମମତା ଗୃହ' ଚାଲିଛି ସେ ଜାଣିଥିଲା । ହେଲେ ତା' ଭିତରେ ରହିଥିବା ଲୋକମାନଙ୍କ ସଂପର୍କରେ ତା'ର ଧାରଣା ନଥିଲା ।

ଗୋଟେ ନୂଆଣିଆ ପଲିଥିନ୍ ଛାଉଣି ବଖରାରେ ଖୁନ୍ଦିଖାନ୍ଦି ହୋଇ ରହିଥିଲେ ସେମାନେ । ବିଧବା ବୁଢ଼ିଟିଏ । ଅଠର ଉଣେଇଶ ବର୍ଷ ବୟସ, ଆଉ ଜଣେ ତେର ଚଉଦ ବର୍ଷର ଝିଅ । ସାତ ଆଠ ବର୍ଷର ଛେଉଣ୍ଡ ପୁଅଟିଏ । ବାହାଘରର କେଇମାସ ପରେ ଶାଶୁଘର, ବାପଘର ସମସ୍ତଙ୍କୁ ହରେଇ ଅଧା ଓଢ଼ଣା ଢ଼ଂକା, ଓଠ ଛୁଆଁ ଝୁଲା ସୁନା ନାକଫୁଲ ପିନ୍ଧା ଦମୟନ୍ତୀ ।

ସେ ସେହି ଅନାଥିନୀ ସ୍ତ୍ରୀଲୋକଙ୍କ ମେଳରେ ପେଚାଟି ପରି ଚୁପ୍‌ଚାପ୍ ବସିଥିଲା । ସବୁଦିନ ପରି ସ୍ୱାଭାବିକ ମୋ କଥାବାର୍ତ୍ତାରେ ବ୍ୟସ୍ତ ରହିଲି ।

ସେ ବିଧବା ବୁଢ଼ିଟିକୁ ମୁଁ ମାଉସୀ ବୋଲି ଡାକୁଥାଏ । ସେହି ଥିଲା 'ମମତା ଗୃହ'ର ମୁରବୀ । ମାଉସୀ ନିଜର ବ୍ୟକ୍ତିଗତ ଦୁଃଖ କଷ୍ଟ କଥା କହିଲା । ଏଡ୍ ମିଳିବାରେ ବିଳମ୍ବ ଯୋଗୁ ଏ ପିଲାମାନଙ୍କୁ ଚଳେଇବା କଷ୍ଟକର ବୋଲି ଅବଶୋଷ କଲା । ଆଉ ଦିନ କେଇଟା ପରେ ଏଜେନ୍ସି ତାକୁ ନୂଆ ଘରଟେ ଯୋଗେଇ ଦେବ- ସେ ତା'ର ଭବିଷ୍ୟତ ଘରକୁ ଯିବାର ଖୁସିର

କଥା କହିଲା । ମୁଁ ନିଜ ଭବିଷ୍ୟତ ଦେଖିପାରୁ ନଥିବା ଝିଅ ଦୁଇଟି ସହ କଥାବାର୍ତ୍ତା କଲି । ତାଙ୍କ ଉଦାସୀନତା ଭାଂଗିଲି । ଅନାଥ ପିଲାଟିକୁ କହିଲି ସବୁ ଥର ପରି ଗୋଟେ ନୂଆ କାହାଣୀ । ତା' ସ୍କୁଲ୍ ବହିପତ୍ର ସବୁ ଖେଳେଇ ଦେଖିଲି, ତା' ଅକ୍ଷର ସୁନ୍ଦର ହେବ ବୋଲି ଉତ୍ସାହ ଦେଲି ।

ମାଉସୀ ଇସାରାରେ ଦମୟନ୍ତୀ ସୁଜି ଉପମା କରିବାକୁ ଚୁଲି ପାଖକୁ ଉଠିଗଲା । ମୁଁ ତା' ସହିତ ମାଉସୀର ପରିଚୟ କରାଇ ଦେଲି । ମାଉସୀ ତା' କଥା ଶୁଣି ଶୁଖିଲା ନିଶ୍ୱାସ ନେଲା ।

– 'ସମସ୍ତଙ୍କର ଏକା ଦଶାରେ ପୁଅ । ତୁମର ଯେପରି ବାପମାଆ ଭାଇ ଭଉଣୀ ଚାଲିଗଲେ । ତାଙ୍କ ବାପ ସିନା ଆଗରୁ ରୋଗରେ ଯାଇଥିଲେ । ଏଥିରେ ମୋର ଦି'ଟା ଭେଣ୍ଡାପୁଅ, ବାହା ହେବାକୁ ଥିବା ଝିଅ ମୋ କଲିଜା ମାନେ ଚାଲିଗଲେ । ମୁଁ ନ ମରି ବଂଚି ରହିଲି ।

ଏହି ଖିଆପିଆ ବ୍ୟାପାରରେ ସବୁଥର ମୁଁ ମେଳି ଖୋଜେ । ସେ ମାଉସୀ, ସେ ଦୁଇଟି ଝିଅ, ସାନ ପିଲାଟା, ଦମୟନ୍ତୀ– ଆମେ ସମସ୍ତେ ଖଲିପତ୍ର ପକେଇ ସୁଜି ଉପମା ଖାଇଲୁ । ସେଠୁ ଫେରିଲା ପରେ ତଥାପି ତା'ର ଗାର୍ଜନପଣିଆ ଛାଡ଼ିଲା ନାହିଁ । ମାଉସୀକୁ କହିଲା,

–'ଏତେଗୁଡ଼ାଏ ଝିଅ ବୋହୂଙ୍କ ଦାୟିତ୍ୱ ନେଇ ରହିଛ । ଦେଖିବ, କେତେ ଆଉ କେତେ ଉଦ୍ଦେଶ୍ୟ ନେଇ ବାହାରିଆ ଲୋକ ସବୁ ଏଠିକି ଆସୁଛନ୍ତି ।

– 'ମୁଁ ବି ତ ଜଣେ ବାହାରିଆ ଲୋକ । ନା କ'ଣ କହୁଛ ମାଉସୀ ?' ତାକୁ ସାକ୍ଷୀ କରି ମାଉସୀକୁ ପଚାରିଲି ଏକଥା । ମାଉସୀ ନିଜ ଅନ୍ତର କଥା ଖୋଲି କହିଲା– 'ବାହାରିଆ ଲୋକ ଭିତରେ ତୁମ କଥା ବାବୁ ଅଲଗା ।'

ସେ ଗୁମ୍ ଖାଇ ଗାଡ଼ି ଷ୍ଟାର୍ଟ କଲା । ମୋତେ ସ୍କୁଲ୍‌ରେ ଛାଡ଼ିଲା ବେଳକୁ ମୁହଁସଂଜ । ମୁଁ ଅଟକାଇଲି– 'ରୁହ । କୁଆଡ଼େ ଏତେବେଳେ ଯିବ ? ଏଇଠି ଖାଇକରି ଯିବ ।

ସେ ଅଟକିବ କି ନାହିଁ ନିଜ ଭିତରେ କୁଟୁର ମୁଟୁର ହେଉଥିଲା । ମୁଁ ତା'ର ଦୁଇ କାନ୍ଧରେ ହାତ ଭରା ଦେଇ ତା' କଥାକୁହା ଆଖିରେ ମୋ ନଜର ସ୍ଥିର ରଖି କହିଲି,

–'ତୁମ ସାଙ୍ଗସାଥୀଙ୍କ କଥା ଶୁଣି ମୋ ସଂପର୍କରେ ତୁମେ ଅନେକ କଥା ଅନୁମାନ କରିଛ । ସନ୍ଦେହରେ ନିଜେ ବି କଷ୍ଟ ପାଇଛ ।'

ସେ ମୋ ବିଛଣା ଉପରେ ବସିଲା । ସେ ଅନ୍ୟମନସ୍କ ଯେପରି ଥିଲା । ଭାବୁଥିଲା ଅନ୍ୟକଥା । କହିଲା ମଧ୍ୟ ସେହିକଥା,

–'ଆମର ଏଠିକାର ଲୋକଙ୍କ ଅବସ୍ଥା ଏଠି ସବୁଠି ଏମିତି । ଆଚ୍ଛା ! ମାଉସୀ ଯେଉଁ କହୁଥିଲା ଆଉ କିଛିଦିନ ପରେ ଏଜେନ୍ସିଙ୍କଠୁ ଘର ମିଳିଲେ ସେଠୁ ସେ ଚାଲିଯିବ । ସେ ଗଲେ ଏମାନେ ଏଠି ଏକା ଚଳିବେ କିପରି ?

ଭଲ ହେଲା ପ୍ରଥମ ପରି ସେ ନିଜ ଦୁଃଖ ପାଖରୁ ଓହରି ଆସି ସେଠିକାର ଅନ୍ୟମାନଙ୍କ ଭବିଷ୍ୟତ ଉପରେ ଚିନ୍ତା କରୁଥିଲା ।

– 'ମାଉସୀ ତା' ଘରକୁ ଚାଲିଗଲେ ହେବ ଆଉ କ'ଣ ? ଦି'ଟା ଝିଅକୁ କେଉଁ କନ୍ୟାଶ୍ରମକୁ, ପୁଅଟିକୁ ଅନାଥାଶ୍ରମକୁ ସର୍କାର ପଠେଇ ଦେବେ । ଆଉ ଦମୟନ୍ତୀ ପାଇଁ ସେମିତି ଏଜେନ୍ସି ଘରଟେ ଯୋଗେଇ ଦେବ । ଆଉ କ'ଣ ?'

ବେଫିକର ଭାବେ ଜବାବ୍ ଦେଲି । ତାକୁ ଆହୁରି କଥାର ମଞ୍ଜି ଆଡ଼କୁ ନେଇଗଲି ।

– 'ହଁ କହିପାର, ଏତେ କମ୍ ବୟସର ବିଧବା ଦମୟନ୍ତୀ । ଏତେ ବଡ଼ ଦୁନିଆରେ ଏକା ଚଳିବ କିପରି ? ଆଗେ ସିନା ତା' ପାଇଁ ବାପଘର, ଶାଶୁଘର ଥିଲା । ତା'ର ଚିନ୍ତା ନଥିଲା ।

ତା' ପାଇଁ ଅନ୍ୟମାନେ ନିଷ୍ପତ୍ତି ନେଉଥିଲେ । ଏବେ ତା' ପାଇଁ ନିଷ୍ପତ୍ତି କିଏ ନେବ ? ନିଜ ନିଷ୍ପତ୍ତି ତା' ପାଇଁ କେତେ ଠିକ୍ କେତେ ଭୁଲ୍ ହେବ, ସେ କ'ଣ ଜାଣେ ?'

ଦମୟନ୍ତୀ ଉପରେ ତାକୁ ଭାବିବାକୁ ବାଧକରି ରୋଷେଇ ପାଖକୁ ଉଠିଗଲି । ରୋଷେଇ ବେଳେ ବି ଦମୟନ୍ତୀ କଥା ଜାରି ରଖିଲି ।

–'ଦମୟନ୍ତୀ ସିଲେଇ ମେସିନ୍‌ରେ କାମ ଜାଣେ ହାରମୋନିୟମ୍ ତାଳରେ ସେ ଭଲ ଗୀତ ବି ଗାଇପାରେ ।'

ଖାଉଁ ଖାଉଁ ବି ପକେଇଲି ସେହି ଦମୟନ୍ତୀ କଥା ।

–'ଅଢ଼େଇମାସ ବାହାଘର ଜୀବନ କଟାଇଥିଲା । ସେଟା କି ବାହାଘର ନା କି ସଂସାର ? ଏତେବଡ଼ ବିପଦ ତାକୁ ବିଧବା କରିଦେଲା । ଆଉ କିଏ ତାକୁ ବାହା ହେବ ? ତା' ପାଇଁ ଏତେ ବଡ଼ ତ୍ୟାଗ କରିବ ? ଘର ସଂସାର ଭିତରକୁ ପଶିଲେ ଝିଅଟା ହୁଏତ ଆଉଥରେ ବଂଚିଯାନ୍ତା । ନଚେତ୍ ନିଦା ପଥର ହୋଇ ଶେଷକୁ ମରିବ । ଆଉ ତା' ଜୀବନର ସୁଖ କାହିଁ ?

ଗୁମ୍‌ସୁମ୍ ହୋଇ ସେ ଗାଡି ଷ୍ଟାର୍ଟ କଲା । ଗଲାବେଳେ କହିଦେଇଗଲା– 'କାଲି ଆସିବି । କହିବି ଗୋଟେ କଥା ।'

ମୁଁ ଜାଣେ ସେ ନିଶ୍ଚିନ୍ତ ତହିଁ ପରଦିନ ଆସିବ । କହିବ ତାକୁ ଆକ୍ରାନ୍ତ କରୁଥିବା କଥା ।

ସନ୍ଧ୍ୟାବେଳ ଗଡ଼ିଗଲା ପରେ ସେ ଆସିଲା । ଯାଡୁ ସ୍ୟାଡୁ କଥା ଭିତରେ ପକେଇଲା 'ମମତା ଗୃହ' କଥା । ଉଠେଇଲା ଦମୟନ୍ତୀର ପ୍ରସଙ୍ଗ ।

– 'ଦମୟନ୍ତୀର ଆଉ କଥା କ'ଣ ? ସଂସାର ପ୍ରତି ଆଉ ସେ ଝିଅଟାର ଭରସା ନଥିଲା ଭଳି ଲାଗୁଛି । କେମିତି ଚୁପ୍‌ଚାପ୍ ହୋଇଯାଇଛି । ପଥର ଅହଲ୍ୟା ପରି ଚଳୁଛି । ଆଉ କ'ଣ ?

– 'ଯଦି ଦମୟନ୍ତୀକୁ ବାହା ହେବାକୁ କିଏ ରାଜି ହୁଏ ?

–କିଏ ଆଉ ରାଜି ହେବ ?'

ମୁଁ ଛିଗୁଲେଇ ପଚାରିଲି । ସେ ଉତ୍ତେଜନାରେ ଫାଟି ପଡ଼ିଲା ଭଳି କହିଲା,

–'କାହିଁକି ଦମୟନ୍ତୀ ଯଦି ରାଜି ହେବ । ମୁଁ ବି ରାଜି ।'

ନିଜ ପାଇଁ ତା'ର ନିଷ୍ପତ୍ତିରେ ଆପଣା ଛାଏଁ ମୋ ହାତ ତା' ଦୁଇହାତ ପାଖକୁ ଚାଲିଗଲା । ଧୀମା ଧୀମା ସ୍ୱରରେ କହିଲି,

– ପଚାରୁଥିଲ ମୁଁ 'ମମତା ଗୃହ'କୁ ଯାଏ କାହିଁକି ? ମୁଁ ତୁମ ପାଇଁ ଯାଏ । ବାହାହେବାକୁ ଅମଙ୍ଗ ଦମୟନ୍ତୀକୁ ସଂସାର ଆଡ଼କୁ ବହଲେଇ ଆଣିବାକୁ ଯାଏ ।'

ସେ ଉତ୍ସାହିତ ହୋଇଗଲା– 'ତେବେ, ଦମୟନ୍ତୀ କ'ଣ ରାଜି ?'

– ସବୁ ସମ୍ଭବ ।' ମୁଁ ବିଜୟୀ ସ୍ୱରରେ କହିଲି ।

ତା'ପରେ ମୋ କାମ ବଢ଼ିଗଲା । ତା' ବନ୍ଧୁ, ପରାମର୍ଶଦାତା, ହମ୍‌ଦରଦୀ ଲୋକଙ୍କ ସହ ମିଳାମିଶା, କଥାବାର୍ତ୍ତାରେ ମୋର ବାଧା ରହିଲା ନାହିଁ । ତା' ସହିତ ଜାରି ରହିଲା 'ମମତା ଗୃହ'ରେ ମାଉସୀ ସହିତ ପରାମର୍ଶ । ଦମୟନ୍ତୀକୁ ଭରସା ଦେବାର କାମ ।

ରିଲିଫ୍ ପାତର ଅନ୍ତର ରାଜନୀତିରେ ବାହାରିଆ ଲୋକଙ୍କ ଉପରେ ବିଶ୍ୱାସ ହରେଇଥିବା ସେଠିକା ଲୋକଙ୍କ ମନ ଠିକ୍‌ଠାକ୍ କରିବାକୁ ମୋତେ ସପ୍ତାହେ ଦି'ସପ୍ତାହେ ସମୟ ଲାଗିଲା ।

ଶେଷକୁ ଦମୟନ୍ତୀ କହିଲା– 'ଆପଣ ଯେତେବେଳେ କହୁଛନ୍ତି- ଯାହା, ହେବା କଥା ହେଉ । ଖରାପ ହେଲେ ଖରାପ । ଭଲ ହେଲେ ଭଲ ।'

ମୋ ଇଚ୍ଛା ଅନୁସାରେ ସେ ଓ ଦମୟନ୍ତୀ ରାଜି ହେଲେ । ନିଜ ନିଜ ପରିବାରର କ୍ଷତିପୂରଣ ପାଇଁ ମିଳିଥିବା ଟଙ୍କାର ପାସ୍‌ବୁକ୍ ଦି'ଟାକୁ ଗୋଟିଏ ଜଏଣ୍ଟ୍ ଏକାଉଣ୍ଟ୍‌ରେ ରଖାହେଲା ।

ଯେଉଁଦିନ ମାଉସୀ 'ମମତା ଗୃହର ସେ ଦୁଇଟି ଝିଅ, ଅନାଥ ଛୋଟପିଲା ଓ ଦମୟନ୍ତୀକୁ ଥାଟ ପଟାଳି ଧରି ଆସି ମ୍ୟାରେଜ୍ ବ୍ୟୁରୋ ଅଫିସ୍ ପାଖରେ ପହଞ୍ଚିଲା । ତା' ଆଗରୁ ସେଠି ସେ, ତା' ସାଙ୍ଗସାଥୀ ଅପେକ୍ଷା କରିଥିଲେ ।

ବିବାହ ରେଜେଷ୍ଟ୍ରି ଖାତାରେ ସେମାନେ ଦେଲେ ଦି'ଟା ଦସ୍ତଖତ । ଝିଅ ପକ୍ଷରୁ ମାଉସୀ, ପୁଅ ପାଖରୁ ତା' ସାଙ୍ଗସାଥୀ ପଡ଼ିଲେ ସାକ୍ଷୀ । ସବୁ ସରିଲା ସୁରୁଖୁରୁରେ । ସେ ସମସ୍ତଙ୍କ ପାଇଁ ହୋଟେଲ୍‌ରେ ଖାଇବା ବ୍ୟବସ୍ଥା କରିଥିଲା ।

ହେଉ ବରଂ ହୋଟେଲ୍ । ବାହାଘର ଭୋଜି ଭାତର ମଜା ମଧ୍ୟ କମ୍ ମିଳିଲାନି ସେଠି । ତା' ସାଙ୍ଗମାନେ ତା' ସହ ଥଟ୍ଟାମଜା ହୋଇ ଚାଲିଗଲେ । ଦମୟନ୍ତୀକୁ ଧରି ସେ ଗଲା ତା' ଢାଉ ରଂଗଦିଆ ବଖୁରିଆ ନୂଆ ଘର ସଂସାରକୁ ।

ଖୁସିରେ ହେଉ କି କଷ୍ଟରେ ହେଉ ଲୁହ ପୋଛି ପୋଛି ଅନାଥ ଝିଅପୁଅଙ୍କୁ ଆଡ଼େଇ ମାଉସୀ ଚାଲିଲା 'ମମତା ଗୃହ' । ମୁଁ ଫେରିଆସିଲି ମୋ ରହୁଥିବା ସ୍କୁଲ୍‌କୁ ।

ତହିଁ ପରଦିନ ସ୍କୁଲ୍ ଆରମ୍ଭ ହୋଇଯିବା ଆଗରୁ ମୋ ଜିନିଷପତ୍ରକୁ ଠୁଳ କଲି । ସେ ଜାଗା ଛାଡ଼ି ଯିବାର ନିଷ୍ପତ୍ତିରେ ମୋ ବେଡିଂରେ ଡୋର ବାନ୍ଧୁଛି । ସେ ଆସି ପହଞ୍ଚିଲା ।

ଆକାଶରୁ ଖସି ପଡ଼ିଲା ଭଳି ପଚାରିଲା– 'କୁଆଡ଼େ ?'

– 'ଯିବି । ଆଜି ଏଠୁ ଫେରିଯିବି ।'

–'ଯେଉଁ କହୁଥିଲେ ଏଠି କାମ ଅଛି । ସେ କାମ କ'ଣ ଏତେ ଶୀଘ୍ର ସରିଗଲା ?'

ମୋ କାମ ତ ଏଠି ତୁମଠୁ ଆରମ୍ଭ ହୋଇଥିଲା । ଦମୟନ୍ତୀର ବାହାଘର ପରେ ମୋ କାମ ସରିଲା ।

ଅବୁଝା ଅବୋଧ ପରି ସେ ପଚାରିଲା– 'ତଥାପି ?'

–'ତଥାପି ଆଉ କ'ଣ ? ଏଇଥି ପାଇଁ ତ ଏଠିକି ମୁଁ ଆସିଥିଲି ।'



# ଅହଲ୍ୟାର ବାହାଘର

## ଗୌରହରି ଦାସ

ଅହଲ୍ୟା ନଡ଼ିଆ ତେଲର ଶିଶିଟିଏ ଧରି ପାଣି ଖାଇଯାଇଥିବା ତା' ଗୋଡ଼ ଆଙ୍ଗୁଳି ସନ୍ଧିରେ ତେଲ ଲଗେଇବାକୁ ବସିଥିଲାବେଳେ ଗଛଡାଳରୁ ମାଙ୍କଡ଼ କୁଦାଟେ ମାରିବା ପରି ବନମାଳୀ କୁଦାଟିଏ ମାରି କହିଲା, "ମହାନ୍ତି ଘର ବାହାଘର ଦେଖି ଯିବୁ ନାହିଁ କିଲୋ ଅହଲ୍ୟା ?"

ଅହଲ୍ୟା ଚମକିପଡ଼ି ନିଜ ଛାତିକୁ ଛେପ ନେଣ୍ଡାଏ ଥୁ ଥୁ କଲା ଓ ଚିଡ଼ିଯାଇ କହିଲା, "ସବୁବେଳେ ତୁ ମାଙ୍କଡ଼ ପରି କାହିଁକି ହଉ କିରେ ? ମୁଁ ଚମକି ପଡ଼ିଲି ।"

: ଚମକେଇଲା କଥା କହିନାହିଁ ଲୋ ଅହଲ୍ୟା । ସେ କଥା ଶୁଣିଲେ ତୁ ସତରେ ବସିଲା ଠାଆରୁ ଉଠିପଡ଼ିବୁ ।

: ଆଁ, ସତରେ ! କ'ଣ ବା ସେ କଥା ? କହିଲୁ... କହିଲୁ.. । ଅହଲ୍ୟା ବନମାଳୀର କଥା ଶୁଣିବା ଲାଗି ବ୍ୟସ୍ତ ହୋଇପଡୁଥିଲା ।

ବନମାଳୀ ତୁଣ୍ଡ ଖୋଲୁଥିଲା । ସେତିକିବେଳେ ପାଣିକଳ ଖୋଲିବା ପରି ଘାଗଡ଼ା ଗଳାରେ ମାନିଦେଈର ଶାଶୂବୁଢ଼ି ଡାକ ପକେଇଲେ, "ହଇରେ ସଦାବର୍ତ୍ତିଆ ବନା ! କୁଆଡ଼େ ଯାଇ ପଶିଲୁ" ଓ ବନମାଳୀ "ହେଇଲୋ ବୁଢ଼ୀ ଡାକିଲାଣି" କହି ଦଉଡ଼ିଲା ପରି ପଳେଇଗଲା ।

ଅହଲ୍ୟା ପାଣିଖିଆ ଗୋଡ଼ରେ ତେଲ ଲଗାଇଲା । ସବୁଯାକ ଆଙ୍ଗୁଳିସନ୍ଧି ପାଣି ଖାଇ ଖାଇ ପେଜ ପରି ଧଳା ହୋଇଯାଇଛି । ହାତ ଆଙ୍ଗୁଳିଗୁଡ଼ାକ ଶେଥା ଦିଶୁଛି । ସେ ଦି ହାତରେ ଭଲ କରି ତେଲ ବୋଳିଦେଲା । ସବୁବେଳେ ତା'ର ପାଣି କାମ କଲେ ହାତ ପାଦର ଏହି ଦଶା ନ ହୋଇ ଆଉ କ'ଣ ହେବ ? – ଅହଲ୍ୟା ମନକୁ ମନ କହିଲା ।

ମହାନ୍ତି ଘରପଟୁ ମାଇକ୍‌ରେ ଗୀତ ଶୁଭୁଥିଲା । ଆଜି ତାଙ୍କ ଝିଅର ବାହାଘର । ରାତିକୁ ବର ଆସିବ । ତିନି ତିନି ଥର ମହାନ୍ତି ଘର ବୁଢ଼ି କହିଯାଇଛନ୍ତି । ଆଜି ମହାପାତ୍ର ବାବୁଙ୍କ ଘରେ ରୋଷେଇ ହେବ ନାହିଁ । ସମସ୍ତେ ତାଙ୍କ ଘରେ ଖାଇବେ । ବୁଢ଼ିଙ୍କ ପାଇଁ ସେ ଅଲଗା ଜାଗାରେ ଖାଇବାତକ ପଠେଇଦେବେ । ଭାରି ଭଲ ମଣିଷ ମହାନ୍ତିଘର ବୁଢ଼ି । କାଲିରୁ ଆଜି ଭିତରେ ତିନି ତିନିଥର ବାତିନି ଦେଇଗଲେଣି ।

ବନମାଳୀ କହୁଥିଲା, "ଇଏ ତ ରୀତି । ତିନି ଥରରୁ କମ୍ ଡାକିଲେ ଆମ ବାବୁ କ'ଣ ସେଠିକି ଯିବେ ? ସହର ବଜାରରେ ସିନା କିଏ ଥରେ ଅଧେ ଡାକି ଦେଲେ କୁଣିଆ ଯାଇ ହାଜର । ଇଏ ପରା ଗାଁ ।"

ସଞ୍ଜକୁ ରୋଷେଇ ନାହିଁ । ସେଇଥି ପାଇଁ ଅହଲ୍ୟାକୁ କାମ ଜଞ୍ଜାଳରୁ ଫୁରୁସତ ମିଳିଛି । ନ ହେଲେ କୋଉଠି ନିଦକରେ ଏମିତି ବସିଥାଆନ୍ତା ?

ମାଇକ୍‌ର ଗୀତ ଗୋଟିଏ ପରେ ଗୋଟିଏ ବଦଳୁଥିଲା । ଅହଲ୍ୟା ଉଠିଯାଇ ଝରକା ଫାଙ୍କରେ ମହାନ୍ତି ଘରକୁ ଅନାଇଲା । କେଡ଼େ ସୁନ୍ଦର ଦିଶୁଛି ସେଇ ପୁରୁଣା ଘରଟି ! ନୂଆ ରଙ୍ଗ ଦିଆଯାଇଛି ବାହାରପଟେ । ଦାଣ୍ଡପଟେ କଦଳୀଗଛ ପୋତା ହୋଇଛି । ଆମ୍ବଡାଳ ଝୁଲୁଛି ।

ସେପଟକୁ ପିପିଲି ଚାନ୍ଦୁଆ ପଡ଼ି ବାହାବେଦୀ ସଜା ହୋଇଛି । ନାଲି, ହଳଦିଆ, ବାଇଗଣୀ ଓ ଗୋଲାପୀ ରଙ୍ଗର କାଗଜ ଫୁଲ ଚାରିଆଡ଼େ ଝୁଲା ହେଇଛି । ମହାନ୍ତି ଘର କାନ୍ଥରେ ଚିତ୍ର ଅଙ୍କାଯାଇ 'ଶୁଭବିବାହ' ଲେଖାଯାଇଛି । ତା' ତଳକୁ ଯୋଡ଼ି ମହୁରି ଓ ନାଗରାର ଚିତ୍ର ।

ଅହଲ୍ୟା ଧୀର ପାଦରେ ବାଡ଼ିପଟକୁ ଗଲା । ମାନିଦେଈ ଘରର ଖଞ୍ଜାଟି ବହୁତ ବଡ଼ । ଆଗପଟକୁ ପକ୍କା ଘର, ତା' ପଛକୁ ଆଜବେଷ୍ଟସ୍ ଛାଉଣି ଭଣ୍ଡାର ଘର, ରୋଷେଇ ଘର । ସବୁ ପଛକୁ ଚାଳଛପର ଘର ଦି'ଧାଡ଼ି । ଏପଟେ ଗୋରୁ ଗୁହାଳ, ଜାଳ କାଠ ରହିବା ଜାଗା ଓ ସେପଟକୁ ଅହଲ୍ୟା ରହିବା ଘର । ଏଇଠି ଅହଲ୍ୟା ରାତିରେ ପାଞ୍ଚ ଛଅ ଘଡ଼ି ଶୁଏ । ନହେଲେ ଅବଶିଷ୍ଟ ସମୟ ଆଗପଟ ଖଞ୍ଜାରେ କାମ କରୁଥାଏ ।

ଚାଳଛପର ଘର ପଛକୁ ମହାପାତ୍ର ଘରର ବାଡ଼ି । ବାଡ଼ି ମଝିରେ ଛୋଟ ପୋଖରୀ । ପୋଖରୀରେ କଇଁଫୁଲ, କୂଳରେ ସୁନୁସୁନିଆ ଓ କଳମ ଶାଗ । ସେପଟେ ଖରାଦିନିଆ ପୋଇ, କଖାରୁ । ଏସବୁ ଅହଲ୍ୟା ଲଗେଇଛି, ସବୁଦିନେ ପାଣିଦେବା ବି ତା'ର କାମ । ପୋଖରୀ ସେପଟେ ଆମ୍ବତୋଟା, ଫଳ ବଗିଚା । ଏହା ଭିତରକୁ ପଶିଗଲେ ଦାଣ୍ଡପଟର ଗୋଳଚହଳ କିଛି ଶୁଭେ ନାହିଁ । ଆମ୍ବତୋଟା ଭିତରଟା ଏକଦମ୍ ଶୂନ୍‌ଶାନ୍ ।

କୋଉଠି ଗୋଟେ କୋଇଲି କୁହୁ କୁହୁ କରି ରାବି ଉଠିଲା । କୋଇଲି କାଳେ ଏହି ସୁରରେ ଗୀତ ଗାଏ । ଅନ୍ୟ ଦିନ ହୋଇଥିଲେ ଅହଲ୍ୟା ସିଆଡ଼କୁ ଧ୍ୟାନ ଦେବା ଲାଗି ସମୟ ପାଇ ନଥାନ୍ତା । ଆଜି କିନ୍ତୁ କୋଇଲିର ଗୀତଟା ତା'ର ଅତି ପାଖରେ ଶୁଭିଗଲା । ସେ ଚାହିଁଲା, କୋଉଠି ବସି କୋଇଲି ଗୀତ ଗାଉଛି ?

ଯେତେ ଯୁଆଡ଼େ ଅନେଇଲେ ବି ଅହଲ୍ୟା କୋଇଲିକୁ ଦେଖିପାରିଲା ନାହିଁ । ଖାଲି ତା'ର ଉଚ୍ଚାଟ ଗୀତ ଶୁଣିପାରିଲା କାନରେ । ଆହା, କେଡ଼େ ସୁନ୍ଦର କୋଇଲିର ସ୍ୱର ! ଅହଲ୍ୟା ମନକୁ ମନ କହିଲା ।

ପୋଖରୀପଟୁ ଧୀର ଶୀତଳ ପବନ ବୋହି ଆସୁଥିଲା । ଛାଇଲେଉଟା ବେଳ ହେଲାଣି । ଖରାର ଟାଣ କେତେବେଳୁ ଦୁର୍ବଳ ହୋଇଗଲାଣି । ସେ ଗୋଟେ ଗଛକୁ ଆଉଜି ବସିପଡ଼ିଲା ।

ଦକ୍ଷିଣା ପବନ ଛୁଆଁରେ ଆମ୍ବଗଛର ପତ୍ରମାନ ଝୁଲଣରେ ଝୁଲିଲା ପରି ଦୋହଲି ଯାଉଥିଲେ । କଷି ଆମ୍ବର ବାସ୍ନା ସେ ପବନ ଦେହରେ ଅବା ଅତର ଛିଞ୍ଚି ଦେଉଥିଲା । ଅହଲ୍ୟା ବୁଝି ନ ପାରିଲେ ବି ତାକୁ ଏମିତି ବସିବାକୁ ଭଲ ଲାଗୁଥିଲା । କ୍ରମେ ତା'ର ଥକିଲା ଆଖି ଯୋଡ଼ିକ ମୁଦି ହେଇ ଆସୁଥିଲା ।

କେଉଁ ଦିନଠାରୁ ଆସି ଅହଲ୍ୟା ଏଠି ମହାପାତ୍ର ଘରେ ରହିଲାଣି ତା'ର ହିସାବ ତାକୁ ପଚାରିଲେ ସୁଦ୍ଧା ସେ ଦେଇପାରିବ ନାହିଁ । ଗୋଟାଏ ଯୁଗ ହେବଣି, ମାନି ଦେଈ ବାହାଘର ବେଳେ ସେ ଆସିଥିଲା ଏ ଘରକୁ ମାନି ଅପାର ଭାର ଥୋର, ଖଟ ଆଲମାରି, ଚକି-ଶିଳ, କୁଲ୍ଲା-ବାଉଁଶିଆ, ମିଠେଇ ଝୁଡ଼ି ଓ ଲୁଗା ଟ୍ରଙ୍କ୍ ସାଙ୍ଗରେ ଆଉ ଗୋଟାଏ ଜିନିଷ ହୋଇ । ସେବେଳକୁ ତା'ର କେତେ ବା ବୟସ ହୋଇଥିଲା ? – ଏଇ ଦଶ କି ଏଗାର । ତା'ର ମନେ ନାହିଁ । ଅହଲ୍ୟାର କେବଳ ମନେ ଅଛି, ଦିନେ ସକାଳୁ ସକାଳୁ ତା' ବୋଉ ଆଣି ତାକୁ ମାନିଦେଈଙ୍କ ପାଖରେ ଛାଡ଼ି ଦେଇ ଯାଇଥିଲା । ମାନି ଦେଈଙ୍କ ବୋଉ କ'ଣ କହିଥିଲେ କେଜାଣି ସେ କଥା ଶୁଣି ଅହଲ୍ୟାର ନାକକାନ୍ଦୁରୀ ବୋଉ ଢେର୍ ସମୟ ସକେଇ ହୋଇ କାନ୍ଦିଥିଲା ଓ "ବାପଛେଉଣ୍ଡ

ଝିଅଟା ତମକୁ ଲାଗିଲା ମା' ସାଆନ୍ତାଣୀ" କହି ଅହଲ୍ୟାକୁ ଢେର୍ ଆଉଁଶି ଥିଲା । ତା'ପରେ ଅହଲ୍ୟାର ମନେ ନାହିଁ । ସେତେବେଳେ ସିଏ ଏସବୁ କଥାବାର୍ତ୍ତା ଶୁଣିବା ଅପେକ୍ଷା ମାନି ଦେଈର ବୋଉ ତାକୁ ଖାଇବା ଲାଗି ଦେଇଥିବା ମିଠେଇ ସୁଆଦକୁ ବେଶୀ ଗୁରୁତ୍ୱ ଦେଇ୍ଥିଲା ।

ସେହିଦିନ ଅହଲ୍ୟାକୁ ତା' ବୋଉ ସେଇଠି ଛାଡ଼ି ଯାଇଥିଲା । ଅହଲ୍ୟା ମାନି ଦେଈଙ୍କ ଘରେ ରହିଥିଲା । ବେଳେବେଳେ ବୋଉର କଥା ମନେପଡ଼ିଲେ ବି ଅହଲ୍ୟା ମନଦୁଃଖ କରୁ ନଥିଲା । କାରଣ ତାଙ୍କ ଘରେ ତା' ବୋଉ ବରାବର ତାକୁ ଗାଳିମନ୍ଦ କରୁଥିଲା ଓ କୌଣସି କାମରେ ଟିକିଏ ଉଛୁର କଲେ କି ହାତରୁ ଥାଳି ଗିନା ଖସି ପଡ଼ିଲେ ତାକୁ ମାରଧର କରୁଥିଲା । ତା' ବୋଉ ତାକୁ ଆହୁରି କ'ଣ କ'ଣ ସବୁ କହୁଥିଲା, ଯେଉଁଟାକି ଏବେ ଆଉ ଅହଲ୍ୟାର ମନେ ନାହିଁ ।

ଅହଲ୍ୟା ଆଖି ବୁଜି ଦେଲା । ଏସବୁ କଥା କୋଉ ଯୁଗର ହେଲାଣି । ସେ ସେକଥାଗୁଡ଼ା ମନେପକେଇବା ଲାଗି ଚାହୁଁ ନଥିଲା । ଏବେ ମହାନ୍ତିଘର ବାହାଘର କଥା ବରଂ ତା'ର ବେଶୀ ମନେପଡୁଥିଲା । ମନେପଡୁଥିଲା ବନମାଳୀ ଅଧା ଛାଡ଼ିଯାଇଥିବା ଚମକେଇଲା ଭଳି କଥାର ଅବଶିଷ୍ଟ ଅଂଶ ।

ଏମିତି ଭାବୁ ଭାବୁ ଅହଲ୍ୟାର ଆଖି ବୁଜି ହୋଇଯାଉଥିଲା । ଏବେ ତା' ଆଖି ସାମ୍ନାରେ ଗୋଟେ ଦୃଶ୍ୟ ନାଚି ଯାଉଥିଲା । ସେ ଦୃଶ୍ୟ ଥିଲା ଗୋଟେ ଝିଅର ବାହାଘର ଦୃଶ୍ୟ ।

ନିର୍ବନ୍ଧ ପାଇଁ ଉଭୟ ପକ୍ଷର ମୁରବୀ ଓ ବ୍ରାହ୍ମଣ ବାରିକ ଆସିଥିଲେ । ଥାଳିରେ ଆସିଥିଲା ଗହଣା ଓ ଶାଢ଼ି । ତା' ସାଙ୍ଗରେ ନଡ଼ିଆ ଓ ମହାପ୍ରସାଦ । ସେଦିନ ତିଥି ସ୍ଥିର ହେଲା ।

ପନ୍ଦର ଦିନ ରହିଲା ବାହାଘର । ଝିଅଘର ଲୋକେ ଖୁବ୍ ବ୍ୟସ୍ତ । ନିଃଶ୍ୱାସ ନେବା ପାଇଁ ସୁଦ୍ଧା ଫୁରୁସତ୍ ନାହିଁ ।

ବାହାଘର ଆଠ ଦିନ ଅଛି, ଅନୁକୂଳ ଆରମ୍ଭ ହେଲା । ବନ୍ଧୁବାନ୍ଧବଙ୍କ ଘରକୁ ହଳଦୀ ପାଣିରେ ଧୁଆ ହୋଇଥିବା ଗୁଆ ପଠାଯିବ । ଗାଁ ଠାକୁରାଣୀଙ୍କ ପାଖରେ ପୂଜା ହୋଇଆସିଛି ଡାଲାରେ ଗୋଟାଗୁଆ ।

ଆଜି ଜାଇ ରଗଡ଼ା । ଚାଉଳପତ୍ରଠୁଁ ଆରମ୍ଭ କରି ସବୁ ଜିନିଷପତ୍ର ପାଇଁ ବନ୍ଦୋବସ୍ତ ଆଜିଠୁଁ ଆରମ୍ଭ ହେଲା । ଘରର ପରିବେଶ କ୍ରମେ ଜଞ୍ଜାଳିଆ ହୋଇପଡୁଛି । ସବୁଠି ବ୍ୟସ୍ତତା, ବ୍ୟଗ୍ରତା ।

ଝିଅଟିକୁ ଏବେ ସାହିପଡ଼ିଶାଙ୍କ ଘରୁ ଡାକରା ଆସୁଛି । ତାକୁ କ'ଣ ସବୁ ଖାଇବାଭୁ ଭଲ ଲାଗେ ବୋଲି ପଚରା ହେଉଛି । ସିଏ ଆଉ ଗତକାଲିର ସାଧାରଣ ଝିଅ ନୁହେଁ । ଏବେ ସେ ଅସାଧାରଣ, ତା'ର ଚାହିଁବା ନ ଚାହିଁବାକୁ ଗୁରୁତ୍ୱ ଦେଉଛନ୍ତି ସମସ୍ତେ ।

ଆଜି ମଙ୍ଗଳପାକ । ଭଣ୍ଡାରୁଣୀ ଆସି ତା' ଦାୟିତ୍ୱ ବୁଝୁଛି । ନୂଆ ହାଣ୍ଡିରେ ଅରୁଆ ଚାଉଳରେ ଭାତ ରାନ୍ଧିବେ ଭାଉଜ । ହୁଳହୁଳୀରେ ଅଗଣା ଉଛୁଳିବ । ବଡ଼ବଡୁଆଙ୍କୁ ଭୋଗ ଲଗାଯାଉଛି । ବାହାଘର ତ ଆରମ୍ଭ ହେଇଗଲା ଜାଣ ।

ବାହାଘର ଦିନ ବରଧରା ଯିବ ବର ଗାଁକୁ । ସାଙ୍ଗରେ ବ୍ରାହ୍ମଣ, ବାରିକ ଓ ଶଙ୍ଖୁଆ । ବର ପାଇଁ ଅଳଙ୍କାର ନେଇକି ଯିବେ; ବରଧରା ବାହାରିବ । ସୁନା ମୁଦିଟାକୁ ସମସ୍ତେ ଥରକୁ ଥର ଦେଖୁଛନ୍ତି । ଏବେ ବରଧରା ଗଲେ ରାତିକି ବରକୁ ସାଙ୍ଗରେ ନେଇ ସେ ଫେରିବ ।

ଘରଟା ସାଜିସୁଜି ହୋଇ ବୋହୂଟେ ପରି ଦିଶୁଛି । ଚାରିଆଡ଼େ କଦଳୀପତ୍ର ଓ ଆମ୍ବପତ୍ର । ଦାଣ୍ଡଦୁଆରେ ଶୁଭ କଳସ ବସିଛି । ଚିତ୍ର ବିଚିତ୍ର ହେଇଛି ଦାଣ୍ଡ ଅଗଣା ।

ବାହାଘର ଆଗରୁ କନିଆର କୋଇଲିବୁଡ଼ ଗାଧୁଆ । ବାଡୁଅପାଣିରେ ଗାଧୋଉଛି ଝିଅଟି । ଆଜିଠୁଁ ଜୀବନର ଗୋଟାଏ ପରବ ସରିଗଲା । ପଛରେ ରହିଗଲା ବୋହୂ ବୋହୂକା ଖେଳ, ଖପରା ଡିଆଁ ଓ ରଜ ଝୁଲଣ । ଏଣିକି ସେ ବୋହୂ ହେବ । ନୂଆ ଜୀବନ ଆରମ୍ଭ କରିବ । ସରିଗଲା ସଁବାଳୁଆର ଆୟୁଷ । ହଳଦୀ ଲଗେଇ ଗାଧୋଇଲା ଝିଅଟି । ସାତ ଜଣ ଅହ୍ୟ ସ୍ତ୍ରୀ ହୁଳହୁଳୀ ଦେଇ ତାକୁ ଗାଧୋଇ ଦେଲେ । ପାଲଟାଲୁଗାକୁ ଭଣ୍ଡାରୁଣୀ ନେବ, ସେଇଟା ତା'ର ପ୍ରାପ୍ୟ । ଝିଅ ପିନ୍ଧୁଛି ମଙ୍ଗଳଓଡା । ଏହି ଲୁଗା ପିନ୍ଧି ସେ ଯିବ ବେଦୀକୁ ।

ବର ଆସିଲାଣି ବୋଧହୁଏ । ଗାଁମୁଣ୍ଡର ଅନ୍ଧାର ଆକାଶ ହଠାତ୍ ଲକ୍ଷେ ଦୀପାଳିର ଉଜ୍ଜ୍ୱଳପଣରେ ଝଲସି ଉଠୁଛି । ବାଣ ଫୁଟୁଛି, ରୋଷଣୀ ଜଳୁଛି, ବାଜା ବାଜୁଛି, ସାହାନାଇରେ ନୂଆ ନୂଆ ସୁର ଦେଉଛି ବ୍ୟାଣ୍ଡ୍ ମାଷ୍ଟର ।

କନିଆ ଘରେ ବ୍ୟସ୍ତତା ବଢ଼ିଗଲା । ଏବେ ଜ୍ୱାଇଁ ବରଣ ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ । ବରଯାତ୍ରୀମାନଙ୍କ ଚର୍ଚ୍ଚା ପାଇଁ ଆଗରୁ ହୁସିଆର ନ ରହିଲେ ଅସଲ ବେଳକୁ ସବୁ ବିଭ୍ରାଟ ହୋଇଯିବ ।

ଗାଁ ଦାଣ୍ଡ ଦୁଲୁକେଇ ବର ଆସୁଛି । ସାଙ୍ଗରେ ବରଯାତ୍ରୀ । ଆଗେ ଆଗେ ଟୋକାଟାକଳା, ପଛକୁ ମୁରବି ମଣିଷ । ଝିଅର ସାଙ୍ଗ ସଙ୍ଗାତମାନେ ଧାରା ବିବରଣୀ ଦେଉଛନ୍ତି ଝିଅଟିକୁ । ଉପବାସର କଷ୍ଟ କିଛି ଲାଗୁ ନାହିଁ । କେବଳ ଉତ୍କଣ୍ଠା– କ'ଣ ହେବ, କ'ଣ ହେବ ? ଦହି ସରବତ ଟିକକ ପିଇବା ଲାଗି ସୁଦ୍ଧା ଇଚ୍ଛା ହେଉ ନାହିଁ ।

ନୋଇଁ ନୋଇଁ କନିଆ ଯାଉଛି ବେଦୀ ଉପରକୁ । ଲବଣ ଚଉଁରୀ ମନ୍ତ୍ର ବୋଲାଯାଉଛି । ହୋମ, ଦୋଳ ମୁକୁଟ ପିନ୍ଧା ଓ ଶେଷରେ ହାତଗଣ୍ଠି । ନୂଆ ହାତର ଛୁଆଁରେ ଉଲୁସି ଯାଉଛି ଦେହହାତ, ଫଗୁଣ ପବନରେ ଗଛ ଉଲୁସିଗଲା ପରି ।

କଉଡ଼ି ଖେଳ ବେଳକୁ ପଛେଇ ଯାଉଛି ଝିଅଟା । ମୁଠା ଖୋଲୁ ନାହିଁ । କନିଆର ସାନଭାଇ ସାହାଯ୍ୟ କଲା କି ? ହେଇଥିବ– ସେ ଯେଉଁ ହସ ଆଉ ପାଟିଗୋଳ । ଝିଅଟି ଲାଜରେ ଝାଉଁଳି ପଡ଼ିଛି ।

ଖଇହୋମ ସରିଗଲା । ସରିଗଲା ସମୁଦୀ ମେଳଣ, ବନ୍ଦାପନା ବି । ଏବେ ଗାଧୁଆ ପାଧୁଆ । ନୂଆ ସାଜ ସରଞ୍ଜାମ ସବୁ ଥୁଆ ହେଇଛି । ଗାଧୁଆ ପରେ ଦହି ପଖାଳ ଖିଆ ଆଉ ତା'ପରେ ଝିଅ ବିଦାୟ ।

ବିରାଟ ବରଗଛଟେ ଅବା ଝଡ଼ରେ ଉପୁଡ଼ି ହେଇପଡୁଛି । ଭାଂଗିଯାଉଛି ଲୁହର ବନ୍ଧ । କରୁଣ କାନ୍ଦଣାରେ ସବୁ ଶବ୍ଦ ଓ କୋଳାହଳ ବୁଡ଼ିଯାଉଛି । ନିଜ କଳିଜାକୁ କାଟି ପର ହାତକୁ ଟେକିଦେଲା ପରି ଝିଅକୁ ଟେକି ଦେଉଛନ୍ତି ଘରଲୋକେ ।

ଗହୀର ବିଲ, ପିଚୁ ରାସ୍ତା ଓ ନାଲି ସଡ଼କ ଦେଇ ସବାରି ଆଗଉଛି ପୁଅ ଗାଁକୁ । ଝିଅଟି ସେଇ କାଠ ସବାରୀର ଫାଙ୍କରୁ ଶେଷ ଥର ପାଇଁ ଦେଖି ଦେଉଛି ନିଜ ଗାଁକୁ । 'ଥାଅରେ ଗାଁର ପୋଖରୀ ତୁଠ, କଦମ୍ବ ଗଛ, ତମେମାନେ ସମସ୍ତେ ଭଲରେ ଭଲରେ ଥାଅ । ଥାଅରେ ମଥା ଉପରର ତାରା ଓ ପାଣି ତଳର କୁନି ମାଛ, ସମସ୍ତେ ଖୁସି ଖୁସିରେ ଥାଅ, ମୁଁ ଯାଉଛି । 'ଅବରୁଦ୍ଧ

ଝରଣାଟିଏ କୁଳୁକୁଳୁ କରି ଗଡ଼ିଗଲା ପରି ଆଖି କୋଣରୁ ଟୋପାଟୋପା ଲୁହ ନିଗିଡ଼ି ଯାଉଥାଏ । ସବୁକିଛି ଦିଶୁଥାଏ ଝାଲୁଆ ଝାଲୁଆ। ଘୁଞ୍ଚି ଯାଉଥାଏ ଗାଁର ତାଳ ବଣ, ଧାନ କ୍ଷେତ ଓ ନଈ କୂଳ । ପାଖେଇ ଆସୁଥାଏ ନୂଆ ଗାଁ, ନୂଆ ଘର, ନୂଆ ସଂସାର ।

ସବାରୀ କବାଟ ଖୋଲି ବନ୍ଧାପନା ପରେ ହାତଧରି ସଙ୍ଗୋଳି ନିଅନ୍ତି ବଡ଼ ଯାଆ । ଧୀର ପାଦରେ ଝିଅଟି ଓହ୍ଲାଇ ଆସେ 'ମାଛିକୁ ମ' ନ କହିବା ଢଙ୍ଗରେ । ଘର ଦରଜା ପାଖେ ବାଟ ଜଗିଥାଏ ନଣନ୍ଦ । ସିଏ ତା'ର ପାଉଣା ନ ପାଇଲେ ଭାଉଜଙ୍କୁ ଘର ଭିତରକୁ ଛାଡ଼ିବ ନାହିଁ । ତାକୁ ତା' ପାଉଣା ଦେଇଦିଏ ନୂଆବୋହୂ । ନୂଆ ଲୁଗାର ଚାଦର ତଳେ ବୋହୂ ଘର ଭିତରକୁ ପଶେ । ସାଙ୍ଗରେ ଆଣିଥାଏ ଗୁଡ଼ କଂସା ଓ ଶିଉଳି ବାଟି । ଘର ଚଟାଣରେ ଚିତା ଲେଖି ଲେଖି ଭିତରକୁ ଯାଏ । ଅବିର ପାଦରେ ଲକ୍ଷ୍ମୀ ପାଦ ଆଙ୍କି ନୂଆ ସଂସାରକୁ ପଶେ । ଜେଜେମା କୋଳରେ ବସେଇ ବର କନ୍ୟାଙ୍କୁ ବିରିଚାଉଳରେ ଖେଳାନ୍ତି । ଏଣିକି ଏଇ ସଂସାର, ତେଲ, ଲୁଣ ଓ ବିରିଚାଉଳର ଜୀବନ ।

ଗୁଡ଼ ଓ ଗୁଆ ମିଶେଇ ସାତ ଜଣଙ୍କୁ ବାଣ୍ଟିଦିଏ ବୋହୂ । ସମସ୍ତଙ୍କ ଘରକୁ ମିଠା ପଠାଯାଏ । ଚତୁର୍ଥୀ ଆସେ । ନୂଆ ଗୋତ୍ରକୁ ଗ୍ରହଣ କରି ଝିଅଟି ପିତୃଶ୍ରାଦ୍ଧ ଦିଏ । ଲଜ୍ଜା ହୋମରେ ଲଜ୍ଜାକୁ ସ୍ୱାହା କରିଦିଏ ବୋହୂ ଦାମ୍ପତ୍ୟର ଯଜ୍ଞ କୁଣ୍ଡରେ ।

ହାଣ୍ଡିଶାଳକୁ ପଶିବା ଆଗରୁ ସୂର୍ଯ୍ୟଙ୍କୁ ଟେକିଦିଏ ପାଣି ପିତଳ ଗଡୁରେ ।

କାହାର ପାଟି ଶୁଣି ଝିଅର ପାଦ ଉପରେ ଖସିପଡ଼ିଲା ପାଣିଗଡୁଟି । ସେ 'ଉଃ' କହି ନୋଇଁ ପଡ଼ିଲା । ଅହଲ୍ୟାର ଆଖି ଖୋଲିଗଲା । ଚାରିଆଡ଼କୁ ଚାହିଁଲା ସେ । କେହି କେଉଁଠି ନାହିଁ । କିଏ କାହିଁକି ସୂର୍ଯ୍ୟଙ୍କୁ ପାଣି ଟେକି ଦେଉଥିଲା । କୋଉଠୁଁ ବିଦାୟ ନେଇ ଆସୁଥିଲା ଝିଅଟି । ଚାରିପଟ ଶୂନ୍‌ଶାନ୍ । ସୂର୍ଯ୍ୟ ଯିବାକୁ ବାହାରିଲେଣି । ଏତେବେଳେ କ'ଣ ସେ ଛାଇ ନିଦରେ ସ୍ୱପ୍ନ ଦେଖୁଥିଲା !

ସ୍ୱପ୍ନରେ ଡାକୁଥିବା ଲୋକଟି କ'ଣ ଥିଲା ଝିଅର ବର ? ଯାହା ହାତ ଧରି ଝିଅଟି ପର ଗାଁକୁ ବୋହୂ ହୋଇ ଆସିଥିଲା ।

ଅହଲ୍ୟା ଲାଜରେ ଜିଭ କାମୁଡ଼ି ଦେଲା ।

'କିଲୋ ମୁହଁସଞ୍ଜଟାରେ ସେ ଆମ୍ବତୋଟାରେ କେଉଁ ନାଗର ସାଙ୍ଗରେ ଫୁସୁରୁଫାସର ହେଉଥିଲୁ ବା ?'

ବୁଢ଼ି ଅହଲ୍ୟାକୁ ଡାକୁଥିଲେ । ମାନି ଦେଇର ଶାଶୂ । ଅହଲ୍ୟା କିଛି ଜବାବ ଦେଲା ନାହିଁ ।

ତା' ଆଖି କୋଣରେ ତଥାପି ଲୁହ ଟୋପାଏ ଅବା ଲାଗି ରହିଥିଲା ପରି ସେ ଲୁଗା କାନିରେ ମୁହଁ ପୋଛି ଦେଲା । ଗୋଟେ ଦୀର୍ଘଶ୍ୱାସ ଛାଡି ଥରେଇ ପଦାକୁ ବାହାରି ଆସିଲା । ସତରେ ସଞ୍ଜ ହେଇଗଲାଣି । ଚଉଁରାମୂଳେ ସଞ୍ଜ ଦିଆ ହୋଇନାହିଁ ।

ଅହଲ୍ୟା ସଦର ଖଞ୍ଜାକୁ ଫେରିଆସିଲା । ଏଇ ତା'ର କର୍ମଭୂମି । ଏଇଠି ସକାଳ କୁଆ କା'- କରିବାଠୁଁ ନେଇ ପୁଣି ଅଧରାତିର ପେଚା ରଡ଼ିବା ଯାଏ ତା'ର କାମ ।

ସୂର୍ଯ୍ୟ ଉଇଁବା ଆଗରୁ ଅହଲ୍ୟା ଉଠିପଡ଼େ । ତା' ଚାଳ ଛପର ଘରଟାରେ ଖଣ୍ଡିଏ ସଉପ, ଚଟେଇ, ଦି'ଖଣ୍ଡ ଲୁଗା, ସାୟା, ବ୍ଲାଉଜ୍, ଖଣ୍ଡେ ଆରସି ଓ ପାନିଆ । ଗୋଟେ କନ୍ଥା, ଦିଇଟା

ଚାଦର, ଖଣ୍ଡେ କମ୍ବଳ, ଗୋଟେ ଟିଣ ଟ୍ରଙ୍କ୍ ଓ ଝୁଲା । ଏଇ ଘରଟା ଆଜିକି ଦି' ପୁରୁଷ ହେଲା ତା'ର ବାସଭୂଇଁ ।

ଅହଲ୍ୟାର କାମ ଆରମ୍ଭ ହୁଏ । ବିଛଣାରୁ ଉଠି ସେ ଦାଣ୍ଡ ଖଞ୍ଜାଠାରୁ ବାଡ଼ିପଟଯାଏ ଓଳେଇ ଆଣେ । ଘରଓଳା କାମଟି ପୁଣି ସହଜ ନୁହେଁ । ବାଡ଼ିପଟ ଓଳେଇବା ପାଇଁ ପହଁରା ଖଡ଼ିକା, ଘର ଭିତର ପାଇଁ ଫୁଲଝାଡ଼ୁ ଆଉ ବୁଢ଼ିଙ୍କ ଠାକୁର ଘର ଓ ରୋଷେଇ ଘର ପାଇଁ ଅଲଗା ପିଞ୍ଛ ଝାଡ଼ୁ । ଏଥିରେ ଟିକିଏ ଅଲମ ବିଲମ ହୋଇଗଲେ ବୁଢ଼ି ପ୍ରଳୟ କରିଦିଅନ୍ତି । ସବୁଯାକ ଘର ଅଗଣା ଓ ବାରନ୍ଦା ଅହଲ୍ୟାକୁ ଓଳେଇବାକୁ ପଡ଼େ । ତେବେ ଝାଡ଼ୁ ବଦଳ ପରି ଭୁଲ୍ ଅହଲ୍ୟାର ହୁଏ ନାହିଁ । ସବୁଦିନ ସେଇ ଏକା ପ୍ରକାରର କାମ କରି କରି ତା' ହାତପାଦ କାନ୍ଥ ଘଡ଼ିର ଘଣ୍ଟାକଣ୍ଟା ଆଉ ମିନିଟ୍ କଣ୍ଟା ପରି ଅଭ୍ୟସ୍ତ ହୋଇଗଲାଣି । ଘରଓଳା ପରେ ବାସନ ମଜା । ଗଲା ରାତିର ବାସନତକ କୂଅ ପାଖରେ ଗଦା ହୋଇଥାଏ । ତାକୁ ସବୁ ମାଜି ନ ଦେଲେ ସକାଳ କୁଆ ଅଇଁଠା କୁଇଁଠା ଉଠେଇ ବାର ଆଡ଼େ ପକେଇବେ । ଅଇଁଠା ବାସନ କୁସନ ମାଜିସାରି ଅହଲ୍ୟା ରୋଷେଇ ଘରେ ନେଇ ଥୁଏ । ସଫା କନାରେ ସେସବୁ ପୋଛି ସଜାଡ଼ି ରଖିଦିଏ । ଏତକ କାମ ସାରିଲା ପରେ ସେ ଗୋରୁ ଗୁହାଳ କଥା ବୁଝେ । ସେମାନଙ୍କୁ ବାହାରେ ଆଣି ବାନ୍ଧିଦିଏ, କୁଣ୍ଡା ତୋରାଣି ଦିଏ, ନଡ଼ା ନ ହେଲେ ଘାସ ଥିଲେ ଖାଇବା ପାଇଁ ଥୋଇଦିଏ । ଗୋରୁମାନଙ୍କ କଥା ସରିଲା ପରେ ଅହଲ୍ୟା ନିଜେ ତା' କାମ ସାରି ଗାଧୋଇ ପଡ଼େ । ତା'ପରେ ଠାକୁରଙ୍କ ପାଇଁ ଫୁଲତୋଳା । ରୋଷେଇ ଘରେ ଚୁଲି ଲଗେଇ କେଟ୍‌ଲିରେ ଚା' ବସାଏ । ସେତକି ବେଳକୁ ସୂର୍ଯ୍ୟ ଉଠନ୍ତି, ଘରର ଲୋକମାନେ ବି ଧୀରେ ଧୀରେ ବିଛଣା ଛାଡ଼ନ୍ତି ।

ଏହା ପରେ ସକାଳ ଜଳଖିଆ ପାଇଁ ବନ୍ଦୋବସ୍ତ । ଅହଲ୍ୟାର ହାତ ପାଦ ଚଞ୍ଚଳ ହୋଇଉଠେ । ମାନିଦେଈଙ୍କ ସାନ ପୁଅଝିଅ ସ୍କୁଲ୍‌କୁ ଯିବେ, ବଡ଼ ଝିଅ ଯିବେ ପାଖ କଲେଜକୁ, ଦିଅର ହାଟକୁ, ବାବୁ ଖାଇସାରି କଚେରି ବାହାରିଯିବେ ।

ଯିଏ ଯାହାର ରାସ୍ତାରେ ବାହାରିଗଲା ପରେ ଦ୍ୱିପ୍ରହର ରୋଷେଇ କାମରେ ଅହଲ୍ୟା ଲାଗିଯାଏ । ଦଶ ପରାଣୀ କୁଟୁମ୍ବର ରୋଷେଇ । ପରିବାପତ୍ର କଟା, ବେସରବଟା ଏସବୁ ନିତିଦିନିଆ କାମ । ସପ୍ତାହରେ ପାଞ୍ଚଦିନ ମାଛ ମାଉଁସ । ତାକୁ ଧୁଆ, କେଳାଅ, କଷ, ରାନ୍ଧ । କିନ୍ତୁ ଅହଲ୍ୟାକୁ କୌଣସି କଥା ବଳେଇ ଯାଏ ନାହିଁ ।

ମାନିଦେଈଙ୍କ ପାଇଁ ଅହଲ୍ୟାର ସବୁଠୁ ବେଶି ଆଦର । ମାନିଦେଈ ନ ଥିଲେ ତା'ର ଅସ୍ତିତ୍ୱ ନ ଥାନ୍ତା । ତା'ର ମନେଅଛି, ମାନିଦେଈଙ୍କ ସଙ୍ଗରେ ଏ ଘରକୁ ଆସିଲାବେଳେ ସେ ଛୋଟିଆ ନଡ଼ବଡ଼ିଆ ଝିଅଟେ ଥିଲା । ମାନିଦେଈ ଶାଶୂଘର ଲୋକେ ତାକୁ ଦେଖି ଚିଡ଼େଇ ଥିଲେ, ଏଡ଼େ ବକଟେ ଛୁଆ-କୁକୁରଛୁଆ କି ବିଲେଇ ଛୁଆ ପରି- ଇଏ କ'ଣ ଘରବାଡ଼ି କାମ କରିପାରିବ ? କିନ୍ତୁ ଅହଲ୍ୟା ସେମାନଙ୍କ କଥା ଶୁଣି ନ ଥିଲା । ମାନିଦେଈର ଶାଶୂ ଦେଇଥିବା ତେନ୍ତୁଳି ଆଚାର ଓ ପଖାଳ କଂସାଏ ଖାଇ ଦେଇ ସେ ସିଧା ସିଧା ଅଇଁଠା ବାସନ କୁଡ଼ା ହୋଇଥିବା କୂଅ ମୂଳକୁ ଯାଇଥିଲା । ଟିକିଏ ସାବୁନ ପାଉଡର ଲଗେଇ ସାଙ୍ଗେ ସାଙ୍ଗେ ମାଜି ସଫା କରିଦେଇଥିଲା ବାସନ କୁସନ । ତା' କାମ ଦେଖି ମାନିଦେଈର ଶାଶୂ ଖୁସି ହୋଇଯାଇଥିଲେ ।

ମାନିଦେଈ ବାପଘରେ ଭାରି ଗେହ୍ଲୀ ଥିଲେ । ସବୁବେଳେ ବହିପଢ଼ା ନ ହେଲେ ରେଡିଓ ଶୁଣା । ବାପ-ମାଆଙ୍କର ଗୋଟିଏ ଝିଅ ବୋଲି କେହି ାଙ୍କୁ କିଛି କହୁ ନ ଥିଲେ କି ସିଏ ନିଜେ

ଘରକାମ କି ରୋଷେଇବାସ କାମ ଶିଖୁ ନ ଥିଲେ । ସବୁବେଳେ ଅହଲ୍ୟାକୁ ଲୋଡୁଥିଲେ । ମାନିଦେଈର ବୋଉ ଚିଡଉଥିଲେ, ଅହଲ୍ୟା ମାନିର ହାତବାରିସୀ ।

ହାତବାରିସୀ ଅହଲ୍ୟା ମାନି ସାଙ୍ଗରେ ଶାଶୂଘରକୁ ଆସିଲା ଦିନ ମାନିଦେଈ ବୋଉ ଅହଲ୍ୟାକୁ କହିଥିଲେ, ''ତୁ ତ ଜାଣୁ, ମାନି କିଛି କାମକାର୍ଯ୍ୟ ଶିଖି ନାହିଁ । ତୁ ମୋ ଝିଅ କଥା ବୁଝିବୁ । ତାହାହେଲେ ସିଏ ତୋ କଥା ବୁଝିବ । ତୋ ଘର ବସେଇ ଦେବ ତୁ ବଡ଼ ହେଲେ ।''

ଘର ବସିବାର ଅର୍ଥ କ'ଣ ସେଦିନ ବୁଝି ନ ଥିଲା ଅହଲ୍ୟା । ସେକଥା ବୁଝିଲା ଅନେକ ଅନେକ ଦିନ ପରେ । କିନ୍ତୁ ମାନିଦେଈର କଥା ମାନିବାରେ ସେ ସାମାନ୍ୟ ତ୍ରୁଟି କରି ନଥିଲା । ଆଜି ବି କରେ ନାହିଁ ।

ଦି'ପହର ଖିଆପିଆ ପରେ ଲୁଗାପଟା ସଫା କାମରେ ଲାଗିଯାଏ ଅହଲ୍ୟା । ସଞ୍ଜ ବୁଡ଼େ ସେସବୁ ଖରାରୁ ତୋଳିଆଣେ । ଛାତ ଉପରେ ଆଚାର, ବଡ଼ି, ଚାଉଳ କି ଆଉ କ'ଣ ଶୁଖାଯାଇଥିଲେ ଗୋଟେଇ ଆଣେ । ମସଲା କୁଟିଦିଏ, ଚାଉଳ ବାଟିଦିଏ ପିଠା ପାଇଁ । ପୁଣି ଥରେ ବାସନଧୁଆ ସରିଲା ପରେ ଘରଓଳା କାମ । ସଞ୍ଜବେଳେ ଲୁଗା ପାଲଟି ସଞ୍ଜବତି ଜାଳିଦିଏ ଅହଲ୍ୟା । ସଞ୍ଜବତିର କୃପଣ ଆଲୁଅରେ ତୁଳସୀ ଚଉଁରା ଝଲସି ଉଠେ । ଅହଲ୍ୟା ଆସି ଗୋଟିଏ ପରେ ଗୋଟିଏ ଘରେ ବତି ଜଳେଇ ଦିଏ । ସେତିକିବେଳେ ରାତି ରୋଷେଇର ବରାଦ ନେଇଯାଏ ଅହଲ୍ୟା ।

ରାତିର ରୋଷେଇ ସାରି ଖିଆପିଆ ସରିଗଲାବେଳକୁ ଅନେକ ବେଳ ହୋଇଯାଇଥାଏ । ଅହଲ୍ୟାର ହାତପାଦ ସବୁ କିଟିକିଟି କରି ଉଠେ । ମୁଣ୍ଡ ବିନ୍ଧେ, ପେଟ ଫମ୍ପେଇ ଯାଏ । ମାତ୍ର ଅହଲ୍ୟାର ସେସବୁ ପ୍ରତି ଧ୍ୟାନ ଦେବା ଲାଗି ସମୟ ନ ଥାଏ । ଶୀତ କି ବର୍ଷାଦିନେ ପୁଣି ତା'ର କାମ ଦି'ଗୁଣା ହେଇଯାଏ । ଲୁଗାପଟା ଶୁଖାଠୁଁ ନେଇ ମେଘ ଦାଉରୁ ଜାଳକାଠ ବଞ୍ଚେଇ ରଖିବା ତା'ପାଇଁ କାଠିକର ପାଠ ହୋଇଯାଏ ।

ତଥାପି ଏବେ ଅହଲ୍ୟା ନିଜ କାମକୁ ହାଲୁକା ମନେ କରେ । ମାନିଦେଈର ଝିଅ ବଡ଼ ହେଇଗଲାଣି । ଗୋଟେ ପୁଅ, ଦି'ଟା ଝିଅ । ବଡ଼ଝିଅ ମୀନା କଲେଜ ଗଲେଣି, ପୁଅ ମାଇନର ସ୍କୁଲ ଓ ସାନ ଝିଅ ହାଇସ୍କୁଲରେ । ସେମାନେ ସାନ ଥିଲାବେଳେ ଅହଲ୍ୟାର ଜଞ୍ଜାଳ ବହୁତ ଥିଲା । ଗାଧୋଇବା; ଖୁଆଇବାଠୁଁ ନେଇ ତାଙ୍କୁ ପୋଷାକ ପିନ୍ଧେଇ ସ୍କୁଲକୁ ପଠେଇବା ପାଇଁ ତାଙ୍କ ପଛେ ପଛେ ଧାଇଁବାକୁ ପଡୁଥିଲା ଅହଲ୍ୟାକୁ ।

ଅହଲ୍ୟା ନିଜେ ମା' ହେଇ ନାହିଁ, ସଂସାର କରି ନାହିଁ, କିନ୍ତୁ ପିଲାଙ୍କ ଦାୟିତ୍ୱ କିପରି ନେବାକୁ ହୁଏ କହିଲେ ସିଏ ତା' ଉପରେ ଦି'ଘଣ୍ଟା ଭାଷଣ ଦେଇଦେବ । ଛୋଟ ପିଲାଙ୍କ ମୁହଁ ଦେଖି ସେ ତାଙ୍କ ପେଟ ଚିହ୍ନି ପାରେ । ତା'କଥା ମିଛ ହୁଏ ନାହିଁ ।

ପିଲାମାନେ ସାନ ଥିଲାବେଳେ ଖାଇବା ପାଇଁ ହଇରାଣ କରନ୍ତି । ମାନିଦେଈ ଥକିପଡ଼ି କହେ, ''ଅହଲ୍ୟା, ତୁ ଏମାନଙ୍କୁ ନେଇ ବୁଝ । ମୁଁ ପାରିବି ନାହିଁ ।'' ଅହଲ୍ୟା ଗୋଟେ ବଡ଼ ଥାଳିରେ ଭାତ ଓ କଂସାରେ ତରକାରି ଢାଳି ଆଣେ । ପିଲାମାନଙ୍କ ଡେଣା ଭିଡ଼ିଆଣି ସାମ୍ନାରେ ବସାଏ । ଅଦ୍ଭୁତ ଅଧିକାରପଣରେ ଯା' ପାଟିରେ ଗୁଣ୍ଡାଏ ତ ତା' ପାଟିରେ ଗୁଣ୍ଡାଏ ଠେଲିଦିଏ । ଭାତ ପଛକୁ ତରକାରି । ତିନି ତିନିଟି ପିଲା ବସିଥିଲେ ବି କାହାରି ପାଟି ଖାଲି ପଡ଼େ ନାହିଁ । କେହି ଖାଇବାରେ ହେଲା କଲେ ଅହଲ୍ୟା ତା' ପିଠିରେ ଛୋଟିଆ ଖୁନ୍ଦାଟିଏ ଖୁନ୍ଦିଦିଏ । ନ

ହେଲେ କହେ, ''ଏଥର ପିଲାଧରା ବାଲା ଆସିଲେ, ସିଏ ବୁଢ଼ିମାଆଙ୍କୁ କହି ତାକୁ ପିଲାଧରାର ମୁଣାରେ ଦେଇଦେବ ।''

ପିଲାଏ ସବୁବେଳେ ଅହଲ୍ୟା ପାଖେ ପାଖେ ରହନ୍ତି । ଅହଲ୍ୟା ସେମାନଙ୍କୁ କାଠଘୋଡ଼ାଠୁ ନେଇ କଲୁରେଇବେଣ୍ଟ, ବୁଢ଼ୀ ଅସୁରୁଣୀ, ରାଜା ରାମଚନ୍ଦ୍ର, ନଳ ଦମୟନ୍ତୀ ଓ ତଅପୋଇ କଥା କହେ । ବଉଳାଗାଇ ଗୀତ ବୋଲି ଶୁଣାଏ । ପିଲାଏ ସେ ଗପ-ଗୀତ ଶୁଣୁଶୁଣୁ ଖାଇବା ଖାଇ ଦିଅନ୍ତି, ନିଦରେ ଶୋଇପଡ଼ନ୍ତି । ଅହଲ୍ୟା ଟିପେ ଟିପେ ସୋରିଷତେଲ ଆଣି ପିଲାମାନଙ୍କ ଗୋଡ଼ଭଣ୍ଡାରେ ଲଗେଇଦିଏ । କହେ, ''ଦିନସାରା ଧୂଳିବାଲିରେ ଖେଳି ଏଗୁଡ଼ା ଭୂତ ପରି ଦିଶୁଛନ୍ତି ।''

ନିଜେ ଅହଲ୍ୟା ପାଠ ପଢ଼ି ନାହିଁ, କିନ୍ତୁ ଶୁଣି ଶୁଣି ଅନେକ ଗୀତ, ଗପ ଓ କାନ୍ଦଣା ମୁଖସ୍ଥ କରିଛି । ସାହି ପଡ଼ିଶାର ଝିଅ ଝିଆଣୀମାନେ କାନ୍ଦଣା ଶିଖିବା ପାଇଁ ଅହଲ୍ୟା ପାଖକୁ ଆସନ୍ତି । ଆସନ୍ତି ବି ଆଚାର ତିଆରି, ବଡ଼ି ପରା, ବେଣୀ ବନ୍ଧା ଆଉ ରାନ୍ଧଣା ଶିଖିବା ପାଇଁ ।

ଅହଲ୍ୟା ତରତର ପାଦରେ ଆସୁଥିଲା ।

ମାନିଦେଈର ଶାଶୂ ପାଟି କରୁଥିଲେ, ତାଙ୍କର ଠାକୁର ଘର ଏଯାଏଁ ଓଳା ହୋଇନାହିଁ । ଅହଲ୍ୟା କ'ଣ କରିବ ବୋଲି ଯାଉଥିଲା, ସେତିକିବେଳେ ବନମାଳୀ ଆସି ପହଞ୍ଚିଗଲା । ବୁଢ଼ି ଏଥର ଅହଲ୍ୟାକୁ ଛାଡ଼ି ବନମାଳୀକୁ କହିଲେ, ''ହଇରେ ଭଣ୍ଡାରୀ ଟୋକା । ଦିନ ସାରା ଟୋ ଟୋ ବୁଲୁଛୁ । ତୋତେ ପରା କହିଥିଲି, ପାନଗୁଆ ସରି ଯାଇଛି ଆଣି ଦେବୁ ।''

ବନମାଳୀର ଅସଲ ଦାୟିତ୍ୱ ହାଟ ଦୋକାନରେ । କେତେବେଳେ କେମିତି ଏପଟେ ମାଡ଼ି ଆସେ ।

ଅହଲ୍ୟା ମହାନ୍ତି ଘର ଆଡ଼େ ଆଉ ଥରେ ଚାହିଁଲା । ଆଲୁଅ ଜଳିଲାଣି, ଭିଡ଼ ଜମିଲାଣି । ସିଏ ବାହାଘରର ଦୃଶ୍ୟ ପାଖରୁ ଦେଖିବା ଲାଗି ତରତର ପାଦରେ ଯାଉ ଯାଉ କହିଲା, ''ମୁଁ ସାଙ୍ଗେ ସାଙ୍ଗେ ଠାକୁର ଘର ଓଳେଇ ଦଉଛି ମା' ।''

ଗଲାସନ ମହାନ୍ତି ଘରର ବଡ଼ଝିଅ ବାହାଘର ହେଇଥିଲା । ସେ ବାହାଘର ସରିବାର ପନ୍ଦର ଦିନ ପରେ ଯେ ମାନିଦେଈ ନଣନ୍ଦର ବାହାଘର ଠିକ୍ ହୋଇଯିବ ସେକଥା ଅହଲ୍ୟା ଆଦୌ ଚିନ୍ତା କରିପାରି ନ ଥାନ୍ତା । ଯେଉଁଦିନ ସେ ଏକଥାଟି ଶୁଣିଲା ସେଦିନ ତା' ମନ ଖୁସିରେ ନାଚି ଉଠିଲା । ଅନେକ ସମୟ ସେ ଖୁଣ୍ଟଟାକୁ ଧରି ଚକାଭଉଁରି ଖେଳିଲା ଓ ତା'ପରେ ବସିପଡ଼ି ବାହାଘରର ଚିତ୍ର ଦେଖିବାକୁ ଲାଗିଲା ।

ସେତିକିବେଳେ ନିଜର କଥା ମନେ ପଡ଼ିଲା ଅହଲ୍ୟାର ।

କେହି ନ କହିଲେ ବି ସେ ଜାଣିପାରୁ ଥିଲା, ତା'ର ବୟସ ଚଉତିରିଶ କି ପଇଁତିରିଶ ହେବଣି । କେଉଁଦିନ ମାନିଦେଈ ତା' ହେଲେ ଅହଲ୍ୟାର ଘର ସଂସାର ବସେଇବ ? ଏକଥା ଭାବୁ ଭାବୁ ଅହଲ୍ୟା ମନକୁ ଦୃଢ଼ କରିଥିଲା । ଯେମିତି ହେଉ ପଛକେ ସେ ମାନି ଦେଈକୁ ଏକଥା ପଚାରିବ ।

ଅହଲ୍ୟାକୁ ପାଖରେ ଦେଖୁ ଦେଖୁ ମାନିଦେଈଙ୍କର ମନେ ପଡ଼ିଥିଲା, କାଲିରୁ ତାଙ୍କ ବିଛଣା ଚାଦର ସଫା ହେଇଥିଲା, ଏଯାଏଁ ଇସ୍ତ୍ରୀ ହେଇ ନାହିଁ । ଅହଲ୍ୟାର କଥା ତା' ପାଟିରେ ରହିଗଲା । ସେ ବାଟ ଭାଙ୍ଗି ଚାଲିଗଲା ।

ମହାପାତ୍ର ଘରର କାମ ଜଞ୍ଜାଳ ଭିତରେ ବେଳେ ବେଳେ ଯେ ଅହଲ୍ୟା ଥକି ନ ପଡ଼େ ନୁହେଁ । ବେଳେ ବେଳେ ତା'ର ଦେହ ହାତ କଟକଟ କରିଉଠେ । ସେତେବେଳେ ସମସ୍ତେ ଅହଲ୍ୟାର ଦେହ-ପା' ନେଇ ସଚେତନ ହୋଇଉଠନ୍ତି । ମାତ୍ର ଆହା ଚୁ-ଚୁ କଲେ ଘରକାମ ଉଠେ ନାହିଁ । ପାଣି କଳସୀ ଟେକିବା କଥା କହିଲେ ସମସ୍ତେ ଇଏ ତା' ମୁହଁକୁ ସିଏ ତା' ମୁହଁକୁ ଅନାନ୍ତି । ରୋଷେଇ ଘରେ ବିରାଡ଼ି ବୁଲେ । ପିଲାଙ୍କ ଜଳଖିଆ ତିଆରି ହୁଏ ନାହିଁ । ବୁଢ଼ିଙ୍କ ଠାକୁର ଭକ୍ତି ଫୁଲତୋଳା ପାଖରେ ଅଟକି ଯାଏ ।

ମାନିଦେଈ ବ୍ରହ୍ମାସ୍ତ୍ର ପ୍ରୟୋଗ କରନ୍ତି । ନିଜେ ପିନ୍ଧାଲୁଗାକୁ ଅଣ୍ଟାରେ ଗୁଡ଼େଇ ଝାଡୁଟେ ଧରି ଘର ଓଳେଇବାକୁ ବାହାରନ୍ତି । ସେ ଦୃଶ୍ୟ ଅହଲ୍ୟା ଦେଖିପାରେ ନାହିଁ । ସିଏ କତରାଲଗା ଅବସ୍ଥାରୁ ଧାଇଁ ଆସେ । କମ୍ବଳ ଟାକୁ ଫୋପାଡ଼ି ଦେଇ ମାନିଦେଈଙ୍କ ହାତରୁ ଝାଡୁଟା ଛଡ଼େଇ ନିଏ । ତା' ମା' ମାନିଦେଈ ବୋଉକୁ ଦେଇଥିବା କଥା ମନେପଡ଼େ । ସେ ବଞ୍ଚି ଥାଉଁ ଥାଉଁ ମାନିଦେଈକୁ କାମ କରିବାକୁ ଦେବ ନାହିଁ । ସେଇ ତା'ର ବାପ ମା'ସବୁ । ତା'ର ବର୍ତ୍ତମାନ, ଭବିଷ୍ୟତ । ଡେରି ହେଲେ ପଛେ ହେଉ, ସେଇ ମାନିଦେଈ ତ ତା'ଘର ସଂସାର ବସେଇ ଦେବ ବୋଲି କଥା ଦେଇଛି ।

ରୋଗକଥା ଭୁଲି ନିଜ ଘର ସଂସାରର ଚିତ୍ର ଦେଖିବାରେ ଲାଗିଯାଏ ଅହଲ୍ୟା । କେମିତି ହେଇଥିବ ସେ ଘର, କିପରି ମଣିଷ ହୋଇଥିବେ ତା'ର ବର, ତା'ର ଶାଶୂ-ଶ୍ୱଶୁର, ଦିଅର ଓ ନଣନ୍ଦ । ସେମାନଙ୍କ ଘରଦ୍ୱାର, କ୍ଷେତଖଳା, ବାଡ଼ିବଗିଚା ସବୁକଥାର ଗୋଟି ଗୋଟି ଚିତ୍ର ଆଙ୍କିଯାଏ ଅହଲ୍ୟା । ହାତର ଝାଡୁ ଘର ଓଳଉଥାଏ, ସାବୁନ ଲୁଗା ସଫା କରୁଥାଏ, ପାଦ ବଗିଚାର ମାଟି ସମତୁଲ କରୁଥାଏ, ମାତ୍ର ମନ ନୂଆ ସଂସାରର ଚିତ୍ର ଆଙ୍କୁଥାଏ ।

କେତେ ଯେ ସ୍ୱପ୍ନ ଅହଲ୍ୟାର ! ଆକାଶରେ ଏତେ ତାରା ବି ନ ଥିବେ ।

ମାନିଦେଈ ନଣନ୍ଦର ବାହାଘର ପାଇଁ ଗଲାସନ ସମସ୍ତେ ବ୍ୟସ୍ତ ଥିଲେ । ଶାଶୂଙ୍କଠୁଁ ନେଇ ସାନ ପିଲାଙ୍କଯାଏ । ବୁଢ଼ି ବେଶୀ ବ୍ୟସ୍ତ ହେଉଥିଲେ, କାରଣ ଏଇ ତାଙ୍କର ଶେଷ ଝିଅ । ତା'ବାହାଘରରେ କୌଣସି ତ୍ରୁଟି ରଖିବାକୁ ସେ ଚାହୁଁ ନ ଥିଲେ ।

ବାହାଘର ସରିଗଲା । ଚଉଠି, ଅଷ୍ଟମଙ୍ଗଳା, ବାରତିଥି, ସାବିତ୍ରୀ, ରଜ ସବୁ ସରିଗଲା । ସବୁଥର ପର୍ବପର୍ବାଣି ଆସିଲେ ଅହଲ୍ୟାର ଜଞ୍ଜାଳ ବଢ଼େ । ଗରମ କଡ଼େଇର ତେଲ ଛିଟାରେ ହାତ ଫୋଟକା ହୁଏ, ପାଣି ସରସର ହାତ ପାଦରେ ପାଣିକନ୍ଦା ହୁଏ । ଚୁଲୀ ପାଖରେ ବସି ବସି ଅଣ୍ଟା ଧରେ । କିନ୍ତୁ କାମ ଜଞ୍ଜାଳରୁ ଫୁରୁସତ୍‌ର ରାସ୍ତା ନ ଥାଏ । ଅଧରାତିକୁ, ନୂଆଁଣିଆ ଚାଳ ଛପର ଘରେ ସଉପ ପାରି ଫାଁ ଗାଳି ପଡ଼ିଯାଏ ଅହଲ୍ୟା । ଅମୁହାଁ ଘରଟାର ଭିତର ଗୁମୁରୁ ଥାଏ ତା' ଭିତରେ ଅହଲ୍ୟାର ଅପୂର୍ଣ୍ଣ ଇଚ୍ଛା ସବୁ ମିଶିମାଶି ତାକୁ ରୁନ୍ଧି ଦିଅନ୍ତି । ଅହଲ୍ୟା ସେଇ ଗୁମ୍ ସୁମ୍ ଘର ଭିତରେ ଆଖି ବୁଜିଦିଏ ।

ଗଲାଥର ମାନିଦେଈ ନିଜଆଡୁ କହିଥିଲେ, ''ସବୁ କାମ ସରିଆସିଲାଣି । ନଣନ୍ଦ ବିଦା ହୋଇଗଲେ । ଏବେ ମୀନା ବାହାଘର ସରିଗଲେ ଅହଲ୍ୟା ଫୁଲନୋଳ ପିନ୍ଧିବ । ତା' ଘର ସଂସାର ସେ ବସେଇବ ।''

ଅହଲ୍ୟା ଏଇ କଥା ପଦକ ଶୁଣିବା ପାଇଁ କେତେ ବର୍ଷ ଅପେକ୍ଷା କରି ନ ଥିଲା । ବୟସ ଗଡ଼ି ଯାଇଥାଉ ପଛକେ, ସବୁ ଆଶା ସରି ନାହିଁ ।

ସେ ମୀନାର ମୁହଁକୁ ଅନେଇଲା । ମାନିଦେଈର ବଡ଼ଝିଅ । ମାନିଦେଈ ବାହା ହେବାର ଦି'ବର୍ଷ ପରେ ମୀନାର ଜନ୍ମ । ଅହଲ୍ୟା ତା'ଠୁଁ ବାର ତେର ବର୍ଷ ବଡ଼ ହେବ । ବାହା ହୋଇଥିଲେ ତା'ର ବି ହୁଏତ ଦଶବର୍ଷର ପୁଅ କି ଝିଅଟିଏ... ।

ଆଗକୁ ଆଉ ଚିନ୍ତା କରେ ନାହିଁ । ଅହଲ୍ୟାକୁ ତା' ବୋଉ କହିଥିଲା, ଆଗତ ଚିନ୍ତା କଲେ ଈଶ୍ୱର ରାଗି ଯାଆନ୍ତି । ମଣିଷର ଯୋଜନାକୁ ଭଣ୍ଡୁର କରିଦିଅନ୍ତି ସେଇ ରାଗରେ ।

ଏ ବର୍ଷ ମୀନା ପାଇଁ ପାତ୍ର ଖୋଜା ତଥାପି ଚାଲିଛି । ସେଦିନ ମହାନ୍ତିଘର ବୁଢ଼ା ଡାକିବାକୁ ଆସିଥିଲା ବେଳେ କଥା ପଡ଼ିଥିଲା । ଗଲା ବର୍ଷ ତ ଆଗପଛ ହୋଇ ଦି ସାହିର ଦି'ଝିଅ ଗଲେ । ଏଥର ବି ଦେଖ, କାଳେ ମୀନା ବାହାଘର ଆମ ଝିଅ ବାହାଘର ପରେ ପରେ ଠିକଣା ହେଉଛି !

ବାବୁ ତାଙ୍କୁ କିଛି କହି ନ ଥିଲେ । ଉପରକୁ ଅନେଇ କହିଥିଲେ, ସବୁ ଜଗନ୍ନାଥଙ୍କ ଇଚ୍ଛା ।

ଅହଲ୍ୟା ଲୁଗା ବଦଳେଇ ଧୁଆପୋଛା ହେଲା । ବାହାଘରର ସ୍ୱପ୍ନକୁ ପାଲଟା ଲୁଗା ସାଙ୍ଗରେ ବଦଳେଇ ଦେଲା । କୂଅପାଣିରେ ଧୋଇ ଛଡ଼େଇ ଦେଲା ସ୍ୱପ୍ନ ବେଦୀର ସବୁତକ ହୋମବାସ୍ନା । ତୁଳସୀ ଚଉରା ପାଖେ ସଞ୍ଜବତି ଜାଳିଲାବେଳେ ସେ ପ୍ରାର୍ଥନା କଲା, ''ମା' ବୃନ୍ଦାବତୀ, ଆମ ମୀନାର ବାହାଘର ଭଲ ଜାଗାଟିରେ ଲାଗିଯାଉ ।''

ବୃନ୍ଦାବତୀ କ'ଣ ଉତ୍ତର ଦେଲେ ଅହଲ୍ୟା ଜାଣେ ନାହିଁ । ସଞ୍ଜବତିକୁ ଥରେଇ ଦେଇ ଦଲକାଏ ପବନ ବହିଗଲା । ସେ ପଣତକାନି ବେକରେ ଗୁଡ଼େଇ ଓଳଗି ହେଲା ।

ଅହଲ୍ୟା କୂଅ ପାଖ ପଥର ଉପରେ ଆସି ବସି ପଡ଼ିଲା । ଆଜି ରୋଷେଇ ବନ୍ଦ । ଆଉ ଟିକକୁ ସମସ୍ତେ ମହାନ୍ତିଘର ଭୋଜି ଖାଇବାକୁ ଯିବେ । ମାନିଦେଈ ତାଙ୍କ ଝିଅକୁ ସୁନାମୁଦି ଦେଇ ବନ୍ଦେଇବେ ।

ପଥର ଉପରେ ନଖରେ ଗାର ଟାଣୁଥିଲା ଅହଲ୍ୟା । ତାକୁ ବି ମାନିଦେଈ ଦେବେ ସୁନାହାର, ସୁନାମୁଦି । ଅନେକଥର ସେକଥା ତାକୁ ସେ କହିଛନ୍ତି । ସେ ବି ଗଢ଼ିବ ଗୋଟେ ନୂଆ ଘରକରଣା । ନୂଆ ସଂସାର ।

କୂଅ ମୂଳର ପଥରଟା ଅନେକ ଦିନୁ ଏଇଠି ପଡ଼ିଛି । ତା' ଚାରିପାଖ ଘାସ ଡଙ୍କେଇଛି । ତଳର ଘାସଗୁଡ଼ାକ ଯାହା ମରିଯାଉଛି । ଏହାରି ଉପରେ ଅହଲ୍ୟାର ଲୁଗାକଚା, ଗାଧୁଆ, ବସଉଠ ସବୁ ।

କେଉଁଦିନୁ ପଥରଟା ଏଠି ପଡ଼ିଛି କେଜାଣି । ବୋଧହୁଏ ଅହଲ୍ୟା ଏ ଘରକୁ ଆସିବା ଆଗରୁ ।

## ।। ଦୁଇ ।।

ଶୁଭ କାଉଟି ଅଧକାନ୍ଥି ଉପରେ ବସି ସକାଳ ପହରୁ କା କା କରୁଥିଲା । ଅହଲ୍ୟା ରୋଷେଇ ଘରୁ ମୁଠାଏ ଚାଉଳ ନେଇ ତିନି କୁଢ କରି ରଖିଦେଲା । ଶୁଭ କାଉ ଉଡ଼ିଆସି ଗୋଟାଏ କୁଢ଼ରୁ ଚାଉଳ ଖୁମ୍ପେ ନେଇ ଉଡ଼ିଗଲା । ଅହଲ୍ୟା କହିଲା, ''ଆଜି କୁଣିଆ ଆସିବେ ।''

ଦିନ ଏଗାରଟା ପାଖାପାଖି କୁଣିଆ ଆସି ପହଞ୍ଚି ଥିଲେ । ସେମାନେ ଥିଲେ ଚାରିଜଣ । ଜଣେ ବୁଢ଼ାଲୋକ, ଆଉ ତିନିଜଣଙ୍କ ବୟସ ତାଙ୍କଠାରୁ କମ୍ ।

ଅହଲ୍ୟା ସେମାନଙ୍କୁ ଚା', ସର୍ବତ ଦେଲା ।

ଖରାବେଳ ଖିଆ ପାଇଁ ରୋଷେଇବାସର ବରାଦ ଦେଲା ମାନିଦେଈ ।

ବଡ଼ମାଛ କାଟି ଝୋଳ କଲା ଅହଲ୍ୟା । ନଡ଼ିଆ ପକେଇ ଡାଲ୍‌ମା, ଗୋଟା ଭେଣ୍ଡି ଓ ବାଇଗଣ ଭଜା, ଖଜୁରି ଖଟା, ଚୁନାମାଛ ଚୁଡୁଚୁଡା ଓ ବଡ଼ିଭଜା ।

କୁଣିଆ ଫେରିଗଲେ । ଯିବା ବେଳକୁ ସମସ୍ତେ ଖୁସି ଖୁସି ଦିଶୁଥିଲେ ।

ମାନିଦେଈ ଅହଲ୍ୟାର ହାତ ଧରି କହିଲା, ''ବଡ଼ ଭାଗ୍ୟ ଲୋ ଅହଲ୍ୟା, ପାଟପୁରର ଦାସ ମହାପାତ୍ର ଘରେ ମୀନାର ବାହାଘର ଠିକଣା ହେଲା ।''

ଅହଲ୍ୟା ଖୁସିରେ କାନ୍ଦି ପକେଇଲା ।

ଦଉଡ଼ି ଯାଇ ଖବରଟା ସାହିପଡ଼ିଶାରେ ଦେଇ ଆସିଲା । ମାନିଦେଈର ଶାଶୂ କହିଲେ, ''କିଲୋ ଏମିତି ଧପାଉଛୁ କାହିଁକି ? ମୀନା ବାହାଘର ସାଙ୍ଗରେ ତୁ ବି ବାହା ହୋଇ ପଡ଼ିବୁ ନା କ'ଣ ?''

ସେଦିନ ତା' ସଉପ ଚଟେଇ ଉପରେ ଚିତ୍ ହୋଇ ଶୋଇ ଅହଲ୍ୟା ଅନେକ ରାତି ପର୍ଯ୍ୟନ୍ତ କ'ଣ ସବୁ ଭାବିହେଲା । ଯେତେ ଚେଷ୍ଟା କଲେ ବି ନିଦ ହେଲା ନାହିଁ । ସେ ଏମିତି ଚିନ୍ତିତ ହୋଇ ପଡୁଥିଲା ଯେମିତିକି ତା' ହାତରେ ସମୟ କମ୍ ଓ କାମ ବେଶୀ । କେଉଁଟା ଆଗେ କରିବ ଆଉ କେଉଁଟା ପଛେ କରିବ ସେକଥା ସେ ସ୍ଥିର କରିପାରୁନଥିଲା । ଖୋଲା ଦୁଆର ବାଟେ ହାବୁକା ହାବୁକା ପବନ ବୋହି ଆସୁଥିଲା, ସେ ପବନ ତାକୁ ଶୁଆଇ ଦେଉ ନଥିଲା, ବରଂ ଚିଆଁଇ ଦେଇଯାଉଥିଲା ।

କେତେ ବର୍ଷ ଯେ ଏହି ଘରଟା ଭିତରେ ସେ ବିତେଉ ଦେଲାଣି । ଏବେ ତା'ର ଭାଗ୍ୟ ଫିଟିବ । ସେ ଏଠୁ ମୁକ୍ତି ପାଇବ । ନୂଆ କରି ତା'ର ଛୋଟିଆ ସଂସାର ଗଢ଼ିବ । ସେ ସଂସାରରେ ବଡ଼ଘର ନ ଥାଉ, ନ ଥାଉ ବଡ଼ ବାଡ଼ିବଗିଚା, ଗାଈଗୋରୁ, ଧାନ-ବିରି, ତଥାପି ସେ ଭାଙ୍ଗି ପଡ଼ିବ ନାହିଁ । ଘରଚଟିଆ ଚଢ଼େଇ ପରି କୁଟା କାଠି ଗୋଟେଇ ପଲାଟିଏ ଗଢ଼ିବ । ସେଇ ପଲା ଭିତରେ ଜାଉ ତିଅଣ ରାନ୍ଧି ତା' ବର ଓ ପିଲାଙ୍କୁ ଖୁଆଇବ । ସେଇ ଭଲ, ସେଇଥିରେ ତା'ର ଶାନ୍ତି । ତା'ର ଆତ୍ମା ମୋକ୍ଷ ପାଇଯିବ ।

ମୀନାର ବାହାଘର ପାଇଁ ନିର୍ବନ୍ଧ ଧରାହେଲା ।

ତା'ପରେ ଅନୁକୂଳ । ମଙ୍ଗଳପାକ । ବରଧରା ଗଲା ବର ପାଇଁ । ବର ଆସିଲା । ବେଦୀ ଉପରକୁ ଧୀର ପାଦରେ ଗଲା ମୀନା । ହାତଗଣ୍ଠି ପଡ଼ିଲା ବର ସାଙ୍ଗରେ ।

ସାରା ଗାଁଟାଯାକ ବାହାଘର ଦେଖି ତାଟକା ହେଲେ । କ'ଣ ଯାନିଯୌତୁକ ନ ଦେଉଛନ୍ତି ମହାପାତ୍ର ବାବୁ ? ଦାସ ମହାପାତ୍ର ଘରର ବୁନିଆଦି କିଏ ନ ଜାଣିଛି ?

ସମୁଦୀ ମେଳଣ ସରିଗଲା । ଏବେ ବରକନ୍ୟା ଦହି ପଖାଳ ଖାଇବେ । ଦିନସାରା ଉପବାସ, ତା' ସାଙ୍ଗକୁ ହୋମନିଆଁ ତାତି ।

ଅହଲ୍ୟାର ଗୋଡ଼ ତଳେ ଲାଗୁ ନ ଥାଏ । ସମସ୍ତେ ସବୁ କାମରେ ତାକୁ ଲୋଡୁଥାନ୍ତି । ସିଏ ଯେମିତି ଘରର ପରିଚାରିକା ନୁହେଁ, କର୍ତ୍ତ୍ରୀ ।

କେଉଁ ଏକ ଅଦ୍ଭୁତ ଉତ୍କଣ୍ଠାରେ ଅହଲ୍ୟା ଦେହର ଶ୍ରମକୁ ଭୁଲି ଯାଉଥାଏ । ସେ ନ ଚାହିଁଲେ ବି ବାରମ୍ବାର ମୀନା ଜାଗାରେ ନିଜେ ବେଦୀ ଉପରେ ବସିଥିବା ପରି ତାକୁ ଦେଖାଯାଉଥାଏ । ସେ ଲାଜରେ ଆଖି ବୁଜି ଦେଉଥାଏ ।

ବରଗାଡ଼ି ଦାଣ୍ଡରେ ଠିଆ ହୋଇଛି ।

ଆଉ ଅଧଘଣ୍ଟା ପରେ ବରକନ୍ୟା ବିଦା ହେବେ ।

ଅହଲ୍ୟା ପଣତକାନିରେ ଲୁହ ପୋଛୁଥିଲା । ମାନିଦେଈ ଥରକୁ ଥର ମୂର୍ଚ୍ଛା ଯାଉଥିଲା । କାଲିଠୁଁ ଏ ଘର ଅଲଗା ଲାଗିବ ।

ମାନିଦେଈ ବର ତାକୁ ଖୋଜି ଖୋଜି ଆସି ତା' ପାଖରେ ଛିଡ଼ା ହେଲେ । ଡାକିଲେ, ''ତୁ କୁଆଡ଼େ ଗଲୁ କିଲୋ ଅହଲ୍ୟା, ମାନି ଖୋଜୁଛି ପରା ।''

ମାନିଦେଈ ଖଟ ଉପରେ ଅସାଢ଼ ହୋଇ ପଡ଼ିଥିଲା ।

ଅହଲ୍ୟା ଯାଇ ଡାକିଲା, ''ମୋତେ ଖୋଜୁଥିଲ ଦେଈ ?''

ମାନିଦେଈ ଉଠି ବସିଲା । ଆଖିରୁ ଲୁହ ପୋଛି ଅହଲ୍ୟାର ହାତ ଧରି ପକେଇ କହିଲା, ''ତୁ ଏଇ ହାତରେ ମୀନାକୁ ବଢ଼େଇଛୁ । ତାକୁ ଚାଲି ଶିଖେଇଚୁ ତୁ, ଦଉଡ଼ା ଶିଖେଇଛୁ ତୁ ।''

: ଇଏ କ'ଣ ଗୋଟାଏ ବଡ଼ କଥା ?

: ତୋ ଋଣ ମୁଁ ଏ ଜୀବନରେ ସୁଝିପାରିବି ନାହିଁ ଲୋ ଅହଲ୍ୟା, ଜୀବନରେ ସୁଝି-ପାରିବି ନାହିଁ ।

ଅହଲ୍ୟା କିଛି କହିଲା ନାହିଁ । ମାନିଦେଈ କାହିଁକି ସୁଝି ପାରିବେ ନାହିଁ । ସେ ତ ଆଉ କିଛି ଦିନ ପରେ ସୁଧମୂଳ ସବୁ ପରିଶୋଧ କରିଦେବେ ।

ବାହାରପଟୁ ବାବୁଙ୍କ ଡାକ ଶୁଭିଲା, ''ଅହଲ୍ୟା ସଜ ହେଲାଣି ନା ନାହିଁ ? ତାକୁ ଆଗରୁ କିଛି କହି ନ ଥିଲ କି ?''

ମାନିଦେଈ ଉତ୍ତର ଫେରେଇଲେ, ''ହଁ, ହଁ ସେ ଯାଉଛି'' ଓ ଅହଲ୍ୟାକୁ କହିଲେ, ''ମୋ ବୋଉ ମୋତେ ତୋ ଜିମାରେ ଦେଲା ପରି ମୁଁ ଆଜି ମୋ ମୀନାକୁ ତୋଅରି ଜିମାରେ ଦେଉଛି । ତୁ ତା' ସଂସାର ସମ୍ଭାଳି ନେଲେ ସିଏ ତୋ ସଂସାର ଗଢ଼ିଦେବ ।'' ତା'ପରେ ମୁଣ୍ଡ ପାଖରେ ଥୁଆ ହୋଇଥିବା ଶାଢ଼ି ଥାକରୁ ଗୋଟେ ନୂଆ ଶାଢ଼ି ଆଣି ବଢ଼େଇ ଦେଇ କହିଲେ, ''ନେ, ଏଇଟା ପିନ୍ଧ । ଘରୁ ବାହାରି ଗଲାବେଳେ ପୁରୁଣା ପୁରୁଣି ପିନ୍ଧି ଯାଆନ୍ତି ନାହିଁ ।''

ଅହଲ୍ୟା ଚମକି ପଡ଼ିଲା । ତା' ପାଦତଳୁ ଘରଟାର ଚଟାଣ ସତେ କି ଦୁଇ ହାତ ତଳକୁ ଖସିଗଲା । ସେ କିଛି କହିପାରିଲା ନାହିଁ ।

ମାନିଦେଈ କହୁଥିଲା, ''ମୁଁ ସିନା ପେଟ ଚିରି ତାକୁ ଜନ୍ମ ଦେଇଛି, କିନ୍ତୁ ତୁ ତ ତା'ର ସବୁ ଅଳି ଅର୍ଦଳି ସହିଛୁ । ତୋ ବିନା ସେ ପାହୁଣ୍ଡେ ବାଟ ବି ଚାଲିପାରିବ ନାହିଁ । ସିଏ ତୋତେ ଲାଗିଲା ଲୋ ଅହଲ୍ୟା ।'' ତା'ପରେ ସେ ପୁଣି କାନ୍ଦିଲା ।

ଅହଲ୍ୟାକୁ ଆଉ କିଛି ଶୁଭୁ ନ ଥିଲା । ଦାଣ୍ଡ ଅଗଣାର ଗୋଳଚହଳ, କନ୍ଦାକଟା, ପାଣିତୁଣ୍ଡ କିଛି ଶୁଭୁ ନ ଥିଲା । ସେ ଦଉଡ଼ି ଦଉଡ଼ି ତା' ଚାଳିଆ ଘରକୁ ପଳେଇ ଆସି କବାଟଟା ଆଉଜେଇ ଦେଲା । ଅନ୍ଧାରିଆ ଘରଟା ଭିତରେ ଖାଲି ସିଏ ଓ ତା'ର ବର୍ଷ ବର୍ଷର ଅବଶୋଷ । ତା'ର ଲୁହ ଆଉ ଦୀର୍ଘଶ୍ୱାସ । ସେ କାନ୍ଥକୁ ଆଉଜି ଅସରା ପରେ ଅସରା କାନ୍ଦି ଚାଲିଲା । ତା' ଲୁହରେ ଚାଳଘରର ମାଟିକାନ୍ଥ ବତୁରି ଗଲେ ବି ତା' ମନସାଧ ମେଣ୍ଟୁ ନଥିଲା ।

ସଉପ ଚଟିଆ ଉପରେ ତା'ର ଲୁଗାପଟା, ଅଇନା ଓ ପାନିଆ । ଘରର କୋଣକୁ ଗୋଟିଏ ଭଙ୍ଗା ଟ୍ରଙ୍କ । କେବେ ବି ଚାବି ପଡୁ ନଥିବା ସେଇ ଟ୍ରଙ୍କ ଭିତରେ ତା'ର ଦୁନିଆଯାକର ସ୍ୱପ୍ନ ।

: ଅହଲ୍ୟା, ଅହଲ୍ୟା-ବନମାଳୀ ଡାକୁଥିଲା ।

ଆଖିର ଲୁହକୁ ପଣତ କାନିରେ ପୋଛି ଅହଲ୍ୟା ଜବାବ ଫେରେଇଲା, ''କ'ଣ ?''

: ସିଆଡ଼େ ସମସ୍ତେ ପରା ତୋତେ ଖୋଜୁଛନ୍ତି । ବରକନ୍ୟା ବାହାରିଲେଣି ।

ବରକନିଆ ଗାଡ଼ି ପଛରେ ଛିଡ଼ା ହୋଇଥିଲା ଗୋଟିଏ ମିନି ଟ୍ରକ୍ । ତାଆରି ଡାଲାରେ ମୀନା ବାହାଘରର ଯାନି ଯଉତୁକ; ଖଟଠୁଁ ନେଇ ଶିଳାଚକି, ଆଲମାରିଠୁଁ ନେଇ ଗିଲାସ ଓ ବାସନ କୁସନ, ଟି.ଭି.-ଫ୍ରିଜ୍, ଲୁଗାଧୁଆ ମେସିନ୍ । ଘରର ଲୋକେ ଝିଅ ବିଦା ବେଳର କାନ୍ଦଣା କାନ୍ଦୁଥିଲେ, ସାହି ପଡ଼ିଶା ଓ କୁଣିଆମାନେ ଯାନି ଯଉତୁକର କୁଡ଼କୁ ପ୍ରଶଂସା କରୁଥିଲେ । ତାଆରି ଭିତରେ, ସମସ୍ତଙ୍କର ଅଲକ୍ଷ୍ୟରେ ଗୋଟେ କନା ଝୁଲାରେ ନିଜର ଲୁଗାପଟା ଦି'ଖଣ୍ଡ ପୂରେଇ ଡ୍ରାଇଭର ପାଖ ସିଟ୍‌ରେ ଦୂରଛଡ଼ା ହୋଇ ବସିଲା ଅହଲ୍ୟା; ସତେ କି ରକ୍ତ ମାଂସର ମଣିଷ ନୁହେଁ କାଠ ପଥରର ଗୋଟାଏ ଜିନିଷ । ପୁରୁଣା ଲୁଗା ଉପରେ ନୂଆ ଶାଢ଼ିଟାକୁ ଖାଲି ଢାଙ୍କି ଦେଇଥିଲା ।

ଗାଡ଼ି ଆଗକୁ ଗଡ଼ି ଚାଲିଲା ।

ପଛରେ ରହିଗଲା ମହାପାତ୍ର ଘର । ସଦର ଦରଜାର ଚଉଁରା । ବାଡ଼ିପଟର କୂଅ । କୂଅମୂଳର ପୁରୁଣା ପଥର । ପୁରୁଣା ପଥର ତଳେ ଗୋଟେ ଯୁବତୀ ଝିଅର ମଉଳା ଉଜୁଡ଼ା ସ୍ୱପ୍ନ ପରି ଗୋଛାଏ ମଳା ଘାସ, ଯାହାର କଥା କେହି ବୁଝନ୍ତି ନାହିଁ ।



# ମର୍ମଦାହ

## ବିଜୟାନନ୍ଦ ସିଂହ

ସତ୍ୟ, ନିଷ୍ଠା, ସାଧୁତାର କ'ଣ ମୂଲ୍ୟ ? ଏସବୁ ଆଜିକାଲି ପୋଥି ବାଇଗଣ ହୋଇ ଗଲାଣି । ବାସ୍ତବିକ୍ ଏହାର ସବୁଫଳ କ'ଣ ? କେଉଁଥି ପାଇଁ ଏସବୁର ଅନୁସରଣ କରିବେ ? ଭାବିଚାଲିଥିଲେ ଦେବ ପ୍ରକାଶ । ସବୁ କଥାକୁ ପ୍ରତ୍ୟାଖ୍ୟାନ କଲାପରେ ସେ ନିଜ ଅନୁଭୂତିକୁ କେବେହେଲେ ଆଉ ଏଡେଇ ଦେଇ ପାରିବେନି । ଦୁଃଖ କଷ୍ଟର ସୀମା ଅଛି ।

ଦିନ ଗୋଟାଏ ହେଲାଣି । କୋରାପୁଟ ସହରର ଶେଷ ମୁଣ୍ଡରେ ଥିବା ନିଛାଟିଆ ଜାଗାରେ ଇଞ୍ଜିନିୟର ଦେବ ପ୍ରକାଶ ପଟ୍ଟନାୟକଙ୍କ ଅଫିସ୍ । ଆଜି ଅଫିସ୍‌ରେ ଲୋକ ଭିଡ ନାହିଁ । ପିଅନଟି ସବୁଦିନ ଅଫିସ୍ ଦୁଆର ମୁହଁରେ ଅଫିସରଙ୍କ କଲିଙ୍ଗ୍ ବେଲ୍‌କୁ ଅପେକ୍ଷା କରି ବସିଛି । ଫାଇଲ୍ ସବୁ ଗଦା ଗଦା ଥୁଆ ହୋଇଛି, ହେଲେ ଆଜି ଦେବ ପ୍ରକାଶ ନିଜ ଅଞ୍ଚଳରୁ ଦୂରରେ ରହି ଚିନ୍ତା କରୁଛନ୍ତି- ତାଙ୍କ ଗନ୍ତବ୍ୟ ପଥ କ'ଣ ଭୁଲ୍ ? ତାଙ୍କ ଚଲାପଥ କ'ଣ ଦୁର୍ଗମ ରାସ୍ତାରେ ପରିଣତ ହେଲା ? ତାଙ୍କ ଜୀବନ ଆକାଶରେ କ'ଣ କଳା ବାଦଲ ଢାଙ୍କି ଦେଲା ?

ଆଠ ଦିନ ତଳେ ରାଜ୍ୟ ସରକାରଙ୍କ ଚବିଶ ଘଣ୍ଟିଆ ବଦଳି ଆଦେଶ ପାଇ ଇଞ୍ଜିନିୟର ଦେବ ପ୍ରକାଶ ପଟ୍ଟନାୟକ ସୁଦୂର ସମ୍ବଲପୁରରୁ କୋରାପୁଟକୁ ବଦଳି ହୋଇ ଆସିଛନ୍ତି । ହେଲେ କ'ଣ ହେଲା । ଚାକିରି ମାତ୍ରେ ତ ବଦଳି । ଚାକିରି ତ ତାଳ ଗଛର ଛାଇ । ବଦଳିକୁ ଯେ ଡରିବ ସେ ଚାକିରି କାହିଁକି କରିବ ? ମନେ ପଡୁଛି ସେ ଯେଉଁଦିନ ଚାକିରି ଆରମ୍ଭ କରିଥିଲେ ସେହିଦିନ ପ୍ରଥମେ ସରକାରଙ୍କ ନିକଟରେ ଚୁକ୍ତିନାମା କରିଥିଲେ । ଚୁକ୍ତିନାମାରେ ଲେଖିଥିଲା– "ଓଡିଶାର ଯେକୌଣସି ସ୍ଥାନରେ ନିଷ୍ଠାପର ଭାବରେ ସାଧୁତାର ସହ ସରକାରୀ କାର୍ଯ୍ୟ ସମ୍ପାଦନ କରିବେ ।" ଏସବୁ କ'ଣ ସେ ଭୁଲି ଯାଇଛନ୍ତି ? ହେଲେ ପୁଣି ଚିନ୍ତା, ଭାବନାଗୁଡା ଦେବ ପ୍ରକାଶଙ୍କୁ ଅଡୁଆରେ ପକାଇ ଦେଲା । ଗୋଟିକ ପରେ ଗୋଟିଏ ସ୍ମୃତି ସବୁ ମାନସପଟରେ ଝଲସି ଉଠିଲା । ଦୀର୍ଘଦିନ ହେବ ତାଙ୍କ ସ୍ତ୍ରୀଙ୍କ ଅସନ୍ତୋଷ । ବନ୍ଧୁ ବାନ୍ଧବଙ୍କ ସମାଲୋଚନା । ସାଙ୍ଗସାଥୀଙ୍କ କଟୁ ମନ୍ତବ୍ୟ । କେଉଁଥି ପାଇଁ ?

ଦେବ ପ୍ରକାଶଙ୍କ ମୁଣ୍ଡରେ ସବୁ ସ୍ମୃତିଗୁଡା ଏକାବେଳେକେ ଉଦ୍‌ବେଳିତ ହୋଇ ଉଠିଲା । ଇଞ୍ଜିନିୟର ପଟ୍ଟନାୟକ କୋରାପୁଟର ଚାରିକାନ୍ଥ ଘେରା ଘର ଭିତରେ ବସିଥିଲେ ମଧ୍ୟ ତାଙ୍କ ମନଟା ତାଙ୍କ ଘର କଟକ ଜିଲ୍ଲାର ବନ୍ୟାପ୍ଳାବିତ ଅଞ୍ଚଳଠାରୁ ଆରମ୍ଭ କରି, ତାଙ୍କ ଛାତ୍ରଜୀବନ, ବାପାଙ୍କ ମୃତ୍ୟୁ ସହ ଚାକିରି ଜୀବନର ଐତିହାସିକ ପନ୍ଦର ବର୍ଷ କଥା ଗୋଟିଏ ପରେ ଗୋଟିଏ ସ୍ମୃତି ପଟରେ ଉଙ୍କି ମାରିଲା । ସେ ଯେତେବେଳେ ପଞ୍ଚମ ଶ୍ରେଣୀର ଛାତ୍ର ତାଙ୍କ ଗାଁ ନାଳିଆପଦା ନିକଟରେ ଥିବା ନଦୀରେ ବଡ ଧରଣର ବନ୍ୟା ଦେଖାଦେଲା । ବନ୍ୟା ପାଣିରେ ଘର ଭାଙ୍ଗିଗଲା । ନିଜର ମା'କୁ ନଈ ପାଣି ସବୁଦିନ ପାଇଁ ସାଥି କରିନେଲା । ବନ୍ୟାପରେ ସଂସାରରେ ନିଜ ବାପା ଛଡା ଆଉ କେହି ନିଜର ନଥିଲେ । ମା'ର ମୃତ୍ୟୁ ସବୁଦିନ ପାଇଁ ମନରେ ଅସରନ୍ତି ଦୁଃଖ ସୃଷ୍ଟି କରିଛି । ଠିକ୍ ମନେ ଅଛି ସ୍କୁଲ ଛୁଟି ପରେ ସାଙ୍ଗ ସାଥୀମାନେ ଘରକୁ ଫେରି ବୋଉ ବୋଉ

ଡାକି ଘର ଭିତରକୁ ପଶି ଯାଆନ୍ତି । ଲୁହ ଭିଜା ଆଖିରେ ସେ ଘର ଭିତରକୁ ପଶୁ ପଶୁ କେଉଁଦିନ ଘୋଡା ହୋଇଥିବା ଖାଦ୍ୟ ଖାଆନ୍ତି ତ କେଉଁଦିନ କାମକୁ ଯାଇ ନଥିବା ଦିନ ମଜୁରିଆ ବାପା ତାଙ୍କର ଲୁହ ପୋଛି କହନ୍ତି "ଦେବରେ ତୁ ମଣିଷ ହୁଅ । ଏହି ବନ୍ୟା ଆମ କାଳ ହେଲା । ତୋ ବୋଉ ଗଲା । ଫସଲ ଗଲା । ଜମିରେ ବାଲି ଚରିଗଲା ।" ନଈ ବଢିର କାରଣ ସମ୍ପର୍କରେ ସେଦିନ ଦେବ ପ୍ରକାଶ ବାପାଙ୍କୁ ପ୍ରଶ୍ନ ପଚାରିଥିଲେ । ଶିକ୍ଷକଙ୍କୁ ପ୍ରଶ୍ନ ପଚାରିଥିଲେ । ସାଇ ପଡିଶାକୁ ପ୍ରଶ୍ନ ପଚାରିଥିଲେ । ସେ ଉତ୍ତର ପାଇଲେ ଯେ ଗାଁ ପାଖରେ ସରକାରଙ୍କ ଦ୍ୱାରା ନିର୍ମିତ ନଦୀବନ୍ଧ ଭାଙ୍ଗିଗଲା । ଗାଁରେ ବନ୍ୟାଜଳ ପଶିଗଲା । "ବର୍ଷେ ହେବ ସରକାର ତ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରି ବନ୍ଧ ବାନ୍ଧିଥିଲେ । ବନ୍ଧ କାହିଁକି ଭାଙ୍ଗିଗଲା ? ଦେବ ପ୍ରକାଶ ପଚାରିଲେ । ଗାଁର ବୁଢାପା କହିଲେ "କାନତରାଟି ବାବୁ ମାଟି ମଦଳରେ ବାଲିରେ ଘେରି ବନ୍ଧ ବାନ୍ଧି ଉପରେ ମାଟି ଛିଞ୍ଚି ଦେଲେ । ଇଞ୍ଜିନିୟର, ମନ୍ତ୍ରୀ, ଏମ୍.ଏଲ୍.ଏ. ବନ୍ଧକୁ ଦେଖି କାନ ତରାଟି ବାବୁଙ୍କ କାର୍ଯ୍ୟକୁ ତାରିଫ୍ କଲେ । କାନତରାଟି ବାବୁ କୁଆଡେ ଚାଲିଗଲେଣି । ସେ ଅଫିସର ସବୁ ଚାଲିଗଲେଣି । ହେଲେ ଆମର ବହୁ ଦିନର ପରିକଳ୍ପିତ ବନ୍ଧକୁ ପାଣି ଭସାଇ ନେଲା ।" ବାଳକ ଦେବ ପ୍ରକାଶ ପ୍ରଶ୍ନ କରିଥିଲେ ସେ କନ୍‌ଟ୍ରାକ୍ଟର କ'ଣ ଏତେ ଲୋକଙ୍କ ଆଖିରେ ଧୂଳିଦେଇ ଚାଲିଗଲା ? ସରକାର କ'ଣ ପଦକ୍ଷେପ ନେଲେନି ?

ବୁଢାପା କହିଲେ 'ଖବର କାଗଜରେ ବାହାରିଥିଲା, ଆମ ବନ୍ଧ ଭାଙ୍ଗିବା ସମ୍ପର୍କରେ ସରକାର ତଦନ୍ତ କମିଶନ ବସାଇଛନ୍ତି ।"

ସେହିଦିନୁ ଶିଶୁ ଦେବ ପ୍ରକାଶ ପ୍ରତିଜ୍ଞା କରିଛନ୍ତି ଇଞ୍ଜିନିୟର ହେବେ । ଠିକ୍‌ଭାବେ ବନ୍ଧ ବାଡ ତିଆରି କରିବେ । ନ୍ୟାୟ ଓ ସତ୍ୟ ଉପାୟରେ ନିଜକୁ ଗଢିବେ । ସବୁଦିନ ତାଙ୍କ ମନରେ ପ୍ରତିଧ୍ୱନିତ ହୁଏ ତାଙ୍କ ମାଆ ଓ ନିଜ ଗାଁର ଗରିବ, ସାଇପଡୋଶୀଙ୍କ କଥା । ତାଙ୍କ ମନରେ ସ୍ପଷ୍ଟ ନାଚିଉଠେ ବାପା, ଦାଦା, ସାଇ ପଡୋଶୀଙ୍କ ନିର୍ଜଳା ଉପବାସ, କଇଁନାଡ, ସଜନାଶାଗ ସିଝା କଥା ।

ଶ୍ରେଣୀରେ ପାଠ ପଢିଲା ବେଳେ ସେ ଶୁଣିଥିଲେ "ଗାନ୍ଧିଜୀ ଅହିଂସା ଉପାୟରେ ଭାରତ ବର୍ଷକୁ ସ୍ୱାଧୀନ କରି ସାରା ପୃଥିବୀରେ ଏକ ନୂତନ ଦିଗ୍‌ଦର୍ଶନ ସୃଷ୍ଟି କରିଥିଲେ । ଶତ୍ରୁ ସେନାବାହିନୀରେ ସଜ୍ଜିତ ପରାକ୍ରମଶାଳୀ ଇଂରେଜ ଶକ୍ତିକୁ ଗାନ୍ଧିଜୀ ସତ୍ୟ ଓ ନ୍ୟାୟ ଅସ୍ତ୍ରରେ ପରାଜିତ କରିଥିଲେ ।"

ସେକଥା ଆଜିପର୍ଯ୍ୟନ୍ତ ନିଜ ମନମନ୍ଦିରରେ ଠିକ୍ ଭାବେ ସଂରକ୍ଷିତ ଅଛି ।

ସେ ମାଟ୍ରିକ ପାଶ୍ କଲାପରେ ଦୁଇମାଣ ଜମିରୁ ବାପା ପାଖ ଗାଁର ସାହୁକାର ପାଖରେ ମାଣେ ଜମି ବନ୍ଧା ପକାଇ ପଇସା ଆଣି ପାଠ ପଢାଇ ଥିଲେ । ବାପା କହୁଥିଲେ "ଦେବ, ସଂପତ୍ତି ଯାଉ, ମୋ ଜୀବନ ଯାଉ ତୁ ସତ୍ ଉପାୟରେ ମଣିଷ ହୁଅ ।" ଦୈନନ୍ଦିନ ମଜୁରୀରୁ ଫେରିଥିବା ପିତାଙ୍କର କଳାକାଠ ମୁହଁକୁ ଦେଖି ଦେବ ପ୍ରକାଶ ଆବାକ୍ ହେଉଥିଲେ ।

ଠିକ୍ ମନେ ପଡୁଛି ସେଦିନ ଆଉ ଛଅଗୁଣ୍ଠ ଜମିକୁ ବାପା ବିକ୍ରୀ କରି ନିଜ ହାତରେ ଦେବ ପ୍ରକାଶକୁ ଟଙ୍କା ଦେଇ ଭୋ, ଭୋ କରି କାନ୍ଦି ପକାଇଲେ, କହିଲେ "ଦେବରେ ତୁ ତୋ ସାଧ ମତେ ପିତୃ ଅର୍ଜିତ ଜମି ଫେରାଇବୁ ଓ ଗାଁକୁ ବନ୍ୟା ପ୍ରକୋପରୁ ରକ୍ଷା କରି ଗାଁ ମାଟିକୁ ଶସ୍ୟ ଶ୍ୟାମଳା ଜମିରେ ପରିଣତ କରିବୁ । ତୁ ବଡ ଅଫିସର ହୋ ।"

ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ସବୁକଥା ତାଙ୍କ ଆଖି ଆଗରେ ନାଚି ଯାଉଛି । ବାପା ତାଙ୍କର ଦଶବର୍ଷ ହେବ ଇହଧାମ ତ୍ୟାଗ କଲେଣି । ବାପାଙ୍କ ସ୍ୱପ୍ନକୁ ପୂର୍ଣ୍ଣ କରିବାକୁ ଅକ୍ଷମ ସେ । ଏବେ ତାଙ୍କର ବାପାଙ୍କ କଥା ବାରମ୍ବାର ମନେ ପଡୁଛି ।

ବାପା କହିଥିଲେ-

"ସତ୍ୟନିଷ୍ଠା, ଆଦର୍ଶ ଜୀବନ ଯାପନ କରିବୁ ।"

"ମୋ ପିତୃଅର୍ଜିତ ଜମିକୁ ଫେରାଇ ଆଣିବୁ, ବନ୍ୟା ଦାଉରୁ ରକ୍ଷାକରି ଶସ୍ୟ ଶ୍ୟାମଳା କ୍ଷେତ୍ରରେ ପରିଣତ କରିବୁ ।"

ଦେବ ପ୍ରକାଶ ନିଜ ଡାଇରୀର ପ୍ରଥମ ପୃଷ୍ଠାରେ ଦୁଇଟିଯାକ ବାପାଙ୍କ ଇଚ୍ଛାକୁ ଲେଖି ରଖିଛନ୍ତି ।

ସେ ତେବେ କେଉଁ ଇଚ୍ଛାକୁ ପାଳନ କରିଛନ୍ତି ? ଆଜି ତ ସେ ଇଞ୍ଜିନିୟର । ପୁରୀରୁ ବଦଳି ହୋଇ ଆସିଲା ପରେ ନିଜ ସ୍ତ୍ରୀ ସୋନା ବାରମ୍ବାର ଗାଳି ଦେଇଛି । ମନରେ ଦ୍ୱନ୍ଦ୍ୱ ସୃଷ୍ଟି କରିଛି ।

ପାଖ ଗାଁର ଅନୁପମ ବାବୁ ତାଙ୍କ ବାଲ୍ୟ ସାଥୀ । ସେ ଦୁହେଁ ସାଙ୍ଗ ହୋଇ ଇଞ୍ଜିନିୟରିଂ ପାଠ ପଢୁଥିଲେ । ଏବେ ଅନୁପମ ବାବୁ କଟକକୁ ଆସିଛନ୍ତି କେନ୍ଦ୍ରାଞ୍ଚଳ ସର୍କଲର ସୁପରିନ୍‌ଟେଣ୍ଡିଂ ଇଞ୍ଜିନିୟର ହୋଇ । ଗାଁରେ, କଟକରେ, ରାଜଧାନୀରେ ନିଜର କୋଠାବାଡି, ନିଜର ପୁଣି କାର୍, ସ୍କୁଟର, ଟିଭି, ଫ୍ରିଜ୍ କେତେ କ'ଣ...

ଆଉ ସେ-

ସହଧର୍ମିଣୀ ସୋନା ବହୁଥର ଅନୁପମ ବାବୁଙ୍କ ଉଦାହରଣ ଦେଇ କହିଛି "କ'ଣ ମିଳିବ ଆମର ସେ ସାଧୁତାରୁ, ନିଷ୍ଠାରୁ । ଇଞ୍ଜିନିୟର ହୋଇ ଖଣ୍ଡେ ଭଲ ପିନ୍ଧିବାକୁ କି ଭଲ ଖାଇବାକୁ ମିଳୁନି । କେତେ ଯେ ଦରମା ମିଳିବ । ସେଥିରେ ପୁଣି ଛଅ ଜଣର ପରିବାର ଚଳିବ । ଏଇ କେତେଦିନ ଚାକିରି କାଳରେ ଆଠଥର ବଦଳି ।

ବର୍ଷେ ତଳେ ବନ୍ଧୁ ସୁରେଶ ତାଙ୍କ ବସା ଘରକୁ ଯାଇ ଜଣେ କଣ୍ଟ୍ରାକ୍ଟର ବନ୍ଧୁଙ୍କର ମଧ୍ୟସ୍ଥତା କରି କହିଥିଲେ- "ଦେବ ପ୍ରକାଶ ! ତୁ ଶ୍ୟାମା ଚରଣଙ୍କ ବିଲ୍ ପାସ୍ କରିଦେ, ତୁ ସମସ୍ତ ଅର୍ଥର ଚାଳିଶ୍ ଭାଗ ପାଇବୁ । ରାସ୍ତା ହେଲେ କେତେ, ନ ହେଲେ କେତେ । ତୋର କ'ଣ ଯାଉଛି । ତୁ ଆଜି ଏଠି ଅଛୁ, କାଲି ପୁଣି ଅନ୍ୟ ଜାଗାକୁ ଯିବୁ । ତୁ ଦେଖୁନୁ ପାଖ ସାଇପଡିଶା ବନ୍ଧୁଙ୍କୁ । ଆରେ କମ୍ପାନିକା ମାଲ, ଦରିଆମେ ଡାଲ । ଆରେ ଏ ପା' ସରକାରକା ମାଲ । ଯାରତ ମା, ବାପା ନାହିଁ ।"

ଦେବ ପ୍ରକାଶ ମନକୁ ବୁଝାଇ ଏକ ଦୀର୍ଘନିଶ୍ୱାସ ପକାଇ କହିଲେ- "ବନ୍ଧୁ ସୁରେଶ ତୁ ମୋତେ ଖରାପ ବୁଝନା । ମୁଁ ମୋ ନୀତିରେ ସ୍ଥିର, ଅବିଚଳିତ । ସେ ଯେଉଁ ଶକ୍ତି ବା ଯେତେ ସମ୍ପର୍କୀୟ ହେଉନା କାହିଁକି, ଯେ ଜନସମାଜର ସ୍ୱାର୍ଥକୁ ବ୍ୟାହତ କରୁଛି ସେ ମୋର ଶତ୍ରୁ । ସେମାନେ ମାନବ ସମାଜର ଦୁଷ୍ଟବ୍ରଣ, କଳଙ୍କ । ମୁଁ ସେ କଣ୍ଟ୍ରାକ୍‌ଟର ଶ୍ୟାମା ଚରଣଙ୍କର ବିଲ୍ ପାସ୍ କରି ପାରିବିନି । କଣ୍ଟ୍ରାକ୍ଟର ତା' ଦୋଷ ପାଇଁ ଉପଯୁକ୍ତ ଦଣ୍ଡ ପାଇବ ।" ସୁରେଶ ବହୁଥର ବହୁ ଉପାୟରେ ବିଭିନ୍ନ ଆକର୍ଷଣର ଆଳ ଦେଖାଇ କାମ ହାସଲ କରିବାକୁ ଚେଷ୍ଟା କଲା । କିନ୍ତୁ ଇଞ୍ଜିନିୟର ତାଙ୍କ ନିଷ୍ପତ୍ତିରେ ଅଟଳ ।

ସୁରେଶ ଫେରି ଯାଇଥିଲେ ବିଫଳ ମନୋରଥ ହୋଇ ।

ଦୁଇଦିନର ଅନ୍ତରାଳରେ ଚିଫ୍ ଇଞ୍ଜିନିୟରଙ୍କ ନିର୍ଦ୍ଦେଶ "ଶ୍ୟାମା ଚରଣଙ୍କ ବିଲ୍ ଠିକ୍ ମୁତାବକ କରିଦିଅ ।" ନମ୍ରତା ସହ ପ୍ରତ୍ୟାଖ୍ୟାନ କରିଥିଲେ ସେ ।

ତିନିଦିନ ପରେ ଇଞ୍ଜିନିୟର ଦେବ ପ୍ରକାଶ ପଟ୍ଟନାୟକଙ୍କ ବଦଳି ହୋଇଥିଲା । ପୁରୀରୁ ସମ୍ବଲପୁରକୁ । ସମ୍ବଲପୁର ଆସିବାର ଦଶଦିନପରେ ବନ୍ଧୁ ସୁରେଶର ଏକ ଚିଠି ଇଞ୍ଜିନିୟର ପାଇଥିଲେ- ଚିଠିଟିରେ ଲେଖାଥିଲା, "ତୁ ଏଥର ବୁଝିଲୁ ତ, ନୂଆ ଏସ୍.ଡି.ଓ. ଶ୍ୟାମାଚରଣର ବିଲ୍ କରିଦେଲେ । ତ' କ'ଣ ପାଇଲୁ, ତୋର ଲାଭ କ'ଣ ହେଲା ? ପୁରୀରୁ ସୁଦୂର ସମ୍ବଲପୁର ।"

ସେହି ଏକା କଥା । ସେହି ଏକ ସମସ୍ୟାର ସମ୍ମୁଖୀନ ହୋଇଛନ୍ତି । ସେଦିନ ନିଜ ଚିଫ୍ ଇଞ୍ଜିନିୟର କହିଥିଲେ ଆଜି ସେହି ବିଭାଗର ମନ୍ତ୍ରୀ । ଫୋନରେ ନୁହେଁ ନିଜେ କହିଲେ "ଏସ.ଡି.ଓ. ସାହେବ ! ସବୁ ବନ୍ଧ, ସବୁ ରାସ୍ତାର ବିଲ୍ କରିଦିଅ । କାମ ହେଉ ବା ନ ହେଉ ।"

ଡାକବଙ୍ଗଳାରେ କେହି ନାହାନ୍ତି—ମନ୍ତ୍ରୀ ଆଉ ଇଞ୍ଜିନିୟର ଦେବ ପ୍ରକାଶ ପଟ୍ଟନାୟକ । ମନେ ପଡିଲା—ଗତକାଲି ସକାଳେ ସଂପୃକ୍ତ ରାସ୍ତାର କଣ୍ଟ୍ରାକ୍ଟରମାନେ ଆସି ସେହି ରାସ୍ତାର ବିଲ କରିଦେବା ପାଇଁ ଅନୁରୋଧ କରିଥିଲେ । ସୋନାକୁ ଏକଲକ୍ଷ ଟଙ୍କା ଦଶଜଣ କଣ୍ଟ୍ରାକ୍ଟର ଦେଇଥିଲେ । ସେ ଅଫିସରୁ ଫେରି ଖାଇବା ଥାଳି ପାଖରେ ସୋନିଆ ଠାରୁ ସମ୍ବାଦ ଜାଣି ଉଠି ଯାଇଥିଲେ- ଆଲମାରି ଆଡକୁ- ଟଙ୍କା ଥାକଟାକୁ ଖୁବ୍ ଜୋରରେ ଟାଣିଆଣି ଅଗଣାକୁ ଫିଙ୍ଗି ଦେଇଥିଲେ ।

ବାପାଙ୍କ ସ୍ମୃତି- ଡାଇରୀର ପ୍ରଥମ ପୃଷ୍ଠା ମନ ଆଗରେ ନାଚି ଉଠିଲା । ସଙ୍ଗେ ସଙ୍ଗେ ପିଅନ ପଠାଇ- ସଂପୃକ୍ତ କଣ୍ଟ୍ରାକ୍ଟରମାନଙ୍କୁ ଡାକି ଟଙ୍କା ସବୁ ଫେରାଇ ଦେଇଥିଲେ—ରୋକ୍‌ଠୋକ୍ ଭାବେ ଶୁଣାଇଥିଲେ, ଉପଯୁକ୍ତ କର୍ମ ପାଇଁ ଉପଯୁକ୍ତ ଶିକ୍ଷା ପାଇବ ।"

କିନ୍ତୁ ବର୍ତ୍ତମାନ- ସଂପୃକ୍ତ ବିଭାଗର ମନ୍ତ୍ରୀ ଅର୍ଥାତ୍ ଲୋକପ୍ରତିନିଧି କହୁଛନ୍ତି । ସାମ୍ବିଧାନିକ ନିୟମ ଅର୍ଥାତ୍ ସରକାରଙ୍କ ପକ୍ଷରୁ ନିର୍ଦ୍ଦେଶ । ସେ କ'ଣ କରିବେ ? ମୁଣ୍ଡ ଟାଇଁ, ଟାଇଁ ହୋଇଗଲା । କିଛି ସମୟ ଡାକ ବଙ୍ଗଳାଟି ନୀରବ, ନିସ୍ତବ୍ଧ ହୋଇଗଲା ।

ମନ୍ତ୍ରୀ କହିଲେ- "ଏସ୍.ଡି.ଓ. ସାହେବ ! ତୁମେ ଏ ବିଲ୍ ସବୁ କରିଦିଅ । ତୁମର ପ୍ରମୋସନ ହେବ । ନିଜ ଇଚ୍ଛା ଅନୁଯାୟୀ ସ୍ଥାନ ନିରୁପଣ କର । ସେଠାକୁ ତୁମକୁ ବଦଳି କରି ଦିଆଯିବ ।"

ପିଲାଦିନ କଥାଗୁଡା ପୁଣି ମନକୁ ଆସିଲା । ଗାନ୍ଧୀଜୀଙ୍କ ସ୍ୱପ୍ନର ଭାରତ ବର୍ଷ । ତା'ର ଏ କି ଅବସ୍ଥା । ମନରେ ସ୍ପନ୍ଦନ ଦେଖାଦେଲା—ଭାରତବର୍ଷ କୁଆଡେ ପୃଥିବୀର ବୃହତ୍ତମ ଗଣତାନ୍ତ୍ରିକ ରାଷ୍ଟ୍ର । କ'ଣ ସେ କରିବେ ?

"ସେ ବିଲ୍ କରି ହେବନି ସାର୍, ଆପଣ ଦୟାକରି ଅବସ୍ଥାକୁ ବୁଝନ୍ତୁ । ଉକ୍ତ ରାସ୍ତା, ବନ୍ଧ, ବାଡର କଣ୍ଟ୍ରାକ୍ଟରମାନେ ଶତକଡା କୋଡିଏ ଭାଗ କାମ କରି ନାହାନ୍ତି ।"- ଇଞ୍ଜିନିୟର ଧୀର ସ୍ଥିର ଭାବେ କହିଥିଲେ ।

"ଏଗୁଡା ସବୁ ଥିଓରି କଥା—ସ୍ୱାଧୀନତା ପରଠାରୁ ମୁଁ କେତେ ରାସ୍ତା ଏମିତି ବିଲ ହେବା ଦେଖିଛି । ସବୁ ତ ଦେଶ ଟଙ୍କା । କଣ୍ଟ୍ରାକ୍ଟର ନେଲେ ତ ଟଙ୍କା ଦେଶରେ ରହିବ ରାସ୍ତା ହେଲେ ଟଙ୍କା ଦେଶରେ ଖର୍ଚ୍ଚ ହେବ, କ'ଣ ବିଦେଶୀ ଏ ଦେଶର ଟଙ୍କା ନେଇ ଯାଉଛନ୍ତି ? ମୁଁ ବିଭାଗୀୟ ମନ୍ତ୍ରୀ ଏ ବିଭାଗର ସର୍ବୋଚ୍ଚ ଶାସନ କର୍ତ୍ତା । ବିଲ୍ କରିବାକୁ ହେବ ।"

ଏସ୍.ଡି.ଓ. ପଟ୍ଟନାୟକ ଅସମ୍ମତି ପ୍ରକାଶ କରିଥିଲେ ।

ମନ୍ତ୍ରୀ ତୁମ୍ଭି ତୋଫାନରେ ଚାଲି ଯାଇଥିଲେ ଗାଡି ଭିତରକୁ । ଗାଡି ଚାଲି ଯାଇଥିଲା ଖୁବ୍ ଜୋରରେ ରାଜଧାନୀ ଅଭିମୁଖେ ।

ଗାଡିର ନାଲି ଧୂଳିରେ ଦେବ ପ୍ରକାଶ ବାବୁ ଧୂଳି ଧୂସରିତ ହୋଇଗଲେ । ଭାରାକ୍ରାନ୍ତ ମନ ନେଇ ଘରକୁ ଫେରିଥିଲେ ।

ତା' ପରଦିନ ଚବିଶ ଘଣ୍ଟିଆ ବଦଳି ନିର୍ଦ୍ଦେଶ ପାଇଥିଲେ କୋରାପୁଟର ସେହି ଜନଶୂନ୍ୟ ଅଞ୍ଚଳରେ ଥିବା ଅଫିସକୁ ।

ଆଖିରେ ଲୁହଗୁଡା ଜକେଇ ଗଲାଣି । କେମିତି ସେ ଜୀବନ ସଂଗ୍ରାମ କରିବେ । ସେ କ'ଣ ତାଙ୍କ କର୍ତ୍ତବ୍ୟ ପଥରୁ ଟଳି ପଡିବେ ? ସୋନାର ସବୁଦିନ କଳି–ବଡ ଝିଅର ବାହାଘର ହେବ । ସୋନା କଥାକୁ ସେ କ'ଣ ପ୍ରତ୍ୟାଖ୍ୟାନ କରି ଭୁଲ୍ କରିଛନ୍ତି ?

ଚିନ୍ତା ଉପରେ ଚିନ୍ତା ମାଡି ଚାଲିଛି, ମୁଣ୍ଡ ଭିତରେ ଠିକ୍ ରେଳ ଗଲାପରି । କାନ୍ଥ ଘଣ୍ଟା ଠନ୍ ଠନ୍ ବାଜି ଉଠିଲା–ରାତି ଆଠଟା ହେବାର ସୂଚନା ଦେଲା । ଅଫିସ ପାଖ ବସାରୁ ସାନ ପୁଅ ପାଟିକରି ଉଠିଲା "ବାପା, ବାପା ।" ଦେବପ୍ରକାଶ ପଟ୍ଟନାୟକ ପ୍ରକୃତିସ୍ଥ ହେଲେ, ନିଜ ପକେଟରୁ ରୁମାଲଟି ବାହାର କଲେ ଲୁହ ଉଦ୍ଦେଶ୍ୟରେ ।



# ତର୍ପଣ

## ପ୍ରକାଶ କୁମାର ପରିଡ଼ା

ଅଦ୍ୟ କାର୍ତ୍ତିକ ମାସ ଶୀତପକ୍ଷ ନବମ୍ୟା ତିଥୌ ତ୍ରିବେଣୀ ସଂଗମେ ମମପିତା ହରେକୃଷ୍ଣ ବର୍ମଣ ପ୍ରେତାୟ...

ନଭେମ୍ବର ମାସର ନଅ ତାରିଖ ଶୀତ ସକାଳ ପ୍ରତ୍ୟୟର ସାଧାରଣ ସ୍ୱାସ୍ଥ୍ୟ ଶରୀରକୁ ରୋମାଞ୍ଚିତ ଓ କମ୍ପିତ କରିଦେବା ପାଇଁ ଯଥେଷ୍ଟ ଥିଲା । ତଦୁପରି ସେ ଗଙ୍ଗା, ଯମୁନା, ସରସ୍ୱତୀର ପବିତ୍ର ତ୍ରିବେଣୀ ସଂଗମ ପ୍ରୟାଗରାଜର ହିମଶୀତଳ ଜଳରେ ଥରଟିଏ ପୂର୍ଣ୍ଣସ୍ନାନ ସାରି ସେତେବେଳେ ଅଣ୍ଟାଏ ଜଳରେ ଛିଡାରହି ଦୁଇ ଯୁକ୍ତପାପୁଲିରେ ସାମାନ୍ୟ ତିଳ, ସୁବର୍ଣ୍ଣ, ପୁଷ୍ପ ଓ ଫଳ ଧାରଣ କରିଥିଲା । ତା'ର ବାପାଙ୍କ ସୂକ୍ଷ୍ମ ଶାରୀରିକ ରୂପକୁ ମାନସ ସ୍ତରରେ ନିର୍ମାଣ କରି ତାଙ୍କୁ ସାମନାରେ ଉପଗତ କରାଇଥିଲା । ଯଜୁର୍ବେଦୀ ବ୍ରାହ୍ମଣର ଅଭିମନ୍ତ୍ରଣକୁ ଅପେକ୍ଷା ରଖି ଦୁଇମିନିଟ୍ ବିତାଇ ସାରିଥିଲା । ଏଣୁ ସେ ପ୍ରାୟ ଥରୁଥିଲା ।

ଯେତେବେଳେ ବ୍ରାହ୍ମଣଙ୍କ ଉଦାତ୍ତ ଉଚ୍ଚାରଣରେ ପରମପାବନୀ ସଂଗମର ଇଥର୍‌ରେ ଧ୍ୱନିର ତରଙ୍ଗ ଅଦୃଶ୍ୟ ଆତ୍ମା ଉଦ୍ଦେଶ୍ୟରେ ଆବାହନ ଓ ସଂସ୍ଥାପନର ସନ୍ଦେଶ ଧରି ପ୍ରସରିଯାଉଥିଲା- ସେତିକିବେଳେ ସେ ଶୁଣିଥିଲା... ''ହରେକୃଷ୍ଣ ପ୍ରେତାୟ...'' ।

ନିଜ ବାପାଙ୍କ ନାମପାଖରେ ପ୍ରେତ ପଦଟିକୁ ପ୍ରତ୍ୟୟ ଆଦୌ ସ୍ୱୀକାର କରିପାରିଲା ନାହିଁ । ଏଭଳି ଅଶୁଭ ଓ ହୀନ ସ୍ଥିତିଟି ତା'ବାପାଙ୍କୁ ପ୍ରାପ୍ତ ହୋଇଥିବ ବୋଲି ସେ ବିଶ୍ୱାସ କରିପାରେ ନାହିଁ । ଏଣୁ ଶ୍ଳୋକାଂଶଟି ପୁନରାବୃତ୍ତି କରିବାରେ ସେ ଦ୍ୱିଧାଗ୍ରସ୍ତ ହୋଇପଡିଲା ।

ସେ ତଥାପି ତା'ର ମୁଦା ଦୁଇ ଆଖି ଖୋଲିଲା ନାହିଁ; ତା' ମାନସପ୍ରସ୍ତୁତ ବାପାଙ୍କ ସୂକ୍ଷ୍ମ ରୂପଟି ଇତସ୍ତତଃ ହୋଇଯିବା ଆଶଙ୍କାରେ ।

ପଣ୍ଡିତଙ୍କ ଶ୍ଳୋକକୁ ଅଗ୍ରାହ୍ୟ କରି ସେ ସ୍ୱତଃ ପ୍ରେରିତ ଭାବେ କହି ଉଠିଲା–"ବାପା ! ମୋ ପରି ପୁଅ ଆପଣଙ୍କୁ ଆଉ କୌଣସି ଜନ୍ମରେ ନ ମିଳୁ । ଆପଣଙ୍କ ପରି ବାପା, ନା ନା ଆପଣ ହିଁ ବାପା ରୂପେ ମୋତେ ପ୍ରତି ଜନ୍ମରେ ମିଳୁଥାନ୍ତୁ ।"

କଇଁକଇଁ ହୋଇ କାନ୍ଦୁକାନ୍ଦୁ ପ୍ରତ୍ୟୟ ଅନୁନାସିକ କଣ୍ଠରେ ଏତକ ବ୍ୟକ୍ତ କରିଥିଲା । ଏତକକୁ ମନ୍ତ୍ର ରୂପେ, ଆତ୍ମସ୍ୱୀକାରୋକ୍ତି ରୂପେ, ଆତ୍ମନିବେଦନ ରୂପେ ପ୍ରକାଶ କରି ସେ ଆଞ୍ଜୁଳିରେ ତିଳ, ସୁବର୍ଣ୍ଣ, ପୁଷ୍ପ ଓ ଫଳରେ ଶ୍ରାଦ୍ଧାର୍ଘ୍ୟ ପୁଷ୍ପାଞ୍ଜଳି ଦେବା ରୀତିରେ ନିବେଦନ କରିଦେବାକୁ ଯାଇ "ଏତିକିରେ ସନ୍ତୁଷ୍ଟ ହୁଅନ୍ତୁ ବାପା, ମୁଁ ଅଧମ ଏହାଠାରୁ ଅଧିକ କିଛି ଦେଇପାରୁ ନାହିଁ" କହି ଆଖି ଖୋଲି ସେଇ ବାପା ରୂପଟିକୁ ଚାହିଁଦେଲା । ଏବେ ତା' ସମ୍ମୁଖରେ ଗଙ୍ଗାର ବିଶାଳ ବକ୍ଷରେ ସକାଳର ସୂର୍ଯ୍ୟକିରଣ ଝଲମଲ କରିଉଠୁଥିଲା । ଚୂନାଚୂନା ଲହରୀର ପିଠି ଉପରେ ସୁନାରଙ୍ଗର ପ୍ରଲେପ ଦେଲା ପରି ଓ ଭଙ୍ଗତରଙ୍ଗରେ ରୁପାର ଆଉଟା ଧାର ବହିଯିବା ପରି ବିଚିତ୍ର ରଙ୍ଗଶୋଭା ତା'ର ସୌନ୍ଦର୍ଯ୍ୟ ପିପାସୁ ମନକୁ କବଳିତ କରିନେଲା ।

ଆଖିର ପତା ଖୋଲି ଯାଉଯାଉ ଦୂରରେ ଗଙ୍ଗାତଟରେ ବାଲୁକାରାଶି, ବନ୍ଧ ଓ ବନ୍ଧ ଉପର ବୃକ୍ଷଲତାର ଛାୟାଚ୍ଛନ୍ନ ରୂପ ତା' ଚେତନାରେ ପବିତ୍ରତା, ସ୍ନିଗ୍ଧତା ଓ କୋମଳତାର ପରିଭାଷା ସୃଷ୍ଟି କରିଯାଉଥିଲା । ଗଙ୍ଗାବକ୍ଷରୁ ଚଢେଇମାନଙ୍କ ଐକ୍ୟତାନ, ଆକାଶଦେଶରୁ ମାଛରଙ୍କାର ଅତର୍କିତ ଲମ୍ଫଦାନ ଓ ପୁନରୁତ୍‌ଥାନ, ଆହୁଲାର ଛପାକ୍‌ଛପାକ୍ ତାନ, ନାଉରିଆର ଅବୋଧ ଅଥଚ ଆକର୍ଷଣୀୟ ଧୁନ୍, ସମାଗତ ଯାତ୍ରୀଙ୍କ ବ୍ୟସ୍ତ ବିବ୍ରତତା ଓ ପଣ୍ଡାଙ୍କ ଅଭ୍ୟସ୍ତ ଉଚ୍ଚାରଣୀ ପ୍ରଭୃତି ଦୃଶ୍ୟ, ଶବ୍ଦ, କୋଳାହଳର ଆବହୱା କେଇକ୍ଷଣ ପାଇଁ ତା'ର ପିତୃଗତ ଚେତନାରୁ ସୁଦ୍ଧା ପୃଥକ୍ କରିଦେଲା ।

ଏ ଧରା ଏତେ ସୁନ୍ଦର ! ଏତେ ମନୋହର ! ଏତେ ଆଦରମୟ ! ଏ ଆକାଶ କେତେ ନୀଳ ! ସେ ନୀଳିମାରେ କେତେ ଶିହରଣ ! ଏ ଜଳରାଶି କେତେ ସ୍ୱଚ୍ଛ ! ସେ ସ୍ୱଚ୍ଛତାରେ କେତେ ବିଶ୍ୱସ୍ତତା ! କେତେ ଜୀବନ୍ମୟ ଏ ପରିବେଶ !

ପୃଥିବୀର ଏ ପ୍ରିୟ ପରିବେଶ ତେଜି ମଣିଷ ସତରେ କ'ଣ ଚାଲିଯାଏ ? ମରିଯାଏ ? ମରି ହଜିଯାଏ ?- ପ୍ରତ୍ୟୟ ନିଜକୁ ପ୍ରଶ୍ନ କଲା ।

ନିଜ ପ୍ରଶ୍ନର ଉତ୍ତରରେ ପ୍ରତ୍ୟୟ ଭାବିଲା—ନା, ମଣିଷ ଏ ଧରାର ଜୀବନମଣ୍ଡଳ ବାହାରକୁ ନିଶ୍ଚୟ ଚାଲିଯାଉ ନଥିବ । ନିଶ୍ଚୟ ଏକ ଅବ୍ୟକ୍ତ ଅନୁକ୍ତ ଆବେଗରେ ସେ ଏ ଧରାମୁଲକରେ ଘୂରି ବୁଲୁଥାଏ । ଜଠର ଖୋଜୁଥିବ, ଜନ୍ମାନ୍ତର ଖୋଜୁଥିବ । ଜରାଗ୍ରସ୍ତ କି ଉପେକ୍ଷିତ ଶରୀରଟାକୁ ବ୍ୟାକୁଳରେ ଖୋଜୁଥିବ । ସମ୍ପାଦିଥିବା ଧନ, ଭାବିଥିବା ଯୋଜନା, ଦେଇଥିବା ବଚନ ଓ ପାଇଥିବା ପ୍ରତିଶ୍ରୁତିର ଯଥା ବିନିଯୋଗ ପାଇଁ ବିବ୍ରତ ହୋଇପଡୁଥିବ ।

ଆଦରରେ ତାକୁ କେହି ଲୋଡୁଥିବାର ଆଶା, କେହି ଅନାଦର ପ୍ରକାଶ କରୁଥିବାର ଆଶଙ୍କା ତାକୁ ପୁନଃପୁନଃ ତାହାର ପରୀକ୍ଷା ନେବାକୁ ଲୋକାଳୟର ପରିଧି ଭିତରକୁ ଟାଣି ଆଣୁଥିବ ।

ମୋ ଅନୁପସ୍ଥିତିରେ କେମିତି ଚାଲିଛି ମୋ ଘର, ବନ୍ଧୁଘର, ଗ୍ରାମ, ଅନୁଷ୍ଠାନ ?- ମୃତ ବ୍ୟକ୍ତିଟି ନିଶ୍ଚୟ ଭାବନା କରୁଥିବ ।

ସେ ନିଶ୍ଚୟ ବିବ୍ରତ ହୋଇ ଭାବୁଥିବ—ପୁଅ କ'ଣ କରୁଚି, ଯିଏ ସବୁକଥାକୁ ମୋ ଉପରେ ପକାଇଦେଇ ବୁଲେ ?

ପତ୍ନୀ କ'ଣ କରୁଛି, ଯିଏ ଥରେ ହାତ ଧରାଇ ଦେଇଥିଲା ବୋଲି ସବୁ ଦାୟିତ୍ୱ ଅର୍ପଣ କରି ସବୁ କର୍ତ୍ତବ୍ୟ ଗ୍ରହଣ କରି ନିଶ୍ଚିନ୍ତ ରହିଥିଲା, ନିଶ୍ଚିନ୍ତ କରିଥିଲା ? ଥରଟିଏ ପଚାରି ନଥିଲା— କେତେ ଦରମା ପାଅ, ଥରଟିଏ ମାଗି ନଥିଲା ଗହଣା ବକଟେ ଦିଅ ।

ଝିଅ କ'ଣ କରୁଛି, ଯିଏ ସୁନ୍ଦର ଓ ସ୍ୱାସ୍ଥ୍ୟବାନ ଏବଂ ଭଲ ପାଉଥିବା ସ୍ୱାମୀଟିଏ ପାଇଲା ପରେ କହିଥିଲା—ଜୀବନ କ'ଣ ମୁଁ ଏଇଠି ଜାଣିଲି' ଏବଂ ବର୍ଷକ ଭିତରେ ଯିଏ ଦରପୋଡା ହୋଇ ମେଡିକାଲ୍‌ରେ ପଡିଥିଲାବେଳେ ସେଇକଥା କହିଥିଲା- 'ଜୀବନ କ'ଣ ମୁଁ ଏଇନା ଜାଣିଲି !'

ଟଙ୍କା ଧାର୍ ଦେଇ ସୁଧଟା ପାଇ ନଥିବା ବନ୍ଧୁ କ'ଣ ଭାବୁଥିବେ ? ଠକ ଭାବୁଥିବେ ? ଦୟା କରୁଥିବେ ? ମନସ୍ତାପ କରୁଥିବେ ?

ବଡବାକ୍ସ ଭିତରେ ପଚାଶ ସାଲର ଡାଇରି ଖୋଳ ସନ୍ଧିରେ ପ୍ରେମିକାର ଚିଠିଟାଏ ଯେ ଥିଲା ତାକୁ ବୋହୂ ଦେଖିଦେଲା କି ଆଉ ?

ବଡବୋହୂର ବାପଘର ଗହଣାସବୁ ଗିଲ୍‌ଥିବା କଥା ମୁଁ ଜାଣିଥିଲି ବୋଲି ସେ ମୋର କୋଉ ଡାଇରୀ, ଚିଠି କି ଲେଖାରୁ ଜାଣିଗଲା କି ?

ମୃତବ୍ୟକ୍ତିଟି ଏମିତି କେତେ ଅନୁକ୍ତକଥା ଭାବୁଥିବ । ମୁଁ ନଥିଲେ ସଂସାର ଠିକ୍ ଚାଲନ୍ତା ନାହିଁ ବୋଲି ଖୁବ୍ ଦମ୍ଭ ପାତିଥିବା ସବୁ ମଣିଷ ମରଣ ପରେ ଏମିତି ଦୁଶ୍ଚିନ୍ତାରେ ପଡୁଥିବ ଓ ସେହି କାରଣରୁ ଜୀବନ୍ମଣ୍ଡଳ ଟପି ଦୂରକୁ ଚାଲିଯାଉ ନଥିବ ।

ନିଜ ସଂସାରକୁ ଅସଜଡା ଦେଖୁଥିଲେ; ବିତ୍ରସ୍ତ ଓ ବିଭଙ୍ଗ ଦେଖୁଥିଲେ ସେ ଦୁଃଖ ପାଇଲା ପରି ଖୁସି ହେଉଥିବ... ମୁଁ ଜାଣେ ପରା ମୋ ବିନା ଏ କାମ ହୋଇପାରିବନି । ସଂସାର ଆପଣା ବାଟରେ ସ୍ୱଚ୍ଛଳରେ ଚାଲୁଥିଲେ ଖୁସି ହେଲା ପରି ଦୁଃଖ ପାଉଥିବ... ତା'ହେଲେ ମୋର ସେମିତି କିଛି ଗୁରୁତ୍ୱ ନଥିଲା ନା !

ଉଭୟ କ୍ଷେତ୍ରରେ ସେ ବିକଳ ହିଁ ହେଉଥିବ । 'ଗୃହ, ମୁଁ ଯାଇ ସବୁ ସଜାଡି ଦେଉଛି' କିମ୍ବା 'ଗୃହତ ଦେଖି ମୁଁ ଯାଇ ବତାଉଛି ମୁଁ କେମିତି ଅଲୋଡା !' ଏଇ ଭାବନାରେ ମୃତବ୍ୟକ୍ତିଟି କେବଳ ଜୀବନ, ଜଗତ ଓ ଜଠର ଖୋଜୁଥିବ । ଖୋଜିଖୋଜି ଇତସ୍ତତଃ ଘୂରୁଥିବ । ଇଚ୍ଛା ମାତ୍ରକେ ପୃଥ୍ୱୀ ଭ୍ରମି ଆସୁଥିବ ।

ଏଇପରି ଅମୋକ୍ଷ, ଅତୃପ୍ତ, ପିପାସିତ, ବ୍ୟାକୁଳିତ ଆତ୍ମାଟି 'ପ୍ରେତ' ହିଁ ହେବ । ପ୍ରୟାଣରେ ତା'ର ପରିସମାପ୍ତି ଘଟି ନଥିବ ।

ପ୍ରତ୍ୟୟ ନିଜର ଭାବନା ଓ ଯୁକ୍ତିକୁ ସିଦ୍ଧାନ୍ତ ବୋଲି ଅନୁଭବ କଲା । ତେଣୁ ସେ ଗ୍ରହଣ କରିନେଲା, ବାପା ସୁଦ୍ଧା ପ୍ରେତ ହୋଇଯାଇଥିବେ ।

ଏ କଥା ଗ୍ରହଣ କରିନେବା ମାତ୍ରକେ ତା'ର ସାରାଦେହ କମ୍ପିଉଠିଲା । ଶୀତଳ ଜଳ,ଶୀତଳ ସମୀରଣ ସହିତ ଏବେ ତା'ର ଅନ୍ତରରେ ଆଉ ଏକ ଭୟର ଶୀତଳତା ମିଶିଯାଇଥିଲା ।

ତା'ହେଲେ ବାପା ଏଇ ସୁନ୍ଦର ଓ ସୁବିଖ୍ୟାତ ଜଳତୀର୍ଥରେ ତାଙ୍କ ଉଦ୍ଦେଶ୍ୟରେ ପ୍ରଦତ୍ତ ତର୍ପଣ ଗ୍ରହଣ କରିବାକୁ ଅବଶ୍ୟ ଏଇଠି ଉପସ୍ଥିତ ଅଛନ୍ତି । ସେ ଏବେ ଏଇଠି ଅଛନ୍ତି । ଏଇଠୁ ହାତବଢେଇ ଦେବାର ଦୂରତାରେ ହୁଏତ ଏଠାରୁ ଭୋଜ୍ୟ ଗ୍ରହଣ କରିସାରି ଗାଁରେ ତାଙ୍କ ଶୋଇବା ଘରେ ବଢା ହେବାକୁ ଥିବା ପିଣ୍ଡଚାଉଳ ଓ ଦେଇପିଣ୍ଡରେ ବଢା ଅନ୍ନପାଇଁ ସହଳ ଫେରିବାକୁ ବ୍ୟସ୍ତ ହେଉଥିବେ !

ପିଣ୍ଡ-ଶ୍ରାଦ୍ଧ, ଫଳନୈବେଦ୍ୟ, ମନ୍ତ୍ର ସ୍ତୁତି ସହିତ ସେ ଆଶା କରୁଥିବେ କି ଆଉ କିଛି ? ସେଇ ଜିନିଷ ଯାହା କେବଳ ସେ ଜାଣେ ଓ ପ୍ରେତ ହୋଇଥିବାରୁ ବାପା ମଧ୍ୟ ଜାଣିଥିବେ ! - ପ୍ରତ୍ୟୟ ସଂକଟରେ ପଡିଗଲେ । ଆତଙ୍କ ତାକୁ ଗ୍ରାସ କରିଗଲା ।

ଛ'ମାସ ପୂର୍ବେ ମା'ର ଶ୍ରାଦ୍ଧ ପରେ ଦୁଇ ଭାଇ ଏକାଠି ଆଲୋଚନା କରିଥିଲେ—ଏବେ ପିଲାବୟସ, ମନପ୍ରାଣ ନିର୍ମଳ ଅଛି । ଭାଇସମ୍ପର୍କ ମଧୁର ଅଛି, ଯଦିଓ ପୃଥକ୍ ସ୍ଥାନରେ ରହୁଥିବାରୁ ସମ୍ପର୍କରେ ଦୃଢତା ନାହିଁ, ତିକ୍ତ ହେବାକୁ କେତେବେଳ ? ଏଣୁ ସବୁଠୁ ଭଲ ପରସ୍ପର ବୁଝାମଣାରେ ପୈତୃକ ଜମିଜମାର ଉପଯୁକ୍ତ ବଣ୍ଟନ କରି ତାହାର କାଗଜପତ୍ର ଦୋରସ୍ତ କରିଦେଲେ ଭବିଷ୍ୟତକୁ ନିଦକ । ଏଇ ଭାବନାରେ ଦୁହେଁ ଜମିବାଡି ଆଇନକାନୁନ ଓ ମାପଚୁପରେ ପ୍ରବୀଣ କୁଟୁମ୍ବ ସମ୍ପର୍କୀୟ ଜଣକୁ ଭେଟିଥିଲେ ।

ସେ ଦୁଇ ଭାଇଙ୍କୁ ତତ୍‌କ୍ଷଣାତ୍ ସମୟ ଦେଇଥିଲେ ଓ ନକ୍ସାଦେଖି ଜମିର ପରିମାଣ, ମୂଲ୍ୟ, ଫସଲ କ୍ଷମତା, ଡିହ ଯୋଗ୍ୟତା, ଘରଠାରୁ ଦୂରତା ଓ ଅବସ୍ଥିତି ସବୁକୁ ତନ୍ନତନ୍ନ କରି ବୁଝେଇଦେଇ ଉଭୟଙ୍କୁ ସୁହାଇଲା ପରି ଅଂଶ ନେବାକୁ ପରାମର୍ଶ ଦେଇଥିଲେ । ତାଙ୍କ ବଣ୍ଟନ ଏତେ ନିରପେକ୍ଷ

ଥିଲା ଯେ ଦୁଇ ଅଂଶ ମଧ୍ୟରେ ମାତ୍ର ଦୁଇ ଗୁଣ୍ଠ ଜମିର ପାର୍ଥକ୍ୟ ରହୁଥିଲା, ତାହା ସେ ବଡ ପୁଅ ହାତରେ ପିତୃଶ୍ରାଦ୍ଧର ଦାୟିକାରେ ସ୍ଥାପନ କରିଦେଇଥିଲେ ।

ସେତେବେଳେ ସେ ସାନ ଭାଇର ସହିଷ୍ଣୁତାରେ ତାହା ସ୍ୱୀକାର କରିନେଇଥିଲା । ଅଧିକନ୍ତୁ ସେ ଚାହିଁଥିଲା ବଡ ଭାଇ ଆଉ ଅଧିକ ଜମି ତାଙ୍କ ଅଂଶରେ ପାଆନ୍ତୁ ଏପରିକି ସଡକପାଖ ବାର ଗୁଣ୍ଠିଆ ଜମି ତାଙ୍କ ଭାଗରେ ରହୁ । କାରଣ କଲେଜକୁ କେନ୍ଦ୍ରକରି ଯୋଉ ବଜାର ଗଢିଉଠୁଛି ତାହା ଅଳ୍ପ ଦିନର କାୟା ବିସ୍ତାର କରି ସେ ଅଞ୍ଚଳକୁ ଗ୍ରାସ କରିବ । ସେତେବେଳେ ଜମିର ମୂଲ୍ୟ ବହୁତ ବଢିଯିବ । ଭାଇଙ୍କ ଅଭାବ ରହିବ ନାହିଁ ।

ନିଜର ଏଇ ଉଦାର ଦୃଷ୍ଟିକୋଣ ଓ ତାହାକୁ କାର୍ଯ୍ୟକାରୀ କରାଇବାକୁ ପ୍ରସ୍ତାବ ପ୍ରଦାନ, ପ୍ରସ୍ତାବକୁ ବାସ୍ତବ କରିବାକୁ ତା'ର ଆଗ୍ରହ ସବୁମିଶି ତାକୁ ନିଜକୁ ନିଜଠାରେ ଜଣେ ଭଲମଣିଷର ଆତ୍ମପ୍ରସାଦ ଦିଆଇଥିଲା । ସେ ଟିକେ ଆତ୍ମପ୍ରସାଦ ଅବା ଅହମିକାର ଶିକାର ମଧ୍ୟ ହୋଇଥିଲା ।

ହାତଲେଖା ସେଇ ବଣ୍ଟନପତ୍ରରେ ଦୁଇ ଭାଇଙ୍କ ସ୍ୱୀକାରୋକ୍ତି ଲେଖାଯାଇଥିଲା- "ଆମ୍ଭେ ଶ୍ରୀ ଅମୁକ ଓ ସମୁକ, ପିତା ସ୍ୱର୍ଗତ ଅମୁକ, ସାକିନ୍ ବିଶ୍ୱନାଥପୁର, ଶ୍ରୀ ଅମୁକଙ୍କ ଉପସ୍ଥିତିରେ ତାଙ୍କ ମଧ୍ୟସ୍ଥତାରେ ଆମ ପୈତୃକ ଜମିଜମାର ଆପୋଷବଣ୍ଟନ ନିମ୍ନଲିଖିତମତେ ଗ୍ରହଣ କରିନେଲୁ । ଏ ସଂକ୍ରାନ୍ତରେ ଭବିଷ୍ୟତକୁ କିଛି ବାଦବିସମ୍ବାଦ ଉପୁଜିବ ନାହିଁ ଓ କବଲା ଦଲିଲ ଏହି ବଣ୍ଟନପତ୍ର ଅନୁଯାୟୀ ହେବବୋଲି ଦୁହେଁ ଶପଥ କରୁଛୁ ।"

ମଧ୍ୟସ୍ଥ ଦୁଇ ଭାଇଙ୍କ ସ୍ୱାକ୍ଷର ତାଲିକାଟିର ତଳେ ରହିଲା ଯହିଁରେ ଦୁଇଟି ସ୍ତମ୍ଭରେ ପ୍ଲଟ୍ ନଂ., ତାଲିକା ଓ ଅବସ୍ଥିତି ସୂଚୀତ ହୋଇଗଲା । ସେ ବାମ ସ୍ତମ୍ଭଟି ଉପରେ ନିଜର ନାଁ ଲେଖିଥିଲେ, ଦକ୍ଷିଣରେ ବଡଭାଇଙ୍କର ନାମ ।

ଆଲୋଚନା ସମାପ୍ତକରି ଉଠିଲାବେଳକୁ ଦୁଇ ଭାଇ କାନ୍ଦକାନ୍ଦ ହୋଇଯାଇଥିଲେ । ସେ ନିଜେ ଲୁହ ଝରାଇ କାନ୍ଦିପକାଇଥିଲା ।

ହାତଲେଖା କାଗଜର ନକଲ ସ୍ପଷ୍ଟାକ୍ଷରରେ ଡି.ଟି.ପି. ମାଧ୍ୟମରେ କରାଇ ତିନୋଟି ଜେରକ୍ସ ପ୍ରତିଲିପି ପ୍ରସ୍ତୁତ କରିବାକୁ ସେ ଦାୟିତ୍ୱଟି ନେଇଥିଲା । ମୂଳଲେଖାଟି ତା' ପାଖରେ ରହିଥିଲା ।

କଥାହେଲା ବାପାଙ୍କ ଶ୍ରାଦ୍ଧ ବେଳକୁ କବଲାପତ୍ର କରିବାକୁ ଉଭୟ ପ୍ରସ୍ତୁତ ଥିବେ, ଗୋଟିଏ ଝମେଲା ଯିବ ।

ଇତିମଧ୍ୟରେ ସେ ପ୍ରସ୍ତାବ ପାଇଲା ସଡକପାଖ ଜମି ବିକ୍ରୟର । ବିତ୍ତଶାଳୀ ଦୂରାଗତ ବ୍ୟକ୍ତି ଜଣେ କଲେଜ ଭିତ୍ତିକ ବର୍ଦ୍ଧିଷ୍ଣୁ ବଜାରକୁ ଆଖିରେ ରଖି ସିନେମା ହଲ୍‌ଟିଏ ପ୍ରତିଷ୍ଠା କରିବାର ଯୋଜନାରେ ଥା'ନ୍ତି । ତାଙ୍କ ପାଇଁ ଚତୁଷ୍କୋଣୀ ସେହି ବାରଗୁଣ୍ଠ ଜମିଟି ଖୁବ୍ ଲୋଭନୀୟ ଥିଲା ।

ପ୍ରସ୍ତାବ ଶୁଣି ସେ ବଡ ଭାଇଙ୍କ ହାତକୁ କିଛି ପଇସା ଆସିଯାଉ ବୋଲି ଆଗ୍ରହରେ କଥାବାର୍ତ୍ତା କରିଥିଲା । ଜଣେ ଅଭିଭାବକର ମନ ଓ ନିଷ୍ଠାରେ ସେ ଜମିର ଦର ହାଙ୍କିଥିଲା ଗୁଣ୍ଠପ୍ରତି ତିରିଶ ହଜାର । କ୍ରେତା ଅନାୟାସରେ ରାଜି ହୋଇଯାଇଥିଲା । ଅତ୍ୟଳ୍ପ ଜରସମନର ରେଜିଷ୍ଟ୍ରୀ କରାଇ ରେଜିଷ୍ଟ୍ରୀ ଖର୍ଚ୍ଚରୁ ରିହାତି ନେବାକୁ କ୍ରେତା ତାକୁ ରାଜି କରାଇଥିଲେ ।

ମାତ୍ର ଯେତେବେଳେ ଜମି ବିକ୍ରୀହେଲେ କେତେ ଟଙ୍କା ମିଳିବ ବୋଲି ସେ ହିସାବ କଲା ସେତେବେଳେ ସେହି ବିପୁଳ ଅର୍ଥ ପରିମାଣ ତାକୁ ଗୋଳମାଳରେ ପକାଇଦେଲା । ତିନି ଲକ୍ଷ ଷାଠିଏ ହଜାର; ଖର୍ଚ୍ଚଯାଇ ନେଟ୍ ସାଢେ ତିନିଲକ୍ଷ ଭାଇଙ୍କର ପ୍ରାପ୍ୟ । ଭାଇ କୋଠା ତୋଳି ଦେବେ, ବ୍ୟାଙ୍କ୍‌ରେ ଜମା କରିଦେବେ । ମାସକୁ ପାଇବେ ସାଢେ ତିନିହଜାର । ନିଜେ ସିଏ

ନାନା କାଟ ପରେ ଘରକୁ କେବଳ ଅଢେଇ ହଜାର ଟଙ୍କା ଦରମା ମାସକୁ ଆଣିପାରେ ! ଭାଇ ତ ମୋ'ଠୁ ଧନୀ ହୋଇଯିବେ !

ଏ ତୁଳନା ତାକୁ ଲୁବ୍ଧ କରିଥିଲା । ତା'ର ଛାତି ଉଠପଡ ହେଉଥିଲା । ଗୋଟିଏ ବିଷାଦଭାବ ତା'କୁ ଘେରିବସିଥିଲା । ସେ ଜ୍ୱରଜ୍ୱର ଅନୁଭବ କରିଥିଲା । ତାକୁ ଖାଦ୍ୟ ରୁଚିଲା ନାହିଁ, ନିଦ ହେଲା ନାହିଁ, ସେ ଅଯଥାରେ ଯାହା ତାହା ଉପରେ ଚିଡ୍ ଚିଡ୍ ହେଲା ।

ଦିନେ ରାତିରେ ବଣ୍ଟନପତ୍ର ଉପରେ ଆଖିପକାଇ ସେ ଚିନ୍ତା କରୁଥିଲା କେମିତି ସେଇ ରାସ୍ତାକଡ ଜମିର ମାଲିକ ହୋଇପାରନ୍ତା । ନାନା ହିସାବ କିତାବ, ବଦଳ, ଅଧିକ ଜମିର ଛାଡ ପ୍ରସ୍ତାବ ଇତ୍ୟାଦି ସତ୍ତ୍ୱେ ସେ ନିଜକୁ ସେହି ପ୍ଲଟର ମାଲିକ କରାଇ ପାରିଲା ନାହିଁ । ବଣ୍ଟନ ପତ୍ର ପ୍ରସ୍ତୁତ କର୍ତ୍ତା ବା ବଡ଼ ଭାଇ କାହାରି ପାଖରେ ସେ ଛୋଟ ହେବାକୁ ଚାହୁଁ ନଥିଲା । ଯଦିଓ ସେମାନେ ଏହି ଅତ୍ୟଧିକ ମୂଲ୍ୟ ପ୍ରାପ୍ତିର ପ୍ରସ୍ତାବ ବିଷୟରେ ଅବଗତ ନଥିଲେ । କିନ୍ତୁ ସେ ତା'ର ଚେତନାରୁ ସାଢେ ତିନି ଲକ୍ଷ ଅର୍ଥାତ୍ ମାସିକ ସାଢେ ତିନିହଜାର ଟଙ୍କାର ସ୍ଥାୟୀ ଆୟର ଲାଳସାକୁ ଅବଦମନ କରିପାରୁ ନଥିଲା ।

ହିସାବ ମେଳ କରୁ କରୁ ସେ ଚିନ୍ତାକଲା ଯଦି ଜମି ବଣ୍ଟନର ଦୁଇଟି ସ୍ତମ୍ଭ ଉପରେ ଲେଖାଯାଇଥିବା ନାମ ଦୁଇଟିର ପାର୍ଶ୍ୱପରିବର୍ତ୍ତନ କରି ଦିଆଯାଏ ତେବେ ବଡ ଭାଇଙ୍କ ଭାଗ ତା'ର ଓ ତା' ଭାଗ ବଡଭାଇଙ୍କର ହୋଇଯିବ । ମୂଳଲେଖାଟି ପ୍ରଥମରୁ ତା'ପାଖରେ ଥିବାରୁ ଓ ଇତିମଧ୍ୟରେ ଛ'ମାସ ବିତି ଯାଇଥିବାରୁ ବଣ୍ଟନପତ୍ରର କେଉଁ ସ୍ତମ୍ଭ କାହାର ଥିଲା ତାହା ସେମାନଙ୍କର ସ୍ମରଣ ରହି ନଥାଇପାରେ । ଏବେ ଡି.ଟି.ପି. ସେହିମତେ କରାଇନେଇ ମୂଳ ହାତଲେଖା ନଷ୍ଟ କରିଦେଲେ ରେକର୍ଡ କହିବ ଯେ, ସଡକ ପାଖ ଜମି ତା' ନାମରେ ହିଁ ଅଛି ।

ଏହି ଆବିଷ୍କାର ତାକୁ ଉତ୍ତେଜିତ କଲା । ସେ ନିଜ ଭିତରେ ଉତ୍ସାହ ସହିତ ଅପରାଧୀଭାବ ମଧ୍ୟ ଅନୁଭବ କରିପାରୁଥିଲା । ତଥାପି କ୍ରେତା ଧାନ କଟାପରେ ଜାନୁଆରୀ ମାସରେ ଜମି ଦଖଲ କରିବାର ଯୋଜନାଥିବାରୁ ତାହାର ଯଥେଷ୍ଟ ପୂର୍ବରୁ ସମସ୍ୟାଟି ସମାଧାନ ହେବା ସେ ଚାହୁଁଥିଲା ।

ପରଦିନ ସେ ନିଜ ଇଚ୍ଛାମତେ ବଣ୍ଟନପତ୍ରର ଡି.ଟି.ପି. କରାଇ ଜେରକ୍ସ ନକଲ ପ୍ରସ୍ତୁତ କରାଇଥିଲା । ବାପାଙ୍କ ଶ୍ରାଦ୍ଧ ବେଳେ ଏ ପ୍ରସଙ୍ଗ ଉଠିଲେ କାଳେ କିଛି ଗୋଳମାଳ ହେବ ତେଣୁ ସେ ଆଉ କିଛି ବିଳମ୍ବ ଚାହୁଁଥିଲା । ତେଣୁ ସୁଯୋଗଟିଏ ପାଇଲା ମାତ୍ରେ ସେ ଆଲାହାବାଦ ସହରକୁ ଚାଲିଆସିଥିଲା ।

ସୁଯୋଗଟି ଥିଲା ଏକ ସପ୍ତାହ ପାଇଁ ବିଭାଗୀୟ ଟ୍ରେନିଂ । ସେହି ସପ୍ତାହରେ ବାପାଙ୍କ ଶ୍ରାଦ୍ଧତିଥି ଥିବାରୁ ସେ ସମସ୍ତଙ୍କୁ ବୁଝାଇ ଦେଇଥିଲା ଯେ, ପ୍ରୟାଗରେ ତର୍ପଣ କରି ସେ ପିତୃଶ୍ରାଦ୍ଧ ସମାପନ କରିବ ।

ମାତ୍ର ଘରେ ସେ ନଥିବା ଅବସ୍ଥାରେ ବଣ୍ଟନପତ୍ରର ପ୍ରସଙ୍ଗ ଉଠିପାରେ ବୋଲି ଆଶଙ୍କା କରି ସେହି ପାଣ୍ଡୁଲିପିଟି ନିଜ ସାଥିରେ ନେଇଯାଇଥିଲା । ସୁରକ୍ଷା ଦୃଷ୍ଟିରୁ ସବୁବେଳେ ପର୍ସରେ ରଖୁଥିଲା ।

ଏବେ ସେ ଭାବୁଥିଲା ତା'ହେଲେ ତା'ର ଏଇ ଈର୍ଷା, ଲୋଭ, ଠକେଇ, ଅସତପଣ ଓ ଚୋରୀ ଏହି ଛୋଟଲୋକି ତା' ବାପାଙ୍କ ଆଖିରେ ସ୍ପଷ୍ଟ ଦିଶୁଥିବ ।

ଏଇ ମହା ଜଳତୀର୍ଥ, ମହାପାବନୀ ଜଳତୀର୍ଥରେ ପବିତ୍ର ପୁଣ୍ୟଦା କାର୍ତ୍ତିକ ମାସରେ ପିତୃଶ୍ରାଦ୍ଧର ତର୍ପଣ ରୂପରେ ବାପାଙ୍କ ଅଭିଳାଷ ହୋଇପାରେ କି ସେଇ କାଗଜପତ୍ର ! ହୋଇପାରେ ।

ବାପା ହିଁ କହିଥାନ୍ତି, ମୋତେ ଦି'ଜଣ ଭଲମଣିଷର ନାଁ ପଚାରିଲେ ମୁଁ ସାନଟୋକାଟାର ନାଁ ପ୍ରଥମେ କହିବି ।

ବାପାଙ୍କର ସେହି ଭରସା ଓ ବିଶ୍ୱାସର ପାତ୍ର ହେଇ ସେ ଅଛି କି ଏବେ ? ଏଇ ଗଲା ମାସଟି ଧରି ଅନ୍ତତଃ ।

ପ୍ରତ୍ୟୟ ଲଜ୍ଜିତ ହେଲା, ଗ୍ଲାନିପୀଡିତ ହେଲା, ଆତ୍ମଧିକ୍କାରରେ ଘାରି ହେଇଗଲା । ଜଳସ୍ରୋତରେ ଆଞ୍ଜୁଳିର ଶ୍ରଦ୍ଧାର୍ଘ୍ୟ ଭସାଇଦେଇ ସେ ହୁଡ୍ ହୁଡ୍ କରି ଉଠିଆସିଲା ବନ୍ଧ ଉପରକୁ, ଯୋଉଠି ତା'ର ପୋଷାକପତ୍ର ରଖାଯାଇଥିଲା ।

ସେମିତି ଓଦା ସରସର ହେଇ ଲମ୍ବଧୋତିରେ ଛନ୍ଦି ହେଇ ପଡିଯାଉଯାଉ ସେ ପ୍ୟାଣ୍ଟ ପକେଟ୍‌ର ପର୍ସରୁ କାଢି ବଣ୍ଟନ ପତ୍ରଟି ଧରି ପୁଣି ଘାଟ ଭିତରକୁ ପଶିଗଲା ।

ଆଞ୍ଜୁଳାଏ ଜଳ ସହିତ ସେହି ବଣ୍ଟନପତ୍ର ଧାରଣ କରି ବିମୂଢ ପଣ୍ଡିତଙ୍କୁ ତଟସ୍ଥ କରି ସେ ଉଚ୍ଚକଣ୍ଠରେ ଆବୃତ୍ତି କଲା-

"ଅଦ୍ୟ କାର୍ତ୍ତିକମାସ ଶୀତପକ୍ଷ ନବମୀ ତିଥୌ ପ୍ରୟାଗରାଜ ତୀର୍ଥକ୍ଷେତ୍ରେ ମମପିତା ପୁଣ୍ୟଲୋକ ହରେକୃଷ୍ଣ ପ୍ରେତାୟ ଇଦଂ ଶ୍ରାଦ୍ଧାର୍ଘ୍ୟ ତର୍ପୟାମି..." ଓ ସଂଗମର ପବିତ୍ର ପ୍ରବାହରେ ତାହା ଅର୍ପଣ କରିଦେଲା ।



# ପାରା ଯୋଡ଼ିଙ୍କ ସମ୍ପର୍କରେ ଏକ ଦୁଃଖଦାୟକ ଗପ

## ସୁବ୍ରତ କୁମାର ପଟ୍ଟନାୟକ

ସେମାନଙ୍କ ଯୋଗୁଁ ଆମେ ବିପଦରେ ପଡ଼ିବୁ ବୋଲି କେବେ ଭାବି ନଥିଲୁ । ବିପଦ ଅଛି ବୋଲି ଜାଣିଥିଲେ, କେବେ ଘରେ ପଶେଇ ଦେଇ ନଥାନ୍ତୁ । ଘରେ ରହିବା ଲାଗି ସେମାନେ ଆମଠୁ କୌଣସି ଅନୁମତି ଲୋଡ଼ି ନଥିଲେ । ପ୍ରଥମେ ଯେଉଁଦିନ ସେମାନେ ଆମ ଘରକୁ ଆସିଲେ ଏ ଦୁଆର ସେ ଦୁଆର ହେଲେ । ଆମର ତ ଭଡ଼ା ଘର । ଗୋଟିଏ ଘରେ ବସା ଉଠା, ଖିଆପିଆ ସବୁକିଛି । ରୋଷେଇ ଘରେ କଳା ଧୂଆଁ । ସେ ଘରକୁ ସେମାନେ ନାକ ଟେକିଲେ । ନାପସନ୍ଦ କଲେ । ଫେରି ଆସିଲେ ଆମ ଶୋଇବା ଘରକୁ । ଦେଖିଲେ ତନ୍ନ ତନ୍ନ କରି, ପୁଣି ଫେରିଗଲେ ।

ଆମେ ଅନୁମାନ କଲୁ ସେମାନେ ସ୍ୱାମୀ, ସ୍ତ୍ରୀ । ଛୁଆପିଲା ନାହାନ୍ତି, ଖୋଜୁଛନ୍ତି ବସାଘର । ସହରରେ ବସାଘରଟିଏ ପାଇବା କେତେ କଷ୍ଟକର ତାହା ଆମେ ଜାଣୁ । ଘରଟିଏ ପାଇବା ପାଇଁ ମୋତେ କେତେ କୈଫିୟତ ଦେବାକୁ ପଡ଼ିଚି ଘର ମାଲିକ ପାଖରେ । ମାଲିକମାନଙ୍କର ଦୁନିଆ କଟକଣା । ଦୁଇମାସର ଭଡ଼ା ବଇନା ଦେବାକୁ ପଡ଼ିବ । ସନ୍ଧ୍ୟା ପୂର୍ବରୁ ଓ ରାତି ନଅଟା ପରେ ବଲ୍‌ବ ଜଳି ପାରିବ ନାହିଁ । ଅଳ୍ପ ପାଣି ଖର୍ଚ୍ଚ କରିବ । ଘରକୁ ଅଧିକ ଗେଷ୍ଟ ଆସି ପାରିବେ ନାହିଁ । ଜୋର୍‌ରେ ଟିଭି କି ରେଡ଼ିଓ ବଜାଇ ପାରିବ ନାହିଁ । ଘରକୁ ସବୁବେଳେ ସଫା ସୁତୁରା ରଖାଯିବ । ଏସବୁ ତ ଗଲା ମାମୁଲି କଟକଣା । ଅସଲ କଥା ହେଲା ପରିବାର ବର୍ଗଙ୍କୁ ନେଇ । ମୁଁ ସ୍ତ୍ରୀଙ୍କୁ ନେଇ ଘରେ ରହିବି ନା ଏକୁଟିଆ ରହିବି । ଏକୁଟିଆ ରହିଲେ ଘର ମିଳିବ ନାହିଁ । ମାଲିକଙ୍କ ଘରେ ଅଛନ୍ତି ବଢ଼ିଲା ଝିଅ । ସେମାନଙ୍କର କୁଆଡ଼େ ଅସୁବିଧା ହେବ ।

ବସାଘର ଖୋଜିବା ସମ୍ପର୍କରେ ମୁଁ ମୋର ଅନୁଭୂତିକୁ ସୁନାନୀଙ୍କୁ କହିଥିଲି । ଘରଟିଏ ପାଇବା ବି ଏତେ ସହଜ ବ୍ୟାପାର ନୁହେଁ । ଯେଉଁମାନେ ଘର କରି ଭଡ଼ା ଲଗାଇଛନ୍ତି ସେମାନେ ନିଜକୁ ଇନ୍ଦ୍ର ମଣନ୍ତି । ଆଉ ଯେଉଁମାନେ ସେଇଠି ଆଶୟ ନେଇଥାନ୍ତି, ସେମାନେ ଯେମିତି ଗୋଟିଏ ଗୋଟିଏ ପ୍ରଜା । ମାଲିକମାନଙ୍କର ସବୁ ନିୟମ ଓ କଟକଣାକୁ ମାନି ନେବାକୁ ଯେମିତି ବାଧ ।

ସୁନାନୀ କହିଲେ- ସେଥିପାଇଁ ତ ସ୍ୱାମୀ, ସ୍ତ୍ରୀ ସାଙ୍ଗ ହୋଇ ବସାଘର ଖୋଜୁଛନ୍ତି । ଖୁବ୍ ହୀନସ୍ତା ହେଲେଣି । ଦୟାବନ୍ତ ମାଲିକଟିଏ ସେମାନଙ୍କୁ ଘରେ ଆଶ୍ର ଦିଅନ୍ତା ହେଲେ !

ବୋଧହୁଏ ସେ ଦୁହିଁଙ୍କୁ ଭଲ ଘରଟିଏ ମିଳିଲା ନାହିଁ । ସ୍ୱାମୀଟି ଯେଉଁ ଘର ଠିକ୍ କଲା, ସ୍ତ୍ରୀର ପସନ୍ଦ ହେଲାନାହିଁ । ଦୁଇ ତିନିଦିନ ପରେ ବିଚରା ସ୍ୱାମୀଟି ପୁଣି ଆମ ଘରକୁ ଲେଉଟିଲା । କନ୍‌କନ୍ ହୋଇ ଏପଟ ସେପଟକୁ ଚାହିଁଲା । କେଉଁଠି ରହିଲେ ସୁବିଧା ହେବ ଚିନ୍ତା କଲା । ଶେଷରେ ଆମ ଘରେ ରହିଯିବାକୁ ଏକ ପ୍ରକାର ନିଷ୍ପତ୍ତି ନେଲା ଓ ତା' ସ୍ତ୍ରୀକୁ ବି ସେଇ କଥା ବୁଝାଇ ଦେଲା ।

ଏଥର ସ୍ୱାମୀ, ସ୍ତ୍ରୀ ଦୁହେଁ ପୁଣି ଆସିଲେ । ଆମକୁ ବିକଳ ହୋଇ ଚାହିଁଲେ । ଆମ ଘରେ ଆଶୟ ନେବାକୁ ସତେ ଯେମିତି ଅନୁମତି ଭିକ୍ଷା କରୁଥିଲେ । ସେମାନେ ଆମ ଘରେ ରୁହନ୍ତୁ

ବୋଲି ମୁଁ ଆଦୌ ଚାହୁଁ ନଥିଲି । ସେମାନେ ରହିଲେ ଆମ ଉପରେ ବୋଝ ଭଳି ଲାଗିବ । କିଏ ଏତେ ଝାମେଲା ବୁଝିବ । ସୁନାନୀଙ୍କର ସେମାନଙ୍କ ପ୍ରତି ଟିକେ ଦରଦ ଥିଲା । ସୁନାନୀ କହିଲେ- ସେମାନେ ଯଦି ମନ କଲେଣି, ରୁହନ୍ତୁ । ସେମାନଙ୍କୁ ତଡ଼ି ଦିଅ ନାହିଁ, ମୋ ରାଣ ।

ସ୍ୱାମୀ, ସ୍ତ୍ରୀ ଦୁହେଁ ଆମ କଥା ଶୁଣୁଥିଲେ କି ନା ଜଣା ନଥିଲା । ତଥାପି ଲାଗୁଥିଲା ସେମାନେ ଖୁସି ଅଛନ୍ତି । ସ୍କାଏ ଲାଇଟ୍ ପାଖକୁ ସେମାନେ ଗଲେ । ସେଇଠି ବସା କରିବେ ବୋଲି ଠିକ୍ କଲେ । ଦୁହିଁଙ୍କ ଥଣ୍ଟରେ ଏଥର ବୁହା ହୋଇ ଆସିଲା କୁଟା, କାଠି, ବାଉଁଶ କଣ୍ଟା, ଆହୁରି କେତେ କ'ଣ । ସେମାନେ ବସା ତିଆରିଲେ । କୁଟା, କାଠିକୁ ସଜେଇ ରଖିଲେ । ତୋଳା ହେଲା ଘର ।

ସନ୍ଧ୍ୟା ହୋଇ ଆସୁଥାଏ । ସ୍ୱାମୀଟି ଆଉ କିଛି କୁଟା, କାଠି ଆଣି ଥାଆନ୍ତା କି କ'ଣ, ସ୍ତ୍ରୀଟି ମନା କଲା । କହିଲା- ବହୁତ ହେଲାଣି, ଥାଉ ଚଳିଯିବ । ନୂଆ ଜାଗା । ଅନ୍ଧାର ହେଲାଣି, ତମେ ବାହାରକୁ ଯାଅନି । ମୋ ପାଖରେ ବସ ।

ସ୍ୱାମୀଟି ତା' କଥା ମାନିଲା । ଦୁହେଁ ଭୁଟୁରୁ ଭାଟୁରୁ ହେଲେ । ରାତିରେ କିଛି ଖାଇଲେ ନାହିଁ । ଦେହକୁ ଦେହ ଘଷି ହୋଇ ଶୋଇଲେ ।

ଆମେ ଶୋଇବା ବେଳେ ସେମାନଙ୍କ କଥା ଆଲୋଚନା କଲୁ । ସେମାନେ ଆମ ଘରେ ରହିବା ଠିକ୍ ହେବ କି ନା ସୁନାନୀଙ୍କୁ ପଚାରିଲି । ସେ କହିଲେ- ଘରେ ପାରା ରହିଲେ ଶୁଭ । ଲକ୍ଷ୍ମୀ ବଢ଼ିବେ । କୁଳ ଉଜ୍ଜ୍ୱଳ ହେବ ।

ମୁଁ ତାଙ୍କ କଥାକୁ ବିରୋଧ କଲି । କହିଲି- ସେମାନେ ରହିଲେ ଆମକୁ ନିଦ ହେବନାହିଁ । ଦିନରାତି ସବୁବେଳେ ଗୁମୁରୁ ଗୁମୁରୁ ହେବେ । ଘରେ ବାଉଁଶ କଣ୍ଟା ଭର୍ତ୍ତି କରିବେ । ହଗିବେ, ଅସ୍ନା କରିବେ । ଘର ମାଲିକାଣୀ ବୁଢ଼ୀ ବିଗିଡ଼ିବ ।

ସୁନାନୀ କହିଲେ- ତମେ ସେଥିପାଇଁ ଜମା ବ୍ୟସ୍ତ ହୁଅନା । ଘର ଦ୍ୱାର ଅସ୍ନା ହେଲେ ତମକୁ ସଫା କରିବାକୁ ପଡ଼ିବ ନାହିଁ । ସେ କାମ ମୁଁ କରିବି । ତମର ଆପତ୍ତି କାହିଁକି ? ସେମାନଙ୍କ ଲାଗି ତ ଆମକୁ ରାନ୍ଧି ବାଢ଼ି ଦେବାକୁ ପଡ଼ିବ ନାହିଁ । ଖାଇବା ପିଇବାରେ ସେମାନେ ବି ଆମ ଉପରେ ବୋଝ ପାଲଟିବେନି । ଖାଲି ଯାହା ଆମ ଘରେ ମୁଣ୍ଡ ଗୁଂଜି ରହିବେ ।

ମୁଁ ଚିଡ଼ି ଉଠିଲି- ସେମାନେ ଘରେ ରହିଲେ ଗନ୍ଧରେ ରହି ହେବନି । ସବୁବେଳେ କିଚିରି ମିଚିରି ଶୁଭିବ । ଶାନ୍ତିରେ ଟିକିଏ ରହି ହେବନି । ମୁଣ୍ଡ ଗୁଂଜୁ ଗୁଂଜୁ ସେମାନେ ଅଣ୍ଡା ଦେବେ, ଛୁଆ ଫୁଟେଇବେ । ସଂସାର ଗଢ଼ିବ, ଚାଲିବ ପାଲା ।

ସୁନାନୀ ରାଗିଲେନି । ଦୁଷ୍ଟ ହସ ହସି କହିଲେ- ଯିଏ ଘର କରେ, ସେ ପିଲାଛୁଆ, ସଂସାର ସବୁ କରେ । ସେ ମଣିଷ ହେଉ କି ପାରା । ବାହା ହେଲଣି, ଆଜି ଯାଏଁ ଏତକ ବୁଝିନା । ଆଉ କେବେ ସେ କଥା ବୁଝିବ ?

ମୁଁ ଯୁକ୍ତି କଲିନାହିଁ । ଆମେ ଦୁହେଁ ସ୍କାଇ ଲାଇଟ୍‌କୁ ଚାହିଁ ରହିଲୁ । ସେମାନଙ୍କୁ ନିଦ ଆସୁ ନଥାଏ । ନୂଆ ଘରେ ପ୍ରଥମେ ପ୍ରଥମେ ସେମିତି ଲାଗେ । ଭଲ ନିଦ ହୁଏନା ।

ସୁନାନୀ ମୋତେ ଆଉଜି ଶୋଇଥାନ୍ତି । ତା' ସ୍ତ୍ରୀଟି ସୁନାନୀଙ୍କୁ କଣେଇ କଣେଇ ଚାହୁଁଥାଏ । ସୁନାନୀ କ'ଣ ଭାବିଲେ କେଜାଣି ମୋତେ କହିଲେ- ଲାଇଟ୍ ଲିଭେଇ ଦିଅ, ଆମେ ଶୋଇବା ।

ମୁଁ ଲାଇଟ୍ ଲିଭେଇ ବେଡ୍ ଲାଇଟ୍ ଜଳେଇଲି । ସେମାନେ ଆମକୁ ଦିଶିଲେ ନାହିଁ । ମାତ୍ର ନୀଳ ଆଲୁଅରେ ତୋଫା ଗୋରା ଦିଶୁଥିଲା ସୁନାନୀଙ୍କ ଦେହ ।

ସୁନାନୀ କହିଲେ- ତମ ସହିତ ସଂସାର କରିବାର ସ୍ୱପ୍ନ ଦେଖି ମୁଁ ବି ଦିନେ ତମ ପାଖକୁ ଉଡ଼ି ଆସିଥିଲି । ସେଦିନ ମୋ ମନରେ କେତେ ରୋମାଞ୍ଚ, କେତେ ଆନଂଦ ।

ମୁଁ ପଚାରିଲି- ପ୍ରଥମ ରାତି କଥା ତମର ମନେ ଅଛି ? ସେମାନଙ୍କର ବି ଆଜି ପ୍ରଥମ ରାତି ।

ସୁନାନୀ ଇଶାରା ଦେଇ ହସିଲେ । କହିଲେ- ସେଇଥି ପାଇଁ ତ ଆଜି ଜଲ୍‌ଦି ଲାଇଟ୍ ଲିଭେଇ ଦେବାକୁ କହିଲି । ସେମାନେ ରାତିସାରା ଶାନ୍ତିରେ ଶୁଅନ୍ତୁ ।

ମୁଁ କହିଲି- ସେମାନେ ଜମା ଶୋଇବେ ନାହିଁ ।

- କାହିଁକି ?

- ତମେ କ'ଣ ପ୍ରଥମ ରାତିରେ ଶୋଇଥିଲ ? ମୁଁ ତମକୁ ଶୁଆଇ ଦେଇଥିଲି ? ପ୍ରଥମେ ରାତି କେମିତି ବଢ଼ିଯାଏ, ତାହା କ'ଣ କାହାକୁ ଜଣାପଡ଼େ ?

ସୁନାନୀ ମୋ ନାକକୁ ଚିପି ଖତେଇ ହେଲେ ଶ୍ରଦ୍ଧାରେ । ସ୍ୱାମୀଟି ତା' ସ୍ତ୍ରୀ ଥଣ୍ଟକୁ ଖୁମ୍ପିଲା ଆଦରରେ । ସ୍ତ୍ରୀଟି ଅଧା ମେଲାଇ ଦେଲା ଡେଣା । ସ୍ୱାମୀଟି ତା' ପିଠି ଉପରକୁ ଉଠିଲା । ଥଣ୍ଟରେ କାମୁଡ଼ି ଧରିଲା ତା ବେକ । ସୁନାନୀ ମୋ ଛାତିରେ ମୁହଁ ଘଷିଲେ । ନାକରେ ଘଷିଲେ ନାକ । ଚୁଚୁମିଲେ ଓଠ । ମୋ ଦେହରେ ଛନ୍ଦି ଦେଲେ ତାଙ୍କ ନରମ ଦେହ । ଆମେ ଶୋଇଗଲୁ କ୍ଳାନ୍ତିରେ, ଶାନ୍ତିରେ ।

ରାତି ଚାରିଟାରେ ମୁଁ ନିଦରୁ ଉଠେ । ସେଦିନ ମୋ ନିଦ ଭାଙ୍ଗୁ ନଥାଏ । ସେମାନେ ନିଦରୁ ଉଠି ଗୁମୁରୁ ଗୁମୁରୁ ହେଲେ । ପତଳା ଗାଉନ୍ ପିନ୍ଧି ଶୋଇଥାନ୍ତି ସୁନାନୀ । ପବନରେ ଗାଉନଟି ଦୋହଲୁଥାଏ । କଦଳୀ ଗଛ ପରି ଖୁବ୍ ମସୃଣ ଦିଶୁଥାଏ ତାଙ୍କ ଅନାବୃତ୍ତ ଜଂଘ ।

ସବୁଦିନେ ମୁଁ ରାତିରୁ ଉଠି ନିତ୍ୟକର୍ମ ସାରେ । ଯୋଗାସନ କରେ । ଘଣ୍ଟା ଘଣ୍ଟା ଧରି ରହେ ଶୀର୍ଷାସନରେ । ହଲ୍‌ଚଲ୍ ହୁଏନା । ମୁଣ୍ଡ ତଳକୁ କରି ପାଦ ଦୁଇଟିକୁ ସମାନ୍ତରାଳରେ ଟେକି ଦେଇଥାଏ ଉପରକୁ ।

ଦୁହେଁ ତାଜୁବ୍ ହୋଇ ମୋତେ ଚାହିଁଥାନ୍ତି । ସ୍ତ୍ରୀଟି ପଚାରିଲା- ମୁଣ୍ଡ ତଳକୁ ଗୋଡ଼ ଉପରକୁ କରି ସେ କ'ଣ କରୁଛନ୍ତି ଯେ ?

ସ୍ୱାମୀଟି କହିଲା- ଆଲୋ, ତୋତେ ସେଥିରୁ କ'ଣ ମିଳିବ ? ଦେଖୁନୁ, ଜଣେ ମୁଣ୍ଡତଳକୁ ଗୋଡ଼ ଉପରକୁ କରି କସରତ୍ କରୁଚି । ଆଉ ଜଣେ ଅଧା ଲଙ୍ଗଳା ହୋଇ ବିଛଣାରେ ଘୁଙ୍ଗୁଡ଼ି ମାରୁଚି । ସେମାନଙ୍କର ଚଳଣି ସେମିତି । ଆମ କଥା ବୁଝିବାକୁ ତ ଆମକୁ ବେଳ ନାହିଁ । ସକାଳ ହେଲେ ଦୂର ଜାଗାକୁ ଯିବା । ଖୁଦ ଚାଉଳ ଯୋଗାଡ଼ କୋଉଠୁ କରିବା । ଏ ସ୍ତ୍ରୀ ଲୋକଟି ପରି ଆରାମରେ ଘୁଙ୍ଗୁଡ଼ି ମାରିଲେ ଚଳିବ ନାହିଁ । ଶୋଇ ଶୋଇ କେତେ ମୋଟି ହୋଇଗଲାଣି ଦେଖୁନୁ ? ଅଣ୍ଟାରେ ଦୁଇଟା ଭାଙ୍ଗ ପଡ଼ିଲାଣି ।

ସକାଳ ହେଲେ ସେମାନେ କଥାବାର୍ତ୍ତା ହୋଇ କୁଆଡ଼େ ଉଡ଼ି ଯାଆନ୍ତି । ପୁଣି କେତେବେଳେ ବି ଫେରି ଆସନ୍ତି ଘରକୁ । କୁଟା କାଠିରେ ଘର ସଜାଡ଼ି ପୁଣି ଉଡ଼ି ଯାଆନ୍ତି । କେବେ କେବେ ସ୍ତ୍ରୀଟି ଥାଏ ସ୍ୱାମୀ ଯାଏ ଏକୁଟିଆ । ପୁଣି ଫେରେ । ଦୁହେଁ ଠେଲା ପେଲା ହୁଅନ୍ତି । ସ୍ତ୍ରୀଟି ରୁଷେ । ସ୍ୱାମୀ ତାକୁ ସାକୁଲାଏ । ବେଳେ ବେଳେ ସ୍ୱାମୀ ରାଗେ, ସ୍ତ୍ରୀଟି ତା' ପାଖରେ ନେହୁରା ହୁଏ । ତାକୁ ପାଖକୁ ଡାକେ । ଦୁହେଁ ଭୁଲି ଯାଆନ୍ତି ରାଗ, ରୁଷା ଅଭିମାନ ।

ସୁନାନୀ ମୋତେ ଏସବୁ ଦୃଶ୍ୟ ଦେଖାନ୍ତି । କୁହନ୍ତି- ଦେଖ ସେମାନେ କେମିତି ଚଳୁଛନ୍ତି ହସ ଖୁସିରେ, ଶାନ୍ତିରେ । ତମ ପରି କିଏ ହେଉଛି ? ଟିକେ ଟିକେ କଥାରେ ରାଗ ଫଁ ଫଁ, ଫିଙ୍ଗା

ଫୋପଡ଼ା, ଉପାସ । ଦେଖ ତା' ସ୍ୱାମୀକୁ । ସ୍ତ୍ରୀଟି ରୁଷିଚି ବୋଲି କେମିତି ତାକୁ ସାକୁଲାଉଚି ସରାଗରେ । ମୁଁ ମନ ଊଣା କରିଥିଲେ ତମେ ମୋତେ କେବେ ଆଦର କରିଚ ? ପାଖକୁ ଡାକିଚ ?

ମୁଁ ଯୁକ୍ତି କରେ- ତା' ସ୍ତ୍ରୀ ଆଉ ତମେ କ'ଣ ସମାନ ? ସେ ସ୍ତ୍ରୀଟି ତା' ସ୍ୱାମୀକୁ ପ୍ରାଣଠୁ ବଳି ଭଲପାଉଚି । ତାକୁ ମୁହୂର୍ତ୍ତିଟିଏ ଅନ୍ତର କରୁନାହିଁ । ସବୁବେଳେ ହସି ହସି ମିଠା କଥା କହୁଚି । ତା'ର ସୁଖ ଦୁଃଖ ସବୁ ବୁଝୁଚି, ସବୁଥିରେ ଭାଗି ହେଉଛି । ତମର ସେତକ ଅଛି ! ତମର ପରା ପାନରୁ ଚୂନ ଖସିଗଲେ କଥା ସଇଲା । ପାଖକୁ ଆସିବ କ'ଣ, ବିଛଣା ପାରିଦେବ ଅଲଗା ଅଲଗା ।

ସୁନାନୀ କୁହନ୍ତି- ଥାଉ, ସେତିକି ଥାଉ । ମୁଁ କ'ଣ ତମ କଥା କିଛି ବୁଝୁଚି କି ? ତମର ସବୁ ଦୁଃଖ ପଡ଼ିଶା ଘର ସ୍ତ୍ରୀ ଲୋକମାନେ ଆସି ବୁଝୁଛନ୍ତି, ନୁହେଁ ? ତମେ କାହିଁକି ମୋତେ ବାହା ହେବାକୁ ଏତେ ଜିଦ୍ ଧରିଥିଲ । ଗଁଲନି ଆଉ କାହାକୁ ଗଳାହାର କରି ବେକରେ ଝୁଲେଇ ଥାନ୍ତ ?

ସେ ଦୁହେଁ ଆମ ଝଗଡ଼ା ଶୁଣନ୍ତି । ମନେ ମନେ ହସନ୍ତି । ସ୍ତ୍ରୀଟି ତା' ସ୍ୱାମୀକୁ କହେ- ତମେ ବହୁତ ଭଲ । ସେମାନଙ୍କଠୁ ଆମେ ଅଛେ ଖୁବ୍ ଶାନ୍ତିରେ, ସୁଖରେ । ତମେ ମୋତେ କେବେ ହେଲେ ସେମାନଙ୍କ ପରି ଆଦରରେ ଊଣା କରିବନି ।

ସ୍ୱାମୀଟି ତା' ଥଣ୍ଟକୁ ଖୁମ୍ପି ଦେଇ କହେ- ଆଲୋ, ନା ଲୋ ନା । ମୋତେ କାହିଁକି ସେମାନଙ୍କ ସହ ତୁଳନା କରୁଚୁ । ସେମାନେ ପରା ମଣିଷ । ସେମାନଙ୍କର ଦୁନିଆ ରାଗ, ଛନ୍ଦ, କପଟ । ଭଗବାନ ଆମକୁ ଏମିତି ଗଢ଼ିଛନ୍ତି, ଯେତେଦିନ ଆମେ ବଞ୍ଚି ରହିବା, ରହିବା ଖୁସିରେ, ଶାନ୍ତିରେ । ଆମେ ସବୁ ତ ଆଜନ୍ମରୁ କପଟହୀନ । ସେମାନେ ମଣିଷ- ମୁହଁରେ ହସ, ପେଟରେ ବିଷ ।

ସ୍ତ୍ରୀଟି ତା ପାଟିରେ ଥଣ୍ଟ ଘଷି କହିଲା- କାହିଁକି ତମେ ସେମିତି କଥା କହୁଚ । ଯେତେହେଲେ ସେମାନେ ଆମ ବସାର ମାଲିକ । ଆମକୁ ବିପଦ ଆପଦରେ ଆଶୟ ଦେଇଛନ୍ତି ।

ଦିନବେଳା ଦୁହେଁ ଘର ଭିତରେ ଏପଟ ସେପଟ ହୁଅନ୍ତି । ସେମାନଙ୍କର ଯିବା ଆସିବାରେ କିଛି ଠିକ୍ ଠିକଣା ନଥାଏ । ଯୁଆଡ଼େ ଗଲେ ବି ସେମାନେ ସନ୍ଧ୍ୟା ପୂର୍ବରୁ ଫେରି ଆସନ୍ତି ବସାକୁ । ବେଳେ ବେଳେ ଦ୍ୱିପ୍ରହରରେ ଅଳସ ଭାଙ୍ଗନ୍ତି । ଥରେ ସ୍ତ୍ରୀଟି ସିଲିଂ ଫ୍ୟାନ୍ ବ୍ଲେଡ୍‌ରେ ବାଡେଇ ହୋଇ ପଡ଼ିଗଲା ତଳେ । ତା' ପେଟରୁ ଧାର ଦାର ରକ୍ତ ବୋହିଲା । ସ୍ୱାମୀଟି ଚିତ୍କାର କଲା । ସାହାଯ୍ୟ ଲୋଡିଲା । ମୁଁ ଘରେ ନଥାଏ । ସୁନାନୀ ଧାଇଁ ଆସିଲେ । ତା' ସ୍ତ୍ରୀକୁ କୋଳକୁ ଉଠାଇ ଆଣିଲେ । ମୁଣ୍ଡରେ ପାଣି ଢାଳି ତାକୁ ଆଉଁଷି ଦେଲେ । ରକ୍ତ ବନ୍ଦ ହେବା ଲାଗି ତା' ପେଟରେ ଔଷଧ ଲଗାଇ ଦେଲେ । ତା' କାନରେ କହିଲେ-ସବୁବେଳେ ଏତେ ଅସାବଧାନରେ ବୁଲୁଚୁ କାହିଁକି ? ଯଦି ତୋର କିଛି ହୋଇ ଯାଇଥାନ୍ତା ?

ସ୍ତ୍ରୀ ଭୁଲିଗଲା ସବୁତକ କଷ୍ଟ, ଯନ୍ତ୍ରଣା । ହସି ହସି କହିଲା- ତମେ ସତରେ ବହୁତ ସ୍ନେହୀ । ମୋତେ କେତେ ଆଦର କରୁଚ । ତମର ଏତେ ଆଦରକୁ ଛାଡ଼ି ମୁଁ କ'ଣ କେବେ ବି ମରିପାରିବି ? ସବୁବେଳେ ମୁଁ ତମର ଋଣୀ ହୋଇ ରହିଥିବି । ମୁଁ ପରା ତମର ସ୍ନେହ କାଙ୍ଗାଳୁଣୀ !

ସୁନାନୀ ତାକୁ ଛାଡ଼ିଦେଲେ ତା' ସ୍ୱାମୀ ପାଖରେ । ସ୍ୱାମୀଟି ବି କୃତଜ୍ଞତା ଜଣାଇଲା ନୀରବରେ ।

ସେମାନେ ଆମ ଘରେ ରହୁଥିବାରୁ ଲାଭ କ'ଣ ହେଉଥାଏ, ମୁଁ ଆଦୌ ଜାଣି ପାରୁନଥାଏ । ମାତ୍ର କ୍ଷତି କ'ଣ ହେଉଥାଏ, ତାହା ମୋତେ ଜଳ ଜଳ ଦିଶୁଥାଏ । ମୁଁ ଚାକିରି ପାଉ ନଥାଏ । ମୋର ଋଣ ବଢ଼ିବାରେ ଲାଗୁଥାଏ । ବ୍ୟବସାୟରେ ଘଟି ଚାଲିଥାଏ କ୍ଷତି । ଏହାଛଡ଼ା ସେମାନେ ଆମ ଘର କାନ୍ଥରେ ଟଙ୍ଗା ହୋଇଥିବା କେତେଟା କାଚ ଫ୍ରେମ୍ ଆର୍ଟକୁ ଭାଙ୍ଗି ନଷ୍ଟ କରିଥାନ୍ତି । ଗୁହରେ ଭର୍ତ୍ତି ହେଉଥାଏ ଘର ଦ୍ୱାର । ଚଟାଣରୁ ଛାଡୁ ନଥାଏ ଦାଗ । ଅସ୍ନା ହେଉଥାଏ ପାଦ । ସବୁଠୁ ବଡ଼ ଅସୁବିଧା, ଆମେ ଛୁଟିରେ ଯୁଆଡ଼େ ଗଲେ ଝରକାଟେ ମେଲା ରଖିବାକୁ ପଡୁଥାଏ । ସେଥିଯୋଗୁ ଆମର ସବୁବେଳେ ଥାଏ ଚୋରୀ ହୋଇଯିବାର ଭୟ । ଅବଶ୍ୟ ସେମାନେ ରହିବା ଭିତରେ ଆମର କେବେବି ଚୋରୀ ହୋଇନାହିଁ । କିନ୍ତୁ ଆମେ ଘରକୁ ଫେରିବା ବେଳକୁ ଦେଖୁ ଘର ଭିତରଟା ହୋଇଥାଏ ଛିନଛତ୍ର । ସେମାନେ ଯାହା ଜିନିଷପତ୍ର ଭାଙ୍ଗୁଥାନ୍ତି ସେ ତ ଅଲଗା କଥା ମାତ୍ର ଆମ ବିଛଣାପତ୍ର ଉପରେ ଗଡ଼ାପଡ଼ା ହୋଇ ଖୁବ୍ ଅସ୍ନା କରି ପକାଉଥାନ୍ତି । ଏସବୁ ସତ୍ତ୍ୱେ ସେମାନେ ଆମକୁ ଦେଖି ଖୁବ୍ ଖୁସି ହୋଇ ଯାଉଥାନ୍ତି । ସତେ ଯେମିତି ଆମେ ସେମାନଙ୍କର ମିତ୍ର; ସବୁଠୁ ଅନ୍ତରଙ୍ଗ !!

ସୁନାନୀ ସେମାନଙ୍କ ଲାଗି ବିରି, ଚାଉଳ ନଚେତ୍ ଚଣା ମୁଠାଏ ବୁଣି ଦିଅନ୍ତି । ଦୁହେଁ ଖୁମ୍ପି ଖୁମ୍ପି ଖାଆନ୍ତି । ପେଟ ପୁରିଗଲେ ଉଡ଼ି ଯାଆନ୍ତି ଘର ଭିତରକୁ । ସ୍କାଇ ଲାଇଟ୍ ଭିତରେ ଘୁମାନ୍ତି ।

ଦିନେ ରାତି ଅଧରେ ସ୍ୱାମୀ ପଚାରିଲା- ଆଲୋ, ଏ ସ୍ତ୍ରୀ ଲୋକଟିର ନାଁ କ'ଣ ଜାଣିଚୁ ?

ସ୍ତ୍ରୀଟି ଉତ୍ତର ଦେଲା- ସୁନାନୀ ।

- କି ନାନୀ ? ପୁଣି ଥରେ ପଚାରିଲା ସ୍ୱାମୀ ।

-ସୁନାନୀ... ସୁନାନୀ... ସୁନାନୀ

-ସୁନାନୀର ପିଲାପିଲି ହବ ନାଇଁ କି ?

-ହବ ।

-ତୁ କେମିତି ଜାଣିଲୁ ?

-ଦେଖୁନ, କେମିତି ଫୁଲିଲାଣି ତା ପେଟ । ପିଲା ରହିଲାଣି ପେଟରେ ।

-କେବେ ହବ, ଆଉ ମାସ ?

-ଧେତ୍ ! ତମେ ସତରେ ନିହାତି ବୁଦ୍ଧୁ । ସେ କ'ଣ ମୋ ପରି ଉଷୁମ୍ ବସିଚି କି ଅଣ୍ଡା ଉପରେ । ମୋର ସିନା ମାସେ, ତା'ର ପୁରାପୁରି ଦଶମାସ ଦଶଦିନ । କମ୍ କଷ୍ଟ ପାଇବକି ? ତମେ କୁଆଡୁ ସେକଥା ବୁଝିବ । କେବଳ ଯିଏ ମା' ହେବ, ସେ ଜାଣିବ କଷ୍ଟ କେତେ । ଯନ୍ତ୍ରଣା କେତେ ।

ସତକୁ ସତ ସେ ଦୁଇଟା ଅଣ୍ଡା ଦେଇଥାଏ । ସବୁବେଳେ ତା' ଉପରେ ବସି ବସି ଉଷୁମୋଉଥାଏ । କାଳେ ବସାରୁ ଅଣ୍ଡା ଖସି ପଡ଼ିବ, ସେଥିଲାଗି ବସାରେ ଅଧିକ କାଠି କୁଟା ଖଞ୍ଜୁଥାଏ । ଏମିତି ସେସବୁ ସାଉତୁ ଥାଏ ଯେ ତା' ଉପରେ ଟିକିଏ ବି ବର୍ଷା ଛିଟିକା ପଡୁନଥାଏ । ସେଇ ଅଣ୍ଡା ଯୋଡ଼ିକ ଥାଏ ସେମାନଙ୍କର ସ୍ୱପ୍ନ, ସମ୍ପତ୍ତି । ତା' ଭିତରେ ଗଢ଼ି ଉଠୁଥାଏ ସେମାନଙ୍କର ଉଜ୍ଜ୍ୱଳ ଭବିଷ୍ୟତ, ଉତ୍ତରାଧିକାରୀ ।

ବସାରେ ଅଣ୍ଡା ରହିଥିବା କଥା ମୁଁ ସୁନାନୀଙ୍କୁ କହେ । ଏକଥା ଶୁଣି ସେ ହସନ୍ତି, ଅନାବିଳ ମାତୃତ୍ୱର ହସ । ସେ ହସରେ ଥାଏ, ଗର୍ଭ ସଞ୍ଚାରରେ ଥିବା ଆଉ ଜଣେ ନାରୀ ପ୍ରତି ଗଭୀର ମମତା । ମାତୃତ୍ୱ ଅପେକ୍ଷାରେ ରହିଥିବା ଦୁଇଟି ନାରୀଙ୍କ ମଧ୍ୟରେ ଗଢ଼ି ଉଠେ ଗୋଟେ ଗୋପନ

ସଂପର୍କ । ଏ ସଂପର୍କର ପରିଭାଷା ଭିନ୍ନ, ଅଲଗା । ସେ ସଂପର୍କର ସଂଜ୍ଞା ଏଯାବତ୍ ନିରୂପିତ ହୋଇନାହିଁ । ଦୁହେଁ କେବଳ ପରସ୍ପରର ଶୁଭଚିନ୍ତକ ଭାବେ ରହିଛନ୍ତି ଗୋଟିଏ ଘରେ, ଏକା ଛାତ ତଳେ । ଫରକ୍ କେବଳ ଏତିକି ଜଣକ ପେଟରେ ବଢୁଚି ଭ୍ରୁଣ, ଆର ଜଣକର ଅଣ୍ଡାରେ ସଞ୍ଚରୁଚି ଜୀବନ ।

ସୁନାନୀଙ୍କ ପେଟ ବଢୁଛି । ଭାରି ଭାରି ଲାଗୁଚି ଅଣ୍ଟା । ପାଦ ଯୋଡ଼ିକ ଫୁଲି ଯାଉଚି ଦେହର ଭାରରେ । ଅରୁଚି ହେଉଚି, ବାନ୍ତି ବାନ୍ତି ଲାଗୁଚି । ଇଚ୍ଛା ହେଉଚି ଖାଇବାକୁ ଭୂଇଁ ବରକୋଳି, ବାସି ପଖାଳ, ଖଟା ଆଚାର ।

ସ୍କାଇ ଲାଇଟ୍ ଉପରେ ସ୍ତ୍ରୀଟି ଚାହୁଁଚି ତଳକୁ । ତା'ର କ'ଣ ଖାଇବାକୁ ମନ ହେଉଛି ଖୁବ୍ ଚାଉଳ, ନା ମୁଗ ।

ସୁନାନୀ ବେଳେ ବେଳେ ପଚାରନ୍ତି- ତୋର ବି ଅରୁଚି ହେଲାଣି କି ? କ'ଣ ଖାଇବୁ କହୁନୁ ?

ସେ ଉତ୍ତର ଦିଏ- ରଜାଘର ପୋଖରୀ ପାଣି, କୁଞ୍ଜଲତାର ପାଚିଲାଫଳ । ହେଲେ କିଏ ଆଣିଦେବ ?

ସୁନାନୀ କହନ୍ତି- ମୋର ବି ଇଚ୍ଛା ହେଉଚି ଆକାଶ କଇଁଆ, ଚିଲିକାର ରୂପା କାତି ମାଛ । ମୋତେ ବି କିଏ ଆଣିଦେବ ?

ତଳ ପେଟକୁ ଆଦରରେ ଆଉଁଷନ୍ତି ସୁନାନୀ । ସ୍ତ୍ରୀଟି ସେମିତି ପେଟ ତଳକୁ ଯାକି ଆଣେ ଅଣ୍ଡା ଯୋଡ଼ିକୁ । ଅଜଣା ଅତିଥିଙ୍କ ଲାଗି ଦୁହିଁଙ୍କର ଥାଏ ପ୍ରତୀକ୍ଷା, ଯତ୍ନ । ବଦଳି ବଦଳି ଯାଉଥାଏ ସେମାନଙ୍କ ଦେହର ଭୁଗୋଳ । ପାଖେଇ ପାଖେଇ ଆସେ ମା' ହେବାର ଦିନ ।

ସୁନାନୀ ତିଆରି କରନ୍ତି କୁନି କନ୍ଥା, ରେକେଇ, ଗୋଲ୍ ତକିଆ । ଡ୍ରେସିଂ ଟେବୁଲ୍, ଟିଭି ଉପରେ ସଜା ହୁଏ କେତେ ରକମର କଣ୍ଢେଇ । ସଜାହୁଏ ରୁମୁରୁମିଆ କୁକୁର, ବିଲେଇ, ବାଘ, ଭାଲୁ । ପିଲା ଲାଗି ଚାଲେ ସଜବାଜ । ସ୍ୱାମୀ, ସ୍ତ୍ରୀ ଦୁହେଁ ସୁନାନୀଙ୍କୁ ଦେଖନ୍ତି । ସେମାନେ ବି ନିଜ ଛୁଆଲାଗି ସଜବାଜରେ ଲାଗିପଡ଼ନ୍ତି । ଗଦା ହୁଏ ଚିରାକନା, କୁଟାକାଠି, ମଇଳା ତୁଳା ଆହୁରି କେତେ କଅଣ । ସ୍କାଇଲାଇଟ୍ ତଳେ ଖସୁଥାଏ ପର, କାଠି, ଗଦା ହେଉଥାଏ ଗୁହ । ସୁନାନୀ ସିନା କିଛି କୁହନ୍ତି ନାହିଁ । ମୁଁ କିନ୍ତୁ ସେମାନଙ୍କ ଉପରେ ମନେ ମନେ ବିରକ୍ତ ହୁଏ । କାହିଁକି ସେମାନେ ଆମ ଘରେ ବସା ବାନ୍ଧିଛନ୍ତି ! ଘରଦ୍ୱାର ନଷ୍ଟ କରୁଛନ୍ତି ! ଆଉ ଥରେ ସିଲିଂ ଫ୍ୟାନ୍ ବ୍ଲେଡ୍‌ରେ ବାଡ଼େଇ ହୋଇ ଛିଡ଼ି ଯାଆନ୍ତା କି ସେ ଦୁହିଁଙ୍କର ବେକ !!

ଦିନେ ଭଡ଼ାଘର ମାଲିକାଣୀ ବୁଢ଼ୀ ଆସିଥାଏ ଆମ ଘରକୁ । ବୁଢ଼ୀଟା ଭାରି ନୁନ୍ଦୁକୁରିଆ । ମରିବାକୁ ବସିଲାଣି, ହେଲେ ତା' ପ୍ରକୃତି ଛାଡୁନି । ଘରକୁ ବସି ଚାଟୁଚି । ଆମ ଘରକୁ ବୁଢ଼ୀ ଆସିଲେ କବାଟ, ଝରକା, କାନ୍ଥ, ଚଟାଣ ସବୁ ଅଣ୍ଡାଳେ । କୋଉଠି ଟିକେ ଅଳନ୍ଧୁ ଲାଗିଥିଲେ, ପାଟି କରି ଫଟେଇ ପକାଏ । କାନ୍ଥରେ ଫିରିକ କଣ୍ଟାଟିଏ ବି ପିଟେଇ ଦିଏନି । ଦିନ ବେଳା ଯଦି କୋଉଠି ବଲ୍‌ବଟିଏ ଜଳୁଥାଏ, ତେବେ ଘରଭଡ଼ା ବଢ଼େଇ ଦେବାକୁ ଧମକ ଦିଏ ।

ବୁଢ଼ୀ ଆଖିରେ ପଡ଼ିଗଲା ବସାଟି । ଆଉ ତାକୁ ସମ୍ଭାଳେ କିଏ ! ଖାଲି ତ ଗର୍ଜି ଉଠିଲା । ଦାଣ୍ଡ ଦୁଆରେ ନାଚିଗଲା ତ ! ସୁନାନୀଙ୍କୁ କହିଲା- ତମେ ଆମ ଘରକୁ କ'ଣ ବୋଲି ପାଇଲଣି କି ? ଏଇଟା କ'ଣ କୁକୁଡ଼ା ଭାଡ଼ି !! ତମେ ଏ ଘରେ ଥାଉ ଥାଉ ପାରା ଆସି ବସା କଲେଣି । ହଗି ମୁତି ନାନାସ୍ଥାନ କଲେଣି । କ'ଣ ହେଲାଣି ଏ ଚଟାଣ । ଘରେ ରଙ୍ଗ ରହିବଟି ! ତମେ

ଥାଉ ଥାଉ ପାରା ରହିଲେଣି, କାଲି ପୁଣି ବିଲେଇ, କୁକୁରଙ୍କୁ ପୂରେଇବ । ତମର ଏତେ ନବରଙ୍ଗ ମୁଁ ସହି ପାରିବି ନାହିଁ କି ତମ ସହିତ କଳି ଝଗଡ଼ା ବି କରିପାରିବି ନାହିଁ । ତମେ ସେ ପାରାଙ୍କୁ ତୁରନ୍ତ ହଟାଅ, ନଚେତ୍ ଏ ଘର ଛାଡ଼ ।

ସୁନାନୀ ନେହୁରା ହେଲେ- ମାଉସୀ, ବିଚାରୀ ପାରାଟି ଅଣ୍ଡା ଦେଇଚି । ତାକୁ କ'ଣ ଆମେ ତଡ଼ିଦେବୁ । ଆଉ ଦିନ କେଇଟାରେ ସେ ଛୁଆ କରିବ । ତା'ପରେ ଆମେ ତା' ବସା ବଦଳାଇ ଦେବୁ । ସେମାନେ ଏବେ ଏଇଠି ଥାଆନ୍ତୁ ।

ବୁଢ଼ୀ ଫଁ କିନା ଗର୍ଜି ଉଠିଲା- କାହିଁକି ଏତେ ସରାଗ ? ତମର ଯଦି ଏତେ ସରାଗ ଉଚ୍ଛୁଳି ପଡୁଚି କେଉଁଠି ଗୋଟେ ଭାଡ଼ି ତୋଳି ଦେଉନା । ଏଇଟା ଆମ ଘର ନା ତମର ନନ୍ଦନକାନନ ବା ? ତମେ ଆଣି ଏଠି କୁକୁର ବିଲେଇ ରଖିବ । ଛୁଆ କରିବ ବୋଲି କ'ଣ ଆମ ମୁଣ୍ଡରେ ବସା କରିବ ?

ସୁନାନୀ ବୁଢ଼ୀ ସହିତ ଆଉ ଅଧିକ ଯୁକ୍ତି କରିନଥିଲେ । ସେ ଜାଣିଥିଲେ ବୁଢ଼ୀକୁ ଅଧିକ ଅନୁରୋଧ କଲେ ଫଳ ଓଲଟା ହେବ । ଘର ଖାଲି କରିବାକୁ ବୁଢ଼ୀ ଧମକ ଦେବ । ରାତିରେ ସୁନାନୀ ମୋତେ ସବୁକଥା କହିଲେ । ମୁଁ ଖୁସି ହେଲି । ଯା ହେଉ ମୁଁ ଯାହା ଚାହୁଁଥିଲି, ବୁଢ଼ୀ ସେ କାମ ତୁଲେଇ ଦେଇଚି ।

ମୁଁ କହିଲି-ଏଥର ପାଇଲ ତ ଫଳ ? ସେମାନଙ୍କୁ ଘରେ ପୂରେଇବା ଆମର କ'ଣ ଦରକାର ଥିଲା ? ସେମାନେ ଯୁଆଡ଼େ ଇଚ୍ଛା ସିଆଡ଼େ ରହିଥାନ୍ତେ । ଆମର ସେମାନଙ୍କ ଲାଗି କାହିଁକି ମୁଣ୍ଡ ବିନ୍ଧୁଚି ? ଏବେ ସେମାନଙ୍କ ଲାଗି ଆମେ ଏ ଘରୁ ତଡ଼ା ଖାଇବା ।

ସୁନାନୀ ଓକିଲାତି କଲେ- ଆମେ ଏ ଘରୁ ତଡ଼ା ଖାଇଲେ କିଛି ଯାଏ ଆସେନା । ମାତ୍ର ସେମାନଙ୍କୁ ଏମିତି ଅବସ୍ଥାରେ ତଡ଼ି ଦେବାକୁ ମୋ ମନ କହୁନାହିଁ । ମଣିଷର ବିବେକ ବୋଲି ତ କିଛି ଅଛି ?

ମୋ ରାଗ ପଞ୍ଚମକୁ ଉଠିଗଲା । କହିଲି-ତମର ଇଚ୍ଛା ଥାଉ କି ନଥାଉ, ମୁଁ ସେମାନଙ୍କୁ ଆଜି ଏ ଘରୁ ତଡ଼ିଦେବି । କେତେ କଷ୍ଟରେ ମିଳଚି ଏ ଘର ଖଣ୍ଡିକ, ତମେ କୁଆଡୁ ସେକଥା ବୁଝିବ ? ବରଂ ସେମାନଙ୍କ ଲାଗି ବାହାରେ କେଉଁଠି ବସାଟିଏ ତୋଳି ଦେବା ।

ସୁନାନୀ କାନ୍ଦି ପକେଇଲେ । କହିଲେ- ତମେ ବି କେଡ଼େ ନିଷ୍ଠୁର ! ସେମାନଙ୍କ କଷ୍ଟ ତମେ ବା କେମିତି ବୁଝିବ ? ସ୍ୱାମୀ, ସ୍ତ୍ରୀ ଦୁହେଁ ଆମ କଥା ଶୁଣୁଥାନ୍ତି । ବିକଳ ହୋଇ ମୋ ମୁହଁକୁ ଚାହୁଁଥାନ୍ତି । ବିଶ୍ୱାସ କରି ପାରୁ ନଥାନ୍ତି ମୋ ନିଷ୍ପତ୍ତିକୁ । ପରଦିନ ମୁଁ ଛାତ ଉପରେ ବସାଟିଏ ତିଆରି କରିବାରେ ଲାଗିଲି । ଛାତ ଉପରକୁ ଚଢ଼ିବାକୁ ପାହାଚ ନଥିବାରୁ ସିଡ଼ିଟିଏ ଆଣି ଛାତ ଉପରେ ଚଢ଼ିଲି । ଗୋଟେ ସାବୁନ୍ ପେଟିରେ ମେଞ୍ଚାଏ ଅଳିଆ ଗଦା କରି ତିଆରି କଲି ବସା । ସ୍କାଇଲାଇଟ୍ ପାଖରୁ ବସାଟିକୁ ଆଣିବା ପାଇଁ ଯିବାବେଳେ ସ୍ତ୍ରୀଟି ଖୁବ୍ କାନ୍ଦିଲା । ନେହୁରା ହେଲା- ବାବୁ, ତମେ ଏତେ ନିର୍ଦ୍ଦୟ ହୁଅନି । ମୋତେ ଆଉ ଦିନ କେଇଟା ସମୟ ଦିଅ । ଛୁଆ ହୋଇଗଲେ ମୁଁ ମନକୁ ମନ ତମ ଘରୁ ଚାଲିଯିବି । ତମକୁ ଜମା କଷ୍ଟ କରିବାକୁ ପଡ଼ିବ ନାହିଁ ।

ମୁଁ ତା' କଥା ଆଦୌ ଶୁଣିଲି ନାହିଁ । ବରଂ ମନେ ମନେ ଆନନ୍ଦରେ କୁରୁଳି ଉଠୁଥାଏ । ଅବଶ୍ୟ ବସାଟିକୁ ପେଟି ଭିତରେ ସାବଧାନରେ ରଖିଦେଲି । କାଲେ ସେମାନେ ପୁଣି ସ୍କାଇଲାଇଟ୍‌କୁ

ଫେରିବାକୁ ମନ କରିବେ, ସେଥିଲାଗି ସେଠାରେ ଗୋଟେ ମୋଟା ଟିଣ ବାଡେଇ ଦେଲି । ତାହା ପାଲଟିଗଲା ଏକ ନିବୁଜ ଗୁମ୍ଫା । ସବୁଦିନ ଲାଗି ସେ ଦୁହେଁ ହେଲେ ନିର୍ବାସିତ ।

ସେ ଦୁହେଁ ମନ ଦୁଃଖରେ କାନ୍ଦି କାନ୍ଦି ବାହାରିଗଲେ ଆମ ଘରୁ । ଯେମିତି ସେମାନଙ୍କୁ ଦିଆଯାଇଚି ଦେଶାନ୍ତର ଦଣ୍ଡ । ଆଉ କେବେ ବି ଫେରି ପାରିବେନି ନିଜେ ତିଆରି କରିଥିବା ବସାକୁ । ଭାଗ୍ୟକୁ ଆଦରି ରହିବେ ଖୋଲା ଆକାଶ ତଳେ ।

ଯାହା ହେଲେ ବି ସେମାନେ ଥିଲେ ଆମ ପଡୋଶୀ, ସୁଖ ଦୁଃଖର ସାଥି । ସେମାନଙ୍କୁ ତଡ଼ି ଦେଇ ଆମେ ହୋଇଗଲୁ ଖୁବ୍ ନିଃସଙ୍ଗ । ଆମ ସଂପର୍କରେ ସେମାନେ ବି ଆଉ ଗପିଲେ ନାହିଁ ।

ସବୁଦିନେ ଅଗଣାରେ ଚଣାବୁଟ ବୁଣନ୍ତି ସୁନାନୀ । ହେଲେ ସେମାନେ ଖାଇବାକୁ କେବେ ଆସନ୍ତି ନାହିଁ । ଯେଉଁଠି ଆନ୍ତରିକତା ନଥାଏ, ସେ ଖାଦ୍ୟ, ଖାଦ୍ୟ ନୁହେଁ- ବିଷ । ମୁହଁ ଖୋଲି ନକହିଲେ ବି ସେମାନେ ଯେ କଥାଟିକୁ ଠିକ୍ ବୁଝିଛନ୍ତି, ତାହା ମୁଁ ଠିକ୍ ଅନୁମାନ କରି ପାରୁଥାଏ । ସ୍ତ୍ରୀଟି ଅଧିକାଂଶ ସମୟରେ ସାବୁନ୍ ପେଟି ଭିତରେ ବସେ । ଅଣ୍ଡା ଯୋଡ଼ିକୁ ଉଷୁମୋଉ ଥାଏ । ଡେଣାରେ ତା'ର ନରମ ଖୋଳପାକୁ ସାଉଁଳାଉ ଥାଏ । କାଳେ ବିଲେଇ ଝାମ୍ପ ମାରିବ ସେଥିଲାଗି ମୁଁ ବସାଟିକୁ ଢେର୍ ଉଚ୍ଚରେ ବାନ୍ଧିଥାଏ । କୌଣସି ବିପଦ ଥାଉ କି ନଥାଉ ସ୍ୱାମୀଟି ସବୁବେଳେ ଆଣ୍ଟିନା ଉପରେ ବସି ପହରା ଦିଏ ।

ଅଗଣାରୁ ଥାଇ ବସାକୁ ଚାହାନ୍ତି ସୁନାନୀ । ସ୍ତ୍ରୀଟି ଅଭିମାନରେ ତାଙ୍କୁ କଥା କୁହେନା । ଘର ଛାଡ଼ିବା ପରଠୁ ସ୍ତ୍ରୀଟି ଦିନେ ବି ଆମ ଘରକୁ ଆସିନାହିଁ । ସ୍ୱାମୀଟି ଥରେ ଦୁଇଥର ଆସିଛି, ସ୍କାଇ ଲାଇଟ୍‌ରେ ଟିଣ କବାଟ ଦିଆ ଯାଇଥିବାରୁ ମନ ଦୁଃଖରେ ଫେରି ଯାଇଛି । ବାସ୍, ତା'ପରଠୁ ସେ ଦୁହେଁ ଆମ ଘରକୁ ଆସୁନାହାନ୍ତି ।

ପକ୍ଷୀ ହେଲେ ବି ସେମାନଙ୍କର ଥିଲା ସ୍ୱାଭିମାନ । ଅଥଚ ଆମେ ସେମାନଙ୍କୁ ତଡ଼ିଦେଲୁ ଅତି ନିର୍ଦ୍ଦୟ ଭାବେ । ଘରୁ ଯିବାବେଳେ ସେମାନେ ଆମକୁ ଅତି କାତର ଭାବେ ଚାହିଁ ଥିଲେ । ପଦେ ହେଲେ କିଛି କହିନଥିଲେ । ମଣିଷ ମଣିଷକୁ ଯେତେ ବୁଝେ, ଯେତେ ଭଲପାଏ, ସେମାନେ ଆମକୁ ତା'ଠୁ ଢେର୍ ଅଧିକ ଭଲ ପାଉଥିଲେ ।

ଦିନରାତି ସୁନାନୀ ସେମାନଙ୍କ କଥା ଗପନ୍ତି । ସେମାନଙ୍କୁ ତଡ଼ି ଦେଇ ଆମେ ଠିକ୍ କାମ କଲେ ନାହିଁ ବୋଲି ଦୁଃଖ କରନ୍ତି । ସୁନାନୀ କହନ୍ତି- ତା'ର ପିଲା ହେଲେ ଆମେ ସେମାନଙ୍କ ଜନ୍ମଦିନ ପାଳିବା । ସେମାନଙ୍କର ନାଁ ଦେବା । ତାଙ୍କୁ ସେହି ନାଁରେ ଡାକିବା । ଜନ୍ମଦିନରେ ଛୋଟ ଛୁଆଙ୍କ ହାତରେ ବାଣ୍ଟିବା ଲଡୁ, ମିଠେଇ ।

ସୁନାନୀଙ୍କ ଆଗ୍ରହ ଦେଖି ମୋତେ ହସ ଲାଗେ । ମୁଁ କହେ-ହେଉ, ହେଉ ତମେ ତାଙ୍କର ଜନ୍ମଦିନ ଓ ଏକୋଇଶିଆ ସବୁ ପାଳିବ । କାର୍ଡ ଛପେଇବ, ଭୋଜିଭାତ ଦେବ । ସେଦିନ ଆସୁ, ଏତେ ଅଥୟ କାହିଁକି ?

ମାତୃତ୍ୱର ମହନୀୟତା କେବଳ ଜଣେ ମାଆ ବୁଝିପାରେ, ଆମ ପରି ପୁରୁଷମାନେ ନୁହଁ ।

ଦିନେ ରାତି ଅଧରେ ସୁନାନୀ ମୋତେ ନିଦରୁ ଉଠାଇଲେ । କହିଲେ- ଦେଖ, ବାହାରେ କି ବର୍ଷା, ଝଡ ତୋଫାନ ।

ମୁଁ ଉଠିବା ଆଗରୁ ସେ ଝର୍କା ଫିଟାଇ ଦେଲେ । ହୁ ହୁ ହୋଇ ଘର ଭିତରକୁ ମାଡ଼ି ଆସୁଥାଏ ହେମାଳା ପବନ । ଛିନ୍ନ୍ ଛତ୍ର ହୋଇ ଯାଉଥାଏ ଘରର ଆସବାବ ପତ୍ର । ମୁଁ କହିଲି- ଝରକା ଖୋଲିଚ କାହିଁକି ବନ୍ଦକର ଶୀଘ୍ର ।

ସୁନାନୀ କହିଲେ- ସେ ଦୁହେଁ କ'ଣ କରୁଥିବେ ଏ ଝଡ଼ ବତାସରେ । କେମିତି ଥିବ ସେମାନଙ୍କର ବସା ! ଏତେ ଝଡ଼ ବତାସରେ ସେଠାରେ ରହିବା କ'ଣ ସମ୍ଭବ ! ମୋତେ ଭାରି ଡର ଲାଗୁଛି ।

ମୁଁ ବିରକ୍ତ ହେଲି- ତମେ ବେଶି ସୁହାଗ ଦେଖାଅନି । ଝରକା ବନ୍ଦ କର । ପବନ ଯେମିତି ବାଜୁଚି ଏ ଘରଦ୍ୱାର ରହିବନି ।

ସୁନାନୀ ମୋ କଥାକୁ ଆଦୌ କାନ ଦେଲେନି । ବାହାରକୁ ଟର୍ଚ୍ଚ ଟିପି ଡାକ ଛାଡ଼ିଲେ- ଆମ ଘରର ଝର୍କା ଖୋଲା ଅଛି । ତମେ ଦୁହେଁ ଚାଲିଆସ ଆମ ଘର ଭିତରକୁ । ଝଡ଼ ବଢୁଚି, ପ୍ରଳୟ ହେବ ।

ସ୍ୱାମୀଟି ତା' ସ୍ତ୍ରୀକୁ କହିଲା- ସୁନାନୀ ଡାକୁଛନ୍ତି, ଚାଲ୍ ଯିବା ତାଙ୍କ ଘରକୁ । ଏଠି ରହିଲେ ଘୋର ବିପଦ ।

ସ୍ତ୍ରୀଟି କହିଲା- ତମର ଇଚ୍ଛା ହେଉଛି ଯଦି ଯାଅ । ମୁଁ ଯିବିନି । ମୋ ଧନ ଦୁଇଟିଙ୍କୁ ଏକୁଟିଆ ଛାଡ଼ି ଦେଇ, ମୁଁ କେମିତି ଚାଲିଯିବି ଏ ଝଡ଼ ରାତିରେ । ମୋ ଛାତି ଫାଟି ଯିବନି ! ସେମାନେ ପରା ମୋ ପ୍ରାଣ ।

ସେମାନେ ଆସିଲେ ନାହିଁ ଆମ ଘରକୁ । ସୁନାନୀ ମୋତେ କହିଲେ- ସେମାନେ ପଛ କଥାକୁ ଧରିଛନ୍ତି । ମୋ ଉପରେ ରାଗି, ମୋ କଥା ଶୁଣୁନାହାନ୍ତି । ତମେ ସେମାନଙ୍କୁ ଥରୁଟିଏ ଡାକ । କାଳେ ଶୁଣିବେ ତୁମ କଥା ।

ମୁଁ ବିରକ୍ତ ହେଲି ସୁନାନୀଙ୍କ ଉପରେ । କହିଲି- କାହିଁକି ଏମିତି ପାଗଳୀଙ୍କ ପରି ହେଉଛ ରାତି ଅଧରେ । ପୃଥିବୀରେ ସବୁ ପକ୍ଷୀ ବସା କରି ରହୁଛନ୍ତି ଗଛ ଡାଳରେ ନା ଧାଇଁ ଆସୁଛନ୍ତି କୋଠା ଘରକୁ ?

ରାଗରେ ଝରକାଟିକୁ ମୁଁ ଧଡାସ୍ କରି ବନ୍ଦ କରିଦେଲି । ଟିକେ ଯାଅ ଛାତ ଉପରକୁ । ଦେଖ, ସୋମାନେ କେମିତି ଅଛନ୍ତି, ଭଲରେ ଅଛନ୍ତି ନା ନାହିଁ ?

ଭାରି ବିରକ୍ତ ହୋଇ ମୁଁ ଛାତ ଉପରକୁ ଚଢ଼ିଲି । ହେଲେ ସେଠି ଯାହା ଦେଖିଲି ବିଶ୍ୱାସ କରି ପାରିଲି ନାହିଁ । ସ୍ୱାମୀଟି ଗୁମ୍ ମାରି ବସିଚି ଗୋଟେ ଥୁଣ୍ଟା ଡାଳରେ । ବର୍ଷା ମାଡ଼ରେ ସାବୁନ୍ ପେଟିର ତଳ ପାଖଟି ଖୋଲି ଯାଇଛି । ତଳେ ଖସିପଡ଼ିଚି କାଠି କୁଟାର ବସାଟି । କଂକ୍ରିଟ୍ ଛାତ ଉପରେ ଦୁଇଫାଳ ହୋଇ ଯାଇଛି ଦୁଇଟି ଅଣ୍ଡା । ସେଥିରୁ ବାହାରି ପଡ଼ିଛନ୍ତି ଦୁଇଟି କୁନି କୁନି ଛୁଆ । ଡେଣା ନାହିଁ । ଦେହରୁ ଛାଡ଼ି ନାହିଁ ଲାଳ, ରକ୍ତ । ଫିଟି ନାହିଁ ଆଖି । ଓଠରୁ ଝରି ନାହିଁ କୁଆଁ କୁଆଁ ରାବ ।

ବର୍ଷା ଦାଉରୁ ବଞ୍ଚେଇ ରଖିବ ବୋଲି ମା'ଟି ଝଡ଼ ସହିତ ସାରା ରାତି ଯୁଝିଚି । ବତାସରେ ତୁଳା ଭିଣିଲା ପରି ଭିଜି ହୋଇ ଯାଇଚି ତା'ର ସବୁତକ ପର । ଆଖି ଡୋଳା ଦୁଇଟି ବାହାରି ଆସିଚି ପଦାକୁ । ମେଲା ହୋଇ ଯାଇଚି ସରୁ ଥଣ୍ଟ । ଅସମ୍ଭବ ଭାବେ ମୋଡ଼ି ହୋଇ ଯାଇଚି ତା'ର ନରମ ବେକ । ତଥାପି ଶେଷ ମୁହୂର୍ତ୍ତ ଯାଏ ସେ ପିଲା ଯୋଡିଙ୍କ ଉପରେ ଢଙ୍କାଇ ରଖିଚି ତା'ର ଦୁର୍ବଳ ଡେଣା । ତା'ପରେ ଛାଡ଼ି ଦେଇଚି ପ୍ରାଣ । ପିଲା ଯୋଡ଼ିଙ୍କୁ ବଞ୍ଚାଇ ରଖିବାର ଯୁଦ୍ଧ କ୍ଷେତ୍ରରେ ହସି ହସି ପାଲଟି ଯାଇଚି ଶହୀଦ୍ ।

ସୁନାନୀ ମୋତେ ଚାହିଁ ରହିଛନ୍ତି । ତାଙ୍କୁ ଏହି ହୃଦୟ ବିଦାରକ ବିରଳା ଦୃଶ୍ୟଟି ବର୍ଣ୍ଣନା କରିବାକୁ ମୁଁ ଭାଷା ପାଉନାହିଁ ।



# ପୁତ୍ର

## ପରେଶ କୁମାର ପଟ୍ଟନାୟକ

ସେଦିନ ସନ୍ଧ୍ୟାବେଳେ ଯାହା କିଛି ଉଚ୍ଚବାଚ ହୋଇଥିଲା ପୁଅ ସହିତ । ଉଚ୍ଚବାଚ ନୁହେଁ, ଯୁକ୍ତିତର୍କ କୁହାଯାଉ ।

ପୁଅ ଶଙ୍କର ପଚାରିଥିଲା : କେଉଁ ମସିହାରେ ତୁମର ଜନ୍ମ ?

ବାପା ମନୋହର ବାବୁ କହିଥିଲେ : ତୋତେ କ'ଣ ମିଳିବ ସେଥିରୁ ?

ପୁଅ କହିଥିଲା : ମିଳିବ ବୋଲି ତ ପଚାରୁଛି ।

ବାପା କହିଥିଲେ : ଉଣେଇଶ ତିରିଶ ।

ପୁଅ କହିଥିଲା : ତା'ମାନେ ଭାରତ ସ୍ୱାଧୀନ ହେଲା ବେଳକୁ ତୁମକୁ ଅଠର ବର୍ଷ ହୋଇଯାଇଛି । ଭାରତଛାଡ ଆନ୍ଦୋଳନ ବେଳକୁ ବାରବର୍ଷ ।

ବାପା କହିଥିଲେ : ହଁ । ହେଇଥିବ । ହେଲେ ଏ ହିସାବ ତୁ କାହିଁକି କରୁଚୁ ?

ପୁଅ କହିଥିଲା : ତୁମେ ଚାହିଁଥିଲେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇପାରିଥାଆନ୍ତ । ତୁମେ ଯୁବକ ହୋଇସାରିଥିଲ ସେତେବେଳକୁ । କିଛି ନ ହେଲେ ପିଲାଦିନୁ ବାନରସେନାରେ ମିଶିଯାଇ ପାରିଥାନ୍ତ ।

ବାପା ବୁଝିପାରି ନଥିଲେ ପୁଅର ମନ୍ତବ୍ୟକୁ ।

ପଚାରିଥିଲେ : ତ ! କ'ଣ ହେଲା ?

ପୁଅ ଗୋଟେ ହାଲ୍‌କା ଦୀର୍ଘଶ୍ୱାସ ପକାଇଲା ।

କହିଲା : ହବ ଆଉ କ'ଣ ? କିଛି ହେଲା ନାହିଁ । ତମେ ସ୍ୱାଧୀନତା ସଂଗ୍ରାମୀ ହୋଇପାରି ଥାଆନ୍ତ । ହେଲ ନାହିଁ । ନେତା ହୋଇଥାନ୍ତ, ମନ୍ତ୍ରୀ ହୋଇଥାନ୍ତ । ହେଲ ନାହିଁ । ଏବେ ପେନ୍‌ସନ ପାଉଥାଆନ୍ତ । ପାଇଲ ନାହିଁ ।

ବାପା କହିଥିଲେ : ମୁଁ ଜୀବନରେ କ'ଣ କଲି, କ'ଣ ନକଲି ସେ ସବୁର ହିସାବ ରଖିବା ତୋର କାମ ନୁହେଁ ।

ପୁଅ କହିଥିଲା : ଠିକ୍ ଅଛି । ତେବେ ମୁଁ ଜୀବନରେ କ'ଣ କଲି ନକଲି ସେ ସବୁର ହିସାବ କରିବା ମଧ୍ୟ ତୁମର କାମ ନୁହେଁ ।

ମନୋହର ବାବୁ କହିଥିଲେ : ମୁଁ ଯେ ତୋର ଭଲ ପାଇଁ କହୁଥିଲି ।

ପୁଅ ଚିଡିଯାଇ କହିଥିଲା : ମୁଁ କୋଉ ତୁମର ଖରାପ ପାଇଁ କହୁଥିଲି କି ? ତୁମେ ନେତା ହୋଇପାରିଥାନ୍ତ, ମନ୍ତ୍ରୀ ହୋଇପାରିଥାନ୍ତ, ବହୁତ ସମ୍ପତ୍ତି କରିପାରିଥାନ୍ତ । ସେଇ ସମ୍ପତ୍ତି ବଳରେ ଆମେ ଆହୁରି ଅୟସ କରିପାରିଥାଆନ୍ତୁ । କିନ୍ତୁ କିଛି ହେଲା ନାହିଁ । ତୁମେ କିଛି କଲ ନାହିଁ ।

ମନୋହର ବାବୁ କହିଥିଲେ : ବାପାକୁ ଉପଦେଶ ଦେବାର ଯୋଗ୍ୟତା ତୋର ଆସିଗଲାଣି ତେବେ ?

ଶଙ୍କର କହିଥିଲା : ଏଥିପାଇଁ ଯୋଗ୍ୟତାର ଆବଶ୍ୟକତା ନାହିଁ । ତୁମେ ତ ବେଶ୍ ଆରାମରେ କହି ଦେଇପାରୁଚ, ତୁ କାହିଁକି ଯା କଲୁନାହିଁ, ତୁ କାହିଁକି ତା କଲୁନାହିଁ । କାହିଁକି ଭଲ ପଢିଲୁ ନାହିଁ । କାହିଁକି ଚାକିରି କଲୁନାହିଁ । କାହିଁକି କୌଣସି ବେପାର ବି କଲୁନାହିଁ ?

ମନୋହର ବାବୁ ବେଶ୍ ବିରକ୍ତ ଦିଶିଥିଲେ ।

କହିଥିଲେ : ମୁଁ ତୋ ସହିତ ଏତେ ଯୁକ୍ତି କରିପାରିବି ନାହିଁ ।

ଶଙ୍କର କହିଥିଲା : ମୋର ମଧ୍ୟ ତୁମ ସହିତ ଯୁକ୍ତି କରିବାକୁ ଇଚ୍ଛା ନାହିଁ । ମୋର ବେଳ ହେଲାଣି । ମୁଁ ଯାଏ । ଟଙ୍କା ଶହେଟା ପାଖରେ ଅଛି ଯଦି ଦିଅ ।

ମନୋହର ବାବୁ କହିଲେ : ମୋ ପାଖରେ ନାହିଁ ।

ଶଙ୍କର କହିଲା : ତାହା ମୁଁ ଜାଣେ । ତୁମେ ଏଇଆ କହିବ ବୋଲି ମୁଁ ଜାଣେ । ତୁମେ ଏଇଆ କହି ଆସିଚ ସବୁ ଦିନେ । ଠିକ୍ ଅଛି । ବାକି ରହିଲା ଟଙ୍କାଟା ତୁମ ଉପରେ । ମୁଁ ଚାଲିଲି । ତେବେ ତୁମ ଉପରେ ସର୍ବମୋଟ ବାକି କେତେ ହେଲା ଶୁଣି ରଖ । ମୋଟ ବାକି ଆଜି ସୁଦ୍ଧା ହେଲା ଷାଠିଏ ହଜାର ସାତଶ ପଚାଶ ଟଙ୍କା । ଦୟାକରି ସୁବିଧା ଦେଖି ଟଙ୍କାଟା ଶୁଝି ଦେଲେ ଭଲ ହେବ ।

ଶଙ୍କର ଚାଲିଗଲା । ହୁଏତ କୌଣସି ମଦ ଦୋକାନରେ ବସି ମାଲ୍ ପିଇବ କିମ୍ବା ଗଞ୍ଜେଇ ଖଟିରେ ଗଞ୍ଜେଇ ଟାଣିବ । ଗଭୀର ରାତିରେ ଘରକୁ ଫେରିବ ଓ ସମସ୍ତଙ୍କ ସହିତ ପାଟିତୁଣ୍ଡ କରିବ ।

ମନୋହର ବାବୁ ଏ ସମ୍ପର୍କରେ ପତ୍ନୀଙ୍କ ସହିତ ଝଗଡା କରନ୍ତି । ବନ୍ଧୁବାନ୍ଧବମାନଙ୍କ ସହିତ ଆଲୋଚନା କରନ୍ତି ଏବଂ ଏକାନ୍ତରେ ନିଜକୁ ନିଜେ ବିଶ୍ଳେଷଣ କରନ୍ତି । କାହିଁକି ଏମିତି ହେଲା ? କାହିଁକି ଏମିତି ହୋଇଗଲା ? । ପୁଅକୁ ଗଢି ତୋଳିବାରେ କୋଉଠି କେମିତି ଭୁଲ୍ ରହିଗଲା ଯେ ଆଜି ସେ ବିଷ ଦ୍ରୁମ ଭଳି ଠିଆ ହେଇଚି । ଚେରେଇ ଯାଉଚି । ବିଶାଳ ହେଇଯାଉଚି । ଭୟଙ୍କର ହେଇ ଆସୁଛି ଏବଂ ସୂଚନା ଦେଉଛି ଏକ ବିପଦପୂର୍ଣ୍ଣ ଭବିଷ୍ୟତର ।

କିଛିଦିନ ତଳେ ସେ ଯୁକ୍ତି କରିଥିଲା ଆଉ ଏକ ଢଙ୍ଗରେ ।

ପଚାରିଥିଲା : ଆଚ୍ଛା ବାପା ! ତୁମର ଜନ୍ମ ହେଲା ଉଣେଇଶ ତିରିଶରେ । ତୁମେ ବିବାହ କଲ ଉଣେଇଶ ପଞ୍ଚଷଠୀରେ । ମୋର ଜନ୍ମ ହେଲା ଉଣେଇଶ ସତୁରୀରେ । କିନ୍ତୁ କାହିଁକି ? ତୁମେ ଉଣେଇଶ ପଚାଶ ବାଉନରେ ବାହା ହେଇ ପାରିଥାଆନ୍ତ । ଲୋକ କୋଡିଏ ବାଇଶରେ ବିବାହ କରିବା କଥା ।

ମନୋହର ବାବୁ କହିଥିଲେ : ଏସବୁ କଥା ପଚାରିବା ତୋ ପକ୍ଷରେ ଉଚିତ ହେଉନି ।

ଶଙ୍କର କହିଥିଲା : ଉଚିତ କାହିଁକି ହେଉନି । ଏଇଟା ମୋ ନିଜ ଜୀବନର କଥା । ମୁଁ ପଚାରିବିନି କାହିଁକି ? ହୁଏତ ଉଣେଇଶ ବାଉନ ତେପନରେ ମୁଁ ଜନ୍ମ ନେଇପାରିଥାଆନ୍ତି । ହୁଏତ ସେତେବେଳର ସମୟ ଆହୁରି ଅନୁକୂଳ ହୋଇପାରିଥାନ୍ତା ବଞ୍ଚିବା ପାଇଁ । ଗଢି ଉଠିବା ପାଇଁ । ମୋର ଜନ୍ମ ନେବାକୁ ତୁମେ ଏମିତି ଅକାରଣରେ ଘୁଞ୍ଚାଇ ଦେବା ଉଚିତ ନଥିଲା । ଏମିତିକି ଉଣେଇଶ ଛଅଷଠୀରେ ମୁଁ ଜନ୍ମ ନେଇପାରିଥାଆନ୍ତି । ମୋର ଚାରିବର୍ଷ ସେଭ୍ ହେଇ ଯାଇଥାଆନ୍ତା ।

ମନୋହର ବାବୁ ବୁଝାଇବା ଢଙ୍ଗରେ କହିଥିଲେ : ଏ ସବୁ କାହାରି ହାତର କଥା ନୁହେଁରେ ବାବୁ ! ସବୁ ବିଧି ନିର୍ଦ୍ଦିଷ୍ଟ ।

ପୁଅ ମୁହଁ ଛିଣ୍ଡାଡି କହିଥିଲା : ଯଦି ଏସବୁ ବିଧି ନିର୍ଦ୍ଦିଷ୍ଟ ଥିଲା, ତେବେ ମୋର ଏପରି ଜୀବନ ବାଛି ନେବା ବି ବିଧି ନିର୍ଦ୍ଦିଷ୍ଟ ଥିଲା । ତୁମକୁ ଏପରି ପଚାରିବା ବି ବିଧି ନିର୍ଦ୍ଦିଷ୍ଟ । ତୁମ ଉପରେ ବୋଝ ହେବା ବି ବିଧି ନିର୍ଦ୍ଦିଷ୍ଟ । ଆପାତତଃ ସବୁ କିଛି ବିଧି ନିର୍ଦ୍ଦିଷ୍ଟ ।

ତା'ପରେ ସେ ହସିଥିଲା ଏକ ବିଚିତ୍ର ହସ ।

ଏବଂ ପରେ ପରେ ଚାଲି ଯାଇଥିଲା ।

ମନୋହର ବାବୁ ପଛକୁ ଫେରି ଚାହିଁଲେ ।

ପୁଅ ଠିକ୍ ସମୟରେ ଭୂମିଷ୍ଠ ହେଇଥିଲା । ଠିକ୍ ସମୟରେ ଚାଲି ଶିଖିଥିଲା । ଠିକ୍ ସମୟରେ କଥା କହିବା ଆରମ୍ଭ କରିଥିଲା । ଠିକ୍ ସମୟରେ ସ୍କୁଲ ଯାଇଥିଲା । ସ୍କୁଲରେ ଶ୍ରେଣୀ ପରେ ଶ୍ରେଣୀ ଉତ୍ତୀର୍ଣ୍ଣ ହୋଇଥିଲା ଯଥାରୀତି । ଖେଳରେ କପ୍ ଜିତିକି ଘରକୁ ଆଣୁଥିଲା । ପ୍ରତିଯୋଗିତାରେ ସାର୍ଟିଫିକେଟ୍ ହାସଲ କରୁଥିଲା । ସବୁ କିଛି ଥିଲା ଠିକ୍ ଓ ଉତ୍ସାହପ୍ରଦ ।

କିନ୍ତୁ କେତେବେଳେ କେମିତି କେଜାଣି ଗୋଟେ ଅଚିହ୍ନା ଓ ବିଚିତ୍ର ଜୀବାଣୁ ପ୍ରବେଶ କରିଗଲା ତା' ଭିତରେ ଓ ସେ ଏବେ ହେଇଆସୁଛି ଦୂରନ୍ତ ଓ କଷ୍ଟାମୟ । ପାଖରେ ଥାଇ ବି ହାତ ବଢେଇ ହଉନି । ହାତ ବାଜିଗଲେ ଯେମିତି ହାତ କଟିଯିବ । ସେ ଆସ୍ତେ ଆସ୍ତେ ମନେ ହେଉଛି ଅଜଣା ଅଚିହ୍ନା ଲୋକଟେ । ଏ ଘରର ନୁହେଁ । ତାଙ୍କର ରକ୍ତର ନୁହେଁ । ତାଙ୍କ ସ୍ୱପ୍ନର ନୁହେଁ । ତାଙ୍କ ରୁଚିବୋଧର ନୁହେଁ । ତାଙ୍କ ସଂସ୍କୃତିର ନୁହେଁ । ଅପରିଚିତ ଏବଂ ଆତତାୟୀ ସୁଲଭ । ଉଦ୍ଧତ, ଅବିନୀତ ଏବଂ ହିଂସ୍ର । ନା ! ସେ ବାହାରେ କୋଉଠି ଗଣ୍ଡଗୋଳ କରେନା । ଛକରେ ମାର୍‌ପିଟ୍ କରେନା । ମଦପିଇ ରାସ୍ତାରେ ଗଡେନା କିମ୍ବା ମଦନିଶାରେ କାହା ସହିତ ପାଟିତୁଣ୍ଡ କରେନା । ତା'ର ସବୁରାଗ ଯେମିତି ଘର ଲୋକଙ୍କ ଉପରେ । ସବୁ ଅଭିମାନ ବାପା ମା'ଙ୍କ ଉପରେ ।

ସେ ଘରେ ହିଁ ଶୁଝାଏ ତା'ର ସବୁ ଆକ୍ରୋଶ । ସବୁ କ୍ରୋଧ ।

କହେ : ଦିନେ ନା ଦିନେ ସମସ୍ତଙ୍କୁ ଶେଷ କରିଦେବି ।

ମାଆ ନିର୍ମଳା ଦେବୀ ବୁଝାନ୍ତି : କାହିଁକି ? ଆମେ ତୋର କ'ଣ ଦୋଷ କଲୁ ?

: ମୋତେ ଜନ୍ମ ଦେଉଥିଲ କାହିଁକି ?

: ସେଇଟା ଆମର ଅପରାଧ ହେଇଗଲା ।

: ଅପରାଧ ନୁହେଁ, ଆଉ କ'ଣ ଉପକାର ।

: ସଂସାର ସାରା ସମସ୍ତେ ଏମିତି ପୁଅଝିଅ ଜନ୍ମ କରୁଛନ୍ତି । ସେଟା କ'ଣ ତେବେ ଭୁଲ୍ ।

: ମୋତେ ସଂସାରର ଆଉ କାହା କଥାରୁ କ'ଣ ମିଳିବ ! ମୋ ନିଜ କଥା ମୁଁ କହୁଚି ।

: କ'ଣ ତୋର ନିଜ କଥା ।

: ମତେ ଜନ୍ମ ଦେବା ତୁମମାନଙ୍କର ଭୁଲ୍ ଓ ତା'ର ପ୍ରତିଫଳ ତୁମମାନଙ୍କୁ ହିଁ ଭୋଗ କରିବାକୁ ପଡିବ ।

କ'ଣ ସେଇ ପ୍ରତିଫଳ କଳ୍ପନା କରନ୍ତି ନାହିଁ ନିର୍ମଳାଦେବୀ । କିନ୍ତୁ ଶଙ୍କର ଯେ କ୍ରମଶଃ ଗୋଟେ ଅଦ୍ଭୁତ ଚରିତ୍ରରେ ପରିଣତ ହୋଇଯାଉଛି ତାହା ସେ ଅନୁଭବ କରିପାରନ୍ତି । ଦୁଃଖିତ ହୁଅନ୍ତି । କାନ୍ଦନ୍ତି । ବିଳାପ କରନ୍ତି ।

ମନୋହରବାବୁ କହନ୍ତି : ଆମର କ'ଣ ତାକୁ ଗଢି ତୋଳିବାରେ କୋଉଠି ତ୍ରୁଟି ରହିଗଲା ।

କେମିତି ଗଢା ହୁଅନ୍ତି ମଣିଷ ? ତା'ର ଅଛି କିଛି ଫର୍ମୁଲା ବା ନୀତିନିୟମ ?

ବନ୍ଧୁବାନ୍ଧବ, ସାଇପଡିଶା, ସମସ୍ତେ କହନ୍ତି : ସବୁ ତୁମରି ଦୋଷ । ବାପା ମା'ଙ୍କ ଦୋଷ !

ନିର୍ମଳା ଦେବୀ ସ୍ୱଗତୋକ୍ତି କରନ୍ତି : କ'ଣ ଆମର ଦୋଷ ? କୋଉଠି ଦୋଷଟା ହେଇଗଲା ? ସଂସାର ସାରା ସମସ୍ତେ ଯେମିତି ପିଲାଙ୍କୁ ଖୁଏଇ ପିଏଇ ବଡ କରୁଛନ୍ତି । ପାଠ ପଢାଉଛନ୍ତି ଆମେ ତ ସେମିତି କଲୁ, ଭୁଲ୍ ଆଉ ରହିଲା କେଉଁଠି ?

ପରାମର୍ଶଦାତା, ଶୁଭେଚ୍ଛୁମାନେ କୁହନ୍ତି- ଭୁଲ୍ ତ କୋଉଠି ନା କୋଉଠି ଅଛି ! ନୋହିଲେ ପିଲାଟା ଏମିତି ଅମଣିଷ ହୋଇଯାଆନ୍ତା କାହିଁକି ? ମନୋହର ବାବୁ ହେଜି ହୁଅନ୍ତି ।

ଭୁଲ୍ କୋଉଠି ରହିଲା ? କୋଉଠି ? ସେ ପଛକୁ ଅନାନ୍ତି । ଶଙ୍କରର ଜନ୍ମଠୁ ତା'ର ଗଢି ହେଇଆସିବା, ଯୁବକ ହେଇ ଆସିବା ପର୍ଯ୍ୟନ୍ତ ସବୁ ଦୃଶ୍ୟ ଆଖି ସାମ୍ନାକୁ ଆସିଯାଏ । ଏବଂ ସବୁ ଦୃଶ୍ୟରେ ସେ ଦିଶେ ଶାନ୍ତ, ସୁଧାର, ସୁଶୀଳ । ଏମିତିକି ତା'ର ଚେହେରା, ବ୍ୟବହାର ଦେଖିଲେ ଗର୍ବ ଆସେ । କେବେ, କେତେବେଳେ କେମିତି ସେ ହିଂସ୍ର ହୋଇଆସିଲା ସେ ଜାଣନ୍ତି ନାହିଁ । ହୁଏତ ଜାଣିପାରିନାହାନ୍ତି ।

ପୁଅ ଠିକ୍ ପାଠ ପଢୁଥିଲା । ହଠାତ୍ ଗ୍ରାଜୁଏସନ୍‌ର ଶେଷ ପରୀକ୍ଷାରୁ ଉଠି ଆସିଲା । ପଚାରିବାରୁ କହିଲା, ପରୀକ୍ଷା ଦେଇ ଲାଭ କ'ଣ ? ତା' ସହିତ ବେଶି ଯୁକ୍ତିତର୍କ କରି ନାହାନ୍ତି ମନୋହର ବାବୁ । ଆଶା କରୁଥିଲେ ପରବର୍ତ୍ତୀ ପରୀକ୍ଷାକୁ ସେ ପ୍ରସ୍ତୁତ ହେବ । ତାଙ୍କଠୁ ପଇସା ନେଇ ସେ ଫର୍ମପୂରଣ କରିବ । ରାତିରାତି ଜାଗି ପାଠ ପଢିବ । ପରୀକ୍ଷା ଦିନ ସକାଳୁ ମନ୍ଦିରକୁ ଯାଇ ଭକ୍ତି ଜଣେଇବ ଠାକୁରକୁ । କିନ୍ତୁ ନା ! ସେମିତି କିଛି ଘଟିଲାନି । ବରଂ ଶଙ୍କର ସବୁ କିଛିକୁ ଏଡେଇ ଯିବାକୁ ଚେଷ୍ଟା କଲା ଓ ଘରେ ଅଧିକରୁ ଅଧିକ ସମୟ ଅନୁପସ୍ଥିତ ରହିଲା ।

ସୁବିଧା ଦେଖି ମନୋହର ବାବୁ ପଚାରିଥିଲେ- ତୁ କ'ଣ ଆଉ ପରୀକ୍ଷା ଦେବୁନି ?

ଶଙ୍କର କହିଥିଲା- ହୁଏତ ନା !

ମନୋହର ବାବୁ ପଚାରିଥିଲେ- ତେବେ କ'ଣ କରିବୁ ?

ଶଙ୍କର କହିଥିଲା- ହୁଏତ କିଛି କରିବି ନାହିଁ ।

ମନୋହର ବାବୁ ପଚାରିଥିଲେ- କିଛି ତ ଗୋଟାଏ କରିବାକୁ ପଡିବ ?

ଶଙ୍କର ତାଙ୍କୁ କଟମଟ କରି ଅନେଇଥିଲା ।

କହିଥିଲା- କିଛି ଗୋଟିଏ କରିବା କ'ଣ ନିହାତି ଜରୁରୀ !

ତା'ପରେ ସେ ବାହାରକୁ ଚାଲିଯାଇଥିଲା ।

ଏ ପ୍ରସଙ୍ଗରେ ମନୋହର ବାବୁ ଯେତେ ଯେତେ ଥର ବନ୍ଧୁ ସମ୍ପର୍କୀୟଙ୍କ ସହିତ ଆଲୋଚନା କରିଛନ୍ତି, ବିବିଧ ପରାମର୍ଶ ମିଳିଛି ତାଙ୍କୁ ।

-କୌଣସି ଜ୍ୟୋତିଷ ସହ ପରାମର୍ଶ କରନ୍ତୁ । କୋଷ୍ଠୀଟା ଟିକେ ଦେଖାନ୍ତୁ ।

-ନାଇଁ ହୋ ! ଜ୍ୟୋତିଷ କ'ଣ କରିବ ? ବରଂ ଗୁଣିଆ ଫୁଣିଆଙ୍କୁ ଦେଖାନ୍ତୁ । କିଏ କୋଉଠି କ'ଣ ବାଣ ପେଷି ଦେଇଥିବ ।

-ଗୁଣିଆ ! ନାଇଁ ନାଇଁ ! ଆଜିକାଲି ଯୁଗରେ କିଏ ଗୁଣିଆକୁ ବିଶ୍ୱାସ କରେ । ବରଂ ଜଣେ ସାଇକୋଲୋଜିଷ୍ଟଙ୍କୁ ଦେଖାନ୍ତୁ ।

-ସାଇକୋଲୋଜିଷ୍ଟ କ'ଣ ଅଧିକା କଥା କହିବ ? ନିଜେ ଅବଜର୍ଭ କର । ତା'ର ସାଙ୍ଗମାନଙ୍କୁ ଲକ୍ଷ୍ୟ କର । ତା'ର ପରିବେଶଟାକୁ ଅନୁଧ୍ୟାନ କର ।

-ନାଇଁ ହୋ ! ସାଙ୍ଗଫାଙ୍ଗ ଛାଡ । ଝିଅଫିଅ ଚକ୍‌କର କୋଉଠି ଥିବ ଦେଖ !

ଶଙ୍କରକୁ ଢେର ଢେର ଅବଜରଭେସନ ଭିତରେ ରଖାଯାଇଛି । କିନ୍ତୁ କିଛି ଫଳ ମିଳିନାହିଁ । ତା'ର କେହି ସାଙ୍ଗ ନାହାନ୍ତି । ଝିଅପିଲା ସାଙ୍ଗ ତ ଦୂରର କଥା । ସେ ଖୁବ୍ ଏକା । ଘରୁ ବାହାରି ଯାଏ । ଏକୁଟିଆ ବସେ ପାର୍କରେ । ମଦ୍ୟଶାଳାକୁ ଯାଏ । ପିଏ, କିନ୍ତୁ କାହା ସହିତ ବକ୍‌ବାସ୍ କରେନା । ଗଞ୍ଜେଇ ଖଟିକୁ ଯାଏ । ଗଞ୍ଜେଇ ଟାଣେ । କିନ୍ତୁ ହୋ-ହାଲ୍ଲା ନାହିଁ । ତା'ର ଯାହା କିଛି ଅଭିଯୋଗ ବାପା ମା'ଙ୍କ ବିରୋଧରେ । ତା'ର ଯାହା କିଛି ଯୁକ୍ତିତର୍କ ବାପାମା'ଙ୍କ ସହିତ । ପୃଥିବୀର ଅନ୍ୟ ସମସ୍ତ ମଣିଷ ତା'ର କ୍ରୋଧ ବା ହିସାବର ବାହାରେ । ସେମାନଙ୍କ ଅସ୍ତିତ୍ୱକୁ ସେ ସ୍ୱୀକାର କରେନା । ପୃଥିବୀର ଅନ୍ୟ କୌଣସି ସମସ୍ୟା ତାକୁ ସ୍ପର୍ଶ କରେନା । ଅନ୍ୟ କୌଣସି ଘଟଣା ତାକୁ ବିଚଳିତ କରେନା ।

ନିର୍ମଳା ଦେବୀ ପ୍ରଶ୍ନ କରନ୍ତି- କ'ଣ ତେବେ ହେବ ?

ମନୋହର ବାବୁ ଦୀର୍ଘ ଶ୍ୱାସ ପକାନ୍ତି- କିଏ ଜାଣେ ?

ସେ ପୁଣି ଥରେ ମାଆଙ୍କ ସହିତ ଯୁକ୍ତିତର୍କ କରିଥିଲା ଏମିତି ।

ପଚାରିଥିଲା- ଆଚ୍ଛା ତୁମେମାନେ ଏତେ ଏତେ ଦିନ ଧରି ବଞ୍ଚି ରହିଛ କାହିଁକି ?

ନିର୍ମଳା ଦେବୀ ବିରକ୍ତ ଓ ଆତଙ୍କିତ ଦିଶିଥିଲେ ।

କହିଥିଲେ- ଏମିତି କ'ଣ କଥାବାର୍ତ୍ତା କରୁଛୁ ?

ଶଙ୍କର କହିଥିଲା : ତୁମେମାନେ ଏତେ ଏତେ ଦିନ ଧରି ବଞ୍ଚିଲଣି । ପୃଥିବୀରୁ ଯଥେଷ୍ଟ ଖାଦ୍ୟ, ବାୟୁ ନଷ୍ଟ କଲଣି । ସେକଥା ପଚାରିବାରେ ଭୁଲ୍ ହୋଇଗଲା ।

ନିର୍ମଳା ଦେବୀ କହିଥିଲେ- ବାପା ମା'ଙ୍କ ସହିତ ଏଭଳି କଥାଭାଷା କରାଯାଏନା । ବାପା ମା' କାହିଁକି କାହାରି ସହିତ ଏଭଳି କଥାଭାଷା କରାଯାଏନା ।

ଶଙ୍କର ଯୁକ୍ତି କରିଥିଲା- କାହିଁକି କରାଯାଏନା । ବାପା ମା ହେଲ ବୋଲି ତୁମେମାନେ କ'ଣ ଆଇନର ଉର୍ଦ୍ଧ୍ୱରେ । ସବୁ ପ୍ରଶ୍ନର ଉପରେ ?

ମାଆ କହିଥିଲେ- ମୁଁ ତୋ ସହିତ ଯୁକ୍ତି କରିପାରିବିନି । ମୋର ଦୁନିଆ ଯାକର ଘରକାମ ପଡିଛି । ମୁଁ ଯାଏଁ ।

ମାଆ ହୁଏତ ଏଡେଇ ଦେଇ ଘଟଣାଟିକୁ, ଯୁକ୍ତିଟିକୁ, ଚାଲିଯିବାକୁ ବସିଥିଲେ କିନ୍ତୁ ସେପରି ହେବାର ସୁଯୋଗ ହେଲା ନାହିଁ ଶଙ୍କର ।

କହିଲା- ତା'ମାନେ ତୁମେ ପ୍ରଶ୍ନଟିକୁ ଏଡେଇ ଦେବାକୁ ଚାହୁଁଛ କିମ୍ବା ତୁମକୁ ଉତ୍ତର ଜଣାନାହିଁ । ତୁମେମାନେ ଅର୍ଥହୀନ ଭାବରେ ଜୀବନ ଜିଉଛ । ଅକାରଣରେ ଏ ପୃଥିବୀରୁ ପାଣି, ପବନ, ଖାଦ୍ୟସାର ଶୋଷି ଚାଲିଛ ଏବଂ ସେ କଥା ପଚାରିଲେ ବିରକ୍ତ ହେଇ ପଡୁଚ ?

ମାଆ ରାଗିଯାଇଥିଲେ ।

ତେବେ ଶଙ୍କର ଥିଲା ବେଶ ନିର୍ଲିପ୍ତ । ବେଶ ନିରୁତ୍ତେଜିତ ।

ମାଆ କହିଥିଲେ- ତୋ ମନେ ମନେ ତୁ ନିଜକୁ କ'ଣ ବୋଲି ଭାବୁଚୁ କି ? ତୁ ମନେମନେ କ'ଣ ବୋଲି କ'ଣଟାଏ ହେଇଗଲୁଣି ଦେଖୁଚି ।

ଚ୍ୟାଲେଞ୍ଜ୍ କଲାଭଳି ଶଙ୍କର କହିଥିଲା- ହେଲି ଆଉ କେତେବେଳେ ? ହେଲି ନାହିଁ । ମୋର ଆପାତତଃ କିଛି ଦରକାର ନାହିଁ । ମୋର କିଛି ହେବାର ବାଟ ବନ୍ଦ ହେଇଯାଇଛି । ତୁମେମାନେ ବନ୍ଦ କରିଦେଇଛ । ହେଲେ ହେଇଥାନ୍ତି ବା, କୋଡିଏ, ଚାଳିଶ ବା ଶହେ ବର୍ଷ ଆଗରୁ ଜନ୍ମ ନେଇଥିଲେ । ଏମିତିକି ତୁମ ଆଗରୁ ଜନ୍ମ ହେଇଥିଲେ କିଛି କରିପାରିଥାନ୍ତି ।

ସେତେବେଳେ ସୁଯୋଗ ଥିଲା । ଏବେ ଆଉ କିଛି ସୁଯୋଗ ନାହିଁ । ଏବେ ଆଉ କିଛି ହେବାର ନାହିଁ ।

ଅବଶ୍ୟ ଆଉ ଦିନେ ମନୋହର ବାବୁ ତାକୁ ବୁଝେଇବାକୁ ଉଦ୍ୟମ କରିଥିଲେ ।

କହିଥିଲେ- ଏବେ କ'ଣ ଲୋକ କିଛି କରୁନାହାନ୍ତି ? ପିଲାମାନେ କିଛି କରୁନାହାନ୍ତି । ଚାକିରି କରୁଛନ୍ତି । ବ୍ୟବସାୟ କରୁଛନ୍ତି ।

ଶଙ୍କର ମତ ଶୁଣାଇ ଦେଇଥିଲା- ସବୁଗୁଡାକ ଟଙ୍କା ରୋଜଗାରର ମେସିନ୍ ଗୋଟେ ଗୋଟେ !

ମନୋହର ବାବୁ କହିଥିଲେ- ହେଲା ଏବେ ତୁମର ପଇସା ଲୋଡା ନାହିଁ । ଧର୍ମକର୍ମ କର । ମଠ ମନ୍ଦିର ଯାଅ । ଭଗବାନଙ୍କୁ ଡାକ । ନୋହିଲେ ଅନ୍ୟ କୌଣସି ସେବା ଅନୁଷ୍ଠାନ କର । ଲୋକମାନଙ୍କ ସେବା କର ।

ଶଙ୍କର ମତ ଦେଇଥିଲା- ସବୁ ଗୁଡାକ ଠକ, ଜାଲିଆ, ପାଜି ।

ମନୋହର ବାବୁ କହିଥିଲେ- ନୋହିଲେ କ୍ରିଏଟିଭ୍ ଲାଇନ୍‌କୁ ଯାଅ । ଗୀତଗାଅ ନୋହିଲେ ଚିତ୍ର ଆଙ୍କ, ଅଭିନୟ କର ନୋହିଲେ ଲେଖା ଲେଖି କର । ଲୋକ ତ ପୁଣି ସେ ସବୁ କରୁଛନ୍ତି । ଯଶ ସମ୍ମାନ ପାଉଛନ୍ତି ।

ଶଙ୍କର କହିଥିଲା- ସବୁ ଶଳା ଆତ୍ମପ୍ରଚାର, ଧରାଧରି, ତୋଷାମଦି ବେପାର ।

ମନୋହର ବାବୁ ଶଙ୍କରର ସମସ୍ତ ଉତ୍ତରକୁ ଏକାଠି କରି ନିଜର ମନ୍ତବ୍ୟ ଶୁଣାଇଥିଲେ । କହିଥିଲେ- ତୋର ସମସ୍ତ ଚିନ୍ତାଧାରା ହେଉଛି ନେଗେଟିଭ୍ । ତେଣୁ ତୁ ଜୀବନରେ କିଛି କରିପାରିଲୁ ନାହିଁ । କିମ୍ବା କରିପାରିବୁ ନାହିଁ ।

ଶଙ୍କର ବେଶ୍ ଗମ୍ଭୀର ସ୍ୱରରେ କହିଥିଲା- ମୋର ମଧ କିଛି କରିବାର ନାହିଁ ।

ଏଇଭଳି ଚିନ୍ତାଧାରାର ଜଣେ ପୁଅ ଏବଂ ତା'ର ଚିନ୍ତାଗ୍ରସ୍ତ ବାପା, ବିଷାଦମୟୀ ମା'ଙ୍କୁ ନେଇ ଏ କାହାଣୀଟି ଗୋଟେ ମାରାତ୍ମକ ଛକରେ ପହଞ୍ଚିଗଲା ସେଇଦିନ, ଯୋଉ ଦିନ ଶଙ୍କର ବେଶ ନିରୁତ୍ତେଜକ ଭାବରେ ବ୍ୟଗ୍ର ଓ ଚ୍ୟାଲେଞ୍ଜ କଲା ଭଳି ମୁଦ୍ରାରେ ସକାଳୁ ବାପାକୁ କହିଥିଲା- ଶୁଣିଲି, ତୁମେ ମୋତେ ବାହା ଦେବ ବୋଲି ଚିନ୍ତା କରୁଛ ।

ମନୋହର ବାବୁ କହିଥିଲେ- ତୋତେ ରାସ୍ତାକୁ ଆଣିବାକୁ ତାହା ହିଁ ଶେଷ ପନ୍ଥା ।

ଶଙ୍କର କହିଥିଲା- ଅସମ୍ଭବ । ତା' ହୋଇପାରେନା !

ମନୋହର ବାବୁ ବୁଝାଇଥିଲେ- ହେବ ! ସବୁ ହେବ ! ମୁଁ ଭାବୁଚି ବାହା ହେଇଗଲେ ତୋର ଦାୟିତ୍ୱବୋଧ ଆସିବ । ଜୀବନର ସମସ୍ତ ପଜିଟିଭ୍ ଚିନ୍ତା ତୋ ମଥାରେ ପଶିବ । ସର୍ବୋପରି ତୋର ପରିବର୍ତ୍ତନ ଆସିଯିବ । ଆମେ ତାହା ହିଁ ଆଶା କରୁଛୁ ।

ଶଙ୍କର ଟିକେ ଅନ୍ୟମନସ୍କ ମନେହେଲା । ସମ୍ଭବତଃ ମାନସ ଚକ୍ଷୁରେ ସେ ଦେଖିବାକୁ ଚେଷ୍ଟା କଲା ଆଗାମୀ ଦିନକୁ ।

କହିଲା- ତା' ମାନେ ମୋର ପୁଅ ହେବ ଏବଂ ସେ ମତେ ପଚାରିବ ସେଇ ସବୁ ପ୍ରଶ୍ନ ଯାହା ମୁଁ ତୁମମାନଙ୍କୁ ପଚାରିଛି ।

ମନୋହର ବାବୁ କହିଲେ- ତାହା ହେଲେ ତ ଖୁବ୍ ଭଲ ହେବ ! ଅନ୍ତତଃ ତୁ ବୁଝିପାରିବୁ ତୋ ପ୍ରଶ୍ନ ସାମ୍ନାରେ ଆମେ କେତେ ଅସହାୟ । ଅନ୍ତତଃ ତୁ ଅନୁଭବ କରିପାରିବୁ, ତୋର ଏଇ

ଜୀବନଯାପନ ସାମ୍ନାରେ ଆମେ କେତେ ବ୍ୟଥିତ । ତୁ ଅନ୍ତତଃ ବୁଝିପାରିବୁ ବାପା ମା' କାହାକୁ କୁହନ୍ତି ।

ଏଥର ଶଙ୍କର ବେଶ ହିଂସ୍ର ଦିଶିଲା ।

କହିଲା- ନା ! ତା' ହେଇପାରେନା । ଅସମ୍ଭବ ! ଅସମ୍ଭବ !

କହିଲା ଓ ପକେଟରୁ ବାହାର କଲା ଭୁଜାଲୀଟା । କୋଉଠୁ କିଣିଥିଲା, କେତେବେଳେ କିଣିଥିଲା ଜଣାନାହିଁ । ସେ ଗୋଟେ ପେଷାଦାର ଆତତାୟୀ ଭଳି ଆଗେଇଗଲା ମନୋହର ବାବୁଙ୍କ ଦିଗରେ ଏବଂ ତାଙ୍କ ପେଟରେ ଭର୍ତ୍ତି କରି ମୋଡି ପକେଇଲା ।

କିଛି ସମୟ ପରେ ଶଙ୍କର ବେଶ ସାଧାରଣ ଭାବରେ ଦାଣ୍ଡ ବାରଣ୍ଡାରେ ବସିଥିବାର ଦେଖା ଯାଇଥିଲା । ରାସ୍ତାର ଲୋକ, ଗାଡିମଟରକୁ ଲକ୍ଷ୍ୟ କରୁଥିଲା । ତା'ର ମୁହଁରେ କୌଣସି ଭୟ, ଉତ୍ତେଜନା କିମ୍ବା ବ୍ୟଗ୍ରତା ନଥିଲା ।

ଘର ଭିତରୁ ନିର୍ମଳା ଦେବୀଙ୍କ ଚିତ୍କାରରେ ଚମକି ପାଖପଡୋଶୀ ଲୋକମାନେ ଘର ଆଡକୁ ଧାଇଁ ଆସି ଦାଣ୍ଡଦୁଆରେ ବସିଥିବା ଶଙ୍କରକୁ ଦେଖି ପ୍ରଶ୍ନିଳ ଆଖିରେ ଯେତେବେଳେ ପଚାରିଲେ, କ'ଣ ହେଇଚି ?

ଶଙ୍କର ବେଶ ସାଧାରଣ ସରଳ ଦୃଷ୍ଟି ନେଇ ଚାହିଁଥିଲା ଲୋକମାନଙ୍କୁ । ଢେର ଥଣ୍ଡା ଗଳାରେ କହିଲା- ଭିତରେ ଗୋଟେ ମର୍ଡର ହେଇଯାଇଛି ।

ଭିତରୁ ଶୁଣାଯାଉଥିଲା ନିର୍ମଳାଦେବୀଙ୍କର କାନ୍ଦଣା, ଚିତ୍କାର ଓ ଆର୍ତ୍ତନାଦ ।

ଶଙ୍କରର ଉତ୍ତରରେ ଚମକି ପଡି ଦେଖଣାହାରୀ, ପଡୋଶୀ, ଉତ୍ସୁକ ଜନତା ପଛକୁ ଡେଇଁ ପଡିଥିଲେ ଦି' ପାଦ ।

ମର୍ଡର ! ମାନେ ଖୁନ୍ ! ମାନେ ହତ୍ୟା ? କିଏ ମର୍ଡର କଲା ? କେତେବେଳେ ? କେମିତି ? କାହାକୁ ? କୋଉଠି ? କ'ଣ ପାଇଁ ।

ଶଙ୍କରର ସ୍ୱର ବେଶ ନିର୍ଲିପ୍ତ- ମୁଁ ମର୍ଡର କରିଛି ।

ଲୋକମାନେ ବିସ୍ମିତ ଓ ଆତଙ୍କିତ ଦିଶିଲେ ।

ପଛକୁ ଘୁଞ୍ଚିଗଲେ ଆହୁରି ଦୁଇପାଦ । କିଛି ସମୟ ପରେ ଦେଖାଗଲା ଶଙ୍କରର ଚାରିପଟେ ଗଢି ଉଠିଚି ମଣିଷମାନଙ୍କର ଏକ କୌତୁହଳୀ ବୃତ୍ତ । ସେମାନେ ଶଙ୍କରକୁ ଲକ୍ଷ୍ୟ କରୁଛନ୍ତି ନିବିଷ୍ଟ ଚିତ୍ତରେ ।

ଏ ଲୋକଟା ସତ କହୁଚି ତ । ଏ ଲୋକଟା ପାଖରେ କିଛି ମାରଣାସ୍ତ୍ର ନାହିଁ ତ ! ଏ ଲୋକଟା ମଦ ପିଇ ମାତାଲ ନୁହେଁ ତ ! ଏ ଲୋକଟା ସାପ ଭଳି ହିଂସ୍ର ନୁହେଁ ତ ! ଏ ଲୋକଟା ବ୍ୟାଘ୍ର ଭଳି ଅତ୍ୟନ୍ତ ଭୟଙ୍କର ନୁହେଁ ତ ! ଏ ଲୋକଟା ଆତତାୟୀ ଭଳି ପ୍ରତି ଆକ୍ରମଣ ପାଇଁ ପ୍ରସ୍ତୁତ ହେଉ ନାହିଁ ତ । ଏ ଲୋକଟା ପାଗଳ ନୁହେଁ ତ ! ତେବେ ଏତେ ପ୍ରତିକ୍ରିୟାହୀନ ଭାବରେ ବସି ରହିଛି କେମିତି ? ଏତେ ଥଣ୍ଡା ମିଜାଜରେ କଥା କହୁଚି କେମିତି ?

ଲୋକମାନଙ୍କ ଭିତରୁ କେତେଜଣ ସାହସ ବାନ୍ଧି ଘର ଭିତରେ ପଶିଥିଲେ । ପ୍ରଚୁର ରକ୍ତ କ୍ଷରଣ ଯୋଗୁଁ ମନୋହର ବାବୁଙ୍କ ଦେହ ଅସାଡ ହେଇପଡି ରହିଥିଲା । ଚିତ୍କାର କରି କରି ନିର୍ମଳା ଦେବୀ ଘନ ଘନ ମୂର୍ଚ୍ଛା ଯାଉଥିଲେ ।

ଜଣେ ଯୁବକ ବାହାରେ ଆସି ଖବର ଦେଲା- ଡେଡ୍ ! ହି ଇଜ୍ ଡେଡ୍ ! ତାଙ୍କର ମୃତ୍ୟୁ ହେଇଯାଇଛି ।

ଆଉ ଜଣେ ଯୁବକ ଧାରା ବିବରଣୀରେ ଯୋଗ କଲା- ତାଙ୍କ ସ୍ତ୍ରୀ ବି ଚେତା ହରେଇ ପଡିଛନ୍ତି !

ଜନତା ଆତଙ୍କିତ ଦିଶିଲେ ।

ଶଙ୍କର ସେଇଭଳି ଅବିଚଳିତ ହେଇ ବସି ରହିଥିଲା । ସବୁ କଥା ସେ ଶୁଣି ପାରୁଥିଲା ନିଶ୍ଚୟ, ମାତ୍ର ତା' ମୁହଁର ଅଭିବ୍ୟକ୍ତିରୁ ମନେ ହେଉଥିଲା ସେ ଯେମିତି କୌଣସି କଥା ଶୁଣି ପାରୁନାହିଁ, ଶୁଣିଲେ ବି ତା'ର ପ୍ରତିକ୍ରିୟା ପ୍ରକାଶ କରିବାର କିଛି ନାହିଁ ।

ହଠାତ୍ ସମବେତ ଜନତା ଭିତରେ କିଛି ଗୋଟିଏ ବିସ୍ଫୋରଣ ହେଲା । ଅକସ୍ମାତ ବାରୁଦ ଗଦାରେ ନିଆଁ ଲାଗିଲା ଭଳି ଜନତା ଉତ୍ତେଜିତ ଓ ହିଂସ୍ର ହୋଇଉଠିଲେ । ଶଙ୍କର ଚାରିପଟେ ଘେରି ରହିଥିବା ମଣିଷ ବୃତ୍ତଟି କ୍ରମେ ସଂକୁଚିତ ହୋଇ ଆସିଲା ଓ କିଛି କ୍ରୋଧସୂଚକ ଚିତ୍କାର ଶୁଣାଗଲା ।

-ଶଳାକୁ ଧର !

-ଶଳାକୁ ମାର !

-ଛେଚ ଭଲ କରି ।

-ମାରି ମାରି ଗଇଁଆ କରିଦିଅ ।

ଶଙ୍କର ପ୍ରମାଣିତ ହୋଇଥିଲା ଜଘନ୍ୟ ପାପୀ ଭଳି । ପିତୃହନ୍ତାଟା । ମଣିଷ ଜାତିର କଳଙ୍କ । ତାକୁ ଉପଯୁକ୍ତ ଶାସ୍ତି ଲୋଡା ।

ମୁରବୀ ସ୍ଥାନୀୟ କେତେ ଜଣ ଚେତାବନୀ ଶୁଣାଇଥିଲେ ।

-ଏଇ ! ସାବଧାନ ! ଆଇନକୁ ହାତ ମୁଠାକୁ ନିଅନି ।

-ପୋଲିସ ଆସିବା ଯାଏଁ ଅପେକ୍ଷା କର ।

-ରୁହ ! ଧୈର୍ଯ୍ୟ ଧର । ମାର୍‌ପିଟ୍ କରନି ।

କିନ୍ତୁ ନା ! ଏସବୁ ପରାମର୍ଶ କୌଣସି ପ୍ରଭାବ ପକାଇ ପାରିଲାନି ହିଂସ୍ର ଜନତାଙ୍କ ଉପରେ । ବୃତ୍ତଟି ପରିପୂର୍ଣ୍ଣ ହେଇଯାଇଥିଲା କଳା କଳା ମୁଣ୍ଡରେ ଓ ଶଙ୍କର ତା' ଭିତରେ କୋଉଠି ହଜିଯାଇଥିଲା ।

ତଥାପି ଶଙ୍କର ସେଇ କୋଳାହଳ ଭିତରେ ତା'ର କିଛି ଯୁକ୍ତି ବାଢିଥିଲା । ଯାହା କେହି ଗ୍ରହଣ କରି ନଥିଲେ ।

ଶଙ୍କର କହିଥିଲା- ମୁଁ ମୋ ବାପାକୁ ଭୁଜାଲୀ ମାରି ହତ୍ୟା କଲି କ୍ଷତି କ'ଣ ହେଲା ? ତୁମମାନଙ୍କର ସେତିକି ସାହସ ଅଛି ? ତୁମେମାନେ ତ ସବୁଦିନ ହତ୍ୟା କରିଚାଲିଛ ନିଜ ନିଜ ପିତାମାତାଙ୍କୁ ଉପେକ୍ଷାରେ, ଅବହେଳାରେ ଦୁର୍ବ୍ୟବହାରରେ । ତୁମେମାନେ ମୋତେ କ'ଣ ଶାସ୍ତି ଦେବ ?

ଜନତା ଅଧିକରୁ ଅଧିକ ହିଂସ୍ର ହୋଇ ଉଠିଥିଲେ । ବିଧା, ଗୋଇଠା ଗାଳିର ପ୍ରତିଧ୍ୱନୀ ଭିତରେ ଶଙ୍କରର ଦେହ ଧୂଳିମାଟି ନେସି ହେଇ, ରକ୍ତାକ୍ତ ହେଇ ଗଡୁଥିଲା ରାସ୍ତା ଉପରେ । ଏତେ ପ୍ରହାର ହେଇଥିଲା ତା' ଉପରେ ଯେ ସେ କ୍ରମେ ଯନ୍ତ୍ରଣାରେ କାନ୍ଦି ବି ପାରିଲା ନାହିଁ ।

-ଶଳାକୁ ଟେକା ମାରି ମାରି ଶେଷ କରିଦିଅ ।

-ସିଏ ବୁଝୁ ତା' ପାପର ପ୍ରତିଫଳ ।

-ଯା'କୁ ନେଇ ତତଲା ତେଲ କଡେଇରେ ପକେଇବା କଥା ।

-ଏତିକି ହେଲାନି । ୟା'କୁ ଆହୁରି ଦରକାର ।

ଶଙ୍କର ଅବଶ ହେଇ ପଡିରହିଥିଲା ତଳେ । ତା'ର ହାତଗୋଡ ଭାଙ୍ଗି ଦିଆଯାଇଥିଲା । ତଥାପି ତା'ର ଶାସ୍ତି ସମୁଚିତ ହୋଇନାହିଁ ବୋଲି ଜନତା ବିଚାରୁଥିଲେ । ଶଙ୍କର ହିକ୍‌କା ମାରିଲା ଭଳି ନିଃଶ୍ୱାସ ନେଉଥିଲା ଓ ଧୂଳିରେ ଘୁଷୁରି ଘୁଷୁରି ଜୀବନ ଭିକ୍ଷା କରୁଥିଲା ।

ଓଠ ଶୁଖି ଯାଇଥିଲା । ମୁହଁ ରକ୍ତାକ୍ତ । ମୁଣ୍ଡର ବାଳ ସବୁ ମାଟିଲାଗି କର୍ଦ୍ଦମାକ୍ତ । ଦେହର ପ୍ୟାଣ୍ଟସାର୍ଟ ଚିରା ।

ସେ ଅସ୍ପଷ୍ଟ ସ୍ୱରରେ କହିଲା- ପାଣି ! ପାଣି !

ଜନତା ଅଟ୍ଟହାସ୍ୟ କଲା ଭଳି ଶୁଣାଗଲା ।

-ପାଣି ମାଗୁଚିରେ ! କେହି ଦିଅନା ଟୋପେ ପାଣି ।

-ତା' ମୁହଁରେ ମୁତି ଦିଅ ବେ !

-ଏମିତି ପାଣି ପାଣି ହେଇ ଶଳାଟା ମରୁ । ଏଇ ହେଉ ତା'ର ପ୍ରାୟଶ୍ଚିତ୍ତ ।

-କେହି ପାଣି ଦିଅନା । ସେ ଭୋଗୁ । କଷ୍ଟ ପାଉ ।

ଶଙ୍କର ବେଶ ଅସ୍ପଷ୍ଟ ସ୍ୱରରେ ମାଗୁଥିଲା- ପାଣି ! ପାଣି !

ସେଇ କ୍ଷୀଣ ସ୍ୱର କ'ଣ ପହଞ୍ଚି ପାରିଥିଲା ଆଉ କେଉଁ ଅଭିଷ୍ଟ କନ୍ଦରରେ । ଦେଖାଗଲା ଜଣେ ସ୍ତ୍ରୀ ଲୋକ ପାଣି ଲୋଟାଟାଏ ଧରି ଗହଳି ଡେଇଁ ଆସ୍ତେ ଆସ୍ତେ ଆଗେଇ ଆସିଲା ଶଙ୍କର ଆଡକୁ । ଥରି ଥରି କାନ୍ଦି କାନ୍ଦି, ଟଳି ଟଳି, ଫୁଲିଲା ମୁହଁରେ । ଲୋକମାନଙ୍କର ବାରଣକୁ ଉପେକ୍ଷା କରି ସେ ପହଞ୍ଚି ପାରିଲା ଶଙ୍କର ପାଖରେ ଓ ତା' ମୁହଁରେ ଢାଳି ଦେଲା ଜଳ ।

ଲୋକମାନେ ଦେଖିଲେ । ସେ ନିର୍ମଳା ଦେବୀ । ଶଙ୍କରର ମାଆ । ସଦ୍ୟ ସ୍ୱାମୀଙ୍କ ମୃତ ଦେହ ପାଖରୁ ଉଠି ଆସିଥିବା, ମୂର୍ଚ୍ଛାରୁ ଚେତନା ପାଇଥିବା, କାନ୍ଦି କାନ୍ଦି ଲୁହ ଶେଷ କରି ସାରିଥିବା, ବିଳାପ କରି କରି ଶବ୍ଦ ହରେଇ ସାରିଥିବା ଜଣେ ସ୍ତ୍ରୀଲୋକ ।

ଜଳର ପ୍ରତ୍ୟେକ ବିନ୍ଦୁ ଶଙ୍କରର ମୁହଁରେ ପଡ଼ି ଯେମିତି କହୁଥିଲେ ।

ମୋ ଧନରେ ! ଉଁଠ ! ଉଠି କି ବସ । ସାଷ୍ଟମ ହ । ମଣିଷ ହ । ମଣିଷ ହ ରେ ।

ପାଣି ପିଇସାରି ଶଙ୍କର ଟିକେ ସାଷ୍ଟମ ହେଇଥିଲା । ତା'ର କର୍ତ୍ତବ୍ୟବୋଧ, ଦାୟିତ୍ୱ ସଚେତନ ପୁଅପଣିଆ ହଠାତ୍ ଜାଗ୍ରତ ହେଲା ଯେମିତି ।

କହିଲା- ପୋଲିସକୁ ଖବର ଦେଲଣି ନା ନାହିଁ ।

ଶୀଘ୍ର ଦିଅ । ଅନେକ କାମ ବାକି ଅଛି କରିବାକୁ ।



# ଆଦର୍ଶ

## କବିତା ବାରିକ

—ଆପଣ ହରି ସାର୍ ନା ?

ତାଙ୍କର ଲମ୍ବି ଆସିଥିବା ହାତଟି ସ୍ଥିର ହୋଇଗଲା । ସେ ମୋତେ କେଉଁ ହଜି ଯାଇଥିବା ଅତୀତ ଭିତରୁ ଚିହ୍ନିବାକୁ ଚେଷ୍ଟା କରୁଥିଲେ । ତାଙ୍କର ପେଜୁଆ ଆଖି ଯୋଡ଼ାକ ମୋ ମୁହଁ ଉପରେ ନିବଦ୍ଧ ଥିଲା । କପାଳରେ ବିନ୍ଦୁ ବିନ୍ଦୁ ଝାଳ । ଓଠ ଫାଳେ ମେଲି ଯାଇଥିଲା । ଶ୍ମଶ୍ରୁବହୁଳ ଦୁର୍ବଳ ବୃଦ୍ଧ ଚେହେରାର ମଣିଷଟି ହରି ସାର୍ କି ନୁହନ୍ତି ନିଜେ ମଧ୍ୟ ଜାଣି ପାରୁ ନଥିଲେ । ନିଜକୁ ସେ ନିଜ ପାଖରେ ହୁଏତ କେବେଠାରୁ ହଜାଇ ଦେଇଥିଲେ ।

ମୁଁ ବିବ୍ରତ, ଆଶ୍ଚର୍ଯ୍ୟ ଆଉ ଅନ୍ୟମନସ୍କ । ସାର୍‌ଙ୍କର ଆଜି ଏ କି ଅବସ୍ଥା ! ଏଭଳି ପରିସ୍ଥିତିରେ ତାଙ୍କୁ ମୋର ଭେଟିବାର ଥିଲା ! କେତେ ବର୍ଷ ତଳକୁ ଫେରି ଯାଇଥିଲି ଜାଣେନା । ସ୍କୁଲ ଜୀବନ କାହିଁ କେବେଠାରୁ ଛାଡ଼ି ଆସିଲିଣି । କିନ୍ତୁ ହରି ସାର୍ ମୋ ଭିତରେ ଫେଣ୍ଟି ହୋଇ ରହିଛନ୍ତି । ନ ହୁଅନ୍ତେ କାହିଁକି । ଆଜି ପର୍ଯ୍ୟନ୍ତ ତାଙ୍କୁ ମୁଁ ମୋର ଆଦର୍ଶ ହିଁ ମାନି ଆସିଛି । ଯେତେବେଳେ ପଥ ହଜିଛି, ମିଛ କହିବାକୁ ବାଧ୍ୟ ହେବାକୁ ବସିଛି କି ପରିସ୍ଥିତିରେ ଲାଞ୍ଚ ନେବାର ପ୍ରଲୋଭନରେ ପଡ଼ିବାକୁ ଯାଉଛି, ଏଇ ହରି ସାର୍ ତ କେଉଁଠି ଥା'ନ୍ତି ଆସି ଆଗରେ ଠିଆ ହୋଇ ଯାଆନ୍ତି । ସେହି ଧଳା ପଞ୍ଜାବୀ, ଇସ୍ତ୍ରୀ କରା ଧୋତୀ ଆଉ ହସ ହସ ଉଜ୍ଜ୍ୱଳ ଚେହେରା, ହାତରେ ବେଗୁନିଆ ବାଡ଼ି- ମୋତେ ଆକଟ କରିଛି । କହିଛି ମୋ ଛାତ୍ର ମୋ ପାଇଁ ଗର୍ବ, ମୋ ଜୀବନର ଆଦର୍ଶ । ସେମାନେ ପୃଥିବୀର ଯେଉଁ କୋଣରେ ଥିଲେ କେବେ ଅବାଟରେ ଯିବେ ନାହିଁ । ହରି ମାଷ୍ଟରର ବେଗୁନିଆ ଛାଟ ଯିଏ ଖାଇଛି ତା'ର ଦିବ୍ୟଜ୍ଞାନ ହୋଇଛି । ମିଛ କହିବା ମହାପାପ, ଲାଞ୍ଚ ନେବା ଓ ଲାଞ୍ଚ ଦେବା ଅପରାଧ- ଏହା ଥିଲା ସାର୍‌ଙ୍କର ଧ୍ରୁବବାଣୀ । ସେ କହୁଥିଲେ 'ଆତ୍ମସମୀକ୍ଷା' ହିଁ ମଣିଷ ପାଇଁ ସବୁଠାରୁ ବଡ଼ ପ୍ରାୟଶ୍ଚିତ । ନିଜକୁ ନିଜେ ପଢ଼ିବାରେ ଯଦି ଭୁଲ୍ ରହିଯାଏ ତେବେ ସଂସାରକୁ ପଢ଼ିବ କେମିତି ?

ସତରେ ହରି ସାର୍‌ଙ୍କର ଛାତ୍ର ହୋଇ ପାରିଥିବାରୁ ଏ ବୟସରେ ବି ମୁଁ ଗର୍ବ ଅନୁଭବ କରେ । ପ୍ରତିଟି ପିଲାକୁ ସେ ହୀରା କରିବାକୁ ଚାହୁଁଥିଲେ । ନିଜ ବ୍ୟକ୍ତିତ୍ୱର ଛାପରେ ସେ ଏମିତି ପ୍ରଭାବିତ କରି ପାରୁଥିଲେ ଯେ ସେ ସ୍କୁଲକୁ ଛାତ୍ରଟି ଛାଡ଼ି ଚାଲିଗଲେ ବି ତାକୁ କେହି ଭୁଲିପାରୁ ନଥିଲେ । ତାଙ୍କ ଛାତ୍ରମାନେ ରାଜ୍ୟ, ରାଜ୍ୟ ବାହାରେ ବହୁ ବଡ଼ ବଡ଼ ପୋଷ୍ଟ୍‌ରେ ରହିଥିବା କଥା କହିଲାବେଳେ ଆନନ୍ଦରେ ସେ କେମିତି ଗଦଗଦ ହୋଇ ଉଠୁଥିଲେ । ଅନେକ ଥର ସେ କ୍ଲାସ୍‌ରେ କହିଛନ୍ତି ଏହା ହିଁ ଶିକ୍ଷକଟିର ଅସଲ ଧନ, ଅସଲ ପୁଣ୍ୟ । ଆମେ ପଢ଼ିଲା ବେଳେ ଦେଖୁଛୁ କେତେ ଆଡୁ ତାଙ୍କ ଛାତ୍ରମାନେ ଆସିଲେ ସ୍କୁଲ ଆସନ୍ତି, ମୁଣ୍ଡିଆ ମାରନ୍ତି ଆଉ ସାର୍ ସେମାନଙ୍କ ମଥା ସାଉଁଳାଇ ଦିଅନ୍ତି ।

ସାର୍ ନିଜେ ଅବସ୍ଥାସଂପନ୍ନ ନଥିଲେ । ତଥାପି ନିଜର ସ୍ୱଳ୍ପ ଦରମା ଭିତରେ ବି ସେ ପ୍ରତିମାସରେ କେତେ ଜଣଙ୍କର ବୋର୍ଡିଂ ଖର୍ଚ୍ଚ ତୁଲାଉଥିଲେ । କାହାର ବହି ନାହିଁ, ସିଲଟ ନାହିଁ,

କିଏ ସ୍କୁଲଡ୍ରେସ୍ କିଣିବାକୁ କ୍ଷମ ହେଇ ପାରୁନାହିଁ, ସାର୍‌ଙ୍କ ପାଖରେ ପହଞ୍ଚିଗଲେ ଆଶୀର୍ବାଦ ମିଳିଯାଉଥିଲା । ଖାଇବା ସମୟରେ କେହି ପହଞ୍ଚି ଗଲେ ନିଜେ ଓପାସ ରହି ବି ତାକୁ ନଖୁଆଇ ସେ ଛାଡୁ ନଥିଲେ । ସାକ୍ଷାତ୍ ଗୋପବନ୍ଧୁ କହି ଅନ୍ୟ ଶିକ୍ଷକମାନେ ତାଙ୍କୁ ଥଟ୍ଟା କରିବାକୁ ପଛାଉ ନଥିଲେ । ସାର୍ ଅନେକ ସମୟରେ ସେ ପ୍ରତି କାନ ନ ଦେଇ କହି ଚାଲୁଥିଲେ ମୋର ତ ପିଲାପିଲି ନାହିଁ । ଆମେ ବୁଢ଼ା ବୁଢ଼ି ଦି' ପ୍ରାଣୀ । ତମେମାନେ ମୋର ଅସଲ ପିଲା । ତମର ଉନ୍ନତି ମୋର ଉନ୍ନତି । ମୁଁ ତମର ସାହାରା ଆଉ ତମେ ମୋର । ମହରଗ ଦୁନିଆରେ ସେ ବିନା ପଇସାରେ ଗରିବ ପିଲାମାନଙ୍କୁ ଟିୟୁସନ କରୁଥିଲେ । ବିଦ୍ୟାଦାନ ମହାନ୍ ଦାନ । ତା' ବଦଳରେ ପଇସା ନେଇ ସେ ଏ ମହାନ୍ ଦାନରେ କଳଙ୍କ ଲଗାଇ ପାରିବେ ନାହିଁ ବୋଲି କହୁଥିଲେ ।

ମୋ ପଢ଼ା ସମୟରେ ଦେଖିଛି, କାହାର ସେ ପାଞ୍ଚ ପଇସା ଧାରନ୍ତି ନାହିଁ କି କାହାକୁ ସେ ବିନା କାରଣରେ ପାଞ୍ଚ ପଇସା ଦେବାକୁ ପସନ୍ଦ କରନ୍ତି ନାହିଁ । ଏଭଳି ଦାନ ନେବାଟାକୁ ସେ ଭିକ୍ଷାବୃତ୍ତି ବୋଲି କହୁଥିଲେ । ଭିକ୍ଷା କରିବାଟାକୁ ସେ ଘୃଣା କରୁଥିଲେ । ଅତି ଦୁଃସମୟ ନ ପଡ଼ିଲେ, ମଣିଷ ଏକବାରେ ଅସହାୟ ନ ହେଲେ କେବେ ଭିକାରୀ ସାଜେ ନାହିଁ ବୋଲି ତାଙ୍କର ବିଶ୍ୱାସ ଥିଲା । ତେବେ ଗୋଡ଼ ହାତ ଥାଇ ବାହୁରେ ବଳ ଥିବା ସୁସ୍ଥ ମଣିଷ ଭିକ ମାଗିଲେ ସେମାନେ ଏଭଳି ଜୀଇଁବା ଅପେକ୍ଷା ମରିଯିବା ଭଲ ବୋଲି ସେ କହୁଥିଲେ ।

ତାଙ୍କ ଦୃଷ୍ଟିରେ ତାଙ୍କର ପ୍ରତ୍ୟେକ ଛାତ୍ର ଥିଲେ ଜଣେ ଜଣେ ଦେଶ ନିର୍ମାତା । ତେଣୁ ଲିଜର୍ ସମୟରେ ସେ ମହାପୁରୁଷମାନଙ୍କର କାହାଣୀ ଶୁଣାଉଥିଲେ । କେତେବେଳେ ସେ କାହାଣୀ ଭିତରକୁ ଇତିହାସ ପଶି ଆସେ ତ କେତେବେଳେ ପୁରାଣ । ରାମଚନ୍ଦ୍ରଙ୍କ ପିତୃସତ୍ୟ, ଲକ୍ଷ୍ମଣଙ୍କ ଭ୍ରାତୃପ୍ରେମ, ସାବିତ୍ରୀଙ୍କ ପତିପ୍ରୀତି, ସୀତାଙ୍କର ସତୀତ୍ୱ, ଗାର୍ଗୀ ମୈତ୍ରୀଙ୍କ ବିଦ୍ୱତ୍ତାଜ୍ଞାନ, ଜୀଜାବାଇ, ଲକ୍ଷ୍ମୀବାଇଙ୍କ ବୀରତ୍ୱ ସହିତ ଗାନ୍ଧୀ, ନେହେରୁ, ଭଗତ୍ ସିଂ ପ୍ରଭୃତି ବରପୁତ୍ରମାନଙ୍କର କାହାଣୀ ଶୁଣାଇ ସେ ସେହି ଆଦର୍ଶରେ ଚାଲିବାକୁ ଆମ୍ଭମାନଙ୍କୁ ଉପଦେଶ ଦେଉଥିଲେ । କହିବା ବାହୁଲ୍ୟ ଯେ କଟକ ଜିଲ୍ଲାର ଗୁଣ୍ଡୁପୁର ଗାଁ ସ୍କୁଲରେ ପଢ଼ିବାକୁ ଆସୁଥିବା ପ୍ରତ୍ୟେକ ଛାତ୍ର ପାଇଁ ହରି ସାର୍ ଥିଲେ ଏକ ଆକର୍ଷଣ । ଆଜି ବଡ଼ ହୋଇ ଯେଉଁ ଆଦର୍ଶବାଦୀର ପଦବୀ ମୁଁ ପାଇଛି ତାହା ହରି ସାର୍‌ଙ୍କର ହିଁ ଅବଦାନ । କେତେ ଥର ସ୍ତ୍ରୀଙ୍କ ପାଖରେ କହିଥିବି ହରି ସାର୍‌ଙ୍କ କଥା । ମୋ ପିଲାମାନଙ୍କୁ ଯେତେବେଳେ ପାଠ ପଢ଼ାଇବାକୁ ବସିଛି ସେତେବେଳେ ହରି ସାର୍ ହିଁ ମୋ ଭିତରେ ରୂପ ପାଇଛନ୍ତି । ପିଲାଙ୍କ ଅଝଟ, ଦୁଷ୍ଟାମି କି ଭୁଲ୍ ଭଟକା ଦେଖି ଯେତେବେଳେ ହାତ ଉଠାଇଛି ସେ ହାତ ଭିତରେ ହରି ସାର୍‌ଙ୍କର ବେଗୁନିଆ ଛାଟ ହିଁ ମୋତେ ଦେଖା ଯାଇଛି । ଯାହା ଉପଦେଶ, ଇତିହାସ, ପୁରାଣ କାହାଣୀ ତାଙ୍କଠାରୁ ଶୁଣିଥିଲି ମୋ ପିଲାଙ୍କୁ କୋଳରେ ଧରି ସେହି କାହାଣୀ କହିଲା ବେଳେ ତାଙ୍କର ଧଳା ଧୋତୀ ପଞ୍ଜାବୀ ପିନ୍ଧା ହସ ହସ ଚେହେରାଟି ଉଙ୍କି ମାରିଛି । ମୋ ଛାତ୍ର ଜୀବନରେ ସାର୍‌ଙ୍କୁ ଯେମିତି ଭଲ ପାଇଥିଲି ଆଜି ଯାଏ ସେ ସ୍ଥାନ କେହି ଅଧିକାର କରି ପାରିନାହାଁନ୍ତି । ତେଣୁ ମୋ ସ୍ତ୍ରୀ ଶ୍ରଦ୍ଧା ଥଟ୍ଟା କରି କହେ ତମ ପାଇଁ ତ ସାରା ଜଗତଟା ହରିମୟ ।

କୌଣସି ଭିକାରୀକୁ ବସ୍‌ଷ୍ଟାଣ୍ଡରେ ଭିକ ମାଗିବା ଦେଖି ବୁଝାଇଛି ଭିକ୍ଷା ମାଗି ଏମିତି ନିଜକୁ ଅପମାନିତ କର ନାହିଁ । ସ୍ୱାଭିମାନ ନେଇ ଜୀଇଁ ଶିଖ । ମାଟି ହାଣି, ହେଟେଲରେ ପ୍ଲେଟ ଧୋଇ ଦି' ପଇସା ମେହନତୀ କରି ରୋଜଗାର କରିବାରେ ଗର୍ବ ଅଛି । କାହାର ଅଯାଚିତ ଦାନରେ ବଞ୍ଚିବାର କିଛି ଅର୍ଥ ଅଛି ? ଶ୍ରଦ୍ଧା ବିରକ୍ତ ହୁଏ । ସବୁଠି ତମର ଭାଷଣ । ଏସବୁ ବି

କ'ଣ ତମର ହରି ସାର୍‌ଙ୍କ ଆଦର୍ଶ, ଉପଦେଶ ? କେତେଟା ପଇସା ଦେଇ ଦେଲେ ତ କଥା ଛିଣ୍ଡିଯିବ । ମୁଁ ଶ୍ରଦ୍ଧାକୁ ଚାହିଁ କହେ, ତମେ ବୁଝି ପାରିବନି କେତେଟା ପଇସା ଦେଇ ତମେ ପରୋକ୍ଷରେ ଭିକ୍ଷା ବୃତ୍ତିକୁ ପ୍ରୋତ୍ସାହନ କରିଗଲ ବୋଲି । ତମର କେତେଟା ପଇସା ଆଉ ଜଣେ ଭିକାରୀକୁ ଜନ୍ମ ଦେଲା । ସେମିତି ହେଲେ ତ ଦାନ ଦକ୍ଷିଣାରେ ଜୀଉଁଥିବା ସାରା ପୃଥିବୀର ମଣିଷ ତମ ଭଳି ବଦାନ୍ୟ ଦେବୀଙ୍କ ଅବଦାନରୁ ଭିକାରୀ ବନିଯିବେ । ତମେ ସେମାନଙ୍କୁ ଷ୍ଟଗଲ କରିବାକୁ ଆପାତତଃ ଗୋଟିଏ ସୁଯୋଗ ଦିଅ, ଅବସର ସୃଷ୍ଟି କର । ଅକର୍ମଣ୍ୟ ବୃଦ୍ଧଙ୍କ କଥା ଅଲଗା ।

ଶ୍ରଦ୍ଧା କେବେ କେବେ ଅତିଷ୍ଠ ହେଇ ଯୁକ୍ତି କରେ, ତମ ହରି ସାର୍ ଓ ତମେ କେବଳ ଗୋଟିଏ ନିର୍ଦ୍ଦିଷ୍ଟ ଦୁନିଆ ଭିତରେ ସୀମାବଦ୍ଧ । ଜାଣ, ଆଜିର ଦୁନିଆରେ ଆଦର୍ଶର କୌଣସି ମାନେ ନାହିଁ ? ଶୁଖିଲା ଆଦର୍ଶ ପେଟକୁ ଦାନା, ପିନ୍ଧିବାକୁ କନା ଦେବ ନାହିଁ । ବର୍ତ୍ତମାନ ଯୁଗରେ ଆଦର୍ଶବାଦୀର ସ୍ଥାନ ବହୁ ପଛରେ । ଯିଏ ଯେତେ ମାରି ପାରିଲା, ଜମାଇ ପାରିଲା, ଲୁଟି ପାରିଲା ତା' ସ୍ଥାନ ସମାଜର ଶୀର୍ଷରେ । ପୃଥିବୀର ସବୁ ସମ୍ମାନ, କ୍ଷମତା, ଆଦର, ସୁଖ ତା' ପାଦ ତଳେ । ତମ ହରି ସାର୍ ଯେମିତି ବୋକା ଥିଲେ ତମକୁ ମଧ୍ୟ ସେହି ଢାଞ୍ଚାରେ ଗଢ଼ି ଦେଲେ । ହରି ସାର୍‌ଙ୍କର ବଦ୍‌ନାମ ମୁଁ ସହିପାରୁ ନଥିଲି । ତେଣୁ ଝଗଡ଼ା କରିବାକୁ ବାହାରି ପଡୁଥିଲି ।

ହରି ସାର୍ ବି ବଡ଼ ଦୁଃଖୀ ମଣିଷଟେ ଥିଲେ । ତାଙ୍କର ପିଲାପିଲି ନଥିବାରୁ ସ୍ତ୍ରୀ ତାଙ୍କର ଉଦାସ ରହୁଥିଲେ । ବାରବ୍ରତ ତେର ଓଷା, ଡାକ୍ତର-ବିଦ୍ୟା ହାର୍ ମାନିଥିଲା । ତେଣୁ ଆମେ ତାଙ୍କ ଘରକୁ ଗଲେ ସେ ସ୍ତ୍ରୀକୁ ଦେଖାଇ କହୁଥିଲେ ଏମାନେ କ'ଣ ତମର ପିଲା ନୁହଁନ୍ତି ? ଦେଖ, ଭଗବାନ ଏକ ନୁହେଁ ଅନେକ ଦେଇଛନ୍ତି । ଆର ଜନ୍ମରେ ତମେ ମୁଁ କିଛି ପୁଣ୍ୟ କରିଥିଲେ ନିଶ୍ଚେ । ନହେଲେ ଏତେବଡ଼ ଆଶୀର୍ବାଦ ଆମକୁ ମିଳି ନଥାନ୍ତା । ସାର୍‌ଙ୍କ କଣ୍ଠ ଭିଜିଯାଏ-ବତୁରିଯାଏ । ଆମ ଆଡେ ଚାହିଁ ହସି କହନ୍ତି, ଆମେ ଦୁହେଁ ଯେତେବେଳେ ବୁଢ଼ାବୁଢ଼ି ହୋଇଯିବା, ଆଖିକୁ ଦିଶୁ ନଥିବ ତମେମାନେ ଆମକୁ ଦେଖିବାକୁ ଆସିବ ତ ? ଏ ବୁଢ଼ା ହରି ମାଷ୍ଟର କ'ଣ ତମର ମନେ ଥିବ ?

ଆମେ ସେ ବୟସରେ ସାର୍‌ଙ୍କ କଥା ଏତେଟା ବୁଝି ପାରୁ ନଥିଲୁ । ସେ କାହିଁକି ବୁଢ଼ା ହେଇଯିବେ, କାହିଁକି ଆଖିକୁ ଦିଶୁ ନଥିବ ବା ଆମେ କାହିଁକି ମନେ ରଖି ନଥିବୁ- ଭଲକରି ମୁଣ୍ଡରେ ପଶୁ ନଥିଲା । ଆଉ ଯେତେବେଳେ ମୁଣ୍ଡରେ ପଶିଲା ସେତେବେଳେ ହରି ସାର୍‌ଙ୍କୁ ଛାଡ଼ି ବହୁ ରାସ୍ତା ଚାଲି ଆସିଥିଲି । ନିଜର ଅଭିଜ୍ଞତା ଦେଇ ବୁଝିଥିଲି ଆଦର୍ଶ ଏକ ଫମ୍ପା ଆଓ୍ବାଜ । ତଥାପି ପ୍ରତି ଦିନ ଖାଦ୍ୟ ଖାଇଲା ଭଳି ଜୀବନରେ କିଛି ନିଚ୍ଛକ ଲକ୍ଷ୍ମଣ-ଗାର ରହିବା ଦରକାର । ସେ ହରି ସାର୍ ହୁଅନ୍ତୁ, ଆମର ବାପା ମା' ବା ଆଉ କାହାରି ଇମେଜ ହେଉ । ତେଣୁ ହରି ସାର୍ ମୋର ମାର୍ଗ ପାଲଟି ଯାଇଥିଲେ ।

ମୋର ସ୍ମରଣ ଶକ୍ତି ପ୍ରଖର ବୋଲି ଅନ୍ୟମାନଙ୍କଠାରୁ ଶୁଣିଛି । ସତରେ ଜୀବନର ଅନେକ ଛୋଟ ବଡ଼ ଘଟଣା ମୋର ଅବିକଳ ମନେ ରହିଛି । ନଈ ପହଁରା, ପିଜୁଳି ତୋଳା, ବେତବଣରେ ପଶି ଲୁଚକାଳି ଖେଳଠୁ ଆରମ୍ଭ କରି ଦାମା-ଶ୍ୟାମା-ରମା ଭଳି ସାଙ୍ଗମାନଙ୍କ ଚେହେରାକୁ ମୁଁ ଭୁଲି ପାରି ନାହିଁ । ସେଇଥି ପାଇଁ ଏତେ ବର୍ଷ ପରେ ହରି ସାର୍‌ଙ୍କୁ ଦେଖି ମୁଁ ଚିହ୍ନି ଦେଲି । ନିର୍ଭୁଲ ଭାବରେ ତାଙ୍କୁ ଡାକି ପାରିଲି । କିନ୍ତୁ ତାଙ୍କୁ ଏଭଳି ଅବସ୍ଥାରେ ଦେଖିବି ବୋଲି ସ୍ୱପ୍ନରେ ବି କ'ଣ

କେବେ ଭାବିଥିଲି ? ହରି ସାର୍ଙ୍କର ସେହି ବର୍ଷ ବର୍ଷ ଧରି ସାଇତା ହେଇଥିବା ଆଦର୍ଶର ଇମେଜ ଖଣ୍ଡ ଖଣ୍ଡ ହେଇ ମୋ ସାମ୍ନାରେ ଭୁଷୁଡ଼ି ପଡୁଥିଲା । କାହିଁକି ତାଙ୍କ ସହ ଏଭଳି ଭାବରେ ମୋର ଦେଖା ହେଲା ? ହରି ସାର୍ ବସ୍ ଭିତରେ ଭିକ୍ଷା କରୁଛନ୍ତି ପୁରାଣର ଛନ୍ଦ ଗାଇ ଗାଇ ? ସେ ଦିନର ଆଦର୍ଶ ଶିକ୍ଷକଙ୍କୁ ଭିକାରୀ ସ୍ଥାନରେ ଦେଖି ବିଶ୍ୱାସ କରିପାରୁନଥିଲି । କେମିତି କରିଥାନ୍ତି । ଆଉ କାହା କ୍ଷେତ୍ରରେ ହେଇଥିଲେ ହୁଏତ ମାନି ନେଇଥାନ୍ତି । କିନ୍ତୁ ଯାହାଙ୍କୁ ଜୀବନର ବ୍ରତ କରି ଆସିଛି ତାଙ୍କୁ କେମିତି ଗ୍ରହଣ କରି ନେଇଥାନ୍ତି । ଏ ଅବସ୍ଥାରେ ? ଯେଉଁ ପୁରାଣ କାହାଣୀ ଦେଶ ଗଠନ ଲାଗି ଭାବିବଂଶଧର ଭିତରେ ପ୍ରେରଣା ଯୋଗାଇବା ପାଇଁ ସେ ଆମ ଆଗରେ ଦିନେ କହିଥିଲେ, ସେହି ପୁରାଣର ବିଭିନ୍ନ ଛାନ୍ଦ ଗାଇ ଗାଇ ହରି ସାର୍ ବସ୍‌ରେ ଭିକ୍ଷା ମାଗୁଛନ୍ତି । ଭିକ୍ଷା ବୃତ୍ତିକୁ ଯିଏ ଜୀବନରେ ସବୁଠାରୁ ବେଶି ଘୃଣା କରୁଥିଲେ ଆଜି ସେ ନିଜେ ଜଣେ ଭିକାରୀ । ପୁଣି ତାଙ୍କୁ ଯିଏ ସବୁଠୁ ବେଶି ଭଲ ପାଇଥିଲା, ନିଜର ଆଦର୍ଶ ବୋଲି ପୂଜା କରୁଥିଲା ସେହି ଛାତ୍ରଟି ଆଡ଼କୁ– ''ବାବୁ ଗୋଟିଏ ପଇସା ମିଳୁ–'' ବୋଲି ବଢ଼ି ଆସିଛି ଅଧା ପ୍ରସାରିତ ହାତ । ଚକ୍ ଖଡ଼ି, ବେଗୁନିଆ ଛାଟ ଧରିଥିବା ହାତଟିରେ ଆଜି ଅଛି ଏକ ସିଲଭର ଥାଳି । ଆପଣ ହରିସାର୍ ନା ? ମୋ ପ୍ରଶ୍ନ ଶୁଣି ସେ ହାତଟି ଚମକି ଉଠୁଛି । ଥରି ଉଠୁଛି । ସେ ମୁହଁ ବୁଲାଇ ନେଇଛନ୍ତି । ଭିକାରୀ ବନି ଯାଇଥିବା ଏହି ବୃଦ୍ଧ ମଣିଷଟି ଭିତରୁ ଅନେକ ଦିନରୁ ମରି ହଜି ଯାଇଥିବା ହରି ମାଷ୍ଟରଟି ଜନ୍ମ ନେଇଛି । ସେ ତାଙ୍କର ଛାତ୍ର ସାମ୍ନାରେ ନଙ୍ଗଳା ହେଇ ଯାଉଛନ୍ତି, ଲଜ୍ଜାରେ ବୁଡ଼ି ଯାଉଛନ୍ତି ।

ମୁଁ ତାଙ୍କୁ ଅଟକାଇ ରଖୁଛି । କହୁଛି ମୋତେ ଚିହ୍ନିପାରୁ ନାହାନ୍ତି ? ମୁଁ ଅନୀଲ, ଗୁଣୁପୁରର ଗାଁ ସ୍କୁଲରେ ପଢୁଥିଲି । ଏବେ ଡାକ୍ତର ହୋଇ ଏଠିକୁ ବଦଳି ହେଇ ଆସିଛି ।

ଅନୀଲ ! ମୋ ଛାତ୍ର ଅନୀଲ । ଗୁଣୁପୁରର ଗାଁ ସ୍କୁଲ... ସେ ମୋତେ ଚାହୁଁଛନ୍ତି । ମଇଳା ଗାମୁଛାରେ ଠପ୍ ଠପ୍ ହୋଇ ଖସି ପଡୁଚି ଅନେକ ଦିନରୁ ନିଗିଡ଼ି ପାରି ନଥିବା ଲୁହ ଠୋପା ସବୁ । ସେ ଠୋପା ଯେମିତି କହୁଛି ନା ହରି ମାଷ୍ଟର ମରିପାରେନା । ହରିମାଷ୍ଟର ଭିକାରୀ ହେଇ ପାରେନା । ତା' ଭିତରେ ଏବେ ବି ସ୍ୱାଭିମାନ ଅଛି । ଏବେ ବି ତାଙ୍କ ନାଁ ଅନୀଲ ଭଳି ଛାତ୍ରମାନେ ମନେ ରଖିଛନ୍ତି । ତାଙ୍କ ପାଦତଳେ ମୁଣ୍ଡ ନୁଆଁଉଛନ୍ତି ।

ହରି ସାର୍ ଆରମ୍ଭ କରୁଛନ୍ତି, ଅନୀଲ । ଜଣେ ଶିକ୍ଷକ ସାରା ଜୀବନ ଶିକ୍ଷା ଦାନରେ ବ୍ୟସ୍ତ ରହି କୋମଳମତି ଶିଶୁମାନଙ୍କୁ ଦେଶର ଭବିଷ୍ୟତ ରୂପେ ଗଢ଼ି ତୋଳିବା ପରେ ନିଜର ଅବସର ସମୟରେ ପେଟ ଚାଖଣ୍ଡକ ପାଇଁ ଯେ ତାକୁ ଭିକ୍ଷା ବୃତ୍ତି କରି ଚଳିବାକୁ ହେବ ଏକଥା କ'ଣ କେବେ ଚିନ୍ତା କରିଥାଏ ? କିନ୍ତୁ ସରକାରୀ କଳର ବେପରୁଆ ମନୋଭାବ ଓ ନାଲିଫିତାର କରାମତି ମୋତେ ଏ ବୃତ୍ତି ପାଇଁ ବାଧ୍ୟ କରିଛି । ପେନ୍‌ସନ ଗଣ୍ଡାକ ପାଇଁ କାହାର ହାତ ନ ଧରିଛି ? ତଳରୁ ଉପର ପର୍ଯ୍ୟନ୍ତ ସବୁ ବଡ଼ବଡ଼ିଆ ଚାହିଁଛନ୍ତି ଲାଞ୍ଚ, ହାତଗୁଞ୍ଜା । ବିଧାୟକ, ମନ୍ତ୍ରୀ, ସଂପୃକ୍ତ କର୍ତ୍ତୃପକ୍ଷ, ନେତା ପ୍ରମୁଖଙ୍କ ବାରମ୍ବାର ଦ୍ୱାରସ୍ଥ ହେଇଛି । ଗୋଡ଼ ଭାଙ୍ଗି ନିଜର ନାଯ୍ୟ ଦାବି ପାଇଁ ବି ନେହୁରା ହେଇଛି । ଯାହା କିଛି ଥିଲା ବିକି ଭାଙ୍ଗି ବସ୍ ଖର୍ଚ୍ଚ ଯୋଗାଡ଼ କରି ରାଜଧାନୀରେ ବଡ଼ ବଡ଼ ମହଲାରେ ଘୂରି ବୁଲିଛି । କିନ୍ତୁ ଏକ ସାଧାରଣ ଶିକ୍ଷକ କଥା ଶୁଣିବା ପାଇଁ କାହାର ବା ସମୟ ଅଛି ? ଚିହ୍ନା ପରିଚୟ ନ ଥିଲେ, କ୍ଷମତା କି ଟଙ୍କା ବଳ ନଥିଲେ ଏଭଳି କାମ ଯେ ହେଇ ପାରେନା, ଅଭିଜ୍ଞତା ବୁଝାଇ ଦେଇଛି । ଅନୀଲ ! ଆଜିକାଲି ଯୁଗରେ ସ୍ୱାଭିମାନ ନେଇ ବଞ୍ଚୁଥିବା ଆଦର୍ଶବାଦୀ ମଣିଷଟି ପାଇଁ କେଉଁଠି ବି ସ୍ଥାନ ଖାଲି ନାହିଁ । ସମସ୍ତେ

ମୋତେ ଖାଲି ହାତରେ ଫେରାଇ ଦେଇଛନ୍ତି । ଯାହା ସ୍ୱଚ୍ଛ ଥିଲା ଦୁଇ ପ୍ରାଣୀ କେତେଦିନ ଆଉ ଚଳିଥାନ୍ତୁ । ଆତ୍ମୀୟ ସ୍ୱଜନ ସମସ୍ତେ ମୁହଁ ଫେରାଇ ନେଇଛନ୍ତି । ସ୍ୱାର୍ଥ ନ ଥିଲେ କିଏ କାହିଁକି କାହାର ଦୁର୍ଦ୍ଦିନରେ ଆସିବ । ଅବସରପ୍ରାପ୍ତ ବୃଦ୍ଧ ପ୍ରାଥମିକ ଶିକ୍ଷକ ପାଖରେ କିଏ କାହିଁକି ଟିୟୁସନ ପଢ଼ିବ । ଇଂରାଜୀ ମିଡ଼ିୟମରେ ପଢୁଥିବା ପିଲାମାନଙ୍କ ପାଇଁ ଆମେ ଏ ଯୁଗରେ ଅଚଳ ଦୋ'ଅଣି । ଅନେକ ଅଭିଭାବକଙ୍କୁ ଟିୟୁସନ କଥା କହିଛି । ସବୁଠି ନାଁ ହିଁ ଶୁଣିଛି । ଧାର ଉଧାର କରି ବି କେତେ ଦିନ ପଡ଼ି ରହିଥାନ୍ତି ? ସବୁ ଚେଷ୍ଟା ବ୍ୟର୍ଥ ହୋଇଛି । ଭାଗ୍ୟର ବିଡ଼ମ୍ବନାକୁ ଆଉ କେମିତି କେତେ ଦିନ ଏଡ଼ାଇ ରହିଥାନ୍ତି । ପେଟର ନିଆଁ ମୁହଁ ଲଜ୍ଜାଠାରୁ ବଳିଗଲା । ଶିକ୍ଷକର ପୋଷାକ ଖୋଲି ଦିନେ ଫିଙ୍ଗି ଦେଲି । ମୂଲ ଲାଗିବା ପାଇଁ ବାହାରି ପଡ଼ିଲି । ମୋର ଦୁର୍ବଳ ଦେହ ଆଉ କିଛି ଅତୀତ ସେଥିରେ ବି ଅନ୍ତରାୟ ସାଜିଲେ । କାହାର ମାଳୀ କି ଘର ଜଗୁଆଳିର ବି ଯୋଗ୍ୟତା ମିଳିଲା ନାହିଁ । ଶେଷରେ ଚଉପଦୀ, ଛନ୍ଦ ରଚନା କରି ଦାସକାଠିଆ ବଜାଇ ଜନଗହଳି ଅଞ୍ଚଳରେ ଭିକ୍ଷା ମାଗିବା ଆରମ୍ଭ କରିଦେଲି । ଯେଉଁ ଭିକ୍ଷା ବୃତ୍ତିକୁ ଏକ ଘୃଣ୍ୟ ବୃତ୍ତି ବୋଲି କହୁଥିଲି ସେ ହିଁ ବଞ୍ଚିବାର ଅବଲମ୍ବନ ପାଲଟି ଗଲା । ପାଞ୍ଚ ବର୍ଷ ହେଇଗଲାଣି ଏ ଭିତରେ । ଦରଖାସ୍ତ ପରେ ଦରଖାସ୍ତ ଦେଇ ଚାଲିଛି । କେତେ ଗୁରୁଦିବସରେ ଏ ବସ୍‌ରୁ ସେ ବସ୍‌କୁ ଭିକ୍ଷା ମାଗିଲା ବେଳେ ମୋର ମନେ ହେଇଛି ଏ ଦିବସ ଆମ ଭଳି ଶିକ୍ଷକ ଗୋଷ୍ଠୀ ପାଇଁ କେବଳ ଉପହାସ, ଆତ୍ମପ୍ରବଞ୍ଚନା । ଏହା ସମ୍ମାନ ନା ପରିହାସ ? ଯେଉଁ ଦେଶରେ ଅବସର ପରେ ଶିକ୍ଷକ ଭିକ୍ଷା ମାଗେ, ଯେଉଁ ଦେଶରେ ଛାତ୍ର ରାସ୍ତା ଘାଟରେ ଗୁରୁକୁ ଚିହ୍ନି ପାରେ ନାହିଁ, ନମସ୍କାରଟେ କରିବାକୁ ପଡ଼ିବ ବୋଲି ବାଟ ଭାଙ୍ଗି ଚାଲିଯାଏ ଓ ଯେଉଁ ଦେଶରେ ଜଣେ ଜୀବନ ସାରା ବିଦ୍ୟାଦାନ କରି ସାରି ବି ଭିକ୍ଷାଦାନ ପାଇଁ ଲୋକଙ୍କ ପାଖରେ ଦାସକାଠିଆ ବଜାଏ ଏବଂ ସରକାର ତା'ର ପ୍ରକୃତ ଅଧିକାର ଜାଣି ବି ଆଖିବୁଜି ଦିଅନ୍ତି ସେ ଦେଶରେ ଗୁରୁଦିବସ ଭଳି ଏକ ହାସ୍ୟାସ୍ପଦ ଦିବସ ରହିବା କ'ଣ ନିହାତି ଆବଶ୍ୟକ ?

ଆଦର୍ଶର କୌଣସି ମୂଲ୍ୟ ନାହିଁ ଅନୀଲ । ମୁଁ ଯାହା ପଢ଼ାଇଥିଲି ଭୁଲି ଯାଅ । ସେ ଦିନର ହରି ମାଷ୍ଟର ସହିତ ଆଜିର ଭିକାରୀ, କାଙ୍ଗାଳର ତୁଳନା କରି ତାଙ୍କର ନିରୋଳା ଆଦର୍ଶପୂର୍ଣ୍ଣ ଜୀବନକୁ ଅପମାନିତ କର ନାହିଁ । ହରି ମାଷ୍ଟରର ମୃତ୍ୟୁ ହେଇ ଯାଇଛି । ସମ୍ମାନ ସହ ରିଟାୟାର୍ଡ ନେଇ ସେହି ଦିନ ହିଁ ମରିଯାଇଛି ତମ ଗୁଣୁପୁର ଗାଁ ସ୍କୁଲର ପ୍ରାଥମିକ ଶିକ୍ଷକ ହରି ମାଷ୍ଟର । ଏଇ ହାତରେ ମୁଁ ତା'ର ନିଆଁ ଦେଇଛି ।

ମୁଁ ନିଜକୁ ଧିକ୍‌କାର କରୁଥିଲି ସେତେବେଳେ । ସାର୍‌ଙ୍କର ଏତେ ବଡ଼ ବିପର୍ଯ୍ୟୟ ଘଟିଗଲା, ସାର୍‌ଙ୍କ ଭଳି ବ୍ୟକ୍ତିତ୍ୱ ଭିକ୍ଷା ଥାଳ ଧରି ଦାଣ୍ଡକୁ ବାହାରି ଆସିଲେ ଆଉ ମୁଁ ଜାଣି ପାରିଲି ନାହିଁ । ଆମଭଳି ଛାତ୍ର ତାଙ୍କର କି କାମରେ ବା ଆସିଲୁ । ଓଡ଼ିଶା ଓ ଓଡ଼ିଶା ବାହାରେ ରହିଥିବା ଛାତ୍ର ଛାତ୍ରୀମାନେ ବଡ଼ ପଦବୀରେ ଥାଇ ବି ସାର୍‌ଙ୍କୁ ଭିକାରୀ କରିଦେଲୁ । ଜଣେ କେହି ତାଙ୍କ ପାଖରେ ଠିଆ ହୋଇ ପାରିଲେ ନାହିଁ । ସାର୍ ଛାନ୍ଦ ଗାଇ ଗାଇ ମୋ ଠାରୁ ଚାଲି ଯାଉଥିଲା ବେଳେ ମୁଁ ତାଙ୍କୁ ଛାଡ଼ିଲି ନାହିଁ । କହିଲି, ଆପଣ ସବୁ ଛାତ୍ର ଉପରୁ ବିଶ୍ୱାସ ହରାନ୍ତୁ ନାହିଁ । ମୁଁ ଆପଣଙ୍କ ପାଇଁ ଲଢ଼ିବି, ସମସ୍ତଙ୍କ ପାଖକୁ ଯିବି, ସବୁ ପ୍ରକାର ଚେଷ୍ଟା କରିବି ।

ତା'ପରେ ସାର୍‌ଙ୍କର କାଗଜପତ୍ର ଇତ୍ୟାଦି ନକଲ କରାଇ ପାରୁପର୍ଯ୍ୟନ୍ତ ତାଙ୍କର ପେନ୍‌ସନ ପ୍ରଭୃତି କରାଇବା ଲାଗି ଗଳଦ୍‌ଘର୍ମ ହେଇଛି । ଛୁଟି ନେଇ ଚିହ୍ନା ପରିଚୟ ମାଧ୍ୟମରେ ଚେଷ୍ଟା କରିଛି । ସଫଳ ନ ହେଲା ପରେ କେସ୍ କରିଛି । ତିନି ବର୍ଷ କେସ୍ ଚାଲିଲା ପରେ ସାର୍‌ଙ୍କର

ଡିଗ୍ରୀ ହେଇଛି । ସମସ୍ତ ଗ୍ରାଚୁଇଟି, କେସ୍ ଖର୍ଚ୍ଚ ବାବଦକୁ ଅଶୀ ହଜାର ନଗଦ ତୁରନ୍ତ ଦେବାକୁ କୋର୍ଟ ରାୟ ଦେବା ଦିନ ଆନନ୍ଦରେ ମୁଁ ଆତ୍ମ ବିଭୋର ହେଇ ଯାଇଛି ।

କୋର୍ଟର ରାୟ ଧରି ସେ ଦିନ ଅତ୍ୟନ୍ତ ଖୁସିରେ ମୁଁ ତାଙ୍କ ପାଖକୁ ଧାଇଁ ଯାଇଥିଲି । ଗଲା ବେଳେ ଭାବୁଥିଲି ପହଞ୍ଚି କହିବି, ସାର୍ ଦେଖନ୍ତୁ ଏବେ ବି ଆଇନ ଅଛି । ଆପଣଙ୍କୁ ନ୍ୟାୟ ମିଳିଛି । ଆଦର୍ଶବାଦୀ ଶିକ୍ଷକର ଜୟ ହେଇଛି । ହେଲେ ମୋର ପହଁଞ୍ଚିବାରେ ବହୁ ବିଳମ୍ବ ହୋଇ ଯାଇଥିଲା । ହାଇକୋର୍ଟର ପଥର ପାଚେରି ଭିତରର ରାୟ ମଫସଲର ଗରିବ ହରି ମାଷ୍ଟରଙ୍କ ପାଖରେ ପହଞ୍ଚିବାର ବହୁ ଆଗରୁ ସେ ଚାଲିଯାଇଥିଲେ ଅନାହାରରେ, ରୋଗରେ, ଅଚିକିତ୍ସାରେ, ଅବସାଦରେ, ଅସମ୍ମାନିତ ଶିକ୍ଷକର ବେଦନାରେ । । ଗୁରୁପତ୍ନୀଙ୍କ ପାଇଁ ଏ ଶୁଭ ସମ୍ବାଦର କୌଣସି ମୂଲ୍ୟ ନଥିଲା । ବରଂଚ ସେ ଟଙ୍କାରେ ତାଙ୍କ ସ୍ୱାମୀଙ୍କ ଭଳି ଶିକ୍ଷକମାନଙ୍କ ଲାଗି ଏକ ଟ୍ରଷ୍ଟ ଗଢ଼ିବାକୁ ସେ ମୋତେ ପରାମର୍ଶ ଦେଇଥିଲେ ।

ମୋ ପକ୍ଷରେ ଏଡ଼େ ବଡ଼ ନିଷ୍ଠୁର ସତ୍ୟକୁ ମାନି ନେବାକୁ କଷ୍ଟ ହେଇଥିଲା । ମୁଁ ସ୍ଥାଣୁ ହେଇ ଯାଇଥିଲି । ହରିସାର୍‌ଙ୍କ ଭଳି ମଣିଷକୁ ଏଭଳି ଭାବରେ ହରାଇ ଦେବାକୁ ମୁଁ ପ୍ରସ୍ତୁତ ନଥିଲି । ଶେଷ ସମୟରେ ମୋର ଡାକ୍ତର ବିଦ୍ୟା, ଚେଷ୍ଟା, ସାହାଯ୍ୟ, ସହାନୁଭୂତି କିଛି ବି ତାଙ୍କର କାମରେ ଆସି ନଥିଲା । ସେଠୁ ଫେରି ଆସିଲା ବେଳେ ଭାବୁଥିଲି, ଯେଉଁ ଶିକ୍ଷକ ଏ ଦେଶରେ ଛାତ୍ରର ମୂଳଦୁଆ ପକାଏ, ତା'ର ଭବିଷ୍ୟତ ଗଢ଼ିବା ପାଇଁ, ଦେଶ ଜାତି ଲାଗି ସେମାନଙ୍କୁ ଉପଯୁକ୍ତ କରିବା ପାଇଁ ନିଜର ସାରା ଜୀବନକୁ ଉତ୍ସର୍ଗ କରିଦିଏ, ସେହି ଶିକ୍ଷକକୁ ଏ ଦେଶ, ଏ ଜାତି ବା ଆମେ କ'ଣ ଦେଇଛୁ ? ବରଂଚ ଭିକାରୀ କରି ନିଜର ସଲାମ ଜଣାଇଛୁ । ଋଣମୁକ୍ତ ହେବା ପାଇଁ ଅକାଳ ମରଣ ମୁହଁକୁ ଠେଲି ଦେଇ ଗୁରୁ ଦିବସର ମହନୀୟ ଆଦର୍ଶକୁ ପ୍ରଣାମ କରିଛୁ ।



# ପ୍ରଶାଖା

## ଜୟନ୍ତୀ ରଥ

ଘର ଅନ୍ୟପାଖର ସବୁ ଗଛପତ୍ର, କୀଟପତଙ୍ଗମାନେ ବି ଜାଣିବାର ଥିଲା ଯେ ଜେନିର ଜେଜେମା ଆସୁଛନ୍ତି । ତାଙ୍କର ଆଖି ଅପରେସନ୍ ହେବ । ସେ ବେଶ୍ କିଛି ଦିନ ରହିବେ ଜେନି ପାଖେ । ସମସ୍ତେ ଠିକ୍ ଠିକ୍ ଜାଣିଗଲେ ଏଇ ବିଶେଷ ଖବରଟି । ଏକମାତ୍ର ସକାଳେ କ୍ଷୀରବାଲା ଭାସ୍କରକୁ ତାଗିଦ୍ କରି ଦିଆଗଲା ଜେଜେମା'ଙ୍କ ପାଇଁ ଛେନା ହେବ, ଆଉ ଗୋଟେ ଲିଟର କ୍ଷୀର ଦେବାକୁ ପଡିବ । ଆଗରୁ ଏକଥା ସତର ଥର କୁହା ସରିଥିଲା ।

ରାଜଶ୍ରୀ ସତକୁ ସତ ଅତିଷ୍ଠ ହୋଇ ପଡିଥିଲେ ଜେନିର ଏ ପ୍ରକାର ଅତି ଉଲ୍ଲାସରେ । "ଭଲ ପାଇବାକୁ ମନା ନାହିଁ । ଏତେ ଗୋଟେ ଦେଖେଇ ହେବା କ'ଣ ଦରକାର । ଏସବୁ ତମ ଘର ଲୋକମାନଙ୍କର ଗୋଟିଏ ଅଜବ ଢଙ୍ଗ । ସେ ତ ସେଇଥିରୁ ଗୋଟେ ହୋଇଚି ନା ।" - ଜଳଖିଆ ଖାଇବା ବେଳେ ପ୍ରବୀରଙ୍କ ଆଡକୁ ଚାହିଁ କହିଲେ ରାଜଶ୍ରୀ । ପ୍ରବୀର ଜାଣିଲେ ଏଇ ଆକ୍ଷେପରେ ଚିମୁଟି ଦେବାର ମତଲବ ଅଛି । କିନ୍ତୁ ଏଇଟା ଗୋଟେ ମଧୁର ଆକ୍ଷେପ । ଏଥିରେ ପ୍ରତିବାଦ କରିବାର କିଛି ନାହିଁ । ରାଜଶ୍ରୀଙ୍କ ମନ ସବୁବେଳେ କାମରେ ବେଶୀ, କଥାରେ କମ୍ । ରୋଗୀ, ରୋଗ, ଷ୍ଟେଥୋ, ଇନ୍‌ଷ୍ଟ୍ରୁମେଣ୍ଟ, ରିପୋର୍ଟ, ହସ୍‌ପିଟାଲ, କ୍ଲିନିକ୍, ମେଡିସିନ୍, ଇଞ୍ଜେକ୍‌ସନ, ଅପରେସନ, ଆନାସ୍ଥେସିଆ ଏଇ ସବୁ ଶବ୍ଦକୁ ନେଇ ଦିନ ବଢେ ଓ ଛିଡେ । ତା' ଭିତରେ ଆଉ ଜଣେ କାହାକୁ ଗୋଟାପଣେ ଆବୋରି ନେବାର, ଭାବରେ ଉଛୁଳି ପଡି ବୋହି ଯିବାର ପ୍ରବୃତ୍ତି ହିଁ ନଥାଏ । ସେଇ ଶୃଙ୍ଖଳା ଗୁଳାରେ ଜେନିକୁ ପକେଇବାକୁ କହିଲା ବେଳେ ଜେନି ଆଳୁ ଚିପସ୍ ଖାଇବାକୁ ଜିଦ୍ କରେ ଓ ପ୍ରବୀରଙ୍କ ମଧ୍ୟସ୍ଥତାରେ ତାକୁ ଆଳୁ ଚିପସ୍ ହିଁ ଦେବାକୁ ପଡେ । ସକାଳୁ ଶୀଘ୍ର ଉଠିବା ପାଇଁ ଡାକି ଡାକି ନୟାନ୍ତ ହେଲେ ବି ସେ ଶୁଣେନି । ବିରକ୍ତ ହୋଇ ଫ୍ୟାନ୍ ସୁଇଚ୍ ଅଫ କରିଦେଲେ ଏଡେ ପାଟିରେ ଚିଲେଇ କରି କାନ୍ଦେ ଯେ ଖଣ୍ଡମଣ୍ଡଳ କମ୍ପିଯାଏ । ପୁଣି ହସ୍ତକ୍ଷେପ କରିବାକୁ ପଡେ ପ୍ରବୀରଙ୍କୁ ।

ଏମିତି ଦିନ ଭିତରେ ଅଳ୍ପ କେତେ ଘଣ୍ଟା ଦେଖା ଚାହାଁ, କଥାବାର୍ତ୍ତା । ସେଥିରୁ ଅଧା ସମୟ ଯାଏ କେବଳ ଜେନି ପାଇଁ ତର୍କ ବିତର୍କରେ ।

ଏବକୁ ବଡ ଦିକ୍‌ଦାର ହୋଇଗଲେଣି ପ୍ରବୀର । କିଛି କହିବାର ଇଛାକୁ ସମ୍ବରଣ କରି ଏ ସଂକ୍ରାନ୍ତରେ ସେ ଚୁପ୍ ରହୁଛନ୍ତି । ଜେନିର ଅମାନିଆ ପଣକୁ ଭାଙ୍ଗିବା ପାଇଁ ତାଙ୍କର ଚୁପ୍ ରହିବାଟା କଥା କହିବାଠୁ ବେଶୀ କାମ ଦେଉଚି ବୋଲି ତାଙ୍କର ବୋଧ ହେଉଛି ।

ତେବେ ଜେନି ବଢିବ କେମିତି ?

ସବୁବେଳେ ଏଇ 'ନାଇଁ ନାଇଁ'ର ତିଖ ଖୁଣ୍ଟର ଘେରରେ ତା'ର ପିଲାମନର ରଙ୍ଗଟା ଫିକାଟିଆ ହୋଇଯିବନି ତ !

ଟାୱେଲ୍‌ରେ ମୁହଁ ପୋଛୁ ପୋଛୁ ନିଜ ଭିତରେ ଗୁଣୁଗୁଣୁ ହେଉଥିଲେ ପ୍ରବୀର । ବୋଉ ଆସିବା ପର୍ଯ୍ୟନ୍ତ ଅପେକ୍ଷା ନ କରି ସେ ବାହାରିଗଲେ ହସ୍‌ପିଟାଲ୍ ଡ୍ୟୁଟିରେ ।

## ଦୁଇ

ଜେଜେମା'... ଆସ ତମର ମୋର ଅନ୍ତାକ୍ଷରୀ ଖେଳିବା । "ବୈଠେ ବୈଠେ କ୍ୟା କରେ କରନା ହେ କୁଛ୍ କାମ୍ । ସୁରୁ କରୋ ଅନ୍ତାକ୍ଷରୀ ଲେକର୍ ପ୍ରଭୁକା ନାମ୍ ।" ଶୁଣ ମୁଁ ଆରମ୍ଭ କରୁଛି ।

'ଯେଉଁଠି ଯୋଉ ଆଲଫାବେଟ୍‌ରେ ସରିବ, ତମେ ସେଇଥିରେ ଗାଇବ ।' ତା'ପରେ ସ୍ୱର ଧରି ଗାଇଲା-

'ଦିଲ ହେ ଛୋଟା ସା
ଛୋଟି ସି ଆଶା
ଆସମାନୋମେଁ ଉଡ୍‌ନେ କେ ଆଶା
ଚାନ୍ଦ୍ ତାରୋଁ କୋ ଛୁନେ କେ ଆଶା'-

"ଗାଆ ତମେ ଏବେ ସା'ରେ ଗାଆ"

"ସ ରେ ହେବ ?"

ହଁ... ହେବ... ହେବ...

ରିହାତି ଦେଲାଭଳି କୁନ୍ଥେଇ କରି ସମ୍ମତି ଦେଲା ଜେନି । ଯାହା ବି ହେଲେ ଖେଳିବାକୁ ଗୋଟେ ସାଙ୍ଗ ଦରକାର । ନାହିଁ କରିଦେଲେ ଖେଳ ଭାଙ୍ଗିଯିବ ପୂରାପୂରି । ସରସ୍ୱତୀଙ୍କର ଆ'ରେ ସରିଲା । ଜେନି ଆ'ରେ ଆରମ୍ଭ କଲା-

ଆତି ନେହିଁ... ଆତି ନେହିଁ...

ତୁମ୍ ଖୁବ୍ ସୁରତ୍ ହୋ, ତୁମ୍ ହସିନ୍ ହୋ...

"ଇଏ କ'ଣ, ଆଗକୁ ପଛ, ପଛକୁ ଆଗ କରି ବୋଲୁଚୁ ?" ଘଡିକି ହାତରେ ବାନ୍ଧି ବାହାରି ଯାଉ ଯାଉ ଜେନି ଆଡକୁ ଲକ୍ଷ୍ୟ କରି କହିଲେ ରାଜଶ୍ରୀ । "ଜେଜେମା' ଜାଣି ନାହାନ୍ତି ବୋଲି ତାଙ୍କୁ ଚିଟ୍ କରୁଚୁ କାହିଁକି ।" ମାମୀ ତା'ର ଫାଙ୍କିବାଟା ଧରିଦେଲେ ଅଚାନକ । ଜେନି ପ୍ରସ୍ତୁତ ନଥିଲା ଏଥି ପାଇଁ । ଥା ଆ-ମା' ମା' ହୋଇ କ'ଣ କହିବ ଭାବୁଥିଲା । ସରସ୍ୱତୀ ମିଶେଇ ଦେଲେ- 'ହଁ ମ ସେଥିରେ କ'ଣ ଅଛି । ଗୀତ ତ ଗୀତ । ଆଗ ପଦ ପଛରେ, ପଛ ପଦ ଆଗରେ କହିଲେ କିଛି ଦୋଷ ନାହିଁ ।'

ରାଜଶ୍ରୀ ଚାଲିଯାଇଥିଲେ ଭୁଲ୍‌ଟା ବାଛି ଦେଇ । ଜେନି ଟିକେ ଆନମନା ହୋଇଯାଇଥିଲା । ଆଉ ଦି' ଚାରିଟା ହିନ୍ଦୀ ଓଡିଆ ଗୀତ ଅଦଳ ବଦଳ ହୋଇ ବୋଲାଯିବା ପରେ ସରସ୍ୱତୀ କହିଲେ- "ଏଗୁଡାକ ମୁଁ କିଛି ବୁଝୁନି ଲୋ ଧନ, ଯା ସେ ଲୁଡୁପାଲି ହେଲେ ଆଣେ । ସେଇ ସାପ ସିଡି ଖେଳ ଖେଳିବା ।"

-"ନା, ସେଇ ଖେଳଟା ମୋତେ ବୋର୍ ଲାଗିଲାଣି ଖେଳି ଖେଳି । ଆଉ ମନ ହେଉନି ।"

"ଆଉ ତୋର ଯେଉଁ ସବୁ ଖେଳନା ଅଛି, ମତେ ତ ସେଗୁଡାକ ଖେଳି ଆସିବନି । ସେଇ ତାସ୍ ଆଉ ଲୁଡୁପାଲି ଖେଳ ଦି'ଟା ମତେ ଜଣା ।"

"ନାଇଁ ଥାଉ । କିଛି ଖେଳିବାନି । ତମକୁ ଯୋଉ ଗୀତ ଆସୁଛି ଗାଅ । ମତେ ଖାଲି ସେଇ ଗୀତର ମାନେଟା କହିଦେବ ପଛରେ । ତମେ ତ କେତେ ବଢିଆ ବୋଲୁଛ ଜେଜେମା' ।"

"ହଁ, ଏଇ ତୋ ବାବା ଆଉ ନାନୀ (ପିଉସୀ)ମାନେ ସ୍କୁଲ୍‌ରେ ପଢିଲା ବେଳେ ତାଙ୍କ

ବହିରୁ ଏଇ ଗୀତ ସବୁ ପଢ଼ି ପଢ଼ି ମୋର ମୁଖସ୍ଥ ହୋଇଯାଇଥିଲା । ନିଇତି ପରା ଖରାବେଳେ ହାତରେ ଆଉ କିଛି କାମ ନଥିଲାବେଳେ ମୁଁ ଘରେ ବସି ବସି ଯାକୁଇ ବୋଲେ ।"

"ଆଉ ବାହାରେ କୋଉଠି ବୋଲନି ?"

"ନାଆ ଲୋ ମାଆ । ଲୋକ ହସି ନଥାନ୍ତେ । କହିଥାନ୍ତେ ବେସରମ ମାଇପିଟା କେମିତି ମନକୁ ମନ ଗୀତ ବୋଲୁଛି ।"

"କାହିଁକି ଜେଜେମା । ଗୀତ ବୋଲିବାଟା କ'ଣ ଗୋଟେ ଖରାପ କଥା ! ସେମିତି କାହିଁକି କହିଥାନ୍ତେ ତମକୁ ଲୋକମାନେ ? ଏବେ ତ ସମସ୍ତେ ବୋଲୁଛନ୍ତି ।"

"ହଁ ଲୋ ମାଆ । ଏସବୁ ତମ ବେଳକୁ ହେଲାଣି । ଆମବେଳେ ତ ଆମେ ବଡମାନଙ୍କୁ କଥା ବି କହୁ ନଥିଲୁ । ଚୁ ଚୁ କରି ଡାକୁଥିଲୁ । ଥରେ କ'ଣ ହେଲା ଜାଣିଚୁ । ମୁଁ ନୂଆ ନୂଆ ବାହା ହୋଇ ଆସିଥାଏ । ଭାତ ଗାଳି ସାରି ହାଣ୍ଡିଟାକୁ ରୋଷେଇ ଘର ପିଣ୍ଡି ଉପରେ ରଖିବାକୁ ନେଉଥାଏ । ଏତେ ଭାରୀ ମାଟିହାଣ୍ଡି । ମୋର ବଳ ପାଇଲାନି । ହାତରୁ ହାଣ୍ଡିଟା ଖସି ଦୁଇ ଫାଳ ହୋଇଗଲା । ଟକମକ ତତଲା ଭାତ ସବୁ ବିଞ୍ଚାଡି ହୋଇପଡିଲା । ମୋ ଦି' ପାଦରେ ସେଇ ତତଲା ଭାତ, ଜଳିଗଲା ଭଳି ଲାଗୁଥାଏ । ଆଖି ଲୁହ ଡବଡବ । ହେଲେ ପାଟି କରି ମୁଁ କାନ୍ଦି ପାରୁନଥାଏ । ବାରଣ୍ଡାରେ ମୋ ଶ୍ୱଶୁର ବସିଥିଲେ । ତାଙ୍କ ପାଖେ ଶାଶୂ ବସି ପାନ ଭାଙ୍ଗୁଥିଲେ । କଷ୍ଟରେ ଓଠ ଦି'ଟା ଚାପି କରି ଧରିଥାଏ । ଶାଶୂଙ୍କୁ ଫାଙ୍କ ବାଟେ ଚୁ ଚୁ କଲି, ଠାର ଦେଇ ବୁଝେଇଲି । କେତେବେଳ ପରେ ଟିକେ କ'ଣ ବୁଝିଲେ ଉଠିକରି ଆସିଲେ । ସେତେବେଳକୁ ମୋ ଚମଡା ସିଝି ସାରିଥାଏ ।"

"କେମିତି ଠାର ଦେଲ ଜେଜେମାଆ ?"

ସରସ୍ୱତୀ ଆଙ୍ଗୁଠି ଓ ଆଖିର ବିଚିତ୍ର ଅଭିନୟରେ ଦେଖେଇଲେ ହାଣ୍ଡି ଭାଙ୍ଗିବାର, ଭାତ ବିଞ୍ଚିବାର ଦୃଶ୍ୟ । ଜେନି ଠୋ ଠୋ ହୋଇ ହସିଲା । ତା' ହସ ଦେଖି ସେ ନିଜେ ବି ହସିଲେ । ପଇଁଚାଳିଶ ବର୍ଷ ତଳର କିଶୋରୀ ବଧୂଟିଏର ଅବ୍ୟକ୍ତ ଦୁଃଖ ଭୋଗର ସ୍ପର୍ଶ ନଥିଲା ସେଥିରେ ।

"ହଉ ଜେଜେମାଆ- ଏଥର ଗୀତଟେ ବୋଲ ।"

"କୋଉ ଗୀତ ?"

"ଯୋଉଟା ତମକୁ ସବୁଠୁ ବେଶୀ ଭଲ ଲାଗେ ।"

"ହଁ ମୁଁ ବୋଲିବି ଯେ... ତୁ ଥିରି ହୋଇ ଶୁଣିବୁ । ମଝିରୁ ମୋତେ ପଚାରିବୁନି ।"

"ହଉ ।"

ପଣତ କାନିକୁ କାନ୍ଧ ଉପରେ ସଜାଡି ତଳକୁ ଖସିଥିବା ଓଢଣାକୁ ଉପରକୁ ଟାଣି ଭାବର ଜମାଟବନ୍ଧା ମହମକୁ ସୁରରେ ତରଳେଇଲେ ସରସ୍ୱତୀ- କୋହ ଆଉ ମୋହର ବତୁରା କଣ୍ଠରେ ।

ବାଳୁତ କାହ୍ନା ଫେରି ନାହିଁ ବନରୁ । ବେଳ ଉଛୁର ହୋଇଗଲାଣି । ମାଆ ମନ ଥୟ ଧରୁନି । ଅଥୟ, ଆତୁର ହୋଇ ଯଶୋଦା ବିଳାପ କରୁଛନ୍ତି । ସେଇ ବିଳାପର ଧ୍ୱନି ଦ୍ୱାପର ଯୁଗରୁ ଆସି ଅଟକି ଯାଇଚି ସରସ୍ୱତୀଙ୍କ ଛାତି ତଳେ । ସେତେବେଳେ ମନେ ପଡେ ସେଇ ଗୁଞ୍ଜରଣ, ତାକୁ ସୁର ଧରି ନ ଗାଇଲେ ସେ ଶ୍ୱାସ ଗ୍ରହଣ କରି ପାରନ୍ତି ନାହିଁ । କୋହରେ ଗୋଟାପଣେ, ତିନ୍ତି ବୁଡି ଯାଆନ୍ତି । ତଥାପି ଲହରେଇ ଲହରେଇ ଗାଆନ୍ତି । ମୂଳରୁ ଶେଷ ପର୍ଯ୍ୟନ୍ତ । ଜେନିର କଥାମାନି ସେଇ ଗୀତଟିର ସୁର ଧରିଲେ ସେ-

ଧୀରେ ଘେନ କାନନରେ କୃଷ୍ଣ ବିଳମ୍ବିତ

ବାତ୍ସଲ୍ୟ ମମତା ଘେନି ଭାଳୁଛନ୍ତି ମାତ,
କଳା ମାଣିକରେ ।
ନିଧନ ସଙ୍ଗାଳି ମୋର ଦରିଦ୍ର ପସରା
ଅନ୍ଧର ଲଉଡି ବାବୁ ହୃଦ ରତ୍ନହରା ।
ମୋ ଜୀବ ଜୀବନ ତୁହି ନୟନ ପ୍ରତିମା
ତୋତେ କି ପାସୋରି ହେବ ମୋର ସୁଖ ସୀମା ।
ଡରୁ ଥାଉ ଅନ୍ଧାରକୁ ରଖିଯାଉ ଗୋରୁ
ଜନକ ଜନନୀ ସୁଖ କାହିଁ ପାଇ ସାରୁ ।
ବୃଦ୍ଧକାଳେ ତୁ ମୋହର ଏକଇ ନନ୍ଦନ
ହୃଦ ତାପ ବିନାଶନେ ତୁ ହରି ଚନ୍ଦନ ।
ଗୋଟିକା ଅଧାମ ସର ନ ରୁଚଇ ତୋତେ
ନାଚି ଲାଞ୍ଚ ମାଗୁଥାଉ ଲବଣୀ କେମନ୍ତେ ।

"ଲାଞ୍ଚ କ'ଣ ଜେଜେମା' ! କିଏ ମାଗୁଚି । ମୁଁ କିଛି ବୁଝିପାରୁନି ।" ଗୀତ ଆରମ୍ଭ ବେଳ ପ୍ରତିଶ୍ରୁତି ଭୁଲି ପଚାରିଦେଲା ଜେନି ।

ନିୟମ ଭାଙ୍ଗିଲା । ତାଳ ଭଙ୍ଗିଲା । ଲୟ ଭାଙ୍ଗିଲା । ଇତସ୍ତତଃ ହୋଇପଡିଲେ ସରସ୍ୱତୀ । ଆଠ ନଅ ବର୍ଷର ଝିଅକୁ ସେ କେଉଁଠୁ ଆରମ୍ଭ କରି କେମିତି ବୁଝେଇବେ ।

ସନ୍ତାନ ପାଇଁ ମା'ର ସ୍ନେହ, ମମତା, ଅପେକ୍ଷା ଓ ଆକୁଳତାକୁ ବୁଝେଇ କରି କହିବା ପାଇଁ ସେ ଭାଷା ଆଣିବେ କେଉଁଠୁ ? ସେ ନିଜେ ସାତଟି ପିଲାର ମାଆ । ରକ୍ତ, ମାଂସର ଭାଗଫଳକୁ ସାତ ଥର ଖସେଇବାକୁ ପଡିଚି ମାଟି ଉପରେ । ଏନ୍ତୁଡି ହାଣ୍ଡିର ନିଆଁ ଧୂଆଁ ନିଜ ଭିତରକୁ ଶୋଷିବାର ସାତଟି ଅଧ୍ୟାୟ ଫିଟିଚି ତାଙ୍କ ଜୀବନରେ । ଛଅ ଝିଅ । ଗୋଟିଏ ପୁଅ । ସମସ୍ତେ ଆଜି ଜୀବନରେ ପ୍ରତିଷ୍ଠିତ । ତାଙ୍କ ନିଜ ଜୀବନର ଅଧା ଦେଖା ସ୍ୱପ୍ନ, ଦରଲୋଡା ସୁଖ ଓ ତା'ଠୁ ଢେର୍ ବେଶୀ ସଂସାର ପାଇଁ ଲୋଡିବା କଥାମାନ ଫଳିଚି, ଫୁଟିଚି ପିଲାମାନଙ୍କ ଜୀବନରେ । ତଥାପି କାହିଁକି ମା'ର ଦୁଃଖ କଥା ଭାଳିଲେ ଫାଟିଯାଏ ତାଙ୍କ ଛାତି । ଭିଣି ହୋଇଯାଏ ତାଙ୍କ ଅନ୍ତଃବୁଜୁଳା ।

ଜେନିର ପ୍ରଶ୍ନର ଉତ୍ତର ଆରମ୍ଭରୁ ନ ଦେଇ ସେ ସେଇ ଅଧାରୁ ହିଁ ଦେଲେ । ପୂରାପୂରି ମୂଳ କଥା, ମଞ୍ଜ କଥା କହିହେବନି । କହିଲେ ନିଜକୁ ସମ୍ଭାଳି ରଖି ହେବନି ।

'ଏଇ ଯୋଉ କୃଷ୍ଣ'... କାନ୍ଥରେ ଟଙ୍ଗା ହୋଇଥିବା ବାଳକ କୃଷ୍ଣଙ୍କର ଫଟୋଟି ଆଡକୁ ଆଙ୍ଗୁଠି ଦେଖେଇ ଆରମ୍ଭ କଲେ ସରସ୍ୱତୀ- 'ମାଆଙ୍କୁ ତ ସେ ଭାରି ହଇରାଣ କରୁଥିଲା । ମାଆ ଯେତେ ତାଙ୍କ ପଛେ ପଛେ ଧାଉଁଥିବେ ଭଲ ଭଲ ଖାଇବା ଜିନିଷ ଧରି ସେ ନାହିଁ ନାହିଁ କରି ଦୌଡୁଥିବ । ତାକୁ ଖାଲି ସେଇ ଗୋଟିଏ ଜିନିଷ ଲହୁଣୀ ଦରକାର । ଅଣ୍ଟା ହଲେଇ, ବେକ ଦୋହଲେଇ, ମୁହଁ ନଚେଇ ସେଇ କଥା ଅଳି କରୁଥିବ । ଲହୁଣୀ ଦିଅ... ଲହୁଣୀ ଦିଅ । ତୁ କେମିତି ଜିଦ୍ କରୁଛୁ ଏଇଟା ଖାଇବିନି ସେଇଟା ଖାଇବିନି । ତତେ ସେଠୁ ମାମୀ ବୁଝଉଚି । ଲାଞ୍ଚ ଯାଚୁଚି ।'

"ନା ନା, ମାମୀ ପାଖେ ମୁଁ ଆଉ କେବେଠୁଁ ଜିଦ୍ କରୁନି କି ମାମୀ ମୋତେ ସେମିତି ଗେହ୍ଲା କରି କିଛି କହୁନାହାନ୍ତି ।"

"ଏଁ... କ'ଣ କହିଲୁ ।"

"ମୁଁ ତ ସ୍କୁଲରୁ ଆସିଲାବେଳେ ମାମୀ କେବେ ବି ନଥାଏ । ବଟୁ ଯାହା ଦିଏ ହଟ୍‌କେସ୍‌ରୁ କାଢି କରି ମୁଁ ତ ଖାଏ । କ'ଣ କିଛି କହେ ? ତମେ ଦେଖୁନ କି ?"

"ହଁ... ମାଆ । ଦେଖୁଚି, ତୁ ତ ମୋର ସୁନାଝିଅଟା । ତୁ କାହିଁକି ଅଝଟ ହେବୁ । ସେଇ ଗୋପାଳଟା ଭାରି ଦୁଷ୍ଟ ଥିଲା ତ ! ଖାଲି କ'ଣ ଏତିକି ଦୁଷ୍ଟାମି ତା'ର ? ସବୁଦିନ ଗୋଟେ ଗୋଟେ ନାଟ ଲଗେଇଥାଏ । ଘରେ ବାହାରେ । କାହାର ଦହି ବଢା ଭାଙ୍ଗେ ତ କାହାର ଲୁଗା ଚୋରାଏ । ସବୁଦିନ ସକାଳ ସଞ୍ଜରେ ଯଶୋଦାଙ୍କ ଆଗରେ ଆସି ସେଇ ଗୋପପୁରର ଲୋକମାନେ ହାଉହାଉ ହୁଅନ୍ତି । ସବୁବେଳେ ଶୁଣି ଶୁଣି ତାଙ୍କୁ ବ୍ୟସ୍ତ ଲାଗିଯାଏ । ଥରେ ଥରେ ସମ୍ଭାଳି ନପାରି ସେ ତାଙ୍କୁ ଭାରି ଜୋର୍‌ସେ ପିଟନ୍ତି । ମାରି ସାରି ନିଜେ ବିକଳ ହୋଇ କାନ୍ଦନ୍ତି । ହେଲେ କାହ୍ନା କୁହେନି କିଛି... ତା' ଆରଦିନକୁ ପୁଣି ଯାହାକୁ ସେଇଆ ।'

"ଜେଜେମା', ସେ ତ ଭଗବାନ୍ ହେଇକରି ବି ଏତେ ଦୁଷ୍ଟ ହେଉଥିଲେ । ଆଉ ମୁଁ କାହିଁକି ହେବିନି ?"

"ଏଁ... କ'ଣ କହିଲୁ ?" ସରସ୍ୱତୀଙ୍କ ସତ୍ତା ଦୋହଲିଗଲା ଏଇ ପ୍ରଶ୍ନରେ ।

"ତୁ ଦୁଷ୍ଟ ହେଲେ ତୋ ମାମୀ କାନ୍ଦିବ ଯେ ।" ରହି ରହି କେତେ ସମୟ ପରେ ସେ କହିଲେ । ତାଙ୍କ ସ୍ୱର ମଉଳି ଯାଇଥିଲା- ଅଦୃଶ୍ୟ ଆଘାତର ଚାପରେ ।

ବାହାରେ ସାରା ଦିନ ବର୍ଷା । ଥଣ୍ଡା କୋହଲା ପାଗ । ରାସ୍ତାରେ ପାଣିର ସୁଅ । ପୁଅ ବୋହୂ ଫେରି ନଥିଲେ ଡ୍ୟୁଟିରୁ । ଝରକା ବାଟେ ଦିଶୁଥିଲା ମାଟି ଓ ପାଣିର ଗତାଗତ ।

ତାଙ୍କୁ ଲାଗିଲା ସେ ନିଜେ ବି ଗୋଟେ ବର୍ଷା ବତୁରା ନହକା ସଜନା ଗଛ । ଏବେ ଅଛନ୍ତି, ଏବେ ନଥିବେ । ମୋହର ମାତ୍ରାଧିକ ଆବେଶରେ ସେ ପଣତ ଭିତରକୁ ଟାଣି ଆଣିଲେ ଜେନିର ମୁଣ୍ଡଟାକୁ । ଆଦରରେ ସାଉଁଳେଇ କହିଲେ- "ଶୋଇପଡ ମାଆ, ଶୋଇପଡ । ଆଜି ସାରା ଖରାବେଳ ଶୋଇନୁ । କେତେ ବଜର ବଜର ହେଲୁଣି !"

## ତିନି

ଆଖି ଅପରେସନ୍ ସୁରୁଖୁରୁରେ ସରିଗଲା । ତତ୍ତ୍ୱ ନେବାରେ ହେଳା କରି ନଥିଲେ ରାଜଶ୍ରୀ । ସରସ୍ୱତୀଙ୍କୁ ଦେଖି ଆସିବା ଆଳରେ ବନ୍ଧୁ ଓ ପରିବାର ବର୍ଗଙ୍କ ଭିଡ ଜମିବାର ଅପରିହାର୍ଯ୍ୟ ପ୍ରସଙ୍ଗଟି ଜେନି ପାଇଁ ଥିଲା ଖେଳ । ରାଜଶ୍ରୀ ପାଇଁ ଥିଲା କାଳ । ଦୌଡି ଆସି କାହାକୁ ଅଙ୍କଲ୍ ନମସ୍କାର, କାହାକୁ ଆଣ୍ଟି ନମସ୍କାର କରି ପାଛୋଟି ଆଣିବା, ଟି-ପୟ ଉପରେ ଥିବା ଟ୍ରେ'ରେ ଖାଲି କପ୍ ପ୍ଲେଟ୍ ଉଠେଇ ନେବା, ଜେଜେମା'ଙ୍କ ପାଖରେ ତୁଳା, ପିଇବା ପାଣି ଆଣି ଦେବା ଓ ଏମିତି ଆହୁରି ବହୁତ ଟିକିନିଖି କାମ ସେ ନିଜେ ନିଜେ ତତ୍‌ପର ହୋଇ କରିଯାଉଥିଲା । ପାଠପଢାରେ ଢିଲା ହେଉଛି ବୋଲି ରାଜଶ୍ରୀଙ୍କ ତାଗିଦ୍‌କୁ ସେ କାନରେ ପୂରଉ ନଥିଲା ।

ସନ୍ଧ୍ୟାବେଳେ ବରାବର ଜେଜେମା'ଙ୍କ ଗୋଡ ପାଖେ ଆଉଜି ବସିଥାଏ ଜେନି । କେତେବେଳେ କଣ୍ଢେଇଟିଏ ଧରିଥାଏ, କେତେବେଳେ ଟି.ଭି. ଦେଖୁଥାଏ, କେତେବେଳେ ଜେଜେମାଆଙ୍କୁ ନୂଆ ନୂଆ ଜାଣିଥିବା ଜୋକ୍ ଶୁଣଉଥାଏ । ଏକୁଟିଆ ଫାଙ୍କା ବେଳ ଦେଖି ଥରେ ପଚାରିଦେଲା- ଜେଜେମା', 'ହଜବ୍ୟାଣ୍ଡ'କୁ ଓଡିଆରେ କ'ଣ କହନ୍ତି !

ଈଷତ୍ ହସି କଡ ଲେଉଟେଇ ସରସ୍ୱତୀ କହିଲେ- 'ବର... ବର ।' ବେଦୀରେ ବରଣ ହେବାକୁ ଯାଉଥିବା କେଉଁ ପୁରୁଷକୁ ବରବେଶରେ ଦେଖୁଥିଲେ ଯେମିତି ପଟିବନ୍ଧା ଆଖିତଳୁ ।

-'ଦେଖ୍, କାହିଁକି ନାଇଁ ନାଇଁ କରୁଚୁ ?'

-'କିଏ ନାଇଁ ନାଇଁ କରୁଚି କିଲୋ ?'

-'ଏଇ ମୋ ଝିଅ ରୁଲି ।'

-'କ'ଣ କହୁଚି ?'

-'କହୁଚି କି ବାହା ହେବିନି, ତତେ ଛାଡିକରି ଯିବିନି । ମୋର ତ ଆହୁରି କେତେ କାମ ଅଛି ନା । ମୁଁ କ'ଣ ସବୁବେଳେ ତାକୁ ଜଗି କରି ବସିଥିବି ?'

-'ହଁ ମା, ସତ କଥା । ତୁ କେମିତି ତାକୁ ସବୁବେଳେ ଜଗିବୁ ?'

ଜେଜେମା'ଙ୍କଠୁ ସମର୍ଥନ ପାଇ ଜେନି ଆଉ ଥରେ ବୁଝେଇବାକୁ ଲାଗିଗଲା ତା'କଣ୍ଢେଇ ଝିଅ ରୁଲିକୁ ।

-"ବାହା ହେବୁନି ତ ତୋ' ବର କେମିତି ଆସିବ ? ବର ଆସିବନି ତ ତୋ'ପାଇଁ ମିଠା କିଏ ଆଣିଦେବ ? ମିଠା ଖାଇବୁନି ତ ମୋଟୀ କେମିତି ହେବୁ ? ମୋଟୀ ହେବୁନି ତ ରୋଗ କେମିତି ହେବ ? ରୋଗ ହେବନି ତ ସୁଇଜରଲ୍ୟାଣ୍ଡ କେମିତି ଯିବୁ ?"

ଜେନିର ମୁରବୀପଣିଆ, କଅଁଳିଆ ଆକଟ ଶୁଣି ଉଚ୍ଛୁଳା ହସରେ ଫାଟି ପଡିଲେ ସରସ୍ୱତୀ । ଡାକ୍ତରଙ୍କର, ପୁଅ ବୋହୂଙ୍କର ନିଷେଧାଦେଶ ମନେ ରହିଲାନି ।

ଘର ଭିତରକୁ ପଶୁ ପଶୁ ବୋଉର ହସିବାର ଶବ୍ଦରେ ଅଟକିଗଲେ ପ୍ରବୀର ।

"କ'ଣ ହେଲା ବୋଉ ? ଏତେ ଜୋରରେ ହସୁଚୁ ?"

"ଦେଖ ତୋ' ଝିଅ କଥା । କେମିତି ବୁଢୀ ଖୁଣ୍ଟଙ୍କ ଭଳି ତା' ଝିଅକୁ ଡିଆରୁଚି । ମୁଁ ମରିଯାଉଥାଏ ଟି ଲୋ । କେତେ କଥା କେତେ ଲଥା ଯୋଡି ଦେଉଚି ସେ ।"

"ବହୁତ, ବହୁତ କଥା କହୁଚି ବୋଉ । ତାକୁ ଆଉ ପାରି ହେବନି ।" -ବୋଉଙ୍କ ବିଛଣା ପାଖ ଚଉକିରେ ବସୁ ବସୁ କହିଲେ ପ୍ରବୀର ।

"କହୁ ବାପା, ସେ କହୁ । ତମେ ଦିହେଁଯାକ ଲାଗିପଡି ତାକୁ ଆଉ ଏତେ ଆକଟ କରନା । ସିଏ କହିବନି ତ ଆଉ କିଏ କହିବ ! ସମସ୍ତେ ଓଠ ବୁଜି କାମରେ ଲାଗିଲେ ଟେବୁଲ, ଚଉକି, ଖଟ, ଆଲମିରା ଯାହା, ମଣିଷ ବି ସେଇଆ । ଏଇ ଟଙ୍କା ପଇସା ଆୟ, ଏଇ ହାଡଭଙ୍ଗା ଖଟଣି ତମେ କାହା ପାଇଁ କରୁଚରେ । ମୋର ରକ୍ତ ମାଂସର ପିତୁଳାଟା ଯଦି ପଥର ହୋଇଯିବ, କ'ଣ ହେବ ତମର ଥାକ ଥାକ ଟଙ୍କା, କୋଠା ବାଡି, ଗାଡି ଘୋଡା । ...ତମେ ଜଣ ଜଣ କରି ତମ କାମରେ ଲାଗିଚ । ତା' ଲାଗି ଘରଭର୍ତ୍ତି ଖେଳନା, କଣ୍ଢେଇ, ଗପବହି କିଣି ଦେଇ ଭାବୁଚ ତମ କାମ ସରିଗଲା ।"

ଏକାଥରେ ଏତେ ବେଶୀ କଥା କହି ଅଣନିଃଶ୍ୱାସୀ ହୋଇପଡିଥିଲେ ସରସ୍ୱତୀ । ତା'ଛଡା ଏଇଟା ଖାଲି କଥା ନଥିଲା । ଏଇଟା ତାଙ୍କର ବହୁଦିନର ଜମାଟବନ୍ଧା ଅଭିଯୋଗ ଥିଲା, ଆପତ୍ତି ଥିଲା- ଶାଖା ଆଗରେ ପ୍ରଶାଖା ପାଇଁ ଆବେଦନ ଥିଲା ।

## ଚାରି

"ଜେଜେମା- ରୁହନା, ମୋର ଏକ୍‌ଜାମ୍ ସରିଲା ପରେ ଯିବ । ମୁଁ ବି ଯିବି ତମ ସାଙ୍ଗେ ।"

"ନାରେ ଧନ... ତୋ' ଜେଜେ ପରା ହଇରାଣ ହେଉଥିବେ । ଏକେଲା ମଣିଷ ଏଡେ ବଡ ଘରଟାରେ । ସେ ରବି ସବୁ ଠିକ୍‌ରେ କରି ଦେଉଥିବ କି ନାହିଁ । ବାଡି ବଗିଚା, ଗଛବୃଛ କ'ଣ ସବୁ ହେବଣି କେଜାଣି । ପାଣି ଦେଉଥିବ କି ନାହିଁ ।"

-"ଜେଜେମା, ତମର ଆଉ ଆଖି ଅପରେସନ୍ ହେବନି ?"

ହଠାତ୍ ଅଭାବନୀୟ ପରିସ୍ଥିତିଟିଏ ସୃଷ୍ଟି ହୋଇଗଲା ଜେନିର ଏଇ ଅକପଟ ଅଦ୍ଭୁତ ପ୍ରଶ୍ନରେ । ଯଥେଷ୍ଟ ଆତ୍ମଶକ୍ତି ପ୍ରୟୋଗ କରି ଆବେଗକୁ ସମ୍ବରଣ କଲେ ସରସ୍ୱତୀ ।

-"ନା'ରେ ମାଆ, ମୋର କ'ଣ ତିନିଟା ଆଖି କି- ଆଉ ଥରେ ଅପରେସନ୍ ହେବ ? ଦି'ଟାଯାକ ଆଖି । ଦି'ଥର ପରା ହୋଇ ସାରିଲାଣି ।"

ଅଦେଖା ଲୁହରେ ହସ ମିଶେଇ ଉତ୍ତର ଦେଲେ ସରସ୍ୱତୀ ।

ପଣତରେ ଆଖି ପୋଛି ଘର ଭିତରକୁ ଆସୁ ଆସୁ ସାମ୍‌ନାସାମ୍‌ନି ହୋଇ ଗଲେ ରାଜଶ୍ରୀ ସହିତ ।

-"କ'ଣ ହେଲା ବୋଉ ? ଆପଣ କାନ୍ଦୁଛନ୍ତି । ଏବେ ତ ଜେନି ସାଙ୍ଗେ କଥା ଗପୁଥିଲେ । କ'ଣ କହିଲା କି ଅଡୁଆ କରି କିଛି ?"

-"ନା... ନା... ସେ ଛୁଆଟେ । ସେ ଗୋଟେ ମୋତେ କ'ଣ କହିବ । ତା'ଛଡା ତା' କଥାରେ ମୁଁ କାନ୍ଦିବି କାହିଁକି ?" କୋହର ଘନ ବାଦଲଟା ହଠାତ୍ ହଟିଗଲା ତାଙ୍କ ସ୍ୱର ଉପରୁ । ରାଜଶ୍ରୀ ମୁହଁକୁ ସିଧାସଳଖ ଚାହିଁ ସେ ଅଭିଭାବକ ସୁଲଭ ଦୃଢତାରେ କହିଲେ- "ଗୋଟିଏ କଥା କହିବାକୁ ଅଛି ତତେ ... ତୁ ମୋ ପାଖରେ ଟିକେ ବସ୍ ।"

-"କି କଥା ବୋଉ, ମୋର ଆଜି ଆଉଟ୍‌ଡୋର ଡ୍ୟୁଟି ଅଛି ।"

-"ହଁ ହଁ, ତମ ଆଉଟ୍‌ଡୋର୍, ଇନ୍‌ଡୋର୍ ସବୁ ମୁଁ ଦେଖୁଛି । ଆଜି ସେ କଥା ମତେ କିଛି କହନା । ତୁ ବସ୍ ଏଇଠି । ମୋ କଥା ଶୁଣି ସାରିଲେ ଯିବୁ ।"

ଶାଶୂଙ୍କଠାରୁ ଏଭଳି ଟାଳି ନପାରିଲା ଭଳି ମଜଭୁତ୍ କଥା ଦଶ ବର୍ଷର ବିବାହିତ ଜୀବନରେ କେବେ ବି ଶୁଣି ନଥିଲେ ରାଜଶ୍ରୀ ।

ଅଗତ୍ୟା ବ୍ୟାଗ୍‌ଟିକୁ ଟେବୁଲ ଉପରେ ରଖି ସେ ବସିଲେ ସରସ୍ୱତୀଙ୍କ ସାମ୍‌ନାରେ ।

କିଛି ଗୌରଚନ୍ଦ୍ରିକା ନଦେଇ କଥା ଆରମ୍ଭ କଲେ ସରସ୍ୱତୀ ।

-"ଜେନି ଆଜି ସ୍କୁଲ ଗଲାବେଳେ ପଚାରିଲା, ମୋର ଆଉ ଆଖି ଅପରେସନ୍ ହେବନି ? ଯା'ର ମାନେ କ'ଣ ତୁ ମୋତେ ବୁଝେଇକରି ଯାଆ ।"

-"ମୋତେ କାହିଁକି ପଚାରୁଛନ୍ତି ବୋଉ । ମୁଁ ତ ସବୁ କାମ ଭିତରେ ବି ତା' ପଢା ଦେଖୁଚି । ତା' ଖାଇବା କଥା ବୁଝୁଚି । ଆପଣଙ୍କ ପୁଅଙ୍କୁ କହନ୍ତି- ସେ କେତେ ସମୟ ଦେଉଛନ୍ତି ଆମ ପାଇଁ । ଆପଣ ତ ନିଜେ ଦେଖିଲେ ।"

-"ହଁ ହଁ, ମୁଁ ତାକୁ ବି କହିବି, ତତେ ବି କହିବି । ସେ ପୁଅ ବୋଲି ତାକୁ ଡରିନି ମ । ଏତିକି ବକଟେ ଛୁଆ । ମତେ ପାଖରେ ପାଇବା ପାଇଁ କ'ଣ ଆଖିଟେ ଅପରେସନ୍ ହେଲେ ଯାଇ

ହେବ, ନହେଲେ ନାଇଁ ! ସେ ତମମାନଙ୍କ ପାଖେ ଅଳି କରି କହିପାରିବନି ତା' ମନ ଲୋଡିଲାବେଳେ ତାକୁ ସାଙ୍ଗରେ ନେଇ ମୋ ପାଖକୁ ଯିବାକୁ ?"

ରାଜଶ୍ରୀ ନୀରବ ରହିଲେ । ସରସ୍ୱତୀଙ୍କ କଥାର ପ୍ରତିବାଦ କରିବାକୁ ତାଙ୍କ ପାଖରେ ପ୍ରକୃତ ଭାଷା ନଥିଲା । ସ୍ପର୍ଦ୍ଧା ନଥିଲା ।

ରାଜଶ୍ରୀଙ୍କର ଭାବପୂର୍ଣ୍ଣ ନଇଁଲା ମୁହଁକୁ ଦେଖି ନଇଁଗଲେ ସରସ୍ୱତୀ । ଟାଣି କରି କହିବାକୁ ଜମେଇଥିବା କଥାର ଟାଣ ହଜିଗଲା କୁଆଡେ ନିମିଷକ ମଧ୍ୟରେ ।

-"ଆରେ ମାଆ, ତମେ ସବୁ ଏତେ ପାଠଶାଠ ପଢିଚ, ଚାକିରି କରିଚ, ବାହାର ଦୁନିଆକୁ ଦେଖୁଚ, ଏଇ ଛୋଟ ପିଲାଟାର ଛୋଟ ମନକୁ ବୁଝିପାରୁନ ? ମୋର କେତେ ବୁଦ୍ଧି ଯେ ମୁଁ ତମମାନଙ୍କୁ ବୁଝେଇବି... ଚଉଦ ବର୍ଷ ଦିନୁ ବୋହୂ ହୋଇ ଆସିଥିଲି ।"

ଲେଉଟି ପଡିଲେ ପଛ ଜୀବନକୁ ସରସ୍ୱତୀ । ସ୍ମୃତିର ସରୁ ଲମ୍ବା ଖିଅଟିଏ ମେଲେଇ ଦେଲେ ବୋହୂ ରାଜଶ୍ରୀର ଆଖି ଆଗରେ-

"ଚଉଦ ବର୍ଷର ଝିଅ । ଭାବିଲୁ କେମିତି ହୋଇଥିବ ମନ । ସାଥୀ ସରାଗ ଭାଙ୍ଗି ନଥିଲା । କାନ୍ଥ, କବାଟ ଆଉ ନଥିଲା । ତଥାପି ମନ କଥା ମନରେ ମାରି ମୁହଁ ଓହଳେଇ ରହିବା ଛଡା ଗତି ନଥିଲା । ପୁଆଣି ହୋଇ ଯିବା ପରେ ଥରେ ଖରାବେଳେ ଅଳତା ଗିନା ଧରି ପାଦରେ ଲଗେଇ ବସିଲାବେଳେ ଶାଶୂ ପାଖକୁ ଆସି ଚୁପି ଚୁପି କହିଥିଲେ- ଏଇ ତୋ'ର ପିଉସୀଶାଶୂଙ୍କୁ ଦେଖୁଚୁଟି । ମୁଁ ବୁଝି ନପାରି ବୋକାଙ୍କ ପରି ବଲବଲ କରି ତାଙ୍କ ମୁହଁକୁ ଚାହିଁଥିଲି । 'ଆଲୋ ଚାହିଁଚୁ କ'ଣ ସେମିତି- ବାଳୁତ ବିଧବା ସ୍ତ୍ରୀ ସିଏ । ତାଙ୍କ ନିଃଶ୍ୱାସ ନାଗ ସାପର ନିଃଶ୍ୱାସ । ତାଙ୍କୁ ନ ପଚାରି କିଛି କରିବୁନି ଟି । ମୋତେ ଦେଖୁନୁ... ମୁଁ ପରା ଆସି ଅଧାବୁଢ଼ୀ ହେଲିଣି, ବିରି ଟିକେ ବତୁରେଇଲେ ତାଙ୍କୁ ଦେଖଉଚି । ଚୁଡି ମୁଠେ କିଣିଲେ ତାଙ୍କୁ ପଚାରୁଚି । ଯେତେ ଛୋଟ କଥାଟେ ହେଲେ ବି ମନକୁ ମନ କରିଗଲେ ତାଙ୍କ ମୁଣ୍ଡକୁ ରାଗ ଉଠିଯିବ । ଯାହା ପାଟିକୁ ଆସିବ ବହେ ଶୋଧି ଦେଇଯିବେ । ତୁ ଏବେ ପିଲାଲୋକ, ଜାଣିବୁନି ତାଙ୍କ ରାଗ, ତାଙ୍କ ଖେଦ । ହେଲେ ମା' କଥାଟି ମନେ ରଖିଥିବୁ । କେବେ ତାଙ୍କୁ ନ ପଚାରି କିଛି କରିବୁନି ।"

ତୋ ଶ୍ୱଶୁର ଯେତେବେଳେ ନୂଆକରି ଚାକିରି ଜାଗାକୁ ମୋତେ ସାଙ୍ଗରେ ନେଇ ଆସିବାକୁ ଚାହିଁଲେ, ସେତେବେଳେ ସେ ବି ବାହାରିଲେ ଆମ ସାଙ୍ଗେ । ଦି' ପଟର ମନ ରଖିବା ପାଇଁ ଶାଶୁ କହିଥିଲେ- "ହଉ, ବଡମାନଙ୍କ ସେବା କରିବା ଭାଗ୍ୟ କ'ଣ ସମସ୍ତଙ୍କୁ ଜୁଟେ ? ତୁ କଲେ ତା' ଫଳ ତୋ' ପିଲାମାନେ ପାଇବେ ।"

"ମୁହଁ ଉପରେ ଏତିକି କହି ମୋ କାନ୍ଧରେ ତାଙ୍କ ଭାର ଲଦି ଦେଇ ସେ ନିଶ୍ଚିନ୍ତ ହୋଇଗଲେ ସେଇ ଦିନଠୁ । ସଂସାର ବସେଇବା ଦିନଠୁ ସେଦିନ ଯାଏଁ ସେ ନୂଆ ଶାଢ଼ି ଖଣ୍ଡେ ଦେଖେଇ କରି ନିଜ ଗିରସ୍ତ ହାତରୁ ନେଇ ନଥିଲେ ନିଜ ପାଇଁ । ସବୁ ଚାଲିଥିଲା ଲୁଚାଛପା । ତା'ପରେ ମୋ କପାଳରେ ଜୁଟିଲେ ସିଏ । ତାଙ୍କ ପାଇଁ ଚନ୍ଦନ ଘୋରା ଆଗ– ମୋ ସିନ୍ଦୂର ପଛ । ତୋ' ଶ୍ୱଶୁରଙ୍କଠୁ ଶୁଣେ ଇତିହାସର କଥା । ଶରତଚନ୍ଦ୍ରଙ୍କ ଉପନ୍ୟାସରେ ପଢ଼ିଚି ବି । ରାଜା ରାମମୋହନ, ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର କେତେ ଲଢ଼ିଥିଲେ ବିଧବାମାନଙ୍କ ପାଇଁ । ତାଙ୍କ ଲଢ଼ିବା କିଛି କାମ ଦେଇନି, ଏଇ ତୋର ବୁଢ଼ୀ ଗୋସେଁଇଶାଶୂ ପାଇଁ– ଆହୁରି ଏମିତି କେତେ ବାଳୁତ ବିଧବା ସ୍ତ୍ରୀଙ୍କ ପାଇଁ ।"

– "ମୋର ଭରା ସଂସାର ଭିତରେ ତାଙ୍କ ମନ ଜଗିବା ପାଇଁ ମୋ ମନର ସବୁ ଅଭିମାନକୁ ଦବେଇ ମୁଁ ଯେତେ ଲଢ଼େଇ କଲି ସେକଥା କିଏ ବୁଝିପାରିବ । ଭାବିଥିଲି, ବୁଢ଼ୀ ଲୋକ, କେତେଟା ଦିନ ବଂଚିବେ, ତାଙ୍କ ଅନ୍ତେ ମୋ ମନ ମଉଜ ମେଣ୍ଟେଇବିନି କି । ସେଇମିତି ଭାବୁ ଭାବୁ ଦେଖେ ତ କେତେ ବର୍ଷ ବିତିଗଲା । ସେ ଆଖି ବୁଜିଲା ବେଳକୁ ମୋତେ ହେଲାଣି ଛଅଷଠି ବର୍ଷ । ତମେମାନେ ସମସ୍ତେ ଯେଝା ଜାଗାରେ ଅଛ । ଝିଅ ଜୋଇଁ ସମସ୍ତେ ଆସନ୍ତି, ଯାଆନ୍ତି । ଡାକନ୍ତି– ବୋଉ ଆସେ । ବୁଲିକରି ଟିକିଏ ମନ ଖେଳେଇ ଯିବୁ । ତାଙ୍କୁ ଛାଡ଼ି କୁଆଡ଼େ ଯାଇପାରୁ ନଥିଲି । ବାଁ ଆଖିଟା ପରଳ ମାଡ଼ିଥିଲା, ତୋ ବାହାଘର ଆଗରୁ । ପୁରୁ କେତେ କହିଥିଲା ଅପରେସନ୍ କରିଦେବାକୁ ସାଙ୍ଗେ ସାଙ୍ଗେ । ତାଙ୍କୁ କେତେ ବୁଝେଇ ସୁଝେଇ କହିଲି । ତୋ' ଶ୍ୱଶୁର ବି କହିଲେ ଆଖିଟା ଏମିତି ହେଲାଣି । ଯାଉ ସେ । ଆମେ ସମସ୍ତେ ତ ଅଛୁ । ଚଳେଇ ଦେବୁନି ? ସେଇ ଏକା– ନା, ନା । ସେ ଯିବ ଯଦି ମୁଁ ମଲା ପରେ ଯିବ । ତମେମାନେ ସମସ୍ତେ ମୋର ନୀତି ବି ଟାଳିବ । ମୋର ତପସ୍ୟା ଶୁଖଆ ପୋଡ଼ାରେ ଯିବ ।

"ତାଙ୍କର ଏଇ ଅବୁଝାପଣ। ଅଝଟ କଥାକୁ ମାନି ରହିଥିଲି । ଆଖି ଭଳି ଜିନିଷକୁ ଅବହେଳା କରିଥିଲି । ଆଉ କାହାରିଠି ବିଶ୍ୱାସ ନଥିଲା ତାଙ୍କର ।"

"ଉଠିଲେ ବସିଲେ, ଡୋଳା ମୁଦିଲେ, ମେଲେଇଲେ ଡାକ ଛାଡ଼ନ୍ତି ସର... ସର... । ପଛକୁ ତାଙ୍କୁ ବି ଭଲ ଦିଶୁ ନଥିଲା । ସାମ୍ନାରେ ଗୋଡ଼ିଟେ ପଡ଼ିଥିଲେ ଡାକନ୍ତି ମୋତେ । ସେଇ ଗୋଟିଏ ଆଖିରେ ଚାହିଁ ମୁଁ ଯଦି କହେ ସେଇଟା ଗୋଡ଼ି ତ ବୁଝିବେ, ନହେଲେ ନାଇଁ । ଘରଟା ଭିତରେ ଏତେ ଲୋକ । ଡାକିଲା ବେଳକୁ ଆଉ ଜଣେ କିଏ ଯାଇ ଠିଆ ହୋଇପଡ଼ିଲେ ସେ ଚିହିଙ୍କି ଉଠନ୍ତି ।"

ଘଡ଼ିଏ ଦମ୍ ନେଇ ସେ ପୁଣି ଥରେ କହିଲେ–

"ଶାଶୂ କହିଥିଲେ ତୁ ସେବା କଲେ ତାଙ୍କ ଆଶୀର୍ବାଦ ତୋ' ପିଲାମାନଙ୍କ ଉପରେ ପଡ଼ିବ । ସେଇ କଥାଟିକୁ ବେଦର ଗାର ପରି ମାନିଥିଲି । ମୋ ନିଜ କଥା ମୁଁ ଭୁଲି ଯାଇଥିଲି ।"

"ହେଲେ ଆମ ବେଳ କଥା ଅଲଗା । ଏବର କଥା ଅଲଗା । କେନି କାହିଁକି ଭୁଲିବ ତା' ନିଜ ସୁଖ, ତା' ନିଜ ପାଉଣା ?"

ରାଜଶ୍ରୀ ଏତେବେଳ ଯାଏଁ ଚୁପ୍‌ଚାପ୍ ଶୁଣି ଯାଉଥିଲେ ସରସ୍ୱତୀଙ୍କ କଥା । ତାଙ୍କର ଖିଆଲ ନଥିଲା ଯେ ଆବେଗ କୂଳ ଲଂଘି ଛୁଟି ଚାଲିଥିଲା ଦି'ଟା ସମାନ୍ତରାଳ ଧାରରେ । ସରସ୍ୱତୀ ଉଠି ଆସିଲେ ତାଙ୍କ ପାଖକୁ । ପଣତରେ ତାଙ୍କ ମୁହଁ ପୋଛି ଦେଇ କହିଲେ–"ଯାଆ ମାଆ, ମୁହଁ ଧୋଇପକା । ତୋର ପରା ଆଉଟ୍‌ଡୋର ଅଛି ବୋଲି କହୁଥିଲୁ । ବେଗି ଆସିଲେ ପୁଣି ମୋ ଜିନିଷପତ୍ର ସଜାଡ଼ିବୁ । ପୁରୁ କହୁଥିଲା କାଲି ତା'ର ଛୁଟି ଅଛି । ମୋତେ ନେଇ ଛାଡ଼ିଆସିବ ।"



# ସାନ ସାଆନ୍ତେ

## ବିଜୟ ନାୟକ

ଭୁବନେଶ୍ୱରରୁ ଭଦରଖ, ସେଠୁ ପୁଣି ଖାଙ୍କିହାଟ ଦେଇ କଥା ପହଞ୍ଚିଲା କୁବୋରୀ ଗାଁରେ । ହାଟବାହୁଡ଼ା ଗାଁମିଣିପେ ଯେଝା ଯେଝା ଭାରିଯାମାନଙ୍କ କାନରେ କହିଥିଲେ କଥାଟା, ଅଧ ରାତିରେ । ହେଲେ, ମାଇପିମାନଙ୍କ ପେଟରେ କ'ଣ କଥା ପଚେ ? କଥାଟା ପହିଲେ ନଣ୍ଡାଭାରିଯା ପାଖରୁ କୁଆଡ଼େ ପ୍ରଘଟ ହୋଇଥିଲା । ସେ କିଛିକଥା ପେଟରେ ରଖିପାରୁନି । ସକାଳୁ ସକାଳୁ ଯେମିତି ତା' ଜିଭ ଖଲବଲ ହେଲା । ଚମ୍ପାବୋଉ ଆଗରେ ସେ କଥାଟା ଗୁଣୁଗୁଣୁ କରି କହିଲା, ରାଣନିୟମ ପକେଇ । ଆଉ ଚମ୍ପାବୋଉ ପାଟିଖଣ୍ଡକ ତ ଆକାଶବାଣୀ, କଟକରୁ ବଳି ! ତହୁଁ କଥାଟା କାନକୁ କାନ ଚରି ସାରା ଗାଁକୁ ବ୍ୟାପିଗଲା । ତା'ପରେ ଗାଁ ଦାଣ୍ଡ ଖାଲି ଉଠିଲା ପଡ଼ିଲା ।

ବୁଢ଼ିଆବୋଉ କାନରେ କଥା ପଡ଼ିଲାରୁ ତା' ମଗଜରେ ନିଆଁ ଲାଗିଗଲା ଯେମିତି । ସେ ତ ମାରିବ କି ମରିବ ହେଲା । ଅଣ୍ଟାରେ ଲୁଗାଗୁଡ଼େଇ ବାହାରିଗଲା ଦାଣ୍ଡକୁ । କହିଲା, ''କୋ ପୁଅ ଜିଅଲଶ ଯିବା ଦେଖିଚ ନା ଲୋ, ରାଣ୍ଡଆଣ୍ଠୁକୁଡ଼ିଏ ? ବୁଢ଼ିଆପରି ସୁଧାର ପିଲା ନାଁରେ ଅକଥା କହିବାକୁ ତମ ଜିଭଲେଉଟିଲା କେମିତି ? ତମକୁ ଧର୍ମ ସହିବ ନା ଲୋ ? ତମ ଜିଭ ଛିଡ଼ି ପଡ଼ିବ, ଏମିତି ମିଛକଥା କହୁଚ । ମଲାବେଳକୁ ତମ ପାଟିରେ ପୋକ ପଡ଼ିବ ଲୋ, ରାଣ୍ଡେ ।'' ବୁଢ଼ିଆବୋୁ ଗାଳି ଦେଇଦେଇ ଦି' ତିନିଥର ଲଟରପଟର ହେଲା ଗାଁ ଦାଣ୍ଡରେ ! ହେଲେ ତମାମ ଗାଆଁର ମାଇପେ ମିଣିପେ କେହି ଉଁ କି ଚୁଁ ହେଲେ ନାହିଁ । ବୁଢ଼ିଆବୋଉ ତୁଣ୍ଡତ ମେଣ୍ଢାମୁଣ୍ଡ ! କାହାର ଗରଜ ପଡ଼ିଚି ଯେ ନିଆଁକୁ ଡାକି ଅର୍ଟାରେ ଖୋସିବ ?

ବୁଢ଼ିଆବୋଉ ଦେଖିଲା ଗାଁ ମାଇପେ ଡରେ ଘରେ ପଶିଲେଣି; ମିଣିପେ ବି ଚୁପ୍ । ଆଗ ବଳାବୟସ ଥିଲେ ସେ ଦିନେଓଳିଏ ଲଗେଇପତେଇ ଗାଳି ଦେଇଥା'ନ୍ତା । ସମସ୍ତଙ୍କ ବଉଁଶର ଗୋହି ଖୋଳିଥା'ନ୍ତା । ହେଲେ, ଏବେ ବେଶୀ ବକ୍‌ବକ୍ ହେଲେ, ତା' ତଣ୍ଟି ଶୁଖିଯାଉଥିଲା । ସେଇଠୁ ସେ ତୁନିହେଇ ଗରକୁ ଫେରି ଆସିଲା । ଘପରକୁ ଯେତେ ବୁହଁ ଦେଖେଇହେଲେ ବି ତା' ଛାତିରେ ଛନକା ପଶୁଥିଲା । ସତରେ କ'ଣ ବୁଢ଼ିଆକୁ ଜିଅଲ ହେଇଚି ? କ'ଣ ପାଇଁ ଜିଅଲ ହବ ତାକୁ ? ସେ ତ ଚୋରିନାରୀ କରିବା ପିଲାନୁହେଁ । ଖାଲିଖାଲିଟାରେ ସେ ଜିଅଲ ଯିବ କାହିଁକି ? ତା'ଛଡ଼ା ସାନସାଆନ୍ତେ ଥାଉଥାଉ କୋଉ ପୁଅର ବହପ ହବ, ବୁଢ଼ିଆ ହାତରେ କଡ଼ି ପିନ୍ଧେଇବା ପାଇଁ ?

ସାନସାଆନ୍ତେ ତ ଏ ଯୁଗର ଗଜା । ରଜା ନୁହନ୍ତି ତ ଆଉ କ'ଣ ? ବାପେ ରଜା ଥିଲେ, ପୁଅ ବି ରଜା । ବାପେ ବଡ଼ସାଆନ୍ତେ ଥିଲେ ବଡ଼ ଜମିଦାର । ପଟ୍ଟନାୟକ ବୋଲି ଖଣ୍ଡମଣ୍ଡଳରେ ନାଁଡାକ ଥିଲା । ତାଙ୍କ ପିସାବରେ ଦିହୁଡ଼ି ଜଳୁଥିଲା ବୋଲି କଥାଅଛି । ସେ ଥିଲେ ଦାତାପଣରେ ହରିଶ୍ଚନ୍ଦ୍ର, ଦଣ୍ଡିବାରେ ଇନ୍ଦ୍ର । ମଝିରେ ଉଆକା ଉଠିଲା, ସେ ଆଉ ଜମିଦାର ନାହାନ୍ତି, ଦେଶ କ'ଣ ସ୍ୱାଧୀନ ହୋଇଗଲା । ଲୋକେ ନିଜେ ନିଜର ଶାସକ ହେଲେ । ଏ କି କଥାଲୋ ମା' ! ବଡ଼ସାଆନ୍ତେ କିନ୍ତୁ ମଲା ପରିଯନ୍ତ ଜମିଦାର ପରି ଖାତିର ପାଉଥିଲେ, ରଜା ପରି ଚଳୁଥିଲେ ।

ତାଙ୍କ ପୁଅ ସାନସାଆନ୍ତେ ଆଉ ରଜା ନ ହୁଅନ୍ତେ କି ? ଯା' ବାପ ଚଢ଼େ ଗୋଡ଼ା, ତା' ପୁଅ ଥୋଡ଼ା ଥୋଡ଼ା । ରଜା ନ କହି ତାଙ୍କୁ ମନ୍ତିରୀ କହୁଚନ୍ତି । କୁହନ୍ତୁ, ଏକଥା- ଆରେ ଚଷା, ତମେ ଆଡ଼େ ଯାହା ହାଣ୍ଡିଆଟିକା, ଆମ ଆଡ଼େ କଂସା । ସତରେ ରଜାଠାରୁ କୋଉଗୁଣରେ କମ୍ ନୁହନ୍ତି ତ ସାନସାଆନ୍ତେ !

ବଡ଼ସାଆନ୍ତଙ୍କ ପରି ଲମ୍ବା ଚଉଡ଼ା ପାଞ୍ଚହାତିଆ ମର୍ଦ୍ଦ ସାନସାଆନ୍ତେ । ବାପଙ୍କ ପରି ଖଣ୍ଡାଧାରନାକ, ଲମ୍ବା ହାତ, ଟାଇଁଟାଇଁ କଥା, ବେଖାତିର ଚାଲି... । ଏୟା କ'ଣନା ବଡ଼ସାଆନ୍ତେ ପାଟମଠା ପିନ୍ଧୁଥିଲେ, ସାନସାଆନ୍ତେ ଧୋତି ପଞ୍ଜାବି ପିନ୍ଧୁଚନ୍ତି; ବଡ଼ ସାଆନ୍ତଙ୍କ ମୁଣ୍ଡରେ ଶିରୀପା ଶୋଭାପାଉଥିଲା, ସାନାସାଆନ୍ତଙ୍କ ମୁଣ୍ଡକୁ ସଫା ଖଦଡ଼ ଟୋପି ବେଶ୍ ମାନୁଚି । ବଡ଼ସାଆନ୍ତେ ମରହଟ୍ଟୀ ପାଣ୍ଡୋଇ ପିନ୍ଧଥିଲେ, ସାନସାଆନ୍ତଙ୍କ ପାଦରେ କିନ୍ତୁ ସାଧା ଚପଲ ହଳେ । ବଡ଼ସାଆନ୍ତେ ଘୋଡ଼ା ଚଢୁଥିଲେ, ସାନସାଆନ୍ତେ ଗାଡ଼ି ଚଢୁଛନ୍ତି । ପ୍ରଜାମାନେ ବଡ଼ସାଆନ୍ତଙ୍କର ଜୟଜୟକାର କରୁଥିଲେ, ସାନସାଆନ୍ତଙ୍କର ଜିନ୍ଦାବାଦରେ ଏବେ ମେଦିନୀ କମ୍ପୁଚି । ହାକିମହୁକୁମା, ଦାରୋଗାଦିପୋଟୀ ବଡ଼ସାଆନ୍ତଙ୍କ କଥାକୁ ଆଜ୍ଞା ମଣୁଥିଲେ ପରା, ସେମିତି ବି.ଡ଼ି.ଓ., ତହସିଲଦାର, ଏସ୍.ପି., କଲେକ୍ଟର ସାନସାଆନ୍ତଙ୍କ କଥାକୁ ହାତପାତିଥା'ନ୍ତି । ଏମିତିକା ସାଆନ୍ତଙ୍କର ଆଜ୍ଞାବହ ବୁଦ୍ଧିଆ, ତାକୁ କିଏ ହାଜତକୁ ପଠେଇବ !

ଛି... ଛି..., ଏସବୁ ଗାଁ ମାଇପିଙ୍କ କରାମତି । କୁଆଟେ ଉଡ଼ିଗଲେ ତ ତାଙ୍କୁ ଛୁଆଟେ ଉଡ଼ିଗଲା ପରି ଦିଶେ । ବୁଦ୍ଧିଆର ବଢ଼ତି ଦେଖିପାରୁ ନାହାନ୍ତି । ଅସହିଆଣୀଗୁଡ଼ାକ । ତମ ପିଲାଗୁଡ଼ା ଜମିବାଡ଼ିରେ ଖଟିଲେ, ସେମିତି ମଳିମୁଣ୍ଡିଆ ହେଇ ରହିଲେ; ହେଲେ, ବୁଦ୍ଧିଆର ଭାଗ୍ୟ, ସେ ନାପିତରୁ ନେତା ହେଲା । ଏସବୁ ସେହି ସାନସାଆନ୍ତଙ୍କ କରୁଣାରୁ । ତମ ଛାତିରେ କାହିଁକି ଛୁରୀ ଚାଲିଯାଉଚି ? ମଉରାଖାଇକି ମରୁନ ଲୋ । ଏମିତି ଗୁଣୁଗୁଣୁ ହଉଥିଲା ସିନା ବୁଦ୍ଧିଆବୋଉ, ହେଲେ ତା' ମା' ମନ ଥ' ହଉନଥିଲା ।

ଦୀନାବାରିକ ମନ ବି ଥୟ ହଉ ନଥିଲା । ବୁଢ଼ୀକାଳେ କନ୍ଦାକଟା କରିବ, ସେଥିଲାଗି ସେ ଚୁପ୍ ଥିଲା । ହେଲେ ବୁଦ୍ଧିଆ ବୋଉ ତାକୁ ଛିଗୁଲେଇଲା, 'ତମେ ବାପ ନା କଂସେଇ ମ ! ତମ କାନରେ ସବୁକଥା ବାଜୁଥିବ, କିନ୍ତୁ ତମେ ଯେମିତି କିଛି ଶୁଣିପାରୁ ନଥିବ । ଇମିତି ଦାରୁଭୂତ ମୁରାରି କୋଉଠି ସଂସାରରେ ଥବବେ ନା ? କଥା କ'ଣ, ଯାଇ ବୁଝି ଆସୁନ ଭୁବନେଶ୍ୱରରୁ ? ଆଗଯୁଗ ହେଇଚିନା, ତମକୁ ଯିବାଆସିବା ବାଧିବ । ଗମ୍ଭୁ ସା'କୁ କହିଲେ, ଭୋ'ରୁ ରିକ୍ସା ନେଇ ସେ ଖାଙ୍କିହାଟରେ ଛାଡ଼ିଦେଇଆସିବ ତମକୁ । ସେଠୁ ତ ଗୋଟେ ବସ୍‌ରେ ବସି ତମେ ଯାଇ ପହଞ୍ଚିବ ବୁଦ୍ଧିଆ ପାଖରେ । ସାଆନ୍ତଘର ଖାନ୍‌ଦାନୀ ନାପିତ ତମେ, ଚାରିଆଡ଼ୁ ଶିଆଣ । ତମର ବଳ ହଟିଲେ ବି ବୁଦ୍ଧି କ'ଣ ହଟିଚି ? ଯାଉନା ।''

ଦୀନାବାରିକର ଆଉ ଚାରା ନଥିଲା । ହଁ ନମାରିଲା ପର୍ଯ୍ୟନ୍ତ ତାକୁ କ'ଣ ବୁଦ୍ଧିଆବୋଉ ଛାଡ଼ିବ ?

''ହଉହେଲା, ମୁଁ କାଲି ସକାଳକୁ ବାହାରିବି ହ୍ୟାପ୍, ତୁ ଆଉ ପାଟି ଉଛାଳ କର ନା'', ଦୀନାବାରିକ ପାକୁଆପାଟିରେ ଫିସ୍‌ଫାସ୍ କରି କହିଲା । କିନ୍ତୁ ବୁଦ୍ଧିଆବୋଉ କଥାରୁ ତା' ଦିହକୁ ବି ଶଙ୍କା ଡେଇଁଲା । ନିଆଁ ନଥିଲେ ଧୂଆଁ ଆସିବ କାହୁଁ ? ତା ଭିତରଟା ଗେଳେଇଘାଣ୍ଟି ହେଲା । ଦିନଟା କେମିତି କେମିତି ଭାରି ଉଦାସିଆ ଲାଗିଲା ।

ଦୀନାବାରିକ କିନ୍ତୁ ଭାରି ଦମ୍ଭିଲା ମଣିଷ । ବଡସାଆନ୍ତଙ୍କ ପାଖରେ ପଚାଶବର୍ଷ ଖଟିଚି । ତାକୁ ଏ ଅଞ୍ଚଳରେ ନ ଚିହ୍ନେ କିଏ ? ସାଆନ୍ତଙ୍କ ବୁଦ୍ଧିବଣା ହେଲେ ସେ ପରୋହିତ, ଗୁମାସ୍ତା କାହାରିକୁ ନ ପଚାରି, ତା'ପରାମର୍ଶ ଲୋଡୁଥିଲେ । ସାଆନ୍ତଙ୍କୁ କହି ବହୁଲୋକଙ୍କୁ ସେ ମାଫିଦିଆ କରେଇଥିଲା । ଓକିଲ, ମୁକ୍ତାରଙ୍କ ଆଗରେ ବି ଜବାବ ଦଉଥିଲା । ସାଆନ୍ତଙ୍କ ଛଡା ଆଉ କାହାରିକୁ ଖାତିର୍ ନଥିଲା ତା'ର । ଏବେ ବଦଳି ଯାଇଥିବା ଯୁଗକୁ ସେ ହୁଏତ ଠିକ୍ ବୁଝିପାରୁ ନଥିଲା । ପୁଣି ପୁଅ ଜେଲ୍ ଯିବା କଥାଶୁଣି ଦବିଯାଉଥିଲା ତା'ମନ ।

ବଡସାଆନ୍ତଙ୍କ ଅନ୍ତେ ସାନସାଆନ୍ତଙ୍କ ଉପରେ ଦୀନାବାରିକର ଥିଲା ଅତୁଟ ଆସ୍ଥା । ସାନସାଆନ୍ତଙ୍କୁ କହିବୋଲି ସେ ବୁଦ୍ଧିଆଟାକୁ ଏକପ୍ରକାର କୂଳରେ ଲଗେଇ ଥିଲା । ନହେଲେ ସେ ନିର୍ବୁଦ୍ଧିଆଟାକୁ ଏକପ୍ରକାର କୂଳରେ ଲଗାଇ ଥିଲା । ନଦେଲେ ସେ ନିର୍ବୁଦ୍ଧିଆଟା ଅଥଳ ପାଣିରେ ଭାସୁଥା'ନ୍ତା । ପୈତୃକ ବୃତ୍ତି ଶିଖିଲା ନାହିଁ, ପାଠପଢିବା ନାଁରେ । ହେଲେ ଭଲ ଦିଅକ୍ଷର ପାଠ ବା କୋଉଠି ପଢିଲା ? ମେଟ୍ରିକ୍‌ରେ ଫେଲ୍ ହେଇ ହେଇ ପାଞ୍ଚଥରକେ ପାଶ୍ କଲା । ସେତେବେଳକୁ ପାଲିଆରେ କଲେଜ ଖୋଲିଯାଇଥିଲା ବୋଲି ସିନା ସେ କଲେଜ ଦରଜା ମାଡିଲା ନହେଲେ କଲେଜ କିଏ ସିଏ କିଏ ? ଭଦରଖରେ କୋଉ ସିଟ୍ ମିଳିଥା'ନ୍ତା ତାକୁ ?

କଲେଜରେ ନିର୍ବୁଦ୍ଧିଆ ବୁଦ୍ଧିଆ ସତରେ ବୁଦ୍ଧିଆ ପାଲଟିଗଲା । ପାଠଶାଠ ସିନା ପଢିଲା ନାହିଁ, ହେଲେ ନେତା ବନିଗଲା । କ'ଣ ଗୋଟେ ପଦପଦବୀ ପାଇଲା । ଭାଷଣ ଦବା ଜାଣିଲା । ତା'ସାଙ୍ଗକୁ ଚାନ୍ଦାଭେଦା ଆଦାୟ କରିବା, ମେଳିବାନ୍ଧିବା ଶିଖିଲା । ପଇସା ଉଡେଇଲା ପାଣି ପରି । କିନ୍ତୁ ଅସଲ କଥାକୁ ମନଦେଲାନି ଜମ୍ମା । ଦି'ବର୍ଷ ପରେ ଆଉ କଲେଜ ଗଲାନାହିଁ, ପାଶ୍ ବି କଲାନାହିଁ । ଦୀନାବାରିକ ଦୁଃଖରେ ଦୀର୍ଘଶ୍ୱାସ ଛାଡି କହିଲା, "ବାପରେ ଏକୂଳ ହେଲୁନି କି ସେକୂଳ ହେଲୁନି । କରିବୁ କ'ଣ ? ପେଟ ଚାଖଣ୍ଡକ ପାଇଁ କାହାପାଖରେ ହାତ ପତେଇବୁ ?" ବୁଦ୍ଧିଆର କିନ୍ତୁ ସେସବୁ ଚିନ୍ତା ନଥିଲା- ବାପପଇସାରେ ହାଟବାଟ, ନା ବହିଯାଉଚି ଗେହ୍ଲନାଟ । ଦୀନାବାରିକ ବୁଝିଲା, ବୁଦ୍ଧିଆର ଯୋଉ ଅବାଟରେ ଯିବା ଆରମ୍ଭ ହେଇଚି, ତା'ର ଶେଷ ନାହିଁ । କ'ଣ କରିବ, ଭାବିଭାବି ସେ ସାନସାଆନ୍ତଙ୍କ ପାଖରେ ପହଞ୍ଚିଲା । ଗୁହାରିକଲା, ସାଆନ୍ତେ, ମୋ' ବୁଦ୍ଧିଆଟାକୁ କୋଉଠି ହେଲେ ଲଗେଇଦିଅ । ବରଂ ପିଅନ ଚପ୍ରାସିଟେ ହଉ । ନହେଷଲ ସେ ଭବିଷ୍ୟତରେ ପେଟପାଳିବ କେମିତି ?

ସାନସାଆନ୍ତଙ୍କୁ ବୁଦ୍ଧିଆ ବିଷୟରେ ଏତେକଥା ମାଲୁମ୍ ବୋଲି ଦୀନାବାରିକକୁ ଜଣା ନଥିଲା । ସାଆନ୍ତେ କହିଲେ, "ଦୀନବନ୍ଧୁ, ବୁଦ୍ଧିରାମର ପ୍ରତିଭା ଅଛି । ସେ କ'ଣ ଚପ୍ରାସି ହବ ? ତା' ଦାୟିତ୍ୱ ମୋ'ର । ତା'ଚିନ୍ତା ତମେ ମନରୁ ପୋଛିଦିଅ ।" ସାନସାଆନ୍ତଙ୍କଠାରୁ ଅଭୟବାଣୀ ଶୁଣିଲାପରେ ଦୀନାବାରିକ ଉତ୍‌ଫୁଲ୍ଲିତ ହେଲା । ବଡସାଆନ୍ତଙ୍କ ପରି ସାନସାଆନ୍ତଙ୍କ କଥା ବେଦରଗାର ।

ସେହିଦିନରୁ ବୁଦ୍ଧିଆ ସାନସାଆନ୍ତଙ୍କ ପାଖରେ ଛାଇପରି ଲାଗିରହିଲା । ଦି' ଦି'ଟା ଇଲେକ୍ସନର ସବୁଦାୟିତ୍ୱ ବୁଦ୍ଧିଆ ଉପରେ ଲଦି ଦେଇଥିଲେ ସାଆନ୍ତେ । କୋଉ ଗାଁରେ କୋଉଦିନ ଭୋଜିଭାତ ହବ, କୋଉ କ୍ଲବଟୋକାଙ୍କୁ ବଲ୍‌ବ୍ୟାଟ୍ ଦିଆଯିବ, କୋଉ ଗାଁ ରାସ୍ତାରେ ଆଗତୁରା ମୋରମ ପଡିବ, କୋଉ ମାମଲାତକାରକୁ ହାତଗୁଞ୍ଜା ଦବାକୁ ହବ- ସବୁ ବୁଝୁଥିଲା ବୁଦ୍ଧିଆ । ଗାଁ ଗାଁ ବୁଲି ସାଆନ୍ତଙ୍କ ପାଇଁ ଭୋଟ୍ ପ୍ରଚାର କରିବା, ସଭା ସମିତିକୁ ଲୋକ ବୋହିବା, ପୋଷ୍ଟର ଲଗେଇବା, ପୁଣି ଦରକାରବେଳେ ଠେଙ୍ଗା ଉଠେଇବା- କୋଉ କାମ ନ କରିଛି ଟୋକାଟା !

ସ୍ଲୋଗାନ୍ ଦେଇଦେଇ ତ ତଣ୍ଟି ଫଟେଇଥିଲା । ଆକ୍ସିଡେଣ୍ଟରେ ହାତ ଭାଙ୍ଗିଥିଲା ତା'ର । ମୁଣ୍ଡଫାଟିଥିଲା ପୁଣି ଭୋଅଟ୍ ଦିନ । ସାଆନ୍ତେ ସେଥର ଏମ୍.ଏଲ୍.ଏ. ହେଲେ, ହେଲେ ବି ମନ୍ତ୍ରୀ ।

ମନ୍ତ୍ରୀହେଲା ପରେ ବି ସାଆନ୍ତେ କଥା ହୁଡିଲେ ନାହିଁ । ଭୁବନେଶ୍ୱରରେ ବଡ ଦୋକାନଘରଟେ କରେଇଦେଲେ ବୁଦ୍ଧିଆ ନାଁରେ । ବୁଦ୍ଧିଆ ସେଠି ଗୋଟେ ବଡ ସେଲୁନ୍ ଖୋଲିଲା । ବନ୍ଧୁବାନ୍ଧବ, ସାଇପଡିଶାର ଦଶଜଣ ପିଲାଙ୍କୁ ଲଗେଇଲା କାମରେ । ନିଜେ ଖାଲି ମାଲିକ ହେଇ ବସିଲା । ପରେପରେ ଦି'ଟାଗାଡି କିଣି ଲଗେଇଲା ଭଡାରେ । ବେଶ୍ ଦି'ପଇସା ରୋଜଗାର କଲା । ତା'ର ରୋଜଗାର ଯେମିତି, ଖର୍ଚ୍ଚ ବି ସେମିତି । ସାଆନ୍ତଙ୍କ ତରଫରୁ ସେ ତ ଗରିବ ଗୁରୁବାଙ୍କୁ ଖାଲି ଟଙ୍କା ବାଣ୍ଟିଚାଲିଲା । ସାଆନ୍ତଙ୍କ ପ୍ରତିନିଧି ହେଇ କେତେ ବଡବଡିଆଙ୍କ ସାଙ୍ଗରେ ବସିଲା, ମିଶିଲା । ଲୋକବାକ ତ ପିମ୍ପୁଡିପରି ଧାର ଲଗେଇଲେ ତା'ପାଖକୁ ।

ତା'ପରଥର ଇଲେକ୍ସନ୍‌ରେ ସାଆନ୍ତେ କିନ୍ତୁ ହାରିଗଲେ । ବୁଦ୍ଧିଆର ସବୁ ପରିଶ୍ରମ ପାଣିରେ ପଡିଲା । ଲୋକେ କହିଲେ, ସାଆନ୍ତେ ଆମକୁ ପଚାରିଲେ ନାହିଁ, ଆମ ଦୁଃଖ ବୁଝିଲେ ନାହିଁ । ଆମ ପାଇଁ ରାସ୍ତା କଲେନାହିଁ, ନାଳ ସଫା କଲେ ନାହିଁ, କୂଅ ଖୋଳେଇଲେ ନାହିଁ, ଆମ ପିଲାକୁ ଚାକିରୀ ଦେଲେ ନାହିଁ, ଆଉ ଶଳାଶାଳୀଙ୍କୁ କୋରାପୁଟରୁ ବଦଳି କରି ଆଣିଲେ ନାହିଁ । ଆମପାଇଁ ଥାନାକୁ ଗଲେନାହିଁ । ଆମ କେଶ୍‌କାସ୍ କଥା ହାକିମକୁ କହିଲେ ନାହିଁ । ଏ ଲୋକଗୁଡା ତ ଭାରି ବେଇମାନ୍ । ରାସ୍ତାଘାଟ କ'ଣ କମ୍ କରିଛନ୍ତି ସାଆନ୍ତେ ? କମ୍ ଲୋକଙ୍କୁ କ'ଣ ଇନ୍ଦିରାଘର ବାଣ୍ଟିଛନ୍ତି ନା କମ୍ ରାଣ୍ଡିଖଣ୍ଡିକୁ ଭତ୍ତା କରେଇଛନ୍ତି ? ହେଲେ, କ'ଣ ହେବ, ଲୋକେ ତ ଖାଲି କହିଲେ, ସାଆନ୍ତେ ଉପରମୁହାଁ । ଶଃ... ଆରେ ସାଆନ୍ତେ ଜମିଦାର ଛୁଆ, ଉପରମୁହାଁ ନହେଇ କ'ଣ ତଳମୁହାଁ ହେଇଥାନ୍ତେ ? ତୁମକୁ କ'ଣ କାନ୍ଧରେ ବସେଇଥାନ୍ତେ ! ପୁଣି ଥୋକେ କହିଲେ, କ'ଣ ନା, ସାଆନ୍ତେ ମଦ ପିଅନ୍ତି । ହଇହୋ, ସାଆନ୍ତେ ମଦ ପିଇଲେ କ'ଣ ତମ ପଇସାରେ ? ଆରେ ତାଙ୍କ ବାପେ ଗୋରା ସାହେବଙ୍କ ସାଙ୍ଗରେ ବସି ମଦ ପିଉଥିଲେ, ପୁଅ ନହେଲେ ସେମିତି କ'ଣ ଟିକେ କଲେ,ସେଇଠୁ ତମେ କହିବ, ସାଆନ୍ତେ ମଦୁଆ, ଆମେ ତାଙ୍କୁ ଭୋଟ୍ ଦବୁନି !

ସାଆନ୍ତଙ୍କ ବିରୋଧୀବାଲା ତ ଲଗେଇଜୁଟେଇ ଆହୁରି କେତେକଥା କହିଲେ... କ'ଣନା, ସାଆନ୍ତେ କୋଠା ଉପରେ କୋଠା ତୋଳିଛନ୍ତି ଭୁବନେଶ୍ୱରରେ, ଫାର୍ମ ହାଉସ୍ କରିଛନ୍ତି ଖୋର୍ଦ୍ଧାରେ, ସିନେମାହଲ୍ କରିଛନ୍ତି କଟକରେ, ହୋଟେଲ୍ ବନେଇଛନ୍ତି ପୁରୀରେ... କିହୋ, ସାଆନ୍ତେ କୋଠା କରନ୍ତେନି, କ'ଣ ତମେ କରନ୍ତ ? ତାଙ୍କ ବାପାଙ୍କର କ'ଣ ଧନସମ୍ପତ୍ତି ନଥିଲା କୋଠା କରିବାକୁ ? ବଡସାଆନ୍ତଙ୍କର ଯେତେ ଜମି ବିକ୍ରି ହେଇଥିଲା, ସେ ଟଙ୍କା କ'ଣ ଟଙ୍କା ନୁହେଁ ? ବଡ ସାଆନ୍ତେ ପରା ସରକାରକୁ ଲୁଚେଇ ଦଶମାଣ ଜମି ଏକା ଏ ଦୀନାବାରିକ ନାଁରେ କରିଦେଲେ । ସରକାର ସେତେବେଳେ ଡାଳେଡାଳେ ଗଲେ, ବଡସାଆନ୍ତେ ଯାଉଥିଲେ ପତ୍ରେପତ୍ରେ । ପରେପରେ ସେସବୁ ଜମି ବିକାହେଲା । ଏ ନାପିତ ନମକହାରାମ୍ ହେଲାନାହିଁ; ସଇ କଲା କବଲାରେ । ଟଙ୍କା ନେଲେ ବଡସାଆନ୍ତେ । ସେ ଟଙ୍କା କ'ଣ ସାନସାଆନ୍ତଙ୍କୁ ସେ ଦେଇ ନଥିବେ କି ? ପୁଅ ବୋଲି ତ ଗୋଟିଏ, କୋଉ ନ'ଟା ଛ'ଟା ? ବଡସାଆନ୍ତାଣୀଙ୍କର ତ ସିନ୍ଦୁକରେ ସିନ୍ଦୁକେ ଗହଣାଗାଣ୍ଠି ଥିଲା । ସେସବୁ କ'ଣ ସମ୍ପତ୍ତି ନୁହେଁ ? ପାଞ୍ଚଖଣ୍ଡ ମୌଜାରେ ଯୋଉ ଜମି, ସବୁତ ବିକିଚନ୍ତି ସାନସାଆନ୍ତେ । ତମେ ଓଲଟି କହୁଚ, ସାଆନ୍ତେ ଲୋକଙ୍କ ପଇସା ଖାଇଗଲେ । ଯଦି କୋଉଠି କ'ଣ ଖାଇଲେ, ଖାଇଲେ । ସେ ପାଇଁ କ'ଣ ପୃଥ୍ୱୀ ଓଲଟିପଡିଲା ? ବଡସାଆନ୍ତେ ଜମିଦାର

ବୋଲି ତଣ୍ଡେଇ ଖାଉଥିଲେ, ନହେଲେ ସାନସାଆନ୍ତେ ଭଣ୍ଡେଇ ଖାଇଲେ, ତମେ ଖୁଣ କାଢ଼ିବାକୁ କିଏ ? ସେ ଖାଇଲେ ବି କ'ଣ ଖୋଉ ନାହାନ୍ତି କି ? ବଡସାଆନ୍ତେ ଥିଲାବେଳେ ଦୁଃଖୀରଙ୍କି ତାଙ୍କ ପାଖରୁ ଖାଲିହାତରେ ଫେରୁଥିଲେ କି ? ବ୍ରାହ୍ମଣ, ବଇଷମ, ଯୋଗୀବଇରାଗୀ ଅଖିଆ ବାହୁଡୁଥିଲେ କି ? ସେମିତି ସାନସାଆନ୍ତଙ୍କ ଭୁବନେଶ୍ୱର ଘରଠାରୁ ଉଆସ ପର୍ଯ୍ୟନ୍ତ ସବୁଆଡେ ତ ଖନ୍ଦା ଲାଗିଚି ନିତି- ଯିଏ ଗଲା, ଖାଇଲା । ବେଇମାନ୍‌ଗୁଡା, ପୁଣି ଓଲଟି ଗାଉଚ ?

ଯୁଗ ତ ଖରାପ, ଲୋକେ ଆଉ କରିବେ କ'ଣ ? ମାଲିକା କହିନି, ଅରାଇଜ ରାଇଜ ହବ, ଅମଣିଷ ମଣିଷ ହେବେ । ସେୟା ହେଲାଣନି କି ? ମା' ଧାନକୁଟୀ ପୁଅ ନାଗର । ଦେଖୁନ, ଦାମ ମହାକୁଡ ପୁଅ ଶାମ ଏମ୍.ଏଲ୍.ଏ. ହେଲା, ସାଆନ୍ତେ ହାରିଗଲେ । ଏଣେ ସାଆନ୍ତଙ୍କ ସିନ୍ଦୁକ ଫାଙ୍କା, ତେଣେ ବାକ୍ସରେ ଭୋଟ୍ ଫାଙ୍କା ! ହଉ, ହଉରେ ପୁଅ, ଏକାମାଘକେ କ'ଣ ଶୀତ ଯାଏ ? ପୁଣି ଆରଥରକୁ ଦେଖାଯିବନି ? ଏବେ ପରା ଶାଶୁର ପାଳିଏକୁ ବୋହୂର ପାଳିଏ । ଇମିତି ତ ଚାହୁଁଚାହୁଁ ତିନିବରଷ ଗଲାଣି । ଆଉ ଦି' ବରଷ କୁଆଡେ ପଳେଇବ । ସାନସାଆନ୍ତେ ପୁଣି ହେବେ ମନ୍ତ୍ରୀ ।

ମନ୍ତ୍ରୀ ନଥାଇ ବି ସାନସାଆନ୍ତଙ୍କର ପାବାର କ'ଣ କମ୍ କି ? ଏବେ ବି ତ ବଡ ଅଫିସରମାନେ ତାଙ୍କ ଆଗରେ ଠିଆ ହେଇ ହାତମଳି କଥା କୁହନ୍ତି । ପଦେ କଥାରେ ତିନିଥର ସାର୍ ସାର୍ କୁହନ୍ତି । ଆରେ ସାଆନ୍ତେ ତ ପାଟହାତୀ, ଜିଇଁଥିଲେ ଲକ୍ଷେ ଟଙ୍କା, ମଲେ ବି ଲକ୍ଷେ ଟଙ୍କା । ମନ୍ତ୍ର ଥିଲାବେଳେ ଯେମିତି ତାଙ୍କର କାଟ୍‌ତି ଥିଲା, ମନ୍ତ୍ରୀ ନଥିଲେ ବି ତାଙ୍କ ଭାଉ ଊଣା ପଡିଯାଇ ନାହିଁ ତ ! ବୁଦ୍ଧିଆକୁ ସତରେ ଯଦି ଜେଲ୍ ହେଇଥାଏ, ସାଆନ୍ତେ ତାକୁ ବଳେ ମୁକୁଳେଇ ଆଣିବେନି ! ଆଉ ଜେଲ୍ ହେଇଥିଲେ ତ ହେଇଥିବ ତାଙ୍କରି ପାଇଁ । ତାଙ୍କୁ କିଏ କିଛି କହିଲେ ବୁଦ୍ଧିଆ ସହିପାରେନି । ହାତଉଠେଇ ଦେଇଥିବ କାହା ଉପରକୁ । ସେଠୁ ପୋଲିସ୍ ଆସି ତାକୁ ଡାକି ନେଇଥିବ ଥାନାକୁ । ନହେଲେ ସାଆନ୍ତଙ୍କ କୋଉଠି ବିକ୍ଷୋଭକୁ ଯାଇଥିବ । ପୋଲିସ୍ ସାଙ୍ଗରେ ଲାଗିଥିବ, ଶହେ ଚୌରାଳିଶ ଭାଙ୍ଗିଥିବ ।

ନିଜ ଅବୁଝା ମନକୁ ବହଲଉଥିଲା ଦୀନାବାରିକ । ବୁଦ୍ଧିଆର କିଛି ହୋଇନଥିବ, ହେଇ ବି ପାରିବ ନାହିଁ । ଭଲମନ୍ଦକୁ ତ ସାଆନ୍ତେ ସାହା । ଡର କାହାକୁ, ସାଆନ୍ତେ ଅଛନ୍ତି ଚଉବାହାକୁ । ପୋଲିସ୍‌କୁ ଗୋଟିଏ ଫୋନ୍ କଲେ, ସବୁ ଦଫାପରା ରଫା ହୋଇଯିବ ।

ସକାଳୁ ସକାଳୁ ଅଣ୍ଡାଗାଧୁଆ ହେଇ ଖାଙ୍କିହାଟ ବାହାରିଗଲା ଦୀନାବାରିକ୍, ଗମ୍ପୁସା' ରିକ୍ସାରେ । ଖାଙ୍କିହାଟ ଡାକେବାଟ ଥିବ, ଫାଷ୍ଟବସ୍ କିନ୍ତୁ ବାହାରିଗଲା । ଗମ୍ପୁସା' କହିଲା, "ଦୀନାଦା' ଫାଷ୍ଟବସ୍‌ଟା ସେତେ ଭଲ ନୁହେଁ । ନାଲି ସରକାରୀ ବସ୍ । ୟା' ପରବସ୍‌ଟା ଭାରି ବଢ଼ିଆ । ସେଥିରେ ଆରାମ୍‌ରେ ଯିବ । ଚିନ୍ତାକରନି ।" ଦୀନା ମୁଣ୍ଡଟୁଙ୍ଗାରିଲା ଓ ଜଲ୍‌ଦି ରିକ୍ସା ଗଡେଇବାକୁ ତାଗିଦ୍ କଲା ।

ସେକେଣ୍ଡ ବସ୍ ଧରି ଦୀନା ବାରିକ ଭୁବନେଶ୍ୱରରେ ପହଞ୍ଚିଲା ବେଳକୁ ପାଖାପାଖି ଦି'ପ୍ରହର । ଭୁବନେଶ୍ୱରର ଫାଙ୍କା ରାସ୍ତାରେ ବୈଶାଖୀ ଖରା ବେଶ୍ ବାଧୁଥିଲା ତାକୁ । ଠିକ୍ ବେଳରେ ସେ ପହଞ୍ଚିଗଲା ବୁଦ୍ଧିଆ ବସାରେ । ବୁଦ୍ଧିଆ ବୋଧେ ବାହାରୁଥିଲା କୁଆଡେ ଯିବାପାଇଁ । କିଏ କହୁଥିଲା ବୁଦ୍ଧିଆ ଜେଲ୍‌ଯାଇଚି ବୋଲି, ଦୀନାବାରିକ ମନେମନେ କହିହେଲା । ବୁଦ୍ଧିଆ ମୁଣ୍ଡରେ ହାତ ଆଉଁସି ପଚାରିଲା, "ବାବା, ସବୁ ଭଲ ତ ? ଏଣୁତେଣୁ କଥାଶୁଣି ମୁଁ ରହିପାରିଥା'ନ୍ତି କେମିତି ? ଚାଲିଆସିଲି ।"

"ଶାମ ମହାକୁଡ ତା' ହେଲେ କଥାଟାକୁ କନ୍‌ଷ୍ଟିଚୁଏନ୍‌ସି ଯାଏ ଲମ୍ବେଇ ଦେଇଛି", ବୁଦ୍ଧିଆ ଦାନ୍ତ କଡମଡ କରି କହିଲା । "ହେଲେ କ'ଣ ହବ, ତା'ର ସବୁ ପ୍ଲାନ୍ ଫେଲ୍ ମାରିଲା । ଟୋକା ଭାବିଥିଲା ସାର୍‌ଙ୍କୁ ବଦନାମ କରିଦେଇ ପୁଣି ଥରେ ଜିତିଆସିବ । ଲୋକଙ୍କ ପାଇଁ ତ କିଛି କାମ କରିପାରୁନି, ତାକୁ ବି.ଡି.ଓ., ତହସିଲଦାର ପଚାରୁନାହାନ୍ତି । ତେରେ ଚେୟାରମ୍ୟାନ୍ ସାଙ୍ଗରେ ତା'ର ଅପଡ । କଣ୍ଟ୍ରାକ୍ଟର, ଡିଲରଙ୍କ କଥାରେ ବାଟ ଚାଲୁଚି । ହେଲେ, ସାର୍‌ଙ୍କ ପଛରେ ବେଟା ଜୋର୍‌ସୋର୍ ଲାଗିଥିଲା । ସାର୍‌ଙ୍କ ବୁଦ୍ଧି ଆଉ ତା'ବୁଦ୍ଧି ! ଏଥର ତା'ମନ ପୂରା ଘରଧରିଯାଇଥିବ", ବୁଦ୍ଧିଆ କଥା ଯୋଡିଲା ।

ଦୀନାବାରିକ ପୁଅକଥାର ବିନ୍ଦୁବିସର୍ଗ ବୁଝିପାରୁ ନଥିଲା । ବୁଦ୍ଧିଆକୁ ଜେଲ୍ ହବା, ପୁଣି ସାଆନ୍ତକୁ ବଦନାମ କରିବାର ଚାଲ୍- ଯା' ଭିତରେ କି ସମ୍ପର୍କ ? ଶାମ ମହାକୁଡର ପୁଣି ଏଥିରେ କି ହାତ ? ଫ୍ୟାନ୍ ହାୱାରେ ଝାଳମାରି ଦୀନା କହିଲା, "ବାବା, ମତେ ସବୁ ବୁଝେଇ କହ । ମୁଁ ତୋ କଥାର ଆଦିଅନ୍ତ ପାଉନାହିଁ ।"

ବୁଦ୍ଧିଆ କହିଲା, ବାପା ତମେ ଏତେସବୁ ଗହନକଥା ବୁଝିବା ଦରକାର ନାହିଁ । ଖାଲି ଏତିକି ଜାଣିଥାଅ, ଆମ ସା'ରେ ଟଙ୍କା ଖାଉଚନ୍ତି ବୋଲି ପ୍ରମାଣ କରିବା ପାଇଁ ଶାମ ମହାକୁଡ ଅଣ୍ଟା ଭିଡିଥିଲା । ଭାବିଥିଲା ସା'ରେ ଆମର ବଦନାମ୍ ହେଇଗଲେ, ତା'ର ନାମ ହବ । ତେଣୁ ମୁଖ୍ୟମନ୍ତ୍ରୀଙ୍କୁ କହି ପୋଲିସ୍ ଲଗେଇଥିଲା, ସାର୍‌ଙ୍କ ବିରୁଦ୍ଧରେ । କ'ଣନା, ସାରେ କୁଆଡେ ମନ୍ତ୍ରୀ ଥିଲାବେଳେ ସରକାରୀ ପଇସା ଆତ୍ମସାତ୍ କରି ଢେରଢେର୍ ସମ୍ପତ୍ତି ଠୁଳ କରିଛନ୍ତି । ଏହାଦ୍ୱାରା ସାର୍‌ଙ୍କୁ କନିଷ୍ଟିଚୁଏନ୍‌ସିର ଲୋକମାନେ ଛି'ଛାକର କିରଥା'ନ୍ତେ । ଭୋଅଟବେଳେ ଏକଥା ସବୁ ପ୍ରଚାର କରିସେ ତପ୍ତ ବୈତରଣୀ ପାରି ହୋଇଥା'ନ୍ତା । କିନ୍ତୁତା'ର ସବୁ ଯୋଜନା ପଣ୍ଡ ହୋଇଗଲା । ପୋଲିସ୍‌ବାଲା ସାର୍‌ଙ୍କ ସମ୍ପତ୍ତି କିଛି ଠାବ କରିପାରିଲେ ନାହିଁ ।

ଏ ବଡ କୋଠା କାହାର ? ସାର୍‌ଙ୍କର ନୁହେଁ । ସେ ହୋଟେଲ୍ କା' ନାଁରେ ? ସାର୍‌ଙ୍କ ନାଁରେ ନୁହେଁ । ମଦଦୋକାନ କ'ଣ ସାର୍‌ଙ୍କର କି ? ନା, ତା'ବି ନୁହେଁ । ଫାର୍ମ ହାଉସ୍‌ର ମାଲିକ କି, ? ସାର୍ ନୁହନ୍ତି । ବାଇଆ ହେଇଗଲେ ପୋଲିସ୍‌ବାଲା ।

"ସେଇଠୁ ?"

"ସେଇଠୁ ଆଉ କ'ଣ ? ସାର୍‌ଙ୍କ ଭାବମୂର୍ତ୍ତି ନିର୍ମଳ ବୋଲି ସମସ୍ତେ ଜାଣିଲେ । ଆଜିକାଲି ଭିତରେ ସବୁ ଖବରକାଗଜରେ ସେକଥା ବାହାରିଯିବ । ଆର ଇଲେକ୍ସନ୍‌ରେ ସେ ବହୁଭୋଟ୍‌ରେ ଜିତିବେ, ମନ୍ତ୍ରୀହେବେ । କ୍ୟାବିନେଟ୍‌ର ଏକନମ୍ବର ମନ୍ତ୍ରୀ । ଆଉ ଶାମ ମହାକୁଡ ଗାଁକୁ ଫେରି ଖାଙ୍କିହାଟରେ ଆଗପରି ଦୁଧବେପାର କରିବ ।" ବୁଦ୍ଧିଆ କହୁକହୁ ଉତ୍ତେଜିତ ହୋଇ ପଡୁଥିଲା ।

ଏସବୁ ତ ବୁଝିଲି, ହେଲେ ତୋତେ କାହିଁକି ପୋଲିସ୍ ବାନ୍ଧିଲା ବୋଲି ଦୀନା ପୁଣି ପଚାରିବାରୁ ବୁଦ୍ଧିଆ ରାଗରେ ପାଚି ଲାଲ୍ ପଡିଗଲା । କହିଲା, ପୋଲିସ୍‌ର ଦମ୍ ଅଛି ନା ମୋତେ ବାନ୍ଧିବ ? ତମେ ବି ସେ ଶାମ ମହାକୁଡ ଚେଲାଚାମୁଣ୍ଡାଙ୍କ କଥାରେ ପଡିଲ ? ପୋଲିସ୍ ମୋତେ ପଚରାଉଚୁରା କରୁଥିଲା । ପଚାରନ୍ତା ନାହିଁ କି ? ସାର୍‌ଙ୍କର ଏ ଯେତେସବୁ ସମ୍ପତ୍ତିବାଡି, ବେପାରବଣିଜ ସବୁପରା ମୋର ନାଁରେ ।"



# ପଥରର ଅଭିସାର

## ଦୀପ୍ତିରଂଜନ ପଟ୍ଟନାୟକ

ମୃଦୁ ମୃଦୁ ହସୁଥିଲେ ତରୁଣୀ ଜଣକ । ଆଃ... ସେ ସ୍ୱପ୍ନ ଦେଖୁନାହାନ୍ତି ତ ? ଗୋପନରେ ସେ ନିଜ ହାତକୁ ଚିମୁଟିଲେ । ନା, ସ୍ୱପ୍ନ ନୁହେଁ । ତେବେ ତାଙ୍କର ଶୀତତାପ ନିୟନ୍ତ୍ରିତ ବନ୍ଦ କୋଠରିକୁ ତରୁଣୀ ଜଣକ ବିନାନୁମତିରେ ଆସିଲେ କେମିତି ? ଏ ସହରରେ ଏମିତି ସୁନ୍ଦରୀ ସତରେ ଥାଇପାରନ୍ତି ? ଅବଶ୍ୟ କେଉଁଠି ଦେଖିବା ଭଳି ମନେ ହେଉଛି ଆଗରୁ । କେଉଁଠି ଦେଖିଥିଲେ ? କେଉଁଠି ?

ଦୀର୍ଘ ସମୟ ଏକାଗ୍ର ଭାବରେ ତରୁଣୀ ଜଣକ ତାଙ୍କୁ ଦେଖୁ ଥିବାରୁ ଅପ୍ରତିଭ ବୋଧ କଲେ ସୁବ୍ରତବାବୁ । ଯୁଗପତ୍ ବିସ୍ମୟ ଓ ସଙ୍କୋଚ ତାଙ୍କ ଚେତନାକୁ ଗ୍ରାସ କଲା । ହଁ, ତ । ନିର୍ଭୁଲ୍ ଭାବରେ ଲକ୍ଷ୍ୟ କରି ହେଉଛି ସୁନ୍ଦରୀଙ୍କ କଟାକ୍ଷ । ଆଖିରେ ଆଖିଏ ସ୍ୱପ୍ନ । ଅଙ୍ଗରେ ଅପରୂପ ଲାବଣ୍ୟ । ମୃଦୁ ଆଳସ୍ୟରେ ଅନଙ୍ଗର ସଙ୍କେତ । ଏ କ'ଣ ? ନିଜର ନିର୍କେଶ ତାଲୁ, କୀଟଦ୍ରଂଷ୍ଟ ମାଢ଼ି, ମେଦବହୁଳ ବପୁ ଓ ଅତି-ଅମ୍ଳ ଯୋଗୁଁ ସଦାସର୍ବଦା ଆନ୍ଦୋଳିତ ହେଉଥିବା ପାକସ୍ଥଳୀରେ ସୁବ୍ରତ ବାବୁ ପୁଣି ଥରେ ଅନୁଭବ କଲେ ଗତାୟୁ ଯୌବନର କୁଣ୍ଠିତ ପଦପାତ । ଏକ ଅନନୁଭୂତ ପୁଲକରେ ତାଙ୍କର ସମଗ୍ର ଅସ୍ତିତ୍ୱ ଆନ୍ଦୋଳିତ ହେବାକୁ ଲାଗିଲା । ଏଯାବତ୍ ନିଶ୍ଚେଷ୍ଟ ହେଇପଡ଼ିଥିବା ତାଙ୍କ ଶିରା ପ୍ରଶିରାଗୁଡ଼ିକ ଏଭଳି ଏକ ପୁଲକର ଆନ୍ଦୋନଳକୁ ସହଜରେ ନିୟନ୍ତଣ କରିପାରୁନଥାନ୍ତି । ସତରେ କ'ଣ ତାଙ୍କର ପୌରୁଷ ଏଡ଼େ ମହିମାମୟ ! ବୋଧହୁଏ ଦାର୍ଶନିକ ଜଣକ ଠିକ୍ କହିଥିଲେ । ପୁରୁଷ ନାରୀର ବାହ୍ୟରୂପ ଦେଖି ଆକୃଷ୍ଟ ହୁଏ ସିନା; କିନ୍ତୁ ନାରୀ ପୁରୁଷର ଅନ୍ତର୍ନିହିତ ଗୁଣକୁ ଚିହ୍ନି ଆକୃଷ୍ଟା ହୁଏ । ସତରେ କ'ଣ ସୁନ୍ଦରୀ ତରୁଣୀ ଜଣକ ତାଙ୍କର ପ୍ରୌଢ଼ କଦାକାର ବାହ୍ୟରୂପ ପଛରେ ଦେଖି ପାରିଛନ୍ତି ଏକ ପ୍ରସାରିତ ହୃଦୟକୁ, ଏକ ପାଣ୍ଡିତ୍ୟପୂର୍ଣ୍ଣ ମସ୍ତିଷ୍କକୁ, ତାଙ୍କର ଧୀଶକ୍ତିକୁ ? ଅକସ୍ମାତ୍ ଆଉ ଏକ ଚିନ୍ତା ତାଙ୍କର ଆବେଗକୁ ବ୍ୟାହତ କଲା । ହୁଏତ କୌଣସି ଅନୁଗ୍ରହ ଆଶାରେ ଆସି ଥାଇପାରନ୍ତି ତରୁଣୀ ଜଣକ । ତେବେ ବିନାନୁମତିରେ କୋଠରି ଭିତରକୁ ତ କେହି ଅନୁଗ୍ରହ ଆଶାୟୀ ଆସିବା କଥା ନୁହେଁ । ସନ୍ଦେହ ମୋଚନ ପାଇଁ ସୁବ୍ରତବାବୁ ଏଥର ମୁହଁ ଖୋଲିଲେ !

"ଆପଣ... ?"

ଏକ ସାଙ୍ଗୀତିକ ହସରେ ପ୍ରକୋଷ୍ଠକୁ ଆନ୍ଦୋଳିତ କରିଦେଲେ ତରୁଣୀ ଜଣକ ।

"ମୋତେ ଚିହ୍ନିପାରୁନାହାନ୍ତି ?" ପୁଣି ଏକ ଉଚ୍ଛ୍ୱସିତ ହସର ଫୁଆରା ।

ନିଜକୁ ଖୁବ୍ ଅସହାୟ ମନେ କଲେ ସୁବ୍ରତବାବୁ । ହଁ, କେଉଁଠି ଭେଟିବା ଭଳି ମନେ ହେଉଛି ଆଗରୁ । ଚିହ୍ନା ଚିହ୍ନା ଲାଗୁଛି ଚେହେରାଟି । କିନ୍ତୁ ଠିକ୍ ଭାବେ ସ୍ଥାନିତ କରିହେଉନି ସ୍ମୃତିର କେଉଁ ନିର୍ଦ୍ଦିଷ୍ଟ ଅଳିନ୍ଦ ବା ନିଳୟରେ । ମସ୍ତିଷ୍କର ପ୍ରତିଟି ତନ୍ତ୍ରୀକୁ ଜାଗ୍ରତ କରିବାକୁ ଚେଷ୍ଟା କଲେ ସୁବ୍ରତବାବୁ । ନା, ତଥାପି ହେଲା ନାହିଁ । ଏଥର ଲୁଚକାଳି ଖେଳରେ ଧରା ପଡ଼ିଯାଇଥିବା ପିଲାଟିଏର ଗ୍ଲାନିଯୁକ୍ତ ନିଶ୍ଚେଷ୍ଟତା ପ୍ରକାଶ କରି ବସିରହିଲେ ସିଏ । ନିଜର ବିକଳତା ପ୍ରକାଶ

କରିପାରୁଥିବା କ୍ଷୀଣ ହସର ଧାରଟିଏ ତାଙ୍କ ମୁଖମଣ୍ଡଳକୁ ତଥାପି କୁଞ୍ଚିତ କରିଥାଏ । ତାଙ୍କର ବୈକଲ୍ୟକୁ ଆହୁରି ରେଖାଙ୍କିତ କରୁଥାଏ ସମ୍ମୁଖରେ ବସିଥିବା ସୁନ୍ଦରୀ ଯୁବତୀ ଜଣଙ୍କର ବିଶ୍ୱାସମିଶ୍ରିତ ହସ ।

"କ'ଣ ଚିହ୍ନିପାରିଲେ ଏଥର ?" ସସ୍ମିତ ନୟନକୁ ଏକ ଆଭିଜାତ୍ୟମୟ ଭଙ୍ଗୀମାରେ ଦୋଳାୟିତ କରି ଦୂରଦର୍ଶନର କୁଇଜ୍ ମାଷ୍ଟର୍ ଭଳି ଆଉଥରେ ଚାଲେଞ୍ଜ୍ କଲେ ସୁକେଶିନୀ ସୁନ୍ଦରୀ ।

ଏଥର ସମ୍ପୂର୍ଣ୍ଣ ଭାବରେ ନିଜକୁ ସମର୍ପଣ କରିଦେଲେ ସୁବ୍ରତବାବୁ । ନିଜ ପ୍ରତି ସମବେଦନା ଜାଗ୍ରତ କରାଇବା ପାଇଁ କହିଲେ,

"କ୍ଷମା କରିବେ, ମୁଁ ଖୁବ୍ ଟେନ୍‌ସନ୍‌ରେ ଅଛି ଏଇ କିଛିଦିନ ହେବ ତ ! ତେଣୁ ଆପଣଙ୍କୁ ପ୍ଲେସ୍ କରିପାରୁନି ହଠାତ୍ । ମୁଁ ଖୁବ୍ ଦୁଃଖିତ । ତେବେ ମୁଁ ନିଃସନ୍ଦେହରେ ସ୍ୱୀକାର କରୁଛି ଯେ, ଆପଣଙ୍କ ଉପସ୍ଥିତି ମୋର ଗତ ଅନେକ ଦିନର ଏଇ ଟେନ୍‌ସନ୍‌କୁ ସମ୍ପୂର୍ଣ୍ଣ ରୂପେ ଦୂରୀଭୂତ କରିଦେଇପାରିଛି ।"

ବାକ୍‌ଚାତୁରୀଟିଏ ଶେଷ ଆଡ଼କୁ ପ୍ରୟୋଗ କଲେ ସୁବ୍ରତବାବୁ । ନିଜର ମସ୍ତିଷ୍କକୁ ଖୁବ୍ ଶୀଘ୍ର ଦରାଣ୍ଡି ପକାଇଲେ । କେଉଁଠି, କେଉଁଠି କେଜାଣି ପଢ଼ିଥିଲେ, ଈଶ୍ୱର, ରାଜା ଓ ନାରୀମାନଙ୍କ ନିକଟବର୍ତ୍ତୀ ହେବା ପାଇଁ ହେଲେ, ସ୍ତୁତି କର, ସ୍ତୁତି କର । ନିଜ କଥାର କ'ଣ ପ୍ରଭାବ ପଡୁଛି ଭଦ୍ରମହିଳାଙ୍କ ଉପରେ, ତାକୁ ଲକ୍ଷ୍ୟ କରିବା ପାଇଁ ସତୃଷ୍ଣ ନୟନରେ ଅନାଇ ରହିଲେ ।

କିନ୍ତୁ ତାଙ୍କ ଅସହାୟତାକୁ ବହୁଗୁଣିତ କରିଦେଲା ସୁନ୍ଦରୀଙ୍କର ନିର୍ଝରିଣୀ ଭଳି ଚପଳ ହସ । ସେ ହସ ତାଙ୍କୁ ଯେମିତି କହୁଥିଲା, ମୁଁ ତ ତୁମ ପାଖରେ ନିଜକୁ ସମର୍ପଣ କରିଦେଇଛି । ଆଉ ଏତେ ବାଗାଡ଼ମ୍ବର କାହିଁକି ? ଚାତୁର୍ଯ୍ୟ, ସ୍ତୁତିର ଆବଶ୍ୟକତା କ'ଣ ? ତାଙ୍କର ମନେ ହେଲା ତରୁଣୀ ଜଣକ ତାଙ୍କର ମନକଥା ସବୁ ପଢ଼ି ଦେଇପାରୁଛି । ନିଜକୁ ଅପ୍ରକଟ କରିବାର ସାମାନ୍ୟ ଦମ୍ଭ ଟିକକ ଅନ୍ତର୍ହିତ ହୋଇଗଲା ତାଙ୍କ ନିକଟରୁ । ସେ ନିଜକୁ ଏକ ଅସହାୟ ଶିଶୁ ଭଳି ମନେ କଲେ । ଭାବିଲେ ଏଯାବତ୍ ତାଙ୍କ ଭିତରେ ରୁନ୍ଧି ହୋଇ ପଡ଼ିଥିବା ସବୁକିଛି ହାହାକାରକୁ ଓଜାଡ଼ି ଦେବେ ଯୁବତୀଟି ସମ୍ମୁଖରେ । ତାଙ୍କର ବକ୍ଷରେ କେଇ ମିନିଟ୍ ହାଲ୍‌କା ହେଇ କାନ୍ଦିବେ । ସ୍ୱୀକାର କରିବେ ଯେ, ସେ କେତେ ଦୁର୍ବଳ । ଦୁଇ ବୁନ୍ଦା ଲୁହ ଢାଳି ଦେବା ପାଇଁ ବି ସିଏ ହକ୍‌ଦାର । କାହିଁକି କେଜାଣି ସୁନ୍ଦରୀଙ୍କର ଅପରୂପ ଲାବଣ୍ୟ ଓ ଅନ୍ତରଙ୍ଗତା ତାଙ୍କୁ ଏମିତି ସହଜ କରିଦେଉଥାଏ, ଯେମିତି ତରୁଣୀଟି ବହୁଦିନର କୌଣସି ଘନିଷ୍ଠ ଆତ୍ମୀୟା । ଏଥର ସିଏ ଆଉ କହିଦେବେ କି ତାଙ୍କର ଗୋପନ ଦୁଃଖ କେଇଟି ? ନିଜର ପତ୍ନୀଙ୍କ ପ୍ରତି ମନେ ମନେ ସ୍ୱଗତୋକ୍ତି କରିଉଠିଲେ ସୁବ୍ରତବାବୁ । "ତୁମେ ମୋତେ ଅପାରଗ ମଣିଷଟିଏ ବୋଲି ମନେ କରନା ? ଆଃ, ଅନୁ ତୁମେ ଯଦି ଆଜି ଏଇଠି ଥାଆନ୍ତ, ଆଉ ଦେଖନ୍ତ କିଭଳି ସୁନ୍ଦରୀ ଜଣେ ଏକାନ୍ତରେ ଏଭଳି ଘନିଷ୍ଠ ହୋଇପାରୁଛି ମୋ ସହ, ନିଜ ସ୍ୱାମୀ ବିଷୟରେ ତମ ଧାରଣାଟି ବଦଳିଯାଆନ୍ତି । ପ୍ରାକ୍ ବିବାହ ସମୟର ପ୍ରତ୍ୟୟଗୁଡ଼ିକ ଫେରିଆସନ୍ତା । କି ଲଘୁ ଜ୍ୱାଳାମୟ ଈର୍ଷାରେ ତୁମେ ଏବେ ଜଡ଼ସଡ଼ ନ ହୁଅନ୍ତ !"

ନିଜ ପତ୍ନୀଙ୍କ ଈର୍ଷାପୀଡ଼ିତ ଅବୟବକୁ କଳ୍ପନା କରି ନେଇ ମନେ ମନେ ରୋମାଞ୍ଚିତ ହେଇଉଠିଲେ ସୁବ୍ରତ ବାବୁ । କାହିଁ କେତେ ଦିନୁ ଏଭଳି ରୋମାଞ୍ଚଟିଏ ସିଏ ଅନୁଭବ କରି ନଥିଲେ । ସ୍ତ୍ରୀ ଅନୁରାଧାଙ୍କ ଯୌବନ ଅତିକ୍ରାନ୍ତ ହୋଇ ନଥିଲେ ବି, ଦୁଇଟି ସନ୍ତାନର ମାତୃତ୍ୱ

ତାଙ୍କୁ କେମିତି ଶୀତଳ କରିଦେଇଥାଏ । ତାଙ୍କର ମନେହେଲା, ହୁଏତ ନିଜ ସ୍ୱାମୀଙ୍କୁ ସୁନ୍ଦରୀ ଯୁବତୀଟିଏ ସହ ଏକାନ୍ତରେ ଦେଖିଲେ ବି ଏବେ ଆଉ ଈର୍ଷା ଅନୁଭବ କରିବେ ନାହିଁ ଅନୁରାଧା । ତାଙ୍କଠାରୁ ଦ୍ରୁତତର ଗତିରେ ପଦୋନ୍ନତି ପାଇ ଯାଉଥିବା ବା ଚତୁର ଭାବରେ ସେଆର୍ ମାର୍କେଟ୍‌ରେ ଟଙ୍କା ଖଟେଇ ଗୁଡ଼ାଏ ବ୍ୟାଙ୍କ୍ ବାଲାନ୍ସ ରଖିଥିବା ସହକର୍ମୀଗଣଙ୍କ ପ୍ରତି ବା ନିଜର ସ୍ୱଚ୍ଛଳତାକୁ ଲଜ୍ଜାହୀନ ପ୍ରଦର୍ଶନ କରୁଥିବା ସେମାନଙ୍କ ପତ୍ନୀମାନଙ୍କ ପ୍ରତି ଈର୍ଷାନ୍ୱିତ ହେଇ ହେଇ ଅନୁରାଧା ତାଙ୍କର ଈର୍ଷା ଭଳି ଏକ ମହାନ୍ ଆବେଗକୁ ଇତର ଭାବରେ ଯେମିତି ସାରି ଦେଇଥିଲେ । ବାରମ୍ବାର ତାଙ୍କ ସାଙ୍ଗେ ଲଗଉ ଥିଲେ,

'ତୁମେ ନିଜର ପ୍ରମୋଶନ ପାଇଁ ଚେଷ୍ଟା କରୁନ କାହିଁକି ?'

"ମୁଁ ଜଣେ ଭିନ୍ନ ରକମର ମଣିଷ ଅନୁ । ମୁଁ ପ୍ରତିଯୋଗିତାର ଏ ମୂଷା ଦୌଡ଼ରେ ଭାଗ ନେଇପାରିବିନି । ମୋର ପ୍ରତିଭାକୁ ସଉଦା କରି ମୁଁ ବ୍ୟାଙ୍କ୍ ବାଲାନ୍ସ ବଢ଼େଇ ପାରିବିନି କି ହେରାର୍କି ଚଢ଼ିପାରିବିନି । ମୁଁ ସ୍ୱପ୍ନ ଦେଖିବାକୁ ଚାହେଁ ।"

"ପ୍ରତିଭା ନା ଛେନା ଗୁଡ଼ । ଯିଏ ପ୍ରତିଭାବାନ୍, ସିଏ ସବୁ କ୍ଷେତ୍ରରେ ନିଜକୁ ପ୍ରତିଷ୍ଠିତ କରିପାରିବ । ଯେକୌଣସି ପରିସ୍ଥିତିରେ ଆଗରେ ଠିଆ ହେଇପାରିବ । କବିତା ଲେଖି ପୁରସ୍କାର ଜିତୁ ବା ବଡ଼ ଅଫିସର ହେଉ । ତମେ ଡିଫିଟିଷ୍ଟ... ପଳାୟନପନ୍ଥୀ । ତମେ, ତମେ ଗୋଟେ ପଥର ।"

ଓଃ ! ସେତେବେଳେ ଯାଇ ସୁବ୍ରତ ବାବୁ ଜାଣିଥିଲେ ବାକ୍ୟକୁ କାହିଁକି ବାଣ ସାଙ୍ଗେ ତୁଳନା କରିଥିଲେ କବିମାନେ । ଅନୁରାଧାଙ୍କ ତିରସ୍କାର ତାଙ୍କୁ ଏମିତି କଷ୍ଟ ଦେଇ ନଥିଲେ, ସେ ନିଜକୁ ଗୋଟ ପଥର ବୋଲି ହୁଏତ ବିଶ୍ୱାସ କରିଯାଇଥା'ନ୍ତେ । ଏତେ ଦିନ ଧରି ସେ ଗଡ୍‌ଡାଳିକାଟିଏ ଭଳି ତ ବଂଚିଆସିଛନ୍ତି; ଯାହରା ଗତି ନାହିଁ, କୌଣସି ପ୍ରକାର ସ୍ୱାଧୀନତା ନାହିଁ । ଯାକୁ ପଦାର୍ଥର ଜୀବନ କହିବ ନା ମଣିଷର ଜୀବନ ? ସକାଳ ଦଶରୁ ସଞ୍ଜ ଛ' ପର୍ଯ୍ୟନ୍ତ ଗୋଟାଏ ଶୀତତାପ ନିୟନ୍ତ୍ରିତ କୋଠରିରେ ଏକରକମ ବନ୍ଦୀ ହୋଇ ପଡ଼ି ରହୁଛନ୍ତି ସିଏ । ଆଗରୁ ନିଆ ସରିଥିବା ନିଷ୍ପତ୍ତିଗୁଡ଼ିକୁ ସିଏ ଯନ୍ତ୍ରଚାଳିତବତ୍ ଦସ୍ତଖତ ମାରୁଛନ୍ତି । ହେଇ, ସେଦିନ ୟୁନିଅନ୍‌ର ନେତା ଥିବା ଜଣେ ଅଧସ୍ତନ କର୍ମଚାରୀ ତାଙ୍କୁ ନିଜର ସୁବିଧା ଅସୁବିଧା କଥା କହୁଥିଲା । ତା' ମା' କେମିତି ଦୀର୍ଘଦିନ କର୍କଟ ରୋଗରେ ପଡ଼ି ମୃତ୍ୟୁବରଣ କଲେ, କହୁ କହୁ ସିଏ କାନ୍ଦି ପକେଇଥିଲା । ସୁବ୍ରତବାବୁ ବି ଖୁବ୍ ଏକାଗ୍ର ଚିତ୍ତରେ ତା' କଥା ଶୁଣୁଥିଲେ। ସମବେଦନା ପ୍ରକାଶ କଲା ଭଳି ଜଣାପଡୁଥିଲେ । କେତେବେଳକେ ସିଏ ସମ୍ପୂର୍ଣ୍ଣ ଅନ୍ୟମନସ୍କ ହେଇପଡ଼ିଛନ୍ତି ତାଙ୍କୁ ଜଣାପଡ଼ିନି । କର୍ମଚାରୀଟିଏ ବ୍ୟକ୍ତିଗତ ଦୁଃଖ କେମିତି କେଜାଣି ତାଙ୍କୁ ଆଉ ସ୍ପର୍ଶ କରିପାରିନି । ଶେଷରେ ନେତା ଜଣକ ତାଙ୍କ ଅଫିସ୍‌ରୁ ଯିବାକୁ ବସିଛି, ପୁରୁଣା ଅଭ୍ୟାସ ବଶତଃ ସୁବ୍ରତବାବୁ ପଚାରିଦେଲେ,

"ଆପଣଙ୍କ ସେଇ ପିରିଅଡ୍‌ର ଛୁଟି ଦରଖାସ୍ତଟା ଦେଇଦେବେ ।" ପ୍ରଚଣ୍ଡ ଭାବରେ ରାଗିଯାଇଥିଲା ଲୋକଟା । ଚିତ୍କାର କରି କହିଥିଲା,

"ଦରଖାସ୍ତ ? ବ୍ଲଡି ବାଷ୍ଟାର୍ଡ, ତୁ ଗୋଟାଏ ମଣିଷ ନୁହଁ, ତୁ ଗୋଟାଏ ପଥର ।"

ତାପରେ ସିଏ ତାଙ୍କ ଅଫିସ୍ ଛାଡ଼ି ଚାଲିଯାଇଥିଲା । ବ୍ୟାଙ୍କର କର୍ମଚାରୀମାନଙ୍କୁ କ'ଣ ମତେଇଥିଲା ଯେ, ସେମାନେ ତାଙ୍କୁ ଘେରଉ କରି କ୍ଷମା ମାଗିବାକୁ ବାଧ କରିଥିଲେ । ସିଏ ଯେତେ ସଫେଇ ଦେଲେ ଯେ, ଗାଳି ତାଙ୍କୁ ଦିଆ ହୋଇଛି ଏବଂ ସିଏ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ

ନେବାକୁ ଚିନ୍ତା କରୁଛନ୍ତି, କେହି ତାଙ୍କ କଥା ବିଶ୍ୱାସ କଲେ ନାହିଁ। ସେଠାରେ ଉପସ୍ଥିତ ଥିବା ତାଙ୍କ ବ୍ୟକ୍ତିଗତ ମହିଳା ସହକାରୀ ମଧ୍ୟ ସାକ୍ଷ୍ୟ ଦେଲା ଯେ, ସୁବ୍ରତ ବାବୁ ହିଁ ଅଶ୍ଳୀଳ ଭାଷାରେ ଗାଳି ଦେଇଛନ୍ତି ନେତା ଜଣଙ୍କୁ । ଅଗତ୍ୟା କ୍ଷମା ମାଗି ସେଦିନର ସେଇ ଗମ୍ଭୀର ପରିସ୍ଥିତିରୁ ମୁକୁଳି ଥିଲେ ସିଏ; କିନ୍ତୁ ନିଜର ସମ୍ବେଦନଶୀଳତା ପ୍ରତି ତାଙ୍କର ଏକରକମ ସନ୍ଦେହ ଆସି ଯାଇଥିଲା । ନିଜେ ସେଥର ଖୁବ୍ ଅପମାନିତ ହେଇଥିଲେ ବି, ସେ ଲୋକଟିର ସେଦିନର ଗାଳି ପାଇଁ ସେ ମନେ ମନେ କୃତଜ୍ଞତା ଅନୁଭବ କରିଥିଲେ । ଅନ୍ତତଃ କିଛି ସମୟ ପାଇଁ ତାଙ୍କର ବିବେକୁ ତ ସିଏ ଚେତାଇ ଦେଇଥିଲା ! ସତରେ, ଜଣେ ସଦ୍ୟ ମା'କୁ ହରାଇଥିବା ସନ୍ତାନଠାରୁ ସାମାନ୍ୟ ଛୁଟି ଦରଖାସ୍ତଟାଏ ସିଏ ମାଗୁଥିଲେ କେମିତି ? ସତକୁ ସତ ସିଏ କ'ଣ ପଥର ପାଲଟି ଯାଇଛନ୍ତି ?

ବହୁତ ଦିନ ତଳେ ଅବଶ୍ୟ ତାଙ୍କର ଜଣେ ଘନିଷ୍ଠ ବନ୍ଧୁ ହିମାଂଶୁ ତାଙ୍କୁ ଏ ବିଷୟରେ ସତର୍କ କରିଦେଇଥିଲା । କହିଥିଲା !

"ତୁ ବ୍ୟାଙ୍କ୍ ଚାକିରି ଛାଡ଼ିଦେ ।"

"କାହିଁକି ?" ସୁବ୍ରତ ବାବୁ ପଚାରିଥିଲେ ।

"ଶୂନ୍‌ରୁ ନଅ, ନଅରୁ ଶୂନ୍ । ଇଆରି ଭିତରେ ସୀମୀବଦ୍ଧ ହେଇଯିବ ତୋ ଜୀବନ । କବିତା ଲେଖିବୁ କେତେବେଳେ ?"

"ବନ୍ଧୁ, ଏ ବିଂଶ ଶତାବ୍ଦୀର ଅନ୍ୟତମ ଶ୍ରେଷ୍ଠ କବି ଟି.ଏସ୍.ଇଲିଅଟ୍ ଥିଲେ ଜଣେ ବ୍ୟାଙ୍କର୍ ।"

"ଓଃ, ସେଠିକା କଥା ଅଲଗା । ଇଂଲଣ୍ଡର ଗଣତାନ୍ତ୍ରିକ ପରମ୍ପରା କଥା କାହିଁକି କହୁଛୁ ? ଏଠି ହଜାରେ ବସିଜିମ୍ । ଗୋଡ଼ ଟଣାଟଣି । ଉପରିସ୍ଥ କର୍ମଚାରୀ ସବୁ ଏବେ ବି କେମିତି ତୋ ଉପରେ କ୍ଷୁବ୍ଧ ଦେଖୁନୁ ? ତୁ କବିତା ଲେଖି ପ୍ରତିଷ୍ଠା ପାଉଛୁ ବୋଲି, ସେମାନେ ଜାଣିଶୁଣି ଗୋଟେ ଧାରଣା ସୃଷ୍ଟି କରୁଛନ୍ତି ଯେ, ତୁ ତୋ ନିଜ ବ୍ୟାକିଙ୍ଗ୍ କାମରେ ମନ ଦଉନୁ । ଉତ୍ସାହିତ କରିବା ତ ଦୂରର କଥା । ସବୁବେଳେ ଚେଷ୍ଟା କରିବେ ଦବେଇ ଦବକୁ । ଏଠି ତ ସବୁ ଜାଗାରେ ହେରାର୍କି । ବଡ଼ ଅଫିସର ହେଇଗଲ ମାନେ ସଇଲା । ତମେ ବେଶୀ ପାଠ ଜାଣିଚ, ସବୁଠୁ ଭଲ କାମ କରୁଛ, ତମ କବିତା ସବୁଠୁ ଭଲ, ତମ ସ୍ତ୍ରୀ ସବୁଠୁ ସୁନ୍ଦରୀ ଓ ରୀତିମତ୍ ଚରିତ୍ରବତୀ । ତମ ପିଲାମାନେ ବି ଶ୍ରେଣୀରେ ପ୍ରଥମ ହେବା ଚାହି । ଏଭଳିଆ ପରିସ୍ଥିତିରେ ତୋତେ କବି ହବାକୁ ସ୍ୱାଧୀନତା ମିଳିବ କୋଉଠୁ ?"

"କିନ୍ତୁ ଏକ ସଂଘର୍ଷବିହୀନ ନିରୁଦ୍‌ବେଗ ଜୀବନରୁ କବିତା ସୃଷ୍ଟି ସମ୍ଭବ କି ? ମୁଁ ଜୀବନ ଓ ପରିବେଶର ସମସ୍ତ ଝଡ଼ଝଞ୍ଜା ଓ ଚାପକୁ ଆମନ୍ତ୍ରଣ କରୁଛି । ସେ ଆନ୍ଦୋଳନ ହିଁ ମୋ କବିତାର ଭିତ୍ତିଭୂମି ହେବ । ମୁଁ ଆଇଭରି ଟାୱାର୍‌ର କବି ହେବାକୁ ଚାହେଁନା । ଭାବୁଛି ବ୍ୟାଙ୍କିଙ୍ଗ୍ ପ୍ରଫେସନ୍ ଗୋଟାଏ ବୃହତ୍ତର ଜୀବନ ସହ ମୋତେ ସମ୍ପର୍କିତ କରି ରଖିବ । ଏଇଟା ତ ଆଧୁନିକ ସମାଜର ଲାଇଫ୍ ଲାଇନ୍, ଶିରା ଓ ଧମନୀ ।" ଆଶ୍ୱାସନା ଦେଇଥିଲେ ସୁବ୍ରତ ବାବୁ । "ତା ଛଡ଼ା ତୁ ଯେଉଁ ଈର୍ଷା, ଗୋଡ଼ ଟଣାଟଣି କଥା କହୁଛୁ, ତା ଖାଲି ବ୍ୟାଙ୍କିଙ୍ଗ୍ କାହିଁକି ସବୁ ପ୍ରଫେସନ୍‌ରେ ଅଛି ।"

"ସେଇଟା ସତ କଥା ଯେ, ବ୍ୟାଙ୍କ୍‌ର ଜୀବନର ଶୁଷ୍କତା ଓ ପରିବେଶ କବିତ୍ୱର କଳ୍ପନା ପାଇଁ ଅନୁକୂଳ ନୁହଁ ଜମା । ବ୍ୟାଙ୍କ୍ ଏ ଜାଗତିକ ଦୁନିଆର ଶିରା ଓ ଧମନୀ ତ ଠିକ୍ । କିନ୍ତୁ

ହୃଦୟ ଥିଲେ ସିନା ଶିରା ଓ ଧମନୀ ଚାଲୁ ରହିବେ । ହୃଦୟରୁ ରକ୍ତ ଶୁଖିଗଲେ ହବ କେମିତି ? ଏ ବ୍ୟାଙ୍କ୍ ଏଷ୍ଟାବ୍ଲିଶ୍‌ମେଣ୍ଟ୍ ତୋ ହୃଦୟରୁ ସବୁ ପ୍ରେରଣାକୁ ଶୁଷ୍କ କରିଦେବ ।"

ସେତେବେଳେ ସୁବ୍ରତବାବୁ ମନେମନେ ହିମାଂଶୁକୁ ଦୟା କରିଥିଲେ । ଭାବିଥିଲେ ହିଂମାଂଶୁ ଯଦି ତାଙ୍କ ପ୍ରେରଣାର ଉତ୍ସ କଥା ଜାଣିପାରନ୍ତା ତେବେ ଏକଥା କୁହନ୍ତା ନାହିଁ । କାରଣ ସେତେବେଳକୁ ପତ୍ରିକାର ପୃଷ୍ଠାମାନଙ୍କରୁ ସିଏ ଅନୁରାଧାଙ୍କୁ ଆବିଷ୍କାର କରିସାରିଥିଲେ । କବିତା ପ୍ରତି ଅନୁରକ୍ତି ସେମାନଙ୍କର ପରିଚୟକୁ ଦିନ କେତୋଟି ଭିତରେ ସମ୍ପର୍କରେ ପରିଣତ କରିଦେଇପାରିଥିଲା ଓ ସେମାନେ ସେ ସମ୍ପର୍କକୁ ଯେ ଦିନେ ବିବାହ ବନ୍ଧନରେ ରୂପାନ୍ତରିତ କରିପାରିବେ, ସେଥି ପାଇଁ ପ୍ରତିଶ୍ରୁତିବଦ୍ଧ ହେଇସାରିଥିଲେ । ସୁବ୍ରତବାବୁ ଭାବିଥିଲେ ବ୍ୟାଙ୍କ୍ ଜୀବନର ପ୍ରତିକୂଳ ପରିସ୍ଥିତିରେ ବି କବି-ପତ୍ନୀଙ୍କର ପ୍ରେରଣା ତାଙ୍କୁ କବିତା-ମୁଖର କରିବାରେ ସାହାଯ୍ୟ କରିବ । ତେଣୁ, ବିବାହର ଦିନ କେତୋଟି ଭିତରେ ଖୁବ୍ ଆବେଗରେ ପତ୍ନୀଙ୍କୁ କହିଥିଲେ,

"ଅନୁ, ତୁମ ଭଳି ସ୍ତ୍ରୀ ଥିଲେ, ବ୍ୟାଙ୍କ୍‌ର କ'ଣ ଜଣେ ପେଶାଦାର୍ ଘାତକ ବି କବିତା ଲେଖି ପାରିବ ।"

କିନ୍ତୁ, ତାଙ୍କୁ ଅବାକ୍ କରିଦେଇ ଅନୁରାଧା କହିଥିଲେ,

"ଏବେ କବିତା ଫବିତା କଥା ଛାଡ଼ ତ । ଆଗରେ ବ୍ୟାଙ୍କ୍‌ର ପ୍ରମୋଶନ୍ ପାଇଁ ପରୀକ୍ଷା । କ'ଣ ମନେ ରହୁନି କି ? ତମଠୁ ଜୁନିଅର୍ ମାନେ ସ୍କେଲ୍ ଟୁ ହେଲେଣି ପରା ।"

"କିନ୍ତୁ ବ୍ୟାଙ୍କ୍ କେବଳ ମୋର ପେଶା, କବିତା ଯେ ମୋ ପାଇଁ ଗୋଟାଏ ନିଶା । ବଂଚିବାର ଗୋଟେ ଅବଲମ୍ବନ ।" ସଫେଇ ଦେଲେ ସୁବ୍ରତ ବାବୁ ।

"ପ୍ରାକ୍ଟିକାଲ୍ ହବାକୁ ଚେଷ୍ଟା କରନ୍ତୁ । ଏଠି ଓଡ଼ିଆରେ କବିତା ଲେଖି ଲାଭ କ'ଣ ? କିଏ ପଚାରିବ କବି ହେଲେ, କିଛି ଗୋଟାଏ ବଡ଼ ପୁରସ୍କାର ନ ପାଇଲେ । ପାଠକ ତ ବିଲ୍‌କୁଲ୍ ନାହାନ୍ତି ।"

ପ୍ରଥମେ ପ୍ରଥମେ ସ୍ତ୍ରୀଙ୍କ ଏଭଳି ମନ୍ତବ୍ୟରେ ସୁବ୍ରତବାବୁ ମନେ ମନେ ଆଶ୍ଚର୍ଯ୍ୟ ହେଉଥିଲେ । ଭାବୁଥିଲେ ନିଜ କବିତାରେ ଏତେ ସ୍ୱାଧୀନତାର ସ୍ୱପ୍ନ ବୁଣୁଥିବା ଝିଅମାନେ ବାହା ହେବା ପରେ ହଠାତ୍ ଏମିତି ବୟସ୍କ ହୋଇଯାଆନ୍ତି କେମିତି ? ସୃଷ୍ଟିଶୀଳତା ଚଟ୍‌କରି କିମିତି ଗୋଟେ ଗୃହପାଳିତ ପଶୁ ଭଳି ବନ୍ଧା ହେଇପଡ଼େ କ୍ଷମତା, ଅର୍ଥ, ପଦପଦବୀ ପାଖରେ ? ଏଥିପାଇଁ ସ୍ୱାମୀ ସ୍ତ୍ରୀଙ୍କ ଭିତରେ କଥା କଟାକଟି ଓ ମନାନ୍ତର ବି ହେଉଥିଲା ମଝିରେ ମଝିରେ । ଅଥଚ କେଡ଼େ ସହଜରେ ଆଉ କେତେ ଶୀଘ୍ର ସୁବ୍ରତ ବାବୁ ବି କେଜାଣି କେମିତି ଗତାନୁଗତିକ ବାସ୍ତବତା ସହ ନିଜକୁ ଖାପ୍ ଖୁଆଇ ନେଇଥିଲେ । ସେ ଅବଶ୍ୟ ପତ୍ନୀଙ୍କ ଇଚ୍ଛା ଅନୁଯାୟୀ ଖୁବ୍ ଶୀଘ୍ର ପଦୋନ୍ନତି ବା ବ୍ୟାଙ୍କ୍ ବାଲାନ୍ସ ହାସଲ କରିପାରି ନଥିଲେ । କିନ୍ତୁ ବିବାହର ଦିନ କେଇଟିରେ ସବୁ ବ୍ୟାଙ୍କ୍ ଅଫିସର୍ ଭଳି ଋଣ ଉଠେଇ ପ୍ରଥମେ କିଣିଥିଲେ ଏଣୁତେଣୁ ଗୁଡ଼ିଏ ଘର ଉପକରଣ ବିଳାସ ସାମଗ୍ରୀ– ସ୍କୁଟର ଖଣ୍ଡେ, ଫ୍ରିଜ୍, ଭି.ସି.ଆର.ଟେ । ସେଗୁଡ଼ିକୁ ଠିକଣା ସ୍ଥାନରେ ସଜେଇ ରଖିବା ପାଇଁ ଶତକଡ଼ା ସାତ ଭାଗ ସରଳ ସୁଧରେ ଘର ତିଆରି ଋଣ । ସେ ଋଣରୁ ମୁକୁଳିବା ପରେ ପୁଣି କାର୍ ଲୋନ୍ । ତା'ରି ଭିତରେ କେତେବେଳେ ଯୌବନ ଗଡ଼ିଯାଇ ଆସିଥିଲା ପ୍ରୌଢ଼ତ୍ୱ । ସ୍ୱପ୍ନଗୁଡ଼ିକ ଦାନା ବାନ୍ଧିବା ପୂର୍ବରୁ ପାଣି ଫାଟିଯାଇଥିଲା । ଏକ ନିର୍ଦ୍ଦିଷ୍ଟ ଛାଞ୍ଚରେ ବ୍ୟାଙ୍କ୍ ତାଙ୍କୁ ଗୋଟିଏ ଋଣରୁ ଆଉ ଗୋଟିଏ ଋଣକୁ ଅମୁହାଁ ସୁଡ଼ଙ୍ଗ ଦେଇ ଗଡ଼େଇ ନେଇଥିଲା । କବିତା ଲେଖା ସେ ଧୀରେ ଧୀରେ ଛାଡ଼ି ଦେଇଥିଲେ । ତାଙ୍କ ନୀରବତାର କାରଣ ଜଣାଇ ଜଣେ ସହୃଦୟ ପାଠକ

ପାଖକୁ ସିଏ ସେ ସମୟରେ ଲେଖିଥିଲେ, "ମୁଁ ନିଜକୁ ଏତେ ପୂର୍ଣ୍ଣ ମନେ କରୁଛି ଯେ, କବିତା, ଏପରିକି ଚିଠି ଖଣ୍ଡେ ଲେଖିବା ପାଇଁ ବି କୌଣସି ପ୍ରେରଣା ଅନୁଭବ କରୁନାହିଁ ଆଜିକାଲି ।"

ସୁବ୍ରତବାବୁ ଚିଠିଟି ଲେଖିବାବେଳେ ବି ସଚେତନ ଥିଲେ ଯେ, ସେଦିନର ସେ ଚିଠି କେବଳ ଗୋଟାଏ ଚାଲାକି, ଗୋଟାଏ ମିଥ୍ୟାଚାର ଥିଲା । କବିତା ଲେଖା ଛାଡ଼ି ଦେବା ସମୟରେ ସର୍ଜନାତ୍ମକ ସମ୍ପର୍କରେ ତାଙ୍କର ଗୋଟିଏ ନୂଆ ଅନ୍ତର୍ଦୃଷ୍ଟି ଜାଗ୍ରତ ହୋଇଥିଲା । ସେ ଅନୁଭବ କରିଥିଲେ, ବୋଧହୁଏ ଏକରକମ ଅଭାବବୋଧ ହିଁ ସୃଜନଶୀଳତାର ଜନନୀ । ନିଜ ଚାରିପଟେ ଥିବା ସୃଷ୍ଟିର ଖୁଣ ଦେଖି କବିଟିଏ ଦ୍ୱିତୀୟ ଈଶ୍ୱର ସାଜେ । ହୁଏତ ଆଦ୍ୟ ଯୌବନରେ ନିଜର ଦାରିଦ୍ର୍ୟ, ଆଖିରେ ନ ପଡ଼ିବା ଭଳି ବ୍ୟକ୍ତିତ୍ୱ ଓ ନାରୀ ସଙ୍ଗର ଆବଶ୍ୟକତା ଏମିତିଆ ଅଭାବବୋଧଟେ ତିଆରି କରିଥିଲା ଯେ, ତାକୁଇ ଅତିକ୍ରମ କରିବାକୁ ସେ କବିତା ମାଧ୍ୟମରେ ଗୋଟେ ଆଦର୍ଶ ସୃଷ୍ଟିର ସ୍ୱପ୍ନ ଦେଖୁଥିଲେ । ଏବଂ ବ୍ୟାଙ୍କ୍ ଜୀବନର କୋଳାହଳହୀନ ସୁରକ୍ଷିତ ଆର୍ଥିକ ସ୍ଥିତି, ସୁନ୍ଦରୀ ସ୍ତ୍ରୀଙ୍କ ସଖ୍ୟ ସେ ଅଭାବବୋଧଗୁଡ଼ିକୁ ନିର୍ବାପିତ କରିଦେଇଥିଲା । ବେଳେବେଳେ ସିଏ ଭାବନ୍ତି ସତରେ କ'ଣ ଏଡ଼େ ସ୍ଥୂଳ ଥିଲା ତାଙ୍କର ଅଭାବବୋଧ ? ତାଙ୍କ ସୃଷ୍ଟିଶୀଳତାର କେନ୍ଦ୍ର କ'ଣ ଏତେ ଦୁର୍ବଳ ଥିଲା ? ମନ ସହଜରେ ମାନି ନିଏନି । ସମୟ ସମୟରେ ଏମିତି ଉଦ୍‌ବେଳନ ହୁଏ ନିଜ ଭିତରେ ଯେ, ନିଜକୁ ସ୍ଥିର ରଖିହୁଏନି । କେମିତି ଗୋଟାଏ ଅସନ୍ତୋଷ ତାଙ୍କୁ ଛଟପଟ କରିପକାଏ । ତଥାକଥିତ ଆର୍ଥିକ ସୁରକ୍ଷା, ଉପଦ୍ରବଶୂନ୍ୟ ଜୀବନ, ପ୍ରଚଣ୍ଡ ଶୋଷବେଳର ଅଧଗିଲାସେ ପାଣି ଭଳି ଲାଗେ । ନିଜ ଭିତରେ ଥିବା ସତ୍ତାଟିଏ ଯେପରି ତାଙ୍କୁ ଅତିକ୍ରମ କରିବାକୁ ଚେଷ୍ଟା କରୁଥାଏ । ସେ ଉଦ୍‌ବେଳନ ଏପରି ପ୍ରଚଣ୍ଡ ହୁଏ ଯେ, ତାଙ୍କୁ ଲାଗେ ସେ ଯେମିତି କିଛି ଗୋଟାଏ ଅପରାଧ କରି ପକେଇବେ । ହଠାତ୍, କିଛି ଗୋଟାଏ ଅଘଟଣ ଘଟାଇ ଦେବେ । ସହରର ଜନଗହଳି ପରିପୂର୍ଣ୍ଣ ଛକରେ ଖୁବ୍ ଜୋର୍‌ରେ ଚିତ୍କାର କରିଉଠିବେ । ଏକ୍‌ଜିକ୍ୟୁଟିଭ୍ ମିଟିଙ୍ଗ୍‌ରେ ପାଖରେ ବସିଥିବା ଖୁବ୍ ଉଚ୍ଚପଦସ୍ଥ ପଦାଧିକାରୀଙ୍କୁ ବିନା କାରଣରେ ଲଗାଇବେ ଦି'ଟା ବ୍ରହ୍ମ ଚାପୁଡ଼ା । ବା ଅକସ୍ମାତ୍ ପାଗଳ ହେଇଯିବେ । ନିଜର ପରିଧାନ ସବୁ ଖୋଲିଦେଇ ବାଦ୍‌ଶାହା ଭଳି ଚାଲିବେ ରାଜରାସ୍ତାରେ । ଏମିତି ଅଦ୍ଭୁତ ଚିନ୍ତା ବା ଖିଆଲ୍‌ର କୌଣସି କାରଣ ସେ ଖୋଜି ପାଆନ୍ତି ନାହିଁ । କିନ୍ତୁ ପ୍ରଚଣ୍ଡ ଭୟରେ ଜଡ଼ସଡ଼ ହୋଇଯା'ନ୍ତି । ସତକୁ ସତ ଏ କାମଗୁଡ଼ିକ ଯଦି କରି ବସନ୍ତି, କି ଅବସ୍ଥା ହବ ତାଙ୍କର । ଯେତିକି ଯେତିକି ଏ ଚିନ୍ତାଗୁଡ଼ାକ ଦୂରେଇ ଦେବାକୁ ଚେଷ୍ଟା କରନ୍ତି, ସେଗୁଡ଼ାକ ସେତିକି ସେତିକି ମାଡ଼ିଆସନ୍ତି । ଭୟ ସେତିକି ସେତିକି ବଢ଼ିଚାଲେ । ନିଜର ମାନସିକ ଭାରସାମ୍ୟ ରକ୍ଷା କରିବା କଷ୍ଟକର ହୋଇପଡ଼େ । ନିଜ ଅଫିସ୍ ପ୍ରକୋଷ୍ଠ ଭିତରେ ଟେବୁଲ୍ ଉପରେ ମୁଣ୍ଡଟି ମାଡ଼ି ସେ ଅର୍ଦ୍ଧସୁଷୁପ୍ତିରେ ବିତାଇ ଦିଅନ୍ତି ଅନେକ ସମୟ । ଠିକ୍ ଆଜି ଭଳି ।

"କ'ଣ ଏତେ ଭାବୁଛନ୍ତି ? ମୁଁ ପରା ଆପଣଙ୍କର ସେଇ ମୂର୍ତ୍ତି । ଏତେଦିନ ଏକାଠି ରହିବା ପରେ ବି ଚିହ୍ନି ପାରିଲେନି ?" ତରୁଣୀଙ୍କର ମୃଦୁ ତିରସ୍କାରରେ ପୁଣି ଥରେ ସଚେତନ ହେଇଗଲେ ସୁବ୍ରତ ବାବୁ । ତାଙ୍କର କଥାଗୁଡ଼ା ଏକ ଅଦ୍ଭୁତ ଶିହରଣ ଖେଳାଇ ଦେଲା ଦେହରେ । ହଠାତ୍ ସୁଡ଼ଙ୍ଗ ଶେଷରେ ଆଲୋକ ଦେଖିବା ଭଳି ସେ ମୁହୁର୍ମୁହୁଃ ଶିହରିତ ହେଲେ । ସତ ତ ! ଅବିକଳ ପ୍ରତିମାଟିର ଚେହେରା ସାଙ୍ଗେ ମିଶିଯାଉଛି ଯୁବତୀଟିର ଅବୟବ । ସେଇ ସ୍ୱପ୍ନିଳ ଭସା ଭସା ଆଖି, ତୀକ୍ଷ୍ଣ ନାସା । କାଞ୍ଚୁଲାକୁ ତୀବ୍ରତାରେ ଅତିଷ୍ଠ କରୁଥିବା ସ୍ତନ ଯୁଗଳ । ସ୍ୱଚ୍ଛ ବସ୍ତ୍ର ଉହାଡ଼ରୁ ଦୃଷ୍ଟିଗୋଚର ହେଉଥିବା ସୁଗଭୀର ନାଭି ଓ କ୍ଷୀଣ କଟି । କି ଅଦ୍ଭୁତ ସାମଞ୍ଜସ୍ୟ !

ସେଇଥିପାଇଁ ବୋଧହୁଏ ମୂଳରୁ ଚିହ୍ନା ଚିହ୍ନା ଲାଗୁଥିଲା, ଅଥଚ ସିଏ ଜାଣିପାରୁନଥିଲେ କୋଉଠି ଦେଖିଥିଲେ ବୋଲି । କିନ୍ତୁ ମୂର୍ତ୍ତିକାରର କଳ୍ପନା ଓ ଜଣେ ଜୀବନ୍ତ ମନୁଷ୍ୟର ଏତେ ନିବିଡ଼ ସାମଞ୍ଜସ୍ୟ କେମିତି ?

"କ'ଣ ବିଶ୍ୱାସ ହେଉନି ନା ? ଆଜିଠୁ ଠିକ୍ ଦଶବର୍ଷ ତଳେ ମୋତେ ପରା ଆପଣ କିଣି ଆଣିଥିଲେ ।"

ଆରେ, ମୂର୍ତ୍ତି କିଣିବା ରହସ୍ୟଟି ଯୁବତୀ ଜଣକ ଜାଣିଲେ କେମିତି ? ସତକୁ ସତ ଦଶବର୍ଷ ତଳେ ଏକଦା ମ୍ୟାନେଜ୍‌ମେଣ୍ଟ ଟ୍ରେନିଂ ନେବା ଅବସରରେ ସେ ଯାଇଥିଲେ ପ୍ରବାସ । ଦାର୍ଶନିକ ପିଟର ଡ୍ରକର୍‌ଙ୍କ ତତ୍ତ୍ୱ ତାଙ୍କୁ ଖୁବ୍ ପ୍ରଭାବିତ କରିଥିଲା ସେତିକିବେଳେ । ଜର୍ମାନୀର କଳକାରଖାନାମାନଙ୍କରେ ଉତ୍ପାଦନ ବଢ଼ାଇବା ପାଇଁ ଡ୍ରକର୍ ମହାଶୟ ଗୋଟିଏ ଅଦ୍ଭୁତ ପ୍ରସ୍ତାବ ଦେଇଥିଲେ । ତରୁଣ ମ୍ୟାନେଜର୍‌ମାନଙ୍କ ବ୍ୟକ୍ତିଗତ ସହକାରୀ ଭାବେ ସୁନ୍ଦରୀ ତରୁଣୀମାନଙ୍କୁ ନିଯୁକ୍ତି ଦିଆଯାଇଥିଲା । ସେମାନଙ୍କ ପ୍ରେରଣା ଫଳରେ ସେହି ତରୁଣମାନେ ସଫଳତାର ଶୃଙ୍ଗରୁ ଶୃଙ୍ଗକୁ ଆରୋହଣ କରିପାରୁଥିଲେ ଓ ସାମୂହିକ ଭାବରେ ଉତ୍ପାଦନ ବଢ଼ି ଚାଲିଥିଲା । ଅନ୍ୟ ଶିକ୍ଷାନବିସମାନଙ୍କ ସହ ସନ୍ଧ୍ୟାରେ ବଜାରରେ ବୁଲୁଥିବା ଅବସରରେ ସିଏ ଦେଖିଥିଲେ ଅଦ୍ଭୁତ ଭାବରେ ସୁନ୍ଦର ସ୍ଫଟିକର ନାରୀ ପ୍ରତିମାଟିଏ । କିଣିବା ପରେ ଜଣେ ବନ୍ଧୁ ପଚାରିଥିଲେ, "ସେଇଟା କ'ଣ ?"

'ପ୍ରେରଣା' ବ୍ୟଙ୍ଗ କରିଥିଲେ ସୁବ୍ରତ ବାବୁ, "ଡ୍ରକର ପରା କହିଛି ଏମିତି ପ୍ରେରଣାଦାତ୍ରୀଟିଏ ଦରକାର ସଫଳ ହେବା ପାଇଁ । ସେଇଥି ପାଇଁ ବୋଧେ ମୁଁ ଆଜିଯାଏଁ ସଫଳ ହେଇପାରୁନି ।"

"କାଇଁ, ତୋ ଲେଡି ସେକ୍ରେଟାରୀ ପ୍ରେରଣା ଦେଇପାରୁନି କି ?"

"ଦିଅନ୍ତା ଯେ, ୟୁନିଅନ୍ ତାକୁ କରେଇ ଦଉଛି କୋଉଠି ? ଦାୟିତ୍ୱ ତୁଲେଇବା ଅପେକ୍ଷା ୟୁନିଅନ୍‌ର ବଶ୍ୟତା ଅଧିକ ଦରକାର ଆଜିକାଲି ।"

"ଯାହା କହ ଭାଇ, ଖୁବ୍ ସୁନ୍ଦର ହେଇଛି । ବେଶୀ ପ୍ରେରଣା ନବୁନିବେ ଭାଉଜ ଈର୍ଷା କରିବେ ।" ଥଟ୍ଟା କଲେ ଆଉ ଜଣେ ବନ୍ଧୁ ।

ସତକୁ ସତ ଏକ ଅହେତୁକ ମାୟା ଲାଗିଯାଇଥିଲା ମୂର୍ତ୍ତିଟିକୁ ଦେଖିବା ପରେ । ଦିନାକେତେ ଘରେ ରଖିଥିଲେ ସେଇଟିକୁ । କିନ୍ତୁ ବ୍ୟାଙ୍କ୍‌ର ବଡ଼ ଶାଖାଟିଏର ବ୍ରାଞ୍ଚ୍ ମ୍ୟାନେଜର୍ ଯେତେବେଳେ ହେଲେ, ତାଙ୍କ ଶୀତତାପନିୟନ୍ତ୍ରିତ କୋଠରିକୁ ସ୍ଥାନାନ୍ତରିତ ହେଇଥିଲା ମୂର୍ତ୍ତିଟି । ନିଜ ଟେବୁଲ୍‌ଠାରୁ ଏକ ନିର୍ଦ୍ଦିଷ୍ଟ ଦୂରତ୍ୱରେ ଅନେକ ଦିନ ଧରି ଶୋଭା ପାଉଥିଲା । ଆଜି ହଠାତ୍ ସେହି ସ୍ଥାନକୁ ଲକ୍ଷ୍ୟ କରି ଚମକି ପଡ଼ିଲେ ସୁବ୍ରତବାବୁ । ସେତେବେଳକୁ ପୂର୍ବ ନିର୍ଦ୍ଧାରିତ ସ୍ଥାନରୁ ମୂର୍ତ୍ତିଟି ଅନ୍ତର୍ହିତ ହୋଇଯାଇଥିଲା ।

"କ'ଣ ଚମକି ପଡ଼ିଲେ ଯେ ? ମୁଁ ସେଇ ମୂର୍ତ୍ତି ବୋଲି ଏଥର ବିଶ୍ୱାସ ହେଲା ତ ?"

ଯୁବତୀ ଜଣଙ୍କୁ କି ଉତ୍ତର ଦେବେ ସ୍ଥିର କରିପାରୁନଥାନ୍ତି ସୁବ୍ରତବାବୁ । ଜଣେ ଅପରୂପା ସୁନ୍ଦରୀ ନାରୀ ନିଜକୁ ପଥରର ମୂର୍ତ୍ତିଟିଏ ବୋଲି ପରିଚୟ ଦେଲେ କେମିତି ବିଶ୍ୱାସ କରନ୍ତେ ସିଏ ? ଅଥଚ ଯେଉଁଠି ମୂର୍ତ୍ତିଟି ରହିବା କଥା ସେଠି ସେଇଟି ନାହିଁ ଏବଂ ମୂର୍ତ୍ତିର ଚେହେରା ସହ ଅବିକଳ ମିଶିଯାଉଛି ସୁନ୍ଦରୀଙ୍କର ଚେହେରା । ଜୀବନ୍ତ ମଡେଲ୍‌କୁ ଆଖି ଆଗରେ ରଖି ଶିଳ୍ପୀ ଚିତ୍ର କରିବା ବା ମୂର୍ତ୍ତି ଗଢ଼ିବା କଥା ସିଏ ଜାଣିଥିଲେ; କିନ୍ତୁ ପ୍ରତିମାଟିଏର ଛାଞ୍ଚରେ ଜଣେ ଜୀବନ୍ତ

ମନୁଷ୍ୟର ଆବିର୍ଭାବ ହେବ, ଏ କଥା ତାଙ୍କ ପାଇଁ ଥିଲା କୁହୁକଠାରୁ ଆହୁରି ଅବିଶ୍ୱାସ୍ୟ । କଥାଟା ଏଡ଼େଇ ଯିବା ପାଇଁ ସିଏ ଏଥର ମୁରୁକି ହସାଟିଏ ଦେଇ କହିଲେ,

"ସତକଥାଟିଏ କହିବାର ସୁଯୋଗ ଦେବେ ?" ଆଉ ତାଙ୍କ ଉତ୍ତରକୁ ଅପେକ୍ଷା ନ କରି ପୁଣି କହିଲେ, "ଆପଣ ଯେମିତି ସୁନ୍ଦରୀ, ସେହିଭଳି ଚମତ୍କାର ଆପଣଙ୍କ ସେନ୍ସ ଅଫ୍ ହ୍ୟୁମର୍ ।"

"ଆରେ ନା ନା, ସେନ୍ସ ଅଫ୍ ହ୍ୟୁମର୍ କାହିଁକି ହବ ? ମୁଁ ଯେ ନିରାଟ ସତ କଥାଟେ କହୁଛି । ଦୀର୍ଘଦିନରୁ ଆପଣଙ୍କୁ ସଖ୍ୟ ଦେଇଥିବା ମୁଁ ସେଇ ପଥରର ମୂର୍ତ୍ତିଟିଏ ।" ଖୁବ୍ ଆତୁରତା ପ୍ରକାଶ କରି ସଫେଇ ଦେଲେ ତରୁଣୀ ଜଣକ ।

"ହେଲା ବାବା ହେଲା, ମୁଁ ମାନି ଯାଉଛି ଆପଣ ସେଇ ପଥରର ମୂର୍ତ୍ତି । କିନ୍ତୁ ସେଇଟା ଯେ କ୍ଷଣକ ଆଗରୁ ନିର୍ଜୀବ ଥିଲା । ଜଡ଼ ବସ୍ତୁ ଖଣ୍ଡେ ଏଭଳି ସୁନ୍ଦରୀ ନାରୀରେ ପରିଣତ ହେଇଯିବା କଥା କେବଳ ରାମାୟଣରୁ ଶୁଣିଥିଲା ମଣିଷ; ଏ ଯୁଗରେ ଗୌତମଙ୍କ ତପଃଶକ୍ତି ଅଛି କାହାର ଯେ, ସେ ନାରୀକୁ ପଥର କରିଦେବ, ନା ଅବତାର ପୁରୁଷ ରାମଚନ୍ଦ୍ର କାହାନ୍ତି ଯେ, ତାଙ୍କ ପାଦ ବାଜି ସେ ପଥର ପୁଣି ନାରୀ ହେଇଯିବ ?"

"ଦେଖନ୍ତୁ ନିର୍ଜୀବ ଓ ସଜୀବ କଥା କହିଲେ ଯେ, ତା' ଭିତରେ ପାର୍ଥକ୍ୟ କ'ଣ ଏଡ଼େ ସ୍ପଷ୍ଟ ? କେଉଁ ଜିନିଷଟି ଜୀବନ୍ତକୁ ନିର୍ଜୀବଠାରୁ ପୃଥକ୍ କରେ କହିଲେ ? ବଡ଼ ବଡ଼ ବୈଜ୍ଞାନିକମାନେ ବି କ'ଣ ନିର୍ଦ୍ଦିଷ୍ଟ ଭାବରେ ଜୀବନର ସଂଜ୍ଞା କରିଦେଇପାରିବେ ?" ଭୁରୁକୁ ନାଟକୀୟ ଢଙ୍ଗରେ ଦୋହଲାଇ ପ୍ରଶ୍ନ କଲେ ସୁନ୍ଦରୀ ।

ତା' ପରର ଦୀର୍ଘ ନୀରବତାରେ ସୁବ୍ରତବାବୁ ମନେ ପକେଇଲେ ସ୍କୁଲ୍ ଜୀବନରେ ସିଏ ପଢ଼ିଥିବା ବିଜ୍ଞାନ ବହିରେ ସଜୀବ ଓ ନିର୍ଜୀବ ମଧ୍ୟରେ ପାର୍ଥକ୍ୟ । ମନେପଡ଼ିଲା ବିଜ୍ଞାନ ଶିକ୍ଷକ ଘୋଷାଇଥିବା ସାତଟି ଯାକ ଲକ୍ଷଣ । ଯଥା : ମଳତ୍ୟାଗ, ଅଭିବୃଦ୍ଧି, ଉତ୍ତେଜନା ପ୍ରବଣତା, ଚଳପ୍ରଚଳ, ପୁଷ୍ଟି ସାଧନା, ପ୍ରଜନନ ଓ ଶ୍ୱାସକ୍ରିୟା । ପୁଣି କହିଥିଲେ ବ୍ୟତିକ୍ରମଗୁଡ଼ିକ କଥା । ଯଥା : ଗଛର କେତେକ ଲକ୍ଷଣ ନଥାଇ ବି ସେ ଜୀବନ୍ତ । ପୁଣି ବିଲ୍‌କୁଲ୍ କୌଣସି ଗୋଟିଏ ଲକ୍ଷଣ ନଥାଇ ବି ଭୂତାଣୁ ବା ଭାଇରସ୍ ବି ଜୀବନ୍ତ । ତେବେ ଭାଇରସ୍ ଓ ପଥରଟିଏର କ୍ଷୁଦ୍ରାଦପି କ୍ଷୁଦ୍ର ଅଣୁ ଭିତରେ ପାର୍ଥକ୍ୟ କ'ଣ ?

"ଦେଖନ୍ତୁ, ଯାହାକୁ ଜଡ଼ ବସ୍ତୁଟିଏ ବୋଲି ଆପଣ ଭାବୁଛନ୍ତି ତା'ର ମୂଳ ଉପାଦାନ ଓ ସଜୀବଟିଏର ମୂଳ ଉପାଦାନ ଭିତରେ କିଛି ଫରକ୍ ଅଛି କି ? ଚରମ କଣିକାର ସ୍ତରରେ ଉଭୟ କ'ଣ ଏକା ନୁହଁନ୍ତି ?" ଦୋହରାଇଲେ ଯୁବତୀ ।

"ହଁ, ଯେ, ତେବେ ସେଇ ମୂଳ ଉପାଦାନଗୁଡ଼ିକ ଗୋଟିଏ ନିର୍ଦ୍ଦିଷ୍ଟ ସଂଗଠନରେ ଏକାଠି ହେଲେ ସିନା ତାକୁ 'ଜୀବନ୍ତ' ବୋଲି କୁହାଯିବ ? ଗୋଟିଏ ଅଣୁ ଭିତରେ ପରମାଣୁମାନଙ୍କର ଯଥେଚ୍ଛା ଘୂର୍ଣ୍ଣନକୁ ତ ଆଉ ଜୀବନ କୁହାଯାଇପାରିବ ନାହିଁ । ଜୀବନ୍ତ ଆଖ୍ୟା ପାଇବାକୁ ହେଲେ ସେହି ଚରମ ଉପାଦାନଗୁଡ଼ିକର ଗୋଟିଏ ଶୃଙ୍ଖଳା ରହିଥିବା କଥା । ନୁହେଁ କି ?" କହିଲେ ସୁବ୍ରତବାବୁ ।

"ଠିକ୍ କଥା । ଭାବନ୍ତୁ ତ ପୃଥିବୀରେ ଜୀବଜଗତ ତିଆରି ହେବାର ପ୍ରଥମ ମୁହୂର୍ତ୍ତ । କେଉଁ ପ୍ରକ୍ରିୟାଟି ସତରେ ସେଇ ଶୃଙ୍ଖଳାକୁ ନିର୍ଦ୍ଦିଷ୍ଟ କରିଦେଇ ଆରମ୍ଭ କରିଥିବ ଜୀବନର ପ୍ରଥମ ମାଙ୍ଗଳିକ ? ବିଜ୍ଞାନ ଯେତେବେଳେ ଏ ବିଷୟରେ ନୀରବ ସେଇ ମୁହୂର୍ତ୍ତଟିକୁ କି ନାଁରେ ଡାକି ହବ କୁହନ୍ତୁ ତ ? ଈଶ୍ୱରଙ୍କ ମିରାକ୍ଲ ? କୁହୁକ ?"

"ବିଜ୍ଞାନ କଥା ଛାଡ଼ନ୍ତୁ ମ । ଆପଣଙ୍କ ନିଜ କଥା କୁହନ୍ତୁ ନା ।" କଥାବାର୍ତ୍ତାର ଦିଗକୁ ପୁଣି ଆଦି ରସାପ୍ଲୁତ କରିବାକୁ ଚେଷ୍ଟା କଲେ ସୁବ୍ରତ ବାବୁ ।

"କେଉଁ କୁହୁକ ବଳରେ ମୋ ଭଳି ଜଣେ ଅକିଞ୍ଚନ ପାଖରେ ପଥରରୁ ରୂପାନ୍ତରିତ ହେଲା ଆପଣଙ୍କ ଭଳି ସୁନ୍ଦରୀଟିଏ ।"

"ପ୍ରେମ । ଆପଣଙ୍କର ଗଭୀର ପ୍ରେମ ।" ନୀଳାଭ ଡୋଳାରେ ମୃଦୁ ଲଜ୍ଜା ପ୍ରକାଶ କରି ଧୀରେ କହିଲେ ସୁନ୍ଦରୀ ।

"ସତରେ !" ନିଜ କାନକୁ ବିଶ୍ୱାସ କରିପାରୁନଥିଲେ ସୁବ୍ରତ ବାବୁ । ଭାବୁଥିଲେ ଏଭଳି ସ୍ପଷ୍ଟ ସ୍ୱୀକାରୋକ୍ତି କେମିତି କରିପାରିଲେ ଯୁବତୀ ଜଣକ ।

"କ'ଣ ବିଶ୍ୱାସ ହେଉନି ନା ? ଯଦି ଭକ୍ତମାନଙ୍କ ଭକ୍ତି ନିମ୍ବ ଦାରୁ ଖଣ୍ଡେକୁ ଜଗତର ନାଥ, ଈଶ୍ୱରରେ ପରିଣତ କରିଦେଇପାରୁଛି, ଆପଣଙ୍କ ପ୍ରେମ ମୋତେ ସ୍ଫଟିକ ପଥରରୁ ଛାର ନାରୀଟିଏରେ ପରିଣତ କରିପାରିବ ନାହିଁ କାହିଁକି ?

ଏକ ଅଭିନବ ପୁଲକରେ ବାରମ୍ୱାର ରୋମାଞ୍ଚିତ ହେବାକୁ ଲାଗିଲେ ସୁବ୍ରତ ବାବୁ । ସତରେ କ'ଣ ତାଙ୍କ ପ୍ରେମ ଦ୍ୱାରା ସମ୍ଭବ ହେଇପାରିଛି ଏଭଳି କୁହୁକ ? ସୁନ୍ଦରୀର ଉକ୍ତି ବାସ୍ତବ ନ ହେଇଥାଉ ପଛକେ, କିନ୍ତୁ ତାଙ୍କ ପ୍ରେମକୁ ଆପଣାର ବ୍ରୀଡ଼ାମିଶ୍ରିତ ସ୍ୱୀକୃତି ଦେଇସାରିଛି । ସେ ଯେଉଁଠାରୁ ସୃଷ୍ଟି ହେଇଥାଉ ପଛକେ, ତାଙ୍କ ଭଳି ଜଣେ ପ୍ରୌଢ଼କୁ ତ ନିଃସଙ୍କୋଚ ପ୍ରେମ ନିବେଦନ କରିପାରିଛି । ଅଭିସାରିକାର ବେଶ ନେଇ ଏତେ ସମୟ ବସିରହିଛି ତାଙ୍କ ଆଗରେ । ସେଇ କ'ଣ ତାଙ୍କ ପାଇଁ ଯଥେଷ୍ଟ ନୁହେଁ ? ତାଙ୍କ ପୌରୁଷ ପାଇଁ ଏକ ଆଶ୍ୱାସନା ନୁହେଁ ? କିନ୍ତୁ ମନକୁ ବାରମ୍ୱାର କଥାଟିଏ ଚହଲାଇ ଦେଉଥାଏ । ସେ ସ୍ୱପ୍ନ ଦେଖୁ ନାହାନ୍ତି ତ ? ବୋଧହୁଏ ସ୍ୱପ୍ନଟି ସରିଯିବ ଏଇନା । ସିଏ ପୁଣି ଫେରିଯିବେ ବ୍ୟାଙ୍କର ହିସାବ ଖାତା ବା ପରିବାରର ଚାଞ୍ଚଲ୍ୟହୀନ ଗତାନୁଗତିକତାକୁ । ମନେ ମନେ ପ୍ରାର୍ଥନା କଲେ, "ହେ ଭଗବାନ୍... ଯଦି ଏହା ସ୍ୱପ୍ନ ହୋଇଥାଏ, ତେବେ ବି ଭାଙ୍ଗ ନାହିଁ, ବରଂ ସ୍ୱପ୍ନରେ ହିଁ ଅବସାନ ହେଉ ଏ ଜୀବନ ।"

ପ୍ରକାଶ୍ୟରେ କହିଲେ, "ତେବେ ସୁନ୍ଦରୀ, ଯଦି ମୋ ପ୍ରେମରେ ଆପଣଙ୍କର ବିଶ୍ୱାସ ଥାଏ, ତେବେ ରହିଯାଆନ୍ତୁନା ଚିରଦିନ ମୋ ଜୀବନରେ ।"

"ତା' ତ ହେଇ ପାରିବନି । ଆପଣଙ୍କ ପ୍ରେମର ଗଭୀରତା ଦୃଷ୍ଟିରୁ ମୁଁ କିଛି ସମୟ ପାଇଁ ମଣିଷ ହେଇଯାଇଥିଲି । ଭାବନ୍ତୁ ତ କୋଟି କୋଟି ଭକ୍ତ ଅହରହ ଭକ୍ତି ପ୍ରକଟ କରୁନଥିଲେ, ଦେବତାଗୁଡ଼ିକ କ'ଣ କାଠ, ପଥର ପାଲଟିଯାଆନ୍ତେ ନାହିଁ ? ଆପଣଙ୍କର ଏତେ ଦିନର ନିବିଡ଼ତା ଯୋଗୁଁ ଆପଣଙ୍କ ଦୁର୍ବଳତମ ମୁହୂର୍ତ୍ତଟିଏରେ ଆସି ଭରି ଦେଇଗଲି ବଂଚିବା ପାଇଁ ନୂଆ ଆଶାଟିଏ । ଯାହା ଆପଣଙ୍କ ପାଖେ ପାଖେ ଥିଲା; ଅଥଚ ଆପଣ ଖୋଜୁଥିଲେ ଭିନ୍ନ ଭିନ୍ନ ବ୍ୟକ୍ତିମାନଙ୍କ ପାଖରେ । ବୋଧହୁଏ ମୋର ସମୟ ହେଇଆସିଲାଣି । କିୟତ୍ କ୍ଷଣ ପରେ ପୁଣି ମୋତେ ଫେରିଯିବାକୁ ପଡ଼ିବ ଅନନ୍ତ ଜଡ଼ତା ଭିତରକୁ ।"

ଚମକି ପଡ଼ିଲେ ସୁବ୍ରତ ବାବୁ । ଏକ ଉତ୍ତୁଙ୍ଗ କୋହ ଉକୁଟି ହେଇ ଆସିଲା ତାଙ୍କ ଅନ୍ତଃସ୍ଥଳରୁ । ଆହା, ସୁନ୍ଦରୀ ପୁଣି ପଥର ହେଇଯିବେ ? ସ୍ୱପ୍ନ ତାଙ୍କର ଭାଂଗିଯିବ ଅବଲୀଳା କ୍ରମେ ?

"ତେବେ ମୋତେ ବି ଆଉ ଦରକାର ନାହିଁ ଏ ଜୀବନ । ଗତାନୁଗତିକତାର ପୂତିଗନ୍ଧରେ ମୁଁ ବି ଅତିଷ୍ଠ ହୋଇଗଲିଣି । ମୁଁ ବି ଆପଣଙ୍କ ଭଳି ମୂର୍ତ୍ତିଟିଏ ହେଇଯିବାକୁ ଚାହେଁ । ଅନ୍ତତଃ

ଆପଣଙ୍କ ସାହଚର୍ଯ୍ୟ ତ ପାଉଥିବି ଅନନ୍ତକାଳ ଯାଏଁ । ମୁଁ ତେଣୁ ଆଜି ଏ ଜୀବନକୁ ଅସ୍ୱୀକାର କରୁଛି । ମୋତେ ବି ପଥରର ମୂର୍ତ୍ତିଟିଏରେ ପରିଣତ କରିଦିଅ ସୁନ୍ଦରୀ । ତମରି ପାଖେ ପାଖେ ଚିରଦିନ ରହି ସମୟକୁ ବି ଯେମିତି ଅସ୍ୱୀକାର କରିପାରିବି ।" ଏକ ବିୟୋଗାନ୍ତକ ନାଟକର ନାୟକ ଭଳି ସଂଳାପଟିଏ ଦେଲେ ସୁବ୍ରତବାବୁ ।

ସୁନ୍ଦରୀ ଜଣକ ସାମାନ୍ୟ କରୁଣାପୂର୍ଣ୍ଣ ଦୃଷ୍ଟିରେ ଆଶ୍ୱାସନା ଦେଲେ, ନା, ନା, ତା' ତ ହେଇପାରିବନି । ବିବର୍ତ୍ତନର ଏମିତି ଏକ ସ୍ତରରେ ଆପଣ ପହଞ୍ଚିସାରିଛନ୍ତି, ସେ ଚେତନା ଆପଣଙ୍କୁ ପୁଣି ଜଡ଼ ପଦାର୍ଥରେ ପରିଣତ କରିବାକୁ ଦେବନି କେବେ ହେଲେ । ତା'ଛଡ଼ା ଜଡ଼ ସ୍ତରରେ ହରାଇବାର ଦୁଃଖ ସିନା ନାହିଁ, ପାଇବାର ଆନନ୍ଦ ବି ନାହିଁ ଯେ ! ଚେତନାର ସେ ସୁପ୍ତ ସ୍ତରରେ ଆପଣ ଓ ମୁଁ ଏ ଭିନ୍ନତା ବି ଅନ୍ତର୍ହିତ ହେଇଯିବ ।"

"ତେବେ କ'ଣ ମୁଁ କରିବି ? ତମର ଅବର୍ତ୍ତମାନରେ ଏ ଜୀବନ ବଂଚିବି କେମିତି ?"

"ଦେଖନ୍ତୁ ଆପଣ ଯେଉଁଠି ଅଛନ୍ତି ସେଇଠି ଥାଆନ୍ତୁ । କିନ୍ତୁ ଆହୁରି ନିବିଡ଼ ହେଇଯାଆନ୍ତୁ ମୋ ସହ । ମନେ ରଖିଥିବେ ମୁଁ ସବୁବେଳେ ଆପଣଙ୍କ ପାଖେ ପାଖେ ଅଛି । ଆପଣଙ୍କ ଏକାନ୍ତ ନିଜର ହେଇ, ଆପଣଙ୍କ ଅନ୍ତରର ଗଭୀରତମ ପ୍ରଦେଶରେ । ସମୟ ଓ ପରିସ୍ଥିତିର ପରଦାଗୁଡ଼ିକ ଆଡ଼େଇ ଦେଲେ, ନିଜ ଭିତରକୁ ନିରିଖେଇ ଦେଖିଲେ, ଏଇମିତି ମୁଁ ଦିଶିଯାଉଥିବି ବେଳେ ବେଳେ, ଏକବାର ଏକାନ୍ତ ନିରେଳା ସମୟହୀନତାରେ ।"

ସୁନ୍ଦରୀଙ୍କ କଥା ସରିବା ମାତ୍ରକେ ସୁବ୍ରତବାବୁଙ୍କର ମନେହେଲା, ଯୁବତୀ ଜଣଙ୍କ ଶରୀର ଧୀରେ ଧୀରେ ମିଳେଇ ଗଲା ଇଥର୍‌ରେ, ତାଙ୍କ ଆଖି ସାମ୍ନାରେ । ହଠାତ୍ ସିଏ ଦେଖିପାରିଲେ ତାଙ୍କ ପୂର୍ବ ପରିଚିତ ପଥର ମୂର୍ତ୍ତିଟିକୁ ପୁଣି ତା' ନିଜ ସ୍ଥାନରେ । ଏଥର ମୂର୍ତ୍ତିଟିର ହସ କିନ୍ତୁ ପୂର୍ବାପେକ୍ଷା ଥିଲା ଆହୁରି ସ୍ପଷ୍ଟ, ଆହୁରି ଆକର୍ଷଣୀୟ ।

(ଗଳ୍ପଟିର କଥାବସ୍ତୁ ପାଇଁ ପ୍ରେରଣା ଶ୍ରୀଯୁକ୍ତ ଦେବେନ୍ଦ୍ରନାଥ ମହାପାତ୍ର, (ଚେୟାର୍‌ମ୍ୟାନ୍ ବଲାଙ୍ଗୀର ଗ୍ରାମ୍ୟ ବ୍ୟାଙ୍କ)ଙ୍କ ସହ କଥୋପକଥନ ଓ ଶ୍ରୀଯୁକ୍ତ ସହଦେବ ସାହୁ (ସେକ୍ରେଟାରୀ, ରାଜସ୍ୱ ଓ ଅବକାରୀ ବିଭାଗ, ଓଡ଼ିଶା ସରକାର)ଙ୍କ ଝଙ୍କାର, ୧୯୯୫ ପୂଜା ସଂଖ୍ୟାରେ ପ୍ରକାଶିତ ପ୍ରବନ୍ଧ 'ଜୀବନର ସଂଜ୍ଞା, ରୂପ ଓ ଲକ୍ଷଣ'ରୁ ପାଇଥିବାରୁ, ଏ ଗଳ୍ପର ପ୍ରକାଶନ ଅବସରରେ ସେମାନଙ୍କୁ ମୋର ଗଭୀର ଶ୍ରଦ୍ଧା ଅର୍ପଣ କରୁଛି ।)



# ବାପା

## ପ୍ରଦୀପ କୁମାର ଦାଶ

ତା'ପରେ ଆଉ ବାପା ଆସି ନାହାନ୍ତି । ବେଉଷଣ କାମରୁ ଫୁର୍‌ସତ୍ ମିଳୁନାହିଁ ବୋଲି ଖବର ପଠାଇଛନ୍ତି । ଦୁର୍ଘଟଣା ଖବର ପାଇବା ଦିନ ଅବଶ୍ୟ ଆସିଥିଲେ; ମାତ୍ର ସନ୍ଧ୍ୟା ସୁଦ୍ଧା ପୁଣି ଫେରି ଯାଇଥିଲେ । ଡ୍ରାଇଭରର ଚଉଦ ପୁରୁଷକୁ ଉଝାଳି ଗୁଡାଏ ବ୍ରହ୍ମୋତ୍ତର ଅଭିସମ୍ପାତ୍ ବିଭିନ୍ନ ଲୋକଙ୍କ ଉଦ୍ଦେଶ୍ୟରେ ବ୍ୟୟ କରି ଫେରିଥିଲେ ସେ । ଯିବାବେଳେ ବୋଉକୁ ଫାଟକ ପାଖକୁ ଡାକିନେଇ କ'ଣ ସବୁ ନିର୍ଦ୍ଦେଶ ଦେଇଯାଇଥିଲେ; ମୋତେ ଅଗୋଚର ଥିଲା । ତେବେ ଆବଶ୍ୟକ ହେଲେ ସାନଭାଇ ବୁଲୁକୁ ପଠାଇ ଖବର ଦେବା ପାଇଁ କହି ଯାଇଛନ୍ତି ବୋଲି ବୋଉ ପରେ ଜଣାଇଥିଲା । ବାସ୍, ଆଉ ଆସିନାହାନ୍ତି । ପୁଅର ଏଭଳି ପରିସ୍ଥିତିରେ ବାପଟିଏ ଦୂରରେ ରହିଯାଉଥିବା ଦେଖଣାହାରିଙ୍କ ପାଇଁ ନିଶ୍ଚିତ ଭାବରେ ଏକ ଅଶୁଭ ବାର୍ତ୍ତା । ମାତ୍ର ପ୍ରକୃତରେ ସେମିତି କିଛି ଅଶୁଭ ତିକ୍ତତା ବା କଳିଗୋଳ ଆମ ଭିତରେ ନଥିଲା । ଅଥଚ ଏହି ନ ଆସିବାର ଉପେକ୍ଷାମୟ ଘଟଣାଟି ମୋତେ ଭାରି ଅସହାୟ କରି ଦେଉଥିଲା ଅଧିକାଂଶ ଦର୍ଶନାଭିଳାଷୀଙ୍କ ପ୍ରଶ୍ନିଳ ଆଖିକୁ ଅନେଇ ହେଉନଥିଲା ଓ ଏମିତି ଏକ ଅପମାନକର ଅବାଞ୍ଛିତ ଜୀବନ ନିଜକୁ ବୋଝ ପରି ଲାଗୁଥିଲା ।

କାରଣ, ଜୀବନରେ ଆଉ ଥରେ ଠିଆ ହୋଇ ପାରିବାର ସ୍ୱପ୍ନ ମୁଁ ଦେଖିପାରୁ ନଥିଲି । ମାତ୍ର ପଇଁତିରିଶ ବର୍ଷ ବୟସରେ ଏମିତି ପଙ୍ଗୁ- ଅକାମୀ ହୋଇଯିବାଟା ଅସ୍ୱାଭାବିକ । କେହି ଏ କଥା ଚିନ୍ତା କରି ନଥିବେ । ଅଥଚ ସେହି ଅଚିନ୍ତନୀୟ ଚିନ୍ତାରେ ମୋର ଦିନ ରାତି ଏଣିକି ଏକାକାର । ଗତ ଗୋଟିଏ ମାସ ଧରି ଏକା ପ୍ରକାର ଶେଯରେ ପଡିପଡି ମୁଁ ପ୍ରାୟ ବେହୋସ । କିଛି କଥା ଭଲ ଲାଗେନି । ବାଁ ପାଦଟା ଅଚଳ-ଅବଶ । ନିଜ ଦେହର ବାସି ଗନ୍ଧରେ ତିକ୍ତ-ବିରକ୍ତ ସମଗ୍ର ଅନୁଭବ ସମୂହ । ହଠାତ୍ ଜଣେ ଅଥର୍ବ ବୃଦ୍ଧରେ ପରିଣତ ହୋଇ ଯାଉଥିବାର ଦୁଃଖ ମୋତେ ବିକଳ ବିଧୁତ କରି ଦେଉଥିଲା ଦିନୁ ଦିନ । ଖଟ ତଳେ ଶ୍ରୀମତୀ ଥୋଇଦେଇଯାଏ ଗୋଟାଏ କଳେଇଛଡ଼ା ଆଲୁମିନିୟମ୍ କରେଇ । ହିସି ଲାଗିଲେ କାତେଇ ପଡି ବାଁ ହାତରେ ଅଣ୍ଡାଳି ଉଠାଇ ଆଣେ ଶେଯ ଉପରକୁ । କାମ ସାରି ପୁଣି ସେହି ଢଙ୍ଗରେ ରଖିବାକୁ ପଡ଼େ କରେଇଟା । ହୁଏତବା କେତେ ବେଳେ ଚଲ୍‌କିଯାଏ ପାତ୍ରଟି । ହେଲାବେଳେ କିଛି ଅଂଶ ପଡିଯାଏ ପିନ୍ଧା ଧୋତିରେ । ଶୀଘ୍ର ସଫା ନକଲେ କରେଇଟା କେମିତି ଉତ୍କଟ ଖାରସା ଗନ୍ଧାଏ । ପିନ୍ଧା ଲୁଗା ମଧ୍ୟ ଉଷୁମୁଳିଆ ଉଷୁମୁଳିଆ ଲାଗେ । ଅଥଚ ସବୁବେଳେ ଏଇ କାମଟି ପାଇଁ ଶ୍ରୀମତୀକୁ ଡାକିବା ଓ ତା'ର ସାହାଯ୍ୟ ଲୋଡିବାକୁ କେମିତି ଟିକିଏ ସଙ୍କୋଚ ଲାଗେ । ବାଧେ ।

ଅନ୍ୟ କାମଟି ଆହୁରି ଲଜ୍ଜାକର । ଶେଯ ଉପରେ ସେ ପ୍ରକାର କାମଟି ତୁଟାଇବାକୁ ପ୍ରଥମେ ମୋର ଘୋର ଆପତ୍ତି ଥିଲେ ମଧ ଅସହାୟତା ମୋତେ କାବୁ କରି ଦେଉଥିଲା । ପ୍ରାତ୍ୟହିକ କର୍ମଟି ସାପ୍ତାହିକ ହୋଇଯାନ୍ତାକି ? ଯଦିଓ ହୋଇପାରୁ ନଥିଲା– ତଥାପି ମୁଁ ଖାଇବା କମାଇ ଦେଲି । ଏକ ନଗ୍ନ ଅପମାନକର ପରିସ୍ଥିତିରୁ ମୁକୁଳିଯିବା ପାଇଁ ମୋର ଚେଷ୍ଟା ବିଫଳ

ହୋଇଯାଉଥିଲା । କମ୍ ଖାଦ୍ୟ ପେଟରେ ପଶିଲେ ମଧ୍ୟ ଦୁଇତିନି ଦିନରେ ଥରେ ସେ ପରିସ୍ଥିତିର ମୁହାଁ ମୁହିଁ ମୁଁ ହେଉଥିଲି ।

ଏପରି ହେବାରୁ ଆଗ ଅପେକ୍ଷା ମୋତେ ଏଣିକି ଅଧିକ ଦୁର୍ବଳ ଲାଗେ । ଆଖିବୁଜି ସବୁବେଳେ ଘାଲେଇ ପଡିଥାଏ । ଅନ୍ଧାର ଓ ଆଲୁଅର ପାର୍ଥକ୍ୟ ଜଣା ପଡେ ନାହିଁ । ମଶା ଓ ମାଛିର ଗୁଣ୍ଣୁ ଗୁଣ୍ଣୁ ଏକାପ୍ରକାର ଲାଗେ ।

ଆଖି ବୁଜି ଦେଲା ମାତ୍ରେ ସେଇ ଦୃଶ୍ୟଟା ଭାସିଯାଏ ମନଭିତରେ । ଦ୍ରୁତ ଗତିରେ ଛୁଟି ଆସୁଛି ଗୋଟାଏ ଟ୍ରକ୍ । ପାଞ୍ଚ ନମ୍ବର ଜାତୀୟ ରାଜପଥର ଭଦ୍ରକ ପାଖାପାଖି ଗୋଟିଏ ଜାଗା । ହଠାତ୍ ଗୋଟାଏ ବିକୃତ ଯାନ୍ତ୍ରବ ଶବ୍ଦ ଓ ମୋ ଜିପ୍‌ଟା ଉପରକୁ ଉଡିଯାଉଥିବାର ସାମାନ୍ୟତମ ଅନୁଭବଟିଏ । ବାସ୍ । ଆଉ କିଛି ମନେ ନାହିଁ । ଚେତା ଫେରିଲା ବେଳକୁ ବାଁ ଗୋଡର ଜଙ୍ଘ ପାଖର ଭାରି ଯନ୍ତ୍ରଣା ହେଉଥିଲା ଓ ଜଙ୍ଘ ତଳଟା ଅବଶ ଅବଶ ଲାଗୁଥିଲା । କିଛି ଜଣାପଡୁ ନଥିଲା । ବାହାରେ କିଛି ଲୋକ ହେକ୍ସ ଦ୍ୱାରା ଜିପ୍‌ର ଲୋଚାକୋଚା ବନେଟ୍‌ଟାକୁ କାଟି ଚାଲିଥାନ୍ତି । ବନେଟ୍ ନ କାଟିଲେ କୁଆଡେ ମୋର ସର୍ବାଙ୍ଗ ବାହାରି ଆସିବା ମୁସ୍‌କିଲ୍ ।

ଆଜକୁ ମାସକ ତଳର ଘଟଣା ଏ । ତା'ପରଠୁ ଏମିତି ଶଯ୍ୟାଶାୟୀ । ପ୍ରଥମେ ପ୍ରଥମେ ଭାରି ଭିଡ ହେଉଥିଲା । ବହୁ ଲୋକଙ୍କର ସମାଗମ ହେଉଥିଲା । ଖବର ପାଇ ଦୂର ଦୂରାନ୍ତରୁ ଆତ୍ମୀୟସ୍ୱଜନ ଆସୁଥିଲେ । ଦିନେ ଦୁଇଦିନ ରହି ଫେରିଯାଉଥିଲେ ବିଭିନ୍ନ ପ୍ରକାରେ ସାନ୍ତ୍ୱନା ଦେଇ । ସେମାନଙ୍କ ଅଭ୍ୟର୍ଥନା ଉପଲକ୍ଷେ ଚା, ବିସ୍କୁଟ ଯୋଗାଇବାଠୁ ରୋଷେଇବାସ କରି ଖିଆ ପିଆ କରାଇବାରେ ଉଭୟ ମା' ଓ ଶ୍ରୀମତୀ ନୟାନ୍ତ ହୋଇଯାଉଥିଲେ ! ବିରକ୍ତ ହୋଇଯାଉଥିଲେ । ଅଥଚ ମୋତେ ଭାରି ଖୁସି ଲାଗୁଥିଲା । କାରଣ ଏତେ ଲୋକ ମୋତେ ଭଲପାଉଥିବା ଦେଖି ମୁଁ ମନେ ମନେ ଗର୍ବିତ ହେଉଥିଲି । ଅବଶ୍ୟ ସେ ଭାବଟା କ୍ରମଶଃ ମୋ ଭିତରୁ ଏଣିକି ମିଳେଇ ଯାଉଛି । ଦୁଃଖତକ ମୋର ଏକାନ୍ତ ନିଜସ୍ୱ ବୋଲି ସାବ୍ୟସ୍ତ ହୋଇଯାଉଛି ବାରମ୍ବାର ।

ଏହା ସତ୍ୟ ଯେ ଶ୍ରୀମତୀ ମୋ ପାଇଁ ବେଶ୍ ତତ୍ପର ଓ ବ୍ୟସ୍ତ । ଅଥଚ ସେଇ ତତ୍ପରତାରେ ବି ଗତ ଦୁଇ ଦିନ ଧରି ଭଟ୍ଟା ପଡିଯାଇଛି । ଆଗ ଅପେକ୍ଷା ସେ ଅଧିକ ଗୁମ୍ ସୁମ୍ । ମୁହଁରେ ବିବ୍ରତ ହେବାର ଛାଇ । ଡାକ୍ତର ସାହୁ ସେଦିନ କହିଯାଇଥିଲେ ନିଦାରୁଣ ସତ୍ୟଟିଏ । ରୋଗୀକୁ ତୁରନ୍ତ ଦିଲ୍ଲୀ ନେଇଯିବା ଉଚିତ । କାରଣ ଆଣ୍ଠୁ ତଳକୁ ପାଦ କାଟି ନଦେଲେ ଜୀବନ ନିରାପଦ ନୁହେଁ ବୋଲି ତାଙ୍କ ମନ୍ତବ୍ୟ । ସେ ଦିନଠୁ ଶ୍ରୀମତୀ ଅନ୍ୟମନସ୍କ । ସବୁଠି ଥାଇ ମଧ୍ୟ ନଥାଏ । ସବୁକିଛି କରୁଥିଲେ ମଧ୍ୟ କିଛି କରୁନଥାଏ ।

ଗତ ମାସର ଦରମା ମିଳି ନଥିଲା । କାମରେ ପୁଣି ଜଏନ୍ ନ କରିବା ପର୍ଯ୍ୟନ୍ତ ଛୁଟି ଦରମା ଆଶା କରିବା ବୃଥା । ତେବେ ସେମିତି ଗୋଟିଏ ଦିନ ଆଉ ଆସିବ ବୋଲି ଭାବି ହେଉ ନାହିଁ । ମାସିକ ସଉଦା ଆସିବାରେ ଅନିୟମିତତାଠୁ ଆରମ୍ଭ କରି ଡାକ୍ତର ଖର୍ଚ୍ଚ ପର୍ଯ୍ୟନ୍ତ ହିସାବ ସମୂହକୁ ତନଖି କରିବାକୁ ମୋର ସାହସ ନଥିଲା । କାରଣ ଗତ ଦଶବର୍ଷର ଚାକିରି ଭିତରେ ସଞ୍ଚୟ କଥା ମୁଁ କେବେ ଭାବି ନାହିଁ । ଭଲରେ ଖାଇ ଭଲରେ ପିନ୍ଧି ଚଳିବାଟାକୁ ପସନ୍ଦ କରୁଥିବା ଆମେ ସ୍ୱାମୀ ସ୍ତ୍ରୀ ଏଇ ପ୍ରଥମ ଥର ପାଇଁ ଅନୁଭବ କରୁଥିଲୁ ସଞ୍ଚୟର ଆବଶ୍ୟକତା । ତେଣୁ ଖର୍ଚ୍ଚ ସମ୍ପର୍କରେ ବୋଉ କିମ୍ବା ଶ୍ରୀମତୀକୁ ପଚାରି ଅଧିକ ମାନସିକ ଚାପ ନେବାକୁ ମୁଁ ଚାହୁଁ ନଥିଲି କିମ୍ବା ସେମାନେ ମଧ୍ୟ ଦେଉ ନଥିଲେ । କେବଳ ଏତିକି ଜାଣି ପାରିଲି ଯେ, ବାପା ଫେରିବାର ତିନି ଦିନ ପରେ ଗାଁରୁ ଗୋବରା ଜେନା ଆସିଥିଲା । ଗୋଟିଏ ଦୁଇ ମହଣିଆ ବସ୍ତାରେ ବସ୍ତାଏ

ଚାଉଳ, ଡାଲି, ଚୁଡ଼ା, ସାଙ୍ଗକୁ ସୋରିଷ ତେଲ କିଛି ଆଣିଥିବା କଥା ଶ୍ରୀମତୀ ଜଣାଇଥିଲା । ଆହୁରି ମଧ୍ୟ ଜଣାଇଥିଲା ଯେ ବାପା ଘରେ ନଥିବା ବେଳେ ଗୋବରା ଜିନିଷତକ ନେଇ ଆସିଥିଲା ।

ବାପାଙ୍କ ଅନୁପସ୍ଥିତିରେ ଜିନିଷ ଆଣିବା କଥା ଅସ୍ୱାଭାବିକ ଲାଗୁଥିଲା । ବିଶେଷତଃ ପୁଅର ଏମିତି ପରିସ୍ଥିତିରେ ବି ତାଙ୍କୁ ଛପେଇ ଜିନିଷ ଆଣିବାକୁ ପଡୁଥିବା ଘଟଣାଟିକୁ ମୁଁ ଜମାରୁ ବରଦାସ୍ତ କରିପାରୁନଥିଲି । ଶ୍ରୀମତୀ ପାଖରେ ନିଜକୁ ଭାରି ଛୋଟ ଛୋଟ ଲାଗୁଥିଲା । କାରଣ ଏଇ ମାସକ ମଧ୍ୟରେ ଶ୍ୱଶୁର ଘର ପକ୍ଷରୁ ଦୁଇଥର ଆସି ଫେରିଗଲେଣି । ମୋତେ ଏଠାରେ ନ ରଖି ଗୋଟାଏ ବଡ ଡାକ୍ତରଖାନାକୁ ସ୍ଥାନାନ୍ତରିତ କରିବାକୁ ସେମାନେ ଜିଗର କରିଗଲେଣି ।

ଏପରିକି ଗତକାଲି ଶ୍ୱଶୁର ତାଙ୍କ ଝିଅ ହାତରେ କୋଡିଏ ହଜାର ଟଙ୍କାର ଚେକ୍‌ଟାଏ ଦେଇ କହିଥିଲେ : 'ଆଉ ପଇସାପତ୍ର ଯୋଗାଡ କରି ବାବୁଙ୍କୁ ଦିଲ୍ଲୀ ନେଇଯିବାର ବନ୍ଦୋବସ୍ତ କର ମା'– ବେଶି ଦିନ ଏଠାରେ ଏମିତି ପକାଇ ରଖିବାଟା ଠିକ୍ ହେଉନି ।' ଏସବୁ ମୋତେ ଚାବୁକ ମାରିବା ପରି ଲାଗୁଥିଲା । କାରଣ; ସେଇ ତୁଳନାରେ ବାପାଙ୍କର ଆଉ ନ ଆସିବା ଏବଂ ତାଙ୍କ ଅନୁପସ୍ଥିତିରେ ଡାଲି-ଚାଉଳ ଧରି ଗୋବରା ପହଞ୍ଚିବା ଘଟଣାଗୁଡିକ ବଂଶର ସ୍ୱାଭିମାନ ପ୍ରତି ପ୍ରଶ୍ନବାଚୀ ସୃଷ୍ଟି କରୁଥିଲା କହିଲେ ଭୁଲ୍ ହେବନାହିଁ । ମୁଁ ପାଗଳ ହୋଇଯାଆନ୍ତି କି ? ବୁଲୁ ଦୁଇଦିନ ହେଲା ଗଲାଣି, ଫେରିନାହିଁ । ଡାକ୍ତରଙ୍କ ମନ୍ତବ୍ୟ ଓ ପରାମର୍ଶ କଥା ବାପାଙ୍କୁ ଜଣାଇବା ଅଭିପ୍ରାୟରେ ବୁଲୁ ଓରଫ ମୋ ସାନଭାଇ ଗାଁକୁ ଯାଇଥିଲା । ଅଥଚ କାହାରି ଆଉ ଦେଖା ନାହିଁ । ଶ୍ରୀମତୀ ମଧ୍ୟ ସକାଳଠୁ ଏ ପ୍ରସଙ୍ଗରେ ଥରେ ଦୁଇଥର କଥା ହେବାକୁ ଚାହିଁଥିଲା । କିନ୍ତୁ ସବୁଥର କଥାଟିକୁ ମୁଁ ଅନ୍ୟ ପ୍ରସଙ୍ଗକୁ ନେଇ ଯାଉଥିଲି । ତେଣୁ ସୁବିଧା ହୋଇ ପାରିନାହିଁ ।

ଶ୍ରୀମତୀକୁ ବାଁରେଇ ଦେଲେ ମଧ୍ୟ ନିଜକୁ ମୁଁ ଜମାରୁ ବାଁରେଇ ପାରୁ ନଥିଲି । ଏପରି ଏକ ପିତୃତ୍ୱର ଛାଇତଳେ ମୁଁ କିମିତି ଉଧେଇଲି ଜାଣି ପାରୁନଥିଲି । ନିଜ ଜନ୍ମ ପ୍ରତି ଧିକ୍‌କାର ଆସୁଥିଲା । ଧିକ୍‌କାର ଆସୁଥିଲା ସେହି ନିଷ୍ଠୁର, ନୀଚ ପିତୃତ୍ୱ ପ୍ରତି ।

ଅପରେସନ୍, ଔଷଧ ଖର୍ଚ୍ଚ, ରହଣି ଓ ଯିବା ଆସିବା ପ୍ରଭୃତିକୁ ଲଗାଇ ପାଖାପାଖି ଲକ୍ଷେ ଟଙ୍କା ଖର୍ଚ୍ଚ । ଶ୍ୱଶୁରଙ୍କ କୋଡିଏ ହଜାର ଟଙ୍କାକୁ ଛାଡିଦେଲେ ଅବଶିଷ୍ଟ ଅଶି ଅଜାର ଟଙ୍କା ଦରକାର । ଦୁଇଦିନ ତଳେ ଶ୍ରମତୀ କହିଥିଲା– ତା' ଗହଣାତକ ବିକ୍ରୀ କରିବାକୁ । ସ୍ତ୍ରୀର ଗହଣା ବିକିବାଟା କାପୁରୁଷତା । ମାତ୍ର ମୋ ପରି ଜଣେ ଅପରିଣାମଦର୍ଶୀ ଲୋକ ସେ ପ୍ରସ୍ତାବରେ ନୀରବ ରହିବାକୁ ବାଧ ହୋଇଥିଲା । ତେବେ କେତେ ବା ଆଉ ଗହଣା ଅଛି ଯେ !! ସବୁତକ ସାଉଁଟିଲେ ପାଖାପାଖି ଦଶ ଭରି ହେବ । ତା' ପରେ ? ଅବଶିଷ୍ଟ ଟଙ୍କା ଯେ କେଉଁଠୁ ଯୋଗାଡ କରାଯାଇ ପାରିବ – ଉଭୟଙ୍କ ମୁଣ୍ଡକୁ ସେ ବୁଦ୍ଧି ଜମାରୁ ପଇଟୁ ନଥିଲା ।

ଭାବିଥିଲି ବୁଲୁହାତରେ ଟଙ୍କା କଥା ନେଇ ବାପାଙ୍କୁ ଚିଠିଟିଏ ଲେଖିଥାନ୍ତି । ମାତ୍ର ଶେଷ ସୁଦ୍ଧା ତା' ଆଉ ହୋଇ ପାରିନଥିଲା । ନିଜ ଅଭିମାନକୁ ବାଧିଥିଲା । ଚାକିରି କରିବା ଦିନୁ ପ୍ରତିମାସରେ ଘରକୁ କେବଳ ମୁଁ ଟଙ୍କା ପଠାଇ ଆସିଛି । ମାସକୁ ହଜାରେ ଟଙ୍କା ହେଲା ପିତୃତ୍ୱର ପ୍ରାପ୍ୟ । ଏହାବାଦ୍ ବିଭିନ୍ନ ବନ୍ଧୁବର୍ଗ, ବାହାପୁନେଇଁର ଅଲଗା ଖର୍ଚ୍ଚ ଅଛି । ଅଲଗା ଦାବି ଅଛି । ଅଧିକାଂଶ ସମୟରେ ମାସର ପ୍ରଥମ ସପ୍ତାହକୁ ବାପା ଆସି ଟଙ୍କା ନେଇଯାଆନ୍ତି । କେତେବେଳେ କେତେବେଳେ ଗାଁ ଲୋକଙ୍କ ହାତରେ କିମ୍ବା କାହାରିକୁ ନ ପାଇଲେ ମନିଅର୍ଡର କରି ଟଙ୍କା ପଠାଇ ଦିଏ । ଅଥଚ ପ୍ରତିଦାନରେ ଘରୁ କେବେ କିଛି ଆଣିନି । ସେପଟୁ ମଧ୍ୟ ସେଥିପାଇଁ କୌଣସି ଜିଗର ନଥାଏ । ଏଇ ପ୍ରଥମ ଥର ଗୋବରା ଚାଉଳ, ଡାଲି ଧରି ଆସିଛି । ନହେଲେ

ଗତ ଦଶବର୍ଷ ଭିତରେ ଏମିତି ଘଟଣା ଆଗରୁ କେବେ ଘଟିନି । ଦଶ ଏକର ଜମିର ଚାଷ । ତଥାପି ମନ୍ଦିର କିମ୍ବା ଠାକୁର ପୂଜା, ଯାନି-ଯାତ୍ରା, ଥର ଦୋଳ ପ୍ରଭୃତି ପର୍ବପର୍ବାଣୀର ଦାବିରୁ ମୁଁ ବର୍ତ୍ତି ପାରିନାହିଁ । ଅଧିକନ୍ତୁ ମାସକୁ ମାସ ଟଙ୍କା ପଠାଇବାରେ ବିଳମ୍ବ ହେଲେ ବାପା ବିରକ୍ତ ହେଉଥିଲେ । ଗାଁ ଲୋକ କିମ୍ବା ବନ୍ଧୁବାନ୍ଧବଙ୍କଠାରେ ପୁଅ ତାଙ୍କୁ ଅବହେଳା କରୁଛି ବୋଲି ଦେଖେଇ ଶୁଣେଇ କହୁଥିଲେ ।

ଏମିତି ଏକ ସ୍ୱାର୍ଥପର ଲୋକଙ୍କୁ ଚାଉଳ, ଡାଲି କିମ୍ବା ଟଙ୍କା ମାଗିବାଟାକୁ ମୁଁ ଅପମାନ ବୋଲି ଭାବେ । ଯିଏ ପୁଅ ପାଇଁ ଏହି ଚିନ୍ତା ନିଜ ତରଫରୁ ନକରିବେ; ତାଙ୍କୁ ମାଗିବାକୁ ମୁଁ ଆଦୌ ପସନ୍ଦ କରେନା । ଚାକିରି କରିବା ପରଠୁ ଅନ୍ତତଃ ସେ ପ୍ରକାର ଦୟିନି ମୁଁ କେବେ କରି ନାହିଁ । ଆଜି ଏ ପ୍ରକାର ପରିସ୍ଥିତିରେ ମଧ୍ୟ ତାହା କରିବାକୁ ମୋତେ ଇଚ୍ଛା ହେଲା ନାହିଁ । ନିଜ ସ୍ୱାର୍ଥରେ ଅନ୍ଧ ଅବିବେକି ଏ ପ୍ରକାର ବାପାଙ୍କୁ ମୁଁ ବରଦାସ୍ତ କରିପାରେ ନାହିଁ । ପିଲାଦିନେ କେବେ କରି ପାରି ଥିଲି ବୋଲି ମୋର ମନେ ପଡୁନାହିଁ ।

ପିଲା ବେଳେ ଆମ ଭାଇ ଭଉଣୀମାନେ ସବୁବେଳେ ଦେଖି ଆସୁଥିଲୁ ଖାଲି ହିସାବ । ତେଲ ଲୁଣ ଠୁ ଆରମ୍ଭ କରି ଲୁଗାପଟା ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ କଟକଣା । ଏହି କଟକଣା ଭିତରେ ଡହଳ ବିକଳ ହୁଏ ବୋଉ । କୌଣସି ପ୍ରକାର କ୍ଷତିକୁ ବାପା ବରଦାସ୍ତ କରୁନଥିଲେ । ଅଥଚ କ୍ଷତି ଅବଶ୍ୟ ଘଟୁଥିଲା । ହୁଏତ ଟିକିଏ ବେଶି ପରିମାଣରେ ଘଟୁଥିଲା । ପୁଅ ଝିଅ କେହି କିଛି କ୍ଷତି କରିବା ଦିନ ଘରେ ଗୋଟାଏ ଗଣ୍ଡଗୋଳ ନିଶ୍ଚିତ ହେବ । ମାଡ ହିଁ ସବୁପ୍ରକାର କ୍ଷତିର ଏକମାତ୍ର ଭରଣା । ପୁଅଝିଙ୍କ ଦୁଃଖ କେଉଁ ମା' ସମ୍ଭାଳିବ ଯେ ! ସୁତରାଂ ପୁଅ ଝିଅଙ୍କ ସହିତ ବୋଉ ମଧ୍ୟ ମାଡ ଖାଇବ । ଏପ୍ରକାର ଅତ୍ୟାଚାର ସେହି ଉଗ୍ରଭୀମ ମୂର୍ତ୍ତିର କିଛି ପରିବର୍ତ୍ତନ ହୁଏନାହିଁ । ସେଥିପାଇଁ ଅନେକ ସମୟରେ ବିଦ୍ରୋହ କରିବାକୁ ପିଲାବେଳେ ମୁଁ ପ୍ରତିଜ୍ଞା କରେ । ମୁହାଁମୁହିଁ ଜବାବ ଦେବାକୁ ନିଜକୁ ନିଜେ ସାହସ ଯୋଗାଏ । ଅଥଚ ସବୁଥର ବାପା ରାଗିଗଲେ ମୋର ହାତ ଗୋଡ ଥରେ । ଛାତି ଦୁକୁଦୁକିଟା ଏତେ ବଢ଼ିଯାଏ ଯେ ମୁଁ କଥାବାର୍ତ୍ତା କରିବାକୁ ମଧ୍ୟ ସାହସ ପାଏନି ।

ହାଉମାଉ କରି କାନ୍ଦଣାର ସାମୂହିକ ଲହରିଟି ଉଠେ ସେତେବେଳେ ପବନକୁ ଥରେଇ ଥରେଇ । ଆଉ ମାରନାର ଆକୁଳ କାକୁତି ଭିତରେ କାତର ହୋଇ ଯାଉଥାଏ ସାମୂହିକ ଆଖିର ଲୁହଧାର । ପ୍ରହାରର ବେଗ ସହ ତାଳ ରଖି କୋହମୟ ହୋଇ ଯାଉଥାଏ କଣ୍ଠସ୍ୱର ସମୂହ । ଶେଷ ଶୁଦ୍ଧାଦୋଷୀ କିମ୍ବା ତାକୁ ରକ୍ଷାକରିବାକୁ ଆଗେଇ ଆସିଥିବା ବୋଉର ହାତ-ଗୋଡ କିମ୍ବା ମୁଣ୍ଡରେ ଦୁଇ ଚାରିଟା ଆବୁ ବାହାରି ପଡେ ଓ ପ୍ରହାର ବନ୍ଦ ହୁଏ । ସେଇ ସବୁ ରାତିରେ ଭାଇ ଭଉଣୀଙ୍କ ଗହଣରେ ମୁଁ ସବୁଥର ପ୍ରତିଜ୍ଞା କରିଥିବି ଯେ ଆମେ ଆଉ ଏ ଘରେ ରହିବାନି । ମୁଁ ଗୋଟାଏ ଚାକିରି କରି ସମସ୍ତଙ୍କୁ ନେଇ ସହରକୁ ଚାଲିଯିବି । ଏମିତି କେତେ କେତେ କଳ୍ପିତ ମୁକ୍ତି ସ୍ୱପ୍ନରେ ପ୍ରହାରର ଯନ୍ତ୍ରଣାକୁ ବାଣ୍ଟିବୁ ନିଜ ନିଜ ଭିତରେ । ପ୍ରତିବାଦ କରି ନପାରିଲେ ବି ସେତେବେଳେ ପ୍ରତିଶୋଧର ନିଆଁ ଜଳୁଥିଲା ଆମ ସମସ୍ତଙ୍କ ଭିତରେ ।

ସେହି ପ୍ରତିବାଦର ପ୍ରଥମ ସାହସ ଓ ବଳ ସଞ୍ଚିତ ହୋଇଥିଲା ଚାକିରିରୁ । ବାପାଙ୍କ ଉଗ୍ରମୂର୍ତ୍ତିର ପରିବର୍ତ୍ତନ ଘଟିଥିଲା । ସେତେବେଳକୁ ଅନ୍ୟ ଭାଇଭଉଣୀମାନେ ମଧ୍ୟ ବଡ ହୋଇ ଯାଇଥିଲେ । କିନ୍ତୁ ସେହି କ୍ରୋଧର ପରିପ୍ରକାଶ ଘଟୁଥିଲା ମୋର ଯେକୌଣସି ନିଷ୍ପତ୍ତି ବିରୋଧରେ ।

ଗାଁରେ ଏଇ ଦୁଇ ପ୍ରାଣୀ କେମିତି ଭଲରେ ଖାଇପିଇ ଭଲରେ ରହି ପାରିବେ; ସେଥିପାଇଁ ମୁଁ ପ୍ରଥମେ ନିଷ୍ପତ୍ତି ନେଇଥିଲି ଏକ ଭଲ ଘର ତୋଳିବାର । ପାଣି, ପାଇଖାନା ସୁବିଧା ସାଙ୍ଗକୁ ବିଜୁଳି ଓ ଟେଲିଭିଜନ ପ୍ରଭୃତି ନିଷ୍ପତ୍ତିଗୁଡ଼ିକ ପର୍ଯ୍ୟାୟକ୍ରମେ ଆନୁଷଙ୍ଗିକ ନିଷ୍ପତ୍ତି ହୋଇ ପଡ଼ିଲା । ଅଥଚ ଏ ସବୁ କିଛି ବାପାଙ୍କୁ ଖୁସି କରିପାରିନଥିଲା । ମୋ ଆଗରେ ନ କହିଲେ ମଧ୍ୟ ଲୋକଙ୍କଠୁ ଶୁଣିଛି ଯେ ମୋର ଏ ପ୍ରକାର ଖର୍ଚ୍ଚବାର୍ଚ୍ଚକୁ ସେ ଜମାରୁ ପସନ୍ଦ କରନ୍ତି ନାହିଁ । ତାଙ୍କ ମତରେ ଗାଁଟା ଗାଁ ହୋଇ ରହିବା ଉଚିତ । ଗାଁର ଗୋଟାଏ ପୁରବନ୍ଦୀ ଚାଳଘର ଓ ସେହି ଚାଳଘର ମଥାନରେ ସଂଜସକାଳେ କୁଣ୍ଡଳୀ କାଟୁଥିବା ରୋଷେଇ ଚୁଲିର ଧୂଆଁ ତାଙ୍କର ଭାରି ପ୍ରିୟ ଦୃଶ୍ୟ । ଘର ଅଗଣାର ତୁଳସୀ ଚଉରା, ମନ୍ଦିର ଓ କୁଅ ସେପାଖ ମଞ୍ଚା ଉପରେ ଆଖି ମିଟିକା ମାରୁଥିବା ଗୋଧୂଳୀବର୍ଣ୍ଣା ଜହ୍ନିଫୁଲ କୁଆଡେ ଗାଁର ଶୋଭା । ତାଙ୍କ ମତରେ ପୋଖରୀ ହୁଡ଼ାର ତାଳ ଗଛ ବାହୁଙ୍ଗାରେ ଯଦି ବାଇଆ ଚଢ଼େଇ ତା'ର ଦୁର୍ମୂଲ୍ୟ ବସା ନିର୍ମାଣ ନକଲା କିମ୍ବା ବାରି ଭିତରର ପଣସ ଓ ଆମ୍ବ ଗଛରେ ଗୁଣ୍ଡୁଚି ମୂଷା ଯଦି ରାଜତ୍ୱ ନକଲା – ତେବେ ସେଇଟା ପୁଣି ଗୋଟାଏ କି ଗାଁ ? ସେଇଠି ଗୋଟାଏ କୋଠାଘର, ଟି.ଭି. ଆଣ୍ଟିନା ବା ପାଇଖାନା ତିଆରି କରି ସହରୀ କାଇଦା ଆମଦାନୀ କରୁଥିବାରୁ ମୁଁ ଦୋଷୀ । ପତୁଆ ପୋଡ଼ା, ବଡ଼ିଚୁରା, ମଦରଙ୍ଗା ରାଇତା ଓ ପଖାଳ ଭାତ ଜାଗାରେ ଡେରାଡୁନ ଚାଉଳ, ଡାଲି, ପୁରୀ ବ୍ୟବସ୍ଥା କରିବାକୁ ଚାହୁଁଥିବାରୁ ବାପା ବିରକ୍ତ ଓ ପୁତ୍ର ବିମୁଖ ।

ଏହାଛଡ଼ା ମୁଁ ଯେତେ ଟଙ୍କା ପଠାଇଲେ ମଧ୍ୟ କିଛି ଲାଭ ହେଉ ନଥାଏ । ପାରିବାରିକ ଚଳଣିରେ କୌଣସି ଉନ୍ନତି ଘଟୁ ନଥାଏ । ବେଉଷଣ କିମ୍ବା ଧାନ ଅମଳବେଳେ ଅଧିକ ଟଙ୍କା ପଠାଇଲେ ମଧ୍ୟ ଆଗପରି ବାପା କ୍ଷେତକୁ ଯାଆନ୍ତି । ଦୁଇଜଣ ମୂଲିଆଙ୍କ କାମ ନିଜେ କରନ୍ତି । ଅଣ୍ଟାରେ ଗୋଟିଏ ଖୋର୍ଦ୍ଧା ଗାମୁଛା । କାଖତଳର ଛିଣ୍ଡା ଗେଞ୍ଜିକୁ ଢାଙ୍କିବା ପାଇଁ ବେଢ଼େଇ ଥିବେ ଗୋଟିଏ ଦାନୁଆ କରିଆ । ଏଥିପାଇଁ ସ୍ୱତନ୍ତ୍ର ପଇସା ପଠାଇଥିଲେ ମଧ୍ୟ କିଛି ପରିବର୍ତ୍ତନ ନାହିଁ । ଖିଆପିଆରେ ମଧ୍ୟ ସେମିତି । ପୋଡ଼ା ଛେଚା ଦେଇ ଦୁଇ ପ୍ରାଣୀ ଚଳେଇ ନେଉଥିବେ ବକତ । ପାନ-ଗୁଆ ଖର୍ଚ୍ଚ ହୋଇଯିବା ଭୟରେ ଦୋକତା ଚୂନରେ ମେଣ୍ଟି ଯାଉଥିବ ଗୁଜୁରାଣ ।

ଘରର ଏଇ ପାଣିପାଗକୁ ବଦଳାଇ ଦେବା ପାଇଁ ମୁଁ ଥରେ ଟଙ୍କା ପଇସା ନ ପଠାଇ ଲୁଗାପଟା, ତେଲ-ଲୁଣ, ମସଲା ମସଲି କିଣି ଘରେ ପହଞ୍ଚିଗଲି । କାରଣ ସେଇ ପାଞ୍ଚ ହାତିଆ ଖୋର୍ଦ୍ଧା ଗାମୁଛାରୁ ବାପାଙ୍କୁ ଓ ମୋଟା ବାରହାତିଆ ବାପ୍ତା ଶାଢ଼ିରୁ ବୋଉକୁ ଉଦ୍ଧାର କରିବା ପାଇଁ ଧୋତି, ଶାଢ଼ି ଚାରିଟା ଲେଖାଏଁ ନେଇ ମୁଁ ପହଞ୍ଚିଥିଲି । ମୋର ସଉଦାପତ୍ର ଦେଖି ବାପା ଏତେ ରାଗିଗଲେ ଯେ, ତୁରନ୍ତ ସେ ସ୍ଥାନ ପରିତ୍ୟାଗ କରି ଚାଲି ଯାଇଥିଲେ । ବୋଉ ଭାରି ଖୁସୀ ହୋଇ ଯାଇଥିଲା । ଅଥଚ ତଦ୍ୱାରା ବିଶେଷ କିଛି ଲାଭ ହୋଇନଥିଲା । କାରଣ ପରମାସରେ ଘରେ ପହଞ୍ଚି ଜାଣି ପାରିଥିଲି ଯେ ମୁଁ ଗାଁରୁ ଆସିବା ପରେ ପରେ ବାପା ସେଇସବୁ ସଉଦାର ବେଶୀ ଅଂଶ ଗାଁ ଦୋକାନୀ ପାଖରେ ବିକି ଦେଇ ଆସିଥିଲେ । ମୁଁ ଗୋଟାଏ ବେହିସାବୀ ଦୂରଦୃଷ୍ଟିହୀନ ପାଗଳ ପୁଅ । ନହେଲେ କାହିଁକି ଜିରା ହଳଦୀ କିମ୍ବା ଫୁଟଣ ପ୍ରଭୃତିରୁ କିଲେ ଲେଖାଏଁ ନେଇ ଯାଇଥାନ୍ତି । ବାହାଘର ବ୍ରତଘର ନ ହେଲେ କେହି କ'ଣ ଏମିତି ସଉଦା କରନ୍ତି !!!

ବାପାଙ୍କର ଏମିତି ଆଚରଣ ଶୁଣି ମୋତେ ଭାରି ହସ ଲାଗିଥିଲା । ବିଦ୍ରୁପାତ୍ମକ ହସ । ଅଥଚ ମନ ଖରାପ ହୋଇଗଲା । ବାପାଙ୍କ ପ୍ରତି ଦୟା ଆସିଲା । ତାଙ୍କ ଭଲ ପାଇଁ ଏତେ ସବୁ ବ୍ୟବସ୍ଥା ତୁଚ୍ଛ ଓ ସେଥିପାଇଁ ଓଲଟା ଅପବାଦ ମୋତେ ବାଧିଲା । ସଫଳ ନ ହୋଇ ପାରିବାର

ଦୁଃଖ ଭିତରେ ମୁଁ ବିଷଣ୍ଣ ହୋଇଗଲି । ଏ ପ୍ରକାର କାର୍ଯ୍ୟକ୍ରମରୁ ନିଜକୁ ନିବର୍ତ୍ତାଇଲି । ଏହା ମୋର ଏକ ପ୍ରକାର ଭୁଲ୍ ନିଷ୍ପତ୍ତି ବୋଲି ନିଜକୁ ନିଜେ ବୁଝାଇ ଦେଲି । କାରଣ ଜ୍ଞାନ ହେବା ଦିନୁ ବାପା କେବେ ହାଟରୁ ପାଞ୍ଚକିଲୋ ଆଳୁ କିଣିବା ମୁଁ ଦେଖିନି । ଆଳୁ ଦାମ ଯେତେ ଶସ୍ତା ହେଲେ ମଧ୍ୟ ସପ୍ତାହକୁ ସେହି ଦୁଇକିଲୋ ଆଳୁ । ଦାମ ବଢ଼ି ଯାଇଥିଲେ ପରିମାଣ ସେହି ତୁଳନାରେ ହ୍ରାସ ହେବାଟା ସତ୍ୟ, ମାତ୍ର ଶସ୍ତା ବଜାରରେ ପରିମାଣ ବଢ଼ିବାର ଯୁ ନାହିଁ ।

ଏଇ ହେଉଛନ୍ତି ବାପା । ମାସକୁ ମାସ ପଇସା ନ ପହଞ୍ଚିଲେ ରାଗି ଖପା ହୋଇଯାଆନ୍ତି । ଅବହେଳାର ଅପବାଦ ଦେଇ ତାଗିଦ୍ କରନ୍ତି । ନା-ଅଭାବ କିଛି ନାହିଁ, କିନ୍ତୁ ଟଙ୍କା ପଠାଇବାଟା ମୋର କର୍ତ୍ତବ୍ୟ । ସେ ପଇସା କେଉଁ ଦିଗରେ ସେମାନେ ଖର୍ଚ୍ଚ କରିବେ ତାହା ବୁଝିବାର ସୁଯୋଗ ମୋର ନାହିଁ । ଗାଁ ଲୋକେ ଆସି ଅଭିଯୋଗ କରନ୍ତି, ଚାକିରି ଚାକିରି କରି ବାପାଟାକୁ ଟିକିଏ ବିଶ୍ରାମ ଦେଉନୁ । ଆରାମ ଦେଉନୁ । ଏ ବୟସରେ ବି ସେ କ'ଣ ବିଲ ବାରିରେ ଖଟିବେ । ଲାଜ ଓ ଅଭିମାନରେ ମୁହଁ ଲାଲ ହୋଇ ଯାଉଥିଲେ ମଧ୍ୟ ସେମାନଙ୍କୁ ଉତ୍ତର ଦେବାକୁ ମୋର କିଛି ନଥାଏ । କେବେ କେମିତି ବୋଉକୁ କହିଲେ ବାପା ଶୁଣି ପ୍ରତିକ୍ରିୟା କରନ୍ତି, 'କାମ ନ କରି ବସିଗଲେ ମୁଁ ଶୀଘ୍ର ବୁଢ଼ା ହୋଇଯିବିନି କି ? ଲୋକଙ୍କ କଥାକୁ ଆଳ କରି ଆମେ କ'ଣ ବସି ଖାଇବା । ବସି ଖାଇଲେ ପରା ନଦୀ ବାଲି ନିଅଣ୍ଟ ।'

କାହାରି କଥାକୁ ପରବାୟ କରୁ ନଥିବା ସେଇ ଏକଜିଦିଆ ମଣିଷଟିକୁ ବାପା ବୋଲି ପରିଚୟ ଦେବାକୁ ଥରେ ଥରେ କୁଣ୍ଠା ଆସେ । ପୁଅର ଇଜ୍ଜତକୁ ଦେଖି ଯଦି ନିଜ ଇଜ୍ଜତକୁ ବାପା ନ ଜଗନ୍ତି ତେବେ ଅପବାଦତକ କ'ଣ ସବୁବେଳେ ସହି ହୁଏ ? ହୁଏନି । କେହି କେହି ପାଠୁଆ ସାଙ୍ଗ ଘରକୁ ଆସିଲେ ବାପାଙ୍କୁ ଦେଖି ମୋତେ ଟାହୁଲି କରନ୍ତି । ନୁଖୁରା ମୁଣ୍ଡିଆ ସେଇ ପାଞ୍ଚ ଫୁଟ ଛଅ ଇଞ୍ଚର ମଣିଷଟାକୁ କେଉଁଠି ଲୁଚାଇ ଦେବାକୁ କିମ୍ବା ତାଙ୍କଠୁ ସାଙ୍ଗମାନଙ୍କୁ ଦୂରେଇ ଦୂରେଇ ରଖିବାକୁ ଯେତେ ଉଦ୍ୟମ କଲେ ମଧ୍ୟ ସବୁ ବିଫଳ ହୋଇଯାଏ । ଗାଈ ଗୋରୁଙ୍କୁ କୁଣ୍ଡା ପାଣି ଦେବାଠୁ ଆରମ୍ଭ କରି ବାରି ବଗିଚାର ବିଭିନ୍ନ କାମ ଭିତରେ ବାପା ଭାରି ବ୍ୟସ୍ତ ଓ ତତ୍ପର ଥାନ୍ତି । ତାଙ୍କଠୁ ଦୂରେଇ ହୁଏନି । ପୋଖରୀର ମାଛ, ବାରିର ଲେମ୍ବୁ, କଦଳୀ, ସଜନା ଛୁଇଁ ପ୍ରଭୃତି ଭିତରେ ସେଇ ପିତୃ ପରିଶ୍ରମର ଗନ୍ଧ ଉକୁଟି ଉଠେ । ବିବଶ କରିଦିଏ ତାଙ୍କଠୁ ଦୂରେଇ ଯିବାର ସମସ୍ତ ଉଦ୍ୟମ ।

ସେଇ ବାପା ଯଦି ଚାଷ ବାସ କାମରେ ବ୍ୟସ୍ତ ଥାଇ ଏବେ ନ ଆସନ୍ତି—ତେବେ କେଉଁଠି ଅଭିଯୋଗ କରିବି ? ବୋଉ ପାଖରେ ଏ ନେଇ ଅଭିମାନ କଲେ ସେ ସାନ୍ତ୍ୱନା ଦିଏ- 'ତୋ ବାପା ନିଶ୍ଚିତ ଆସିବେ, ସେ ଆସି ଗଲେ ସବୁ କଥା ସମାଧାନ ହୋଇଯିବ । ତୁ ଜମାରୁ ବ୍ୟସ୍ତ ହ' ନା ।'

ବୋଉ କଥାକୁ କିନ୍ତୁ ମୁଁ ଆଉ ଭରସା କରି ପାରୁନଥାଏ । ବୁଲୁ ଦୁଇଦିନ ହେଲା ଗଲାଣି । ଏ ପର୍ଯ୍ୟନ୍ତ କାହାରି ଦେଖା ନାହିଁ । ହୁଏତ ବା ବୁଲୁ ଏକା ଫେରି ଆସିବ ଓ କହିବ— ବାପାଙ୍କର ଦେହ ଭଲ ନାହିଁ । ସେ ଏବେ ଆସି ପାରିବେନି । ଏମିତି ଗୋଟାଏ କଥାର କ'ଣ ବା ପ୍ରତିବାଦ କରି ହେବ ?

ଅନ୍ୟ ପକ୍ଷରେ କେହି ସାଙ୍ଗ ମଧ୍ୟ ଆଉ ଆସୁ ନଥିଲେ । ଦୁର୍ଘଟଣାର ପ୍ରଥମ ସପ୍ତାହରେ ସେମାନଙ୍କର ଭିଡ ଆମଘରେ ଭାଙ୍ଗି ହେଉ ନଥିଲା । କାରଣ ଅନ୍ୟମାନଙ୍କ ତୁଳନାରେ ମୋର ସାଙ୍ଗଙ୍କ ସଂଖ୍ୟା ଥିଲା ବେଶୀ । ଏଥିପାଇଁ ସାହାଯ୍ୟ କରିଥିଲା ଦୀର୍ଘଦିନରୁ ସଞ୍ଚିତ ମୋ ଭିତରର

ସୁପ୍ତ ଇଚ୍ଛା ସମୂହ । ଯାହା ବାପାଙ୍କ ଆକଟ ଭିତରେ ଉସ୍ ଖୁସ୍ ହେଉଥିଲା ଓ ମନେ ହେଉଥିଲା ମୋର କୈଶୋର ତଥା ଯୌବନ ଏଥିପାଇଁ ଅବହେଳିତ ହୋଇ ପଡିଛି । ଚାକିରି ପାଇବା ଦିନୁ ମୁଁ ସେଥିପାଇଁ ଅଧିକ ବେପରୁଆ ହୋଇଗଲି । ଖୋଲାମେଲା ହାତ ନେଇ ଅବହେଳିତ ଜୀବନର ଶୂନ୍ୟତାକୁ ଭରଣା କରିବାକୁ ଚାହିଁଲି । ହୋଟେଲ, ରେଷ୍ଟୋରାଁ କ୍ଲବ ପ୍ରଭୃତିରେ ମୁଁ ଏକମାତ୍ର ବାଞ୍ଛିତ ବନ୍ଧୁ ରୂପେ ସ୍ୱୀକୃତ ହେଲି । ଡିସେମ୍ବର ପଚିଶ, ନୂଆବର୍ଷ, ମକର ମେଳା ପ୍ରଭୃତିର ହଇଚଇ ମୋର ବୈବାହିକ ଜୀବନକୁ ମଧ୍ୟ ସଂକ୍ରମିତ ହୋଇଥିଲା । ଶ୍ରୀମତୀର ମଧ୍ୟ ଏଥିପ୍ରତି କୌଣସି ଅଭିଯୋଗ ନଥିଲା । ବରଂ ସେ ମୋତେ ସହଯୋଗ କରୁଥିଲା । ଉଭୟଙ୍କ ଅକୁଣ୍ଠ ତ୍ୟାଗ ଉପରେ ଗଢି ଉଠିଥିବା ଅନେକ ବନ୍ଧୁତ୍ୱ ହଠାତ୍ କେମିତି ନିଥର ହୋଇଗଲା । ଫଳ ମୂଳ ନେଇ ପ୍ରଥମେ ପ୍ରଥମେ ଆସୁଥିବା ବନ୍ଧୁମାନେ ସତେ ଯେପରି ଆମ ଘରକୁ ବାଟ ଭୁଲି ଗଲେ ।

ଶ୍ରୀମତୀ ହିସାବ କରି କହୁଥିଲା ଯେ କୌଣସି ସାଙ୍ଗ ପାଖରୁ ପଚାଶ ହଜାର ଟଙ୍କା ଧାର ନେଲେ ଆମ ପରିସ୍ଥିତି ସମ୍ଭଳା ପଡିବ । ଅଥଚ ସେଦିନଠୁ ଅପେକ୍ଷା କରିଛି ବାଞ୍ଛିତ ସେଇ ସାଙ୍ଗକୁ । ଏତେ ନିକଟତର, ଏତେ ସଖ୍ୟତାର ସାଙ୍ଗ ସମୂହଙ୍କ ମଧ୍ୟରୁ କାହାରି ମୁଁ ଦେଖା ପାଉନି । ବିଶେଷତଃ ଅଜୟ ଯଦି ଆସିଯାଇଥାନ୍ତା; ତେବେ ତା'ଠୁ ପଚାଶ ହଜାର ଟଙ୍କା କରଜ ନେଇ ହୁଅନ୍ତା । କାରଣ ବିତ୍ତଶାଳୀ ବାପର ସେ ଏକମାତ୍ର ସନ୍ତାନ । ବେଶ୍ ଦିଲ୍‌ଦାର ପ୍ରକୃତି ଅଜୟର । ସେଥର ପିକ୍‌ନିକ୍ ବେଳେ ପୁରୀ ବେଳାଭୂମିରେ ଅଜୟ ହିଁ କହିଥିଲା, 'ତୋ ବାପଟା ଗୋଟାଏ ପୁରୁଣା କାଳିଆ ମଫ । ସେ ବୁଢା ନ ବଦଳିଲା ନାହିଁ, ତୁ ଚିନ୍ତା କରନା । ଆମେ ସବୁ ତୋ ପଛରେ ଅଛୁ । ଦରକାର ବେଳେ ଆମେ କ'ଣ ଲକ୍ଷେ ପଚାଶ ହଜାର ତୋ ପାଇଁ ଖର୍ଚ୍ଚ କରି ପାରିବୁନି ।

ଲକ୍ଷେ ତ ଦୂର କଥା, ମାତ୍ର ପଚାଶ ହଜାରେ ଟଙ୍କାର ନିଅଣ୍ଟିଆ ପରିସ୍ଥିତିକୁ ସମ୍ଭାଳିବା ପାଇଁ ମୁଁ କୌଣସି ଉପାୟ ପାଉନି । ଜି.ପି.ଏଫ୍.ରେ ମଧ୍ୟ ପଇସା ନାହିଁ । କାରଣ ଗତବର୍ଷ ଭଉଣୀ ବାହାଘରକୁ ସତୁରୀ ହଜାର ଟଙ୍କା ଉଠାଇ ଦେଇଥିଲି । ସେଥିପାଇଁ ମାସକୁ ମାସ ଦରମା ଟଙ୍କାରୁ ଦୁଇ ହଜାର କଟି ଯାଉଛି । ସେଇ ଟଙ୍କାତକ ଥିଲେ ହୁଏତ ଏ ସମୟରେ ଏତେ ଚିନ୍ତା ରହି ନ ଥାନ୍ତା । ବାପାଙ୍କ ମତ ବିରୋଧରେ ଯାଇ ମୁଁ ସେଥର ଅଧିକ ଚାଳିଶ ହଜାର ଟଙ୍କା ଖର୍ଚ୍ଚ କରିଥିଲି । ବାପାଙ୍କ ନିର୍ଦ୍ଦେଶ ଅନୁଯାୟୀ ଜୋଇଁକୁ ସ୍କୁଟରଟାଏ ଦେବାକୁ ମୋତେ ପଡିଥାନ୍ତା ଓ ସେଥିପାଇଁ ଅଠେଇଶ ହଜାର ଟଙ୍କା ଦରକାର ପଡିଥାନ୍ତା । ମାତ୍ର ଘରେ ପହଞ୍ଚି ଭୋଜି ଭାତର ଖର୍ଚ୍ଚ ଅଟକଳଟା ଯେତେବେଳେ ମୁଁ ଶୁଣିଥିଲି । ମୋତେ ଭାରି ବିରକ୍ତ ଲାଗିଥିଲା । ଶେଷ ଭଉଣୀର ବାହାଘର । ମୋ ବନ୍ଧୁ-ବାନ୍ଧବ, ବୁଲୁର ବନ୍ଧୁ-ବାନ୍ଧବ କିମ୍ବା ମୋ ଭଉଣୀ ନୈରତାର ବନ୍ଧୁମାନେ ଆସିଲେ କ'ଣ କହିବେ– ଏଇ ଚିନ୍ତାରେ ମୁଁ ଭୋଜିର ଖର୍ଚ୍ଚ ଅଟକଳକୁ ମଧ୍ୟ ପୁରା ବଦଳାଇ ଦେଇଥିଲି ।

ବାପା କହୁଥିଲେ ଝିଅ ବାହାଘରରେ ଏମିତି ଖର୍ଚ୍ଚ କରିବାର କିଛି କାରଣ ନାହିଁ । ମୁଁ କିନ୍ତୁ କୌଣସି କଥା ଶୁଣି ନଥିଲି । ଅଗଣା ଯୋଡି ବିରାଟ ପ୍ୟାଣ୍ଡେଲ ବନ୍ଧା ହେଲା । ଝାଡ ଆଲୁଅରେ ଚମକି ଗଲା ଚତୁର୍ଦ୍ଦିଗ । କଲିକତି ରୋଷେଇଆ ଆସିଲେ । କେବଳ ମାଛ-ଭାତ ଜାଗାରେ ଚିକେନ୍, ମଟନ ଓ ପ୍ରନ୍ ଆଇଟମ୍ ତକ ମୁଁ ବଢାଇ ଥିଲି । ବହୁ ଲୋକଙ୍କ ସମାଗମ ହୋଇଥିଲା । ନୈରତାର ବନ୍ଧୁମାନେ ତ କହିଲେ : ଏମିତି ଭାଇଟାଏ ଆମର ଥିଲେ ଆମେ କିଛି କଥାକୁ ପରବାୟ କରି ନଥାନ୍ତୁ– ଜୀବନ ଧନ୍ୟ ହେଇ ଯାଇଥାନ୍ତା ।' ମୋ ବନ୍ଧୁମାନେ ମଧ୍ୟ ମୋତେ ପ୍ରଶଂସାରେ ପୋତି ପକାଇଥିଲେ । ପ୍ରଶଂସା କରିଥିଲେ ଅତିଥି ଅଭ୍ୟାଗତ ଦଳ । ଅଥଚ ମୋର

ଦୁର୍ଘଟଣା ଶୁଣି ସେଇ ନୈରତା ଆସି ନଥିଲା । ତା' ବର ଆସିଥିଲା । ନୈରତାର ପ୍ରଥମ ଗର୍ଭ ଦୃଷ୍ଟିରୁ ନଦୀ-ନାଳ ପାରି ହେବା କୁଆଡେ ଶାସ୍ତ୍ରରେ ମନା ।

ନା, କୌଣସି ଦିଗରୁ ଟିକିଏ ସୁରାହା ମିଳୁନି । ଅନ୍ୟପଟେ ଅପରେସନ ନ କଲେ ଡାକ୍ତର କହିଛନ୍ତି ଜୀବନ ସଂକଟାପନ୍ନ । ଟଙ୍କା ନହେଲେ ବଞ୍ଚିବାର ସ୍ୱପ୍ନ ଦେଖି ହେଉନାହିଁ । ମୋତେ ଅନ୍ୟ କୌଣସି ବୁଦ୍ଧି ମଧ୍ୟ ଜୁଟୁ ନାହିଁ । ଭାରି ହାଲିଆ ହାଲିଆ ଲାଗୁଛି । ଖାଇବା ପାଇଁ ଇଚ୍ଛା ନଥିଲେ ବି ବୋଉର ବାଧ୍ୟ ବାଧକତାରେ ମୁଠାଏ ଭାତ ଖାଇଥିଲି । ଉଭୟ ଆଳସ୍ୟ ଓ କାଇଲି ଭାବ ଯୋଗୁ ହୁଏତ ମୋତେ ନିଦ ଆସି ଯାଇଥିଲା । ଆଖି ବୁଜି ଶୋଇ ପଡିଥିଲି ।

ନିଦ ଭାଙ୍ଗିଲା ମାତ୍ରେ ମୁଁ ଶୁଣିବାକୁ ପାଇଥିଲି ସେଇ ପରିଚିତ ସ୍ୱର– 'ବାବୁ କେତେବେଳୁ ଶୋଇଛି' ?

କପାଳରେ ଗୋଟିଏ ଶକ୍ତ ପାପୁଲିର ସ୍ପର୍ଶ । ଆଖି ଖୋଲି ଅନାଇବାକୁ ଇଚ୍ଛା ହେଉଥିଲା । ମାତ୍ର କୁଆଡେ ଯେମିତି ଅଭିମାନତକ କୁଢେଇ ପଡିଲା ମୋ ଭିତରେ । ଏଇ ସେଇ ସ୍ୱାର୍ଥପର ଲୋକ । ଯାହାକୁ ବାପା ବୋଲି ମୁଁ ଡାକେ, ସେଇ ଲୋକଟା ମୋତେ ଛୁଇଁଛି । ମୋ ଦେହର ଶୀରା-ପ୍ରଶୀରା ବିଦ୍ରୋହ କରିବା ପରି ଲାଗିଲା । ଇଚ୍ଛା ହେଉଥିଲା ସେଇ ନିଷ୍ଠୁର ହାତଟାକୁ ମୋ ହାତ ଦ୍ୱାରା ଫୋପାଡି ଦେବି । ଏତେ ଦିନକୁ ସ୍ନେହ ଦେଖାଇ ଆସିଛନ୍ତି !! ଅଥଚ ସେପରି କିଛି କରିବାକୁ ପଡିଲାନି । ହାତଟା ଆପଣାଛାଏଁ ଉଠିଗଲା । ପାଖ ଚେୟାରଟାରେ ଶବ୍ଦ ହେଲା । ବୋଧହୁଏ ସେ ବସିଲେ, ବୋଉ ମୋ ଶେଯ ଉପରେ ବସିଥିବାର ମୋର ଅନୁଭବ ଥିଲା । କାରଣ ସେ ଆସିଲେ ମୋତେ ଅଲଗା ପ୍ରକାର ଲାଗେ । ଅଲଗା ଏକ ବାସ୍ନାରେ ନାକ ସତେଜ ହେଇଯାଏ ।

ବାପା ପଚାରିଲେ : କେବେ ତାକୁ ଦିଲ୍ଲୀ ନେବାକୁ ଠିକଣା କରିବା ? ବୋଉ ଏକ ପ୍ରକାର ରଷି ଥିଲା କହିଲେ ଚଳେ । କାରଣ କଣ୍ଠରେ କୋହ ଛପୁ ନଥିଲା । ଉତ୍ତର ଦେଲା : ଖାଲି ନେବାକୁ ଚାହିଁଲେ ତ ହେବନି । ଖର୍ଚ୍ଚ କଥା ଚିନ୍ତା କରି କରି ମୋତେ ବାଇଆ ହେଲା ପରି ଲାଗିଲାଣି । ଡାକ୍ତର କହୁଛି ପାଖା ପାଖି ଲକ୍ଷେ ଟଙ୍କା ଖର୍ଚ୍ଚ ହେବ । ଏତେ ଟଙ୍କା କେଉଁଠୁ ଆସିବ ଯେ ମୋ ପୁଅ....' କହୁ କହୁ ବୋଉର ସ୍ୱର ପୁରା ବତୁରି ଗଲା । ସେ ଆଉ କିଛି କହିପାରିଲାନି ।

ବାପା କିନ୍ତୁ ନିର୍ବିକାର ଢଙ୍ଗରେ କହିଲେ, କାହିଁକି ମୋ ପୁଅ ପାଇଁ ଟଙ୍କାର ଅଭାବ ଅଛିକି ? କହୁ କହୁ ପକେଟରୁ ବୋଧହୁଏ କ'ଣ କାଢିଲେ ଓ ବୋଉ ହାତକୁ ବଢାଇ ଦେଉ ଦେଉ କହିଲେ– ନିଅ ଏଇଟା ରଖ । କାଲି ବୁଲୁକୁ କହିଲେ ବ୍ୟାଙ୍କରୁ ଟଙ୍କା ନେଇ ଆସିବ । ବହୁତ ଗୁଡାଏ ଟଙ୍କା । ସାବଧାନରେ ଆଣିବ । ତାକୁ କହିବ ପଅରଦିନ ପାଇଁ ଟ୍ରେନ୍ ରିଜର୍ଭେସନ କରିବ । ମୁଁ ଆଜି ରାତି ବସ୍‌ରେ ଗାଁକୁ ଫେରିଯାଉଛି ।

ବାପାଙ୍କ ଫେରିଯିବା କଥା ଶୁଣି ବୋଉ ବୋଧହୁଏ ହତାଶ ହୋଇଥିଲା, କହିଲା; ତୁମେ ପଳେଇବ କହୁଛ । ଆଉ ଏହି କାଗଜଟା ଦେଖି ବ୍ୟାଙ୍କ କେତେ ଟଙ୍କା ଦେବ ଯେ ମୋ ପୁଅ ଦିଲ୍ଲୀ ଯିବ ?

ବାପାଙ୍କ କଣ୍ଠରେ ଏଥର ବିରକ୍ତିର ଆଭାସ । ତଥାପି ଚାପି ଚାପି କହିଲେ– ପୁରା ଲକ୍ଷେ ଟଙ୍କାର ଚେକ୍ । ବୁଲୁ ଗତ ପହିଲା ଦିନ କହିବା ବେଳଠୁ ଧାଁ ଧପଡ କରି ପୋଷ୍ଟ ଅଫିସ ଓ ବ୍ୟାଙ୍କରେ ଯାହା ଥିଲା– ଉଠାଇ ଆଣିଛି । ମଦନା ବେହେରା ସହିତ କଥାବାର୍ତ୍ତା ସରିଛି । ସେ ମୋତେ କାଲି ପଚାଶ ହଜାର ଟଙ୍କା ଦେବ । ମୁଁ ସେଥିପାଇଁ ଆଜି ଚାଲିଯାଉଛି । ତଳମାଳିଆ

ଦୁଇମାଣ ପାଳଜମି ବିକିଦେବି । ଟଙ୍କା ପାଇଁ ତେଣୁ ଜମା ବ୍ୟସ୍ତ ହୁଅନା । ମୁଁ ପଅର ଦିନ ସକାଳକୁ ଫେରିଆସିବି । ଯିବାପାଇଁ ସମସ୍ତ ସଜବାଜ କର । ମୁଁ ମଧ୍ୟ ଦିଲ୍ଲୀ ଯିବି । କହୁ କହୁ ବାପା ଠିଆ ହେଇ ପଡିଲେ ।

ବୋଉ କିନ୍ତୁ କହି ଉଠିଲା : 'ଆମ ପାଳ ଜମି ସବୁ ତୁମେ ବିକି ଦେବ' । ସତେ ଯେପରି ବାପାଙ୍କ କଥାକୁ ବୋଉ ବିଶ୍ୱାସ କରିପାରୁନି ।

ବାପା କହିଲେ— ଆଉ ? ଜମି ବିକିବାନି ତ କ'ଣ କରିବା ? ଯାହା ଟଙ୍କା ଆଣିଛି— ସେଗୁଡାକତ ତା ଟଙ୍କା । ମାସକୁ ମାସ ସେ ଯେଉଁ ଟଙ୍କା ପଠାଉଥିଲା— ଏ ସେଇ ଟଙ୍କା । ସେଥିରୁ ଏତିକି ନେଇ ଆସିଛି । ଯା ଛଡା ଆମର ଜମି-ବାରି ରହି କ'ଣ ହେବ ଯେ ! ସବୁ କିଛି ଏଇ ଦୁଇ ଭାଇଙ୍କ ପାଇଁ ତ ସାଇତିଛେ । ସେ ଭଲ ହୋଇ ଆସିଲେ ଆମ ଜମି କାଲି ଫେରିଆସିବନି କି ? ତୁମେ ଜମା ବ୍ୟସ୍ତ ହୁଅନା, – କହୁ କହୁ ବାପା ବୋଧହୁଏ ବାହାରି ଯାଉଥିଲେ ଘରୁ ।

ବୋଉ ଜୋର୍‌ରେ କାନ୍ଦି ଉଠିଲା । ମୁଁ ସାମାନ୍ୟ ଆଖିଖୋଲି ଅନେଇଲି । ବାପା ପାଦେ ପଛେଇ ଆସି ବୋଉ ମୁଣ୍ଡରେ ହାତ ରଖିଲେ । ସାନ୍ତ୍ୱନା ଦେବା ପରି କହିଲେ : ଏ ସମୟରେ ଏମିତି ଅଧିର ହେବା କିମ୍ୱା ଧୈର୍ଯ୍ୟ ହରାଇବା ଠିକ୍ ନୁହେଁ ବାବୁ ବୋଉ । ପଇଁତ୍ରିଶ ବର୍ଷ ତଳେ ଏଇ ପୁଅଟିକୁ ଆମେ ଠିଆ ହେବାକୁ- ଚାଲିବାକୁ ଶିଖାଇ ଥିଲୁ । ଆଜି ପୁଣି ସେ ତଳେ ପଡିଯାଇଛି । ତାକୁ ଆସ ଠିଆ କରାଇବା । ଚାଲି ଶିଖାଇବା । ଆମେ ଥାଉଁ ଥାଉଁ ସେ କ'ଣ ଶୋଇ ରହିବ ? ଠାକୁରଙ୍କୁ ଡାକ ସେ ସବୁ କିଛି ସଜାଡିଦେବେ— କହୁ କହୁ ବାପା ବାହାରକୁ ବାହାରି ଗଲେ ।

ମୁଁ ଆଉ ସମ୍ଭାଳି ନପାରି ଆଖି ଖୋଲି ଦେଲି । ପୋତୁ ଥିବା ଆଖିର କୋଣ ଦେଇ ଦୁଇ ପଟକୁ ବୋହିଗଲା ପାଣି । ତଣ୍ଟି ପର୍ଯ୍ୟନ୍ତ ଉଠି ଆସୁଥିବା କୋହକୁ ରୋକି ହେଉନଥିଲା— ନା ଜମାରୁ ରୋକି ପାରୁ ନଥିଲି ।



# ଶୂନ୍ୟ କୋଠରିର ଠିକଣା

## ଅନୀଲ କୁମାର ଦାସ

ଭଲ ନ ଲାଗିଲେ ବି ତାଙ୍କୁ ଭେଟିବାକୁ ଯାଉଥିଲି । କାରଣ ସେ କହୁଥିଲେ, "ଅନୁଭବର ଅନୁଭବ ହେଉଛି ଶକ୍ତି । ତାକୁ ଧରିରଖ, ପ୍ରତ୍ୟୟହୀନ ହୁଅନା ।"

ଜାଣେନା ସେ ଠିକ୍ କହୁଥିଲେ କି ନା । ତାଙ୍କୁ ବୁଝିବା ବାଟରେ ବୁଝି ଯାଉଥିଲି ଯେ ତାଙ୍କୁ ବୁଝିବାକୁ ମୋତେ ଅନେକ ଅନେକ କଥା ବୁଝିବାକୁ ପଡ଼ିବ ।

ସେ କାଳେ ଦିନେ ଥିଲେ ଜଣେ ପଲିଟିକାଲ୍ ଏକ୍‌ଟିଭିଷ୍ଟ୍ । କୌଣସି କାରଣରୁ ଦଳର ମୁଖ୍ୟଙ୍କ ସହ ବଚସା ଓ ମୁହାଁମୁହିଁ ହେବାର ପର ମୁହୂର୍ତ୍ତରେ ସେ ନିଷ୍ପତ୍ତି ନେଇଥିଲେ ଯେ ସେ ଆଉ ରାଜନୀତି କରିବେ ନାହିଁ ।

ତାପରେ ସେ ହଜିଗଲେ । କିଛି ବର୍ଷ ପାଇଁ କୁଆଡ଼େ ଗଲେ କେହି ଜାଣିଲେ ନାହିଁ । ନିଜ ନେତାଙ୍କ ସହ କେଉଁ ବିଷୟରେ ମତାନ୍ତର ଯୋଗୁଁ ସେ ଏତେ ବଡ଼ ନିଷ୍ପତ୍ତି ନେଇପାରିଲେ ତାହା ଆମମାନଙ୍କ ନିକଟରେ ଥିଲା ଅଜଣା ।

ତଥାପି ସେ ଦିନେ ଫେରିଲେ । ତେବେ ସେ ଆଉ ସେ ହୋଇ ରହି ନଥିଲେ । ବଦଳି ଯାଇଥିଲା ତାଙ୍କ ଚେହେରା, ଅବୟବ ଓ ପୋଷାକ । ଆଖି ଯୋଡ଼ାକ ହୋଇଯାଇଥିଲା ଅଦ୍ଭୁତ ଭାବେ ଉଜ୍ଜ୍ୱଳ ଓ ସ୍ଥିର । କଥା କହିଲାବେଳେ ଭ୍ରୂଲତା ଦ୍ୱୟ ପୂର୍ବ ଭଳି ଅସମୟରେ ନାଚି ଉଠୁ ନଥିଲେ । ଓଠଧାର ଥରାଇ ଥରାଇ କିନ୍ତୁ ଫୁଲ ଭଳି ଫୁଟି ପଡୁଥିଲେ ତାଙ୍କ ମୁହଁରୁ କିଛି ଗମ୍ଭୀର ଓ ରହସ୍ୟମୟ ପଂକ୍ତି ।

ଯୁବକମାନଙ୍କୁ ସେ ନିକଟକୁ ଡାକୁଥିଲେ । ସମାସ୍କନ୍ଧ ଭଳି ବ୍ୟବହାର କରୁଥିଲେ । ବେଶ୍ ଖାଦ୍ୟ ଓ ପାନୀୟ ଦେଇ ଚର୍ଚ୍ଚା କରୁଥିଲେ । ସମସ୍ତଙ୍କ ବିଷୟରେ ଆନ୍ତରିକତାର ସହ ପଚାରା ପଚରି କରୁଥିଲେ । ଚେସ୍ ଖେଳୁଥିଲେ । ତାଙ୍କୁ କିଛି ପ୍ରଶ୍ନ କଲେ ସେ ବ୍ୟକ୍ତିଗତ ସମସ୍ୟା ସବୁ ବିଷୟରେ ବିସ୍ତୃତ ଆଲୋଚନା କରୁଥିଲେ । ସେ ସବୁର ମୂଳ ଆଧାର ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରୁଥିଲେ, ସଙ୍କେତରେ । ବେଳେ ବେଳେ ଆହ୍ୱାନ କରୁଥିଲେ ତିନି କିଲୋ ମିଟର ଦୂରବର୍ତ୍ତୀ ଏକ ଅନୁଚ୍ଚ ପାହାଡ଼ ନିକଟକୁ ଯିବାକୁ ଇଭିନିଂ ୱାକ୍‌ରେ ।

ବର୍ତ୍ତମାନ ସେ ନଥିଲେ ସମାଜସେବୀ, ରାଜନୀତିକ ନେତା, ସାହିତ୍ୟିକ କି ବକ୍ତା । ତଥାପି ଆମର ସାଥୀ ମହଲରେ ତାଙ୍କର ନିକଟତର ହେବା ପାଇଁ ସତେ କି ଲାଗିଥିଲା ଏକ ଉଷ୍ମ ପ୍ରତିଯୋଗିତା । ମୋର ଅନ୍ୟ ବନ୍ଧୁମାନଙ୍କର ବିଶ୍ୱାସ ଥିଲା : ଲୋକଟାର ମ୍ୟାଗ୍‌ନେଟିଜିମ୍ ଅଛି । କିଛିଟା ହିପ୍ନୋଟିକ୍ ପାୱାର ନଥିଲେ ଆମ ସମସ୍ତଙ୍କୁ ଅକ୍ଳେଶରେ ନିଜ ପାଖକୁ ଟାଣିନେଇ ପାରନ୍ତା ବା କେମିତି ?

କେଜାଣି କାହିଁକି ମୁଁ ପ୍ରଥମେ ପ୍ରଥମେ ତାଙ୍କ ଦ୍ୱାରା ପ୍ରଭାବିତ ହୋଇଛି ବୋଲି ବିଶ୍ୱାସ କରିପାରୁ ନଥିଲି । ତାଙ୍କର ଦମ୍ଭୋକ୍ତି ଭିତରେ ମୁଁ ଦେଖୁଥିଲି ଏକ ଅହଂକାରୀ ମଣିଷ । ତଥାପି

ତାଙ୍କର ଯୁକ୍ତି ସବୁକୁ ମୁଁ କାଟି ପାରୁ ନଥିଲି । କଥା କଥାକେ ସେ ମୋତେ ପରାଜିତ କରୁଥିଲେ । ତାଙ୍କର ସେଭଳି ଉଦ୍ଦେଶ୍ୟ ଥାଉ ବା ନଥାଉ ମୁଁ ଅନ୍ତତଃ ସେମିତି ଅନୁଭବ କରୁଥିଲି ।

ହଠାତ୍ ସେ ଦିନେ କହିଲେ, ''ନିଜକୁ ଠକିବାର ଉପାୟଟି କ'ଣ ଜାଣ ? ... ଅନ୍ୟ ଜଣେ ଠିକ୍ ନୁହେଁ ବୋଲି ଆତ୍ମସନ୍ତୋଷ ଲାଭ କରିବା ।''

ସେଦିନ ସେଇ ମୁହୂର୍ତ୍ତରେ ମୁଁ ତାଙ୍କ ନିକଟରେ ଗପି ଚାଲିଲି ମୃଣାଳିନୀ କଥା । ମୋ ବାପା ଦିନେ ଚାକିରି କରିଥିବା ସପ୍ଲାଇ ଅଫିସରେ ବଢ଼ି ଚାଲିଥିବା ବିଶୃଙ୍ଖଳା କଥା । ଅମିତ୍ ତ୍ରିପାଠୀଙ୍କର ରିଲିଫ୍ ଫଣ୍ଡ ପଇସା ଆତ୍ମସାତ୍ କରିବା କଥା । ଦେଶରେ ଏବେ ବଢ଼ି ଚାଲିଥିବା ଅଶାନ୍ତି, ସାମ୍ପ୍ରଦାୟିକତା ଓ ଜାତିବାଦ କଥା । ମୋର ଅସ୍ଥିରତା କଥା ଓ ଜ୍ୟୋତିଷାଚାର୍ଯ୍ୟ ବିମ୍ବାଧର ମିଶ୍ରଙ୍କର ମୋର ପଇଁତିରିଶ ବର୍ଷରେ ଅକାଳ ମୃତ୍ୟୁର ଭବିଷ୍ୟବାଣୀ କଥା । କଲିଗ୍ ଅବିନାଶ ପତ୍ନୀର ଏକ୍ସଟ୍ରା ମେରିଟାଲ୍ ଆଫାୟାର୍ କଥା ।

ସେ ହଠାତ୍ କହି ଉଠିଲେ, ''କାହିଁକି ଅଯଥା କଷ୍ଟ ଦେଉଛ ନିଜକୁ ? ଛନ୍ଦି ହେଉଛ ଏମାନଙ୍କ ଭିତରେ ? ଏମାନଙ୍କ ଭିତରୁ କିଏ ତମକୁ ଆମନ୍ତ୍ରଣ କରିଛି ନିଜ ସହ ସାମିଲ୍ କରିବାକୁ ? ନୋ... ନୋ ୟଙ୍ଗମ୍ୟାନ୍ । ତୁମକୁ ଯିବାକୁ ହେବ ଅନେକ ଦୂର । ଗୋ ଆହେଡ୍ ଡୋଣ୍ଟ୍ ଲୁକ୍ ବ୍ୟାକ୍ ।''

''କିନ୍ତୁ କେଉଁଟା ଆଗ, କେଉଁଟା ପଛ ? ଷ୍ଟାର୍ଟିଂ ପଏଣ୍ଟଟା କ'ଣ କେଉଁଠାରୁ ଆରମ୍ଭ ହେବ ?''

: ଏଇ ଏଇତ ! ତୁମେ, ତୁମେ ହିଁ ଆରମ୍ଭ କରୁଛ ତୁମଠାରୁ ? ତୁମର ପ୍ରଶ୍ନରୁ, ଜିଜ୍ଞାସାରୁ ।

ଉନ୍ମତ୍ତ ଝଡ଼ର ତାଣ୍ଡବ ପରର କେଉଁ ବିଧ୍ୱସ୍ତ ଉପତ୍ୟକା ଭଳି ସେଦିନ ମୋର ଛାତି । ହୃଦୟର କେଉଁ ନିଭୃତ କୋଣରେ ଏକ ପ୍ରକାଣ୍ଡ ଶବ୍ଦ ପରେ ସବୁ ଯେମିତି ଶୁନ୍‌ଶାନ୍ । ଭାବନାର କେନ୍ଦ୍ର ସ୍ଥଳରେ କେହି ଯେମିତି ଲଗାଇ ଦେଇଛି ନିଆଁ । ମୋ ଆଖି ଆଗରେ ସ୍ତୁପୀକୃତ ପାଉଁଶ । ଆଉ ମୁଁ ଯେମିତି ଖସରି ଯାଉଛି ପାଉଁଶର ଗୋଟେ ମସ୍ତବଡ଼ ସ୍ତୂପ ଉପରୁ ତଳକୁ । ମୋ ନାକରେ ପୋଡ଼ା ଶାଳ ଆଉ ପିଆଶାଳ ଗଛ ବକଳା ପୋଡ଼ା ବାସ୍ନା । ସଦ୍ୟ ଜଳି ଯାଉଥିବା ପକ୍ଷୀମାନଙ୍କର ଗନ୍ଧ ।

ସେତେବେଳେ ସେ ମୋ କାନ୍ଧ ଉପରେ ହାତ ଥାପି ସାରିଥିଲେ- ''ଗୁରୁ ବା ଗାଇଡ୍ ମଧ ଶେଷ ଉତ୍ତର ନୁହେଁ । ହି ଇଜ୍ ସିମ୍ପଲି ଏ ମିନ୍‌ସ, ନଟ୍ ଦି ଏଣ୍ଡ୍ ।''

ଏତିକି ଶୁଣିଲା ପରେ ପବନରେ ପତ୍ରଟିଏ ଭଳି ସେଦିନ ଉଡ଼ି ଆସିଲି ମୋର ଫେରନ୍ତା ରାସ୍ତାରେ । ଆଗରେ ନଥିଲା ଠୋପାଏ ହେଲେ ବର୍ଷା । ରାସ୍ତା ଥିଲା ଯାନବାହନ ଓ ଜନଶୂନ୍ୟ । ଅଥଚ ଷ୍ଟ୍ରିଟ୍ ଲାଇଟ୍ ସବୁ ଜଳି ଉଠିଥିଲା । ରାସ୍ତାକଡ଼ ଝୁମ୍ପୁଡ଼ିମାନଙ୍କରୁ ଲମ୍ବିଥିଲା ପାତଳ ଧୂଆଁର ଧାର ଆକାଶକୁ । ମୋତେ ସବୁ ଆଶ୍ଚର୍ଯ୍ୟ ଲାଗୁଥିଲା । ଶୀତଳ ପବନ ମୋ କାନ ମୁଣ୍ଡରେ ପିଟି ହେଉଥିଲା । ମୋ ପକେଟ୍‌ରେ ସିଗ୍ରେଟ୍ ନଥିଲା । ସେତେବେଳେ ଗୁର୍ଖା ଦରୱାନ୍‌ର ହ୍ୱିସିଲ୍ ଶୁଭୁ ନ ଥିଲା । ଅଥଚ ମୋ ଆଗରେ ସେତେବେଳେ ଭଡା ହୋଇଥିଲା ଏକ ମେଘନାଦ ପାଚେରୀ । ଡେଇଁ ପଡ଼ିବାକୁ ଇଛା ହେଲା ଅନ୍ଧାର । ମୋର ଶୈଶବ, ଯୌବନ, ପ୍ରେମ, ଅହଂକାର, ହତାଶା, ଅଭାବ ଆଉ ବେକାରୀ ଜୀବନ । ବିତି ଯାଇଥିବା ତିରିଶ ବର୍ଷର ଜଙ୍ଗଲ ଭିତରକୁ ।

କେଉଁଠୁ ଆରମ୍ଭ କରିଥିଲେ ହୋଇଥାନ୍ତା ନୂଆ ମୋଡ଼ରେ ଚାଲିବା ? କାହିଁକି ବା କରି ହେଲାନି ? ଆଜି କିଛି ଗୋଟେ ଚେଞ୍ଜ ହେଲେ ଏ ମନୋଟନସ୍ ଜୀବନରୁ ମୁଁ ବର୍ତ୍ତିଯାନ୍ତି । ହେଲେ ପୂର୍ବରୁ ତ ମୁଁ ପରିବର୍ତ୍ତନ ଚାହିଁ ନଥିଲି । ସେଇ ଚିରାଚରିତ ଗତାନୁଗତିକତା ଭିତରେ ବିତଉଥିଲି ମୋର ଜୀବନ । ସେଇତ ଗୋଟିଏ ମଣିଷର ଜୀବନ ! ଆଜି ତେବେ କାହିଁକି ଚାହୁଁଛି ଗୋଟେ ଚେଞ୍ଜ୍ । ଏବସୋଲ୍ୟୁଟ୍ ଚେଞ୍ଜ ?

ସୋନାଗାଛିର ବୟସ୍କା ବେଶ୍ୟା କହିଥିଲା,

''ଲଡ୍‌କା ଲୌଟ୍‌ଯା''

: କାହିଁକି ?

: ତୋର ଉମର୍ ହୋଇନି ।

ସେଦିନ ଭଲ ଲାଗିଥିଲା ଲୋକ ଗହଳି । ରାସ୍ତାର କୋଳାହଳ । ହାଓ୍ଵଡାର ଅନ୍ୟମନସ୍କ ସନ୍ଧ୍ୟା । ବୟସ କେମିତି ଆସେ, ସମୟ କେମିତି ଯାଏ- ଏସବୁର ଗଭୀର ଉତ୍ତର ପାଇଁ ତଥାପି ଉଚ୍ଛନ୍ନ ହେଉଥିଲା ମନ ।

ପ୍ରାଚୀ ପଟ୍ଟନାୟକ କହିଥିଲା, ''ତମେ ଜଣେ ବୁଦ୍‌ଧୁ ।''

: ବିବାହ ପ୍ରସ୍ତାବ ଦେବାରେ ଭୁଲ୍ ରହିଲା କେଉଁଠି ? ଆମେ ତ ତିନିବର୍ଷ ଧରି ବିବାହ ନକରି ମଧ୍ୟ ବିବାହିତଙ୍କ ଭଳି ଜୀବନ ବିତଉଛେ ?

: ଆରେଞ୍ଜଡ୍ ମ୍ୟାରେଜ୍ ? ପୁଣି ମୋ ଚାକିରିକୁ ଭରସା କରି ? ତୁମେ ତା' ହେଲେ ଏମିତି ଗୋଟେ ଚକ୍‌କର୍‌ରେ ଅଛ ?

: ବେକାର ଥାଇ ତୁମକୁ ବିବାହ କରିବା କେତେବଡ଼ ରିସ୍‌କ ଜାଣ ?

: ଅନ୍ୟକୁ ନେଇ ବିପଦର ମୁକାବିଲା କରିବା କାଓ୍ଵାର୍ଡାଇସ୍ ବୋଲି ମୋର ଧାରଣା ।

ବାପା କହିଥିଲେ, ''ଏଥର କିଛି ଗୋଟେ କର । ଦାୟିତ୍ୱ ନେଇ ଶିଖ୍ । ଫୁଲାଫାଙ୍କିଆ ନୀତି ଛାଡ୍ ।''

: କ'ଣ କରିବି ଆପଣ କହୁନାହାନ୍ତି ?

: ଚାକିରି, ବିଜିନେସ୍ କି ଚାଷ ?

: ଆମର ତ ଇରିଗେଟେଡ୍ ଲ୍ୟାଣ୍ଡ ନୁହେଁ । ଚାଷ କଲେ କ'ଣ ଲାଭ ? ଚାକିରିଟେ ପାଇଁ ବହୁତ ଦୌଡ଼ାଦୌଡ଼ି କଲିଣି । ଆଉ ପାରିବିନି । ମଣ୍ଡଳ କମିଶନ୍ ପରେ ଗଭ୍‌ମେଣ୍ଟ ସରଭିସ୍‌ରେ ପଶିବା କେତେ କଷ୍ଟକର ହେଲାଣି ତା' ଆପଣ ବୁଝିବେ କେମିତି । ଆଉ ରହିଲା ବିଜିନେସ୍ ? ଆପଣଙ୍କ ସର୍ଭିସ ମାମଲା ତ ଟ୍ରାଇବୁନାଲ୍‌ରେ ଛିଡ଼ିଲା ନାହିଁ । ପେନ୍‌ସନ୍ ପଇସା କେବେ ମିଳିବ ଯେ ମୁଁ ବିଜିନେସ୍ ଆରମ୍ଭ କରିବି ?

: ହେଲେ ତୋ ଆଖି ସାମ୍ନାରେ ତୋରି ସାଙ୍ଗ ଦେବୁ, ବିରଞ୍ଚି, ସତିଆ ସବୁ କୁଆଡ଼େ ନା କୁଆଡ଼େ ଲାଗି ଗଲେଣି । ଆଉ ତୋ ଭଳି ଅକର୍ମା ଆଉ ନିର୍ବୁଦ୍ଧିଆ ଆଉ କିଏ ଅଛି ?...

ଆଜି କିନ୍ତୁ ଖୋଜିବା, ପାଇବା, ଚେଞ୍ଜ୍, ଆଇଡେଣ୍ଟିଟି, ମୃତ୍ୟୁ ଭଳି ଶବ୍ଦମାନେ ମୋ ପାଇଁ କେତେ ଗଭୀର ଅର୍ଥ ବହନ କରନ୍ତି ।

ଯେଉଁସବୁ ବିଷୟ ପୂର୍ବରୁ ମୁଣ୍ଡରେ ପଶୁନଥିଲା ଆଜି ସେସବୁ କେତେ ଆପଣାର ଲାଗନ୍ତି । ଉତ୍ତର ନ ପାଇଲା ଯାଏ କୌଣସି ପ୍ରଶ୍ନ ହାତ ଛଡ଼ା କରିବାକୁ ଇଚ୍ଛା ହୁଏନା । ନିଜେ ସମାଧାନ

ନକରି ପାରି ତାଙ୍କ ପାଖକୁ ଯିବାକୁ ପଡ଼େ । କି ଅଦ୍ଭୁତ ମଣିଷ । ଦେଖୁ ଦେଖୁ ବୁଝି ଯାଆନ୍ତି । ଶୁଣୁ ଶୁଣୁ ଉତ୍ତର ଆତ୍ମସ୍ଥ କଲା ଢଙ୍ଗରେ ଓଠ ଚିପି ହସି ଉଠିଥାନ୍ତି । ସେଇତ ଏତକ କଲେ । ନିଜକୁ ସମ୍ମାନ ଦେବାକୁ, ନିଜକୁ ସମର୍ଥ ବୋଲି ଭାବିବାକୁ ବିଶ୍ୱାସ ସୃଷ୍ଟି କଲେ । ତାଙ୍କୁ ନ ଦେଖିଲେ ଭଲ ଲାଗେନା । ନ ଭେଟିଲେ କେଉଁଠି କିଛି ହରେଇଲାଭଳି ଲାଗେ ।

ଏବେ ତ ରାତି । ଅନ୍ୟ ଦିନ ଭଳି ଆଜି ବି ସେ ଥିବେ । ଆଜି ତାଙ୍କୁ ପଚାରିବି ଏକ ବିଶେଷ ପ୍ରଶ୍ନ: ଆଜି ଯାଏ ଆମମାନଙ୍କର ବହୁତ ପ୍ରଶ୍ନର ସମାଧାନ ଦେଇଛନ୍ତି ଆପଣ । କିନ୍ତୁ ମୋର ସବୁ ପ୍ରଶ୍ନର ସମାଧାନ ମୁଁ ନିଜେ କରିପାରୁନି । ଯାହା ଆପଣଙ୍କ ପାଖରେ ଅଛି, ଯାହା ଆପଣଙ୍କର ବିଶେଷତ୍ୱ- ସେଇ କଥାଟି ଆପଣ ଆଜି ଯାଏ ଆଢୁଆଳରେ ରଖିଛନ୍ତି- ଯାହାର ଶକ୍ତିରେ ଆପଣ ଦେଖାଇ ପାରୁଛନ୍ତି ଆମମାନଙ୍କୁ ନୂଆ ରାସ୍ତା; ସେ ବିଷୟରେ ଆମକୁ ଜଣାନ୍ତୁ । ଆମମାନଙ୍କୁ ସୂତ୍ର ନ ଦେଇ କେବଳ ସମାଧାନ ଦେଉଛନ୍ତି କାହିଁକି ?

ତାଙ୍କ ଘର ସାମ୍ନାରେ ସମରେଶ, ଆଦିତ୍ୟ ଓ ବିପିନ୍ । ପଚାରିଲି, ''ଘରେ ଅଛନ୍ତି ?'' ବିପିନ୍‌ର କାନ୍ଦିଲା କାନ୍ଦିଲା ସ୍ୱର: ଆମକୁ ଠକି ଦେଇ ସେ ଚାଲିଗଲେ ।

: ଚାଲିଗଲେ ? ମୃତ୍ୟୁ, ଅପମୃତ୍ୟୁ ନା ଆତ୍ମହତ୍ୟା ?

: ନା ସେମିତି କିଛି ନୁହେଁ, ସେ ଚାଲି ଯାଇଛନ୍ତି ।

: ତା'ମାନେ ଆତ୍ମଗୋପନ ?

: ନା, ତୁ ତାଙ୍କୁ କ'ଣ ପାଇଲୁ କି ? ଯାହାକୁ ସେ ଡରୁଥିଲେ ଯେ ଲୁଚିବେ ? କଥା ଉଠଉଛୁ କାହିଁକି ?

: ନା, ତା'ହେଲେ ସେ କୁଆଡ଼େ ଯାଇ ନାହାନ୍ତି । ଏଇଠି ଅଛନ୍ତି । ଏଇ ଆଖ ପାଖରେ କେଉଁଠି । ଆରେ ହେ, ତାଙ୍କ ଘରର କବାଟ ଝରକା ସବୁ ଖୋଲା ଅଛି । ତୁମେମାନେ ତାଙ୍କୁ ଘରେ ଖୋଜିନ । ସେ ନିଶ୍ଚୟ ଘର ଭିତରେ ଅଛନ୍ତି । ଘର ଖୋଲା କରି କିଏ କ'ଣ ପଳାଇଯାଏ ?

ଧାଇଁଛି ଭିତରକୁ । ଗେଟ୍, ଅଗଣା, ଦୁଆର ପାରହୋଇ କେମିତି ପହଞ୍ଚିଛି ତାଙ୍କ ଡ୍ରଇଁ ରୁମ୍‌ରେ ମୋତେ ଜଣାନାହିଁ । ତା'ପରେ ବେଡ୍‌ରୁମ୍ । ଲାଟିନ୍, ବାଥରୁମ୍ କିଚିନ୍ । କେଉଁଠି ହେଲେ ସ୍ୱର ଶବ୍ଦ ନାହିଁ ।

ବାହାରେ ଜହ୍ନରାତି । ଘରେ ଆଲୁଅ ନାହିଁ । ତାଙ୍କୁ ଦରାଣ୍ଡିଲି । ଅନ୍ଧାରରେ ଅଣ୍ଡାଳି ବୁଲିଲି ଏ ମୁଣ୍ଡରୁ ସେ ମୁଣ୍ଡ । ଘରସାରା ସର୍ ସର୍ ମୋର ପାଦ । ଝର୍କା ରେଲିଂରେ ପିଟି ହେଉଛି ମୋର ଦୀର୍ଘଶ୍ୱାସ । ତାଙ୍କ ପୋଷାକ, ପର୍ସ, ଡାଏରୀ, ଡ୍ରୟର୍ ଟେବୁଲ୍, ସେଲଫ୍, ବାକ୍ସ, ବେଡ୍ ଘାଣ୍ଟି ପକାଇଲି । ସବୁଠି ଏକ ପ୍ରସାରିତ ଶୂନ୍ୟତା । କେଉଁଠି କିଛି ନାହିଁ । ତାଙ୍କ ହାତ ଲେଖା ଟୁକରାଟିଏ ବି ନୁହେଁ ।

ମୁଁ କିନ୍ତୁ ବାହାରିଲି ନାହିଁ । ବନ୍ଧୁମାନେ ମୋର ଚାଲି ଯାଇଥିଲେ । ପ୍ରେତକୋଠୀ ଭଳି ଲାଗୁଥିବା ଘର ଭିତରେ କେବଳ ମୁଁ । ଘରସାରା ମୋର ପାଦ ଘୂରି ବୁଲୁଛି । ମୋର ସାର୍ଟ ଦୋହଲୁଛି । ମୋର ଦୁଇହାତ, ଦଶ ଅଙ୍ଗୁଳି ଘୂରି ବୁଲୁଛନ୍ତି କାନ୍ଥ, କବାଟ, ଆଲମିରା ଓ ଅନ୍ୟାନ୍ୟ ଆସବାବ କଡ଼େ କଡ଼େ ।

କେହି ଜଣେ ଘର ଭିତରକୁ ଆସିଲେ । ବୋଧହୁଏ ସେ । ଥରି ଉଠିଲି: ଆପଣ ମୁଁ ଭାବିଥିଲି...

: ଜାଣିଥିଲି ତୁମେ ଆସିବ । ମୋତେ ମାଗିବ ସମାଧାନ ସବୁର ମୂଳସୂତ୍ର । ଅନ୍ୟ ଭାଷାରେ କହିଲେ ବୀଜମନ୍ତ୍ର ।

: ଘର ଖୋଲା ରଖି କୁଆଡ଼େ ଯାଇଥିଲେ ?

: ଖୋଲା ଘରର ପାର୍ଥିବ ଠିକଣା ନଥାଏ ବୋଲି ତୁମେ କ'ଣ ଜାଣନା । ଏକଥା ବି କ'ଣ ଜାଣନା ଯେ ଖୋଲା ଘରେ ହିଁ ଥାଇ ବୁଝିହୁଏ କେତେ ମିଠା ପବନ, ବର୍ଷା, ଇନ୍ଦ୍ରଧନୁ, ସକାଳ, ସନ୍ଧ୍ୟା, ପୁଣି ଋତୁମାନଙ୍କର ଖେଳ । ଖୋଲା ଘର ବି ଖୋଲି ଦେଇଥାଏ ଦେହର ତନ୍ତ୍ରୀ, ମୁକୁଳେଇ ଦିଏ ମନ । ସେଠି ଭୟ ନଥାଏ । ନା ଥାଏ ବିଦ୍ୱେଷ । ଏଇଠି କେବଳ ମାତ୍ର ବିତେଇ ଦିଅ ଦିନଟିଏ । ତେବେ ଯାଇ ବୁଝିବ ଜୀବନ କେତେ ମୂଲ୍ୟବାନ୍, କେତେ ଗରୀୟାନ୍ ।

: ତେବେ ଆପଣ କୁଆଡ଼େ ଯାଇଥିଲେ ? କାହିଁକି ? କାହାକୁ କିଛି ନ ଜଣାଇ ?

: ପଳାଇ ନଥିଲି । ଏଇମାତ୍ର ଅଦୃଶ୍ୟ ହୋଇଥିଲି । ଦେଖିବାକୁ ଇଚ୍ଛା ଥିଲା ତୁମମାନଙ୍କ ଉପରେ ମୋ ଅନୁପସ୍ଥିତିର ପ୍ରଭାବ । ଯଦିଓ ମୁଁ ଆନ୍ତରିକ ଭାବେ ଚାହେଁ ତୁମେମାନେ ନିଜସ୍ୱ ଦିପ୍ତୀରେ ଆଲୋକିତ ହୁଅ ।

: ଆପଣ କିନ୍ତୁ ମୋତେ ଠକି ଦେବାକୁ ଚାହାନ୍ତି । ମୂଳ ପ୍ରଶ୍ନରୁ ଦୂରକୁ ଚାଲି ଯାଉଛନ୍ତି, କୌଶଳରେ । ନା, ଆପଣଙ୍କୁ ଆଜି ଉତ୍ତର ଦେବାକୁ ହେବ ।

ଏଇଆ କହି ମୁଁ ତାଙ୍କ ଆଡ଼କୁ ହାତ ବଢ଼ାଇଲି । ତାଙ୍କ ଛାତିରେ ବାଜିଲା ହାତ । ମୋ ହାତ ଉପରକୁ ଉଠିଗଲା । ତାଙ୍କ ମୁଣ୍ଡ ଉପରେ ହାତ ବାଜିଲା ଭଳି ଲାଗୁ ଲାଗୁ ହଠାତ୍ ଦୁଲ୍‌କରି ଚଟାଣରେ କିଛି ଗୋଟେ ପଡ଼ିବାର ଶବ୍ଦ ହେଲା । ଲାଇନ୍ ଆସିଗଲା । ରୁମ୍ ଆଲୋକିତ ହେଲା । ମୋ ଆଗରେ ଥିବା ୫'୪'ର ଆଲମିରା ଉପରେ ଥିବା ଗ୍ଲୋବ୍‌ଟା ତଳେ ପଡ଼ିଥିଲା ଅରଫାନ୍‌ଟେ ଭଳି । ମୁଁ ଦେଖିଲି ମୁଁ ଏକା । ତା' ହେଲେ ସେ... ସେ ଗଲେ କୁଆଡେ । ପବନରେ ମିଳେଇ ଗଲେ ନା ଆଲୁଅରେ ତରଳି ଗଲେ ? କୁଆଡ଼େ ଓ କେମିତି ନିଶ୍ଚିହ୍ନ ହୋଇଗଲେ ?

ହାବୁକା ହାବୁକା ବିସ୍ମୟ ଭିତରେ ମୁଁ ଆକ୍ରାମାକ୍ରା । ପଳପଳ ଅବିଶ୍ୱାସବୋଧ ଭିତରେ ମୁଁ ନୟାନ୍ତ ଓ ଶ୍ୱାସରୁଦ୍ଧ । ବହୁଦିନରୁ ଖୋଜା ଚାଲିଥିବା ଉତ୍ତର ନ ମିଳିବାର ଶୂନ୍ୟତାବୋଧ ମୋତେ ପାଳ ଦଉଡ଼ି ଭଳି ବାନ୍ଧି ପକାଉଛି ଧରି ରଖିବାକୁ ଚାରିପଟୁ ।

ହଠାତ୍ ମୋ ଭିତରେ ମୁଁ କମ୍ପିଉଠିଲି, ''ସବୁ ମିଛ । ସବୁ ଶଳା ହିପୋକ୍ରେଟ୍ । ପୂଜ୍ୟାସନ ପାଇଲେ ସବୁ ଶଳା ପାଲଟନ୍ତି ଧୋକାବାଜ୍ । ଖୋଳ, ପରିଚୟ, ସୁରକ୍ଷାର ଦରଜା ଭିତରେ ଲୁଚିବାକୁ ଚେଷ୍ଟା କରନ୍ତି । ନା, ଯିଏ କାଓ୍ୱାର୍ଡ, ସେ ଯେତେ ଉଚ୍ଚାସନାଧିକାରୀ ହୋଇଥାଉନା କାହିଁକି ତା ଆଗରେ ହାତ ପତାଇବା ମୋର ଭୁଲ୍ । ମୋର ଅସମ୍ମାନ । ତଳକୁ ଖସିବାର ମଧ୍ୟ ଏକ ସୀମା ଅଛି ! ନା, କୌଣସି ଉତ୍ତରର ସନ୍ଧାନ ବରଂ ମୋର ଦରକାର ନାହିଁ । ବରଂ ମୁଁ ଫେରିଯିବି ମୋର ନିଜସ୍ୱ ଦୁଃଖ ଭିରକୁ । ପୃଥିବୀର କୋଟି କୋଟି ମଣିଷ ଯେମିତି ସାମ୍ନା କରୁଛନ୍ତି ନିର୍ମମତା, ଦାରିଦ୍ର୍ୟ, ଅନାଟନ ଓ ଅସଫଳତା; ଯେଉଁମାନଙ୍କ ପାଇଁ ଓହ୍ଲାଇ ଆସୁନି ଅଲୌକିକ ଶକ୍ତିଟେ ସ୍ୱର୍ଗରୁ-ସେମିତି ସାମ୍ନା କରିବି ସବୁ ଅପୂର୍ଣ୍ଣତା, ଯନ୍ତ୍ରଣା ଓ ହତାଶା ।''

ଘର ଭିତରୁ ଉତ୍ୟକ୍ତ ମାତାଲ ଭଳି ଦୌଡ଼ିଲି ବାହାରକୁ । ଗେଟ୍... ଗେଟ୍ ପାଖରେ... ହଠାତ୍... ଅଚାନକ ମୋ ଅଜଣାତରେ ସିଏ ! ହସହସ । ସେଇ ପୂର୍ବ ପରିଚିତ ମୁହଁ । ଟହ ଟହ ଔଜଲ୍ୟ, ସାରା ଦେହ ଜ୍ୟୋସ୍ନାମୟ । ଅମୃତ କୋମଳ ହାତଟି ସେ ରଖିଲେ ମୋ କାନ୍ଧରେ,

''ତୁମର ଉତ୍ତର ତୁମେ ପାଇଯାଇଛ ବିଶ୍ୱରୂପ ସବୁକିଛିକୁ ପଛକୁ ଠେଲି ଦେଇ ଆଗକୁ ଯିବାର ବିଶ୍ୱାସର ଆରମ୍ଭ ତ ତୁମଠାରୁ । ମୁଁ, ରାଜନୀତି, ଦେଶ, ସମାଜ, ସମ୍ପର୍କ, ଧର୍ମ କି ମନ୍ଦିର କେହି ତୁମକୁ ପହଞ୍ଚାଇ ପାରିବେନି ତୁମ ଲକ୍ଷ୍ୟ ସ୍ଥଳରେ । କେବଳ ତୁମର ବିଶ୍ୱାସ । ନିଜଠାରେ ନିଜର ପର୍ଯ୍ୟାପ୍ତ ଅନୁରକ୍ତି । ସେଇଟି ହିଁ ପ୍ରଥମ କଥା ଓ ଶେଷ କଥା ବୋଲି ଭାବିନେଇ ପାର ପ୍ରଥମ ଅବସ୍ଥାରେ । ତୁମେ ହିଁ ତୁମ ପାଇଁ ସର୍ବଶ୍ରେଷ୍ଠ ସତ୍ୟ । ତା ପକ୍ଷୀର କୂଜନ ହେଉ, ପଶୁର ଅହଂକାର ହେଉ, ପ୍ରକୃତିର ପ୍ରଳୟ ହେଉ, ମଣିଷର ବିପ୍ଳବବୋଧ ହେଉ କି ମନୁଷ୍ୟୋତ୍ତର ଆନନ୍ଦ ହେଉ । ମୁଁ ଆନନ୍ଦିତ, ମୁଁ ସନ୍ତୁଷ୍ଟ, ତୁମେ ତୁମର ରାସ୍ତା ପାଇଯାଇଛ ।

ଏକ ଆତ୍ମହରା ଆନନ୍ଦରେ କୁଳୁକୁଳୁ ମୋର ସମଗ୍ର ସତ୍ତା । କେଉଁ ଶୂନ୍ୟାକାଶ ଆଡ଼େ ବହିଯିବାକୁ ଅଧିର ଅଶାନ୍ତ ଆଗ୍ରହ ଦୋହଲାଇ ଦେଇଛି ମୋର ଚେତନାର ଥଳକୂଳ । ମୁଁ ବୋଧହୁଏ ପ୍ରସାରିତ ହେବାରେ ଲାଗିଥିଲି ଜୀବୋନ୍ମୁଖ ଅବସ୍ଥା ଆଡ଼କୁ । ଉତ୍ତରଣର ଆହ୍ଲାଦରେ ଫେନିଳ ହୋଇ ଉଠୁଥିଲା ମୋର ସର୍ବାଙ୍ଗ । ଶେଷତମ ଘଟଣାଟି କ'ଣ ହେବାକୁ ଯାଉଛି ତା' ବୁଝିବା ପୂର୍ବରୁ ମୁଁ ନଇଁ ପଡୁଥିଲି ଛୁଇଁବାକୁ ତାଙ୍କ ପାଦ । ହେଲେ ତାଙ୍କ ପାଦ ଓ ମୋର ଦୁଇଟି ହାତ ? କୁଆଡ଼େ ଉଭାନ୍ ହୋଇଗଲେ ? ମୋତେ ଆଉ କିଛି ଦେଖାଯାଉ ନଥିଲା । ଚାରିଆଡ଼େ କେବଳ ଜୋସ୍ନାସ୍ନାତ ସବୁଜ ଘାସର ପୃଥିବୀ । ଆଉ ସେଇଠି ପଡ଼ି ଛଳ ଛଳ ହେଉଥିବା ଜହ୍ନାଲୋକରେ ଝଲମଲ ମୋର ଦୁଇଟୋପା ଲୁହ ।



# ବାଁ ହାତ

## ଆଭାସ କୁମାର ବରାଳ

ଲୋକଟା ଉପରେ ଆଖି ପଡ଼ିବା ମାତ୍ରେ ମୁଁ ଭୟରେ ଚମକି ପଡ଼ିଲି । ତା'ର ବାଁ ହାତଟା ନଥିଲା କିନ୍ତୁ, ହଠାତ୍ ବାଁ ହାତ ତା'ର ଗଲା କୁଆଡ଼େ ?

ଅନେକଥର ମୁଁ ଲୋକଟାକୁ ଦେଖିଛି । ଭଲମନ୍ଦ ନେଇ ପଦେ ଦୁଇପଦ କଥା ବି ହୋଇଛି । ତା'ର ମୋର ପରିଚୟ ନିବିଡ଼ ନ ହେଲେ ବି ବେଶ୍ ଜଣାଶୁଣା । ଅଥଚ ତା'ର ଯେ ହାତ ଗୋଟାଏ ନାହିଁ, ମୋ'ର ଏକଥା ମନେ ପଡୁନଥିଲା । ତାକୁ ଦେଖିବା ମାତ୍ରେ ମୁଁ ସବୁକଥା ଭୁଲି ଯାଇଥିଲି । ଏପରିକି ମୁଁ ଏଠାକୁ କାହିଁକି ଆସିଛି, ସେକଥା ମୋ'ର ମନେ ନଥିଲା ।

କାରଣ ମୁଁ ଗୋଟାଏ ପାପ କରିଥିଲି ଯାହା କେବେ ବି କରିନି । ଅଥଚ ହଠାତ୍ କେମିତି ଘଟିଗଲା ମୁଁ କହିପାରିବିନି । ଯାହା ଘଟିଲା, ତାହା ପାପ କି ନୁହେଁ, ତା' ବି ମୁଁ କହିପାରିବିନି । ସେପରି ପ୍ରାୟ ଘଟେ । ଘଟିବା ଘଟଣାଗୁଡ଼ିକ, ଯାହା ସାମାଜିକ ସ୍ରୋତର ବାହାରେ, ଅଥଚ ନିହାତି ଦରକାରୀ ଘଟଣା, ସେଗୁଡ଼ିକ ପ୍ରାୟ ନିଶ୍ଚୟ ନୁହେଁ । ଏକଥା ମୁଁ ଜାଣିଥିଲେ ବି ମୋର ମନ କାହିଁକି କେଜାଣି ଘଟଣାଟିକୁ ସହଜରେ ଗ୍ରହଣ କରିପାରୁ ନଥିଲା, ବୋଧହୁଏ ଭଲରେ ।

ଘଟଣାଟି ଘଟିବାବେଳେ ମୁଁ ଭାବୁଥିଲି ଯେମିତି କେବଳ ଘଟଣା ଘଟାଇବାକୁ ହିଁ ମୁଁ ଜନ୍ମ । ମୋ' ଦ୍ୱାରା ଯଦି ସମ୍ଭବ ନ ହୁଏ, ତେବେ ଆଉ କେହି ମୋ' ସ୍ଥାନ ନେବ । ତେଣୁ ଏ ଘଟଣାର ଶେଷ ଯାହା ହେଉନା କାହିଁକି, ମୋର ବ୍ୟକ୍ତିତ୍ୱ ପାଇଁ ଏହିପରି କେତୋଟି ଘଟଣା ଜରୁରୀ, ସେଇଥିପାଇଁ ମୁଁ ଏ କାଣ୍ଡ କରିବସିଲି । କିନ୍ତୁ ଘଟିସାରିବା ପରେ ମୋ'ର ମନେହେଲା ମୁଁ ଯେମିତି ଅକ୍ଷମଣୀୟ ଭୁଲ୍ କରିଛି । ଏସବୁ କଥା ମୁଁ ଭୁଲି ଯାଇଥିଲି, ଲୋକଟାକୁ ଦେଖିବା ମାତ୍ରେ ।

ଏତିକିବେଳେ ହୋଟେଲ୍‌ରେ କାମ କରୁଥିବା ପିଲାଟିଏ ଆଣି, ବେଞ୍ଚ ଉପରେ, ମୋ ସାମ୍ନାରେ ଚା' ଗ୍ଲାସ୍ କଚାଡ଼ି ଦେବା ପରି ରଖିଦେଇ ଚାଲିଯାଉଥିଲା । କାଠ ବେଞ୍ଚ ଓ ଗ୍ଲାସ୍‌ର ଶବ୍ଦ ହଠାତ୍ କାହିଁକି ଅତିଷ୍ଠ ମନେହେଲା ମୋତେ । ମୁଁ ପିଲାଟାର ହାତ ଧରି ଏକପ୍ରକାର ଝିଙ୍କି ଆଣି କହିଲି, "ଚା', ଦେଉଛୁ ନା ଫୋପାଡୁଛୁ ?" ପିଲାଟା ଭୀତତ୍ରସ୍ତ ହୋଇ ଠିଆହୋଇ ରହିଲା । ତା' ଆଖିରେ ହତାଶା ଓ ଭୟ ମିଶି କେମିତି ଏକ ଦୟନୀୟ ଚାହାଣୀ ଥିଲା । ମୁଁ ଆହୁରି ରାଗିଗଲି । ମାରିବା ପାଇଁ ହାତ ଏକପ୍ରକାର ଉଠି ଯାଇଥିଲା କହିଲେ ଚଳେ । ଟିକେ ଦୂରକୁ ହୋଟେଲ୍ ମାଲିକ ବସିଥିଲେ । ସେଇଠାରୁ ପଚାରିଲେ, "କ'ଣ ହେଲା ?" ମୁଁ ତାଙ୍କୁ କହିଲି, 'କେଉଁଠୁ ପିଲାଟାକୁ ଆଣିଛ ? ସାମାନ୍ୟ ଭଦ୍ରାମି ଶିଖି ନାହିଁ । ଏଗୁଡ଼ାଙ୍କୁ ମାଡଫାଡ଼ ହେଉନି କି ?" ସେ ବି ପିଲାଟା ଉପରେ ରାଗିବା ଆରମ୍ଭ କରିଦେଲେ । ମୁଁ କିନ୍ତୁ ପିଲାଟାକୁ ନ ମାରି ଚୁପ୍ ରହିଲି ।

ମୁଁ ତା' ପାଖକୁ ଯିବା କଥା ଭାବୁ ଭାବୁ ସେ ଲୋକଟା ମୋ ପାଖରେ ପହଞ୍ଚିଗଲା ଓ ମୋତେ ଘୁଞ୍ଚି ଯିବାକୁ ଠାରିଲା । ମୁଁ ଘୁଞ୍ଚି ଯିବାରୁ ମୋ ପାଖରେ ବସି ପିଲାଟିକୁ କହିଲା, "ଯା,

ଆଉ ଗୋଟାଏ ଚା’ ନେଇଆସିବୁ ଯା ।” ପିଲାଟି ବଂଚିଯିବା ପରି ଭାବ ନେଇ ଜୋର୍‌ରେ ଯାଉଥିଲା । ସେ ପୁଣି ତାକୁ ଡାକି କହିଲା, “ଆଉ ଏମିତି କାହାକୁ ଦେବୁନି ।” ସେ ମୁଣ୍ଡ ହଲାଇ ଚାଲିଗଲା ଚା’ ଆଣିବାକୁ । ଲୋକଟା ମୋ ଆଡ଼କୁ ବୁଲିପଡ଼ିଲା ।

କହିଲା ସେ, “ଆପଣ ଆଉ କିଛି କଥା ମନରେ ଧରିଛନ୍ତି କି ? ଏଇ ଯୋଉ ରାଗ ଆପଣଙ୍କ ମନରେ ଥିଲା, ସେଇଟା ଆପଣଙ୍କର ବର୍ତ୍ତମାନର ରାଗ ନୁହେଁ । ଯାର କିଛି ପୁରୁଣା କାହାଣୀ ଅଛି ।” ମୁଁ ଆଶ୍ଚର୍ଯ୍ୟ ହୋଇଗଲି, ଲୋକଟା ଯାଦୁ ଜାଣିଛି ନା କ’ଣ ? ତଥାପି ବିସ୍ମୟ ଚାପି ଧରି କହିଲା, “ନାଁ, ସେମିତି କିଛି ନୁହେଁ । କାଇଁ, ସେମିତି ଲାଗୁଛି କି ?”

ସେ କହିଲା, “ନିଶ୍ଚୟ, ଆପଣ ଆଉ କିଛି କଥା ମନରେ ଧରିଛନ୍ତି । ମୁଁ ଦେଖିଛି, ମାରିବାକୁ ଯିବାବେଳେ ଆପଣ ବାଁ ହାତ ଟେକୁଥିଲେ । ଆପଣ ଜାଣନ୍ତି... ଯେ, କିଛି ଲୋକ ନିଜ ଚିନ୍ତାଧାରାରୁ ବହିର୍ଭୁତ ଘଟଣା ଘଟିଲେ, ସେମାନେ ବାଁ ହାତରେ କାମ କରନ୍ତି ।”

ମୁଁ ଲୋକଟାର ବାଁ ହାତକୁ ହିଁ ଚାହୁଁଥିଲି । ସେଠାରେ ହାତ ପରିବର୍ତ୍ତେ ଖାଲିଥିଲା ସେ ସ୍ଥାନଟି । ମୋ’ ଆଖିକୁ ଲକ୍ଷ୍ୟ କରି ସେ ବୁଝିପାରିଲା ମୁଁ କ’ଣ ଭାବୁଛି । ବୋଧହୁଏ କ’ଣ କହିବାକୁ ଯାଉଥିଲା । ଚା’ ନେଇଆସିଲା ପିଲାଟି । ଧୀରେ ନିଃଶବ୍ଦରେ ରଖିଲା ବେଞ୍ଚ ଉପରେ ସେ, ଅତି ସନ୍ତର୍ପଣରେ; ତା’ପରେ ଚାଲିଗଲା ।

ଏଥର ଲୋକଟି ଆରମ୍ଭ କଲା, “ମୋ ହାତ ଦେଖି ବୋଧହୁଏ ଭାବୁଛନ୍ତି ମୋ ହାତ ନଥିବା କାରଣରୁ ମୁଁ ଆପଣଙ୍କ ବାଁ ହାତକୁ ଲକ୍ଷ୍ୟ ରଖିଥିଲି । ନା, ସେମିତି କିଛି ନୁହେଁ । ପ୍ରକୃତରେ ମୋ କଥା ଭିତରେ ହିଁ ମୁଁ ଜାଣିଛି ଯେ ଜଣ ଜଣଙ୍କର ବାଁ ହାତ ଅସମ୍ଭବ ପ୍ରକାର ଶକ୍ତି ନେଇ କାର୍ଯ୍ୟ କରେ । ମୋତେ ଲୋକଟାର କଥା ନୂଆ ନୂଆ ଲାଗୁଥିଲା । ପୋଖତ ବାଁ ହାତ କେବଳ ବ୍ୟବହାର କରୁଥିବା ଲୋକ ପରି ସେ କହୁଥିଲା । ଅଥଚ ଲୋକଟାର ବାଁ ହାତ ନଥିଲା । ସେ କହୁଥିବାବେଳେ ଆର ହାତରେ ଚା’ ପିଉଥିଲା । ମଝିରେ ମଝିରେ ବେଞ୍ଚ ଉପରେ ଚା’ ଗ୍ଲାସ୍ ରଖିଦେଇ ସେଇଟିକୁ ଘୂରାଉଥିଲା ।

ସେ କହିଚାଲିଥିଲା, ‘କେତେକ ଲୋକ ଅଛନ୍ତି, ଡାହାଣ ହାତ ଥିବା ସତ୍ତ୍ୱେ ବାଁ ହାତ ବ୍ୟବହାର କରନ୍ତି, ସବୁ କାମରେ । ସାଧାରଣ ଲୋକଙ୍କର ବାଁ ହାତ ଯାହା କାମ କରେ, ସେମାନଙ୍କ ପାଇଁ ତାଙ୍କ ଡାହାଣ ହାତର କାମ ସେଇଆ । ଅଥଚ ଅନ୍ୟସବୁ ସାଧାରଣ ଲୋକ ଏକପ୍ରକାର ନିଜ ବାଁ ହାତକୁ ଅଦରକାରୀ ହାତ ବୋଲି ଭାବନ୍ତି ।’

ମୁଁ ମଝିରେ ପଶି ଯାଇ ପ୍ରଶ୍ନ କଲି, “ଆପଣଙ୍କର କ’ଣ ବାଁ ହାତ ପିଲାଦିନରୁ ନାହିଁ ?”

ସେ ହସିଲା, କହିଲା, “ନା, ଗତ ଦୁଇବର୍ଷ ହେବ ମୋର ଏ ହାତ ନାହିଁ ।”

ମୁଁ ପଚାରିଲି, “ଆପଣଙ୍କର ସେଥିପାଇଁ ଦୁଃଖ ହୁଏନି ?”

ସେ କହିଲା, “ନାଇଁ, ବେଳେବେଳେ ଅସ୍ୱାଭାବିକ ଲାଗେ । ପ୍ରଥମରୁ ଏମିତି ଟିକିଏ ବାଧୁଥିଲା । ଏବେ ଆଉ କଷ୍ଟ ହେଉନି । କାହିଁକି ଭାବିବି ? ଭାବିଲେ ବାଁ ହାତଟା ତ ଆଉ ଫେରୁନି । ଯାହା ଗଲା, ତାହା ଗଲା ।” ସେ ହଠାତ୍ ଚୁପ୍ ରହିଲା : ଆମେ ଚା’ ଖିଆ ସାରି ନେଇଥିଲୁ । ମୁଁ ସିଗାରେଟ୍ ବାହାର କଲି ପକେଟ୍‌ରୁ । ଦିଆସିଲି ପାଇଁ ମାଲିକଙ୍କୁ ମାଗିଲି ।

ହୋଟେଲ୍ ମାଲିକ ଡ୍ରୟାରରୁ ଦିଆସିଲି ବାହାର କଲେ, ବଡ଼, ପାଟିରେ କହିଲେ, “ନିଅନ୍ତୁ, ଧରନ୍ତୁ, ମୁଁ ଏଠୁ ଉଠିପାରୁନି” କହି ଫିଙ୍ଗିଦେଲେ । ମୁଁ ଖେଳାଳୀ ପରି ଉପରକୁ ଝୁଙ୍କିଯାଇ ବାଁ ହାତରେ ଧରିନେଲି ଦିଆସିଲି । ତା’ପରେ ଓଠରେ ଲଗାଉଛି, ଲୋକଟାକୁ ଦେଖିଲି । ସେ ନିଜ

ଗ୍ଲାସ୍‌କୁ ଚାହିଁ ରହିଥିଲା । ବୋଧହୁଏ ଶବ୍ଦ ପାଉଁନଥିଲା, କହିବାକୁ । ମୁଁ ସଗାରେଟ୍ ପ୍ୟାକେଟ୍ ତା' ଦିଗକୁ ପେଲି ଦେଲି । ସେ ଉଠାଇ ନେଇ ମୋତେ ଚାହିଁଲା । ମୁଁ କିନ୍ତୁ ଦିଆସିଲି ଜଳାଇ, ସିଗାରେଟ୍ ଲଗାଇ ଲିଭାଇ ସାରିଥିଲି । ସେ ଆଙ୍ଗୁଠି ସାହାଯ୍ୟରେ ଓଠରେ ସିଗାରେଟ୍ ଲଗାଇ ସାରିଥିଲା । ଦିଆସିଲି ଉଠାଇ, ସେଇ ହାତରେ କାଠି ବାହାର କରି ଦିଆସିଲିକୁ ଆଙ୍ଗୁଠି ଟିପରେ ଧରି; ସେମିତି ଟିପରେ ନିଆଁ ନେଇ ଲଗାଇଲା ସିଗାରେଟ୍‌ରେ । ଏ କାର୍ଯ୍ୟ କରିବା ବେଳେ ମନେହେଲା ଲୋକଟିର ପ୍ରତ୍ୟେକ ଆଙ୍ଗୁଠି ଗୋଟାଏ ଗୋଟାଏ ଛୋଟ ଛୋଟ ହାତ ।

ଧୂଆଁ ବାହାର କରି ଓଠରୁ, ସେ ପୁଣି ଆରମ୍ଭ କଲା :

"ମୋର ଏଇ କଟା ହାତର ଗୋଟାଏ କାହାଣୀ ଅଛି । ଶୁଣିବେ ?" ମୁଁ ନୀରବରେ ମୁଣ୍ଡ ହଲାଇଲି ।

ସେ କହିଲା, "ସେତେବେଳେ ମୋ'ର ବାଁ ହାତ ଥିଲା, ସେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ଭାବରେ କାମ କରୁଥିଲା । ମୁଁ ବାଁଥିଆ ନୁହଁ । ସେଥିପାଇଁ, ସାଧାରଣ କାମକୁ ସମସ୍ତେ ଯେମିତି କରନ୍ତି ମୁଁ ସେମିତି କରେ । ଅଥଚ ବାଁ ହାତରେ ଆଉ କିଛି କାର୍ଯ୍ୟ କରେ, ଯାହାକୁ ମୁଁ କରିସାରିବା ପରେ ବି ବୁଝିପାରେନି କେମିତି କରିପାରେ ବୋଲି । ଆଉ ସେତେବେଳେ ବି ବାଁ ହାତ ଚାଲେ, ତାହା ସାଧାରଣ କାମ ପାଇଁ ନୁହେଁ । ଅସାଧାରଣ ଓ ଅବିଶ୍ୱସନୀୟ କାମ ସେସବୁ । ନିହାତି ଅସାମାଜିକ, ଦୋଷଯୁକ୍ତ କାମ, ଯାହା ସୁସ୍ଥ ମସ୍ତିଷ୍କଧାରୀ କେହି ବି କରୁନଥିବ ।"

ମୁଁ ଆଶ୍ଚର୍ଯ୍ୟ ହୋଇ ଉଠୁଥିଲି ଲୋକଟାର କଥାରେ । ପଚାରିଲି, କ'ଣ ସେସବୁ ?"

ସେ ଉତ୍ତର କହିଲା : "କୌଣସି ବି କାମ, ଯାହା ସାଧାରଣ କ୍ଷମତାରୁ ବାହାରେ– ସେଗୁଡ଼ିକ । ଥରେ ବସ୍‌ରେ ମୁଁ ଦୂର ଜାଗାକୁ ଯାଉଥିଲି । ରାତି ବସ୍ । ମୁଁ ଯେଉଁଠି ବସିଥିଲି, ତା' ସାମ୍ନାରେ ଗହଣାଗାଣ୍ଠି ପିନ୍ଧି ସ୍ତ୍ରୀ ଲୋକଟିଏ ଯାଉଥିଲା । ବସ୍ ଛାଡ଼ିବାର ଅଳ୍ପ ସମୟ ପରେ ଆମେ ସବୁ ଶୋଇଗଲୁ । ହଠାତ୍ ସ୍ତ୍ରୀ ଲୋକଟି ପାଟିକଲା । 'ମୋ ହାର, ମୋ ହାର' ସେ କହୁଥିଲା । ଆଲୁଅ ଜଳିଉଠିଲା । ଆମେ ଦେଖିଲୁ ସ୍ତ୍ରୀ ଲୋକଟିର ହାର, ତା' କହିବା ଅନୁସାରେ ଦେଢ଼ଭରି ସୁନାର ହାର, ଚୋରି ହୋଇଯାଇଛି । ଆମେ ସବୁ ବସ୍ ସାରା ଖୋଜିଲୁ, କିନ୍ତୁ ପାଇଲୁନି । ଯା'ପରେ ବସ୍ ଚାଲିଲା । ରାସ୍ତାରେ କେବଳ ଚୋରି ହେବାର ଚର୍ଚ୍ଚା । ଅଳ୍ପ ସମୟ ପରେ ସେସବୁ ବି ଚୁପ୍ ହୋଇଗଲା । ସକାଳେ ବସ୍ ପହଞ୍ଚିଲା । ପହଞ୍ଚିବାର ଅଳ୍ପ ସମୟ ପରେ ହଠାତ୍ ମୋ ବ୍ୟାଗ୍ ଭିତରେ ଥିବା ପ୍ୟାଣ୍ଟ୍ ପକେଟ୍ ଭିତରୁ, ମୁଁ ପ୍ୟାଣ୍ଟ୍ ପିନ୍ଧିବା ବେଳେ ଆବିଷ୍କାର କଲି ସୁନା ଚେନ୍‌ଟିକୁ । ଚେନ୍‌ର ବର୍ଣ୍ଣନା ପୂରା ମିଳିଯାଉଥିଲା ସ୍ତ୍ରୀଲୋକଟିର ଦେଢ଼ଭରି ଓଜନର ଚେନ୍ ସହିତ ।"

ମୁଁ ପଚାରିଲି, "କେମିତି ?"

ସେ କିନ୍ତୁ କହି ଚାଲିଥିଲା, "ଆଉ ଥରେ ଟ୍ରେନ୍‌ରେ ଯାଉଛି, ମୋର ଜଣଙ୍କ ସହିତ ବଚସା ହେଲା । ଲୋକଟା ଉପରେ ମୁଁ ରାଗି ଯାଇଥିଲି । ତଥାପି ମୋ ଅଭ୍ୟାସ କିମ୍ବା ଭୟ ଯୋଗୁ ମୁଁ ମାରିବାକୁ ପ୍ରସ୍ତୁତ ନଥିଲି, ସେଇ ଲୋକଟାକୁ, ଯଦିଓ ମୋ ରାଗ ସୀମା ଅତିକ୍ରମ କରିସାରିଥିଲା । ହଠାତ୍ କେଜାଣି କାହିଁକି ମୁଁ ମାରିବା ଆରମ୍ଭ କରିଦେଲି, ଏବଂ ଦେଖିଲି ଯେ, ଲୋକଟାକୁ କେବଳ ବାଁ ହାତରେ ହିଁ ମୁଁ ମାରି ଚାଲିଛି ।"

ଲୋକଟା କ୍ଷଣକ ପାଇଁ ଚୁପ୍ ରହିଲା । ପ୍ରାୟ କେହି ଆମ ପାଖାପାଖି ନଥିଲେ । ତା' ଦେଉଥିବା ପିଲାଟା, ରନ୍ଧାଶାଳରୁ ବାହାରି ଆସି, ସେଇ ପାଖ ବେଞ୍ଚର ଗୋଟାଏ କୋଣକୁ ଆଉଜି

ବସି ଆମ କଥା ଶୁଣୁଥିଲା । ହୋଟେଲର ମାଲିକ, ଆମ ଆଡ଼କୁ ମୁହଁ କରି ଶୁଣିବାକୁ ଚେଷ୍ଟା କରୁଥିଲେ, ତାଙ୍କ ବସିବା ଜାଗାରୁ ।

ଲୋକଟା ପୁଣି କହିଲା, "ଆଉଦିନେ ଗୋଟାଏ ଅଫିସ ଭିତରୁ ଜଣଙ୍କୁ ବାଁ ହାତରେ ଟାଣିଆଣିଲି । ରାସ୍ତାରେ ପକେଇ ମାରିଲି । ଏମିତି ପ୍ରାୟ କିଛି ନା କିଛି ଘଟଣା ମୁଁ ବାଁ ହାତରେ କରିଛି । ଖାଲି ଯେ ଏସବୁ କରୁଥିଲି ତା' ନୁହେଁ, ପଙ୍କରୁ ଗାଡ଼ି ଟାଣିବା, ବଡ଼ ବଡ଼ ପଥର ଉଠେଇବା, ପ୍ୟାକେଟ୍ ଉଠେଇବା ଆଦି କାମ ବି ମୁଁ ବାଁ ହାତରେ କରିପାରୁଥିଲି । ଆଶ୍ଚର୍ଯ୍ୟର କଥା ଯେ, ଏଗୁଡ଼ା କରିବାବେଳେ ମୁଁ ବୁଝିପାରୁନଥିଲି, ଏଇ ହାତରେ ଏତେ ଶକ୍ତି ଆସେ କୁଆଡୁ ?" ଟିକିଏ ଚୁପ୍ ରହି ପୁଣି କହିଲା ଲୋକଟା, "କ'ଣ ନାଇଁ କ'ଣ କରିଛି, ଏଇ ହାତରେ । ଥରେ ଜମି ପାଇଁ କଳି ଲାଗିଲା ଆମ ପଡ଼ିଶା ଘର ସାଙ୍ଗରେ । ଅବଶ୍ୟ କଳି ମୋ ସହିତ ହୋଇନି, ମୋର ଭାଇଙ୍କ ସହିତ ହେଲା । ମୁଁ ଦୂରରେ ରହି ଦେଖୁଥିଲି । ହଠାତ୍ ମୁଁ ଘର ଭିତରକୁ ଦୌଡ଼ିଗଲି, ଆଉ କଟୁରୀ ଉଠାଇ ଲୋକଟା ପାଖକୁ ଧାଇଁଲି । ଲୋକଟା ପ୍ରସ୍ତୁତ ଥିଲା ପରି ମୋ ହାତକୁ ପିଟି ଦେଲା ଲାଠିରେ । ସେଇ ଲାଠିରେ ସେ ଭାଇକୁ ମାରିବାକୁ ବାହାରି ଥିଲା । ତା'ପରେ ମୁଁ ଲାଠିକୁ ଛଡ଼ାଇ ନେଲି, ବେକ ଷଣ୍ଢାରେ ଜାବ ପକେଇ । ସେଇଠୁ ଆରମ୍ଭ କଲି ମାଡ଼ । ଓଃ ଲୋକଟି ରକ୍ତରେ ଜୁଡୁବୁଡ଼ ହୋଇଯାଇଥିଲା । ଯଦି ମୋ ଭାଇ ମୋତେ ଧରି ନଥାନ୍ତେ, ସେଦିନ ସେ ମରିଯାଇଥାନ୍ତା । ଅବଶ୍ୟ କଳି ସେଦିନ ସନ୍ଧ୍ୟା ସୁଦ୍ଧା ତୁଟିଗଲା । ଏହା କେବଳ ସେଇ ବାଁ ହାତରେ ମୁଁ କରିଥିଲି ।"

ମୁଁ ଭାବୁଥିଲି, ଯଦି ଲୋକଟା ଯାହା କହୁଛି, ସତ କହୁଥାଏ ତେବେ ତା'ର ବାଁ ହାତଟା ଦେଖିବା ମୋର ଦରକାର ଥିଲା । ମୁଁ ମନ୍ତ୍ରମୁଗ୍ଧ ହୋଇ, ଚକାପାରି ବସି ଯାଇଥିଲି ବେଞ୍ଚରେ । ସେ କହିଚାଲିଥିଲା ।

"ଏ ହାତଟା ବିଷୟରେ ମୁଁ ପିଲାଦିନରୁ କିଛି ଜାଣେନି । ମୋର କାଇଁ ମନେନାହିଁ, ହାତଟା ବିଷୟରେ କିଛି, ମୁଁ ପିଲାଦିନେ କରିଛି କି ନାହିଁ । ତେବେ, ଥରେ ମୋ କ୍ଲାସ୍‌ର ମନିଟରକୁ ବେହୋସ କରିପକେଇଥିଲି, ବେକ ଧରି । ସେଇଟା କିନ୍ତୁ ମୁଁ ହାତରେ କରିଛି କି ନାହିଁ, ମନେ ନାହିଁ । କିନ୍ତୁ ଯେଉଁଦିନ ଜାଣିଲି, ସେଦିନ ମୁଁ ଆଶ୍ଚର୍ଯ୍ୟ ହେଲି ଯେ, ମୋ ଦେହର ଅନ୍ୟ ଅଙ୍ଗ ସହିତ ବାଁ ହାତର ଆଦୌ ସମ୍ପର୍କ ନାହିଁ ବୋଲି । କାରଣ, ସେଇଦିନ ବଣିଆ ପାଖରୁ ଗୋଟାଏ ମୁଦି ପଇସା ଦେଇ ଆଣି ବାଁ ହାତର ମଝି ଆଙ୍ଗୁଠିରେ ପିନ୍ଧିଥିଲି; ଆଉ ଘରେ ପହଞ୍ଚି ଦେଖିଲି ହାତରେ ସେଇଟା ନାହିଁ । ଅନେକ ଖୋଜାଖୋଜି ପରେ ବୁଝିଲି ଯେ ମୁଦିଟି ମୁଁ ଜଣେ ସାଙ୍ଗକୁ ବଢ଼ାଇ ଦେଇଛି ନିଜ ଅଜାଣତରେ । ଅବଶ୍ୟ ମୁଦିଟି ଘରେ ପହଞ୍ଚି ସାରିଥିଲା । ସେଦିନ ପ୍ରଥମ କରି ସନ୍ଦେହ କଲି ସେଇ ହାତଟାକୁ । ଅନେକ ଲକ୍ଷ୍ୟ କଲି ତା' ପରଠାରୁ । କ୍ରମଶଃ ଦେଖିଲି, ଯେ ବାଁ ହାତରେ କରୁଥିବା କାମଗୁଡ଼ିକ ମୋର ମନମୁତାବକ ନୁହଁ । ସେଇ ହାତରେ କରିପାରୁଥିବା କାମଗୁଡ଼ିକ ଅପେକ୍ଷାକୃତ କଷ୍ଟକର ଓ ଶକ୍ତିଶାଳୀ ।

ଏସବୁ ପ୍ରାୟ ଏମିତି ଘଟୁଥିଲା । ତା' ସହିତ ମୋର ସନ୍ଦେହ ଆଶାନୁରୂପ ହେଉଥିଲା । କ୍ରମଶଃ ଯେତିକି ଯେତିକି ଘଟଣା ଘଟୁଥିଲା, ସେତିକି ସେତିକି ମୁଁ ହାତ ନେଇ ବ୍ୟସ୍ତ ହୋଇପଡୁଥିଲି । ଥରେ ଏମିତି କିଛି ଘଟିଲା, ଯେଉଁଥିରେ ମୁଁ ପ୍ରାୟ ପାଗଳ ପରି ହୋଇଉଠିଲି ଏବଂ ପରେ ଆଉ ଗୋଟାଏ କାଣ୍ଡ କରିବସିଲି ।

ସେଦିନ ମୁଁ ବ୍ୟାଙ୍କ୍‌ରେ ଟଙ୍କା ଜମା ରଖିବାକୁ ଯାଇଥିଲି । ଟଙ୍କା କାଉଣ୍ଟରରେ ଚଢ଼ାଇବା ବେଳେ ସେଠାରେ ବସିଥିବା ଲୋକଟା ହଠାତ୍ କହିଲା, "ଡାହାଣ ହାତରେ ଟଙ୍କା ଦିଅ ।" ମୁଁ

କହିଲି କାହିଁକି ? ବାଁ ହାତ କ'ଣ ହାତ ନୁହଁ ?" ସେ କହିଲା, "ବାଁ ହାତରେ ଦେଲେ ମୁଁ ଟଙ୍କା ନେବିନି ।" ମୁଁ ଜିଦ୍ କଲି, କହିଲି, "ମୋ ଡାହାଣ ହାତ ନାହିଁ, କଟିଯାଇଛି କି ପାରାଲାଇଜ୍ଡ ବା ମୁଁ ଲେଫ୍‌ଟିଷ୍ଟ । ଆପଣଙ୍କୁ ବାଁ ହାତରେ ନେବାକୁ ପଡ଼ିବ ଟଙ୍କା ।" "ଲୋକଟା ବି ଜିଦ୍ ଧରି ବସିଲା । ପାଖଲୋକ ମୋ ଉପରେ ବିରକ୍ତ ହେଲେ, ଆଉ ଉପଦେଶ ଦେବା ପରି କହିଲେ ଯେ, ଡାହାଣ ହାତରେ ଦେଇଦେଉ ନାହାନ୍ତି । ଆମ ସମୟ କାହିଁକି ନଷ୍ଟ କରୁଛନ୍ତି । ଅଗତ୍ୟା ମୋତେ ବାଧ୍ୟ ହୋଇ ତା' କଥା ମାନିବାକୁ ପଡ଼ିଲା । ମୁଁ ଟଙ୍କା ଡାହାଣ ହାତରେ ହିଁ ଦେଲି । ସେ ନେଇ ଗଣୁଥିବା ବେଳେ ମୁଁ ଅପମାନ ଜର୍ଜରିତ ହୋଇ ବାହାକୁ ଚାହୁଁଥିଲି । ହଠାତ୍ ବାଁ ହାତ ମୋର କାଉଣ୍ଟର ଭିତରେ ପଶି ଲୋକଟାର ଟେବୁଲ୍ ଉପରୁ ପେପରଓ୍ୱେଟ୍ ଆଣି ତା' ମୁଣ୍ଡରେ ଆଘାତ କଲା । ବାସ୍ । ତାକୁ ହସ୍‌ପିଟାଲରେ ଗୁଡ଼ାଏ ଦିନ ରହିବାକୁ ପଡ଼ିଲା, ମୋତେ ବି ଅନେକ ଦିନ ଥାନା କଚେରୀ ଓ ଜେଲ୍ ହାଜତ ଭୋଗିବାକୁ ପଡ଼ିଲା । ଅବଶ୍ୟ ସେଇ ଲୋକଟା ନିଜେ ଆସି କେଶ୍ ଫେରାଇ ନେଲା, କିଛିଦିନ ପରେ ।" ଲୋକଟା ପାଖରେ ଆଉ କଥା ନଥିଲା କହିବାକୁ, ସେହିପରି ଲାଗିଲା । ମୋ ବିସ୍ମୟ ବଢ଼ି ଚାଲିଲା । ଆଶ୍ଚର୍ଯ୍ୟ ! ଏ ଲୋକଟାକୁ ଦେଖି । ମୋ'ର ମନେହେଲା ମୁଁ ଆଉ କିଛି ସେ ହାତଟା ବିଷୟରେ ଜାଣିବା ଉଚିତ । ପଚାରିଦେଲି, "ଆଚ୍ଛା, ସେ ହାତଟା କଟିଲା କେମିତି ? ମାନେ, କ'ଣ ଆକ୍ସିଡେଣ୍ଟ ହୋଇଥିଲା କି ?"

ମୁଣ୍ଡ ହଲେଇ ମନାକଲା ସେ । କହିଲା, "ଦିନେ ସହି ନ ପାରି ନିଜେ ମୁଁ କାଟିଦେଲି ।"

"ମାନେ ?" ମୁଁ ଅନେକ ତଳକୁ ପଡ଼ିଗଲା ପରି ଅନୁଭବ କଲି ।

ସେଇ ପିଲାଟାକୁ ଚାହିଁଥିଲା ଲୋକଟା । ସେମିତି ଚାହିଁବା ଅବସ୍ଥାରେ ଉତ୍ତର କଲା, "ଦିନେ ମୋ ସ୍ତ୍ରୀ ଉପରେ ରାଗିଯାଇ ତାକୁ କାଠଫାଳିଆରେ ମାରି ସାରିବା ପରେ, ରାତିରେ ଛୁରୀ ଧରିଥିଲି ଜୀବନରୁ ମାରିଦେବି ବୋଲି । କିନ୍ତୁ ତା' ପୂର୍ବରୁ ବୁଝିପାରିଲି ଯେ ମୋ ରାଗର ଫାଇଦା ଏଇ ହାତଟା ନେଇଛି । ସେଇ ରାତିରେ ହିଁ ଆର ହାତରେ କାଠ କଟା କୁରାଢ଼ୀଟା ଆଣି ବାଁ ହାତ ଉପରେ ଚୋଟେ ଦେଲି । ବାଁ ହାତଟା ସ୍ତ୍ରୀର ବେକ ପାଖକୁ ଯାଉଥିଲା । ରକ୍ତ ଆଉ ଚିତ୍କାରରେ ସ୍ତ୍ରୀ ଉଠି ପଡ଼ିଲା ଶୋଇବା ଅବସ୍ଥାରୁ । କିନ୍ତୁ ସେତେବେଳକୁ ସବୁ ଶେଷ ହୋଇଯାଇଥିଲା । ଦି'ମାସ ଡାକ୍ତରଖାନାରେ ରହିଲି । ହାତଟାକୁ ମୂଳରୁ କାଟିଦିଆଗଲା ।"

ଆଉ କେହି ନଥିଲେ ଶୁଣିବାକୁ, ଏ କାହାଣୀର ଶେଷକଥା । ହୋଟେଲ୍ ମାଲିକ ରାସ୍ତାକୁ ଚାହିଁଥିଲେ । ପିଲାଟା ଢୋଳାଉ ଥିଲା; ସେଇଠି ବସି ବସି । ମୁଁ କେବଳ ମୋ ପାପକଥା ପାସୋରି ଶୁଣୁଥିଲି ଏଇ କଟା ହାତର କାହାଣୀ । ସେ କହିସାରିବା ପରେ ଲାଗୁଥିଲା ଆଉ କିଛି ନାହିଁ କହିବାକୁ ଲୋକଟା ପାଖରେ । ହଠାତ୍ ଠିଆହୋଇ ପଡ଼ିଲା ସେ, କହିଲା, "ମୁଁ ଯାଉଛି, ମୋର ଢେର କାମ ଅଛି ।" ଉଠି ବାହାରକୁ ଯିବା ପୂର୍ବରୁ ଚା' ପଇସା ଦେବାବେଳେ ମୁଁ ପାଟିକଲି, "ଥାଉ ଆଜ୍ଞା, ମୁଁ ଦେଇଦେବି । ସେ ସେଇଠୁ ମନାକଲା ମୋତେ । ପଇସା ଦେଇ ବାହାରକୁ ବାହାରିଗଲା, ଏତେ ଜୋର୍‌ରେ ଯେ ବାଁ ହାତର ସାର୍ଟ ହାତ ପଛକୁ ଉଡୁଥିଲା ସେ ଲୁଚିଯିବା ପର୍ଯ୍ୟନ୍ତ ।

ମୁଁ ଚେଷ୍ଟା କଲି ମୋ ପାପ ଭିତରକୁ ଫେରିଯିବାକୁ– ପାରୁ ନଥିଲି । ଯେତେ ଯେତେ ପାପ କଥା ଭାବୁଥିଲି । ମୋ ବାଁ ହାତ ମୋ ପାଇଁ ସେତିକି ପ୍ରୟୋଜନୀୟ ହୋଇଉଠୁଥିଲା । ମୁଁ ଚାହୁଁଥିଲି, ଥରେ ମାତ୍ର ମନେପଡୁ ଯେ ସନ୍ଧ୍ୟାବେଳର ପାପ ମୋର ନିଜ ବାଁ ହାତରେ ହୋଇଥିଲା କି ନାହିଁ ।



# ହାତରେ ଯାହାର ଭାଗ୍ୟ ଲୁଚି ରହିଥାଏ

## ଗଂଗାଧର ବିଶ୍ୱାଳ

ଏ ହାତକୁ ଦେଖ । ସେମିତି ଦେଖିବା ଭଳି ହାତ ନୁହେଁ । ପୁଅ ପିଲାର ହାତ ପରା । ଆର ହାତକୁ ଦେଖ । ହାତ ଦୁଇଟି ଏକାପରି ନୁହଁ; ଅଲଗା ଅଲଗା । ତମେ ଜାଣିନ କି : ଏ ହାତର ପାପ ଆର ହାତ ନିଏନା । ହଁ, କ'ଣ କହୁଥିଲି ? ହାତ କଥା । ନା ଏ ହାତ, ନା ସେ ହାତ, କୋଉ ହାତରେ ମୋ ପାଠ ନଥିଲା । ଜାତକ ତିଆରିବେଳେ ଜ୍ୟୋତିଷ ହାତକାଟି ଲେଖି ଦେଇଥିଲେ କାମଚଳା ପାଠ ହେବ । ତମେ କୁହ : କାମଚଳା ପାଠରେ ଭବିଷ୍ୟତ ବୋଲି କିଛି ଥାଏ ? କିନ୍ତୁ ଜ୍ୟୋତିଷ କହିଥିଲେ : ବଡ ଲୋକ ହେବାର ଅଛି । କି ଅଜବ କଥା । ବିନା ପାଠରେ ବଡ ଲୋକ । ଏହା ଶୁଣି ସମସ୍ତେ ହସରେ ଉଡେଇ ଦେଇଥିଲେ । ସରସ୍ୱତୀ ନୁହେଁ, ରାତାରାତି ଲକ୍ଷ୍ମୀ ଆସି ବଡ ଲୋକ କରିଦେବ । ଯିଏ ଶୁଣିଲା କହିଲା : ଜ୍ୟୋତିଷ କଥା ସତ ହୁଅନ୍ତା ଯଦି, ମାଇପ ତା'ର ବିଧବା ହୁଅନ୍ତାନି । କି କଥା । ଜନ୍ମ ହେଲେ ମୃତ୍ୟୁ ନିଶ୍ଚିତ । ଏହା ଜାଣି ମଧ୍ୟ ଏ ଲୋକମାନେ ଅଜଣା ହୁଅନ୍ତି କାହିଁକି ଯେ । ଭାଗବତ ବାଣୀ ପରା କହେ :

"ମର୍ତ୍ତ୍ୟ ମଣ୍ଡଳେ ଦେହ ବହି
ଦେବତା ହେଲେ ବି ମରଇ ।"

-ଜାଣିଚ । ପିଲାଦିନେ ବଡ କଷ୍ଟରେ ବଢିଚି । ଅବଶ୍ୟ ସେତେଟା ଦୁଃଖ ନଥିଲା । କିନ୍ତୁ କଷ୍ଟ ଓ ଦୁଃଖ ଯେ ଏକା କଥା ନୁହେଁ । ଜ୍ୟୋତିଷର ଭବିଷ୍ୟବାଣୀ ଶୁଣି ଘର ଲୋକଙ୍କର କି ତାଗିଦ୍ । ସବୁବେଳେ ପାଠ ପଢିବା ପାଇଁ ଜୁଲମ୍ । ଯିଏ ଯେତେ କହିଲେ କ'ଣ ହେବ; ପାଠରେ ମନ ଲାଗିଲେ ସିନା । ରାତିରେ ଉପବାସ ରହି ଦେହ ଶୁଖି ଯାଉଛି । ସଂଜରେ ମୁଢି ଖାଇ ପେଟରେ ଜିଆ ବଢେଇଛି । ପାଠକୁ ଡରି ମିଛରେ ଢୋଳେଇ ଢୋଳେଇ ସତରେ ନିଦ ଲାଗିଯିବା ଓ ଶୋଇପଡିବାର ସୁଖ କେତେ ଭଲ ଲାଗୁଥିଲା ସେତେବେଳେ । କିନ୍ତୁ ସେ ସୁଖ ବେଶି ଦିନ ରହିଲାନି । ଶୁଦ୍ଧ ବନାନ୍ କଥା କହିଲେ କାଖ ତଳେ ରସୁଣ ରଖି ଖରାରେ କିଛି ସମୟ ଛିଡା ହେବା ପରେ ହାତ ତିଆରି ଜ୍ୱର ଓ ଦେହ ଖରାପ କି ଆନନ୍ଦଦାୟକ । ଦିନର ବିପରୀତ ପଚାରିଲେ ନଦି କହିଲା ବେଳେ କି ମାଡ । ଜଙ୍ଘରେ ବେତ, କାନରେ ଆଙ୍ଗୁଳି ରଗଡା ଓ ଗାଲରେ ଚାପୁଡା ଦାଗ ଥିବାର ମିଳିବ ପରା । ସବୁ ଚେଷ୍ଟା ବିଫଳ ହେଲା । ତଥାପି ହେଲାନି । ପାଠରେ ଡୋର ବନ୍ଧା ହେଲା । ଜାତକ ଗଣନା କରାଗଲା । ରାହୁ, କେତୁ, ଚନ୍ଦ୍ର ପାଖାପାଖି ରହିବା ଯୋଗୁଁ ଏମିତି ହେଉଥିବାର ଜଣାପଡିଲା । ମାଆ ବହୁତ ବ୍ୟସ୍ତ ହେଇ ଉପାୟ ପାଞ୍ଚିଲା । ଏସବୁ କାମ କୌଣସି ଦୁଷ୍ଟ ଗ୍ରହର ହୋଇଥିବାରୁ ଗ୍ରହଶାନ୍ତି ପାଇଁ ମହାଦେବ ପୂଜା, ଗାଆଁ ଠାକୁରାଣୀଙ୍କ ପାଖରେ ମାନସିକ, ବାର ଦେଉଳ ବୁଲି ଦିଅଁ ଦର୍ଶନ ଓ ନାମ ସଂକୀର୍ତ୍ତନ ହେଲା । ଗ୍ରହ ଶାନ୍ତି ହେଉ କି ନହେଉ ମନ ତ ବୁଝିଲା । ଏଇ ସମୟରେ ନିର୍ଦ୍ଧୁମ ବୁଲିଲି । ଯାହା ଇଚ୍ଛା ହେଲା କଲି । କୈହି କିଛି ବାରଣ କଲେନି । ଗ୍ରହ କରଉଚି କହି ସହିଗଲେ । ବାପାଙ୍କ ଅର୍ଜିତ ଧନ ସଂପତ୍ତି ବର୍ବାଦ କଲି । ବର୍ବାଦ ନୁହେଁ ତ : ଅଯଥାରେ ଖର୍ଚ୍ଚ । ଯାହା ବି ହେଉ ଫୁର୍ତ୍ତିରେ ରହିଲି ।

-ଅକସ୍ମାତ ଗୋଟେ ଠୋକର ଖାଇଲି । ପିଚୁ ସଡକରେ କଚାଡି ପଡିଲି । ମୁଣ୍ଡରେ ମାଡ ହୋଇଗଲା । ଖପୁରୀ ହାଡରୁ ମାଟି ଅତଡା ଖସି ଆସିବା ପରି ଖଂଡେ ଖସିଗଲା । ପୋଡା କନା, ଦାନ୍ତ ଚୋବା ଦୁବଘାସରେ, ପଟି ବନ୍ଧାଗଲା । କଟକ ପଠାଗଲା । ମାସେ ପରେ ଘରକୁ ଆସିଲି । ଆସିବା ପରେ ଆଉ ଆଗଭଳି ହୋଇ ରହିଲିନି । ନିଜ ସହିତ ନିଜେ କଥା ହେଲି । କାହାକୁ କେମିତି ବ୍ୟବହାର କରିବାକୁ ହେବ; ଭୁଲିଗଲି । ବଡମାନଙ୍କୁ ବାଡେଇଲି । ସାନମାନଙ୍କୁ ଜୁହାର ହେଲି । କେହି ପାଖ ମାଡିଲେନି । କିଛି ମନେ ରହିଲାନି । ଏମିତି ହେବାର ଦେଖି ସାଇ ପଡିଶା କେତେ କଥା କହିଲେ । କିଏ କହିଲା : ମାରୁ ମାରୁ ବଂଚେଇ ଦେଲା । କିଏ କହିଲା : ବଂଚୁ ବଂଚୁ ମଲା ପରି କରୁଚି । ଆହୁରି ଆଗକୁ ବି କରିବ । ଦୁଷ୍ଟ ଗ୍ରହ ପରା । ଇଏ ଘର ଭିତରର ଘଟଣା । ଘର ବାହାରେ କେତେ ଘଟଣା ଘଟିଲା । ଘର ବାଡି ବାଞ୍ଝ ହୋଇଗଲା । କୁଆପଥର ମାଡରେ ପାଚିଲା ଧାନ ବିଲରେ ପଡି ଗଜା ହେଲା । ଗଛର ପତ୍ର ଅବେଳରେ ହଳଦିଆ ଦିଶିଲା । ଅମାରରୁ ଧାନ ଚୋରୀ ହେଇଗଲା । ବାଡିଘରେ ଛେଳି, ଗୋରୁ ଗାଈ ପଶି ଗଛ ପତ୍ର ଖାଇଗଲେ । ବର୍ଷେ ଗୋଟାକରେ ଘରଟି ଘୁଣ ଖିଆ ବାଉଁଶ ଭଳି ଅକର୍ମଣ୍ୟ ହୋଇଗଲା । କାହା ସହିତ କାହାର ଭଲ ସଂପର୍କ ରହିଲାନି । ବୈକୁଣ୍ଠ ସମାନ ଘର ଗୋଟିକ ତାଳ ଗଛର ବରଡା ଭଳି ଚାହୁଁ ଚାହୁଁ ଖସି ପଡିଲା । ଆଗ ବାପା ଓ ପରେ ପରେ ମାଆ ଚାଲିଗଲେ । ମୋ ତଳ ଭଉଣୀଟା ପାପ ଗର୍ଭ ନଷ୍ଟ କରିବାକୁ ଯାଇ ମଲା । ବଡ ଭାଇ ବାହା ହେଲା । ଭାଉଜ ଆସିଲେ । ସାନ ଭାଇଟା ପାଖରେ ଥାଇ ମଧ୍ୟ ଦୂରରେ ରହିଲା । ଭାଇ ଓ ଭାଉଜ ଭଲ ଆଖିରେ ଦେଖିଲେନି । ସେମାନେ ତିନିଜଣ ଏକାଠି ହେଇଗଲେ । ଯେମିତି କ୍ଷୀରରେ ପାଣି ।

-ଦିନେ ବଡି ଭୋରରୁ ଉଠି ପଡିଛି । ଘରେ ରହିବି ନାହିଁ ବୋଲି ଠିକ୍ କରି ଚାଲିଛି । ବସ୍ତା ଷ୍ଟେସନକୁ ଯାଇଥାନ୍ତି; କିଏ କୁଆଡେ ଦେଖି ନବ, ଏଣୁ ଜଳେଶ୍ୱର ଷ୍ଟେସନରେ ପହଞ୍ଚିଗଲି । କେମିତି ଜାଣିଚ ? ପାଦରେ ଚାଲି ଚାଲି । ତମେ ପାରିବ ? ପାରିବନି । ସେତେବେଳକୁ ନଅଟା ହେଇଥାଏ । କୁଆଡେ ଯିବି; କ'ଣ କିରବି କିଛି ସିଦ୍ଧାନ୍ତ କରି ପାରୁ ନଥାଏ । ସେଦିନ ସୋମବାର । ଷ୍ଟେସନରେ କି ଭିଡ । ବିକାକିଣା ବି ସେମିତି । ସଉଦା ପାଇଁ କାହିଁ କେତେଆଡୁ କେତେ ଆସନ୍ତି । ଏମିତି ବୁଲୁ ବୁଲୁ ଦିନ ବାରଟା ହେଇଗଲା । ଭୋକରେ ପେଟ ମନ୍ଥି ଯାଉଥାଏ । ଖାଇବା ପାଇଁ ହୋଟେଲକୁ ଗଲି । ଖାଉଚି; ଟ୍ରେନଟେ ଆସିଲା । ମୋ ପାଖରେ ବସି ଖାଉଥିବା ଲୋକ ଜଣକ ଅଧା ଖାଇଚି; ଉଠି ହାତ ମୁହଁ ଧୋଇ ଧାଇଁଲା । ବୁଝିବା ବେଳେକୁ ସେଇ ଟ୍ରେନ୍‌ରେ ସିଏ ଗଲେ । ମୁଁ ପେଟେ ଖାଇ ସାରି ମୁହଁ ଧୋଇ, ହାକୁଟି ମାରି ଦଶ ଟଙ୍କିଆଟେ ବଢାଇ ଦେଲି । ଏତିକିବେଳେ ହୋଟେଲର କାମ କରା ପିଲାଟି ପଛରୁ ଡାକିଲା : ଆଜ୍ଞା ! ବେଗ୍ ଛାଡିଗଲେ; ହେଇ ନିଅନ୍ତୁ । ମୁଁ କହିପାରିଲିନି : ନା; ସେଇଟା ମୋର ନୁହେଁ । ମୋ ପାଖରେ ବସି ଯେଉଁ ଲୋକ ଜଣକ ଖାଉଥିଲେ; ଟ୍ରେନ୍ ଆସିଯିବାରୁ ଧାଇଁ ପଳେଇଗଲେ ତାଙ୍କର । କ'ଣ କଲିକି, ବେଗଟାକୁ ହାତରେ ଧରିନେଲି । ସେଠାରୁ ତଳମୁହାଁ ପାଦ ଗଣି ଗଣି ଚାଲିଲି ବସ୍‌ଷ୍ଟାଣ୍ଡକୁ । ବସ୍ ଷ୍ଟାଣ୍ଡର ପୋଖରୀ ପାଖ ଅମରି ବୁଦା ଉହାଡରେ ବସି ବେଗ୍‌ଟିର ଚେନ୍ ଖୋଲି ଦେଖିଲା ବେଳକୁ ବିଡା ବିଡା ଟଙ୍କା । ଆଖିକୁ ବିଶ୍ୱାସ କରିପାରିଲିନି । କ'ଣ କରିବି; କୁଆଡେ ଯିବି; କାହାକୁ କିଛି କହିବି କି; ଏମିତି ଚିନ୍ତା କରୁ କରୁ ମନକୁ ବୁଦ୍ଧିଟେ ପଶିଲା : ସହରକୁ ପଳେଇବି । ସତ କହୁଚି ସେତେବେଳେ ଗାଁଆଁ କଥା କି ଘର କଥା କିଛି ମନେ ପଡିଲାନି । ଆଉ କିଛି ନଭାବି ସିଧା ସହରକୁ ଚାଲିଲି ।

ସହରରେ ରହିବି କେଉଁଠି ? ଧୈର୍ଯ୍ୟ ଧରି ଗୋଟେ ଭଲ ଲଜିଂରେ ରହିଲି । କି ସାହସ ସେତେବେଳେ ? ସାତଦିନ ରହିବାର କଥା କଲି । ପ୍ରଥମ ଦିନର ରାତିରେ ଭାରି ଅଡୁଆ ଲାଗିଲା । ହାର୍ଟ ବିଟ୍‌ର କି ବେଗ । ଗୋଟେ ହାତ ଛାତିରେ ରଖି ଆର ହାତରେ ନିଜକୁ ଥାପୁଡିଲି । ଭିତରୁ କବାଟ ଝରକା ବନ୍ଦ କରି ଟଙ୍କା ଗଣିଲି । କେତେ ଟଙ୍କା ଜାଣିଚ ? ଲକ୍ଷେ କୋଡିଏ ହଜାର । କ'ଣ କରିବି ଭାବୁ ଭାବୁ ରାତି ପାହିଗଲା । ଶେଷକୁ ଭଲ ବୁଦ୍ଧିଟେ ଦିଶିଲା । ପଚାଶ ହଜାର ଟଙ୍କା ନେଇ ଷ୍ଟେଟ୍ ବ୍ୟାଙ୍କରେ ପାଂଚ ବର୍ଷ ପାଇଁ ଜମା କରିଦେଲି । ବ୍ୟାଙ୍କ ଅଫ୍ ଇଣ୍ଡିଆରେ କୋଡିଏ ହଜାର ଟଙ୍କା ରଖି ବଳକା ଟଙ୍କାରେ ଛୋଟିଆ ବେପାରଟେ କରିବା ପାଇଁ ହାତରେ ପଚାଶ ହଜାର ଟଙ୍କା ରଖିଲି । ଚାରିଦିନ ଭିତେର ଗୋଟେ କେବିନ ତିଆରି କରି କିଛି ଦାଦା ଟୋକାଙ୍କୁ ହାତରେ ରଖି ନୂଆ ବଜାର ମାର୍କେଟରେ ପାନ ସିଗାରେଟ ଦୋକାନ କଲି । ଭଲ କାରବାର ହେଲା । ନିଜେ ରହି ଚଳିବା ପାଇଁ ଛୋଟ ଘରଟେ ଭଡା ନେଲି । ହାତରେ ରାନ୍ଧିଲି । ବିଛଣା ଓ ରୋଷେଇ ସରଂଜାମ କିଣିଲି । ଜଣେ ଲୋକ ଚଳିବା ମୁତାବକ ସୁବିଧା ସୁଯୋଗ କରିନେଲି । ଖରାପ ଅଭ୍ୟାସ ତ କିଛି ନଥିଲା : ଟଙ୍କା ବର୍ବାଦ ହବ କାହିଁକି ? ତମେ ଜାଣିଚ ତ : ବାଣିଜ୍ୟେ ବସତି ଲକ୍ଷ୍ମୀ । ତାହା ହିଁ ହେଲା । ଲକ୍ଷ୍ମୀ ଆସିଲେ । ସେ ଲକ୍ଷ୍ମୀ କିନ୍ତୁ ତମ ପିଉସୀ ମା' ନୁହନ୍ତି । ତମ ପିଉସୀ ମା'ତ ଗୋଟେ ଯମ । ଖାଲି ନେବା କଥା ଜାଣନ୍ତି; ଦେବା କଥା ଜାଣନ୍ତିନି । ଜାଣିଥିଲେ ବି କେତେ ଫିକର ବାହାର କରିବେ । ପୁଅ ବୋହୂଙ୍କ ରାଜୁତି ଚାଲିଥିବାରୁ ନିଜେ କିଛି କରିବାକୁ ଅକ୍ଷମ କହି ମୁଣ୍ଡ ଗଡେଇ ଦେବେ । କାହାକୁ ଦେବା, ସାହାଯ୍ୟ କରିବା ତାଙ୍କ ଜାତକରେ ନାହିଁ । ଟିଙ୍କ ଭଳି ଚମମୂଳ କାମୁଡି ପଡିଥିବେ ଓ ରକ୍ତ ଶୋଷୁଥିବେ । ଶୋଷି ଶୋଷି ହାଡରୁ ଚମଡା ଅଲଗା କରିସାରିବା ପରେ ଯାଇ ଜୋକ ଭଳି ଆପେ ଆପେ ଖସି ପଡିବେ ।

-ହଁ, ମୋ କଥା କହୁଥିଲି ପରା । ଦିନକୁ ଦିନ ବେପାର ବଢିଲା । ଏକା କେମିତି ସମ୍ଭାଳିବି । ଦେଖାଚାହାଁ ଓ ବୋଲହାକ ପାଇଁ ପିଲାଟେ ଆଣି ରଖିଲି । ନିଜେ ଆଦେଶ ଦେଇ ବାବୁଟେ ଭଳି ଗୋଡରେ ଗୋଡ ପକେଇ ବସିଲିନି । ଖଟିଲି ରାତି ଦିନ । ଆରମ୍ଭରୁ ଯାହା ଟଙ୍କା ଥିଲା; ବେପାର ପରେ ପରେ ନିଜେ ଚଳି କିଛି କିଛି ଲାଭ ବି ହେଲା । ଟଙ୍କା କିଛି ହେଇଗଲା । ଗୋପାଳ ଗାଁଆକୁ ଲାଗି ପଡିଆ ପଡୁଥିବା କୋଡିଏ ଡେସିମିଲି ଜମି କିଣିନେଲି । ଉଦ୍ଦେଶ୍ୟ : ପଡିଥାଉ । ଭାଗ୍ୟରେ ଥିଲେ ପରା ଭୂମି, ଗୋରୁ ଓ କନ୍ୟା ମିଳେ । କିଣି ତ ନେଲି; ବର୍ଷେ ଯାଇନି ଡବଲ ଦାମ୍ ଦେଇ କିଣିବା ପାଇଁ ଲୋକ ଆସି ଧାଡିରେ ଛିଡା ହେଲେ । ଭାବିଲି : ବର୍ଷକେ ଭିତରେ ଜାଗାର ଏତେ ଦାମ୍ ? ଦେଲିନି । ଠିକ୍ କଲି: ଆଉ ବର୍ଷେ ଦି ବର୍ଷ ଅପେକ୍ଷା କରାଯାଉ । ସେଇଆ ହେଲା । ତା' ପରବର୍ଷକୁ ସେଇ କୋଡିଏ ଡେସିମିଲି ଜାଗା, ଯାହାକୁ ଦି'ବର୍ଷ ତଳେ ତିରିଶ ହଜାରରେ କିଣିଥିଲି; ନବେ ହଜାରରେ ବିକିଦେଲି । ପଚାଶ ହଜାର ଟଙ୍କା ନେଇ ଇଣ୍ଡିଆନ୍ ଓଭରସିଜ୍ ବ୍ୟାଙ୍କରେ ଜମା କରି ଅବଶିଷ୍ଟ ଚାଳିଶ ହଜାର ଟଙ୍କା ସହିତ ଆଉ କୋଡିଏ ହଜାର ମିଶେଇ ଓଡିଶା ପ୍ଲାଷ୍ଟିକ୍ ପାଖକୁ ଲାଗି ଅଂଗାର ଗଡିଆ ଇଲାକାରେ ପନ୍ଦର ଡେସିମିଲି ଜାଗା କିଣିନେଲି । ଦି'ବର୍ଷ ତଳେ ତାକୁ ବିକି ଦେଇ ଆଉ ଟିକେ ଭିତରକୁ ପଞ୍ଚାନନ ଖାଁ ମିଲ୍ ଆରପଟେ; ଏଇ ସମଲପୁର ପାଖାପାଖି ଦଶ ଡେସିମିଲି ଜାଗା କିଣିନେଲି । ବେପାରକୁ ବେପାର ଚାଲିଥାଏ । ଯେଉଁ ପିଲାଟାକୁ ରଖିଥିଲି; ସେଇଟା ଗଦ୍‌ଦାର କଲା । ସୁଖ ଭାତ ଖାଇ ତା' ବେକ୍ କୁଂଡେଇଲା । କୋଡିଏ ହଜାର ଟଙ୍କା ନେଇ ମାଲ୍ କିଣିବାକୁ ଯାଇଥିଲା ଖଡଗପୁର । ମାଲ୍ କାହିଁ ନା ସିଏ କାହିଁ । କୁଆଡେ ଯେ ଗଲା ଆଉ ଆସିଲାନି । ଘରତ ତା'ର କେଉଁଠି;

ଘରେ ଆଉ ସବୁ କିଏ କିଛି ଅଛନ୍ତି ଜାଣିଥିଲେ ସିନା ! ଯାଉ; ତା' ଭାଗ୍ୟ ନେଇ ଯାଇଥାଉ । ଯେଉଁଠି ଥିଲେ ଭଲରେ ଥିଲେ ଭଲ । କ'ଣ କରାଯାଏ ? ଉଠିଲେ ଉଠିବ; ପଡିଲେ ପଡିବ । ନିଜ ପିଠିରେ ନିଜେ ପଡିବ । ଆଉ କିଏ ଆସି ପିଠି ଦେଖେଇବ ଯେ । ତା' ଖବର ରଖିଲିନି । କିଏ ଖୋଳତାଡ କରିବ ? ଚୁପ୍ ରହିଲି । କିଛିଦିନ ପରେ ଫେର୍ ଗୋଟେ ଅଘଟଣ ଘଟିଲା । ଜଣେ ଅଧା ବଙ୍ଗାଳୀ ବେପାରୀକୁ ହାତ ଉଧାରି କୋଡ଼ିଏ ହଜାର ଟଙ୍କା ଦେଇଥିଲି । ଲେଖା ପଢା କିଛି ହୋଇନଥିଲା । ବିଶ୍ୱାସରେ ଲେଖାପଢା ଗୋଟେ କ'ଣ ? ଯେତେ ଜଣଙ୍କୁ ତା'କଥା କହିଛି ସମସ୍ତେ ତାକୁ ମଖି ବୋଲି କହନ୍ତି । କାହିଁକି ଯେ ମଖି କହନ୍ତି ମୁଁ ଜାଣିପାରେନି । ଏମିତି ଆମର ଦିଆନିଆ କେତେଥର ହେଇଚି । ଲୋକଟା କିନ୍ତୁ ବାହାରକୁ ଭାରି ନିର୍ଦ୍ଦୟ । କଥାବାର୍ତ୍ତା ତା'ର ବଡ ନିଷ୍ଠୁର । ଭିତରଟା କିନ୍ତୁ କୋମଳ । ସମସ୍ତେ କହନ୍ତି ହୃଦୟ ବୋଲି ତା'ର କିଛି ନାହିଁ । ଆଉ ସିଏ ଯେଉଁଦିନ ହାର୍ଟ ଆଟାକରେ ମରିଗଲା; ସେଦିନ ଜଣାପଡିଲା : ହାର୍ଟ ନଥିଲେ ଆଟାକ ହେଲା କେମିତି ? ହେଲେ କ'ଣ ହେବ ବୁଝିବା ବେଳକୁ ଲୋକଟି ବଞ୍ଚିଥିଲେ ସିନା । ମୋର ତ କୋଡିଏ ହଜାର ପାଣିରେ ପଡିଗଲା । କହିବି କାହାକୁ, ଦବ ବି କିଏ ? ଚୁପ୍ ରହିଲି ।

–ହଁ, କ'ଣ କହୁଥିଲି : ସେ ପିଲା କଥା । ପିଲାଟା ଗରଦାର କରିବା କଥା ଦେଖି ଆଉ ପିଲା ରଖିଲିନି । କିଛିଦିନ ନିଜେ ବୁଝିଲି । ଏମିତି ବୁଝି ବୁଝି ଭାବିଲି, ଜାଗା ତ ଅଛି । ଆଜି ସିନା ଏକା; ଦିନେ ନା ଦିନେ ଘରଦ୍ୱାର କରି ସଂସାର କରିବି ତ । ଶୁଭସ୍ୟ ଶୀଘ୍ରମ୍ ନହେବ କାହିଁକି ? ସେଇଆ କଲି । ଘର ତିଆରିରେ ଲାଗି ପଡିଲି ।

–ହଁ, ଘର କଥା । ଏଇଟା ସେଇ ଘର । ଏଇ ହାତରେ ତାକୁ ତିଆରି କରିଚି । ଏଇ ହାତ କହିଲେ କାହାକୁ ବୁଝାଉଚି; ତମେ ବୁଝୁଚ ତ ? ଯେଉଁ ହାତରେ ଟଙ୍କା କମେଇଛି; ଚମକୁ ଚମ ମାଜିମୁଜି ଝାଳ ନିଗିଡେଇଛି, ଏଇ ପରା ସେଇ ହାତ । ଅବଶ୍ୟ ରାଜମିସ୍ତ୍ରୀ ଆସି କାନ୍ଥ ଓ ଛାତ କରିଛି; କିନ୍ତୁ ଟଙ୍କା କିଏ ଦେଇଚି ? ମୁଁ, ହଁ କି ନା ! ତମେ ରାଜି ହେଉଚ ତ ? ଆଉ ଚାକିରି । ଚାକିରି କରି କି ଫାଇଦା ? ମାସ ଶେଷକୁ ଚାହିଁଥା । ବେପାର କଲେ ପରା ନିତି ଟଙ୍କା । ଭିଜିଲାନ୍ସ ଭୟ ନାହିଁ । ଉପର ଅଫିସରକୁ ଡର ନାହିଁ, କୁଜି ନେତା ଓ ନେତାମାନଙ୍କୁ ହଜୁର କରିବାର ନାହିଁ । ବଦଳିକୁ ଖାତିର ମଧ୍ୟ ନାହିଁ । କି ସ୍ୱାଧୀନ । ହଁ ଘର ଉପର ମହଲାକୁ ଭଡା ଲଗେଇଚି । ଗୋଟେ ଅଣ ସରକାରୀ ଅଫିସ ହେଇଚି । ମାସକୁ ଭଡା ପାଞ୍ଚ ହଜାର । ପରିବାର ଧରି ରହୁଥିବା ଭଡାଟିଆମାନଙ୍କୁ ଘର ଦେଲିନି । କମ୍ ନାକେଦମ ହେବାକୁ ପଡିବ କି । ନିଜେ ପରା ଭଡାରେ ଥିଲି; ଆଉ ଜାଣିବାକୁ ବାକି ନାହିଁ ।

–ହଁ, ଦୋକାନ କଥା । ଦେଢ ବର୍ଷ ହେଲା ମ୍ୟୁନିସିପାଲିଟି ମାର୍କେଟ୍ କଂପ୍ଲେକ୍ସରେ ଥିବା ଗୋଟେ ଘର ଲଟେରୀରେ ପାଇଚି । ଘରଟା ସାମ୍ନା ପଟରେ ଅଛି । ଭଲ ବିକା କିଣା ଚାଲିଛି । ଦି'ଜଣ ସେଲ୍‌ସମ୍ୟାନ୍ ରଖିଛି । କୁଆଡେ ଗଦ୍‌ଦାର ହେବେ ଏଇ ଆଶଙ୍କା ଦୂର ପାଇଁ ଉପାୟଟେ କରିଚି । ସେ ଦି'ଜଣ ଦି'ଜଣଙ୍କୁ ଜଗୁଛନ୍ତି । ମୁଁ କହିଦେଇଚି, ଖଟି ଖାଅ । ସତରେ ଚାଲିବ; ଭଲରେ ରହିବ । ବିଶ୍ୱାସଘାତକ ହେଲେ ନିଜ ହାତରେ କୁରାଢି ନିଜ ବେକରେ ବସେଇବ ।

–ହଁ, ଗାଆଁ କଥା । ଗାଆଁ କଥା ମୋର ମନେ ପଡେ । ଏବେ ବି ମନେ ଅଛି । ବେଳେବେଳେ ଉଚ୍ଛନ୍ନ ଲାଗେ । ହେଲେ କରିବି କ'ଣ ? ଗାଆଁ ଲୋକେ; ଘର ଲୋକେ ଲୋଡିଲେ ସିନା ? ଗାଆଁରେ ଘରଟି କ'ଣ ଘର ହେଇ ରହିଚି ? ଗାଆଁ ଲୋକ ପରା ନିଜ ନିଜ ପାଇଁ ସକାଳରୁ ରାତିଯାଏଁ ବ୍ୟସ୍ତ । ତଥାପି ବେଳ ନିଅଣ୍ଟ । ତମେ କହୁନ : କାମ କାହାର ନାହିଁ । ମରିବାଯାଏ ପରା କାମ ସରେନି । ସେଇସବୁ ବ୍ୟସ୍ତତା ତ ପୁଣି ପଡୋଶୀ କଥା ବୁଝିବା

ଉଚିତ । ଲୋକମାନେ ବଡ ସ୍ୱାର୍ଥପର ହେଇଗଲେଣି । ବେଶି ଗାଆଁ ଲୋକମାନେ । ଖାଲି ଉପଦେଶ ଦେବା ଜାଣନ୍ତି । ମାଗଣାରେ ମିଳେ । ଆରେ ବାବୁ; ମାଗଣା ଉପଦେଶ କି କାମରେ ଲାଗେ ? ତମେ ଦେଖିବ ଆଉ ଚାଳିଶ/ପଚାଶ ବର୍ଷ ପରେ ଗାଆଁ ବୋଲି କିଛି ନଥିବ । ଏବେ ଗାଆଁରେ ଟୋକାମାନେ ରହୁଛନ୍ତି କି ? କାମ ପାଇଁ କିଏ ହରିଆନା, କିଏ ହାଇଦ୍ରାବାଦ୍ ତ କିଏ କଲିକତା ପଳେଇଲାଣି । ସେମାନେ ଯେ ଦିନେ ପୁଣି ଆସି ଗାଆଁରେ ଘର କରି ରହିବେ; ସଂସାର କରିବେ, କି ଭରସା ଅଛି । ସେମିତି ବାହାଘର କଥା । ସହରୀ ଝିଅମାନେ ଗାଆଁକୁ ବୋହୂ ହୋଇଯିବା ପାଇଁ ରାଜି ନୁହନ୍ତି । କହିପାର : ଭୁବନେଶ୍ୱରର ନୂଆପଲ୍ଲୀ ଅଞ୍ଚଳର ଶିକ୍ଷିତା ଝିଅଟେ ଚନ୍ଦନେଶ୍ୱର ଭୋଗରାଇ ଅଞ୍ଚଳର ପୁଅଟାକୁ ବାହା ହେଲା କେମିତି ? ଆରେ; ପୁଅଟିର ଘର ସିନା ଭୋଗରାଇ, ସିଏ ପରା ବିଳାସପୁରରେ ଚାକିରି କରୁଚି । ବାହାହେଇଥିବା ଝିଅଟି ବୋହୂ ହେଇ ରହିବ କେଉଁଠି କହିପାରିବ : ବିଳାସପୁରରେ- ଭୋଗରାଇରେ ନୁହେଁ । ଗାଆଁ ଲୋକମାନେ କମୁଛନ୍ତି ନା ବଢୁଛନ୍ତି । ଗାଆଁ ଲୋକେ ସହର ମୁହାଁ ନା ଗାଆଁ ମୁହାଁ ? କ'ଣ କହିବା, କାହାକୁ କହିବା ? ସଭ୍ୟତାର ସୁଅ ଏଇମିତି ।

ଯେଉଁ ଗାଆଁର ଘରେ ଦିନେ ପିଲା ଛୁଆଙ୍କର କୋଳାହଳ ଶୁଭୁଥିଲା; ଗାଆଁ ଦାଣ୍ଡରେ କବାଡି, ସୀତାଚୋରୀ ଓ ଢେଙ୍କିଆ ଖେଳ ହେଉଥିଲା, ସେଇ ଗାଆଁର କିଛି କିଛି ଘରେ ପରା ତାଲା ଝୁଲୁଛି । ଗୋରୁଗାଈ, ଛେଳି କୁକୁର, ବିଲେଇ କୁକୁଡା ଭଳି ଗୃହପାଳିତ ପଶୁପକ୍ଷୀ ଏବେ କେତେଟା ଘରେ ଆଗ ଭଳି ଅଛି ? ଆଗରୁ ଗାଆଁଗୁଡିକ କ'ଣ ହେଉଥିଲା ଆମେ ସିନା କହିପାରିବନି; ଆମ ବାପା ଜେଜେବାପା, ତାଙ୍କ ବାପା ଜେଜେବାପା ତ କହିପାରିଥାନ୍ତେ । ସେତେବେଳେ ତାଙ୍କୁ କେହି ପଚାରିଥିଲେ ସିନା । ଭବିଷ୍ୟତରେ ଗାଆଁର ଅବସ୍ଥା କ'ଣ ହୋଇଥିବ ଅବା ହୋଇଯିବ ଆମେ ନ କହିପାରିଲେ ମଧ୍ୟ ଆମ ପୁଅ-ଝିଅ କିମ୍ବା ତାଙ୍କ ପୁଅ ଝିଅ କିଛି କହିପାରିବେ ତ । ଏମିତି ଭବିଷ୍ୟତ ପରେ ଭବିଷ୍ୟତ ହେଇ ହେଇ ଦିନେ ଗାଆଁଗୁଡିକ ଯେ ଝାଟିମାଟିର କୁଡିଆ ଭଳି ଉଚ୍ଛ ଲାଗି; ବର୍ଷା ପାଣି ଖାଇ ମାଟିରେ ମିଶି ନଯିବ କିଏ କହିବ? ସବୁରେ ପରିବର୍ତ୍ତନ ଆସିଲାଣି ଯେତେବେଳେ, କେଉଁଟା ପରିବର୍ତ୍ତନ ହେବନି ଯେ । ଗାଆଁ ନଷ୍ଟ ହେବ ଓ ପୁଣି ଥରେ ତିଆରି ହେବ । ଏତେ ଆଦର ପାଉଥିବା ସହରି ଜୀବନ ବିଷ ବିଷ ଲାଗିବ । ଏବେ ଗାଆଁ ସେମିତି; ଦିନେ ସହର ସେମିତି ହେବ । ଜନ୍ମ ଓ ମୃତ୍ୟୁର ଚକା ଭଉଁରୀ ଖେଳ ପରି ଗାଆଁ ଓ ସହରକୁ ନେଇ ଖେଳ ଲାଗିବ । ଆମେ ନଥାଇପାରୁ; କେହି ନା କେହି ମଣିଷ ତ ଥିବେ । ସେମାନେ ଜାଣିବେ ।

-ହଁ; ଗାଆଁରେ ମୋ ଘର କଥା । ମାସେ ତଳେ ଶୁଣିଲି ମୋ ଭାଇ-ଭାଉଜଙ୍କ ଅବସ୍ଥା ଭଲ ନାହିଁ । ଗରିବ କହିଲେ ଯାହା ବୁଝ; ସେଇ ଗରିବକୁ ବୁଝାଏ ତାଙ୍କ ଚକ'ଣି । ସେମାନେ ଜାଣନ୍ତି; ମୁଁ ବଞ୍ଚିନାହିଁ । କେବେଠୁ ମରିଚି । କାରଣ : ଏତେ ବର୍ଷ ହେଲା ମୁଁ ଘରକୁ ଯାଇ ନାହିଁ । ତାଙ୍କ ଘରେ ବୋଝ ଦେଇ ନାହିଁ । ଘର ଓ ଜମିବାଡିରେ ଭାଗ ବସେଇବାର ଧମକ ଦେଇନାହିଁ । ଏମିତି ହେଉଛି ପରା । ମୁଁ କେମିତି ସେଥିରୁ ବାଦ୍ ପଡିବି ଯେ । ଯିଏ ହେଲେ ଭାବିବ । ଏଇନେ ଆଉ ସେମାନେ ଏପରି ପାପଚିନ୍ତାରେ ମନ ଓଜନିଆ କରୁନାହାନ୍ତି । କିନ୍ତୁ ଭାଇ ତାଙ୍କ ବଡଝିଅର ବାହାଘର ପାଇଁ ଜମି ପନ୍ଦର ଗୁଣ୍ଠ ବିକିଲା ବେଳେ ମୋ ନାଆଁ ଆଗରୁ ସ୍ୱର୍ଗତ ଲେଖା ହେବା ପରେ ଯାଇ ବିକି ପାରିଲେ । ଏହା ପରେ ଭାଇ ବୋଲି କୋଉ ମୁହଁରେ ଯାଇ କହିବି; ଦାବି କରନ୍ତି । ଭଲରେ ଥାଆନ୍ତୁ ସେମାନେ । ମୋ ବଞ୍ଚି ରହିବାଟା ସେମାନଙ୍କ ପାଇଁ କ'ଣ ଖବର ? ଚରମ ପ୍ରମାଦ ଗଣିବେ । ଦୁନିଆରେ, ଜୀବନର କି ବିଚିତ୍ର ଖେଳ ସତେ ।

ମାନୁଚି : ଜନ୍ମ ଜାତକରେ ସବୁଥାଏ । ହେଲେ ଭାଗ୍ୟ ଜାତକରେ ନଥାଏ; ଥାଏ କପାଳରେ/ ହାତରେ । ତମର ବିଶ୍ୱାସ ହେଉ ନଥିବ । ନିଜ ଉପରକୁ ନିଜେ ଏଇ ବିଶ୍ୱାସର ହାଲୁକା ଗଣ୍ଠିଲିଟିକୁ ଉଠେଇ ନେଇ ଦେଖ ତ ଥରେ । ଜାଣି ପାରିବ । ଥରକରେ ନହେଉ; କିଛି ଥର ପରେ ମିଛ କହୁଚି କି ସତ କହୁଚି ବୁଝିପାରିବ ।

-ମୋ ବାହାଘରର କଥା ଶୁଣିବ । ସେ ଗୋଟେ ଇତିହାସ । ଏମିତି ଇତିହାସ ତମେ ତମ ଇତିହାସ ବହିରେ ପଢ଼ି ନଥିବ । ଶୁଣ, ଶୁଣି ମନେରଖିଲେ ଯଥେଷ୍ଟ ହେବ । ଲେଖା ନଯାଉ । ଲେଖାପଢ଼ା ଜାଣିନଥିବା ଲୋକ ତ ପୁଣି ଶୁଣି ଶୁଣି କେତେ କଥା ମନେ ରଖେ । ହଁ; ବାହାଘର । ସେତେବେଳେ କେବିନଟେ ପକେଇଥାଏ । କଥାରେ କହନ୍ତିନି : ଜୋତା ସିଲେଇଠୁ ଚଂଡି ପାଠ ଯାଏ କାମ କରିବା ଲୋକ ବି ଥାଆନ୍ତି । ସେମିତି; ମୋର ସବୁ ରକମ ଜିନିଷ ଥାଏ । ଛୁଂଚି ପାଖରୁ ଖେଳଣାର ଉଡାଜାହାଜ ଯାଏ ରଖିଥାଏ । ଯାହା ଖୋଜିଲେ ମିଳିବ । ଥାଏ ବି ଗଞ୍ଜେଇ ପୁଡିଆ । ଟି.ଡି. କ'ଣ ଜାଣିଚ ? ଫିଲ୍‌ଟର ସିଗାରେଟ ଭିତରୁ ଟବାକୋ ବାହାର କରି ଗଞ୍ଜେଇ ପୁଡିଆରୁ ଅଧା ଓ ଟବାକୋରୁ କିଛି ମିଶେଇ ଅବିକଳ ସିଗାରେଟ୍ କରିଦେବାକୁ ଟି.ଡି. ବୁଝାଯାଏ । ସେଇ ସିଗାରେଟ୍ ରଖୁଥାଏ । ପହିଲେ କିଛି ଦିନ ହାତ ସଫେଇ ଓ ପରେ ପରେ ଆଖିର ଠାରରେ ବିକାକିଣା ହେଲା । କିଛି ଚିହ୍ନା ଗରାଖ ହୋଇଗଲେ । ଲାଭ ଯେମିତି ହେଲା ରିସ୍କ ମଧ୍ୟ ସେମିତି ବଢ଼ିଲା । ପୋଲିସବାଲାଙ୍କୁ ବାସିଲା । ସେମାନେ ଜାଣିଲେ । ଲୁଚାଛପା ହାତଗୁଞ୍ଜା ଦିଆନିଆ ବି ହେଲା । ଏବେ ଯେମିତି ଯେଉଁଠି ସେଇଠି ମିଳି ପାରୁଚି; ସେତେବେଳେ ସେମିତି ନଥିଲା । ସିଏ ଯାହା ହେଉ; ଯେଉଁ କେତେ ଜଣ ସବୁଦିନେ ନିଅନ୍ତି, ସେମାନଙ୍କ ମଧ୍ୟରେ ଜଣେ ବୁଢ଼ା ଥାଏ । ବୁଢ଼ାର ନହେଲେ ନହୁଏ । ଦିନକୁ ତିନିଥର : ସକାଳେ, ଖରାବେଳେ ଓ ସଞ୍ଜରେ ନିଶ୍ଚିତ । ସାଙ୍ଗ ମେଳରେ ବସିଗଲେ ହିସାବ ନାହିଁ । ବୁଢ଼ା ବାକି ଖାଇଲା । ବାକି ଖାଇଲେ ଖରଚ ବଢ଼ିଯାଏ । ଗୁଣି ନିଶା, ଗଞ୍ଜେଇ ନିଶା । ବାକି ଖାଉ ଖାଉ ଗଡି ଚାଲିଲା । ପଚାଶ, ଶହେ, ଦୁଇଶହ ନେଇଗଲା । ଆଗ ବାକି ଆଡକୁ ଦିଅ; ପଛେ ହାଲିକୁ ନିଅ କହିଲେ ବୁଢ଼ା ଶୁଣିଲାନି । କ'ଣ କରାଯାଏ ? ମନା କଲେ ସିଏ ଏମିତି ବିକଳ ହୁଏ ଯେ; ରାଗରେ ଲାଲ ପଡିଥିବା ଆଖିରୁ ବି ଲୁହ ବାହାରି ଆସିବ । ବୁଢ଼ାର ଏମିତି ଅଭ୍ୟାସ ଯେ ପେଟକୁ ନଖାଇଲେ ରହିଯିବ; ଗଂଜେଇ ନହେଲେ ରହି ପାରିବନି । ମନା କଲେ ଗୋଡ ହାତ ଧରି ପକେଇବ । କହିବ : ମତେ ବଞ୍ଚା ପୁଅ । ସିଏ ବିଦା ନହେଲେ ବିକା କିଣା ମାନ୍ଦା । ଯଦି ଏଇ ଥରକ ନିଅ; ଆଉ ଦେଇ ହେବନି କହିବ; ବୁଢ଼ା ଦାଢ଼ିରୁ ଚୁମା ଖାଇ କହିବ : ପୁଅ । ଏ ଜନ୍ମରେ ଶୁଝି ନପାରିଲେ ଆର ଜନ୍ମରେ ତୋ' ବାଡିରେ ଲଙ୍କା ଗଛ ହେଇ ଶୁଝି ଦେବି । ସେଥର ଦେଲି । ଆର ଥରକୁ ବି ଦେଲି । ସବୁଥର ଦେଲି । ଏମିତି ଦେଉ ଦେଉ ପାଂଚଶହ ଟଙ୍କା ହେଇଗଲା । ଦିନେ ବୁଢ଼ା ଆଗରେ ବିରକ୍ତ ହେଇ ବାକି ଖାତାରୁ ତା' ନାଆଁ ଚିରି ପକେଇଲି । କହିଲି- ଯା' ଆଉ ଥିବ ନା ନବ ।

-ଆହା; ଛୁଆଟାକୁ ସ୍କୁଟରଟେ ଧକ୍‌କା ଦେଇଦେଲା । ଛୁଆଟା ମୁହଁମାଡି ପଡିଛି । କେହି ଜଣେ ଉଠାଅ ବେ । କ'ଣ ହେଲା ଦେଖ । ହଁ ବୁଢ଼ା କଥା କହୁଥିଲି ପରା । ବୁଢ଼ା ତ ଗଲା । ଦିନେ ଯାଇଛି; ତା'ପରଦିନ ସକାଳେ ଆସି ବୁଢ଼ା ହାଜର । କଥା କ'ଣ ବୁଝିବା ବେଳକୁ ବୁଢ଼ାକୁ ଘଟଣା ବହୁତ ବାଧିଚି । ରାତିରେ ଭଲରେ ଶୋଇ ପାରିନି । ପାଂଚଶହ ଟଙ୍କା ତା' ପାଇଁ ପର୍ବତ । ବିବେକକୁ ନେଇଚି ସେ କଥା । ବୁଢ଼ା ଆସି କହିଲା : ପୁଅ । ବାକି ଖାତାରୁ ନାଆଁ ଚିରି ଦେଲୁ ଯେ; ଗାଲରେ ଚଟକଣାଟାଏ ବସେଇ ଜ୍ଞାନ ଦେଲୁ । ଦୋଷ ତୋ'ର ନୁହେଁ; ମୋର । ହଉ;

ଆଜି ଖରାବେଳକୁ ଘରକୁ ଆ', କିଛି ଟଙ୍କା ଦେବି । ତୋ'ର ବି ବେପାର ଚାଲୁ; ମୋର ବି ଚାଲୁ । ସେଇଦିନ ଖରାବେଳେ ମାନେ ଦିନ ଦେଢଟା ହେବ; ବୁଢା ଘରକୁ ଚାଲିଗଲି । ସହରରେ ଖରାବେଳେ କିଛି ଥାଏ ? ଘଣ୍ଟାର ସମୟ ପରା ସବୁ । ଗାଆଁରେ ସିନା ଏସବୁ ଥାଏ । ବୁଢା ଘରେ ପହଞ୍ଚି ଯାହା ଦେଖିଲି, ମୋର ଫିଉଜ ଉଡିଗଲା । ସେଇଟା ଘର କହିବ ? ବୁଢା ରହୁଥାଏ ଗୋଟେ ନୁଆଁଣିଆ ଝାଟିମାଟିର ନଡାଛପର ଘରେ । ଝରକା ନାହିଁ । ଫଳପେଟିର ପତଳା କିରୋସିନି ପଟାରେ ତିଆରି ସରୁ ତାର ବଂଧା କବାଟଟେ । ବିଧାଏ ପକାଇଲେ ଦଶଫାଳ ହେଇଯିବ । କିମିତି ଯେ ଭିତରେ ଶୁଅନ୍ତି, ଶୋଇବା ଲୋକକୁ ପଚାରିଲେ କହିପାରିବନି । ଘରେ ଏକା ବୁଢା ନୁହେଁ; ଯୁବତୀ ଝିଅଟିଏ ଥାଏ । ଶୁଣିଲି : ଝିଅକୁ ସାତ ଆଠ ବର୍ଷ ବେଳେ ମା' ତା'ର ଆଉ ଗୋଟେ ମରଦ ସହିତ ଚଂପଟ ମାରିଲା । ସେଇଦିନଠୁ ଗଲା ଯେ ଗଲା, ଆଉ ଅସିଲାନି । ଆସିଥିଲେ ବୁଢା ରଖିଥାଆନ୍ତା; କିନ୍ତୁ ସିଏ ଆସିଲେ ସିନା । କିଛିଦିନ ବୁଢା ମନ ଦୁଃଖ କରିଥିଲା; ଆସିବ ବୋଲି ଅପେକ୍ଷା କରିଥିଲା । ଅନେକ ଦିନ ଯିବା ପରେ ବୁଢା ଆଉ ଅପେକ୍ଷା କରିନଥିଲା କି ଝିଅ ତା'ର ଖୋଜାଖୋଜି କରିନଥିଲା । ସେତେବେଳ ବୁଢା ଆଉ ଗୋଟେ ମାଇକିନା ଆଣିବ ବୋଲି ଚିନ୍ତା କରିଥିଲା; କିନ୍ତୁ ଆସିବ କିଏ ? କାହିଁକି ଆସିବ ଯେ । କୋଉ ଲୋଭ ଥିଲା ବୁଢା ପାଖରେ । ଏକଥା ଶୁଣୁ ଶୁଣୁ ମୋତେ ଦୁଃଖ ସୁଖ କଥା ପଚାରୁ ପଚାରୁ ବୁଢା ଗୋଟେ କଳଙ୍କି ଲଗା ଟିଣ ବାକ୍ସରୁ ପାଉଁଜି ହଳେ ଆଣି ଦେଖେଇଲା । କହିଲା ନେ ପୁଅ; ଏଇଟା କେତେ ଟଙ୍କା ହେବ; ବିକି ଦେଇ ଅସୁଲ କର । ତୁ ଢେର ଦେଲୁଣି; କିଛି ନପାଇଲେ ବେପାର କରିବୁ କେମିତି ? ତତେ ମୁହଁ ଦେଖାଇବାକୁ ଲାଜ ଲାଗିଲାଣି । ଏହା ଶୁଣି ମୋର ଦୟା ଆସିଲା । ବେପାର କରିଚି ସତ; ମଣିଷଟିଏ ଯେ । ବିବେକକୁ ବଳି ପକେଇ ଦେବି। ଆହୁରି ଶୁଣିଲି : ପାଉଁଜି ହଳକ ବୁଢାର ବୁଢୀର । ଝିଅ ବାହାଘର ପାଇଁ ବୁଢୀ ଲୁଚେଇ ରଖିଥିଲା । କେତେଥର ବୁଢା ପାଖରୁ ମାଡ ଖାଇ ମଧ୍ୟ ଦେଇନି । ଏହା ଶୁଣି ଖରାରେ ନୁହେଁ ହାତର ସାମାନ୍ୟ ଉଷୁମରେ ମୁଁ ବରଫ ଭଳି ତରଳିବାକୁ ଲାଗିଲି । କହିଲି : ମଉସା । ସେଇଟା ରଖ । ଝିଅର ମନ କଷ୍ଟ ହେବ । ତମ ପାଖରେ ଟଙ୍କା ହେଲେ ଦେବ । ଏତେ ବ୍ୟସ୍ତ ହୁଅନା । କ'ଣ କହିଦେଲି ବୋଲି ତମେ ଏଇ କାମ କରି ଟଙ୍କା ଦବ; ମୋତେ ଭଲ ଲାଗିବନି । ଏତିକି ଶୁଣି ବୁଢା କାନ୍ଦ କାନ୍ଦ ହୋଇଗଲା । ଲୁହ ଛଳ ଛଳ ଆଖିରେ ମୋ ହାତ ଧରି ପଚାରିଲା : ପୁଅ । ମତେ ଗଞ୍ଜେଇ ଦବୁ ତ ? ତୁ ମନା କଲେ ଜୀବନ ଚାଲିଯିବ । ଜୀବନଟା ଚାଲିଗଲେ ଝିଅ ମୋର କାହା ମୁହଁକୁ ଚାହିଁ ପଡି ରହିବ ? ବୁଢା କଥାରୁ ଜାଣିଲି, ବୁଲେଇ ବଙ୍କେଇ ମାରିବାକୁ ଚାହୁଁଥିବା ଲୋକଟି ସିଧାସଳଖ ମରିବାକୁ ଡରୁଚି । ଜୀବନ ପ୍ରତି କି ମମତା । ମରିବାକୁ ପ୍ରସ୍ତୁତ ହେଇସାରିଥିବା ଲୋକ ସତରେ କ'ଣ ମୃତ୍ୟୁକୁ ଭୟ କରେ ? ଜୀବନକୁ ଭଲ ପାଏ ? କେଉଁଟା ସତ ମୁଁ ଜାଣିପାରିଲିନି ।

-ହଁ, କ'ଣ କହୁଥିଲି ? ବୁଢା ଘର କଥା । ସେଇ ଘଟଣା ପରେ ପରେ ମଝିରେ ମଝିରେ ବୁଢାର ଘରକୁ ବୁଲିଗଲି । ସେମିତି କିଛି କାମ ନଥାଏ; କିନ୍ତୁ କାହିଁକି କେଜାଣି ଯିବାକୁ ମନ ହୁଏ । ମୋର ଯିବା ବେଳ ହେଲା ଦିନ ଦୁଇଟା ନଚେତ୍ ରାତି । ଦିନସାରା ଫୁର୍ସତ କାହିଁ ଯେ । ଏମିତି ତିନି ଚାରିଥର ଯିବା ପରେ ଦିନେ ଦେଖିଲି : ବୁଢା ଚିଲମ ଲଗେଇଚି । ଝିଅଟି ତା'ର ଚିଲମ ଆଗରେ କିରୋସିନି ଡିବିରିର ନିଆଁ ଧରେଇଚି । ମୋତେ ଆଶ୍ଚର୍ଯ୍ୟ ଲାଗିଲା । ମୋତେ ଦେଖି ବୁଢା ଖୁସି ହେଇ କହିଲା : ପୁଅ । ମୁଁ ଜାଣେ ପରା ପୁଡିଆ ଆଣିଥିବୁ । ହେଇ ବାହାରୁଥିଲି । ଟିକେ ଥିଲା ତ ଭାବିଲି ରହିବ କାହିଁକି ? ଖାଞ୍ଜେ ହବନି । ସାରିକି ଉଠି ଥାଆନ୍ତି । ହଉ; କାହିଁ

ଦେ । ମୁଁ ମନାକଲି । ଦୋକାନରେ ଅଛି; ଚାବି ତ ପକେଇ ଆସିଚି । ପାଖ ଟା' ଦୋକାନରେ କେତେଟା ପୁଡିଆ ଦେଇ ଆସିଚି; ମୋ ନାଆଁ କହି ନେଇ ଆସି ପାରିବ ଯଦି ଯାଅ । ଏତିକି କଥା ଶୁଣି ବୁଢା ନିଜେ ବାହାରି ପଡିଲା । ଗଲାବେଳେ ବୁଢା କହିଗଲା; ପୁଅ ତୁ ଥା । ମୁଁ ନେଇକି ଆସୁଚି । ବୁଢା ଯିବା ପରେ ଝିଅଟି ତା'ର ଲୁହ ଗଡେଇ ଲୁଚି ଲୁଚି କାନ୍ଦିଲା । ଲୁହ ସିନା ଦେଖି ପାରିଲିନି କିନ୍ତୁ ସକେଇ ସକେଇ କାନ୍ଦିବା ଶବ୍ଦ ଶୁଣି ଜାଣିପାରିଲି । ଯୁବତୀ ଝିଅ । କାହିଁକି କାନ୍ଦୁଛି; କ'ଣ ହେଇଚି ତା'ର ପଚାରିବାକୁ ଉଚିତ ମନେ କଲିନି । କିଛି ସମୟ ପରେ ବାଧ୍ୟ ହେଇ ପଚାରିଲି । ଜାଣିବାକୁ ପାଇଲି : କିଛି ନାହିଁ; ଦିନରେ ଭାତ ହେଇନି । କ'ଣ କହି ବୁଝାଇବି ମୋତେ କିଛି ବୁଦ୍ଧି ଦିଶିଲାନି । ବୁଢାର ଫେରିବା ବାଟକୁ ଚାହିଁ ବସି ରହିଲି । ଦଶ ମିନିଟ୍ ଯାଇନି; ଦେଖିଲି; ହସ ହସ ମୁହଁରେ ବୁଢା ଫେରୁଚି । ସତରେ ଯେମିତି ସେଦିନ ପାଇଁ ବୁଢାଟି ବଂଚିଯିବାର ଆୟୁଷ ଧରି ଆସିଚି । ପହଞ୍ଚୁ ପହଞ୍ଚୁ ବୁଢା କହିଲା; ପୁଅ । ମୁଣ୍ଡ ବିନ୍ଧୁଚି କି ? ଝିଅ । ପୁଅର ମୁଣ୍ଡଟା ଟିକେ ଚିପି ଦେ । ବସିଚୁ ଯେ; ଦେ କହିଲି ପରା । ମୁଁ ମନା କରିବା ଆଗରୁ ଝିଅଟି ଛିଣ୍ଡା ମସିଣାଟେ ପକାଇଦେଲା । ମୁଣ୍ଡ ରଖିବା ପାଇଁ ତେଲ ଚିକିଟା କନା ଭର୍ତ୍ତି କାଠ ପରି ଟାଣ ତକିଆଟେ ପକେଇ ବାପ-ଝିଅ ଗଡେଇ ପକଇଲେ । ଝିଅଟି ହାତ ବୁଲେଇ ଦେବା ବେଳକୁ ଆଃ; କି ଶାନ୍ତି । କି ସୁଖ ସେ ହାତ ଯୋଡିକରେ । ସେ ସୁଖକୁ ଆଉ କୋଉ ସୁଖ ସହିତ ତୁଳନା କରାଯାଇପାରେ ।

-ହଁ; ଝିଅ କଥା କହୁଥିଲି । ଥରେ ମୁଂଡ ଚିପା ଅଭ୍ୟାସ ହେଇଗଲା ପରେ ଆହୁରି ଆଗ୍ରହ ହେଲା । ସପ୍ତାହକୁ ତିନିଚାରି ଥର ଗଲି । ବୁଢା ମୋତେ ଅଧିକରୁ ଅଧିକ ଆଦର କଲା । ଏମିତି ଆଦର ଯତ୍ନ ପାଉ ପାଉ କି କିମିଆରେ ପଡିଗଲା କେଜାଣି; ଯିବା ପାଇଁ ଡେରି ହେଇଗଲେ କି କଷ୍ଟ ଲାଗିଲା । ଗଲି । ମୁଁ ଯାଇ ପହଞ୍ଚିବା ମାତ୍ରେ ବୁଢା ଆଉ ଘରେ ରହିଲାନି । ଏଇଠୁ ଆସୁଚି କହି ବୁଢା ବାହାରି ଗଲା ଯେ; ଘଣ୍ଟାଏ ଦେଢ ଘଣ୍ଟା ପରେ ଆସିଲା ।

ଏଇ ଘଣ୍ଟାଏ ଦେଢଘଣ୍ଟା ଭିତରେ ଆମେ ଦୁହେଁ କଥା କୁହାକୁହି ହେଲୁ; ଶୁଣାଶୁଣି ବି ହେଲୁ । ଝିଅ ତା' ମନ କଥା କହିଲା; ମୁଁ ମୋ ମନ କଥା କହିଲି । କେତେ ଥର କିଛି କଥା ନକହି ନିରୋଳାରେ ଦୁହେଁ ଦୁହିଁଙ୍କୁ ବୁଝିଲୁ । ବୁଝି ବୁଝୁ ଆଗେଇଲୁ । ଏମିତି ଆଗଉ ଆଗଉ ମୁଁ ଯେଉଁଠି ଅଟକି ଗଲି ସେଇଟା ମୋ ଦେହ । ପ୍ରଥମ ଥର ପାଇଁ ଦୁଇଟି ଦେହ ଗୋଟିଏ ଦେହ ହେଲାବେଳେ ଅବଶ୍ୟ ମନରେ ଡର ଥିଲା; ପରେ ସେ ଡର ରହିଲାନି । ଆସ୍ତେ ଆସ୍ତେ କମିଲା । ଡର କମିଲା ସିନା; ଯେଉଁଦିନ ଝିଅଟି ଗର୍ଭବତୀ ହେଇଥିବାର ଶୁଣିଲି, ସେଦିନ କେତେ ଓଜନର ଡର ଯେ ମୋତେ କାବୁ କରିନେଲା । ମୁଁ ଅନୁମାନ କରିପାରିଲିନି । କ'ଣ କରାଯାଇପାରେ, ନିଜେ କିଛି ଚିନ୍ତା କରିପାରିଲିନି । ମୋର ମନେ ପଡିଲା ମୋ ଭଉଣୀର ପାପଗର୍ଭ କଥା । ମନେ ପକାଇଲି ଭଉଣୀଟି ପାପ ଗର୍ଭଟିକୁ ନଷ୍ଟ କରିବା ପାଇଁ ଲୁଚି ଲୁଚି ସହରକୁ ଯିବା କଥା ଓ ମରିବା କଥା । ନା; ଆଉ ଭାବି ପାରିଲିନି । କିଛି ଉପାୟ ପାଇବା ଯୋଗୁଁ କିଛି ଦିନ ପାଇଁ ବୁଢା ଘରକୁ ଗଲି ନାହିଁ କି ଝିଅଟିକୁ ଦେଖା କଲି ନାହିଁ ।

-ଆରେ; ଦେଖ ଦେଖ । କୁଆଟା ପ୍ଲାଷ୍ଟିକ୍ ମୂଷା କଣ୍ଢେଇଟିକୁ ଥଂଟରେ ଧରି ଉଡିଗଲା । ସତ ସତିକା ମୂଷା ଜାଣିବା ପରେ ଯାଇ ତଳକୁ ଛାଡିବ ସିନା । କଣ୍ଢେଇଟିକୁ ଯେଉଁଠୁ ଉଠେଇ ନେଲା ସେଇଠି ଆଣି ପକେଇଲେ ତ । ପିଲାଟା ବିଚରା କାନ୍ଦୁଚି । ହଁ, କ'ଣ କହୁଥିଲି; ପାପ ଗର୍ଭ କଥା । ମୋ ନଯିବା ଦେଖି ଦିନେ ଝିଅଟା କାନ୍ଦି କାନ୍ଦି ବେହୋସ ହେଲା । ବୁଢା ଆସି ମୋତେ ଡାକି ନେଇଗଲା । ମୁଁ ଯାଇ ପାଣି ସିଂଚି ଚେତା ଫେରାଇଲି । ମୋତେ ଦେଖି ଝିଅ

ଜୋରରେ କାନ୍ଦିଲା । ମୋ ଗୋଡ ଧରି ପଡି ରହିଲା । ବୁଢ଼ା କହିଲା : ପୁଅ । ଏଣିକି ତୁ ଯାହା କରିବୁ କର । ଆମେ ବାପ ଝିଅ ଦି'ଜଣ ତୋ' ମୁହଁକୁ ଚାହିଁ ପଡି ରହିଚୁ । ଯାହା କରିବାକୁ କହିବୁ ସେଇଆ କରିବା । ବୁଢ଼ା କଥା ଶୁଣି ମୁଁ ଭାବି ପାରିଲିନି: ବୁଢ଼ାଟା କ'ଣ ଜାଣି ଜାଣି ତା' ଝିଅକୁ ମୋ ବେକରେ ଝୁଲାଇ ଦେବା ପାଇଁ ଏମିତି ଫାଶଟେ ବସେଇ ଥିଲା । କିନ୍ତୁ ଏତିକି ଭାବିଲି : ବାପଝିଅ ବଂଚିବେ କେମିତି ? ତା'ପରେ କେବଳ ଗୋଟିଏ ଉପାୟ ଦିଶିଲା ଓ ତାହା ହେଲା : ବୁଢ଼ା, ଝିଅ ଓ ମୁଁ ଗୋଟିଏ ଘରର ଛାତ ତଳେ ରହି ଅଲଗା ଅଲଗା ଭାଗ୍ୟକୁ ଗୋଟେ ଭାଗ୍ୟ ବୋଲି ଦେଖାଇଦେବା । ଆଉ ତାହା ହିଁ ହେଲା । କାହାକୁ କିଛି ନକହି; କାହାରି ପରାମର୍ଶ ନନେଇ ସେଇ ଝିଅକୁ ବାହା ହେଇଗଲି । ସେଇ ଝିଅ ଆଜି ମୋ ସ୍ତ୍ରୀ । ଆମର ଦୁଇଟା ପିଲା । ଦୁଇଜଣ ଯାକ ପୁଅ । ବଡକୁ ଆଠ ବର୍ଷ ଓ ସାନକୁ ତିନି ବର୍ଷ । ଝିଅଟେ ଦରକାର ଅଛି । ହବନି କେମିତି, ଚାହିଁଲେ ହବ । ଭାବୁଚି ଆର ବର୍ଷକୁ ଝିଅ ପାଇଁ ଲାଗିବା । ତା'ପରେ ପିଲା ଛୁଆ ବନ୍ଦ । ବୁଢ଼ା ଆମରି ପାଖରେ ଥିଲା । ଦି'ବର୍ଷ ତଳେ ମଲା । ଶୁଦ୍ଧି କାମରେ ଗୁଡାଏ ଖର୍ଚ୍ଚ ହେଲା । କେତେ ଲୋକ ଆସିଥିଲେ । ନ କରନ୍ତି କେମିତି । ଶ୍ୱଶୁର ପରା । ମୋତେ ଜନ୍ମ ନକଲେ କ'ଣ ହେଲା; ମୋ ସ୍ତ୍ରୀକୁ ଜନ୍ମ କରିଛନ୍ତି ତ ।

-ତମ କଥା ଭାବୁଚ କି ? ସେମିତି ଭାବନି । କାହାକୁ କାହା ସହିତ ତୁଳନା କଲେ ଠିକ୍ ହେବନି । ମୋ ଭାଗ୍ୟକୁ ମୁଁ ନିଜେ ଏଇ ହାତରେ ନଚେଇ ପାରିଲି ବୋଲି ସିନା । ଯିଏ ଭାଗ୍ୟର ଆଙ୍ଗୁଳିରେ ନାଚୁଚି ସିଏ ନାଚାର । ସ୍ତ୍ରୀ ମୋର ସାକ୍ଷାତ ଦେବୀ । ସେତେବେଳେ ଯଦି ତାକୁ ବାହା ହେଇନଥାନ୍ତି, ଆଜି ସିଏ କ'ଣ କରୁଥାନ୍ତା କିଏ ଜାଣେ ? ଯାହା ହବାର ଥାଏ ହୁଏ । ସେମିତି ହେବାର ଥାଏ କି ନଥାଏ ସେଇଟା ଭାଗ୍ୟର ନୁହେଁ, ମଣିଷର । ସ୍ତ୍ରୀ ମୋର ମୋତେ କେତେ ଭଲ ପାଏ କଥାରେ କହିହେବନି । ଆଖିରେ ଦେଖିବା କାମଟି ତମର । କିନ୍ତୁ ଦେଖାଇବା କାମଟି ମୋର ନୁହେଁ । ସ୍ତ୍ରୀ ଯେ । ଆମର ଝଗଡା ହୁଏନା । ହସଖୁସିରେ ବିତିଯାଏ ଦିନ ରାତି । ଆଉ କି ସୁଖ ରହିଲା ଜାଣିଚ ଯଦି କୁହ ?

-ତମେ ତ ଦେଖିଥିବ : ଛାଲ ଉତାରି ଦେବା ପରେ ଛେଳିର ରଙ୍ଗ ନାଲି କି କଳା କିଛି ଜାଣି ହୁଏନା ! ମଣିଷର ଭାଗ୍ୟ ସେମିତି । କୁହନ୍ତିନି : କପାଳରେ ଗାର ପଡିଚି; ହାତରେ ଅଛି; ଜାତକରେ ଲେଖାଅଛି, ସବୁ ମନକୁ ବୁଝେଇବା କଥା । ମୋ ହାତକୁ ଦେଖ । ପାପୁଲି ଉପରେ ନଜର ବୁଲାଅ । କିଛି ଜାଣି ପାରୁନଥିବ । ପାଠ, ଆୟୁଷ, ରୋଗ, ପିଲାଛୁଆ, ଜୀବନ ଓ ମୃତ୍ୟୁ କଥା କହୁଚ ଯେ । ହାତ ପାପୁଲି ନଥିବା ଲୋକର କ'ଣ ଏସବୁ ନାହିଁ ? ଭିକାରୀକୁ ଦେଖ । ସେମାନଙ୍କ ଜାତକରେ ଲେଖା ଅଛି କି : ସେମାନେ ଭିକାରୀ ହେବାର ଥିଲା; ଏବେ ହେଇଚନ୍ତି ? କହିପାର : ଭାଗ୍ୟ । ହାତ କି ଗୋଡ ନଥିବା ଲୋକକୁ ଦେଖ । କି ଦୁଃଖ ? ସାହାଯ୍ୟ କରିବ ଯଦି କେତେ ଦବ ? ଦଶ ପଇସିଟେ କି ଟଙ୍କାଟେ । ଦଶ ଟଙ୍କା କି ଶହେ ଟଙ୍କା । କିଏ ଦେଇପାରିବକି ହାତ ନଥିଲେ ହାତଟେ ଓ ଗୋଡ ନଥିଲେ ଗୋଡଟେ । କେହି ବୁଝିବାକୁ ନାରାଜ । ଖାଲି ଗୋଟେ ଚଳିଯାଉଥିବା ଜୀବନକୁ ନେଇ ବଂଚିଯିବା କଥା । ଜୀବନ ଗୋଟେ ସୁଅ । ସେ ସୁଅ ପାଣିର ସୁଅ ନୁହେଁ କି ପବନର ନୁହେଁ, ସେ ସୁଅ ଜୀବନର । ଆମେ ସମସ୍ତେ ସେଇ ସୁଅରେ ଭାସୁଚେ । ତମେ ବି; ମୁଁ ବି । କିଏ ଆଗରେ ତ କିଏ ପଛରେ । କିଏ ପାଖରେ ତ କିଏ ଦୂରରେ । ଆଚ୍ଛା; ଦେଖି ଦେଖି । ତମ ହାତ ଦେଖି । ତମ ଭାଗ୍ୟଟି ତମ ଜାତକରେ ନା ତମ ହାତ ପାପୁଲିରେ । ଦେଖି; ଦେଖି ।



# ଦୃଷ୍ଟି

## ମାୟାଧର ସାହୁ

ସରକାରୀ ଡାକ୍ତରଖାନାର ଝରକା ଖୋଲି ଦେଲେ ପଛକଡ଼ର ବିକଳାଙ୍ଗ ଘାସ ପଡ଼ିଆଟା ଦିଶେ, ଯାହାକି ଏ ସହରତଳି ଲୋକଙ୍କର ମୁକ୍ତାକାଶ ପାଇଖାନା ହିସାବରେ ବ୍ୟବହୃତ ହୋଇଆସୁଛି । ଗୋଟାଏ ପାଖରେ ପୋଷ୍ଟମର୍ଟମ୍ ଘର । ଏଇଠୁ ସେଇ ଘର ଭୂତକୋଠି ପରି ଦିଶେ । ପଡ଼ିଆ ସେ ପାଖରୁ ଝରକା ଆଡ଼କୁ ଲସର ପସର ହୋଇ ଧାଇଁଥିବା ଘୁଷୁରିପଲକୁ ଦେଖି ହରି ବିଛଣାରୁ ଉଠିପଡ଼ି ବନ୍ଦ କରିଦେଲା । ବର୍ତ୍ତମାନ ସୁଦ୍ଧା ସେପାଖର ଏକାନ୍ତ ପୋଷ୍ଟମର୍ଟମ୍ ଘରଟିରେ ତା' ନିଜ ଶବର ସନାକ୍ତ ସରନ୍ତାଣି । କିନ୍ତୁ ସେତିକି ବି ହୋଇପାରିଲା ନାହିଁ । ମରିଯିବା ଭଳି ହେୟ ଇଚ୍ଛାଟିର ଏ ପୂର୍ତ୍ତି କପାଳରେ ଜୁଟିଲା ନାହିଁ ।

ଜୀବନସାରା ହିଁ ତ ଇଚ୍ଛା ବିରୋଧରେ ଘଟଣାମାନ ଘଟିଚାଲିଛି । ଭଲ ଚାହିଁଲେ ହେଉ ନାହିଁ, ଖରାପ ଚାହିଁଲେ ବି ହେଉନାହିଁ । ତେବେ ମନ ଭିତରେ 'ଏଇ ଚାହିଁବା' ଜିନିଷଟାକୁ ଭଗବାନ୍ ଦେଇଛନ୍ତି କାହିଁକି ? ଆତ୍ମହତ୍ୟା ପାଇଁ ଏଇଟା ଥିଲା ହରିର ଦ୍ୱିତୀୟ ଅସଫଳ ଚେଷ୍ଟା । ସେ ନିଜର ପତଳା ରୋଗଣା ଦେହ ଉପରେ ନଜର ବୁଲେଇ ଆଣି କ୍ଲାନ୍ତ କଣ୍ଠରେ ଥରେ ଚିତ୍କାର କଲାପରି କହିଉଠିଲା– ହେ ଭଗବାନ୍, ମୁଁ ଏବେ କରିବି କ'ଣ ?

ପାଟି ଶୁଣି ସୁଏଟର ବୁଣୁବୁଣୁ ନର୍ସ ୱାର୍ଡ ଭିତରକୁ ପଶିଆସି ପଚାରିଲେ– 'କ'ଣ ହେଇଚି ? ତମେ ଏମିତି ଚିଲୋଉଛ କାହିଁକି ?'

ହରି ନିଜର ଭୁଲ୍ ବୁଝିପାରି ପ୍ରକୃତିସ୍ଥ ହେଲା ପରି ଚୁପ୍‌ଚାପ୍ ପଡ଼ିରହିଲା । ଟୁଲ୍‌ଟା ଟାଣି ଆଣି ପାଖରେ ବସିପଡ଼ିଲା ନର୍ସ । ସୁଏଟର ବୁଣା ଅବ୍ୟାହତ ଥାଏ । କିଛିକ୍ଷଣ ପରେ ନର୍ସ କହିଲେ– 'ତମେ ବଂଚିବ । ସାତ ପୁଅ ଆଉ ସୁନାନାକି ଝିଅଟିଏ ହେବ ତମର । ତମ ଦେହରେ ଆଉ ବିଷ ନାହିଁ । ଡାକ୍ତରବାବୁ ଔଷଧ ଦେଇ ସବୁ ଉଗାଳି ସାରିଲେଣି । ପୁରା ସାଷ୍ଟାମ ହୋଇଗଲେ ଘରକୁ ଯିବ, ଟିକିଏ ସବୁର୍ କର ।'

ଖଟର ମଶାରି ବାଡ଼ରୁ ବିପର୍ଯ୍ୟସ୍ତ ଭାବେ ଓହଳିଥିବା ନିଜର ଝୁଲାବ୍ୟାଗ୍ ଖଣ୍ଡକୁ ନିସ୍ତେଜ ହାତରେ ହଲେଇ ଦେଇ ହରି ପଚାରିଲା– 'ଆଉ କେତେଦିନ ଏଠି ରହିବାକୁ ପଡ଼ିବ, ସିଷ୍ଟର ?'

ମାତ୍ର ନର୍ସ ତାକୁ ପୁଣି ପଚାରି ବସିଲେ– 'ତମେ ଏମିତି ବାରମ୍ବାର ଜୀବନ ହାରିବାକୁ ବସିଚ କାହିଁକି ? ଭଗବାନ୍‌ଙ୍କ ଇଚ୍ଛା ବୋଧେ ଅନ୍ୟ ପ୍ରକାର, ସିଏ ଚାହାନ୍ତି ତମେ ବଂଚି ରୁହ ବୋଲି । ସେଇଥିପାଇଁ ତ ଦିଥର ଯାକ ତମ ଚେଷ୍ଟା ଫଳ ଦେଲାନି । ତମ ଦ୍ୱାରା ବହୁତ ବଡ଼ କାମ ହେବ ।' ହାଇସ୍କୁଲ ଇତିହାସ ବହିରେ ପଢ଼ିଥିବା ରବର୍ଟ କ୍ଲାଇବ୍‌ଙ୍କ କଥା ମନେ ପକାଇଦେଲେ ନର୍ସ । ପୁଣି କହିଲେ– 'ଆଚ୍ଛା ! ତୁମର ଦୁଃଖ କ'ଣ କହିଲ, କ'ଣ ହୃଦୟ ଭିତରେ କିଛି ଲୁଚାଚୋରା କଥା କି ? କୋଉ ଝିଅ ତୁମକୁ ଦଗା ଦେଇଚି ନା କ'ଣ ?'

ହରି କିଛି ନ କହି ଜବାବରେ ଖାଲି ଶୁଖିଲା ହସଟିଏ ହସିବାକୁ ଚେଷ୍ଟା କଲା । ଡିମୋକ୍ଲିସ୍‌ଙ୍କ ଖଣ୍ଡା ପରି ମଥା ଉପରେ ଝୁଲୁଥିବା ହସ୍‌ପିଟାଲ୍‌ର ଅକାମୀ ପଙ୍ଖାଟାକୁ ଚାହିଁ ରହି ଧୀରେ ଧୀରେ ଗୁଣୁଗୁଣୁ ହେବାକୁ ଲାଗିଲା– 'ଆଜୀବନ ତ ଏଇମିତି, ଅକାମୀ, ଅସହାୟ, ଅଲୋଡ଼ା ।'

ନର୍ସ ଆହୁରି ଟିକିଏ ପାଖକୁ ଘୁଞ୍ଚି ଆସି କଅଁଳ କଣ୍ଠରେ ପଚାରିଲେ– 'ତମେ କୋଉ ଝିଅକୁ ଭଲପାଇଥିଲ କି ? ସତ କହୁନ ।'

ହରି- ହଁ ।

ନର୍ସ– ସେ ଆନମନା ଧରି ତୁମକୁ ଛାଡ଼ିଦେଲା କି ?

ହରି- ହଁ ।

ନର୍ସ– ଦେଖ, ଏଇଥିରେ ତମେ ବିଷ ଖାଇଦେଲ ! କି ମରଦ ମ ତମେ ! ଏମିତି ତ ସଚରାଚର ଘଟୁଚି । ତାଙ୍କର ଦଶା ବି ଏରକମ୍ ହୋଇଥିଲା । ଛୁଆପିଲାଙ୍କ ପରି କାନ୍ଦୁଥିଲେ । ଶେଷରେ ମୋ ସହିତ ହାତଗଣ୍ଠି ପଡ଼ିଲା । ଏବେ ସେ ପୂରା ମୋ କାନିରେ ବନ୍ଧା । ଉଠ୍ କହିଲେ ଉଠୁଛନ୍ତି, ବସ୍ କହିଲେ ବସୁଛନ୍ତି । ଦି'ଟା ପିଲା ହେଲେଣି, ଆଉ ସେ ପାଗଳାମି ନାହିଁ । ଏଠୁ ଗଲେ ତମେ ଶୀଘ୍ର ବାହା ହୋଇପଡ଼ । ସବୁ ଠିକ୍ ହୋଇଯିବ ।'

ଚଗଲିଆ ହସଟିଏ ହସିଦେଇ ନର୍ସ ସେଠୁ ଅପସରି ଗଲେ । ଜୀବନର ସମସ୍ତ ଦୁଃଖସୁଖ ଆଶା ହତାଶାକୁ ଖାଲି ପ୍ରେମ ଓ ବିରହ ଭିତରେ ଦେଖୁଥିବା ସେଇ ମହିଳା ଜଣକୁ ବିକଳ ଦୃଷ୍ଟିରେ ହରି ଅନେଇ ରହିଲା ।

ଦେହ ହାତ ଝିମ୍ ଝିମ୍ କରୁଛି । ଗୋଟାଏ ତୀବ୍ର ବେଦନା ସଞ୍ଚରି ଯାଉଛି ସାରା ଦେହରେ । ଏତିକି ବୟସରୁ ଏତେ ଯନ୍ତ୍ରଣା ଭୋଗିବାର ଥିଲା, ହେ ଭଗବାନ୍ ! ହରିର କ'ଣ ଦୁଃଖ କେବଳ ସେ ନିଜେ ହିଁ ଜାଣେ । କାହା ସହିତ ମନର ଗ୍ଲାନି, ଅଭିଯୋଗ ବା ଦୁଃଖ କିଛି ହେଲେ ଆଲୋଚନା କରିବାର ଦୃଷ୍ଟାନ୍ତ ନାହିଁ । ସେ ଆଲୋଚନା କରିବାକୁ ଚେଷ୍ଟା କରିଥିଲେ କ'ଣ ଯେ ହୁଅନ୍ତା ସେଇଟା ଅବଶ୍ୟ ଅନ୍ୟ କଥା । ଖାଲି ଗୋଟାଏ ଦୁଃଖ, ନିଃସ୍ୱ, ନିଶ୍ଚେଷ୍ଟ ପରାଜିତ ମଣିଷର ଅବ୍ୟକ୍ତ ବେଦନା ଦଗ୍ଧ ଛାପ ଚେହେରାଟାରେ ଦିଶୁଥାଏ । ଦ୍ୱିତୀୟ ଥର ଆତ୍ମହତ୍ୟାର ଚେଷ୍ଟା ବିଫଳ ହେବା ପରେ ସେ ଲାଗୁଥାଏ ଆହୁରି ଭଙ୍ଗା ଭଙ୍ଗା, ଖାପଛଡ଼ା, ଆହୁରି ଆତ୍ମପ୍ରତ୍ୟୟହୀନ ।

ସାମ୍ନା ବେଡ୍‌ରେ ଆଉଜି ବସି ରୋଗୀ ଜଣକ ବିଡ଼ି ଟାଣୁଥିଲା । କସ୍ ନେଲା ବେଳେ ବିଡ଼ିର ଅଗଟା ଜଳିଉଠୁଥିଲା ଦାଉଦାଉ ହୋଇ । ସେଇ ଆଡ଼କୁ ଅନେଇ ହରି ଗୁଣଗୁଣୁ ହେଲା– ଠିକ୍ ଏଇଭଳି ପ୍ରତିକ୍ଷଣ, ପ୍ରତି ମୁହୂର୍ତ୍ତରେ ଜଳୁଚି ମୁଁ, ପ୍ରତି ମୁହୂର୍ତ୍ତରେ ମରୁଚି । ଥରୁଟିଏ ମରିବି ସଚ୍ଚା ମରଣ, ତା'ପରେ ଆଉ ମରିବାକୁ ନଥିବ । ଜୀବନକୁ ବୋହି ବୁଲିବାର କଷ୍ଟ କେତେ ! କ୍ଲାନ୍ତି କେତେ !

ସନ୍ଧ୍ୟା ଜମି ଆସିଲା । ପଛକଡ଼ ପଡ଼ିଆ ପାଖର ପୋଷ୍ଟମର୍ଟମ୍ ଘରଆଡୁ ଭାସି ଆସିଲା ବୁଲାକୁକୁର ଦଳଙ୍କ କାନ୍ଦଣା । ସେଇ ଲହର ଆଗରେ ମଶାମାନଙ୍କ ଅନବରତ ଗୁଞ୍ଜନ ଲାଗୁଥିଲା ତାନପୁରା ଭଳି । ଗୋଟାଏ ଦୁଃସହ ଯନ୍ତ୍ରଣା ସଂଚରି ଯାଉଛି ଦେହସାରା, ଲହଡ଼ି ଭଳି ପିଟି ହୋଇ ପଡୁଛି ଦେହ ଭିତରେ ଭିତରେ । ୱାର୍ଡ ଭିତର ବଲ୍‌ବ୍‌ର ଆଲୁଅ ଲୋ ଭୋଲ୍‌ଟେଜ୍‌ରେ ଦିଶୁଥାଏ କ୍ଷୀଣ । ସେଥିରେ ଦୂରରୁ ଆସୁଥିବା ଜେନାବାବୁଙ୍କୁ ସେ ହଠାତ୍ ଚିହ୍ନି ପାରିଲା ନାହିଁ । ସାଇକେଲ୍ ଚାବିଟାକୁ ହାତରେ ଘୁରାଇ ଘୁରାଇ ଜେନାବାବୁ ଟୁଲ୍ ଉପରେ ବସି ପଡ଼ିଲେ ।

ପଚାରିଲେ– କ'ଣ ହରିବାବୁ, ଏବେ ଭଲ ଅଛନ୍ତି ତ ? କେବେ ଡିସ୍‌ଚାର୍ଜ କରିବାକୁ ଡାକ୍ତର କହୁଛନ୍ତି ।

ହରି କହିଲା– ବ୍ୟସ୍ତ ହେବନି ଭାଇ । ତମ ଘରଭଡ଼ା ଟଙ୍କା ଚୁକ୍ତି ନ କରି ମରିଯିବା ବୋଧହୁଏ ମୋ କପାଳରେ ନାହିଁ । ଡାକ୍ତର ଆସିଲେ ମୁଁ ଚାଲିଯିବି ।

ଆଠଫୁଟ୍‌ରେ ଆଠଫୁଟ ଛେଳି ଗୁହାଳ ପରି ଖଣ୍ଡେ ଘର, ଯାହାର ଭଡ଼ା ବାକି ପଡ଼ିଛି । ଜେନାବାବୁଙ୍କୁ ଅନେଇ ହରି ହସିବାକୁ ଚେଷ୍ଟା କଲା । ଭାବିଲା କରଜଗ୍ରସ୍ତ ହୋଇ ମରିବାରେ ବି ଗୋଟାଏ ଆନନ୍ଦ ଅଛି । ମରିଗଲା ପରେ ବାଧ ହୋଇ ଅନ୍ତତଃ ଏଇମାନେ କାନ୍ଦିଲେ ବୋଲି ଆଶ୍ୱାସନା ମିଳିବ ତ । ଏଇ ଯେମିତି ଜେନାବାବୁ ଖବର ନେବାକୁ ଡାକ୍ତରଖାନା ଯାଏଁ ଚାଲି ଆସିଲେ ।

ମନୋବଳ ଏବଂ ସ୍ୱାସ୍ଥ୍ୟରକ୍ଷାର ସାଧାରଣ ଉପଦେଶ କେତେଟା ଦେବା ଉତ୍ତାରେ ଜେନାବାବୁ ଚାଲିଗଲେ ।

ହରି ପୋକମରା ବିଷ ଔଷଧ ଖାଇଦେବାର ପରେ ପରେ ମେଲେରିଆ ବିଭାଗର ଜଣେ କର୍ମଚାରୀ ଘରର କାନ୍ଥ ଉପରେ ଗାରେଇବାକୁ ଆସିଥିଲା । ତତ୍‌କ୍ଷଣାତ୍ ହରିକୁ ଉଠେଇ ମେଡ଼ିକାଲ୍‌କୁ ନେଇଆସିଲା । ବଂଚିଗଲା ହରି ଏବଂ ଅନ୍ତତଃ ଗୋଟାଏ ଜୀବନ ବଂଚେଇବାର କୃତିତ୍ୱ ଲାଭ କଲା ଲୋକଟି (ମେଲେରିଆରୁ ନହେଉ ପଛେ) ।

ହରି ଭାବୁଥିଲା ଜୀବନ ଯେଉଁମାନଙ୍କ ପାଇଁ ଗୋଟାଏ କ୍ଲିଷ୍ଟ ଅବସ୍ଥାର ନାମାନ୍ତର, ଅନ୍ତତଃ ସେମାନଙ୍କ ପାଇଁ ଜୀବନର ଦୈର୍ଘ୍ୟ ଖାଲି ମୃତ୍ୟୁ ପାଇଁ ଏକ ପ୍ରକାର ବିରକ୍ତିକର ପ୍ରତୀକ୍ଷା ବ୍ୟତୀତ ଆଉ କିଛି ନୁହେଁ । ଏ ନିରର୍ଥକ ପ୍ରାଣକୁ ସାଇତି ରଖି ଲାଭ କ'ଣ ? ଏଣୁ ସେ ମରିବ । ନିଶ୍ଚିତ ଭାବେ ଆଉ ଥରେ ଚେଷ୍ଟା କରିବ । କିଏ ଜାଣେ ଏଥରକ ସେ ସଫଳ ହୋଇପାରେ ! କଷ୍ଟ ସହିବାର ତ ପୁଣି ଗୋଟାଏ ସୀମା ଅଛି !

ବଟିକାଟିଏ ଧରି ପଶିଆସିଲେ ସେଇ ନର୍ସ । କହିଲେ– 'ନିଅ ଏଇଟା ଖାଇଦିଅ । ସନ୍ଧ୍ୟା ହେଲାଣି । ଡାକ୍ତରବାବୁ ଆସିଲେଣି । ଏବେ ଏଠିକି ଆସିବେ । ତମ ରକ୍ତ ପରୀକ୍ଷା କରିବାକୁ ନେଇଥିଲେ, ଯାଞ୍ଚ୍ କରିସାରିଥିବେ ।'

ହରି– ମୁଁ ଏଠୁ କେବେ ଯିବି ?

ନର୍ସ– ସାଷ୍ଟାମ ହେଲେ ଯିବ କାଲି କି ପଅରଦିନ, ଏତେ ତରତର କାହିଁକି ? ଦେଖ, ଡାକ୍ତରଙ୍କ ଆଗରେ ଯାଡୁସ୍ୟାଡୁ ଚଳିବ ନାହିଁ । ସେ ବଡ଼ ଟିଙ୍ଗା ଲୋକ । ଆଛା, ତୁମ ମୁହଁଟା ସବୁବେଳେ ଏମିତି କାନ୍ଦିଲା ଭଳି କରି ରଖିଚ କାହିଁକି ?

ହରି– ମୋର ତ ବାସ୍ତବ ଅବସ୍ଥା ସେଇ, କାନ୍ଦିଲା ଭଳି । ଅନ୍ୟ ପ୍ରକାର ବା ଦିଶନ୍ତି କେମିତି ?

ନର୍ସ– କାହିଁକି ବା ? ତମେ ଟିକିଏ ମଉଜିଆ ହଉନ, ହବାକୁ ଚେଷ୍ଟା କର । ଖୁସି ମଉଜ ଏମିତି କ'ଣ ? ଚେଷ୍ଟା କର ।

ହରି କହିଲା– ମୁଁ ମରିଯିବି ସିଷ୍ଟର । ମତେ କେହି ବଂଚେଇ-ପାରିବେ ନାହିଁ । ଜୀଇଁବାରେ ହିଁ ମୋର ଦୁଃଖ । ହଠାତ୍ ଏକ ଆବେଗରେ ହରିର ଦେହ ହାତ କମ୍ପି ଉଠିଲା, ଔଷଧ ନ ଖାଇ ସେ ଝରକା ବାଟେ ଫିଙ୍ଗି ଦେଲା ।

ହରିକୁ ପାଗଳ ପରି କାନ୍ଦି ଉଠିବାର ଦେଖି ନର୍ସ ସେଠୁ ଦୌଡ଼ିବା ଭଳି ଚାଲିଗଲେ । କିଛି ସମୟ ପରେ ୱାର୍ଡ ଭିତରକୁ ପଶିଆସିଲେ ଉଭୟେ ନର୍ସ ଓ ଡାକ୍ତର ।

ଡାକ୍ତର ପଚାରିଲେ– ଏବେ କେମିତି ଲାଗୁଛି ?

ହରି ନମସ୍କାର କଲା, ଧକେଇ ଧକେଇ କାନ୍ଦିବାକୁ ଲାଗିଲା ।

ଡାକ୍ତର କହିଲେ– ତମେ ବଡ଼ ସେଣ୍ଟିମେଣ୍ଟାଲ୍ ହୋଇପଡୁଚ । ଦେଖ, ଆତ୍ମହତ୍ୟା କରିବାର କିଛି ମାନେ ଅଛି ? ଜୀବନ ବଂଚେଇ ରଖିବା ପାଇଁ ସାରା ଦୁନିଆର ନାଟ । ଏମିତି ଭାଂଗିପଡୁଛ କାହିଁକି ? ତୁମେ ପୂରା ସୁସ୍ଥ ହେଇନ, ଆରାମ୍ କର । ଯାତୁସ୍ୟାତୁ କିଛି ଭାବ ନାହିଁ ।

ହରି– ସାର୍ ମୁଁ ବଂଚି ରହି କରିବି କ'ଣ ?

ଡାକ୍ତର– ତମର ଅଭିଭାବକ କିଏ ? ବାପା ମାଆ ?

ହରି– କେହି ନାହାନ୍ତି ମୋର । ବଡ଼ ଅଭାଗା ମୁଁ, ବଡ଼ ଅସହାୟ, ଗରିବ, ବଡ଼ ଦୁଃଖୀ ମୁଁ ସାର୍ ।

ଡାକ୍ତର– ଆତ୍ମହତ୍ୟା କେତେ ଖରାପ, ଏକଥା ଜାଣିଚ ?

ହରି– ସବୁ ହରେଇଚି ମୁଁ । ନିଃଶ୍ୱାସ ଟିକକ ବ୍ୟତୀତ ଆଉ କିଛି ନାହିଁ ମୋର । ସେତିକି ବି ହରେଇ ଦେବି । ତା'ପରେ ହରେଇବାକୁ ଆଉ କିଛି ନଥିବ । ମୁଁ ନିରାକାର ହୋଇଯିବି, ମୁକ୍ତ ହୋଇଯିବି ।

ନିଜ ଉପରୁ ନିୟନ୍ତ୍ରଣ ହରେଇଥିବା ହିଷ୍ଟେରିଆ ରୋଗୀ ଭଳି ହରି ବକ୍‌ବକ୍ ହେବାକୁ ଲାଗିଲା । ଡାକ୍ତର ଚିଡ଼ି ଉଠି କହିଲେ, "ଠିକ୍ ଅଛି, ତମର ଯାହା ଇଚ୍ଛା କର । ଔଷଧ ନ ଖାଇ ବାହାରକୁ ଫିଙ୍ଗି ଦେଲନା ?"

ହରି କହିଲା– ମରିବାର ଇଚ୍ଛା ମୋର । ସାର୍, ଏମିତି କ'ଣ ହୋଇପାରନ୍ତା ନାହିଁ ଯେ ମତେ ହାର୍ଟ ଆଟାକ୍, କ୍ୟାନ୍‌ସର୍ କିମ୍ୱା ଏଡ଼୍‌ସ୍ ଭଳି କିଛି ରୋଗ ହୋଇଯାଆନ୍ତା । ଯା' ଫଳରେ ମତେ ଆଉ ନିଜକୁ ମାରି ଦେବାର ଚେଷ୍ଟା କରିବାକୁ ପଡ଼ନ୍ତା ନାହିଁ । ନା, ସେସବୁ କେବଳ ବଡ଼ଲୋକଙ୍କର ରୋଗ । ମୁଁ ସେମାନଙ୍କ ନାପସନ୍ଦ ।

ଚିଡ଼ି ଉଠି ଡାକ୍ତର କହିଲେ– "ନା, ସେସବୁ କେବଳ ବଡ଼ଲୋକଙ୍କ ରୋଗ ନୁହେଁ । ତୁମକୁ ଏବେ କ'ଣ ହୋଇଛି ଜାଣ ? ଲ୍ୟୁକେମିଆ । ମୁଁ ତମ ରକ୍ତ ପରୀକ୍ଷା କରିଛି । ହେଲା ? ସନ୍ତୁଷ୍ଟ ତ ? ଏବେ ଚାହିଁଲେ ବି ତମ ପାଇଁ ବଂଚିବା କଷ୍ଟକର । ସେଭଳି ରୋଗ ପାଇଁ ଏଇ ଛୋଟ ଡାକ୍ତରଖାନା ଅକ୍ଷମ । ତମେ ପୁଣି ଆତ୍ମହତ୍ୟା କରିବାକୁ ବସିଛ । ଦରକାର ନାହିଁ ସେ ପରିଶ୍ରମ କରିବା । ଏତିକି କହିଦେଇ ଡାକ୍ତର ସେଠୁ ଉଠି ଚାଲିଗଲେ ।

ଡାକ୍ତରଙ୍କ କଥାଟା ହରିର କାନ ଉପରେ ଘଡ଼ଘଡ଼ି ପରି ଅଜାଡ଼ି ପଡ଼ିଲା । ଲ୍ୟୁକେମିଆ ! ସତରେ ? ତା' ଦେହରେ ? ମରଣର ଶୀତଳ ସ୍ପର୍ଶ ! ହେ ଶୂନ୍ୟତା ! ତମ ପାଇଁ ଅପେକ୍ଷା କରିଥିଲି ଏତେଦିନ, ଏତେ ଚେଷ୍ଟା କରିଥିଲି । ଏବେ ଶେଷକୁ ତମେ ଆସୁଛ, ଲୁଚି ଛପି ନିଜେ ନିଜେ । ସଚରାଚର ଯେମିତି ଆସ ଆପେ ଆପେ, ସ୍ୱେଚ୍ଛାରେ ।

ମନ ଭିତରେ ଏବେ ଆନ୍ଦୋଳନ ଉଠିଚି । ଏବେ ଚାହିଁଲେ ବି ସେ କ'ଣ ବଂଚିପାରିବ ? ଚାହିଁ ରହିଲା ହରି ତା'ର ସମସ୍ତ ସମ୍ପତ୍ତି ବୋଲାଉଥିବା ଝୁଲା ବ୍ୟାଗ୍‌ଟି ଆଡ଼େ । ମଶାରି ବାଡ଼ରୁ ପେଣ୍ଡୁଲମ୍ ପରି ଧୀରେ ଧୀରେ ହଲୁଚି ବ୍ୟାଗ୍‌ଟା । ବ୍ୟାଗ୍ ଭିତରୁ ବାହାରି ଅସରପାଟାଏ ଧାଇଁ ପଳାଉଚି ଇତସ୍ତତଃ ।

ଖୋଲା ଝରକା ବାଟ ଦେଇ ଆଉ ପୋଷ୍ଟମର୍ଟମ୍ ଘରଟା ଦିଶୁନି ଅନ୍ଧାରରେ । ମନଶ୍ଚକ୍ଷୁରେ ଖାଲି ଅନୁଭବ କରିହେଉଚି ତା'ର ଛାୟା, ଏକାନ୍ତ ଗିରିଶୃଙ୍ଗ ପରି ସଦର୍ପେ ଠିଆ ହୋଇଚି ସେଇଟା ନିକଟରେ, ଅକ୍ଷୟ ସତ୍ୟର ବାର୍ତ୍ତାବହ ହୋଇ ।

ଏଇଆ ତ ସେ ଚାହିଁଥିଲା ବରାବର, ମୃତ୍ୟୁର ସର୍ବଗ୍ରାସୀ ଆଶ୍ଳେଷ । ଏତକ ପାଇଁ ଦୁଇ ଦୁଇଥର ବିଫଳ ପ୍ରୟାସ ଭିତରେ ସେ କେତେ ଲୋକହସା ନ ହେଇଚି ! ମୃତ୍ୟୁର ତର୍ଜମା କ'ଣ ଜାଣିନି ସେ, ସେ ଜାଣିନାହିଁ ମରଣର ସଂଜ୍ଞା କ'ଣ । ଖାଲି ଏତିକି ଅନୁମାନ ଯେ ଏଇଟା ବଂଚି ରହିବାଠୁ ଭିନେ । ଇଏ ଏକପ୍ରକାର ମୁକ୍ତି । ଏବେ ସେଇ ମୁକ୍ତି ଆପେ ଆପେ ଆସୁଚି । ଖୋଦ୍, ତା' ନିଜ ଢଙ୍ଗରେ । ସେ ହରିର ଚାହିଁବା, ନ ଚାହିଁବାକୁ ଅପେକ୍ଷା କରୁ ନାହିଁ ।

ହରି ନିଜର ରୋଗଣା ଦେହ ଉପରେ ଥରେ ନଜର ବୁଲେଇ ଆଣିଲା । ଲମ୍ବା ଲମ୍ବା ଆଙ୍ଗୁଳି, ବାଲୁଆ ଛାତି, ପତଳା ପେଟ, ଅଣ୍ଟା ପାଖରେ ଏନ୍ତୁଡ଼ି ଘରେ ମା' ଦେଇଥିବା ଦାଗ, ଶୁଖିଲା ଶୁଖିଲା ହାଡୁଆ ଦେହ, ଅସଜଡ଼ା ବାଳ, ମୁହଁଭର୍ତ୍ତି ଦାଢ଼ି । ସର୍ବାଙ୍ଗରେ ହାତ ବୁଲେଇ ଆଣିଲା ଥରେ । ଶେଷରେ ନିଜର ଏ ଦେହଟା ବି ତା' ଉପରୁ ଆସ୍ଥା ତୁଟେଇ ଦେଉଛି । ଏ ଅପୋଷା ଅସହାୟ ମଣିଷଟାର କବଚ ହୋଇ ରହିବ ନାହିଁ, ଛାଡ଼ି ଚାଲିଯିବ ତାକୁ । ପଞ୍ଚଭୂତରେ ମିଶିଯିବ । ନଷ୍ଟ ହୋଇଯିବ ଦୀର୍ଘ ସତେଇଶି ବର୍ଷର ସମ୍ପର୍କ ।

ଆଉ ନିଦ ଆସୁନାହିଁ । ସେ ଆଉ ଶୋଇ ପାରିବ ନାହିଁ । ଶୋଇଲେ ଆଉ କିଛି ଭାବି ହେବ ନାହିଁ ଯେ ! ଏବେ ମନ ଭିତରେ କେତେ ଜାତି ଭାବନା ଆସୁଚି । ଆନ୍ଦୋଳନ ଉଠିଚି ମନ ଭିତରେ । ସତେଇଶି ବର୍ଷର ଆଜୀବନ ଘଟଣାମାନ ଉଙ୍କିମାରୁଚି । ମା' କୋଳରେ ଝୁମରୁଥିବାଠାରୁ ବର୍ତ୍ତମାନଯାକର ସାନବଡ଼ ଅଶ୍ରୁସଜଳ ଅନେକ ମୁହୂର୍ତ୍ତରେ, ଅନେକ ଘଟଣାମାନ ନାଚି ଯାଉଚି । ଏବେ ଭାବି ବସିଲେ ତା' ପରାଜିତ ଜୀବନର କରୁଣ ମୁହୂର୍ତ୍ତଗୁଡ଼ିକ ବି କିରକମ ମୁଗ୍ଧ ଅନୁଭୂତି ହୋଇ ଫୁଟି ଉଠୁଚି । କାହିଁକି ?

ସକାଳ ଆସିଲା । ହରି ନିତ୍ୟକର୍ମ ସାରିଲା ବେଳକୁ ଠୋକ୍‌କର ବୁଢ଼ା ଲୋକଟିଏ ଆଡମିଶନ୍ ନେଇଥାଏ ପାଖ ବେଡ୍‌ରେ । ହାତ ନାହିଁ, ଗୋଡ଼ ନାହିଁ, ମାଦଳ ପରି ବିଛଣାରେ ଗଡୁଥାଏ ସେ । ତାକୁ ଜର ହେଇଚି । ସିଏ ଚିଲୋଉଚି, ନିଜ ଲୋକଙ୍କୁ ଡାକୁଚି, ଡାକ୍ତରଙ୍କୁ ହୁରି ପକାଉଚି । ତା'ର ଏବେ ଭଲ ହେବା ଦରକାର, ସିଏ ବ୍ୟଗ୍ର ହେଉଚି ବଂଚିବା ପାଇଁ ।

ହରି ବାହାରକୁ ଆସିଲା । ଆଜି କେମିତି ନଜରଟା ତା'ର ବଦଳି ବଦଳି ଯାଉଛି । ଆଗର ସେଇ ପୁରୁଣା ଜିନିଷମାନ ଅଲଗା ଅଲଗା ଲାଗୁଛନ୍ତି । ସେଇ ଅପରଛନିଆ, ଘୁଷୁରିଚରା ପଡ଼ିଆଟାରେ ଭର୍ତ୍ତି ହେଇଚି ଅଜସ୍ର ଟିକି ଟିକି ଘାସଫୁଲ । ସୂର୍ଯ୍ୟ ଚମକୁଚି ପୂର୍ବ ଆକାଶରେ । ସାରା ପୃଥିବୀର ସୂର୍ଯ୍ୟସ୍ନାନ ହେଇଚି । ଏକ ନୂଆ ଦିନ, ଏକ ନୂଆ ଜୀବନର ପ୍ରସ୍ତୁତି ଚାଲିଚି । ପଡ଼ିଆ ପାଖରେ ଘୋଡ଼ାମୁହାଁ ଧାନ କିଆରୀସବୁ ଅଶିଣ ସକାଳର ପବନରେ ଲହରେଇ ଯାଉଛନ୍ତି । ସଦ୍ୟଜାତ ବାଛୁରୀ ଦେହରୁ ଲାଳ ଚାଟି ଚାଟି ସଫା କରୁଚି ଗାଈ । ଲଙ୍ଗଳା ପିଲାମାନେ ଦୌଡ଼ାଦୌଡ଼ି କରି ଖେଳରେ ମାତିଛନ୍ତି । ହରି ବସିପଡ଼ିଲା ପଡ଼ିଆ ଧାରର ପୋଖରୀ ପାଖରେ । ବାଛି ସାରିଥିବା ମାଛ ଆଣି ଧୋଉ ଧୋଉ ସ୍ତ୍ରୀଲୋକଟି ପାଟି କରୁଛି । କଣ୍ଟା, କାତି, ଗାଲିସି ଛଡ଼େଇ ସାରି ଧୋଉଥିବା ବେଳେ ତା' ହାତରୁ କୋଉମାଛଟିଏ ପାଣି ଭିତରକୁ ଖସି ପଳେଇଲା ବୋଲି । ସେଇ ମାଛ ଆଡ଼କୁ ଅନେଇ ଅସହାୟ ଭାବେ ଶୁଖିଲା ହସଟି ହସିବାକୁ ଚେଷ୍ଟା କଲା ।

ଧାନ କିଆରୀରୁ ପାଣି ଗଡ଼ିଚାଲିଚି କୁଳୁକୁଳୁ, କୁବ୍‌କୁବ୍ ହୋଇ । ବରଗଛ ତଳେ ଧକୋଉଚି ବୁଲା କୁକୁର । ନହକା ଅମରୀ ଗଛର ଡାଙ୍ଗରେ ବସି କୋଇଲି କୁଉ, କୁଉ ହେଉଚି । ଥିରିଥିରିଆ ପବନରେ ଗୋଟାଏ ଚିହ୍ନା ଚିହ୍ନା ଗନ୍ଧ ଶିହରେଇ ଦେଉଚି ଦେହସାରା ।

ବିହ୍ୱଳିତ ବୈଷ୍ଣବ ସନ୍ନ୍ୟାସୀ ପରି ଦୁଇବାହା ଊର୍ଦ୍ଧ୍ୱକୁ ଟେକି କାନ୍ଦୁରା କଣ୍ଠରେ ପାଟିକରି ଉଠିଲା ହରି–'ହେ ସୂର୍ଯ୍ୟ, ମାଟି, ପାଣି, ପବନ, ହେ ମଣିଷ, ପଶୁପକ୍ଷୀ ହେ ନଦନଦୀ, କୀଟପତଙ୍ଗ ! ଇଏ କି ମାୟା, କି ମାୟା ଇଏ ଭଗବାନ୍ !'

ଫେରିଆସିଲା ସେ । ନର୍ସଙ୍କ ସାମ୍‌ନାରେ ଡିସ୍‌ଚାର୍ଜ ରେଜିଷ୍ଟରରେ ଦସ୍ତଖତ କରିସାରି ଝୁଲା ଖଣ୍ଡିକ କାନ୍ଧରେ ଗଳେଇଲା । କହିଲା– 'ଆପଣ ପଚାରୁଥିଲେ ନା ସିଷ୍ଟର ସୁଖ କ'ଣ ବୋଲି ? ତା'ର ଉତ୍ତର ଜାଣିଚି ମୁଁ । ଜୀଇଁବାରେ ବଂଚିରହିବାରେ ହିଁ ତ ସୁଖ । ଏତେ ସୁଖ ସତରେ !'

ବାହାରେ ଠିଆ ହୋଇଥିଲେ ଡାକ୍ତର । ଏମିତି ନିଷ୍ଠୁର ଭାବେ ସତ କଥାଟା ଜଣେଇ ନିରାଶା ସୃଷ୍ଟି କରିଥିବାରୁ ଗ୍ଲାନିଗ୍ରସ୍ତ ହୋଇ କହିଲେ– 'ମତେ କ୍ଷମା କର । ହଁ, ସବୁ ରୋଗର ବିଧାନ ରହିଚି ଦୁନିଆରେ । କାହାର ବିଧାନ କଷ୍ଟକର ହୋଇପାରେ, ବ୍ୟୟବହୁଳ ହୋଇପାରେ, ମାତ୍ର ଅସମ୍ଭବ ନୁହେଁ । ବଡ଼ ସହରର କୌଣସି କ୍ୟାନ୍‌ସର ହସ୍‌ପିଟାଲକୁ ଯାଅ ଶୀଘ୍ର । ଟଙ୍କା ଯୋଗାଡ଼ କର । ସମୟ ନଷ୍ଟ କର ନାହିଁ । ହାଭ୍ ଫେଡ୍ ଅନ୍ ଗଡ୍ !'

ଭିକ୍ଷା ହେଉ ବା ଉପହାର, ନିଜର ଟିଉସନ ଛାତ୍ର ସାନପିଲାଟିଏ ଡାକ୍ତରଖାନାରେ ତାକୁ ଦେଇଥିବା ପାଞ୍ଚଟଙ୍କିଆ ନୋଟ୍ ଖଣ୍ଡିକ ପକେଟ୍‌ରେ ଜାବ ପଡ଼ିଯାଇଥିବା ହରିର ହାତମୁଠା ଭିତରେ ଭିଜି ଭିଜି ଆସୁଥିଲା, ଝାଳରେ । ବିଦାୟ ନେବା ପାଇଁ ସେ ଟିକିଏ ନଇଁପଡ଼ି କହିଲା– ମୁଁ ଯାଉଚି ସାର୍ । ମୋ ହାତରେ ସମୟ ବହୁତ କମ୍ ।

ଡାକ୍ତର କହିଲେ– 'ଟେକ୍ ଇଟ୍ ଇଜି । ଫାଇଟ୍ ଇଟ୍ ।'

ହରି କହିଲା– ନିୟତିର ଢଙ୍ଗ କେତେ ଅଜବ । ଆଜୀବନ ଯେତେବେଳେ ମୁଁ ଯାହା ଟିକିଏ ବି ଚାହିଁଲି, ପାଇପାରିଲି ନାହିଁ । ମରିବାକୁ ଚେଷ୍ଟା କରିଥିଲି ଦି' ଦି' ଥର, ମାତ୍ର ହୋଇପାରିଲା ନାହିଁ । ଆଉ ଏବେ ଯେତେବେଳେ...

ଗୋଟାଏ ଉଦ୍‌ଗତ କୋହ ତା' କଣ୍ଠକୁ ରୋକିଦେଲା । ସେ ଆଉ ବାକ୍ୟ ପୂରଣ କରିପାରିଲା ନାହିଁ । ଡାକ୍ତରଙ୍କ ମୁହଁକୁ ବଲବଲ କରି ଅନେଇ ରହିଲା । ମୁହୂର୍ତ୍ତକ ପରେ ପଚାରିଲା– 'ସାର୍, ସତରେ କ'ଣ ପୁନର୍ଜନ୍ମ ଅଛି ?'

ଡାକ୍ତର ମୌନ ହୋଇ ତା' ମୁହଁକୁ ଅନେଇ ରହିଲେ । ହରି ଧୀରେ ଧୀରେ ରାସ୍ତା ଆଡ଼କୁ ଚାଲିଯିବାକୁ ଲାଗିଲା ।



# ଭଇଁଚ କୋଳି

## ପବିତ୍ର ପାଣିଗ୍ରାହୀ

ବାଣୀ ଭଦ୍ରକରେ ପହଞ୍ଚିଲା ପରେ ପରେ ହିଁ ଭାଗ୍ୟକୁ ମନମୁତାବକ ଭଡ଼ାଘରଟିଏ ମିଳିଯାଇଥିଲା । ଭଡ଼ା ସାମାନ୍ୟ ଅଧିକ ହେଲେ ବି ତା' ବାପଘର ସେଠୁ ଅଳ୍ପ ଦୂର ଥିଲା, ବଜାର ଓ ବସ୍ ଷ୍ଟାଣ୍ଡ ବି ବେଶୀ ଦୂର ନଥିଲା ଓ ସେମାନେ ଘର ଠିକ୍ କରିଥିବା କଲୋନୀରେ ବାଣୀର ଅନେକ ପରିଚିତ ବାଂଧବୀ ଥିଲେ । ବାପଘରର ଏକମାତ୍ର ଝିଅ ଭାବରେ ଆଦର ଯତ୍ନର ଅଭାବ ନଥିଲେ ବି ବାଣୀକୁ ତା' ବର ଓ ପିଲାଙ୍କ ସହ ସେଠି ସପ୍ତାହେ ରହିଲା ପରେ ମାଡ଼ି ମାଡ଼ି ପଡୁଥିଲା । ସେଇଥି ପାଇଁ ଯେଉଁ ସଂଜରେ ଘର ମାଲିକ ସହ ଭଡ଼ା ଛିଡ଼େଇ ଆଡଭାନ୍ସ ଦେଲେ ତା'ପର ଦିନ ହିଁ ଆସବାବପତ୍ର ବୋହିବା ଓ ନିଜ ରୁଚି ମୁତାବକ ଘରଟିକୁ ସଜାଇବାରେ ସେ ଝାଳନାଳ ହେଇ ଲାଗିପଡ଼ିଥିଲା ।

ବା'ଘର ବେଳକୁ ତା' ବର ବଲାଙ୍ଗୀର କଲେଜରେ ଅଧ୍ୟାପକ ଥିବାରୁ ତାକୁ ତା'ର ପ୍ରିୟ ପରିଚିତ ଭଦ୍ରକ ସହର ଛାଡ଼ି ବଲାଙ୍ଗୀରରେ ନୀଡ଼ ବାନ୍ଧିବାକୁ ପଡ଼ିଥିଲା । ମାତ୍ର ଜାଗାଟା କାହିଁକି କେଜାଣି ତାକୁ ଜମ୍ମା ଭଲ ଲାଗି ନଥିଲା । ପ୍ରତିଟି କଥାରେ ଭଦ୍ରକ ସହ ଜାଗାଟାର ତୁଳନା କରିବସୁଥିଲା ଓ ମନେ ମନେ ଉଦାସ ହେଇପଡୁଥିଲା । କିଛିଦିନ ପରେ ମନୋଜ ତାକୁ ଆଶ୍ୱାସନା ଦେଲା ଯେ ଯେମିତି ହେଲେ ସେ ଭଦ୍ରକକୁ ବଦଳି କରାଇବ । ମାତ୍ର ସେଥି ପାଇଁ କିଛି ସମୟ ଲାଗିବ, ଯେଉଁଥି ପାଇଁ ବ୍ୟସ୍ତ ହେଲେ ଚଳିବନି । ସେତିକି କଥାରେ ବାଣୀର ମନ ବଗିଚାରେ ଅଚାନକ ନାନା ଜାତିର ଫୁଲ ଫୁଟି ସାରିଥିଲା, ପର୍ଯ୍ୟାପ୍ତ ପ୍ରଜାପତି ଓ ଗୋଟେ ଅଧେ ହଳଦୀବଂସତ ବି ଉଡ଼ିବା ଆରମ୍ଭ କରିଦେଇଥିଲେ ।

ନିରୋଳା ସମୟରେ ବାଣୀ ସେଇ ସମ୍ଭାବ୍ୟ ସୁସମୟର ପ୍ରତୀକ୍ଷାରେ ଶିହରି ଉଠୁଥିଲା ଓ କଳ୍ପନାରେ ତା' ପରିଚିତ ସହରର ବିଭିନ୍ନ ପ୍ରିୟ ଇଲାକାରେ ଖୁସି ଖୁସିର ଛୋଟ ଘରଟେ ସଜୋଉଥିଲା । ମାତ୍ର ବଦଳିରେ ଅତିରିକ୍ତ ବିଳମ୍ବ ଯୋଗୁଁ ବାଣୀର ମନୋଜ ସହ ମଝିରେ ମଝିରେ ଝଗଡ଼ା ହେଉଥିଲା। ମନୋଜର ଚେଷ୍ଟା ଓ ବାଣୀର ସ୍ୱପ୍ନ ଦେଖିବା ଭିତରେ କିଛି ବର୍ଷ ବିତି ସାରିଥିଲା । ବାଣୀର ଝିଅ ପୁଅ ଦିଟା ହେଇସାରିଥିଲେ । ସେ ପି.ଏସ୍.ସି. ପାଇସାରିଥିଲା ଯଦିଓ ପୋଷ୍ଟିଂ ହେବାକୁ କିଛି ମାସ ଡେରିଥିଲା । ବାଣୀ ସେଠିକାର ମଣିଷମାନଙ୍କ ସହ ବେଶ୍ ମିଶି ସାରିଥିଲା । ଜାଗାଟି ବି ତାକୁ ଆପଣାର ଲାଗି ଆସୁଥିଲା । ସେତିକିବେଳକୁ ମନୋଜର ଭଦ୍ରକକୁ ବଦଳି ଅର୍ଡର ହେଲା । ମନୋଜ ଏଇ ସୁସମ୍ବାଦ ବାଣୀକୁ ଶୁଣାଇବା ବେଳେ ସାମୟିକ ଭାବେ ସେ ଉଦାସ ହେଇପଡ଼ିଥିଲେ ବି ଅଜାଣତରେ ତା' ଛାତିତଳ ଜରିପକା ବଖରାରେ ମହଣେ ମଲ୍ଲୀଫୁଲ ବିଛେଇ ଯାଇଥିଲା । ପିଲାଙ୍କ ପରି ସିଏ ଅଳି କରିଥିଲା, "ଯେତେ ଟଂକା ନେଲେ ନିଅନ୍ତୁ ପଛେ ମୋର ବି ପୋଷ୍ଟିଂ ସେଇ ଭଦ୍ରକରେ କରେଇ ଦିଅନା ।"

ସେବେଠୁ ତା'ର ପ୍ରିୟ ସହରରେ ପହଞ୍ଚିବା ଯାଏଁ ବିତିଥିବା ହାତଗଣିତ ଦିନଗୁଡ଼ାକରେ ବାଣୀ ବାରମ୍ବାର ଅନ୍ୟମନସ୍କ ହୋଇପଡୁଥିଲା । ମନୋଜ ତାକୁ ଚିଡ଼ୋଉଥିଲେ ବି ସିଏ ମନେ

ମନେ ଖୁସି ହେଉଥିଲା ଯଦିଓ ଉପରେ ଉପରେ ଅଭିମାନ କରୁଥିଲା । ଭଦ୍ରକର ନାଁ ଉଚ୍ଚାରଣ କଲା ମାତ୍ରେ ହିଁ ତାଙ୍କ କ୍ୱାର୍ଟର ସାମ୍ନା ଥୁଣ୍ଟା କଦମ୍ବ ଗଛରେ ତ ଲକ୍ଷେ ଫୁଲ ଛାଁକୁ ଛାଁ ଫୁଟି ଯାଉଥିଲା । ଚାରିଆଡ଼େ ଜଳି ଉଠୁଥିଲା ନୀଳବତି । ତା'ର ଜନ୍ମ ସେଇଠି, ଜହ୍ନମାମୁ ଦେଖା ବି ସେଇଠି । ସେଇ ଭଦ୍ରକ ଆକାଶରେ ସିଏ ମେଘ ଆଉ ଜହ୍ନର ଖେଳ ଦେଖିଛି । ସେ ସ୍ମୃତି ସବୁକୁ ଭୁଲିବା କ'ଣ ଏଡ଼େ ସୋଜା କଥା ! କେମିତିବା ସେ ଭୁଲି ଥାଆନ୍ତା ସାଳନ୍ଦୀର ଛମ୍ ଛମ୍ ଗୀତ, ଉଇଁଚ କୋଳି ତୋଳା ଦିନମାନଙ୍କୁ, ତାଂକ ସ୍କୁଲର ପାଠପଢ଼ା ଓ ଆଚାର ଖିଆ ସ୍ମୃତିମାନଙ୍କୁ, ଗାର୍ଲ ସ୍କୁଲର ସାଙ୍ଗ ଓ ଦିଦିଙ୍କୁ, ଭଦ୍ରକ କଲେଜ ଆମ୍ବଗଛର ଛାଇକୁ ବା ପ୍ରଥମ କବିତା ଲେଖାର ରୋମାଞ୍ଚକୁ, ପ୍ରଥମ ସ୍ୱପ୍ନର ଶିହରଣକୁ ଅବା କଚେରୀ ବଜାରର ଅଦୃଶ୍ୟ କିମିଆ କି କାଳୀପୂଜା ମେଳାର ମହକକୁ !

ସିଏ ଭୁଲି ପାରିଲାନି ବୋଲି ତ ଫେରିଆସିଲା । ଫେରିଆସିଲା ବୋଲି ତ ନିଜ ସ୍ୱପ୍ନର ସାମ୍ରାଜ୍ୟରେ ସାମ୍ରାଜ୍ଞୀଟେ ପରି ନିଜ ରୁଚି ଅନୁସାରେ ସ୍ୱପ୍ନ ନୀଡ଼ଟିକୁ ସଜୋଉ ଥିଲା । ସଜୋଉ ସଜୋଉ ତା'ର ଖୁବ୍ ରାଗ ଆସୁଥିଲା ମନୋଜ ଉପରେ । କିଛି ଟିକେ ବି ଫିଙ୍ଗିବେନି କି ହାତଛଡ଼ା କରିବାକୁ ଚାହିଁବେନି ସିଏ । ବାଇ ଚଢ଼େଇର ବସା ପରି ଏଣୁତେଣୁ ଜିନିଷ ପତ୍ରରେ ଭରି ଚାଲିଥିବେ ଘର । ଏଇ ଯେମିତି ପଲଙ୍କ, ଗଦି, ସୋଫା, ଟି.ଭି., ଫ୍ରିଜ୍ ପରି ଆହୁରି ଅନେକ ଆବଶ୍ୟକ ଘରକରଣା ଜିନିଷ ପରେ ବି କୋଡ଼ିଏ ତିରିଶିଟା ବଡ଼ ବଡ଼ କାଗଜ ପେଟି ଥୁଆ ହେଇଚି ପର୍ବତ ପରି ଡ୍ରଇଁ ରୁମ୍‌ର ଅଧାଜାଗା ମାଡ଼ି । ଯାହା ଭିତରେ ସାଇଜ୍ ହେଇ ଥୁଆ ହେଇଚି ମନୋଜଙ୍କର ସ୍କୁଲ୍ ବେଳରୁ ୟୁନିଭରସିଟି ଯାଏଁ ପାଇଥିବା ରଂଗଛଡ଼ା କପ୍, ହାଇସ୍କୁଲଠୁଁ ଏମ୍.ଏସ୍.ସି. ପର୍ଯ୍ୟନ୍ତ ବହି ଓ ନୋଟ୍ ଖାତା ସବୁ, ପାଞ୍ଚ ସାତବର୍ଷର ଓଡ଼ିଆ ଇଂରାଜୀ ଖବରକାଗଜ– ଏମିତି ଆଳିମାଳିକା କେତେ ଚିଜ । ମନୋଜ ଉପରେ ତା'ର ରାଗ ହୁଏ ସିନା, ତାଙ୍କ ଇଚ୍ଛା ଓ ଖିଆଲକୁ ସମ୍ମାନ ଦେବାକୁ ଯାଇ କିଛି କହେନି । କହିପାରେନି ।

ରୋଷେଇ ଘର, ଦି'ଟା ବେଡ୍ ରୁମ୍, ଡ୍ରଇଂ ରୁମ୍ ଓ ଲାଟ୍ରିନ୍ ଥିବାରୁ ରୁମ୍‌କୁ ସଂପୂର୍ଣ୍ଣ ସଜାଡ଼ିବାକୁ ତାକୁ ପୂରା ତିନିଦିନ ଲାଗିଥିଲା । ପେଟିଗୁଡ଼ାକୁ ବେଡ୍‌ରୁମ୍‌ର ପାରାପେଟ ଉପରେ ଥାକ ମାରି ରଖିଲା ପରେ ବି ଆହୁରି ସାତ ଆଠଟା ବଳି ପଡ଼ିଲା ଯେ ତାକୁ ସେଇ ଡ୍ରଇଂ ରୁମ୍ କଣରେ ସାଇଜ୍ କରି ରଖିବାକୁ ହେଲା । ଦିନେ ରାତିରେ ବାଣୀ ସାହସ କରି କହିଲା ମନୋଜକୁ– 'ଗୋଟେ କଥା କହିବି, ରାଗିବନି ତ ?' 'କହୁନ, କୁହ' – ସ୍ୱରକୁ ଯଥେଷ୍ଟ ନମ୍ର କରି ବାଣୀ ଯୋଡ଼ିଲା, 'ତମ ପୁରୁଣା ବହି ଓ ନୋଟ୍‌ଗୁଡ଼ା ଥାଉ ପଛେ, ପୁରୁଣା ପେପରଗୁଡ଼ା ବିକି ଦଉନ, ଭିଡ଼ କିଛିଟା କମିଯିବ ।' 'ହଁ ଯେ, ମୁଁ କ'ଣ ମନା କରୁଚି । ହେଲେ, କେତେ ପଇସା ହେବ କହିଲ ? ତାକୁ ବୋହିବାରେ ଏଯାଏଁ ଯେତିକି ଖର୍ଚ୍ଚ ହେଲାଣି ସେତିକି ବି ଉଠିବନି । କାଗଜ କିଣିବା ଲୋକଗୁଡ଼ା କିଣିଲାବେଳେ ଏତେ ବାର୍‌ଗେନ୍ କରନ୍ତି ଯେ ଇଚ୍ଛା ହୁଏନା ବିକିବାକୁ ।' ମନୋଜ ଉତ୍ତର ଦେଲା । 'କ'ଣ ମିଳିବ ନ ମିଳିବ ଅଲଗା କଥା, ଘର ତ ଟିକିଏ ଫାଙ୍କା ଲାଗିବ ।' ବାଣୀର ଅନୁରୋଧର ଉତ୍ତରରେ ମନୋଜ କହିଲା, 'ତମ ଇଚ୍ଛା, ଯାହା କରୁଚ କର । ହେଲେ ମୋତେ ଜମା ପୂରେଇବନି ସେ ଝାମେଲାରେ । ପୁରୁଣା ପେପର୍ ରେଟ୍ ଏବେ ଛଅ / ସାତ ଟଙ୍କା ଚାଲିଚି, ତା'ଠୁଁ କମ୍‌ରେ ନଦିଅ ଯେମିତି ! ଆଉ ପେପରଗୁଡ଼ା ଖେଳେଇ ଦେଖିବ ଥରଟେ, ଚିହ୍ନ ଦେଇଥିବା ଗୁରୁତ୍ୱପୂର୍ଣ୍ଣ ଫିଚର ଓ ନ୍ୟୁଜ୍‌ଗୁଡ଼ା କାଟିକି ରଖିବ ।' ବାଣୀ କହିଥିଲା– 'ହଉ' ।

ସେବେଠୁ ସିଏ ସବୁବେଳେ କାନେଇଥିଲା କେତେବେଳେ ସାଇକେଲ୍ ଘଣ୍ଟି ଟିଂ ଟିଂ କରି କେହି ଜଣେ ତାଙ୍କ ଘର ଆଗ ଗଳିରେ ଡାକ ପକେଇବ– 'ପେପର୍ ଦବ ପେପର୍, ପୁରାନ୍ନା ଓଡ଼ିୟା ଇଂଲିଶ୍ ପେପର୍, ଖାତା ବହି ପେପର୍ ।' ହେଲେ ଗୁଡ଼ାଏ ଦିନ ବିତିଗଲା ସିନା, ସେମିତି ସ୍ୱରଟିଏ ତା' କାନରେ ବାଜିଲା ନାହିଁ । ଧୀରେ ଧୀରେ ଦିନ ବିତିବା ସହ ବାଣୀ ବି ଏ ପ୍ରସଙ୍ଗଟିକୁ ଭୁଲିଯିବାକୁ ବସିଲା ।

ଦିନେ ମନୋଜ ଖାଇକି କଲେଜ ଯିବେ ବୋଲି ତରତର ହୋଇ ବାଣୀ ରୋଷେଇ କରୁଚି, ଡ୍ରଂଇ ରୁମ୍‌ରୁ ମନୋଜ ଡାକ ପକେଇଲା– 'ପେପର୍ ଦବ କହୁଥିଲ ପରା ? କଥାବାର୍ତ୍ତା କରି ରେଟ୍ ଫାଇନାଲ୍ କରିଯାଅ ।' ବାଣୀ ଭିତରୁ ଜବାବ୍ ଦେଲା, 'ତାକୁ କୁହ ବେଳ ଦେଖି ଆସିବ । ଏବେ ମୁଁ ବ୍ୟସ୍ତ ଅଛି । ମୋତେ ତ ଓଳିଏ ଲାଗିବ ପେପରଗୁଡ଼ା ପେଟିରୁ କାଢ଼ି ସଜେଇ ରଖିବାକୁ । ହଁ ଶୁଣ, କେତେ ରେଟ୍ କହୁଛି ବୁଝିନିଅ ଟିକେ ।' କିଛି ସମୟ ପରେ ମନୋଜ ଭିତରକୁ ଆସି ବାଣୀକୁ କହିଲା, 'ବୁଝିଲ, ଲୋକଟା ପକ୍‌କା ବେପାରୀ ହୋ । କହୁଚି କ'ଣ ନା ବହି କିଲୋ ଦୁଇଟଙ୍କା, ଖାତା ତିନିଟଙ୍କା, ଓଡ଼ିଆ କାଗଜ ଚାରିଟଙ୍କା, ଇଂରାଜୀ କାଗଜ ପାଞ୍ଚଟଙ୍କା । ବହିଖାତା ଦବାନି ମ । କାଗଜ କିଲୋ ପିଛା ଟଂକେ ଲେଖାଁ ଯେମିତି ହେଲେ ଅଧିକ ଦବାକୁ କହିବ ତମେ । ଅତି କମ୍‌ରେ ତ ଚାଳିଶ ପଚାଶ କିଲୋ ହେବ ।' ବାଣୀ କହିଲା– 'ଏତେଗୁଡ଼େ କାଗଜ । ରେଟ୍ ନ ପୋଷେଇଲେ ଦଉଚି କିଏ ବା ! ହଉ, ସେ ବେଳ ଓଳିକି ଆସୁ ।'

ମନୋଜ କଲେଜ ଚାଲିଯିବା ପରେ ବାଣୀ ସାରା ଖରାବେଳଟା ଝାଳ ସରସର ହୋଇ ଇଂରାଜୀ ଓ ଓଡ଼ିଆ କାଗଜକୁ ଅଲଗା କରି ରଖିଲା । ମନୋଜ ଚିହ୍ନ ଦେଇଥିବା ଲେଖାସବୁକୁ ବ୍ଲେଡ୍‌ରେ କାଟି ଗୋଟେ ଫାଇଲ୍‌ରେ ସଜାଡ଼ି ରଖିଲା ଓ ପେପର୍ ସବୁକୁ ଧୂଳିଝାଡ଼ି ସଜେଇ ରଖିଲା ଯେମିତିକି ଲୋକଟା ଦେଖୁ ଦେଖୁ ଖୁସି ହୋଇଯିବ ଓ ଅଧିକ ଦାମ୍ ଦେବାକୁ ପଛେଇବ ନାହିଁ । ହେଲେ ଅପରାହ୍ନ ଯାଇ ସଂଜ ହେଲା, ସଂଜ ଗଡ଼ି ରାତି ହେଲା ଅଥଚ ଲୋକଟା ଆସିଲା ନାହିଁ । ସାରାଦିନର ପରିଶ୍ରମ ତା'ର ବ୍ୟର୍ଥ ଯାଇଥିବାରୁ ବାଣୀ ସେ ଲୋକଟା ଉପରେ ରାଗ ହେଉଥିଲା ଓ ଛାର ପେପର୍ କିଣୁଥିବା ଲୋକଟେ ପାଖରେ ସେ ହାରିଯାଇଥିବାର ଗ୍ଲାନିବୋଧ ତାକୁ ଆବୋରି ବସୁଥିଲା । ମନେ ମନେ ସେ ଠିକ୍ କଲା, ଯଦି ପୁଣି କେବେ ଲୋକଟା ଆସି ପଚାରେ, ସେ ମୁହେଁ ମୁହେଁ ଶୁଣେଇ ଦବ ଯେ ପେପର୍ ସବୁକୁ ସେ ଖତ ଗଦାରେ ଫିଙ୍ଗିବ ପଛେ ତାକୁ ବିକିବନି ।'

ପରଦିନ ମନୋଜ କଲେଜ ଯାଇଛନ୍ତି, ଝିଅ ଯାଇଚି ସ୍କୁଲ୍‌କୁ, ଶାଶୂଙ୍କ ପାଖରେ ଚାରିମାସର ପୁଅ ଫିଡିଂ ବଟଲ୍ ମୁହଁରେ ଦେଇ ଶୋଇଚି । ବାଣୀ 'ଫେମିନା'ଟେ ଧରି ଗଡ଼ପଡ଼ ହେଉ ହେଉ ତା' ଆଖି ମୁଦି ଆସୁଚି । ଲୋକଟା କବାଟ ଠକ୍ ଠକ୍ କଲା । ବାଣୀ 'କିଏ' ବୋଲି ପଚାରିଲାରୁ ଲୋକଟା ନମ୍ର ଗଳାରେ ଉତ୍ତର ଦେଲା– 'ମାଆ, ପେପର୍ ଦବ ପରା ?' ବାଣୀ ଖୁସି ହେଲେ ବି ନିଜକୁ ଯଥାସମ୍ଭବ ଗମ୍ଭୀର କରି ଦର୍ଜା ଖୋଲୁ ଖୋଲୁ ପଚାରିଲା, 'ତମେ କାଲି ବେଳ ଓଳି ଆସିବ କହିଥିଲ ପରା ! ଦିନ ବାରଟା ବେଳେ କିଏ ଟିକେ ରେଷ୍ଟ ନବ ନା ଏଇସବୁ ବାଜେ କାମରେ ସମୟ ନଷ୍ଟ କରିବ ।' ଲୋକଟା ସହଜ ଭାବେ ଉତ୍ତର ଦେଲା, 'କାଲି ଆସିଥାନ୍ତି ଯେ, ଝିଅକୁ ଜର ହେଇଚି ବୋଲି ଡାକ୍ତର ପାଖକୁ ନେଲି । ପଇସା ଟିକେ ସଟ୍ ଥିଲା ପେପର୍ କିଣିବାକୁ । ଆଜି ଠୁଙ୍ଗା ସାତ / ଆଠ କେଜି ବିକି ସାରି ଏଇବାଟେ ଆସିଚି ।' ବାଣୀ ଟିକେ

ନରମି ଗଲା । ବାହାରକୁ ଚାହିଁ ଦେଖିଲା ଲୁଂଗି ଆଉ ଚିରା ଗେଂଜିଟେ ପିଂଧି ସାଇକେଲ୍‌ରେ ଭରା ହୋଇ ଠିଆ ହେଇଚି ଦଶ କି ବାର ବର୍ଷର ପିଲାଟେ, ମୁହଁରେ ବିନ୍ଦୁ ବିନ୍ଦୁ ହୋଇ ଫୁଟି ଉଠୁଚି ଝାଳ । ଲୋକଟାର ପୁଅ ବୋଲି ଜାଣିଲେ ବି ସେଆଡ଼ୁ ନଜର ଫେରାଇ ପେପର ଆଡ଼େ ଚାହିଁ କହିଲା, 'ତମେ ଯେଉଁ ରେଟ୍ କହୁଚ ସେଥିରେ ପେପର୍ ଦେଇ ହବନି । ଦରଦସ୍ତୁର କରିବାରେ ସମୟ ନଷ୍ଟ କରିବାକୁ ମୋର ବେଳ ନାହିଁ । କାଲି ବାବୁଙ୍କୁ ଯୋଉ ରେଟ୍ କହିଥିଲ ଆଉ ଟଂକେ ଲେଖାଁ ଅଧିକ ଦବ ତ ଓଜନ କର ।'

ଲୋକଟା ପେପର ଥାକ ପାଖକୁ ଯାଇ ଖେଳେଇକି ଦେଖିଲା । କହିଲା 'ମାଆ, ଏସବୁ ଢେର୍ ଦିନିକା କାଗଜ, ଠୁଙ୍ଗା ପାଇଁ କାଟୁ କାଟୁ କି ଅଠା ଦେଉ ଦେଉ ଫାଟିଯିବ । କାଲି ଦେଖିଥିଲେ ଆଠଣା ଲେଖାଁ କମ୍ କହିଥାନ୍ତି । ହଉ, ପାଟିରୁ ତ ବାହାରି ଯାଇଚି, ସେଇ ଦରରେ ଦିଅ । ଆଉ ଅଧିକା ହେଲେ ମୋତେ ପୋଷେଇବନି ଆଜ୍ଞା ।' ମନୋଜର ତାଗିଦା ମନେଥିଲେ ବି ଲୋକଟାର କହିବା ଭଂଗୀରେ ବାଣୀ ଟିକେ ତରଳି ଆସିଲା । ତଥାପି କହିଲା, 'ହଉ ଟଙ୍କେ ନ ହେଲେ ବି ଆଠଣା ଅଧିକ କର, ତମ କଥାରହୁ ଆମ କଥା ରହୁ, ଏମିତି କଥା କଟାକଟିରେ କିଲୋ ପିଛା ଚାରଣା ଅଧିକା ଦେବାକୁ ଲୋକଟା ରାଜି ହେଲା ଶେଷକୁ । ବାଣୀ କାଗଜଗୁଡ଼ାକୁ ଆଣି ତା' ସାମ୍ନାରେ ଗଦେଇ ଦେଲା ଓଜନ ପାଇଁ । ଲୋକଟା ଦଣ୍ଡିପଲା ଆଣିବାକୁ ପୁଅକୁ କହି ବାଣୀକୁ ଗିଲାସେ ପାଣି ମାଗିଲା । ତା'ର ସ୍ୱର ବାଣୀକୁ କେମିତି ଚିହ୍ନା ଚିହ୍ନା ଲାଗିଲା ବେଳେ ଭଲ କରି ଚାହିଁଲା ତା ମୁହଁକୁ । ହଠାତ୍ ବାଣୀ ତାକୁ ପଚାରିଲା– 'ତମେ ପାରୁ ନା ?' ଢକ ଢକ କରି ପାଣି ପିଉ ପିଉ ସାମାନ୍ୟ ଚମକି ଗଲା ଲୋକଟି । ମୁହଁ ପୋଛି କହିଲା– 'ଆପଣ ଜାଣିଲେ କେମିତି ?'

ବାଣୀ ବଙ୍କ ସ୍କୁଲରେ ଚତୁର୍ଥ / ପଞ୍ଚମ ଶ୍ରେଣୀରେ ପଢୁଥିବା କୁନିଝିଅଟେ ପାଲଟି ଗଲା ଯେମିତି ! ତା'ର ମନେ ପଡ଼ିଗଲା ଧାଇଁ ଧାଇଁ ବସ୍‌ଷ୍ଟାଣ୍ଡ ଭିତର ଦେଇ ଆସି ଭାତ ଖାଇ ଫେରିଲାବେଳେ ବାପାଙ୍କଠାରୁ ପଇସା ନେଇ ଧଇଁସଇଁ ହୋଇ ଦଉଡ଼ିବାର ସୁମଧୁର ସ୍ମୃତି । ଖେଳଛୁଟି କଥା ମନେପଡ଼ିଲା ତ ପାରୁର ସ୍ମୃତି ତା' ଭିତରେ ସଜୀବ ହୋଇଉଠିଲା । ପାରୁର ବସ୍ତାନି ଥିଲା ତା' ପରି ସବୁ ଝିଅଙ୍କର ଆକର୍ଷଣର କେନ୍ଦ୍ରବିନ୍ଦୁ । ତା' ଭିତରୁ ସବୁଦିନେ ବାହାରୁଥିଲା ନୂଆ ନୂଆ ଚିଜ– ଟଭା, ବରକୋଳି, ଖଜୁରୀକୋଳି, ଜାମୁକୋଳି, ପିଜୁଳି, ଖଟା, କଇଥ, କଷିଆମ୍ବ ଏମିତି କେତେ କ'ଣ । ଶ୍ରେଣୀର ସବା ପଛ ଧାଡ଼ିରେ ବସୁଥିବା ପାରୁ ଖେଳଛୁଟିରେ ହୀରୋ ପାଲଟି ଯାଉଥିଲା । ଆମେ ସବୁ ଭାବୁଥିଲୁ, ହେ ପ୍ରଭୁ, ଅଙ୍କ ସାର୍‌ଙ୍କଠାରୁ ମାଡ଼ ଖାଇଲେ ଖାଉଁ ପଛେ, ଆମକୁ ପାରୁ କରିଦିଅନ୍ତନି ! ଅବଶ୍ୟ ଏସବୁ ପାରୁ ତାଙ୍କ ବାଡ଼ିରୁ ଆଣୁ ନଥିଲା । ଅନ୍ୟମାନଙ୍କ ବାଡ଼ିରୁ ବିଭିନ୍ନ ଉପାୟରେ ସେ ତାକୁ ସଂଗ୍ରହ କରୁଥିଲା ଓ ସବୁ ସମୟ ତା'ର ସେଇଥିଲେ ହିଁ ବିତୁଥିଲା ପ୍ରାୟ ।

ପାରୁ ଆଖି ପିଛୁଳାକେ ଯେକୌଣସି ଗଛକୁ ଚଢ଼ି ପାରୁଥିଲା । ଗଛର ସବୁଠାରୁ ଉଚ୍ଚ ଓ ସରୁ ଡାଳରେ ପାଦ ରଖିପାରୁଥିଲା । ବୋଲୁଅ ଫିଙ୍ଗି ତା'ର ଇପ୍‌ସିତ ବସ୍ତୁକୁ ତଳକୁ ଖସାଇ ପାରୁଥିଲା ଅବଲୀଳାକ୍ରମେ । ତା'ର ଏତାଦୃଶ କାମକୁ ଆମେ ସବୁ ତାଟକା ହେଇ ଚାହୁଁଥିଲୁ ଓ ପ୍ରତିଯୋଗିତା କଲାଭଳି ପ୍ରଶଂସା କରୁଥିଲୁ, ତା'ର ନିକଟତର ହୋଇ ସେଥିରୁ କିଛି ଭାଗ ପାଇବା ଲୋଭରେ । ତା' ସହ ପାରୁର ଭଲ ପଡୁଥିଲା । ତେଣୁ ସେ ନ କହିଲେ ବି ସବା ଆଗେ ତା' ବ୍ୟାଗରୁ କିଛି ଗୋଟେ କାଢ଼ି ତା'ର ହାତକୁ ପାରୁ ବଢ଼େଉ ଥିଲା । ଅବଶ୍ୟ ତା'ର ବି କାରଣ

ଥିଲା । ସେ ଭଲ ପଢୁଥିଲା ବୋଲି ସ୍କୁଲର ସବୁଠାରୁ ରାଗୀ ଗଦାଧର ସାର୍‌ଙ୍କ କ୍ଲାସ୍ ପୂର୍ବରୁ ପାରୁ ତା'ର ପାଖରୁ ଅଂକ ଟିପୁଥିଲା ଯଦିଓ ଖାତା ସଂଶୋଧନ ବେଳେ ସାର୍‌ଙ୍କ ପ୍ରଶ୍ନର କିଛି ଉତ୍ତର ନ ଦେଇ ପ୍ରତ୍ୟହ କଲମ କି କନିଅର ଛଡ଼ିରେ ପ୍ରବଳ ମାଡ଼ ଖାଉଥିଲା । ଏତେ ମାଡ଼ ଖାଇଲେ ବି ସେ ଜମ୍ମା କାନ୍ଦୁ ନଥିଲା । ତେଣୁ ସାର୍ ଆହୁରି ରାଗି ଯାଉଥିଲେ । ଖାତା ଦେଖାଇଲା ବେଳେ ପ୍ରତିଦିନ ସେ ପାରୁକୁ ନୂଆ ନୂଆ ଚିଜର ବରାଦ କରୁଥିଲା । ପାରୁ ବି ତା' ଆରଦିନ ସେ ଜିନିଷ ହାଜିର୍ କରୁଥିଲା ।

ପାରୁ ବିରୋଧରେ ମଝିରେ ମଝିରେ ସାର୍‌ଙ୍କ ପାଖେ ଅଭିଯୋଗ ମାନ ପହଞ୍ଚୁଥିଲା । ଅନ୍ୟମାନଙ୍କ ବାଡ଼ିରୁ ତା'ର ଅଭିନବ ଚୌର୍ଯ୍ୟବୃତ୍ତି ପାଇଁ । ସେଥିପାଇଁ ଶ୍ରେଣୀର ସମସ୍ତଙ୍କ ଆଗରେ ପ୍ରଚୁର ଗାଳି ମାଡ଼ ଖାଇଲେ ବି ସେ ଥିଲା ନିର୍ଲିପ୍ତ ଓ ତା'ର ଅଭ୍ୟାସସବୁ ଥିଲା ଅପରିବର୍ତ୍ତିତ । ବରଂ ତା'ର ଏଇ ପାରଦର୍ଶିତାକୁ ସେ ନିଜର ଏକମାତ୍ର ଗୌରବ ବୋଲି ଭାବୁଥିଲା । ଥରେ ପାରୁ କଥାରେ ପଡ଼ି ସେ ବୁଲୁ ଓ ମଞ୍ଜୁ ସହ ମିଶି ଉଦୁଉଦିଆ ଖରାବେଳେ ଘରୁ ଲୁଚକି ଚାଲିଯାଇଥିଲା । ପେଣ୍ଟ୍ ପଛରେ ଦାଆଟେ ଖୋସି ପାରୁ ମାଙ୍କଡ଼ ପରି ଗାର୍ଲ୍ସ ସ୍କୁଲ ପଛପାଖ ଗୋଟେ ତାଳଗଛରୁ ଦି' ତିନି କାନ୍ଦି ତାଳସଜ ପାରିଥିଲା ଓ ଚେକା କାଟିକି ସେମାନଙ୍କ ହାତକୁ ବଢ଼େଇ ନିଜେ ଗୋଟେ ଖାଇଥିଲା । ଖାଉ ଖାଉ ଶିଖେଇ ଦେଇଥିଲା କେମିତି ତାଳସଜ ଭିତରର ଶସ ଓ ମିଠାପାଣି ସବୁକୁ ଖାଇବାକୁ ହୁଏ । ତାଳସଜ ଖିଆ ପରେ ଆମକୁ ଭଇଁଚ କୋଳି ଖାଇବାର ଲୋଭ ଦେଖେଇଥିଲା । ଗୋଟେ ଅରମା ରାସ୍ତାରେ ବାଟ କଢ଼େଇ ନେଇଥିଲା ବ୍ୟାପ୍‌ଟିଷ୍ଟ ଚର୍ଚ୍ଚ ପଛପଟ ଜଂଗଲିଆ ଛାଇଛାଇଆ ଜାଗାକୁ । ଗଛ ଛାଇରେ ସେମାନଙ୍କୁ ବସେଇ ଦେଇ ଏକୁଟିଆ କଂଟାଝଣ୍ଟାର ଜଙ୍ଗଲ ଆଡ଼େଇ କୁଆଡ଼େ ଅଦୃଶ୍ୟ ହେଇଯାଇଥିଲା । ନିଛାଟିଆ ଖରାବେଳଟାରେ ପାରୁର ଅନୁପସ୍ଥିତିରେ ଡର ମାଡୁଥିଲେ ବି ପବନରେ ଆମ ଆଖି ମୁଦି ହେଇଆସୁଥିଲା । ହେଲେ ଘରେ ବାପାମାନଙ୍କ ମୁହଁ ମନେ ପଡ଼ିବାରୁ ପାରୁକୁ ନ କହି ଘରକୁ ଫେରିବା କଥା ଭାବିଲା ବେଳକୁ ପାରୁ ତା' ଅଣ୍ଟିରେ ଅଣ୍ଟିଏ ପାଚିଲା ଭଇଁଚ କୋଳି ଧରି ପହଞ୍ଚିଲା । କୋଳି ଦେଖି ଘରକୁ ଫେରିବା କଥା ଆଉ ମନେପଡ଼ିଲାନି । କଣ୍ଟାରେ ଆଞ୍ଚୁଡ଼ି ହେଇ ପାରୁର ଦେହ ହାତରୁ ଠାଏ ଠାଏ ରକ୍ତ ଝରୁଥିଲା ଓ ଡାହାଣ ପାଦର ଗୋଇଠିରେ ବଡ଼ ଭଇଁଚ କଣ୍ଟାଟେ ଫୋଡ଼ି ହୋଇଯାଇଥିଲା । ଆମେ ଟିକେ ମନଦୁଃଖ କରି ଘରକୁ ଫେରି ଖୁବ୍ ଅସରାଏ ଲେଖାଁ ଗାଳି ଖାଇଥିଲୁ ସେଦିନ । ପାରୁର ଗୋଇଠି କିନ୍ତୁ ସେପ୍‌ଟିକ୍ ହେଇ ପାଚି ଯାଇଥିଲା । ଜ୍ୱରରେ ସେ ପନ୍ଦରଦିନ କାଳ ବିଛଣାରେ ପଡ଼ି ରହିଲା ପରେ ଡାକ୍ତରଖାନାରେ ଅପରେସନ୍ କରି ତା' କଣ୍ଟା କଢ଼ାଗଲା । ଛୋଟେଇ ଛୋଟେଇ ଗୋଡ଼ରେ ବ୍ୟାଣ୍ଡେଜ୍ ବାନ୍ଧି ସେ ଯେତେବେଳେ ପୁଣି ସ୍କୁଲ୍ ଆସିଲା ଭାରି ରୋଗିଣା ଦିଶୁଥିଲା ।

ପାରୁର ବସ୍ତାନିରେ ଦି' ଚାରିଟା ତାଳି ପଡ଼ିଥିଲା । ଉପର କ୍ଲାସ୍‌ର ପିଲାଙ୍କଠାରୁ ମାଗି ପୁରୁଣା ବହିରେ ସେ ପାଠ ପଢୁଥିଲା । ସବୁବେଳେ ସାର୍‌ଙ୍କ ଗାଳିମାଡ଼ ଖାଉଥିବା ପାରୁର ଗୁରୁତ୍ୱ କିନ୍ତୁ ବଢ଼ିଯାଉଥିଲା ସ୍କୁଲ୍‌ର କୌଣସି ଉତ୍ସବ ପୂର୍ବରୁ । ସରସ୍ୱତୀ ବା ଗଣେଶ ପୂଜାରେ ବାଉଁଶ ବୋହି ଆଣୁଥିଲା ପାରୁ; ଅଗଷ୍ଟ ପନ୍ଦର, ଜାନୁଆରୀ ଛବିଶିରେ ପତାକା ଉତ୍ତୋଳନ ପାଇଁ ଗାତ ଖୋଳୁଥିଲା ପାରୁ; ବାର୍ଷିକ ଉତ୍ସବ ବା ଅନ୍ୟ କିଛି ମିଟିଂ ବେଳେ ଚେୟାର ବେଂଚ୍ ବୋହିବାରେ ପାରୁ ଥିଲା ଆଗରେ । ସେତିକିବେଳେ କେବଳ ସାର୍‌ମାନଙ୍କଠାରୁ ମିଠା କଥା ଦିପଦ ଶୁଣୁଥିଲା ଯାହା । ଉତ୍ସବ ଦିନଗୁଡ଼ିକରେ ସେମାନେ ସବୁ ନୂଆ ଜାମା ପିନ୍ଧି ସ୍କୁଲ୍ ଆସୁଥିଲେ, କେତେ ମଜା

କରୁଥିଲେ । ପାରୁ କିନ୍ତୁ କେବେ ଆସୁନଥିଲା । ସେମାନଙ୍କର ବି ସେତେବେଳେ ପାରୁ କଥା ମନେ ପଡୁନଥିଲା ।

ପଞ୍ଚମ ଶ୍ରେଣୀ ବାର୍ଷିକ ପରୀକ୍ଷା ଚାଲିଥିବାବେଳେ ପାରୁ ବାପା ମରିଗଲେ ବଜ୍ରାଘାତରେ ଓ ସେ ଆଉ ପରୀକ୍ଷା ଦେବାକୁ ଆସିଲାନି । ସେତେବେଳେ ପାରୁର ଘର ବିଷୟରେ ସେମାନେ ସବୁକଥା ଶୁଣିଥିଲେ । ପରୀକ୍ଷା ପରେ ତାକୁ ଯାଇ ଦେଖା କରିବେ ବୋଲି ସେମାନେ କେତେଜଣ ଠିକ୍ କରିଥିଲେ । ହେଲେ ପରୀକ୍ଷା ପରେ ଖେଳରେ ମାତି ପାରୁ ବା ତା' ଘରକଥା ପୂରାପୂରି ଭୁଲି ଯାଇଥିଲେ ।

ପାରୁର ପୁଅ କାନ୍ଥକୁ ଆଉଜି ବାରଣ୍ଡାରେ ବସିଥିଲା । ପାରୁ ଖବରକାଗଜ ଓଜନ କରିସାରିଥିଲା । ପାରୁ ପଚାରିଲା, 'ଗଣୁଚନ୍ତିତ ମାଆ ! ଦୁଇକିଲୋ ପକେଇ ଥିଲି । ଉଣେଇଶି ଧଡ଼ାକୁ ମୋଟ ଅଠତିରିଶ କିଲୋ ହେଲା ।' ବାଣୀ ପ୍ରକୃତିସ୍ଥ ହେଲା । ଫେରିଆସିଲା ପୁରୁଣା ସ୍କୁଲରୁ ବର୍ତ୍ତମାନକୁ । ଗଳାକୁ ସହଜ କରି କହିଲା– 'ମୋତେ ଚିହ୍ନିପାରୁନ, ମୁଁ ବାଣୀ ପରା ! ମୋତେ ମାଆ ବୋଲି ଡାକୁଚ କ'ଣ ?' 'ଆପଣଙ୍କୁ ଦେଖୁ ଦେଖୁ ହିଁ ଚିହ୍ନିନେଲି । ହେଲେ ଭାବିଥିଲି ଚିହ୍ନା ଦେବିନି । ମୁଁ ସେଇ ପାରୁ ମିଆଁ ।' ବାଣୀର ସ୍ମୃତି ପୁଣି ଥରେ ଚହଲିଗଲା । ସେମାନେ କେମିତି ପିଲାବେଳେ ପାରୁକୁ 'ପାରୁ ମିଆଁ' କହି ଚିଡ଼ୋଉ ଥିଲେ ! ସିଏ ଆସୁଚି କହି ଭିତରକୁ ଗଲା ଓ ଦିଟା ପ୍ଲେଟ୍‌ରେ ବିସ୍କୁଟ, ମିକ୍ସଚର ଓ କଦଳୀ ଧରି ଫେରିଲା । ଯେତେ କହିଲେ ବି ପାରୁ ଖାଇଲାନି, ତା' ପୁଅ ଖାଇଲା । ପ୍ଲେଟ୍‌ଟା ଘରେ ରଖି ଆସି ପାରୁକୁ ସର୍ବତ ଗ୍ଲାସେ ବଢ଼େଇ ଦେଲା ବାଣୀ । ସର୍ବତ ପିଇ ସାରିଲା ପରେ ପାରୁ ହିସାବ ବୁଝେଇବା ଆରମ୍ଭ କଲା । ହେଲେ ବାଣୀ କହିଲା । 'ଭାରି ତ ହିସାବ କରୁଚୁ ପକ୍କା ବେପାରୀଟେ ପରି । ହିସାବ ଦବୁ ପଛେ, ଆଗେ ତୋ ଘରକଥା ସବୁ କହ ।'

ପାରୁ ଶୁଖିଲା ହସଟେ ହସି ଏକା ନିଶ୍ୱାସକେ କହିଗଲା ତା' ବାପା ମଲା ପରେ କେମିତି ସିଏ ପୁରୁଣା ବଜାର ମାରଓ୍ୱାଡ଼ି ପଟିରେ କାମ କରି ଘର ଚଳେଇଲା । ଭାଇ ଭଉଣୀଙ୍କି ଦି ଅକ୍ଷର ପଢ଼େଇଲା । ବଡ଼ ହେଲା ପରେ ସାନ ଭାଇକି ଗୋଟେ ଗେରେଜ୍‌ରେ ଗାଡି ରିପ୍ୟାରିଂ କାମ ଶିଖେଇ ଗୁମୁଟିଟେ ଭଡ଼ା ନେଇ ତା'ର ରିପ୍ୟାରିଂ ସପ୍‌ଟିଏ ଖୋଲେଇ ଦେଲା । ଭଉଣୀ ତିନିଟା ପାଠ ବିଶେଷ ପଢ଼ି ନଥିଲେ ବି ସୁନ୍ଦର ଥିବାରୁ ବିରାଦର ଭିତରେ ତାଙ୍କର ବାହାଘର ସୁବିଧାରେ କରେଇଦେଲା । କେମିତି ସେ ପରିସ୍ଥିତିରେ ପଡ଼ି ଅଠର ବର୍ଷରେ ବାହା ହେଲା । ତା' ମା' ଟି.ବି. ରୋଗରେ ପଡ଼ିଲା ପରେ ରୋଜଗାରିଆ ସାନଭାଇ କେମିତି ତା'ଠୁ ଭିନ୍ନେ ହୋଇ ଏବେ ଅଲଗା ଘର ବସେଇଲାଣି । ତା' କଥାରୁ ବାଣୀ ଜାଣିଲା କେମିତି ସେ ତା' ମା', ସ୍ତ୍ରୀ ଓ ଦୁଇ ପୁଅଝିଅର ନଅଣ୍ଟିଆ ସଂସାରକୁ ଏଇ ଠୁଙ୍ଗା ବେପାର କରି ଚଳାଉଚି । ପୁଅ ଝିଅ ମଦ୍ରସାରେ ନାଁ ଲେଖେଇଚନ୍ତି । ସବା ସାନଝିଅଟାକୁ ପୋଲିଓ । ବଡ଼ ପୁଅର ସ୍କୁଲରେ ନାଁ ଅଛି ଯେ ତା'ରି ପରି ଅଧେ ଦିନ ଯାଉଚି ତ ଅଧେଦିନ ଯାଉନି । ଅଧିକ ଦି'ପଇସା ରୋଜଗାର ପାଇଁ ପାରୁ ଘରେ ବିଡ଼ି ବି ମୋଡୁଚି । ଭଲ ବିଡ଼ି ମୋଡ଼େ ବୋଲି ତା' ବିଡି ଶୀଘ୍ର ବିକ୍ରୀ ହୋଇଯାଏ । ମାଆର ବେମାରକୁ ଟନିକ୍ ଦରକାର ଯେ ପାରୁ ଯୋଗେଇ ପାରୁନି । ପେଟରୁ କାଟି ବାପ ଅମଳର ପଲାକୁ ଭାଂଗି ନୂଆ ଘରଟେ ତୋଳିଚି ପାରୁ । କିନ୍ତୁ ତାଙ୍କ ପଡ଼ିଶୀ ଘର ସବୁ ଛପର ସରିଥିଲେ ବି ତା' ଘରେ ପାଣି ଗଳୁଚି । ଅକପଟ ଭାବେ ଏମିତି କେତେ କଥା ଗପି ସାରି ଡେରି ହେଲାଣି କହି ପାରୁ ହିସାବ ବୁଝେଇବାରେ ମନ ଦେଲା । କେତେକିଲୋ ଓଡ଼ିଆ କାଗଜକୁ କେତେ,

ଇଂରାଜୀ କାଗଜ ବାବଦକୁ କେତେ ଏମିତି ମୋଟ୍ ଶହେ ବାସ୍ତରୀ ଟଙ୍କା ଆଠଣା ହେଲା ହିସାବରେ ।
ବାଣୀ ଆଶ୍ଚର୍ଯ୍ୟ ହେଲା ଯେ ସ୍କୁଲରେ ଅଙ୍କ ଜମ୍ମାରୁ ଆସୁ ନଥିବାରୁ ସବୁବେଳେ ମାଡ଼ ଖାଉଥିବା ପାରୁ କେମିତି ମୁହେଁ ମୁହେଁ ନିର୍ଭୁଲ ହିସାବ କରିପାରୁଚି । ମନକୁ ମନ କହିଲା, 'ଜୀବନ ପାଖରୁ ଏମିତି ଅନେକ କଥା ଶିଖିଯାଇ ହୁଏ ଆପେ ଆପେ !'

ପାରୁ ଦଶଟଙ୍କିଆ ନୋଟ୍ ଦଶଟା ଦିଥର ଗଣି ବାଣୀ ହାତକୁ ବଢ଼େଇଲା । ବାଣୀ ମନେ ମନେ ଅସନ୍ତୁଷ୍ଟ ହେଲା ଓ ସେ କିଛି କହିବା ପୂର୍ବରୁ ପାରୁ କହିଲା– ଶହେ ଟଙ୍କା ରଖିଥାନ୍ତୁ, ଆଉ ବାସ୍ତରୀ ଟଙ୍କା ସଂଜବେଳେ ଦେମି । ଅଧେ କାଗଜ ଏଇନା ନେଇଯାଉଚି ଆଉ ଅଧକ ବାକି ପଇସା ଦେଇ ନେଇଯିମି । ବାଣୀ କହିଲା– 'ପଇସା ତ ସଂଜବେଳେ ଦବ, କାଗଜ ସବୁ ନେଇଯାଉନ ଏଇନା । ତମକୁ କ'ଣ ମୁଁ ଅବିଶ୍ୱାସ କରୁଚି ? ଯେତେହେଲେ ସାଙ୍ଗ ତ !' ସିଏ ଯେତେ କହିଲେ ବି ସବୁ କାଗଜ ନେଲାନି ପାରୁ । ଏକାବେଳକେ ସାଇକେଲ୍‌ରେ ନେଇ ହେବନି କହି ପାଖାପାଖି ଅଧେ ରଖିଦେଇ ଗଲା । ହେଲେ ପାରୁ ମିଆଁକୁ ଠିକ୍ ବୁଝି ପାରିଥିଲା ବାଣୀ । ମନେ ମନେ ଖୁସି ବି ହେଇଥିଲା ବେପାରରେ ସାଙ୍ଗ କ'ଣ ? ଏତେଗୁଡ଼େ କାଗଜକୁ ଏତିକି ଟଙ୍କା, ସେଥିରେ ପୁଣି ବାକି ରହିବ କିଆଁ ? ଯାହା ହେଇଚି ଭଲ ହେଇଚି ।

ହେଲେ ସଂଜରେ ପାରୁ ଆସିଲାନି । ପରଦିନ, ତା'ପରଦିନ ବି ନୁହେଁ । କାଗଜ ସେମିତି ତିନି ଚାରିମାସ ଥୁଆ ହେଲା । ପାରୁ ତଥାପି ଆସିଲାନି । ଶେଷରେ ସେ ବିରକ୍ତ ହୋଇ ଦିନେ ଆଉ ଜଣଙ୍କୁ କାଗଜଗୁଡ଼ା ବିକ୍ରୀ କରିଦେଲା । ତା'ପରେ ପୁଣିଥରେ ପାରୁ କଥା ପାସୋରି ଦେଲା ଯେମିତି ସେ ଭୁଲିଯାଇଥିଲା ପଞ୍ଚମ ଶ୍ରେଣୀ ବାର୍ଷିକ ପରୀକ୍ଷା ପରେ । ଟ୍ରେନ୍‌ରେ ଯାଉ ଯାଉ ସୁନ୍ଦର ଦୃଶ୍ୟଟେ, ପାହାଡ଼ଟେ କି ନଈଟେ ଦେଖିଲା ପରି, ଯାହା ସାମୟିକ ଭାବେ ଜଣକୁ ମୁଗ୍ଧ ବା ଅନ୍ୟମନସ୍କ କଲେ ବି ଆପେ ଆପେ ଭୁଲି ହେଇଯାଏ ପୁଣି ଥରେ ସେଇବାଟେ ଯିବା ପର୍ଯ୍ୟନ୍ତ ।

ଦିନେ ସଂଜରେ ଝିଅର ହାତ ଧରି ମନୋଜଙ୍କ ଜଣେ ସାଂଗ ଘରକୁ ବାଣୀ ବୁଲିବାକୁ ଯାଉଚି ହଠାତ୍ ଦେଖାହେଲା ପାରୁ ସହ । ଲୁଙ୍ଗି ଓ ପଞ୍ଜାବୀ ସାଙ୍ଗକୁ ମୁଣ୍ଡରେ ଧଳା ଟୋପି । ନମାଜ ସାରି ଫେରୁଥିଲା ବୋଧେ । ଦେଖୁ ଦେଖୁ ବହେ ଖୁସି ହେଲା । ଖୁବ୍ ଜିଦ୍ କଲା ତା' ଘର ଆଡ଼େ ଟିକେ ବୁଲି ଆସିବାକୁଁ । ବାଣୀ ପରେ କେବେ ଆସିବ ବୋଲି କହିଲା ତ' ପାରୁ କହିଲା– 'ନା ନା, ସେକଥା ହେବନି । ଘର ପାଖରୁ ଫେରିଗଲେ ଆଉ କ'ଣ ତୁମେ ଆମ ଘରକୁ ଆସିବ ? ମିଆଁ ଘରକୁ ଯାଇ ଖାଲି ବୁଲିଗଲେ ତୁମର ଜାତି ଯିବନି ।' ପାରୁର ସ୍ୱରରେ ଅଭିମାନ ମିଶି ଥିଲା । ବାଣୀ ଆଉ ଜିଦ୍ ନ କରି ତା' ପଛେ ପଛେ ଗଲା । ବାଟରେ ଗଲାବେଳେ ପାରୁ ଆପେ କହିଲା, 'ସେ ଯା' ଭିତରେ ଠୁଙ୍ଗା ଓ ବିଡ଼ି ତିଆରି ଛାଡ଼ି କ୍ୟାବିନ୍‌ଟେ କଲେଜ ରୋଡ୍‌ରେ ପକେଇଚି । ସେଠି ସାଇକେଲ୍, ରିକ୍ସା, ଷ୍ଟୋଭ୍, ଲାଇଟ୍ ଆଦି ମରାମତି କରୁଚି । ବଡ଼ ପୁଅକୁ ବି କାମ ଶିଖୋଉଚି । ସେ ପୁରୁଣା ବେଉସାରୁ ତା' ମନ ତୁଟିଗଲା ପେଟ ପୂରିଲାନି ବୋଲି । ବାଣୀର ମନେଥିଲେ ବି ଆର ଅଧା କାଗଜ କାହିଁକି ଆଣିବାକୁ ଗଲାନି ବୋଲି ଆଉ ପଚାରିଲାନି ।

ପାରୁ ମିଆଁର ନୁଆଁଣିଆ ଚାଳଘର ପାଖରେ ପହଞ୍ଚି ସାରିଥିଲେ ସେମାନେ । ବାଣୀକୁ ନମସ୍କାର କରି ପିଣ୍ଡାରେ ଦି'ଟା ଆସନ ପକାଇଦେଲା ପାରୁର ବଡ଼ପୁଅ । ତା' ସ୍ତ୍ରୀ ଓ ପିଲାଏ ପାରୁର ନିର୍ଦ୍ଦେଶରେ ବାଣୀକୁ ନମସ୍କାର କଲେ । ଏପରିକି ତା' ପୋଲିଓ ଗୋଡ଼ରେ ଘୁଷୁରି ଘୁଷୁରି ଆସି ସାନ ଝିଅଟି ବି ଧୀରେ କହିଲା– 'ନମସ୍ତେ ମାଁଜୀ ।' ବାଣୀ ମୁଗ୍ଧ ହେଲା ଯେ

ଅଭାବ ଭିତରେ ବି ପାରୁ ଘରେ ଜୀବନ ଅଛି । ନାହିଁ ନାହିଁ ଭିତରେ ବି ସୁଖ କୋଉଠି ଯେମିତି ଲୁଚି ବସିଚି । ବାଣୀ ଖୁସି ହେଲା । ତା' ସ୍ତ୍ରୀ ସହ ଦିପଦ କଥା ହେଲା । ପାରୁର ଅମ୍ମିକୁ ଭଲ ଦିଶୁନଥାଏ । ପାରୁ ତାକୁ ନେଇ ତା' ମା'କୁ ଚିହ୍ନେଇ ଦେଲା । ବୁଢ଼ୀ ଆଖିରେ ଦେଖି ନ ପାରିଲେ ବି ଶୁଣି ଭାରି ଖୁସି ହେଲା । ଡେରି ହେଲାଣି କହି ବାଣୀ ସମସ୍ତଙ୍କଠାରୁ ବିଦାୟ ନେଇ ଫେରିବାକୁ ପାଦ ବଢ଼ୋଉଚି ପାରୁ ମିଆଁର ସାନପୁଅ ଆସିଲା ଝାଳ ସରସର ହେଇ । ତାକୁ ତା' ବାପା ଚିହ୍ନେଇ ଦେଲା ପରେ ସେ ବି ହାତ ଯୋଡ଼ିଲା । ବାଣୀ ଚାହିଁଲା, ଅବିକଳ ପଚିଶି ବର୍ଷ ତଳର ପାରୁ ପରି ! ପାରୁ ପଚାରିଲା, 'ବେଟା, କ୍ୟା ଲାୟା ?' ଲାଜ ଲାଜ ହୋଇ କିଛି ସମୟ ପରେ ତା' ପକେଟ୍‌ରୁ ଦି'ଟା ଭଇଁଚ କୋଳି କାଢ଼ି ଦେଖାଇଲା । ପାରୁ ସେତକ ତା' ହାତରୁ ନେଇ ବାଣୀର ଆଂଜୁଳାରେ ଦେଲା। କହିଲା– 'ଆମ ଘରେ ତ ତୁମେ କିଛି ଖାଇବନି । ଏଇ ଦିଟା ନିଅ । ଖାଇ ନଥିବ ଅନେକ ଦିନରୁ । ଏଇ ଟୋକାଟା ମୋରି ପରି ଖରାବେଳ ତମାମ୍ ଯା ବାରି ତା' ବାରି ବୁଲୁଚି, ବୋଲୁଅ ଫିଙ୍ଗୁଚି ଯେ ପୂରା ଓସ୍ତାଦ୍ । ଯେତେ କହିଲେ ବି ଶୁଣେନି କାହା କଥା ।' ବାଣୀ କିଛି ଶୁଣିପାରୁ ନଥିଲା ।

ପାରୁ ମିଆଁକୁ ପଛ କରି ବାଣୀ ରାସ୍ତାରେ ଆଗେଇଲାବେଳେ ତାକୁ ଲାଗୁଥିଲା, ତା' ଆଂଜୁଳାରେ ଯେମିତି ଭଇଁଚ କୋଳି ନାହିଁ; ଅଛି ଆଂଜୁଳାଏ ଉଷ୍ମତା, ମୁଠାଏ ଆନ୍ତରିକତା, ପୁଳାଏ ନିବିଡ଼ତା । କୋଳି ଦିଟା ପାଟିରେ ପକେଇବାକୁ ଇଚ୍ଛା କଲା ତ' ମନକୁ ମନ କହିଲା– 'ନା, ଥାଉ । ଏମିତି ଏକ ନିଆରା ଅନୁଭବକୁ ନିଃଶେଷ ହେବାକୁ ଦେବିନି ଏତେ ଶୀଘ୍ର !' ଭାବିଲା, ଏଇ କୋଳିମାନଙ୍କୁ ସତେଜ କରି ରଖି ହୁଅନ୍ତାକି ଅନନ୍ତ କାଳ ଯାଏଁ ଡ୍ରଇଂ ରୁମ୍‌ରେ ଥିବା ଆକ୍ୱାରିୟମ୍‌ରେ ଖେଳୁଥିବା ଲାଲ୍ ମାଛ ଭଳି ! ବା ପିରାମିଡ୍‌ରେ ସଯତ୍ନ ସାଇତା ମମି ପରି !!



# ଅମୃତ ପୃଥିବୀ ଓ ମୃତ ମଣିଷମାନଙ୍କ କଥା

## ଅରବିନ୍ଦ ରାୟ

ପଦ୍ମନାଭ ଅଫିସରୁ ଫେରିଲାବେଳେ, ହାତରେ ଯୋଉ ବ୍ୟାଗଟି ଆଣିଥିଲେ, ତା' ଭିତରେ ଥିଲା କିଲେ ଦେଢକିଲ ବାଇଗଣ, ଦି'ଟା ଫୁଲକୋବି, ଗୋଟିଏ ଅମୃତାଞ୍ଜନ ଶିଶି ଓ ଚଟିବହି ଖଣ୍ଡେ ।

ସୀତାଦେବୀ ବ୍ୟାଗରୁ ପରିବା କାଢି ଡାଲାରେ ସଜାଡି ରଖୁ ରଖୁ କହିଲେ- ହଇଓ ଯେ କି ବହି କିଓ ?

'ମୃତ୍ୟୁ ପରେ ଜୀବନ' ପରା । ହ୍ୟାଙ୍ଗରରେ ପ୍ୟାଣ୍ଟ ଓ ଗଞ୍ଜି ସଜାଡି ରଖୁ ରଖୁ ପଦ୍ମନାଭ ବେପରୱା ସୁରରେ, ବହିଟି ସମ୍ପର୍କରେ କହିଲେ । ସୀତାଦେବୀ ରାତି ରୋଷେଇ ପାଇଁ ହିଟରରେ ପାଣି ବସେଇଲେ । ବଡପୁଅ ର୍ୟାକେଟ୍ ଧରି ବ୍ୟାଡ୍‌ମିଣ୍ଟନ ଖେଳିବାକୁ ଚାଲିଗଲା । ସାନପୁଅ ତଥାପି ଖଟିରୁ ଫେରିନି । ଝିଅ ଯାଇଛି ପଡ଼ିଶାଘର ଆଣ୍ଟି ପାଖକୁ, ସ୍ୱେଟରବୁଣା ଶିଖିବାକୁ । ଘରର କାମଦାମ କରିବାକୁ ଏଇ ଦଶବାର ଦିନ ହେଲା ଶାଶୁଘର ଗାଆଁରୁ ଆସିଥିବା ରୋଗୀଣା ଟୋକା ନରିଆ ବାରିପଟେ ଗୁହାଳ ପୋଛୁଚି ।

ପଦ୍ମନାଭ, ବାଥ୍‌ରୁମ୍‌ରୁ ମୁହଁ ହାତ ଧୋଇ ବାହାରକୁ ଆସୁ ଆସୁ କହିଲେ– ବୁଝିଲ, ଏ ବହିଟା ଆଜି ପୂରା ପଢିଲି । କି ଲେଖା । ଅମୃତ ତ ! ଆଃ !

: ଏ କେମିତି କଥା ମ ।

ସୀତାଦେବୀ ତାଙ୍କ ଚିରାଚରିତ ଅବୁଝା ଢଙ୍ଗରେ ପଚାରିଲେ ।

କିଓ ! ଝିଅକୁ କହୁନ ପଢି ତୁମକୁ ବୁଝେଇ ଦବ- ବହିରେ ପରା ସଫା ଲେଖା ଅଛି ଯେ ଜନ୍ମ ମିଥ୍ୟା- ମୃତ୍ୟୁ ସତ୍ୟ । ଏ ଆତ୍ମା କେବେ ମରେ ନାହିଁ, କେବଳ ନାନାଦି ରୂପରେ ଜନ୍ମ ନେଉଥାଏ । ଆଜି ମୋ ରୂପରେ, କାଲି ତମ ରୂପରେ, ପଅର ଦିନ ନରିଆ ରୂପରେ, ଅପର ଦିନ ମେଣ୍ଢା ରୂପରେ, ବିଲେଇ ରୂପରେ, ପିମ୍ପୁଡି ରୂପରେ... ।

"ମା' ମୁଁ ଟିକେ ଧୋଇଧାଇ ହୋଇ ଆସେ ।" ସୀତାଦେବୀଙ୍କୁ ଜୀବନ ଓ ମୃତ୍ୟୁ ସମ୍ପର୍କରେ ପଦ୍ମନାଭ ତାତ୍ତ୍ୱିକ ଆଲୋଚନା ଶୁଣାଉଥିବା ବେଳେ ଗୁହାଳ ପୋଛିସାରି ନରିଆ ଦୁଆରକୁ ଆସି କହିଲା । ନରିଆକୁ ଦେଖୁ ଦେଖୁ ପଦ୍ମନାଭଙ୍କ ଆଖି ଦିଓଟି ଚିଲ ଆଖି ପରି ଆହୁରି ଶାଣିତ ଦିଶିଲା ଓ ନରିକୁ ପାଖକୁ ଡାକୁଡାକୁ ସେ କହିଲେ, ବୁଝିଲୁ ବାପ ନରି । ଏ ଯୋଉ ଦେହ ଧୋଇବାକୁ ଯାଉଛୁ, ଏ ସବୁ ଅଳୀକ ।

ନରି, ପଦ୍ମନାଭଙ୍କ ମୁହଁକୁ ବୋକାଙ୍କ ପରି ଚାହିଁଲା ।

ବୁଝିଲୁ ବାପ ! ଆତ୍ମା କେବଳ ଅଜର ଅମର ।

ତଥାପି ନରି ମୁହଁରୁ ସେ ବୋକା ଭାବଟି କଟୁ ନ'ଥାଏ ।

ଶାସ୍ତ୍ର ପରା କହିଲା– ମରିଗଲେ ଦୁଃଖ କରିବ ନାହିଁ– ଜନ୍ମ ହେଲେ ସୁଖର ବି କିଛି କାରଣ ନାହିଁ ।

ନରି ବୁଝିଲା, ବାବୁ ଯାହାସବୁ କହୁଛନ୍ତି, ସେ ସବୁ ତା' ପାଇଁ ନୁହେଁ ବୋଧେ । ତେଣୁ ସେଠୁ ଚାଲି ଯାଉ ଯାଉ ସେ କହିଲା, ମା' ବାଲ୍‌ଟିଟା ଦିଅ, ବାହାର ଟ୍ୟାପ୍‌ରୁ ପାଣି ଆଣିଦେବି ।

ପଦ୍ମନାଭ କହିଲେ, ଥାଉ । ବାହାର ପାଣି ଓ ଘର ପାଣି ଭିତରେ କିଛି ତଫାତ୍ ନାହିଁ । ସବୁ ଈଶ୍ୱରଙ୍କ ଦାନ, ବୁଝିଲୁ ବାପ ନରି । ଏ ଜୀବନ ପାଣିଫୋଟକା ସମାନ । ଏଇ ମୁହୂର୍ତ୍ତରେ ଅଛି, ଆଉ ମୁହୂର୍ତ୍ତରେ ନାହିଁ ।

ସୀତାଦେବୀ କହିଲେ, ଆଚ୍ଛା ବହିଖଣ୍ଡେ ପଢ଼ିଲ ଯେ ଏକାବେଳକେ ବାଆଜୀ ହେଇଗଲ ।

ପଦ୍ମନାଭ, ସୀତାଦେବୀଙ୍କ କଥାରେ ସାମାନ୍ୟ ବିରକ୍ତ ହେବା ପରି ମୁହଁଟି କଲେ ଓ ଭଙ୍ଗା ବେତଚୌକିରେ ଧ୍ୟାନମଗ୍ନ ଋଷିଟିଏ ପରି ବସି ବସି, ଅନ୍ୟମନସ୍କ ଭାବେ କାକରଭିଜା ଆକାଶକୁ ଚାହିଁଲେ ।

ସୀତାଦେବୀ କହିଲେ, ଚା' ପିଇବ ?

ଉହୁଁ ।

ରାତିରେ ରୁଟି ଖାଇବ ନା ଭାତ ?

ପେଟଟା କାଇଁ ଭଲ ଲାଗୁନି, ସେମିତି ଅନ୍ୟମନସ୍କ ଭାବେ ଓଦା ଆକାଶକୁ ଚାହୁଁ ଚାହୁଁ ପଦ୍ମନାଭ କ୍ଷୀଣ ସ୍ୱରରେ କହିଲେ ।

ରାତିରେ ଉପାସ ଶୁଅନ୍ତି ନାହିଁ– ଦି'ପଟ ରୁଟି କରିଦେଉଛି । ସୀତାଦେବୀ ସଂକ୍ଷିପ୍ତ ପ୍ରସ୍ତାବଟି ଶୁଣେଇ ଦେଇ ରୋଷେଇ ଘରକୁ ଚାଲିଗଲେ ।

ପଡିଶା ଘରୁ ସ୍ୱେଟରବୁଣା ଶିଖି ଝିଅ ଆସିଲା ଓ ବାପାଙ୍କୁ ଦେଖୁ ଦେଖୁ ନାକ ସୁଁ ସୁଁ କରି କହିଲା, ବାପା, ଉଲ୍ ମିଳିଲା ?

ପଦ୍ମନାଭ ଚମକି ପଡି କହିଲେ, କାଲି ମିଳିବ ।

ଝିଅକୁ ତାଙ୍କର ଏମିତି ଖାମ୍‌ଖିଆଲି ଉତ୍ତର ସନ୍ତୋଷ ଦେଲା ନାହିଁ କି କ'ଣ ପାଦକୁ କଚାଡ଼ି ସେ ତା' ଶୋଇବା ଘର ଭିତରକୁ ଚାଲିଗଲା ।

ବାହାରୁ ବାଲ୍‌ଟିଏ ପାଣି ଧରି ନରି ଆସିଲା ଓ ପଦ୍ମନାଭଙ୍କ ସାମ୍ନା ଦେଇ ରୋଷେଇ ଘର ଆଡକୁ ଗଲାବେଳେ ପଦ୍ମନାଭ ତାକୁ କଅଁଳେଇ ଡାକି କହିଲେ, ବାପ ନରି କିରେ, ଟିକେ ଶୁଣିବୁ ?

ନରି ବାଲ୍‌ଟିଟା ରଖିଦେଇ ଆସିଲା ଓ ପଦ୍ମନାଭଙ୍କ ପାଦ ପାଖରେ ହାତ ଯୋଡି ବସିଲା ।

ପ୍ରବଚନ ଦବା ଭଙ୍ଗୀରେ ପଦ୍ମନାଭ ଚଉକି ଉପରେ ଚକାମାଡି ବସିଲେ ଓ ନରିର କାନ ପାଖକୁ ସାମାନ୍ୟ ଝୁଙ୍କି ପଡ଼ି ପଚାରିଲେ, ଜୀବନ ଆଉ ମୃତ୍ୟୁ କ'ଣ ଜାଣିଛୁ ?

ନାଇଁ ଆଜ୍ଞା ।

ଧରିନେ, କାଲି ସକାଳେ ତୁ ଏଠୁ କୁଆଡେ ପଳେଇବୁ । ତୋ ବାପା ବୋଉ ପ୍ରଥମେ କ'ଣ ଭାବିବେ, କହିଲୁ ?

ଭାବିବେ ମୁଁ ରାଗିକି କୁଆଡେ ପଳେଇଛି ।

ତା'ପରେ ?

ତା'ପରେ ମତେ ଖୋଜିବେ ।

ହଁ, ଯଦି ନ ପାଇବେ ?

ନରିର ମୁହଁଟି ଏଥର କାନ୍ଦକାନ୍ଦ ଦିଶିଲା । ସେ ପୁଣି ବୋକାଙ୍କ ପରି ପଚାରିଲା, ମୁଁ ଆଜ୍ଞା, କୁଆଡେ କାଇଁକି ଯିବି ?

ପଦ୍ମନାଭ ତା'ର ଆହୁରି ପାଖକୁ ଲାଗି ଆସି କହିଲେ, ନାଇଁରେ ନରି ତୁ କାହିଁ କୁଆଡେ ଯିବୁ । ମୁଁ ସେମିତି ପଚାରୁଥିଲି ନା ।

ସୀତାଦେବୀ ଟିକେ କାମରୁ ନିଶ୍ୱାସ ମାରିବା ପାଇଁ ରୋଷେଇ ଘରୁ ବାହାରି ଆସି ପଦ୍ମନାଭଙ୍କ ପାଖ ଚୌକିରେ ବସୁ ବସୁ କହିଲେ, ବୁଝିଲ, ଆଜି ମନଟା କାଇଁ ଭଲ ଲାଗୁନି । ପଦ୍ମନାଭ ଏଥର ହୋ ହୋ ହେଇ ବହେ ହସିବା ପରେ କହିଲେ ସେଇ ବହି । ସେଇଥିରେ ସଫା ଲେଖା ଅଛି, ମନ ଫନ କିଛି ନୁହେଁ । ଦେହ ଥିବା ଯାକେ ଜାଣ ମନ । ଦେହ ଥରେ ସରିଗଲେ, ସବୁ କଥା, କହିଲା ଭଳିଆ, ଛ'ରେ ହ୍ରସ୍ୱ ଉ- ଛୁ ।

ନରି ସେମିତି ଜୁଳୁଜୁଳୁ କରି ପଦ୍ମନାଭଙ୍କ ମୁହଁକୁ ଚାହୁଁଥାଏ । ପଦ୍ମନାଭ ଗଳା ଝାଡି ପୁଣି ଥରେ ଆରମ୍ଭ କଲେ, କିଓ, ମନ ଫନ ପୁଣି କ'ଣ ? ଶାସ୍ତ୍ର କହିଲା ପରା, ପାଣି ଫୋଟକା ସମାନ ଜୀବନ । କିରେ ନରି, କହୁନୁ ?

ହଁ ଆଜ୍ଞା, ସେୟା ନୁହେଁ ଆଉ କ'ଣ ?

ନରିଠାରୁ ଏମିତି ପ୍ରତିକ୍ରିୟାକୁ ପଦ୍ମନାଭ ଆଶା କରୁଥିଲେ ବୋଧେ । ଦ୍ୱିଗୁଣ ଉତ୍ସାହରେ ସେ କହିଲେ, ତୁ କହିଲୁ, ତୁ ଏବେ ଏଠି ବସିଛୁ । କାଲି ସକାଳୁ ଥିବୁ ବୋଲି କିଛି ଗ୍ୟାରେଣ୍ଟି ଅଛି ?

ନାଇଁ ଆଜ୍ଞା ।

ପଦ୍ମନାଭ ଅନୁଭବ କଲେ, ତେରବର୍ଷର ଏଇ କିଶୋର ନରି ଖାଲି ସରଳ ନୁହେଁ, ଖୁବ୍ ବିଶ୍ୱାସୀ ବି ।

ପଦ୍ମନାଭଙ୍କ ଆଖି ଦିଓଟି ସ୍ୱପ୍ନପ୍ରବଣ ହେଇ ଉଠିଲା । ନରିକୁ ଚାହୁଁ ଚାହୁଁ ତାଙ୍କ ନାକପୁଡା ଦିଓଟି ଅସମ୍ଭବ ଭାବେ ଫୁଲି ଉଠିଲା । ସେ ଅନୁଭବ କଲେ, ତାଙ୍କ ତଣ୍ଟି ପାଖରୁ ଭାଷା ସବୁକୁ କିଏ ଯେମିତି ରୁନ୍ଧି ଦଉଛି । ନରିର ସରଳ ନିଷ୍ପାପ ମୁହଁଟିକୁ ଚାହୁଁ ଚାହୁଁ ସେ ଅନ୍ୟମନସ୍କ ହୋଇ ପଡ଼ିଲେ ।

ନରି କହିଲା, ବାବୁ ପାଦରେ ତେଲ ଘଷିଦେବି ।

ପଦ୍ମନାଭ କିଛି କହିଲେନି, ଅଥଚ ନରିର ମୁହଁକୁ ଖୁବ୍ କରୁଣ ଦୃଷ୍ଟିରେ ଚାହିଁଲେ ।

ବାବୁ ପାଦ ଚିପି ଦେବି ?

ନାଇଁରେ ନରି ! ତୁ ଆଉ ମାୟା ଲଗାନା କହିଲି ପରା, ସବୁ ଏଠି ମାୟା, ବାପା, ମା' ଭାଇ, ଭଉଣୀ ସମସ୍ତେ ପରା ।

ନରି ପୁଣି ଚୁପ୍ ହେଇଗଲା ।

ଗୀତାରେ ପରା ଭଗବାନ କୃଷ୍ଣ ଅର୍ଜୁନଙ୍କୁ କହିଲେ, ବାପା, ଭାଇ, ବନ୍ଧୁ ଯାହାକୁ ମାରିଲେ ବି ପାପ ନାହିଁ ।

ମୋ ବାଆ କହୁଥେଲା ପିମ୍ପୁଡି ମାଇଲେ ବି ପାପ ।

ଛେନା ଗୁଡ । ଏଇ ଶବ୍ଦ ଦି'ଟାକୁ ଏଡେ ଜୋରରେ କହିଲେ ଯେ ଏକାବେଳକେ ନରି ଓ ସୀତାଦେବୀ ଚମକି ପଡିଲେ ।

ନରି କିଛି ନ' କହି ଥମ ଥମ ମୁହଁରେ ଥରେ ସୀତାଦେବୀଙ୍କୁ ଥରେ ପଦ୍ମନାଭଙ୍କୁ ଚାହିଁଲା ।

ସୀତାଦେବୀ କହିଲେ, ଭୋକ କଲାଣି କିରେ ?

ନରି ମୁଣ୍ଡ ହଲାଇ ମନା କଲା ।

"ଆଉ ଶଳା ମୁହଁଟାକୁ ସେମିତି ଧାନଉସୁଆଁ ହାଣ୍ଡିଭଳିଆ କରିଛୁ କାଇଁକି ?" ପଦ୍ମନାଭ ପ୍ରଥମଥର ନରି ଉପରେ ବିରକ୍ତ ହେବା ପରି ପଚାରିଲେ ।

ନରି ଭେଁ କିନା କାନ୍ଦୁ କାନ୍ଦୁ କହିଲା, ମୋ ବୋଉ କଥା ମନେ ପଡୁଛି ।

ସୀତାଦେବୀ କହିଲେ, "ଭୋକ କଲାଣି ବୋଧେ, ଆଇଲୁ, କ'ଣ ଦି'ଟା ଖାଇଦେବୁ ।

ନରି ପୁଣି କଇଁ କଇଁ ହୋଇ କାନ୍ଦିଲା ।

ପଦ୍ମନାଭ ଏଥର ତାକୁ ହାତ ଉଞ୍ଚେଇ ଚଢ଼ା ଗଳାରେ କହିଲେ, ହେ ଶାଲା, କାଇଁ ଏମିତି ବିଲୁଆଙ୍କ ଭଳି ରଡି ଛାଡ଼ିଛୁ ?

ମୁଁ ଗୋଟାଏ ବଣିଚଢେଇ ମାରି ଦେଇଥିଲି ବୋଲି ମୋ ବାଆ କହିଲା, ପାପ କାମ କାଇଁକି କଲୁ ? ଘରୁ ବାହାର । ମତେ କେତେ ବାଡେଇଲା । ମୋ ବୋଉକୁ ବି ବାଡେଇଲା । ମୋ ବୋଉ କଥା ମନେ ପଡୁଛି ।

ପଦ୍ମନାଭ ଏତେ ବେଳକେ ନରିର କାନ୍ଦିବାର କାରଣ ବୁଝିଲେ ଓ ପାପ-ପୁଣ୍ୟର ସଂଜ୍ଞା ଖୋଜୁ ଖୋଜୁ ସେ ଯେ କିଛି ପରିମାଣରେ ପାପ ଆଡକୁ ଢଳିଛି, ଏ କଥା ବୁଝିବା ପରେ ସେ ମନେ ମନେ ଆମୋଦିତ ହେଲେ ।

ସୀତାଦେବୀ ନରିକୁ ରୋଷେଇ ଘର ପାଖକୁ ଡାକିନେଇ ଚାଲି ଯିବାର ବହୁ ସମୟ ପର୍ଯ୍ୟନ୍ତ ପଦ୍ମନାଭ ସେମିତି ଫାଙ୍କା ଦୃଷ୍ଟିରେ ଆକାଶକୁ ଚାହିଁ ବସିଲେ ।

ପଦ୍ମନାଭଙ୍କର ଏମିତି ଅସ୍ୱାଭାବିକ ଆଚରଣରେ ସୀତାଦେବୀ ଏତେ ବିରକ୍ତ ହେଇଯାଇଥିଲେ ଯେ ରାତିରେ ସମସ୍ତେ ଖାଇ ଶୋଇବାକୁ ଯିବା ପର୍ଯ୍ୟନ୍ତ ସେଇ ବିରକ୍ତି ଭାବ ତାଙ୍କ ମୁହଁରୁ କଟୁ ନ'ଥାଏ । ରାତିରେ ସମସ୍ତେ ଶୋଇଯିବା ପରେ ଢେର୍ ସମୟ ଫାଙ୍କା ଦୃଷ୍ଟିରେ ଘର ଛାତକୁ ଚାହିଁ ଚାହିଁ ପଦ୍ମନାଭ ଅନିଦ୍ରା ହେଲେ ଓ କ'ଣ ଭାବି ପୁଣି ସୀତାଦେବୀଙ୍କୁ ହଲେଇ ଦେଇ କହିଲେ, ହେଇଟି, ଆମ ଅଫିସ୍ ପାଖକୁ ଆଜି ଜଣେ ସାଧୁ ଆସିଥିଲେ ।

ସୀତାଦେବୀ କିଛି କହିଲେନି ।

: ଏପାରି ଗଛକୁ ସେପାରିକୁ ନେଇଯିବେ ।

ସୀତାଦେବୀ କଡ ଲେଉଟାଇ ପ୍ରତିକ୍ରିୟାହୀନ ହେବାର ଆଚରଣ କଲେ ।

ସେ ଏମିତି ମନ୍ତ୍ର ଜାଣିଛନ୍ତି ଯେ ଯାହାକୁ ଚାହିଁବେ, ତାକୁ ରାତାରାତ୍ କୋଟିପତି କରିଦେବେ ।

ସୀତାଦେବୀ କହିଲେ, ରାତି ବେଶି ହେଲାଣି, ଶୋଇପଡ ।

ପଦ୍ମନାଭ ଭାବିଲେ ସ୍ତ୍ରୀଙ୍କୁ ତାଙ୍କର ଏସବୁ କଥା ମିଛ ମନେ ହଉଛି । ତେଣୁ କିଛି ସମୟ ନୀରବ ରହିବା ପରେ ସ୍ୱଗତୋକ୍ତି କଲାପରି ସେ କହିଲେ, ଆମ ଅଫିସ୍‌ର ମହାନ୍ତିବାବୁ କୁଆଡେ ସେଇ ସାଧୁଙ୍କ ଯୋଗୁ ଆଜି ଏତେବଡ । ଦି' 'ତିନିଜଣ ବଡ ଅଫିସର ଆଉ ମନ୍ତ୍ରୀ ବି ତାଙ୍କରିଠୁ କବଚ ନେଇଛନ୍ତି ।

ସୀତାଦେବୀ ବିରକ୍ତ ହେଲାପରି କହିଲେ, ଓହୋ, କାଇଁ ଏମିତି ରାତି ସାରା ଯାତୁ ସ୍ୟାତୁ ଗପୁଛ ? ପଦ୍ମନାଭ ଅଭିମାନିଆ ସ୍ୱରରେ କହିଲେ, ହଁ ଆମେ କୋଉ ଦେଖିଛୁ ନା ଜାଣିଛୁ, ଶୁଣିବା କଥା ।

ସୀତାଦେବୀ ଭାବିଲେ, ଏଥର ପଦ୍ମନାଭ ବୋଧେ ଶୋଇ ପଡିବେ । ହେଲେ, କେଇ ମୁହୂର୍ତ୍ତର ନୀରବତା ପରେ ପଦ୍ମନାଭ ପୁଣି ଗଣଗଣିଆ କଣ୍ଠରେ କହିଲେ, ଲୋକେ କହୁଥିଲେ, ସାଧୁଙ୍କ କବଚକୁ ନେଇ ଯଦି ବିଧି ମୁତାବକ କାମ କରିଦେବ, ତେବେ ଯାହା ଚାହିଁବ, ତା' ପାଇବ ।

ହଁ, ଅଇଖା ତମେ ପ୍ରଧାନମନ୍ତ୍ରୀ ହେଇଯିବ । ପଦ୍ମନାଭଙ୍କୁ ଛିଗୁଲେଇଲା ପରି ଏତକ କହି ସୀତାଦେବୀ ଚୁପ୍ ହେଇଗଲା ବେଳକୁ ପଦ୍ମନାଭ ଜୋର୍ କରି କହିଲେ– ପ୍ରଧାନମନ୍ତ୍ରୀଟା କୋଉ ବଡ କଥା କି ?

ସୀତାଦେବୀ ଏଥର କଡ ଲେଉଟାଇ ସାମାନ୍ୟ ଉତ୍କଣ୍ଠାରେ ପଚାରିଲେ, ତମେ ଆଜି ସେ ସାଧୁଙ୍କ ପାଖକୁ ଯାଇଥିଲ କି ?

ପଦ୍ମନାଭ ଛେପ ଢୋକି କହିଲେ, ଶୁଣୁଚି, ସେ ସାଧୁ ଯୋଉ କବଚ ଦେବେ, ସିଏ ବାରଘଣ୍ଟାରେ ଫଳ ଫଳେଇବ ।

ତଥାପି ସୀତାଦେବୀ ପଦ୍ମନାଭଙ୍କଠାରୁ ସେଇ ନିର୍ଦ୍ଦିଷ୍ଟ କଥାଟି ଜାଣିବା ପାଇଁ ଚାହୁଁଥାନ୍ତି । ପଦ୍ମନାଭ କିନ୍ତୁ ପ୍ରସଙ୍ଗ ବଦଳାଇ କହିଲେ, 'ଗୁରୁବାର ହୋଇଥିବ, ଯୋଗକୁ ସେଦିନ ଅମାବାସ୍ୟା ବି ହୋଇଥିବ । ସେଦିନ ଠିକ୍ ରାତି ବାରଟା ବେଳକୁ ତମେ ଅଣ୍ଟାରେ ଖାଲି ଖଣ୍ଡେ ବସ୍ତ୍ର ପିନ୍ଧି ବାହାରିବ । ରାତି ବାରଟା ବାଜିବା ମାତ୍ରେ ଗୋଟାଏ ମଣିଷକୁ ମାରି ତା' ରକ୍ତରେ ଯଦି କବଚକୁ ଗାଧେଇ ଦବ, ତେବେ ରାତାରାତ୍ ସିଦ୍ଧି । ସକାଳୁ ଯାହା ଚାହିଁବ, ପାଇବ ।

ପଦ୍ମନାଭଙ୍କ କଥା ଶୁଣି ସୀତାଦେବୀ ଚମକି ପଡିଲେ କାରଣ ସେଇଦିନ ହିଁ ଥିଲା ଗୁରୁବାର ଓ ଅମାବାସ୍ୟା । ସେ ପଦ୍ମନାଭଙ୍କୁ ଥରେ ଆଲୁଅ ଲଗେଇ ଦେଖିଲେ ଓ ନେହୁରା ହେଲା ପରି କହିଲେ, ତମକୁ ମୋ ରାଣ, କହିଲ, ତମେ ସେ ସାଧୁଙ୍କ ପାଖକୁ ଯାଇନ ତ ?

ପଦ୍ମନାଭ ଆଲୁଅ ଲିଭୋଉ ଲିଭୋଉ କହିଲେ– ଶୋଇପଡ, ତମକୁ ମୁଁ ମିଛ ଗୁଲିଟାଏ ଶୁଣାଉଥିଲି । ଆମ ଭାଗ୍ୟରେ ଯାହା ଥିବ, ଥିବ । ସେ ସାଧୁସନ୍ନ୍ୟାସୀରୁ କ'ଣ ମିଳିବ ?

ପଦ୍ମନାଭଙ୍କଠାରୁ ଏମିତି ଏକ ସାନ୍ତ୍ୱନା ଶୁଣି ସୀତାଦେବୀ ପୁଣି ଥରେ ଠାକୁରଙ୍କ ଉଦ୍ଦେଶ୍ୟରେ ହାତ ଯୋଡିଲେ ଓ ଛୁଆଙ୍କ ପରି ପଦ୍ମନାଭଙ୍କ କୋଳ ଭିତରେ କୁଙ୍କୁରି କାଙ୍କୁରି ହେଲେ ।

ପଦ୍ମନାଭ ବୁଝିଲେ, ସୀତାଦେବୀଙ୍କୁ ସବୁକଥା କହିଦେବା ଉଚିତ ହେଇନାହିଁ । ତେଣୁ ପୁଣି ଥରେ ହୋ ହୋ ହେଇ ହସିଦେଇ କହିଲେ, ବୁଝିଲ ଆମେ ହେଲୁ ମହା ଇୟେ ଲୋକ । ଆମେ ସେ ବାଆଜୀ ଫାଆଜୀ କଥାରେ ପଟିବା ଲୋକ ନୁହେଁ । ହେଲେ ଶାସ୍ତ୍ର କହୁଛି, ମଣିଷ ମାରିଲେ ପାପ ନାହିଁ ।

ସୀତାଦେବୀ କହିଲେ, ସେ ଶାସ୍ତ୍ର ଚୁଲିକୁ ଯାଉ । ଆମର ସେକଥା ଭାବିଲେ ବି ପାପ ।

ପଦ୍ମନାଭ କଡ ଲେଉଟାଇ ଶୋଇବାର ଉପକ୍ରମ କରୁ କରୁ ଦୀର୍ଘଶ୍ୱାସ ପକେଇ କହିଲେ, କ୍ୟାପିଟାଲ୍‌ରେ ଖଣ୍ଡେ ଜମି ଆମ ଭାଗ୍ୟରେ ନାହିଁ ।

ସୀତାଦେବୀ କହିଲେ, ଆମର ଦର୍କାର ନାହିଁ ।

ଶଳା ଯେତେ ଡାକ୍ତର, ଇଂଜିନିୟର, ଆଇ.ଏ.ଏସ୍. ଜୋଇଁ ସବୁ ବଡ଼ବଡ଼ିଆଙ୍କର । ଆମ ଝିଅମାନଙ୍କ ପାଇଁ ବେପାରୀ ନହେଲେ କିରାଣୀ ।

ସେଇ ଆମର ଭଲ, ସୀତାଦେବୀ ଦୃଢ ଭାବରେ କହିଲେ ।

ହ୍ୟାଚ୍ଚ, ମଣିଷ ଟିକେ ଭଲରେ ଗଣ୍ଡାଏ ଖାଇ ପାରିଲା ନାହିଁ କି ପିନ୍ଧି ପାରିଲା ନାହିଁ ।

ଯେତିକି ଭଗବାନ ଦେଇଛନ୍ତି, ସେତିକିରେ ଆମର ଶାନ୍ତି । ସୀତାଦେବୀ ପୁଣି ଥରେ କୋଉ ଅଜଣା ଦେବତାଙ୍କ ଉଦ୍ଦେଶ୍ୟରେ ଗୁଣୁଗୁଣୁଇଲେ ।

ପଦ୍ମନାଭ ପୁଣି ଥରେ ଦୀର୍ଘଶ୍ୱାସ ପକେଇ ଶୋଇବାକୁ କଡ ଲେଉଟାଇଲା ବେଳେ ସୀତାଦେବୀ ବଡ ହାଇଟେ ମାରି, ନିଘୋଡ ନିଦରେ ଶୋଇବାକୁ ଚେଷ୍ଟା କଲେ ।

ସୀତାଦେବୀ ଶୋଇ ଯିବା ପରେ, ପଦ୍ମନାଭ ଖଟ ଉପରେ ଆସ୍ତେ ଉଠି ବସିଲେ ଓ ଦୁଆରବନ୍ଧ ପାଖକୁ ଗଲେ । ପୁଣି ଖଟ ଉପରେ ଆସି ବସିଲେ ଓ ବାଥ୍ ରୁମକୁ ଗଲେ । ବାଥ ରୁମରୁ ଆସି ପୁଣି ଖଟ ଉପରେ ବସିଲେ ଓ ଖଟ ଉପରୁ ପୁଣି ବାଥ୍ ରୁମକୁ ଗଲେ । ସୀତାଦେବୀ ଖଟ ଉପରେ ଶୋଇ ଘନ ଘନ ନିଃଶ୍ୱାସ ମାରୁଥାନ୍ତି । ଆରପଟ ଘରେ ସାନପୁଅ ବାଉଳି ଚାଉଳି ହେଉଛି । ଦୂରରୁ କୋଉଠି କୁକୁରଟାଏ ଲହରେଇ ବୋବାଉଛି । ବାହାରେ ଶୁଖିଲା ପତ୍ର ଉପରେ କାକରର ଶବ୍ଦ ଲାଗୁଛି ଭାରି ନିଛାଟିଆ ଭଳି ଏକ୍‌ଲା । ପଦ୍ମନାଭ କାନ ପାରିଲେ, ସୀତାଦେବୀଙ୍କ ନିଃଶ୍ୱାସର ଶବ୍ଦ ଶୁଭୁଛି, ମାଡି ଆସୁଥିବା ବତାସର ଶବ୍ଦ ପରି । ପଦ୍ମନାଭ ପୁଣି ତାଙ୍କ ଛାତିରେ ହାତ ରଖିଲେ । ଛାତି ଧଡପଡ ହଉଚି । ପୁଣିଥରେ ସେ ବାଥ୍‌ରୁମ୍‌କୁ ଗଲେ । ବାହାରେ ତଥାପି କୁକୁରଟିର କାନ୍ଦଣା ସରୁନି । ବଡ ବିକଳ ଶୁଭୁଛି ସେ ସୁରଟି ।

ପଦ୍ମନାଭ ସେଇ ଅନ୍ଧାର ଭିତରେ ଥରେ ନିଜକୁ ନିଜେ ପଚାରିଲେ, ବାବାଜୀଟା ଠକ ନୁହେଁ ତ ? ପୁଣି ମନକୁ ମନ ବୁଝେଇଲେ, ଏମିତି ସମସ୍ତଙ୍କୁ ସନ୍ଦେହ କଲେ କେବଳ ସୁଯୋଗ ହିଁ ହାତ ଛଡା ହେବାକଥା । ସେ ପୁଣି ମନକୁ ମନ ସାହସ ସଞ୍ଚୟ କଲେ, ନା ମୁଁ ଯାହା ଭାବିଛି, ଠିକ୍ ଭାବିଛି । ପଦ୍ମନାଭ ସେଇ ମୁହୂର୍ତ୍ତରେ ସ୍ଥିର ନିଶ୍ଚିତ ହେଲେ, ସେ ନରିଆକୁ ହତ୍ୟା କରିବେ ।

ଏଇ କଥାଟା ଭାବି ଦେବା ମାତ୍ରେ ତାଙ୍କ ମୁଣ୍ଡ ଭିତରଟା ଟଣ୍‌ଟଣ ହେଇଗଲା । ମୁଣ୍ଡ ଭିତରେ ସବୁ କିଛି ଗୋଳମାଳ ହେଇଗଲା ପରି ଲାଗିଲା । ସେ ପୁଣି ଥରେ ଭାବିଲେ– ଆହା ପିଲାଟା ଅଭାବ ଯୋଗୁ ଏଠି ଆସି ମୁଣ୍ଡ ଗୁଞ୍ଜିଛି, ତାକୁ ମାରିଦେବା କ'ଣ ଠିକ୍ ହବ ? ପୁଣି ଆର ମୁହୂର୍ତ୍ତରେ ସେ ମନକୁ ମନ କହିଲେ, ହ'ମ ସବୁଦିନ ଶହ ଶହ ଲୋକ ମରୁଛନ୍ତି । ସେମିତି ନରିଆ ମରିଯିବ, କଅଣ ହେଇଯିବ ସେଉଠୁ ? ଯଦି ନରିଆ ମରିବା ପରେ ବି ଏ କବଚ କାମ ନ'ଦିଏ ଦବ ଦବ । ଅଲବତ ଦବ । ନରିଆକୁ ହତ୍ୟା କରିବାର ପ୍ରସ୍ତାବ ଓ ତହିଁରୁ ଓହରିଯିବାର ଯୁକ୍ତି ଭିତରେ ପଦ୍ମନାଭଙ୍କର ହଠାତ୍ ମନେ ପଡିଗଲା, ଏବେ ରାତି ବାରଟା ବାଜିଯାଇପାରେ । ସେ ମୁଣ୍ଡ ଭିତରୁ ସବୁ ଚିନ୍ତା ପୋଛି ଦେଲେ ଓ ନିଶାଗ୍ରସ୍ତ ପରି ସଞ୍ଚାବୁଡୁ ଆଣି ଖଟତଳ ପେଟି କନ୍ଦିରେ ଲୁଚେଇଥିବା କଟୁରୀଟା ବାହାର କରି ଆଣିଲେ । କଟୁରୀଟା ହାତରେ ଧରିବା ମାତ୍ରେ ତାଙ୍କର ଘନ ଘନ ନିଶ୍ୱାସ ଚାଲିଲା ଓ ମନକୁ ମନ ପୁଣି ସେ ପଚାରିଲେ, ଯଦି ମୁଁ ଧରା ପଡିଯାଏ ?

କେମିତି ଧରାପଡିବି ? ନରିଆକୁ ମାରି ସାରି ରାତାରାତି ବାରିରେ ପୋତିଦେବି । ବାସ୍ ଏମିତି ମନକୁ ମନ ପଦ୍ମନାଭ ବୁଝେଇଲେ ଓ ପାଦ ଟିପି ଟିପି ଅଗଣାକୁ ଆସିଲେ । ତାଙ୍କ ପାଦ ବାଜି ରସଗିନାଟାଏ ଦୁଆରକୁ ଗଡିଗଲା । ସେଇ ଶବ୍ଦରେ ଚମକି ପଡି ପଦ୍ମନାଭ ପୁଣି ଦି'ପାଦ ପଛକୁ ଘୁଞ୍ଚିଗଲେ ଓ ମୁହଁରୁ ଝାଳ ପୋଛି, ଛେପ ଢୋକିଲେ ।

ନରିଆକୁ ହତ୍ୟା କଲେ କାମନାର ସିଦ୍ଧି ହେବ । ନରିଆକୁ ହତ୍ୟା କଲେ ମୋର ଆଉ କିଛି ଅଭାବ ରହିବ ନାହିଁ । ନରିଆର ହତ୍ୟା ପରେ ମୁଁ ଯା'ଇଛା ତା' ହେଇଯାଇ ପାରେ । ଏମିତି ଅନେକ କଥା ପଦ୍ମନାଭ ମନେ ମନେ ସ୍ଥିର କଲେ ଓ ପୁଣି ଥରେ କଟୁରୀକୁ ମୁଠେଇ ଧରିଲେ ।

ତାଙ୍କଠାରୁ ଅଳ୍ପ ଦୂରରେ ଅଖା ଦି'ଖଣ୍ଡ ଘୋଡିପୋଡି ନରିଆ ଶୋଇଛି । ତା' ବାପା ଏଠି ତାକୁ ଛାଡିଗଲା ଦିନ ପଦ୍ମନାଭଙ୍କ ପାଦ ପାଖରେ ବସି କହିଥିଲା, ବାବୁ ! ଆପଣଙ୍କୁ ମୋ ଛୁଆ ବକଟକ ଲାଗିଲା ।

ପଦ୍ମନାଭ ପୁଣି ଥରେ ସେ ଦୃଶ୍ୟକୁ ମନରୁ ପୋଛି ଦବାକୁ ଚେଷ୍ଟା କଲା ବେଳକୁ ସେଇ ରୋଗୀଣା ଲୋକଟିର ମୁହଁ ତାଙ୍କ ସାମ୍ନାରେ ବାରମ୍ବାର ଦିଶି ଯାଉଥାଏ । ତଥାପି ସେ ଆଉ ଦି'ପାଦ ଆଗେଇ ଗଲେ ଓ ନରିଆର ଶେଯକୁ ଲାଗି ଠିଆ ହୋଇ ପଡିଲେ ।

ତଥାପି ଘଣ୍ଟାରେ ବାରଟା ବାଜୁନି ।

କେହି କୁଆଡେ ଉଠି ଯାଇ ପାରନ୍ତି । ପଦ୍ମନାଭ ମନେ ମନେ ସେଇ ସାଧୁଙ୍କଠାରୁ ଆଣିଥିବା ମନ୍ତ୍ରକୁ ଉଚ୍ଚାରଣ କଲେ । ହଁ, ଠିକ୍ ଅଛି ।

ଠଁ, ଠଁ, ଠଁ । କାନ୍ଥ ଘଣ୍ଟାରେ ବାରଟା ବାଜିବାର ଶବ୍ଦ ଶୁଣାଗଲା । ପଦ୍ମନାଭ ମୋହଗ୍ରସ୍ତ ହେବା ପରି ତାଙ୍କ ସାମ୍ନାର ସେଇ ଅଖାବୁଜୁଳା ଭିତରେ ଶୋଇଥିବା ନରିଆକୁ ଚୋଟ ପରେ ଚୋଟ ବସେଇ ଦେଇଗଲେ, ଯେମିତି ନରିଆର ମୃତ୍ୟୁ ହିଁ ତାଙ୍କ ଜନ୍ମର ଏକମାତ୍ର ଲକ୍ଷ୍ୟ ଥିଲା ।

ତେଣେ କିନ୍ତୁ ସେଇ କାନ୍ଥଘଣ୍ଟାର ଶବ୍ଦରେ ଚମକି ପଡି ସୀତା ଦେବୀ ଦେଖିଲେ, ତାଙ୍କ ପାଖରେ ପଦ୍ମନାଭ ନାହାନ୍ତି । ସେ 'ମୋର ନରିରେ ମୋ ନରି' କହି କାନ୍ଦି କାନ୍ଦି ସେଇ ଦୁଆରକୁ ଦୌଡି ଆସିଲେ ଓ ଆଲୁଅ ଜଳେଇ ଦେଲେ । ସୀତାଦେବୀଙ୍କ କାନ୍ଦ ଶୁଣି ପୁଅ ଓ ଝିଅ ବି ଉଠି ଆସିଲେ । ସେଇ ଆଲୁଅରେ ସମସ୍ତେ ଦେଖିଲେ, ପଦ୍ମନାଭ ଘାତକର ମୂର୍ତ୍ତିପରି ସ୍ଥାଣୁ ହୋଇ ନରିଆର ଶେଯ ପାଖରେ ଠିଆ ହୋଇଛନ୍ତି ଅଥଚ ବିଛଣାରେ ନରିଆର ଚିହ୍ନ ବର୍ଣ୍ଣ ନାହିଁ । ପଦ୍ମନାଭଙ୍କ ପୁଅଝିଅ କିଛି ବୁଝି ନ'ପାରି ବୋକାଙ୍କ ପରି ଚାହିଁ ରହିଥାନ୍ତି । ସୀତାଦେବୀ ବଡ ବିକଳ ସ୍ବରରେ କାନ୍ଦି କାନ୍ଦି ରାତିକୁ ଆହୁରି କରୁଣତାରେ ଭରି ଦେଉଥାନ୍ତି ।

ପୁଅ କହିଲା, ନରି କାହିଁ ? ଝିଅ କହିଲା, ନରି କାହିଁ ?

ସମସ୍ତଙ୍କ ଆଖି ପଡିଲା ବାରିପଟ କବାଟ ଉପରେ । କବାଟଟା ଠିଆ ମେଲା । ନରିଆ କୁଆଡ଼େ ପଳେଇଲା କି ?

କିନ୍ତୁ ହଠାତ୍ ଖୋଲା ଦିହରେ ଶୀତରେ ଥରି ଥରି ନରିଆ ବାରିରୁ ଘର ଭିତରକୁ ଆସିଲା । ତା' ହାତରେ ଥାଏ ଅଖା ଖଣ୍ଡେ । ସମସ୍ତଙ୍କୁ ଏମିତି ଭାବରେ ଦେଖି ସେ ଭାବିଲା, ସେ ବୋଧେ ରାତିରେ ବାହାରକୁ ଉଠିଯିବା ଯୋଗୁ ଏତେ ସବୁ କାଣ୍ଡ । ସେ ଡରିଗଲା ଓ ସେଇ ଦୁଆର ମୁହଁରେ ଥାଇ କଇଁ କଇଁ ହେଇ କାନ୍ଦୁ କାନ୍ଦୁ କହିଲା, ମୁଁ ଆଉ ଏମିତି କରିବି ନାହିଁ । ମତେ ମାର ନାହିଁ । ବାହାରେ କୁକୁର ଛୁଆ ଦି'ଟା ଶୀତରେ ଥରୁଥିଲେ, ମରି ଯାଇଥାନ୍ତେ । ତାଙ୍କୁ ମୁଁ ମୋ ଅଖାଟା ଘୋଡେଇ ଦବାକୁ ଯାଇଥିଲି ।

ସୀତାଦେବୀ ଆହୁରି ଜୋର୍‌ରେ କାନ୍ଦିଲେ, ନରିଆର କଥା ଶୁଣି ।

ପଦ୍ମଲାଭ ମୂର୍ତ୍ତିଟିଏ ପରି ତଳକୁ ମୁହଁ ପୋତି ଠିଆ ହୋଇଥିବା ବେଳେ ତାଙ୍କ ଅଣ୍ଟାରୁ ହଠାତ୍ ଲୁଙ୍ଗିଟା ଫିଟି ତଳେ ପଡିଗଲା । ପୁଅଝିଅ ଲଜ୍ଜାରେ ତଳକୁ ମୁହଁ ପୋତି ଦେଲେ । ନରି ହାତରେ ତଥାପି ଥିଲା ଅଖା ଖଣ୍ଡେ । ସେ ପଦ୍ମନାଭଙ୍କ ଆଡକୁ ସେଇ ହାତଟି ବଢେଇ ଦେଲା ।



# କୁରେଇ ଫୁଲର ହସ

## ଦେବାଶିଷ ପାଣିଗ୍ରାହୀ

ହିଲ୍ ଷ୍ଟେସନ୍‌ର ପାଣିପାଗ, ସୁନ୍ଦରୀ ଝିଅ ଓ ପାହାଡୀ ନଈ, ଏମାନଙ୍କ ମୁଡ୍‌ର କୌଣସି ଠିକ୍‌ଠିକଣା ନଥାଏ ।

କଥାଟା କହି ବଲ୍‌ଜୀତ୍ କାଉର୍ ହସି ହସି ଗଡ଼ିଗଲା । କଥାଟା ସରୋଜକୁ ରୋମାଣ୍ଟିକ୍ ମନେ ହେଲା, କିଛି କଉତୁକିଆ ଅନୁଭବ ମଧ୍ୟ ।

କିନ୍ତୁ ବଲ୍‌ଜୀତ୍ କାଉର୍ ଭଳି ଝିଅ ଆଗରେ କାହିଁକି, କ'ଣ, କେତେବେଳେ, କେମିତି... ଏସବୁର ମାନେ କିଛି ହୁଏନା । ସେ ଅନବରତ ପୁରୁଣା ଗ୍ରାମ୍‌ଫୋନ୍ ରେକର୍ଡ ଭଳି ବକ୍ ବକ୍ ହେଉଥାଏ । ପ୍ରତିଟି ବାକ୍ୟ ପରେ ସେ ନିଶ୍ଚେ ଜୋର୍‌ରେ ହସିବ, ଗୋଟେ ଡାଇଲଗ୍ ପରେ ହସି ହସି ଗଡ଼ିବ, ପୁଣି ଆଉ ଗୋଟେ ଜୋକ୍ ବା ଚୁଟକୁଲା କହି ପୁଣି ହସିବ ଏବଂ ହସି ରହୁଥିବ । ଯାହକୁ ଇଂରାଜୀରେ ଯୋଉ ସେନ୍‌ସ୍‌ରେ କୁହାଯାଇପାରେ- ହାଜ୍ ବିନ୍ ଲାଫିଙ୍ଗ୍ ।

ଝିଅଟା ଯେମିତି ହସିବାକୁ କସମ୍ ଖାଇଛି । ଯେ ସବୁ ବ୍ୟାପାରରେ କିନ୍ତୁ ସରୋଜ ବଲ୍‌ଜୀତ୍‌ର ଏକଦମ୍ ଅପୋଜିଟ୍ । ସେ ପ୍ରାୟ ସମୟ ଚୁପ୍‌ଚାପ୍ ବସି ରହେ । କାଫେରେ ବସି ଅନ୍ୟ ସମସ୍ତେ କଫି ବା ଚା ପିଇ ଆଡ୍‌ଡା ମାରିଲା ବେଳେ ସେ ଗୋଟେ କୋଣରେ ବସି ତା'ର ପ୍ରିୟ ନଭେଲ୍‌କୁ ପଢୁଥାଏ । ରୁମ୍‌କୁ ଫେରି ରେଜେଇ ଘୋଡ଼ି ହୋଇ ପୁରୁଣା ହିନ୍ଦୀ ସିନେମା ଗୀତ ବା କିଛି ଗଜଲ୍ ଶୁଣେ । ପ୍ରିୟଦର୍ଶନୀର ଫଟୋ ତକିଆ ତଳୁ କାଢ଼େ, ତା'ର ଚିଠି ସବୁ ପଢ଼େ ଏବଂ ଫଟୋ, ଚିଠି ଓ ତକିଆ ସହ ନୀରବରେ ଶୋଇପଡ଼େ ।

ତା'ର ଏମିତି ଗୋଟେ ଗମ୍ଭୀର ଓ ଉଦାସ ବ୍ୟକ୍ତିତ୍ୱକୁ ନେଇ ବଲଜୀତ୍ ତାକୁ ଚିଡଉଥିଲା- ମିଷ୍ଟର ଫିଲୋସଫର୍, ଏ ଜୀବନ ଅନିର୍ଦ୍ଦିଷ୍ଟ କାଳ ପାଇଁ ନୁହେଁ । ଯେହେତୁ ଆମେ ସମସ୍ତେ ଏ ଦୁନିଆରେ କିଛି ଦିନର ଅତିଥି ମାତ୍ର, ଯାର ପ୍ରତିଟି ମୁହୂର୍ତ୍ତ, ପ୍ରତିଟି ସେକେଣ୍ଡ ନିଜ ଇଚ୍ଛାରେ, ହସଖୁସିରେ ଜୀଇଁବାର ଅଛି । ଲେଟ୍ ଅସ୍ ଏନ୍‌ଜୟ ଲାଇଫ୍ ଟୁ ଦ ହିଲ୍‌ଟ୍ । ଜୀବନକୁ ଉପଭୋଗର ଶେଷସୀମା ପର୍ଯ୍ୟନ୍ତ ଜୀଅଁ । ମିଷ୍ଟର ଫିଲୋସଫର୍, ମୁଁ ଏମିତି ହସି ହସି ମରିଯିବି ଏବଂ ମଲାବେଳେ ମୋର କୌଣସି ଅବଶୋଷ ରହିବ ନାହିଁ କି ମୁଁ ନିଜ ଢଙ୍ଗରେ, ନିଜ ଆଖିରେ, ଜୀବନକୁ ଜୀଇଁ ପାରିଲିନି, ଦେଖି ପାରିଲିନି । ମୋର 'ଥିଓରି ଅଫ୍ ମୋକ୍ଷ' ହେଲା ଯେ । ଏମିତି ଚୁପ୍‌ଚାପ୍ ଉଦାସ ହୋଇ ବହି ପଢ଼ିଲେ ବା ଗଜଲ୍ ଶୁଣିଲେ ତୁମେ ଗୁଡ଼ାଏ ଅତୃପ୍ତ କାମନା ନେଇ ଦୁନିଆରୁ ଯିବ । ତୁମକୁ ପୁନର୍ଜନ୍ମ ନେବାକୁ ହେବ, ପୁଣି ଗୋଟେ ମୋଟା ଲେନ୍‌ସର ଚଷମା ଲଗେଇବାକୁ ହେବ । ତୁମର କ'ଣ ମୋକ୍ଷ ପାଇବାକୁ ଆକାଂକ୍ଷା ନାହିଁ; ମିଷ୍ଟର ଫିଲୋସଫର୍, ତେବେ ହସିବାରେ ଏତେ କାର୍ପଣ୍ୟ କାହିଁକି ?

ସରୋଜ ବଲ୍‌ଜୀତ୍‌ର ହସ ଓ ଥିଓରି ଅଫ୍ ମୋକ୍ଷର ବ୍ୟାଖ୍ୟା ଶୁଣେ । ବିଶେଷ କିଛି ଗାର କାଟେନି ମନରେ । କିଛି ସମୟ ତା' ସହ କଥା ହୁଏ, କିଛି ତା'ର ଜୋକ୍ ଶୁଣେ ଓ ଟିକେ ଟିକେ

ହସେ, ପରମୁହୂର୍ତ୍ତରେ ପୁଣି ଅନ୍ୟମନସ୍କ ହୁଏ, ଚଷମା ଖୋଲି ଚଷମାର ଲେନ୍‌ସ୍ ଓ ଆଖି ସଫା କରେ ଏବଂ ପ୍ରିୟଦର୍ଶିନୀ କଥା ଭାବେ ।

ତେବେ ଯେଉଁ ପରିପ୍ରେକ୍ଷୀରେ ଶୈଳନିବାସର ପାଣିପାଗ, ସୁନ୍ଦରୀ ଝିଅ ଓ ପାହାଡ଼ୀ ନଈର ମୁଡ୍ ଭିତରେ ତୁଳନାତ୍ମକ ସମୀକ୍ଷା କରୁଥିଲା ବଲ୍‌ଜୀତ୍, ତାହା ଥିଲା ଏମିତି । ବଲ୍‌ଜୀତ, ସରୋଜ ଓ ପ୍ରାୟ ଦଶଜଣ ଯୁବକ ଯୁବତୀ ଏକାସାଙ୍ଗରେ ଇନ୍‌ସର୍ଭିସ୍ ଟ୍ରେନିଙ୍ଗ୍ କରୁଥିଲେ ମସୌରୀରେ । ଟ୍ରେନିଙ୍ଗ୍‌ର ପାଠ୍ୟକ୍ରମର ଏକ ଅଙ୍ଗଥିଲା ଟ୍ରେକିଙ୍ଗ ବା ପାର୍ବତ୍ୟ ପ୍ରଦେଶରେ ଭ୍ରମଣ । ସେମାନେ ସମସ୍ତଙ୍କୁ ଟ୍ରେକିଙ୍ଗ ପାଇଁ ଦରକାରୀ ହ୍ୟାଭର୍-ସ୍ୟାକ୍, ସ୍ଲିପିଙ୍ଗ୍ ବ୍ୟାଗ୍, ଜଙ୍ଗଲ୍ ବୁଟ୍ ପ୍ରଭୃତି ଟ୍ରେନିଂ ଏକାଡେମି ତରଫରୁ ଯୋଗାଇ ଦିଆଯାଇଥିଲା । ପେସାଦାର ଗାଇଡ୍ ଅପେକ୍ଷା କରିଥିଲା ଏ ପାର୍ବତ୍ୟ ଯାତ୍ରାରେ ସେମାନଙ୍କର ପଥ ପ୍ରଦର୍ଶକ ହେବା ପାଇଁ । କୁମାୟୁଁ ପାହାଡ ମାଳାରେ ହନୁମାନଚଟ୍ଟୀରୁ ଆରମ୍ଭ କରି ହରକି ଧୁନ୍, ଧୁଣ୍ଡିଗଲ୍ ଲେକ୍ ହୋଇ ଉତ୍ତରକାଶୀରେ ପହଞ୍ଚିବା ସେମାନଙ୍କର ଟ୍ରେକିଙ୍ଗ୍ ରୁଟ୍ ଥିଲା । ଗାଇଡ୍, ମ୍ୟାପ୍‌ରେ ସେମାନଙ୍କର ଟ୍ରେକିଙ୍ଗ୍ ପଥକୁ ଦର୍ଶେଇ ସାରିଥିଲା ଏବଂ ଟ୍ରେକିଙ୍ଗ୍‌ର ଆବଶ୍ୟକ ନିୟମାବଳୀ ମଧ୍ୟ ଶୁଣେଇ ସାରିଥିଲା । କୁମାୟୁଁର ଘନ ଜଙ୍ଗଲ ଭିତରେ କାଳେ କିଏ ହଜିଯିବ ଏବଂ ଗାଢ଼ ରଙ୍ଗର କାମିଜ୍ ପିନ୍ଧିଲେ ଦୂରରୁ ପତ୍ର ଓ ପାହାଡ଼ ସନ୍ଧିରୁ ସେମାନଙ୍କୁ ଜାଣିହେବ ବୋଲି ଗାଇଡ୍ କହିବାରୁ ସେମାନେ ସମସ୍ତେ ନିଜ ନିଜର ଜୀନ୍‌ପ୍ୟାଣ୍ଟ୍ ଉପରେ ଗୋଲାପୀ ବା ଲାଲ୍ ରଙ୍ଗର ଟି ସାର୍ଟ ଓ ସୂର୍ଯ୍ୟ କିରଣରୁ ରକ୍ଷା ପାଇବା ପାଇଁ ମୁଣ୍ଡରେ କ୍ୟାପ୍ ଲଗେଇଥିଲେ । ପ୍ରତ୍ୟହ ପ୍ରାୟ ତିରିଶ କିଲୋମିଟର ବ୍ୟାପୀ ଦୂର ପାର୍ବତ୍ୟ ପଥ ଅତିକ୍ରମ କରିବା ପାଇଁ ଯେଉଁ ଷ୍ଟାମିନା ବା ଶାରୀରିକ ସାମର୍ଥ୍ୟ ଦରକାର, ସେଥିପାଇଁ ସେମାନେ ସାଙ୍ଗରେ ନେଇଥିଲେ ପର୍ଯ୍ୟାପ୍ତ ପରିମାଣର ଚକୋଲେଟ୍, ଯାହାର ସର୍କରା ଅଂଶ ସେମାନଙ୍କ ଅଙ୍ଗକୁ ଯୋଗାଇବା କାର୍ବୋହାଇଡ୍ରେଟ୍ ଏବଂ ଶରୀରର ଜଳୀୟ ଅଂଶକୁ କମିବାକୁ ଦେବନାହିଁ । ତେବେ ଅଶ୍ୱମେଧ ଯଜ୍ଞ ପୂର୍ବରୁ ଅକ୍ଷୌହିଣୀ ସେନା ଧରି ଜୟଯାତ୍ରା ପରି, ଟ୍ରେକିଙ୍ଗ୍‌ର ପୂର୍ବବର୍ତ୍ତୀ ଏ ବିପୁଳ ଆୟୋଜନ ପରେ ଗୋଟେ ନିହାତି ବେରସିକ ଆଣ୍ଟିକ୍ଲାଇମାକ୍ସ୍ ପରି ମସୌରୀର ଆକାଶରେ କଳାବାଦଲ ଭରିଯାଇଥିଲା । ଏବଂ ଖୁବ୍ ଜୋରରେ ବର୍ଷା ଝରି ଚାଲିଥିଲା, ସେମାନଙ୍କ ହଷ୍ଟେଲ୍‌ର ସ୍ଲୋପିଙ୍ଗ ରୁଫ୍ ଉପରେ । ବାହାରେ ବସ୍ ଛିଡ଼ା ହୋଇଥିଲା ସେମାନଙ୍କୁ ନେଇ ହନୁମାନ ଚଟ୍ଟୀ ପାଖରେ ଛାଡ଼ିବାକୁ, ଯେଉଁଠି ଆରମ୍ଭ ହେବ ଅରଣ୍ୟ ଯାତ୍ରାର ପ୍ରଥମ ପର୍ଯ୍ୟାୟ । ଏମିତି ଏକ ସମ୍ଭାବନାମୟ ମୁହୂର୍ତ୍ତରେ ସହସା ବର୍ଷା ଯୋଗୁଁ ସମସ୍ତଙ୍କର ମୁଡ୍ ଅଫ୍ ଥିଲା । ସେମାନଙ୍କ ମଧ୍ୟରୁ କିଛି କମନ୍‌ରୁମ୍‌ରେ ଟି.ଭି. ଦେଖୁଥିଲେ, କିଛି କ୍ୟାରମ୍‌ବୋର୍ଡରେ ବହୁବାର ଷ୍ଟ୍ରାଇକର୍ ମାରି ମଧ୍ୟ କୌଣସି ଗୋଟିଏ ଗୋଟି ନିର୍ଦ୍ଦିଷ୍ଟ ଗର୍ତ୍ତରେ ନ ପକେଇ ପାରିବାରୁ ଚିଡ୍ ଚିଡ୍ ହେଉଥିଲେ ଏବଂ ରୁମ୍ ବୟକୁ ଉତ୍ତେଜିତ କଣ୍ଠରେ ଚା' ଆଣି ଦେବାକୁ ଆଦେଶ ଝାଡୁଥିଲେ ।

ଏ ସବୁ ଭିତରେ କିନ୍ତୁ ବଲଜୀତ୍ ଜଣେ ଦୁଇଜଣ ଆଗ୍ରହୀ ଶ୍ରୋତାଙ୍କ ସହ ଆଳାପ ଜମେଇ ରଖିଥିଲା ଏବଂ ଏକ ନିର୍ଦ୍ଦିଷ୍ଟ ସମୟ ଅନ୍ତରାଳରେ ଖୁବ୍ ଜୋରରେ ହସି ଜଣାଉଥିଲା ସମସ୍ତଙ୍କୁ ଯେ ମସୌରୀର ଆକାଶରେ ଅଦିନିଆ ବର୍ଷା କିଛି ନୂଆ କଥା ନୁହେଁ । ଟ୍ରେକିଂ ବର୍ଷା ପାଇଁ ଅଟକି ଯିବାର ନାହିଁ, କାରଣ ଅଦିନିଆ ବର୍ଷା ଖୁବ୍ ଗୋଟେ ବଗୁଲିଆ ଟୋକା... ରାଣ୍ଡିପୁଅ ଅନନ୍ତା ପରି । ତେଣୁ ବର୍ଷା ନିଶ୍ଚୟ ଛାଡ଼ିବ, ସେଥିରେ କୌଣସି ସନ୍ଦେହ ନାହିଁ, ଟ୍ରେକିଙ୍ଗର ପ୍ଲାନ୍ ମଧ୍ୟ ମାଡ଼ ଖାଇବ ନାହିଁ, ଏହା ଶତକଡ଼ା ଶହେ ଗ୍ୟାରେଣ୍ଟି ସହ କୁହାଯାଇପାରେ ତେଣୁ ସାମାନ୍ୟ ବର୍ଷାରେ ଉଦାସ, ଗମ୍ଭୀର ବା ବିରକ୍ତ କିଛି ହେବା ଦରକାର ନାହିଁ । ନିଜ ଇଚ୍ଛାରେ ବା ବ୍ୟର୍ଥତାରେ

ତୁମେ ଯାଇ ଏ ଅଦିନିଆ ବର୍ଷାରେ ଭିଜି ଜ୍ୱରରେ ପଡ଼ିପାର, ମାତ୍ର ତୁମ୍ଭମାନଙ୍କୁ ଏ ସାମାନ୍ୟ ଘଟଣାରେ କୋଷ୍ଠକାଠିନ୍ୟ ବା ମଳ କଣ୍ଟକ ବା ଦୁରାରୋଗ୍ୟ ଅର୍ଶ ହୋଇଥିବା ପରି ମୁହଁ କରିବା ମନା । ବଲଜୀତ୍‌ର ପ୍ରଗଲ୍‌ଭ ହସ ଶୁଣି ସରୋଜର ମନେ ହେଉଥିଲା, ଏ ସମସ୍ତ ବିରକ୍ତିଜନକ ହସ ଓ ବେରସିକ ରୋଗ ପାଇଁ 'ବିନା ଅସ୍ତ୍ରେ ଅସ୍ତ୍ରୋପଚାର' ହେଉଛି ବଲ୍‌ଜୀତ୍‌ର ହସ ଓ ତା'ର ଥିଓରି ଅଫ୍ ମୋକ୍ଷ ।

ବଲ୍‌ଜୀତ୍‌ର ଏଇ ଦୁର୍ଜୟ ଆଶାବାଦକୁ ସମ୍ମାନ ଜଣେଇ ମସୌରୀର ଆକାଶରେ ଜଳୀୟବାଷ୍ପକଣା ଅଧିକ ଘନୀଭୂତ ଓ ଦ୍ରବୀଭୂତ ହେବାକୁ ମନା କରିଥିଲେ ଏବଂ ବର୍ଷା ଛାଡ଼ି ଯାଇଥିଲା । ଅଦିନିଆ ବର୍ଷା ପରେ ମସୌରୀର ଆକାଶରେ ପଡ଼ିଥିଲା ଏକ ଚମତ୍କାର ଇନ୍ଦ୍ରଧନୁର ବର୍ଣ୍ଣାଳୀ । ବଲ୍‌ଜୀତ୍ କାଉର୍, ସରୋଜ ସ୍ୱାଇଁ, ନନ୍ଦିତା ତିୱାରୀ, ରାଜୁ ମାଲହୋତ୍ରା, ଅରୁଣ ଶଙ୍କର, ନୟନା ବାନାର୍ଜୀ, ଅବିନାଶ ଠାକୁର– ଏ ସମସ୍ତେ ଯାଇ ବସିଥିଲେ ନିଜ ନିଜର ଟ୍ରେକିଂ ସରଞ୍ଜାମ ସହ ବସ୍‌ରେ, ଯାହାର ନାଁ ଥିଲା 'ହିମାଲୟାନ୍ କୁଇନ୍' ଏବଂ ପାର୍ବତ୍ୟ ରାସ୍ତାରେ ଅଙ୍କାବଙ୍କା ମୋଡ଼କୁ କାଟି ହିମାଳୟର ରାଣୀ ଚଢୁଥିଲା ପାହାଡ଼ ଉପରକୁ । ଗନ୍ତବ୍ୟସ୍ଥଳୀ ଥିଲା 'ହନୁମାନ ଚଟ୍ଟୀ'- ଯେଉଁଠି ଥିଲା ସେମାନଙ୍କର ବେସ୍ କ୍ୟାମ୍ପ, ଟ୍ରେକିଂର ଅୟମାରମ୍ଭ ସ୍ଥଳ ।

॥ ୨ ॥

ହନୁମାନ ଚଟ୍ଟୀରେ ପହଞ୍ଚିଲା ବେଳକୁ ସାୟାହ୍ନର ସୂର୍ଯ୍ୟ କୁମାୟୁଁ ପାହାଡ଼ ପଛପଟେ ଲୁଚିଯାଇଥିଲେ । ସେପ୍ଟେମ୍ବରର ଆକାଶ ନିର୍ମଳ ଦିଶୁଥିଲା । ଶୀତୁଆ ପବନଲହରୀ ଦେହକୁ ଥରେଇ ଦେଉଥିଲା । ସେମାନେ ସମସ୍ତେ ନିଜ ନିଜର ସାଜ ସରଂଜାମ ନେଇ ଓହ୍ଲେଇ ଥିଲେ ଫରେଷ୍ଟ ଡାକବଙ୍ଗଳାରେ ରାତ୍ରିଯାପନ ପାଇଁ । ପଥଶ୍ରାନ୍ତଜନିତ କ୍ଳେଶକୁ ଦୂର କରିବା ପାଇଁ ଖାଇ ସାରିବା ମାତ୍ରେ ନିଜ ସ୍ଲିପିଙ୍ଗ୍ ବ୍ୟାଗ୍ ଖୋଲି ତା' ଭିତରେ ପଶିଯାଇ ଉଷୁମ ଟାଣୁଥିଲା ସରୋଜ । ବଲ୍‌ଜୀତ୍ ଅନ୍ୟ ଦୋସ୍ତମାନଙ୍କ ସହ ମସ୍ତ ଥିଲା । ଆଶ୍ଚର୍ଯ୍ୟ ଝିଅ ବଲ୍‌ଜୀତ୍, ଏତେ ବାଟ ବସ୍‌ରେ ଚଢ଼ି ଆସିଥିଲା, ଗାଇଡ୍ କହିବା ଅନୁସାରେ କାଲି ଏକଦମ୍ ସକାଳୁ ସେମାନେ ଟ୍ରେକିଙ୍ଗ୍‌ରେ ବାହାରିବା କଥା, କାରଣ ସନ୍ଧ୍ୟା ପୂର୍ବରୁ ନିର୍ଦ୍ଦିଷ୍ଟ ଗନ୍ତବ୍ୟସ୍ଥଳରେ ପହଞ୍ଚିବାର ଅଛି, ଯେଉଁଠି କେବଳ ହୋଇପାରିବ ରହିବା ଓ ଖାଇବାର ଆୟୋଜନ । ହାରାହାରି ଦିନକୁ ତିରିଶ କିଲୋମିଟର ପାର୍ବତ୍ୟ ଯାତ୍ରା ପାଇଁ ମାନସିକ ଓ ଶାରୀରିକ ପ୍ରସ୍ତୁତି ଯେ କେତେ ବେଶୀ ଦରକାର, କିଏ ବୁଝେଇବ ଏ ଅମାନିଆ ଝିଅକୁ । ଝିଅ ନୁହଁ ରଡ ନିଆଁ ଖଣ୍ଡେ ଯେମିତି । ନିଜେ ଶୋଇବ ନାହିଁ କି କାହାକୁ ଶୁଆଇ ଦେବନାହିଁ । କିନ୍ତୁ ଏ ସବୁ ଯୁକ୍ତି ବଲ୍‌ଜୀତ୍‌କୁ ଶୁଣାଇ କିଛି ଲାଭ ନାହିଁ । ତା'ର ଏ ପ୍ରଗଲ୍‌ଭ ବ୍ୟକ୍ତିତ୍ୱ, ଅନବରତ ହସ ଓ ଥିଓରି ଅଫ୍ ମୋକ୍ଷ ସହ ଏମିତି ଗୋଟେ ଯୁକ୍ତି ଏକ୍‌ଦମ୍ ବେଖାପ୍ ଥିଲା । ସରୋଜ କିଛି ସମୟ ପାଇଁ ବଲଜୀତ୍, ହନୁମାନ ଚଟ୍ଟୀ ଓ ଟ୍ରେକିଙ୍ଗର ଦୁନିଆରୁ ନିଜର ମାନସିକ ସୁଇଚ୍‌କୁ ଅଫ୍ କରିଦେଲା, ସ୍ଲିପିଙ୍ଗ୍ ବ୍ୟାଗ୍‌ରେ ଚେନ୍ ଟାଣିଦେଲା ବେକ ପର୍ଯ୍ୟନ୍ତ । ମୁଣ୍ଡରେ ଗୁଡ଼େଇଲା ମଫଲର ଏବଂ ପ୍ରିୟଦର୍ଶିନୀ, କଟକ ଓ କାଠଯୋଡି ନଦୀ କଥା ଭାବି ଚୁପ୍ ଚାପ୍ ଶୋଇପଡ଼ିଲା ।

ନିଦ ଭାଙ୍ଗିଲା କାହାର ସ୍ୱାଇନ୍, ସ୍ୱାଇନ୍ ଚିତ୍କାରରେ । ସ୍ଲିପିଙ୍ଗ୍ ବ୍ୟାଗ୍ ଭିତରୁ ଆଖି ମଳି ମଳି ସରୋଜ ଦେଖିଲା ତିୱାରୀ ସାଲ୍‌ଟିଏ ଘୋଡ଼ିହୋଇ ଶୀତରେ ଥରୁଛି ଏବଂ ମୋଗ୍‌ଲେ

ଆଜାମ୍‌ର–ପ୍ୟାର କିୟା ତୋ ଡରନା କ୍ୟା ଗୀତଟିକୁ ଅତ୍ୟନ୍ତ ବେସୁରା ଓ ଘାଗଡ଼ା କଣ୍ଠରେ ବୋଲୁଛି ।

ସରୋଜର ପୂରା ନାମ ଥିଲା ସରୋଜ ସ୍ୱାଇଁ । ଆଲ୍‌ହାବାଦ୍‌ର ଟୋକା ତିଓ୍ୱାରୀ ବିଶୁଦ୍ଧ ହିନ୍ଦୀ କହିପାରେ, କିନ୍ତୁ ସ୍ୱାଇଁ ଶବ୍ଦ ଉଚ୍ଚାରଣ କରିପାରେ ନାହିଁ । ତେଣୁ ସ୍ୱାଇଁକୁ ସ୍ୱାଇନ୍ ବୋଲି ଉଚ୍ଚାରଣ କରେ । ପ୍ରଥମେ ପ୍ରଥମେ ଟ୍ରେନିଙ୍ଗରେ ଜଏନ୍ କଲା ପରେ ଯେତେବେଳେ ତାକୁ ତିଓ୍ୱାରୀ, ଚତୁର୍ବେଦୀ, ଠାକୁର ସମସ୍ତେ ସ୍ୱାଇନ୍ ବୋଲି ଡାକୁଥିଲେ, ସେମାନଙ୍କୁ ସେ ଚପଲ ଖୋଲି ପିଟିବ ବୋଲି ଭାବୁଥିଲା ଏବଂ ତା'ର ଇଚ୍ଛା ହେଉଥିଲା ଗଳା ଫଟେଇ ଘୋଷଣା କରିବାକୁ ସ୍ୱାଇନ୍ ମାନେ ଘୁଷୁରି । ମୁଁ ଘୁଷୁରି ନୁହେଁ ମଣିଷ, ଖାଣ୍ଟି କଟକୀ ଟୋକା । ମୋର ପୈତୃକ ନାମ ସରୋଜ ସ୍ୱାଇଁ; ଯଦି ତୁମ ପାଟିରେ ସ୍ୱାଇଁ ନ ପଶୁଛି ତେବେ ମୋତେ ସରୋଜ ଡାକିପାର । ଥରେ ଦୁଇଥର ଫର୍ମାଲିଟି ଦୃଷ୍ଟିରୁ କହିଥିଲା ମଧ୍ୟ । କିନ୍ତୁ ପ୍ରଥମ ନାମରେ ଡାକିବାଟା ଯେମିତି ଆଭିଜାତ୍ୟ ଓ ଉଚ୍ଚଶିକ୍ଷାର ବିରୋଧୀ, ତେଣୁ ତାକୁ ସ୍ୱାଇନ୍ ଡାକ ଶୁଣି ନୀରବରେ ହଜମ କରିବା ବ୍ୟତୀତ ଅନ୍ୟ କୌଣସି ଚାରା ନଥିଲା । କେବଳ ବଲ୍‌ଜୀତ୍ ତାକୁ ଡାକୁଥିଲା ସରୋଜ ବା ମିଷ୍ଟର ଫିଲୋସଫର୍ । ପଚାରିଥିଲା ଥରେ ବଲ୍‌ଜୀତ୍‌କୁ ସେ, ମୋତେ ସମସ୍ତେ ସ୍ୱାଇନ୍ ଡାକିଲାବେଳେ ତୁମେ ସରୋଜ ବୋଲି ଡାକ କାହିଁକି ? ବଲଜୀତ୍‌ର ଉତ୍ତର ଥିଲା ମଣିଷକୁ ତା'ର ପ୍ରଥମ ନାମରେ ଡାକିଲେ ଗୋଟେ ଗଭୀର ଆତ୍ମୀୟତାର ସ୍ପର୍ଶ ମିଳେ । ସେଇ ନାମକୁ ସରନେମ୍ ନେଇ କହିଲେ ଲୋକଟା ଯେମିତି ମନେହୁଏ ସାତପର । ନିହାତି ଔପଚାରିକ । ତୁମ ସହ ଗଢୁଥିବା ସମ୍ପର୍କର ମୂଳଦୁଆ ସେଇ ଅନାତ୍ମୀୟତା ଔପଚାରିକତା ଭିତରେ ଦୁର୍ବଳ କରିବାକୁ ମୁଁ ଚାହେଁ ନାହିଁ ସରୋଜ ।

ପୁଣି ଥରେ ତା'ର ମୋଗ୍‌ଲେ ଆଜାମ୍ ଗୀତର ଭଲ୍ୟୁମ ବଢ଼େଇ ସ୍ୱାଇନ୍, ସ୍ୱାଇନ୍ ଚିତ୍କାର କଲା ତିଓ୍ୱାରୀ । ତା'ର ଚିତ୍କାରର କାରଣ ଥିଲା ସେ ଟୁଥ୍‌ପେଷ୍ଟ ଆଣିବାକୁ ଭୁଲିଯାଇଛି । ତେଣୁ ସରୋଜଠୁ ଟୁଥ୍‌ପେଷ୍ଟ ମାଗିବାକୁ ଆସିଥିଲା । ସରୋଜ ସ୍ଲିପିଙ୍ଗ୍ ବ୍ୟାଗ୍ ଭିତରୁ ଭିଡ଼ି ମୋଡ଼ି ହୋଇ ପେଷ୍ଟ ବାହାର କରି ତିଓ୍ୱାରୀକୁ ଦେଲା । ଜଙ୍ଗଲ ବିଭାଗ ଡାକବଙ୍ଗଳାର କାଚ ଝରକା ଉପରେ ଶିଶିରର ଘନ ଆସ୍ତରଣ ଜମି ଯାଇଥିଲା, ବାହାରେ କୁହୁଡ଼ିର ଧୂଆଁଳିଆ ଆବେଶ । ଶୀତସକାଳର ଶିଶିରଭିଜା ଘାସ ଉପରେ ଉଇଁ ଆସୁଥିଲା କୁମାୟୁଁର ସୂର୍ଯ୍ୟ । ଡାକବଙ୍ଗଳା ବାହାର ପାହାଚରେ ଘଡ଼ିଏ ବସିଲା ସରୋଜ, ଭାବିଲା ଆଜି ପ୍ରିୟଦର୍ଶିନୀକୁ ଚିଠି ଲେଖିବ । ଏମିତିଆ ଗୋଟେ ଜାଗା, ବାହାଘର ପରେ ହନିମୁନ୍‌ରେ ଆସିବା ପାଇଁ ଖୁବ୍ ରୋମାଣ୍ଟିକ୍ ଜାଗାହେବ । ଯା ଭିତରେ ବଲ୍‌ଜୀତ୍ ତା' ସ୍ୱଇଚ୍ଛାରେ ସମସ୍ତଙ୍କୁ ମର୍ଣ୍ଣିଙ୍ଗ୍ ଟି ଦେବାର ଦାୟିତ୍ୱ ନେଇ ସାରିଥିଲା । ସମସ୍ତଙ୍କଠାରୁ ଡେରିରେ ଉଠିଥିଲା ସରୋଜ । ସରୋଜକୁ ଉଷୁମ ଚା' କପେ ପ୍ଲାଷ୍ଟିକ୍ ମଗ୍‌ରେ ଦେଇ ତା' ପାଖ ପାହାଚରେ ବସି ପଡ଼ି ବଲଜୀତ୍ । ଏତେ ଥଣ୍ଡାରେ ବି ବଲଜୀତ୍ ସକାଳୁ ଗାଧେଇ ସାରିଥିଲା ଏବଂ ତା'ର ସଦ୍ୟସ୍ନାତ ରୂପ ସୂର୍ଯ୍ୟସ୍ନାତ ସକାଳର ରୂପ ପରି ମନେହେଉଥିଲା । କ୍ଷଣକ ପାଇଁ ସରୋଜର ମନେ ହେଉଥିଲା ଯେମିତି ବଲଜୀତ୍ ନୁହଁ, ପ୍ରିୟଦର୍ଶିନୀ ହିଁ ବସିଛି ତା' ପାଖେ । ଏମିତି ଏକ ଅନୁଚିତ ଭାବନାର ରେଖା କିନ୍ତୁ ଆଙ୍କି ହୋଇଯାଇଥିଲା ବୋଧେ ତା' ମୁହଁର ମାନଚିତ୍ରରେ । ତା'ର ମୁହଁର ସେଇ ବିମୁଗ୍ଧ ଦୃଷ୍ଟିକୁ ଚାହିଁ । ବଲଜୀତ୍‌ର ମୁହଁରେ ଦୁଷ୍ଟାମି ହସର ଲହରୀ ଖେଳି ଯାଇଥିଲା । ବଲଜୀତ୍ କହୁଥିଲା– ''କ'ଣ ସରୋଜ, ମୁଁ କ'ଣ ଆଜି ତୁମକୁ ପାର୍ବତ୍ୟ କିଶୋରୀ ପରି ଅପାପବିଦ୍ଧା, ଅନାଘ୍ରାତା ସରଳ ସଜଳ ଝିଅଟିଏ ଯେମିତି ଲାଗୁଛି, ତାହା

ତୁମକୁ କିଛିକ୍ଷଣ ପାଇଁ ପ୍ରିୟଦର୍ଶନୀକୁ ତୁମ ମନରୁ ନିର୍ବାସିତ କରିଦେଇଛି- ଆମ୍ ଆଇ ଟ୍ରୁ, ସରୋଜ ? ସରୋଜ ଟିକେ ଅପ୍ରତିଭ ହୋଇ ସଲଜ୍ଜ ହସଟିଏ ହସିଥିଲା । ବଲଜୀତ୍ ପୁଣି କହିଥିଲା ''ଆଉ ଥରେ ଏମିତି ହସ ନା ସରୋଜ, ତୁମର ସେ ହସରେ ଏତେ କୋମଳତା, ଏତେ ସରଳତା, ଏତେ ମୁଗ୍ଧ ଅନୁଭବ ଓ ପ୍ରାଣପ୍ରାଚୁର୍ଯ୍ୟ ଭରି ରହିଛି, ଅଥଚ ତୁମେ ଏତେ କଦବା କ୍ୱଚିତ୍ ହସ କାହିଁକି ? ତେବେ ଆଜି ଦିନକ ପାଇଁ ତମେ ସେଇମିତି ହସିବ, ହସିଲାବେଳେ ତୁମ ମୁହଁର ଭାବାବେଶକୁ ଏ ମୋଟା ଲେନସ୍‌ର ଚଷମା ବୁଢ଼ି ଅସୁରୁଣୀ ପରି ଗିଳି ଦେଉଛି । ତେଣୁ ଏ ଚଷମା ତୁମକୁ ଆଜି ପିନ୍ଧିବା ମନା । ଚଷମା ନପିନ୍ଧି ଟ୍ରେକିଂରେ ବାଟ ନଦିଶିଲେ ମୁଁ ତୁମକୁ ହାତ ଧରି ବାଟ କଢ଼େଇ ନେବି । କିନ୍ତୁ ମତେ ପ୍ରମିସ୍ କର ଆଜି କେବଳ ତୁମେ ମୋ ପାଇଁ ହସିବ । ୟୁ ଉଇଲ୍ ଲାଫ୍ ଓନ୍‌ଲି ଫର ମି ।'' ଏକଥା କହିଲାବେଳେ ବଲଜୀତ୍ ତା'ର ଦୁଇ ହାତ ପାପୁଲିରେ ତା'ର ଡାହାଣ ହାତକୁ ଅଜାଣତରେ ଚାପି ଧରିଥିଲା । ବଲଜୀତ୍ ସବୁବେଳେ ଏମିତି ଟିକେ ଇସେଣ୍ଟ୍ରିକ୍ । ମାପିଚୁପି ସଭ୍ୟ ଶିକ୍ଷିତଙ୍କ ଭଳି କଥା କହି ଶିଖିନାହିଁ ଜନ୍ମରୁ ଝିଅଟା । ସେ ଜାଣିଛି ଯେ ସରୋଜ ପ୍ରିୟଦର୍ଶନୀକୁ ଆସନ୍ତା ମାସରେ ବିବାହ କରୁଛି, ସେମାନଙ୍କ ନିର୍ବନ୍ଧ ସରିଯାଇଛି ଏବଂ ବର୍ତ୍ତମାନ ପ୍ରିୟଦର୍ଶନୀ ସରୋଜର ବାଗ୍‌ଦତ୍ତା । ତେଣୁ ପ୍ରାୟତଃ ସରୋଜ ପ୍ରିୟଦର୍ଶନୀର ଚିଠି, ଫଟୋ, ଫୋନ୍ ଓ ସ୍ମୃତି ସହ ବୁଡ଼ି ରହୁଛି । ତେଣୁ ଟ୍ରେନିଂ କ୍ଲାସ୍‌ରୁମ୍‌ରେ ରାଇଟିଙ୍ଗ୍ ପ୍ୟାଡ୍‌ରେ କେବଳ ପ୍ରିୟଦର୍ଶନୀର ନାମ ଲେଖୁ ଲେଖୁ ବଲ୍‌ଜୀତ୍ ପାଖ ଚଉକିରୁ ହାତ ବଢ଼େଇ ତା'ର ପ୍ୟାଡ୍‌ରେ ଅଟ୍ଟାକରି ଲେଖେ ଯେ- ଆଜି କଫି ହାଉସ୍‌ରେ ତୁମ ସହ ମୋର ଡେଟ୍ ରହିଲା । ଆଜି ପାଇଁ ପ୍ରିୟଦର୍ଶନୀର ସ୍ମୃତି ପେଟିକାରେ ତାଲା ଝୁଲେଇ ଦିଅ । ବଲଜୀତ୍‌ର ଏମିତି ଲେଖିବା ବା କହିବାରେ ତାକୁ ଭୁଲ୍ ବୁଝିବାର କିଛି ନାହିଁ । ଖୁବ୍ ପ୍ରାଣୋଚ୍ଛଳା ଝିଅଟା । ତା'ର କଥା ବା କାମରେ ବେଳେ ବେଳେ ଯାହା ଶାଳୀନତା ବାହାରେ ବୋଲି ମନେହୁଏ, ତା' ପଛରେ କିଛି ହିଁ ଉଦ୍ଦେଶ୍ୟ ନଥାଏ । ବଲଜୀତ୍‌କୁ ଥରେ ପଚାରିଥିଲା ସରୋଜ- ତୁମେ ଏମିତି ଅନ୍ୟମାନଙ୍କ ଆଗରେ ମୋ ନୋଟ୍ ବୁକ୍‌ରେ ଲେଖୁଛ ତା' ପରେ ପୁଣି ଡାକୁଛ- 'ମାଇ ସୁଇଟ୍ ହାର୍ଟ ଫିଲୋସଫର୍' ଏଥିରେ ଅନ୍ୟମାନେ କ'ଣ ଭାବିବେ କୁହତ ?

ତା'ର ପ୍ରଶ୍ନ ଶୁଣି ବେଗମତୀ ନଦୀ ପରି ହସରେ ଲୋଟି ପଡ଼ିଥିଲା ବଲ୍‌ଜୀତ୍- ଯିଏ ଯାହା ଭାବୁଛି ଭାବୁ । କିଏ କ'ଣ ଭାବିବ ବୋଲି ମୋର ସ୍ୱାଭାବିକ ଭାବାବେଗର ଜୁଆରରେ ଭଟ୍ଟା ପକେଇବାକୁ ମୁଁ ଚାହେଁ ନାହିଁ । ତୁମକୁ ଏମିତି କିଛି କଥା କହେ କାରଣ ମୋତେ ତୁମ ବ୍ୟକ୍ତିତ୍ୱ ଭଲ ଲାଗେ । ପ୍ରିୟଦର୍ଶନୀର ଜାଗା ନେବାକୁ ତିଳେ ମାତ୍ର ଇଚ୍ଛା ନାହିଁ ମୋର । ତୁମେ ଜାଣ, ଆଇ ଆମ୍ ଏନ୍ ଇନ୍‌କରିଜିବଲ ଫ୍ଲର୍ଟ । ଏ ଜନ୍ମରେ ଯେହେତୁ ତୁମେ ଏକ ପତ୍ନୀବ୍ରତ ନେଇ ପୁରୁଷୋତ୍ତମ ରାମ ହେବାକର କସମ୍ ଖାଇଛ, ମୁଁ ତୁମକୁ ପରଜନ୍ମରେ ଅପେକ୍ଷା କରିବି ରାଧା ହୋଇ, ଯେତେବେଳେ ତୁମେ କୃଷ୍ଣ ଜନ୍ମ ନେଇ ପରକୀୟା ପ୍ରେମରେ ମାତିବ । ଏକଥା ପ୍ରିୟଦର୍ଶନୀକୁ କହିଦେବ । ଏମିତିକା ଝିଅ, ଏମତିକା କଥା ଓ ହସର କୌଣସି ଜବାବ୍ ହିଁ ନଥାଏ ।

ତେଣୁ ହନୁମାନ-ଚଟ୍ଟୀରେ ବଲଜୀତ୍‌ର କଥା ଶୁଣି ବେଶ୍ ସ୍ୱାଭାବିକ ହିଁ ଲାଗିଥିଲା ସରୋଜକୁ । ଟ୍ରେକିଙ୍ଗ ପାଇଁ ସମସ୍ତେ ପ୍ରସ୍ତୁତ ହୋଇ ସାରିଥିଲେ । କାନ୍ଧରେ ହ୍ୟାଭର୍-ସ୍ୟାକ୍‌ର ଫିତା ବାନ୍ଧୁବାନ୍ଧୁ ବଲ୍‌ଜୀତ୍ ତା' କାନରେ ଚୁପ୍‌କିନା କହିଥିଲା- ସୁଇଟ୍ ହାର୍ଟ, ଆଜି ପାଇଁ ଚଷମା ପିନ୍ଧା ବନ୍ଦ, କାରଣ ଆଜି ତୁମେ ମୋ ପାଇଁ ହସିବ ଏବଂ ଏଇ ହସ ଓ ମୋ ଭିତରେ ଯେ ମୋଟା

ଲେନ୍ସ୍‌ର ଚଷମା ମୋତେ ସପତ୍ନୀର ଈର୍ଷୁକ ଦୃଷ୍ଟି ପରି ମନେ ହେଉଛି । ଚଷମା ଉପରେ ସ୍ତୂପୀକୃତ ଜଳୀୟକଣାକୁ ରୁମାଲ୍‌ରେ ସଫା କରି ପୁଣି ପିନ୍ଧି ଦେଇଥିଲା ସରୋଜ ଓ ଆସ୍ତେକିନା ମୁଣ୍ଡ ଟୁଙ୍ଗାରିଥିଲା । ବଲ୍‌ଜୀତ୍ କଥାର ପ୍ରତିବାଦ କରି କିଛି ଲାଭ ନାହିଁ । କାରଣ ତା' କଥା ପଛରେ କିଛି ଉଦ୍ଦେଶ୍ୟ ନଥାଏ ।

ଟ୍ରେକିଙ୍ଗ୍ ଆରମ୍ଭ ପାଇଁ ଗାଇଡ୍‌ର ହୁଇସିଲ୍ ଶବ୍ଦ ଶୁଭୁଥିଲା । ସେମାନେ ସମସ୍ତେ ଆରମ୍ଭ କରିଥିଲେ ପାର୍ବତ୍ୟଯାତ୍ରାର ପ୍ରଥମ ପର୍ଯ୍ୟାୟ ।

## ।। ୩ ।।

ଯା'ଭିତରେ ତିନି ଦିନର ପାର୍ବତ୍ୟଯାତ୍ରା ଅତିବାହିତ ହୋଇଯାଇଥିଲା । ପ୍ରତ୍ୟେକ ଦିନ ସୂର୍ଯ୍ୟ ଉଇଁବା ବେଳକୁ ଯାତ୍ରାର ଆରମ୍ଭ ଅପରାହ୍ଣରେ ନିର୍ଦ୍ଦିଷ୍ଟ ଗନ୍ତବ୍ୟ ସ୍ଥଳରେ ପହଞ୍ଚି ଜଙ୍ଗଲ ବିଭାଗ ଡାକବଙ୍ଗଳା ବା ରେଷ୍ଟ ସେଡ୍‌ରେ ରହଣି, ରାତିରେ ବାହାରେ କ୍ୟାମ୍ପଫାୟାର, କୁମାୟୁଁ ପାହାଡ଼ର ଶୀତ ଥରଥର ରାତିରେ ଜ୍ୟାକେଟ୍ ପିନ୍ଧି କ୍ୟାମ୍ପଫାୟାର ପାଖରେ ବସି ଅନ୍ତାକ୍ଷରୀ ବା ରାଜସ୍ଥାନୀ, ଗୁଜୁରାଟୀ ଅବା ପଞ୍ଜାବୀ ଲୋକସଙ୍ଗୀତ । ତିୱାରୀ ଓ ଚତୁର୍ବେଦୀ– ଯଦିଓ ଟ୍ରେକିଙ୍ଗରେ ମଦ୍ୟପାନ ନିଷିଦ୍ଧ ଥିଲା ଟ୍ରେକିଙ୍ଗର ନିୟମାବଳୀ ଅନୁଯାୟୀ, ତେବେ ସେମାନେ ନିୟମିତ ଭାବରେ ହୁଇସ୍କି ବା ରମ୍ ବୋତଲରୁ କିଛି ଉଷ୍ମ ପାନୀୟ ଉଦରସ୍ଥ କରୁଥିଲେ ଡାକବଙ୍ଗଳା ପଛ ପଥର ଉପରେ ବସି । ତା'ପରେ ଖୁବ୍ ରୋମାଣ୍ଟିକ୍ ମୁଡ୍‌ରେ ଆବୃତ୍ତି କରୁଥିଲେ ପ୍ରସିଦ୍ଧ ହିନ୍ଦୀ କାବ୍ୟପୁରୁଷ ହରିବଂଶ ରାୟ ବଚ୍ଚନ୍‌ଙ୍କର 'ମଧୁଶାଳା'ର ପଂକ୍ତ୍ୟାବଳୀ । ବଲଜୀତ୍ ଶୁଣାଉଥିଲା ରାଜସ୍ଥାନୀ ଲୋକସଂଗୀତ ବା ପୁଣି କେବେ ପଞ୍ଜାବୀ ଲୋକଗୀତ । ଗାଉ ଗାଉ ପୁଣି ସେ ପ୍ରଦେଶର ନୃତ୍ୟରେ ଝୁମି ଉଠିଥିଲା । ସରୋଜର ହାତ ଟାଣି ନୃତ୍ୟରେ ଅଂଶ ଗ୍ରହଣ କରିବା ପାଇଁ ବାଧ୍ୟ କରୁଥିଲା । ମେହେଫିଲ୍‌କୁ ଜମେଇ ରଖିବାର ସବୁ କଳାକୌଶଳ ଯେମିତି ମାଲୁମ୍ ଥିଲା ଝିଅଟାକୁ । ଟ୍ରେନିଙ୍ଗରେ ପ୍ରତିଟି ରାତ୍ରିର ସାଂସ୍କୃତିକ କାର୍ଯ୍ୟକ୍ରମର ଯେମିତି ସେ ଏକକ ରଙ୍ଗନଟୀ । ପ୍ରତ୍ୟହ ପ୍ରାୟ ତିରିଶ କିଲୋମିଟର ଘନ ଅରଣ୍ୟ ମଧ୍ୟରେ ପାର୍ବତ୍ୟ ଯାତ୍ରା କରି ସେମାନେ ପହଞ୍ଚିଥିଲେ ହରକିଧୁନ୍‌ରେ । ହରକିଧୁନ୍‌ର ପାହାଡୀ ଝରଣା ପାଖରେ କେତେ ଢଙ୍ଗ, କେତେ ପୋଜ୍‌ରେ ଫଟୋ ଉଠଉଥିଲା ବଲ୍‌ଜୀତ୍, କେବେ ଏକା ନିଜର, କେବେ ସାଥୀମାନଙ୍କ ସହ ଗ୍ରୁପ୍ ଫଟୋ । ହରକିଧୁନ୍‌ରୁ ପୁଣି ଆହୁରି ଉପରର ପାର୍ବତ୍ୟ ପ୍ରଦେଶକୁ ଯାତ୍ରା କରି ସେମାନେ ପହଞ୍ଚି ଥିଲେ ଧରୱାଧର୍ ରେଂଜ୍‌ରେ । ସେଠି କୌଣସି ଜଙ୍ଗଲ ବିଭାଗର ଆଶ୍ରୟସ୍ଥଳି ନାହିଁ । ରେଂଜ୍‌ର ଗୋଟେ ସମତଳ ଜାଗା ଦେଖି ଖଚର ପିଠିରେ ବୁହା ହୋଇ ଯାଇଥିବା ଏଯାବତ୍ ଅବ୍ୟବହୃତ ଟେଣ୍ଟ୍ ମାରି ସେମାନଙ୍କର ଅସ୍ଥାୟୀ କ୍ୟାମ୍ପ ସ୍ଥାପିତ ହୋଇଥିଲା । ସେମାନଙ୍କ ପାର୍ବତ୍ୟାରୋହଣରେ ଏହାଥିଲା ସର୍ବୋଚ୍ଚ ତୁଙ୍ଗ ଶିଖର । ଏହା ପରେ ସେମାନଙ୍କର ଅବତରଣର ଯାତ୍ରା ଆରମ୍ଭ ହେବ ।

କିଛି ଦିନ ଧରି ତିଖ ପାହାଡ଼ ଚଢ଼ିବାର କ୍ଳାନ୍ତିକର ଅନୁଭୂତି ପରେ ସମସ୍ତେ ଆଜ ପର୍ବତାରୋହଣର କଷ୍ଟ ନାହିଁ ଜାଣି ବେଶ୍ ଉତ୍‌ଫୁଲ୍ଲ ମନେ ହେଉଥିଲେ । ତିୱାରୀ, ଠାକୁର ଓ ଚତୁର୍ବେଦୀ ନିଜ ନିଜ ଅବଶିଷ୍ଟ ପାନୀୟକୁ ପିଇବାରେ ବ୍ୟସ୍ତ ଥିଲେ । କୁମାୟୁଁ ପାହାଡ଼ର ଆରଣ୍ୟକ ଯାତ୍ରା ମଧ୍ୟରେ ମାଲହୋତ୍ରା ଓ ଚଧା ନିଜର ପାରଦର୍ଶିତା ଓ ଏଣ୍ଟରପ୍ରାଇଜ୍‌ର ଚରମ ନିଦର୍ଶନ ଦେଖେଇ ପାର୍ବତ୍ୟ ଅଧିବାସୀଙ୍କଠାରୁ ଗୋଟେ ଗାଁରୁ କିଛି ଗଞ୍ଜା ଓ ଚିଲମ୍ ସଂଗ୍ରହ କରିଥିଲେ ଏବଂ ସେମାନଙ୍କ ଟେଣ୍ଟ୍‌ରେ ଚିଲମ୍ ସେବନ ମଧ୍ୟରେ ହର୍‌କିଧୁନ୍ ସୃଷ୍ଟି କରୁଥିଲେ । ନୟନା

ବାନାର୍ଜୀ ଓ ନନ୍ଦିତା ଯୋଗ୍‌ଲେକର, ପାର୍ବତ୍ୟ ଯାତ୍ରାରେ ପାଦର ଆଙ୍ଗୁଠିରେ ସୃଷ୍ଟି ହୋଇଥିବା ଫୋଟକା ବା ବ୍ଲିଷ୍ଟରର ଟ୍ରିଟ୍‌ମେଣ୍ଟ୍ ପାଇଁ ଗାଇଡ୍‌ର ପରାମର୍ଶ ନେଉଥିଲେ । ଆଉ ଦୁଇଦିନ ପରେ ସେମାନଙ୍କର ଉତ୍ତରକାଶୀ ପହଞ୍ଚିବା କଥା ଏବଂ ସେଠୁ ସେମାନେ ବସ୍‌ରେ ପୁଣି ଫେରିଯିବେ ନିଜର ଟ୍ରେନିଂ ଏକାଡେମୀ ମସୌରୀ । ଘରବାହୁଡ଼ାର ଚିନ୍ତା ଧୀରେ ଧୀରେ ସମସ୍ତଙ୍କ ମନକୁ ଆସୁଥିଲା । ତେଣୁ ବଲ୍‌ଜୀତ୍‌ର ବହୁ ଲୋଭନୀୟ ପ୍ରସ୍ତାବ ସତ୍ତ୍ୱେ ସେଦିନ ଆଉ କ୍ୟାମ୍ପ୍ ଫାୟାର ହୋଇପାରି ନଥିଲା ।

ସରୋଜ କିଛି ଦୂରରେ ଗୋଟେ ପଥର ଉପରେ ବସିଥିଲା । ବଲଜୀତ୍ ଯାଇ ବସିଲା ତା' ପାଖରେ, ଏକା ପଥରରେ । ସରୋଜ ସ୍ୱଭାବତଃ ଚୁପ୍ ଥିଲା । ବଲଜୀତ୍ ବି ଅସ୍ୱାଭାବିକ ଭାବେ ଚୁପ୍ ଥିଲା । ତେଣୁ ନୀରବତାର ବଳୟ ଭାଙ୍ଗିବାର ପ୍ରଥମ ଉଦ୍ୟମ କଲା ସରୋଜ- ଆଜି କ'ଣ ପାହାଡୀ ନଈର କ୍ଷିପ୍ରସ୍ରୋତ ସମତଳ ପ୍ରଦେଶରେ ପ୍ରବେଶ କରି କ୍ଷୀଣସ୍ରୋତା ହୋଇଯାଇଛି । ସରୋଜର ରସିକତା ଶୁଣି ବଲ୍‌ଜୀତ୍ କ୍ଷୀଣ ହସିଲା, କହିଲା-

ଆଜି କାହିଁ କେହି କ୍ୟାମ୍ପଫାୟାର୍‌ରେ ମନ ଦେଉ ନାହାନ୍ତି । ସମସ୍ତେ ବର୍ତ୍ତମାନ ଯେମିତି ଘରବାହୁଡ଼ା ହେବାକୁ ଉତ୍ସୁକ ହୋଇ ବସିଛନ୍ତି । ଆଉ ଟ୍ରେକିଂରେ କିଛି ଚ୍ୟାଲେଞ୍ଜ, କିଛି ଆଡଭେଞ୍ଚର, ନୂଆ ଜିନିଷ ଦେଖିବାର, ଆବିଷ୍କାର ଓ ଅନୁଭବ କରିବାର ଉଦ୍‌ବେଗ, ଆଶଙ୍କା ବା ଆଗ୍ରହ ନାହିଁ କାହାର । ମିଷ୍ଟର ଫିଲୋସଫର୍, କହିପାରିବ, ଆରୋହଣ ଅପେକ୍ଷା ଅବତରଣ ଯାତ୍ରା ପାଇଁ ମଣିଷ ମନରେ ଏତେ ଆଗ୍ରହ, ଆନନ୍ଦ କାହିଁକି ? ପାହାଡ଼ର ତୁଙ୍ଗ ଶିଖର ଚଢ଼ିବା ପରେ, ଆକାଶକୁ ଏତେ ନିଜ ପାଖରେ ପାଇବା ପରେ, ମେଘର ବାଦଲକୁ ପରମାତ୍ମୀୟ ଭାବେ ଅନୁଭବ କରିବା ପରେ, ସମତଳ ପ୍ରଦେଶକୁ କେହି ଫେରିଯିବାକୁ ଚାହେଁ କାହିଁକି ?

ମୁଁ କିନ୍ତୁ ଚାହେଁ, ଆହୁରି ଉପରକୁ ଯିବାକୁ, ମେଘକୁ, ଆକାଶକୁ ଆହୁରି ପାଖରେ ଚିହ୍ନିବାକୁ, ଆହୁରି ଗଭୀର ଭାବରେ ଅନୁଭବ କରିବାକୁ । ମୋ ମନରେ ଆରୋହଣର ସ୍ୱପ୍ନ, ଅବତରଣର ବାସ୍ତବତାକୁ ସାମ୍ନା କରିବାକୁ ମୋର ଭାରି ଭୟ ।

ବଲ୍‌ଜୀତ୍‌ର କଥା କେମିତି ଅବାଗିଆ ଲାଗୁଥିଲା ସରୋଜକୁ । ତାକୁ ମିଷ୍ଟର ଫିଲୋସଫର କହି ଚିଡଉ ଥିବା ହସକୁରୀ ଝିଅଟାର ହୃଦୟ ଭିତରେ ଯେ ଏମିତି ଗମ୍ଭୀର ଦର୍ଶନର ତତ୍ତ୍ୱ ଭରି ରହିଛି ଜାଣି ନୂଆ ଆଖିରେ ଦେଖୁଥିଲା ବଲଜୀତ୍‌କୁ । କିଛି ସମୟ ଏମିତି ଏକା ବସି ସାରିଲା ପରେ କିଛି ଦୂରରେ ପାହାଡୀ ଗାଆଁକୁ ବଇଁଶୀର ସୁର ଭାସିଆସିଲା । ଏ ବଇଁଶୀର ଧୂନ୍‌ରେ କିଛି ପାରମ୍ପରିକ ସଂଗୀତର ସ୍ପର୍ଶ ଥିବାର ମନେହେଉ ନଥିଲା । ଗାଈଆଳ ପିଲାର ବଇଁଶୀ ସ୍ୱରଠୁ ବି ଭିନ୍ନ ଥିଲା । କୁମାୟୁଁର ବନପ୍ରଦେଶ ପରି ଆରଣ୍ୟକ ଓ ରହସ୍ୟମୟ ଥିଲା ଏ ବଂଶୀସ୍ୱନ । ପାହାଡ଼ୀ ଗାଆଁର ଗଛଡାଳରେ ସୂର୍ଯ୍ୟ ନଇଁ ଆସେ ଖୁବ୍ ଶୀଘ୍ର । ସମସ୍ତେ ନିଜ ନିଜର ରାତ୍ରି ଭୋଜନ ସାରି ଶୋଇଯାଆନ୍ତି ଘରେ ନିଆଁର ଧୁନି କରି । କେହି କେହି ଯାଆନ୍ତି କ୍ଷେତକୁ ଫସଲ ଜଗିବାକୁ । ତେବେ ରାତିର ଏ ବିଳମ୍ବିତ ପ୍ରହରରେ କେଉଁ ବିରହୀ ପୁଣି ସୃଷ୍ଟି କରୁଛି ଏମିତି ଏକ ରହସ୍ୟମୟ ବନ୍ୟା ସୁରର କୁହୁକ, ଯେଉଁଥିରେ ଅଛି କାରୁଣ୍ୟ, ଆଶା, ସମ୍ଭାବନା, ଉଦ୍‌ବେଗ, ଆଶଙ୍କା- ଏ ସବୁର ଫେଣ୍ଟାଫେଣ୍ଟି ଅନୁଭୂତି । ଆରଣ୍ୟକ ବଂଶୀରେ ବାଜୁଛି ଏ କେଉଁ ରାଗର ରାଗିଣୀ ? ଏ ଯେମିତି କୁମାୟୁଁ ପାହାଡ଼ର ଆତ୍ମା । ସରୋଜ ବଂଶୀସ୍ୱନକୁ ଖୁବ୍ ନିବିଡ଼ ଭାବରେ ଅନୁଭବ କରୁଥିଲା ଆଖି ବନ୍ଦ୍ କରି । ବଲଜୀତ୍ ତା' କାନ୍ଧ ଧରି ହଲାଇ ଦେଲା–କୁମାୟୁଁର ଘଞ୍ଚବନ ପ୍ରଦେଶରେ ଜିମ୍ କରବେଟ୍ ବହୁ ନରଖାଦକଙ୍କୁ ମାରି ସରଳ ପାହାଡୀ ଗ୍ରାମବାସୀଙ୍କୁ

ରକ୍ଷା କରିଥିବାର ନଜିର୍ ଅଛି । କିନ୍ତୁ ରାତିରେ ନରଖାଦକର ଆତଙ୍କକୁ ଏଡ଼େଇ ଏମିତି ରୋମାଣ୍ଟିକ୍ ବଂଶୀବାଦନର କଥା କେବେ କରବେଟ୍‌ଙ୍କର ଶିକାର କାହାଣୀରେ ପଢ଼ିଥିବାର ମନେ ପଡୁନି । ମାଇଁ ସୁଇଟ୍ ହାର୍ଟ ଫିଲୋସଫର, ବୋଧହୁଏ ତୁମେ ଏ ବଂଶୀର ସୁର ମଧ୍ୟରେ ଖୋଜୁଛ ତୁମର ସହରକୁ, ନଦୀକୁ, ପ୍ରିୟଦର୍ଶିନୀକୁ ବା ପ୍ରିୟଦର୍ଶିନୀ ଦୂତ କରି ପଠେଇଛି ଏ ବଂଶୀସ୍ୱନକୁ ତୁମ ପାଖକୁ କାଳିଦାସଙ୍କର ବିରହୀ ଯକ୍ଷ ମେଘକୁ ଦୂତ କରି ପଠେଇବା ପରି । ଏବେ ରାତି ବହୁତ ହେଲାଣି, ପ୍ରିୟଦର୍ଶିନୀ ଦୁଇହଜାର କିଲୋମିଟରରୁ ଊର୍ଦ୍ଧ୍ୱ ଦୂରରେ । ଚାହିଁଲେ ବି ତାକୁ ପାଖରେ ପାଇପାରିବ ନାହିଁ । ସେତେଦିନ ପର୍ଯ୍ୟନ୍ତ ତୁମକୁ ମୋର ମୁହଁ ଚାହିଁ ଅବଶୋଷ ମେଣ୍ଟାଇବାକୁ ପଡ଼ିବ । ଅବଶ୍ୟ ମୁଁ ପ୍ରିୟଦର୍ଶିନୀ ହୋଇ ନପାରେ ନିଶ୍ଚୟ, ଆମ୍ ଆଇ ଟ୍ରୁ ଡିୟର ?

॥ ୪ ॥

ଧରଓ୍ୱାଧର୍ ରେଞ୍ଜରୁ ଆରମ୍ଭ ହୋଇଥିଲା ଅବତରଣର ଯାତ୍ରା । ଧୁଣ୍ଡିଗଲ୍ ଲେକ୍ ପାଖରେ ସେମାନେ ଗୋଟିଏ ରାତି କାଟିଥିଲେ, ଏବେ ଘଞ୍ଚ ଅରଣ୍ୟାନୀ କମି ଯାଉଥିଲା, ଜନବସତି ଦିଶୁଥିଲା । ଅଧିକ କିଛିଦିନ ସଭ୍ୟତାଠାରୁ ଦୂରରେ ରହିଲା ପରେ ପୁଣି ପରିଚିତ ଦୁନିଆକୁ ଫେରି ଆସିଲା ଭଳି ମନେହେଉଥିଲା । ପାହାଡୀ ଗାଁର ପିଲାମାନେ ସେମାନଙ୍କୁ ଦେଖିଲା ମାତ୍ରେ ମିଠାଇ, ମିଠାଇ କହି ପଛରେ ଦୌଡୁଥିଲେ । ସେମାନେ ଜାଣିଥିଲେ ଯେ ଏମିତି ଅରଣ୍ୟ ଅଭିଯାତ୍ରୀଦଳଙ୍କ ପାଖରେ ପର୍ଯ୍ୟାପ୍ତ ପରିମାଣର ଚକୋଲେଟ୍ ଗଚ୍ଛିତ ଥାଏ ଏବଂ ପାହାଡୀ ପିଲାଙ୍କ ପାଇଁ ଯେକୌଣସି ମିଠା ଜାତୀୟ ଶର୍କରା ମିଶ୍ରିତ ଦ୍ରବ୍ୟର ଅନ୍ୟନାମ ମିଠାଇ । ପିଠିରେ କାଠପତ୍ର ବା ଫସଲ ବୋଝ ଧରି ଆସୁଥିବା କୁମାୟୁଁ ଗିରିଲଳନାମାନଙ୍କ ହସ ଓ ଆଖିରେ ଅଧାଫୁଟା ରଜନୀଗନ୍ଧା ବା ମଲ୍ଲୀଫୁଲର ଅନୁଭବ କମି ଆସୁଥିଲା । ଟ୍ରେକିଂର ଅଭିଯାତ୍ରୀ ଦଳ ଉଚ୍ଚପାର୍ବତ୍ୟ ପ୍ରଦେଶରୁ ଅବତରଣ କରି କ୍ରମଶଃ ସମତଳ ପ୍ରଦେଶରେ ପ୍ରବେଶ କରୁଥିଲେ । ଏଥର ଯାତ୍ରାରେ କେବଳ ଅବତରଣ କରିବାକୁ ପଡୁଥିବାରୁ ଯାତ୍ରାର ବେଗ ବଢୁଥିଲା । ଅଧିକ ପଥ ଯାତ୍ରା କରି ହେଉଥିଲା ଗୋଟିଏ ଦିନରେ ।

ଅବଶେଷରେ ପାର୍ବତ୍ୟଯାତ୍ରାର ପରିସମାପ୍ତି ଘଟିଥିଲା ଏବଂ ସେମାନେ ପୁଣି ବସ୍ ଯୋଗେ ଆସି ପହଞ୍ଚିଥିଲେ ଉତ୍ତରକାଶୀରେ । ଉତ୍ତରକାଶୀର ପୂର୍ତ୍ତ ବିଭାଗ ବଙ୍ଗଳାରେ ରାତ୍ରିଯାପନ କରି ତା' ପରଦିନ ସେମାନଙ୍କର ବସ୍ ନେଇ ଫେରିଯିବା କଥା ମସୌରୀ । ଉତ୍ତରକାଶୀରେ ପହଞ୍ଚିବା ପରେ ସମସ୍ତେ ଗରମପାଣିରେ ସ୍ନାନକରି ବଜାର ବୁଲି ବାହାରିଲେ । ପାହାଡୀ ପ୍ରଦେଶର ଅତ୍ୟଧିକ ଶୀତ ଯୋଗୁଁ ପ୍ରାୟ କେହି ଗାଧୋଇ ନଥିଲେ ବା ଦାଢ଼ି କାଟି ନଥିଲେ । ବଜାରରେ ବୁଲି ଖାଇପିଇ ସାରି ଡାକବଙ୍ଗଳାରେ ସମସ୍ତେ ନିଶ୍ଚିତ ନିଦ୍ରା ଯାଇଥିଲେ । ପ୍ରାୟ ସପ୍ତାହବ୍ୟାପୀ ପାର୍ବତ୍ୟଯାତ୍ରାର କ୍ଳାନ୍ତି ଯେମିତି ଏକ ସମୟରେ ଅନୁଭବ ହେଉଥିଲା ।

ସରୋଜ ବଜାରରୁ ବୁଲିଆସି ଶୋଇବା ଆଗରୁ ବେଡ୍ ଲ୍ୟାମ୍ପ ପାଖେ ବସି ଚିଠି ଲେଖୁଥିଲା, ପ୍ରିୟଦର୍ଶିନୀକୁ । ଅରଣ୍ୟଯାତ୍ରାର ପ୍ରତିଟି ଅନୁଭୂତି ପୁଣି ପ୍ରିୟଦର୍ଶିନୀର ସ୍ମୃତି- ଏ ସମସ୍ତ ମିଶାଇ ଏକଘଣ୍ଟା ବ୍ୟାପୀ ଏକ ଦୀର୍ଘ ପ୍ରେମପତ୍ର ଲେଖି ସାରିଲା ବେଳକୁ ପ୍ରାୟ ରାତି ବାର ବାଜିଥିଲା । ଡାକବଙ୍ଗଳା ପାଖ ପୋଷ୍ଟବକ୍ସରେ ଚିଠିଟି ପକେଇ ଆସି ନିଜ ସ୍ଲିପିଙ୍ଗ୍ ବ୍ୟାଗ୍ ଭିତରେ ପଶିଯାଇଥିଲା ସରୋଜ । ଉତ୍ତରକାଶୀରୁ ଫେରିବା ପରେ ତା'ର ଗୋଟିଏ ସପ୍ତାହ ଛୁଟି ନେଇ ଯିବାର ଥିଲା

ଓଡ଼ିଶା । ତେଣୁ ଅନେକ ସ୍ୱପ୍ନ ଓ ସମ୍ଭାବନାର ମଧୁର ଆବେଗ ନେଇ ତା'ର ଆଖିପତା ମୁଦି ହୋଇ ଯାଇଥିଲା ସୁଖମୟ ନିଦ୍ରାରେ ।

କେତେ ବା ସମୟ ହେବ ସେତେବେଳେ । ରାତି ଦୁଇଟା କି ତିନିଟା । ସ୍ଲିପିଙ୍ଗ୍ ବ୍ୟାଗ୍ ମଧ୍ୟରେ ଏକ ଦୋଳାୟମାନ ଅନୁଭୂତି ମନେ ହେଉଥିଲା ସରୋଜର । ବାହାରେ କିଛି ଭାରି ଶବ୍ଦ ଓ କିଛି ଚିତ୍କାର ଶୁଭୁଥିଲା । ସରୋଜ ଏକ ଦୁଃସ୍ୱପ୍ନ ଦେଖୁଛି ବୋଲି ଭାବୁଥିଲା । ହଠାତ୍ ବଲ୍‌ଜୀତର କଣ୍ଠସ୍ୱର ଶୁଭିଲା– "ସରୋଜ ! ଉଠ, ଶୀଘ୍ର ବାହାରକୁ ଚାଲି ଆସ । ଭୂମିକମ୍ପ ଆରମ୍ଭ ହୋଇଯାଇଛି । ସେ ଯାବତ୍ ସରୋଜର ନିଦ୍ରାଆବେଗ ଭାଙ୍ଗି ନଥିଲା । ବଲଜୀତ୍ ସରୋଜକୁ ସ୍ଲିପଙ୍ଗ ବ୍ୟାଗରୁ ଘୋଷାଡ଼ି ଆଣି ବାହାରକୁ ଦଉଡ଼ି ଥିଲା । ବାହାର ଲନ୍‌ରେ ଛିଡ଼ା ହୋଇ ପ୍ରକୃତିସ୍ଥ ହେଲାବେଳକୁ ସରୋଜ ଦେଖିଲା ତା'ର ଅନ୍ୟ ସହଯାତ୍ରୀ ଓ ସହଯାତ୍ରିଣୀ ଏବଂ ପୂର୍ତ୍ତବଙ୍ଗଳାର ଅନ୍ୟସବୁ ବାସିନ୍ଦା ବାହାରେ ଆସି ଜମା ହୋଇଛନ୍ତି । ବଙ୍ଗଳାର ପ୍ରଥମ ମହଲା ଭାଙ୍ଗିପଡ଼ିଛି । ତଳମହଲା, ଯାହାର ଏକ ରୁମ୍‌ରେ ସେ ଶୋଇଥିଲା ତାହା ଦୋଦୁଲ୍ୟମାନ ଓ ଭଗ୍ନପ୍ରାୟ । ପ୍ରାୟ ତିନିମିନିଟ୍ ମଧ୍ୟରେ ସେ ମହଲା ବି ଭାଙ୍ଗିପଡ଼ିଲା । ବିରାଟକାୟ ବ୍ରିଟିଶ ଅମଳର ପୂର୍ତ୍ତବଙ୍ଗଳା ପାଲଟିଗଲା ଧ୍ୱଂସସ୍ତୂପରେ । କିଛି ସମୟ ଚିତ୍କାର କରିବା ପରେ ସମସ୍ତେ ନୀରବ ହୋଇଯାଇଥିଲେ । ଭୂକମ୍ପର ତୀବ୍ର ପ୍ରକୋପ ମଧ୍ୟ କିଛି ମିନିଟ ପରେ କମିଯାଇଥିଲା । ଏକ ନିଶ୍ଚିତ ମୃତ୍ୟୁର ସାମ୍ନା କରି ଅଳ୍ପକେ ବର୍ତ୍ତିଯାଇଥିବାର ଏ ଅଭୂତପୂର୍ବ ଅନୁଭବ, ସମସ୍ତଙ୍କୁ ମୂକ ଓ ବାକ୍‌ଶକ୍ତିହୀନ କରିଦେଇଥିଲା । ସେଦିନ ରାତି ଏମିତି ଶୀତରେ ଥରଥର ହୋଇ ସେମାନେ କାଟିଥିଲେ ବାହାର ଲନ୍‌ର ଘାସ ଉପରେ ବସି । ଭୂକମ୍ପର କାଳରାତ୍ରି ପରେ ପୁଣି ସୂର୍ଯ୍ୟ ଉଇଁଥିଲା ଉତ୍ତରକାଶୀର ଆକାଶରେ ।

ଭୂମିକମ୍ପ ଯୋଗୁଁ ଫେରିବା ଘାଟି ରାସ୍ତାରେ ଅତଡ଼ା ଖସିଥିଲା, ଲ୍ୟାଣ୍ଡସ୍ଲାଇଡ୍ ଯୋଗୁଁ ସେଦିନ ରାସ୍ତା କ୍ଲିଅର ନ ହେଲା ପର୍ଯ୍ୟନ୍ତ ବସ୍‌ରେ ମସୌରୀକୁ ଫେରିବା ଅନିଶ୍ଚିତ ଥିଲା । ଯେହେତୁ ସେମାନେ ସମସ୍ତେ ହଠାତ୍ ବାସଶୂନ୍ୟ ଏବଂ ରାତିର ଭୂକମ୍ପର ଆତଙ୍କିତ ଅନୁଭୂତି ଓ ପ୍ରଚଣ୍ଡ ଶୀତର ଦାଉରେ ପ୍ରାୟ ସ୍ତବ୍ଧପ୍ରାୟ ହୋଇଯାଇଥିଲେ, ଚା' କପେ କପେ ସେମାନଙ୍କ ସ୍ନାୟୁତନ୍ତ୍ରୀକୁ ଉଷ୍ମ କରିବା ପାଇଁ ନିହାତି ଆବଶ୍ୟକ ଥିଲା । ତା'ର ସନ୍ଧାନରେ ବାହାରିଥିଲେ ସେମାନେ ଉତ୍ତରକାଶୀର ବଜାରକୁ ।

ଉତ୍ତରକାଶୀର କୋଣ ଅନୁକୋଣରେ ଭୂମିକମ୍ପର ପ୍ରଳୟଙ୍କରୀ ତାଣ୍ଡବଲୀଳା । ସୁରମ୍ୟ ଅଟ୍ଟାଳିକା, ପ୍ରେକ୍ଷାଳୟ, ସରକାରୀ, ବେସରକାରୀ କାର୍ଯ୍ୟାଳୟ, ବାସଭବନ ସବୁଠି ଧ୍ୱଂସର କ୍ଷତଚିହ୍ନ । ସରକାରୀ ହାସପାତାଳରେ ସେଯାବତ୍ ଏକଶହ ମୃତ ଓ ଚାରିଶହ ଆହତ ଦାଖଲ କରି ସାରିଥାନ୍ତି । ଭଂଗା କାନ୍ଥ ଘର ଭିତରେ ଚିପି ହୋଇଥିବା ମୁମୂର୍ଷୁ ମଣିଷମାନଙ୍କୁ ରକ୍ଷା କରିବା ପାଇଁ ଓ ରିଲିଫ୍ କାର୍ଯ୍ୟରେ ପୂରା ଦମ୍‌ରେ ଲାଗିଥାନ୍ତି ସ୍ଥାନୀୟ ପ୍ରଶାସନ, ପୁଲିସ, ଅଗ୍ନିଶମ ସେବା ଓ ଅର୍ଦ୍ଧସାମରିକ ବଳ । ଦମକଳର ଘଣ୍ଟି, ଆମ୍ବୁଲାନ୍ସର ସାଇରନ୍, ପୁତ୍ରହରା, ପତିହରା, ପିତୃମାତୃହରା ମଣିଷର ଆର୍ତ୍ତ ଚିତ୍କାର ଓ କ୍ରନ୍ଦନରେ ଉତ୍ତରରକାଶୀର ଆକାଶ କମ୍ପିତ ହୋଇଉଠୁଥାଏ ।

ସହରରେ ଅକ୍ଷତ ଓ ଖାଲିଥିବା କାଁ ଭାଁ ଚା' ଦୋକାନରେ ପ୍ରବଳ ଭିଡ଼ । କିଛି ସମୟ ଅପେକ୍ଷା କରିବା ପରେ ବଲ୍‌ଜୀତ୍ ଓ ସରୋଜ ଚାଲୁ ଚା' କପେ ପିଇଲେ । ବଲ୍‌ଜୀତ୍ ପାଟିରେ ଭାଷା ନଥିଲା । ମୁହଁ ଦିଶୁଥିଲା ମେଘମେଦୁର ଆକାଶ ପରି ଥମ୍ ଥମ୍, ଆଖି ଦୁଇଟି ଦିଶୁଥିଲା

ଆରକ୍ତ ଓ ଫୁଲାଫୁଲା । ଦେହରେ ଗୋଟେ ସାଲ୍‌ଓ୍ୱାର, କୁର୍ତ୍ତା, ସାଲ୍ ଏବଂ ମୁଣ୍ଡରେ ସ୍କାର୍ଫଟିଏ ବାନ୍ଧିଥିଲା ବଲ୍‌ଜୀତ୍ । ତା'ର ଏ ଅସ୍ୱାଭାବିକ ଗାମ୍ଭୀର୍ଯ୍ୟ ଆପେ ଆପେ କିଛି ସମୟ ପରେ ଭାଙ୍ଗିଯିବ ବୋଲି ଭାବୁଥିଲା ସରୋଜ । କିନ୍ତୁ ନା, ବଲ୍‌ଜୀତ୍‌ର ମୁହଁରେ ଯେମିତି ବିଷାଦର ବିଷଣ୍ଣ ଋତୁ ବସାବାନ୍ଧିଛି । ଫେରିବା ପାଇଁ ସେମାନଙ୍କ ପାଖରେ ବାସସ୍ଥାନ ନଥିଲା । ତଥାପି ସରୋଜ କହିଲା ''ବଲ୍‌ଜୀତ୍, ଅନ୍ୟମାନେ ସମସ୍ତେ ବଙ୍ଗଳାକୁ ଫେରିଯିବେଣି । ସ୍ଥାନୀୟ ପ୍ରଶାସନ ଆମ ପାଇଁ କିଛି ବ୍ୟବସ୍ଥା କରିବେ ନିଶ୍ଚୟ । ଟ୍ରେନିଂ ଏକାଡ଼େମୀକୁ ଓ ଆମମାନଙ୍କ ପରିବାରକୁ ମଧ୍ୟ ଆମେମାନେ କୁଶଳରେ ଅଛୁ ବୋଲି ସମାଚାର ଜଣେଇବା ନିତାନ୍ତ ଜରୁରୀ, ଏଥର ଫେରିଚାଲ । ବଲ୍‌ଜୀତ୍ ମୁହଁରେ କୌଣସି ଭାବାନ୍ତର ଆସିନଥିଲା । ସେ କେବଳ ଗୋଟେ କାଠକଣ୍ଢେଇ ପରି ତା'ର ହାତ ବଢ଼େଇ ଦେଇଥିଲା, ସରୋଜ ହାତକୁ । ଯେମିତି ତା'ର ଆଜି ସାହାରାଟିଏ ଲୋଡ଼ା । ଯେଉଁ ତରୁଣୀ ଅରଣ୍ୟ ଯାତ୍ରାରେ କହୁଥିଲା ତାକୁ, ତୁମେ ସେମିତି ହସୁଥାଅ । ତୁମର ଏ ମୋଟା ଲେନ୍ସ ଚଷମା ତୁମର ହସକୁ ଲୁଚେଇ ଦେଉଛି, ତେଣୁ ତାକୁ ଉତାରିଦିଅ । ପାହାଡ଼ ଜଙ୍ଗଲର ଦୁର୍ଗମ ରାସ୍ତାରେ ତୁମକୁ ହାତଧରି ବାଟ କଢ଼େଇ ନେବା ଦାୟିତ୍ୱ ମୋର । ସେ ଆଜି ଅନ୍ୟର ହାତଧରି ପାଦ ପକେଇବାକୁ ଚାହୁଁଛି । ଝିଅଟା ସବୁବେଳେ ଖୁବ୍ ବେଶୀ ହସକୁରୀ ଥିଲା ବୋଲି ଏବଂ ଅନେକ ସମୟରେ ଅକାରଣରେ ଲୋଟଣି ପାରା ପରି ହସିହସି ଲୋଟିପଡୁଥିବା ଦେଖି ବେଳେ ବେଳେ ସରୋଜ ଅସହିଷ୍ଣୁ ବି ହୋଇଛି । ଭାବିଛି ଏତେ ବେଶୀ ହସିବା ବା କ'ଣ ଦରକାର । ହସ କ'ଣ ଜୀବନର ଏକମାତ୍ର ଓ ଶ୍ରେଷ୍ଠ ଇମୋସନ୍ ?

ଆଜି କିନ୍ତୁ ବଲ୍‌ଜୀତ୍ କାଉରର ମୁହଁରେ ହସ ନଦେଖି ତା'ର ଅନ୍ତରରେ କେମିତି ଏକ ନିଭୃତ ଦୁଃଖ ଓ ଶୂନ୍ୟତା ସୃଷ୍ଟି ହେଉଥିଲା । ବଲ୍‌ଜୀତ୍ ପରି ଝିଅ ମୁହଁରେ କେବଳ ହସ ଶୋଭାପାଏ । ଦୁଃଖ, ଆଶଙ୍କା, ଉଦ୍‌ବେଗ, ଯନ୍ତ୍ରଣା, ଏସବୁଠୁ ଦୂରରେ ରହି ଚିରବସନ୍ତର ସ୍ୱପ୍ନ ଦେଖୁଥିବା ହାସ୍ୟମୟୀ ରାଜକୁମାରୀ ସେ । ସରୋଜର ହାତଧରି ଗୋଟିଏ ଗୋଟିଏ ପାଦପକାଇ ପ୍ରାୟ ଟଳମଳ ଅବସ୍ଥାରେ ଡାକବଙ୍ଗଳାରେ ପହଞ୍ଚିଥିଲା ବଲ୍‌ଜୀତ୍ । ଅନ୍ୟ ସମସ୍ତେ ମଧ୍ୟାହ୍ନ ଭୋଜନର ପ୍ରସ୍ତୁତିରେ ଲାଗିଥିଲେ । ଉତ୍ତରକାଶୀର ଚା' ଦୋକାନଠାରୁ ଡାକବଙ୍ଗଳା ଆସିବା ପର୍ଯ୍ୟନ୍ତ ପଦିଏ ବି କଥା ହୋଇନଥିଲା ବଲ୍‌ଜୀତ୍ । କିଛି ଖାଇବାକୁ ବି ମନା କରିଥିଲା । ଡାକବଙ୍ଗଳା ଲନ୍‌ର ଘାସର ଗାଲିଚା ଉପରେ ଅନ୍ୟମାନେ ସମସ୍ତେ ବିଶ୍ରାମ ନେଉଥିଲେ । ଅପରାହ୍ଣର ସୂର୍ଯ୍ୟ କ୍ରମଶଃ ବୁଡି ଆସୁଥିଲା ଉତ୍ତରକାଶୀର ଆକାଶରେ । ମସୌରୀ ଫେରିବା ରାସ୍ତାରେ ଲ୍ୟାଣ୍ଡସ୍ଲାଇଡ୍ ସେ ପର୍ଯ୍ୟନ୍ତ ହଟାଯାଇ ପାରିନଥିଲା । ତେଣୁ ସେଦିନ ମସୌରୀ ଫେରିବା ଅନିଶ୍ଚିତ ଥିଲା ।

ଭାଗୀରଥୀ ନଦୀର ଧାର ବହିଯାଉଥିଲା ପୂର୍ବବଙ୍ଗଳାର କିଛି ତଳେ ସ୍ୱାଭାବିକ ଭାବେ, ଯେମିତି ଗତକାଲି ଓ ଆଜି ଭିତରେ ତା'ର ବହିବାରେ କିଛି ତଫାତ୍ ନାହିଁ । ଖବର ଆସି ପହଞ୍ଚିଲା, ତା' ପୂର୍ବଦିନ ଯେଉଁ ଫରେଷ୍ଟ ରେଷ୍ଟ ସେଡ୍‌ରେ ସେମାନେ ରାତ୍ରିଯାପନ କରିଥିଲେ, ସେ ରେଷ୍ଟ ସେଡ୍ ଓ ତା'ର ନିକଟବର୍ତ୍ତୀ ଗାଁ ଆଉ ନାହିଁ । ଭୂକମ୍ପଜନିତ ପାହାଡ଼ୀ ନଈରେ ସହସା ବନ୍ୟା(ଫ୍ଲାସ୍ ଫ୍ଲଡ୍) ଆସି ସେ ସମସ୍ତ ଅଞ୍ଚଳ ନିଶ୍ଚିହ୍ନ ହୋଇଯାଇଛି । ଖବରଟା ଶୁଣି ଦୀର୍ଘ ପ୍ରାୟ ଦଶ ଘଣ୍ଟାର ନୀରବତା ଭାଙ୍ଗି ବଲ୍‌ଜୀତ୍ ପ୍ରଶ୍ନ କଲା- ''ସରୋଜ ! ସେ ରେଷ୍ଟସେଡ୍‌ର ଗଡ୍‌ଓ୍ୱାଲୀ ଚୌକିଦାର, ତା'ର କୁନିକୁନି ପୁଅଝିଅ ଓ ଜଙ୍ଗଲ ଫୁଲ ପରି ସରଳ କୋମଳ ସ୍ତ୍ରୀ, ଏମାନେ କ'ଣ ଭୂକମ୍ପ ଓ ବନ୍ୟା ପରେ ବଞ୍ଚିଥିବେ ?''

ସରୋଜ ନୀରବ ରହିଥିଲା ।

ଏଥର ତା'ର ସମଗ୍ର ଶରୀର ଦୋହଲାଇ ଦେଇ ବଲଜୀତ୍ ପ୍ରଶ୍ନ ପୁନରାବୃତ୍ତି କରିଥିଲା– ''କୁହ ମିଷ୍ଟର ଫିଲୋସଫର, ସେମାନେ ଜୀବିତ ଥିବେ । ସତ ନହେଲେ ବି ମୋର ମନ ବୁଝେଇବାକୁ ଏ ମଧୁର ମିଥ୍ୟାର ଭ୍ରାନ୍ତିରେ ମୋତେ ରଖ । ମୁଁ ମୃତ୍ୟୁକୁ ସହିପାରେନା, ମୁଁ ବଞ୍ଚିବାକୁ ଚାହେଁ । ମୋର ଚାରିପଟର ମଣିଷକୁ, ମୋର ପରିଚିତ, ପ୍ରିୟ ପରିଜନ, ବନ୍ଧୁ, ସେମାନଙ୍କୁ ମୁଁ କେବେ ବି ମୃତ, ଶବ ହିସାବରେ ଦେଖିବାକୁ ଚାହେଁ ନାହିଁ । ଆଇ କାନ୍‌ଟ୍ ଷ୍ଟାଣ୍ଡ୍ ଡେଥ୍ ।''

ବଲ୍‌ଜୀତ୍ କାଉର୍ କାନ୍ଦୁ ଥିଲା । ମେଘମେଦୁର ଆକାଶ ଝରି ଯାଉଥିଲା ଆଷାଢ଼ର ପ୍ରଥମ ବର୍ଷା ପରି । ସରୋଜ ବାଧା ଦେଲାନି । ପାହାଡୀ ନଈର ଗତିକୁ କେହି ପ୍ରତିହତ କରିପାରେ !

ଉତ୍ତରକାଶୀର କୋଣ ଅନୁକୋଣ କାନ୍ଦୁଥିଲା । କୁମାୟୁଁର ତେହେରି-ଗଡ଼ୱାଲ ପାହାଡ଼ରୁ ସେ କାନ୍ଦର ପ୍ରତିଧ୍ୱନି ମିଳେଇ ଯାଉଥିଲା ବଲ୍‌ଜୀତ୍ କାଉର୍‌ର ଲୁହରେ ।

ବଲ୍‌ଜୀତ୍ କୋହଭରା କଣ୍ଠରେ କହିଲା– ଏ ନିଷ୍ଠୁର ସମୟ ଦିନେ ଏମିତି ମୋ ବାପା, ମା', ଭାଇ ଓ ପ୍ରିୟତମକୁ ଛଡ଼େଇ ନେଇଥିଲା ମୋ ପାଖରୁ । ଚଉରାଅଶୀ ମସିହା ହିନ୍ଦୁ-ଶିଖ ଦଙ୍ଗାରେ ଦିଲ୍ଲୀର ତିଲକ୍ ନଗର ଏରିଆରେ ସେମାନେ ଟାଣିନେଇଥିଲେ ମୋ ବାପା, ମା' ଓ ଭାଇକୁ । ନିଆଁରେ ଜୀବନ୍ତ ଜାଳି ଦେଇଥିଲେ । ଘର ଭିତରେ ଲୁଚି କରି ରହିଯାଇଥିଲି ଏକୁଟିଆ ମୁଁ । ମୋର ପ୍ରିୟତମ ହର୍‌ଜିନ୍ଦର ଆସୁଥିଲା ମୋ ଫୋନ୍ କଲ୍ ପାଇ ମୋତେ ରକ୍ଷା କରିବାକୁ । ତାକୁ ବି ସେମାନେ ଛାଡ଼ିଲେନି । ସ୍କୁଟର ସହ ବେକରେ ଟାୟାର ପକାଇ ଜିଅନ୍ତା ଜାଳିଦେଲେ ମୋ ଫ୍ଲାଟ୍ ଆଗରେ । ଚାଚାଙ୍କ ଘରେ ରହି ଟ୍ୟୁସନ୍ କରି ତା' ପରେ ମୁଁ ପାଠପଢ଼ିଛି । ପରୀକ୍ଷା ଦେଇ ଚାକିରି କରିଚି । କାନ୍ଦିକାନ୍ଦି କାନ୍ଦିବା ପାଇଁ ଦିନେ ମୋ ଆଖିରେ ଲୁହ ମରି ଯାଇଥିଲା । ସେଦିନ ମୁଁ କସମ୍ ଖାଇଥିଲି... ମୁଁ କେବଳ ହସିବି । ମୃତ୍ୟୁକୁ ମୁଁ ଡରି ଜୀଇଁ ରହିବିନି । ଜୀବନକୁ ପ୍ରତିଟି ମୁହୂର୍ତ୍ତରେ ଜୀବନକୁ ଜୀଇଁ, ଯେତେବେଳେ ଜୀବନର ଯବନିକା ପଡ଼ିବ, ସେତେବେଳେ ମୋର ମୃତ୍ୟୁ ନୁହେଁ, ମୋକ୍ଷ ହେବ । ନିଷ୍ଠୁର ମୃତ୍ୟୁର କାଳପୁରୁଷ ଦିନେ ମୋର ପ୍ରିୟଜନଙ୍କୁ ମୋଠାରୁ ଛଡ଼େଇ ନେଇଥିଲା, ସେଥିପାଇଁ ମୁଁ ମୃତ୍ୟୁ ଉପରେ ବିଜୟ ପାଇବାକୁ ଚାହୁଁଥିଲି । କିନ୍ତୁ ନା, ଜନ୍ମ ହେଲେ ମୃତ୍ୟୁ ଯେ ଏକ ଅବଧାରିତ ସତ୍ୟ । ଏ ସତ୍ୟର ଚିରନ୍ତନତାରୁ କାହାରି ନିଷ୍କୃତି ନାହିଁ । କିନ୍ତୁ ତୁମେ ଦେଖିବ ମିଷ୍ଟର ଫିଲୋସଫର, ମୋର ଥିଓରି ଅଫ୍ ମୋକ୍ଷ ନେଇ ମୁଁ ବଞ୍ଚି ରହିବି । ମୋ ସମାଧିରେ କେହି ପ୍ରିୟଜନ ଦୀପଟିଏ ଦେବା ପର୍ଯ୍ୟନ୍ତ ମୋର ଓଠରେ ହସର ଲହରୀ ଖେଳୁଥିବ ।

ବଲ୍‌ଜୀତ୍ କାଉର୍ ସେମିତି କହୁଥିଲା ଓ କାନ୍ଦୁଥିଲା । ସାଲୱାର, କମିଜ୍‌ର ଚୁନ୍‌ରୀରେ ଆଖିର ଲୁହ ପୋଛୁ ଥିଲା ।

ଉତ୍ତରକାଶୀର ଆକାଶରେ, କୁମାଁୟୁ ପାହାଡର ଗଛଫାଙ୍କରେ, ଭୂକମ୍ପଭଗ୍ନ ଡାକବଙ୍ଗଳାର ଲନ୍ ଉପରେ ସନ୍ଧ୍ୟା ନଇଁ ଆସୁଥିଲା । ଡାକବଙ୍ଗଳାର ପଥର ଶଯ୍ୟା ତଳେ ଭାଗୀରଥୀ ନଦୀର ଧାର ସେମିତି ବହି ଚାଲିଥିଲା ।



# କାରଗିଲ୍ ମା'

## ପାରମିତା ଶତପଥୀ

– ତୋ ପାପାଙ୍କର କି ଖୁସି ସେଦିନ ।

– ତାଙ୍କ ପାଦ ତଳେ ଲାଗୁଥାଏ କି ନଥାଏ । ସେଇ କ୍ୟାବିନ୍‌ସାରା ତ ଖାଲି ଡେଉଁଥାନ୍ତି, ନାଚୁଥାନ୍ତି ସେ– ହସର ଫୁଆରା ବାହାରି ଆସୁଥାଏ ମୁହଁରୁ ତାଙ୍କର । ହସ୍‌ପିଟାଲ୍‌ରୁ ଡିସ୍‌ଚାର୍ଜ ହୋଇ ଷ୍ଟେସନ୍ ୱାଗନ୍‌ରେ ଆମେ ସମସ୍ତେ ବସି ଯେଉଁ ପନ୍ଦର କିଲୋମିଟର ଘରକୁ ଆସିଲୁ– ତୋ ବାପା ଡ୍ରାଇଭ୍ କରୁଥାନ୍ତି– ରାସ୍ତାସାରା ଗୁଣୁଗୁଣୁ ହେଇ ଗୀତ ଗାଉଥାନ୍ତି ଓ ଡାହାଣ ପାଦରେ ତାଳ ଦେଇ ଚାଲିଥାନ୍ତି । ମୁଁ ପାଖରେ ଆଗ ସିଟ୍‌ରେ ବସିଥାଏ– ନରମ କପଡ଼ାରେ ଗୁଡ଼ାହୋଇ ତୁ ମୋ କୋଳରେ ଥାଉ– ଜମା ତିନିଦିନର ହୋଇଥାଉ ତ, ଆରାମ୍‌ରେ ଆଖି ବୁଜି ଶୋଇଥାଉ । ମୁଁ କୌଣସି ମତେ ହସ ଚାପି, ଓଠ କାମୁଡ଼ି ବସିଥାଏ ।

–ତା'ପରେ ଯେତିକି ମିଠେଇ ବଣ୍ଟା ହେଇଛି, ଯେତକି ଫୋନ୍ କଲ୍ କରାଯାଇଛି, କ'ଣ କହିବି ଆଉ ? ଯା'ଙ୍କର ଏମିତି ଖୁସି ଦେଖି ବାସନ ମଜାଳି ଆଉ ପୂଝାରୀ, ଦୁଇ ଜଣଯାକ ନୂଆ ଲୁଗା ମାଗିଲେ । ମୁଁ କିନ୍ତୁ ଏତେ ଖୁସି ଦେଖା ଯାଉନଥାଏ– ଡର ଲାଗୁଥାଏ କାଳେ କାହାର ନଜର ଲାଗିଯିବ । ଦୁଇଦିନ ପରେ, ସତକୁ ସତ କାହାର ନଜର ଲାଗିଗଲା କି କ'ଣ, ଶୁଖିକରି ଆପେ ଝଡ଼ିଯିବା ପୂର୍ବରୁ ତୋ ନାହିରେ କ'ଣ ଟିକେ ବାଜି ସାମାନ୍ୟ ଫାଟି ଯାଇଥିଲା । ସେଥିରୁ ରକ୍ତର ସରୁ ଧାରଟିଏ ବହିଯାଉଥିଲା– ପାଞ୍ଚ ଛଅ ବୁନ୍ଦା ହେବ ବୋଧହୁଏ । ମୋ ଦେହରୁ ତ ରକ୍ତ ଶୁଖିଗଲା ଯେମିତି ! ତୋ ପାପାଙ୍କୁ ଜାବୁଡ଼ି ଧରି ମୁଁ ଝରଝର କାନ୍ଦୁଥାଏ ଓ ସେ ମୋତେ ବୁଝାଇ ଚାଲିଥା'ନ୍ତି– ରୁହ, ରୁହ, କାନ୍ଦ ବନ୍ଦ କର– ଧୈର୍ଯ୍ୟ ଧର, ଚାରି ପାଞ୍ଚ ଟୋପା ତ ବହିଛି... । କିନ୍ତୁ ତୋ କୁନି ଦେହର ରକ୍ତ । ମୁଁ କେମିତି ସହି ପାରିଥାନ୍ତି କହିଲୁ ?

ସେତିକିବେଳୁ, ମୁହୂର୍ତ୍ତ ମୁହୂର୍ତ୍ତ– ଦିନ ଦିନ– ମାସ ମାସ– ବର୍ଷ ବର୍ଷ ଧରି– ପୂରା ବାଇଶି ବର୍ଷ ଭିତରେ, କେତେ ବୁନ୍ଦା ରକ୍ତ ତିଆରି କରିଥିଲି, ମୁନାରେ ? କେତେ ବୁନ୍ଦା ? ମୋ' ଧନ, କେତେ ବୁନ୍ଦା କହ ?

ତୁ ଖାଇଲାବେଳେ ଅଝଟ ହେଲେ, ଭାତ ଥାଳିରେ ଖାଇବା ଛାଡ଼ି ଗଲେ, ତଳେ ଜିଦି କରି ବୁଣି ଦେଲେ– କେତେଥର ତୋତେ ବୁଝାଇଛି । ଚାଷୀଟିଏ କେଡ଼େ କଷ୍ଟରେ ମଞ୍ଜିତକ ସଂଗ୍ରହ କରେ । ଜମିରେ ହଳ କରି, ଖରା ବର୍ଷ ସହ ଏକାକାର ହୋଇ ମଞ୍ଜି ବୁଣେ, ଗଛ ଲଗାଏ, ଖରାରୁ ଘୋଡ଼ାଏ– ବର୍ଷା ପାଣି ଜମିଗଲେ ସିଆର କାଟେ, ପୋକ ଧରିଗଲେ ଔଷଧ ଆଣି ଛିଞ୍ଚେ– ରାତି ରାତି ଧରି ଜଗି ବସିଥାଏ– ଫସଲ କାଳେ କିଏ ନଷ୍ଟ କରିଦେବ– ଖାଇଦେବ । ପାଚିଲା ଧାନକେରା ସବୁ କାଟେ– ବେଙ୍ଗଳା ପକାଇ ଧାନ କାଢ଼େ, ଉଷାଏଁ, କୁଟେ, ଚାଉଳ ତିଆରି କରେ । ଆମେ ତା'କୁ ଆଣି ରାନ୍ଧି ଖାଉ । କେତେ କଷ୍ଟ– ପରିଶ୍ରମ ମୁଠାଏ ଭାତ ପଛରେ । ଏମିତି ଭାବରେ ବାବୁରେ ନଷ୍ଟ କରନ୍ତି ନାହିଁ ତାକୁ । ନଷ୍ଟ କରିବା ଆଗରୁ ଥରେ

ହେଲେ ଭାବିବୁ କେତେ କଷ୍ଟ, କେତେ ଝାଳ, କେତେ ଉଜାଗର ରାତି ବିତିଛି ସେତକ ତିଆରିବା ପାଇଁ ।

ଗତକାଲି ସକାଳୁ ସକାଳୁ କଲିଂ ବେଲ୍ ବାଜିଲାବେଳକୁ ମୁଁ ଡାଇନିଂ ଟେବୁଲ୍‌ରେ ଚା' ସଜାଡୁଥିଲି । ତୋ' ପାପା ଖବରକାଗଜ ଛାଡ଼ି ତରବର ହୋଇ ଉଠିପଡ଼ି କବାଟ ଖୋଲି ଦେଲେ । ଆଗରେ କିଏ ଜଣେ ଠିଆ ହୋଇଥିଲା । ତୁମରି ପୋଷାକପିନ୍ଧା ପିଲାଟି ହେବ– ତୋରି ବୟସର ହେବ ବୋଧହୁଏ । ତୋ ପାପା ଚଟ୍‌କରି ମୁହଁ ପଛକୁ ବୁଲାଇଦେଲେ– ମୋ ସହ ଆଖି ମିଶିଗଲା ତାଙ୍କର– ମୁଁ ସେତେବେଳକୁ ଚେୟାର୍ ଛାଡ଼ି ଉଠିପଡ଼ିଥାଏ– କଳା ଛାଇଟେ ପରି କ'ଣ ଯେମିତି ଚାଲିଗଲା ଆମ ଦୁହିଁଙ୍କ ମଝିରେ ! ସେଇମିତି ଚଟ୍‌କରି ମୁହଁ ଫେରାଇନେଲେ ତୋ ପାପା । ସେ ପିଲାଟିକୁ ଭିତରକୁ ଡାକିଲେ, କିଛି ବୋଧହୁଏ କଥା ଆରମ୍ଭ କଲେ । ମୁଁ ସେମିତି ଠିଆ ହୋଇଥାଏ – ମନେ ପକାଇବାକୁ ଚେଷ୍ଟା କରୁଥାଏ, ପିଲାଟିକୁ ଆଗରୁ କୋଉଠି ଦେଖିଛି କି ? ତୋ' ସାଙ୍ଗରେ ଘରକୁ କେବେ ସେ ଆସିଛି କି ? ମୁଁ ଜାଣି ଜାଣି ତୋ' ପାପାଙ୍କୁ ଚାହୁଁ ନଥାଏ । ତମରି ସେ ପିଲାଟି ସହିତ ସେ ହିଁ କଥାବାର୍ତ୍ତା କରନ୍ତୁ– ମୋର କ'ଣ ଯାଏ ଆସେ ! ଚାରି ପାଞ୍ଚ ମିନିଟ୍ ପରେ ସେ ପିଲାଟି ଉଠି ଠିଆ ହେଲା– ତା' ସାଙ୍ଗେ ସାଙ୍ଗେ କିଛି ପଡ଼ିଯିବା ପରି ଶବ୍ଦଟିଏ ହେଲା– ତୋ ପାପା ସୋଫାରୁ ଉଠୁ ଉଠୁ ହାମୁଡ଼େଇ ପଡ଼ିଛନ୍ତି କାର୍ପେଟ୍ ଉପରେ– ଡାହାଣ ହାତରେ ଟି'ପୟ ଉପରେ ଭରା ଦେଇଛନ୍ତି । ମୁଁ ଦଉଡ଼ି ଆସୁଆସୁ ତୋ' ପାପା ମୁଣ୍ଡ ଉଠାଇ ମୋତେ ଚାହିଁଦେଲେ । ହଠାତ୍ ଚମକି ପଡ଼ିଲି ମୁଁ । ସେ ତ ଏମିତି କେବେ ଚାହାଁନ୍ତି ନାହିଁ ? ପୁଣି ଯିମିତି ଛାଇଟେ ପରି କ'ଣ ଚାଲିଗଲା ମଝିରେ । ତମରି ସେ ପିଲାଟି ନଇଁପଡ଼ି ତୋ' ପାପାଙ୍କୁ ଉଠାଇ ସୋଫାରେ ବସାଇଲା । ବୁଲିପଡ଼ି ମୋତେ ନମସ୍କାର କଲା ଓ କ'ଣ କ'ଣ ସେ କହିଯାଉଥିଲା ।

– କ'ଣ ସବୁ ସେ କହିଯାଉଥିଲା ?

–ମୁନାରେ, ମୋ ଧନ, ତୁ କୋଉଠି ଅଛୁ ? କୋଉଠି ଅଛୁ ତୁ ? ମୁଁ କିଛି ଶୁଣିନାହିଁ ତୋ' କଥା– ତମରି ସେ ପିଲାଟିର– ତୋରି ବୟସର ସେଇ ପିଲାଟିର କଥା ।

ପୃଥିବୀଯାକର ନଈ, ନାଳ, ପୋଖରୀ କୋଉଠି ଶୁଖିଗଲାରେ ମୋ ଧନ ! ଟୋପାଟିଏ ପାଣି ଦେଲେ ନାହିଁ ତତେ ସେମାନେ । ଛଅଦିନ ଛଅ ରାତି– ଟୋପାଟିଏ ପାଣି ପାଇଁ ତୁ କୁଆଡ଼େ ବିକଳ ହୋଇପଡୁଥିଲୁ । ରାତିରେ ତଳେ ଗଡ଼ିପଡ଼ି ବରଫ ଚୋବାଇ ଯାଉଥିଲୁ– ହାତ ଦୁଇଟା ତୋର କୁଆଡ଼େ ବଂଧା ହୋଇଥିଲା ! କୋଉଠି ଶୁଖିଗଲା ସୂର୍ଯ୍ୟ ଦେବତାଙ୍କୁ ମୁଁ ପ୍ରତିଦିନ ଟେକୁଥିବା ଆଞ୍ଜୁଳାର ପାଣି ! ଖାଇବା ତ ଦୂର, ଟୋପାଏ ପାଣି ବି ଦେଲେ ନାହିଁ ! ମୋ ଧନରେ, ତୁ ଲଗାଇଥିବା ନଡ଼ିଆ ଗଛଗୁଡ଼ାକ ପଇଡ଼ରେ ଭର୍ତ୍ତି ହୋଇଯାଇଛି । ପଛପଟ ଛୋଟ ପୋଖରୀରେ ତୁ ଛାଡ଼ିଥିବା କଇଁଫୁଲ ଆଜିକାଲି ରାତିରେ ଗୋଟାଏ ଦୁଇଟା ହେଇ ଫୁଟୁଛି । ଏମିତି ଢଳଢଳ ପୃଥିବୀରେ ତୋତେ ଟୋପାଏ ପାଣି ମିଳିଲା ନାହିଁ । ପୁଣି ଛଅଦିନ ଛଅରାତି ଧରି ! କେମିତି ବିଶ୍ୱାସ କରିବିରେ ମୁଁ ଏକଥା ! କିଏ ସେମାନେ ? କାହିଁକି ଏତେ କ୍ରୋଧ, କାହିଁକି ଏତେ ଘୃଣା ତାଙ୍କର ତୋ' ପ୍ରତି ? ଇଏ ସତ ନା ମିଛ ?

ଆଜି ସକାଳୁ ତୋ ପାପା ଏୟାରପୋର୍ଟ ଗଲେ । ଘରସାରା ଲୋକ ଭର୍ତ୍ତି । କିଏ କିଏ ଆଉ ସବୁ ତାଙ୍କ ସହିତ ଗଲେ କେଜାଣି– ମୁଁ କିଛି ଜାଣି ନାହିଁ । ତୁ ଆସୁଛୁ କିରେ ମୋ ଧନ ? ଆସିଯାଆ ମୋ ବାପା ! କବାଟ ଠେଲି ଦେଇ, ଠିଆ ହୋଇ ଯାଆ ମୋ ଆଗରେ । କଅଁଳି

ଆସୁଥିବା ଛନଛନ ସବୁଜ ଲମ୍ବା କଦଳୀ ଗଛଟେ ପରି, ଘଡ଼ଘଡ଼ି ବିଜୁଳି ସାଙ୍ଗେ ପୃଥିବୀକୁ ଚମକାଇ ଝରଝର ଝରିପଡୁଥିବା ବୈଶାଖର ବର୍ଷା ପରି, ଆମ ଛାତ ଉପରର ନରମ ଶୀତଦିନଆ ଖରା ପରି – ଆସିଯାଆ ମୋ ପାଖକୁ ଧନ– ଦୁଇମାସ ତଳେ ଯେମିତି ଯାଇଥିଲୁ, ଠିକ୍ ସେମିତି ।

ଡକ୍ଟର ଗୁପ୍ତା ମୋତେ ଭୋର୍‌ରୁ ଇଂଜେକ୍‌ସନ୍‌ଟେ ଦେଇଛନ୍ତି । ହେଇଟି, ଆହୁରି ଗୋଟାଏ ଆଣି ଆସିଲେଣି । ଇଏ କୁଆଡ଼େ ମୋର ସ୍ନାୟୁକୁ ଶାନ୍ତ କରିବ !

ତୋତେ ନଅବର୍ଷ ହୋଇଥିଲା । ତୋ ପାପାଙ୍କର ସେତେବେଳେ ଅଲ୍‌ୱାର୍‌ରେ ପୋଷ୍ଟିଂ ହୋଇଥାଏ । ଟାଉନ୍‌ହଲ୍‌ରେ ଛୋଟ ପିଲାଙ୍କର ଚିତ୍ରାଙ୍କନ ପ୍ରତିଯୋଗିତା ହେଉଥାଏ । ବିଷୟବସ୍ତୁ ଥାଏ– ଆଇ ଆମ୍ ଏ ହୀରୋ । ତୁ ସେଥିରେ ପ୍ରଥମ ପୁରସ୍କାର ପାଇଥିଲୁ । ତୋ'ର ଚିତ୍ର ଥିଲା, ସବୁଜ ରଙ୍ଗର ଟୋପି, ସବୁଜ ପୋଷାକ ପିନ୍ଧି କାନ୍ଧରେ ରାଇଫଲ୍‌ଟେ ପକାଇ, ମୋଟା କଳା ନିଶ ଥିବା ଯୁବକଟିଏର ଚିତ୍ର ! ସେଇ ଚିତ୍ରଟି କେତେ ଭଲ ହୋଇଥିଲା ମୋର ମନେ ନାହିଁ । କିନ୍ତୁ ସେ ମୋଟା କଳା ନିଶ ଓ କାନ୍ଧ ଉପରର ରାଇଫଲ୍ ଏବେ ବି ମୋ ଆଖି ଆଗରେ ନାଚି ଯାଉଛି । ତୋ ପାପା ଭାରି ଗର୍ବିତ ହୋଇଥିଲେ, କହି ବୁଲୁଥିଲେ– ମାଇଁ ସନ୍ ୱିଲ୍ ବି ଏ ଫାଇଟର୍ । ମୋତେ କିନ୍ତୁ ସେଦିନ ଭଲ ଲାଗି ନଥିଲା । ମୁଁ ଯୁକ୍ତି କରୁଥିଲି, ଏମିତି ସବୁ ଏତେ ପିଲାଦିନୁ ଶିକ୍ଷା ଦେବା ଠିକ୍ ନୁହେଁ । ସେ କ'ଣ କରିବ, ଦେଖାଯିବ ।

କଥା ଅଛି, ସାତ ପୁରୁଷର ଖୁଣ ଆଣି ମଣିଷ ଛୁଆ ଜନ୍ମ ହୁଏ । କେଜାଣି କେମିତି ତୋର ଆଖିର ଡୋଳା ଗାଢ଼ ନୀଳ– ସଫା ଧଳା ଆଖିରେ ଗାଢ଼ନୀଳ ଡୋଳା ଓ ଘନ କଳା ଭ୍ରୂଲତା । ତୋ ପାପା କୁହନ୍ତି, ତୋ ଜେଜେବାପାଙ୍କର କୁଆଡ଼େ ଏମିତି ଚେହେରା ଥିଲା । ତୋ' ଆଇ କୁହେ, ତା' ମାଆ ପରି ଦେଖିବାକୁ ତୁ । ଯାହା ପରି ବି ହେଉ– ସରଳ, ସତେଜ, ବିଶ୍ୱାସଭରା ତୋ ଚାହାଣୀ । ବରଫ ପାହାଡ଼ ଭିତରେ ନିଥର, ଅତଳ ନୀଳ ହ୍ରଦର ପାଣି ପରି ନିର୍ମଳ, କୋମଳ– କେତେବେଳେ କେମିତି ଦୁଷ୍ଟାମିରେ ଚଞ୍ଚଳ ହୋଇଯାଏ ଯାହା ! ତୁ ଆଖି ଖୋଲିବା ଦିନରୁ ଯାହା ମୁଁ ଦେଖି ଆସିଛି– ସେହି ହସହସ ସ୍ନେହଭରା ଚାହାଣୀ ତୋର– କେତେ ପରିଚିତ– ଆଃ ! ତୁ ଦୂରରେ ଥିଲାବେଳେ ବି ଦିଶିଯାଏ ମୋତେ । ବାଇଶି ବର୍ଷର ଆସ୍ଥା, ବିଶ୍ୱାସରେ ତିଆରି ସେଇ ଉଜ୍ଜ୍ୱଳ ଦୁଇ ମଣି, ରତ୍ନ ମୋର...

– ଧନରେ ! କ'ଣ କୁହା କୁହି ହେଉଛନ୍ତି– ଗୋଟିଏ ପରେ ଗୋଟିଏ ସେମାନେ ତା'କୁ ତଡ଼ି ଦେଇଛନ୍ତି । ମିଛ କଥା ଏସବୁ ! ତୁ ଥରେ ଚାହିଁଦେଲେ ତ ଶତ୍ରୁଟିଏର ବି ମାୟା ଆସିଯିବ । ଏକଥା କିଏ କରିବାକୁ ଯିବ ? ପୃଥିବୀଯାକର ସମସ୍ତ ନୃଶଂସତା ତ ହାର ମାନିଯିବ ତୋର ସରଳ, ନିର୍ମଳ ଚାହାଣୀ ଆଗରେ । ବାପାରେ, କ'ଣ ତୁ ତା'ହେଲେ ଶୋଇ ଥିଲାବେଳେ – ଅଜାଣତରେ... ମୁଁ ତ ବିଶ୍ୱାସ କରିପାରୁନାହିଁ । ଅପେକ୍ଷା କରିଛି ତୋତେ ପଚାରିବା ପାଇଁ । ତୁ କୋଉଠି ଅଛୁ ମୋ ମୁନା !

ଟାଣ ହୋଇ ଆସୁଥିବା ଲହୁଣି ପିତୁଳାଟିଏ ତୁ ! କେତେ ଭାର ଦେଇଥିବୁ ପୃଥିବୀକୁ ଯେ ଜମା ବାଇଶି ବର୍ଷରେ ! ସତରେ କ'ଣ ପୃଥିବୀ ସହିପାରିଲା ନାହିଁ ସେତକ ! କିଏ ହେଲେ କୁହ ମୋତେ– ସତ କୁହ !

"ଏଇଟାକୁ ଏମିତି ସିଧା କରି ଧରି ସୁସୁ କରିବୁ– ତା'ହେଲେ ଠିକ୍ ଯାଇ ଟଏଲେଟ୍‌ରେ ପଡ଼ିବ ।" ମୁଁ ତୋତେ ପ୍ରଥମ ଥର ପାଇଁ ଶିଖାଉଥିଲି ।

"ଆଉ କ'ଣ କ'ଣ ସେଥିରେ ସେ କରିବ, ତା'କୁ ଶିଖାଇଦିଅ ।" ତୋ ପାପା ଟଏଲେଟ୍‌ର ଚୌକାଠ ଧରି ଠିଆ ହୋଇଥିଲେ ଓ ଓଠ ଚିପି ହସୁଥିଲେ ।

"ଚୁପ୍‌କର, ବଡ଼ ବେହିଆ ତୁମେ ।" ମୁଁ ମୁହଁ ବୁଲାଇ କହିଥିଲି ଓ ହସି ପକାଇଥିଲି ।

"ମମି, ପାପା କ'ଣ କହିଲେ କି ?" ତୁ ସୁସୁ କରୁକରୁ ପଛକୁ ମୁହଁ ବୁଲାଇ ପଚାରିଲୁ ।

"କିଛି ନୁହେଁରେ, ତୁ ତୋ କାମ ସାରି ଫ୍ଲସ୍ କରି ଆ ।" ମୁଁ କହିଥିଲି ଓ ରୋଷେଇ ଘରକୁ ଚାଲିଯାଇଥିଲି ।

–ରାକ୍ଷସ ! ପଶୁ ! ଓଃ ! କି ପ୍ରକାର ହିଂସ୍ରଜନ୍ତୁ ସେମାନେ ! ଖଣ୍ଡଖଣ୍ଡ କରି କାଟିଲେ ତୋତେ– କ'ଣ କାହାର ଦୋଷ ତୁ କରିଥିଲୁ ବାବୁରେ...

ରତ୍ନା ଆଜି ସକାଳେ ଆସିଥିଲା, ତୋ ପାପା ଏୟାରପୋର୍ଟ ଚାଲିଯିବା ପରେ । ତା'ର ପତଳା ବେକରେ ସେଇ ସୁନାଚେନ୍ ଓ ଡାଇମଣ୍ଡ ଲକେଟ୍‌ଟି ପିନ୍ଧିଥିଲା । ଆମେ ତା'କୁ ଯାହା ଏନ୍‌ଗେଜ୍‌ମେଣ୍ଟରେ ଦେଇଥିଲେ । ବାହାଘର ବର୍ଷେ ପରେ କରିବାକୁ ତ ସେଦିନ ତା' ବାପା ମାଆ କହିଥିଲେ । ତୋ ପାପା କିନ୍ତୁ ପରେ କହିଲେ– ନାଇଁ, ଆମେ ଏଇ ଡିସେମ୍ବରରେ କରିଦେବା । ଆର୍ମିବାଲାଙ୍କର ବାହାଘର ଶୀଘ୍ର ହୋଇଯିବା ଉଚିତ । ମୁଁ ପାଟିରେ ହାତ ଦେଇଦେଲି ତାଙ୍କର– ସବୁବେଳେ ତାଙ୍କର ଏମିତି ଅମଙ୍ଗଳ କଥା । ତୁ ଖବର ପାଇଲୁ ତ ? ଡିସେମ୍ବର ତେଇଶିରେ ବାହାଘର ହେବ । ମୁଁ ଆଜି ରତ୍ନାକୁ କହିଲି ସେଇକଥା । ସେ ତ ଖାଲି ମୋତେ ଜାବୁଡ଼ି ଧରିଥାଏ । ମୁଁ ସେଇଠୁ ବଡ଼ ଆଲମାରି ଚାବିଟା ଆଣି ପୁରୁଣା ଆଲ୍‌ବମ୍‌ଟି ବାହାର କଲି । ଚାବିଟା କୋଉଠି ରହିଯାଇଥିଲା କେଜାଣି, ଖୋଜିବାରେ ପନ୍ଦର ମିନିଟ୍ ଗଲା । ରତ୍ନା ବେଳେବେଳେ ଆସେ– ତୋର ପିଲାଦିନର ଫଟୋ ଦେଖିବାକୁ ଭାରି ଆଗ୍ରହ ତା'ର । ଆଜି କିନ୍ତୁ ମୁଁ ଆମର– ମାନେ ତୋ' ପାପା ଓ ମୋ'ର ପୁରୁଣା ଆଲବମ୍‌ଟା କାଢ଼ିଲି । ତୋତେ ସେତେବେଳେ ସାତ ବର୍ଷ– ତୋ ପାପାଙ୍କୁ ତେତିଶି । ଆମେ ନୂଆ ନୂଆ ବମ୍ବେ ଆସିଥାଉ । ପ୍ରଥମ କରି ମୁଁ ନେଭିବଲ୍‌କୁ ଯାଇଥିଲି; ତୋତେ ଆଉଟ୍ ହାଉସ୍‌ରେ ଦିଦି ପାଖରେ ଛାଡ଼ିଦେଇ । ତୋ ପାପା ରାଗୁଥିଲେ, କାହିଁକି ଶାଢ଼ି ପିନ୍ଧିକରି ଆସିଲ– ଗାଉନ୍‌ଟେ କାହିଁକି ତିଆରି ନ କଲି ! ସେତେବେଳେ ମୋତେ ଭାରି ଲାଜ ମାଡୁଥିଲା– ଗାଉନ୍ ପିନ୍ଧିକରି ବାହାରକୁ କେମିତି ଯାଇଥା'ନ୍ତି ? ତୋ ପାପା ଧଳାରଙ୍ଗର ଗଳାବନ୍ଦ କୋଟ୍ ପିନ୍ଧିଥାନ୍ତି– ସେମିତି ଶାଢ଼ି ପିନ୍ଧା ହୋଇ– ନେଭିବଲ୍‌ର ଫ୍ଲୋର୍‌କୁ ଟାଣିନେଲେ । ତାଙ୍କର ବନ୍ଧୁ କିଏ ବୋଧହୁଏ ଫଟୋଟି ଉଠାଇଛନ୍ତି– ତା'କୁଇ ରତ୍ନାକୁ ଦେଖାଉଥିଲି । ତା'କୁ କହିଲି, ତୁମେମାନେ ଏମିତି ଫଟୋଟିଏ ଉଠାଇବ । ଯା'ଠାରୁ ଆହୁରି ଜୀବନ୍ତ ଯେମିତି ହେବ ! ତୁମେମାନେ ଜଲ୍‌ଦି ହନିମୁନ୍‌ରୁ ଫେରି ଆସିବ । ଜାନୁଆରୀ ୧ ତାରିଖ ସଂଧ୍ୟା– ପୁଣି ନୂଆ ଶତାବ୍ଦୀର ଆରମ୍ଭ– ଆର୍ମିବଲ୍‌ରେ ନିଶ୍ଚୟ ଯୋଗଦେବ । ରତ୍ନା ଗୋଟିଏ ମେରୁନ୍ କଲର୍‌ରେ ଗାଉନ୍ ତିଆରି କରିବ । ମେରୁନ୍ କଲର୍ ତା'ର ଗୋରା ଦେହକୁ ଭାରି ମାନିବ । ତା'ର କୁଞ୍ଚୁକୁଞ୍ଚିଆ ଛୋଟ ବାଳକୁ ଉଠାଇଦେଇ ଟପ୍‌ନଟ୍‌ଟେ କରିଦେବ । ଡାନ୍‌ସ ଫ୍ଲୋର୍‌ରେ ତୁ ତା'କୁ ବାହୁରେ ଧରିଥିଲାବେଳେ ଓ ସେ ଟିକିଏ ବେକ ପଛକୁ ଝୁଙ୍କାଇଥିବା ବେଳେ, କାହାକୁ କହିବ ଫଟୋଟିଏ ନେବାକୁ । ତୁ... ମୁନାରେ, ତୁ କୋଉ ରଙ୍ଗର ସୁଟ୍ ପିନ୍ଧିବୁ... ମିନିଟିଏ ମୁଁ ଭାବୁ ଭାବୁ ରତ୍ନା ମୁହଁରେ ଓଢ଼ଣୀ ଜାକି ଦୌଡ଼ି ପଳାଇଲା । ବାରଣ୍ଡାରେ ଡକ୍ଟର ଗୁପ୍ତାଙ୍କୁ କ'ଣ କହିଲା କେଜାଣି– ଗୁପ୍ତା ଅଙ୍କଲ୍ ଆସି ପୁଣି ଇଞ୍ଜେକ୍‌ସନ୍‌ଟେ ଦେଲେ । ମୋ ଆଖି ତ ବୁଜି ହେଇ ଆସିଲା– ଆଲମାରିଟା ସେମିତି ଖୋଲା ପଡ଼ିଲା...

– ଜାଣୁ, ମୁନା...

– ତୁ ଯେତେବେଳେ ଏକଦମ୍ ଛୋଟଟିଏ ହେଇଥିଲୁ– ଖଟ ଉପରେ ଶୋଇ ଶୋଇ ଅନେକ ସମୟରେ ସ୍ଥିର ଦୃଷ୍ଟିରେ ସିଲିଂ ଫ୍ୟାନ୍‌କୁ ଚାହିଁ ଚାହିଁ ହାତଗୋଡ଼ ହଲାଇ ଖେଳି ଚାଲିଥିଲୁ– ତୋ କୁନୁମୁନିଆ ମନରେ ତୁ କ'ଣ କ'ଣ ଭାବୁଥିଲୁ କେଜାଣି ! ତୋ ପାଖରେ ତୋତେ ଜଗି ମୁଁ ଉପନ୍ୟାସଟିଏ ଧରି ଖଟର ବାଡ଼କୁ ଆଉଜି ପଢୁଥିଲି– କିନ୍ତୁ ଅନେକ ସମୟରେ ଗୋଟିଏ ଅଜଣା ଆଶଙ୍କା ମୋତେ ଘାରି ଦେଉଥିଲା । ଆତଙ୍କିତ ହେଇଯାଉଥିଲି ଯେ, କାଳେ ତୋତେ ବଢ଼ାଉଥିବା ଭିତରେ ମୋର କିଛି ହେଇଯିବ ! ଏମିତି କିଛି ହେଇଯିବ ଯେ ମୁଁ ନଥିବି– ତୋତେ ଏକୁଟିଆ ଛାଡ଼ିଦେଇ... । ବହିଟିକୁ ଅଧାଖୋଲା କରି ଖଟ ଉପରେ ରଖିଦେଇ ମୁଁ ତୋ ମୁହଁକୁ ଚାହିଁ ବସୁଥିଲି । ତୋର ଏଇତକ ତମ୍ବାଳିଆ ରଙ୍ଗର କେଶ ତିରୁପତିଙ୍କ ପାଖରେ ପଡ଼ିବ । ତୁ ଗୁରୁଣ୍ଡିବୁ– ଖଟବାଡ଼କୁ ଧରି ଠିଆ ହେବୁ । ଧୀରେ ଧୀରେ ହଲି ହଲି ଚାଲିବୁ । ନର୍ସରୀ ସ୍କୁଲ୍ ଯିବୁ, ଛୋଟିଆ ୟୁନିଫର୍ମ ପିନ୍ଧି । ଛୋଟ ସାଇକେଲ୍‌ଟିଏ ଥିବ ତୋର । ପାପା ତ ତୋର ଅଫିସ୍‌ରେ ଥିବେ– ତୋତେ ସାଇକେଲ୍ ଉପରେ ବସାଇ, ପଛରୁ ଧରି ଧରି ମୋତେ ହିଁ ତ ବାରଣ୍ଡାସାରା ଚଲାଇବାକୁ ହେବ । ଅଥଚ ତା' ପୂର୍ବରୁ ଯଦି ମୋର କିଛି ହୋଇଯାଇଥିବ... କ'ଣ କରିବୁରେ ତୁ ଏକା ଏକା !

ସ୍କୁଲ୍‌ରୁ ଫେରି ଭୋକ ଲାଗିଲେ କାହାକୁ କହିପାରୁ ନଥିବୁ– ହଲିବାକୁ ଆରମ୍ଭ କରିଥିବା ଦାନ୍ତକୁ ଭାଂଗିଦେବାକୁ କେହି ଖାତିର୍ କରୁନଥିବେ– ମୂଷଳ ଧାରାରେ ବର୍ଷା ପଡୁଥିବା ବେଳେ ଜୋର୍‌ରେ ଘଡ଼ଘଡ଼ି ମାରିଲେ କୁଣ୍ଢେଇ ଧରିବାକୁ କେହି ନଥିବେ ! ଆହା ! ମା' ଛେଉଣ୍ଡ ହେଇ କେଡ଼େ ଦୁଃଖରେ ଭୟରେ ତୁ କାନ୍ଦୁଥିବୁ । ଏତକ ଭାବୁ ଭାବୁ ମୁଁ କାନ୍ଦି ପକାଏ । ତୁ କିନ୍ତୁ ସେମିତି ମୁଚୁକି ମୁଚୁକି ହସି ହାତଗୋଡ଼ ହଲାଇ ଖେଳୁଥାଉ । ମୁଁ ଲୁହ ପୋଛି ବହି ପଢ଼ାରେ ଲାଗେ ।

ମୁନାରେ, ଧନ, ମୁଁ ଆଉ ଟିକିଏ ସ୍ପର୍ଦ୍ଧା ମଧ କରିପକାଇଥିଲି । ଆଜିକାଲି ଲୁଚେଇ ଲୁଚେଇ ପ୍ରାର୍ଥନା କରୁଥିଲି, ନାତି କି ନାତୁଣୀଟିଏ ସାଙ୍ଗରେ ଖେଳି ପାରିବା ପୂର୍ବରୁ ଈଶ୍ୱର ମୋତେ ନେଇ ନଯାଆନ୍ତୁ । ଏଇ ଛୋଟିଆ ନାତି କି ନାତୁଣୀର ଚେହେରା କିନ୍ତୁ ମୁଁ ଭୟରେ ଆଙ୍କୁ ନଥିଲି– ଆଗରୁ ଏମିତି କରିବା ଉଚିତ ନୁହେଁ– ଦୃଷ୍ଟି ପଡ଼ିଯିବ ।

– ବାବୁରେ, ଏଇ ଦେଖ୍ । ଅଣ୍ଡିଭର୍ତ୍ତି ପାକଳ ସ୍ୱପ୍ନମାନଙ୍କୁ ମୁଁ କେମିତି ଆବୋରି ଧରି ବସିଛି, ଦେଖ୍ !

ତୋ' ପାପା ଫେରିଲେ ବୋଧହୁଏ । ଏତେ ଲୋକ ଗଦା ହୋଇଛନ୍ତି, ଗେଟ୍ ପାଖରେ, ବାହାରେ ଅଥଚ ପାଟି ଶୁଭୁ ନାହିଁ କାହାର, ଜମାରୁ । ତୁମ ଆର୍ମି ଲୋକଗୁଡ଼ାଏ ଆସିଛନ୍ତି ସାଙ୍ଗରେ । ଚମକୁଥିବା ବିଜୁଳି ପରି ଚଞ୍ଚଳ ତୁ ମୁନା । ତୁ ତ ଗେଟ୍ ଖୋଲି କେବେ ଚାଲି କରି ଆସୁନା– କେତେ ଖେପା ଡିଆଁମାରି ସିଧା ଆସି ଭିତରେ ଘରେ ହାଜିର ହୋଇଯାଉ । ବାଁ ହାତରେ ମ୍ୟୁଜିକ୍ ସିଷ୍ଟମ୍ ଅନ୍ କରୁ ଓ ଡାହାଣ ହାତରେ ମୋତେ ଜାବୁଡ଼ି ଧରୁ । ମୁଁ, ମୋର ଅଣ୍ଟା ପାଖରେ ଗୁଡ଼େଇ ହୋଇଥିବା ପତଳା ଲମ୍ବା ଆଙ୍ଗୁଠିଗୁଡ଼ାକ ଆଉଁଷୁଥାଏ ।

କିଏ... କିଏ କେଜାଣି କହୁଛି, ପ୍ରଥମେ ତୋର ଆଙ୍ଗୁଠିଗୁଡ଼ାକ ସେମାନେ ଗୋଟି ଗୋଟି କରି କାଟିଲେ, ଆଉ ତା'ପରେ... ପାଟିକରି ଚୁପ୍ ହେବାକୁ କହିଲି ମୁଁ ତାକୁ । କେହି ଏ ପୃଥିବୀରେ ଏମିତି ନାହିଁ– ନା ଈଶ୍ୱର ନା ସଇତାନ୍, କେହି ଏମିତି କରିପାରିବ ନାହିଁ ତୋ

ସହିତ । ତୋର ତ କେହି ଶତ୍ରୁ ନାହାନ୍ତି । ମୁଁ ବିଶ୍ୱାସ କରିପାରୁନାହିଁ କିଛି– ମୁଁ ଜାଣେ, ମୋତେ ଟିକିଏ ଛଟପଟ କଲା ପରେ ତୁ ତୋର ପିଲାଦିନ ପରି ପଛରୁ ଆସି ଦୁଇହାତରେ ମୋ ଆଖି ବୁଜି ଧରିବୁ...

ଜାତୀୟ ପତାକା ଗୁଡ଼ାହେଇ ଛଅଫୁଟ ଲମ୍ବର କାଠ ବାକ୍ସଟିଏ ବସିବା ଘରକୁ ଆସିଲା । ତୋରି ସାଙ୍ଗ ବୋଧହୁଏ ପାଞ୍ଚଜଣ ହେବେ, ତାକୁ ମିଶିକରି ଖୋଲି ଧରିଲେ । ସଫା ଧଳା କପଡ଼ାରେ ବନ୍ଧାବନ୍ଧି ହୋଇ ତିନିଫୁଟ ଲମ୍ବ, ଦେଢ଼ଫୁଟ ଖଣ୍ଡେ ହେବ ଚଉଡ଼ାର ସାମାନ୍ୟ ଉଚ୍ଚା ଜିନିଷଟିଏ ଯତ୍ନରେ ଗୁଡ଼ାହୋଇଥାଏ– ମୂଲ୍ୟବାନ୍ ଜିନିଷ କିଛି– କ'ଣ କେଜାଣି, ଭିତରୁ ଟିକିଏ ହେଲେ ଦିଶୁ ନଥାଏ ।

– ଆଣ୍ଠୁ ପାଖରୁ ଗୋଡ଼ ଦୁଇଟି କାଟି ନେଇଛନ୍ତି ।

– କିଏ କହିଲା ଏତକ ? ମୁଁ ବୁଲିପଡ଼ି ଦେଖିଲାବେଳକୁ ପାପା ତୋର ଘାଇଲା ଜନ୍ତୁଟେ ପରି ଛଟପଟ ହେଉଛନ୍ତି– କାହାକୁ କାମୁଡ଼ିବେ କି ନିଜକୁ କାମୁଡ଼ି ହେବେ । ମୁଁ ତାଙ୍କ ପାଖକୁ ଦୌଡ଼ି ଯିବାକୁ ଚେଷ୍ଟା କଲି– ହାତ ବଢ଼ାଇବାକୁ ଚେଷ୍ଟା ବି କଲି, କିନ୍ତୁ କ'ଣ ହେଲା କେଜାଣି, ଟିକିଏ ବି ହଲି ପାରିଲି ନାହିଁ । ଗୁପ୍ତା ଅଙ୍କଲ୍ ଓ ଆଉ କିଏ କିଏ ବୋଧହୁଏ ଧରିଥା'ନ୍ତି ମୋତେ– ଦୁଇ ଦୁଇଟା ଇଂଜେକ୍‌ସନ୍ ଦେଇଦେଲେ । କ'ଣ କରିବି ଆଉ– ଶୋଇବାକୁ ପଡ଼ିବ ଏବେ । ତୋ ସାଙ୍ଗରେ କଥାବାର୍ତ୍ତା ବୋଧହୁଏ ହୋଇପାରିବି ନାହିଁ ।

ନିଦ କ'ଣ ହେଉଛି ମୋତେ କିରେ ! ତୋତେ ନ ଦେଖିବାଯାଏ ଶୋଇବି କେମିତି କହିଲୁ ? ଅନ୍ଧାର ହୋଇଥାଏ ଚାରିଆଡ଼େ । ମୁହଁକୁ ମୁହଁ ଦିଶୁ ନଥାଏ । ମୁଁ କିନ୍ତୁ ତୋ ନାଁ ଡାକି ଡାକି ଚାଲିଥାଏ । ଜାଣେ, ତୁ ଯୋଉଠି ଥିବୁ, ଦଉଡ଼ି ଆସିବୁ ମୁନା, ମୋ ଡାକ ଶୁଣି ଥୟ ହୋଇ ରହିପାରିବୁ କ'ଣ ? ଆଗରେ ଇଏ କିଏ ଠିଆ ହୋଇଛି ? ମୁଁ ତ ଚମକି ପଡ଼ିଲି । ତୋ ପରି ତ ଲାଗୁନାହିଁ । ଟିକିଏ ପାଖକୁ ଗଲି । ଧଳା ବରଫ ପରି ଚମକୁଥାଏ ତା' ଦେହ, ସରୁ ଘଞ୍ଚ ପାଇନ୍ ବଣପରି ଲମ୍ବିଥାଏ ତା'ର କେଶ– ସ୍ତ୍ରୀ ଲୋକଟେ ତ– ମୁଁ ବାଟ କାଟି ଦଉଡ଼ି ଆଗକୁ ଯିବାକୁ ବସିଲି । କାଳେ ତୁ ଆଗରେ କୋଉଠି ଥିବୁ । ହାତ ଲମ୍ବିଗଲା ସେଇ ସ୍ତ୍ରୀଟିର ମୋ ସାମ୍ନାରେ– ସୁଉଚ୍ଚ ପାହାଡ଼ ସନ୍ଧିରୁ ତଳକୁ ଡେଇଁପଡୁଥିବା ଶୁଭ୍ର ଝରଣା ପରି ତା'ର ବାହୁ ।

"କିଏ ତୁମେ ? ମୁଁ ମୁନାକୁ ଖୋଜୁଛି– ମୁନା କାହିଁ ? ମୁନାରେ..."

"ଚୁପ୍, ଚୁପ୍" ମୋ ସାମ୍ନାରୁ ହାତ ଉଠାଇ ପାଟିରେ ଆଙ୍ଗୁଳି ଦେଲା ସେ– ମୋତେ କଥା ନ କହିବାକୁ ଇଶାରା ଦେଲା ।

"ଶୋଇଛି ସିଏ । ପାଟି କର ନାହିଁ ।"

ମୁଁ ଟିକିଏ ପାଖକୁ ଆସିଲି ସ୍ତ୍ରୀଲୋକଟିର ।

"ଦେଖୁନୁ ମୋତେ, ମୁଁ ପରା କାର୍‌ଗିଲ୍ ମା' । ଦେଖ୍ ମୋତେ, ତିନିଶହ ଛପନଟି ଗୁଳି କାଢ଼ି ଦେଇଛି ମୁଁ– ଏଇଠି ଦେଖ୍ ।"

ମୁଁ ନିରେଖି କରି ଚାହିଁଲି । ଦେହସାରା ରକ୍ତ ଜୁଡ଼ୁବୁଡ଼ୁ ତା'ର । କି ରଂଗର ଲୁଗା, କି ରଂଗର ବ୍ଲାଉଜ୍ ପିନ୍ଧିଛି କେଜାଣି ! ଦେହସାରା ଗୁଳିର ଘା' ଦାଗ । ଇଞ୍ଚଟିଏ ବି ଦିଶୁନାହିଁ । ମୁହଁକୁ ଚାହିଁଲି– କପାଳସାରା ଗୁଳିର ଦାଗ– ଝରଝର ରକ୍ତ ବାହାରୁଛି– ସବୁଆଡ଼ ପୂରାପୂରି ଲାଲ୍, ଆଉ ସଫା ଚକ୍‌ଚକ୍ ଜମିଥିବା ବରଫ ପରି ଦିଶୁନାହିଁ ସେ ।

"ସେମାନେ ସମସ୍ତେ ଶୋଇଛନ୍ତି ସେଇଠି– ସେପଟେ..." ଝରଝର ରକ୍ତ ବହିଯାଉଥିବା ହାତ ଉଠାଇ ବୁଲିପଡ଼ି ପଛକୁ ଦେଖାଇଲା ସେ । କେମିତି କ୍ଳାନ୍ତ ଶ୍ରାନ୍ତ ହୋଇ, ମୋଡ଼ିମୋଡ଼ି ହେଇ ଶୋଇପଡ଼ିଛନ୍ତି, ଦେଖୁନୁ... ଉଠାନା ସେମାନଙ୍କୁ ।

"ମୁନା, ମୁନା କାହିଁ ?"

"ସେଇଠି ଅଛି ।"

ତାଙ୍କରି ଭିତରେ ତା'ହେଲେ ଶୋଇଛୁ ତୁ ! ଅଧିକାଂଶ ଦିନ ତୋ ବେଡ୍‌ରୁମ୍‌କୁ ଆସି ତୋର ଟେବୁଲ୍ ଲ୍ୟାମ୍ପ୍ ଲିଭାଏ ମୁଁ । ତୁ ପଢୁ ପଢୁ ଶୋଇ ଯାଇଥାଉ । ବେକ ପର୍ଯ୍ୟନ୍ତ ପଡ଼ିଥିବା ରେଜେଇକୁ କାନ ଉପରକୁ ଟାଣିଦିଏ...

"ତାକୁ ଟିକେ ରେଜେଇଟେ ଘୋଡ଼େଇଦେବ । ଫୋଡ଼ି ହୋଇଯାଏ ବୋଲି, କମ୍ବଳ ସେ ଭଲ ପାଏ ନାହିଁ । ଏଥର ଶ୍ରୀନଗର ପୋଷ୍ଟିଂ ଆଗରୁ ବଡ଼ ରେଜେଇଟେ ତିଆରି କରିଦେଇଥିଲି..., ହଁ, ମଝିରେ ମଝିରେ ଟିକିଏ କାନ ଉପରକୁ ଟାଣିଦେବ । ଥଣ୍ଡା ଧରିଯିବ ନହେଲେ, ସେ କେବେହେଲେ କାନ ଘୋଡ଼େଇ ହୁଏ ନାହିଁ..." ମୁଁ ବ୍ୟସ୍ତ ହୋଇ କହିଚାଲିଲି ।

"ତୁ ନିଶ୍ଚିନ୍ତରେ ଫେରିଯାଆ, ସେ ମୋ ପାଖରେ ଆରାମରେ ଶୋଇବ ।" କାରଗିଲ୍ ମା' ବୁଲିପଡ଼ି ଧୀରେ ଧୀରେ ଚାଲିଗଲା ।

ଚିଠିଟିଏ ଲେଖିଛି ତୋତେ । କୋଉ ଠିକଣାରେ ପଠାଇବି ? ଗୋଆଲିଅର୍ ୯୯, ଏ.ପି.ଓ. ନା ଶ୍ରୀନଗରର ୧୩ ଜାମ୍ମୁ କାଶ୍ମୀର ରାଇଫଲ୍‌ସ– କୋଉ ଠିକଣାରେ ପଠାଇବି, ବାବୁରେ... ?

– ଯାଉଛି କାରଗିଲ୍ ମା' ନାଁ ଲେଖିଦେବି । ସେଇ ହିଁ ଚିଠିଟି ନିଶ୍ଚୟ ତୋ' ପାଖରେ ପହଞ୍ଚାଇ ଦେବ ।



# ଶୋକସଭା

## କ୍ଷୀରୋଦ ଦାସ

"ଜୀବନକୁ ନେଇ ଅନ୍ୟ କୌଣସି ବ୍ୟବସ୍ଥା କରିହେଲା ନାହିଁ । ମୋ ସାମ୍ନାରେ ଆଉ କିଛି ବିକଳ୍ପ ମଧ୍ୟ ନାହିଁ । ତେଣୁ ବହୁତ ଭାବିଚିନ୍ତି ମୁଁ ନିଷ୍ପତ୍ତି ନେଇଛି, ଅନେକ ହେପାଜତରେ ଗଢ଼ା ଏ ଶରୀରକୁ ଲଟକେଇଦେବି ଏଇ ଘରର ସିଲିଂ ଦେହରୁ, କିମ୍ବା ଡେଇଁପଡିବି ମୋ ତିନି ମହଲା କୋଠାର ଛାତ ଉପରୁ । କାରଣ ଠିକ୍ ଭାବରେ ବଞ୍ଚି ହେଲା ନାହିଁ ଏ ଜୀବନ । ଗୋଟିଏ ଦିଗଭ୍ରଷ୍ଟ ଗଣ୍ଡଗୋଳିଆ ଜୀବନକୁ ଅଧିକ ଦିନ ଲାଳନ କରି ଲାଭ କ'ଣ ?"

ଏ ଚିଠି ଲେଖିଥିଲା ସୋମନାଥ, ମୋର ବନ୍ଧୁ, ସହକର୍ମୀ । କୋରିଅର୍ ଯୋଗେ ଏ ଚିଠି ମୁଁ ପାଇଲି, ଯେତେବେଳେ ଅଫିସ୍ କରିଡରରେ ତା' ପାଇଁ ଆୟୋଜିତ ହେଉଥିଲା ଏକ ଶୋକସଭା ।

ଏ ଚିଠି ପାଇବାର କେଇ ଘଣ୍ଟା ପୂର୍ବରୁ, ଦିନ ନ'ଟା ପଇଁଚାଳିଶ ମିନିଟ୍‌ରେ, ଗାଧୋଇ ସାରି, ପ୍ୟାଣ୍ଟସାର୍ଟ ପିନ୍ଧି ଯେତେବେଳେ ଡାଇନିଂ ଟେବୁଲ୍‌ରେ ଖାଇବା ପାଇଁ ବସିଥିଲି, ମୋ ମୋବାଇଲ ବାଜିଲା । ସେପାଖରେ ଥିଲେ ସିଡେଶବାବୁ । ଟେଲିଫୋନ୍ ଜରିଆରେ ଆସିଥିବା ସେ ଖବର ଖସାଇ ପକାଇଲା ମୋ ହାତରୁ ଭାତଗୁଣ୍ଡା ।

"କାଲି ରାତିରେ ସୋମନାଥର ମୃତ୍ୟୁ ହୋଇଯାଇଛି । ଘର ଭିତରେ ରଶି ଲଗାଇ ସେ ଆତ୍ମହତ୍ୟା କରିଛି ।"

ଏପରି ଅପ୍ରତ୍ୟାଶିତ ଦାରୁଣ ଦୁଃସମ୍ବାଦ ବାସ୍ତବିକ ଭୂମିକମ୍ପ ସୃଷ୍ଟି କରିପକାଏ ଛାତି ଭିତରେ । ଖସାଇ ପକାଏ ପାଦ ତଳର ମାଟି । ରୁନ୍ଧି ପକାଏ ଛାତି । ଛିନ୍‌ଛତ୍ର କରିପକାଏ ଜୀବନ ପ୍ରତି ଥିବା ସମସ୍ତ ଦରଦ ଓ ମମତ୍ୱବୋଧ ।

ଖାଇବା ଟେବୁଲ ପାଖରୁ ଉଠିଯାଇ ମୁହଁ ଧୋଇଥିବା ବେଳେ ମୋ ଦେହ ଠକ୍‌ଠକ୍ ହୋଇ ଥରୁଥିଲା । ତରତର ହୋଇ ଦୁଇମହଲା କ୍ୱାର୍ଟରରୁ ଓହ୍ଲାଇ ଆସୁଥିବା ବେଳେ ମୋ ଗୋଡ ଥରୁଥିଲା । ରାସ୍ତାରେ ଗାଡି ଚଳାଉଥିବା ବେଳେ ମୋ ସମଗ୍ର ଶରୀର କମ୍ପିଉଠୁଥିଲା ଦୁଃଖ, ଭୟ ଓ ଆଶଙ୍କାରେ । ମୋ କ୍ୱାର୍ଟରଠାରୁ ମାତ୍ର ତିନି କିଲୋମିଟର ଦୂରରେ ଅବସ୍ଥିତ ସୋମନାଥର ଘର ପାଖରେ ପହଞ୍ଚିବାକୁ ମତେ ଲାଗିଗଲା ପ୍ରାୟ ଅଧଘଣ୍ଟା ସମୟ ।

ଯେହେତୁ ଏହା ଥିଲା ଗୋଟେ ଅପମୃତ୍ୟୁ, ପୋଲିସ୍ ଲାସ୍‌କୁ ପଠାଇ ଦେଇଥିଲା ବ୍ୟବଚ୍ଛେଦ କରିବା ପାଇଁ । ସୋମନାଥର ଘର ପାଖରେ ଥିଲେ ଦୁଇଜଣ ପୋଲିସ୍ କନେଷ୍ଟବଳ, ଆଠ ଦଶଜଣ ପଡୋଶୀ ଏବଂ ଆମ ଅଫିସ୍‌ର ପନ୍ଦର କୋଡିଏ ଜଣ ସହକର୍ମୀ । ପରିବେଶ ଥିଲା ଥମ୍‌ଥମ୍, କାନ୍ଦୁରା । ଗୋଟିଏ ଅବସନ୍ନ ଭାବ ବୋଲି ହୋଇଯାଇଥିଲା ସମସ୍ତଙ୍କ ମୁହଁରେ ।

ମୁଁ ଲଥ୍‌କରି ବସିପଡିଲି ତା' ଘର ସାମ୍ନା ଗୋଟେ କଲଭର୍ଟ ଉପରେ ।

ନିଜକୁ ରଶିରେ, ସିଲିଂରୁ ଝୁଲେଇବା ପାଇଁ ଚିନ୍ତା କଲାବେଳେ, ଛୟାଳିଶ ବର୍ଷର ଜୀବନ ପ୍ରତି କ'ଣ ଟିକିଏ ବି ମମତା ସୃଷ୍ଟି ହୋଇନଥିବ ସୋମନାଥ ମନରେ ? କେତେ ଯତ୍ନ, କେତେ ଆଦର ଓ ଲୁହ ଲହୁ ଦେଇ ତିଆରିଥିବା ଏ ତିନିମହଲା କୋଠା, କୋଠା ଭିତରେ ଯାବତୀୟ

ପ୍ରାଚୁର୍ଯ୍ୟପୂର୍ଣ୍ଣ ଆସବାବପତ୍ର, ବାଲ୍ୟକାଳ, ସ୍କୁଲଜୀବନ, କଲେଜ, ଚାକିରି, ସହକର୍ମୀ, ପତ୍ନୀ ସନ୍ଧ୍ୟା ସହିତ ରୋମାଞ୍ଚିତ ମୁହୂର୍ତ୍ତ... ଏସବୁ କ'ଣ ଆଲୋଡ଼ିତ କରିନଥିବେ ତାକୁ ? ରଶି ଲଗାଇ ମରିବା ବେଳର କଷ୍ଟ, ମୃତ୍ୟୁ ପରେ ଯେଉଁଭଳି ନାରଖାର ହେବ ଆପଣା ଶରୀର, ଏ କଥା କ'ଣ କିଛି ଆଶଙ୍କା ଓ ଭୟ ସୃଷ୍ଟି କରିନଥିବ ତା' ମନରେ ?

ତେବେ ? କାହିଁକି ସୋମନାଥ ଏପରି କାମ କଲା ? ମୁଁ ଜାଣେ ସୋମନାଥ ଭାରି ଡରକୁଳା ମଣିଷଟେ ଥିଲା । କାହାର ସାମାନ୍ୟ ଅସୁସ୍ଥତା ତାକୁ ଖୁବ୍ ବିଚଳିତ କରିଦେଉନଥିଲା । ତା' ମନରୁ ସବୁ ସରସତା ଲିଭେଇ ଦେଉଥିଲା । ଖିଆପିଆ ଛାଡ଼ି ସେ କେବଳ ଭାଳି ହେଉଥିଲା ତା' କଥା । ଏତେବଡ ଭୟଙ୍କର ନିଷ୍ପତ୍ତି ସେ ନେଇପାରିଲା କିପରି ?

ଅନ୍ୟ ନିକଟରେ ନିଜକୁ ଜାହିର୍ କରିବା କିମ୍ବା ବଡ ବୋଲି ଭାବିବା କେବେ ହୁଏ ନାହିଁ ସୋମନାଥ ଦ୍ୱାରା । ସେ ମୋ ସେକ୍ସନର ଷ୍ଟାଫ୍, ଯଦିଓ ଚାକିରିରେ ମୋଠାରୁ ଛ'ମାସ ସାନ । ଆମ ବୟସ ପ୍ରାୟ ସମାନ । ତା' ସହିତ ମୋର ଦୀର୍ଘ ଚଉଦ ବର୍ଷର ସମ୍ପର୍କ ଏବଂ ଏଗାର ବର୍ଷର ଘନିଷ୍ଠତା । ସେଥିପାଇଁ ମୁଁ ଭାବୁଛି, ତା' ପାଇଁ କୌଣସି ବିକଳ୍ପ ବ୍ୟବସ୍ଥା କରାଯାଇ ପାରିଥାନ୍ତା । ମୁଁ ସ୍ୱୀକାର କରୁଛି ଯେ ସୋମନାଥ ଜୀବନ ଏକ ପ୍ରଲମ୍ବିତ ତିକ୍ତତାରେ ଭରପୂର ଥିଲା । ଏକ ହା-ହୁତାଶମୟ ଜ୍ୱଳନରେ ଛଟପଟ ହେଉଥିଲା ସେ ଅନେକ ଦିନ ଧରି ।

କିନ୍ତୁ ଆରମ୍ଭରୁ ସନ୍ଧ୍ୟାକୁ ସ୍ତ୍ରୀ ରୂପରେ ପାଇ ସେ ଖୁବ୍ ଖୁସି ଥିଲା । ନାହିଁ ନ ଥିବା ଏକ ଆତ୍ମସନ୍ତୋଷରେ ବିଭୋର ଥିଲା ବୋଲି ସ୍ପଷ୍ଟ ସୂଚେଇ ଦେଉଥିଲା ତା' କାର୍ଯ୍ୟକଳାପ । ସେମାନଙ୍କ ଜୀବନର ପରିସୀମା ଭିତରେ ଥିଲା ମନମତାଣିଆ ଏକ ସୁଗନ୍ଧ, ଆଲୋକ ପରିପୂର୍ଣ୍ଣ ଏକ ଝଲମଲ ଶୁଭ୍ରତା ।

ଅନେକ ଥର ମୁଁ ଯାଇଛି ସୋମନାଥ କ୍ୱାର୍ଟରକୁ । ତା' କ୍ୱାର୍ଟର ଓ ମୋ କ୍ୱାର୍ଟର ମଝିରେ ବ୍ୟବଧାନ ଥିଲା ଏକ ଖେଳପଡିଆ । ତା' ବାଲ୍‌କୋନୀରେ ବସି ସେ ଡାକ ଛାଡେ ମୋ ନାଁ ଧରି । ମୁଁ ପହଞ୍ଚିଗଲେ, ତା' ଅପେକ୍ଷା ତା' ସ୍ତ୍ରୀ ସନ୍ଧ୍ୟା ବେଶୀ ଖୁସି ହୁଏ । ସନ୍ଧ୍ୟା ବାଲେଶ୍ୱରର ଝିଅ । ବର୍ଣ୍ଣ ଟିକିଏ ଶ୍ୟାମଳ, କିନ୍ତୁ ସୁନ୍ଦର ସ୍ୱାସ୍ଥ୍ୟ ଓ ପାନପତ୍ର ପରି ମୁହଁର ଅଧିକାରିଣୀ ଏ ଭଦ୍ରମହିଳା ଜଣକ କଥାବାର୍ତ୍ତା, ଚାଲିଚଳନ ଏବଂ ବ୍ୟବହାରରେ ସଦାବେଳେ ପରିଚ୍ଛନ୍ନ । ଗୋଟେ ଅସାଧାରଣ ଆବେଗ ଓ ପରିପୂର୍ଣ୍ଣତାରେ ଜୁଡୁବୁଡୁ ତାଙ୍କ ମୁହଁରୁ ପ୍ରତି ମୁହୂର୍ତ୍ତରେ ବିଚ୍ଛୁରିତ ହେଉଥାଏ ପ୍ରଚୁର ଆତ୍ମସନ୍ତୋଷ ଓ ପ୍ରଶାନ୍ତି ।

ସୋମନାଥ ମଣିଷଟି ମଧ୍ୟ ସେମିତି । ଗୋରା, ଅଳ୍ପ ଡେଙ୍ଗା, ଅଳ୍ପ ମୋଟା । ସଦା ହସହସ ଏ ଲୋକଟିର କଥାବାର୍ତ୍ତା ଓ ବ୍ୟବହାରରେ ଥିଲା ଖୁବ୍ ମଧୁରତା ଓ ଶାଳୀନତା । ତା' ଚାଲିଚଳଣରେ ଭରି ରହିଥିଲା ଗଭୀର ଆତ୍ମବିଶ୍ୱାସ । କଥାବାର୍ତ୍ତା, ହସ ସବୁ ଥିଲା ମାପଚୁପ । ସାମାନ୍ୟ ଡରକୁଳା, ଲାଜକୁଳା ମଧ । ନିଜର ଉତ୍ତମ ବ୍ୟବହାର, ନୈତିକତା ତଥା କର୍ତ୍ତବ୍ୟନିଷ୍ଠା ପାଇଁ ସେ ପର୍ଯ୍ୟାପ୍ତ ଶ୍ରଦ୍ଧା ଓ ସମ୍ମାନର ଅଧିକାରୀ ଥିଲା କାର୍ଯ୍ୟାଳୟରେ ।

ପତିପତ୍ନୀ ଦୁହିଁଙ୍କୁ ଦେଖିଲେ ଲାଗେ, ଜୀବନ ନାମକ ଏକ ମହାନ ମହୋତ୍ସବକୁ ଅନ୍ୟମାନଙ୍କ ପରି ସେମାନେ କେବଳ ଅତିବାହିତ କରୁନାହାନ୍ତି, ବରଂ ପ୍ରଚୁର ଆଗ୍ରହ ଓ ନିଷ୍ଠାର ସହ ଉପଭୋଗ କରୁଛନ୍ତି । ଜୀବନ ସତେକି ସେମାନଙ୍କ ପାଇଁ ମନୋମୁଗ୍ଧକର ଏକ ଅଫୁରନ୍ତ ସ୍ରୋତ ଏବଂ ସେମାନେ ତା' ଭିତରେ ଦୁଇ ଜଣ ମୁଗ୍ଧ ନୌକାବିହାରୀ !

ଅନ୍ୟମାନଙ୍କ ପରି ଏ ଦୁଇଜଣଙ୍କୁ କେବେ ବିମର୍ଷ ବା ହତାଶ ହେବାର ଦେଖିନାହିଁ ମୁଁ । କଳିକଜିଆ ତ ଦୂରର କଥା, କୌଣସି ପରିସ୍ଥିତିରେ ସାମାନ୍ୟ କଥା କଟାକଟି ହେବା ଶୁଣିନାହିଁ ।

ବରଂ କହିବାରେ ଦ୍ୱିଧା ନାହିଁ, ଏପରି ସଫଳ ଆଉ ଚମତ୍କାର ଦାମ୍ପତ୍ୟ ଦେଖି ମୁଁ ସବୁବେଳେ ବିଭୋର ହୋଇଛି, କିଛି ମାତ୍ରାରେ ଈର୍ଷାନ୍ୱିତ ବି ।

-"କିରେ, ଫ୍ଲାଟ୍ ଫ୍ଲାଟ୍ କିଛି କିଣିଲୁଣି ନା ନାହିଁ ?"- ହାଲିକୁ ଅଶୀ ହଜାର ଦେଇ ଖଣ୍ଡଗିରି ଛକରେ ଷାଠିଏ ବାଇ ଚାଳିଶ ମାପର ପ୍ଲଟ୍ ଖଣ୍ଡେ କିଣି ସାରିଥିବା ମୁଁ ପଚାରିଥିଲି ସୋମନାଥକୁ ।

-"ସେଗୁଡା କ'ଣ ବେ ?"- ସୋମନାଥ ମୋ କଥାକୁ ଶିମିଳି ତୂଳାଠୁ ଆହୁରି ହାଲ୍କା ଭାବରେ ଉଡାଇଦେଇ କହିଲା- "ଶଃ, ଟଙ୍କା ଦେଇ ମାଟି କିଣିବା ପରି ମୂର୍ଖ ମୁଁ ନୁହେଁ । ଏବେ ହେଲା ଚାଳିଶ ବର୍ଷ । ଚାକିରି ରହିଲା ଆଉ ଅଠର କୋଡିଏ ବର୍ଷ । ଚାକିରି ଅଛି ମାନେ ଏ ଟାଇପ୍ ଥ୍ରୀ କ୍ୱାର୍ଟରଟା ବି ଅଛି । ସେଥିରେ ପୁଣି ଷାଠିଏ ବର୍ଷ ଯାଏ ଯେ ଆମେ ବଞ୍ଚିରହିବା, ଏ କଥାର କୌଣସି ଗ୍ୟାରେଣ୍ଟି ଅଛି ? ତା' ପରେ କି ଜମି, କି ଘର, କି ସଂସାର ?

ସେମାନଙ୍କର ବର୍ଣ୍ଣିଳ ଜୀବନକୁ ଆହୁରି ଶୋଭାମୟ, ଆହୁରି ଜାଜ୍ୱଲ୍ୟମାନ କରି, ବାହାଘରର ଦେଢବର୍ଷ ପରେ ଜନ୍ମ ହେଲା ଝିଅଟିଏ । ଝିଅ ସହିତ ଆସିଗଲା ଜୀବନର ସମସ୍ତ ପ୍ରାପ୍ତି । ପୂରଣ ହୋଇଗଲା ସମସ୍ତ ଅପୂରଣୀୟ ଇଚ୍ଛା । ଏକ ନିବିଡ ଅନ୍ତରଙ୍ଗତାରେ ପତିପତ୍ନୀ ଦୁହେଁ ବିଭୋର ହୋଇଯାଉଥିବା ବେଳେ, ଝିଅର ଖିଲିଖିଲି ହସ ସେମାନଙ୍କୁ ଶିଖାଇ ଦେଉଥିଲା ଜୀବନ ଜିଇଁବାର ମହାନ ମନ୍ତ୍ର ।

ଅଥଚ ଜୀବନ ଉଦ୍ୟାନକୁ ଥୁଣ୍ଟାଗଛ ଭଳି ସବୁଜିମା ବିବର୍ଜିତ କରିପକାଇବା ପାଇଁ କେତେ ସମୟ ବା ଦରକାର ? କେତେ ବା ସମୟ ଲାଗେ ପ୍ରାଣପ୍ରାଚୁର୍ଯ୍ୟ ଉଜୁଡିଯିବାକୁ ? ସେଦିନ ଯେଉଁ ସଙ୍କଟ ସଂଘଟିତ ହେଲା ସୋମନାଥର ଘରେ, ତାହା ସମ୍ପୂର୍ଣ୍ଣ ନିଷ୍ପ୍ରାଣ କରିଦେଲା ସ୍ୱାମୀ-ସ୍ତ୍ରୀ ଦୁହିଁଙ୍କୁ । ଶାନ୍ତସ୍ନିଗ୍ଧ ଜୀବନକୁ ବିଧ୍ୱସ୍ତ କରିଦେଲା କେଇଟି ମୁହୂର୍ତ୍ତ ଭିତରେ ।

ଝିଅକୁ ଯେତେବେଳେ ଦେଢବର୍ଷ, ପ୍ରଥମେ କିଛିଦିନ ମୁଣ୍ଡବିନ୍ଧା, ସାମାନ୍ୟ ଜ୍ୱର... ଏବଂ .... ରାଜଧାନୀର ସମସ୍ତ ନାମଜାଦା ଶିଶୁରୋଗ ବିଶେଷଜ୍ଞଙ୍କ ଯାବତୀୟ ଔଷଧ, ପରାମର୍ଶ ସତ୍ତ୍ୱେ... ସବୁ ଶେଷ ହୋଇଗଲା । ସୋମନାଥ ଓ ସନ୍ଧ୍ୟାର ସମସ୍ତ ପ୍ରାର୍ଥନା ତଥାସ୍ତୁରେ ପରିଣତ ହୋଇପାରିଲା ନାହିଁ ।

ଜଣେ ମା'ପାଇଁ ଏହାଠାରୁ ବଳି ଅସମ୍ଭାଳ ମୁହୂର୍ତ୍ତ ଆଉ କ'ଣ ଥାଇପାରେ ? ଏହାପରେ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି ହୋଇଗଲା ସେମାନଙ୍କ ହୃଦୟରେ, ଯେଉଁ କୋହ ସୃଷ୍ଟି ହେଲା ଛାତି ଭିତରେ, ସେଥିପାଇଁ କୌଣସି ସାନ୍ତ୍ୱନା ଯଥେଷ୍ଟ ନଥିଲା । ତାହା ପ୍ରମାଣ କରିଦେଲା ସବୁ ତୁଚ୍ଛ, ନିରର୍ଥକ । ଏ ଧନ, ଜୀବନ, ପୃଥିବୀ ସବୁ ।

ସନ୍ଧ୍ୟା ହୋଇଗଲା ଶଯ୍ୟାଶାୟୀ । ବଞ୍ଚିବାର ସମ୍ମୋହନ ଉପରେ ମାଡିଗଲା ପରସ୍ତ ପରସ୍ତ ଧୂଳି ।

ଏ ଘଟଣାର ଦୁଇମାସ ପର୍ଯ୍ୟନ୍ତ ସୋମନାଥ ଅଫିସ ଆସିଲା ନାହିଁ । ଦୁଇ ଚାରିଥର ମୁଁ ଏବଂ କିଛି ସହକର୍ମୀ ସାଙ୍ଗହୋଇ ଯାଇଥିଲୁ ତା' କ୍ୱାର୍ଟରକୁ । ସଦା ହସହସ ଆଉ ଉଷୁମ ଆତ୍ମୀୟତାରେ ଭରା ସେ କ୍ୱାର୍ଟରଟା ଲାଗୁଥିଲା ଖାଁ ଖାଁ, ନିଛାଟିଆ । ତା'ଭିତରେ ଆତଯାତ ହେଉଥିଲେ ଦୁଇଜଣ ନୀରବ ପ୍ରାଣୀ । ଅଧିକାଂଶ ସମୟ ସନ୍ଧ୍ୟା ଶୋଇ ରହୁଥିଲା ବିଛଣାରେ, ଜୀବନ ଆଡୁ ବିତୃଷ୍ଣାରେ ମୁହଁ ଫେରାଇ ନେଇ । ସୋମନାଥ ନିର୍ବାକ ପାଲଟି ଯାଇଥିଲା । ଲାଗୁଥିଲା, ଅକଥନୀୟ ଯନ୍ତ୍ରଣାଗୁଡାଏ ତାକୁ ସତେକି କଲବଲ କରି ପକାଉଛନ୍ତି, କି ଦିନ କି ରାତି !

ଜୀବନର ଅଭିଧାନରେ ଏପରି ଦୁଃଖ ପାଇଁ ଲେଖା ଅଛି କି କିଛି ସାନ୍ତ୍ୱନା ? ବିଫଳ ମନୋରଥ ହୋଇ ଆମେ ଫେରିଆସୁ ତା' କ୍ୱାର୍ଟରରୁ । ପୁଣି ଯାଉ ... ପୁଣି ଫେରିଆସୁ ।

ଅଥଚ ଯେଉଁଦିନ ଅଫିସ୍‌ରେ ଯୋଗଦେଲା ସୋମନାଥ, ଅନେକାଂଶରେ ସେ ସ୍ୱାଭାବିକ ମନେ ହୋଇଥିଲା । ଅନେକ ଝଞ୍ଜାକୁ ସାମ୍ନା କରି, ଜଣେ ବନ୍ଧୁ ପୁଣି ଜୀବନର ମୁଖ୍ୟ ସ୍ରୋତକୁ ଫେରି ଆସିବା ଦେଖି ଆମେ ଆଶ୍ୱସ୍ତ ହୋଇଥିଲୁ ।

ଏହାର ଚାରିମାସ ପରେ ସୋମନାଥ ନୟାପଲ୍ଲୀରେ ଘର ତିଆରି କଲା । ଘର ତିଆରି କାମ ଦ୍ରୁତଗତିରେ ଆଗେଇ ଚାଲିଥିବା ବେଳେ ସେ ମାରୁତି ଅଲ୍‌ଟୋ କାର୍‌ଟିଏ କିଣି ଆମକୁ ଚକିତ କରିଦେଲା । ଦିବାକର,ସନ୍ତୋଷବାବୁ, ନଟବାବୁ, ପରେଶ ଆଦି ସହକର୍ମୀମାନେ ଦ୍ୱନ୍ଦ୍ୱରେ ପଡିଗଲେ ଯେ, ସୋମନାଥ କୁଆଡୁ ପାଇଲା ଏତେଗୁଡିଏ ଟଙ୍କା ?

ସୋମନାଥର ସଂସାରକୁ ଆଉ ଥରେ ଆଲୋକିତ କରିବାକୁ ସନ୍ଧ୍ୟା ପୁଣି ଥରେ ଗର୍ଭବତୀ ହେଲା । ମୁଣ୍ଡ ଉପରକୁ ଏକ ବିଶାଳ ଢାଙ୍କୁଣୀ ପରି ଘୋଡାଇ ରଖିଥିବା ଆକାଶର ଜହ୍ନଟା ସତେକି ଖସି ଆସିଲା ସେମାନଙ୍କ ହାତ ପାଆନ୍ତାକୁ । ଜହ୍ନର କିରଣ, ଦକ୍ଷିଣା ପବନ, ପକ୍ଷୀର କାକଳି, ବାଛୁରୀର ହମ୍ବାରଡି କେତେ ଯେ ମନୋରମ, ସେ କଥା ସେ ଦୁହେଁ ପୁଣି ଥରେ ଅନୁଭବ କଲେ ।

ପ୍ରଥମ ସନ୍ତାନର ଦାରୁଣ ବିଚ୍ଛେଦ, ଏବଂ ବର୍ଷକ ପରେ ଦ୍ୱିତୀୟ ସନ୍ତାନର ଜନ୍ମ; ସନ୍ଧ୍ୟା ଶକ୍ତିହୀନ ହୋଇପଡିଥିଲା । ଏତେ ଅସୁସ୍ଥତା ସତ୍ତ୍ୱେ, ବିଧାତାର ଏତେ ଅବିବେକୀପଣିଆ ସତ୍ତ୍ୱେ, ମଧୁର ହସର ଏକ କ୍ଷୀଣ ଛିଟା ଉଙ୍କି ମାରୁଥିଲା ତା' ମୁହଁରେ ।

ଯଶୋଦା ନର୍ସିଂହୋମ୍‌ର ଏଗାର ନମ୍ବର କୋଠରି ଭିତରେ ସଦ୍ୟଜାତ କନ୍ୟାକୁ କୋଳରେ ଜାକି ଧରିଥିବା ବେଳେ ଅନେକ ଦିନ ପରେ ସନ୍ଧ୍ୟା ଦିଶୁଥିଲା ବେଶ୍ ଉତ୍‌ଫୁଲ୍ଲିତା । ଲାଗୁଥିଲା, ଅନେକ ଯୁଗଧରି ସ୍ଥଗିତ ରହିଥିବା ଜୀବନର ପ୍ରବାହ ସମସ୍ତ ଉତ୍ସାହ ଓ ଉଦ୍ଦୀପନାର ସହିତ ପୁଣି ଥରେ କଳକଳ ସଙ୍ଗୀତ ଗାଇ ବୋହିଯାଉଛି !

ନର୍ସିଂହୋମ୍‌କୁ ଯାଇ ଆମେ ସୋମନାଥ ଓ ସନ୍ଧ୍ୟାକୁ ବଧାଇ ଜଣାଇଥିଲୁ । ସେମାନେ ଆଉ କ୍ୱାର୍ଟରରେ ନରହି, ଇତିମଧ୍ୟରେ ଚାଲିଯାଇଥିଲେ ନୂଆପଲ୍ଲୀରେ ତାଙ୍କ ନୂଆ ଘରକୁ ।

ଜୀବନର ଅନ୍ୟ ନାମ ଯେ ଦୁଃଖ, ଏ ଆପ୍ତବାକ୍ୟଟି ସବୁବେଳେ ଜାହିର୍ କରିବାକୁ ବଦ୍ଧ ପରିକର ଥିଲା ସୋମନାଥର ସଂସାର । ଭଲ ସ୍ୱାସ୍ଥ୍ୟ ନେଇ ଜନ୍ମିଥିବା ତା' ଦ୍ୱିତୀୟ ଝିଅଟି ମଧ୍ୟ ସଂସାର ପ୍ରତି ବିମୁଖ ହୋଇ ମୁହଁ ଫେରାଇ ନେଇଥିଲା ମାତ୍ର ଦୁଇ ବର୍ଷ ବୟସରେ ।

ମଣିଷର ଭାଗ୍ୟ ଏତେ ଦୁଃଖପୂର୍ଣ୍ଣ, ଏତେ ଦହଗଞ୍ଜମୟ ହୋଇପାରେ, ଆମେ ସବୁ ସ୍ତମ୍ଭୀଭୂତ ହୋଇଯାଇଥିଲୁ ତାହା ଦେଖି ।

ଉଷ୍ଣତାର ସ୍ପର୍ଶରେ ବରଫ ଖଣ୍ଡ ମିଳାଇଯିବା ପରି ନିର୍ଦ୍ଦୟ ସମୟ ଧୀରେ ଧୀରେ ନିଃଶେଷ କରିଦେଉଥିଲା ସେମାନଙ୍କୁ । ଆକାଶରେ ସୂର୍ଯ୍ୟ ଆଉ ଉଦୟ ହେଉଛନ୍ତି ନା ନାହିଁ ? ପଶ୍ଚିମାକାଶକୁ ନାଲି ରଙ୍ଗରେ ଗାଧୋଇଦେଇ ଦିଗ୍‌ବଳୟର କୋଳକୁ ବାହୁଡି ଯାଉଛନ୍ତି ନା ନାହିଁ ? ଆକାଶରେ ଜହ୍ନ ଉଠୁଛି ତ ! କେମିତି ଲାଗେ ଜହ୍ନ କିରଣ ? ସୁଲୁସୁଲୁ ଦକ୍ଷିଣା ପବନ ? କୋଇଲି ଭୁଲିଗଲାଣି କି ତା' ଗୀତ ?

ଏସବୁକୁ ପାସୋରି ପକାଇ ପୁଳାଏ ଆବର୍ଜନା ଭଳି ଖଟଟା ଉପରେ ସବୁବେଳେ ପଡି ରହୁଥିବା ସନ୍ଧ୍ୟା, ଦିନେ ସନ୍ଧ୍ୟାବେଳେ ବିକଳ, ନିଷ୍ପଲକ ଆଖିରେ ସୋମନାଥକୁ ଚାହିଁଲା, କିଛି

କହିବା କହିବା ହେଲା, କିନ୍ତୁ କହିନପାରି ସବୁଦିନ ପାଇଁ ଶୋଇପଡିଲା ଗଭୀର ନିଦରେ । ଖୁବ୍ ଗଭୀର ନିଦରେ ।

ମାତ୍ର ପାଞ୍ଚ ସାତ ବର୍ଷ ଭିତରେ, ହସଖୁସିରେ ଗୋଟେ ପରିବାର କିଭଳି ଛାରଖାର ହୋଇଗଲା, ତାହା ପ୍ରତ୍ୟକ୍ଷ କରି ଆମେ ମ୍ରିୟମାଣ ହୋଇପଡିଲୁ ।

ସନ୍ଧ୍ୟା ମୃତ୍ୟୁର ଅନେକ ଦିନ ପରେ ମୁଁ ଏବଂ ଆଉ ଦୁଇଚାରିଜଣ ବନ୍ଧୁ ଦିନେ ସଞ୍ଜବେଳେ ଯାଇଥିଲୁ ସୋମନାଥ ଘରକୁ । ଘର ଭିତରେ ଏକ ଅସ୍ପଷ୍ଟ ଛାୟା ମୂର୍ତ୍ତିଟିଏ ଭଳି ସୋମନାଥ ବସି ରହିଥିଲା ଏକା ଏକା । ଆମକୁ ଦେଖି ସେ ଭୟଭୀତ ହୋଇପଡିଲା ପରି ବ୍ୟବହାର ଦେଖାଇଲା । ପରେ ପରେ ଖୁବ୍ ଜୋର୍‌ରେ ଚିତ୍କାର କଲା । ଏପରି ଚିତ୍କାର, ସତେକି ଖସିପଡିବ ଛାତ, ଫାଟିଯିବ ଛାତି, ଧସ୍‌କି ପଡିବ ମାଟି ! ଏବଂ ପରେ ପରେ ଖୁବ୍ ଜୋର୍‌ରେ ଧଡ୍ କରି ବନ୍ଦ କରିଦେଲା କବାଟ ।

ଆମେ ଅପମାନିତ ହେଲୁ ନାହିଁ, ବିଷାଦଗ୍ରସ୍ତ ହୋଇପଡିଲୁ । କାହାରି ମୁହଁରେ କଥା ନଥିଲା । ପାଞ୍ଚ ଦଶମିନିଟ କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ଠିଆ ହୋଇ ଆମେ ସମସ୍ତେ ତଳକୁ ଓହ୍ଲାଇ ଆସିଲୁ ନୀରବରେ ।

ଏହାପରେ ସୋମନାଥ ପାଖକୁ ଯିବା ପାଇଁ ସାହସ ହୋଇନାହିଁ । ମୋର କିମ୍ୱା ଆଉ କାହାର । ବେଳେବେଳେ ତା' କଥା ମନେପଡେ । ମନେ ପଡିବା କ୍ଷଣି ନାହିଁନଥିବା ଦୁଃଖଟେ ଉଛୁଳି ପଡେ ମୋ ଭିତରୁ । ତତଲା ଦୀର୍ଘଶ୍ୱାସଟେ ବାହାରି ଆସେ ଛାତିକୁ ଧୁନ୍ଦାଳି । ଜୀବନଟା ଯେ ଏକ ଟଳମଳ, ଅସାର ଭିତ୍ତିଭୂମି ଉପରେ ଅବସ୍ଥାପିତ ଏକ ଅସ୍ଥାୟୀ ବ୍ୟବସ୍ଥା, ଏ କଥା ମୋର ହୃଦ୍‌ବୋଧ ହୁଏ ବାରମ୍ୱାର, ବାରମ୍ୱାର ।

ଏବେ, ତମାମ ଅଫିସ୍ ଯେତେବେଳେ ସୋମନାଥର ମୃତ୍ୟୁରେ ଅଧୀର ହୋଇ ଶୋକ ସଭାଟେ କରିବାକୁ ତତ୍ପର, ମୋ ହାତରେ କିନ୍ତୁ ତା'ର ଗୋଟେ ଚିଠି । ମରିବାର ଦିନକ ପୂର୍ବରୁ ଏ ଚିଠି ସେ ଲେଖିଥିଲା, ନିଜେ କୋରିଅର୍ ଯୋଗେ ପଠାଇଥିଲା । ଶୋକସଭାକୁ ଯିବାର ଅବ୍ୟବହିତ ପୂର୍ବରୁ କୋରିଅରବାଲା ମତେ ଦେଇଗଲା ଏ ଚିଠି । ସୋମନାଥର ଚିଠି ।

ଚିଠିର ପ୍ରଥମ ପାରାଟି ପଢି ମୋ ଆଖି ଟଳମଳ ହେଉଥିଲା ବୁନ୍ଦାବୁନ୍ଦା ଲୁହରେ । ଝାପ୍‌ସା ଦେଖା ଯାଉଥିଲା ଚିଠିର ଅକ୍ଷର । ସୋମନାଥ ଲେଖିଥିଲା–

"ମରିବା ପୂର୍ବରୁ ଏଇ କେତୋଟି ଧାଡି ଲେଖିବା ପାଇଁ ମୁଁ ବଞ୍ଚିଛି । ଗୋଟିଏ ଦ୍ୱନ୍ଦ୍ୱ, ମାନସିକ ସ୍ତରରେ ମତେ ଆକ୍ରାନ୍ତ କରିପକାଇଛି ଅନେକ ଦିନ ହେଲାଣି । ଅନେକ ଥର ଚେଷ୍ଟା କରିଛି, ଯାଉଛି ସବୁକଥା ଖୋଲି କହିଦେବି ପୁଲିସ୍ ଆଗରେ । କହିଦେବି ଯେ ମୁଁ ଜଣେ ହତ୍ୟାକାରୀ । ମାରିଦେଇଛି ମୋ ସ୍ତ୍ରୀ ପିଲାମାନଙ୍କୁ । ମତେ ଗିରଫ କର । କୋର୍ଟ ଚାଲଣ କର । କାରାଦଣ୍ଡ ଦିଅ । ଫାଶୀ ଦିଅ ।

ପର ମୁହୂର୍ତ୍ତରେ ମୋ ଗୋଡହାତ ଅବଶ ହୋଇଯାଇଛି । ହେମାଳ କମ୍ପଟେ ମାଡି ବସିଛି ମତେ । ଗୋପନୀୟତାର ଢାଙ୍କୁଣୀଟା ଖୋଲିଯାଉଛି କି ଆସ୍ତେ ଆସ୍ତେ ? ଭୟରେ ମୁଁ ଥରିଉଠିଚି ବାରମ୍ୱାର । ସବୁବେଳେ ମତେ ଲାଗୁଚି ଦୋଷୀ ଦୋଷୀ । ସିଡି ପାହାଚରେ ଶୁଭି ଯାଉଚି କାହାର ଭାରି ଜୋତା ଶବ୍ଦ । ଆସିଗଲେ କି ପୋଲିସ୍ ! ଘର ସାମ୍ନା ରାସ୍ତା ଉପରେ ଜରୁରୀ ସାଇରନ୍ ଦେଇ ଧାଉଁଥିବା ଏ ପୋଲିସ୍ ଗାଡିଟା ମୋ ସନ୍ଧାନରେ ଆସୁନାହିଁ ତ !

ନା ମୁଁ ପାରିଲି ନାହିଁ । ନିଜକୁ ପୋଲିସ୍ ପାଖରେ ଧରାଇ ଦେଲେ ଦିନ ଦିନ, ମାସ ମାସ, ବର୍ଷ ବର୍ଷ ଧରି ଚାଲିଥିବ କେଶ, କୋର୍ଟ, କଚେରି, ଜେଲ୍ । ଏଣେ ପ୍ରତି ମୁହୂର୍ତ୍ତରେ ମୁଁ ମରୁଥିବି ।

ତା' ଅପେକ୍ଷା ବରଂ ଭଲ ନିଜକୁ ଶେଷ କରିଦେବା । ମାତ୍ର କେଇଟି ମୁହୂର୍ତ୍ତର ସିଦ୍ଧାନ୍ତ, ଛଟପଟ, ତା'ପରେ ସବୁ ଶେଷ । ଶାନ୍ତି ! ମୁକ୍ତି !!

'ତୋର ମନେଅଛି ଦେବେନ୍ଦ୍ର ? ତୋ ପୁଅ ଓ ମୋ ଝିଅ ପାଇଁ ଏକା ଦିନରେ, ଜଣେ ଏଜେଣ୍ଟଠାରୁ ଆମେ କରିଥିଲେ 'ଡାଇମଣ୍ଡ ସ୍କିମ୍' ପଲିସି ! ବାର୍ଷିକ ଦଶହଜାର ଟଙ୍କା ଦେୟ, ସେ ପଲିସିରେ ଥିଲା ଦଶଲକ୍ଷ ଟଙ୍କାର ଇନ୍‌ସ୍ୟୁରାନ୍‌ସ୍ ! ମନେ ଅଛି ?

ମୋ ପ୍ରଥମ ଝିଅର ମୃତ୍ୟୁ ପରେ ମତେ ମିଳିଥିଲା ନଅଲକ୍ଷ ଅଶୀହଜାର ଆଠଶହ ଷାଠିଏ ଟଙ୍କା । ସେଇ ଟଙ୍କାରେ ତିଆରି ହୋଇଗଲା ଏ ଘର । କିଣା ହେଲା ଏ ଗାଡି ।

ଦ୍ୱିତୀୟ ଝିଅର ଜନ୍ମ ପରେ ମୁଁ କରିଥିଲି 'ଗୁଡ଼ଲକ୍' ସ୍କିମ୍‌ର ପଲିସି । ସେଥିରେ ମଧ୍ୟ ଥିଲା ଦଶ ଲକ୍ଷ ଟଙ୍କାର ଲାଇଫ୍ ଇନ୍‌ସୁରାନ୍‌ସ ।

ଦେବେନ୍ଦ୍ର, ଏବେ କହିବାକୁ ସଙ୍କୋଚ ନାହିଁ, ଥରେ ରାତିରେ ଶୋଇଥିବା ବେଳେ, କ'ଣ ପାଇଁ କେଜାଣି, ହଠାତ୍ ମୋ ମନ ଭିତରକୁ ପଶି ଆସିଲା ଗୋଟେ ସୈତାନୀ ଚିନ୍ତା । – ଏ ଝିଅଟା ବି ଯଦି ମରିଯାଏ , ମତେ ମିଳିଯିବ ଆହୁରି ଦଶଲକ୍ଷ ଟଙ୍କା !

ଗୋଟିଏ କରେଣ୍ଟ ପ୍ରବାହିତ ହୋଇଗଲା ମୋ ଦେହରେ । ସାରାରାତି ମୁଁ ଶୋଇପାରିଲି ନାହିଁ । ଝିଅକୁ ନିଦରୁ ଉଠାଇ ଖୁବ୍ ଗେଲ କଲି । ବାହାରକୁ ଯାଇ ନିଜ ଗାଲରେ ଠାଏ ଠାଏ ଚାପୁଡା ମାରିଲି । କାନ୍ଥରେ ଢୋ ଢୋ ମୁଣ୍ଡ ପିଟିଲି । ଏପରି ଅଦ୍‌ଭୁତ, ଭୟଙ୍କର ଚିନ୍ତା କାହିଁକି ମନକୁ ଆଣିଲି ବୋଲି ନିଜକୁ ଧିକ୍‌କାର କଲି । ନିଜ ପ୍ରତି ସୃଷ୍ଟି ହୋଇଗଲା ଗୋଟେ ଘୃଣା ।

ଗୋଟିଏ ଦୁଇଟି ମାମୁଲି ଝାଡା । ତା'ପରେ ଜ୍ୱର । ତା'ପରେ... ତା'ପରେ.... ସବୁ ଶେଷ । ଟଙ୍କା ଅଟକାଇ ପାରିଲାନି ମୋ ଝିଅର ଜୀବନ । ଦେବେନ୍ଦ୍ର, ସେବେ ଆଜିଯାଏ ଅହର୍ନିଶ ମୋ କାନ ପାଖରେ ଶୁଭିଯାଉଛି ଗଳାଫଟା ଚିତ୍କାର- ମାରିଦେଲୁ ଝିଅକୁ ! ଏବେ ତତେ ମିଳିଯିବ ଲକ୍ଷ ଲକ୍ଷ ଟଙ୍କା ... ଗଦାଗଦା ଟଙ୍କା ... ମାରିଦେଲୁ ଝିଅକୁ !!

ଭୟଙ୍କର ଏଇ ଧ୍ୱନି ପାଖରୁ ରକ୍ଷା ପାଇବା ପାଇଁ ମୁଁ ନୟାନ୍ତ ହୋଇପଡିଲି । ଏକ ଶୋକାର୍ତ୍ତ ସ୍ରୋତ ଭିତରେ କୁଟା ଖିଅଟେ ପରି ଭାସି ଯାଉ ଯାଉ ମୁଁ ଭାବୁଥିଲି, ସବୁକିଛି ଭାସିଯାଉ- ଭାସିଯାଉ ଏ ଘର, ଏ ଗାଡି, ଏ ଧନଦୌଲତ । ଭାସି ନଯାଉ ମୋ ସଂସାର; ମୋର ସମସ୍ତ ଆୟୁଷ ନେଇ ବଞ୍ଚିରହୁ ସନ୍ଧ୍ୟା ।

ହେଲେ... ସେଦିନ ସନ୍ଧ୍ୟାବେଳେ... ସନ୍ଧ୍ୟା ବି ....

ଏବେ ତୁ କହ ଦେବେନ୍ଦ୍ର, ମୁଁ ଜଣେ ହତ୍ୟାକାରୀ ନା ନୁହେଁ ? ମୋ ସଂସାରକୁ ହତ୍ୟା କଲା କିଏ ? ମୁଁ ନା ଆଉ କିଏ ?"

ଦେବେନ୍ଦ୍ର, କୌଣସି ସହକର୍ମୀଙ୍କ ମୃତ୍ୟୁରେ ଶୋକସଭାଟେ ହୁଏ ଆମ ଦପ୍ତରରେ । ସେପରି ଅନେକ ସଭାରେ ମୁଁ ଯୋଗ ଦେଇଛି । ମୁଁ ଜାଣେ, ମୋ ମୃତ୍ୟୁ ପରେ ମୋ ପାଇଁ କି ସେପରି ସଭାଟେ ହେବ । ଅନୁରୋଧ ରହିଲା, ମୋର ଏ ସ୍ୱୀକାରୋକ୍ତିଟିକୁ ତୁ ସେଇ ସଭାରେ ପଢିବୁ । ମୁଁ ଜାଣେ, ତୁ ଏ ଚିଠି ପାଇଲା ବେଳକୁ ମୁଁ ନଥିବି । ମୁଁ ନଥିବି ମାନେ ଦୁଃଖ ନଥିବ, ଭୟ ନଥିବ, ଲଜ୍ଜା ସଂକୋଚ ନଥିବ । ତେଣୁ ତୁ ଏହାକୁ ପଢିବୁ, ସମସ୍ତଙ୍କ ସାମ୍‌ନାରେ, ଖୁବ୍ ଉଚ୍ଚ ସ୍ୱରରେ..."

ଅଫିସ କରିଡରରୁ ଭାସିଆସୁଥିଲା ଭାଷଣ, ସୋମନାଥର ସ୍ମୃତି ଉଦ୍ଦେଶ୍ୟରେ । ଟିକେ ଆଡୁଆଳକୁ ଯାଇ ମୁଁ ଆଖି ପୋଛିଲି ଏବଂ ସୋମନାଥର ଚିଠିଟିକୁ ଟିକିଟିକି କରି ଚିରି ପବନରେ ଉଡାଇ ଦେଉଥିବା ବେଳେ ମୁଁ ଭାବୁଥିଲି- ମୃତ୍ୟୁ ଗୋଟେ ପୂର୍ଣ୍ଣଚ୍ଛେଦ ନା ଏକ ପ୍ରଶ୍ନବାଚୀ ?



# ଦେବୀ

## ଦେବପ୍ରସାଦ ଦାଶ

ଚାରିହାତିଆ ମର୍ଦ୍ଦଟା ଖସିପଡ଼ିଲା ତଳେ ଗଛ କାଟିଲା ପରି । ଝୁରିର ଛାତିରୁ ପିଚ୍ ପିଚ୍ ରକ୍ତ ବାହାରି ଓଦା କରିଦେଲା ଘରଟାକୁ । ଆଖି ପିଛୁଳାକେ ଘଟଣାଟା ଘଟିଗଲା ।

ଫୁଲମଣି କଟୁରୀଟାକୁ ଫୋପାଡ଼ିଦେଲା ଖଣ୍ଡେ ଦୂରକୁ । ଅଧାଲିଭା, ଧୂଆଁଉଠା ଚୁଲି ଭିତରୁ, ଭଙ୍ଗା ହାଣ୍ଡିର ଖପରା ସନ୍ଧିରୁ ଦରଫୁଟା ଭାତକୁ ସାଉଁଟିବାକୁ ଲାଗିଲା ନିର୍ବିକାର ଭାବରେ । ନିଖୁଣ ଭାବରେ ପାଉଁଶ ଝାଡ଼ି ଝାଡ଼ି ଗୋଟିଏ ପରେ ଗୋଟିଏ ଚାଉଳକୁ ଉଠାଇଥାଏ ସେ, ଠିକ୍ ଯେମିତି ନାଲିମାଟିରେ ଘର କାନ୍ଥକୁ ଲିପିଲାବେଳେ ଆଦୌ କୁଆଡ଼କୁ ଚାହେଁ ନାହିଁ ଫୁଲମଣି ।

ପିଲା ତିନିଟା ଭୋକରେ ଆଉଟୁ ପାଉଟୁ ହେବେଣି । ହପ୍ତାଏ ହେଲା ପେଟପୂରା ଦିଇଟା ଖାଇ ନାହାଁନ୍ତି ସେମାନେ । ପୁର୍ଥୀ ମାଆର କୋପ ହେଇଛି ଗାଁକୁ । ପହିଲୁ ଖରା ଯେ ଖରା, ଘିଅ ଜଳିଗଲା । ବୁଢ଼ା ତ ବୁଢ଼ା, ଯୁଆନ ଟୋକା ଦି ଚାରିଟାଙ୍କ ତାଲୁ ଫାଟିଗଲା । ଭଉତ ମୁଣ୍ଡ ନେଲା । ଜଳ ଟୋପାଏ ମିଳିଲା ନାଇଁ । ଅଇଛା ପୁଣି ବର୍ଷା, ତୁ ତୁ ବରଷା । ଯୁଆଡ଼େ ଅନିଶା କର ପାଣି ।

ନିଇତି କାମ କଲେ ଖାଇବା ଲୋକ ଯିବେ କୁଆଡ଼େ ? କି କାମ ମିଳୁଥିଲା ସେମାନଙ୍କୁ ? ହାଟରେ ସକାଳୁ ଛାଇ ଲେଉଟାଣି ବେଳ ଯାଏଁ ବସି ବସି ଆସନ୍ତି ସେମାନେ । ସରକାର ଘରେ ପଇସା ନାଇଁ । ଆଉ ସୁପରଭାଇଜର ବାବୁ ଡାକେ ନାଇଁ । କାମ ତ ନାଇଁ, କୁଆଡକୁ ଯିବେ ମେହନ୍ତି ମଣିଷଗୁଡ଼ାକ ?

ଥେଲା ଜଙ୍ଗଲ, ଫଳମୂଳ ଦିଟା ମିଳି ଯାଉଥେଲା । ଫୁଲମଣି ବାହା ହେଇ ଆସିଲାବେଳକୁ ଫି ସଞ୍ଜ ବାରିଆଡ଼େ ମେଘ ବରଷୁଥିଲା । ସେଇଖୁଣୁ ଶୁଖିଲା, ସେଇଖୁଣୁ ଓଦା । ଘରଠୁ ହାତେ ଦୂରେଇ ହେଟା ଗରଜୁ ଥେଲା । ଝୁରିବୋଉ ଚିରାଏ– "ଆଲୋ, ଅନ୍ଧାରରେ ବାରିକୁ ଯିବୁ ନାଇଁଟି ।" ଦିନରେ ବି ଡର ନାଗେ । କେଡ଼େ କେଡ଼େ ଉଞ୍ଚା ଉଞ୍ଚା ଗଛ, ଗଛ ନୁହେଁ ତ ମହାଜନ ଘର ପିଆଦା । ସିମିତ ତ ଦିଶନ୍ତି ସେଗୁଡ଼ା । ଯିଏ ଭିତରକୁ ଯିବ, ନଜାଣିଥିଲେ ବାଟ ପାଇବ ନାହିଁ । ମହାଜନ ପିଆଦା ହାବୁଡ଼ରେ ଯିଏ ପଡ଼ିଲା,ସେ କ'ଣ ସହଜରେ ଫେରେ ? ବାବୁ ଘର ହଳ କରେ, ଶଗଡ଼ ଟାଣେ, ଗୋବର ସଫା କରେ, ହାତ ଗୋଡ଼ ଘଷିଦିଏ ।

କୁଆଡ଼େ ଗଲେ ଗଛ ସବୁ ? ଟ୍ରକ୍ ଉପରେ ବସି ? ରାତିରେ ବହୁତ ଦୂରରୁ ଠକ୍ ଠକ୍ ଶବ୍ଦ ଶୁଭେ । କାଠହଣା ଚଢ଼େଇ କ'ଣ ପେଚା ଭଳିଆ ରାତିରେ ବଜାର ବୁଲେ ? ଗଛ ଥିଲା ଯାକେ ଖାଇବାକୁ ଦେଉଥେଲେ କିଛି ନା କିଛି । ଗଛ ନଦେଲେ ସୁପରଭାଇଜର ବାବୁ ଦଉଥେଲା । ଡଉଲ ଡାଉଲ ଚିକ୍କଣ ଚେହେରା ତା'ରି ପସନ୍ଦ । ଜଙ୍ଗଲରେ ରହେ କି କ'ଣ ! ମାଡ଼ିବସେ, ପଛରୁ ଧରି କୁତୁରୁକାଳିଆ କରେ, ରହସ୍ୟ ହୁଏ । ଶେଷକୁ ଗୁଗୁପାଞ୍ଚ କରାଏ । ଧଇଁ ବାହାରିପଡ଼େ ତା'ର । ହେଲେ ପାକିଟିରୁ କାଢ଼ି ପଇସା ଦିଏ । ସୁବିଧା ଅସୁବିଧାରେ ମୂଳ ବାହାରେ ଟଙ୍କେ ଚାରଣାଏ ଫୋପାଡ଼ି ଦିଏ । ସମସ୍ତେ ସହିଥାନ୍ତି ଅଦଉତି ତା'ର ଖାଲି ଫୁଲମଣିକୁ ଛାଡ଼ି ।

ସବୁ ପଡ଼ିଆ ହେଇଗଲା । ଆଖି ପତେଇଲେ ଆର ଗାଁ ଧୂଆଁ ଦିଶେ ଏବେ । ହେଟା, ବିଲୁଆ, ଶିଆଳ, ଠେକୁଆ ସବୁ ମୂଳକ ଛାଡ଼ି ପଳେଇଲେ କାହିଁ କୁଆଡ଼େ । ବଣ ପୋଡ଼ିଗଲା, ମନ ଭାଂଗିଗଲା । ହୁର୍ଦ୍ଦ ଉପରେ ପଥର ତ !

ଫୁଲମଣି ପାଉଁଶ ଆଡ଼େଇ ଭାତ ଖୋଜିଲା । ଓଃ, ମିଶିଯାଇଛି ତ ମାଟିରେ । ଧୋଇଲେ ଛାଡ଼ିଯାଇପାରେ ଅବା । ଏଡ଼ିକି ଅବାଗିଆ ମଣିଷଟା ! ଛୁଆଙ୍କ ଆହାରକୁ ନାତ ମାରିଦେଲା ?

ଝୁରିଟା ନିକିମା ଲୋକଟା । ଯୁଆନବେଳେ ବି କୋଉ କାମ କରୁଥେଲା କି ? ବୁଲୁଥିବ ତ ବୁଲୁଥିବ । ଏଡ଼ ବଡ଼ ମରଦଟା, ଘରର କିଛି କଥା ମୁଣ୍ଡକୁ ନିଏ ନାହିଁ । ବାହା ହେଇ ଆସିଲା ଦିନୁ ଫୁଲମଣି ଜାଣିପାରିଥିଲା ବାପା ନଥିଲା ପୁଅକୁ ମା' କିଛି କହିନି କେବେ । ଆକଟ କରିନି । କାମ କରୁଥିଲା ଝୁରିବୋଉ, ଆଉ ପେଟେ ଲେଖାଏଁ ଉଦରକୁ ନେଇ ଅନ୍ନ ହଜମ କରେ ଝୁରି । ଘରକୁ ଆସିବା ଚାରିଦିନ ପରେ ସେ ବି କାମକୁ ବାହାରିଥିଲା ଶାଶୁ ସହିତ ।

ଅଦ୍ଭୁତ ଖିଆଲି ମଣିଷଟା । ବେଳବୁଡ଼କୁ ଶାଶୁ-ବୋହୂ ଘରକୁ ଫେରିଲାବେଳେକୁ ଫାଁ ଗାଳି ଦେଇ ପଡ଼ିଥିବ ଝୁରି । ସଞ୍ଜାରେ ଶୋଇବ, ରାତି ଅଧକୁ ଫେରିବ, ସକାଳୁ ଦୁଇ ପହର ଯାଏଁ ବିଛଣାରେ ପଡ଼ିଥିବ, ଧୁ ଧୁ ଖରାବେଳେ ବୁଲି ବାହାରିବ । ଯେତେବେଳେ ଆତ୍ମା ହେବ, ଫୁଲମଣିକୁ କାମ ପାଖରୁ ଟାଣିନେଇ ଆଦର କରିବ । ତାଟି ମେଲା ଥିବ, ଶାଶୁ ଚାହିଁଥିବ, ହେଲେ ତା'ର ନିଘା ନଥିବ । ଯୋଉ ଲାଜ କଥାଗୁଡ଼ାକ, ଫୁଲମଣି ତ ସରମରେ ମୁହଁ ଲୁଚାଏ । ଦିହ ରଙ୍କୁଣା ମଣିଷଟେ ଭଳିଆ ଲାଗେ ଝୁରି ସେତେବେଳେ ।

ଶାଶୂ କହେ କୁଆଡ଼େ ଖୋଜି ଖୋଜି କି ଫୁଲମଣିକୁ ଘରକୁ ଆଣିଥିଲା ସେ । ଘରେ ବସା, ଅଖଞ୍ଜା ମାଇକିନାଟେ ଦରକାର ନଥିଲା ତା'ର । ମିହନ୍ତି ଝିଅ ଦରକାର ଯିଏ ଘରଦୁଆର ସମ୍ଭାଳିବ । ଝୁରିର ସବୁ ମାଖୁନାପଣକୁ ଉଁ ଚୁଁ କହିବ ନାହିଁ ।

ମା' ମଲା ଘରେ ନିଧଡକ ହେଇଗଲା ଲୋକଟା ଆହୁରି । ଲାଗ୍ ଲାଗ୍ ତିନିଟା ପିଲା ହେଲା ପରେ ଫୁଲମଣି ପାଖରୁ ସରାଗ ସରିଗଲା ଝୁରିର । ଅନ୍ୟ ତିର୍ଲା ଆଦର ଲାଗିଲେ ତାକୁ । ଫୁଲମଣିର ରୋଜଗାରରେ ଏବେ ବଂଚୁଥିଲେ ପାଞ୍ଚପ୍ରାଣୀ । ଖଟି ଖଟି କଟମଟ ହେଇଯାଏ ଦିହ ତା'ର । ତଥାପି ଝୁରିକୁ ପଦେ କିଛି କହିନଥିଲା ସେ । ଶାଶୂ କଥା ଛାତିରେ ଘର କରିଥିଲା– "ବାପା ଛେଉଣ୍ଡ ପୁଅଟାକୁ କେବେ କିଛି କହିବୁ ନାଇଁଲୋ, ଜାଣିଛୁ ପରା ବେସଂସାରୀ ପିଲାଟା ।"

କଂସାରେ ପାଉଁଶ ମିଶା ଭାତ ନେଇ ପାଣି ପାଖକୁ ଗଲା ଫୁଲମଣି । ଧୋଇଲା ଖୁବ୍ ଯତ୍ନରେ, ଯେମିତି ଘଷିମାଜି ଗାଧେଇଦିଏ ପିଲାମାନଙ୍କୁ । ଧୀରେ ଧୀରେ ସଫା ଦିଶୁଥିଲେ ଚାଉଳ ଦାନାଗୁଡ଼ିକ ।

ଝୁରିର ଚେହେରାଟି ଥିଲା ସିନା ସଫା, କାମଗୁଡ଼ାକ କିନ୍ତୁ ଭାରି ଅସନା ଥିଲା । ସୁପରଭାଇଜର ସାଙ୍ଗରେ କେବେଠାରୁ ଭାବଦୋସ୍ତି ହେଲା କେଜାଣି, ଆଉ କିଛି ଲାଭ ହେଉ ନ ହେଉ, ନିଶାପାଣିର ସରାଗ ଲାଗିଗଲା ତାଠି । ବାବୁର ବୋଲହାକ କରେ, ବେଳବୁଡ଼କୁ, ନା ଢେର ରାତିକୁ ଟଳି ଟଳି ଘରକୁ ଫେରେ । ପିଲାଗୁଡ଼ାକ ଡରରେ ନେସି ହେଇଯାନ୍ତି ମା' ଦିହରେ । ଆସିଲା କ୍ଷଣି ଖାଇବାକୁ ମାଗେ । ଉଛୁର ହେଲେ ପାଟି କରି ଖଞ୍ଜା କମ୍ପାଏ । ପିଲାଗୁଡ଼ାଙ୍କୁ ବିନା କଥାରେ ମାର ଧର କରେ । ଫୁଲମଣି ସଅଳ ସଅଳ ଖାଇବାକୁ ଦେଇ ଶୁଆଇ ପକାଏ ତାକୁ । ସେ ତା' ଗେରସ୍ତ ନୁହେଁ ଯେ ସତେ ଯେପରି ତା'ର ଆଉ ଗୋଟିଏ ପିଲା । ଦରବୁଢ଼ା ପିଲା ।

ଗାଁ ମାଇପେ ଭଉତ କହନ୍ତି ମରଦଟାକୁ ଆଖି ଦେଖେଇବାକୁ । ଫୁଲମଣି ହସିଦିଏ । ଆରେ, ଝୁରି ମରଦ ଆଉ ହେଲା କେତେବେଳେ ? ବରଞ୍ଚ ସିଏ ତାକୁ ସମ୍ଭାଳିଛି ଆଜିଯାଏ ।

ଥାଉ, ଘରେ ତ ଅଛି । ଚାରିଲୋକ ଫୁଲମଣି ଉପରେ ନଜର ପକାଇବାକୁ ତ ଭୟ କରୁଛନ୍ତି ।

ଗାଁର କୁକୁଡ଼ା, କାହା ବାରିରୁ ପରିବା ଆଉ କାହାର ଫଳମୂଳ ଚୋରି ହେଲେ ସୁପରଭାଇଜର ଚାଳିଆରେ ଛୋଟକାଟର ଜନ୍ତାଳ ହୁଏ । ସବୁ ଚୋରି ଦୋଷ ଲଦାହୁଏ ଝୁରି ଉପରେ । ନାଲିସ ହୁଏ, ଦଣ୍ଡ ହୁଏ । କ'ଣ ଥାଏ ତା' ପାଖରେ ଯେ ଜୁରିମାନା ଦବ ? ବେଠି ଖଟେ ମହାଜନ ଘରେ, ଆଉ କାହା ବାରିରେ । ପଞ୍ଚ ମହାପ୍ରଭୁ, ତାଙ୍କ କଥାକୁ ଅମାନ୍ୟ କରିବାର ଯୁ କାହାର ଅଛି ? ସେଇତକ ଦିନ ଯାହା ସେ ଗଣ୍ଡି ହଲାଏ । ରାତିକୁ ପୁଣି ପେଟେ ପିଇଦେଇ ଆସେ । ଆହାଃ, ବିଚରାର ଗୋଡ଼ହାତ ପରାଶ ହଉଥାଏ ପରା, ମାଲିସ୍ କରିଦିଏ ଫୁଲମଣି । ସେତିକିବେଳେ ଆଦର କରେ ତାକୁ ମନ ମାନିଥିଲେ ।

ଏମିତି ଦିନେ ରାତିରେ କହିଦେଲା ପଦଟିଏ ଫୁଲମଣିକୁ । "ସୁପରଭାଇଜର ବାବୁ ଭାଆରି ଭଲ ଲୋକ । ଝୁରିକୁ ଖାଇବାକୁ ଦିଅନ୍ତି । ସହରରୁ ଆଇଥିବା ତାଡ଼ି ପିଆନ୍ତି । କେତେ ଉପକାର ତାଙ୍କର ତା' ଉପରେ । ସେ କୁଆଡ଼େ ନଜର ପକେଇଚିନି ଫୁଲମଣିର କଳା ମଚମଚ ଚିକ୍ ଚିକ୍ ଧିଅ ଉପରେ । ସହରର ବଡ଼ ଶାଢ଼ି ଦୋକାନରେ ତାରି ଭଳିଆ ଠାକୁରାଣୀ ଠିଆ ହେଇଥାନ୍ତି କାଚ ଭିତରେ । ତୁ ଗୋଟାଏ ଚୋଖା ମାଲ୍ କୁଆଡ଼େ ।" ଝୁରି କହିଲା ଓ ହସିଲା । "ଆଲୋ ହେ, ଯାଉନୁ ଥରେ ତା' ପାଖକୁ, ତା' ବେଗରେ ଟଙ୍କା ଦେଖିବୁ ନା ଆଖି ତାଳୁକୁ ଉଠିଯିବ ଲୋ । ଆମକୁ ଯଦି ବି ଚାରିଟା ଦେଇଦିଅନ୍ତା, କେତୁଟା ଦିନ ପେଟେ ଖାଆନ୍ତେ । ଛେଳି ମାଉଁସ ଟିକେ ଖାଇବାକୁ କ'ଣ ତୋର ଇଚ୍ଛା ହଉନି ? ପିଲାଙ୍କୁ ଅନଉନୁ ଟିକେ ।" ପ୍ରଥମେ ତ ରାଗିବ ବୋଲି ଭାବିଥିଲା ଫୁଲମଣି । ନିଜ ସ୍ତ୍ରୀଟାକୁ ପର ମର୍ଦ୍ଦ ପାଖକୁ ପଠଉଛି । ଟିକେ ବି ଆଗିଲା ପିଛିଲା ଚିନ୍ତୁନି । ପୁଣି ଭାବିଲା, ପିଲାମିଣିପ ଭୋକିଲା ଥାଇ ଇଜ୍ଜତ ଜଗିଲେ କ'ଣ ହବ ? ଯାଉ ବରଞ୍ଚ ଭଲ ଆହାର ଦିଟା ପାଟିକୁ । ଛେଳିମାଂସର ବାସେନା ବ୍ୟାପିଗଲା ତା' ଶିରା ପ୍ରଶିରାରେ ।

ସୁପରଭାଇଜର ଦି ଖଣ୍ଡ ଦଶଟଙ୍କିଆ ନୋଟ୍ ଦେଇଥିଲା ଫୁଲମଣିକୁ । ଅଭିଲା, ଅଥୟ ଲୋକଟା । ଏତିକି ଉତ୍ତାପ ତା' ଧିଅରେ । ରାତିସାରା ଶୁଆଇ ଦେଇ ନଥିଲା ତାକୁ । ଫୁଲମଣି ତ ଭାବିଥିଲା ପେଲି ହେଇ ହେଇ ମରିଯିବ ଲୋକଟା । ବୋତଲ ହାଣ୍ଡିଆ ପିଉଥାଏ ମଝିରେ ମଝିରେ, ସାଙ୍ଗରେ ସୁଆଦିଆ ବାରମଜା । ଅଧା ସରାଗ ପରି ଫୁଲମଣିକୁ ବି ଜୋର୍ କରି ଖୁଆଇ ଦେଉଥିଲା ବାରମଜା । ବୋତଲଟା ତା' ପାଟି ପାଖକୁ ଆଣିଥିଲା ବି ଥରେ । ହେଲେ ଗନ୍ଧ ବାଜି ଓଟାର ଆସିଥିଲା ତା' ପେଟ ଭିତରୁ । ଆଉ ଜବରଦସ୍ତ କରି ନଥିଲା ତା'ପରେ ସେ । ନିଶାରେ ଚୁର୍ ହେଇ ଜିଭ ଲଗାଇ ଚାଟି ଥିଲା ଫୁଲମଣିକୁ ଗୋଡଠୁ ମୁଣ୍ଡଯାଏଁ । ସେ କ'ଣ ଜଙ୍ଗଲର ସୁଆଦିଆ ମହୁ ? କାଇଁ ଝରି ତ ଏମିତି କରେ ନାହିଁ କେବେ ? ସକାଳ ହେଲାବେଳକୁ ପରାଶ ଲାଗୁଥିଲା ଦିହ ତା'ର । ହେଲେ ସନ୍ଧ୍ୟାରେ ଗରମ ଭାତ ଓ ଛେଳି ମାଉଁସ ଝୋଳ ସବୁ ଦରଜ ଦୂର କରିଦେଇଥିଲା । ପିଲାଏ ଓ ଝୁରି ସେଦିନ ଲାଗିଥିଲେ ମହାଜନ ଘର ତୋଫା ଗୋରା ଚିକ୍କଣ ବଳଦ ଭଳି । ସେମାନଙ୍କୁ ଦେଖି ଆତ୍ମା ଆନନ୍ଦ ପାଇଥିଲା ତା'ର ଛେଳିମାଂସ ତା'ପରେ ଅପହଞ୍ଚ ହେଇ ରହିନଥିଲା ସେମାନଙ୍କ ପାଖରେ ।

ସୁଖଦିନଗୁଡ଼ା ରହେ ନାହିଁ ବେଶୀ ଦିନ । କାମ ସାରି ସୁପରଭାଇଜର ପଳେଇଲା । ଖାଁ ଖାଁ ପଡ଼ିଲା ଚାଳ ତା'ର । ସର୍କାର ଘର ଖାଲି । ଦୁର୍‌ବିଖ ଫସଲ ମାରିଦେଲା । ମାଟି ଆଁ କରିଦେଲା । କେଡ଼େ ବଡ଼ ବଡ଼ ଫାଟ । ଗିଳିଦବ ଗଛବୁଚ୍ଛି, ପିଲାମଣିଷ, ଗାଈଗୋରୁଙ୍କୁ ସତେ

ଯେମିତି । ମର୍ଦ୍ଦଗୁଡ଼ାକ ଗାଁ ଛାଡ଼ି ଚାଲିଗଲେ ଦୂର ମୁଲକକୁ । ସିଆଡ଼େ ଭଉତ କାମ । ଭଉତ ଟଙ୍କା । ଭୋକରେ କେହି ମରନ୍ତି ନାଇଁ ସହରରେ !

କୁଆଡ଼େ ଯାଇଥାନ୍ତା ଫୁଲମଣି ଭିଟାମାଟି ଛାଡ଼ି ? ଝୁରିଟା ସିଆଣିଆ ହୋଇଥାନ୍ତା କି ? ସେଇଟା ବି ଅଥରବଟାଏ । ପଡ଼ିରହିଲା ପଡ଼ିଆ ଜମିରେ ଘାସ କଅଁଳିବାକୁ ଅପେକ୍ଷା କରି । ଠିକ୍ ଯେମିତି ନିଆଁ ଢାଳୁଥିବା ପୁର୍ଥୀ ଚାହିଁ ବସିଥିଲା ମେଘ ଧରି ଆସୁଥିବା ବଉଦକୁ ।

କାଁ ଭାଁ ମିଳିଯାଉଥିଲା ବୋଲହାକ, ମୂଲମଜୁରୀ କାମ କେତେବେଳେ କେମିତି ଫୁଲମଣିକୁ । ଯାହା ମିଳେ, ଅଧେ ଚାଲିଯାଏ ମଦଭାଟିକୁ । ସୁପରଭାଇଜର ଗଲା ପରେ ଆଉ ମୁଫତ ପିଇବାକୁ ମିଳେ ନାହିଁ ଝୁରିକୁ । ଛୁଆ ତିନିଟାଙ୍କ ପଞ୍ଜରା ଦିଶିଲାଣି । ଅଧାପେଟ ଖାଇଲେ ଆଉ କ'ଣ ହୁଅନ୍ତା ? ସେମାନଙ୍କର ପୁଣି ବଢ଼ିଲା ବେଳ ।

ଦି' ଚାରିଥର କଂସାରେ ପାଣି ଢାଳି ଟାକୁ ନିଗାଡ଼ିଲା ଫୁଲମଣି । ଏଥର ହୁଏତ ଖାଇହେବ ଭାତ । କେଡ଼େ କଷ୍ଟରେ ଦୁଇଦିନ ପରେ ଯୋଗାଡ଼ିଛି ସେ ଏତକ । ତେନ୍ତୁଳି ପାଣି ଟିକିଏ ଲଗାଇ ସନ୍ତୋଷରେ ଖାଇଦେବେ ପିଲା ତିନୋଟି ।

ଝୁରି କ'ଣ ଏକୁଟିଆ ଯାଏ ମଦଭାଟିକୁ ? ଗାଁରେ ରହିଯାଇଥିବା ଆଉ କେତେଜଣ ବି ଯାଉଥିଲେ ସେହି ନିଆଁଲଗା ଜାଗାକୁ । କ'ଣ ମିଳେ ସେ କଡ଼ା ପାଣିଗୁଡ଼ା ପିଇ କେଜାଣି ? କଲିଜା ପୋଡ଼ିଦିଏ କୁଆଡ଼େ । ହେଇଥିବ ଝୁରି ତ ଛାତିକୁ ଚାପିଧରି ବସୁଥିଲା ଆଜିକାଲି । ବେଳେବେଳେ ଓଟାରି ହେଇ କାଶେ । ତଥାପି କ'ଣ ଛାଡୁଥେଲା ତାକୁ ?

ସହିପାରିଲେନି ଗାଁ ମାଇପେ । ସେମାନେ ରକତ ନିଗାଡ଼ି ଦି ପଇସା ଘରକୁ ଆଣିବେ ଆଉ ମରଦଗୁଡ଼ା ତାକୁ ମଦଭାଟିରେ ସାରିବେ । ସେମାନେ ଏକାଠି ହେଇ ଭାଂଗିଦେବେ ଭାଟିକୁ । ଆଉ ଥିବ ଯେ ଯିବେ ନିକମାଗୁଡ଼ାକ ? ନିଆଁ ଲଗାଇଦେବେ ସେମାନେ ସେଥିରେ । ଫୁଲମଣି ସାଙ୍ଗରେ ଯିବାକୁ ମନା କରିଦେଲା । ଝୁରି ଏବେ ହେଲା ଟିକେ ଅଅସ କରୁଛି । ଘର କ'ଣରେ ଆଉ କ'ଣ ମାଇପିଙ୍କ ପରି ବସି ରହିବ ? ଫୁଲମଣିକୁ ବୁଝିପାରି ନଥିଲେ କେହି ହେଲେ । ଏଡ଼େ ବକଟେ ସ୍ତ୍ରୀଲୋକ, ସୁଖ ବୋଲି କ'ଣ ଜାଣିନି । ଅକର୍ମା ମର୍ଦ୍ଦ ଓ ତିନିତିନିଟା ପିଲାଙ୍କୁ ଧରି ଯୁଝୁଛି ଦୁରୁବଳ ଭାଗ୍ୟ ସହିତ । ତଥାପି ଟିକେ ହେଲେ ଦଇନି ଅଛି ? ଝୁରି ତା' ସ୍ୱାମୀ ନୁହେଁ, ତା' ଦେବତା । ନିକମା ଲୋକଟା ବିରୋଧରେ ପଦେ କେବେ କହେ ସେ ?

ହଠାତ୍ ଦିନେ ଦିଶିଲା କଳା ବାଦଲ ଆକଶଟା ଯୋଉଠି ମିଶିଯାଏ ସେଇଆଡୁ । ନିଦାଘ ଯିବ ? ଶୁଖିଲା ମାଟିରେ ଶୋଷ ମେଣ୍ଟିବ ? ପିଲାଙ୍କ ପାଟି ଶୁଭିଲା– "ବରଷା ଆସୁଛି ଲୋ ବୋଉ ।"

କୁଆଡୁ ଆସିଲା ଏ ଧାରା ଶିରାବଣ ? ଇନ୍ଦର ରାଜା କୋପ କଲା କି କ'ଣ କେଜାଣି ? ବରଷୁଛି ଯେ ବରଷୁଛି । ପକ୍ଷଟିଏ ହେଲାଣି । ଦିଦିନ ହେଲା ସବୁଠୁ ଜୋର୍‌ରେ । ଧିଅକ ଜାକରେ ଏମିତିଆ ମେଘ ଦେଖିନଥିଲା ଫୁଲମଣି । ଘରେ କିଛି ବୋଇଲେ କିଛି ନାହିଁ । ପିଲାଗୁଡ଼ାକ ଭୋକ ସହି ନପାରି ପାଣି ମୁନ୍ଦିଏ ମୁନ୍ଦିଏ ପିଇ ଶୋଇ ରହିଥିଲେ ପାଟି ନ ଫିଟାଇ । ଘରେ ପଡ଼ି ପଡ଼ି ଗରଗର ହେଉଥିଲା ଝୁରି ।

ଫୁଲମଣି ବାହାରିଲା ଖାଇବା ମୁଠିଏ ଯୋଗାଡ଼ିବା ପାଇଁ । କୁଆଡ଼େ ଯିବ ଏ ପାଗରେ ? କାହା ପାଖରେ ହାତ ପତେଇବ ? କିଏ ବା କାହିଁକି ଅଜାଡ଼ି ଦବ ତା' ଅଣ୍ଟିରେ ? ମହାଜନ ବିଲର କଳ ପମ୍ପ ପାଣି ଢାଳିବା ପରି ମେଘ ବରଷୁଥାଏ ଆକାଶ ଫଟେଇ । ଅନ୍ଧାର ଦିଶୁଥାଏ ବାହାରଟା ଦିନ ଦିପହରେ ।

ଫୁଲମଣି ଅସ୍ଥିର, ବିବ୍ରତ, ଅସତର୍କ । ପଞ୍ଚାୟତ ଘର ପାଖାପାଖି ହଠାତ୍ ତାକୁ ଟାଣିନେଲା ଏକ ସବଳ ହାତ । ଓଦା ଶାଢ଼ିଟା ତା'ର ଦେହରେ ଜଡ଼ାଇ ହୋଇ ଲଙ୍ଗଳା କରିଦେଉଥାଏ ତାକୁ । ବାହାରକୁ ଫୁଟି ଦିଶୁଥାଏ ପାହାଡ଼, ବିଲ, ଡିହ ଓ କିଆରୀ ।

ବାହାରେ ମେଘ, ଭିତରେ ବତାସ ।

ବାହାରେ ହେମାଳ, ଭିତରେ ଉତ୍ତାପ ।

ବାହାରେ ଭୋକ, ଭିତରେ ଭାତ ।

ଝଡ଼ ଥମିଲା । ଫୁଲମଣି ହାତରେ ପାଞ୍ଚଟା ଟଙ୍କା । ପ୍ରତିଦାନର ମୂଲ୍ୟ ।

ସେତକ ତା'ର ପୁଞ୍ଜି, ଶ୍ରମର ଉପାର୍ଜନ । ନିଜକୁ ଘୋଷାରି ଘୋଷାରି ବାହାରକୁ ଆସିଲା ସେ । ମେଘ ଥମିଯାଇଛି ହଠାତ୍ । ଅଚାନକ ।

ଚାଉଳ ମୁଠାଏ ଭିତରେ ଫୁଲମଣି ଦେଖିଲା ସୂର୍ଯ୍ୟ । ମେଘକୁ ଅତିକ୍ରମ କରିଯାଇଥିବା ସୂର୍ଯ୍ୟ । ଆହୁରି ମଧ୍ୟ ଦେଖିଲା ପରିଚ୍ଛନ୍ନ, ସ୍ୱଚ୍ଛ, ନୀଳ ଆକାଶ । ଶେଷରେ ହସ, ତା' ପିଲାଙ୍କ ପ୍ରଶାନ୍ତ ମୁହଁରେ ନିଷ୍ପାପ ହସ ।

ଘରର ଯୋଡପଟେ ଚୁଲି, ଠିକ୍ ଅପରପାର୍ଶ୍ୱରେ ମାଟି କାନ୍ଥକୁ ଆଉଜି ବସିଥିଲେ ତିନୋଟି କୁନିକୁନି ପିଲା । ଚାହିଁ ରହିଥିଲେ ଚୁଲି ଉପରେ ବସିଥିବା ଭାତହାଣ୍ଡିକୁ ଜୁଳୁଜୁଳୁ ଆଖିରେ । ସେ ଆଖିରେ ନଥିଲା ଭୋକର କରୁଣ ଦାରିଦ୍ର୍ୟ, ବରଂ ବେଶୀ ଝଲକୁଥିଲା ଆସ୍ଥାର ଦୀପ୍ତିମାନ ପ୍ରାଚୁର୍ଯ୍ୟ ।

ଝୁରି କବାଟ ଖୋଲି ଭିତରକୁ ପଶିଆସିଲା ହଠାତ୍ । ନିଶାରେ ଚୁର୍ । ଟଳି ଟଳି । ବିପର୍ଯ୍ୟସ୍ତ ପାଦ । ଆହୁରି ବିପର୍ଯ୍ୟସ୍ତ ସେ ନିଜେ । ହାତରେ ଆଉ ଏକ ବୋତଲ । ଫୁଲମଣିକୁ ମାଗିଲା ଗିନାଟାଏ । ଅନ୍ୟମନସ୍କ ଫୁଲମଣି ଧ୍ୟାନମଗ୍ନ । ପିଲାଙ୍କୁ ଖୁଆଇ ଦେବାର ଆସନ୍ନ ଆନନ୍ଦରେ ବିଭୋର ।

ଉତ୍ତେଜିତ ଝୁରି ଟଳିଟଳି ଆଗେଇଗଲା । ଫୁଲମଣି ତଥାପି ସ୍ଥିର, ଅବିଚଳିତ । ଝୁରି ଆଉ ଦୁଇଥର ଡାକିଲା ତାକୁ । ଫୁଲମଣି ଏକ ବିଚିତ୍ର ଇଲାକାରେ । କ'ଣ ହୋଇପାରେ ତାହା ? ପାଚିଲା ଧାନଖେତ ନା ଜଙ୍ଗଲୀ ଫୁଲର ବଗିଚା ?

କିଛି ଅଶ୍ଳୀଳ ଆକ୍ଷେପ ଝୁରିର । କ୍ରୋଧରେ ଜଳୁଛି ସେ । ହଠାତ୍ ଭାତହାଣ୍ଡିକୁ ଗୋଇଠାଟେ ପକେଇଲା ଝୁରି । ଫାଟିଗଲା ହାଣ୍ଡିଟା ଖଣ୍ଡଖଣ୍ଡ ହୋଇ ସଜୋର ଶବ୍ଦ କରି । ଦରଫୁଟା ଚାଉଳ ଯାକ ଖସିପଡ଼ିଲେ ଚୁଲି ଭିତରକୁ । ପାଣି ପଡ଼ି ଲିଭିଗଲା ନିଆଁ । ଶବ୍ଦାୟିତ ଧୂଆଁସବୁ ଚାଳଭେଦି ଆକାଶକୁ ଉର୍ଦ୍ଧ୍ୱ ଗତିରେ ଆଗେଇ ଚାଲିଲେ । ସେମାନଙ୍କ ସହିତ ଉର୍ଦ୍ଧ୍ୱମୁଖୀ ହେଲେ ଫୁଲମଣିର ଶ୍ରମ, ସ୍ୱେଦ ଓ ସ୍ୱପ୍ନ ।

ସେ ଫେରିଆସିଲା ବିଭୋରାବସ୍ଥାରୁ । ଚାଳରୁ ଟାଣିଆଣିଲା କଟୁରୀଟାକୁ । ଏକ ଭୀଷଣ ଚିତ୍କାର ସହ ସବୁ ଜୋର୍ ଲଗାଇ ଝୁରିର ଛାତିରେ ପ୍ରଚଣ୍ଡ ଆଘାତ ହାଣିଲା ଫୁଲମଣି । ଝୁରି ଖସିପଡୁଥିଲା ତଳେ । ଘରସାରା ରକ୍ତର ଫୁଆର ।

ଦେଖଣାହାରୀ ପହଞ୍ଚିଲା ବେଳକୁ ଫୁଲମଣି ପିଲାମାନଙ୍କୁ ଭାତ ଖୁଆଇ ଦେଉଥିଲା ନିଜ ହାତରେ ।

ଅଦୂରରେ ପଡ଼ିରହିଥିଲା ଝୁରିର ମୃତଦେହ ।

ପୋଲିସ ପଚାରୁଥିଲା ଫୁଲମଣିକୁ– "ତୁ ତାକୁ କାହିଁକି ମାରିଲୁ ?"

"ସେ ମୋ ପିଲାଙ୍କ ଭାତହାଣ୍ଡି ଭାଂଗିଦେଲା ।"

ଫୁଲମଣି ଲାଗୁଥିଲା ଏକ ଉଦାର, ପ୍ରଶାନ୍ତ ଦେବୀମୂର୍ତ୍ତି ପରି ।



# ସତୀ

## କୃଷ୍ଣ କୁମାର ମହାନ୍ତି

ସବୁ ହିଁ ମଫସଲର ଖବର ।

ସ୍ଥାନୀୟ ସମ୍ବାଦଦାତାମାନଙ୍କଠାରୁ ଆସୁଥିବା ଏକ ସମ୍ବାଦ ସବୁବେଳେ କମ୍ପୋଜ ହୋଇସାରିବା ପରେ ବି ବାଦ୍ ପଡ଼ିଯାଇଥାଏ । ନିଉଜ ଡେସ୍କରେ ସମ୍ବାଦ ବାଛୁଥିଲେ ପ୍ରବୀଣ ସାମ୍ବାଦିକ ମହାଦେବ ବାବୁ । ଏ' କାମ ତାଙ୍କ ସହକାରୀଙ୍କର । ସେ ଅନୁପସ୍ଥିତ ଥିବାରୁ ଅଧିକ ତତ୍ପରତାର ସହିତ ମହାଦେବବାବୁ ନିଉଜ ସବୁ ବାଛୁଥିଲେ । ବାଲେଶ୍ୱରରୁ ସ୍ୱତନ୍ତ୍ର ସମ୍ବାଦଦାତା ପଠେଇଥିବା ଏକ ସମ୍ବାଦର ହେଡିଂ ଲାଇନ୍ ପଢ଼ି ମହାଦେବ ବାବୁ କେମିତି ଟିକିଏ ସକ୍ରିୟ ହୋଇପଡ଼ିଲେ । ସମ୍ବାଦଟି ମିର୍ଜାପୁର ଗ୍ରାମରେ ହୋଇଥିବା ଯୋଗୁ ମହାଦେବ ବାବୁ ପଢ଼ିଲେ, ଗମ୍ଭୀର ହୋଇଗଲେ... କ୍ରମଶଃ ସ୍ତବ୍ଧ ଓ ଅଭିଭୂତ.... ଏବଂ ସମୟ ଗଡ଼ିଚାଲିଲା ।

ସମ୍ବାଦଟି ସଂକ୍ଷିପ୍ତ ଓ ଏଇପରି... । 'ସତୀର ଦେହତ୍ୟାଗ' ବାଲେଶ୍ୱର, ୩୦।୬ ସ୍ଥାନୀୟ ମିର୍ଜାପୁର ଗ୍ରାମର ଜଣେ ଧୀବର ବଧୂର କାକତାଳୀୟ ମୃତ୍ୟୁ ଘଟିଛି । ବୟସ ତା'ର ତିରିଶରୁ ଅଧିକ, ନାମ ସତୀ । କଳଙ୍କର ଏକ ନିନ୍ଦିତ ନାୟିକା । ବହୁ ମିଛ ଏବଂ ଗୁଜବ ସବୁ ତା' ନାଁରେ । ଏଇ କାରଣରୁ ତା'ର ମସ୍ତିଷ୍କ ବିକୃତି ଘଟେ ଓ ଗାଁର ଟୋକାମାନେ ତାକୁ କଳଙ୍କିନୀ କହନ୍ତି । ସତୀ ଉତ୍‌କ୍ଷିପ୍ତ ହୋଇପଡ଼େ । ଗାଳିମନ୍ଦ କରେ । ପାଗଳାମୀ ବଢ଼ିଚାଲେ । ଅଦ୍ଭୁତ କାଣ୍ଡ ଯେ ସତୀର ମୃତ ଦେହକୁ ଘେରି ଦୁଇଟି ବିଷଧର ସର୍ପ ଫଣାଟେକି ରହିଥିଲା । ଅଥଚ ସର୍ପାଘାତରେ ତା'ର ମୃତ୍ୟୁ ହୋଇନାହିଁ ବୋଲି ପୋଷ୍ଟମର୍ଟମ ରିପୋର୍ଟରୁ ଜଣାପଡ଼ିଥିଲା । ମୃତ୍ୟୁ ଥିଲା ସଂପୂର୍ଣ୍ଣ ସ୍ୱାଭାବିକ । ଏ ସାମ୍ବାଦିକ ନିଜେ ଘଟଣା ସ୍ଥଳକୁ ଯାଇ ଏହାର ପ୍ରମାଣ ପାଇଥିଲେ । ତାଙ୍କୁ ମନେ ହୋଇଥିଲା ସତୀ ଯେମିତି ସୁଖ ନିଦ୍ରାରେ ଘୁମେଇ ପଡ଼ିଛି !

ସମ୍ବାଦଟି ପଢ଼ିସାରିବା ପରେ ମହାଦେବ ବାବୁଙ୍କୁ ଆଉ କିଛି ଭଲ ଲାଗିଲା ନାହିଁ । ତଳ ମହଲାକୁ ଓହ୍ଲେଇ ଆସିଲେ । ତଳେ ପ୍ରେସ୍ । କପି ଏଡିଟରଙ୍କୁ ଡାକି, 'ସତୀର ଦେହତ୍ୟାଗ ସମ୍ବାଦଟି ଛପାଯିବନି' କହି ଘରକୁ ଫେରିଆସିଲେ । ବ୍ୟକ୍ତିଗତ ଫାଇଲ୍‌ରେ ସମ୍ବାଦଟିକୁ ରଖି ଇଜି ଚେୟାରରେ ମହାଦେବ ବାବୁ ନିଜକୁ ଲୋଟେଇ ଦେଲେ ।

କୋଡ଼ିଏ ବର୍ଷ ତଳେ ମହାଦେବ ବାବୁ 'ଅଢ଼େଇଶ' ଟଙ୍କା ଦରମାରେ ଯେଉଁଠି ଟ୍ରେନି ରିପୋର୍ଟର ଭାବେ କାମ କରୁଥିଲେ, ଆଜି ନିଜ ପ୍ରଚେଷ୍ଟା ଓ ସାଧନା ବଳରେ ସେଇ ସମ୍ବାଦ ପ୍ରକାଶନ ସଂସ୍ଥାରୁ ପ୍ରକାଶ ପାଉଥିବା ଦୈନିକ ଖବରକାଗଜର ରବିବାର ଫିଚର ପୃଷ୍ଠାର ଦାୟିତ୍ୱ ତୁଲାଉଛନ୍ତି ସେ । ଏବେ ତାଙ୍କ ଦରମା ପାଞ୍ଚହଜାର ଟଙ୍କା । ରବିବାର ଫିଚର ପୃଷ୍ଠାଟି ତାଙ୍କ ସଂପାଦନାରେ ବେଶ୍ ଆଦୃତ ହୋଇଛି । ନହେବ କେମିତି । ଖାସ୍ ଏଇଥି ପାଇଁ ଏଠି ସେଠି ଅନେକ ବୁଲିଛନ୍ତି । ଜୀବନ ଖୋଜିବାର ନିଶା— ମଣିଷର ଦୁଃଖ ଭିତରେ ପଶିଯିବାର ତୃଷ୍ଣା.... ଖାଲି ଜୀବନ ଓ ଜୀବନ, ଧରାବନ୍ଧା ସମ୍ବାଦକୁ ଫିଙ୍ଗି ସେ ଧାଉଁଛନ୍ତି ଯେଉଁଠି ଜୀବନ ଅଛି । ଜୀବନର ଆବେଗ ଅଛି । ସେଇଥି ପାଇଁ ତାଙ୍କ ପୃଷ୍ଠାଟି ବେଶ୍ ଲୋକପ୍ରିୟ । ବହୁ ସମ୍ବାଦ

ପ୍ରତିଷ୍ଠାନ ତାଙ୍କୁ ବିଭିନ୍ନ ସମୟରେ ମୋଟା ଅଙ୍କର ଦରମା ଦେବେ ବୋଲି ଲୋଭ ଦେଖାଇଛନ୍ତି । ସେ କିନ୍ତୁ ଆଜି ପର୍ଯ୍ୟନ୍ତ ସେଇଠି– ଗୋଟିଏ ସଂସ୍ଥାରେ ଯେଉଁଠି ତାଙ୍କର ସାମ୍ବାଦିକ ଜୀବନର ଆରମ୍ଭ ହୋଇଥିଲା ।

ଜୀବନକୁ ଘାଣ୍ଟି ଚକଟି ଦେଖିଥିବା ସେଇ ମହାଦେବ ବାବୁ ଆଜି କାହିଁକି ଜୀବନର ଏଇ ବାସ୍ତବ ଛବିଟିକୁ ନିଜ କଲମ ଆଞ୍ଚୁଡ଼ାରେ ମୂର୍ତ୍ତ କରି ପାଠକମାନଙ୍କୁ ଭେଟି ଦେଲେନି ତାଙ୍କର ସେଇ ଲୋକପ୍ରିୟ ଫିଚର ପୃଷ୍ଠାରେ ! ନା ସେ ପାରିବେନି । ବରଂ ଏହା ତାଙ୍କ ଛାତି ତଳେ ଗୋପନ ଥାଉ । ଅନେକ ଦେଖିଲେ, ଅନେକ ଲେଖିଲେ । ଏଥର ଗୋପନ ଥାଉ ଜୀବନର ଏଇ ଗୋଟାକ ଛବି, ଏଇ ଗୋଟାକ ଘଟଣା ।

ଯାହା ସେ ଦେଖିଛନ୍ତି ଯାହା ସେ ଅଙ୍ଗେ ନିଭେଇଛନ୍ତି, ଆତ୍ମାର କ୍ରନ୍ଦନ ଯାହା ସେ ନିଜେ ଶୁଣିଛନ୍ତି... ସେଇତକ ହିଁ କାହାଣୀ ।

କୋଡ଼ିଏ ବର୍ଷ ତଳର ଘଟଣା...

ଧୀବରମାନଙ୍କର ଧୂସର ଜୀବନକୁ ନେଇ ଭଲ ନିଉଜ ଆଇଟମ୍‌ଟିଏ ତିଆରି କରିବାର କଳ୍ପନା ନେଇ ମହାଦେବ ବାବୁ ଖୋଜି ଖୋଜି ଶେଷରେ ଯେଉଁ ଗାଁରେ ପହଞ୍ଚିଲେ, ସେ ଗାଁର ନାଁ ମିର୍ଜାପୁର । ମଫସଲ ଗାଁ । ଗାଁର ଅଧିକାଂଶ ଲୋକ ମାଛ ବେଉସା କରି ଚଳନ୍ତି । ଗାଁରେ ପାଣି ନାହିଁ, ଆଲୁଅ ନାହିଁ । ଡାକ୍ତରଖାନା ନାହିଁ, ବସନ୍ତ ଓ ହଇଜାରେ ଲୋକମାନେ ମରୁଛନ୍ତି– ଅତଏବ ମହାଦେବ ବାବୁ ଗାଁ ଭିତରକୁ ପଶିଲେ । ଗାଁର ଭୌଗୋଳିକ ପରିଚିତି ପାଇଁ ବହୁ ସମୟ ନଷ୍ଟ କରିବା ପରେ ସଞ୍ଜ ନଇଁ ଆସିଲା ଅଥଚ ଗାଁର ମାନଚିତ୍ର ଦେଖା ସଂପୂର୍ଣ୍ଣ ହେଲାନି । ଚାରିଆଡ଼େ ଅନ୍ଧାର– ତା' ସାଙ୍ଗକୁ ବର୍ଷା ବି ଆରମ୍ଭ ହୋଇଗଲା । ସନ୍ଧ୍ୟା ପରେ ଗାଁର ରୂପ ପରିବର୍ତ୍ତନ ହୋଇଗଲା । ପ୍ରତିଟି କୁଡ଼ିଆ ଘର ଭିତରୁ ଆଲୁଅ ସବୁ ମିଞ୍ଜି ମିଞ୍ଜି ଦିଶିଲା । ଆକାଶରେ ମେଘ । ମହାଦେବ ବାବୁ ଚିନ୍ତାରେ ପଡ଼ିଲେ । ରାତିଟା ଏଇ ଗାଁରେ ହିଁ କଟେଇବାକୁ ହେବ । କାରଣ ସଞ୍ଜ ପରେ ଏ ଗାଁରୁ ସହରକୁ ଫେରିବା ପାଇଁ କୌଣସି ମଟର ଗାଡ଼ିର ବ୍ୟବସ୍ଥା ନାହିଁ । ତେବେ କୋଉଠି ଆଶ୍ରୟ ନେବେ ?

ହଠାତ୍ ତାଙ୍କ ଦେହ ଉପରେ ଗୋଟାଏ ଟର୍ଚ୍ଚ ଆଲୁଅ ପଡ଼ିଲା । ତା'ପରେ ସେଇ ଟର୍ଚ୍ଚର ଆଲୋକ ରଶ୍ମିଟି ତାଙ୍କ ଦେହର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗକୁ ଘୂରି ଆସି ମୁହଁରେ ସ୍ଥିର ହୋଇଗଲା ଏବଂ ଲିଭିଗଲା ଓ ପୁଣି ଜଳିଲା । ଏଥର ମହାଦେବ ବାବୁ ନିଜ ଟର୍ଚ୍ଚ ଜାଳିଲେ । ଟର୍ଚ୍ଚ ଆଲୁଅରେ ଦେଖିଲେ ଦୂରରେ ଜଣେ ପୂର୍ଣ୍ଣଯୌବନା ସ୍ତ୍ରୀ ଛିଡ଼ା ହୋଇଛି । ଶ୍ୟାମାଙ୍ଗୀ ଅଥଚ ସୁନ୍ଦରୀ । ଯୁବତୀ... ଯୁବତୀ । ମହାଦେବ ବାବୁ ଟର୍ଚ୍ଚ ବନ୍ଦ କଲେ ଓ ଅନ୍ୟ ଆଡ଼କୁ ମୁହାଁଇଲେ । ବର୍ଷା ତଥାପି କମି ନଥାଏ ।

– ବାବୁ, ବର୍ଷାରେ ନ ଭିଜି ଚାଲିଆସ ମୋ କୁଡ଼ିଆକୁ ।

ପରିଚିତ କଣ୍ଠର ମଧୁର ନିର୍ଦ୍ଦେଶ ! ଆଃ କି ଅନ୍ତରଙ୍ଗ ଅନୁରୋଧ ! ମହାଦେବ ବାବୁ ଫେରି ଚାହିଁଲେ ଏଥର । ସାଢ଼େ ତିନିଫୁଟ ତଫାତ୍‌ରେ ଛିଡ଼ା ହୋଇଛି ଯୁବତୀଟି, ହାତରେ ଛିଣ୍ଡା-କଣା ଛତାଟିଏ ଧରି ।

ବର୍ଷା ଛାଡ଼ିଲେ ଯୁଆଡ଼େ ଯିବ ତ ଯିବ, ଏଇନେ ଚାଲିଆସ । ନିହାତି ଅବଜ୍ଞା କରାଯାଇପାରେନି ଯୁବତୀଟିର ଏଇ ଅନ୍ତରଙ୍ଗ ଆମନ୍ତ୍ରଣକୁ । ଅଗତ୍ୟା ଯୁବତୀକୁ ଅନୁସରଣ କଲେ ମହାଦେବ ବାବୁ ।

ଦେଖ ବାବୁ, ଗୋଡ଼ରେ ଜୋତା, ରାସ୍ତା କାଦୁଅ, ଦେଖିକରି ଆସିବ । ସାବଧାନ କରାଇଦେଲା ଯୁବତୀଟି । ପାଦ ଚିପି ଚିପି ମହାଦେବ ବାବୁ ଆଗେଇଲେ କୁଡ଼ିଆ ଆଡ଼କୁ ।

ବର୍ଷା ତଥାପି ସରିନି । ଗ୍ରାମ୍ୟ ରାସ୍ତା । ଛତା ଗୋଟିଏ, ଅନ୍ଧାର ରାତି । ଅନେକ ସଚେତନତା ସତ୍ତ୍ୱେ ମହାଦେବ ବାବୁଙ୍କ ଦେହ ଲାଗିଯାଉଛି ଯୁବତୀର ବର୍ଷା ଭିଜା ଦେହ ସହ । ଗୋଟିଏ ଛତା । ଦି'ଜଣ ମଣିଷ । ବର୍ଷା ପଡୁଚି । ରାସ୍ତା ପିଚ୍ଛିଳ । ଗୋଟିଏ ହାତରେ ଛତା, ଅନ୍ୟ ହାତରେ ପ୍ରାୟ ଆଣ୍ଠୁ ପର୍ଯ୍ୟନ୍ତ ଉଠାଇ ଆଣିଥିବା ଶାଢ଼ି କାନିକୁ ଧରି ଯୁବତୀଟି ସହ ମହାଦେବ ବାବୁ... ପାଦ ଖସି କଚଡ଼ାଏ ଖାଇଲେ ଗୋଟେ ରୋମାଣ୍ଟିକ୍ ଦୃଶ୍ୟ ହେବ ଯାହା... ଅତଏବ ମହାଦେବ ବାବୁଙ୍କର ଖୁବ୍ ଅସ୍ୱସ୍ତି...

କୁଡ଼ିଆ ଭିତରେ ଦୁହେଁ– ମହାଦେବ ବାବୁ ଓ ସେଇ ଯୁବତୀ ଜଣକ । କୁଡ଼ିଆ ଭିତରେ ଅନ୍ଧାର– ଲଣ୍ଠନ ଜାଳିଲା ଏଥର ଯୁବତୀଟି ଓ ମହାଦେବ ବାବୁଙ୍କୁ ମନେ ହେଲା କୁଡ଼ିଆ ଭିତରେ ଯୁବତୀ ହିଁ ଏକା । କୁଡ଼ିଆ ଭିତରେ ଭିଜା ମାଟିର ଗନ୍ଧ । ବର୍ଷା ତ ତଥାପି କମିନି । ଟିଣ ଦର୍ଜାଟି ଆଉଜା ହୋଇଛି ।

ଏଇଠି ବସ ବାବୁ । ଦେହରୁ ଓଦା ଲୁଗାଟା ଖୋଲି ପକାଅ । ପାଖରେ ମୁଣ୍ଡ ପୋଛିବା ପାଇଁ କିଛି ଅଛି ? ମହାଦେବ ବାବୁ ମୁଣ୍ଡ ହଲେଇ ସଙ୍କେତ ଦେଲେ– ହଁ ।

ତେବେ ସେଇଥିରେ ମୁଣ୍ଡ ଭଲ କରି ପୋଛି ପକାଅ । ସହରୀ ବାବୁ ତ, ଥଣ୍ଡା ଧରିବାକୁ କେତେ ସମୟ ।

ଯୁବତୀଟି ଏତିକି କହି ଅନ୍ୟ ବଖରା ଆଡ଼କୁ ଚାଲିଗଲା । ମହାଦେବ ବାବୁ ତଳେ ବସିଲେ । ଆତିଥେୟତା ଯେତିକି ସହଜ ସେତିକି ଆନ୍ତରିକ । କୋଡ଼ିଏ କି ବାଇଶି ବର୍ଷ ହେବ ଯୁବତୀକୁ । ଅବିବାହିତା ନା ବିବାହିତା ଠିକ୍ ଠଉରାଇ ହେଉନି । ମଥାରେ ସିନ୍ଦୂର ନାହିଁ, ହାତରେ ଶଙ୍ଖା ଅଛି । ଦେହରେ ହଳଦୀ ଡୋରା ଶାଢ଼ି ... ବିଧବା ବୋଲି ମନେ ହେଉନି । ହୁଏତ କେଉଁ ନୋଳିଆର ସ୍ତ୍ରୀ... ସ୍ୱାମୀ ତା'ର ଯାଇଥାଇପାରେ ସମୁଦ୍ରକୁ !!

ପ୍ରଶ୍ନ- ପୁଣି ସଚେତନ ହେଲେ ଦ୍ୱନ୍ଦ୍ୱରେ ପଡ଼ିଥିବା ମହାଦେବ ବାବୁ ଏବଂ ଉତ୍ତର ଦେଲେ ନା... ମାନେ ଗାଁରେ ଲୋକମାନେ କିପରି ରହୁଛନ୍ତି ଦେଖିବାକୁ ଆସିଥିଲି ।

– ଓ, ସରକାରୀ ଲୋକ ତେବେ !!

– ନା, ସରକାରଙ୍କ ଲୋକ କ'ଣ ଏଠାକୁ ଆସନ୍ତି ?

– ଥରେ ଦିଥର ଆସିଥିଲେ । ଏବେ ମଝିରେ ମଝିରେ ଆସନ୍ତି । ଆମ ଭଲ ପାଇଁ ସେମାନଙ୍କର ତ ନିଦ ନାହିଁ ।

ମୁହଁରେ ହସ ନଥିଲା । ତଥାପି କଥାଗୁଡ଼ିକରେ ତାଚ୍ଛଲ୍ୟ ଭାବ ଭରି ରହିଥିଲା । ମହାଦେବ ବାବୁ କହିଲେ– ମୁଁ ଖବର କାଗଜର ଲୋକ ।

– କେଉଁ କାଗଜର ଲୋକ ବାବୁ ?? ପ୍ରଶ୍ନଟା ନିହାତି ଅପ୍ରତ୍ୟାଶିତ ।

– କାହିଁକି ? ମହାଦେବ ବାବୁ ପଚାରିଲେ ।

– ସବୁ କାଗଜ ତ ସବୁକଥା ଲେଖନ୍ତିନି । ସରକାରଙ୍କ ସପକ୍ଷରେ ବି ମିଛକୁ ସତ କରି ଲେଖନ୍ତି ।

– ନାଇଁ ନାଇଁ ଆମେ ନିରପେକ୍ଷ... ।

ଯୁବତୀଟି ଖୁସି ହେଲା ପରି ଜଣାଗଲା ଏଥର ଏବଂ କହିଲା– ଯା' ଦେଖିବାକୁ ଆସିଥିଲ ଦେଖିଲ ତ ? ଭଲକରି ଟିକିଏ ଖବର କାଗଜରେ ଛାପିବ ।

– ନା, ଦେଖିବା ସମ୍ଭବ ହେଲାନି ବର୍ଷା ଯୋଗୁ । ରାତିଟା କେମିତି କଟେଇବି ସେଇ କଥା ଭାବୁଛି ।

ହଠାତ୍ ଯୁବତୀଟିର ଆଖି ଯୋଡ଼ିକ ଉଜ୍ଜ୍ୱଳ ହୋଇଉଠିଲା । ସେ ହାତଯୋଡ଼ି କହିଲା– ବାବୁ ଆଉ କୁଆଡ଼େ ଯାଅନି । ଏଇଠି ରାତିଟା କଟେଇ ଦିଅ । ଗୋଟେ ଉପକାର କରିବାକୁ ପଡ଼ିବ । ପାରିବ ତ ?

– କି ଉପକାର ? ମହାଦେବ ବାବୁ ଆତ୍ମସ୍ଥ ହେବା ପାଇଁ ଚେଷ୍ଟା କଲେ ।

– ବାବୁ, ସେପଟ ବଖରାରେ ମୋ ଶ୍ୱଶୁର ଶୋଇଛି । ସେ ତମକୁ ପାଇଲେ ଆନନ୍ଦରେ ଫାଟି ପଡ଼ିବ । ଛାତିରେ ଚାପି ଧରିବ, ନିଜ ପୁଅ ଭାବି ବକିଯିବ । ଏଇଟା ମୋର ଜୀବନର ଭିକ୍ଷା ।

ଆଶ୍ଚର୍ଯ୍ୟ ଓ ଅଭିଭୂତ ମହାଦେବ ବାବୁ କିଛି ପଚାରିବା ପୂର୍ବରୁ ଗୋଟାଏ ଭାରି ଗଳାରେ ସ୍ୱର ଶୁଣାଗଲା– ସତୀ, ଲୋ ସତୀ, ରାତି କେତେ... ମାଟି ଭିଜା ଭିଜା ଲାଗେ... ବାହାରେ ବର୍ଷା ବୋଧେ ।

– ବାବୁ ଏଇଠି ବସି ଥାଅ । ମୁଁ ଶ୍ୱଶୁର କଥା ଟିକେ ବୁଝି ଆସେ । ହଁ ଦେହରୁ ଗଞ୍ଜିଟା ବି ଖୋଲିଦିଅ । ନହେଲେ ସବୁ ଗୋଳମାଳ ହୋଇଯିବ । ଶୀଘ୍ର ଖୋଲ ବାବୁ...

ମହାଦେବ ବାବୁ ଲଣ୍ଠନର ମିଞ୍ଜି ମିଞ୍ଜି ଆଲୁଅର ଫିଙ୍ଗୁଳା ଦେହକୁ ନେଇ ବସି ରହିଲେ । ସତୀ ନାମ୍ନୀ ଯୁବତୀଟି ଅନ୍ୟ ବଖରା ଆଡ଼କୁ ଚାଲିଗଲା । କିଛି ସମୟ ପରେ...

ସତୁରୀ ବର୍ଷରୁ ଅଧିକ ବୃଦ୍ଧଟିଏ... ମଇଳା ଧୋତିଟିଏ ପିନ୍ଧିଛି । ଦେହସାରା ବସନ୍ତର ଚେକା ଚେକା ଦାଗ– ଆଖିକୁ ଦିଶୁନି, କାନକୁ ବି ଶୁଭେନି ଭଲ, ସିଏ ହିଁ ସତୀର ଶ୍ୱଶୁର ।

–ହଇରେ କାଶିଆ, ଏତେ ଦିନକେ ମନେ ପଡ଼ିଲା ବାପା କଥା ? ନିଜ ଭାର୍ଯ୍ୟା କଥା ବି ମନେପଡୁନି... କି ଗେରସ୍ତ ତୁ ?

– ଆରେ ଆରେ ତୁ ପରା ସମୁଦ୍ରରୁ ଆଇଲୁ... ସମୁଦ୍ରର ଗନ୍ଧ କାଇଁ ? ତୋ ଦେହରେ ଲୁଣିଆ ସ୍ୱାଦ କାଇଁ ? ଓଃ ବୁଝିଲି, ସତୀ ପାଇଁ ଲୁଗା କିଣିବାକୁ ସହର ଯାଇଥିଲୁ । ଯା, ଯା, ଖାଇ ଶୋଇ ପଡ଼ିବୁ..... ସତୀ, ଲୋ ସତୀ, ଭାଆରି ଭୋକ... ରାତି ଢେର୍ ହେଲାଣି ଗଣ୍ଡେ ଖାଇବାକୁ ଦେ ମତେ ।

ସତୀ ଏଥର ତା' ଶ୍ୱଶୁରକୁ ଧରି ଧରି ଅନ୍ୟ ବଖରାକୁ ନେଇଗଲା ଓ ଫେରିଆସିଲା ।

ତୁମ ଶ୍ୱଶୁର ଶୋଇଛି ? ମହାଦେବ ବାବୁ ପଚାରିଲେ ।

ହଁ ।

ଏ ଅଭିନୟ ତୁମକୁ ସବୁବେଳେ କରିବାକୁ ପଡ଼ିଥାଏ ?

ହଁ ।

ତୁମ ସ୍ୱାମୀ ତୁମକୁ ଛାଡ଼ି ଚାଲିଯାଇଛି ?

ହଁ ।

କେତେଦିନ ହେଲାଣି ?

ଦୁଇ ବର୍ଷ ।

କାହିଁକି ଛାଡ଼ି ଚାଲିଗଲା ?

ସମୁଦ୍ର ଯା'କୁ ଟାଣି ନେଇଛି ନିଜ ଆଡ଼କୁ ସେ କି ଆଉ ଫେରିବ ବାବୁ ?

ମହାଦେବ ବାବୁ ଦୀର୍ଘଶ୍ୱାସ ଛାଡ଼ିଲେ । ବର୍ଷା ପଡୁନି ଆଉ । ରାତି ବଢ଼ିଛି ଢେର୍ ।

ସମୟ ପ୍ରାୟ ରାତି ବାଆର । ଗାଁ ରାତି । ନିସ୍ତବ୍ଧ, ନିଶୂନ୍ । ଆଖି ଯୋଡ଼ିକ ଉପରେ ଡାହାଣ ବାହୁ– ମହାଦେବ ବାବୁ ଶୋଇବାକୁ ଚେଷ୍ଟା କରୁଛନ୍ତି । ହଠାତ୍ ସେ ଦେଖିଲେ ଗୋଟିଏ ଛାୟାମୂର୍ତ୍ତି ।

ପାଦ ଚିପି ଚିପି କେହି ଜଣେ ତା' ଆଡ଼କୁ ଆସିଲା... ସତୀ !! ମହାଦେବ ବାବୁଙ୍କର ଦମ୍ ବନ୍ଦ ହୋଇଯିବାର ଉପକ୍ରମ ।

ଏ କ'ଣ ସତୀ, ତୁମେ ଏଠି କାହିଁକି ? ମହାଦେବ ବାବୁ ଉଠି ବସିଲେ । ଛାତିରେ ଛନକା ପଶିଲା ସତୀର । ଚମକି ଯାଇ ଉତ୍ତର ଦେଲା– କ'ଣ କରିବି ବାବୁ ! ଆର ବଖରାରେ ଶୋଇବି ଭାବିଲି । ହେଲେ ଶ୍ୱଶୁର ସନ୍ଦେହ କରିବ ଗେରସ୍ତ ପାଖରେ ନ ଶୋଇ ସତୀ ଏଠି କାହିଁକି ? ସେତେବେଳେ ମୁଁ କି ଜବାବ ଦେବି ? ଦୁଇବର୍ଷ ଧରି ଯେଉଁ ଅଭିନୟ କରିଆସୁଛି, ସବୁ ନଷ୍ଟ ହୋଇଯିବ ଭାବି ଏ ବଖରାକୁ ଚାଲି ଆସିଲି ।

ଏଇ ଶ୍ୱଶୁରୁ ଦିନେ ଶାଶୂର ଅନିଚ୍ଛା ସତ୍ତ୍ୱେ ଗୋଟିଏ ଜିଦ୍‌ରେ ବୋହୂ କରି ଆଣିଥିଲେ ସତୀକୁ । ବିବାହର ଗୋଟେ ବର୍ଷ ନ ପୁରୁଣୁ ଶାଶୂ ମଲା । ତା'ପରେ ଶ୍ୱଶୁରୁକୁ ବସନ୍ତ ହେଲା । ସେ ବହୁତ କଷ୍ଟ ପାଇଲା । ଏବେ ଯଦି ଶ୍ୱଶୁରକୁ ତା' ପୁଅର ମୃତ୍ୟୁ ଖବର ଜଣାଇ ଦିଆଯାଏ, ସେ କେବେ ବି ସତୀକୁ କ୍ଷମା କରିବ ନାହିଁ । ଅଲକ୍ଷଣୀ କହି ଗାଳିଦେବ ନିଶ୍ଚୟ । ସତୀ ପାଇଁ ତା' ସଂସାର ଉଜୁଡ଼ିଗଲା ବୋଲି ପାଟି କରିବ । ସତୀର ତେଣୁ ଶପଥ, ବଂଚିଥିବା ପର୍ଯ୍ୟନ୍ତ ସେ ତା' ଶ୍ୱଶୁରକୁ ସ୍ୱାମୀର ମୃତ୍ୟୁ ଖବର ଦେବନି । ଏମିତି ଅଭିନୟ କରି ଚାଲିଥିବ ।

ପଚିଶି ବର୍ଷର ଜଣେ ଶିକ୍ଷିତ ସହରୀ ପୁରୁଷ । ଛୋଟ କୁଡ଼ିଆ ଘରେ କୋଡ଼ିଏ ବାଇଶି ବର୍ଷର ପୂର୍ଣ୍ଣ ଯୌବନା ଗ୍ରାମ୍ୟ ବଧୂ– ବ୍ୟବଧାନ ମାତ୍ର ଦି ହାତ; ରାତ୍ରିଯାପନ ବାସ୍ତବିକ ମହାଦେବ ବାବୁଙ୍କ ସାମ୍ବାଦିକ ଜୀବନର ଏକ ଅବିସ୍ମରଣୀୟ ଘଟଣା ହିଁ । ଏକ ବାସ୍ତବ ଜୀବନ କଥାର ଦୁର୍ଲଭ ସଂଗ୍ରହ... ନିଛକ ସତକଥାର ଦୁଷ୍ପ୍ରାପ୍ୟ ଅନୁଭୂତି ।

ବାବୁ, ଘାବରେଇ ଯାଉଛ କାହିଁକି ? କ'ଣ ବଦନାମର ଭୟରେ ? ଏଇ ଦୁଇବର୍ଷ ଭିତରେ କୁଡ଼ିଆକୁ କେତେ କେତେ ବାବୁମାନେ ଆସିଛନ୍ତି, ଅଭିନୟ କରିଛନ୍ତି– ଦୟା କରିଛନ୍ତି ମୋତେ– ଗୋଟେ ରାତି ଦୁଇ ରାତିର ସ୍ୱାମୀ ସାଜିଛନ୍ତି ମୋର । କିଏ ବା ଦୟାର ଦାମ୍ ନେଇଛି, କିଏ ବି ନେଇନି । ଏମିତି ଲୋକ ଖୁବ୍ କମ୍ । ସହରର ଲୋକମାନେ ବେଶି ଦୟା ଦେଖାନ୍ତି । ପୁଣି ଦୟାର ଦାମ୍ ବି ଆଦାୟ କରିନିଅନ୍ତି । ସହରୀବାବୁମାନଙ୍କ ପାଇଁ ମୁଁ ଦୟାର ଉପାଦାନଟିଏ ହୋଇଯାଏ ପଛେ ମୁକ୍ତି ଚାହେଁନା ଜମା । ବାବୁ, ମୋତେ ଆଶୀର୍ବାଦ କର, ମୁଁ ଯେମିତି ମୋ ଶ୍ୱଶୁର ଆଖିରେ ବିଧବାଟିଏ ହୋଇନଯାଏ ।

ସମୟ ପାହାନ୍ତି ପ୍ରହର । ମହାଦେବ ବାବୁ ଫେରିବେ, ପ୍ରସ୍ତୁତ ହୋଇପଡ଼ିଲେ । ସତୀ ଭୂମିଷ୍ଠ ପ୍ରଣାମ କରି ସାମ୍ନାରେ ଛିଡ଼ା ହେଲା ଓ କିଛି ଖୁଚୁରା ପଇସା ମହାଦେବ ବାବୁଙ୍କ ହାତରେ ଗୁଞ୍ଜି ଦେଲା । କହିଲା, ବାବୁ ଆପଣ ଦେବତା ସମାନ, କଷ୍ଟ ଦେଲି... ଦୋଷ ଧରିବନି । ଦୟାର ଦାମ୍ ତ ଆଦାୟ କରି ନେଲନି... ଏଇ ଖୁଚୁରା ପଇସା କେତୋଟି ଫେରାଇ ଦେବନି ।

କିଛି ଯନ୍ତ୍ରଣା ଓ ଜୀବନ ଦେଖାର ଅନୁଭୂତିକୁ ଛାତିରେ ବୋହି ମହାଦେବବାବୁ ମିର୍ଜାପୁର ଗାଁରୁ ଫେରିଆସିଲେ । ଫେରିବା ଆଗରୁ ଆଉଥରେ ସତୀର ମୁହଁକୁ ଚାହିଁଥିଲେ । ଶ୍ୟାମାଙ୍ଗୀ ଅଥଚ ଖୁବ୍ ସୁନ୍ଦରୀ । ତା' ନାଁ ସତୀ । ଅକଥିତ ଯନ୍ତ୍ରଣାକୁ ନେଇ ବି ସେ ବଂଚିଛି ।



# ବର୍ଷା

## ଚିରଶ୍ରୀ ଇନ୍ଦ୍ରସିଂ

ଜୁଲାଇ ମାସରେ ସ୍କୁଲ୍ ଖୋଲେ । ମହାନ୍ତି ମାଷ୍ଟ୍ର ପାଠ ଆରମ୍ଭ କରେ ରଚନା ଲେଖା ଶିଖାଇବାରୁ । ଶ୍ରୀର୍ଷକ 'ବର୍ଷାଋତୁ' । ପ୍ରତିବର୍ଷ ।

ସେତେବେଳେ କଳାକୋଚଟ ମେଘରେ ଅଲରା ବଲରା ଆକାଶ । ତାଳଗଛ ମଥାନରେ ମଥ୍ ହେଉଥାଏ ବାଇବିତାଳ ବିଜୁଳି । ପବନ ଝୁମଉଥାଏ ଧରଣୀକୁ । ଅଧା ସବୁଜ ଅଧା ଧୂସର ପଣତକୁ ଟାଣି ଓଟାରି ଦେହ ଘୋଡ଼ଉଥାଏ ମାଟି ଓ ମନା କରି କରି ମାଗୁଥାଏ ବର୍ଷାବିନ୍ଦୁ । ଏଠି ସେଠି ମୟୂରଙ୍କ ନାଚ । ତାଙ୍କୁ ଘେରି ପନ୍ଦ୍ଲେ ପନ୍ଦ୍ଲେ ଧାଙ୍ଗଡ଼ୀ । ପୁଚ୍ଛ ନାହିଁ ବୋଲି ଛଇରେ ଊଣା ନାହିଁ । ଫଟାକି ଫୁଟିଲା ବେଳକୁ ଉପରେ ନାଚ ଥମିଯାଏ । ପୁଣି ଚାଲେ । କେଉଁ କୁହୁକିଆ ଯେମିତି ଚକ୍ଷାଣ୍ଡିଆ ଢଙ୍ଗରେ ତା'ର ସବୁଯାକ ଖେଳ ଏକା ବେଳକେ ଦେଖେଇବା ଆରମ୍ଭ କରି ଦେଇଥାଏ ।

ମୁଣ୍ଡରେ ଝାମ୍ପି ଲଗେଇ ବା ଦେହଟାକୁ ପଖିଆରେ ଘୋଡେଇ କିଏ କିଏ; କିଏ ବା ଏକବସ୍ତୀ ଦରଫୁଙ୍ଗୁଳା ଦେହରେ ଧାଉଡ଼ି ଲଗେଇ ଥାଆନ୍ତି ବିଲଆଡ଼େ । ମହାନ୍ତି ମାଷ୍ଟ୍ରଙ୍କୁ ଜୁହାର କରନ୍ତି । ଜଣା କଧାଂଟାକୁ ଆଉଥରେ ଜଣାନ୍ତି ଚାଲି ଯାଉ ଯାଉ, ''ସ୍କୁଲ ତା'ହେଲେ ଆଜି ଖୋଲିଲା ଆଜ୍ଞା ।''

ମହାନ୍ତି ମାଷ୍ଟ୍ର ପାଠପଢ଼ା ଆରମ୍ଭ କରନ୍ତି, 'ବର୍ଷାଋତୁ' ।

ମାଷ୍ଟ୍ରଙ୍କ ଘରେ ଏନ୍ତୁଡ଼ି ଜଳିନି । ସ୍ତ୍ରୀ ଦରପାଗଳୀ, ରାହାବାଳୀ । ଏଇ ଗାଁରେ ଘର କଲେଣି ପନ୍ଦର କୋଡ଼ିଏ ବର୍ଷ ହେଲାଣି । ପିଲାଯାକ ମାଷ୍ଟ୍ରର ନିଜର । ସ୍କୁଲରେ ଥିବାଯାଏ ତା'ର ହସଖୁସି, ରାଗରୁଷା, ଦୁଃଖ କଷଣ । ଘରେ ତା'ର ଆଖି ନାଇଁକି କାନ ନାଇଁ ।

ବର୍ଷାରୁ ବର୍ଷ ଆରମ୍ଭ । ସ୍କୁଲ ପଛପଟ ପାହାଡ଼ ତଳେ ସରୁ ଝର ଫିଟିଥାଏ । ହାଉଲେ ହାଉଲେ ଖେଳି ବୁଲୁଥାଏ କାଲୁଆ ପବନ । ଶାଳ ପିଆଶାଳର ଉଳୁଡ଼ା ଗମ୍ଭାରି ଘରେ ପାଣି ପଶିଯାଏ । ମାଟି ଫଟେଇ ଝରି ଆସେ ପୁଣି । ତା' ଗୋଡ଼ରେ ପାଉଁଜି ପାହୁଡ଼ ।

ଏତିକିବେଳେ ପାଠପଢ଼ା ଆରମ୍ଭ ହୁଏ । 'ବର୍ଷାଋତୁ' । 'ବର୍ଷକ ବାରମାସ ଓ ଛଅ ଋତୁ'ରୁ ନାନ୍ଦୀପାଠ । ତା'ପରେ ଆସ୍ତେ ଆସ୍ତେ ଛତୁ, ସାଧବ ବୋହୂ, ଗୁଞ୍ଜର ପୋକ, ଇନ୍ଦ୍ରଧନୁ, ଧୋବଧାଉଳୀ ବଗବଗୁଲୀ ଆଉ ନଈପାଣିରେ କଳା ମେଘରେ ବଖରା ଭର୍ତ୍ତି ହୋଇଯାଏ । ମହାନ୍ତି ମାଷ୍ଟ୍ର ହୋଇଥାଏ କବିଆଳ । କଥାରେ କଥାରେ ସ୍ୱରଦେଇ ପଦ ଯୋଡ଼ିଦିଏ । ପୁଣି ଆଉ କେତେ କବିଙ୍କ ପଦ ନିଜେ ନିଜେ ଗାଇ ଉଠେ ।

ପିଲାଏ ରଥ ଦଉଡ଼ି ଟାଣି ପକାନ୍ତି କଥାରେ କଥାରେ । ଗଣେଶ ପୂଜାରେ  କାହାର ନୂଆ ଜାମା ହେବ ଏ ବର୍ଷ- ସେ କଥା ଫୁସୁରୁ ଫାସର ହୋଇ ଗପ ହୋଇଯାଏ । ମାଳ ଗୁନ୍ଥିବାକୁ କୁଲୁରୁ କୁଲୁରୁ ହୁଅନ୍ତି ନିଜ ନିଜ ଘରର ଚାନ୍ଦ, କଇଁ, ବଉଳିଟିମାନଙ୍କ ପାଇଁ-ଗହ୍ମା ପୂନିଅଁ ଦିନ କଥା ପଢ଼ିବାରୁ ।

ସବା ଶେଷରେ ତାଳ ଛିଡ଼େ ଯାଇ 'ବରଷା କାଳ ଅଟେ ମଙ୍ଗଳକାରୀ'ରେ । ସେତିକରେ କଥା ସରେ ନାହିଁ । ସବା ଶେଷ ରୋମାଞ୍ଚକର ଉଚ୍ଛକିତ ମୁହୂର୍ତ୍ତଟି ସେତେବେଳକୁ ତଥାପି ଆସି ନଥାଏ ।

ପିଲାଏ କବିଆଳର ବର୍ଷା ବର୍ଣ୍ଣନା ବୁଝନ୍ତୁ ନ ବୁଝନ୍ତୁ, ଆରଟା କିନ୍ତୁ ଭଲ ବୁଝନ୍ତି । ବୁଝିବେନି କେମିତି ? ବେତଛୁଆଁଟି ! ସେଦିନ ମାଷ୍ଟ୍ରଙ୍କର ଯାହାକୁ ସବୁଠାରୁ ବେଶି ଶ୍ରଦ୍ଧା, ତା'ରି ପିଠିରେ ପାତଳ ପାହାରଟିଏ ଦିଅନ୍ତି ବିନା ଦୋଷରେ । ବର୍ଷର ପହିଲା ବେତ ପାହାର । ମିଛି ମିଛିକା ।

ବର୍ଷକରେ ଏଇ ଗୋଟିକ ବେତ ପାହାର ବସେ; ଯାହାପାଇଁ ଉଭୟ ପିଲା ଓ ମାଷ୍ଟ୍ର ହସି ହସି ଗଡ଼ି ଯାଆନ୍ତି । ବେତଖିଆ ପିଲାଟି ଆପେ ଘୋଷିତ ହୋଇଯାଏ ଶ୍ରେଣୀର ବଡ଼ଚାଟ ବୋଲି ।

ସେବର୍ଷ କିନ୍ତୁ ବର୍ଷାଋତୁ ଆସିଲା କେମିତି ଅନିଚ୍ଛାରେ ଅନିଚ୍ଛାରେ । ସ୍କୁଲ ଖୋଲିବା ଦିନକୁ କେତେ ଅସରା ବର୍ଷି ସାରିଥିଲେ ବି, ଧୂଳି ଧୋଇ ନଥିଲା ପବନରୁ । ଓଦାମାଟିରେ ଚକଡ଼ାଏ ଚକଡାଏ ନେଳିଘାସ । ତା' ଉପରେ ସାଧବ ବୋହୂ ନାହିଁ । ଚାଷୀଯାକ ବିହନ ବୁଣିବା ହାତରୁ ବିହନ ଛାଡୁ ନଥାନ୍ତି । ଗଜା ମରୁଡ଼ି ହୋଇଯିବ । ଆଉଥରେ ଧାନ ତଳି କରି ରୋଇବାକୁ ପଡ଼ିବ । ଏଇଭଳି ଶୁଣାଯାଉଥାଏ ଗାଁ' ଗାଁରେ ।

ମହାନ୍ତି ମାଷ୍ଟ୍ର ବଡ଼ ଅସନ୍ତୋଷରେ 'ବର୍ଷାଋତୁ' ପଢ଼େଇଲା । ଆକାଶରେ ମେଘ ନଥିଲା, ବିଜୁଳି ନଥିଲା । ବର୍ଷା ବରଣ ପାଇଁ ଅବଶ୍ୟ ସବୁ ବର୍ଷ ପରି କଖାରୁ ଫୁଲର ସୁନାଦୀପ ଜଳୁଥିଲା ଗାଁର ପିଢ଼ା ଉପରେ । ରୂପା ଦୀପ ଜାଳୁଥିଲା କାଞ୍ଚନ ତା'ର ଫୁଲରେ ଫୁଲରେ । ସଞ୍ଜବେଳକୁ କିନ୍ତୁ ଫୁଲର ପାଖୁଡ଼ା ସବୁ ପୋଡ଼ି ଯାଉଥିଲା । ବେଙ୍ଗର ହୁଳହୁଳି ଥମିଯାଇଥିଲା ପୂରା ।

ତା'ପରେ ପରେ ଠିକ୍ ବର୍ଷା ହେଲା ଝର ଲଗାଇ ଦେଢ଼ମାସ । ଲୋକେ ଆଶା କଲେ, ବାରଣା, ଅତି ନିକୁଛାରେ ଆଠଣା ଅମଳ ପାଇଯିବେ । କିନ୍ତୁ ଏ ଆଶାର ଉଡ଼ାଣ ଆସିଥିଲା ଝଡ଼ି ପୋକର ଡେଣାରେ । ଧାନ ଠିକ୍ କ୍ଷୀର ଢୋକିବା ବେଳକୁ ମେଘର ଥନ ଶୁଖିଗଲାଣି । ଲୋକେ ମୁଣ୍ଡରେ ହାତ ଦେଇ ବସିଗଲେ । ପାଣି କାଇଁ ? କାଇଁ ପାଣି ? ?

ପାହାଡ଼ ମୁଳକର ପଥୁରିଆ କଙ୍କମାଟିକୁ ବର୍ଷା ବ୍ୟତୀତ ଆଉ କିଏ ଅବା ଓଦା କରିପାରିବ । କ୍ଷେତ ସବୁକୁ ଚାହିଁ ହେଉନି । ସେଠି ସୁଆଁ ଭର୍ତ୍ତି । ମାଇପିଏ ସୁଆଁ ଝାଡ଼ିବାକୁ ଟୋକେଇ ବାଉଁଶିଆ ଧରି ବାହାରି ପଡ଼ିଲେ । ଧାନଗଛ ଠିଆ ଠିଆ ଜଳି ଯାଉଥାଏ ସେଇ ପାଖରେ ।

ତଥାପି ଯେହେତୁ ଛୋଟ ଧାନସବୁ ବି ଲଗେଇଥିଲେ ଲୋକେ, ଖାଲ ବିଲରେ ଧାନ କିଛି କିଛି ମିଳିଗଲା । କାହା ଘରେ କ'ଣ ପୁରୁଣା ଧାନ ଥିଲା । ମାଣ୍ଡିଆ କିଛି ବି ମିଳିଗଲା । ଚଳିଗଲା । ଲୋକେ ଟାଣିଟୁଣି ହୋଇ ସଞ୍ଚି ରଖିଲେ ବିହନ ଗଣ୍ଡେ ଗଣ୍ଡେ । ବିହନ ଓଳିଆ ଭିତରେ ବାନ୍ଧି ରଖିଲେ ମେଘ ଘଡ଼ଘଡ଼ି, ପବନ ବିଜୁଳି ଏବଂ ଚାରିମେଘର ବର୍ଷା । ଅଧାଭର୍ତ୍ତି ପେଟର ନିଦରେ ସ୍ୱପ୍ନ ଦେଖିଲେ ଭରା କ୍ଷେତର, ସୁନେଲି ଧାନକେଣ୍ଡାର ।

ମହାନ୍ତି ମାଷ୍ଟ୍ର ବି କଥାରେ କଥାରେ ପିଲାମାନଙ୍କୁ ପ୍ରବୋଧନା ଦେବାକୁ ଲାଗିଲା ଯେ-ଖରା ପରେ ବର୍ଷା ହୁଏ ।

''ନିଦାଘ ସମୟ ହେଲେ ହେଁ ଦାରୁଣ ଅଟେ ଜଗତର ମିତ୍ର... ।' ଏହା ପରେ ଦେଖିବ ପ୍ରଚୁର ବର୍ଷା ହେବ ।''

ନିଜକୁ ନିଜେ ବି ସାନ୍ତ୍ୱନା ଦେବାକୁ ଲାଗିଥାଏ ମାଷ୍ଟ୍ର । ପ୍ରଲମ୍ବିତ ଗ୍ରୀଷ୍ମ ପରେ ଆସିବ ଶ୍ୟାମତମାଳ ବର୍ଷା । ଦୀର୍ଘ ବିରହ ଅନ୍ତେ ବଡ଼ ମଧୁମୟ ହେବ ବର୍ଷା ମିଳନ । ଏ ବର୍ଷ ଉତ୍ତୀର୍ଣ୍ଣ

ହୋଇ ଯାଇଥିବା ଏଇ ପିଲାଦଳଙ୍କୁ ଉପର ଶ୍ରେଣୀରୁ ଡାକି ଆଣି, ହେଡ ପଣ୍ଡିତଙ୍କୁ କହି, ସେ ଆଉ ଥରେ ପଢ଼େଇଦେବ ତାଙ୍କୁ 'ବର୍ଷାଋତୁ' ।

କିନ୍ତୁ ସ୍କୁଲ ଖୋଲିବା ଦିନକୁ ଲମ୍ବା ଗ୍ରୀଷ୍ମଛୁଟି ପରେ, ବର୍ଷା କାଇଁ ? ଗାଆଁ ଗାଆଁରେ ହାହାକାର । ଲୋକେ କହିଲେଣି ଖାଇବାକୁ ତ ନାହିଁ ଘରେ । ଇସ୍କୁଲ ଯାଇ କ'ଣ ହେବ । ଗାଁ ଦାଣ୍ଡରେ କଥା ପଡ଼ିଲାଣି- ଆଗକୁ ଯଦି ବର୍ଷା ନହୁଏ ତେବେ କିଏ କୁଆଡ଼େ ପର ରାଇଜ ଯିବେ କାମ କରିବାକୁ, ବଣ ଉଜୁଡ଼ି ସାରିଛି ଗଲା ପନ୍ଦରଟା ବର୍ଷରେ ଧୀରେ ଧୀରେ । ସେଠା ମାଟି ଖୋଳିଲେ କନ୍ଦା ବାହାରିବାର ନାହିଁ ଆଉ । ସରକାର ଦି'ବର୍ଷ ତଳେ ପଟାଶ ଆଉ ଆକାଶିଆ ଗଛ ଲଗେଇଥିଲେ କିଛି କିଛି । ଡେଙ୍ଗା ଡେଙ୍ଗା ହୋଇ ସେଗୁଡ଼ାକ ବଢ଼ି ଯାଇଛନ୍ତି ଲମ୍ବାରେ ଖାଲି । ହେଲେ କି ଲାଭ । ଏ ଗଛର ପତ୍ର ତ କଞ୍ଚା ଖାଇ ହେବନି କି ଶାଗ ହୋଇ ପାରିବନି ।

ମହାନ୍ତି ମାଷ୍ଟ୍ର ଘରଟି ଖୋଲି ଗୁମ୍ ମାରି ବସି ରହିଲା । ଗରମକୁ ମୁଣ୍ଡ ପାଗଳୀ ସ୍ତ୍ରୀର ଜଞ୍ଜାଳ ଓ ଅତ୍ୟାଚାର ବଢ଼ି ଚାଲିଛି । ବଜାର ଦର ବଢ଼ି ଚାଲିଛି ଲଗାତର । ତେଣୁ ତା'ର ଔଷଧ କିଣା ହୋଇ ପାରୁନି ଠିକ୍ ଠିକ୍ ।

ସାମ୍ନାରେ ପିଲା କେତୋଟି ବଡ଼ ନିସ୍ତେଜ । ଖୁଜୁବୁଜୁ ହେବାକୁ ଦୁଷ୍ଟାମି କରିବାକୁ ବଳ ନାହିଁ ଦେହରେ । ଶ୍ରେଣୀରେ ଉପସ୍ଥାନ ଅଧା କମି ଯାଇଛି । ଇଏ ଏଣିକି ଆହୁରି କମି କମି ଚାଲିବ ଯଦି ବର୍ଷା ନହୁଏ ।

ଏଇ ପିଲାଙ୍କୁ ନେଇ କି ବେତ ଛୁଆଁ, କି କବି ପଣ । ଏମାନଙ୍କ ଭିତରୁ ତ ଅଧା ପିଲା ସକାଳୁ ନଖାଇ ଆସିଥିବେ ।

ଝରକାବାଟେ ବାହାର ଦିଶୁଥାଏ । ପାହାଡ଼ ସାରା ଖାଇ । ଗଛର ମୂଳ ଚେର ଖଟେଇ ହେଉଛନ୍ତି ଦାନ୍ତ ଦେଖେଇ । ଗୋଟେ ପଟାଶଗଛ ମୂଳେ ପଡ଼ିଛି ଗୋଟେ ମଲା ମୟୂର । ଧଳା ରୁମାଲରେ ମୁହଁ ଘୋଡେଇ କୁନି କୁନି ମେଘ ଖଣ୍ଡମାନ ଏ ମୁଲକ ପାରି ହୋଇ ଦୂର ଦେଶ ଆଡ଼େ ଧାଇଁ ପଳଉଛନ୍ତି ।

ଘର ଭିତର ବି ଦିଶୁଥାଏ । ପିଲାଟିମାନେ ବସିଛନ୍ତି ମୁହଁ ଶୁଖେଇ । ଖଙ୍କାଳ ପେଟ । କଙ୍କାଳସାର ଦେହ । ଏ ପିଲାସବୁ ପାଠ ପଢ଼ିବାକୁ ଆସିଛନ୍ତି ନା ଘରେ ଭୋକରେ ପାଟିତୁଣ୍ଡ, କନ୍ଦାକଟା କରିବେ ବୋଲି ଏଠିକୁ ପଠେଇ ଦେଇଛନ୍ତି ମା'ମାନେ ।

ହେଡ ପଣ୍ଡିତ ବୁଲୁ ବୁଲୁ ଚାଲି ଆସିଲେ ହଠାତ୍ ଏମିତି, ''କ'ଣ ମହାନ୍ତିବାବୁ ବସିଛନ୍ତି ଚୁପ୍‌ଚାପ୍ ।''

ମହାନ୍ତି ମାଷ୍ଟ୍ର ଠିଆ ହୋଇ ପଡ଼ିଲେ ଝାଡ଼ିଝୁଡ଼ି ହୋଇ, ''ହଁ ଆଜ୍ଞା ପାଠପଢ଼ା ଆରମ୍ଭ କରିଦେବି ତ ଏ ଲାଗେ ଭାବୁଥିଲି ।'' ହେଡପଣ୍ଡିତ ଚାଲିଗଲେ ସେ ଜାଗାରୁ ।

ପାଠପଢ଼ା କେଉଁଠୁ ଆରମ୍ଭ ହେବ ଏହାରି ଦ୍ୱନ୍ଦ୍ୱରେ ଘାରି ହୋଇ ହୋଇ କେତେବେଳେ ଆରମ୍ଭ ହୋଇଗଲା, ସେଇ ରଚନା ଲେଖା ଶିଖାଇବାରୁ । ଶୀର୍ଷକ 'ବର୍ଷାଋତୁ' । ପନ୍ଦର ସତର ବର୍ଷର ଅଭ୍ୟାସଟା ହିଁ ଜିତିଗଲା । ହେଲେ ମହାନ୍ତି ମାଷ୍ଟ୍ର କେବଳ ମାଷ୍ଟ୍ର ହୋଇ ଆରମ୍ଭ କଲା । କବିଆଳ ହୋଇ ପାରିଲାନି । ଶବ୍ଦକୁ ଶବ୍ଦ ପଦକୁ ପଦ ଆଉ ଯୋଡ଼ି ପାରିଲାନି ନିଜେ ନିଜେ । ଅଲଗା କବିଙ୍କ ପଦ ବି ତା'ର ମନେ ପଡ଼ିଲାନି ଏତେ ଭଲରେ ।

ପିଲାଟିମାନେ ବସି ଥାଆନ୍ତି ମାଟି ପିତୁଳା ପରି । ବାହାରେ ତାତିଲା ପବନ ଆକାଶିଆ ଗଛ ଡାଳରୁ ଓହ୍ଲେଇ ଆସି ଫୁଲେଇ ଦେଉଥାଏ ମଲା ମୟୂରର ନୁଖୁରା ସେମେଟା ପର ତା'ର ସରୁ ସରୁ ମୁନିଆଁ ନଖ ଗଳେଇ ।

କିଏ ଝିଅଟାଏ ଠିଆ ହୋଇଗଲାଣି ପଛ ଧାଡ଼ିରୁ । କହୁଛି- ବର୍ଷାଋତୁ ନାହିଁ ମାଷ୍ଟ୍ରେ । ମାଷ୍ଟ୍ର ଆଖିରେ ଚଷମା ଦେଲା, ''କିଏ ପଦୀ ? ଦ୍ରୌପଦୀ ??''

ଶ୍ରେଣୀଟା ଯାକର ପିଲା ପଛକୁ ବୁଲି ଚାହିଁଲେ । କାହିଁ, କିଏ ଦ୍ରୌପଦୀ । କାହାକୁ ଡାକିଲେ ମାଷ୍ଟ୍ରେ ।

ଚଷମା କାଢ଼ି ରଖି ଦେଲା ମାଷ୍ଟ୍ର ଟେବୁଲ ଉପରେ । ନା, ଦ୍ରୌପଦୀ ନୁହେଁ, ଗଛ ଡାଳର ଛାଇ । ଦ୍ରୌପଦୀ ଭଲା ଆସିବ କାହୁଁ ? ସେ ତ ଏଇ ସ୍କୁଲକୁ ପଢ଼ିବାକୁ ଆସିଥିଲା ପନ୍ଦର ସତର ବର୍ଷ ତଳେ, ମାତ୍ର ଗୋଟିଏ ଦିନ ପାଇଁ । ହଠାତ୍ ସିଏ ବି କେମିତି ମନେ ପକେଇ ପାରିଲେ ଦ୍ରୌପଦୀକୁ ଭାବି ତାଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା ।

କିନ୍ତୁ ଦ୍ରୌପଦୀ ଯାଇ ପୁଣି କେଉଁଠି ପଢ଼ିଲା କି ନାହିଁ ? ତା'ବାପ ତ କହିଗଲା, 'ଦୁଃଖୀ ଅଭାବୀ ଘରର ମାଇପି ଝିଅ ବେଶି ପାଠ ପଢ଼ିବ ନାଇଁ । ଦରପାଠୁଆ ହେଇ ମୂଲ ଲାଗିବାକୁ ମଙ୍ଗିବ ନାଇଁ । ଥାଉ, ପାଠ କ'ଣ ହେବ ।'' ଶୁଣିଲା ନାହିଁ ଯେତେ କହିଲେ ।

ମାଷ୍ଟ୍ର ମୁଣ୍ଡ ନୁଆଇଁ ଦେଲା ତଳକୁ । ଯେମିତି ତା' ମୁଣ୍ଡ ଉପରେ ତା' ସହିବା ସୀମା ସେପଟ ଓଜନର ଗୋଟେ ପୁଟୁଳି ଆଣି କିଏ ନଦିଦେଲା । ଆଜି ଯଦି ଫେରି ଆସନ୍ତା ଦ୍ରୌପଦୀ । ଯଦି ଫେରି ଆସନ୍ତା ! ତା' ଆଗରେ ମାନି ଯାଆନ୍ତା ମହାନ୍ତି ମାଷ୍ଟ୍ର, ''ହଁ ମା, ଖରା ପରେ ବର୍ଷା ବି ହୁଏନି । ଖରା ପରେ ଖରା, ଖରା, ଖାଲି ଖରା ବି ହୁଏ । ଖରାର ବର୍ଷାରେ ଜଳିଯାଏ ଧରିତ୍ରୀ । ପୃଥିବୀ ହୁଏ ଶସ୍ୟଶୂନ୍ୟା । ଶୁଖିଯାଏ ପ୍ରାଣଦାୟିନୀ ଜଳର ଶୀତଳ ସ୍ରୋତ । ତା'ପରେ ଆସେ ଅକାଳ । ଆସେ ମଡ଼କ । ମାଟିରୁ ଗଛର ଚେର ଶୁଖି ଗଲେ ମଣିଷ ସହ ମାଟିର ସଂପର୍କ ଛିଣ୍ଡିଯାଏ... ।''

ଆଉ... ଆଉ... ଆଉ ତା'ପରେ ଚେରଛିଣ୍ଡା, ହତଭାଗ୍ୟ ମଣିଷ ଭିଟାମାଟି ଛାଡ଼େ । ଦାଦନ ଯାଏ । କୁଲିଗିରି କରେ । ଚାଷୀ ହୁଏ ମୂଲିଆ । ବାସ୍ତୁହରା ହେଇ ଘୂରିବୁଲେ ଗାଆଁରୁ ଗାଆଁ । ସହରରୁ ସହର । ପଛରେ ଛାଡ଼ି ଦେଇ ଆସେ କ୍ଷେତଭର୍ତ୍ତି ଫସଲର ଅତୀତ ଆଉ ଭବିଷ୍ୟତ ।

ନାକ ସୁଁ ସୁଁ କରି କାନ୍ଦୁଥାଏ ପଦୀ । ଗାଁରେ ଛାଡ଼ି ଦେଇ ଆସିଛି ସେ ତା'ର ଖଡ଼ି, ସିଲଟ । ତା'ର ଚିତ୍ରଭର୍ତ୍ତି ବହି । ତରବରରେ ସେ ଆଣି ପାରିନି । ସେମାନେ ତ ପାହାନ୍ତା ଗାଡ଼ିରେ ଆସିଲେ । ସିଏ ଭାବିଥିଲା ଯାଉଛି ବୋଲି ମାମୁଁଘର ।

''ହଉ ହଉ ତୋ' ପାଇଁ ସବୁ କିଣା ହେବ । ତୁ ଆଗ ଯା' । ମାଷ୍ଟ୍ରଙ୍କ ଗୋଡ଼ ପାଖେ ମୁଣ୍ଡିଆ ମାରିଦେଲୁ ।''

''କ'ଣ ତୋ' ନାଁ ? ପଦୀ, ପଦୀ ମାନେ ଦ୍ରୌପଦୀ ।''

ତା' ପରଦିନ ସ୍କୁଲ ଖୋଲୁଥାଏ । ମାଷ୍ଟ୍ରଙ୍କ ପିଣ୍ଡା ତଳେ ଠିଆ ହୋଇଥାଆନ୍ତି ବାପଝିଅ ଦୁଇଜଣ ।

ବର୍ଷ ଆରମ୍ଭ ହେଲା ରଚନା ଲେଖା ଶିଖାଇବାରୁ ।

ଶୀର୍ଷକ, 'ବର୍ଷାଋତୁ' ।

ମହାନ୍ତି ମାଷ୍ଟ୍ର କବିଆଳ । 'ବର୍ଷାଋତୁ' ତା'ର କବିତା । ଇନ୍ଦ୍ରଧନୁର ସିଡ଼ିରେ ଚଢ଼ିଛି ସିଏ । ହାତକେ ଛୁଉଁଛି ମେଘ । ହାତରେ ମାଟି । ଠିଆ ହୋଇ ପଡ଼ିଛି ନୂଆଝିଅଟା ପଛ ଧାଡ଼ିରେ । ଯତିପାତରେ ବିପ୍ଳାତ !

ମାଷ୍ଟ୍ର ବିଗିଡ଼ିଗଲା, ''କ'ଣ ହେଲାରେ' ?

''ମାଷ୍ଟ୍ରେ, ବର୍ଷା ତ ହୁଏନି ସବୁବେଳେ । ମାନେ ଏଇ ଯୋଉ ପାଣିର ବର୍ଷା ।''

''ହୁଁ, ବର୍ଷା ହୁଏନି ! ପାଣି ବର୍ଷା ହୁଏନି କ'ଣ ମହୁ ବର୍ଷା ହୁଏ ।'' ଘରସାରା କଅଁଳିଆ କଅଁଳିଆ ହସରେ ବି ସରୁ ଧାର ।

ହେଲେ ପିଲାଟି ଦବି ଗଲାନି । କହିଲା, ''ସତ କହୁଛି ମାଷ୍ଟ୍ରେ, ବିଦ୍ୟାରାଣ । ଖାଲି ଖରାହୁଏ । ଖାଲି ଖରା ହେଉଥାଏ । ଜମା ବର୍ଷା ହୁଏନି ।''

''ଖରା ପରେ ବର୍ଷା, ବର୍ଷା ପରେ ଖରା । ଏପରା ଋତୁଚକ୍ର । ବର୍ଷା ହେବନି କେମିତି ! ହବନା । ବସ ବସ । ମୁଣ୍ଡ ପାଗଲୀଟେ ।''

ପିଲାଟା ବସିଲାନି । ଜିଦି ଧରିଲା, 'ମୁଁ ପରା କହୁଛି ବର୍ଷା ହୁଏନି ।''

ମାଷ୍ଟ୍ର ବେତ ବାହାର କଲା । ତା'ର ସେତେବେଳେ ଟୋକାବେଳ । ''ବସୁଛୁନା ନାଇଁ । ବଦମାସ୍ ଟୋକୀ । ମହାନ୍ତି ମାଷ୍ଟ୍ର ଆଗରେ ପିଲାଖେଳ । ପୁଣି ସ୍କୁଲ ଖୋଲିବା ଦିନଟାରେ । 'ବର୍ଷାଋତୁ' ପଢ଼ା ହେଉଥିବା ବେଳେ ।''

ପିଲାଟା ବସିଲା ନାହିଁ ।

ବେତରେ ପାହାରଟେ ବସିଲା, ''ଆ, ଆ ଦେଖିବୁ ବର୍ଷା ଓହ୍ଲା ପିଣ୍ଡା ତଳକୁ । ଓଳି ତଳେ ପାଣି ଚାଲିଛି ଦେଖି ।''

''ବର୍ଷା ଋତୁ ନାହିଁ ମାଷ୍ଟ୍ରେ । ସତ କହୁଛି । ମୋ' ବାପାଙ୍କୁ ପଚାରିବ । ସବୁ ଗାଁ'ରେ ନାହିଁ, ସମସ୍ତଙ୍କ କପାଳରେ ନାହିଁ ।'

ମହାନ୍ତି ମାଷ୍ଟ୍ରେ ଆଉ ସହି ପାରିଲାନି । ପିଲାଟା 'ବର୍ଷାଋତୁ ନାହିଁ ନାହିଁ' କହି ଆସି ଝାଙ୍କି ଦେଲାଣି ତା' ବାଁ ହାତକୁ । ପାଗଲୀ ସ୍ତ୍ରୀ ଆଜି ପିତଳ ଡାଳଟା ଫୋପାଡ଼ି ଦେଇଥିଲା ସକାଳେ ତାଙ୍କ ଉପରକୁ । ବାଁ କାନ୍ଧ ପାଖରେ ଆତ ଫଳିଛି ।

ସପାକ୍ ସପାକ୍ କରି କୋଡ଼ିଏ କି ତିରିଶ କେଜାଣି କେତେ ବେତ ପାହାର ବସିଗଲା ପିଲାଟା ଉପରେ । ତା' ସାଙ୍ଗକୁ ଗାଳି, ''ସ୍କୁଲରେ ନାଁ ନ ଲେଖାଇ ପାଠପଢ଼ା । ବାପା ନେହୁରା ହେଲା ବୋଲି କ୍ଲାସରେ ବସିବାକୁ ଦେଲି । ସେଥିରେ ଏ ଟୋକୀକି ଦେଖ, ଭାରି ମୁହଁ ଖୋର, ଭାରି ବଦମାସ ହେଇଛି ପିଲା ଚାଖଣ୍ଡକ ।''

ପିଲାଟା ରାହା ଧରି କାନ୍ଦି ଉଠିଲା । ଛଟପଟ ହେଲା । ମାନିଗଲା ମାଷ୍ଟ୍ରଙ୍କ କଥା ବି ଶେଷକୁ । ତା' ପରଦିନ କିନ୍ତୁ ଆଉ ସ୍କୁଲ ଆସିଲାନି ସିଏ । ଆସିଲା ତା'ର ବାପା ।

ପଦୀ କାଲି ତାଙ୍କୁ ହଇରାଣ କରିଛି ବୋଲି କ୍ଷମା ମାଗିଲା । ତେବେ ପିଲାର ଭୁଲ୍ ନାହିଁ । ଭୁଲ୍ ତା'ର । ତାଙ୍କ ଗାଁରେ ଆସ୍ତେ ଆସ୍ତେ ବର୍ଷା ବନ୍ଦ ହୋଇ ଏବର୍ଷ ପୂରା ଟୋପାଏ ବି ବର୍ଷିଲା ନାହିଁ । ତିନିବର୍ଷ ହେଲାଣି । ଧୀରେ ଧୀରେ ପାଦ ପାଦ ହୋଇ ଆସି ମାଡ଼ିଆସିଛି ଅକାଳ । ଏଠି ବର୍ଷା ଦେଖି ତାଙ୍କ ଗାଁରେ କାହିଁକି ବର୍ଷା ନାହିଁ ପଚାରିଥିବା ଝିଅକୁ ସେ ହିଁ କହିଥିଲା, "ବର୍ଷା ସବୁଠି ନଥାଏ । ସମସ୍ତଙ୍କ କପାଳରେ ନଥାଏ ।"

ଅକାଳ ନ ପଡ଼ିଥିଲେ ସେମାନେ କିଏ ! ଏ ଥାନ କିଏ !!

ମାଷ୍ଟ୍ର ବୁଝିଗଲା ବ୍ୟାପାରଟା । ଖୋଜିଲା ହସି ହସିକା, "ପଦୀ କାଇଁ ? ସ୍କୁଲ୍ ଆସିଲାନି କାହିଁକି ?"

କାଲି କଥା ସେ ଭୁଲି ଯାଇଛି ।

ପଦୀ ବାପା କହିଲା, "ଚାଷୀ ଥିଲି ମୂଲିଆ ହେଲି । ଯା' ହେଲେ ବି ମୂଲିଆ ପିଲା । ପାଠ ପଢ଼ି ଆଉ କରିବ କ'ଣ ? ମାଳିକି ଛେଳି ଅଡୁଆ, ମାଷ୍ଟ୍ରେ । ପାଠ ପଢ଼ିଲେ ଖଟି ପାରିବ ନାହିଁ । କେଜାଣି ଆଗକୁ ଭାଗ୍ୟରେ କ'ଣ ଅଛି !"

ନାରୀ ଶିକ୍ଷା ବିଷୟରେ ବହୁତ ବୁଝେଇଲା ମାଷ୍ଟ୍ର । ବହୁତ ଥର । ବାପ ଝିଅଠୁ ଜିଦିବାଜ୍ । ପଦୀ ଆଉ ଫେରିଲା ନାହିଁ ।

ଗୋଟିଏ ଦିନ ପାଇଁ ସ୍କୁଲକୁ ଆସି ବର୍ଷର ପହିଲା ବେତ ପାହାର ଖାଇ ଫେରିଗଲା ଦ୍ରୌପଦୀ ।

ମହାନ୍ତି ମାଷ୍ଟ୍ର ଆନମନା ହୋଇଯାଇଛି । ଅଧାରେ ବନ୍ଦ ହୋଇଯାଇଛି ରଚନା ଲେଖା । ଏଭଳି ଦୁର୍ଘଟଣା ତା' ଜୀବନରେ ଏଇ ପ୍ରଥମ ।

ଏଇ ଦୁର୍ଘଟଣାରୁ ଆରମ୍ଭ ହୋଇଥିବା ବର୍ଷଟାରେ ଯେତେ ଅସରା ବର୍ଷା ଆସିଲା ତା'ପରେ, ସେସବୁ ମଣିଷଙ୍କୁ ବିଧାତାର ଉପହାସ । ଗାଆଁ ଗାଆଁରେ ହାହାକାର । ଲୋକେ ଟ୍ରକ୍‌ରେ ବସି ଗାଁ ଛାଡୁଥାଆନ୍ତି । କୁଆଡ଼ କୁଆଡ଼ର ମଣିଷ ବେଉସାର ଦଲାଲ ଜୁକୁ ଥାଆନ୍ତି ଦାଣ୍ଡ ହାଟରେ ।

ଉଜୁଡ଼ା କ୍ଷେତ । ଉଜୁଡ଼ା ମଣିଷ । ଉଜୁଡ଼ା ଗାଆଁ ।

ସମସ୍ତଙ୍କଠାରୁ ମାଷ୍ଟ୍ର କି ନିଆରା ? ତାଙ୍କ ଘରେ ବି ସେଇ ଏକା ଅବସ୍ଥା । ଦାଣ୍ଡରୁ ଆସି ତାଙ୍କ ଘରର ପେଡ଼ି, ପେଟେରା, ଟୋକେଇ, ଅଲୁଗୁଣି ସବୁ ଛୁଆଁଛୁଇଁ କରିସାରି ରୋଷେଇ ଘରର ହାଣ୍ଡି କୁଣ୍ଡେଇବି ମାରା କରିଦେଲାଣି ଅଭାବପଣ । ଏଣେ ଧୀରେ ଧୀରେ ଶ୍ରେଣୀରେ ଉପସ୍ଥାନ କମି କମି ଚାଲିଛି । ମାଷ୍ଟ୍ର କିଛି ଗୋଟେ ଭାବି ଚାଲିଛି ସବୁବେଳେ । ଗଲା ଗଣେଶ ପୂଜା । ଗଲା ସରସ୍ୱତୀ ପୂଜା । ନଡ଼ିଆ ନାଇଁ, କଦଳୀ ନାଇଁ, ସ୍କୁଲରେ ସବୁ ଖାଲି ବିଧିରକ୍ଷା ।

ଗାଁ ଛାଡ଼ି ଏ ଗାଁରେ ଘର କରି ରହିଲେଣି କେବେଠାରୁ ସିଏ, କୋଉଠି ଆଉ ଜମି ପାଦେ ନାଇଁ । ସ୍କୁଲର ଦରମା ଗଣ୍ଡିକ ଯାହା ଭରସା । ବଢ଼ି ଆସିଲେ ସେଇଠି । ମରୁଡ଼ି ଆସିଲେ ସେଇଠି ।

ସବୁ ବର୍ଷର ଖରା ଛୁଟିଟା ଅସରନ୍ତି ହୁଏ ତା'ର । ଏ ବର୍ଷର କଥା ନ କହିଲେ ଭଲ । ରଜ ଗଲା, ସାବିତ୍ରୀ ଗଲା, କୋଉଠି ହୋ ହଲ୍ଲା ନାଚଗୀତ ନାଇଁ । କାହା ଘରେ ପିଠାପଣା ନାହିଁ । ପିଲାଙ୍କର ପେଟରେ ନିଆଁ । କ୍ଷେତ୍ରରେ ପାଉଁଶର ଫସଲ । ବାପା ମାଆମାନେ ଏସବୁ ଦେଖିଲେ, ସହିଲେ ।

ମାଷ୍ଟ୍ର ଘରେ ପିଲା ନାହିଁ । ତା' ସ୍ତ୍ରୀ ରୋଗିଣୀ, ପାଗଳୀ । ପିଠାପଣା ଓଷାପର୍ବ କେବେ ହୁଏନି ତା' ଘରେ । ମହାନ୍ତି ମାଷ୍ଟ୍ର ଯାହା ମଝିରେ ମଝିରେ ଭାବୁଛି କେମିତି ସ୍କୁଲ୍ ଖୋଲିଲେ ସେ କହିବ ? ପିଲାଙ୍କୁ କ'ଣ କହି, କେଉଁଠୁ ପାଠ ପଢ଼େଇବ ।

ସରକାରୀ ସ୍କୁଲ । ଜଣା ତାରିଖରେ ଖୋଲିବ । ଖୋଲିଲା ।

ସ୍କୁଲକୁ ସମୁଦାୟ ପାଞ୍ଚ ସାତଟି ପିଲା ଆସିଛନ୍ତି । ଦିଶୁଛନ୍ତି ବୁଢ଼ାଙ୍କ ପରି । ଅସମ୍ଭବ ଗରମ ପଡୁଛି ବାହାରେ । ମାଷ୍ଟ୍ର ସିଦ୍ଧାନ୍ତ ନେଇ ଆସିଛି । ଏବର୍ଷ ବର୍ଷାରତୁରୁ ପାଠ ଆରମ୍ଭ ହେବ ନାହିଁ । ବେତଛୁଆଁ ବନ୍ଦ ।

ନିଜ ଶ୍ରେଣୀରେ ପଶିଯାଇ କିନ୍ତୁ ଚମକି ପଡ଼ିଲା ସେ । କୌଣସି ମତେ ଟଳି ଟଳି ଯାଇ ଭୂତ ପରି ବସି ରହିଲା ଚୌକି ଉପରେ । ତା' ଶ୍ରେଣୀରେ ଗୋଟିଏ ବୋଲି ପିଲା ନାହାନ୍ତି । ମହାନ୍ତି ମାଷ୍ଟ୍ର ଚାହିଁ ରହିଲା । ଆକାଶ ଦିଶୁଛି ଗୋଟେ ଅତିକାୟ ତମ୍ବା ପତ୍ର ପରି। ଚକ୍ ଚକ୍ ଚିକ୍‌କଣ । ଧୂଳିଟିଏ ନାହିଁ, ମଳିଟିଏ ନାହିଁ । ଘଷାମଜା । କଣିକାଏ ବୋଲି ଖାଦ୍ୟ ନାହିଁ କେଉଁଠି ।

ଦିଗନ୍ତଗ୍ରାସୀ ଶୂନ୍ୟପାତ୍ର ଭିତରେ ଦୁର୍ବାସାର ସର୍ବଗ୍ରାସୀ କ୍ଷୁଧା- ଫୁଲିଏ ନିଆଁ । ସେପଟକୁ ଚାହିଁ ହେଉନି ।

ମାଷ୍ଟ୍ର ମନକୁ ଏକଥା ଢୁକିଯିବା ମାତ୍ରେ ସେ ଶିହରି ଉଠିଲା ଗୋଟାପଣେ । ଏ କ୍ଷୁଧା ଶାନ୍ତ ହେବ କେମିତି ?

ଆସନ୍ତା ନାଇଁ ମେଘ- ଖଣ୍ଡିଏ ମାତ୍ର ହେଉ ପଛେ ।

ଆସନ୍ତା ନାଇଁ ବର୍ଷା- ବିନ୍ଦୁଟିଏ ବୋଲି ହେଉ ପଛେ ।

ତଳେ ଗାଁ ଗାଁର କରାଳ ଭୋକ । ଉପରେ ବିଧାତାର ଉନ୍ମୁଖ ଅଭିଶାପ । ଅକ୍ଷୟ ପାତ୍ରରୁ ଖାଦ୍ୟ ସରିଛି ଅନେକ ଦିନରୁ । ଏବେ କ'ଣ ପରଷି ପାରିବ ଆଉ ଦ୍ରୌପଦୀ ?

କ'ଣ ପରଷିବ ଦ୍ରୌପଦୀ ? କ'ଣ ପରିଷିବ ପଦୀ ?? ଧନ୍ଦାଳି ହେଉଛନ୍ତି ମହାନ୍ତି ମାଷ୍ଟ୍ର । ବାହାରେ ଗଡ଼ି ଯାଉଛି ସମୟ ତା' ନିଜ ଢଙ୍ଗରେ । ସେସବୁ ବୁଝିପାରୁ ନାହାନ୍ତି ଆଉ ସେ ।

କେତେବେଳକୁ ମହାନ୍ତି ମାଷ୍ଟ୍ରକୁ ଦିଶିଲା, ଆକାଶର ଗୋଟିଏ କଣରୁ ହାଲୁକା ହସ ହସି ଉଠି ଆସୁଛି ପତଳା କଳାମେଘ ଖଣ୍ଡେ । ମାଷ୍ଟ୍ର ଥରିଗଲା ଗୋଟାପଣେ । ଏ କ'ଣ ଅକ୍ଷୟ ପାତ୍ରରେ କଣିକାଏ ଶାଗ ! ଆକାଶରେ ତ ମରୀଚିକା ନଥାଏ !!

"ଆହାଃ ହା... ହା... । ଆ... ଆରେ ମେଘ । ଆ'ରେ ଘନେଇ ଆ । ତୋର ଘୁମୁରିବାରେ ଥମିଯାଉ ଯେତେସବୁ ହା, ହା ରବ । ତୋର ସଜଳ ଛାଇରେ ଲିଭିଯାଉ ଦୁର୍ବାସାର କ୍ଷୁଧା । ରକ୍ତମୁଖା ସୂର୍ଯ୍ୟର ମୁହଁ ତୁ ପୋଛିଦେଇ ଯାଆ ତୋର ଓଦା ପଣତରେ ।"

ତା'ପରେ ପୁଣି ସ୍କୁଲ୍‌ଭର୍ତ୍ତି ପିଲା । ପୁଣି ବର୍ଷାଋତୁ । ଏଥର ଦ୍ରୌପଦୀ ବି ଥିବ ନିହାତି । ତାକୁ ଯାଇ ଡାକି ଆଣିବାକୁ ହେବ । ଅମାନିଆ ପିଲାଟା । ତେବେ ତାକୁ ମନେଇବାକୁ ପଡ଼ିବ କୌଣସି ମତେ ।

"ଏ ପଦୀ, ଏ ଦ୍ରୌପଦୀ ।" ଡାକି ଡାକିକା ବାହାରକୁ ଆସି ଭୁଲିଗଲା ସେ ଚପଲ ଆଉ ଚଷମା ।

ସେତେବେଳକୁ ବାହାରେ ଥଣ୍ଡା ପବନ ପିଟୁଛି କି କ'ଣ, କାଲୁଆ ଲାଗୁଥାଏ ମାଷ୍ଟ୍ରଙ୍କୁ ।

"ଏ ପଦୀ, ଏ ଦ୍ରୌପଦୀ... । ଆ... ମାଆ, ଆ... ମେଘ ଉଠିଛି, ଏଥର ଖରା ପରେ ବର୍ଷା । ଏଥର କ୍ଷେତ ଉଠିଯିବ । ଆ ମାଆ, ଆ ଆ... ।"

ଅଫିସ୍ ଘରୁ ଦି'ଜଣ ଶିକ୍ଷକ ଉଠି ଆସିଲେ । ରାସ୍ତା ସେପଟୁ କିଛି ମାଇପି ମରଦ । ଶୂନ୍‌ଶାନ୍ ଦି'ପହରଟା । ଏଡ଼େ ପାଟିରେ କାହାକୁ ଡାକୁଛନ୍ତି ମାଷ୍ଟ୍ରେ ।

ମାଷ୍ଟ୍ରେ ହାତ ଠାରି ଦେଖେଇ ଦେଉଥାଏ ଧୀରେ ଧୀରେ ଚଅଁରି ଆସୁଥିବା ସେଇ ବର୍ଷାବାହୀ ତମାଳ ମେଘ ଖଣ୍ଡକୁ । ସମସ୍ତେ ହାଉହାଉ ହେଉ ଥାଆନ୍ତି, "ମେଘ କାଇଁ ମେଘ କାଇଁ" ବୋଲି ।

"ପଦୀ, ପଦୀ, ଏ ମା' ଦ୍ରୌପଦୀ... । ମେଘ ଉଠିଛି ମେଘ । ଏଥର ବର୍ଷା ଆସିଯିବ । ପାଣିର ବର୍ଷା । କୋଉଁଠି ତୁ ? କୋଉଁଠି ??"

ମାଷ୍ଟ୍ରେ ବାଟ ଅବାଟ ଖାଲଖୁଞ୍ଚ ନମାନି ଦଉଡ଼ି ଦଉଡ଼ି ଚାଲିଯାଉଥାଏ ସଡ଼କ ସେପଟେ ବହୁବର୍ଷ ତଳେ ପୋଲ ପାଖରେ ଯେଉଁଠି କୁଲି ମୂଲିଆମାନଙ୍କର ଅସ୍ଥାୟୀ ଝୁମ୍ପୁଡ଼ି ବସି ଥିଲା, ସେଇ ଆଡ଼େ ।

ପଛରେ ପଡ଼ି ରହିଥାଏ ଟେବୁଲ୍ ଉପରେ ବେତ ଆଉ ଚଷମା । ଚଉକି ଗୋଡ଼ ପାଖରେ ଚପଲ ଦି'ପଟ ।



# ରୂପାନ୍ତର

## ହିରଣ୍ମୟୀ ମିଶ୍ର

ମଲାନଈର ଶେଯ ଉପରେ ବିଛେଇ ପଡିଛି ଦୋଳପୂର୍ଣ୍ଣମୀର ଜହ୍ନ । ଗହଳି କମିଲାଣି ଧୀରେ ଧୀରେ । କାଲିର ମେଳଣ ପରେ ପୁଣି ଯିଏ ଯୁଆଡେ ଫେରିଯିବେ । ଜେମାଦେଇପୁରର ଗାଁ ସାରା ଲୋକ, ଯିଏ ଯେତେ ଦୂର ଦେଶରେ ଚାକିରି କରିଥିଲେ ବି ହୋଲି ମେଳଣକୁ ଆସିବା କଥା ଆସନ୍ତି ।

ଦୀର୍ଘ ଦଶ ଦିନ ପରିଶ୍ରମର ମାନସିକ ଆଉ ଶାରୀରିକ କ୍ଳାନ୍ତି ଭରି ରହିଛି ଚାରୁଲତାର ଶିରା ପ୍ରଶିରାରେ । କେହି ଯେମିତି ତା'ର ଦୁଇ ପାଦତଳେ ଫୁଟେଇ ଦେଇଛି ଶହ ଶହ କଣ୍ଟା । ଗୋଇଠି ପଟଟା ବି ଭୀଷଣ ଦରଜ ଲାଗୁଛି ଏବେ । ଚାରୁଲତା ଝରକା ଆର ପଟର କାଇଁ କୋଉ କାଳରୁ ଶୁଖି ଯାଇଥିବା ନଈ ପଠାକୁ ଚାହିଁ ରହିଥିଲା । ଏଠି କେବେ ଗୋଟେ ନଈ ଥିଲା; ଅବଶ୍ୟ ଚାରୁଲତାର ପିଲାଦିନେ ବି ଏ ନଈରେ ବର୍ଷାଦିନେ କେବେ କେମିତି ପାଣି ଆସିଯାଉଥିଲା । ସେ କେତେଥର ସାଂଗମାନଙ୍କ ସହ ହୁଲିଡଙ୍ଗାରେ ବସି ଏପାରିରୁ ସେପାରି ହୋଇଛି ସେତେବେଳେ; ହେଲେ ସେ ଖାଲି ଡଙ୍ଗାରେ ବସିବାର କୌତୁହଳ ଆଉ ଖୁସି ପାଇଁ; ନହେଲେ ଆଉ କିଛି ନୁହେଁ ।

ଚାରୁଲତାକୁ ଏବେ ଏତେ ହାଲିଆ ଲାଗିଲେ ବି ନଈ ଆରପାଖର ସରକାରୀ କାଜୁବଣ ପାରି ହେଇ ଏଯାଏଁ ଦିଶୁଥିବା ରୂପେଲି ଆଲୁଅର ପଟୁଆରକୁ ଚାହିଁ ଚାହିଁ ତା' ଆଖିରୁ ନିଦ ଉଭେଇ ଯାଇଛି ।

"ତୁ ଯାଆଲୋ ଚାରୁ, ଟିକେ ଆଖି ପକେଇଦେବୁ ଘରେ, ଦଶ ଦିନ ହେଲା କେତେ ଯେ ଝଡିଗଲୁଣି । କଳାକାଠ ପଡିଗଲାଣି ମୋ ଝିଅଟା"– ତା' ମୁହଁ ଉପରକୁ ଖସି ଆସିଥିବା କେରାଏ ଅସଜଡା ବାଳକୁ ସ୍ନେହରେ ସଜାଡି ଦେଉଦେଉ କହୁଥିଲା ରାଉତ ଘର ଖୁଡୀ । ତା' ମୁହଁକୁ ଚାହିଁ ଚାରୁଲତା ବିଶ୍ୱାସ କରିପାରୁ ନଥିଲା ଯେ ଗଉଡୁଣୀ ଝିଅବୋହୁଙ୍କ କାନ୍ଧରୁ ଠିକ୍ ଜାଗାରେ ଠିକ୍ ବିମାନସବୁ ଓହ୍ଲେଇ ଦେବାର ଦାୟିତ୍ୱ ନେଇଥିବା ପଚାଶ ବର୍ଷର ଏହି ସ୍ତ୍ରୀ ଲୋକଟି ତା' ଜୀବନରେ ପ୍ରଥମ କରି ମେଳଣ ପଡିଆକୁ ଆସିବା ପାଇଁ ଘରୁ ଗୋଡ କାଢ଼ିଛି । ସବୁ ଏତେ ଶୀଘ୍ର ଶୀଘ୍ର ହେଇଗଲା ଯେ କାହା ପାଖରେ ଚିନ୍ତା କରିବାକୁ ସମୟ ନଥିଲା ।

ମହାନ୍ତି ଘର ଚଉଦ ବର୍ଷ ହେଲାଣି ଗାଁର କୋଠଭାଗ ଖାଇ ଦିଅଁ ଦେଉଳ କଥା ବୁଝୁଥିଲେ । ମନ୍ଦିରର ପୂଜା ଭୋଗଠୁ ଆରମ୍ଭ କରି, ଚାଷବାସ, ମେଳା ମଉଛବ ଯାଏଁ । ଅଥଚ ମହାନ୍ତିବୁଢାର ସାତବର୍ଷର ନାତିଟିକୁ ସେଦିନ କପିଳେଶ୍ୱର ମନ୍ଦିର ବେଢାରେ ହିଁ ସାପ କାମୁଡି ଦେଲା । ମହାନ୍ତିଏ ଓଷଦ ବଇଦ, ଝଡାଫୁଙ୍କା, ଗୁଣିଗାରେଡି ଯେତେ ଯାହା କଲେ ବି କିଛି କାମ ହେଲାନି । ରାତିରେ କୁଆଡେ ମହାନ୍ତିଙ୍କୁ ସାକ୍ଷାତ୍ କପିଳେଶ୍ୱର ବୃଷଭ ବାହନରେ ଆସି ସ୍ୱପ୍ନାଦେଶ ଦେଲେ : 'ଗାଁ ସାରା ଲୋକଙ୍କ ଆଗରେ ସବୁ ସତ କହି ଦେ– ନାତି ପୁଣି ଥରେ ଭଲ ହୋଇଯିବ ।' ମହାନ୍ତିଏ ସକାଳୁ ସକାଳୁ ଜଣ ଜଣ କରି ସମସ୍ତଙ୍କ ଘରକୁ ଦଉଡିଲେ । ମୁଖିଆଙ୍କୁ କହି ସଭା

ଡକେଇଲେ । କଥା କହୁ କହୁ ମହାନ୍ତିଏ କାନ୍ଦି ପକଉଥାନ୍ତି । ଶେଷରେ ହାତ ଯୋଡ଼ି ଦେଇ କହିଲେ-"ମୁଁ ମହାପାପୀ, ଠାକୁରଙ୍କ ବହୁଧନ ଅନ୍ୟାୟରେ ଆତ୍ମସାତ୍ କରିଛି– ସେ ବାବଦକୁ ମୋ'ର ଦଶ ମାଣର ବଡ କିଆରି ଜମି ଲେଖି ଦେଉଛି ଦେଉଳ ନାଁରେ– ମତେ ପଞ୍ଚ ମହାପୁରୁ କ୍ଷମା କରି ଦିଅନ୍ତୁ ।"

ଲୁହଲାଳ ହୋଇ ମହାନ୍ତିଙ୍କର ସେ ମୁଣ୍ଡପିଟା ଦୃଶ୍ୟ ଦେଖି ଗାଁର ସବୁଠୁ ପରପେଞ୍ଚିଆ ରବି ନାଏକ ବି ତରଳି ଗଲେ– "ହଉ ହେ, ମହାନ୍ତିଏ ଆମର ଗୁରୁଜନ, ଦୋଷ ତ୍ରୁଟିକୁ କ'ଣ ମାଫ୍ ନାଇଁ ? ସେତିକି ଥାଉ, ଏବେ ନୂଆ କିଏ ଦାୟିତ୍ୱ ନେବ, ସେ କଥା ପଡୁ । ପ୍ରଥମେ ମେଳଣ କଥା ସ୍ଥିର ହେଉ ।

କେହି କିଛି କହିବା ପୂର୍ବରୁ ଆଗରୁ ଘୋଷି ଘୋଷି ବହୁବାର ନିଜକୁ ପ୍ରସ୍ତୁତ କରି ରଖିଥିବା ଭଙ୍ଗୀରେ କହିଲା ନୀଳାମ୍ବର : "ଏଥର ହୋଲି ମେଳଣର ଦାୟିତ୍ୱ ଚାରୁଲତାକୁ ଦିଆଯାଉ ।"

'ଚାରୁଲତା' ! ନିଦାଘ ଖରାରେ ଆକାଶରୁ କୁଆପଥର ବୃଷ୍ଟି ହେବା ଭଳି ବିସ୍ମିତ ସ୍ୱର ଶୁଭିଲା ଅନେକ ପୁରୁଖା ମଣିଷଙ୍କର । ଠାକୁରାଣୀ ଚଉତରାଠାରୁ ଖଣ୍ଡେ ଦୂରରେ ଠିଆ ହୋଇ ଏପଟେ କାନ ଡେରିଥିବା ଖୋଦ୍ ଚାରୁଲତା ବି କିଛି କମ୍ ଅବାକ୍ ହୋଇ ନଥିଲା । ତେବେ ସେ ବିସ୍ମୟଭାବ କାହାରିଠି ବି ବେଶୀ ସମୟ ଯାଏଁ ରହିଲାନି । ବେଶ୍ ଦମ୍ଭର ସହ ଠିଆ ହେଲା ନୀଳାମ୍ବର, ଗଳାଛାଡି ସଫା କରିନେଲା ସ୍ୱର ଓ ଭାରି ସ୍ପଷ୍ଟ କଣ୍ଠରେ ଏକ ପ୍ରକାର ସିଦ୍ଧାନ୍ତ ଘୋଷଣା କରିବା ଭଳି କହିଲା :

"ହଁ, ଚାରୁଲତା । ଆମ ଗାଁରେ ତା'ଠୁ କିଏ ଅଧିକ ପାଠ ପଢିଛି କି ? ବି.ଏ. ପାଶ୍ କରିଛି ସେ । ଆପଣମାନେ ସମସ୍ତେ ଜାଣନ୍ତି ଚାରୁଲତା ପଛରେ ଏ ଗାଁର ସବୁ ମା' ଭଉଣୀମାନେ ଯେକୌଣସି କାମ ପାଇଁ ଆଗେଇ ଆସିବେ । ନିଜେ ଚାରୁଲତା ହୁଏତ ଠାକୁର ବେଢାକୁ ଯିବ ନାଇଁ, ହେଲେ ତା' ଦାୟିତ୍ୱରେ କାମ ସବୁତ ହେଇପାରିବ ବେଶ୍ ସୁରୁଖୁରୁରେ । ଏକଥାକୁ କିଏ ବା ନାହିଁ କରିପାରିବ ?"

କେମିତି ଗୋଟେ ଆଶଙ୍କା ଜର୍ଜରିତ ନୀରବତା ଖେଳିଗଲା ଚାରିଆଡେ । କେହି କେହି କ'ଣ କହିବେ ଭାବୁଥିଲେ । ଆଉ କେତେକ ଆସନ୍ନ ବିପଦ ନିଶ୍ଚିନ୍ତ ଭାବି ଆତଙ୍କିତ ହେଉଥିଲେ । ଏ ଗାଁରେ ଆଜିକାଲି ସ୍ତ୍ରୀ ଲୋକମାନେ ବି ପଲ୍ଲୀ ସଭାରେ ବସୁଛନ୍ତି । ସେପଟେ ସ୍ତ୍ରୀଲୋକଙ୍କ ପଟରେ ଏକ ପ୍ରକାର ମୃଦୁ ଗୁଞ୍ଜରଣ ଖେଳି ଯାଉଥିଲା । କିଛି ଅସ୍ପଷ୍ଟ, ବୁଝାଅବୁଝା ଶବ୍ଦସବୁ ରହି ରହି ଉଠୁଥିଲା ସେପଟରୁ ।

ଚାରୁଲତା ଝିଅଟା ହିଁ ସେମିତି । ଯେମିତି ସାହସ ତା'ର, ସାହାଯ୍ୟ କରିବାକୁ ବି ଆଗରେ ସେମିତି । ରାତି ଅଧରେ ଗାଁ ଭିତରେ କାହାର ଅସୁବିଧା ପଡିଲେ ଆଉ କେହି ଘରୁ ବାହାରୁ ନବାହାରୁ ଚାରୁଲତା ନିଶ୍ଚୟ ବାହାରି ଆସିବ । ଆଉ ଥରେ ଚାରୁଲତା ଘରୁ ବାହାରି ପଡିଲେ ଅନ୍ୟମାନେ ଆସିବା କେତେଦୂର ?

ଚାରୁଲତାର ପାରିଲାପଣକୁ ତେଣୁ ସନ୍ଦେହ କଲା ଭଳି ଏ ଗାଁରେ କେହି ନାହାନ୍ତି । ଏମିତିକି ମୁଖିଆ ଲୋକମାନଙ୍କ ଘରେ ମରଦ ଲୋକ କେହି ନଥିଲେ କେତେ ଥର ଚାରୁଲତା ଅସୁବିଧା ବେଳେ ଠିଆ ହେଇଛି । ପଦନା ମହାନ୍ତିଙ୍କର ବୋହୂ ସେଥର ତିନି ଦିନ ତିନି ରାତି କଷ୍ଟ ପାଇବା ପରେ ଝଡିବର୍ଷାକୁ ଡରି କେହି ଘରୁ ବାହାରୁ ନଥିବା ବେଳେ ଚାରୁଲତା ସାଇକେଲ୍ ମାରି ପ୍ରଥମେ ବାହାରିଥିଲା ଡାକ୍ତର ଡାକିବାକୁ । ଗାଁର କାଦୁଅ ପଚପଚ ରାସ୍ତାରେ ଏତେ ଝଡବର୍ଷାରେ

ରାତିଅଧରେ ପଶି ପାରିବେନି ବୋଲି ଡାକ୍ତରବାବୁ ମନା କରିଦେବାରୁ ଖୁବ୍ ଝଟାପଟା ଝଗଡା କରିଥିଲା ଚାରୁଲତା । ଶେଷରେ ତା' ଯୁକ୍ତି ଆଗରେ ଡାକ୍ତରବାବୁ ହାର ମାନିଥିଲେ ସେଥର । ମହାନ୍ତିଏ କଟକକୁ କଚେରି ତାରିଖ ଡାକରାରେ ଯାଇଥିଲେ । ଫେରିଲା ବେଳକୁ ଘରେ ଦିବ୍ୟସୁନ୍ଦର ନାତି ହାତଗୋଡ ହଲେଇ ଖେଳୁଛି । ବର୍ଷେ ତଳେ ଶ୍ରାବଣ ମାସରେ ମହାପାତ୍ର ଘରର ଝିଅ ପୋଖରୀରେ ବୁଡି ପେଟେ ପାଣି ପିଇଦେଇଥିଲା । ଚାରୁଲତା ଠିକ୍ ବେଳରେ ପୋଖରୀକୁ ଡେଇଁ ପହଁରି ପହଁରି ଯାଇ ଭିଡି ଆଣିଥିଲା ତାକୁ ତୁଠ ପାଖକୁ ।

ଏତେ ସବୁ କଥାରେ ବି ଚାରୁଲତାକୁ ଗାଁ ଠାକୁରଘର ମାଡିବାକୁ ମନା ହେବାର ଗୋଟିଏ ମାତ୍ର କାରଣ, ସେ ଭୋଇଘରର ଝିଅ । ଭୋଇ ସାହିଆ ଯେତେ ପାଠ ପଢିଲେ ବି ଅଛୁଆଁ ଜାତି । ତାଙ୍କୁ ମୁଣ୍ଡରେ ବସେଇବା ଅର୍ଥ ଦିଅଁ ଦେବତାଙ୍କ ରୋଷକୁ ଗୁଆ ପକେଇବା । ବାକିସବୁ ଭୋଇସାଇଆଙ୍କଠୁ ଅବଶ୍ୟ ଚାରୁଲତାର କଥା ଟିକିଏ ଅଲଗା । ଗାଁର ଅଳ୍ପପାଠୁଆ ଝିଅମାନେ ସନ୍ଧ୍ୟାବେଳେ ଚାରୁଦେଈଙ୍କୁ ଡାକିଆଣନ୍ତି ଓଷ୍ଟମୂଳ ମଣ୍ଡପକୁ । ସେଇଠି ପାଠପଢାଏ ସେ ତାଙ୍କୁ ଘଣ୍ଟାଏ ଲେଖାଁଏ; ଅକ୍ଷର ଚିହ୍ନି ନଥିବା ବୋହୁଏ ବିଦେଶରେ ଥିବା ସ୍ୱାମୀମାନଙ୍କର ଚିଠିକୁ ଅଣ୍ଟାରେ ଯାକି ଚାରୁ ପାଖରେ ପହଞ୍ଚନ୍ତି । ଆଉ କୋଉ ବାଡୁଅ ଝିଅ ହାତରେ ଏ ଅଭିଲା କଥାଗୁଡାକ ପଢେଇବାକୁ ତାଙ୍କୁ ସରମ ମାଡେ । ହେଲେ ଚାରୁଲତା କଥା ଅଲଗା, ବାହା ନ ହୋଇଥିଲେ ବି ସେ ସବୁକଥା ବୁଝିପାରେ, ଜାଣିପାରେ ।

ତ'ବୋଲି ଠାକୁରଘରର ଦାୟିତ୍ୱ ଚାରୁଲତାକୁ ଛାଡି ଦେଇ ନିଶ୍ଚିନ୍ତରେ ନିଦ୍ରା ଯାଇ ପାରିବେ ଏ ଗାଁର ସାଆନ୍ତସାହିଆ ? ଚଉତରା ଉପରୁ ନାଲି ଗାମୁଛା ଉଠାଇ ଠିଆ ହେଇପଡିଲେ ମଧୁ ନାଏକ– "ଘୋର କଳିକାଳ, ଘୋର କଳିକାଳ– ଏ ଗୁଡ଼ାକ ଖାଲି କଳିର ଖେଳ ଜାଣ । ଏକରେ ମାଇକିନିଆ ଝୁଅ, ଦୁଇରେ ଭୋଇ ଘରେ ଜନ୍ମ । ହଇରେ ହେ ନିଲୁଆ-ତୋ ବୁଦ୍ଧିସୁଧି ସବୁ କିଏ ଖାଇଲା କିରେ ।"

ରାଧୁ ରାଉତ କାନରେ ଦୁଇହାତ ଦେଇ କହିଲେ– "ଏଇୟାକୁ କହନ୍ତି ବିନାଶ କାଳେ ବିପରୀତ ବୁଦ୍ଧି– ହଇହେ, ଯୋଉଠି ମହାନ୍ତିଏ ସମ୍ଭାଳି ପାରିଲେନି ସେଠି ସ୍ତ୍ରୀ ଜାତି ହାତରେ, ପୁଣି ଅଛବ ଘରର ଝିଅ ହାତରେ ଏ ଦାୟିତ୍ୱ–"

ନୀଳାମ୍ବର କିନ୍ତୁ ଟିକିଏ ବି ଦବି ଯାଇନଥାଏ । ଏ ସବୁର ଉତ୍ତର ଯେମିତି ସେ ତା' ପାଖରେ ରଖିକି ଆସିଛି, ସେମିତି ଶୁଣୁଥାଏ ବୁଢାମାନଙ୍କର ଆଲୋଚନା । କହିବାର କଥାସବୁ ଛୋଟିଆ କାଗଜଟିରେ ଟିପି ଆଣିଛି ସେ । ସେଇଟିକୁ ପକେଟରୁ ବାହାର କରି କିଛି କହିବାକୁ ଆରମ୍ଭ କରିବା ପୂର୍ବରୁ ଠିଆହେଲେ ଜାହ୍ନବୀ– ରାଧୁ ରାଉତଙ୍କ ବୋହୁ । ନିଜ ଘରକରଣା ଆଚାର ବ୍ୟବହାର, ମାନମହତରେ ଏଇ ବୋହୁଟି ଜେମାଦେଈପୁରର ସୁନାନାକୀ ବୋହୁ ଏବେ । ନିଜର ଓଢଣା ଆଉ ଟିକେ ଭଲ କରି ମୁଣ୍ଡ ଉପରକୁ ଟାଣିଦେଇ କହିଲା ସେ– "ଚାରୁଅପା ଖାଲି ବୁଝାସୁଝା କରିଲେ ଆମେ ସମସ୍ତେ ଆଉ ସବୁ କାମ କରିନେବୁ । ଏତେ ଦିନ ହେଲା ଏ କାମ ପୁରୁଷ ଲୋକେ ବୁଝୁଛନ୍ତି, କେଉଁଠି କେତେ କ'ଣ କାମ କରି ସମ୍ମାନ ପାଉଛନ୍ତି, ଆମ ଗାଁ ଭିତରେ ଏତିକି କଥା କ'ଣ ଆମେ କରିବୁନି ? ଚାରୁଅପା ପଛରେ ଆମେ ସ୍ତ୍ରୀଲୋକମାନେ ଅଛୁ ।"

ଚାରୁଲତାର କାନ ବାଟ ଦେଇ ବିଦ୍ୟୁତ୍ ତରଙ୍ଗ ଖେଳିଗଲା ସମଗ୍ର ଦେହରେ । ବେକ, ଛାତି ଅଣ୍ଟା ଦେଇ ଗୋଟେ ଅବିଶ୍ୱସନୀୟ ଅନୁଭବ ତାକୁ ମୋହମୁଗ୍ଧ କରି ଦେଉଥିଲା ସେଇ

ସମୟରେ । ପଲ୍ଲୀସଭାରେ ତା' ପରେ କ'ଣ ସବୁ ଆଲୋଚନା ହେଉଛି ସେ ଆଉ ଶୁଣିନି । ଏ ଗାଁ ପଲ୍ଲୀସଭାରେ ଉଠୁଥିବା ବିରୋଧ, ପାଟିତୁଣ୍ଡ, ସଲାସୁତୁରା ଆଉ ଫଇସଲା ଏସବୁ କେବଳ ଦୂରରୁ ଶବ୍ଦର ତରଙ୍ଗରୁ ସେ କଳି ଦେଇପାରେ ।

ତା' ପରଠୁ କିନ୍ତୁ ଆଉ ଅଟକି ଦେଖିବାକୁ ଫୁରସତ୍ ନାହିଁ । ଠାକୁରଘରର ହାତରଖା ହିସାବଖାତାଠୁ, ଋଣ ଦେୟ ପରିଶୋଧର ପୁରୁଣା ମୋଟା ମଇଳା ରେଜିଷ୍ଟର, ପୋଷ୍ଟ ଅଫିସ୍‌ର ଜମାଖାତା ଯାଏଁ ସବୁ ତା' ହାତରେ ଆଣି ଦେଇ ଯାଇଛନ୍ତି ଗାଁର ଝିଅ ବୋହୁଏ । ଖାଲି ଝିଅବୋହୁଏ କାହିଁକି ପୁରୁଣାକାଳିଆ ବୁଢ଼ୀମାନେ ବି ଏଥର ଖୁବ୍ ଜୋରରେ ଲାଗି ପଡିଛନ୍ତି ମେଳଣର ଆୟୋଜନରେ ।

ଗାଁର ବୟସ୍କା ସ୍ତ୍ରୀଲୋକମାନେ କଥା ହୁଅନ୍ତି, ଝିଅଟା ତା'ର ଦୁର୍ଭାଗ୍ୟରୁ ଭୋଇ ଘରେ ବଢ଼ିଛି । ନହେଲେ ଭୋଇଘର ଝିଅର ଏତେ ଟିକିଏ ବି ଛାପ ଅଛି ତା' ଠେଇଁ ? ଏତେ ସୁନ୍ଦର ତୀଖ ନାକ, ଛୋଟ ସରୁ ପାଟି, ଶ୍ୟାମଳବର୍ଣ୍ଣର ଲମ୍ବା ସୁନ୍ଦର ଚେହେରା, ଉଜ୍ଜ୍ୱଳ ଆଖି– ସବୁମିଶି ଚାରୁଲତାକୁ ଉଚ୍ଚକୂଳଜା ହେବାର ଭ୍ରମ ସୃଷ୍ଟି କରାଏ । ଚାରୁଲତା ଜନ୍ମରୁ ତା' ମା'କୁ ଦେଖିନି । ଶୁଣିଛି ତା' ମା' କୁଆଡେ ମହାନ୍ତି ଘର ଜଗୁଜଗୁ ଖୋଦ୍ ମହାନ୍ତିଏ ପଡିଥିଲେ ତା' ପ୍ରେମରେ– ଆଉ ଢେର୍ ରାତିରେ ତା' ମା' ପାଖକୁ ମହାନ୍ତିଘରୁ ଡାକରା ଆସିବା କଥା ଏ ଯାଏଁ ବି ଏ ଗାଁର ପବନରେ ଖବର ହେଇ ରହିଛି । ଚାରୁଲତାର ହେତୁ ହେଲା ଦିନୁ ସେ ଏଠି ତା' ଜେଜୀ ସାଂଗରେ ରହେ । ବାପା ଯାଇଥିଲା ସୁରାଟ କାମ କରିବାକୁ, ସେଇଠି ତା'ର ନୂଆ ସଂସାର ବାଂଧିଛି । ଭୋଇ ସାହିରେ ଏସବୁ କିଛି ନୂଆ କଥା ନୁହେଁ । ଆଜିକାଲି ଜେଜୀମା'ର ଆଖିକୁ ସଞ୍ଜ ପରେ ଆଉ କିଛି ଦୁଶେନି । କାନ ଦୁଇଟାର ଶବ୍ଦ ଶୁଣିବା କାମ କୋଉଦିନଠୁ ବନ୍ଦ ହେଇ ଯାଇଛି । ଅଶୀ ପର ବୟସ୍କା ଜେଜୀମା' ଏବେ ଟୋକେଇଟିଏ ଭଳି ହୋଇଗଲାଣି ।

ଚାରୁଲତା ପାଇଁ ତେଣୁ ବାହାଘର ଖୋଜିବା କଥା କେହି ଚିନ୍ତା କରିବାକୁ ନାହିଁ । ଏବେ ବି ତା' ବାହା ହେବାର ବୟସ ଅତିକ୍ରମ ହୋଇଯାଇନି । ଗାଁ ପାଖ କଲେଜ୍‌ରେ ଘରୁ ଶାଗ ପଖାଳ ଖାଇ ଚାରୁଲତା ବି.ଏ. ପାଶ୍ କରିଯାଇଛି, ଯାହା କରିବାରେ ଏ ଗାଁର ଝିଅ ହିସାବରେ ସେ ପ୍ରଥମ । ସେତିକି ବେଳେ ଚାରିବର୍ଷ ସେ ପାଠ ପଢ଼ିଛି ନୀଳାମ୍ବର ସହିତ ।

ଆଉ ସମସ୍ତଙ୍କଠାରୁ କେମିତି ଅଲଗା ଲାଗେ ସେ । ଆଖିରେ କେମିତି ଗୋଟାଏ କିଛି ନଥିବାର ଶୂନ୍ୟ ଶୂନ୍ୟ ଭାବ, ପୃଥିବୀଯାକର ସବୁ ବିଷାଦ ସବୁ ଅବସାଦ ତଳେ ତା'ର ତାରୁଣ୍ୟ ହଜିଯାଇଛି ଯେମିତି । ସେଇ ନୀଳାମ୍ବର ଦିନେ ଚାରୁଲତାକୁ ଆଶ୍ଚର୍ଯ୍ୟଚକିତ କରିଦେଇ କଲେଜରୁ ଫେରିବା ବାଟରେ ଅଟକେଇଥିଲା । ଆଉ ତା' ମୁହଁକୁ ଚାହିଁ ସିଧା ପଚାରିଥିଲା– "ତୋ ଜୀବନର ସେମିତି କିଛି ଇଚ୍ଛା ଅଛି, ଯାହା ପୁରା ହୋଇଗଲେ ତତେ ଖୁବ୍ ଖୁସି ଲାଗିବ ?"

ଚାରୁଲତା ହତବାକ୍ ହୋଇଯାଇଥିଲା । କୌଣସି ମଧୁର ସମ୍ପର୍କ ନଥିବା ଜୀବନରେ ତା'ର ଏମିତି ପ୍ରଶ୍ନ ସେ କେବେ ଶୁଣି ନଥିଲା କାହାଠୁ । ଏମିତି କ'ଣ ପଚରା ଯାଇପାରେ ସମବୟସୀ ଝିଅଟିଏକୁ ? କିନ୍ତୁ କାହିଁକି ? ଆଗ ପଛ କିଛି ନାହିଁ, ଆରମ୍ଭ ନାହଁ, ଉପକ୍ରମଣିକା ନାଇଁ, ଏମିତି ପ୍ରଶ୍ନ ହଠାତ୍ ? ଆଉ କେହି ହେଇଥିଲେ ଚାରୁଲତା ହୁଏତ ଭିନ୍ନ ଅର୍ଥ ବୁଝିଥାନ୍ତା । ହେଲେ ନୀଳାମ୍ବର ବିଷୟରେ ସେମିତି କିଛି ଚିନ୍ତା କରାଯାଇ ପାରେନା । ଚାରୁଲତା ତେଣୁ ବେଶୀ ଡେରି ନକରି ପଚାରିଲା– "ତମର ସେଥିରେ କ'ଣ ଯାଏ ଆସେ ?" "ଏଇଟା ମୋ ପ୍ରଶ୍ନର ଉତ୍ତର ନୁହେଁ– ମୋ ପାଖରେ ବେଶୀ ସମୟ ନାହିଁ । ତା'ଛଡା ଏତିକି କଥା ଥରେ କେବଳ ମୋ

ଆଗରେ କହି ଦେଲେ ତୋର କିଛି କ୍ଷତି ହେବ ବୋଲି ମୁଁ ଭାବୁନି ତ” ! ନୀଳାମ୍ବର କହିସାରି ତା’ ମୁହଁକୁ ଚାହିଁଲା । ଚାରୁଲତା ଏଥର ସ୍ପଷ୍ଟ ସ୍ୱରରେ କହିଲା– “ଇଚ୍ଛା, ଗୋଟିଏ ମାତ୍ର ଇଚ୍ଛା ମୋର– ଜ୍ଜେମାଦେଇପୁର ହୋଲି ମେଳଣର ଠାକୁର ବିମାନକୁ ଥରେ ମାତ୍ର ହାତରେ ଛୁଅନ୍ତି– ତେବେ ସେକଥା ଛାଡ଼ । ତୁମେ ବୁଝି ପାରିବନି ।”

ଏତିକି କଥା ଶେଷ ହେବାବେଳକୁ ତା’ ସ୍ୱର ଶୁଭୁଥିଲା କେଉଁ ଦୂର ଆକାଶରୁ ଧୀରେ ଧୀରେ ଓହ୍ଲାଇ ମାଟିକୁ ଛୁଇଁବାର ପୂର୍ବର ଉଲ୍‌କାର କ୍ରମଶଃ କ୍ଷୀଣ ହୋଇ ଆସୁଥିବା ଦ୍ୟୁତି ଭଳି । ତା’ ଆଖିରେ ଜକେଇ ଆସୁଥିବା ଲୁହକୁ ସେ ଲୁଚେଇବାର ଚେଷ୍ଟା କରୁକରୁ ନୀଳାମ୍ବରର ସ୍ୱର ଶୁଭିଲା– “ଆଉ ତା’ ପରେ ତୁ ମୋ କଥା ଶୁଣିବୁ ଥରେ, ମାତ୍ର ଅଧଘଣ୍ଟା ପାଇଁ ।” – କହିଲା ଆଉ ଆଖି ପିଛୁଳାକେ ଉଭାନ୍ ହୋଇଗଲା ତା’ ରାସ୍ତାରୁ ।

ଚାରୁଲତା କେମିତି ଗୋଟେ ନୂଆ ପ୍ରକାରର କମ୍ପିତ ଅନୁଭବକୁ ନେଇ ଧୀରେ ଧୀରେ ଫେରିଥିଲା ଘରକୁ ସେଦିନ । ଏଇଥି ପାଇଁ ଯେ ପୁଣି ଥରେ ତା’ ଭିତରର କେଉଁ ନିବୁଜ କୋଠରୀ ଭିତରୁ ବାହାରି ଆସିବାର ପ୍ରୟାସ କରୁଥିବା ସେଇ ଗୋପନୀୟ ଅଭୀପ୍‌ସାଟିକୁ ସେ ଫେରେଇବାକୁ ଚେଷ୍ଟା କରୁଥିଲା ଯଥା ସ୍ଥାନକୁ । ସେଇ ଚାରିବର୍ଷ ତଳର କଥା, ତା’ ପୂର୍ବରୁ ନୁହେଁ କି ତା’ ପରେ ବି ନୁହେଁ, ନୀଳାମ୍ବର କେବେ ତା’ ସହ କଥା ହେଇନି ଆଉ କୋଉଠି ବି । ନିଜର ଅନେକ ସଚେତନ ଚେଷ୍ଟା ସତ୍ତ୍ୱେ ଯଦିଓ ସେଦିନର ସେ ଘଟଣାକୁ ଚାରୁଲତା ଭୁଲିପାରିନି । ଗାଁ ଭିତରେ ନିର୍ଭୟରେ ଘୂରିବୁଲେ ଚାରୁଲତା, ଗାଁର ଏମୁଣ୍ଡରୁ ସେ ମୁଣ୍ଡ, ସାଆନ୍ତସାହି, ଗଉଡସାହି, ଧୋବାସାହିଠୁ ଭୋଇସାହି ଯାଏଁ । ସାଆନ୍ତସାହିଆଙ୍କ ଘର ଭିତରକୁ ଯିବା ପାଇଁ କେହି କେବେ ତାକୁ ମନା କରିପାରନ୍ତିନି । ଯାଏନି ତ, ସେ ନିଜ ସଙ୍କୋଚରେ ବଡ ହେବା ପରେ, ସବୁ ଜାଣିବା ପରେ ଯିବାକୁ ଭଲ ପାଏନି । ସେ କିନ୍ତୁ ଜାଣିପାରେ, ତାଙ୍କ ସାହି ପଛପଟ ଟୁବି ଗଡିଆରେ ପାହାନ୍ତିଆରୁ ସେ ଗାଧୋଇବାକୁ ଯିବାବେଳେ, ସଂଧ୍ୟାରେ ଅଙ୍ଗନବାଡିରୁ ଏକା ଏକା ଗାଁ ଦାଣ୍ଡରେ ଫେରିବାବେଳେ ବା ରଜ ପୂର୍ବର ବାଉଁଶଦୋଳି ପ୍ରସ୍ତୁତି ବେଳେ ତାକୁ କୋଉଠୁ ନା କୋଉଠୁ ଗୋଟେ ନିରାପଦ ଦୂରତ୍ୱରୁ ଜଗି ରହିଥାଏ ଯୋଡାଏ ସତର୍କ ଆଖି । ସେ ଆଖିର ବଳୟ ଭିତରୁ ସେ ମୁକ୍ତ ହେବାକୁ ନିଜେ ଚାହେଁ କି ନା, ସେ କଥା ସେ ନିଜେ ବି ଜାଣେନା । ଅଥଚ ନୀଳାମ୍ବର କେବେ ଆଗକୁ ଆସେନା, ପାଖରେ ଠିଆ ହୁଏନା । ଚାରୁଲତା ନଥିବାବେଳେ ବୁଢୀ ଜେଜୀର ସୁବିଧା ଅସୁବିଧା ବୁଝି ଦୁଆର ମୁହଁରୁ ଫେରିଯାଏ । ଗାଁ ଲୋକଙ୍କ ପାଇଁ ତା’ର ଏମିତି ପ୍ରକୃତି ଯୋଗୁ ସେ ନୀଳୁଆ ପାଗଳ–ସେଇଟା ଅବଶ୍ୟ ବେଖାତିରରେ ନୁହେଁ, ସ୍ନେହରେ । ହେଲେ ମହାନ୍ତିଙ୍କର ଅନ୍ୟ ଦୁଇ ପୁଅଙ୍କ ପରି ସେ ନୁହେଁ । ନା ଜମିବାଡି କାମରେ ମନ ଦେଲା, ନା ସହରରେ ଯାଇ ଚାକିରି କଲା । ତା’ ବିଷୟରେ ଏଇ ଆଲୋଚନା ହୁଏ । ସେଦିନ ପଲ୍ଲୀସଭାରେ ନୀଳାମ୍ବରର ପ୍ରସ୍ତାବ ଶୁଣି ଗାଁ ଯାକ ଯେତିକି ସ୍ତବ୍‌ଧ ହେଇ ଯାଇଥିଲେ ତା’ଠାରୁ ଆହୁରି ଅଧିକ ବିସ୍ମୟର ମୁହୂର୍ତ୍ତଟିଏ ଅପେକ୍ଷା କରିଥିଲେ ଚାରୁଲତା ପାଇଁ ଏଇ ରାତିରେ । ସେଇଥିପାଇଁ ତାକୁ ଫେରିଆସିବାକୁ ପଡିଲା ତା’ର ନିଜର ଘର ଭିତରକୁ ।

ପଲ୍ଲୀସଭାରେ ଠିକ୍ ହେବା ପରଦିନଠୁ ଚାରୁଲତା ସବୁକାମ ଖୁବ୍ ନିଷ୍ଠାର ସହ କରିଛି । ଠାକୁରଙ୍କ ବିମାନସବୁ କିଏ ମନ୍ଦିର ବେଢାରୁ ଅଗଣାକୁ ଆଣିବ, କୋଉଠି ସୋରିଷ ତେଲ ଦେଇ କାଠକୁ ଠିକ୍‌ରେ ଘଷାହେବ, କୋଉ ବିମାନରେ କୋଉ ରଙ୍ଗର କପଡା ଲାଗିବ, କେମିତି ରଙ୍ଗ ଦେଲେ ସୁନ୍ଦର ଦିଶିବ ବିମାନର ଚୂଡା; ଆଉ ଶେଷରେ ଗଉଡ ସାହିର ଝିଅମାନଙ୍କୁ ରାତି ରାତି

ଲାଗି ଗୀତ ଶିଖେଇବା । ସଂକୀର୍ତ୍ତନିଆଙ୍କ ଜାଗାରେ ଏଥର ରାଧାକୃଷ୍ଣଙ୍କ ରସଗୀତ ଗାଇବେ ଝିଅମାନେ । କେମିତି ସ୍ୱର ଦେଇ ଗାଇଲେ ଦୂର ଗାଁ ବଉଳତୋଟା ଯାଏଁ ଶୁଭିବ ଗୀତର ଲହର । ବାଜା ପାଇଁ ବହିନା ଦେବା, ଫୁଲ ତୋଳେଇ ମାଳ ଗୁନ୍ଥେଇବାଠାରୁ ଆରମ୍ଭ କରି ବ୍ୟାଣ୍ଡ୍ ପାର୍ଟି ଲୋକମାନଙ୍କର ସବୁ ଖବର ଠିକ୍‌ରେ ବୁଝିବା ଯାଏଁ ସବୁର ମୋଟାମୋଟି ବୁଝାବୁଝି କରିଛି ଚାରୁଲତା । ଜେମାଦେଇପୁର ଠାକୁରମାନେ ମେଳଣ ପଡିଆକୁ ବିମାନଯାତ୍ରା କରୁଛନ୍ତି ଏଥର ଗାଁ ସାରା ଝିଅବୋହୂଙ୍କର ଦାୟିତ୍ୱରେ । କିଛି କମ୍ କଥା ନୁହେଁ । ବର୍ଷ ବର୍ଷ ଧରି ଚାଲି ଆସିଥିବା ପରମ୍ପରାକୁ ଭାଙ୍ଗି ଦେଇ ଯେଉଁମାନେ ଭରସା କରିଛନ୍ତି ଏ ଗାଁର ଝିଅବୋହୂଙ୍କ ଉପରେ, ସେମାନେ ଯେମିତି ଧନ୍ୟ ଧନ୍ୟ କହିବେ ।

ବିମାନ ଉଠୁଛି ତ ସାରା ଗାଁର ଝିଅବୋହୂଏ ଦାଣ୍ଡର ଦି'ଧାରରେ ଠିଆ ହୋଇ ଫୁଲ ପକଉଛନ୍ତି । ହରିବୋଲ ଧ୍ୱନି ଦେଉଛନ୍ତି ପୁରୁଷମାନେ । ଗଉଡଘରର ଝିଅବୋହୂମାନେ ହାକୁମ୍ ଧବଲ୍– ଏଇଠି ଖାଲ, ଜୋର୍‌ରେ ଚାଲ' ଗାଇବା ଆରମ୍ଭ କରିଦେଲେଣି । ଶଙ୍ଖ, ହୁଳହୁଳିରେ କମ୍ପି ଯାଉଛି ଶେଷ ବସନ୍ତର ରାତିରେ ଜେମାଦେଇପୁର ଦାଣ୍ଡର ଛାତି ।

ନିଜ ନିଜ ବାରଣ୍ଡା ଉପରେ ଠିଆ ହୋଇଛନ୍ତି ରବି ନାଏକ, ପଦନା ମହାନ୍ତି, ଯଦୁ ମହାପାତ୍ରେ ପ୍ରମୁଖ । ଆଉ ଭକ୍ତି ଭାବରେ କୋହାଚ୍ଛନ୍ନ ସ୍ୱରରେ କେହି କେହି କହୁଛନ୍ତି, 'ଆମ ଠାକୁରେ ଏଥର କେତେ ଶୋଭାମନ୍ତ ଦିଶୁଛନ୍ତି, ଦେଖିବ ଆମ ବିମାନ ଏଥର ଫାଷ୍ଟ ପ୍ରାଇଜ୍ ଆଣିବେ ମେଳଣରୁ ।' ବିମାନସବୁ ଗାଁ ଛାଡି ଧୀରେ ଧୀରେ ନଈ ପଠାକୁ ଆସୁଛନ୍ତି । ଗାଁ ସାରାର ମେଞ୍ଚଡ ପିଲା, କ୍ଷୀର ଛାଡିନଥିବା କୋଳର ଛୁଆ, ଏଥର ହାତରୁ ଦାୟିତ୍ୱ ଛାଡି ନେଇଥିବା ଗୃହସ୍ଥମାନେ ରହିଗଲେଣି ଧୀରେ ଧୀରେ ପଛରେ । ଖାଲି ଯାହା ଦଶ/ବାର ଜଣ ଉତ୍ସାହୀ ଯୁବକ ଆଗେ ଆଗେ ଚାଲିଛନ୍ତି । ସେଇ ପାତଳ ହେଇ ଆସୁଥିବା ଗହଳି ଭିତରେ ଦେଖାଦେଲା ନୀଳାମ୍ବର । ଚାରୁଲତା ସମସ୍ତଙ୍କଠାରୁ ପଛରେ ଗୋଟେ ଅଭେଦ୍ୟ ଦୂରତାରେ ସବୁ ଆଡକୁ ନଜର ଦେଇ ଧୀରେ ଧୀରେ ଚାଲୁଛି ।

ସବୁଠୁ ପଛରେ ଅଛନ୍ତି ଛୋଟିଆ ମନ୍ଦିର ଆକୃତିର ବିମାନଟି ଭିତରେ ରାଧାମାଧବ । ଫୁଲ ବୋଉ ଖୁଡୀଙ୍କ ସାଙ୍ଗରେ ତାକୁ ଉଠେଇଛି ମାଳତୀ । ଚାରୁଲତା ସେଇ ପଛରେ ଚାଲିଛି, ମାଳତୀଟା ହୁଣ୍ଡୀଟା, ତାକୁ ଇ ନଜର ଦେଇଛି ସେ । ନୀଳାମ୍ବର ଆସିଲା ମାଳତୀ ପାଖକୁ– 'ନିଦ ଲାଗୁଛି ଯଦି ଚାରୁଦେଇକୁ ଛାଡୁନୁ, ଏତେ ବଙ୍କେଇ ବଙ୍କେଇ ପାଦ ପକଉଛୁ କ'ଣ, ସମସ୍ତେ କେତେ ଆଗରେ ହେଲେଣି' ମାଳତୀକୁ ଚାହିଁ ଏତିକି କହିଲା ସେ । ମାଳତୀ ଅପେକ୍ଷା କରିଥିବା ପରି ଭାରାକୁ ଉଠେଇ ରଖିଦେଲା ଚାରୁଲତା କାନ୍ଧରେ ! ଏତିକି କଥା ବୁଝିପାରିଲାନି ଗଉଡ ଘରର କିଶୋରୀ ମାଳ !!

ଚାରୁଲତାର ସମଗ୍ର ଶରୀର ରୋମାଞ୍ଚିତ ହୋଇଗଲା– ତା'ର ମନେହେଲା ସେ ମୂର୍ଚ୍ଛା ଯିବ କି ଆଉ ! କି ଅଦ୍ଭୁତ ପ୍ରକାର ଭାବାବେଶରେ କମ୍ପିଉଠିଲା ତା'ର ସମଗ୍ର ଶରୀର ! ଭୁରୁ ଭୁରୁ କଷି ଆମ୍ବର ବାସ୍ନା ସତେ ଯେମିତି ଫେଣ୍ଟି ହୋଇଗଲା ତା'ର ସମଗ୍ର ସତ୍ତାରେ । ରାଧାଗୋବିନ୍ଦଙ୍କ ପାଦତଳରୁ ଝରିପଡ଼ିଲା ତା'ର ଲମ୍ବା ବେଣୀ ଉପରେ ମୁଠାଏ ଅବିର ।

"ହେ ହେ ଇଏ କ'ଣ କରୁଛ ମାଳ– ଯାହା କଲୁ କଲୁ ଆଉ କାହା ଆଗରେ କହିବୁନି, ସବୁ ସାରିଦେଲୁ ।" ଏକ ପ୍ରକାର ଅସ୍ପଷ୍ଟ ଚିତ୍କାର କରି ଉଠିଲା ଆର ପଟର ଭାରା କାନ୍ଧରେ ଧରିଥିବା ଫୁଲ ବୋଉ । ମାଳ ତରବରରେ ଜିଭ କାମୁଡି ନିଜକୁ ସଜାଡି ନେଲା ଯଥା ସ୍ଥାନରେ ।

ସେତେବେଳକୁ ନୀଳାମ୍ବର ଆଉ ଆଖପାଖରେ ନଥିଲା । ତା' ପରଠୁ ଚାରୁଲତା ଆଉ କାହା ସହ ବିଶେଷ କଥାବାର୍ତ୍ତା ହୋଇନି । କୋଉ ସୂକ୍ଷ୍ମସୂତ୍ରରେ ସେ ନିଜ ଭିତରେ ଗୋଟେଇ ନେଇଚି ସେଇ କ୍ଷଣିକର ମହାର୍ଘ ଅନୁଭବ । ସତେ ଯେମିତି ତା'ର ଜନ୍ମ ଜନ୍ମାନ୍ତରର ପରିବର୍ତ୍ତନ ହେଇଯାଇଛି । ଆଉ ବେଶି କିଛି କଥା କହିଦେଲେ ଟିକିଏ ଫାଙ୍କରେ ତା' ଦେହରୁ ସତେ ଅବା ଖସି ଯିବ ସେ ଅନୁଭବର ସ୍ପର୍ଶ । ଖାଲି କେମିତି ମେଳଣ ପଡିଆରେ ବିମାନମାନଙ୍କୁ ସୁବିଧାରେ ପହଞ୍ଚେଇ ଦେଇ ସେ ଫେରିଆସିବ ତା'ର ନିଜର ପୃଥିବୀକୁ ।

ଭାରି ଯତ୍ନରେ ଏବେ ସେତକ କଥା ଆଉ ଥରେ ମନେ ପକାଇ ନିଜ ଦେହମୁଣ୍ଡ ଆଉ ଶେଷରେ ବାଁ କାନ୍ଧରେ ଠିକ୍ ବ୍ଲାଉଜ୍‌ର ହାତ ଜାଗାରେ ଅଟକିଗଲା ତା'ର ଆଙ୍ଗୁଠି । ହଁ ଏଇଠି ଏବେ ବି କର୍ପୁର ପରି ବାସ୍ନା କିଛି ଆସୁଛି ତା' ଦେହରୁ । ଏବେ ଫଗୁ ଅବିରର ରଙ୍ଗ ତା' ମୁହଁରେ, ଆଉ ମଥାର କେଶରେ ।

ଆଜକୁ ଚାରିବର୍ଷ ତଳେ ଏତିକି ଇଚ୍ଛା ସେ ଯେତେବେଳେ ପ୍ରକାଶ କରିଥିଲା ଗୋଟେ ଅଦ୍ଭୁତ ପରିସ୍ଥିତିରେ ନୀଳାମ୍ବର ଆଗରେ, ସେତେବେଳେ ସେ ଜାଣିଥିଲା ତା'ର ଅପହଞ୍ଚ ଏ ସ୍ୱପ୍ନ ଅନ୍ତତଃ ଏ ଅଭିଶାପଗ୍ରସ୍ତ ଜୀବନରେ କେବେ ଛୁଇଁବାର ଭାଗ୍ୟ ନାହିଁ । ଏତିକି ଇଚ୍ଛାର ପଛରେ ଥିଲା ତା' ଭିତରର କ୍ଷୋଭ, ଯୁଗ ଯୁଗର ବାଡବଂଧକୁ ଭାଙ୍ଗିଦେବାର ମାନସିକତା– ସେ କଥା ସେ ଆଜି ହିଁ ବୁଝୁଛି । ଅଥଚ ଏତିକି କଥା ପାଇଁ କେତେ ଈର୍ଷା ଆସିନି ତା' ମନରେ, ତା'ର ସମଗ୍ର ବାଲ୍ୟକାଳ ଓ କୈଶୋରକୁ ଆଚ୍ଛନ୍ନ କରି ରଖିଛି କେତେ ଯେ ସ୍ୱପ୍ନ, ଏଇ ଟିକକ କଥାରେ ଆଜି କେତେ ପରିପୂର୍ଣ୍ଣତାର ଜୀବନ !

ସେତିକି କଥା ନିଜ ଭିତରେ ନିଜକୁ ବାରମ୍ବାର ଆଜି ସେ ଶୁଣେଇବ, ଝର୍କା ବନ୍ଦ କରିବାକୁ ଉଠିଲା ସେ – ଏ କ'ଣ ଝର୍କା ଆର ପାଖରେ ଉଜ୍ଜ୍ୱଳ ଜ୍ୟୋସ୍ନାକୁ ପଛ କରି ଠିଆ ହେଇଛି ନୀଳାମ୍ବର ! ନା, ତା'ର ଦୀର୍ଘ ଶ୍ୟାମଳତନୁର ଛାୟାକୁ ଚିହ୍ନିବାର ସେ ଭୁଲ୍ କରିନି । ନୀଳାମ୍ବର ସେଇ ଝରକା ବନ୍ଦ କରିବାକୁ ଆରପଟକୁ ଲମ୍ବିଯାଉଥିବା ଚାରୁଲତାର ହାତକୁ ଧରି ଖୁବ୍ ଧୀରେ କହିଲା– 'କହିଥିଲି ନା ମତେ ଅଧଘଣ୍ଟା ସମୟ ଦେବୁ । ଚାରୁଲତା ଏବେ କାହାରି ଦ୍ୱାରା ତା'ର ଭିତରର ଚମତ୍କାର ଅନୁଭବର ଅପହରଣକୁ ସହ୍ୟ କରିବାକୁ ଚାହୁଁନଥିଲା– ଏମିତିକି ନୀଳାମ୍ବର ଦ୍ୱାରା ବି ନୁହେଁ । ଏବେ ନୀଳାମ୍ବରକୁ ଜଣାଇବାକୁ ପଡିବ କୃତଜ୍ଞତା । ସେ ହିଁ ତ ମାଧ୍ୟମ; ତା'ର ଜୀବନଭରି କିଛି ନଥିବା ପାତ୍ରରେ ଆଜି ଯାହା କିଛି ଝରି ଆସିଛି ଅମୃତ, ସେ ସବୁ ପଛରେ କେବଳ ନୀଳାମ୍ବରର ରହସ୍ୟମୟ ବ୍ୟବହାର ହିଁ ତ କାରଣ । ତା'ର ଉଦ୍ଦେଶ୍ୟକୁ ତେଣୁ ସନ୍ଦେହ କରାଯାଇପାରେନା । ସେମିତି ବିଭୋର ତଲ୍ଲୀନତା ଭିତରେ ଚାରୁଲତା କବାଟ ଖୋଲି ଦେଲା । ଘରସାରା ପୂର୍ଣ୍ଣମୀର ଜ୍ୟୋସ୍ନା ବିଛେଇ ପଡିଲା । ଚାରୁଲତା ସେ ଆଡେ ଦୃଷ୍ଟି ନ ଦେଇ କହିଲା– 'କ'ଣ କହିବ ଶୀଘ୍ର କୁହ' । ନା, ଏତେ ଟିକିଏ କମ୍ପ ନଥିଲା ଏବେ ତା'ର ସ୍ୱର । କେବଳ ଯାହା ଭୟଙ୍କର ଆଲୋଡନ, ଅସ୍ଥିରତା ତାକୁ ଉଦ୍‌ବେଳିତ କରୁଥିଲା । 'ଠିକ୍ ଅଛି ମତେ ଦଶ ମିନିଟ୍ ସମୟ ଦେଇ ପାରିବୁ ?' ନୀଳାମ୍ବରର ପ୍ରଶ୍ନ ପୁଣି ଥରେ । 'କୁହ' – ଖଟ ଉପରେ ବସି ପଡିଲା ଚାରୁଲତା । ନୀଳାମ୍ବର ଠିଆ ହେଲା ଆସି ତା'ର ଖୁବ୍ ପାଖରେ । ପକେଟ୍ ଭିତରୁ ନୂଆ ଷ୍ଟିକରମରା ଛୋଟ ଆଇନାଟିଏ ବାହାର କରି ତା' ସାମ୍ନାରେ ଦେଖେଇଲା । "କିଛି ଦେଖିପାରୁଛୁ, ଏବେ ଦେଖି ମୁହଁ ଉଠେଇ ମୋ ମୁହଁକୁ, ଚାହଁତ ଭଲ କରି ଆଖିକୁ ଚାହାଁ । ପରମୁହୂର୍ତ୍ତରେ ସେ

ଚାରୁଲତାର ମୁହଁକୁ ନିଜର ଦୁଇ ପାପୁଲିରେ ଉଠାଇ ଧରିଲା ପରମ ଆଦରରେ, ତା' କପାଳରେ ଓଠ ଛୁଆଁଇ ଦେଇ କହିଲା– "ଚାରୁ, ତୁ ଶଙ୍କର ଭୋଇ ଝିଅ ହୋଇ ପାରିବୁନି କେବେ ବି; ତୁ ମହାନ୍ତି ଘରର ଝିଅ, ମଧୁ ମହାନ୍ତିଙ୍କର ବଡ ଝିଅ । ଏତକ ଜାଣିବା ପାଇଁ ମୋ ଲମ୍ପଟ ବାପାର ମୃତ୍ୟୁପୂର୍ବର ଶେଷ ସ୍ୱୀକାରୋକ୍ତିକୁ ଅପେକ୍ଷା କରିବା ମୋର ଦରକାର ନାହିଁ । ମୋ ଭିତରେ ବହୁଥିବା ରକ୍ତ ତୋ ହୃଦୟ ଭିତରେ ନିତିପ୍ରତି ଶୁଦ୍ଧ ହେଉଥାଏ, ଏଇ ସତ୍ୟ ମୋତେ ମୋର ଅନ୍ତର୍ଦୃଷ୍ଟି ଜଣେଇ ଦେଇଛି । ମୋର ଷଷ୍ଠ ଇନ୍ଦ୍ରିୟ, ମୋ ହୃଦୟର ସବୁ ଅସନ୍ତୋଷ ମତେ ଏଇୟା ହିଁ କହୁଥାଏ ପ୍ରତି ମୁହୂର୍ତ୍ତରେ । ସାରା ପୃଥିବୀରେ ଆଉ କେହି ଜାଣୁ କି ନଜାଣୁ, ତୁ ଏକଥା ଜାଣିବା ମୋ ପାଇଁ ଜରୁରୀ ।" ସେ ବାହାରିଗଲା ପବନ ବେଗରେ ।

ନୀଳାମ୍ବର ତାକୁ ଛୁଇଁଲା, ତା' ସ୍ନେହହୀନ ଜୀବନରେ ତାକୁ କେହି କେବେ ଚୁମା ଦେଇନି । ତା' ସ୍ପର୍ଶରେ ଏତେ ସ୍ନିଗ୍ଧ ଶୀତଳତା ଯେ ଚାରୁଲତାର କ୍ଷଣିକରେ ମନେହେଲା ସବୁ ବଦଳିଯାଉଛି । ସବୁ ଚିତ୍ର, ସବୁ ରୂପକ, ସବୁ ବଦଳି ଯାଇଛି ତା' ପୃଥିବୀରେ, ଏଇ କଥା ବିଶ୍ୱାସ କରିବାକୁ ଚାହିଁଲା ବେଳେ ପୁଣିଥରେ ଯୁଗପତ୍ ହତାଶାବୋଧ ତାକୁ ନୀରବ କରିଦେଲା । ଅଳ୍ପ ସମୟ ପୂର୍ବର ତା' ଭିତରର ରୋମାଞ୍ଚ, ପୁଲକ, ସବୁ ବିଲୁପ୍ତ ହେଇ ଯାଉଥିଲା କେଉଁ ପ୍ରାଗୈତିହାସିକ ଯୁଗରୁ ସେ ବଞ୍ଚିତ ହୋଇ ଯାଇଥିବା ଦାବୀର ଅଧିକାର ଆଉ ପ୍ରାପ୍ତିର ତାଲିକା ତଳେ । ତା' ଭିତରର ଅପସୃୟମାଣ ନ୍ୟୁନମନ୍ୟତା ଏବେ ଧୀରେ ଧୀରେ ଅଦ୍ଭୁତ ଦହନ ପ୍ରକ୍ରିୟାରେ ତାକୁ ରୂପାନ୍ତରିତ କରୁଥିଲା ସାମଗ୍ରୀକ ଭାବରେ । ରହି ରହି ଏବେ ଗୋଟିଏ ପ୍ରଶ୍ନ ତାକୁ ଅଥୟ କରୁଥିଲା– କାହିଁକି ଆସୁଥିଲା ନୀଳାମ୍ବର ? କାହିଁକି ?



# ବଇଁଶୀବାଦକ ଓ ହଡ଼ାବଳଦର କାହାଣୀ

## ଅନୀଲ କୁମାର ପାଢ଼ୀ

ମୋର ମନେହୁଏ ଏମିତି ଗୋଟିଏ କାହାଣୀ ନଲେଖିଲେ ମୁଁ ବୋଧେ ମୋ ସହିତ ସଂପୃକ୍ତ ଅନେକ ଚରିତ୍ରମାନଂକ ପ୍ରତି ଅବିଚାର କରିବି । ମୋ ନିଜ ପ୍ରତି ବି !! ଇଏ ଗୋଟାଏ କାହାଣୀ କି ଆତ୍ମକାହାଣୀ କେଜାଣି !

ଏ କାହାଣୀର ନାୟକ ମୋହନର ଗଲା ଦୁଇଦିନ ତଳେ, ସେପ୍ଟେମ୍ବର ସତର ତାରିଖ ଦୁଇହଜାର ଏକ ମସିହାରେ ଦେହାନ୍ତ ହୋଇଗଲା । ମୋ ଛଡ଼ା ଆଉ କାହା ପାଇଁ ଇଏ ଆଶ୍ଚର୍ଯ୍ୟ ଖବରଟେ ବି ନୁହଁ । କେଉଁ ଖବରକାଗଜ ପୃଷ୍ଠାରେ ଏମିତି ଖବରଟେ ସ୍ଥାନ ପାଇନାହିଁ କି ରାଷ୍ଟ୍ରୀୟ ଶୋକ ପାଳନ ଅବସରରେ ନିଜର ସଦା ହାସ୍ୟମୟ, ଲାସ୍ୟମୟ ଚେହେରା ଉପରେ ଜବରଦସ୍ତ ଶୋକର ଛାୟା ଖେଳେଇ ସମ୍ବାଦ ପରିବେଷଣ କଲାପରି କେହି ସଂବାଦ ପାଠିକା ସେମିତି ମୁଦ୍ରାରେ ମଧ୍ୟ ପରିବେଷଣ କରିନାହାନ୍ତି । କେଉଁ ସନ୍ତ୍ରାସବାଦୀର ବୋମା ବିସ୍ଫୋରଣରେ ଅବା ମର୍ମନ୍ତୁଦ ସଡ଼କ ଦୁର୍ଘଟଣାରେ ମୋହନର ମୃତ୍ୟୁ ହୋଇନାହିଁ । ସେ ଗୋଟାଏ ସ୍ମଗଲର ନଥିଲା କି ନଥିଲା ବିନ୍-ଲାଡେନ୍ ଗୋଷ୍ଠୀର ଆତ୍ମଘାତୀ କେଉଁ ହ୍ୟୁମାନ୍ ବମ୍ । ମୋହନ ଖାଲି ମୋହନ ନ ହେଇ ହେଇପାରେ ପାଗଲା ମୋହନ କି ବଇଁଶୀ ବାଦକ ମୋହନ ।

ଗାଁ ଛାଡ଼ି ଭୁବନେଶ୍ୱରରେ ଚାକିରି କଲାଠାରୁ ଆମ ଗାଁର ଅନେକ ଲୋକ ମଲେଣି । ଗଣ୍ଡୁଆ ବାପା, ଉପ ଦଦେଇ, କାର୍ତ୍ତିକା ମା', ଜଗଦାଦି, ଶିବ ଦାଦି, ସାନବାପା ଆଉ ସର୍ବୋପରି ମୋ' ବୁଢ଼ୀ ମା' । ହେଲେ ମୋହନର ମରିବାଟା ମୋତେ ଏତେ ପରିମାଣରେ ହଲେଇ ଦେଉଛି କାହିଁକି ! ଖୋଜାଲୋଡ଼ାରେ ବି ମୋହନର ପରିବାର କେବେ ଆମର ସମ୍ପର୍କୀୟ ନଥିଲେ । ଲେଖାଯୋଖାର ଭାଇ କି ପୁତୁରା ବି ନୁହେଁ । ହେଲେ ମୋହନର ମରିବା ଖବର ପାଇଲା ପରେ ମୋତେ ଲାଗୁଛି ମୋ' ଭିତରେ ମୋ' ପ୍ରତିଶ୍ରୁତିବଦ୍ଧତାର ଯେମିତି ବିଳୟ ଘଟିଯାଇଛି ।

ମୋହନ ଜଣେ ବଇଁଶୀ ବାଦକ । ହୁଏତ 'ବଂଶୀ-ବାଦକ' କହିଲେ ମୁଁ ତାକୁ ଅପମାନିତ କରିବି । 'ବଇଁଶୀ' ଆଉ 'ବଂଶୀ'ର ପ୍ରୟୋଗାତ୍ମକ ଅର୍ଥ ନେଇ ମୋ' ଭିତରେ ଅନେକ ଯୁକ୍ତି ପରେ ପାଗଲା ମୋହନ ମୋ' ପାଇଁ ଖାଲି ଜଣେ ବଇଁଶୀ ବାଦକ ହୋଇ ରହିଯାଇଛି । ସେ କେଉଁ ଅର୍କେଷ୍ଟ୍ରା ପାର୍ଟି ବା ଆକାଶବାଣୀର ସ୍ୱୀକୃତିପ୍ରାପ୍ତ ଶିଳ୍ପୀ ନଥିଲା । ତା'ର କେହି ଗୁରୁ ଫୁରୁ ନଥିଲେ । ସେ 'ତାଳ' ବା 'ରାଗ'ର ଅର୍ଥ ବୁଝୁ ନଥିଲା । ମୁଁ ଗାଁ ଛାଡ଼ିବା ଆଗରୁ ମୋହନ ଆମ ଗାଁ ରାଧାମୋହନଂକ ମନ୍ଦିର ଆଗରେ ବଇଁଶୀ ବଜେଇବା ଆରମ୍ଭ କରିଥିଲା । ନିଇତି ସଂଜରେ ତା' ବଂଶୀର ସ୍ୱର ଝଂକୃତ ହୁଏ । କ୍ରମଶଃ ବହଳିଆ ହୋଇ ଆସୁଥିବା ଅଂଧାରର ଛାତି ଉପରେ ଚୁନିଚୁନି ଢେଉ ହୋଇ ସେ ସ୍ୱର ପହଂଚି ଯାଏ ପ୍ରତି ଘରର ଅଗଣାରେ । ମା' କାନ୍ଧ ଉପରେ ଅବୁଝା କାନ୍ଦୁରା ପିଲାଟା କିଛି ସମୟ ଚୁପ୍ ହୋଇଯାଏ । ଚୁପ୍ ହୋଇଯାଏ ଆମ ପାଣୁଆ ବାଡ଼ି ବାଉଁଶ ଗଛର ସାଇଁସାଇଁ । ଲାଗେ, ବହୁତ ଦୂର କେଉଁ ଅଜଣା ଆକାଶର ଅଦେଖା କୋଣରୁ ଭାସିଆସୁଛି ସେ ସୁଲଳିତ ସ୍ୱର !!

ମୋହନ ବଇଁଶୀ ବଜାଏ । କାହିଁକି ବଜାଏ ପଚାରିଲେ ହସେ । ସେ ହସର ଅର୍ଥ କିଛି ବୁଝା ପଡ଼େନା । କେମିତି କେଜାଣି ତା' ସଂପ୍ରସାରିତ ଓଠ ସନ୍ଧିରେ ଲୁଚି ରହି ଦାନ୍ତ ସବୁ ଜଣେଇ ଦିଅନ୍ତି ସେମାନେ ବି ଏ ହସର ଅଂଶୀଦାର । ମୋହନର ହସକୁ ଧରି ରଖିବା ପାଇଁ ଯଦି ସେତେବେଳେ ମୋ' ପାଖରେ କ୍ୟାମେରା ଥା'ନ୍ତା,ତେବେ ଆଜି ହୁଏତ କେହି କେହି ଦାର୍ଶନିକ ସେ ହସର ବିନ୍ୟାସ କରୁ କରୁ କହିଥାନ୍ତେ 'ଇଏ ମୋନାଲିସାର ହସଠାରୁ ବି ଆହୁରି ରହସ୍ୟମୟ । ମୋହନର ହସ ଯେତେବେଳେ ସଂକ୍ରମିତ ହୋଇ ପାର ଆଈର ଓଠ ଉପରକୁ ଭାସିଆସୁଥିଲା ସେତେବେଳେ ସେ ହସ ଆହୁରି ମାର୍ମିକ ଆଉ ରହସ୍ୟମୟ ହୋଇଉଠୁଥିଲା । ପାର ଆଈ ଆମ ଗାଁ ବୈକୁଣ୍ଠିଆର ଜେଜେମା । ତା'ର ବୟସ କେତେ ଆମେ ପିଲାଏ କଳନା କରିନଥିଲୁ । ତା' ପାଟିରେ କିନ୍ତୁ ଗୋଟାଏ ବି ଦାନ୍ତ ନଥିଲା । କେଉଁ ବୈଷ୍ଣବ ଦୀକ୍ଷା ନେଇଥିଲା ଯେ ବେକରେ ସାମାନ୍ୟ ହୁଗୁଳା ତୁଳସୀ ମାଳାଟେ ପକାଉଥିଲା । ଦି' ବାହୁରେ ଆଉ କପାଳରେ ଚିତା ଚଇତନ ଲଗାଉଥିଲା । ଦିନଯାକ ଆମେ ତାକୁ 'ରାଧାକୃଷ୍ଣ, କୃଷ୍ଣ କୃଷ୍ଣ ହରେ ହରେ' କରୁଥିବାର ଶୁଣୁଥିଲୁ ।

ରାଧାମୋହନଂକ ମନ୍ଦିର ବେଢ଼ାରେ ପାର ଆଈକୁ ପ୍ରାୟ ଦେଖିବାକୁ ମିଳୁଥିଲା । ବୋଉ କହୁଥିଲା 'ବୁଢ଼ୀର ପୁଅ ତାକୁ ଦି'ଓଳି ଖାଇବାକୁ ଦଉନି । ପିଟାମରା କରୁଛି ।' ବୋଧେ ସେଇଥି ପାଇଁ ସେ ରାଧାମୋହନଂକ ବେଢ଼ାକୁ ତା'ର ନିରାପଦ ଆଶ୍ରୟସ୍ଥଳ ବୋଲି ବାଛି ନେଇଥିଲା । ପ୍ରତିଦିନ ସଂଜରେ ପାର ଆଈ ମୋହନ ପାଖରେ ବସି ଶୁଣେ ବଇଁଶୀ । ପାକୁଆ ପାଟିରେ ପ୍ରାଣଖୋଲା ହସ ହସେ । କେତେ ସମୟ ପାଇଁ ବଇଁଶୀର ସ୍ୱନ ସହ ପାର ଆଈ ହସର ନିସର୍ଗ, ନିଶବ୍ଦ ହସ ମିଶି ସୃଷ୍ଟି ହୁଏ ଆଉ ଏକ ଶବ୍ଦର ରସାୟନ । ଯେମିତିକି ଗୋଟାଏ ଶବ୍ଦ, ଆଉ ଗୋଟାଏ ତାଳ, ଗୋଟାଏ ଘୁଂଗୁର ପିନ୍ଧା ପାଦ ଆଉ ଗୋଟାଏ ଛନ୍ଦ !!

ହଁ, କହୁଥିଲି ନା ମୋହନ ବଇଁଶୀ ବଜାଏ ଆଉ ପାର ଆଈ ଝଲକାଏ ହସର ପୁରସ୍କାର ଟୋକି ଧରେ ମୋହନ ଆଗରେ ! ରାଧାମୋହନ ମନ୍ଦିରର ପୂଜାରୀ ଶଂକନ୍ନା ସଂଧ୍ୟା ଆରତୀ ବଢ଼େଇ ବାହୁଡ଼ିଲା ପରେ ବାହାର ଚଉତରା ଉପରେ ଦୁଇ ଆଣ୍ଠୁରେ ଭରାଦେଇ ବସେ ମୋହନ । ପହଡ଼ ପଡ଼ି ସାରିଥିବା ରାଧାମୋହନଂକ ବିଗ୍ରହ ଆଡ଼େ ଅନେଇ ପ୍ରଣାମ ଭଂଗୀରେ ହାତ ଉଠାଏ । ଓଠରେ ଲଗାଏ ବଂଶୀ । ଆମ ଦାଣ୍ଡପିଣ୍ଡାର ବିଦ୍ୟାଧର ଭାଇ ଘର ଆଡ଼କୁ ପଡ଼ିଥିବା ଖଟ ଉପରେ ବସି ସେ ସ୍ୱର ମୁଁ ଶୁଣେ, ବହୁବାର । ଯେତେଥର ଶୁଣେ, ମୋର ମନ୍ଦିରଠାରୁ ବେଶୀ ମନେପଡ଼େ ଉଦିତ ପାଣିଗ୍ରାହୀର ଘର ଆଡ଼କୁ ନଇଁ ପଡ଼ିଥିବା ମନ୍ଦିର ସଂଲଗ୍ନ ବରଗଛର କଥା । ମନ୍ଦିରର ଚଉତରା ଉପରେ ବାସୁକୀ ପରି ଢାଂକି ଯାଇଥାଏ ଗଛର ଡାଳ-ପତ୍ର । ପତ୍ରମାନଙ୍କର ମନ୍ଦ ମନ୍ଦ ଛନ୍ଦ ସହ ମିଶି ସେ ବଇଁଶୀର ଅଜଣା ରାଗ ଆଉ ପାର ଆଈର ହସ ରାତିର ସେ ଅଦୃଶ୍ୟ ପ୍ରହରରେ କାହାକୁ ଆହ୍ୱାନ ଦିଏ କେଜାଣି ! ହେଲେ, ଆଉ ଗୋଟିଏ ଆଚମ୍ବିତ କଥା ବି ସେଇଠି ଘଟେ । ସେ ବରଗଛରେ ରହନ୍ତି ଗୋଟାଏ କପୋତ ଦମ୍ପତି । ସେ ବିଷୟରେ କଥାଟିଏ ବି ଲୋକକଥାରେ ପରିଣତ ହୋଇଯାଇଛି ଆମ ଜଡ଼ିଦା ଗାଁରେ । ମୋ' ବୁଢ଼ିମା'ର କହିବା ଅନୁସାରେ ତା' ଭୁଆସୁଣୀ ବେଳ ନୁହେଁ, ତା' ଶାଶୁ ପଣଶାଶୁ କି ଅଣଶାଶୁ ଅମଳରୁ ସେଇ କପୋତ କପୋତୀ ବସାବାନ୍ଧି ରହିଆସିଛନ୍ତି ସେମିତି ସେଇ ଗଛ ଡାଳରେ । ଇଏ ବର୍ଷ ବର୍ଷର କଥା- ବରଗଛଟା ବି ସେମିତି ବୁଢ଼ାବୁଢ଼ା ଲାଗେ । ଅଧିକନ୍ତୁ କପୋତ କପୋତୀମାନେ କେତେବର୍ଷ ବଂଚନ୍ତି ବା ଏବେକାର କପୋତ କପୋତୀ ଯୋଡ଼ାକ ଯେ ସେହି କପୋତ କପୋତୀ, ଏସବୁ ବିଷୟରେ ଧାରଣା ବା ତର୍କ କରିବାର ବୟସ ସେତେବେଳେ ମୋର ନଥିଲା ।

ପିଲାବେଳେ ଅନେକ ଥର ସେ ପକ୍ଷୀ ଦମ୍ପତି ମୋ' ନଜରକୁ ଆସିଛନ୍ତି । କେବେ ଚଂଚୁରେ ଚଂଚୁ ଘଷିବାର ଦୃଶ୍ୟ ଦେଖିଛି ତ କେବେ ପାଖାପାଖି ବସି ପରସ୍ପରକୁ ବିମୋହିତ ହୋଇ ଚାହିଁବାର ଦୃଶ୍ୟ ଦେଖିଛି । ଏମିତି ଗୋଟାଏ କାହାଣୀ ସେମାନଙ୍କ ସହ ଜଡ଼ିତ ହେବା ଦୃଷ୍ଟିରୁ କି କଅଣ ସେମାନେ ମୋତେ ସ୍ୱତନ୍ତ୍ର ସ୍ୱତନ୍ତ୍ର ଲାଗିଛନ୍ତି । ଖାଲି ମୋ' ପାଇଁ ନୁହେଁ, ରାଧାମୋହନ ମନ୍ଦିର ଆଡ଼େ ଗଡୁଥିବା ସବୁ ଭକ୍ତମାନଙ୍କ ପାଇଁ ବି ସେମାନେ ସ୍ୱତନ୍ତ୍ର । ସେଥିପାଇଁ ରାଧାମୋହନଙ୍କ ପାଖରେ ଅନ୍ନ ଭୋଗ ସରିଲା ପରେ ଶଂକନ୍ନା ଗୋଟାଏ କଦଳୀ ପତ୍ରରେ କିଛି ଅନ୍ନ ଗଛ ତଳେ ଥୋଇ ଦେଇ ଆସେ । ଏ ପରମ୍ପରା ବି ଆମ ଗାଁର ବହୁ ପୁରାତନ । କେବେ କେବେ ସେ ଭୋଗକୁ ବୁଲା କୁକୁରମାନେ ଖାଇଗଲେ ଏଥିନେଇ ପ୍ରଶ୍ନ ଉଠେଇବାର 'ସ୍ୱ' କାହାଠି ନାହିଁ । ଥରେ ଏକଥା କୁହନ୍ତେ ବୋଉଠାରୁ ଢେର ମାଡ଼ଗାଳି ଖାଇଥିଲି ।

ମୋହନର ବଂଶୀ ଶୁଣିଲେ ମୋ' ଆଖି ଯୋଡ଼ାକ ମୋ'ଠୁଁ ଅଲଗା ହୋଇ ବର ଗଛର ଓହଳ ଧରି ପହଂଚିଯାନ୍ତି କପୋତ-କପୋତୀଂକ ପାଖରେ । ମୋହନ, ପାର ଆଈ ଆଉ ସେ କପୋତ ଦମ୍ପତିଂକୁ ନେଇ ମୋ ଅଜାଣତରେ ମୋ ଭିତରେ ଗୋଟାଏ ସଂପର୍କର ତ୍ରିଭୂଜ ଆଂକି ହେଇଯାଏ । ଗର୍ଭୀଣି ସଂଜର ଅଂଧାର ଭିତରେ ସେ ପକ୍ଷୀ ଯୋଡ଼ାକ ସତରେ କରନ୍ତି କ'ଣ ! ପାର ଆଈ ପରି ହସନ୍ତି ! ନା, ଗୋଟାଏ ଅଭିନବ ପାଗଳାମିରେ ଆତୁର ହୋଇଉଠନ୍ତି !! କେଜାଣି ! ଏପରି ଅନେକ ପ୍ରଶ୍ନ ରାତି ହେଲେ ମୋତେ ନୟାନ୍ତ କରେ । ମୋ' ଆଠବର୍ଷର ସାନଭାଇ ବାପି ବେଳେବେଳେ ମୋ' ପାଖରୁ ଏ କାହାଣୀ ଶୁଣେ । ମୋତେ ପଚାରେ,'ତା'ପରେ କ'ଣ ହେଲା ଟିକନ୍ନା !' ମୁଁ ବିରକ୍ତ ହୁଏ । କପୋତ-କପୋତୀ, ମୋହନ ଆଉ ପାର ଆଈଙ୍କୁ ନେଇ ମୋର ଜ୍ଞାନ ବାପିଠାରୁ କିଛି ଅଧିକ ନୁହେଁ । ମୋହନର ବଇଁଶୀ ଶୁଣିଲେ ଗୋଟାଏ ଅତିଭୌତିକ କାହାଣୀ ଶୁଣିବା ଲୋଭରେ ବାପି ମୋତେ ସେ ପ୍ରଶ୍ନ ବରାବର ପଚାରେ । ସେହି ପ୍ରଶ୍ନଟି ରାତିରେ ବୁଢ଼ିମା ପାଖରେ ଶୋଇଲାବେଳେ ମୁଁ ଉଠାଏ । ସତ ହେଉ କି ମିଛ, ବୁଢ଼ିମା କହେ ଯେ ଯେତେବେଳେ ନିଶା ଗରଜେ ସାଇଁ ସାଇଁ, ସବୁ ମଣିଷ, ପଶୁ, ପକ୍ଷୀ, କୀଟପତଙ୍ଗ ନିଦେଇ ଯା'ନ୍ତି, ଠିକ୍ ସେଇ ଶୂନ୍‌ଶାନ୍ ବେଳାରେ ମଣିମୁକ୍ତା ଖଚିତ ରଥଟିଏ ଓହ୍ଲେଇ ପଡ଼େ ରାଧାମୋହନ ମନ୍ଦିର ବେଢ଼ାରେ । ବରଗଛଟା ପାଲଟି ଯାଏ କଦମ୍ବ ଗଛ । ମନ୍ଦିର ପୋଖରୀ ହୋଇଯାଏ ଯମୁନା ନଈ । ମନ୍ଦିର ବେଢ଼ା ପରିଣତ ହୋଇଯାଏ କୁଂଜବନରେ । ସେଇ ସମୟରେ କପୋତ-କପୋତୀ ତାଂକ ବାହ୍ୟ ରୂପ ଛାଡ଼ି ଅସଲ ରୂପରେ ପାଦ ଦିଅନ୍ତି ମନ୍ଦିରର କୁଂଜବନରେ । ରାଧା ଆଉ କୃଷ୍ଣ । ସେଠି ବହୁ ସମୟ ଚାଲେ ରାସଲୀଳା । ଏସବୁ ଚର୍ମ ଆଖିରେ ଦର୍ଶନ କରି ପକାଇ ଥିବାରୁ କେବେ କାହାର ମୃତ୍ୟୁ ହୋଇଥିଲା ତା'ର ହିସାବ ମଧ୍ୟ ବୁଢ଼ିମା ଦିଏ । ପାର ଆଈ ବିଷୟରେ ପଚାରିଲେ ବୁଢ଼ିମା ରହସ୍ୟମୟ ହସଟେ ହସେ । କହେ 'ସେଇଟା ପରା ଚୈତନ୍ୟ ମହାପ୍ରଭୁ ! ସେ ନିଜେ ଜାଣିଛି କି ସେକଥା ! ନହେଲେ ପନ୍ଦର ବର୍ଷରୁ ବିଧବା ହୋଇ କୃଷ୍ଣ ପ୍ରେମରେ ମାତିଥାନ୍ତା !' ମୋହନ ବିଷୟରେ ବୁଢ଼ିମା ସବୁବେଳେ ନୀରବ । ସମ୍ଭବତଃ ଏବେକାର ପିଲା ହୋଇଥିବା ମୋହନକୁ ନେଇ ଏମିତି ଏକ ଆଧ୍ୟାତ୍ମିକ କାହାଣୀ ଗଢ଼ିବାକୁ ବୁଢ଼ିମା ଡରେ । କାଳେ ଧରାପଡ଼ିଯିବ ।

ବୁଢ଼ୀମାର ଏ କାହାଣୀ ବାପିକୁ ବୁଝେଇଲା ବେଳେ ମୋ' ଭିତରେ ଝଲକାଏ ଅବିଶ୍ୱାସ ମୁଣ୍ଡ ଟେକେ । ଇଚ୍ଛାହୁଏ ଦିନେ ରାତି ଅଧରେ କବାଟ ଖୋଲି ଚାଲି ଯାଆନ୍ତି ମନ୍ଦିର ପାଖକୁ ଆଉ ବୁଢ଼ିମା' କଥାକୁ ମିଛ ବୋଲି ପ୍ରମାଣ କରିଦିଅନ୍ତି ! ହେଲେ, ଆମ ପାଣୁଆ ବାଡ଼ି ବାଉଁଶ ବୁଦାକୁ

ଲାଗି ଶିବ ଦାଦିର ସମାଧୀ । ବେଳ ବୁଡ଼ିଲେ ସେ ସମାଧି ଭିତରୁ ଅଜଣା ଭୟଟିଏ ବାହାରି ଆସି ମୋ' ଛାତି ଭିତରେ ପଶିଯାଏ !

ମୋହନ ମୋ'ଠାରୁ ବୟସରେ ସାନ ଆଉ ବାପିଠାରୁ ବଡ଼ । ମୋତେ ଚଉଦ ବର୍ଷ ପାଖାପାଖି ବେଳକୁ ସେ ମନ୍ଦିର ବେଢ଼ାରେ ବଇଁଶୀ ବଜେଇବା ଆରମ୍ଭ କଲାଣି । ପ୍ରଥମେ ପ୍ରଥମେ ସେ ଆମ ଗାଁ'ର ଗୋରୁ ପଲ ନେଇ ପୋଖରୀ ଆଡ଼ି ଆଉ ତୋଟାରେ ଚରାଉ ଥିଲା । ସେ ଦିନମାନଙ୍କରେ ସଂଧ୍ୟା ସରିକି ଘରକୁ ବାହୁଡ଼ି ଆସିଲାବେଳେ ସେ ସାଥିରେ ଆଣୁଥିଲା ବିରି ଜାମୁକୋଳି । ବିରି ଜାମୁକୋଳି ବୋଇଲେ ବିରି ପରିକା ଛୋଟ ଜାମୁକୋଳି । ଭିତରେ ମଂଜି ନଥିଲା ପରି ଲାଗେ । ଆମ ଅଂଚଳରେ ସବୁଠୁଁ ମିଠାକୋଳି ଭିତରେ ଏ ଜାମୁକୋଳିର ନଁ ଡାକ । ମୋହନ କିନ୍ତୁ କୋଳି ଖାଏନା । ପ୍ରମାଣ ମାଗିଲେ ଜିଭ ଦେଖାଏ । କଥାର ଉତ୍ତର ବଇଁଶୀର ସ୍ୱରରେ ଦିଏ । ଏ ସବୁବେଳେ ଆମକୁ ଚିଡ଼େଇ ଦେଉଥିଲା, ପିଲାବେଳେ । ଲାଗୁଥିଲା, ମୋହନ ଖତେଇ ହେଉଛି ।

ଗଲା ଆଇଲା ରାସ୍ତାରେ ଦେଖାହେଲେ ସେ ମୋତେ ସମ୍ବୋଧନ କରେ 'ଟିକନ୍ନା', ତା'ପରେ ହସେ । ଭାରି ସହଜ ହସଟିଏ, ହେଲେ ବର୍ଣ୍ଣନା ନ କରିହେବା ପରି । ଗୋରୁ ଗୋଠ ଧରି ଧୂଳି ଧୂସରିତ ସଂଧ୍ୟାରେ ମୋହନ ଫେରି ଆସୁଥିଲା ଅପୂର୍ବ ବଇଁଶୀ ସ୍ୱନ ସହ । ଲାଗୁଥିଲା, ସତେକି ଦିନରେ ଗାଈଗୋରୁ ସବୁ ଚରିବା ଛାଡ଼ି କେବଳ ତା' ବଇଁଶୀ-ବାଦନ ହିଁ ଶୁଣିଥିଲେ । ଗାଈଗୋରୁଙ୍କ ଚାଲିରୁ ଗୋଟାଏ ଅଦୃଶ୍ୟ ଛନ୍ଦ ବାରି ହୋଇପଡୁଥିଲା । ତେବେ ମୋହନର ଗୋଧୂଳି ଫେରନ୍ତା ବଇଁଶୀ ସ୍ୱର ଶୁଣିଲା ପରେ ଆମ୍ଭେ ସଂଧ୍ୟା ହେଲା ବୋଲି ଆକାଶକୁ ସାର୍ଟିଫିକେଟ୍ ଦେଉଥିଲୁ ।

ଆମ ଗୋରୁ ଗୁହାଳକୁ ଲାଗି ଗୋଟାଏ ଝାଟିମାଟି ଘରେ ମୋହନ ରହୁଥିଲା, ତା' ବାପା ଜଗା ରାଉତ ସହ । ତାକୁ ଆମେ ଜଗାଦାଦି ବୋଲି ଡାକୁଥିଲୁ । ବୋଉ ପାଖରୁ ଶୁଣିଛୁ ଯେ ମୁଁ ଖୁବ୍ ସାନ ଥିଲାବେଳେ ଦିନେ ଜଗା ରାଉତ ପହଂଚିଲା ଆମ ଗାଁରେ । ତା' ଗାଁ, ପରିବାର କଥା କାହାକୁ ଜଣା ନଥିଲା । ସାଥିରେ ଥିଲା ବରଷକର ପୁଅ ଏଇ ମୋହନ । ବାପା ଥିଲେ ଗାଁର ମାମଲତ୍‌କାର । ଆସିଲା ଯେ ବାବାଙ୍କ ଗୋଡ଼ ଧରି ପଡ଼ିଲା, 'ମୋତେ ଜାଗା ଖଣ୍ଡେ ଦିଅ ମୁଣ୍ଡ ଗୁଂଜିବାକୁ । ବାସ ବନେଇବି । ମୂଲ ଲାଗି ପେଟ ପୋଷିବି ।' ସେଇଠୁ ବାପା ତାଂକ ଚିର ଉଦାର ହୃଦୟକୁ ଖୋଲିଦେଲେ ଯେ ଗୁହାଳ ପାଖକୁ ସ୍ଥାନ ପାଇଲା ଜଗା ରାଉତ । ସେବେଠାରୁ ଅଧିକ ଦିନ ବିନା ମଜୁରୀରେ ସେ ଆମର କାଠ ଚିରିଲା ନହେଲେ ବାଡ଼ ବୁଜିଲା । ତା' ପରିବାର ଆଉ ମୋହନର ଜନ୍ମ ବୃତ୍ତାନ୍ତ ନେଇ ଯେତେବେଳେ ତିନିବର୍ଷ, ସେତେବେଳକୁ ସେ ଯେ ପାଗଳଟାଏ ତା'ର ଆଭାସ ମିଳିଥିଲା । ପିଲାଟାର ବୁଦ୍ଧିସୁଦ୍ଧି ହେଉ ଭାବି ବାପାଙ୍କ ପରାମର୍ଶ କ୍ରମେ ଜଗା ରାଉତ ଗାଁ ସ୍କୁଲରେ ତା' ନାଁ ଲେଖେଇ ଦେଲା । ହେଲେ, ତା' ପାଗଳାମି ବଢ଼ିଲା ସିନା କମିଲା ନାହିଁ । ଶ୍ରେଣୀରେ ବସି ବହିଗୁଡ଼ାକୁ ଟୁକୁରା ଟୁକରା କରିପକାଉଥିଲା, ସ୍ଲେଟ୍ ଭାଂଗି ଥୋଇ ଦେଉଥିଲା । ଅବାନ୍ତର କଥା ସବୁ କହୁଥିଲା । ସାର୍ ପଚାରିଲେ ଉତ୍ତର ନାହିଁ । ସେଇ ହସ ଖଣ୍ଡକ । ବାପା ଥରେ ବୋଉ ଆଗରେ କହୁଥିଲେ ଯେ ଏମିତି ପାଗଳାମିର ଆରମ୍ଭ ବେଳୁ ଯଦି ଔଷଧ ଫୌଷଧ ଦେଇ ଚିକିତ୍ସା କରାଯାଏ, ତା'ହେଲେ ଠିକ୍ ହୋଇଯିବ । ସେଥିପାଇଁ ବାପା ରାଂଚିରେ ଦିଆଯାଉଥିବା ଇଲେକ୍ଟ୍ରିକ୍ ସକ୍ କଥା କହୁଥିଲେ । ହେଲେ ରାଂଚି କାହିଁ ଆଉ କାହିଁ ଜଗା ରାଉତ !

ଆମମାନଙ୍କର ସ୍କୁଲରେ ସାହିତ୍ୟ ସେତେବେଳେ ଗୋଟାଏ ପ୍ରମୁଖ ବିଷୟ ଥିଲା, ଆଉ ସାହିତ୍ୟରେ ସବୁଠୁ ଗୁରୁତ୍ୱପୂର୍ଣ୍ଣ ବିଭାଗଟି ଥିଲା ପ୍ରବନ୍ଧ ବିଭାଗ । ପ୍ରବନ୍ଧଟିର ନାମ ଚୟନ ଉତ୍ତାରେ ଶିକ୍ଷକ ପ୍ରତି ଶୁକ୍ରବାର କ୍ଲାସ୍‌ରେ ତାକୁ ଘୋଷଣା କରୁଥିଲେ । ରଚନାଟିଏ ଲେଖିବାକୁ ସାତଦିନ ସମୟ ଦିଆଯାଉଥିଲା । ବାପିର ଚତୁର୍ଥ ବେଳକୁ ମୋହନର ବି ଚତୁର୍ଥ । ଗାଁ ସ୍କୁଲ୍‌ମାନଙ୍କରେ ସେତେବେଳେ ବର୍ଷଟିଏ ପୂରିଯିବା ମାତ୍ରେ ବଡ଼ ଶ୍ରେଣୀକୁ ଉଠିବାକୁ ବାଧ ବୋଲି ନିୟମ ଥିଲା । ସେଇଥି ପାଇଁ ମୋହନ ଚତୁର୍ଥ ଶ୍ରେଣୀ ଗୃହରେ କେବଳ ବସୁଥିଲା । ମୋର ସେହି ବର୍ଷ ନବମ ଶ୍ରେଣୀ । ଦିନେ 'ହଡ଼ା ବଳଦର ଆତ୍ମକାହାଣୀ' ଶୀର୍ଷକ ରଚନାଟି ବିଷୟରେ ଡାକିଦେବାକୁ ବାପି ମୋ' ପାଖରେ ନେହୁରା ହେଲା । ହାଇସ୍କୁଲ୍‌ରେ ପଢୁଥିବା ଦୃଷ୍ଟିରୁ ନିଜ ଆତ୍ମ ସମ୍ମାନକୁ ନେଇ ମୁଁ ବି ହଁ ଭରିଲି । ହେଲେ ଏଇ 'ହଡ଼ାବଳଦ' ହଁ ମୋତେ ଅସୁବିଧାରେ ପକେଇଲା । 'ବଳଦର ଆତ୍ମକାହାଣୀ' ହୋଇଥିଲେ ଅତିସହଜରେ ରଚନାଟି ମୁଁ ଲେଖିପାରିଥାନ୍ତି । ମୁଁ ବୁଝିପାରୁନଥିଲି ଅଧିକ ବୟସ ଯୋଗୁଁ ବୁଢ଼ା ହୋଇ ହାଡ଼ ବାହାରିଥିବା ବଳଦ ହଡ଼ାବଳଦ ନା ବୟସ ଥାଉଥାଉ ମାଲିକର ଅତ୍ୟାଚାରରେ ପଂଜରା ଦେଖାଯାଉଥିବା ବଳଦ ହଡ଼ାବଳଦ ! ଦୁଃଖ ଆଉ ଦୈନ୍ୟତାକୁ ମୁଁ ସେତେବେଳେ ଆଉ କେତେ ଦେଖିଥିଲି ଯେ ଆତ୍ମକାହାଣୀରେ ସେସବୁ ସଂଯୋଜିତ କରପାରିଥାନ୍ତି ! ଆମ ଗାଁ ଗାଈଗୋରୁ ପଲଂକ ଭିତରେ ଯେ ହଡ଼ାବଳଦ ନଥିଲେ ତା' ନୁହେଁ । ଗୋଟେ ବୁଲା ବୁଢ଼ା ଷଣ୍ଢ ଦିନରାତି ଆମ ଗାଁ ଦାଣ୍ଡରେ ଟହଲ ମାରୁଥିଲା । ତା' ସହ ପରେ ପରେ ଯୋଗଦେଇଥିଲା ଆଉ ଗୋଟାଏ ଗୋଠଛଡ଼ା ହଡ଼ାବଳଦ । ଜଗା ରାଉତ ପରି ସେ ହଡ଼ାବଳଦର ଜାତିଗୋତ୍ର କି ଗାଁ ସହର ଠିକଣା କାହା ପାଖରେ ନଥିଲା । ବେଶ୍ କେଇଦିନ ଆମ ଗାଁର ଯୁବା ବଳଦମାନେ ଶିଙ୍ଘରେ ଭୁଷିଭୁଷି ତାକୁ ତଡ଼ିବାକୁ ଚେଷ୍ଟା ଚଳେଇଥିଲେ । ହେଲେ, ଟୋକାଦଳଂକ ଟାହିଟାପରା ଆଉ ଆକ୍ରମଣ ସହି ହଡ଼ାବଳଦ ଆମ ଗାଁରେ ରହିଗଲା ଯେ ରହିଗଲା । ଠିକ୍ ଜଗା ରାଉତ ପରି । ଦୋସ୍ତି ବନେଇଲା ହଡ଼ା ଷଣ୍ଢ ସହ । କେବେ କେବେ ବିଲ ମଝିରେ ଠିଆ ହୋଇ ଦୁହେଁ କଥା ଭାଷା ହେଉଥିଲେ । ତେବେ ଏ ହଡ଼ାବଳଦକୁ ନେଇ ବାପି ପାଇଁ ମୁଁ ରଚନା ଲେଖିପାରି ନଥିଲି । ମୋତେ କାହିଁକି ଲାଗୁଥିଲା ଯେ ଏ ହଡ଼ାବଳଦଟି ଅପେକ୍ଷାକୃତ ଖୁସୀ । ଦୈନିକ କୁଣ୍ଡା ତୋରାଣୀ ନ ମିଳୁ ପଛେ, ଖାଉନ୍ଦର ବେତ ତ ବସୁନି ପିଠିରେ । ପକ୍ଷୀ ପରି ଯୁଆଡ଼େ ଇଛା ସେଆଡ଼େ ଯାଇ ତ ପାରୁଛି । କେବେକେବେ ବେଙ୍ଗଳା ପକେଇବା ସମୟରେ ତାକୁ ଧରିଆଣି ଅନ୍ୟ ବଳଦଂକ ସହ ଯୋଡ଼ିଦେଉଥିବା ଗାଁ ଟୋକାଏ ବି ସେବକୁ ନିଜ ନିଜର ବିବେକପଣିଆ ଦେଖେଇଲେଣି । କେହି କେହି ଧର୍ମପରାୟଣା ନବ ବିବାହିତା ଗୃହିଣୀ ତା' ସାମ୍ନାରେ ପରିବା ଚୋପା କି ବାସି ତୋରାଣି ଥୋଇଲେଣି । ଏ ଅଂଚଳର ପୁରୁଣା ବାସିନ୍ଦା ସେଇ ବୁଢ଼ା ଷଣ୍ଢଟି ତାକୁ ଯା' ଭିତରେ କେଉଁ କେଉଁ ଅଂଚଳରେ କଅଁଳ ଘାସ ମିଳୁଥିଲା, ତା'ର ଖବର ତାକୁ ଦେଇସାରିଲାଣି । ସେ ଯାହା ହେଉ, ଯଥା ତଥା ରଚନାଟିଏ ଲେଖି ବାପିକୁ ଦେଇଦେଲି ।

ସେଦିନ ସଂଜରେ ଖେଳରୁ ଫେରି ପାଠ ପାଖରେ ବସୁ ବସୁ ବାପି ମୁରୁକି ମୁରୁକି ହସୁଥିବାର ଦେଖି ପଚାରିଲି, 'କିରେ ପାଠ ପଢୁନୁ । ହସୁଛୁ କ'ଣ !' ବାପି ତା'ର ଅବଶିଷ୍ଟ ଦାନ୍ତ ଦେଖେଇ ହସରେ ଫାଟିପଡ଼ିଲା ଓ କହିଲା 'ଜାଣିଛୁ ଟିକନ୍ନା, ସେ ପାଗଳ ମୋହନ ହଡ଼ାବଳଦର ଆତ୍ମକାହାଣୀରେ କ'ଣ୍ ଲେଖିଛି !' ସେଇଠୁ ବାପି ସବୁ ଗପିଲା । ସାର୍ କେମିତି ବଡ଼ପାଟିରେ ମୋହନର ରଚନା ପଢ଼ି ସାରା କ୍ଲାସ୍‌କୁ ଶୁଣେଇଲେ, କେମିତି ହସରେ ଫାଟିପଡ଼ିଲେ ଇତ୍ୟାଦି । ବସ୍ତାନୀ ଭିତରୁ ମୋହନର ରଚନା ଖାତାଟିକୁ ବାହାର କରି ମୋ' ଆଗରେ ଥୋଇ ବାପି ପୁଣି

କହିଲା, 'ତୋତେ ଦେଖେଇବି ବୋଲି ପା' ତା ବସ୍ତାନୀରୁ ଖାତାଟା ନେଇଆସିଛି ।' ବାପିଠାରୁ ମୋହନର ଖାତାଟିକୁ ନେଲି । ହଡ଼ବଳଦ ଓ ତା' ନିଜ ଭିତରେ ଏତେ ନାକୁ ପାର୍ଥକ୍ୟ ଦେଖି ନଥିବା ମୋହନ ହଡ଼ାବଳଦର ଆତ୍ମକାହାଣୀ ଲେଖୁଲେଖୁ ନିଜ ଆତ୍ମକାହାଣୀକୁ ଲେଖି ପକାଇଥିଲା । 'ହଡ଼ାବଳଦ ବଇଁଶୀ ବଜାଏ', 'ଭାତ ଡାଲି ଖାଏ', 'କଥା କୁହେ' ଇତ୍ୟାଦି କଥା ତା' ସାଙ୍ଗମାନଙ୍କୁ ହସିବା ପାଇଁ ଖୋରାକ ଯୋଗାଇଥିଲା ।

କିଛିଦିନ ପରେ ବଜ୍ରପାତରେ ଜଗା ରାଉତର ମୃତ୍ୟୁ । ଆଉ ପାଠପଢ଼ା ବଂଦ କରି ମୋହନର ଗୋରୁଗୋଠ ନେଇ ତୋଟାକୁ ଯିବା ଆରମ୍ଭ । ସବୁ କେମିତି ହଠାତ୍ ବଦଳିଗଲା । ହଡ଼ାବଳଦ, ହଡ଼ା ଷଣ୍ଢ ଆଉ ହଡ଼ା ମୋହନ ସଭିଏଁ ଏକ ହୋଇଗଲେ । ସେଇଥିପାଇଁ କି କଅଣ ତୋଟାକୁ ଗୋଠ ନେଇ ଗଲାବେଳେ ସେ ହଡ଼ା ବଳଦ କି ବୁଢ଼ା ଷଣ୍ଢକୁ ନେବାକୁ ଭୁଲୁ ନଥିଲା । ଗୋଠ ନେଇ ଫେରିଲାପରେ ସେ ବଳଦ ଆଉ ଷଣ୍ଢକୁ ରାଧାମୋହନ ମନ୍ଦିର ପାଖରେ ଛାଡ଼ି ଫେରୁଥିଲା ଘରକୁ । ରାତିରେ କେହି କିଛି ଦେଉଥିଲା ତ ଖାଉଥିଲା, ନହେଲେ ନାଇଁ । ଏକଥା ଦେଖି ପୁଣି ଥରେ ମୋ' ଉଦାରଚେତା ବାପା ତା' ପାଇଁ ରାତି ଭୋଜନର ବ୍ୟବସ୍ଥା କରିଦେଲେ । ଗୋଠରେ ସବୁଠୁଁ ଅଧିକ ଗାଈଗୋରୁ ଆମର ଥିଲେ ତ !

ସଂଧ୍ୟା ହେବାକ୍ଷଣି ମୋହନ ବଇଁଶୀ ବଜେଇବା ଆରମ୍ଭ କରେ । ପ୍ରଥମେ ପ୍ରଥମେ ସେ ଘର ପିଣ୍ଡାରେ ବଇଁଶୀ ବଜାଉଥିଲ । କି ସ୍ୱର କି ରାଗରେ କେଜାଣି ! ଏ ଧ୍ୱନି ସଂପୂର୍ଣ୍ଣ ଅଲଗା ଶୁଭୁଥିଲା କାନକୁ । ସେଇ କରୁଣ କରୁଣ ରାଗ ଶୁଣିଲେ ମୋତେ କାହିଁ ଭାରି ଡରଡର ଲାଗୁଥିଲା । ଲାଗୁଥିଲା ସତେକି ପୃଥିବୀକୁ ଓହ୍ଲେଇ ଆସିଛି ଏମିତି ଗୋଟାଏ ରାତି ଯାହା କେମ୍ଭା ସରୁନି । କିଏ ଯେମିତି କେଉଁଠି ଅଟକେଇ ଦେଇଛି ସୂର୍ଯ୍ୟକୁ । ସେଇ ଅଂଧାର ଭିତରୁ ଗୁଡ଼ାଏ ଖାଲିପଣ ବିରାଟ ବିରାଟ ଆକୃତି ନେଇ ମୋ' ଉପରକୁ ଝାଂପି ପଡୁଛନ୍ତି । ଲାଗୁଥିଲା, ମୋର ବି ଯେମିତି କେହି ନାହିଁ । ମୁଁ ମୋହନ ପରି ଏକେଲା ।

ମୋହନ ପାଗଲା ବୋଲି ଯେଉଁ ଅପପ୍ରଚାର ପାଖଆଖ ଗାଁ ଗଣ୍ଡାରେ ବ୍ୟାପିଥିଲା ଦେଖିବାକୁ ଗଲେ ସେଥିରେ ସେତେ ବେଶୀ ସତ୍ୟତା ନଥିଲା । ସେ ଲୁଗାପଟା ଫିଙ୍ଗି ଲଙ୍ଗଳା ହୋଇ ବୁଲୁ ନଥିଲା କି କାମୁଡ଼ି ଗୋଡ଼ାଉନଥିଲା । କେବଳ ସେ ବେଶୀ କଥା କହୁନଥିଲା ମୁହଁରେ । ଗାଳି ମନ୍ଦ, ଥଟ୍ଟା-ତାମସା, ଅବା ଛନ୍ଦ-କପଟ ବୁଝିପାରୁନଥିଲା ବୋଲି ସେ ଯଦି ପାଗଳ ସେଥିରେ ମୋର କିଛି କହିବାର ନାହିଁ । ମୋହନ ପାଇଁ ତା' ମାନସିକ ସ୍ଥିରତାର ପ୍ରମାଣପତ୍ର ବାଣ୍ଟିବା ମୋର ଉଦ୍ଦେଶ୍ୟ ନଥିଲା କେବେ । ମୁଁ ଜାଣିଥିଲି, ଆମେ କେହି ତାକୁ ବୁଝୁ ନବୁଝୁ, ସେ ବୁଝିଥିଲା ବଇଁଶୀକୁ ଆଉ ବଇଁଶୀ ତାକୁ । ନହେଲେ ଏତେ ନିବିଡ଼ତା କେବେ ସମ୍ଭବ ! କେବେକେବେ ତା' ଆଖି ସହ ଆଖି ମିଶେଇ ସେ ହଡ଼ବଳଦ ଆଉ ଷଣ୍ଢ ବି କଥା ହୁଅନ୍ତି । ନନ୍‌ଡିଟେଲ୍‌ଡ ଷ୍ଟଡିରେ ଶରତ ଚନ୍ଦ୍ର ଚାଟାର୍ଜୀଙ୍କ ଗୋଟାଏ ଗଳ୍ପର ଇଂରାଜୀ ଅନୁବାଦ ପଢ଼ାଉ ପଢ଼ାଉ ଆମ ହାଇସ୍କୁଲର ଇଂରାଜୀ ଶିକ୍ଷକ ଏମିତି ଗୋଟାଏ ବଳଦ ଆଉ ମାଲିକର କାହାଣୀ ଶୁଣେଇଥିଲେ । ସେ କାହାଣୀର ପାତ୍ରମାନଙ୍କ କଥା ମନେପଡ଼ିଲେ ମୋହନ ବି ସେମାନଙ୍କ ସହ ଯୋଡ଼ି ହୋଇଯାଏ ।

ଜଗା ରାଉତର ମୃତ୍ୟୁ ପରେ ପରେ ଏଇ ହଡ଼ାବଳଦ ଥିଲା ମୋହନର ଅବଲମ୍ବନ । ବଇଁଶୀର ଜୀବନ ଥିଲେ ମୋହନ ବୋଧେ ଆଉ କିଛି ଅବଲମ୍ବନ ଖୋଜି ନଥାନ୍ତା । ଷଣ୍ଢମାନେ ତ କେବେ କାହାର ବୋଲ ମାନନ୍ତି ନାହିଁ । ସେମାନଙ୍କ ପ୍ରବୃତ୍ତି ସେଇମିତି । ସେଥିପାଇଁ ଆମ

ଗାଁର ବୁଲାକ୍ଷଣ୍ଡ ରାତି ହେଲାବେଳକୁ ରାଧାମୋହନଙ୍କ ମନ୍ଦିର ବେଢ଼ା ଭିତରେ ଶୋଇପଡ଼ିଥାଏ– ନିର୍ବିକାର, ନିର୍ଲିପ୍ତ !! ସତେକି ଯୋଗୀଟାଏ । ହେଲେ, ଫେରିଆସେ ଏଇ ହଡ଼ାବଳଦଟି । ମୋହନର ଝାଟିମାଟି ଘର ଆଗରେ ଠିଆହୋଇ ତା' ବଇଁଶୀ ଶୁଣେ, ଜଣେ ଗୁଣଗ୍ରାହୀ, ରସଗ୍ରାହୀ, ଭାବୁକ ସଂଗୀତ ବିଳାସୀ ମଣିଷ ପରି ! ମୋହନର ବଇଁଶୀ ବନ୍ଦ ହୁଏ । ହଡ଼ାବଳଦ ବେକରେ ପାପୁଲି ଘସି ମୋହନ କେବଳ ଏତକ କୁହେ, 'ଯ' । ସେଇଠୁ ବଳଦଟି ଆପେ ଆପେ ଅପସରି ଯାଏ । ଅଂଧାର ସହ ମିଶି ଏକାକାର ହେବା ଯାଏ ସେଇଆଡ଼କୁ ଅନେଇ ଠିଆ ହୁଏ ମୋହନ । କେତେ ଥର ଦେଖିଛି ଠିକ୍ ସେଇ ମୁହୂର୍ତ୍ତରେ ତା' ମୁହଁ କେମିତି ବିବର୍ଣ୍ଣ ହୋଇଉଠେ । ହଡ଼ାବଳଦ ବାହୁଡ଼ି ଗଲା ପରେ ମୋହନ ଅଧଘଣ୍ଟା କି ଘଣ୍ଟାଏ ପରେ ଦେଉଳ ଆଡ଼େ ମୁହାଁଏ । ସେଠି ତା' ବଇଁଶୀ ସହିତ ଜଡ଼ିତ ହୋଇପଡ଼ନ୍ତି ପାର ଆଈର ପାକୁଆ ହସ ଆଉ କପୋତ–କପୋତୀଂକ ସେ ଅଦୃଶ୍ୟ ମୁଦ୍ରା ।

ଗଲା ଦୁଇଦିନ ତଳେ ଯେ ମୋହନ ମରିଗଲା ସେ ଖବର ନେଇ ଭୁବନେଶ୍ୱରର କ୍ୱାର୍ଟର୍ସରେ ପହଂଚିଥିଲେ ମୋ' ଏପାରି ସେପାରି ଭାଇ ଦିନାନ୍ନା । ତାଙ୍କର ଏ.ଜି. ଅଫିସ୍‌ରେ କିଛି କାମ ଥିଲା । ନହେଲେ ହୁଏତ ମୋହନ ମରିଯିବାର ଖବର ମୁଁ କେବେ ନାଇଁ କେବେ ପାଇଥାନ୍ତି । ଦିନାନ୍ନା ଓ ମୁଁ ବସିଥାଉ ସାମ୍ନାସାମ୍ନି । ସେ ଚା' କପ୍‌ରୁ ସୁଡୁକେ ନେଇ କଥାଟା ଆରମ୍ଭ କଲେ, 'ଜାଣିଛୁ ଟିକନ, ମୋହନ ମରିଗଲା ।' ଦିନାନ୍ନାଂକ ଏ କଥା ପଦୁଟିଏରେ ମୋତେ ଲାଗିଲା ମୁଁ ଯେମିତି ସ୍ଥାଣୁ ପାଲଟି ଯାଉଛି । ଓଠ ପାଖରେ ଧରିଥିବା ଚା' କପ୍‌ଟା ସେମିତି ରହିଗଲା ମୋ' ହାତରେ । ଗୋଟାଏ ବିସ୍ମୟ, ଦୁଃଖ ଆଉ ପ୍ରତାରଣାର ଫେଣ୍ଟାଫେଣ୍ଟି ଭାବ ମୋତେ କବଳିତ କରିପକେଇଲା । କ୍ଷଣିକ ପାଇଁ ଦିନାନନାର ସେ ସହଜପଣିଆକୁ ବରଦାସ୍ତ କରିପାରିଲି ନାହିଁ । 'ମୋହନ ମରିଗଲା ! କେମିତି ?' ପୁଣି ଥରେ ଢୋକେ ଚା' ଗଳା ଭିତରକୁ ଟାଣି ନେଇ ଦିନାନ୍ନା କହିଲେ, 'କେମିତି କ'ଣ୍ ପଚାରୁଛୁ କିରେ ! ତିନିମାସ ହେଲା କତରା ଲଗା ହୋଇ ପଡ଼ିଥିଲା ପରା । ରାଜଯକ୍ଷ୍ମା । ବଇଁଶୀ ବଜେଇଲା ବେଳେ ଥୁଳା ଥୁଳା ରକ୍ତ ପଡୁଥିଲା । ଗାଁ ମତରେ ଯାହା ଚିକିତ୍ସା । ଆଉ ବା କାହାର ସାଧ-ସାଧନ ଅଛି ଯେ କଟକ କି ଭୁବନେଶ୍ୱର ଆଣିବ ତାକୁ ।' କଥା ସାରି ଦିନାନ୍ନା ପୁଣି ଢୋକେ ଚା' ଟାଣିଲେ ଭିତରକୁ । ମୋ' ଭିତରେ କିନ୍ତୁ କେହି କହିବ କହିବ ହେଉଥିଲା, 'ମୋହନକୁ ରାଜଯକ୍ଷ୍ମା ହୋଇଥିଲା ତିନିମାସ ତଳେ । ତିନିମାସ କିଛି କମ୍ କଥା ନୁହେଁ । ହେଲେ ମୋତେ ଜଣେଇ ପାରିଲନି ଟିକେ ! ଆଜିକାଲି ଯକ୍ଷ୍ମାରେ କିଏ ମରୁଛି !' ଏତକ କିନ୍ତୁ କହି ପାରିଲିନି । ସତରେ କ'ଣ୍ ମୋହନର ଦେହ ଖରାପ କଥା ଜାଣିଥିଲେ ମୁଁ ଗାଁକୁ ଯାଇପାରିଥାନ୍ତି ! ତାକୁ ଭୁବନେଶ୍ୱର ନେଇଆସି ତା'ର ସେବାଯତ୍ନ କରିପାରିଥାନ୍ତି ! ଦିନାନ୍ନାଂକୁ କିଛି କହିଲି ନାହିଁ । ଗାଁ ଆଡ଼େ ବୁଲି ଆସିବାକୁ କାହିଁକି କେଜାଣି ମନ ଉଛନ୍ନ ହେଲା । ବର୍ଷକରୁ ବେଶି ହେବ ଗାଁକୁ ଯାଇନି । ବାପା ଆଉ ବୋଉ ଏବେ ବାପି ପାଖରେ, ଦିଲ୍ଲୀରେ । ସେଥି ପାଇଁ ଗାଁକୁ ଯିବାର ଆବଶ୍ୟକତା ପଡ଼ିନାହିଁ । ସକାଳୁ ସକାଳୁ ଦିନାନନାଙ୍କ ସହ ଗାଁକୁ ବାହାରି ଯିବାର ଯୋଜନା କରୁ କରୁ ମୋ'ର କାହିଁକି ହଠାତ୍ ମନେ ହେଲା ଯେ ମୁଁ ହିଁ ମୋହନର ହତ୍ୟାକାରୀ । ଏଯାଏ ତାକୁ ପ୍ରତିଶ୍ରୁତି ଦେଇଥିଲି ଯେ ତା'ର ଖବର ଅନ୍ତର ନେବି, କିଛି ଟଙ୍କା ତା' ପାଖକୁ ପଠେଇବି ଆଉ ତା' ପାଇଁ କିଣି ଦେବି ସୁନ୍ଦର ବଇଁଶୀଟେ । କେଇ ମାସ ତଳେ ସୁନ୍ଦର ବଇଁଶୀଟେ ବି ମୁଁ କିଣିଥିଲି ପ୍ରତିଶ୍ରୁତି ଦେବାର ଅନେକ ବର୍ଷ ପରେ ! ହଠାତ୍ ଆଖିରେ ପଡ଼ିଲା ବୋଲି ! ନହେଲେ ମୋହନ ପାଇଁ ବଇଁଶୀ କିଣିବାର କଥା ତ ମୁଁ ସଂପୂର୍ଣ୍ଣ ଭୁଲି

ଯାଇଥିଲି । ହୋଇପାରେ, ହଡ଼ାବଳଦ, ବୁଲା ଷଣ୍ଢ, ଜଗା ରାଉତ ଆଉ ପାର ଆଇ ପରି ମୁଁ ବି ମୋହନକୁ ଠକି ଦେଇଥିଲି ।

ମୋ' ହାଇସ୍କୁଲର ଶେଷ ବର୍ଷ ବେଳକୁ ଯେଉଁ ଘଟଣାଟା ହଠାତ୍ ଆମ ଗାଁରେ ଘଟିଥିଲା ସେଥିପାଇଁ ମୋ' ବାପାଙ୍କ ବୟସର ଥୋଡ଼େ ଲୋକ ଖୁବ୍ ଲଜ୍ଜିତ ଓ ଦୁଃଖିତ ହୋଇ ପଡ଼ିଥିଲେ । କଥା ହେଲା, କାହୁଁ ଆସି ଗାଁରେ ପାଦ ଦେଲା ଗାଈଗୋରୁ ବିକାକିଣା କରୁଥିବା ଦଲାଲ୍‌ଟେ । ଜାତିରେ ମୁସଲ୍‌ମାନ । ବୁଢ଼ା ଆଉ ହଡ଼ା ବଳଦ ହିଁ ସେ କିଣୁଥିଲା । ସେତେବେଳକୁ ରାଧାମୋହନ ମନ୍ଦିରବାଡ଼ିକୁ ଲାଗି ଆମ ଗାଁର ଯୁବକ ସଂଘ 'ରାଧାମୋହନ ଯୁବକ ସଂଘ' ତିଆରି ସରିଥାଏ । 'ରାଧାମୋହନ ଯୁବକ ସଂଘ' ବୋଲି ଫଳକଟେ ମଧ୍ୟ ଶୋଭା ପାଉଥାଏ କ୍ଲବ୍‌ର କାଠ ଫାଟକ ଦେହରେ । କେହି କେହି ନୂଆ ନୂଆ ଅକ୍ଷର ଶିଖୁଥିବା ପିଲାଏ ଲିପାପୋଛା ମାଟି କାନ୍ଥରେ ମାଟି ଖଡ଼ିରେ 'ଅ', 'ଆ' ଲେଖି ଭର୍ତ୍ତି କରିସାରିଥାନ୍ତି । ସେ ସମୟରେ କ୍ଲବ୍‌ର କର୍ମକର୍ତ୍ତାମାନଙ୍କର ଗୋଟାଏ ସମସ୍ୟା ଥାଏ, ଅର୍ଥନୈତିକ ସମସ୍ୟା । ଦରପାଠୁଆ ଟୋକାଏ ତ ଆଉ ଗୁରୁ ଗୁରୁଜନ ମାନୁ ନଥିଲେ, ପରନ୍ତୁ ଘରପିଛା ମାସିକ ଚାନ୍ଦା କରି ଟଙ୍କା ଆଦାୟ କରୁଥିଲେ ।

ହଡ଼ାବଳଦ ଉପରେ ଅଧିକାର ଥିଲା ସାରା ଗାଁର । ଆମ ଗାଁର ପ୍ରତ୍ୟେକ ସଦସ୍ୟଙ୍କ ପରି ସେ ବି ଥିଲା ଗୋଟାଏ ସଦସ୍ୟ । ହେଲେ, ସେ ପଠାଣ ବେପାରୀ ଗାଁରେ ପହଂଚୁ ପହଂଚୁ ଯୁବକ ସଂଘର ଟୋକାଏ ରାତା ରାତି ତା' ସହ କଥା ଚଲେଇଲେ ଯେ ଦୁଇଶ' ପଚାଶ ଟଂକାରେ ହଡ଼ାବଳଦକୁ ହସ୍ତାନ୍ତରିତ କରାଯିବ । ବିନା ପରିଶ୍ରମରେ ଏତେଗୁଡ଼ା ଟଂକା ମିଳିବାର ଥିବାରୁ ଆଗାମୀ ଦିନମାନଂକରେ କୁକୁଡ଼ାର ବେକ ମୋଡ଼ି ଦେଶୀ ମଦ ସହ ଭୋଜି ବନେଇବାର କଳ୍ପନାରେ ମସଗୁଲ୍ କେତେଜଣ ଆଗତ କୁହା ମେମ୍ବର ଟୋକା କାହା କାହା ପାଖରେ ଏକଥା କହି ପକେଇଲେ । ହେଲେ ଏ କଥାରେ ସାରା ଗାଁ ପ୍ରତିବାଦ କଲା । କିଛି ପୁରୁଖା ଲୋକ ଏକଥା ବି କହୁଥିଲେ-'ନିଅ, ନିଅ, ଆମକୁ ବି ବିକିଦିଅ । ଆମେ ବି ତ ବୁଢ଼ା ହୋଇଗଲୁଣି !' ସମସ୍ତଙ୍କ ଭିତରେ ସେହି ଗୋଟିଏ ପାପର ଭୟ ଉଂକି ମାରୁଥିଲା– ହଡ଼ାବଳଦର ମୃତ୍ୟୁ । ସମସ୍ତେ ଅନୁଭବ କରିସାରିଥିଲେ ଏ ହଡ଼ାବେପାରୀ ବଳଦଟିକୁ କି ଉଦ୍ଦେଶ୍ୟରେ କିଣୁଛି । କାଲି ସକାଳେ ହଡ଼ବଳଦର ମୁଣ୍ଡହୀନ ଦେହ ଝୁଲୁଥିବ କେଉଁ କଂସେଇଖାନାରେ । 'ଗୋହତ୍ୟା ମହାପାପ ! ଓଃ ।' ଉଚ୍ଛୁଳିପଡୁଥିବା ଅସନ୍ତୋଷକୁ ଦେଖି ଟୋକାଏ ଟିକେ ଦବି ଗଲେ । ଦଲାଲ ସହ ପରାମର୍ଶ କରାଗଲା ଯେ ରାତାରାତି ବଳଦକୁ ଗାଁର ସୀମା ପାର କରିଦିଆଯିବ ।

ଏସବୁ କଥାରୁ ମୋହନ କ'ଣ୍ ବୁଝୁଥିଲା କେଜାଣି ତା'କୁ ବେଳେବେଳେ ଜୋର୍‌ରେ ଚିତ୍କାର କରିବାର ଶୁଣା ଯାଉଥିଲା । ସେ ଭୟଂକର ରଡ଼ି ଭିତରେ ଆର୍ତ୍ତନାଦ ଥିଲା, ଆକୁଳତା ଥିଲା ଆଉ ଥିଲା ଅସହାୟତା । ଗାଁ ଯାକର ହଇଚଇ ବାକ୍ ବିତଣ୍ଡା ପରେ ତା' ଘରର ପିଣ୍ଡା ଉପରେ ବସି ମୋହନ ତୋଳି ଧରିଥିଲା ତା' ବଇଁଶୀରେ ଏକ ଅପୂର୍ବ ରାଗ ! ସେଦିନ ସଂଧ୍ୟାରେ ରାଧାମୋହନ ମନ୍ଦିର ପାଖରୁ ଫେରିଆସି ହଡ଼ାବଳଦ ପହଂଚିଥିଲା ତା' ଝାଟିମାଟି ଘର ପିଣ୍ଡା ପାଖରେ । ମୋହନର ବଂଶୀ ଶୁଣିଥିଲା । ତା' ବେକରେ ପାପୁଲି ଘସି ମୋହନ କହିଥିଲା, 'ଯା' । ସେଇ ପରିଚିତ ଦୃଶ୍ୟ । ଅନ୍ଧାର ଭିତରେ ହଡ଼ାବଳଦ ଅଦୃଶ୍ୟ ହେବା ପର୍ଯ୍ୟନ୍ତ ମୋହନର ପ୍ରତୀକ୍ଷା । ସେଦିନ ରାତି ଅଧ ଯାଏ ମୁଁ ଶୁଣିଥିଲି ମୋହନର ବଂଶୀ ସ୍ୱନ ।

ସକାଳେ କିନ୍ତୁ ସବୁ ଓଲଟ ପାଲଟ ହୋଇଯାଇଥିଲା । ରାଧାମୋହନ ମନ୍ଦିରର ବାଡ଼ିରେ ପଡ଼ିଥିଲା ହଡ଼ାବଳଦର ମୃତଦେହ । କେତେ ଧାର ପିମ୍ପୁଡ଼ି ତା' ଆଖି ଉପରେ ଯିବା ଆସିବା

କରୁଥିଲେ । ବିରକ୍ତ ହେଉଥିଲା ଦଲାଲ୍ ଆଉ ଟୋକାଏ ଫଁ ଫାଁ ହେଉଥିଲେ । ବରଗଛ ଉପରେ ବସିଥିବା କପୋତ ଦମ୍ପତି ନିର୍ବାକ୍ ହୋଇ ଚାହିଁ ରହିଥିଲେ ତଳକୁ । ବୟସ୍କ ଲୋକେ ହାତଯୋଡ଼ି ପ୍ରଣାମ କରୁଥିଲେ ଓ ମନ୍ଦିର ମାର୍ଜନା ନେଇ ଆଲୋଚନାରେ ବ୍ୟସ୍ତ ଥିଲେ । ହାତରେ ବଇଁଶୀ ଧରି ମୋହନ ବସିଥିଲା ହଡ଼ାବଳଦର ମୁହଁ ପାଖରେ । ପିମ୍ପୁଡ଼ିମାନଙ୍କୁ ଘଉଡ଼େଇବାକୁ ଚେଷ୍ଟା କରୁଥିଲା । କ'ଣ୍ କହିବ କହିବ ହେଉଥିଲା ଯେ କିଛି କହିପାରୁନଥିଲା । ତା' ଆଖିରେ ବିନ୍ଦୁଏ ଲୁହ ନଥିଲା, ଲାଗୁଥିଲା ଲୁହ ସବୁ ବାଷ୍ପ ହୋଇ ଖର ନିଃଶ୍ୱାସରେ ପ୍ରବାହିତ ହୋଇଯାଉଛି । ସବୁ ଲୁହ କ'ଣ୍ ଦୃଶ୍ୟମାନ ହୁଏ ! ଯାହା ଦିଶେ ତା' ତ ଆଖିର ପାଣି । ଲୁହ ତ ସବୁବେଳେ ଅଦୃଶ୍ୟ– ଛାତି ଭିତରର !!

ହଡ଼ାବଳଦକୁ ପୋଖରୀ ଆଡ଼ିରେ ସମାଧି ଦେଲାବେଳେ ମୋହନ ତା' ବଇଁଶୀ ବଜେଇ ଥିଲା । ଏ ହଡ଼ାବଳଦକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦେବା ଲାଗି ଉମାସାଗର ପୋଖରୀ ଆଡ଼ିରେ ଗାତ ଖୋଳି ସମ୍ପୂର୍ଣ୍ଣ ଶାସ୍ତ୍ର ମତରେ ତା'ର ଶବ ସତ୍କାର କରାଯାଇଥିଲା । ସେ କବର ପାଖରେ ବସି ସେଦିନ ସଂଧ୍ୟା ଯାଏ ମୋହନ ତୋଳି ଧରିଥିଲା ତା' ବଇଁଶୀରେ ଅନେକ ରାଗ । ମୋତେ ସଂଗୀତର ସାଙ୍କେତିକ ବିଭାଗ କି ଖସଡ଼ା ମାଲୁମ୍ ନାହିଁ । ମୁଁ ବୁଝେ ଭାବକୁ, ଯାହା ବୁଝୁଥିଲା ମୋହନ । କେବେକେବେ ତା' ବଇଁଶୀର ଭାବ ଲାଗୁଥିଲା ବିରହର, କେବେ ସେ ସ୍ୱରରେ ଫୁଟି ଉଠୁଥିଲା ନିଃସଙ୍ଗତାର ଆଳାପ । ଆଉ କେବେ କରୁଣ କରୁଣ ଧ୍ୱନିରେ ବଇଁଶୀର ଶରୀର କମ୍ପିଲା ପରି ଲାଗୁଥିଲା । ବଇଁଶୀର ବିଳାପ– ମୋହନର ବିଳାପ !!

କେହି କେହି ଭାବିଥିଲେ ଯେ ହଡ଼ାବଳଦର ମୃତ୍ୟୁ ପରେ ମୋହନର ବଇଁଶୀ ବି ବନ୍ଦ ହୋଇଯିବ । ହଡ଼ାବଳଦ ସହ ଅହରହ ବୁଲୁଥିବା ଷଣ୍ଢଟା ବି ଦିନାକାତେ ଆଉ ନଜରକୁ ଆସିଲା ନାହିଁ । ମୋହନର ଶେଷ ଅବଲମ୍ବନ ପାର ଆଈ, ପୁଅ-ବୋହୂଙ୍କ ଗଂଜଣା ସହି ନପାରି ଗାଁଠୁ କୋଡ଼ିଏ କୋଶ ଦୂର ବାସୁଦେବପୁର ପଳେଇଲା । ସେ ଯାହାହେଉ ଏତକ ତ ଅନୁଭବ କରି ହେଉଥିଲା ଯେ, ହଡ଼ାବଳଦର ମୃତ୍ୟୁ ପରେ ପ୍ରକୃତ ମୋହନ ମରିଯାଇଛି । ଗୋଠ ନେଇଗଲା ବେଳେ ମୋହନର ସେ ଉଦାସ ଉଦାସ, ଖୋଜିଲା ଖୋଜିଲା ଆଖି ଛାତି ଭିତରର ସମସ୍ତ ସହନଶୀଳତାକୁ ନଷ୍ଟ ବିନଷ୍ଟ କରିପକାଉଥିଲା । ଅନ୍ତତଃ, ପାର ଆଈ ଥା'ନ୍ତା କି ! ସମ୍ପର୍କର ତ୍ରିଭୁଜର ଦୁଇଟି ବାହୁ ଅପସାରିତ ହୋଇଗଲା ପରେ ଏକ ଦିଗହୀନ ସରଳରେଖା ପରି ମୋହନ ନିଜର ଅସ୍ତିତ୍ୱକୁ ସାବ୍ୟସ୍ତ କରୁଥିଲା ।

ମୋହନର ବଇଁଶୀ ବାଦନ କିନ୍ତୁ ବନ୍ଦ ହେଲା ନାହିଁ । ସେବେଠୁ ରାଧାମୋହନ ମନ୍ଦିରର ଚଉତରା ଉପରେ ବସି ସେ ବଂଶୀ ବଜେଇଲା । ଗାଁ ପୋଖରୀରୁ ମାଟି କଳସୀରେ ପାଣି ଘେନି ଘର ବାହୁଡୁଥିବା କିଶୋରୀ ଅବା ଅବଗୁଣ୍ଠନାମାନଙ୍କ ଛାତି ଭିତରେ ସିନା ସେ ବଇଁଶୀର ଯାଦୁକରୀ ସ୍ୱନ ସୃଷ୍ଟି କଲା ନାହିଁ କମ୍ପନ, ଉଛୁଳି ପଡ଼ିଲା ନାହିଁ କଳସୀର ପାଣି, ଛନ୍ଦମୟ ହୋଇ ଉଠିଲା ନାହିଁ ପାଦ, ହେଲେ, କେଉଁଠି କିଛି ହେଲା ନିଶ୍ଚୟ । ବଇଁଶୀର ସେ ତାଳ କେଉଁଠି ନା କେଉଁଠି ଢେଉ ହୋଇ କୂଳ ଉପରକୁ ଉଛୁଳି ପଡ଼ିଲା । କେଉଁଠି ନା କେଉଁଠି ଚାରୋଟି ପାଦ ସେ ତାଳ ସହ ତାଳ ରଖି ସୃଷ୍ଟି କଲା ମୋହିନୀ ମୁଦ୍ରା ! ମୁଁ ଜାଣେ, ମୋହନର ସେ ବଇଁଶୀର ଅନନ୍ୟ ଶବ୍ଦ ଟିକକ ଓଁକାର ପରି ବ୍ରହ୍ମଲୋକରେ ସାଧନାରତ ସବୁ ତପସ୍ୱୀମାନଙ୍କୁ କ୍ଷଣିକ ଭୁଲେଇ ଦେଲା ଯୋଗନିଦ୍ରାର ମୋହ । ଆମେ କ'ଣ୍ ବୁଝିଛେ ଶବ୍ଦ ବ୍ରହ୍ମକୁ ଯେ ! କି ବା ଜ୍ଞାନ ଆମର !!

ହାଇସ୍କୁଲ୍ ପରେ ସେଇ ଯେ ଗାଁରୁ ବିଦାୟ ମାନେ ବିଦାୟ । କଲେଜ ପଢ଼ା ସମୟରେ କଦବା ଛୁଟିମାନଙ୍କରେ ଗାଁକୁ ଗଲେ ସମୟ ବାଣ୍ଟି ହୋଇଯାଏ । ତା' ଭିତରେ ମୋହନ ପାଇଁ ଖୁବ୍ କମ୍ ସମୟ ବଂଚେ । ଗୋଠ ଧରି ଫେରୁଥିବା ମୋହନ କ୍ଷଣିକ ପାଇଁ ଚେତନାକୁ ଆନ୍ଦୋଳିତ କଲାବେଳକୁ କୌଣସି ନା କୌଣସି କାମ ପହଂଚିଯାଏ ହାତରେ । କେବଳ ସଂଜରେ ରାଧାମୋହନଂକ ମନ୍ଦିର ଆଡୁ ଭାସି ଆସେ ତା' ବଇଁଶୀର ଆହ୍ୱାନ । ଗାଁରୁ କଲେଜ ଫେରିବା ପରେ ହଷ୍ଟେଲ୍‌ରେ ମୋ ରୁମ୍‌ରେ ଶୋଇ ସେ ଆହ୍ୱାନକୁ ମୁଁ ମନେ ପକାଏ । କେବେକେବେ ସେ ଆହ୍ୱାନ ପାସୋରି ହୋଇଯାଏ । ଆମ ଭାଗଚାଷୀମାନେ ମୋହନକୁ ଅଳ୍ପ କିଛି ଚାଉଳ ଦେଇଥିଲେ । ସେଥିରେ ମୋହନ କେମିତି ଚଳେ କେଜାଣି । ଯେତେଥର ମୋହନ କଥା ଭାବିବାକୁ ଇଚ୍ଛା କରିଛି ସେତେ ବେଶୀ ତା'ଠାରୁ ଦୂରେଇ ଯାଇଛି । ଯେଉଁଦିନ ନୂଆ ଚାକିରିରେ ଜଏନ୍ କରିବାକୁ ଗାଁରୁ ଭୁବନେଶ୍ୱର ଆସିଲି ସମସ୍ତଙ୍କଠାରୁ ବିଦାୟ ନେଲା ପରେ ଇଚ୍ଛା ହେଲା ମୋହନକୁ ଦେଖା କରିବାକୁ । ମୋହନ ହାତରେ ବଇଁଶୀ ଧରି ପିଣ୍ଡା ଉପରେ ବସିଥିଲା । ତା' ପିଠି ଥାପୁଡ଼େଇ କହିଲି, 'କହ, ପହିଲି ଦରମାରୁ ତୋ ପାଇଁ କ'ଣ୍ ଆଣିବି !' ମୋହନ ହସିଲା, ଡାକିଲା 'ଟିକନ୍ନା' ! ସେଇ ଗୋଟିଏ ମାତ୍ର ଶବ୍ଦ, ମୋ ନାଁ । ବାସ୍ ତା'ପରେ ତା' ପୁରୁଣା ବଇଁଶୀକୁ ମୋତେ ଦେଖେଇଲା, ବର୍ଷ ବର୍ଷ ଧରି ବ୍ୟବହୃତ ହେଲା ପରେ ବଇଁଶୀର କଳେବର କିଛିଟା ପାଲିସ୍ ହୋଇଯାଇଥିଲେ ବି ତା' ରନ୍ଧ୍ରଗୁଡ଼ାକ ଅପେକ୍ଷାକୃତ ବଡ଼ ହୋଇଯାଇଥିଲେ । ବୁଝିଗଲା ପରି କହିଲି 'ଠିକ୍ ଅଛି, ତୋ' ପାଇଁ ନୂଆ ବଇଁଶୀଟିଏ ଆଣିବି । ମାସକୁ ମାସ ତୋ' ପାଖକୁ କିଛି ଟଂକା ପଠେଇବି, ବୁଝିଲୁ ।' ଆପାତତଃ ମୋହନର ଦାୟିତ୍ୱ ଯେ ମୁଁ ବହନ କଲି ଏକଥା ପରୋକ୍ଷରେ ବାପାଙ୍କୁ ଜଣେଇ ଦେଲି ।

ବର୍ଷେ ଖଣ୍ଡେ ହେବ ସବୁ ଠିକ୍ ଚାଲିଲା । ମୁଁ କିଛି ଅଳ୍ପ ଟଙ୍କା ବି ମୋହନ ଠିକଣାରେ ପଠାଉଥିଲି । ବଇଁଶୀଟାଏ କିଣିବି କିଣିବି ହୋଇ ସେତକ କିଣିପାରି ନଥିଲି । ଗାଁରେ ମୋହନ ସହ ଭେଟ ହେଲେ 'ଆର ଥରକୁ' କହି କଥା ଟାଳି ଦେଉଥିଲି । ପ୍ରକୃତ ପକ୍ଷେ ବଇଁଶୀ କିଣିବାଟା ମୋ'ର ମନେ ରହୁ ନଥିଲା । ଅନେକ ଥର ବାପି ପାଇଁ ଜିନ୍‌ସ କିଣା ହୋଇଛି, ବାପା-ବୋଉଙ୍କ ପାଇଁ ଧୋତି କି ଶାଢ଼ି । ଏମିତି ବର୍ଷ ପରେ ବର୍ଷ, ପାଖାପାଖି ଦଶ ବର୍ଷ । ପିଲାବେଳେ ମୋ' ପାଖରୁ ଗପ ଶୁଣୁଥିବା ବାପି ଆଜି ରସାୟନ ବିଜ୍ଞାନରେ ନିୟୁୟର୍କର ସର୍ବଶ୍ରେଷ୍ଠ ବିଶ୍ୱବିଦ୍ୟାଳୟରୁ ପୋଷ୍ଟ ଡକ୍ କରି ଦିଲ୍ଲୀରେ ଗୋଟାଏ ପ୍ରଭାବଶାଳୀ କମ୍ପାନୀର ସିନିଅର ରିସର୍ଚ୍ଚ ଆନାଲିଷ୍ଟ । ମୁଁ ଭୁବନେଶ୍ୱରରେ ସରକାରୀ ଅନୁଦାନପ୍ରାପ୍ତ କଲେଜରେ ଜଣେ ବରିଷ୍ଠ ଇଂରାଜୀ ଅଧ୍ୟାପକ । ଅନେକ ସ୍ୱପ୍ନ ମୋ'ର । ଅନେକଙ୍କ ପାଇଁ ସ୍ୱପ୍ନ ଆମର । ସେହି ଅସୁମାରି ସ୍ୱପ୍ନ ଭିତରେ କାହିଁ ମୋହନ ! କାହିଁ ତା' ବଇଁଶୀ !!

ଛାଡ଼, ଇଏ ସବୁ ଅତୀତ । ମୋହନ ବି ଅତୀତ ବନିଗଲାଣି । ଖାଲି ଯା' ପ୍ରତିଶ୍ରୁତିଗୁଡ଼ାକୁ ରଖିପାରିଲି ନାହିଁ । ଗୋଟାଏ ବର୍ଷ ପ୍ରତିଶ୍ରୁତି ପାଳନ କଲା ପରେ ବହୁତ କରି ପକେଇଛି ବୋଲି ଆତ୍ମସନ୍ତୋଷଟିଏ ମୋତେ କାବୁ କରିନେଇଥିଲା କି କଅଣ ! ତମାମ୍ ରାତି ଯନ୍ତ୍ରଣାରେ ସନ୍ତୁଳି ସନ୍ତୁଳି ସକାଳ ବେଳା ଦିନାନନାଙ୍କ ସହ ବାହାରି ପଡ଼ିଲି ଗାଁ ଆଡ଼େ । ଗାଁରେ ପହଂଚୁ ପହଂଚୁ ଅପରାହ୍ନ । ଗାଁଟା ବି ମୋତେ ଖାଲିଖାଲି ଲାଗିଲା । ଗାଁ ଦାଣ୍ଡରେ ଅଧିର ପାଦ ଥାପି ଘରଆଡ଼କୁ ମୁହାଁଉଥିଲା ବେଳେ ମୁଁ ଜାଣୁଥିଲି ଆଜି ସଂଧ୍ୟାରେ ରାଧାମୋହନ ମନ୍ଦିରରୁ ଆଉ ସେ ବଂଶୀ ସ୍ୱନ ଶୁଭିବ ନାହିଁ । ମନ୍ଦିର ପାଖ ପହଂଚିଲା ବେଳକୁ ମୋ' ଆଖି ଯୋଡ଼େ ଅକସ୍ମାତ୍ ବରଗଛ

ଉପରକୁ ଝାଙ୍କି ପଡ଼ିଲେ । ବରଗଛର ଡାଳ ସଂଧିରେ ପୁରୁଷ ପୁରୁଷ ଧରି ଘର କରି ରହିଥିବା ସେ କପୋତ ଦମ୍ପତିଙ୍କୁ ମୁଁ ଖୋଜୁଥିଲି । ପଛରୁ ଦିନାନନା କହିଲେ, 'କେତେଦିନ ହେଲାଣି ସେ କପୋତ-କପୋତୀ ଏ ଗଛ ଛାଡ଼ି ଉଡ଼ିଗଲେଣି ।' ରାଧାମୋହନଙ୍କ ଉଦ୍ଦେଶ୍ୟରେ ଯୋଡ଼ି ହୋଇଥିବା ମୋ' ହାତ ଯୋଡ଼େ ପୁଣି ଥରେ ସ୍ୱାଭାବିକ୍ ଅବସ୍ଥାକୁ ଫେରି ଆସିଲେ । ଦିନାନ୍ନା କହୁଥିଲେ 'ଜୋତା ବାହାର କରି ଜୁହାର ହ । ଯା'ହେଲେ ବି ଠାକୁର ମନ୍ଦିର ନା !!' ସେଇ ମୁହୂର୍ତ୍ତରେ ମୋତେ ଲାଗୁଥିଲା ଯେମିତି ଶ୍ରୀହୀନ ହୋଇଯାଇଛି ରାଧାମୋହନଙ୍କ ମନ୍ଦିର । ସ୍ୱର୍ଗରୁ ଓହ୍ଲେଇ ଆସିଥିବା ସେ ସ୍ୱର୍ଗୀୟ ରଥରେ ବସି ରାଧାମୋହନ ଯେମିତି ମନ୍ଦିରର ଆସ୍ଥାନରୁ ଉଡ଼ିଯାଇଛନ୍ତି ବୈକୁଣ୍ଠକୁ । ମନ୍ଦିରଟା ଯେମିତି ଖାଲି-ବିଗ୍ରହ ଶୂନ୍ୟ !

ଘରେ ପହଂଚି ଦିନାନ୍ନା ସହ ବାହାରିଲି ପୋଖରୀ ହୁଡ଼ାକୁ । ଠିକ୍ ସେଇ ହଡ଼ାବଳନ୍ଦର ସମାଧୀ ପାଖରେ ଜଳିଥିଲା ମୋହନର ଜୁଇ । ଜୁଇର ପାଉଁଶ ଛୁଇଁ ପ୍ରଣାମ କଲି । ଆଣିଥିବା ବଇଁଶୀଟିକୁ ସେ ପାଉଁଶର ସ୍ତୂପ ଉପରେ ଥୋଇ କହିଲି 'ତୋ' ପାଇଁ ଆଣିଛି ମୋହନ । ଭାବିଥିଲି ଏ ବଂଶୀରୁ ଥରେ ଶୁଣିବି ତୋ' କରୁଣ ଆଳାପ । ଛାଡ୍ । ତୁ ଯେଉଁଠି ଥା, ଶାନ୍ତିରେ ଥା ।' ଦିନାନ୍ନା ମୋତେ ଛାଡ଼ି ଶୌଚ ହେବାକୁ ପୋଖରୀ ଆଡ଼େ ଚାଲି ଯାଇଥିଲେ । ସେଠି କିଛି ସମୟ ବସିଲି ମୁଁ, ନୀରବରେ । ପାଉଁଶର ସେ ସ୍ତୂପ ଭିତରୁ ବଇଁଶୀର ସ୍ୱର ଶୁଣିବାକୁ କାନ ଡେରିଲି । ସେଇ ନୀରବତା ଭିତରେ ପାଉଁଶ ଭିତରୁ ମୋତେ ଯେମିତି କେହି ଡାକୁଥିଲା 'ଟିକନ୍ନା' !

ସଂଜର ବିଷାଦଗ୍ରସ୍ତ ପବନ ସାଥିରେ ଫେଣ୍ଟି ହୋଇ ଗୋଟାଏ କୋହ କି କ'ଣ ମୋ' ଭିତରଟାକୁ ଥରେଇ ଦେଲା । ଗୁହାଳ ପାଖ ସେ ଝାଟିମାଟି ଘର ଯେତିକି ନିଶବ୍ଦ ଥିଲା ତା'ଠୁଁ ବେଶୀ ନିଶବ୍ଦ ଥିଲା ମୋ' ଭିତରଟା । ମୁଁ ସେ ଦୁଇଟି ନୀରବତା ଭିତରେ ତୁଳନାତ୍ମକ ବିଶ୍ଳେଷଣ କରିପାରୁ ନଥିଲି ।

ସଂଜବେଳେ ଦାଣ୍ଡ ପିଣ୍ଡାର ସେ ଖଟ ଉପରେ ଗଡୁଗଡୁ ହଠାତ୍ ମୁଁ ଚମକି ଉଠିଲି କେଉଁଠୁ ଭାସି ଆସୁଛି ଏ ବଂଶୀ ସ୍ୱନ ! କେଉଁଠୁ !! ଶହଶହ ପୁଲକରେ ମୋ ଦେହମନ କେମିତି ପୁଲକିତ ହୋଇଉଠୁଥିଲା । ଅଧିର କଣ୍ଠରେ ମୁଁ ଡାକୁଥିଲି 'ମୋହନ ! ମୋହନ !!' ଦିନାନ୍ନା ମୋତେ ଜୋର୍ କରି ହଲେଇ ଦେଲା । ସେମିତି କିଛି ସ୍ୱନ ସେ ଶୁଣି ନାହିଁ ବୋଲି କହିଲା ଓ ମୁଁ ସ୍ୱପ୍ନ ଦେଖିଛି ବୋଲି ବୁଝେଇଲା । କେଜାଣି ତା' ସ୍ୱପ୍ନ ଥିଲା ନା ବାସ୍ତବତା ! ଯଦି ବାସ୍ତବତା ହୋଇଥାଏ ! ଭାବୁଥିଲି, ବାପିକୁ ପଚାରିବି । ସେ ତ ଏତେ ବଡ଼ ବୈଜ୍ଞାନିକ, ତା' ଅଭିଧାନରେ ଏ ରହସ୍ୟର ଉଲ୍ଲେଖ ଅଛି କି ନାହିଁ । ନହେଲେ, ଆପଣମାନେ କୁହନ୍ତୁ ମୁଁ ଯାହା ଶୁଣିଲି ତା' କ'ଣ ଖାଲି ଗୋଟାଏ ଭିତ୍ତିହୀନ ସ୍ୱପ୍ନ !! ଆପଣଙ୍କ ଭିତରୁ ଏହାର ଉତ୍ତର କେହି ଦେଇପାରିବେ ? ନା ମୋତେ ପୁଣି ଅପେକ୍ଷା କରିବାକୁ ପଡ଼ିବ ଅନେକ ଜନ୍ମଯାଏ, ଯେବେ ପୁଣି ବଇଁଶୀବାଦକ ହୋଇ ଜନ୍ମ ହେବ ମୋହନ, ଆଉ ମୁଁ ପୁଣି ଥରେ ଟିକନ୍ନା ହୋଇ !



# ପୁଅ

## ଗନ୍ତାୟତ ଶିବପ୍ରସାଦ

ବଡ଼ପୁଅ ଫୋନ୍ କରିଥିଲା ଯେ, ସେ ଠିକ୍ ଅପରାହ୍ନ ପାଞ୍ଚଟାରେ ଫ୍ଲାଇଟ୍‌ରେ ଆସି ରାଜଧାନୀରେ ପହଞ୍ଚିବ ଓ ସେଠାରୁ କାର୍‌ରେ ଗାଁକୁ ଯିବାକୁ ଘଣ୍ଟାଏ ଲାଗିବ । ପାର୍ଟି ଆରମ୍ଭ ହେବାର ଠିକ୍ ଅଧଘଣ୍ଟା ପୂର୍ବରୁ ସେ ଯାଇ ଘରେ ପହଞ୍ଚିବ । ପିଲାମାନଙ୍କ ପରୀକ୍ଷା ଚାଲିଥିବା ଯୋଗୁଁ ବୋହୂ ଆସିନପାରେ । କିନ୍ତୁ ସେ ନିଶ୍ଚୟ ଆସିବ । ତେଣୁ ଏ ନେଇ ବାପା ବୋଉ ଜମ୍ମା ବ୍ୟସ୍ତ ହୁଅନ୍ତୁ ନାହିଁ ।

ପୁଅର ଏକଥା ଶୁଣି ସଦାନନ୍ଦ ବି ବ୍ୟସ୍ତ ହୋଇନଥିଲେ । ବଡ଼ପୁଅଟା ସବୁବେଳେ ଏମିତି । ସବୁକଥାରେ ତରବର ହେଉଥିବ । ଠିକ୍ ସମୟରେ ଠିକଣା ସ୍ଥାନରେ ପହଞ୍ଚିବ । କାମ ସରିବା ମାତ୍ରେ ସେଠାରୁ ପଳାଇବାର ରାସ୍ତା ଖୋଜୁଥିବ । ମୁହୂର୍ତ୍ତେ ସମୟ ଏପଟ ସେପଟ କରିବା ତା'ର ପସନ୍ଦ ନୁହେଁ । ତା'ପରେ, ତା'ର ଏତେ ବଡ଼ ଦାୟିତ୍ୱପୂର୍ଣ୍ଣ ଚାକିରି । ଏକ ଖ୍ୟାତନାମା ବିଦେଶୀ କଂପାନୀର ମାର୍କେଟିଂ ମ୍ୟାନେଜର ହେବା କିଛି ଫୁଲାଫାଙ୍କିଆ କଥା ନୁହେଁ । ତା'ର ପ୍ରତି ମିନିଟ୍ ମୂଲ୍ୟବାନ୍ ।

ସଦାନନ୍ଦଙ୍କର ବଡ଼ପୁଅ ଉପରେ ବହୁତ ଭରସା । ତାଙ୍କ ସହ କଥା ହେବାବେଳେ ପୁଅ ଯଥେଷ୍ଟ ସଂଭ୍ରମତା ରକ୍ଷ କରିଥାଏ । ତାଙ୍କୁ ବହୁତ ଖାତିର୍ କରେ । ତେଣୁ ସେ ନିଶ୍ଚିନ୍ତ ହେଲେ ଯେ ବଡ଼ପୁଅ ପାର୍ଟି ଦିନ ଠିକ୍ ସମୟରେ ପହଞ୍ଚିବ । ଝିଅ ବି ଚିଠି ଦେଇଛି ଜୋଇଁଙ୍କୁ ନେଇ ସେ ମଧ୍ୟ ଆସୁଛି । ସଦାନନ୍ଦଙ୍କ ଛାତି କୁଣ୍ଢେ ମୋଟ ହୋଇଗଲା । ଯା ହେଉ ପୁଅଝିଅ ଦି ଜଣ ଆସିବେ ବୋଲି ପ୍ରତିଶ୍ରୁତି ଦେଲେ । ଯେତେହେଲେ ତାଙ୍କର ଜନ୍ମଦିନ ଉତ୍ସବ । ତା'ପରେ ସେଇ ଦି' ଜଣ ତ ଗତଥର ଆସିଥିବା ବେଳେ ଜିଗର କରିଥିଲେ, ଏଥର ବାପାଙ୍କ ଷାଠିଏତମ ଜନ୍ମଦିନ ନିଶ୍ଚୟ ପାଳନ କରାଯିବ । ଧୁମ୍ ଧାମ୍‌ରେ ପାର୍ଟି ହେବ । ସହରରୁ ସମସ୍ତ ସାଙ୍ଗସାଥି ଓ ବଂଧୁବାଂଧବଙ୍କୁ ନିମନ୍ତ୍ରଣ କରାଯିବ । ବଡ଼ ପୁଅ କହିଥିଲେ ସେ ତା'ର ସ୍ତ୍ରୀ ଓ ପିଲାଙ୍କୁ ନେଇ ଦୁଇଦିନ ପୂର୍ବରୁ ପହଞ୍ଚିଯାଇ ସବୁ ବ୍ୟବସ୍ଥା କରିବ । ଝିଅ ବି ଠିକ୍ ସେମିତି ପ୍ରତିଶ୍ରୁତି ଦେଇଥିଲା ।

ଛଅମାସ ତଳେ ସେମାନେ ସମସ୍ତେ ଘରକୁ ଆସିଥିଲେ । ସଦାନନ୍ଦ ହିଁ ସେମାନଙ୍କୁ ଡକାଇଥିଲେ । ନିଜ ତରଫରୁ ହିଁ ସେ ତାଙ୍କ ସଂପତ୍ତିକୁ ଭାଗ କରିବାର ପ୍ରସ୍ତାବ ଦେଇଥିଲେ । ବଡ଼ପୁଅ ଓ ଝିଅ ତ ପ୍ରଥମେ ମନା କରୁଥିଲେ । ବାପା ବୋଉ ଥାଉଁ ଥାଉଁ ସଂପତ୍ତି ବଣ୍ଟୁଆରା କ'ଣ ଲୋଡ଼ା ? ଆମେ ତ କେହି ଭାଗ ମାଗୁ ନାହୁଁ । ତଥାପି ସଦାନନ୍ଦ ଜୋର୍ କରି ଭାଗବାଣ୍ଟି ଦେଲେ ନିଜର ସମସ୍ତ ସଂପତ୍ତିକୁ । ବଡ଼ ପୁଅ ଓ ଏକମାତ୍ର ଝିଅ ପାଇଁ ହୁଏତ ସଂପତ୍ତି ଭାଗ ହେବା ଲୋଡ଼ା ପଡୁନଥାଇପାରେ । କିନ୍ତୁ ସେ ଥାଉଁ ଥାଉଁ ସାନପୁଅ ସ୍ନେହାଶୀଷ ପାଇଁ ତ କିଛି ବ୍ୟବସ୍ଥା କରାଯିବା ଦରକାର ।

ଏତେ ସୁନ୍ଦର ସମର୍ଥ ପରିବାର ମଧ୍ୟରେ ତାଙ୍କର ସେଇ ଗୋଟିଏ ମାତ୍ର ଦୁଃଖ-ସ୍ନେହାଶୀଷ । ପିଲାବେଳୁ ତା'ର ଗୋଡ଼ ଦୁଇଟି ପୋଲିଓରେ ଅଚଳ ହୋଇ ନଥିଲେ ସେ ବି ବଡ଼ ଅଫିସରଟିଏ କି ଇଂଜିନିୟରଟିଏ ହୋଇସାରନ୍ତାଣି । ଏବେ ଖାଲି ହୁଇଲ୍ ଚେୟାରରେ ବସି ଘୋଷାରି ହେବା ତା' ଜୀବନ । ଘରେ ରହି ପାଠପଢ଼ି ସେ ଏମ୍.ଏ.ପାଶ୍ କରିଛି ସିନା, ଚାକିରି ବାକିରି ତ ଆଉ କରି ପାରିବ ନାହିଁ । ନିଜେ ସଦାନନ୍ଦ ଅଛନ୍ତି ବୋଲି ସିନା ଚଳିଯାଉଛି । ତାଙ୍କ ଅନ୍ତେ ତା'ର ରୋଜଗାର ଆସିବ କେଉଁଠୁ ? ତେଣୁ ସଦାନନ୍ଦ ବେଶ୍ କିଛି ଜମି, ସେମାନେ ରହୁଥିବା ବଂଗଳା ଓ ମୋଟା ଅଂକର ଫିକ୍ସ୍ଡ ଡିପୋଜିଟ୍ ସ୍ନେହାଶୀଷ ନାମରେ କରିଦେଲେ ।

ଅବଶ୍ୟ ବଡ଼ ପୁଅ ଓ ଝିଅଙ୍କୁ ବି ସେ ଊଣା କରିନାହାନ୍ତି । ନିଜ ପାଇଁ ପେନ୍‌ସନ୍ ଟଙ୍କାତକ ଛାଡ଼ିଦେଇ ସେ ଅବଶିଷ୍ଟ ସବୁତକ ସଂପତ୍ତି ସେମାନଙ୍କ ନାମରେ କରିଦେଇଛନ୍ତି । ଏପରିକି ନିଜ ପତ୍ନୀ ଯଶୋଧାରାଙ୍କ ପାଇଁ ବି କିଛି ରଖିନାହାନ୍ତି । ତାଙ୍କ ପରେ ତ ସେ ପେନ୍‌ସନ୍ ପାଇବେ । ସ୍ନେହାଶୀଷର ଦେଖାଶୁଣା କରି ତାଙ୍କ ଜୀବନଟା କ'ଣ କଟିଯିବନି ? ତାଙ୍କର ଏଇ ନିଷ୍ପତ୍ତିକୁ ସଭିଏଁ ବିନା ପ୍ରତିବାଦରେ ଗ୍ରହଣ କରି ନେଇଥିଲେ । ଭାଗବଣ୍ଟା ପରେ ବଡ଼ପୁଅ ଓ ଝିଅ ଉଭୟ ଜିଦ୍ ଲଗାଇଲେ ଯେ, ବାପା ଓ ବୋଉ ସେମାନଙ୍କ ଘରେ ରହନ୍ତୁ । ସାନଭାଇ ପାଇଁ ଚାକରଟେ ରଖିଦେବା । ତେବେ ଯାଶୋଧାରା ରୋକ୍‌ଠୋକ ଭାବେ ମନା କରିଦେଲେ । ଏ ବୟସରେ ସେ ସଦାନନ୍ଦଙ୍କୁ ଛାଡ଼ି ଯାଇ ପାରିବେ ନାହିଁ । ଏଥିରେ ବଡ଼ପୁଅ ଓ ଝିଅ ମନଊଣା କରିଥିଲେ । ଯିବା ବେଳେ କହିଥିଲେ ଯେମିତି ହେଉ ବାପାଙ୍କ ଆଗାମୀ ଜନ୍ମ ଦିନରେ ସେମାନେ ଆସି ଘରେ ପହଞ୍ଚିବେ । ସେଦିନ ଯେମିତି ବିରାଟ ଭୋଜିଭାତର ଆୟୋଜନ ହୁଏ ।

ସଦାନନ୍ଦ କିନ୍ତୁ ବାହାର ଲୋକଙ୍କୁ ନିମନ୍ତ୍ରଣ କରି ଘରେ ହୋ'ହଲ୍ଲା କରିବାକୁ ପସନ୍ଦ କଲେ ନାହିଁ । ସେ ସ୍ଥିର କଲେ, ପିଲାଏ ଯଦି ଏତେ ଖୁସି ହେଉଛନ୍ତି,.ତେବେ କେବଳ ସେମାନଙ୍କ ମେଳରେ ହିଁ ସେ ଉତ୍ସବଟିକୁ ପାଳିବେ । ସେଥିରେ ବାହାର ଲୋକଙ୍କର ପ୍ରବେଶ ନିଷେଧ । ସେ ଜନ୍ମଦିନ ସକାଳଟି ଠାକୁର ଦର୍ଶନ ଓ ପୂଜାପାଠରେ କଟାଇବେ । ସଂଧ୍ୟା ବେଳକୁ ଯାହା ବି ପାର୍ଟି ହେବ, ସେଥିରେ କେବଳ ତାଙ୍କ ପରିବାରର ସଦସ୍ୟମାନେ ହିଁ ରହିବେ । ଏତେ ଗାଉଣା ବାଜଣା, କୋଳାହଳ ତାଙ୍କୁ ଭଲ ଲାଗେ ନାହିଁ । ତେଣୁ ସେ ନିଜ ଜନ୍ମଦିନ ଉତ୍ସବଟିକୁ ନିରାଡମ୍ବର ଭାବରେ ପାଳନ କରିବାକୁ ସ୍ଥିର କଲେ ।

ଜନ୍ମଦିନ ସକାଳୁ ଯଶୋଧାରାଙ୍କର ଗୋଡ଼ ତଳେ ଲାଗୁ ନଥାଏ । ଆଜି ତାଙ୍କ ବଡ଼ପୁଅ ଓ ଝିଅ ଜୋଇଁ ଆସିବେ । ସବୁବେଳେ ଖାଁ ଖାଁ ଲାଗୁଥିବା ଘରଟା ଆଜି ଉତ୍ସବ ମୁଖରିତ ହୋଇ ଉଠିବ । ସ୍ୱାମୀ ଚାକିରିରୁ ଅବସର ନେବା ପର୍ଯ୍ୟନ୍ତ ସେ କେବଳ ବଡ଼ବଡ଼ ସହରରେ ରହି ଆସିଛନ୍ତି । ସବୁବେଳେ ଚାକର, ଅର୍ଦ୍ଦଳି ଓ ଆୟାମାନେ ଘରେ ଆତଯାତ ହୋଇ ଆସିଛନ୍ତି ।

ଏବେ କିନ୍ତୁ ଜୀବନଟା ପୂରାପୂରି ଶୂନ୍‌ଶାନ୍ । ଏତେ ବଡ଼ ବଂଗଳା ଭଳି ଘରଟାରେ ସେମାନେ ତିନି ପ୍ରାଣୀ; ସନାନନ୍ଦ, ସେ ଓ ସ୍ନେହାଶୀଷ । ଘରେ ଚାକର ବି ରଖିବାକୁ ସଦାନନ୍ଦ ପସନ୍ଦ କରନ୍ତିନି । ସ୍ନେହାଶୀଷ ଅଚଳ ହୋଇଯିବା ଦିନଠାରୁ ନିଜେ ଯଶୋଧାରା ତା'ର ସେବା ଯତ୍ନ କରନ୍ତି । କୌଣସି ଦିନ ସେ ସାନପୁଅ ଉପରେ ପ୍ରକାଶ୍ୟରେ ବିରକ୍ତ ହୋଇନାହାନ୍ତି । ତାଙ୍କର ଭୟ ସେ କାଳେ ସ୍ୱାମୀଙ୍କ ଆଖିରେ ଛୋଟ ହୋଇଯିବେ । ସ୍ୱାମୀ ଭାବିବେ ଯେ, ମାଆ

ହୋଇ ନିଜ ପୁଅଟାର ସେବା କରିବାକୁ ଘୃଣା କରୁଛି । ତାଙ୍କ ମନରେ ଯେ ବିକଳାଙ୍ଗ ପୁଅ ପ୍ରତି ଘୃଣା ଅଛି, ତା ନୁହେଁ । ତେବେ କୋଡ଼ିଏ ବର୍ଷ କାଳ ସ୍ନେହାଶୀଷର ସେବା କରି କରି ତାଙ୍କର ଏକରକମର ନିରାସକ୍ତ ଭାବ ଆସିଯାଇଛି । ଏବେ ସେ ଯନ୍ତ୍ରଚାଳିତ ଭାବେ ପ୍ରତି ଦିନ ପୁଅର ସେବା କରନ୍ତି । ନିତ୍ୟକର୍ମରେ ସାହାଯ୍ୟ କରନ୍ତି । କିନ୍ତୁ ଏହା ଭିତରେ କିଛି ବର୍ଷ ପୂର୍ବେ ଥିବା ତାଙ୍କର ଅନ୍ତରଙ୍ଗ ଭାବଟି ଧୀରେ ଧୀରେ ଉଭେଇ ଯିବାକୁ ବସିଛି । ସ୍ନେହାଶୀଷ ସହ ବିଶେଷ କଥାବାର୍ତ୍ତା ସେ ହୋଇପାରନ୍ତି ନାହିଁ କି ତା' ମୁହଁ ସହ ମୁହଁ ମିଳାଇ ଚାହିଁ ପାରନ୍ତି ନାହିଁ । ସ୍ନେହାଶୀଷ ନିକଟରେ ଥିବା ବେଳେ ସତେ ଅବା ସେ ମୂକ ପାଲଟିଯାନ୍ତି । ତାଙ୍କ ମୁହଁର ଭାଷାକୁ କେହି ଯେମିତି ଚୋରୀ କରି ନେଇଯାଏ !

ସଦାନନ୍ଦ ବି ସେମିତି ! ବଡ଼ ପୁଅ ଓ ଝିଅ ସହ ଯେମିତି ଫ୍ରି ହୋଇପାରନ୍ତି, ସ୍ନେହାଶୀଷ ସହ ମୋଟେ ସେପରି ହୋଇପାରନ୍ତି ନାହିଁ । ଅବଶ୍ୟ ତା' ପାଇଁ ଯେତେବେଳେ ଯାହା ଦରକାର ତାହା ଯୋଗାଇ ଦେବାରେ ମୋଟେ ହେଳା । କରିନାହାନ୍ତି ସେ । ପୂର୍ବେ ବେଳେ ବେଳେ ସ୍ନେହାଶୀଷ ନିକଟରେ ବସି ତା' ପାଠ ବିଷୟରେ କଥାବାର୍ତ୍ତା କରୁଥିଲେ । ମାତ୍ର ଅବସର ନେଇ ଗାଁକୁ ଆସିବା ପରେ ସେତକ ବି ପ୍ରାୟ ବନ୍ଦ ହୋଇଗଲାଣି କହିଲେ ଚଳେ । କେବେ କେମିତି ପୁଅ ସହ ମୁହାଁମୁହିଁ ହୋଇଗଲେ ସାମାନ୍ୟ ହସି ଦିଅନ୍ତି ସେ ।

ସବୁବେଳେ ସ୍ନେହାଶୀଷ ତା' ରୁମ୍‌ରେ ହୁଇଲ୍ ଚେୟାର୍‌ରେ ବସିଥାଏ । ବସି ବସି ଚିତ୍ର ଆଙ୍କେ । ଭାରି ସୁନ୍ଦର ଚିତ୍ର ଆଙ୍କିପାରେ ସେ । ତା' ପାଇଁ ସଦାନନ୍ଦ ମୂଲ୍ୟବାନ୍ ତୂଳୀ, ରଙ୍ଗ ଇତ୍ୟାଦି ଆଣି ଦେଇଛନ୍ତି । କିନ୍ତୁ କେଜାଣି କାହିଁକି ତା' ହାତଅଙ୍କା ଚିତ୍ର ସବୁ ନିଜେ ଦେଖିବାର ବା କାହାରିକୁ ଦେଖାଇବାର ଆଗ୍ରହ ତାଙ୍କର ସୃଷ୍ଟି ହୋଇନାହିଁ । ସ୍ନେହାଶୀଷ ନିଜେ ନିଜେ ଚିତ୍ର ଆଙ୍କେ ଓ ତାକୁ ବାକ୍‌ସ ଭିତରେ ସାଇତି ରଖେ, କାହାକୁ ଦେଖାଏ ନାହିଁ କି ସେ ବିଷୟରେ ଆଲୋଚନା କରେ ନାହିଁ । ବଡ଼ ଭାଇ ଓ ଭଉଣୀ ଆସିଲେ କେବଳ ସୌଜନ୍ୟ ରକ୍ଷା ପାଇଁ ଯେତିକି କଥାବାର୍ତ୍ତା ଲୋଡ଼ା, ତା'ଠାରୁ ଅଧିକ ତା' ସଙ୍ଗେ କଥା ହେବାକୁ ପସନ୍ଦ କରନ୍ତି ନାହିଁ । ସେମାନେ ଜୀବନରେ ସଫଳ ହୋଇଛନ୍ତି । ଦୁନିଆ ଦୃଷ୍ଟିରେ ବଡ଼ ମଣିଷ ବୋଲାଉଛନ୍ତି । ସେମାନେ କାହିଁକି ତା' ଭଳି ଅଲୋଡ଼ା, ବିଫଳ ଓ ଅପାଂକ୍ତେୟ ଜୀବନକୁ ଝୁଙ୍କି ପଡ଼ି ଦେଖିବେ ଓ ବୁଝିବେ ? ସଦାନନ୍ଦ ବି ଅନ୍ୟମାନଙ୍କ ସହ ବହୁତ ଖୁସିରେ ମିଶନ୍ତି, ଅଥଚ ସ୍ନେହାଶୀଷକୁ ଦେଖିଲେ ଗମ୍ଭୀର ହୋଇଯାନ୍ତି । ହଠାତ୍ ଏକ ଥମ୍ ଥମ୍ ଭାବ ତାଙ୍କୁ ଗ୍ରାସି ବସେ । ବେଳେ ବେଳେ ସେ ଦୟା କରି ବସନ୍ତି ତାଙ୍କ ବିକଳାଙ୍ଗ ପୁଅଟାକୁ । ବିଚରା ଜୀବନରେ କ'ଣ କରିବ କେଜାଣି ! ସେ ଭାବି ପାରନ୍ତିନି ଯେ, ଏ ମଧ୍ୟରେ ସେ ଅସହାୟ ବିଚରା ପିଲାଟି ଛବିଶ ବର୍ଷର ଯୁବକଟେ ହୋଇଗଲାଣି । ସେ ବି ତା' ଦୃଷ୍ଟିରେ ଜୀବନକୁ ପରଖି ନେଲାଣି । ସଦାନନ୍ଦ ସବୁବେଳେ ତାକୁ ନିଜ ସନ୍ତାନ ତାଲିକାରୁ ବାଦ୍ ଦିଅନ୍ତି । ବରଂ ତାଙ୍କ ଉପରେ ଆଶ୍ରିତ ଏକ ଅସହାୟ ଜୀବନ ଭାବରେ ହିଁ ତାକୁ ଦୟା ଓ ସହାନୁଭୂତି ଦେଖାଇ ଆସିଛନ୍ତି । ତେଣୁ ହିଁ ସେ ନିଜ ଜନ୍ମଦିନ ସଂପର୍କରେ ତା' ସହ ପଦୁଟିଏ ବି କଥା ହୋଇ ନାହାନ୍ତି । ନିଜେ ନିଜେ ସବୁ ବ୍ୟବସ୍ଥା କରି ଚାଲିଛନ୍ତି ।

ସବୁ କିଛି ଠିକ୍ ଠାକ୍ ଚାଲିଛି । ସଦାନନ୍ଦ ଓ ଯଶୋଧାରା ବ୍ୟସ୍ତ ହେଉଥିଲେ ମଧ୍ୟାହ୍ନ ଯାଇ ଅପରାହ୍ନ ଚାରିଟା ବାଜିଲାଣି, ଝିଅ କିନ୍ତୁ ଏ ଯାଏଁ ଆସିନାହିଁ । ବାଟରେ କ'ଣ ଅସୁବିଧା ହେଲାକି ? ପଡ଼ିଶା ଘରର ପୁଅଟାକୁ ପଠାଇ ବୁଝିଲେ ଯେଉଁ ଏକମାତ୍ର ବସ୍‌ଟିରେ ସେମାନେ ଆସିବା କଥା, ତାହା କେତେ ବେଳୁ ଆସି ଫେରିଗଲାଣି । ତା' ହେଲେ କ'ଣ ଝିଅ ଆସିଲା ନାହିଁ ? କିନ୍ତୁ ଚିଠିରେ ତ ସେ ନିଶ୍ଚିତ ଭାବେ ଆସିବ ବୋଲି ଲେଖିଥିଲା । ଦୁଇଦିନ ପୂର୍ବରୁ ନହେଲା ନାହିଁ ଆଜି ତ ଆସି ପାରିଥାନ୍ତା ! ଯଦି ଆସିବାର ନଥିଲା, ତେବେ ଅନ୍ତତଃ ଫୋନ୍‌ରେ ତ କହି ପାରିଥାନ୍ତା ! ସଦାନନ୍ଦ ମନେ ମନେ ହତାଶ ହୋଇପଡୁଥିଲେ । ଅଥଚ ଯଶୋଧାରା କହିଚାଲିଥାନ୍ତି, 'ଝିଅ ନ ହେଲା ନାଇଁ, କିନ୍ତୁ ଦେଖ ମୋ ବଡ଼ ପୁଅ ନିଶ୍ଚେ ଆସୁଛି । ଛଅଟା ବାଜିବାକୁ ବସିଲାଣି, ସେ ଗାଁ ମୁଣ୍ଡରେ ପହଞ୍ଚି ସାରିଥିବ । ଯାଅ ଟିକେ ଦେଖିବ ଯାଅ' ।

ସଦାନନ୍ଦଙ୍କ ମନରେ ବି ଭରସା ଥିଲା ବଡ଼ପୁଅ ନିଶ୍ଚୟ ଆସିବ । ଝିଅ ସିନା ପରଘରକୁ ଚାଲିଗଲା ଯେ, ଏତେ ଶୀଘ୍ର ସ୍ନେହ ମମତା ଊଣା କରିପାରିଲା । କିନ୍ତୁ ବଡ଼ପୁଅ ତ କେବେ ତାଙ୍କ କଥାରେ ଅବାଧ ହୋଇନି, ତାଙ୍କୁ ବେଖାତିର କରିନି । ଛଅମାସ ତଳର ଆଗ୍ରହ, ଦୁିଦିନ ତଳର ପ୍ରତିଶ୍ରୁତି ସବୁ କ'ଣ ମିଛ ହୋଇଯିବ ? ନା ନା ମୋଟେ ନୁହେଁ । ବଡ଼ ପୁଅ ତାଙ୍କର ଏକମାତ୍ର ଭରସା । ସେ ହିଁ ତାଙ୍କ ଜୀବନର ସ୍ୱପ୍ନକୁ ସାକାର କରିବ । ସେ ଆସିବ, ନିଶ୍ଚୟ ଆସିବ । ସଦାନନ୍ଦ ପୁଅକୁ ସ୍ୱାଗତ କରିବା ପାଇଁ ଉଠିଯିବା ବେଳକୁ ଫୋନ୍ ବାଜି ଉଠିଲା । ଯଶୋଧାରା ଯାଇ ଫୋନ୍ ଧରିଲେ । କିଛି ସେକେଣ୍ଡ ପରେ ଫୋନ୍ ରଖିଦେଇ ବିଷର୍ଣ୍ଣ ମନରେ ଘର ଭିତରକୁ ଫେରିଗଲେ । ସଦାନନ୍ଦ ପଛେ ପଛେ ଯାଇ ଫୋନ୍ ବିଷୟରେ ବୁଝିଲେ । ଯଶୋଧାରା ହଠାତ୍ କାନ୍ଦି ପକାଇ ତାଙ୍କ କାଂଧରେ ମୁଣ୍ଡରଖି କହିଲେ– ପୁଅ ଫୋନ୍‌ରେ କହିଲା, ତା'ର ଜରୁରୀ ମିଟିଂ ଥିବାରୁ ସେ ଆସିପାରିବ ନାହିଁ । ସଦାନନ୍ଦଙ୍କ ମୁହଁ କଳା ପଡ଼ିଗଲା । ଯେଉଁ ପୁଅ ଉପରେ ସେ ତମାମ୍ ଜୀବନର ଭରସା ରଖିଥିଲେ, ଶେଷରେ ସେ... । ତାଙ୍କ ଆଖିରେ ଲୁହ ଜକେଇ ଆସିଲା । ତେବେ ଏ ଜନ୍ମଦିନ, ଏତେ ଆୟୋଜନ, ଏତେ ଖୁସିବାସି- ଏସବୁ କାହା ପାଇଁ ?

ସଦାନନ୍ଦ ହତାଶ ମନରେ ପୂଜା ରୁମ୍‌କୁ ଚାଲିଯାଉଥିଲେ । ହଠାତ୍ ତାଙ୍କର କ'ଣ ମନେ ହେଲା କେଜାଣି, ସେ ସ୍ନେହାଶୀଷ ରୁମ୍‌ର ଦରଜା ଧୀରେ ଖୋଲି ଉଙ୍କି ମାରିଲେ । ଦେଖିଲେ ତାଙ୍କୁ ପଛ କରି ସ୍ନେହାଶୀଷ ହୁଇଲ୍ ଚେୟାର୍‌ରେ ବସିଛି ଓ ସାମ୍‌ନାକୁ ଚାହିଁ କ'ଣ ଗୁଣୁଗୁଣୁ ହେଉଛି । ସଦାନନ୍ଦ ନିଃଶବ୍ଦରେ ଭିତରକୁ ପଶିଲେ । ପଛେ ପଛେ ଯଶୋଧାରା ବି । ଦିହେଁ ଯାଇ ସ୍ନେହାଶୀଷର ପଛ ପଟେ ଠିଆ ହେଲେ । ସାମ୍‌ନାରେ ଯାହା ଦେଖିଲେ ସେଥିରେ ସେମାନେ ସ୍ତବ୍ଧ ହୋଇଗଲେ ।

ସ୍ନେହାଶୀଷ ତା' ସାମନା ଛୋଟ ଟେବୁଲ୍‌ଟିରେ ଠିଆ କରିଛି ନିଜ ହାତ ଅଙ୍କା ଏକ ସୁନ୍ଦର ଚିତ୍ରପଟ୍ଟ- ସଦାନନ୍ଦ ଓ ଯଶୋଧାରାଙ୍କର । ଚିତ୍ର ତଳେ ସୁନ୍ଦର ଅକ୍ଷରରେ ଲେଖିଛି- 'ଷାଠିଏତମ ଜନ୍ମଦିନ- ବାପାଙ୍କୁ ମୋର ଅଭିନନ୍ଦନ' । ଚିତ୍ରଟିକୁ ସାମନାରେ ରଖି ସେ ଆଖିବୁଜି ଅସ୍ପଷ୍ଟ ସ୍ୱରରେ କହି ଚାଲିଛି, ''ହେ ପ୍ରଭୁ, ମୋ ବାପା ବୋଉଙ୍କୁ ମୋର ଆୟୁଷତକ ଦେଇଦିଅ, ସେମାନଙ୍କ ଜୀବନର ସବୁ ଦୁଃଖ କଷ୍ଟ ମୋତେ ଦିଅ । ସେମାନଙ୍କୁ ସୁଖରେ ରଖ ପ୍ରଭୁ, ସୁଖରେ ରଖ ।'' ତା' ଆଖିରୁ ଧାର ଧାର ହୋଇ ଲୁହ ବୋହି ଚାଲିଛି । ସେ ବାରମ୍ବାର ଘୋଷି ହେଉଛି

ସେଇ ପଦଗୁଡ଼ିକ । ଭାବନାର ଆତିଶଯ୍ୟାରେ ସେ ଲକ୍ଷ୍ୟ କରିପାରିନାହିଁ, ତା' ପଛରେ କେତେବେଳୁ ତା' ବାପା ବୋଉ ଆସି ଠିଆ ହୋଇଛନ୍ତି । ସତେ ଯେମିତି ସେ ହୋସ୍‌ରେ ନାହିଁ । ତା'ର ଅସ୍ପଷ୍ଟ ସ୍ୱର କ୍ରମେ ସ୍ପଷ୍ଟରୁ ସ୍ପଷ୍ଟତର ହେଉଛି ।

ସଦାନନ୍ଦ ଓ ଯଶୋଧାରା ଆଉ ସଂଭାଳି ପାରିଲେ ନାହିଁ । ଭୋ ଭୋ ହୋଇ କାନ୍ଦି ସେମାନେ ଲୋଟିଗଲେ ସ୍ନେହାଶୀଷ କୋଳରେ । ସ୍ନେହାଶୀଷ ଆଶ୍ଚର୍ଯ୍ୟ, ଚକିତ । ସେ ଭାବି ପାରୁନି ଘଟଣା କ'ଣ ! ସଦାନନ୍ଦ କହି ଚାଲିଥାନ୍ତି 'ଯଶୋଧାରା, ହେଇ ଆମ ପୁଅ ଆମ ନିକଟରେ ଅଛି । ଆମର ଅତି ନିକଟରେ ଅଛି । ଆମର ଆଉ କାହାକୁ ଖୋଜିବା ଲୋଡ଼ା ନାହିଁ' । ଯଶୋଧାରାଙ୍କ ଆଖିରୁ ଲୁହ ବୋହି ଚାଲିଥାଏ ।' ସଦାନନ୍ଦ ସ୍ନେହାଶୀଷର ହାତ ଧରି ପକାଇ କହିଲେ 'ମୋତେ କ୍ଷମା କର ପୁଅ, ତୋ ପ୍ରତି ବହୁତ ଅନ୍ୟାୟ କରିଛି'- ଏତକ କହି ସେ ଆହୁରି କାନ୍ଦି ଉଠିଲେ । ସ୍ନେହାଶୀଷ ଆଖିରେ ବି ଲୁହ । ତା' ସାମନାରେ କାନ୍ଦୁଥିବା ଦୁଇଜଣ ବୟସ୍କ ମଣିଷ ତା' ପାଇଁ ହୋଇଉଠିଥିଲେ ଦୁଇଟି ଅବୁଝା ଶିଶୁ । ସେ କ'ଣ କହି ସେମାନଙ୍କୁ ମନବୋଧ କରିବ, ଜାଣିପାରୁନଥିଲା ।



# ଗୋଟିନା

## ଆଦିତେଶ୍ୱର ମିଶ୍ର

ବା' ବାଆ...

ବଂଶଧାରା ପଶ୍ଚିମର ବଣ୍ଡା ପାହାଡ଼ରେ ଗାଉଁଲିଆ ସୂର୍ଯ୍ୟଙ୍କୁ ମାଳେ ଧଳାବଗ ବେଖାତିର ଭାବେ ଆଡ଼େଇ ନେଇଗଲା ବେଳେ ସୂର୍ଯ୍ୟଟା ବି କାହିଁକି ପାହାଡ଼କୁ ଅନ୍ଧାର ମଖେଇ ଖସିଯାଇଛି । ଖସିଯିବା ଆଗରୁ ଯାହା ବଂଶଧାରାରେ ଝରିପଡୁଚି କୋଉ କିମ୍ବଦନ୍ତୀର ଅଢ଼େଇ ଦଣ୍ଡ ସୁବର୍ଣ୍ଣ ବର୍ଷା । ଝିପିଝିପି । ଯେମିତି ନଈ ଦେହରେ ମା'ଟିଏ ତା' ଅବୁଝା ଝି' ପାଇଁ ଗଢ଼େଇ ଦେଇଚି ନଟେଇଏ ନାଲି ପଶମ । ସୁଅ ସାଥିରେ ଦରବୁଣା ଡିଜାଇନ୍ ପରି ଦୋହଲୁଚି ସୁନା ସୁନା ଛାଇର କିରଣ ।

ଚନ୍ଦନଗଡ଼ ପରି ପର୍ଦ୍ଦେଶୀ ଗାଇ ମଢ଼ଟାକୁ ନଈ ଭିତରେ କୋଳେଇ ନେଲା । ନଈ କଥା ମାନୁଥିଲେ ଦକ କ'ଣ ? ଉନ୍ମନା ହୋଇଥିଲେ ନଈ ସାଥିରେ ବହେ ଲଢ଼େଇ କର । ସୁଅ ସାଥିରେ ପହଁରି ପହଁରି ମଢ଼ଟାକୁ ସୁଅ କାଟି କାଟି ସେ ନଈ କୂଳକୁ ଆଡ଼େଇ ଆଣୁଥିଲା । ଘୋଡ଼ା ଛାଟ, ଓଦା ଗାଦିବୁଦା କଡ଼ରେ ନିଃଶ୍ୱାସ ମାରି ମଢ଼ଟାକୁ ଚନ୍ଦନଗଡ଼ ପରି ଓଟାରି ଓଟାରି ପର୍ଦ୍ଦେଶୀ ବାଲିପଠାକୁ ସେମିତି ବା' ବାଆ...ଡାକି ନଈପଠାରେ ପହଁଚିଯାଇଚି ।

: ବା' ବାଆ... ତତେ ପରା ଦାଦା ମନାକରିଚି ନଈକୁ ଆଇବୁ ନାଇଁ ?

ଝିଅଟାର କଥାକୁ କାନ ନ ଦେଇ ପର୍ଦ୍ଦେଶୀ ଆଗ ଦୁଇଗୋଡ଼ ମଝିରେ ଚାକୁ ଲଗେଇଦେଲା । ଚାକୁ ଲଗେଇ ଦେଇ ପେଟ ପର୍ଯ୍ୟନ୍ତ ଚମ ଉତାରି ଆଣିଲା । ଗାଇର ଦିହ ଥିଲେ ଚମ ଉତାରିବାକୁ କଷ୍ଟ ପଡ଼େନା । ହାତମୁଠା ମାରିଦେଲେ ମାଂସରୁ ଚମ ଉତୁରି ଆସେ ସକ୍ ସକ୍ । ଗାଇର ଦେହ ନଥିଲେ ମାଂସରୁ ଚମ କାଢ଼ିବା ନାହିଁ ନଥିବା କଷ୍ଟ । ପୂରା ଚମଡ଼ାକୁ ପଞ୍ଜରା ହାଡ଼ ପର୍ଯ୍ୟନ୍ତ ଉତାରି ଗଲାବେଳେ ଦି' ବାହୁରେ ଆଉ ବପୁ ନଥାଏ । ଆଲ୍‌ମାଲ୍ କେଉଁଠି ଟିକିଏ ଚାକୁ ବାଜିଗଲେ ଚମ ଖଣ୍ଡିଆ ।

ଖଣ୍ଡିଆ ହୋଇଗଲେ କଞ୍ଚା ଚମଡ଼ାର ଦର କ'ଣ ? ଲୁଣ ମଢ଼େଇ ଦେବା ବେଳକୁ ଛୋଟ କଣାଟା ଚାରିଗୁଣ ବଡ଼ ହୋଇଯିବ । ପର୍ଦ୍ଦେଶୀ ମଲା ଗାଇଟା ଦେହରେ ଆତ୍ମୀୟ ପରି ଆସ୍ତେ ଆସ୍ତେ ଚାକୁ ଚଳଉଥିଲା ।

ପଞ୍ଜରା ହାଡ଼ର ରଂ ରଂ ମାଂସ ଦିଶିଗଲା ପରେ ପୂରା ବପୁ ଖଟାଇ ଚାରିଗୋଡ଼ ଉପର ଚମଡ଼ାକୁ ଚାକୁରେ ଚିରିଦେଇ ଖୁର ପାଖକୁ ଟାଣିଆଣିଲା । ବାକି ରହିଲା ମୁଣ୍ଡପଟ । ଗାଇର ମୁଣ୍ଡ ଉପର ଛାଲ ଧୋତି ପରି ପତଳା । କମଳଠୁ ଚାକୁର ଦାଢ଼ ଦେଖାଅ । ଦେଖେଇ ଦେଖେଇ ଖପୁରୀ ଚମକୁ ଭାଆରି ସିନିହରେ ଛଡ଼ାଇବାକୁ ପଡ଼େ । ଖପୁରୀ ଚମ ଛଡ଼ଉ ଛଡ଼ଉ ଚାକୁ ସଁର୍‌ଲି ରଂ ରଂ ମାଂସ ଉପରକୁ ଝୁଙ୍କି ପଡୁଥିଲା । ନିଜକୁ ସମ୍ଭାଳି ନେଉ ନେଉ ଉଆଁଳୁ ମାଟିହାଣ୍ଡି ପରି ଫୁଲିଯାଇଥିବା ପେଟ ଉପରେ ଚାକୁଟି ବୋଲ ନ ମାନି ବସିଗଲା ।

ପର୍ଦ୍ଦେଶୀ ତା' ଝିଅ ରଫ୍‌ଖାତା ଚିରିଲା ପରି ଫର୍‌ଫର୍ ପେଟଟାକୁ ଚିରି ଆଣିଲା । ପାଣି ପେଟରୁ ଅଜାଡ଼ି ହୋଇପଡୁଥିଲା ଗରାଏ ସରିକି । ଚରାପେଟରୁ ଛେଚା ପାଳ, ଘାସ ।

ହଁ...

ନଈପଟ ଚଲାବାଟରେ ପାଦଦେଇ ଲମ୍ବିଯିବ ଘର । ଟାଇଲି ଛପର ଘର, ନିଆଁକୁ ନଥାଏ ଡର । ଟାଇଲି ଛପର ଘରୁ ବିଛି ହୋଇ ପଡୁଥିବା ମୁଠାଏ ବିଜୁଳି ଆଲୁଅ ପାଖ ସେଲସାଁ ଗଛକୁ ଅନ୍ଧାରରେ ଚିହ୍ନେଇ ଦେଉଥିବ । ଫାଳେ ଧଳା । ଫାଳେ କଳା । ଝର୍କାରୁ ପୁଣି ଖିଏ ଆଲୁଅ ଲମ୍ବିଯାଇ ବାଡ଼ିପଟ ମଲ୍ଲୀଗଛକୁ ଶହେ ଜହ୍ନର ଆଲୁଅରେ ଗାଧେଇ ଦେଉଥିବ। ଆକାଶରେ ବାରମାସୀ ଉଁ ଥିବା ଠେକୁଆ ପରି ଡରୁଆ ଜହ୍ନଟା ଉଲ୍ଲୁକର ଡାକରେ ଶିହରି ଶିହରି ଅଗଣାରୁ ପଳେଇବ । ପଶ୍ଚିମ ପଟ ନଈ ଆଡ଼କୁ ପାଖାପାଖି ବଂଡା ପାହାଡ଼ କିମ୍ବା ଉତ୍ତର ପୂର୍ବର ଗୁଦ୍‌ଗୁଦା : ନାଁକୁ ଯାହା ଜଙ୍ଗଲ ।

ଠୁଁଟି ବାରହ୍ନି ଠୁଁଟି କୁଳା...

ଆଗେ ଆଗେ ପର୍ଦ୍ଦେଶୀର କବନ୍ଧ-ଛାଇ ପାଖରେ ଠିଆ ହୋଇଚି ମାଇପିର ଛାଇଟିଏ । ଛାଇକୁ ଛାଇ କହୁଚି : ଛି ତମେ କାନ୍ଦୁଚ ? ସେ ଆଣ୍ଠୁସନ୍ଧିରୁ ମୁଣ୍ଡଟେକି ସେଇ ଛାଇକୁ ଧରିବାକୁ ଦ୍ୱାରବନ୍ଧରୁ ଉଠିବସେ । ନିଜ ଛାଇର କବନ୍ଧ ଜାଗାରେ ପୁଣି ହାଣ ଖାଇଥିବା ମୁଣ୍ଡଟାଏ ଯୋଡ଼ି ଯାଇଚି । ଟାଇଲି ଛପର ଘର ଜାଗାରେ ଠିଆ ଦାବଖରର ଘରଟାଏ । ବିଜୁଳି ବତୀ ଫତି ନାହିଁ । ଠଣାର ଠୁଣୁଠୁଣୁକିଆ ଦହି ଜାଗାରେ ବଇଠା ସଳିତା । ଜଳା କବାଟରୁ ମଲ୍ଲୀଗଛରେ ସୂତା ପ୍ରମାଣେ ଧାରେ ଆଲୁଅ । ଅନ୍ଧାର ଅଗଣାରେ ଜହ୍ନଟାଏ ହସୁଚି ଖିଲିଖିଲି ।

ପର୍ଦ୍ଦେଶୀର ଛାଇ ପାଖରେ ଘରର ଛାଇ ଦୋହଲୁଚି । ଯେ' ତା' କୁଆନ୍ ବୟସରେ ନିଜ ଗାଡ଼ିଥିଲା ଘର । ନଈର ହାତ ପାଖରେ ଅସଲ ଭିଟାମାଟି । ମଣିଷ ହାତ ପକେଇଲେ କହୁଣୀ ଛୁଉଁଥିଲା ଦୁଃଖର ହାଡ଼ । ଫି ବର୍ଷ ବଢ଼ି । ମଣିଷକୁ ଡୁ ଡୁ ଖେଳିଲା ଭଳି ନଈଟା ରାଗ ଦେଇ ଦେଇ ଖେଦେଇ ଆଣିଲା । ନଈଜଳ କୂଳ ଖାଇଲା । କୂଳ ଖାଇ ଖାଇ ନାଳ । ସାରା ଗାଁ ମାଁ ଉଠି ଆସିଲେ ନଈଠୁ ଅଧକୋଶ ।

ବଂଶଧାରାରେ ଲଗାତର ବଢ଼ି ଆସିବା ପରେ କେତେ ସନ ଲଗାତର ମରୁଡ଼ି । ନଈଟାର ଖୁମାଣ ହେଲେ କ'ଣ କମ୍ ? ଘର ଘୁଞ୍ଚେଇ ଦେବା ପରେ ନଈ ବି ଶେଷ ବଢ଼ିରେ ସୁଅ ବଦଳେଇ ନେଲା । ଫସଲ କ୍ଷେତରେ ଉଠିଆ ପାଣି ଦେବାକୁ ପ୍ରାଣି ନାହିଁ କି ବାଲି ଖୋଳିବାକୁ ବଳ କାହିଁ ! କିଏ କା'ର କାନ୍ଦ ଶୁଣୁଚି ? ମାଟି ଆକାଶର ନୁହଁ କି ଆକାଶ ମାଟିର ନୁହଁ । ଦି'ବର୍ଷ ଫସଲହାନୀ ହେବା ପରେ ପର୍ଦ୍ଦେଶୀ ଆଉ କାହା ଘରେ କାମ ପାଇଲା ନାହିଁ । ଦି'ଖଣ୍ଡ ରସ ବାସନ ବାନ୍ଧିବୁନ୍ଧି ମାଟି ଥାପି ଥାପି ତିଆରି ଥିବା ଚାରିକାନ୍ଥ ଛାଡ଼ି ସାନ ଭାଇଟାକୁ ସାଥୀରେ ନେଇ ପଳେଇଲା ଦାଦନ ।

ଦାଦନର ଦିନମାନେ ନିସତ ବଳଦ ପରି ଭାଆରି ମଠ । ସୂରୁଯ ଉଇଁଲା ଆଗରୁ ବନ୍ଧ ହିଡ଼ରେ ସକାଳ ପାହି ସାରିଥାଏ । ଦିନସାରା ହାଡ଼ଭଙ୍ଗା ଖଟଣି । ରାତି ହେଲେ କୋଉ ଗଛ କି ପଲା ତଳେ ଗଣ୍ଡେ ଚାଉଳ ଫୁଟାଇ ନିଅ । ହାଣ୍ଡିଆ ବାସ୍ନାରେ ବିଭୋର ହୋଇ ଦରଫୁଟା ଭାତ ଗିଳିଦିଅ । ଡାକରେ କା'ର କୋଉ ଗାଁରୁ ଆସିଥିବା ଚିଠିକୁ ହେତୁକର: ବା' ଆଇଲା ବେଳେ ବାପ୍ପା କି କସ୍ତା, ଗିନିସୁନାର କାନଫୁଲ । ଠିକାଦାର ପାଖରେ କେତେ ପଇସା ରଖେଇଚ କୋଇଲା କଳାରେ ଗାର ପକେଇ ହିସାବ କରିନିଅ, ମଣିଷ ।

ଦାଦନରେ ମଣିଷର ସର୍ବସ୍ୱ ଜୀବନ ଟିକକ ବି ମଣିଷ ହାତରେ ନଥାଏ । ମଣିଷ ଜୀଇଁଚି ବୋଲି ଛାତିରେ ହାତପିଟି ମିଛ- ମାଦଳ ବଜେଇବା ମନା । ଦାଦନରେ ଭିଟାମାଟିର ସ୍ୱପ୍ନ : କଅଁଳ କୋଶଳା ଶାଗ ପରି ସାତଦିନ !

: ଆମେ ଗୋଟେ ଘର ଗଢ଼ିବା...

: ଚଢ଼େଇ ପରରେ ପରରେ ହରରଙ୍ଗୀ ଘର !

: ଘର ଆଗରେ ନଈ / ପଛରେ ପାହାଡ଼ ।

ଦାଦନର ଫାଲ୍‌ତୁ କଥାମାନେ ଘର ଚାରିତରା ଘୁଟୁରୁ ଘୁମ୍... ଘୁଟୁରୁ ଘୁମ୍...ଶିଖେଇ ଦିଅନ୍ତି । ନୁହେଁ କି ? ଗାଁ ପାଖ ସହରରେ ସୂତାକଳ ଖୋଲିବାର ବେଉରା ପାଇ ମେରକୁ ନେଇ ତା' ଗାଁକୁ ପଳେଇ ଆସିଲା ପର୍ଦେଶୀ । ତା' ଗାଡ଼ି ଥିଲା ଘର ଜାଗାରେ, ସେଇ ଘର ନଥିଲା । ଖରା, ବର୍ଷା, ଶୀତକୁ ପିଠେଇ ପିଠେଇ ଚାରିକାନ୍ଥ ଧସି ଯାଇଥିଲା । ମେର ସାଥୀରେ ମିଶି ପର୍ଦେଶୀ ମାଟି ଥାପି ଥାପି ତିଆରି କଲା ଚାରିକାନ୍ଥ । ଅଗଣାରେ ପଟାଳି ଖୋଳି ଲଗେଇଲା ମେଥିଶାଗ । ଠିଆକଲା ସକାଳ, ହାତଠାରି ଡାକିଲା ଖରା, ବର୍ଷା, ଶୀତ ।

ଯାହା କୁହ, ମେରର ଜୀବନ ନିଆରା । ହିସାବ କିତାବ ସବୁ ଜାଣେ, ଆଙ୍ଗୁଠି ଅଗରେ ବାର, ତାରିଖ, ଚନ୍ଦ୍ରମାସ ଗଣେ । କହ ତ ? ତୁ ସମସ୍ତଙ୍କୁ ଠକିଦେଇ ଚାଲିଗଲା ପରେ ଅଗଣାରେ କେତେ ମହଣ ମଲ୍ଲିଫୁଲ ଫୁଟି ଝଡ଼ିଚି ? ପର୍ଦେଶୀର ଶିରାଳ ଦେହ ପରି ମଲ୍ଲୀଗଛର ଡାହି ଖରା ଛାଇ ପରେ ଦୋହଲୁଥିବା ଘର ଭାଂଗି ନେଉଚି ।

ସେଦିନ ଯେ' ଘର ଅଗଣାକୁ ଡେଇଁବା ପାଇଁ ସେଲସାଁ ଗଛ ଉପରକୁ ଧୀରେ ଧୀରେ ଜହ୍ନ ଉଠିଆସୁଥିଲା । ପର୍ଦେଶୀ ରାତିକାମ ସାରି ସୂତାକଳରୁ ଫେରିବା ବେଳେ ଗୋଡ଼ହାତ କସ୍‌କସ୍ କରୁଥିଲା । କାମସାଥୀମାନଙ୍କ ସଂଗେ ଗୋଟେ ଦାରୁ ପିଇଦେଲା । ନିଶା ଅଳସରେ କା' କା' ପାଖରୁ ତା' ମାଇପ ଓ ସାନଭାଇ ନାଁରେ ନାନା ଟିପ୍‌ପଣୀ ଶୁଣିଲା । ତାକୁ ଲାଗିଲା ଯେମିତି ଘରଟା ଘର ନୁହଁ ଗୁଦ୍‌ଗୁଦା ଜଙ୍ଗଲ । ସେମିତି ନିଶା ଅଳସରେ ଘରକୁ ପହଞ୍ଚି ପର୍ଦେଶୀ ତା' ମାଇପକୁ କୈଫିୟତ ମାଗିଲା । ପ୍ରଶ୍ନ ପାଇଁ ଉତ୍ତର ନାହିଁ କି ଉତ୍ତର ପାଇଁ ପ୍ରଶ୍ନ ନାହିଁ । ସେଲସାଁ ଗଛରେ ଜହ୍ନ ଠିଆ ହୋଇ ରହିଗଲା ।

ଅନ୍ଧାର ଭିତରୁ ମାଇପି କି ମାଇପି ଭିତରୁ ଅନ୍ଧାର କାନ୍ଦିଲା ସୁଁ ସୁଁ... ଅନ୍ଧାର ଭିତରୁ ମାଇପି କି ମାଇପି ଭିତରୁ ଅନ୍ଧାରକୁ ପର୍ଦେଶୀ ବାଡ଼େଇ ଦେଇଗଲା ଝଡ଼ / ବର୍ଷା / ପବନ । ସବୁବେଳେ ନିରୋଳା ଜହ୍ନ ଭଲ ଲାଗେନା ବୋଲି ମଣିଷ ବେଳେ ବେଳେ ଆକାଶକୁ ଝଡ଼ / ବର୍ଷା / ପବନ ମାଗେ । ନିରୋଳା ସୁଖ ଭଲ ଲାଗେନା ବୋଲି ଦୁଃଖ ଖୋଜେ ।

ଛେଉଣ୍ଡ ସାନଭାଇକୁ ପତର ଆଢୁଆଳରେ ଯେଉଁ ଦେହ ଥନ ଭାଂଗି ଖୁଆଇଥିଲା ସେ ଏତେବଡ଼ ସନ୍ଦେହ ସହିପାରିଲା ନାହିଁ । ବରଂ ଭଲ ଥିଲା ତା'ର ପିଲାବେଳ / ବାଲିଘର / କୁଣ୍ଡାପିଠା ଖେଳ । ସାଇ ସଙ୍ଗାତ କହିଲେ ମେର ବାୟାଣୀ ହୋଇଗଲା । ଝଡ଼ / ବର୍ଷା / ପବନ ଆଉ ଥମିଲା ନାହିଁ । ଉଜୁଡ଼ିଗଲା କଳା ଲଙ୍କା ମେଥିଶାଗର ସକାଳ ।

ନଈକୁ ପାଣି ନେଇଗଲେ ଯାଇଚି ଯେ ଯାଇଚି । ଭାତ ହାଣ୍ଡିରେ ଚାଉଳ ଜାଗାରେ ସେ ଗେରୁଗୁଣ୍ଡ ଫୁଟେଇଚି । ଧୂଳିବାଲିକୁ ନେଇ ମେର ଡାଲି ରାନ୍ଧିଲା । କଖାରୁ ଡଙ୍କକୁ ଖରଡ଼ି ରାଇ ସନ୍ତୁଳିଲା । ଅପାମାର୍ଗଠାରେ ଦୁଃଖମାନଙ୍କୁ ଚଉତି ଚଉତି ବାଡ଼ିଲା । ପାଞ୍ଚବର୍ଷ ହେବ କେଉଁଠିକି ପଳେଇଲା ଯେ ପଳେଇଲା । ଗାଈ ହେଉ କି ମଣିଷ ଦାଣ୍ଡେ ହଜିଲେ ଶହେ ଦାଣ୍ଡ ଖୋଜ ।

ପର୍ଦ୍ଦେଶୀ ମେରର କେତେ ଖୋଜ ଖବର ନେଲା ହେଲେ ପତ୍ତା ପାଇଲା ନାହିଁ । ସେ ନିଜେ ସୂତାକଳର ଚାକିରିକୁ ଗଲା ନାହିଁ । ତା' ଜାଗାରେ କହିବୋଲି ସାନଭାଇକୁ ଭର୍ତ୍ତି କଲା । ଗୋଟିନା ପାଇଲେ ମାଇପି ଫେରିଆସିବ ? ସବୁ ଦୁଃଖ ଯାତନା ଦୂର ହୋଇଯିବ ବୋଲି ସକାଳୁ ସଞ୍ଜ ବଂଶଧାରାକୁ ଚାହିଁ ବସିଥିଲା ।

ସତେ ବା ଏ ନଈର ଆଜନ୍ମରୁ ତାକୁ ଚାହିଁ ରହିଚି ପର୍ଦ୍ଦେଶୀ କିମ୍ଵା ପର୍ଦ୍ଦେଶୀର ଆଜନ୍ମରୁ ତାକୁ ଚାହିଁ ରହିଚି ନଈ । ଉଦାସ ପର୍ଦ୍ଦେଶୀ । ଉଦାସ ଉଦାସ ନଈ ।

ଗଲାସନ ଲୁହ ଛଟପଟ ଶ୍ରାବଣ ଯାଇ ବି ବଂଶଧାରା କାନ୍ଦୁଥିଲା । ଚିତ୍ରା ନକ୍ଷତ୍ରରେ ଉପର ମୁଣ୍ଡରୁ ବହେ ପାଣି ଆସିଲା । ନଈକୁ ଗୋଡ଼େ ଗୋଡ଼େ ଜଗିଥିଲା ପର୍ଦ୍ଦେଶୀ । ସୁଅ ମଝିରେ ଯେତେବେଳେ ପାଣି କାଟି କାଟି ମଣିଷ ଲାସ୍‌ଟେ ଭାସି ଯାଉଥିଲା ଗାଈ ବୋଲି ତାକୁ କୋଳେଇ ଆଣିଲା । ଚନ୍ଦନଗଡ଼ ପାଇବାର ଖୁସିରେ ଫାଟି ପଡୁଥିଲା ଛାତି । ସୁଅ କାଟି କାଟି କୂଳକୁ ପହଞ୍ଚିଲା ପରେ ଦେଖିଲା ଆପଣା ମାଇପି ।

ଫି ଥର ବଂଶଧାରାରେ ଗାଈ ମଢ଼ଟେ କୋଳେଇ ନେଲେ ତାକୁ ଲାଗେ ଆପଣା ମାଇପିର ଉଲଗ୍ନ ଶବକୁ କୋଳେଇ ନେଉଚି । ନଈ ସହ ଆପେ ଆପେ ଯୋଡ଼ି ହୋଇଯାଏ ପର୍ଦ୍ଦେଶୀ । ପର୍ଦ୍ଦେଶୀ ସହ ନଈ । ନଈରେ ଲୁହ ଛଟପଟ ଶ୍ରାବଣ ହେଉ କି କୋହ ଛଟପଟ ଫଗୁଣ ! ନଈ ପରି ନିଶ୍ଚଳ : ଗହୀର ଗହୀର ଆଖି ।

ପରିଚିତ ପାହାଡ଼କୁ ସୂର୍ଯ୍ୟ ଫିକା ଫଗୁ ମଖେଇ ଦେଲାବେଳେ ପର୍ଦ୍ଦେଶୀ ପୁଲକିତ ହୋଇଯାଏ । ଗଲାସନ ଗଲାଦିନର ଜହ୍ନମାମୁଙ୍କ ଆକାଶରେ ପଖାଳି ଆଣେ । ସାନଭାଇଟା ସୂତାକଳରୁ ଫେରି ରେଡ଼ିଓରେ ଷ୍ଟେସନ୍ ଘୂରଉଥାଏ । ପବନକୁ ଛୁଇଁ ଛୁଇଁ ଯାଉଥାଏ ବାରପ୍ରକାର କଥା ନହେଲେ ଚିତ୍ରଗୀତି । ବଙ୍ଗଳା ଛାୟାଛବିର ଗାନ କି ବେଳେବେଳେ ଦେଶୀଆ ସମ୍ବଲପୁରୀ । ପର୍ଦ୍ଦେଶୀର ଛ'ବର୍ଷର ପୁଅ ଘୋଷୁଥାଏ; ପଇଡ଼ ବଡ଼ ଚତୁର / ବିଲୁଆ ବଡ଼ ମଧୁର । ସାନଭାଇର ମାଇପି ଛବି ବହିରେ ଆଙ୍ଗୁଠି ଟିପେଇ କହୁଥାଏ ନାଁ ନାଇଁ ପଇଡ଼ ବଡ଼ ମଧୁର / ବିଲୁଆ ବଡ଼ ଚତୁର । କୁହ...

ହୋ ହୋ ହସି ପର୍ଦ୍ଦେଶୀର ନଈ ପରି ନିଶ୍ଚଳ ଆଖିରୁ ଗଡ଼ିଆସେ ଧାରାଶ୍ରାବଣ । ସେ ତା' ମୁହଁ ଉପରେ ଘଡ଼ି ଘଡ଼ି ଆସୁଥିବା ଶ୍ରାବଣ ମାସକୁ ପାପୁଲିରେ ପୋଛି ପକାଏ । ସୁଖଦ ଅନୁଭବ ସବୁକୁ ନେଇ ଆଣ୍ଠୁ ସନ୍ଧିରେ ମୁଣ୍ଡ ଗାଡ଼େ । ମୁହଁ ଲୁଚେଇ ଦେଲେ ପୁଣି ଫେରିଆସେ ଶ୍ରାବଣ । ମୁହଁ ଉପରେ ମାସଟିଏ / ନଈ ହୋଇ ବହିଯାଏ ।

ପ୍ରାପ୍ତି ମଣିଷର ଚରମ ଜିନିଷ ନୁହେଁ ? ହଁ କହ ପର୍ଦ୍ଦେଶୀ !

ଘୋଡ଼ା ନାହିଁ, ହାତୀ ନାହିଁ ତାଙ୍କ ଜାତିରେ ଜାନି ଯୌତୁକ ଚଳେ ନାହିଁ । ସାନ ଭାଇ ପାଖ ଗାଁରେ ବାହା ହେଇଚି । ସାନବୋହୂ ଉଜୁଡ଼ିଥିବା ଘରକୁ ସଜାଡ଼ି ନେଇଚି । ଦାବଖର ଘର ଜାଗାରେ ଟାଇଲି ଛପର ଘର ଠିଆ । ପୁଅ ପାଠ ପଢୁଛି । ଝିଅ ପାଠ ପଢୁଛି । ପର୍ଦ୍ଦେଶୀ ନିଜକୁ ନିଜେ ପଚାରେ : ସେ ଏୟା ହିଁ ଚାହିଁଥିଲା । ଯା ପରେ କାହିଁକି ଗୋଚିନା ଖୋଜୁଚି ??

: ବା' ବାଆ... ମଢ଼ଟା ପାଖରେ କ'ଣ ଛିଡ଼ା ହୋଇଚୁ / ଘରକୁ ଚାଲ୍...

ପେଟଟାକୁ ହନ୍ଦାଳି ଦେଇ ମାଛିକାଛି ଅନ୍ଧାରରେ ପର୍ଦ୍ଦେଶୀ କଲିଜା ଓ ଫବସ୍ ଅଣ୍ଡାଳିଲା । ଫବସ୍ ଅଣ୍ଡାଳିଲା । ଫବସ୍ ଅଣ୍ଡାଳୁ ଅଣ୍ଡାଳୁ ପାଞ୍ଚଟା ଶିରାଳ ଆଙ୍ଗୁଠି ବାଜି କଲିଜା ଚିପି ହୋଇଗଲା । ପର୍ଦ୍ଦେଶୀ ପୂରା ହାତମୁଠାରେ କଲିଜାଟିକୁ କବ୍‌ଜା କରି ଯାତ୍ରାରୁ ଝିଅ ପାଇଁ କିଣି ଦେଇଥିବା ପିଁ ପିଁ

ପରି ତାକୁ ଦୁଇ ଚାରିଥର ଚିପିଲା । ତାକୁ ଲାଗିଲା ତା' ଛାତିର କୋଉ ବଖରାରେ ଧୁକ୍‌ଧୁକ୍ କରୁଥିବା ପିଁ ପିଁ ବନ୍ଦ ହୋଇଯାଇଚି । କାଳିଆ ଠାକୁରଙ୍କ ଧଣ୍ଡାମାଳ ଛୁଆଇଁ ଜାତିଭାଇମାନେ ଶପଥ କରିଛନ୍ତି; ଅଛବ ହେଲେ ବୋଲି ସେମାନେ କ'ଣ ହୀନକର୍ମ କରିବେ ? ରାମ ! ରାମ !!

କଲିଜା ଓ ଫବସ୍‌ର ତଳକୁ ଲାଗି ପିତ୍ତପେଟ । କଲିଜା ଓ ଫବସ୍‌ର ତଳକୁ ଅଣ୍ଡାଳି ଅଣ୍ଡାଳି ପିତ୍ତପେଟକୁ ଟାଣିଆଣିଲା ପର୍ଦେଶୀ । ପିତ୍ତପେଟକୁ ବାଲିପଠାରେ ଗଡ଼େଇ ଦେଇ ଦୁଇ ପାପୁଲିରେ ଝିଅ ଶୁଣିଥିବା ଆଇମା କାହାଣୀର ମୁକ୍ତାଲୋଭୀ ରାକ୍ଷସ ପରି ଓଟାରି ଆଣିଲା । କୋମଳ ମାଂସଥଳିଟି ଫାଟିଯାଇ ଲାଳ ପରି କିଛି ହଳଦିଆ ପଦାର୍ଥ ବାଲିପଠା ଶୋଷି ନେଉ ନେଉ ପର୍ଦେଶୀର ଦି'ଆଖି ହାଡ଼ବାଟି ପରି ବଡ଼ ବଡ଼ ହୋଇଗଲା । ସମ୍ଭାବ୍ୟ ପ୍ରାପ୍ତିର ଦୀପ୍ତିରେ ଦି' ଆଖି ଫସ୍‌ଫରସ୍ ଭଳି ଦାଉଦାଉ ଜଳି ଉଠୁଚି । ପାଗଳ ପରି ପର୍ଦେଶୀ କେଇ ଇଞ୍ଚ ଓଦାବାଲିକୁ ଘାଣ୍ଟି ଘାଣ୍ଟି କ'ଣ ଗୋଟେ ମୁକ୍ତା ପରି ମୂଲ୍ୟବାନ ଜିନିଷକୁ ଖୋଜୁଛି । ନାଃ...

: ବା' ବାଆ... କ'ଣ ଖୋଜୁଚୁ ? ବାଆ...

: ଗୋଚିନା :

ବଂଶଧାରା ପଶ୍ଚିମ ବଣ୍ଡା ପାହାଡ଼ରେ ଗାଉଁଲିଆ ସୂର୍ଯ୍ୟଙ୍କୁ ମାଳେ ଧଳାବଗ ଆଡ଼େଇ ଫେରିଆସିଲା ବେଳେ ଗାଉଁଲିଆ ସୂର୍ଯ୍ୟଟା ବି ଧଳା ବଗଙ୍କୁ ଅନ୍ଧାର ମଖେଇ ଦେଇଚି । ବଂଶଧାରା ଦେହରୁ ମା'ଟିଏ ସାଉଁଟି ନେଇଚି ଅବୁଝା ଝି' ପାଇଁ ଗଡ଼େଇ ଦେଇଥିବା ନଟେଇକ ନାଲି ପଶମ । ସରିଯାଇଚି କୋଉ କିମ୍ବଦନ୍ତୀର ଅଢ଼େଇଦଣ୍ଡ ସୁବର୍ଣ୍ଣ ବର୍ଷା । ଝିପିଝିପି । ସୁଅ ସାଥୀରେ ଦୋହଲୁଚି ଫୁଲପକା ଡିଜାଇନ୍ ଭଳି ଫାଳେ ସୂର୍ଯ୍ୟ ଓ ଉଡ଼ିଯାଉଥିବା ମାଳେ ଧଳା ବଗପକ୍ଷୀ ।

ନ'ବର୍ଷର ଝିଅଟିଏ କୋଶ କୋଶ ତୂଳୀର ସ୍ପର୍ଶରେ ଅଙ୍କା ସୂର୍ଯ୍ୟାସ୍ତର ଚିତ୍ରଟିକୁ ବାଲିଗରଡ଼ା ଫିଙ୍ଗି ଭାଂଗିଦେଉ ଦେଉ ଚିତ୍କାର କରୁଚି : ଆଃ... ଗୋଚିନା !



# ଗୁଣ୍ଟୁଚିମୂଷା

## ମମତାମୟୀ ଚୌଧୁରୀ

ତାଙ୍କର ଅସରାଅସରା ଲୁହ ଓ ଅନିୟନ୍ତ୍ରିତ କୋହ ମୋ' ରୁମ୍‌ର ପରିବେଶକୁ ଅସମୟରେ ଗମ୍ଭୀର କରିପକାଉଥିଲା । ତାଙ୍କ ନିର୍ବେଦ ହାତରେ ଓହଳି ପଡ଼ିଥିବା ପ୍ରୋଗ୍ରେସ୍ ରିପୋର୍ଟଟା ଫଡଫଡ ହୋଇ ଉଡୁଥିଲା ଓ ଗୋଟିଏ ଧୂର୍ତ୍ତ ମାଙ୍କଡ଼ର ଖେଁ ଖେଁ ପରିହାସ ଶୁଣିଲା ଭଳି ଶବ୍ଦ ଶୁଣି ସେ ବେଳକୁ ବେଳ ଆହୁରି ଅଧୈର୍ଯ୍ୟ ହୋଇପଡୁଥିଲେ । ନିଜକୁ ସମ୍ଭାଳିବାକୁ ଯାଇ ଲୁଗାକାନିକୁ ନିଜ ପାଟିରେ ପୁରାଉଥିଲେ । ତାଙ୍କ ଫାଙ୍କା ସୁନ୍ଥା ଉପରେ ଦଲକାଏ ଖରା ପଡ଼ି ଚକ୍‌ଚକ୍ କରୁଥିଲା । ତାଙ୍କୁ ସାନ୍ତ୍ୱନା ଦବାର ସବୁ ବାହାନା ମୁଁ ଥରେ ଥରେ ବ୍ୟବହାର କରିସାରିଥିଲି । ପୁରୁଣା ରେକର୍ଡକୁ ଦୋହରାଇବାରେ ଆଗ୍ରହ ବି ଆଉ ଆସୁନଥିଲା । ତଥାପି ନୀରବତା ଏତେ ମାତ୍ରାରେ ଅସାଡ଼ ହୋଇଯାଉଥିବାର ଦେଖି ମୁଁ କହିଲି, 'ଆପଣଙ୍କ ହାତରେ ତ କିଛି ନାହିଁ, ଆପଣ କ'ଣ କରିବେ ! ଦେଖନ୍ତୁ ଏ ବର୍ଷଟା କ'ଣ ହଉଛି ।'

ସେ ସ୍ୱରକୁ ଯଥାସମ୍ଭବ ସ୍ଥିର କରିବାକୁ ଚେଷ୍ଟା କରି କହିଲେ, 'ଆର ଥରକୁ ଏମିତି ଖରାପ କଲେ ମୁଁ ତାକୁ ଗାଁକୁ ନେଇଯିବି । ସେଠି ତ ଆଉ ପଢ଼େଇବାର ନାହିଁ, ଏଠି ସେଠି କାମ କରି ପେଟ ପୋଷିବ ।'

ମୁଁ ଜାଣିଥିଲି, ସେ ତାକୁ ଏଠାରୁ ନେବେ ନାହିଁ । ଗତବର୍ଷ ବି ସେ ଏମିତି କହିଥିଲେ । କିନ୍ତୁ ଏଥର, ଗତଥର ଅପେକ୍ଷା, ଲୁଟୁ କମ୍ ମାର୍କ ରଖିଥିଲେ ବି ସେ ଏଠାରୁ ତାକୁ ନେଇ ନଥିଲେ ।

ଲୁହରେ ଲୁଣି ହୋଇଯାଇଥିବା ପାଣି ଗିଲାସେ ପିଇ ସେ ଚାଲିଗଲେ । ଅଯାଚିତ ଭାବରେ ଅନେକ ଅଭିଭାବକ ଏମିତି ଆସନ୍ତି । ସେମାନଙ୍କ ଅଭିଯୋଗ, ଦୁଃଖ, ଅନୁରୋଧ, ଅନିଚ୍ଛା ସତ୍ତ୍ୱେ ଶୁଣିବାକୁ ପଡ଼େ; ପୁଣି ଶୁଣାକଥା ଭୁଲି ହୋଇଯାଏ । କିନ୍ତୁ ଲୁଟୁର ବୋଉଙ୍କ ସ୍ୱର ମୋତେ ଅନେକ ଥର ବିଚଳିତ କରିଦିଏ । ତା'ଠାରୁ ଅଧିକ ବିଚଳିତ କରିଦିଏ ଲୁଟୁର କାର୍ଯ୍ୟକଳାପ । ମୋ' ମନ ଭିତରେ ତାକୁ ନେଇ ଥରେଥରେ ଅସମାହିତ ପ୍ରଶ୍ନର ଝଡ଼ ଉଠିଛି । ହେଲେ, ସେ ସବୁକୁ ଅନାବଶ୍ୟକ ଭାବି ମୁଁ ଗୁରୁତ୍ୱ ଦେଇ ନାହିଁ ।

ଏଇ ମାସେ ଦି'ମାସ ତଳର କଥାଟିଏ ।

ଆର୍ଟ ରୁମ୍‌ର ଗୋଟିଏ କୋଣରେ ସେ ବସିଥାଏ, ଏକ ଅଦ୍ଭୁତ ମୁଦ୍ରାରେ । ବସି ନଥାଏ ତ, ଆଣ୍ଠୁ ଆଉ ଗୋଇଠି ଉପରେ ଭରା ଦେଇ ଛୋଟ ଷ୍ଟୁଲ୍‌ଟି ଉପରେ ପେଟେଇ ପଡ଼ିଥାଏ । ତା' ହାତରେ ଥାଏ ହାତୁଡ଼ି ଆଉ ପୁଳାଏ ଛୋଟ ଛୋଟ ଲୁହାକଣ୍ଟା । ଗୋଟିଏ ପିଚ୍‌ବୋର୍ଡ ଉପରେ ସାଇଜ୍ କରି କଟା ହେଇଥିବା ଥର୍ମୋକଲ୍‌ର ପିସ୍‌ଗୁଡ଼ିକୁ ଯୋଡ଼ି ସେ ପିଚ୍‌ବୋର୍ଡ ଉପରେ ସେଟ୍ କରୁଥାଏ ।

ସେଦିନ ମୁଁ ଥିଲି ଡ୍ୟୁଟି ଅଫିସର୍ । ଆବାସିକ ବିଦ୍ୟାଳୟମାନଙ୍କରେ ଏମିତି ଡ୍ୟୁଟିର ବ୍ୟବସ୍ଥା ରହିଥାଏ । ଡ୍ୟୁଟିରେ ଥିବା ଶିକ୍ଷକଙ୍କୁ ସେଦିନ ସକାଳୁ ରାତିଯାଏ ସ୍କୁଲର ପ୍ରତିଟି କାମ ତଦାରଖ କରିବାକୁ ହୁଏ । ରାତି ନ'ଟା ବେଳକୁ ଶେଷ ରାଉଣ୍ଡ ଭିଜିଟ୍ ସାରିବା କଥା । ଏତେ ରାତିଯାଏ ଅନ୍ୟ ଦିନମାନଙ୍କରେ ଆର୍ଟ ରୁମ୍ ଖୋଲା ନଥାଏ । ହେଲେ, ସେଦିନର କଥା ଅଲଗା । ଆଗକୁ ରିଜିଓନାଲ୍ ମଡେଲ୍ ଏକ୍‌ଜିବିସନ୍ ବିଟ୍ ଆସୁଥାଏ ବୋଲି ପିଲାମାନେ ମଡେଲ ଓ ଚାର୍ଟ ତିଆରିରେ ଲାଗିପଡ଼ିଥାନ୍ତି ।

ଦରଆଉଜା କବାଟ ଠେଲି ଦେଖିଲି, ରୁମ୍‌ଟାରେ ଆଉ କେହି ନାହାନ୍ତି, ତାକୁ ଛାଡ଼ି । ଚଟାଣରେ ଏଣେତେଣେ ପଡ଼ିଛି ରଙ୍ଗ, ତୂଳୀ, ଖୋଲା ରଙ୍ଗଡବା, ଚିରାମୋଡ଼କ୍‌ଟା ଆର୍ଟ ସିଟ୍, ସୋଲ ଆଉ ରଙ୍ଗିନ୍ କାଗଜର ଟୁକୁଡା ଓ ଫେଭିକଲ୍ ଅଠା ଢାଳି ତଳେ ତିଆରି ହୋଇଥିବା ଅନାମଧେୟ ମାନଚିତ୍ର ।

"ତୁ ଏଠି କ'ଣ କରୁଛୁ ? ଆଉ ପିଲାମାନେ କାହାନ୍ତି ?"

ତା'ର କଳା ମୁଚୁମୁଚୁ ବାଳ ଅରାକ ମୁହଁ ଉପରେ ଅଜାଡ଼ି ହୋଇପଡ଼ିଥାଏ । ଧ୍ୟାନସ୍ଥ ଶରୀର ଭିତରୁ କୌଣସି ପ୍ରକାରେ ମୁହଁ ଉଠାଇ ସେ ଅନେଇଲା ।

"ସେମାନେ ଡାଇନିଂ ହଲ୍ ଯାଇଛନ୍ତି ।"

"ଆଉ ତୁ ? ତୁ ଖାଇବୁନି ?"

"ହଁ, ଟିକେ ପରେ ଯିବି । ସେଟିଂଟା ଠିକ୍‌ରେ ବସୁନି ତ ।" ତା' ଦେହରୁ ଝାଳର ଧାର ଏଣେତେଣେ ନିଗିଡ଼ି ପଡ଼ିଲା ଭଳି ଅନାବନା କଥା ଦି'ପଦ ତା' ମୁହଁରୁ ଖସି ପଡୁଥାଏ ।

"ଏ କଣ୍ଟାଗୁଡ଼ାକର ଜମା ମୁନନାହିଁ ।" ଗୋଟିଏ କଣ୍ଟା ପାଟିରେ ଚାପିଧରି ଆଉ ଗୋଟିଏ କଣ୍ଟାକୁ ଖୁବ୍ ସନ୍ତର୍ପଣରେ ସେ ବୋର୍ଡ ଉପରେ ପିଟୁଥାଏ । ଝରକା ବନ୍ଦ ଥିବା ସାଙ୍ଗକୁ ବିଭିନ୍ନ ପ୍ରକାର ରଙ୍ଗ ଓ ସ୍ପିରିଟ୍‌ର ଗନ୍ଧରେ ପରିବେଶଟା ଅସ୍ୱସ୍ତିକର ଲାଗୁଥିଲା । ସେଥିରେ ପୁଣି ଫ୍ୟାନ୍ ବନ୍ଦ ।

"ତୋତେ ଗରମ ଲାଗୁନି ! ଫ୍ୟାନ୍ କାହିଁକି ବନ୍ଦ କରିଛୁ ?" ଫ୍ୟାନ୍ ସୁଇଚ୍ ପାଖକୁ ହାତ ନେଇଛି କି ନାହିଁ ଲୁଟୁର ଚିତ୍କାରରେ ମୁଁ ଥମିଗଲି ।

"ନା ନା ମ୍ୟାଡାମ୍, ଫ୍ୟାନ୍ ଦିଅନ୍ତୁନି । ଥର୍ମୋକଲ୍ ସବୁ ଉଡ଼ିଯାଉଛି ।" ଦେଖିଲି, ଝାଳ ବୋହି ଲୁଟୁର ସାର୍ଟ ଓ କପାଳ ଉପରେ ପଡ଼ିଥିବା ବାଳ ସବୁ ଓଦା ହୋଇଯାଇଛି ।

"ଦେଖିଲେ ମ୍ୟାଡାମ୍, ଏବେ ଠିକ୍ ହେଲା ନା ନାହିଁ ?" କ୍ଷୁଦ୍ର ଓ କୁଟୀର ଶିଳ୍ପ ପାଇଁ ତିଆରି ହୋଇଥିବା ସେ ମଡେଲ୍‌ଟି ଅପୂର୍ବ ଦିଶୁଥିଲା ।

"କି ସୁନ୍ଦର !" ମୋ' ପାଟିରୁ ବାହାରିପଡ଼ିଲା ।

'ରଙ୍ଗ ଦେଇଦେଲେ ଆହୁରି ଭଲ ଦିଶିବ ଯେ ! ମୁଁ କାଲିସୁଦ୍ଧା ଆ'କୁ ରେଡି କରିଦେବି ।'

"ତୁ ଏଇ ମଡେଲ୍‌ଟା ନବୁ ପ୍ରଦର୍ଶନୀକୁ ?"

"ନା, ଏଇଟା ପ୍ରିୟବ୍ରତ ଏକ୍‌ଜିବିଟ୍ କରିବ ।" ଏତକ କହି ଲୁଟୁ ଟ୍ରେନ୍‌ର ଛୋଟ ମଡେଲ୍‌ଟି ଧରି ମରାମତିରେ ଲାଗିପଡ଼ିଲା ।

"ଓହୋ, ତୋ'ର ତା'ହେଲେ ଏଇ ସାଇନସ୍ ମଡେଲ୍‌ଟା । ଏଇଟା ବି ବଢ଼ିଆ ହୋଇଛି ।" ମୁଁ ନିଶ୍ଚିତ ହୋଇଯାଇଥିଲି ସେଇଟା ତା'ର ହୋଇଥିବ ।

"ନା...., ମୁଁ ତ ଏକ୍‌ଜିବିସନ୍‌ରେ ମିଶିନି । ବେପରୱା ସ୍ୱରରେ ସେ କହିଲା । 'ହିମାଂଶୁ କହିଥିଲା ତା' ମଡେଲ୍‌ଟା । ବାଗେଇଦବାକୁ ।"

"କାହିଁକି ! ସେ କ'ଣ କରୁଛି !"

"ସ୍କିଟ୍ ପ୍ରାକ୍‌ଟିସ୍ କରୁଛି ।"

ମୋତେ ଚିଡ଼ି ମାଡ଼ିଲା । ଲଲାଟେନ୍ଦୁ ନାଁରେ ପ୍ରାୟ ସବୁ ଶିକ୍ଷକଙ୍କର ଅଭିଯୋଗ । ସେ ହୋମ୍‌ୱାର୍କ ଠିକ୍‌ରେ କରେ ନାହିଁ । କ୍ଲାସ୍‌କୁ ଡେରିରେ ଆସେ । ପ୍ରେୟାର କ୍ଲାସ୍‌ରେ ଅନ୍ୟମନସ୍କ ରହେ । କିଛି ନା କିଛି ବାହାନା କରି କ୍ଲାସ୍‌ରୁ ଖସିଯାଏ । ଅନେକଥର ଗେମ୍‌ସ୍ କ୍ଲାସ୍ ସମୟରେ ଫିଲ୍‌ଡରୁ ବାହାରିଯାଇ ମହାନଦୀ କୂଳରେ ଏକା ଏକା ବୁଲୁଥିବା ଅବସ୍ଥାରେ ତାକୁ ଧରାଯାଇଛି । ମୁଁ ଚିଡ଼ିଉଠି କହିଲି, "ତୁ ଏଇସବୁ ବାହାନା କରି ପାଠ ପଢୁନୁ । କ'ଣ ମିଳୁଛି ତୋତେ ଏଥିରୁ ?" ଉତ୍ତରରେ ଦି'ଧାଡ଼ି ଦାନ୍ତ ଦେଖାଇ ସେ ଖାଲି ହସିଦେଲା ।

ଡିନର୍‌ର ଶେଷ ସତର୍କ-ଘଣ୍ଟି ବାଜିସାରିଥିଲା । ସେ ଆର୍ଟ ରୁମ୍‌ର ତାଲା ବନ୍ଦ କଲା । ମୋ' ହାତରେ ଥିବା ଟର୍ଚ୍ଚର ଆଲୁଅ ତା' ହାତ ଉପରେ ପଡ଼ିଲା ମାତ୍ରେ ମୋ'ର ଚମକିବା ସ୍ୱାଭାବିକ ଥିଲା । ତୋ' ହାତ କ'ଣ ହେଇଛି, ଦେଖି ଦେଖି । ତା' ହାତକୁ କଚଟି ପାଖରୁ ମୁଁ ଧରିପକାଇଲି । ପାପୁଲି ଉପରେ ପାଞ୍ଚ ଛ'ଟା ବ୍ୟାଣ୍ଡ୍‌ଏଡ୍ ଛକଛକ କରି ପଟି ମରାଯାଇଛି ।

ଗୋଟିଏ ଲଜ୍ଜାକର ପରିସ୍ଥିତିରେ ପଡ଼ିଗଲା ଭଳି ଡାହାଣ ହାତରେ ମୁଣ୍ଡ କୁଣ୍ଡାଉ କୁଣ୍ଡାଉ ଧୀରେ କରି ବାଁ ହାତଟାକୁ ମୋ' ହାତରୁ ଖସାଇ ନେଲା, "ନା କିଛି ନାଇଁ । କାଲି କଣ୍ଟା ବାଡ଼ଉ ବାଡଉ ହାତରେ ହାତୁଡିଟା ଟିକେ ବାଜିଗଲା ।"

"ଡକ୍ଟର-ମାଡାମ୍‌କୁ ଦେଖାଇଛୁ ? ଟକ୍‌ସାଇଡ୍ ଇଂଜେକ୍‌ସନ୍ ନେଇଛୁ ନା ନାହିଁ ?"

ମୋ ଆକଟ କାନକୁ ନ ନେଇ ସେ କହିଲା, "ସେ ମନକୁ ଭଲ ହେଇଯିବନି ।" ଖୋଲି ଆସିଥିବା ବ୍ୟାଣ୍ଡ୍‌ଏଡ୍‌କୁ ସେ ଆଙ୍ଗୁଠି ଟିପରେ ଚାପିଦେଲା । ବ୍ୟାଣ୍ଡ୍‌ଏଡ୍‌ରେ ଲାଗିଥାଏ ମୋଞ୍ଚାଏ ସ୍ୟାହି ।

ମୋ' କ୍ୱାଟର୍ସ ପାଖରେ ପହଞ୍ଚି ତାକୁ କହିଲି, "ଡାଇନିଂ କାଉଣ୍ଟର ତ ବନ୍ଦ୍ ହେଇଯିବଣି । ତୁ ଖାଇବୁ କ'ଣ ?"

"ସେମାନେ ମୋ ପାଇଁ ମିଲ୍ ରଖି ନଥିବେ ! ନହେଲେ ଚୁଡ଼ାଭଜା, ମିକ୍ସଚର ଖାଇଦେବି ।"

ତା'ର କଥା କହିବା ଶୈଳୀଟି ସବୁବେଳେ ଏମିତି ! ବେଖିଆଲ, ବେପରୱା । କୋଉ କଥାକୁ ଗୁରୁତ୍ୱ ନାହିଁ ।

ମୋ' ଆଗରେ ନହନହକା ଡାଳଟିଏ ଭଳି ଦେହକୁ ପବନରେ ଭସେଇ ନେଇ ଅପସରି ଯାଉଥିଲା ଲୁଟୁ । ଗୋରା, ପତଳା ଦେହ । ଦେଖୁଦେଖୁ ଏଇ ଚାରିବର୍ଷ ଭିତରେ ହୁ ହୁ ହେଇ ବଢ଼ିଗଲାଣି ସେ । କିନ୍ତୁ ସେ ମୁହଁଟା ସେମିତି ଅଛି, ଅବିକଳ ଚାରିବର୍ଷ ତଳେ ଯେମିତି ଥିଲା । ମୁଣ୍ଡବାଳ ସବୁବେଳେ ଅବିନ୍ୟସ୍ତ– ଯେମିତି ପାନିଆ କେବେ ହେଲେ ବାଜିନି । ଆଖି ଦି'ଟାରେ କ'ଣ ଖୋଜିଲା ଖୋଜିଲା ଭାବ । ତମ ସାଂଗରେ କଥା ହଉଥିବ, ଆଖିଡୋଳା ବୁଲୁଥିବ ଏଠୁ ସେଠିକି, ଯେମିତି ଆଖି ଆଗରେ ଯାହା ଅଛି, ସବୁ ତୁଚ୍ଛ, ଖାଇବାଠୁଁ ଆରମ୍ଭ କରି ପାଠ ଯାଏ ।

ଏସବୁ ତା' ମନକୁ ପାଏନି । ସେ ଆହୁରି ଖୋଜୁଥାଏ । ଆଖି ଯେତେଦୂର ପାଏ, ତା'ର ଆର ପଟ ଯାଏ । ଦିଗନ୍ତ ସେପାରି, ଦିଗ୍‌ବଳୟ ଆର ପାରି ଯାଏ ।

ହୁଁ, ମନେ ମନେ ହସିଥିଲି । ପିଲାଟାକୁ ବୁଦ୍ଧି ଦିଅ ଭଗବାନ । ପାଠ ନ ପଢ଼ିଲେ ଏ ଦୁନିଆରେ ସ୍ଥିତି କାହିଁ ! ଏ କଥା ଲକ୍ଷେ ଥର ତାକୁ ବୁଝାଇଥିବି । ହେଲେ, ସେ ନା କିଛି ବୁଝେ, ନା ବୁଝିବାର ଛଳନା ବି କରେ । ସବୁ କଥାର ଉତ୍ତରରେ ଟିକେ ହସି ଦବ । ହସିଲେ ତା' ଗାଲରେ ଭଉଁରି ସୃଷ୍ଟି ହୁଏ । ତା' ଉପରେ ଯିଏ ଯେତେ ବିରକ୍ତ ଅସନ୍ତୁଷ୍ଟ ହୁଅନ୍ତୁ ପଛେ, ଏକଥାରେ ଏକମତ ହେବେ ଯେ ତା' ଚେହେରା ଆକର୍ଷଣୀୟ ।

ପରଦିନ ତା' ହାଉସ୍ ସୁପରିଟେଣ୍ଡେଣ୍ଟ୍‌ଙ୍କୁ ଜଣାଇଲି, ଲଲାଟେନ୍ଦୁର ହାତ କଟିବା କଥା । ସିକ୍ ରୁମ୍‌ରେ ଯେତେବେଳେ ଷ୍ଟାଫ୍ ନର୍ସ ତା' ହାତରୁ ପଟି ଖୋଲିଲେ, ସେ ତାଜୁବ୍ ରହିଗଲେ । ବିନା ଫାଷ୍ଟଏଡ୍‌ରେ ଖଣ୍ଡିଆଟା ସେପ୍ଟିକ୍ କରିଯାଇଥାଏ । ଘା'ଟାରେ ପୂଜରକ୍ତ ଜମି ପୁରା ପାପୁଲି ଫୁଲି ଲାଲ୍ ଦିଶୁଥାଏ ।

"ଏଥିରେ ତ ଷ୍ଟିଚ୍ ଦରକାର ଥିଲା । ସଂଗେସଂଗେ କାହିଁକି ଦେଖାଇଲୁନି ? ଷ୍ଟାଫ୍ ନର୍ସ ଚିଡ଼ିଚିଡ଼ି ହେଲେ । ହାଉସ୍ ସୁପରିଟେଣ୍ଡେଣ୍ଟ ତା' କାନକୁ ଝିଙ୍କି ଦି' ଖୁନ୍ଦା ବସେଇଲେ, "ବଦ୍‌ମାସ୍ ଟୋକା, ଏଠିକି ପାଠ ପଢ଼ି ଆସିଛୁନା ଆମକୁ ହାଜତରେ ପୂରେଇବାକୁ ଆସିଛୁ । ଯେତେକ ଫାଲ୍‌ତୁ ଧନ୍ଦା ସବୁ ତୋ'ରି", ସେ ପୁଣି ତା' ଗାଲରେ ଚାପୁଡ଼ା ବସେଇଲେ । ତା' ହାତକୁ ଦେଖି ସେ ଖୁବ୍ ଟେନ୍‌ସ୍ ହୋଇଯାଉଥିଲେ । ତାକୁ ବହେ ଗାଳି ଦେଲୁ । ହେଲେ ଦୁନିଆଯାକର ଶାସ୍ତିର ଉତ୍ତର ତା' ପାଇଁ ଗୋଟିଏ– ଓଠ ଫାଙ୍କରେ ଚିରୁଡାଏ ଅଯାଚିତ ହସ, ଆଉ ଆଖିରେ ଆଖିଏ ଖୋଜିଲା ଖୋଜିଲା ଭାବ । ଜଣେ ଜଣେ ଟିଚର୍ ତା' ହସରେ ଭୟଙ୍କର ପ୍ରଭାବିତ ହୁଅନ୍ତି, 'ନିର୍ଲଜ, ବେହିଆ କୋଉଠିକାର ।'

ଆମ ସମସ୍ତଙ୍କର ମାଡ଼, ଗାଳି ଓ ଗତ ଦିନରେ ଲଗାତର ତିନି ପିରିୟଡ୍ କ୍ଲାସ୍‌ରୁ ବାହାରିଯାଇ ଆର୍ଟ ରୁମ୍‌ରେ ରହିଥିବା ହେତୁ ତିନିଘଣ୍ଟା ଏକଗୋଡ଼ିଆ ଛିଡ଼ାହେବାର ଶାସ୍ତି ଏସବୁକୁ ତା'ର ଚିରାଚରିତ ହସ ଦ୍ୱାରା ଅଚିରେ ହଜମ କରିଦେଇଥିଲା ସେ । କହିବା ବାହୁଲ୍ୟ ଏସବୁ ପରେ ସେ ବରଂ ଅଧିକ ଉତ୍ସାହର ସହିତ ମଡେଲ୍ ତିଆରିରେ ଲାଗି ପଡ଼ିଲା । ଏପରିକି ସ୍କୁଲ୍‌ର ନିୟମ ଭାଂଗି କେତୋଟି ପିଲାଙ୍କୁ ନିଜ ନେତୃତ୍ୱର ଅକ୍ତିଆରକୁ ଆଣି ପାଖ ଗାଁରୁ ମଡେଲ୍ ତିଆରି କରିବା ପାଇଁ ବାଉଁଶ କିଣି ସଂଗ୍ରହ କରିବାର ଅପରାଧ ଯୋଗୁଁ କ୍ଷଣକୋପୀ ଓ କଡ଼ା ନିୟମ-ଶୃଙ୍ଖଳାବଦ୍ଧ ପ୍ରିନ୍‌ସିପାଲ୍ ମହୋଦୟଙ୍କ ଆଖିବୁଜା ମାଡ଼ ତା'ର ସେ ଉତ୍ସାହକୁ ଭାଂଗି ପାରି ନଥିଲା । ବରଂ ବାଁ ହାତରେ ଗୁଡ଼ାଯାଇଥିବା ବ୍ୟାଣ୍ଡେଜ୍ ତା' କାମରେ ବାଧା ସୃଷ୍ଟି କରିବାରୁ ତାକୁ ବି ସେ ଦି'ଦିନ ପରେ ବାହର କରି ଫିଙ୍ଗିଦେଇଥିଲା ।

ଏସବୁ ପାଇଁ ତା' ପ୍ରତି ମନରେ ଘୋର ବିରକ୍ତି ଆସୁଥିଲେ ବି ଯେଉଁଥି ପାଇଁ ମୋ' ମନରେ ଭାବାନ୍ତର ସୃଷ୍ଟି ହୋଇଥିଲା, ତା' ହେଉଛି ରିଜିଓନାଲ୍ ମିଟ୍ ପାଇଁ ଭୋପାଳକୁ ଯାଉଥିବା ପିଲାମାନଙ୍କ ଭିତରେ ଲୁଟୁ ନଥିଲା । ହେଲ୍‌ପର ହିସାବରେ ତାକୁ ପଠାଇବା ପାଇଁ ସ୍କୁଲ ତରଫରୁ କୌଣସି ଆପତ୍ତି ନଥିଲେ ବି ସୀମିତ ଫଣ୍ଡ୍ ସାଙ୍କ୍‌ସନ୍ ହେବା କାରଣରୁ ଏଥିନେଇ କେହି ଆଗ୍ରହ ଦେଖାଇ ନଥିଲେ । ଭୁବନେଶ୍ୱର ରେଲୱେ ଷ୍ଟେସନ୍ ଯାଏ ରିଜର୍ଭ ହୋଇଥିବା ବସ୍ ଉପରକୁ ପିଲାମାନେ ବଂଧା ହୋଇଥିବା ମଡେଲ୍‌ର ପେଟି ସବୁକୁ ବୋହି ନେଲାବେଳେ ଲୁଟୁ ଗୋଟିଏ

ଅନାବଶ୍ୟକ ପ୍ରଶ୍ନବାଚୀ ଭଳି ସ୍କୁଲ୍‌ର ପ୍ରଶସ୍ତ ଗେଟ୍‌କୁ ଧରି ଛିଡ଼ା ହୋଇଥିଲା । ଅଥଚ ଯାଇ ନପାରିବାକୁ ନେଇ ତା'ର କିଛି ହେଲେ ଦୁଃଖ ନଥିଲା । ସେଇ ମୁହୂର୍ତ୍ତରେ ତା' ଆଖିର ଖୋଜିଲା ଖୋଜିଲା ଭାବ ଭିତରେ ଅବଶ୍ୟ କାଣିଚାଏ ଅନିଶ୍ଚିତତା ଥିଲା– 'ତା' ହାତ ତିଆରି ମଡେଲ୍ ପ୍ରାଇଜ୍ ପାଇବା ନ ପାଇବାକୁ ନେଇ । ସେ ହାତ ହଲାଇ ତା'ର ପ୍ରତିଯୋଗୀ ସାଂଗମାନଙ୍କୁ ଉତ୍ସାହିତ କରୁଥିଲା । ବସ୍ ଛାଡ଼ିଲା ବେଳକୁ ସେ ଏତେ ଉତ୍ତେଜିତ ହୋଇପଡ଼ିଥିଲା ଯେ ଦୁଇ ହାତ ଉପରକୁ ଟେକି କୁଦା ମାରୁଥିଲା । ସେଠି ଛିଡ଼ା ହୋଇଥିବା ପିଲାମାନେ ତାକୁ ମାଙ୍କଡ଼ କହି ଚିଡ଼ାଉଥିଲେ ।

ସାଇନ୍‌ସ୍ ଏକ୍‌ଜିବିସନ୍ ସରୁ ନ ସରୁ ଆରମ୍ଭ ହେଇଗଲା ଆନୁଆଲ୍ ସ୍ପୋର୍ଟସ୍‌ର ସମୟ । ଏକମାତ୍ର ରିଲେ ରେସ୍‌ରେ ଭାଗ ନେବାକୁ ଚାହୁଁଥିଲା ବେଳେ ପ୍ରାକ୍‌ଟିସ୍‌ରେ ତା'ର ଅନିୟମିତତା କାରଣରୁ ସେଥିରୁ ବି ଲୁଟୁକୁ ବାହାରିଯିବାକୁ ପଡ଼ିଥିଲା । ଏଥର ସଂପୂର୍ଣ୍ଣ ଦାୟିତ୍ୱମୁକ୍ତ ହୋଇ ସେ ସ୍ପୋର୍ଟସ୍ କାମରେ ଲାଗିପଡ଼ିଥିଲା । ନିର୍ଦ୍ଧୁମ୍ ଖରାରେ ଫିଲ୍‌ଡରେ ଚୂନ ପକାଇ ସେକ୍ଟରର ଲାଇନିଂ କରିବାଠାରୁ ଆରମ୍ଭ କରି ପ୍ରତିଯୋଗୀମାନଙ୍କ ପଛରେ ଦୌଡ଼ି ଦୌଡ଼ି ଗ୍ଲୁକୋଜ୍, କମଳା, ଓଦା ରୁମାଲ୍ ଓ ଫାଷ୍ଟଏଡ୍‌ର ଯୋଗେଇବା ପର୍ଯ୍ୟନ୍ତ ସବୁଥିରେ ସେ ଆଗଭର । ଏମିତିକି ଫିଲ୍‌ଡର୍ ଆନାଉନ୍‌ସ୍‌ମେଣ୍ଟ ବୁଥ୍‌ଯାଏ ଚେୟାର ଟେବୁଲ୍ ଓ ମାଇକ୍ରୋଫୋନ୍ ଷ୍ଟାଣ୍ଡ ବୋହିନବା କାମ ବି ତା'ର ନେତୃତ୍ୱରେ ହେଉଥାଏ ।

ସେଥର ୟୁନିଟ୍ ଟେଷ୍ଟର ରେଜଲ୍‌ଟ୍ ବାହାରିବା ପରେ ତାକୁ ଷ୍ଟାଫ୍ ରୁମ୍‌କୁ ଡାକି ଗାଳି ଦେଇଥିଲେ, "ସେମାନେ ତ ଏକ୍‌ଜିବିସନ୍‌ରେ ମିଶିଲେ ବୋଲି ତାଙ୍କୁ ପରୀକ୍ଷା ମାଫ୍ ହେଲା । ହେଲେ, ତୁ କୋଉ କୂଳର ହେଲୁ ! ନା ଏକ୍‌ଜିବିସନ୍ ଯାଇପାରିଲୁ, ନା ସ୍ପୋର୍ଟସ୍‌ରେ ମିଶିଲୁ, ନା ପରୀକ୍ଷାରେ ପାଶ୍ କଲୁ । କି ଲାଭ ପାଇଲୁ ଏଥିରୁ !"

ମୋ' କଥା ଶେଷ ହୋଇଛି କି ନାହିଁ, ଦି'ହାତରେ ବାଳ ଉପରକୁ ଉଠାଇ ଦରହସା ମୁହଁରେ ଆଖି ବଡ଼ ବଡ଼ କରି ଚଟାପଟ୍ ସେ କହି ପକାଇଲା, "ଆଉ ଆମ ହାଉସ୍ ଯୋଉ ଫାଷ୍ଟ ପ୍ରାଇଜ୍ ପାଇଲା !"

ଜୋକ ମୁହଁରେ ଲୁଣ ଦେଲା ଭଳି ତା'ର ଏଇ ପଦିଏ କଥା ମୋର ସବୁ ଟାଣପଣକୁ ମିଳେଇ ଦେଲା । ନିଜକୁ ଅପଦସ୍ତ ମନେକଲି ମୁଁ । ମୁଁ ନବମ ଶ୍ରେଣୀ ପିଲାମାନଙ୍କୁ ନଗର ବିଜ୍ଞାନ ପଢ଼ାଏ, ଯେଉଁ କ୍ଲାସ୍‌ର ଛାତ୍ର ଲଲାଟେନ୍ଦୁ । ଜାତୀୟ ଏକତା, ଭାଇଭାଇ ଭାବକୁ ନେଇ ବଳିଷ୍ଠ ଉତ୍ତର ଲେଖୁଥିବା ଛାତ୍ରମାନଙ୍କ ମୁହଁରୁ ମୁଁ ସେବେ ଯାଏ କେବେ 'ଆମ କ୍ଲାସ୍, ଆମ ହାଉସ୍, ଆମ ସ୍କୁଲ୍' ଇତ୍ୟାଦିକୁ ନେଇ ଗର୍ବ କରିବାର ଶୁଣି ନଥିଲି । ସେମାନେ କେବଳ ମଗ୍ନ ଥା'ନ୍ତି ନିଜସ୍ୱ ଜ୍ଞାନର ସମୃଦ୍ଧିରେ । ଲୁଟୁର ସେଇ 'ଆମ ହାଉସ୍' ଭଳି ଦୁଇଟି ସଂକ୍ଷିପ୍ତ ଶବ୍ଦ ଭିତରେ ଥିଲା ଗଦାଏ ଆତ୍ମସନ୍ତୋଷ ଓ ବିଶ୍ୱାସ, ଯାହା ଷ୍ଟାଫ୍ ରୁମ୍‌ର ଅପମାନଜନକ ମିଳିତ ହୋହୋ ହସ ଭିତରେ ବି ଅକ୍ଷତ ଥିଲା । ମୁହଁରେ ସେମିତି ମୁରୁକୁନିଆ ହସ ଫୁଟାଇ ଛିଡ଼ାହୋଇଥିଲା ଲୁଟୁ । ତାକୁ ଷ୍ଟାଫ୍ ରୁମ୍‌ରୁ ବାହାରି ଯିବାକୁ ଅନୁମତି ଦେଇ ମହାନ୍ତିବାବୁ କହିଲେ, "ଗଜମୂର୍ଖଟା, କେମିତି କେଜାଣି ଏଣ୍ଟ୍ରାନ୍‌ସରେ ପାଶ୍ କରି ଏଠିକି ଆସିଲା !"

ତାଙ୍କ କଥାରେ ବାଧା ଦେଇ ମିଶ୍ରବାବୁ କହିଲେ, "ନାଇଁ ନାଇଁ, ପିଲାଟାର ବୁଦ୍ଧି ଅଛି । ତା'ର ବୁଝିବା ଶକ୍ତି ଭଲ । ହେଲେ କ'ଣ ହେବ, ଟିକେ ହେଲେ ତ ବହି ପାଖରେ ବସିବନି । ପାଠ ଚୋରଟା ।"

ଚାରିବର୍ଷ ତଳେ ଷଷ୍ଠ ଶ୍ରେଣୀରେ ତା'ର ଆଡ୍‌ମିସନ୍ କରାଇବାକୁ ଆସି ତା'ର ମାମୁ ହିଁ ଲୁଟୁ ବିଷୟରେ ଏଇ ବିଶେଷଣଟି ପ୍ରଚାର କରିଯାଇଥିଲେ । ତାକୁ ବୁଝାଇ ସୁଝାଇ ନୁହେଁ, ବରଂ ଶାସନ କରି ପଢ଼ାଇବା ପାଇଁ ଅନୁରୋଧ କରିଥିଲେ । ତାଙ୍କର ଏ କଥାକୁ ନୀରବରେ ତା'ର ବୋଉ ସମର୍ଥନ କରିଥିଲେ ।

ଆଜି ଲୁଟୁର ବୋଉଙ୍କ ସାଙ୍ଗରେ ତାଙ୍କ ଭାଇ ଆସି ନଥିଲେ । ସେ କୁଆଡ଼େ ତାଙ୍କ ଶେଷ ନିଷ୍ପତ୍ତି ଶୁଣାଇ ଦେଇଥିଲେ ଯେ ଏମିତି ବାଲୁଙ୍ଗା କୁଳାଙ୍ଗାର ଭଣଜାର ମୁହଁ ସେ ଆଉ ଚାହିଁବେନି । ସମ୍ଭବତଃ ଲୁଟୁବୋଉଙ୍କର ଭାଂଗି ପଡ଼ିବା ପଛରେ ଏଇ କାରଣଟି ହିଁ ଥିଲା । ଭାବିଥିଲି, ଦୁଃଖର ସାଗରରୁ, ତାଙ୍କ କୋହର ଗନ୍ତାଘରୁ କାଣିଚାଏ ଲୁଟୁ ଆଦରି ନବ, ତାଙ୍କୁ ବୁଝିବ ।

କିନ୍ତୁ ସେକଥା ହେଲା ନାହିଁ । ନିଜ ଇଚ୍ଛାକୁ ନିଜର ଚାବି ବୋଲି ମାନି ନେଇଥିବା ଲଲାଟେନ୍ଦୁ ଯେମିତି ସ୍ୱୟଂସିଦ୍ଧ ଯୋଗୀଟିଏ– ନିଜ ଅନ୍ୟମନସ୍କତାରେ ସଦାମନସ୍କ ଓ ନିର୍ଲଜ୍ଜ କେରାଏ ହସରେ ସଦା ସୁରକ୍ଷିତ । ।

ଦ୍ୱାଦଶ ଶ୍ରେଣୀରେ ଥରେ କ୍ଲାସ୍ ନେଉଛି, ଲୁଟୁ ଆସି ଦୁଆର ମୁହଁରେ ହାଜର । ତା'ର ମୁଣ୍ଡ କୁଣ୍ଡାଇ ହେବା ଠାଣିରୁ ଆଭାସ ପାଇଲି କିଛି ଅପ୍ରସ୍ତାବର । ଠିକ୍ ଥିଲା ମୋ' ଅନୁମାନ । ସେ ପଚାଶ ଟଙ୍କା ଧାର୍ ମାଗୁଥିଲା, ଦଶଦିନ ଭିତରେ ଫେରାଇଦେବାର ପ୍ରତିଶ୍ରୁତି ଦେଇ । କଥା ବୁଝୁବୁଝୁ କ୍ଲାସ୍ ମନିଟରକୁ ସାହାଯ୍ୟ କରିବାର ନିଶା ଘାରିଛି ତାକୁ । କ୍ଲାସ୍ ପାଇଁ ମ୍ୟାଗାଜିନ୍ କିଣିବା ଉଦ୍ଦେଶ୍ୟରେ ଯେଉଁ ପଇସା ପିଲାଙ୍କଠୁ ମନିଟର୍ ସଂଗ୍ରହ କରିଥିଲା, ତା' ହଜିଯାଇଛି ଓ ପିଲାମାନେ ମନିଟରର ଏ ଅସହାୟତା ବୁଝିବାକୁ ନାରାଜ ।

ତା' ବୋଉଙ୍କ ଦୁଃଖଜର୍ଜ୍ଜର ମୁହଁଟା ହଠାତ୍ ମନେପଡ଼ିଗଲା ଓ ମୋ' ରାଗର ପାରଦ ସର୍ବୋଚ୍ଚ ଡିଗ୍ରୀକୁ ଛୁଇଁଗଲା । ମୁଁ ଚିତ୍କାର କଲି, 'ସେ ପଇସା ହଜେଇଛି, ସେକଥା ସେ ବୁଝିବ, ତୁ କାହିଁକି ଭଲଲୋକି ଦେଖାଇ ହଉଛୁ ।'

ସେମିତି ମୁଣ୍ଡ କୁଣ୍ଡାଉ କୁଣ୍ଡାଉ ମୋ' ପାଖରୁ ସେ ଚାଲିଗଲା, ହେଲେ ଆଉ କେତେ ଜଣ ଶିକ୍ଷକଙ୍କ ପାଖକୁ ଯାଇ ସମାନ ପ୍ରସ୍ତାବ ଦେବାରୁ ଶେଷରେ ସମସ୍ତଙ୍କର ସଂଦେହ ତା' ଉପରେ ହିଁ କେନ୍ଦ୍ରିଭୂତ ହୋଇଥିଲା । ନିଶ୍ଚୟ ଏଇ ସେ ପଇସା ଚୋରି କରିଛି, ଏମିତି ଏକ ବିଶ୍ୱାସ ସମସ୍ତଙ୍କର ଦୃଢ଼ୀଭୂତ ହେଲା ଓ ପୁଣି ଗୋଟିଏ ମାଡ଼ଗାଳିର ପର୍ଯ୍ୟାୟ ତା' ଉପରେ ଶେଷ ହେଲା । ହେଲେ, ସବୁଥର ପରି ଏଥର ବି ଝଡ଼ ତା' ଉପର ଦେଇ ବୋହିଗଲା ସିନା, ତାକୁ ଛୁଇଁଲା ନାହିଁ ।

ଏଣିକି କେବେ କେମିତି ଝର୍କା ଫାଙ୍କ ଦେଇ ବର୍ଷା ଛିଟିକା ପଡ଼ିଲା ଭଳି ମୋ' ମନ ଭିତରେ ତାକୁ ନେଇ ଉଙ୍କି ମାରୁଥିବା ସହାନୁଭୂତିକୁ ମୁଁ ଆଡ଼ନଜର କରିଦେଉଥିଲି । କିନ୍ତୁ ପାସୋରି ହେଇ ଯାଉ ଯାଉ ଲୁଟୁ ଦଲକାଏ କାଲୁଆ ପବନର ଆବର୍ତ୍ତ ବନି ମୋ ଭିତରେ ଦ୍ୱନ୍ଦ୍ୱର ଚକ୍କର କାଟିଲା, ଯେତେବେଳେ ମୁଁ ଆନୁଆଲ୍ ଫଙ୍କସନ୍ ପାଇଁ ପୁରସ୍କାର ତାଲିକା କରିବା ଓ ତଜ୍ଜନିତ ବନ୍ଦୋବସ୍ତ ଆରମ୍ଭ କଲି । କୋ-କରିକୁଲାର ଆକ୍‌ଟିଭିଟିଜ୍‌ର ଇନ୍‌ଚାର୍ଜ ହେବା ଅନୁଯାୟୀ ମୋ' ପାଇଁ ଏ ଦାୟିତ୍ୱ ନିର୍ଧାର୍ଯ୍ୟ ଥିଲା । ପ୍ରାଇଜ୍ ଲିଷ୍ଟ୍‌ରେ ଭଲ୍ୟୁଣ୍ଟରସିପ୍ ଓ ସମାଜ ସେବା ପାଇଁ ଉଦ୍ଦିଷ୍ଟ କେତେଗୁଡ଼ିଏ ସ୍ପେଶାଲ୍ ପ୍ରାଇଜ୍ ପାଉଥିବା ପିଲାମାନଙ୍କ ନାଁ ପାଖରେ ମୁଁ ଝୁଣ୍ଟିଲି । ମୋ' ଭିତରେ ଇଚ୍ଛାଟିଏ ବଳବତ୍ତର ହେଲା, ସେଇ ଲିଷ୍ଟ୍‌ର ଶୀର୍ଷରେ ନହେଲେ ବି ଶେଷଆଡ଼କୁ ଲୁଟୁର ନାଁ ଲେଖନ୍ତି । ଷ୍ଟେଜ୍ ଉପରେ ଯେତେବେଳେ ଲଲାଟେନ୍ଦୁ ଶତପଥି, 'ଦି ବେଷ୍ଟ୍ ଭଲ୍ୟୁଣ୍ଟିଅର୍

ଅଫ୍ ଦି ଇଅର' ଘୋଷଣା କରାଯାଆନ୍ତା, ଲୁଟୁ ତା' ଜୀବନର ପ୍ରଥମ ପୁରସ୍କାର ମଂଚ ଉପରକୁ ଆସି ଗ୍ରହଣ କରନ୍ତା ଓ ଦର୍ଶକମଣ୍ଡଳୀଙ୍କ କରତାଳିରେ ଉଚ୍ଛ୍ୱସି ଉଠନ୍ତା । ସେଇ ସମୟରେ ଲୁଟୁ ମୁହଁରେ ଭାସି ଉଠୁଥିବା ପ୍ରଶାନ୍ତିର ଝଲକ କଳ୍ପନା କରି ମୁଁ ମନେ ମନେ ପୁଲକିତ ହୋଇଉଠିଲି । କିନ୍ତୁ ମୋ'ର ସମସ୍ୟା ଥିଲା ଏୟା ଯେ ଲୁଟୁ କେଉଁ ସ୍କାଉଟ୍ କିମ୍ବା ଏନ୍.ଏସ୍.ଏସ୍. ସଂସ୍ଥାର ସଦସ୍ୟ ନଥିଲା କି ସେ ସଂପର୍କିତ କୌଣସି କ୍ୟାମ୍ପରେ ଯୋଗ ଦେଇ ନଥିଲା । ସ୍କୁଲ୍‌ର କୌଣସି କାର୍ଯ୍ୟକ୍ରମରେ ଔପଚାରିକ ଭାବରେ ଭଲ୍ୟୁଣ୍ଟିୟର ହୋଇଥିବା ପିଲାଙ୍କ ନାମ ତାଲିକାରେ ବି ତା' ନାଁ ନଥିଲା ।

ମଞ୍ଚ ଉପରେ ନାମ ଘୋଷଣାପୂର୍ବକ ପୁରସ୍କାର ପ୍ରଦାନ ପାଇଁ ଯେଉଁ ନ୍ୟୂନତମ ସର୍ତ୍ତର ଆବଶ୍ୟକତା ଥିଲା, ଲଲାଟେନ୍ଦୁ ତା' ପୂରଣ କରିବାକୁ ଅକ୍ଷମ । ତଥାପି ବିବେକର ତାଡ଼ନାରେ ମୁଁ ଶାନ୍ତିରେ ଥୟ ଧରି ପାରି ନଥିଲି । ଭାବିଲି, ପ୍ରିନ୍ସିପାଲଙ୍କୁ ଏ ବିଷୟରେ ମୋ' ତରଫରୁ ଅନୁରୋଧ କରିବି । କିନ୍ତୁ ସେତେବେଳେ ସେ ମୁଖ୍ୟବକ୍ତା, ମୁଖ୍ୟ ଅତିଥି ଇତ୍ୟାଦିଙ୍କୁ ନିମନ୍ତ୍ରଣ ଓ ଅନ୍ୟାନ୍ୟ ଫର୍ମାଲିଟିଜ୍‌କୁ ନେଇ ଏତେ ମାତ୍ରାରେ ବ୍ୟସ୍ତ ଥିଲେ ଯେ ଏଥିପାଇଁ ମୋତେ ସୁଯୋଗ ମିଳିଲା ନାହିଁ ।

ଆନୁଆଲ୍ ଫଙ୍କ୍‌ସନ୍ ଦିନ ପୁରସ୍କାର ପର୍ବର ପୂର୍ବ ମୁହୂର୍ତ୍ତଯାଏ ମୁଁ ବାରବାର ଲୁଟୁର ନାଁଟିକୁ ପ୍ରାଇଜ୍ ଲିଷ୍ଟ୍‌ରେ ଲେଖୁଥିଲି ଓ କାଟୁଥିଲି । ପୁରସ୍କାର ବିତରଣ ସମୟରେ ଷ୍ଟେଜ୍ ଉପରେ ଥାଇ ମୁଁ ଲୁଟୁକୁ ଦେଖିପାରୁଥିଲି । ଅତିଥିମାନଙ୍କ ସାମ୍ନାରେ, ତଳେ ପଡ଼ିଥିବା ଦରି ଉପରେ ଅନ୍ୟ ପିଲାମାନଙ୍କ ଗହଣରେ ସେ ବସିଥିଲା । ବିଜୟୀ ସାଙ୍ଗମାନଙ୍କ ନାଁ ଘୋଷଣା ବେଳେ ସେ ହସ ଓ କରତାଳିରେ ଉଛୁଳି ପଡୁଥିଲା । ବେଳେବେଳେ ଅଧିକ ଉଲ୍ଲାସରେ ହାତ ଦୁଇଟା ଉଠାଇ ସେ ତାଳିମାରୁଥିଲା ଓ ହିପ୍‌ହିପ୍ ହୁର୍‌ରେ କହି ଚିଲ୍ଲାଉଥିଲା । ଏସବୁ ଭିତରେ ବି ତା' ଆଖିର ଖୋଜିଲା ଖୋଜିଲା ଭାବକୁ ମୁଁ ପଢ଼ିପାରୁଥିଲି । ସେ ଆହୁରି କିଛି ଦେଖିବ, ଆହୁରି ଶୁଣିବ, ଏ ପ୍ରାଇଜ୍ ତ ତା' ପାଇଁ ତୁଚ୍ଛ, ନିଜକୁ ଏମିତି ଯାହିତାହି ସାନ୍ତ୍ୱନା ଦେଇଦେଲି ମୁଁ ।

ପ୍ରାଇଜ୍ ଡିଷ୍ଟ୍ରିବ୍ୟୁସନ୍ ପରେ ମନୋରଂଜନ କାର୍ଯ୍ୟକ୍ରମ ଆରମ୍ଭ ହେଉ ହେଉ ଲୁଟୁ ଆସି ଗ୍ରୀନ୍ ରୁମ୍‌ରେ ହାଜର । କାହାର ନକଲି ନିଶ ସଜାଡ଼ି ଦେଉଥିଲା ତ କାହା ମୁହଁରେ ଲାଲ୍ ରଙ୍ଗ ବୋଳୁଥିଲା । ଷ୍ଟେଜ୍ ସାଇଡ୍‌ରେ ଛିଡ଼ା ହୋଇ ଅଭିନେତାମାନଙ୍କୁ ଡାଇଲଗ୍ ପ୍ରମ୍ପଟିଂ କରୁଥିଲା ।

ଶେଷ ପ୍ରୋଗ୍ରାମ୍‌ଟି ଥିଲା ପପେଟ୍ ଶୋ' । ସେଥିରେ ଲୁଟୁର ଦିନଦିନର ପରିଶ୍ରମରେ ପ୍ରସ୍ତୁତ ହୋଇଥିବା ରଂଗବେରଂଗୀ କଣ୍ଢେଇସବୁକୁ ପିଲାମାନେ ନଚାଉଥିଲେ । ପର୍ଦ୍ଦା ଆଢୁଆଳରେ ଥାଇ ଲୁଟୁ ମନପ୍ରାଣ ଦେଇ ଏ ଦୃଶ୍ୟକୁ ଉପଭୋଗ କରୁଥିଲା । ତା' ଗୋଲ୍‌ଗୋଲ୍ ଆଖି ଦିଓଟିରେ ଭରିଯାଇଥିଲା ଉତ୍କଣ୍ଠା ଆଉ ବିସ୍ମୟ । କଣ୍ଢେଇଗୁଡ଼ିକ ଜୋର୍‌ରେ କେହି ନଚାଇ ଦେଲେ ସେ ଜୋର୍‌ରେ କହିପକାଉଥିଲା, 'ଧୀରେ ଧୀରେ, ମୁକୁଟଟା ଖସିପଡ଼ିବ ।' ମୁଁ ନିଜକୁ ରୋକି ନପାରି ପଚାରିଥିଲି, "ତୁ କାହିଁକି ମିଶିଲୁନି ?" ତା'ର ଏ ବ୍ୟସ୍ତତା ଭିତରେ ମୋ' ପ୍ରଶ୍ନର ଗୁରୁତ୍ୱ ନଥିଲା । "ମିଶିଲିନି ତ... ଆଉ..., ମୋ'ର ସେ ଡାଇଲଗ୍ ଫାଇଲଗ୍ କିଛି ମନେ ରହିବନି ।"

ତାକୁ ଆଉ କ'ଣ ପଚାରିବାର ଇଚ୍ଛା ଥିଲା । ହେଲେ, ମାଛ କଣ୍ଟା ଭଳି ସେ କଥାଟା ମୋ' ତଣ୍ଟିରେ ଲାଖି ରହିଗଲା । କେଜାଣି, ହୁଏତ ଗତବର୍ଷ ଆନୁଆଲ୍ ଫଙ୍କ୍‌ସନ୍‌ରେ ଯେମିତି କଣ୍ଢେଇ ତିଆରିରେ ଅସୁବିଧା ହେବା ଯୋଗୁଁ ସେ ଛଉ ନାଚରୁ ବାହାରି ଯାଇଥିଲା, ଏଥର ବି ସେମିତି କରିଥିବ ।

ଲୁଟୁର ଖୁସି, ନାଚକୁଦ ସେଇ ମୁହୂର୍ତ୍ତରେ ମୋ'ର ଅସହ୍ୟ ହେଉଥିଲା । କହିବାକୁ ଇଚ୍ଛା ହେଉଥିଲା, ମଣିଷ ଭଳି ହ', ସାଧାରଣ ମଣିଷ ଭଳି– ଯାହାର ସାଧାରଣ ଇଚ୍ଛା, ମୋହ, ମାୟା ଥିବ । ୟା'ଠାରୁ ଯିଏ ଉପରକୁ ଯିବାକୁ ଚାହେଁ, ସିଏ ଅମଣିଷରେ ଗଣାଯାଏ ।

କେହି ଜଣେ ଶିକ୍ଷକ ଥରେ ତା' ଉଦ୍ଦେଶ୍ୟରେ କହିଥିଲେ, 'ଲଲାଟେନ୍ଦୁ ଇଜ୍ ବିଜି ଫର୍ ନଥିଙ୍ଗ୍ ।'

ଫଙ୍କ୍‌ସନ୍ ଶେଷରେ ଧନ୍ୟବାଦ ଅର୍ପଣ କରିବା ପାଇଁ ମଞ୍ଚ ଉପରକୁ ଯାଉଥିବା ମୋ'ର କଲିଗ୍‌ଙ୍କୁ କାଗଜଟେ ବଢ଼େଇବି ବୋଲି ଭାବିଥିଲି । ସେଇ କାଗଜ ଟୁକୁଡ଼ାରେ ଗୋଲ୍ ଗୋଲ୍ ଅକ୍ଷରରେ ଲେଖିଥିଲି ଲଲାଟେନ୍ଦୁ ଶତପଥିର ନାଁ । ଭାବିଲି, 'ଭୋଟ୍ ଅଫ୍ ଥ୍ୟାଙ୍କ୍‌ସ'ରେ ଶେଷଆଡ଼କୁ ଯେଉଁ ପିଲାମାନଙ୍କ ନାଁ ଉଚ୍ଚାରଣ କରାଯିବ, ତା' ଭିତରେ ଅନ୍ତତଃ ରହୁ ପର୍ଦ୍ଦା ଆଡୁଆଳରେ ଥିବା ଗୁଣ୍ଡୁଚିମୂଷାଟିର କୃତିତ୍ୱ । କିନ୍ତୁ ସେତକ କରିବା ପାଇଁ ମୋ'ର ସାହସ ହେଲା ନାହିଁ। ମୋ' ସହକର୍ମୀ ଯଦି ହୋ ହୋ ହସି କହିଥାନ୍ତେ 'ଲଲାଟେନ୍ଦୁକୁ ଧନ୍ୟବାଦ କ'ଣ ପାଇଁ ! ସେ ତ ବିଜି ଫର୍ ନଥିଙ୍ଗ୍ ।

ମୋ' ହାତ ପାପୁଲି ଭିତରେ ଲଲାଟେନ୍ଦୁର ନାଁ ଲେଖା ହୋଇଥିବା କାଗଜଟୁକୁଡ଼ା ମୁଣ୍ଡାଏ ବରଫ ପାଲଟିଯାଇଥିଲା । ତାକୁ ତରଳାଇବା ପାଇଁ ମୋ' ଭିତରେ ଉଷ୍ମତାର ଘୋର ଅଭାବ ।

ଫଙ୍କ୍‌ସନ୍ ପରଦିନ ସ୍ୱାମୀ ମୋର ଥମଥମ ମୁହଁ ଦେଖି କହୁଥିଲେ, "ତମର ତ ଏବେ ମାସେ ଲମ୍ବା ଛୁଟି । ମୁହଁଟାକୁ ଏମିତି ଚାରେଣି ହଜେଇଲା ଭଳି କରିଛ କାହିଁକି ?" ତାଙ୍କ ଥଟ୍ଟା ପରିହାସ ଭିତରେ ଲୁଟୁର ପ୍ରସଙ୍ଗ ଉଠାଇଲା ଭଳି ତାକତ୍ ମୋର ନଥିଲା । କ'ଣ ବା କହିଥାନ୍ତି ! ଥାଉ ସେକଥା– ସେମିତି ନରମ କଣ୍ଟାଟେ ଭଳି ଭିତରେ ଭିତରେ ରୁଗୁରୁଗୁ ହେଉଥାଉ ।



# ଭାତ

## ଆଶିଷ କୁମାର ଗଡ଼ନାୟକ

କଲିକତାରେ ଚାକିରି କରିଥିବା ତାଙ୍କ ଘର ପାଖର ଜଣେ ଲେଖାଯୋଖା 'ଅଙ୍କଲ୍'ଙ୍କ ଦ୍ୱାରା ଅଣାଯାଇଥିବା ଗୋଟେ ସ୍ପ୍ରିଂ ଛୁରୀ ପ୍ରବୀର୍‌ଦା' ମୋତେ ଦେଇଥିଲା କଲେଜ୍ ଛାଡ଼ିବା ବେଳେ । ମୁଁ ଚାକିରି କରି ବାହାସାହା ହେବା ପର୍ଯ୍ୟନ୍ତ ସେଇଟିକୁ ପାଖରେ ସାଇତି ରଖିଥିଲି ଗୋଟେ ସ୍ମୃତି ରୂପେ । ବଡ଼ପୁଅ ଜନ୍ମ ହେବା ପରେ ଏବଂ ଟିକେ ବଢ଼ିଯିବା ପରେ ତା' ଦୃଷ୍ଟିରେ ନ ପଡ଼ିବା ପାଇଁ ଛୁରୀଟାକୁ ମୁଁ ଲୁଚେଇ ଦେଇଥିଲି ପୁରୁଣା କଂସା ବାସନ ଇତ୍ୟାଦି ରହୁଥିବା ଗୋଟେ ଲୁହା ଟ୍ରଙ୍କ୍ ଭିତରେ; କିନ୍ତୁ ପରେ, ଦିନେ ଯେତେ ଖୋଜିଲେ ବି ପାଇଲିନି । ସେଦିନ ରାଗରେ ପୁଅକୁ ବହେ ବାଡ଼େଇ ପକେଇଥିଲି ଏବଂ ତାକୁ ଗୁଡ଼ାଏ ଗେହ୍ଲା କରି ଚଗଲା ବନେଇ ଦେଇଥିବା ଯୋଗୁଁ ମୋ ସ୍ତ୍ରୀକୁ ବି ଆଚ୍ଛାକରି ପରସ୍ତେ ଗାଳି ଶୁଣେଇ ଦେଇଥିଲି । ଛୁରୀଟା କିନ୍ତୁ ଆଉ ମିଳିଲାନି । ପ୍ରବୀରଦା' କିନ୍ତୁ ମନେ ଅଛି ଆଜି ଯାଏ ।

ପ୍ରବୀର୍‌ଦା– ପ୍ରବୀର ଚାଟାର୍ଜୀ । ଯଦିଓ ତା' ପୂର୍ବ ପୁରୁଷ ରହୁଥିଲେ କେବେ କଲିକତାରେ; ସେମାନେ ସେତେବେଳେ ବିହାରରେ; ଜାମ୍‌ସେଦ୍‌ପୁର ପାଖରେ କୋଉଠି । ବାପା ଜିଓଲୋଜିଷ୍ଟ । ବିହାରର ଆଇନ୍ ଶୃଙ୍ଖଳା ପରିସ୍ଥିତି ଯୋଗୁଁ ଗୁଡ଼ାଏ ପିଲା ପାଠ ପଢ଼ିବାକୁ ଓଡ଼ିଶା ପଳେଇ ଆସୁଥିଲେ ସେତେବେଳେ । ଖାଲି ବିହାର ନୁହେଁ; ଆନ୍ଧ୍ର ଓ ବଙ୍ଗଳାର ସୀମା ଅଞ୍ଚଳରୁ ବି ଆସୁଥିଲେ । ସେମିତି ପ୍ରବୀର୍‌ଦା'ର ଆଗମନ କଟକକୁ ଓ ମୋ' ସହିତ ଏକା ହଷ୍ଟେଲରେ ଅବସ୍ଥାନ । କାହିଁକି କେଜାଣି ସବୁ ଚିହ୍ନାଜଣା ତାକୁ ପ୍ରବୀର୍‌ଦା' ଡାକୁଥିଲେ; ଆଉ ସହପାଠୀ ହୋଇ ମୁଁ ବି ।

ପ୍ରବୀର୍‌ଦା'ର ମୋ ସହିତ ଖୁବ୍ ଭଲ ଦୋସ୍ତି ଥିଲା । ଏକ୍‌ଦମ୍ ନିବିଡ଼ । ମୋ' ପାଖକୁ ଘରୁ ବୋଉ ପଠଉଥିବା ଆରିସା ଆଉ ଆଚାର ଆମେ ଦି'ଜଣ ବାଣ୍ଟିକି ଖାଉଥିଲୁ । ତା' ବିସ୍କୁଟ୍ ଟିଣ ଭିତରେ ହାତ ପୂରେଇବାକୁ ବି ମୋର ପୂର୍ଣ୍ଣ ସ୍ୱାଧୀନତା ଥିଲା ।

ଗୋଟେ ସ୍ମରଣୀୟ କଥା ଯେ ଆମେ ଦୁହେଁ ସାଥି ହୋଇ ସିଗାରେଟ୍ ଟାଣୁଥିଲୁ । ସେତେବେଳେ କଲେଜ ଛକର ରାଜୁଭାଇ ଦୋକାନରେ ଆମର ବାକି ଖାତା ଚଳୁଥିଲା । ଅବଶ୍ୟ ପହିଲେ ମୁଁ ସିଗାରେଟ୍ ଟାଣିବାକୁ ଡରୁଥିଲି । ଥରେ ଟାଣିଦେଲେ ମୁଣ୍ଡ ବୁଲେଇ ଝାଇଁଝାଇଁ ହେଇଯାଉଥିଲା । ପ୍ରବୀର୍‌ଦା' ତା' ବିହାର କଥା କହୁଥିଲା; କଲିକତା କଥା ବି । ସେଠି କେମିତି ଛୋଟ ଛୋଟ ,ଛୁଆମାନେ ବି ମଦ ପିଇ ପକାନ୍ତି । ହଜମ୍ କରିଦିଅନ୍ତି । ତା'ର ତ ହାଇସ୍କୁଲ୍ ବେଳୁ ସିଗାରେଟ୍ ଅଭ୍ୟାସ । ବିହାରୀ ଟୋକାମାନେ କେମିତି ଦୁଃସାହସୀ; କଲିକତାମାନେ କେତେ ଚାଲାଖ୍ !

ଅବଶ୍ୟ ସେ କେବେ ମଦ ପିଇଥିବାର ମୋର ମନେନାହିଁ ଯଦିଓ ସେ ବିଷୟରେ ଅଣଓଡ଼ିଆ ପିଲାଙ୍କର ବହୁ ଦୁର୍ନାମ ଥିଲା ।

ସବୁଦିନେ ରାତିରେ ରୁଟିନ୍ ଭଳି ମେସ୍‌ରୁ ମିଲ୍ ଖାଇ ଫେରିବାର କିଛି ସମୟ ପରେ ସାର୍ଟ ପ୍ୟାଣ୍ଟ ପିନ୍ଧି ରେଡି ହୋଇ ପ୍ରବୀର୍‌ଦା' ଆସୁଥିଲା ମୋ' ରୁମ୍‌କୁ, କିମ୍ବା ମୁଁ ଯାଉଥିଲି ତା' ପାଖକୁ । ତା'ପରେ ପକେଟ୍‌ରେ କିଛି ଖୁଚୁରା ପଇସା ପୂରେଇ ଆମେ ଯାଉଥିଲୁ ରେଲ୍‌ୱେ ଷ୍ଟେସନ୍‌କୁ । ଷ୍ଟେସନ୍‌ଟା ଆମ ହଷ୍ଟେଲ୍‌ର ଖୁବ୍ ନିକଟରେ ଥିଲା; ଅଧ କିଲୋମିଟର୍‌ରୁ ଆହୁରି କମ୍ । ଆଗରୁ ଅବଶ୍ୟ ରାତି ଏଗାର ମାନେ ଅନ୍ୟ ଓଡିଆ ପିଲାଙ୍କ ଭଳି ମୋର ବି ରାତି ଅଧ ହୋଇଯାଉଥିଲା, କିନ୍ତୁ ପ୍ରବୀର୍‌ଦା' ପ୍ରଭାବରୁ ଏକ୍‌ଦମ୍ ରାତ୍ରୀଚର ପାଲଟିଗଲି ତା'ପରେ । ଦିନରେ ଶୁଆ ଓ ସିଗାରେଟ୍ ଟାଣି ରାତିସାରା ଉଜାଗର ଏବଂ ଯାହା କିଛି ପଢାପଢି ।

ଷ୍ଟେସନ୍‌ଟା ହଷ୍ଟେଲ୍‌ର ଖୁବ୍ ପାଖରେ ଥିଲା; ରାତିରେ ସେଠାକୁ ଯିବା ବେଳେ କଲେଜ ଛକ ଡିଉଟିରେ ଥିବା ନେପାଳୀ ପୋଲିସ୍ ଆମର କିଛି କରୁନଥିଲା । କଲେଜ ପିଲାଙ୍କର ସେତେବେଳେ ଟିକେ ଅଧିକ ଭାଭ ଥିଲାତ ! ପ୍ରଥମେ ପ୍ରଥମେ ଆମେ ଦି'ଜଣ ଷ୍ଟେସନ୍ ଯାଇ ସେଠି ରାତି ସାରା ଖୋଲା ରହୁଥିବା ଦୋକାନରୁ ଚା', ସିଗାରେଟ୍ ବା ପାନ ଇତ୍ୟାଦି ଖାଇ ଓ ସିମେଣ୍ଟ ବେଞ୍ଚରେ ବସି ଏଣୁ ତେଣୁ ଟିକେ ଗପି ଫେରି ଆସୁଥିଲୁ ହଷ୍ଟେଲ୍ ଗେଟ୍ ବନ୍ଦ ହବା ଆଗରୁ । ତା'ପରେ କିନ୍ତୁ କାର୍ଯ୍ୟକ୍ରମ ବଦଳିଲା । ଟିକେ ପୁରୁଣା ହବାରୁ ହଷ୍ଟେଲ୍‌ରେ ପ୍ରତିପତ୍ତି ବଢିଲା ଓ ହଷ୍ଟେଲ୍ ଗେଟ୍ ଆମ ଇଚ୍ଛା ଅନୁସାରେ ଖୋଲିଲା । ରାତିରେ ଯେତେବେଳେ ଫେରିଲେ ବି ଚିନ୍ତା ନଥିଲା । ଗେଟ୍ ପାଖରେ ଶୋଉଥିବା ପିଅନକୁ କେବେ କେମିତି ଦି'ଟା ବିଡି ଧରେଇଦେଲେ କାମ ଶେଷ୍ ।

ଗୌହାଟୀ-ତ୍ରିଭେନ୍ଦ୍ରମ୍ ଅପ୍ କଟକରେ ପହଞ୍ଚୁଥିଲା ସାଢେ ବାରରେ; ତିରୁପତି-ହାଓ୍ୱାଡା ଗୋଟେ ପଇଁଚାଳିଶ୍ । ଆଉ କିଏ କେବେ ! କେତେବେଳେ !! ଟ୍ରେନ୍ ପହଞ୍ଚିବା ମାତ୍ରେ ଷ୍ଟେସନ୍‌ଟା ଚେଇଁ ଉଠେ । କୋଳାହଳରେ ଭରିଯାଏ । ଚା'ବାଲାମାନେ କେଟଲ୍ ଧରି ଧାଇଁ ଯାଆନ୍ତି-ଚାଏ-ଚାଏ ଚିତ୍‌କାର କରି । ଶୋଇ ପଡିଥିବା ପାନ ଦୋକାନୀମାନେ ଉଠିପଡି 'ପାନ୍ ବିଡି ପାନ୍ ବିଡି' ବିଳିବିଳେଇ ଉଠନ୍ତି ନିଦୁଆ କଣ୍ଠରେ ।

ପ୍ରବୀରଦା' ସିମେଣ୍ଟ ବେଞ୍ଚରୁ ମୋ' ପାଖରୁ ଉଠିଯାଇ ଗୋଟେ ପରେ ଗୋଟେ ଝର୍କା ପାଖରେ ନଇଁପଡି ଭିତରକୁ ଉଙ୍କିମାରେ । ସେଠୁ ଫେରି ଅଧିକାଂଶ ଦିନ ମୋତେ କୁହେ- ଭାଇ ! ଯେମିତି ମାଲ୍‌ଟେ ହୋଇଥିଲା ନା... ଆଃ କ'ଣ କହୁଚୁ ! ଶଳା ଗୋଟେ ବୁଢା- ତା' ବୋପା ହବକି କ'ଣ ତା' ପାଖରେ ଚେଇଁକି ବସିଥିଲା; ନହେଲେ ଦେଖିଥା'ନ୍ତୁ... ଓଃ... !! ପ୍ରବୀର୍‌ଦା' କିନ୍ତୁ କେବେ କିଛି କରିପାରିବାର ମୋର ମନେ ନାହିଁ । ସେମିତି ଖାଲି ଦେଖେ ଓ ଦେଖି ଦେଖି ସନ୍ତୁଷ୍ଟ ହବାକୁ ବାଧ୍ୟ ହୁଏ ଓ ମୋ' ପାଖରେ ଆସି ଗପେ ।

ଗୌହାଟୀ-ତ୍ରିଭେନ୍ଦ୍ରମ୍ ଅପେକ୍ଷା ପୁରୀ-ନୂଆଦିଲ୍ଲୀ ନୀଳାଚଳରେ ବେଶୀ ଓ ଭଲ ମାଲ୍ ଥାଆନ୍ତି । ପ୍ରବୀର୍‌ଦା' କୁହେ; ମୁଁ ଦିନେ ବି ଦେଖି ପାରିନି ବା ଦେଖିଲେ ବି ତା'ର କ୍ୱାଲିଟେଟିଭ୍ ଓ କ୍ୱାଣ୍ଟିଟେଟିଭ୍ ଡିଫରେନ୍‌ସ୍‌ଟାକୁ ଅନୁଭବ କରିପାରିନଥିବି ବୋଧେ ।

ଏମିତି ସବୁଦିନେ ରାତିରେ ମାଲ୍ ଖାଇସାରି ଷ୍ଟେସନ୍‌କୁ ବୁଲିଯିବା ଭିତରେ ସେଠି ଆମର ଦି'ଜଣଙ୍କ ସହିତ ଭଲ ଚିହ୍ନା ପରିଚୟ ଓ ଭାବ ଦୋସ୍ତି ହୋଇ ପାରିଥିଲା । ଜଣେ ଥିଲା- ଷ୍ଟେସନ୍‌ରେ ରାତି ଡିଉଟି କରୁଥିବା କନେଷ୍ଟବଳ ମୁରାରୀ ସାରେନ୍ । ଆଉ ଠେଲା ଚା' ଦୋକାନ୍‌ବାଲା ନବ । ନବଘନ ବେହେରା ।

ମୁରାରୀ ସୋରେନ୍ ନୂଆ ନୂଆ ବାହା ହୋଇଥାଏ । ସରକାରୀ କ୍ୱାଟର୍ ମିଳି ନଥିବାରୁ ରହୁଥିଲା ଯୋବ୍ରା ଦୁର୍ଗା ଛକ ପାଖରେ କୋଉଠି ଗୋଟେ ଭଡା ଘରେ । ତା' ନିଜ ଗାଁ କିନ୍ତୁ ମୟୂରଭଞ୍ଜରେ । କରଞ୍ଜିଆ ପାଖ ଠାକୁରମୁଣ୍ଡା ନିକଟରେ ମଫସଲ ଗାଁଟି । ମୋ' ବାପା କିଛି ବର୍ଷ ପାଇଁ ବାରିପଦାରେ ରହିଥିବାରୁ ରାଇରଙ୍ଗପୁର, ଉଦଳା, କପ୍ତିପଦା ଇତ୍ୟାଦି ନାଁ ଗୁଡିକୁ ଶୁଣିଥିଲି ବାରିପଦାରେ ତାଙ୍କ ପାଖରେ ରହିଥିବା ବେଳେ ଓ ଦିନେ ଏମିତି ଚିହ୍ନା ପରିଚୟର ପ୍ରାଥମିକ କଥାବାର୍ତ୍ତାବେଳେ ମୁରାରୀ ସୋରେନ୍‌ର ଘର ଠାକୁରମୁଣ୍ଡା ପାଖରେ ଶୁଣି ସେଗୁଡିକୁ ମନେ ପକେଇ କହିପାରିଥିଲି । କହିଥିଲି ବି କରଞ୍ଜିଆର ଦୋଳଯାତ୍ରା ଓ ଠାକୁରମୁଣ୍ଡାର ଉଡାଯାତ୍ରା କଥା । ସେଇ ସୂତ୍ରେ ତା' ସହ ଆମର ଗୋଟେ ଭଲ ସମ୍ପର୍କ ଗଢି ଉଠିଲା । କଟକ ଷ୍ଟେସନ୍‌ର ସିମେଣ୍ଟ ବେଞ୍ଚରେ ବସି ସୋରେନ୍ ପରମ ଉତ୍ସାହର ସହ କହୁଥିଲା- ଠାକୁରମୁଣ୍ଡାର କୋଉ ମଫସଲ ଗାଁର ତା' କୁଡିଆଘର କଥା; ତା' ବାପା ମାଆ ଆଉ ପାହାଡ କଡର ଧାନବିଲ; ମହୁଲ ଓ ଭାଲୁ; ସାପ, ହାତୀ, ବାଘ କଥା । ଜହ୍ନରାତିରେ କୁରେଇ ଫୁଲର ବାସ୍ନା । ମୂଳରୁ ସହରରେ ବଢି ଆସିଥିବା ପ୍ରବୀରଦା' ତା' କଥା ଆଁ କରି ପିଇ ଯାଉଥିଲା ।

ଆମେ ଷ୍ଟେସନ୍‌ରେ ଚା' ପିଇବୁ ତ ନବ ପାଖରୁ । ନବଘନ ବେହେରା । ଚା' ପିଉ ପିଉ କଥାବାର୍ତ୍ତା ଚାଲେ । ନବ କୁହେ ସିଏ ବି ପଢିଚି ଚତୁର୍ଥ ଯାଏ । ଏ, ବି, ସି ଶିଖୁଥିଲା ଆଉ ପଢି ପାରିଲାନି ଯଦିଓ ଇଚ୍ଛା ଥିଲା ଗୁଡାଏ ପଢିବାକୁ । ବେବସାୟରେ ବା'କୁ ସାହାଯ୍ୟ କରିବାକୁ ସେ ପାଠ ଛାଡିବାକୁ ବାଧ୍ୟ ହେଲା; ପାଠ ବଦଳରେ ଆଞ୍ଚ ଭିତରେ କୋଇଲା ପୂରେଇଲା, ଚା' ଗ୍ଲାସ୍ ଧୋଇଲା । ଏସବୁ ଗୁଡାଏ ଦିନ ତଳର କଥା । ଏବେ ସେ ଏକା ବେପାର ସମ୍ଭାଳିଚି । ବା'କୁ ଟି.ବି. ହେଇଚି ଯେ ସେ କାମକୁ ଆଉ ମୋଟେ ତ ପାରୁନି; ତା' ପିଛା ପାଣି ପରି ପଇସା ଖର୍ଚ୍ଚ ହଉଚି ବି ଔଷଧ ପଥିରେ । ତା'ଛଡା ଘରେ ମାଆ ଆଉ ଗୋଟେ ଭଉଣୀ, ଆଉ କେହି ନାହାନ୍ତି । ସାନ ଭାଇଟେ ଥାଆନ୍ତା ଯେ ଏବେ ଦଶ ଏଗାର ବର୍ଷର ହୋଇ; ଜନ୍ମ ହବା ଆଗରୁ ସେ ମରି ଯାଇଥିଲା ।

ନବ ଖୁବ୍ ମନ କଷ୍ଟ କରେ ଆମ ପାଖରେ ଯେ ସେ କିଛି ସଞ୍ଚିକି ରଖି ପାରୁନି । ତା'ର ଇଚ୍ଛା ଥିଲା ଗୋଟେ ଛୋଟକାଟର ଜଳଖିଆ ଦୋକାନ କରିବାକୁ । କିନ୍ତୁ ପାରୁନି । ବା' ପଛରେ ତ ଅପର୍ଯ୍ୟାପ୍ତ ଟଙ୍କା ଯାଉଚି; ପୁଣି ମୁଣ୍ଡ ଉପରେ ଭଉଣୀର ବାହାଘର ଅଛି । ସେ କହେ ଓ ମୁଁ ବି ଆଶ୍ଚର୍ଯ୍ୟ ହୁଏ- ଏଇ ଛୋଟ ଚା' ଦୋକାନରୁ ତା'ର ଯେତେ ଲାଭ ହଉଥିବ- ଚାରିଟା ମଣିଷଙ୍କୁ ଚଳେଇବାକୁତ ଏକଦମ୍ ମୁସ୍କିଲ୍ ହେଇଯାଉଥିବ । ସେ ପୁଣି କେତେ ବଳେଇକି ରଖିପାରିବ- ଭଉଣୀର ବାହାଘର ପାଇଁ; ନିଜ ଭବିଷ୍ୟତ ପାଇଁ ।

ଭୋର୍ ହବା ଆଗରୁ ହିଁ ସୋରେନ୍ ଘରକୁ ପଳଉଥିଲା । ଡିଉଟି ସାରି । ନବର କିନ୍ତୁ ଟିକେ ଡେରି ହଉଥିଲା ସବୁଦିନ । ଗୋଟେ ସିମେଣ୍ଟ ବେଞ୍ଚରେ ଢୋଳେଇ ଢୋଳେଇ ସେ ବସିରହୁଥିଲା ତା' ମାଆ ଘରୁ ଆସିବା ପର୍ଯ୍ୟନ୍ତ । ତା'ପରେ ଯାଇ ଘରକୁ ଯାଉଥିଲା । ତା' ମାଆ କେଟଲ୍ ଆଉ ଗ୍ଲାସ୍ ଇତ୍ୟାଦିକୁ ଧୁଆଧୋଇ କରି ରଖୁଥିଲା । ଆମେ କେବେ ସକାଳୁ ସକାଳୁ ଷ୍ଟେସନ୍‌କୁ ଗଲେ ତା' ସହ ଦେଖା ହଉଥିଲା । କଲେଜ୍ ପଢୁଆ ପିଲା ଓ ତା' ପୁଅର ପରିଚିତ ହିସାବରେ ସେ ଆମକୁ ଖୁବ୍ ଆଦର କରୁଥିଲା । ସ୍ନେହ କରୁଥିଲା । କେବେ କେବେ ଆଉ ଥରେ ଚା' ତିଆରି କରି ପିଆଉଥିଲା ଆମକୁ । ଗପୁଥିଲା ତା' ଘର କଥା । ବସ୍ତିରେ କେମିତି ପାଇପ୍

ପାଖରେ ଲମ୍ୱା ଧାଡି ଲାଗିଯାଉଚି ସକାଳୁ କି ତା' ଝିଅ ପାଇଁ କାଲି କୋଉଠୁ ଦେଖିବାକୁ ଆସିଥିବା ପିଲାଟା କେମିତିକା; କେତେ ଯୌତୁକ ଦାବି କରୁଥିଲା କିମ୍ୱା ନବ କେମିତି ବାହା ହବାକୁ ଏବେ ମଙ୍ଗୁନି ମୋଟେ, ଯଦିଓ ଗୁଡାଏ ଭଲ ପ୍ରସ୍ତାବ ଆସୁଚି ଇତ୍ୟାଦି ଇତ୍ୟାଦି ।

ଭଲକି ଚିହ୍ନା ପରିଚୟ ହବା ପରେ ସେ ଆମକୁ ପୁଅ ବୋଲି କହୁଥିଲା । ଆମେ ବି ଧୀରେ ଧୀରେ ତାକୁ ମାଉସୀ ଡାକିବା ଆରମ୍ଭ କରିଦେଇଥିଲୁ । ମାଉସୀ ମୋତେ କୁହେ ତା' ବଡ ବାପା ପୁଅ ଭାଇଙ୍କ ଘର 'ଆମ' ଯାଜପୁର ରୋଡ୍ ପାଖ ଗୋଟେ କୋଉ ଗାଁରେ । ବଡ ଝିଅର ବାହାଘର ବେଳେ ନିଜେ ଭାଇ ଏଇ କଟକରୁ ଜିନିଷ ପତ୍ର କିଣାକିଣି କରିବାକୁ ଆସି କହି ଯାଇଥିଲେ ଯିବାକୁ । କିନ୍ତୁ ସେ ଯାଇ ପାରିଲାନି- ନବର ବାପା ଦେହ ଖରାପ ଥିଲା ବୋଲି । ନବ ହାତରେ ଗୋଟେ ଶାଢି ପଠେଇ ଦେଇଥିଲା ଖାଲି ତାଙ୍କ ଘରକୁ ବେଭାର ।

ନବ ବାପାର ରୋଗ ଆଉ ମୁଣ୍ଡ ଉପରେ ଥିବା ଝିଅ ବାହାଘରର ଚିନ୍ତା କଥା ବୟାନ୍ କରୁକରୁ ମାଉସୀର ଆଖି ଛଳଛଳ ହୋଇଯାଏ । ମୋଟା ମୋଟି ଭାବରେ କହିବାକୁ ଗଲେ ମାଉସୀ ଖୁବ୍ ଭଲ ଲାଗୁଥିଲା ଆମକୁ । ଖୁବ୍ ସ୍ନେହୀ ଥିଲା ତ ।

କନେଷ୍ଟବଳ ସୋରେନ୍ ବି ଆମକୁ ଶୁଣଉଥିଲା ତା' ଚାକିରି ଜୀବନର ଅନେକ 'ରୋମାଞ୍ଚକର' ଘଟଣା । କୋଉ ଦିନ ସେ କେମିତି ଗୋଟେ ପକ୍କା ପକେଟମାରୁକୁ ଧରିଥିଲା । କେମିତି ଥରେ କେହି ଜଣେ ଛାଡି ଯାଇଥିବା ସୁଟ୍‌କେଶ ଭିତରୁ ଗୋଟେ କଟାମୁଣ୍ଡ ଓ ରକ୍ତମଖା ଫାର୍ଶା ବାହାରିଥିଲା କିନ୍ତୁ ଲୋକଟା ଧରା ପଡିନଥିଲା; ଷ୍ଟେସନ୍‌ରେ ଠିଆ ହୋଇଥିବା ମାଲ୍‌ଗାଡିରୁ କୋଇଲା ଚୋରି କରୁଥିବା ଲୋକଙ୍କୁ ଧରିବା ବେଳେ ସେ କେମିତି ଅଧିକାଂଶ ଥର ସଫଳ ହୋଇଛି ଓ ଥରେ ଗୋଟେ ଚୋର ତାକୁ ଲକ୍ଷ କରି ଗୋଟେ ବଡ କୋଇଲା ମୁଣ୍ଡା ଫିଙ୍ଗିଥିଲା ଯେ ତା' ମୁଣ୍ଡରେ ଚାରି ଆଙ୍ଗୁଳି ଲମ୍ୱର ଗୋଟେ ଗାତ ହେଇଯାଇଥିଲା । ମୁଣ୍ଡରୁ ଟୋପି କାଢି ବାଳ ଆଡେଇ ସେ ଚିହ୍ନଟାକୁ ସୋରେନ୍ ଦେଖାଏ ଆମକୁ ।

ଏମିତି ଦିନେ ରାତିରେ କଥାବାର୍ତ୍ତା ଚାଲିଥିବା ବେଳେ ସୋରେନ୍ ଆମକୁ କହୁଥିଲା- ଥରେ କେମିତି ଗୋଟେ ବଙ୍ଗାଳୀ ଦଲାଲ୍ ହାଓଡା ଏକ୍ସପ୍ରେସ୍‌ରେ ଛଅଟା ଆଦିବାସୀ ଝିଅଙ୍କୁ କଲିକତା ନେଇଯାଉଥିବା ବେଳେ ଏଇଠି ଧରାପଡିଥିଲା । ମୁଁ ଟିକେ ସେ ବିଷୟରେ ଅନ୍‌ପଢ଼୍ ଥିଲି ତ ତେଣୁ ପଚାରିଲି- ଝିଅଗୁଡାଙ୍କୁ କାଇଁ ନେଇଯାଉଥିଲା !

ସୋରେନ୍ ହସିଲା ପୋଲିସିଆ ଓଠ ଚାପା ହସ; ପ୍ରବୀରଦା' କିନ୍ତୁ ହସିଲା ହୋ-ହୋଇ ମୋ' ବୋକାମୀ ଦେଖି ।

:ବିକ୍ରୀ କରିଦବାକୁ । ସୋରେନ୍ କହିଲା ।

ବିକ୍ରୀ କରିଦେବାକୁ !!! ମୁଁ ଆଶ୍ଚର୍ଯ୍ୟ ହେଲି । ଝିଅଗୁଡାକ ଶାଗ ନା ମାଛ ଭଳି ହେଇଚନ୍ତି ଯେ ସେମାନଙ୍କୁ ବିକି ଦିଆଯିବ କଲିକତାରେ !

କ୍ରୀତଦାସ ! ହୋଇପାରେ । କିନ୍ତୁ ସେ ପ୍ରଥା ତ ଉଠିଗଲାଣି କେବେଠାରୁ । ତେବେ ... ହଁ ମାଂସ ପାଇଁ ନିଆ ଯାଉଥାଇପାରେ । ମୁଁ ଶୁଣିଥିଲି ପିଲାଦିନେ ଗୋଟେ କଥା; ସତ କି ମିଛ କେଜାଣି- ଯଦିଓ ଜାଣିନଥିଲି ବିଶ୍ୱାସ କରିଥିଲି ନିଶ୍ଚୟ । ପିଲାଦିନର ସବୁ ଆଶ୍ଚର୍ଯ୍ୟ ରୋମାଞ୍ଚକର ଘଟଣା ଘଟେ କଲିକତାରେ ଓ ଏ ଘଟଣାର ପୃଷ୍ଠଭୂମି ବି ସେଇ କଲିକତା । କଲିକତାର ଗୋଟିଏ ହୋଟେଲ୍‌ରେ ସବୁଦିନେ ପ୍ରବଳ ଭିଡ ହୁଏ ।

ସକାଳୁ ରାତି ଅଧଯାଏ ଲମ୍ବା ଧାଡି ଲାଗିଥାଏ; କାରଣଟି ହେଲା ସେଠି ଖୁବ୍ ସୁସ୍ୱାଦୁ ମାଂସ ଚପ୍ ମିଳେ । ସେ ଚପ୍ ସାରା କଲିକତାରେ ଜଣାଶୁଣା ଏମିତିକି ବମ୍ବେ ଦିଲ୍ଲୀ ବି ଯାଏ ସେ ଚପ୍ ! ତେଣୁ ହୋଟେଲର ପ୍ରଚୁର ଲାଭ ହୁଏ ଓ ଅନ୍ୟ ହୋଟେଲମାନଙ୍କର ବ୍ୟବସାୟ ମାନ୍ଦା ପଡିଗଲା । କାରଣ ସେମାନେ ଯେତେ ଚେଷ୍ଟା କଲେ ବି ସେମିତି ସୁଆଦିଆ ଚପ୍ ତିଆରି କରିପାରୁନଥିଲେ । ସେମାନଙ୍କର ଅନେକ ଅନେକ ଅନୁରୋଧ ପରେ ବି ଉକ୍ତ ହୋଟେଲ୍‌ବାଲା ମୋଟେ ଜଣେଇଲାନି ତା' ଚପ୍ ତିଆରିର କୌଶଳ ବା ସେଥିରେ ପଡୁଥିବା ମାଂସ, ବେସନ ବା ସେମିତି ମସଲା ଇତ୍ୟାଦିର ଭାଗମାପ ସମ୍ପର୍କରେ । ଏମିତି ଗୁଡାଏ ଦିନ ବିତିଗଲା ।

ଥରେ ଜଣେ ସି.ଆଇ.ଡି. ଅଫିସର ସେ ଦୋକାନର ଚପ୍ ଖାଉ ଖାଉ ତା' ଭିତରୁ ଗୋଟାଏ ନଖ ବାହାରିଲା । ମଣିଷର ନଖ ! ତାଙ୍କ ମନରେ ସନ୍ଦେହ ହେଲା । ସେ ଅନୁସନ୍ଧାନ କରିବାକୁ ଠିକ୍ କଲେ । ପୂରା ଦି'ବର୍ଷକାଳ ଚାକର ରୂପେ ରହି ସେ ମାଲିକର ବିଶ୍ୱାସ ଭାଜନ ହୋଇପାରିଲେ ଓ ଦିନେ ହୋଟେଲ ତଳେ ଥିବା ଅଣ୍ଡରଗ୍ରାଉଣ୍ଡର ସନ୍ଧାନ ପାଇଗଲେ, ଯୋଉଠି ସେ ଦେଖିଲେ ପାହାଡ ପ୍ରମାଣର ମଣିଷ ହାଡ ଖପୁରୀ ପଡିଚି ଓ ଗୋଟାଏ ପାଖରେ ଗାଈ ଗୋରୁଙ୍କ ଭଳି ଶହ ଶହ କଙ୍କାଳ ସାର ପିଲା ବନ୍ଧା ହୋଇ ଭୋକ ଉପାସରେ ପଡିଚନ୍ତି । ତା'ପରେ ସେ ହୋଟେଲ୍‌କୁ ପୋଲିସ୍ ଘେରାଉ କରିବା ଓ ଗୁଳିଗୋଳା ଆଦାନ ପ୍ରଦାନ ହବା ଇତ୍ୟାଦି-ଇତ୍ୟାଦିରେ ସେ କାହାଣୀ ଶେଷ ହଉଥିଲା । କିଏ କହିଥିଲା ଏକଥା ! ଯିଏବା କହିଥିଲା ତାକୁ ଆଉ କିଏ କହିଥିଲା ! କିଛି ମନେ ନାଇଁ ଠିକ୍ ଭାବେ । ସେ ଯାହାହେଉ ତା'ପରେ ପରେ ଲମ୍ବା ଦାଢିବାଲା ଲୋକ ଓ ବଡ ବଡ ଥଳୀ ଧରିଥିବା ଅଚିହ୍ନା ଲୋକଙ୍କ ପ୍ରତି ମୋର କେମିତି ଗୋଟେ ଭୟ ଆସିଯାଇଥିଲା । କିଏ ଜାଣେ ପିଲା ଚୋର ହୋଇଥାଇପାରେ !

ଯୁବତୀ ଝିଅମାନଙ୍କ ଦେହ ତ ଖୁବ୍ କୋମଳ ଓ ସୁନ୍ଦର, ଅତଏବ ତାଙ୍କ ମାଂସ ବି ଅପେକ୍ଷାକୃତ ନରମ ଓ ସୁସ୍ୱାଦୁଯୁକ୍ତ ହୋଇଥିବ; ତେଣୁ ସେମାନଙ୍କୁ ସେଇ ମାଂସ ଉଦ୍ଦେଶ୍ୟରେ କଲିକତା ନିଆଯାଉ ନଥିଲା ତ !!

ଆରେ ବୋକା ! ସେମାନଙ୍କୁ କୋଠୀରେ ବିକ୍ରୀ କରିଦିଆ ଯାଇଥା'ନ୍ତା । ବେଶ୍ୟା କୁହାଯାଇଥା'ନ୍ତା ସେମାନଙ୍କୁ । ସେମାନେ ଦେହ ବିକି ଯୋଉ ପଇସା ରୋଜଗାର କରିବେ ତାକୁ କୋଠୀ ମାଲିକ ମାନେ ପାଇବେ । ବୁଝୁନୁ... ପ୍ରବୀରଦା' ବୁଝେଇଥିଲା ମୋତେ । ଦେହ ବ୍ୟବସାୟ ବା ବେଶ୍ୟା ଇତ୍ୟାଦି କଥା ମୁଁ ସେତେବେଳକୁ ଜାଣିନଥିଲି ସେମିତି ନୁହଁ, ତଥାପି ଏଇ ଓଡିଶାର ସରଳ ସାଧାରଣ ଆଦିବାସୀ ଝିଅମାନେ ବି ବେଶ୍ୟା ପାଲଟି ଯାଇପାରନ୍ତି ଏମିତି ଉପାୟରେ, ସେ ଧାରଣା ମୋର ନଥିଲା ।

ଫିଲ୍ମରେ ଦେଖିଥିଲି ହୋଟେଲ ଡାଇନିଂ ରୁମ୍‌ରେ ଥିବା ଷ୍ଟେଜ୍ ଉପରେ ଖୋଲା ଛାତି ଆଉ ନାଭି ଦେଖେଇ ନାଚୁଥିବା ସୁନ୍ଦରୀ ଝିଅମାନଙ୍କୁ । ଧାରଣା ଥିଲା, ସେଇମାନେ ଯୋଉ ଭୂମିକାରେ ଅଭିନୟ କରୁଚନ୍ତି ସେଇଟାହିଁ ବେଶ୍ୟା ଚରିତ୍ର । ବେଶ୍ୟାମାନେ ସୁନ୍ଦରୀ ଯୁବତୀ । ଚକ୍‌ଚକ୍ ପୋଷାକ ପିନ୍ଧିଥା'ନ୍ତି । ଫାଇଭ୍ ଷ୍ଟାର୍ ହୋଟେଲ୍‌ରେ ରହନ୍ତି, ବିଦେଶୀ ମଦ ପିଅନ୍ତି; ନୃତ୍ୟ ଗୀତ ପ୍ରଭୃତି ଗାନ୍ଧର୍ବ କଳାରେ ସେମାନେ ପାରଙ୍ଗମ...

ପ୍ରବୀର୍‌ଦା' କିନ୍ତୁ ପୁରୁଣା ଲୋକ, ମୌକା ଦେଖି ପଚାରିଦେଲା ସୋରେନ୍‌କୁ ଆଚ୍ଛା ଏଠି ଏଇ ଷ୍ଟେସନରେ ବେଶ୍ୟା ଫେଶ୍ୟା ଅଛନ୍ତି କି ?

ସୋରେନ୍ ଚୁପ୍ ରହିଲା ।

ମୁଁ କିନ୍ତୁ ଚମକି ପଡିଥିଲି- ଏଇ ଷ୍ଟେସନ୍‌ରେ !!

: ଆମ ଟାଟା ଷ୍ଟେସନ୍‌ରେ ତ ଭର୍ତ୍ତି ଥାଆନ୍ତି ସେମାନେ । କଲିକତା କଥା ଛାଡ- ପାଞ୍ଚ ଟଙ୍କା ପକେଇଲେ ଯାହାକୁ ଯେତେ ।

ପ୍ରବୀର୍‌ଦା' କହିଥିଲା ଓ ସୋରେନ୍ ବୋଧେ ତା' ଭଳି ଗୋଟେ ଅଣ- ଓଡିଆର ଫୁଟାଣି ସହି ପାରିଲାନି; ତେଣୁ ବିଡ୍‌ବିଡ୍ ହୋଇ କହି ପକେଇଲା- ଏଠି ନାହାନ୍ତି କିଏ କହିଲା ! ତମ ଟାଟା କଲିକତାରେ ତ ସବୁ ଅଛି ! ଏଠି କିଛି ନାହିଁ... !!

:ଏଠି ଅଛନ୍ତି ! କୋଉଠି ?? ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି ।

ପ୍ରବୀରଦା' କହେ- ଏଇ ଦେହ ବ୍ୟବସାୟ ସାଧାରଣତଃ ଷ୍ଟେସନ୍‌ର ଅନ୍ଧାରୁଆ ଜାଗାମାନଙ୍କରେ ହୁଏ; ନହେଲେ ଷ୍ଟେସନ୍‌କୁ ଲଗାଲଗି ହୋଇ ଗଢିଉଠିଥିବା ଝୁମ୍ପୁଡି ଘର ଭିତରେ । ବେଶ୍ୟାମାନେ ବାହାରକୁ ଆସନ୍ତିନି । ତାଙ୍କର ଦଲାଲ୍‌ମାନେ ଷ୍ଟେସନ୍ ଆଉ ତା' ଆଖ ପାଖ ଅଞ୍ଚଳରେ ବୁଲି ଗରାଖ ପଟାନ୍ତି ଓ ପଇସାପତ୍ର ଚୁକ୍ତି ହୋଇ ସାରିବା ପରେ ତାକୁ ନେଇଯାନ୍ତି ସେଇ ନିର୍ଦ୍ଦିଷ୍ଟ ସ୍ଥାନକୁ- ସେଇ ଅନ୍ଧାରୁଆ ଘରକୋଣ କିମ୍ବା ନୂଆଁଣିଆ ଝୁମ୍ପୁଡି ଭିତରକୁ ଯୋଉଠି ବେଶ୍ୟାମାନେ ଅପେକ୍ଷା କରିଥାନ୍ତି । ଦଲାଲମାନେ ସେ ବାବଦରେ ଭଲ ପର୍‌ସେଣ୍ଟେଜ୍ ପାଇଥାନ୍ତି ।

ବେଶ୍ୟା ଆଉ ଦଲାଲମାନଙ୍କର ପୋଲିସ୍‌କୁ ପ୍ରାଣରେ ଭୟ । ବଡ ବଡ ହୋଟେଲ୍‌ରେ କାମ କରୁଥିବା ବେଶ୍ୟାମାନେ ଅବଶ୍ୟ ପୋଲିସ୍‌କୁ ଲାଞ୍ଚ ଦେଇ ହାତ କରିଥାନ୍ତି । କିନ୍ତୁ ଷ୍ଟେସନ୍‌ର ଏ ବେଶ୍ୟାମାନେ ତା' କରିପାରନ୍ତିନି- ତେଣୁ କେବେ ଧରା ପଡିଲେ ଭିତରକୁ ଯାଆନ୍ତି । ଆଉ ଗୋଟେ 'ଜାଣିବା କଥା' ହେଲା- ଏ ଛୋଟକାଟର ବେଶ୍ୟାମାନଙ୍କର ଦଲାଲ୍‌ମାନେ ବଜାରରେ ମାଛ ବିକିଲା ଭଳି ବଡ ପାଟିରେ ଗରାଖମାନଙ୍କୁ ଡାକନ୍ତିନି; ମୁହଁ ଖୋଲି କିଛି ବି କହନ୍ତିନି । ଅଭିଜ୍ଞତା ଥିବା ଲୋକଇ ଚିହ୍ନିପାରିବ ତାଙ୍କୁ- ଚୁପ୍‌ଚାପ୍ ଥିବେ; ଏକା ଏକା ବୁଲୁଥିବେ । କିଛି ଦରକାର ନଥାଇ ବାରମ୍ବାର ଯିବା ଆସିବା କରୁଥିବେ; ଚୋରଙ୍କ ଭଳି ଏଣେ ତେଣେ କନ୍ କନ୍ ହେଇକି ଅନଉଥିବେ... ଏମିତି କେତେ କ'ଣ ।

ପ୍ରବୀରଦା' ତା' ନିଜ ଅଭିଜ୍ଞତା ବି ଶୁଣାଏ- ଥରେ କଲିକତାରୁ ଟାଟା ଯିବା ବାଟରେ ସେ କେମିତି ଗୋଟେ ବେଶ୍ୟା ସହିତ ପାଖାପାଖି ହୋଇ ଏକା ସିଟ୍‌ରେ ବସିଥିଲା । ଯିଏ ଟ୍ରେନ୍ ଚାଲିଥିବା ସମୟରେ ଗୋଟେ ବୁଢା ସହ ଟଏଲେଟ୍‌ରେ ପଶିଥିଲା ଯେ ପ୍ରାୟ ଅଧଘଣ୍ଟା ପରେ ବାହାରିଥିଲା ସେଠୁ । ଆଉ ଥରେ ହାଓଡା ଷ୍ଟେସନ୍‌ରେ ରାତି ଅଧରେ ଓହ୍ଲେଇ ପରବର୍ତ୍ତୀ ଟ୍ରେନ୍‌କୁ ଅପେକ୍ଷା କରିଥିବା ବେଳେ ତାକୁ କେମିତି ଗୋଟେ ଦଲାଲ୍ ଆସ ଆମ ଘରକୁ ଯିବା-କହି ଗୋଟେ ଝୁମ୍ପୁଡି ଭିତରକୁ ଡାକି ନେଇଥିଲା ଓ ସେଠି ତାକୁ ଗୋଟେ ଚେୟାର୍‌ରେ ବସେଇ ଏଇ ଆସୁଚି କହି ଯାଇଥିଲା ଯେ ଯାଇଥିଲା । କିଛି ସମୟ ପରେ ଗୋଟେ ବେଶ୍ୟା ଆସି ପହଞ୍ଚିଥିଲା । ସେ ବେଶ୍ୟାଟା ତାକୁ କୋମଳ କଥା କହି ଫସେଇବାକୁ ଚେଷ୍ଟା କରିଥିଲା; ତା' ଦେହକୁ ଏକ୍‌ଦମ୍ ଲାଗିକି ବସିଥିଲା; ପୂରା ଲାଗିକି ! ଉପାୟ ପାଞ୍ଚି 'ବାହାରୁ ମୁଁ ଟିକେ ପରିସ୍ରା ଆସୁଚି' କହି ସେଠୁ ଖସି ପାରିଥିଲା ପ୍ରବୀର୍‌ଦା' । ଆହୁରି ଗୋଟେ ଦିଇଟା ଅଭିଜ୍ଞତା ଶୁଣାଏ ପ୍ରବୀର୍‌ଦା'; କହିସାରି ସବଜାନ୍ତାର ମୃଦୁ ହସ ହସେ । ଛାତି ଫୁଲାଏ ।

ମୋ ସ୍ମୃତିରେ ସେମିତି ଚମତ୍କାର ଅଭିଜ୍ଞତାର ଶୂନ୍ୟତା ବିଷୟରେ କହି ମୁଁ ମନ ଦୁଃଖ କରେ ଓ ବେଶ୍ୟା ଦେଖିବାକୁ ମୋର ପ୍ରବଳ ଆକାଂକ୍ଷା ଥିବା କଥା ତାକୁ ଜଣାଏ ।

ପ୍ରବୀର୍‌ଦା' କୁହେ- ହଉ ଚେଷ୍ଟା କରିବା । ଆମ ଟାଟା କଲିକତା ହୋଇଥିଲେ ତ ଯେତେବେଳେ ଚାହିଁବୁ ଦେଖେଇ ଦିଅନ୍ତି । ଏଠି ଟିକେ ଡେରି ହୋଇପାରେ ।

ପ୍ରବୀର୍‌ଦା' ମତେ ପ୍ରତିଶ୍ରୁତି ଦେଲା ଓ ତା'ର ତଥାକଥିତ ପ୍ରଚୁର ପ୍ରତ୍ୟକ୍ଷ ଜ୍ଞାନର ଉପଯୋଗ କରି ଆମର ଅନୁସନ୍ଧାନ ଆରମ୍ଭ ହେଲା । ରାତିରେ ଏଣିକି ନିୟମିତ ଷ୍ଟେସନ୍ ବୁଲି ବାହାରିବାର ପ୍ରମୁଖ ଆକର୍ଷଣ ସେଇଟି ଥିଲା ।

ପ୍ରଥମେ କିଛିଦିନ ପ୍ରବୀରଦା'ର ପ୍ଲାନ ଅନୁସାରେ 'ଦଲାଲ' ମନେ ହେଉଥିବା ଲୋକମାନଙ୍କୁ ଅନୁସରଣ କରାଗଲା । ଦିନେ ଗୋଟେ ଅପେକ୍ଷାକୃତ କମ୍ କୋଳାହଳପୂର୍ଣ୍ଣ ଜାଗାରେ ଦି'ଟା ଲୋକ କ'ଣ ସବୁ ବିଷୟରେ ଯୁକ୍ତିତର୍କ କରୁଥାନ୍ତି ନିମ୍ନ ସ୍ୱରରେ । ଜଣେ ଲୁଙ୍ଗିବାଲା ଆଉ ଜଣେ ସୁଟ୍‌ବାଲା ।

ପ୍ରବୀର୍‌ଦା' ଆଖି ମାରି ଦେଲା । ଫିସ୍‌ଫିସ୍ କରି ମୋ କାନରେ କହିଲା- ଏଇ ଦେଖ୍ ଲୁଙ୍ଗିବାଲା ଲୋକଟା ଦଲାଲ୍ । ଗରାଖ ପଟଉଚି । ପଇସାପତ୍ର ବିଷୟରେ ଯୁକ୍ତି ହଉଚି ।

କିଛି ସମୟ ପରେ ସେ ଲୋକ ଦିଇଟା ଚାଲିବାକୁ ଆରମ୍ଭ କଲେ; ଆମେ ବି ଚୁପ୍‌ଚାପ୍ ତାଙ୍କୁ ଅନୁସରଣ କଲୁ- ଯେମିତି ତାଙ୍କର ସନ୍ଦେହ କିଛି ନହୁଏ । ସେମାନେ ଷ୍ଟେସନ୍ ବାହାରକୁ ଆସିଲେ ।

ତାଙ୍କ ପଛେ ପଛେ ଆମେ ବି ।

କିନ୍ତୁ ଆଉ ବେଶୀ ବାଟ ଆମେ ଆଗେଇ ପାରିନଥିଲୁ କାରଣ ସେ ସୁଟ୍ ପିନ୍ଧା ଲୋକଟା ଗୋଟେ ରିକ୍‌ସାରେ ବସି ପଡିଲା ଓ ଲୁଙ୍ଗିବାଲାଟା ଚାଳକ ସିଟ୍‌ରେ ବସି ଗୋଟେ ବିଡି ଧରେଇ ଦି'ଚୋଟ ଟାଣି ରିକ୍‌ସା ଚଳେଇବାକୁ ଆରମ୍ଭ କଲା ।

ଆମ ପାଖରେ କିନ୍ତୁ ସାଇକେଲ୍ ବା ସେମିତି କିଛି ଯାନ ନଥିବାରୁ ଆଉ ଅନୁସରଣ କରିପାରିଲୁନି । ସେ ରିକ୍‌ସାଟା ଶିଖରପୁର ଆଡକୁ ପଡିଥିବା ରାସ୍ତାରେ କିଛି ବାଟ ଯାଇ ଅନ୍ଧାରରେ ମିଶିଗଲା । ନିରାଶ ହୋଇ ଆମେ ହଷ୍ଟେଲକୁ ଫେରିଲୁ ।

ବାଟରେ ପ୍ରବୀର୍‌ଦା' କହୁଥିଲା- ଏମାନଙ୍କର ନିଶ୍ଚୟ ଗୋଟେ ବଡ ଗ୍ୟାଙ୍ଗ୍ ଅଛି । ନହେଲେ ଗରାଖକୁ ରିକ୍‌ସାରେ ବସେଇକି ନବାର ବ୍ୟବସ୍ଥା ଥାଆନ୍ତା !!

ସେ ଯାହା ହେଉ- ଦଲାଲ୍‌କୁ ଅନୁସରଣ କରି ବେଶ୍ୟା ପାଖରେ ପହଞ୍ଚିବାରେ ଆମେ ସଫଳ ହୋଇ ପାରିଲୁନି । ଯଦିଓ ଚେଷ୍ଟା କରାଯାଇଥିଲା ଖୁବ୍ । କିନ୍ତୁ କେବେ କାହାକୁ ଆମେ ଅନୁସରଣ କରିପାରିଲୁନି ତ କେବେ କରିପାରିଲେବି ଶେଷକୁ ଜାଣିଲୁ ଯେ ସେ ଦଲାଲ୍ ନୁହଁ ।

ପ୍ରବୀର୍‌ଦା' ଖୁବ୍ ଭାବିଚିନ୍ତି ପ୍ରସ୍ତାବ ଦେଲା- ଏବେ ଆମେ ନିଜେ ଯାଇ ଅନୁସନ୍ଧାନ କରିବା ବେଶ୍ୟାବୃତ୍ତି ଚାଲୁଥିବା ସମ୍ଭାବ୍ୟ ସ୍ଥାନମାନଙ୍କରେ ।

ପହିଲେ ସ୍ୱାଭାବିକ ଭାବେ ମୁଁ ଡରୁଥିଲି । କିନ୍ତୁ ମନରେ ପ୍ରବଳ କୌତୂହଳ ଥିଲାକିନା ସେ ଯାହା କହୁ ପଛେ ସବୁଥିରେ ରାଜି ହେଲି । ପ୍ରବୀର୍‌ଦା' କହୁଥିଲା- ଆମ ଆଡେ ଲୋକେ ଶୁଣିଲେ ହସିବେ ଯେ କଲେଜ୍‌ରେ ପଢି ବି ତୁ ବେଶ୍ୟା ଦେଖିନୁ ଆଜି ଯାଏ । କଟକ ଭଳି ଜାଗାରେ ରହି ଏତିକି ଜ୍ଞାନ ନଥିଲେ କି ଲାଭ !! ମୁଁ ବି ବୁଝୁଥିଲି ସେଇ କଥା ।

ସୋରେନ୍ ସହିତ ଆମର ଭଲ ଭାବଦୋସ୍ତି ଥିଲା, ତେଣୁ ନିଜ ଇଚ୍ଛା ଅନୁସାରେ ଆମେ ବୁଲି ପାରୁଥିଲୁ ଷ୍ଟେସନ୍ ଭିତରେ ।

ମୋ' ବଡଭାଇ କଲେଜ୍‌ରେ ପଢୁଥିବାବେଳେ ଗୋଟେ ଚମତ୍କାର ବିଦେଶୀ ପେନ୍‌ସିଲ୍ ଟର୍ଚ୍ଚ କିଣିଥିଲେ ଓ ମୁଁ କଲେଜକୁ ଯିବାପରେ ଉତ୍ତରାଧିକାରୀ ସୂତ୍ରେ ସେଇଟାକୁ ପାଇଥିଲି; ପ୍ରବୀର୍‌ଦା' ପାଖରେ ଥିଲା ସେଇ ଜାପାନୀ ଛୁରୀଟା, ଯୋଉଟାକୁ କଲେଜ୍ ଛାଡିବା ବେଳେ ସେ ମତେ ଦେଇଥିଲା ଉପହାର ସ୍ୱରୂପ ଓ ମୁଁ ଦେଇଥିଲି ତାକୁ ଟର୍ଚ୍ଚଟା । ସେଇ ଦି'ଟା ଜିନିଷ ଧରି ଆମେ ବାହାରି ଯାଉଥିଲୁ ଅଭିଯାନରେ । ପ୍ରବୀର୍‌ଦା' ଆଗରେ ଚାଲୁଥିଲା, ତେଣୁ ଟର୍ଚ୍ଚଟା ତା' ହାତରେ ରହୁଥିଲା । ଛୁରୀଟାକୁ ପକେଟ୍‌ରେ ରଖିବାକୁ ମତେ କହୁଥିଲା, କିନ୍ତୁ ମୁଁ ରଖୁନଥିଲି କାରଣ, ସେଇ ଅନୁସନ୍ଧାନ ସମୟରେ ମୋ' ନିଜ ଅପେକ୍ଷା ପ୍ରବୀର୍‌ଦା' ଉପରେ ମୋର ଯଥେଷ୍ଟ ଆସ୍ଥା ଥିଲା ଓ ଦରକାର ବେଳେ ସେଇ ଛୋଟ ଅସ୍ତ୍ରଟିର ସଫଳ ଇସ୍ତେମାଲ୍ ଯେ ମୋର ସେହି ବନ୍ଧୁଟି ସଫଳ ଭାବେ କରିପାରିବ ଏ ବିଶ୍ୱାସ ବି ଥିଲା ।

ଷ୍ଟେସନ୍‌ରେ ରାତିରେ ଧାଡି ଧାଡି ମାଲ୍‌ଗାଡି ଠିଆ ହୋଇରହିଥାନ୍ତି ଅନ୍ଧାର ଭିତରେ । ଏଣେ ତେଣେ ଅନେକ ଭଙ୍ଗା ଓ ଫାଙ୍କା ବଗି ବି ପଡିଥାଏ । ପ୍ରବୀର୍‌ଦା'ର କଥା ଅନୁସାରେ ଆମେ ପାଦ ଚିପି ଚିପି ଯାଇ ମାଲ୍‌ଗାଡିମାନଙ୍କର ଫାଙ୍କା ଡବା ଭିତରକୁ ଉଙ୍କିମାରୁ । ବନ୍ଦ ଥିବା ବଗିରେ କାନ ଲଗେଇ ଶବ୍ଦ କିଛି ଶୁଣିବାକୁ ଚେଷ୍ଟା କରୁ। କୋଇଲା ଗଦା ତଳକୁ ଟର୍ଚ୍ଚମାରୁ । ସେଥି ପାଇଁ ଅନ୍ଧାର ଭିତରେ କମ୍ କଷ୍ଟ ସହିବାକୁ ପଡେନି । କେବେ କେବେ କୋଉ ଡବାତଳେ ଘୁଷୁରି ଘୁଷୁରି ଯିବାକୁ ପଡୁଥିଲା ତ କେବେ ଡେଇଁକି । ସେଠୁ ଫେରିଲା ବେଳେ ସାଟ୍ ପ୍ୟାଣ୍ଟ୍‌ରେ କୋଇଲା ଗୁଣ୍ଡ ଭର୍ତ୍ତି ।

ତଥାପି ମୁଁ କେବେ ମୋ ଆକାଂକ୍ଷିତ ଦୃଶ୍ୟଟିଏ ଦେଖିପାରିଲିନି; ପ୍ରବୀର୍‌ଦା' ମତେ ଦେଖେଇ ପାରିଲାନି । ମୁଁ ନିରାଶ ହୋଇ ପଡୁଥିଲେ ବି ପ୍ରବୀର୍‌ଦା' ପଛେ ପଛେ ନିଶବ୍ଦରେ ଚାଲୁ ଚାଲୁ ଅନ୍ଧାର ଭିତରେ ମୋର ଶେଷ ପର୍ଯ୍ୟନ୍ତ ଆଶା ଥିଲା- ଏଣେ ତେଣେ ଘୂରି ଘୂରି ଆମ ଟର୍ଚ୍ଚର ଫୋକସ୍ ଦିନେ ପଡିଯିବ ଠିକ୍ ସେଇ ଜାଗାରେ- ଯୋଉଠି ମାତାଲ ଲୋକଟେ ନଇଁ ପଡିଥିବ ଗୋଟେ ଉଲଗ୍ନ ସୁନ୍ଦରୀ ଯୁବତୀ ଉପରେ- 'ବେଶ୍ୟା' !

କିନ୍ତୁ ଗୁଡାଏ ଦିନ, ଗୁଡାଏ ସମୟ ନଷ୍ଟ କରି ଅନ୍ଧାରୁଆ ଗୋଦାମ ଘର କୋଣ, ଟ୍ରେନ୍ ତଳ, ବଗି ଭିତର, କୋଇଲା ଗଦା; ଏମିତି ଟ୍ରେନ୍ ଲାଇନ୍ ମଝିରେ କୋଉଠି କେମିତି ବଢିଯାଇଥିବା ଅନାବନା ଇଟାବୁଦାକୁ ତଲାସ କରିବା ପରେ ବି ଆମେ ହତାଶ ହେଲୁ । ମୁଁ ଦେଖି ପାରିଲିନି ମୋ' ଆକାଂକ୍ଷିତ ଲୋକଟିକୁ ବା ଦୃଶ୍ୟଟିକୁ । ପ୍ରବୀର୍‌ଦା' ଦେଖେଇ ପାରିଲାନି ମତେ । କେବଳ ଥରେ ଗୋଟେ ମାଲ୍‌ଗାଡିର କୋଇଲା ବୋଝେଇ ବଗି ଉପରେ ଆମ ଟର୍ଚ୍ଚ ଆଲୁଅ ପଡିବା ମାତ୍ରେଇ ସେଠୁ କିଏ ଦିଇଟା ଦୁଲ୍‌ଦାଲ୍ ହୋଇ ଡେଇଁ ଧାଇଁ ପଳେଇଲେ ଏତେ ଜୋର୍‌ରେ ଯେ କେବଳ ଦିଟା କଳା କଳା ଛାଇ ବ୍ୟତୀତ ଆଉ କିଛି ଦେଖିପାରିଲୁନି । ଖୁବ୍ ପାଖକୁ ଯିବା ପରେ ଟର୍ଚ୍ଚ ଆଲୁଅରେ କୋଇଲାଗଦା ଉପରେ ଗୋଟେ ମଳିଛିଆ ଗାମୁଛା ଓ ବାଉଁଶ ପାଛିଆଟେ ପଡିଥିବାର ଦେଖିଲୁ ।

ଶଳା କୋଇଲା ଚୋର, ପ୍ରବୀର୍‌ଦା' କହିଲା । ମୋ ଛାତି କିନ୍ତୁ ଧଡ ଧଡ କରୁଥାଏ ସେ ପର୍ଯ୍ୟନ୍ତ ।

ଏବେ ପ୍ରବୀର୍‌ଦା' ଯୋଜନା କଲା- ଷ୍ଟେସନ୍ ପାଖ ଝୁମ୍ପୁଡି ଭର୍ତ୍ତିଥିବା ଅଞ୍ଚଳ ଭିତରକୁ ଆମର କର୍ମକ୍ଷେତ୍ର ସ୍ଥାନାନ୍ତରିତ କରିବାକୁ । ଟିକେ ରିସ୍କ ଖାଲି ଯାହା ନବାକୁ ପଡିବ ସାହସ କରି; ସେଠି ନିଶ୍ଚେ ଆମେ ସଫଳ ହେବା- ତା'ର ଦୃଢ ବିଶ୍ୱାସ ଥିଲା । ରାଜି ହେବା ବ୍ୟତୀତ ମୋର କିଛି ଉପାୟ ନଥିଲା ।

ପ୍ରଥମେ ଆମେ ଦିନେ ସନ୍ଧ୍ୟାବେଳେ ତା'ଭିତରକୁ ଯାଇ ବସ୍ତିର ରାସ୍ତାଘାଟ ପରିଦର୍ଶନ କରି ଓ ମନେ ରଖି ଫେରିଲୁ । ତା'ପରେ ହଷ୍ଟେଲ୍‌ରେ ମିଲ୍ ଖାଇ ନେଇ ଷ୍ଟେସନ୍‌ରେ ଦି'ଟା ଲେଖା ସିଗାରେଟ୍ ଟାଣି ଓ କିଛି ପକେଟ୍‌ରେ ମହଜୁଦ ରଖି ରାତି ପ୍ରାୟ ସାଢେ ଏଗାରଟା ବେଳେ ସେଇ ବସ୍ତି ଭିତରେ ପଶିଲୁ ।

ପାଖରେ ଟର୍ଚ୍ଚ ଥାଏ । ଛୁରୀଟି ବି ଥାଏ । ଜରୁରୀ ପରିସ୍ଥିତି ପାଇଁ ।

ପ୍ରଥମେ ଦି'ତିନିଟା ବୁଲା କୁକୁର ଭୁକି ଉଠିଲେ ଆମ ପାଦ ଶବ୍ଦରେ । ଭୁକି ଭୁକି ମାଡି ଆସିଲେ ବି । ଖୁବ୍ କଷ୍ଟରେ ସେମାନଙ୍କୁ ଶାନ୍ତ କରି କିଛି ବାଟ ଆଗେଇଚୁ କି ନାଇଁ ସେପଟୁ ଗୋଟେ ଲୋକ ଆସୁଥିବାର ଦେଖିଲୁ । ଲୋକଟା କଳା ମଚମଚ ଆଉ ବଳିଷ୍ଠ ଶରୀରବାଲା; ପିନ୍ଧିଥିଲା ଖାଲି ଗୋଟେ ଲୁଙ୍ଗି; ଆମ ପାଖ ଦେଇ ଗଲାବେଳେ ବୁଲିବୁଲି ଅନଉଥାଏ ଆମ ମୁହଁକୁ ।

କିଛି ସମୟ ପରେ ମୋର ମନେ ହେଲା ଆମ ପଛେ ପଛେ କିଏ ଜଣେ ଆସୁଚି; ପାଦ ଶବ୍ଦ ଶୁଭୁଛି ଯେ ! ମୁଁ ପ୍ରବୀର୍‌ଦା' ମୁହଁକୁ ଅନେଇଲି ଓ ତା' ମୁହଁରୁ ବୁଝି ପାରିଲି ଯେ ସେ ବି ସେମିତି କିଛି ଅନୁମାନ କରୁଚି ଏବଂ କିଛି ସମୟ ପରେ ଆମେ ଦି'ଜଣଯାକ ଏକ ସମୟରେ ବୁଝି ପାରିଲୁ ଯେ- ସେଇ କଳା ଭୁଷୁଣ୍ଡା ଲୋକଟା ହିଁ ଆମକୁ ଅନୁସରଣ କରୁଚି ।

ଆମେ ତେଣୁ ଆଉ କୌଣସି ସନ୍ଦେହଜନକ ହାବଭାବ ନଦେଖାଇ ଛକ ଭଳି ଗୋଟେ ଅପେକ୍ଷାକୃତ ପ୍ରଶସ୍ତ ଜାଗାରେ ଠିଆ ହେଲୁ । କିଛି ସମୟ ପରେ ସେ ଲୋକଟାବି ଝାପ୍‌ସା ଝାପ୍‌ସା ଅନ୍ଧାର ଭିତରୁ ଆମ ପଛେ ପଛେ ଆସି ସେଇଠି ପହଞ୍ଚିଲା ଆଉ ଧମକେଇବା ଭଳି ପାଚରିଲା- କୁଆଡ଼େ ଯାଉଚ ?

ଟିକେ ବି ନଡରି; ସାଧାରଣ ଭାବେ ପ୍ରବୀର୍‌ଦା' ପଚାରିଲା- କଲେଜ ଛକକୁ ରାସ୍ତାଟା କହିପାରିବେକି ! ଏଠୁ କୋଉ ବାଟେ ଯିବାକୁ ହବ... ? ଯେମିତି ସେ ଏଇ ଏବେ ଏବେ ଟ୍ରେନ୍‌ରୁ ଓହ୍ଲେଇଥିବା ଜଣେ ନୂଆ ଲୋକ ।

ଆମ ଚାଲ୍ ବୁଝି ପାରିଲା କି କ'ଣ ସେ ଲୋକଟା କଟମଟ କରି ଚାହିଁଲା କିନ୍ତୁ ପରେ ବତେଇ ଦେଲା ରାସ୍ତା-ସିଧା ଏଇ ରାସ୍ତାରେ ଯାଇ ବାଁକୁ ବଙ୍କିବ, ସେଠୁ କିଛି ବାଟ ଗଲା ପରେ ଗୋଟେ ଛକ ପଡିବ; ତା'ର ଡାହାଣପଟ ରାସ୍ତାରେ ଗଲେ- କଲେଜ ଛକ ।

ରାସ୍ତା ବତେଇ ସାରିବା ପରେ ବି ଲୋକଟା ଗଲାନି; ଠିଆ ହେଇକି ରହିଲା ଆମେ ଯିବା ପର୍ଯ୍ୟନ୍ତ । ତା'ପରଠୁ ଆମେ ଆଉ ସେ ବସ୍ତି ଭିତରେ ପଶିବାର ଦୁଃସାହସ କରିପାରିଲୁନି । କଟକରେ ସେତେବେଳେ ସାହି ବସ୍ତିବାଲାଙ୍କ ଭିତରେ ଖୁବ୍ ଏକତା; କୋଉ ବାହାର ଲୋକ ଉପରେ ରାଗ ହେଲେ ଏମିତି ହାଲତ୍ କରିଦେଉଥିଲେ ସମସ୍ତେ ମିଶି ଯେ- ପ୍ରାଣ ଧରି ପଳେଇ ଆସିବାଟା ମୁସ୍‌କିଲ୍ ହୋଇଯାଉଥିଲା ସେଠୁ ।

ପ୍ରବୀର୍‌ଦା'ର ପ୍ଲାନ୍ ସବୁ ଗୋଟେ ପରେ ଗୋଟେ ଫେଲ୍ ମାରିଯାଉଥାଏ । ତା'ଦ୍ୱାରା ଯେ ମୋର ଅଭିଳାଷ ପୂର୍ଣ୍ଣ ହୋଇପାରିବ ମୋର ସେତକ ଆସ୍ଥା ତୁଟିଯିବା ଆରମ୍ଭ କରୁଥାଏ । ପ୍ରବୀର୍‌ଦା' ବି ମନେ ମନେ ଅପମାନିତ ହୋଇଯାଉଥିବାର ମୁଁ ଜାଣି ପାରୁଥାଏ । ସେ ତ ଆଗରୁ ମତେ ନିଜର ବିରାଟ ଅଭିଜ୍ଞତା ଥିବା କଥା ବର୍ଣ୍ଣନା କରିଥିଲା- ଏବେ ତା'ର ଯୋଜନାଗୁଡ଼ିକ କାର୍ଯ୍ୟକାରୀ ହୋଇ ନପାରୁଥିବାରୁ ନିଜ କଥାଗୁଡ଼ିକ ମିଛ ବୋଲି ପ୍ରମାଣିତ ହୋଇଯାଉଛି ବୋଲି ସେ ଅସ୍ୱସ୍ତିବୋଧ କରୁଥାଏ ।

ଶେଷରେ ଦିନେ କନେଷ୍ଟବଳ ସୋରେନ୍ ସହିତ କଥାବାର୍ତ୍ତା ହଉଥିବାବେଳେ ପ୍ରବୀରଦା' ତାକୁ ନିଜ ସମସ୍ୟା ବିଷୟରେ କହିଲା; ସୁଯୋଗ ଦେଖି ମୁଁ ବି ଜଣେଇ ଦେଲି ମୋର ପ୍ରବଳ ଆକାଂକ୍ଷା ।

ଆମ କଥା ଶୁଣି ସୋରେନ୍ ଖୁବ୍ ହସିଲା ।

ତା'ପରେ ମତେ କହିଲା—ଆରେ ବେଶ୍ୟାଗୁଡ଼ିକ କ'ଣ ଦର୍ଶନୀୟ ଚିଜ ହେଇଚନ୍ତି ଯେ ଦେଖିବାକୁ ଯିବ ! କିଛି ବି ଫରକ ନାଇଁ ସାଧାରଣ ମଣିଷ ଆଉ ବେଶ୍ୟା ଭିତରେ । କ'ଣଟା ଦେଖିବାର ଅଛି ଯେ ଏମିତି ହଉଚ !

ମୋର କିନ୍ତୁ ଉତ୍କଣ୍ଠା ଥାଏ ଖୁବ୍ । ଅତଏବ୍, ମୁଁ ଜିଦ୍ ଧରି ବସିଲି । ପ୍ରବୀରଦା' ବି ମୋ' ତରଫରୁ ଅନୁରୋଧ କଲା ।

ସୋରେନ୍ କହିଲା- ତମେ ଦେଖିବ ବୋଲି ଏଠିକି କିଏ ଆସିବ ! ନା ତୁମକୁ ନେଇକି କାହା ପାଖକୁ ମୁଁ ଯାଇପାରିବି ଆଉ ତାକୁ କହିବି- ଆମର ଖାଲି ଟିକେ ଦେଖିବା ଦରକାର... ! ଟଙ୍କା ପାଞ୍ଚ ଦଶ ତ ପଡିବ... ଖାଲି ଦେଖିବ କାଇଁକି...

ସୋରେନ୍ ହସିଲା ମୋ ମୁହଁକୁ ଚାହିଁ । ଅର୍ଥପୂର୍ଣ୍ଣ ହସ । ମୁଁ ଚାହିଁଲି ପ୍ରବୀର୍‌ଦା' ମୁହଁକୁ । ସେ ଯାହା ଫଇସଲା କରିବା କଥା କରିବ ।

ପ୍ରବୀରଦା' ଟିକେ ଚିନ୍ତା କରି କହିଲା- ହଉ ଠିକ୍ ଅଛି ।

: ଠିକ୍ ଅଛି !!! ମୁଁ ଚମକି ପଡିଲି ।

ମତେ ପାଖକୁ ଟାଣି ନେଇ ସେ ଫିସ୍ ଫିସ୍ କରି କହିଲା- ଡରୁଚୁ କାଇଁକିବେ ! ଶଳା ମର୍ଦ୍ଦ ପୁଅ ପରା ! ତୁ ତୋର ଯାହା ଇଚ୍ଛା କରିବୁ । ଇଚ୍ଛା ହବତ- ଖାଲି କଥାବାର୍ତ୍ତା କରିକି ପଳେଇ ଆସିବୁ । ପାଞ୍ଚ ଦଶର ମାମଲାତ... ।

: ତା'ହେଲେ କ'ଣ କରିବା ? ପ୍ରବୀର୍‌ଦା' ପଚାରିଲା ସୋରେନ୍‌କୁ ।

: ଏଇ ଚା'ବାଲା ନବଘନକୁ କହୁନ । ସେ ଠିକ୍ କରିଦବ ଖୁବ୍ ସହଜରେ । ଏଠିକା ଲୋକାଲ୍ ଲୋକକିନା !

ମୁଁ କିନ୍ତୁ ପ୍ରତିବାଦ କଲି- ନାଇଁ ନାଇଁ ନବ ଫବକୁ କହିବାନି କିଛି । କ'ଣ ଭାବିବ ସିଏ ଆମକୁ- ଶଳା କଲେଜରେ ପାଠଶାଠ ପଢ଼ି ଏୟା କରୁଚନ୍ତି ! ସିଏତ ବୁଝିପାରିବନି ଆମର ପ୍ରକୃତରେ ଦରକାର କ'ଣ, ଆମେ ଏମିତି କାଇଁକି କରୁଚୁ ! ତା'ପରେ ମାଉସୀ ବି ଅଛି; ସିଏ ଯଦି ଶୁଣିବ... ନାଇଁ ଆଉ କିଛି କରାଯାଉ...

ସୋରେନ୍ ହସିଲା ମୋ କଥା ଶୁଣି । ମତେ ଖୁବ୍ ଡରୁଆ ବୋଲି ଭାବୁଥିଲା ସିଏ ବୋଧେ । ଭାବୁଥିବ- କାରଣ ସିଏ ତ ମୋର ଭାଷଣ ଦଉଥିବା ଓ ତାଳି ମାଡରେ ପୋତି ହେଇ ପଡୁଥିବା

ଦୃଶ୍ୟ ଦେଖିନଥିଲା । ମୁଁ ଯୋଉ ବଂଶର ବଂଶଧର ସେଇ ବଂଶର ପୂର୍ବ ପୁରୁଷମାନେ କ'ଣ କରିଯାଇଚନ୍ତି !

ଯାହାହେଉ ତା'ପରଦିନ ସୋରେନ୍ ଯୋଉ ସମୟରେ ଆସିବାକୁ କହିଥିଲା ଆମେ ଠିକ୍ ସେତିକିବେଳେ ଷ୍ଟେସନ୍‌ରେ ପହଞ୍ଚିଗଲୁ ।

ଆମକୁ ଗୋଟେ ପାଖରେ ରହିବାକୁ କହି ସେ ଗୋଟେ ବୁଲା କଦଳୀବାଲାକୁ ପାଖକୁ ଡାକିଲା । ମଧ୍ୟବୟସ୍କ ଲୋକଟା । ମୁଁ ଆଗରୁ ତାକୁ କେତେ ଥର ଦେଖିଥିବି କିନ୍ତୁ ତା' ବିଷୟରେ କିଛି ଜାଣିବାର ଆଗ୍ରହ କେବେ ବି ମୋ' ମନକୁ ଆସି ନଥିଲା ।

ସୋରେନ୍ କଦଳୀବାଲାକୁ ଚୁପ୍‌ଚାପ୍ କ'ଣ ସବୁ କହିଲା; ସେ ଆମ ଆଡେ ଚାହିଁ ହସିଲା ଆଉ ମୁଣ୍ଡ ହଲେଇଲା ସବୁ ବୁଝିଗଲା ଭଳି । ତା'ପରେ ଆମ ପାଖକୁ ଆସି ପଚାରିଲା- କ'ଣ ଦି'ଜଣ ଯିବ ?

ପ୍ରବୀର୍‌ଦା' ମତେ ଆଗକୁ ଟିକେ ଠେଲି ଦେଲା- ନା କେବଳ ଇଏ ଯିବ ।

: ହଉ ଆସ । ହଁ ମୋ' ଝୁଡି ରହିଲା; ଟିକେ ଆଖି ପକେଇଥିବ । କଦଳୀବାଲା ମତେ ଓ ସୋରେନ୍‌କୁ କହିଲା ।

: ଏବେ ତ ଟ୍ରେନ୍ ଫ୍ରେନ୍ ନାଇଁ । କହିଲା ସୋରେନ୍ ତାକୁ ଓ ମୋ' ଆଡକୁ ଅନେକ ହସିକି କହିଲା- ଫେରି ଆସିବ ଜଲ୍‌ଦି । ଆଁ... ।

ମୁଁ ମୁଣ୍ଡ ହଲେଇଲି । ହଁ କଲିକି କ'ଣ !

ପ୍ରବୀର୍‌ଦା' ମୋ ପାଖକୁ ଲାଗିଆସି ଫିସ୍ ଫିସ୍ କରି କହିଲା- ବେଷ୍ଟ୍ ଅଫ୍ ଲକ୍ ୟାର୍ ! ଡରିବୁନି ମୋଟେ; ଡରିବାର କ'ଣଟା ଅଛି ଏଠି !

ତା' ସ୍ୱରଟା ଥରି ଉଠୁଥିଲା କାହିଁକି !

କଦଳୀବାଲା ସହିତ ମୁଁ ଷ୍ଟେସନ୍ ବାହାରକୁ ଆସିଲି, ତା'ପରେ ମୁଖ୍ୟ ରାସ୍ତା ଉପରେ କିଛି ବାଟ ଗଲା ପରେ ଆମେ ଆଉ ଗୋଟେ ସରୁ ଗଳିରେ ପଶିଲୁ । ସେ ପର୍ଯ୍ୟନ୍ତ ମୁଁ ଗୋଟେ ଅନ୍ଧାରୁଆ ନିଶାରେ ମସ୍‌ଗୁଲ୍ ଥିଲି । ଦୀର୍ଘଦିନ ଧରି ଆମର ଅସଂଖ୍ୟ ଉଦ୍ୟମର ଶୋଚନୀୟ ବିଫଳତା ପରେ ଗୋଟେ ଉତ୍ତେଜନା ଭିତରେ ଥିଲୁ ଆମେ ସବୁ । ଏବେ କିନ୍ତୁ ଛାତି ଧଡ୍‌ଧଡ୍ କରି ଉଠିଲା ଅସଲ ସମୟ ହାତ ପାଆନ୍ତାକୁ ଆସିବା ବେଳକୁ ! କିଏ ଯଦି ଦେଖି ପକେଇବ ମତେ ଏଇ ଅବସ୍ଥାରେ କ'ଣ ଭାବିବ ! ଯଦି କଲେଜ ପିଲା ବୋଲି ଜାଣି ପାରେ ତେବେ ତ କଲେଜ ସାରା ପ୍ରଚାର ହୋଇଯାଇପାରେ ! ମୁଣ୍ଡ ଉଠେଇ ଚାଲିପାରିବି ତ ମୁଁ ତା'ପରେ ! ଆତ୍ମହତ୍ୟା କରିଦେବିନି !

ପୋଲିସ୍ ଯଦି ଦେଖି ପକାଏ; ଧରି ପକାଏ ତେବେ ତ ଆହୁରି ସାଂଘାତିକ । ଏଠି ତ ସମସ୍ତେ ଜାଣିବେ; ପୁଣି ଖବର କାଗଜରେ ବାହାରିବ କାଲି- ଓଡିଶାର ସ୍ୱନାମଧନ୍ୟ କଲେଜର ଛାତ୍ର ବେଶ୍ୟାଳୟରୁ ଗିରଫ ! ଯିଏ ଅମୁକଙ୍କ ମଧ୍ୟମ ପୁତ୍ର ଓ ସମୁକଙ୍କ ନାତି ବୋଲି ମଧ୍ୟ ଜଣାପଡିଛି । ଏମିତି ଗୁଡାଏ ଏଣୁତେଣୁ ଖରାପ ଚିନ୍ତା ମନକୁ ଆସୁଥାଏ । ମୁଁ ବି ଖୁବ୍ ଚେଷ୍ଟା କରୁଥାଏ ସେଗୁଡାକୁ ମନରୁ କାଢି ଦବାକୁ । କାରଣ ଆସିବା ଆଗରୁ ପ୍ରବୀର୍‌ଦା' ମୋ କାନେ କାନେ କହିଥାଏ- ଯିବାବେଳେ ରାସ୍ତାଘାଟକୁ ମାର୍କ କରିବାକୁ । ମନେ ରଖିବାକୁ । ଫେରିବା ବେଳେ ରାସ୍ତା ଯେମିତି ନଭୁଲେ !

ଏଇନେ ତ ଏଠୁ ଆଉ ଫେରିଯାଇ ହବନି- ଏତେ ବାଟ ଆସିବା ପରେ । ଆସିଲିଣି ମାନେ ଯାହା ହବ ହଉ । ଦେଖାଯାଉ କ'ଣ ହଉଚି- ଗୋଟେ ଅଭିଜ୍ଞତା ତ ରହିଯିବ । ଏଇ ବୟସରେ ପିଲାମାନେ କେତେ କ'ଣ କରି ପକଉଚନ୍ତି- ମୁଁ ତ ଖାଲି ଟିକେ ଦେଖିବି; ବେଶୀରେ ଟିକେ କଥାବାର୍ତ୍ତା କରିକି ଫେରିଆସିବି । ମାତ୍ର ଥରଟିଏ । ଅଧଘଣ୍ଟା ମାତ୍ରର ମାମଲା । ମୁଁ ମନକୁ ଦୃଢ କଲି । ମନ ଦୃଢ ହବା ଭଳି ଭାବନା ଗୁଡିଏ ଭାବିନେଲି ଓ ଆଶ୍ୱସ୍ତ ହବାକୁ ଚେଷ୍ଟା କଲି ।

ସେ ଗଳିରୁ ଆମେ ଏଥି ମଧରେ ଆଉ ଗୋଟେ ଉପଗଳିରେ ପଶି ସାରିଥିଲୁ । ସେଠୁ ଆଉ ଗୋଟେ ଭିତରେ । ଦି'କଡର ନର୍ଦ୍ଦମା ଭିତରୁ ଦୁର୍ଗନ୍ଧ ଆସୁଥାଏ; ରାସ୍ତା ଉପରକୁ କେବେ କେବେ ପାଣି ମାଡି ଆସିଥାଏ । କୋଉଠି କୋଉଠି ଥୁଆ ହୋଇଥାଏ ଚାର୍ଟ ଠେଲାଗାଡି; କୁଲ୍‌ଫି ଓ ଆଇସ୍କ୍ରିମ୍‌ର ଚକଲଗା ବାକ୍ସ । ଆମେ ଚାଲୁଥାଉ ତା' ଭିତରେ ସତର୍କତାର ସହ କଦଳୀବାଲା ଧରିଥିବା ସୋରେନ୍‌ର ଚାରିସେଲିଆ ଟର୍ଚ୍ଚର ଆଲୁଅରେ; ମୋ ପକେଟ ଭିତରେ ସୁରକ୍ଷିତ ଥାଏ ମୋ' ପେନ୍‌ସିଲ ଟର୍ଚ୍ଚ- ଫେରିବାବେଳ ପାଇଁ ।

କଦଳୀବାଲା ଚାଲିଥାଏ ଖୁବ୍ ଅଭ୍ୟସ୍ତ ଭଳି । ମୁଁ ତାକୁ ଅନୁସରଣ କରୁଥାଏ । କିଛି କଥାବାର୍ତ୍ତା ନାଇଁ ।

ଆମେ ଯୋଉ ଅଂଚଳ ଦେଇ ଚାଲୁଥିଲୁ ସେଠି ରାସ୍ତା ଦି'କଡରେ ଖୁନ୍ଦାଖୁନ୍ଦି ହୋଇ ଧାଡି ଧାଡି ଝୁମ୍ପୁଡି । ବାହାରେ ଆଲୁଅ ନାହିଁ କୋଉଠି । ଗୋଟେ ଗୋଟେ ଘର ଭିତର ବି ଅନ୍ଧାର- ଆଉ କୋଉଠି ଭିତରୁ କ୍ଷୀଣ ଆଲୁଅ ଛିଟିକି ଆସୁଥିଲା ଭିତରୁ, ବନ୍ଦ୍ ଥିବା ଟିଣ କି କାଠ ପଟାର ଦରଜାର କଣା ଦେଇ ।

ହଠାତ୍ କଦଳୀବାଲା ଥମ୍‌କି ଅଟକି ଗଲା । ତା' ପଛେ ପଛେ ମୁଁ । ମୁଁ ଚମକି ପଡିଲି- ସାପ !!!

ଦେଢ ଫୁଟ ଖଣ୍ଡେ ଲମ୍ବର ସେ ଜନ୍ତୁଟା ରାସ୍ତା ପାର ହୋଇ ପାଖ ପାଣିନାଳ ଭିତରର ଅନ୍ଧାର ଭିତରେ ହଜି ଯାଉଥିଲା ସେତେବେଳକୁ । ଟର୍ଚ୍ଚ ଆଲୁଅ ପଡି ଚକ୍‌ଚକ୍ କରୁଥିଲା ତା'ଲାଞ୍ଜ ।

:ଡରନି ଦାଦା, ଏଟା ଧଣ୍ଡଟା । କିଛି କରିବନି । କଦଳୀବାଲା ଚାଲିବାକୁ ଆରମ୍ଭ କଲା । ମୋ'ମନରେ କିନ୍ତୁ ଡର ପଶି ଯାଇଥିଲା । ତେଣୁ ଚାଲିବାବେଳେ ପାଦତଳର କାଗଜ, ଶୁଖିଲାପତ୍ର- ସବୁ ଯେମିତି ଗୋଟେ ଗୋଟେ ଜନ୍ତୁ ପାଲଟି ଯାଇ ସଲ ସଲ କରୁଥାନ୍ତି ପାଦକୁ ।

ହଠାତ୍ ଦୂରରେ କୋଉଠି ଦଳେ କୁକୁର ଭୁକି ଉଠିଲେ ବଡ ବିଚିତ୍ର ଭାବେ । ଲହରେଇ ଲହରେଇ କାନ୍ଦିବା ଭଳିଆ । କୁକୁର ପୁଣି ଏମିତି ଭୁକେ !!

କଦଳୀବାଲା ଗୋଟେ ଘର ସାମନାରେ ଅଟକିଯାଇ ମତେ ସେଇଠି ଠିଆ ହବାକୁ କହି ସେ ଅନ୍ଧାର ଘରର ଟିଣ କବାଟ ଉପରେ ଠକ୍ ଠକ୍ କଲା ଓ କିଛି ସମୟ ପରେ କେଁ କରି କବାଟଟା ଅଳ୍ପ ଖୋଲିଗଲା । କଦଳୀବାଲା କିଛି କହିଲା ଓ କିଛି ଉତ୍ତର ମିଳିଲା ସେଠୁ ଏବଂ କବାଟ ବନ୍ଦ ହୋଇଗଲା ଓ କଦଳୀବାଲା ଫେରିଲା ମୋ ପାଖକୁ ।

ଆଉ ଗୋଟେ ଝୁମ୍ପୁଡିର କବାଟରେ ଠକ୍ ଠକ୍ କରିବା ପରେ ମଧ କବାଟ ଫିଟିଲାନି କିନ୍ତୁ ଭିତରୁ କେମିତି ଗୋଟେ ଅନୁନାସିକ କଣ୍ଠରେ କି ଉତ୍ତର ମିଳିଲା ଯେ- କଦଳୀବାଲା ସେଠୁ ବି ଫେରିଲା ।

ଆଉ କିଛି ରାସ୍ତା ଯିବା ପରେ କଦଳୀବାଲା ଆଉ ଗୋଟେ ଟିଣ କବାଟରେ ଶବ୍ଦ କଲା ଓ କିଛି ସମୟ ପରେ କବାଟ ଖୋଲିଗଲା । ଖୋଲିବା ଲୋକ କିନ୍ତୁ ବାହାରକୁ ଆସିଲାନି ।

କିଛି ଆଲୋଚନା ଚାଲିଲା । କିଛିଟା ଯୁକ୍ତିତର୍କ । ଦି'ମିନିଟ୍ ପରେ କଦଳୀବାଲା ମୋ' ପାଖକୁ ଆସି କହିଲା- ନଅଟଙ୍କା ଦିଅ ।

ମୋ' ପାଖରେ ଖୁଚୁରା ନଥିଲା । ତେଣୁ ଦଶ ଟଙ୍କିଆ ନୋଟ୍‌ଟାକୁ ସାର୍ଟ ପକେଟରୁ ବାହାର କରି ତାକୁ ଦେଲି । ଆଉ ଦିଟା ଦଶ ଟଙ୍କିଆ ଥାଏ ମୋ' ପାଖରେ ଫୁଲ୍ ସାର୍ଟରେ ଲମ୍ବା ହାତର ଭାଙ୍ଗ ଭିତରେ ଲୁଚା ହୋଇ । ସେମିତି କରିବାକୁ ପ୍ରବୀର୍‌ଦା' ମତେ କହିଥିଲା । କହିଥିଲା ସେ- ବେଶ୍ୟାମାନେ ବେଶ୍ ଗେହ୍ଲେଇ ହୋଇ କଥାବାର୍ତ୍ତା କରିବେ ଆଉ ତାରି ଭିତରେ ତମ ପକେଟ୍‌ରେ ଏମିତି ଭାବରେ କଳାକନା ବୁଲେଇ ଦେବେ ଯେ ଫେରିବାବେଳେ ବିଡି ଖଣ୍ଡେ ଟାଣିବାକୁ ବି ପକେଟ୍‌ରେ ପଇସା ନଥିବା ।

କଦଳୀବାଲା ଫେରି ଆସିଥାଏ ସେତେବେଳେ ମୋ' ପାଖକୁ । ସେ ମୋତେ କହିଲା- ହଉ ଏବେ ଯାଅ... । ଆଉ ପଇସା ଦବନି ତାକୁ । ଏ ଟଙ୍କାଟା ରଖୁଚି ମୁଁ ପାନଖିଆ...

ପୂର୍ବୋକ୍ତ ସେ ଟିଣ ଦରଜାଟା ଖୋଲା ଥାଏ; ଭିରଟା ପୂରା ଅନ୍ଧାର ଥାଏ । କଦଳୀବାଲା ଟର୍ଚ୍ଚ ମାରି ମତେ ବାଟ ଦେଖେଇ ଦେଲା; ମୁଁ ଭିତରେ ପଶିଗଲା ପରେ କାବଟ ଦେଇଦବାକୁ କହିଲା ଓ ମୁଁ ସେମିତି କଲି ।

କବାଟ ଆଉଜେଇ ଦବା ପରେ ଭିତରଟା ଆହୁରି ଅନ୍ଧାର ହୋଇଗଲା । ମୁଁ ସେଇ ଅନ୍ଧାର ଭିତରେ ଚୁପ୍‌ଚାପ୍ ଠିଆ ହୋଇଥାଏ ।

ଏଠି ଯିଏ ଥିଲା କୁଆଡେ ଗଲା !!

ଏହି ସମୟରେ ଗୋଟାଏ ପାଖରୁ କିଏ ଜଣେ ଖୁଁ ଖୁଁ କାଶିବାର ଶବ୍ଦ ଶୁଭିଲା । କିଏ କାଶୁଚି !! ତା'ପରେ ଡିଆସିଲି ମାରିବାର ଶବ୍ଦ ଓ ଗୋଟେ କାନ୍ଥ ସେପାଖରେ କିଛି ଅସ୍ପଷ୍ଟ ଆଲୁଅର ଛଟା । ତା'ପରେ ସେ ଆଲୁଅ କିଛିଟା ସ୍ପଷ୍ଟ ହେଲା ।

ଡିବି କି କ୍ୟାଣ୍ଡେଲ୍‌ଟେ ଜଳାଗଲା ବୋଧେ । ମୁଁ ଦେଖିଲି ସେଇଥିରେ- ମୁଁ ଅଛି ଗୋଟେ ଛୋଟ କୋଠରୀ ଭିତରେ । ଏଇଟା ବରଂ ଗୋଟେ ଅପେକ୍ଷାକୃତ ବଡ ଘରର ଅଂଶ; ଯାହା ମଝିରେ ଆଉ ଗୋଟେ କାନ୍ଥ ଓ ଦିଟା ବାଉଁଶ ତାଟି ଦିଆଯାଇ ତିନିଟା କୋଠରି ସୃଷ୍ଟି କରାଯାଇଚି । ତିନିଟା କୋଠରି- କାଶିବାର ଶବ୍ଦ ଆସୁଚି ଗୋଟେ କୋଠରିରୁ ଓ ଆଲୁଅ ଜଳୁଚି ଗୋଟେରେ ଓ ମୁଁ ଠିଆ ହେଇଚି- ଅନ୍ୟଟିରେ ।

ତା'ପରେ ଆଉ ଗୋଟେ ଶବ୍ଦ ଶୁଭିଲା । ମୁଁ ଅନୁମାନ କଲି ଟିଣବାକ୍ସ ଖୋଲା ଯିବାର ଶବ୍ଦ । ତା'ପରେ ବନ୍ଦ ହବାର ।

ମୁଁ ଚୁପ୍‌ଚାପ୍ ଠିଆ ହୋଇଥିଲି କାନ୍ଥ ସେପଟୁ ଛିଟିକି ଆସୁଥିବା କ୍ଷୀଣ ଆଲୁଅ ଭିତରେ ।

ଏବେ ଟ୍ରେନ୍ ଆସିବାର ତ ନାହିଁ ।

ହାଇୱେ ଉପରେ ଟ୍ରକ୍ ବି ଯାଉନି !!

କୁକୁରଟେ ଭୁକୁଚି କୋଉଠି; ସେପଟୁ ନିଶ୍ୱାସର ଶବ୍ଦ ଆସୁଚି । କିଏ ଗୋଟେ ଶୋଇଚି ବୋଧେ । ଆଉ ସବୁ ଶୁନ୍‌ଶାନ୍ ।

ଏବେ ମୁଁ ଡରିବା କଥା ନୁହେଁ- ମୁଁ କହୁଥାଏ ନିଜକୁ ବାରମ୍ବାର । କିନ୍ତୁ ଛାତିଟା ଥରି ଉଠୁଥାଏ- ମୁଁ ଅନୁଭବ କରିପାରୁଥିଲି । ତଣ୍ଟି ଅଠା ଅଠା ହେଇଯାଉଥାଏ ।

ସେ ଘରୁ ଚୁଡିର ରୁଣୁଝୁଣୁ ଶବ୍ଦ ଶୁଭିଲା ।

: ସେଠି କାଇଁକି ଠିଆ ହେଇଚ, ଆସୁନ ଏଠିକି ! ଅନ୍ଧାରରେ କ'ଣ କରୁଚ ! କିଏ ଜଣେ କହିଲା, ମୁଁ ଚମକି ପଡିଲି ଓ ସେଇ ଚମକି ପଡିବା ଓ ଶୁଣିବା ଭିତରେ କେବଳ ଏତିକି ଜାଣିପାରିଲି ଯେ- କେହି ଜଣେ ମତେ ଡାକୁଚି ଆର ପାଖକୁ ।

ମୁଁ ନିଜ ଭିତରେ ନଥିଲି । ଯନ୍ତ୍ରଚାଳିତ ପରି ଆଗେଇଗଲି ।

ଦି'କୋଠରି ମଝିରେ ଗୋଟେ କବାଟ ଶୂନ୍ୟରାସ୍ତା ସେଇ ରାସ୍ତା ଦେଇ ଆର ପଟେ ପାଦ ଦେବା ମାତ୍ରେଇ ମୁଁ ଚମକି ପଡିଲି ଆଉଥରେ- ବେଶ୍ୟା !!! ମୋ' ଭିତରେ ଗୋଟେ ଚମକ ଖେଳିଗଲା । ବିଦ୍ୟୁତ୍ କରେଣ୍ଟ୍ ଭଳି ।

ଗୋଟେ ସ୍ତ୍ରୀଲୋକ ଖଟ ଉପରେ ନଇଁପଡି ବିଛଣା ସଜଉଥିଲା ।

ଗୋଟେ ଛୋଟ କୋଠରି, ଗୋଟେ ଖଟ, ଖଟ ଉପରେ ବିଛଣା; ତଳେ ଦି'ତିନିଟା ଭଙ୍ଗାବାକ୍ସ ଓ ଆଉ ସବୁ କ'ଣ ଆବୁରୁ ଜାବୁରୁ ଜିନିଷ; ଘର କୋଣରେ ମାଠିଆ ଓ ଚେପ୍‌ଟା ସିଲ୍‌ଭର ଗ୍ଲାସ୍, ଆଉ କୋଣରେ ମିଞ୍ଜି ମିଞ୍ଜି ଜଳୁଥିବା ଡିବି ଏବଂ ସେଇ ମିଞ୍ଜି ମିଞ୍ଜି ଜଳୁଥିବା ଡିବିର କ୍ଷୀଣ ଆଲୁଅରେ ମତେ ଅସ୍ପଷ୍ଟ ଦିଶୁଥିବା ଖଟ ଉପରେ ବିଛଣା ସଜଉଥିବା ଜଣେ ସ୍ତ୍ରୀଲୋକ ଓ ଡିବିର ଥର ଥର ଶିଖା ସହିତ କାନ୍ଥରେ ନାଚୁଥିବା ତା' ଛାଇ- ମତେ ସବୁ କେମିତି ଭୌତିକ ଭୌତିକ ଲାଗୁଥାଏ । ମୁଁ ଚୁପ୍‌ଚାପ୍ ଠିଆ ହୋଇଥିଲି ଓ କିଛି ସମୟ ବେଶ୍ ବିତିଗଲା । ଦେଖିବି ଦେଖିବି ବୋଲି ଦେଖି ପାରୁନଥିଲି ସେ ସ୍ତ୍ରୀଲୋକଟାକୁ । କାଇଁକି କେଜାଣି ମୋଟେ ଚାହିଁ ପାରୁନଥିଲି ତାକୁ । ଆଖିପତା ଉଠଉ ଉଠଉ ପୁଣି ତଳକୁ କରିନଉଥିଲି ।

ଶେଷକୁ ପଶିବାବେଳେ ତାକୁ ଯେତିକି ଦେଖିଥିଲି ତାକୁ ମନେ ପକେଇ ପକେଇ ତା' ଆକାର ଆକୃତି ବିଷୟରେ ମୋଟାମୋଟି ଗୋଟେ ଧାରଣା କରିବାକୁ ଚେଷ୍ଟା କଲି । ଟିକେ ମୋଟୀ ହୋଇ ସ୍ତ୍ରୀଲୋକଟା । ଦେହର ବର୍ଣ୍ଣ ମୋଟେ ତୋଫା ନୁହଁ । ଗୋଟେ ଶାଢି ପିନ୍ଧିଚି ସାଧାରଣ ଷ୍ଟାଇଲ୍‌ରେ । ଆଉ କିଛି ଜାଣି ହେଲାନି; ମନେ ପକେଇ ହେଲାନି ସେତିକି ଆଲୁଅରେ ।

ଏଇ ତେବେ ବେଶ୍ୟା !!

ଇଏ ବେଶ୍ୟା ନା ବେଶ୍ୟାମାନଙ୍କର ମାଲିକାଣୀ- କୋଠୀର ମୁଖ୍ୟବାଈ ପିଲ୍ମରେ ଯେମିତି ଥାଆନ୍ତି ! ଯେତିକି ଜଣାପଡୁଚି- ଏ ଆକାର ଆକୃତିର ଲୋକଟା କଦାପି ବେଶ୍ୟା ହୋଇନଥିବ । ତେବେ ବେଶ୍ୟାମାନେ କୋଉଠି ଅଛନ୍ତି ! ଆଉ କୋଠରୀରେ !! ଶବ୍ଦ ଶୁଭୁଚି । ମୁଁ ଭାବିପାରୁ ନଥିଲି କେମିତି କଥା ଆରମ୍ଭ କରିବି, କ'ଣ ପଚାରିବି ।

: ଠିଆ ହେଲ କାହିଁକି । ବସୁନ ଏଇ ଖଟରେ । ସିଏ କହିଲା ଓ ମୁଁ ସେ ସ୍ୱର ଶୁଣି ଭୀଷଣ ଭାବେ ଚମକି ପଡି ମୁହଁ ଉଠେଇ ଚାହିଁଲି ତାକୁ ।

ସେ ବିଛଣା ସଜାଡି ସାରି ଠିଆ ହୋଇଥିଲା । ଡିବିରି ଆଲୁଅ ସିଧା ତା' ମୁହଁ ଉପରେ ପଡୁଥିଲା ।

ମାଉସୀ !! ନବଘନର ମାଆ !!!

ମୁଁ ଆକାଶରୁ ଖସି ପଡିଲି । ଛାତି ଭିତରେ କୋଉଠି କ'ଣ ଗୋଟେ ଖସି ପଡିଲା କି କ'ଣ । କଲିଜାରେ ସକ୍ ଲାଗିବା ଭଳି- ଗୋଟେ ପ୍ରଚଣ୍ଡ ଝଟକା ମୋ ଦେହରେ ଖେଳିଗଲା । ଓଃ, ଏମିତି ଆଶ୍ଚର୍ଯ୍ୟଜନକ ପରିସ୍ଥିତିର ସାମ୍ନା କରିବାକୁ ପଡେ ମଣିଷକୁ ! ସ୍ୱପ୍ନ ତ ଦେଖୁନଥିଲି ମୁଁ ! ମୁଁ ଭଲକି ଦେଖିବାକୁ ଚେଷ୍ଟା କଲି । କାଳେ ଇଏ ସିଏ ହୋଇନଥିବ; ଖାଲି ତା' ଭଳି ଦେଖାଯାଉଥିବ ।

ନା, ଇଏ ଠିକ୍ ସେଇ ମାଉସୀ । ନବଘନର ମାଆ; ଯିଏ ପ୍ରବୀରଦା' ଆଉ ମତେ ଚା'ପିଆଏ, ଘର କଥା ବଖାଣେ ଆମ ଆଗରେ । ପୁଅ ବୋଲି ଡାକେ; ଯାହାକୁ ଆମେ ମାଉସୀ ବୋଲି କହୁ । ଠିକ୍ ସେଇ ମାଉସୀ ।

ମାଉସୀ ମତେ ଚିହ୍ନିପାରୁନି ! ଚାଳିଶା ଦୋଷ ଅଛିକି ତା'ର; ବୟସତ ହୋଇଯିବଣି । ଭଲ କଥା । ଭାଗ୍ୟ ଭଲ ମୁଁ ଏପର୍ଯ୍ୟନ୍ତ ବି ତା' ସହ କଥାବାର୍ତ୍ତା କରିନି । ନହେଲେ ସ୍ୱର ବାରି ପାରିଥାନ୍ତା ନିଶ୍ଚେ ।

ଓଃ ଏବେ ମତେ- ମୁଁ ବୋଲି ଜାଣିଥିଲେ କଥା ବାହାରି ନଥାନ୍ତା ତା'ର । ଆଖି ଡୋଳା କପାଳକୁ ଉଠିଯାଇଥାନ୍ତା !

ମୋ' ମୁଣ୍ଡକୁ ଗୋଟେ ବୁଦ୍ଧି ଜୁଟିଗଲା- ସିଏ ମତେ ଚିହ୍ନିବା ଆଗରୁ ମୁଁ ପଳେଇବି କି ଏଠୁ ! ସିଏ ଭାବିବ କିଏ ଗୋଟେ ପାଗଳ ଆସିଥିଲା । ପଳେଇଗଲା ।

ଏହି ସମୟରେ କିଏ ଜଣେ ଠକ୍ ଠକ୍ କଲା କବାଟ ଉପରେ ।

: ଆଉ ଘଣ୍ଟେ ଖଣ୍ଡେ ପରେ ଆସ... । ମାଉସୀ ଚିତ୍କାର କଲା ସେଠି ଥାଇ ।

କେମିତି ଗୋଟେ ଅଲଗା ଅଲଗା ଲାଗିଲା ତା' ସ୍ୱର । ଅଲଗା ଲାଗୁଥିଲା ତା'ର ପୃଥୁଳକାୟ ଶରୀର । ମେଦ ବହୁଳ ଓ ଭାଙ୍ଗ ପଡିଯାଇଥିବା ପେଟ; ଅଧାଅଧି ଉପୁଡି ଯାଇଥିବା ଓ ଧଳା ହୋଇ ଆସୁଥିବା କେଶ; ତା'ପାପୁଲି ଓ ହାତର ନଖ; ଶୁଖିଲା ଗାଲ; କଷି ଯାଇଥିବା ଦାନ୍ତ ଓ ଓଠ ! ସବୁ ଅଲଗା ଲାଗୁଥିଲା । ଏସବୁକୁ ମୁଁ ଆଗରୁ କେବେ ଲକ୍ଷ୍ୟ କରିନଥିଲି; ଲକ୍ଷ୍ୟ କରିପାରିନଥିଲି ।

ମାଉସୀ ତ ମାଉସୀ ଥିଲା । କେବଳ ମାଉସୀ ।

ଏବେ ଏଇ ଝାପ୍‌ସା ଝାପ୍‌ସା ଆଲୁଅରେ ବି ଦେଖି ହେଲା ଏସବୁ !!!

ଆଉ ଘରେ ଥିବା ବେଶ୍ୟାଟି ତା' ସଜବାଜ ହେବା କାମ ସାରି ବା ମାଉସୀର ଡାକରା ପାଇ ଆସିବା ଆଗରୁ ଦୌଡି ପଳେଇବାକୁ ମୁଁ ଯୋଜନା କରୁଥାଏ; ମନେ ମନେ ଠିକ୍ କରୁଥାଏ । ଏହି ସମୟରେ ମାଉସୀ କହିଲା-

: ଆଉ ପୁଅଟି କୁଆଡେ ଗଲେ ! ସାଙ୍ଗ ହେଇକି ଆସିନ କି !

ଦ୍ୱିତୀୟ ଥର ପାଇଁ ମୁଁ ସ୍ତବ୍ଧ ହେଇଗଲି ପ୍ରଚଣ୍ଡ ଭାବେ । ହତବାକ୍ ପାଲଟିଗଲି । ସେଇ କେତେ ମୁହୂର୍ତ୍ତ ପାଇଁ ଯେମିତି ମୋ' ଦେହରେ ରକ୍ତପ୍ରବାହ ବନ୍ଦ ହେଇଗଲା; ହୃତପିଣ୍ଡ ସ୍ପନ୍ଦନ ରୋକି ଗଲାକି !

ମୁଁ ଆଉ ଯେମିତି ସେ ମୁହଁ ନେଇ ଠିଆ ହେଇ ପାରିବିନି ତା' ସାମ୍ନାରେ । ମୋତେ ଲାଗିଲା- ପୃଥିବୀରେ କୋଉଠି ଏମିତି ଜାଗା ନଥିବ ଯୋଉଠି ମୁଁ ମୋ' ମୁହଁ ଲୁଚେଇ ପାରିବି । ଆହୁରି ଶହ ଶହ ଜନ୍ମ ବିତିଗଲେ ବି ଆଉ ମୁଣ୍ଡ ଟେକି ମାଉସୀ ଆଗକୁ ଆସିପାରିବିନି ।

ମାଉସୀ ମତେ ଚିହ୍ନି ପାରିଚି ! ଚିହ୍ନି ସାରିଚି କେତେ ଆଗରୁ ଅଥଚ କିଛି କହୁନି; କିଛି ପଚାରୁନି ! ଆଶ୍ଚର୍ଯ୍ୟ ହଉନି ! ସେ କ'ଣ ଭାବୁଚି ମୁଁ ଏମିତି ବୁଲିବାକୁ ଆସିଚି ତାଙ୍କ ଘରକୁ ! ମୋର ଅନ୍ୟ କିଛି ଅଭିପ୍ରାୟ ନାହିଁ; ନଥିଲା !!

ମୋର ମନେ ପଡିଲା ଦି'ବର୍ଷ ତଳେ କଲେଜ୍ ପିକ୍‌ନିକ୍‌ରେ ଯାଉଥିବା ବେଳେ ଦୁର୍ଘଟଣା ଘଟି ମୃତ୍ୟୁମୁଖରୁ ଅଳ୍ପକେ ବର୍ତ୍ତି ଯାଇଥିଲି; ଗୁଡାଏ ଦିନ ଧରି ମନେ ମନେ ଭଲ ପାଉଥିବା ଗୀତାକୁ ଆଉ ଜଣକ ସାଙ୍ଗରେ ଗୋଟେ ସିନେମା ହଲ୍‌ରେ ଦେଖି ଆତ୍ମହତ୍ୟା କରିଦେବାକୁ ଠିକ୍ କରି ପରେ ସେଥିରୁ ନିବୃତ୍ତ ହୋଇଥିଲି; ବୋଉ କୁହେ- ପିଲାବେଳେ ଗାଁ ନଈରେ ଗାଧୋଉ ଗାଧୋଉ ମୁଁ ବୁଡିଯାଉଥିଲି; ମୋର ସେହି ମୁହୂର୍ତ୍ତରେ ମନେହେଲା ନମରି ମୁଁ ବୋକାମୀ କରିଚି । ଆଗରୁ ମରି ଯାଇଥିଲେ ଖୁବ୍ ଭଲ ହୋଇଥାନ୍ତା । ଅନ୍ତତଃ ଏମିତି ପରିସ୍ଥିତିର ସାମନା କରିବାକୁ ପଡିନଥାନ୍ତା ।

ମତେ ଆହୁରି ଆଶ୍ଚର୍ଯ୍ୟ କରିଦେଇ ମାଉସୀ ତା'ଦେହରୁ ଶାଢିଟା ଖୋଲିଲା ଓ ଶାଢିଟାକୁ ଭାଙ୍ଗିକି କାନ୍ଥ ପାଖରେ ଝୁଲୁଥିବା ଗୋଟେ ଦଉଡିରେ ଟାଙ୍ଗିଦେଲା ।

:ତା'ପରେ ଖଟ ପାଖକୁ ଆସି ଶାୟା ଡୋର ଗଣ୍ଠି ଫିଟଉ ଫିଟଉ ଖୁବ୍ ସହଜ କଣ୍ଠରେ ମତେ ଡାକିଲା- ଜଲ୍‌ଦି ଆସ ପୁଅ । ଦେଖୁଚ ତ କିଏ ଗୋଟେ ରାକାଣିଆଖିଆ ଡାକିକି ଗଲାଣି, ଆଉ ଟିକକ ପରେ ଆସିଯିବ... । ଆସ...

ଓଃ ! ଏତେ ସହଜ !! ଏତେ ସାବଲୀଳ !!! ଏତେ ନିଥର ଥିଲା ତା' ସ୍ୱର ଯେ ଯେମିତି ଭାତ ବାଢ଼ିସାରି ବୋଉ ଡାକେ ମତେ- ପୁଅ ଭାତ ବାଢ଼ିଲିଣି ପରା ! ଆ... ।



# ମହାବୃକ୍ଷ

## ତପନ କୁମାର ମହାପାତ୍ର

ଗାତଟା ଆଣ୍ଠୁଏ ଯାଏଁ କରିବୁ ।

ରାଧାକାନ୍ତ ମୁଣ୍ଡ ହଲାଇଲା ।

ତଳେ ଭଲ କରି ପାଉଁଶ ଛିଂଚି ଦେବୁ । ତା' ଉପରକୁ ଶୁଖିଲା ଗୋବର ଓ ଗୁଣ୍ଡ ମାଟି । ଗଛଟା ପୋତି ସାରିଲା ପରେ କିଛି ଗାମାକ୍ସିନ୍ ପକାଇବୁ । ଉଇ କି ବିଷାକ୍ତ ପୋକ ଯେମିତି ନ ଲାଗନ୍ତି । ଦେଖିବୁ, କେମିତି ଭାବେ ବଢ଼ି ଚାଲିବ ଗଛଟି ।

ଏସବୁ କଥା ଶୁଣି ସାରିବା ପରେ ରାଧାକାନ୍ତ ଅବିଶ୍ୱାସୀ ହେଲା ଭଳି ପଚାରିଲା- ଭାଇ ସତରେ କ'ଣ ଏଇ ଗଛଟାରେ ଆରବର୍ଷକୁ ଫଳ ଧରିବ ! ପେନ୍ଥି ପେନ୍ଥି ହୋଇ ଝୁଲି ପଡ଼ିବ ବଉଳ !

ତୋତେ କ'ଣ ମୁଁ ମିଛ କହୁଛି ! ଏଥିରେ ପରା ବଉଳ ହୋଇଥିଲା । ମୁଁ ନିଜେ ଭାଙ୍ଗିଦେଲି । ଗଛଟା ନୋହିଲେ ବଢ଼ି ପାରିବ ନାହିଁ । ତୁ ଜାଣୁ, ଗଛଟାକୁ ଦେଖୁ ଦେଖୁ ନୂଆବୋଉ ତୋର କୁଣ୍ଢାଇ ବସିଲା । ସେ ଦେଖିଛି ଆମ ପଛ ପଟେ ରହୁଥିବା ଓଭରସିଅରଙ୍କ ବଗିଚା । ଏତିକି ଉଚ୍ଚାରେ ଗଛଟାଏ । ବିଚିତ୍ରାନନ୍ଦ ନଇଁ ପଡି ନିଜ ଆଣ୍ଠୁତଳକୁ ହାତ ଦେଖାଇଲେ ।

ସେଥିରେ ଫଳ ହେଉଛି । ରାଧାକାନ୍ତ ତଥାପି ବିଶ୍ୱାସ କରିପାରୁନଥିଲା ।

ହେଉଛି ମାନେ ! 'ଆଜିର ଓଡିଶା'ରେ ପରା ସେ ଗଛ ଦେଖାଇଥିଲା । ଗଛ ସହିତ ତାଙ୍କର ସାର ପରିବାରକୁ । ନିନି ଜିଦ୍ କଲା । କହିଲା, ବାବା ଗଛଟିକୁ ଏଇଠି ଲଗାଇ ଦେବା । ମୁଁ ତାକୁ ବୁଝାଇଦେଲି । ଦାଦା ନେଇ ଗାଁରେ ଲଗାଉ । ସେ ଭାରି ଗଛ ପ୍ରିୟ । କେଉଁ ଫଳର ମଂଜିଟିଏ ଦେଖିଲେ ସେ ବାଡ ପାଇଁ ବାଉଁଶ ହାଣି ଦେଇଥିବ । ସେମାନେ ଖୁସି ହୋଇଗଲେ । କହିଲେ, ଏ ସରକାରୀ କ୍ୱାର୍ଟରରେ ଗଛଟିଏ ଆମେ ଲଗାଇବା, ଫଳ ଆଉ କିଏ ଖାଇବ । ସହଜେ ଆଉ ମାସରେ ଏ କ୍ୱାର୍ଟର ଛାଡିବାକୁ ପଡିବ ।

ରାଧାକାନ୍ତ ଗୋଟାଏ ସବୁଜ ଅରଣ୍ୟର ମାୟାରେ ବଂଦୀ ହୋଇ ପଡୁଥିଲା । ଗଛଟିକୁ ସଯତ୍ନେ ଧରି ନେଉ ନେଉ କହି ପକାଇଲା- ଆଉ ଯଦି ଚାରା ମିଳେ ତେବେ ନିଶ୍ଚୟ ପଠାଇ ଦେବ ।

ନିଜ ମନର ମଳିନ ଭାବକୁ ଚପାଇ ଦେଇ ବିଚିତ୍ରାନନ୍ଦ କହିଉଠିଲେ- ଆରେ ଏ ଚାରା କେତେ ଯେ କଷ୍ଟରେ ସଂଗ୍ରହ କରିଛି ମୁଁ ଜାଣେ, ତଥାପି ଆଉ ଗୋଟାଏ ଦୁଇଟା ପାଇଁ ଚେଷ୍ଟା କରିବି । ହଁ, ଦି'ଚାରି ଦିନରେ ଗଛ ମୂଳ ଟିକେ ଖୁସାଇ ଦେଉଥିବୁ ।

ଗଛଟିକୁ ଦୁଇ ହାତରେ ଧରି ରାଧାକାନ୍ତ ବସ୍ ଉପରକୁ ଉଠି ପଡିଲା । ଦୁଇ ହାତ ବଂଧଥିବା ଯୋଗୁଁ କେବଳ ସ୍ୱରରେ କହିଲା– ଭାଇ ନମସ୍କାର ।

ବସ୍ତା ମେଂଚାଏ କଳାଧୂଆଁ ଛାଡ଼ି ଗଡ଼ିବା ଆରମ୍ଭ କଲା । ଧୂଆଁ ମେଞ୍ଚାକ ତାଙ୍କ ମୁହଁ ଉପରେ ନେସି ହୋଇଯାଉଛି ଭାବିଲା ବେଳକୁ ବି ସେ ଦୀର୍ଘ ନିଃଶ୍ୱାସଟିଏ ପକାଇ ସାରିଥିଲେ । କୁଣ୍ଡ ସହ ଗଛଟିକୁ ସେ ଭାଇକୁ ଦେଇ ଦେଲେ ନାହିଁ ବରଂ କଲମୀ ଦୁଃଖର କୁଣ୍ଡଟି ଭାଇ ଉପରେ ନଦି ଦେଇଛନ୍ତି ଭାବି ଆଶ୍ୱସ୍ତ ହେଲେ ।

ଯଦି ରାଧାକାନ୍ତ ଆସି ପହଞ୍ଚିନଥାନ୍ତା ତେବେ ଗଛଟି ପାଇଁ ତାଙ୍କୁ ଆଉ କିଛିଦିନ ଗାଳି ଖାଇବାକୁ ପଡିଥାନ୍ତା, ଖୋଜିବାକୁ ହୋଇଥାନ୍ତା ନୂଆ ଉପାୟଟିଏ—ଏକଥା ସେ ବୁଝିପାରିଥିଲେ ବେଶ୍ ।

ସେଦିନ-

ଗଛଟିକୁ ଦେଖୁଦେଖୁ ସୌଦାମିନୀ ନିଆଁ ହୋଇଗଲେ । ଗୋଟେ ଅପାରଗ ମଣିଷର ହାତ ଧରିଛି କହି ମୁଣ୍ଡରେ ହାତ ବାଡେଇ ଦେଲେ । ତମ୍ ତମ୍ ହୋଇ କହିପକାଇଲେ- ହଇଓ ଗୋଟାଏ ଗଛ ଆଣିଛ ! କହିଥିଲି, କେଉଁଠି ଯଦି ରଜନୀଗଂଧା ଚାରା ମିଳିବ ତେବେ ନେଇଆସିବ । ଅଥଚ ତମେ ଆଣିଛ ଏଇଟାକୁ । ଆମର ତଳ ମହଲା ନା ଉପର ମହଲା ! ମଝି ଘରଟା ଯେ ଗୋଟାଏ ପାଦ ରଖିଲାବେଳକୁ ବାଲକୋନୀରେ ଜାଗା ନାହିଁ । ତୁଳସୀ ଗଛଟା ଲଗାଇଦେଇ ଚେୟାରଟିଏ ପକାଇ ହେଉନି । ଆଉ ଏ ଆମ୍ବଗଛ କେଉଁଠି ଲାଗିବ !

ବିଚିତ୍ରାନନ୍ଦ ଯୋତା ଖୋଲୁଖୋଲୁ ନିନି ଚାଲି ଆସିଥିଲା ତାଙ୍କ ପାଖକୁ । ଆରପଟ ଘରେ ଥାଇ ସେ ଶୁଣିପାରିଥିଲା ମା'ର ସ୍ୱର । ଯେଉଁଥି ପାଇଁ କଥାର ପ୍ରସଙ୍ଗ ଯୋଡି କହିପକାଇଲା— କାହିଁକି ତମେ ବୋହି ଆଣିଛ କହିଲ ଏଇଟିକୁ ?

ଗଛଟାକୁ ଆଣି ସେ ଯେ ଭୁଲ କରିନାହାନ୍ତି, ଏମିତି ଏ ଧାରଣା ଜନ୍ମାଇବା ପାଇଁ ସେ କହି ପକାଇଲେ- ଗଛଟା ବେଶୀ ବଡ ହେବନାହିଁ । ଆର ବର୍ଷକୁ ଫଳ ଧରିବ ।

ସେ ଫଳ ଫଳିବ କି ସୁନା ଫଳିବ, କେଉଁଠି ଲଗାହେବ କହୁନ ! ନିନି ଯେମିତି ଜେରା କରୁଛି ତାଙ୍କୁ ।

ଭାବୁଛି ବଡ କୁଂଡଟାଏ ଆଣିଲେ ବାଲକୋନୀରେ ରଖି ହୋଇଯିବ ।

ବିଚିତ୍ରାନନ୍ଦଙ୍କର ଅନୁମାନକୁ ମାପି ପାରିଲା ଭଳି ନିନି କହି ପକାଇଲା- ଓଃ ଏଇଟା ତ ହୋଇଛି ଟେବୁଲ୍ ଗୋଲାପ ଗଛ । ଉପରକୁ ନବଢି ଭୂଇଁ ସାଉଁଟିବ । ପୋପାଡି ଦେବି ସେ ଗଛ ଫଛ । କେତେବେଳେ ଟିକେ ଛିଡା ହୋଇ ବାହାରକୁ ଚାହିଁଦେବ ବୋଲି ଜାଗା ଟିକିଏ ସେଠି ପୁଣି ଲାଗିବ ଆମ୍ବ ଗଛ । କୋଉ କଲମୀ ଗୋଲାପ ଡାଳଟିଏ ହୋଇଥାନ୍ତା ଅବା ।

ସ୍ତ୍ରୀର ତାଚ୍ଛଲ୍ୟ ଓ ନିନିର ଔଦ୍ଧତ୍ୟକୁ ସହିପାରିଲେ ନାହିଁ ବିଚିତ୍ରାନନ୍ଦ । ଗଛଟାକୁ ଘରକୋଣକୁ ଡେରି ଦେଇ କହିଉଠିଲେ—ଆଲୋ, ତୁ ନିଜେ ଯାଇ ଏ.ଡି.ଏମ୍.କୁ କହୁନୁ । କଣ୍ଟ୍ରୋଲ କାର୍ଡ ସଂଗେ ଏ ଚାରା ନ ଦେଇ ଗୋଲାପ ଚାରା ଦେବେ । ଫୁଲ ଫୁଟିଲେ ଏକୁ ତାକୁ ଦେଇ ନେଇଆସିବୁ ।

ନିନି ନୀରବ ନରହି କ'ଣ କହି ଆସୁଥିଲା । ତାକୁ ଚପାଇ ଦେଇ ମାଡିଆସିଲେ ସୌଦାମିନୀ । ଉଗ୍ରରୂପା ହୋଇ କହି ପକାଇଲେ- ମୁହଁ ସଂଯତ କର । ହଇଓ କିଏ ଦେଉଛି ଏ ଗଛ ! ଏ.ଡି.ଏମ୍. ! ଚାଲ ମୋ ସାଙ୍ଗରେ । ମୁଁ ତା' ଦୁଆରେ ଥୋଇ ଆସିବି । ନିୟମ କରିଛି କଣ୍ଟ୍ରୋଲ କାର୍ଡ ସଙ୍ଗରେ ଗୋଟିଏ ଗୋଟିଏ ଗଛ ଦେବ ! ନିଆଁ ହେବ ସେ ଗଛ । ତା'ର ସିନା

ଆଗରେ ପଛରେ ମେଲା ପଡିଆ । ବାଡବଂଦୀ । ତା' ସାଙ୍ଗକୁ ଲୋକବ୍ୟାକ । ଆମର କୋଉଠି ଲଗାହେବ ପଚାରିଲନି ? ତମେ ଆଣିଛ ଯଦି ରୁହ ତୁମ ମୁଣ୍ଡରେ ପୋତିଦେଉଛି ।

କେବଳ କଥାରେ ନୁହେଁ ସତକୁସତ ଗଛଟାକୁ ଉଠାଇ ଆଣି ସେ ନଦିଦେଉଥିଲେ ବିଚିତ୍ରାନନ୍ଦଙ୍କ ମୁଣ୍ଡ ଉପରକୁ । ଯୋଗକୁ ସେ ପ୍ରସ୍ତୁତ ଥିଲେ ବୋଲି । ନୋହିଲେ କୁଣ୍ଡ ବାଜି ସେ ଆଘାତ ପାଇଥାନ୍ତେ ନିଶ୍ଚିତ ।

ପ୍ରକୃତ ପକ୍ଷେ ସରକାରୀ ନିୟମ ମାନି, ଚିନି, ଗହମ କୋଟା ସଂଗରେ ସେ ଗଛଟିକୁ ନେଇଆସିଥିଲେ । ହେଲେ ଗଛଟା କେଉଁଠି ଲଗାଇ ହେବ ସେ ଧାରଣା ତାଙ୍କ ମନରେ ଉଠିନଥିଲା । ଏ ଦୃଷ୍ଟିରେ ମା'ଝିଅଙ୍କର ଯୁକ୍ତି ଯେ ଠିକ୍ ତା' ସେ ବୁଝିପାରୁଥିଲେ । ଆଉ ଏକଥା ବି ତ ସେ ଡିଲରକୁ ପଚାରି ନଥାନ୍ତେ, ଗଛଟି କେଉଁଠି ଲଗାହେବ, ସାର ପିଡିଆ କିଏ ଦେବ ! ତା'ର ଯତ୍ନ କିଏ ନେବ ! ବରଂ ଗଛଟିକୁ ଆଣି ଆସିବା ବୁଦ୍ଧିମାନର କାମ ଭାବି ସେ ନେଇ ଆସିଥିଲେ । ହେଲେ ପରିସ୍ଥିତି ଏମିତି ଗଛଟା ଚାରିଦିନ ଯାଏଁ ସେଇ ଘରକୋଣରେ ଲାଖି ରହିଲା । କେହି ସେଥିରେ ପାଣି ମଂଦିଏ ଛିଂଚି ଦେଇନାହାନ୍ତି । ଆଡ କରି ବି ଥରଟିଏ ଚାହିଁ ଦେଇନାହାନ୍ତି ନିଜେ ବିଚିତ୍ରାନନ୍ଦ । ଯେତେବେଳେ ବି ଗଛର ମଳିନ ପତ୍ର ଉପରେ ତାଙ୍କର ନଜର ପଡିଛି ସେ ନଜାଣିଲା, ନଦେଖିଲା ପରି ଆଖି ଫେରାଇ ଆଣିଛନ୍ତି । ଯାହାକୁ ବଂଚାଇ ହେବ ନାହିଁ ତା'ସାଙ୍ଗରେ ମିଛ ମାୟାରେ ବାଂଧି ହେବା କି ଆବଶ୍ୟକ !

ଯୋଗକୁ ରାଧାକାନ୍ତ ଆସି ପହଞ୍ଚି ଯିବାରୁ ତାଙ୍କ ମନକୁ ବୁଦ୍ଧି ଜୁଟିଗଲା । ଗଛଟିକୁ ଏମିତି ଶୁଖାଇ ଶୁଖାଇ ମାରିବା ଅପେକ୍ଷା ଗାଁକୁ ପଠାଇଦେବା ଉଚିତ ମନେକରି ସେ ଗୁଂଜି ଦେଇଥିଲେ ତା' ହାତରେ । କହି ଦେଇଥିଲେ ବି ମିଛ ସତ କରି । କାଳେ ଏତେ ବାଟରୁ ଗଛଟି ନେବାକୁ ସେ ଅମଙ୍ଗ ହୋଇପାରେ । ନୋହିଲେ ଗ୍ରୀଷ୍ମ ଦାଉରୁ ରକ୍ଷା ପାଇବା ପାଇଁ ସରକାର ଯେଉଁ ଗଛ ଲଗାଇବାକୁ ଦେବ ସେ କଲମୀ କାହିଁକି ହେବ, ସେଗୁଡାକ ତ ହେବ ଦ୍ରୁମ, ମହାଦ୍ରୁମ ।

ବିଚିତ୍ରାନନ୍ଦ ଶୋଇପଡିଛନ୍ତି, ଆରପଟେ ନିନି ଓ ସୌଦାମିନୀ । ରବିବାରଟା ଯେ ଡେରିରେ ଖିଆ । ଅରୁଆ ସାଙ୍ଗକୁ ଚିକେନ୍ । ଏମିତିବେଳେ କିଏ ଗୋଟାଏ କଲିଙ୍ଗବେଲ୍ ଦେଲା । ଡାକ ପକାଇଲା ଭାଇ, ଭାଇ । ଏ ଟାଆଁସ ଦିପହରେ କିଏ ଡାକ ପକାଇଲା ! ପୁଣି ଭାଇ, ଭାଇ ବୋଲି । ରାଧାକାନ୍ତ ତ ଯିବାର ଚାରିଦିନ ହୋଇଛି । ହାତରେ ମୁହଁ ମକଚି ବିଚିତ୍ରାନନ୍ଦ କବାଟ ଖୋଲିଲେ ।

ଆଗରେ ଠିଆ ହୋଇଛି ରାଧାକାନ୍ତ । ଭାଇକୁ ଦେଖି ବିଚିତ୍ରାନନ୍ଦ ବିସ୍ମିତ ହେଲା ଭଳି ପଚାରିଲେ : କିରେ କୁଆଡେ ? ଗାଁରେ ସବୁ ଭଲ ତ ?

ରାଧାକାନ୍ତ କିଛି ଉତ୍ତର ନଦେଇ ନଇଁ ପଡିଲା । ତଳେ ରଖିଥିବା ଗଛଟିକୁ ଉଠାଇ ଆଣି କହିଲା- ଆଚ୍ଛା ଗୋଟାଏ ଜିନିଷ ଦେଲ । ତାକୁ ନେଇ ଦୁନିଆ ଝାମେଲା ।

ଗଛଟିକୁ ଦେଖିଦେବା ମାତ୍ରେ ଚମକି, ଚିହିଁକି ଉଠିଲେ ବିଚିତ୍ରାନନ୍ଦ । କ୍ଷୁବ୍ଧ ହୋଇ ପଚାରିଦେଲେ- କ'ଣ ହେଲା କହିଲୁ !

-ଗଛଟିକୁ କେଡେ ଖୁସି ମନରେ ନେଇଥିଲି । ହେଲେ ଜାଗା କାହିଁ !

-ମାନେ ! ବିଚିତ୍ରାନନ୍ଦ ଆଶ୍ଚର୍ଯ୍ୟ ଓ ମିଶ୍ରିତ ରୁକ୍ଷ ସ୍ୱରରେ ପଚାରିଲେ ।

-ମାନେ କ'ଣ ? ବାଡି ପଟରେ ଗାତ ଖୋଳିଲା ବେଳକୁ ଦାଦା ପଚାରିଲେ । ମୁଁ କହିଲି, ଭାଇ ଗୋଟାଏ ଗଛ ପଠାଇଛନ୍ତି । କଲମୀ, ଆରବର୍ଷକୁ ଫଳ ଧରିବ । ସେଇ ଗୋଟାକ ପୋତୁଛି ।

ଦାଦା ହାତ ହଲାଇଲେ ମୋ ମୁହଁ ଉପରେ । କହିଲେ- ସେ ଗଛ ଫଛ ଲଗାଇ ନଥା । ଆରମାସରେ ସେଟଲମେଣ୍ଟ୍ କ୍ୟାମ୍ପ୍ । ବିଚି ଆସିଲେ ଜାଗା ବଣ୍ଟା ହେବ । ତମ ଭାଗରେ ଯେଉଁ ଜାଗା ପଡ଼ିବ ସେଇଠି ଲଗାହେବ ।

ମୁଁ କହିଲି- ଗଛଟା ପୋତି ଦେଇଥିଲେ କ'ଣ ହେବ ! ଜାଗାଟା ଯଦି ତମ ଭାଗରେ ପଡ଼ିବ ତେବେ ଗଛଟା କ'ଣ ମୁଁ ଉପାଡ଼ି ନେବି !

-ଦାଦା କ'ଣ ଶୁଣିଲେ ? କହିଲେ-ନାଇଁମ, ଗଛଟା ପୁଣି ଝାମେଲା କରିବ । ବରଂ ପାଣି ଛିଂଚି ଆଉ ମାସ ଯାଏ ରଖି ଦେଇଥା' । ମୋତେ ତ ରାଗ ମାଡ଼ିଲା । ମୁଁ ଗଛଟାକୁ ସିଧା ଘରକୁ ନେଇଆସିଲି । ପୁଣି ଭାବିଲି, ଏଇ ମୂଳ ମାଟିରେ ପାଣି ଛିଂଚିଲେ କେତେଦିନ ବା ଗଛଟା ବଂଚି ପାରିବ ! ବରଂ କାହାକୁ ଦେଇଦେବା ଭଲ ।

-ଦେଇ ଦେଲୁନାହିଁ । ସମସ୍ୟାର ସମାଧାନ ପାଇଁ ଏ ସ୍ୱର ଉଦ୍ଦିଷ୍ଟ ଥିଲା ବିଚିତ୍ରାନନ୍ଦଙ୍କର ।

ଗୁନାଭାଇ ଘର ନୂଆବୋଉକୁ ଯାଚିଲି । କହିଲି- ନିଅ ପୋତିଦିଅ କେଉଁଠି । ଭାଇଙ୍କଠାରୁ ମୁଁ ଆଣିଛି । ଆରବର୍ଷକୁ ଫଳ ଧରିବ । ମୋତେ ସିଏ କ'ଣ କହିଲେ ଜାଣ ? କହିଲେ- ତମ ଜିନିଷ ମୋତେ ଯାହା ଯାଚିବ । ଭାଇଙ୍କ ନାଁ ଧରିବ ନାହିଁ ମୋ ପାଖେ । ପୁଅଟା ମେଡ଼ିକାଲରେ ପଡ଼ିଥିଲା ଯେ ଟଙ୍କା ଶହେଟା ଧାର ମାଗିଲି । ରୋକ୍‌ଠୋକ୍ ମନା କରିଦେଲେ ମୋତେ ।

ରାଧାକାନ୍ତର କଥା ଶୁଣିବା ଅବସ୍ଥାରେ ନଥିଲେ ଯେମିତି ସେ । ଗଛଟି ଫେରିଆସିବାର ଅସହାୟତା ସହିତ ଏ ପ୍ରକାର ତିରସ୍କାର ଶୁଣି ସେ କହି ଉଠିଲେ–ଟଙ୍କା କ'ଣ ଏଠି ଥୁଆ ହୋଇଛି ? ଯେତେବେଳେ ଯିଏ ମାଗିଲା ଦେଇଦେବି । ସେ ପୁଅ ମରିଯାଇଥିଲେ ବି ମୋର କ'ଣ ଯାଉଥିଲା ! ତୁ କାହିଁକି ତାଙ୍କୁ ଯାଚି ହେଉଥିଲୁ ? ରାଗଟା ଯେମିତି ରାଧାକାନ୍ତ ଉପରେ ଶୁଝାଇବାକୁ ଚେଷ୍ଟା କଲେ ସେ ।

ରାଧାକାନ୍ତ କିନ୍ତୁ ଚୁପ୍ ନପଡ଼ି କହି ଉଠିଲା- ଆଉ କାହାକୁ ଦେଇଥାନ୍ତି ? ଏଇଟା ପରା ମୁଁ ଗାଁ ସ୍କୁଲ ହତାରେ ଲଗାଉଥିଲି ଯେ ସେ ପଣ୍ଡିତ ହେଡମାଷ୍ଟ୍ର ମୋତେ ମନା କରିଦେଲେ ।

-କାହିଁକି ?

-କାହିଁକି କ'ଣ ! କହିଲା, କନିଅର କି ଚଂପାଡାଳଟିଏ ପୋତିଦିଅ ପଛେ ଏସବୁ ଗଛ ଲଗାଅ ନାହିଁ । ପାଚେରୀ ଦାଡ଼କୁ ବରଗଛଟା ଥିଲା ଯେ ସ୍କୁଲ ଘର କାନ୍ଥ ଫଟାଉଥିଲା । ତହସିଲ ଅଫିସ, ଫରେଷ୍ଟ ଅଫିସ୍‌ରୁ ପରିମିଶନ୍ ଆଣି ହାଣିବା ପାଇଁ ଚାହିଁବାରୁ ଧାଇଁ ଧାଇଁ ଗୋଡ଼ରୁ ପାଣି ମରିଗଲା । ସେଥିପାଇଁ ସେ ମନା କରିଦେଲେ ।

-ତୁ କହିଲୁ ନାହିଁ, ଗଛଟା କ'ଣ ସଙ୍ଗେ ସଙ୍ଗେ ବଡ ହୋଇଯାଉଛି !

ବିଚିତ୍ରାନନ୍ଦଙ୍କର ଯୁକ୍ତିସବୁ ସାମ୍ନା କରିବା ଭଳି ରାଧାକାନ୍ତ କହି ପକାଇଲା- ଏକଥା କ'ଣ ମୁଁ କହିନାହିଁ ! କହିଲି ପରା, ଏଇଟା ଏତେବଡ ହେବ ନାହିଁ, କଲମୀ ଗଛଟା । ଅଳ୍ପ ଉଚ୍ଚା ହେବ । ଝଙ୍କାଳିଆ ହୋଇ ସୁନ୍ଦର ଦିଶିବ ବି । ଆରବର୍ଷକୁ ଫଳ ଧରିବ । ଏ ପ୍ରକାର ଗଛଟି ଦେଖିଲେ ସବୁ ପିଲାଙ୍କର ଆଗ୍ରହ ହେବ ବି ଗଛ ଲଗାଇବାକୁ । ହେଲେ ସେ ତ ନାଇଁ

କଲେ । ମୁଁ ଦେଖିଲି ଆଉ କେଉଁଠି ଲଗାଇ ହେବନାହିଁ । ବରଂ ଭାଇ ଯଦି ଲଗାଇବେ ବୋଲି କେଉଁଠୁ ସଂଗ୍ରହ କରି ଆଣିଥିଲେ ତାଙ୍କୁ ଦେଇ ଆସିବା ଭଲ ।

ରାଧାକାନ୍ତର ଶେଷ ପଦକରେ ଚାବୁକ୍ ପାହର ଖାଇବା ଭଳି ବିଚିତ୍ରାନନ୍ଦ ସୋଫା ଉପରୁ ଉଠି ପଡିଲେ । ଥରେ ରାଧାକାନ୍ତର ମୁହଁକୁ ଚାହିଁ ଭାରିପାଦରେ ଗଛଟା ଆଡକୁ ମାଡି ଆସିଲେ ।

ଦମ୍ଭ ହୋଇ ଛିଡ଼ା ହୋଇଥିବା ଗଛ ସହ କୁଣ୍ଡଟିକୁ କଂସ ପରି ଉଠାଇ ଆଣି ବାଲ୍‌କୋନି ଉପରୁ ତଳକୁ ଫୋପାଡି ଦେଲେ ।

କୁଣ୍ଡଟା ଠୋ କରି ଶବ୍ଦଟାଏ କରି ଭାଙ୍ଗି ଗଲାବେଳେ ମୂଳ ମାଟିରୁ ବି ଅଲଗା ହୋଇଗଲା ଗଛଟି ।

ବିଚିତ୍ରାନନ୍ଦ ମୂଳଶତ୍ରୁକୁ ନିପାତ କଲାଭଳି ଗର୍ବବୋଧରେ ଫାଟିପଡି ମୁହୂର୍ତ୍ତେ ଅଟକି ରହିଲେ ବାଲ୍‌କୋନି ଉପରେ ।

ଏତିକି ବେଳେ-

କୁଆଡୁ କେଜାଣି ବୁଲା ପିଲାଟାଏ ଧାଇଁ ଆସିଲା ସେ ଆଡକୁ ।

ମୂଳମାଟି ମେଂଚାଏ ସହିତ ଗଛଟିକୁ ଏକାଠି କରି ଟୋଳି ଧରୁ ଧରୁ ବିଚିତ୍ରାନନ୍ଦଙ୍କୁ ଚାହିଁ କହିଲା, ଗଛଟାକୁ ମାରିଦେଲେ !

ବିଚିତ୍ରାନନ୍ଦ କ'ଣ କ'ଣ କହି ପକାଇବେ ଭାବିବା ବେଳକୁ ଦେବଶିଶୁ ଭଳି ଗଛଟି ଧରି ଉଭାନ୍ ହୋଇଗଲା ପିଲାଟି ।

